

ପ୍ରଥମ ଖଣ୍ଡ

# ଫକୀରମୋହନ ଗ୍ରନ୍ଥାବଳୀ

ବ୍ୟାସକବି ଫକୀରମୋହନ

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର - କଟକ-୨

ପ୍ରକାଶକ
ଶ୍ରୀ ଅନନ୍ତ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୨

ଦ୍ୱିତୀୟ ସଂସ୍କରଣ
୧୯୬୩

ମୁଦ୍ରାକର
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର
ପ୍ରସାଦ ପ୍ରେସ୍, କଟକ-୨

ବର୍ଦ୍ଧିତ ମୂଲ୍ୟ :—
ବନ୍ଧାଇ—ପଚାଶ ଟଙ୍କା
ଅବନ୍ଧା—ପଞ୍ଚତିରିଶ ଟଙ୍କା
( Price Revised 15 th. January 76 )



ବ୍ୟାସକବି ଫକୀରମୋହନ ସେନାପତି

ଜନ୍ମ—୧୮୪୩ ଜାନୁଆରୀ    ମୃତ୍ୟୁ—ଜୁନ ୧୪—୧୯୧୮

# ଶୁଭେଚ୍ଛା

ଓଡ଼ିଆ ସାହିତ୍ୟରେ ଫକୀରମୋହନଙ୍କ ସ୍ଥାନ ଅଦ୍ୱିତୀୟ । ଭାବ, ଭାଷା ଓ ପ୍ରକାଶଭଙ୍ଗୀରେ ତାଙ୍କର ନୂତନତା ଥିଲା । ଯେଉଁ ସବୁ ସମସ୍ୟା ତତ୍‌କାଳୀନ ସମାଜକୁ ବିଶେଷଭାବରେ ଆନ୍ଦୋଳିତ କରୁଥିଲା, ଫକୀରମୋହନଙ୍କ ଗଳ୍ପ ଓ ଉପନ୍ୟାସରେ ତାହା ପ୍ରତିଫଳିତ ହୋଇଛି । ସମାଜଠାରୁ ଦୂରରେ ରହି ସାହିତ୍ୟ ରଚନା କରିବା ତାଙ୍କର ଧର୍ମ ନ ଥିଲା । ଫକୀରମୋହନଙ୍କ ସମୟରୁ ବହୁକାଳ ଅତୀତ ହୋଇ ଯାଇଥିଲେ ମଧ୍ୟ ତାଙ୍କ ପରି ବଳିଷ୍ଠ ପ୍ରତିଭାର ଅଧିକାଂଶ ଓଡ଼ିଆ ସାହିତ୍ୟରେ ଦେଖାଯାଉନାହାନ୍ତି । ସେପରି ନିଷ୍ଠା, ସାଧନା, ଦେଶ ଓ ସମାଜର ବିଭିନ୍ନ ସମସ୍ୟା ପ୍ରତି ଚେତନା ଓ ସରଳ ଭାଷାରେ ନିଜର ଚିନ୍ତା ପ୍ରକାଶ କରିବାର ଶକ୍ତି ଦେଖା ଯାଉନାହିଁ ।

ସୁଖର ବିଷୟ **କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର** ଫକୀରମୋହନଙ୍କର ରଚନାବଳୀ ସଂକଳନ କରି ସାଧାରଣରେ ଏକ ଗ୍ରନ୍ଥାବଳୀ ଆକାରରେ ପ୍ରକାଶ କରିଛନ୍ତି । ରାଧାନାଥ, ମଧୁସୂଦନ, ଚିନ୍ତାମଣି, ଗଙ୍ଗାଧର ଓ ନନ୍ଦକିଶୋରଙ୍କ ରଚନା ସବୁ ଗ୍ରନ୍ଥାବଳୀ ଆକାରରେ ପ୍ରକାଶିତ ହେବା ପରେ ଫକୀରମୋହନଙ୍କ ଲେଖା ସମ୍ପର୍କରେ ଏ ଅଭାବ ଅନୁଭୂତ ହେଉଥିଲା । ତେଣୁ ଶ୍ରୀ ଅନନ୍ତ ମିଶ୍ରଙ୍କର ଏ ଉଦ୍ୟମ ବାସ୍ତବିକ ପ୍ରଶଂସନୀୟ ।

ଶ୍ରୀ ପଞ୍ଚମୀ
୪ । ୨ । ୧୯୫୭ } **ଶ୍ରୀ ହରେକୃଷ୍ଣ ମହତାବ**

# ଉପୋଦ୍‌ଘାତ

ପ୍ରଥମରୁ କହିରଖେ, ଏବେ ପୁସ୍ତକମାନଙ୍କରେ ଛାପାଦୋଷ ତଥା ଜ୍ଞାନଦୋଷଜନିତ ଯେଉଁ ସବୁ ଭ୍ରାନ୍ତି ରହୁଛି, ତାହା ଅକ୍ଷମଣୀୟ କହିଲେ ହୁଏ । ଏଥିରେ କିଏ କ'ଣ ବିଗାଡ଼ୁଛନ୍ତି, ତା ସବୁ ଆଲୋଚନା କରିବା ଦରକାର ନାଇ । ଏହା ନିଶ୍ଚିତରେ ସାହିତ୍ୟର ଅଧଃପତନ ଓ ଅଧୋଗତିର ସ୍ପଷ୍ଟ ସଙ୍କେତ । କଞ୍ଚା ଓଡ଼ିଆରେ କହିଲେ କୁହାଯିବ, ଆମ ଓଡ଼ିଆ ଭାଷା ଓ ସାହିତ୍ୟର ଆଜ ମା' ବାପ ନାଇ । ଅନ୍ୟ ଭାବରେ ମଧ୍ୟ ଏ କଥା ସତ୍ୟ । ମୋ ମନେ ଅଛି, ଶୁଣିଥିଲି, ସେ କାଳର ଶୁଚିମନ୍ତ ସାହିତ୍ୟିକ ମୋର ବାଲ୍ୟଗୁରୁ ସ୍ୱର୍ଗତ ଚନ୍ଦ୍ରମୋହନ ମହାରଣା ଟ୍ରେନିଂ ସ୍କୁଲ ଛାତ୍ରଙ୍କୁ 'ମହାଯାତ୍ରା' ପଢ଼ାଇଲା ବେଳେ, 'ସାତକୋଶିଆ ଗଣ୍ଡ' ବର୍ଣ୍ଣନା ଭିତରେ ଯେତେବେଳେ ପଢ଼ିଲେ,

"କୁହେଳୀରେ ନୀଳବର୍ଣ୍ଣ ଭୃଗୁମାନଗିରି

× × ×

ଶିଖାତୋଳ କଳନ୍ତି କି ଗଗନର ସୀମା ?"

ହଠାତ୍ ବିସ୍ମିତ ହୋଇଲାପରି ଟିକିଏ ରହିଗଲେ ଓ ଛାତ୍ରଙ୍କୁ କହିଲେ, "ଓଡ଼ିଆରେ ହୁଏ, 'ମୁଣ୍ଡ ଟେକ', 'ମୁଣ୍ଡ ତୋଳ' ନୁହେଁ । ବଙ୍ଗଳାରେ ହୁଏ 'ମାଥା ତୁଲେ' । ଏଠାରେ ହୁଅନ୍ତା 'ଶିଖା ଟେକ' ।" ଏବେ ଆଜକାର, ସେଠାକାର, ସଠିକ୍, ହୁବହୁ, ଛାରଖାର, ନିଆଁ ଧୂଧୂ ଜଳୁଛି, ସେ ଦୁଃଖରେ ହାପୁହାପୁ କଲା ପ୍ରଭୃତି ଓଡ଼ିଆରେ ଅପ୍ରାକୃତିକ ଓ ଅସଙ୍ଗତ ଆମଦାନି ବରାବର ଦେଖିବାକୁ ମିଳିବ । 'ତା' ଭାଇ ମରିଯିବାରୁ, ତା'ଘରେ କାନ୍ଦବୋବାଳି ପଡ଼ିଲା' ନ ଲେଖି ଆମ ଲେଖକମାନେ ମାର୍ଜିତ ଭାଷାରେ ଲେଖୁଛନ୍ତି 'ତା ଘରେ କାନ୍ଦାକଟା ଲାଗିଲା ।' ଏ ସବୁ ଲେଖି ବସିଲେ, ସରିବ ନାଇ । ଏପରି ପ୍ରକାଶଭଙ୍ଗୀ କେବଳ ସୂଚନା ମାତ୍ର । ଆମ ନାଟକ ଲେଖାରେ ଏ ବିଂଶ ଶତାବ୍ଦୀର ମଧ୍ୟଭାଗରେ ମଧ୍ୟ କେବଳ 'ଜନାନ୍ତିକେ' ଓ 'ସ୍ୱଗତ' ନୁହେଁ, ଦେବ ଦେବୀଙ୍କ ଆବିର୍ଭାବ ଓ କରଣୀଠାରୁ ଗୁଣୀ ଗାରେଡ଼ିର ବ୍ୟବହାର ପର୍ଯ୍ୟନ୍ତ ଲେଖକ ଓ ଦର୍ଶକଙ୍କ ପାଖରେ ଅନାଦୃତ ବା ହେୟ ହୋଇନାଇ । ତେଣୁ ବିଦ୍ୟାର ପ୍ରଗତିସୂତ୍ରରେ ଭାଷା ଓ ସାହିତ୍ୟ ଉନ୍ନତି କରୁଛି ବୋଲି ମନେ ହେଉ ନାଇ ।

ବିଦ୍ୟାର ପରଂପରା ମଧ୍ୟ ଏ ଦେଶରେ ଫିଟ୍ ନାଇ । ଆଲୋଚନାସୂତ୍ରରେ ପୂର୍ବର ଆଲୋଚ୍ୟ ଓ ସିଦ୍ଧାନ୍ତମାନଙ୍କ ଉପରେ ନୂତନର ପ୍ରତିଷ୍ଠା ହେବା ଉଚିତ । ମୁଁ ବରାବର କହେ, ପରଂପରା,

ପରିସ୍ଥିତି ଓ ପୂର୍ବଦୃଷ୍ଟି, ଏଇ ତିନୋଟି ଉପାଦାନ ଅବିଚ୍ଛେଦ୍ୟ । ଏଇମାନଙ୍କର ଅଙ୍ଗାଙ୍ଗୀ ସମ୍ପର୍କରେ ବ୍ୟକ୍ତିତ୍ୱର ପ୍ରତିଷ୍ଠା । ପରିସ୍ଥିତିର ଆଲୋଚନା ଓ କଳନାରେ ଏଇ ବ୍ୟକ୍ତିତ୍ୱ ହେଉଚି ପରମ ଅବଲମ୍ବନ । ପରଂପରାର ପ୍ରଭାବ ନ ଥିଲେ ପରିସ୍ଥିତିର ନିର୍ମଳ ଅବବୋଧ ହୁଏ ନାଇ । ତା ନ ହେଲେ ପରିସ୍ଥିତିର କଳନା ବିନା ଭବିଷ୍ୟତର କଳ୍ପନା ସୁଗମ ନୁହେ । ସେ ଦିନ ଜଣେ ଖ୍ୟାତନାମା, ପାଣିନି ବ୍ୟାକରଣରେ ସୁପଠିତ, ବୌଦ୍ଧର ପାଲି ଓ ଜୈନର ପ୍ରାକୃତ ସଙ୍ଗେ ସୁପରିଚିତ ପଣ୍ଡିତ ଆସି ମତେ କହିଲେ, "ମୁଁ ଏବେ ଗୋଟିଏ ପ୍ରବନ୍ଧ ଓଡ଼ିଆରେ ଲେଖି ପ୍ରମାଣ କରିଦେଇଚି, ବର୍ଗର ପଞ୍ଚମ ବର୍ଣ୍ଣ ପୂର୍ବରେ ଥାଇ ବର୍ଗୀୟବର୍ଣ୍ଣମାନଙ୍କ ଯୋଗରେ ଯେଉଁସବୁ ଯୁକ୍ତାକ୍ଷର ହୁଏ, ସେ ସବୁ 'ଅନୁସ୍ୱାର'ରେ ମଧ୍ୟ ବ୍ୟକ୍ତ କରାଯାଇ ପାରିବ । ଏହା ସଂସ୍କୃତ ବ୍ୟାକରଣସିଦ୍ଧ ।" ମୁଁ ବିସ୍ମିତ ହୋଇ ପଣ୍ଡିତ ମହାଶୟଙ୍କୁ ଟିକିଏ ରୂଢ଼ଭାବରେ କହିପକାଇଲି, "ଏ ଦେଶରେ କ'ଣ ବିଦ୍ୟାର ପରଂପରା ଫୁଟିବ ନାହିଁ ? ଆଜକୁ ୪୩ ବର୍ଷ ତଳେ ୧୯୧୩ ଖ୍ରୀଷ୍ଟାବ୍ଦରେ ସତ୍ୟବାଦୀ ସାହିତ୍ୟର ଆଦିମ ବିକାଶ ବେଳେ ଲିପିସଂସ୍କାର ଆନ୍ଦୋଳନର ଘୋର ବିବାଦ ମଧ୍ୟରେ ଏ କଥାଟିର ସିଦ୍ଧାନ୍ତ ହୋଇଯାଇଚି । ସେତେବେଳେ ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ, ସ୍ୱର୍ଗତ ବିଶ୍ୱନାଥ କର, ସ୍ୱର୍ଗତ ମୃତ୍ୟୁଞ୍ଜୟ ରଥ ପ୍ରମୁଖ ସେ କାଳର ଲବ୍ଧପ୍ରତିଷ୍ଠ ନିଷ୍ଠାପର ସାହିତ୍ୟିକମାନେ ଏ ନୂତନତ୍ୱରେ ଯେପରିକି ବିସ୍ମିତ ହୋଇ ଘୋର ବିବାଦ ଆରମ୍ଭ କରି ଦେଇଥିଲେ । ମୁଁ ନିଜେ ସତ୍ୟବାଦୀରେ ଏଇ ଲିପିସଂସ୍କାର କରିବାରେ ଅଗ୍ରଣୀ ଥିଲି ଓ ଦୃଢ଼ପ୍ରତିଜ୍ଞ ମଧ୍ୟ ଥିଲି । ଫଳରେ କେତେକ ବର୍ଷ ପରେ ବିହାର ଓଡ଼ିଶା ପ୍ରଦେଶର ( ଓଡ଼ିଶା, ବିହାର-ଓଡ଼ିଶାର ଅନ୍ତର୍ଗତ ଥିଲା ) ଶିକ୍ଷାବିଭାଗ କର୍ତ୍ତୃପକ୍ଷମାନେ ଏଇ ସିଦ୍ଧାନ୍ତ ( ଅର୍ଥାତ୍, ଏହି ପଞ୍ଚମ ବର୍ଣ୍ଣ ଅନୁସ୍ୱାରରେ ମଧ୍ୟ ଲିପିବଦ୍ଧ ହୋଇପାରେ ) ଗ୍ରହଣ କରି ସେତେବେଳେ ବିଭାଗୀୟ ସ୍କୁଲକଲେଜ-ମାନଙ୍କୁ ନିର୍ଦ୍ଦେଶ ପତ୍ରରେ ଜଣାଇ ଦେଇଥିଲେ । ଆପଣ ଆଜି ଆଉ ଥରେ ଆଲୋଚନା କରି ପୂର୍ବ ଆଲୋଚନା ଓ ସିଦ୍ଧାନ୍ତକୁ ସ୍ମରଣ କରି ପୁରାତନର ପରିବର୍ତ୍ତନ ଓ ନୂତନର ଆହରଣରେ ପ୍ରଯତ୍ନ କରିଚନ୍ତି କି ?"

"ଆଉ ଗୋଟିଏ କଥା । ରେଫ୍ ଯୋଗେ ବର୍ଣ୍ଣର ଦ୍ୱିତ୍ୱ ଉଚ୍ଚାରଣ । ଆମ୍ଭେମାନେ ବହୁକାଳରୁ ଲିପିରେ ଏହା ପରିତ୍ୟାଗ କରିଚୁ ; କିନ୍ତୁ ପ୍ରାୟ ଛାପାଖାନାରେ ଏବେ ମଧ୍ୟ 'ଆର୍ଦ୍ର'ଠାରୁ 'କର୍ମ୍ମ' ପର୍ଯ୍ୟନ୍ତ 'ର୍ଯ୍ୟ' 'ର୍ମ୍ମ' ପ୍ରଭୃତି ଲିପି ବରାବର ବ୍ୟବହାର କରାଯାଉଚି । ଏ ଗତାନୁଗତିକତାର ପ୍ରତିକାର କ'ଣ ?"

ଏକଥା ଶୁଣି ପଣ୍ଡିତ ମହାଶୟ ଯେପରିକି ବିସ୍ମୟରେ କହି ଉଠିଲେ, "ତେବେ କ'ଣ 'କର୍ମ୍ମ' ଲେଖିବାରେ 'ମ'କୁ ଆପଣ ଗୋଟାଏ 'ମ' କରି ଲେଖିବେ ?" ମୁଁ ଏ ସମ୍ବନ୍ଧରେ ଥିବା ପାଣିନିଙ୍କର ସୂତ୍ରଟିକୁ ଧରି ବୁଝାଇ ବସିଲି; କିନ୍ତୁ ଦେଖିଲି ପଣ୍ଡିତ ମହାଶୟ 'ବର୍ଣ୍ଣ ବିଚାର' ଓ 'ଲିପି ବିଚାର' ଭିତରେ ଭେଦ କରୁ ନାହାନ୍ତି । ପାଖରେ ଆଉ ଜଣେ ବସିଥିଲେ । ସେ ଜଣେ ଓଡ଼ିଆରେ ଅଧ୍ୟାପକ । ସେ ଆଉ ଜଣେ ପ୍ରସିଦ୍ଧ ଓ ପ୍ରତିଷ୍ଠିତ ଓଡ଼ିଆ ସାହିତ୍ୟିକଙ୍କ ନାମ କରି କହିଲେ, 'ଅମୁକ ତ ଏପରି ରେଫଯୁକ୍ତ ଦ୍ୱିତ୍ୱହୀନ ଲେଖାକୁ ଅଶୁଦ୍ଧ ବୋଲି କହୁଚନ୍ତି ।' ମୁଁ ସେଠାରୁ ଆଉ କିଛି ଯୁକ୍ତି କରିବା ସଙ୍ଗତ ବୋଲି ନ ବିଚାରି ଖାଲି କହିଲି, 'ବନାରସଠାରୁ ବୋମ୍ବେ ପର୍ଯ୍ୟନ୍ତ ହିନ୍ଦୀଲିପିରେ ଛପା ହୋଇଥିବା କାବ୍ୟ, ନାଟକ, ସ୍ମୃତି, ପୁରାଣ, ଏପରି

କି ବେଦ ପର୍ଯ୍ୟନ୍ତ ଦେଖନ୍ତୁ । ସେଥିରେ ରେଫ୍‌ଯୁକ୍ତ ଲିପିରେ ଦ୍ୱିତ୍ୱ ନାଇ କିମ୍ବା ବର୍ଗ୍ୟବର୍ଣ୍ଣର ପୂର୍ବ ଅନୁସ୍ୱାରର ଯୁକ୍ତାକ୍ଷରରେ ପ୍ରକାଶ ନାଇ ।'

ଏ ପରିସ୍ଥିତିରେ ଆଜ ଫକୀରମୋହନଙ୍କ ସମ୍ପର୍କରେ କ'ଣ ଲେଖିବି ବୁଝିପାରୁ ନାଇ । ଫକୀର-ମୋହନଙ୍କ କାଳରେ ଫକୀରମୋହନ ଯେ ଯଥାର୍ଥ କବି ଓ ଲେଖକ ଥିଲେ, ଏହା ଖୁବ୍ ସମ୍ଭବ ସର୍ବବାଦୀ-ସମ୍ମତ । ତତ୍କାଳୀନ ଅନ୍ୟ କୌଣସି ଓଡ଼ିଆ ଲେଖକ ତାଙ୍କ ପରି ଓଡ଼ିଆ ଥିଲେ ବୋଲି ମୋର ମନେ-ହୁଏ ନାଇ । କିନ୍ତୁ ଗୋଟିଏ କଥା ମନେ ରଖିବାର ଅଛି, ଭାଷା ଓ ଲିପି ପ୍ରତି ଧ୍ୟାନ ଦେବା ସେତେବେଳେ ସାହିତ୍ୟିକଙ୍କର କର୍ତ୍ତବ୍ୟନିଷ୍ଠାର ଅଙ୍ଗୀଭୂତ ଥିଲା । ବିଶ୍ୱନାଥ କରଙ୍କ 'ଉତ୍କଳ-ସାହିତ୍ୟ' ପୃଷ୍ଠା ଫିଟାଇ ଏବେ ମଧ୍ୟ ପଢ଼ନ୍ତୁ । ସେଥିରେ ଅଜ୍ଞାତ ଭ୍ରାନ୍ତି ଥାଇପାରେ; ତା ଖୁବ୍ ଥିଲା । ଉଦାହରଣସ୍ୱରୂପ, ସେ 'କୁହାଯାଏ', 'କୁହାହେଲା' ଭଳି ଓଡ଼ିଆ ସନ୍ଧିଶୁଦ୍ଧ ପ୍ରୟୋଗକୁ ବରାବର 'କହାଯାଏ', 'କହାହେଲା' ବୋଲି ଲେଖୁଥିଲେ ଓ ତାକୁଇ ଶୁଦ୍ଧ ବୋଲି ଛାପାରେ ପ୍ରଚାର କରୁଥିଲେ । କିନ୍ତୁ ଅବହେଳାରେ ସେଚ୍ଛା ସେ ପ୍ରୟୋଗକୁ ଓଡ଼ିଆ ବୋଲି ଚଳାଇଦିବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା ବୋଲି କହିଲେ ହୁଏ । ଏଥିରେ ତାଙ୍କର କର୍ମନିଷ୍ଠା ଜାଣିବାକୁ ଗୋଟିଏ ଉଦାହରଣ ଦେଉଛି । ସ୍ୱର୍ଗତ ପଣ୍ଡିତ ଗୋପୀନାଥ ନନ୍ଦଙ୍କ 'ଭାରତ ଦର୍ପଣ' ଗ୍ରନ୍ଥରେ ପ୍ରକାଶ ପାଇଥିବା ସବୁ ପ୍ରବନ୍ଧ ବିଶ୍ୱନାଥ କର ନିଜେ ତଡ଼ି ବୁଝି ପ୍ରୁଫ୍ ସଂଶୋଧନ କରି ଛାପିଇଚନ୍ତି । ତାଙ୍କର ଦ୍ୱାରା ସେଇ ଉତ୍କଳ ସାହିତ୍ୟରୁ ପୁନର୍ମୁଦ୍ରିତ 'ଭାରତ ଦର୍ପଣ' ଗ୍ରନ୍ଥଟି ଏବେ ମଧ୍ୟ ଅଛି । ସାହିତ୍ୟ ପତ୍ରର କୌଣସି ସଂପାଦକ ଆଜି ସେଭଳି ପ୍ରବନ୍ଧମାନଙ୍କ ସଂପାଦନାରେ ସମର୍ଥ ହେବେ ନାଇ । ଆଜି ବରଂ କୁହାଯାଇ ପାରେ, ଓଡ଼ିଶାରେ ସମ୍ପାଦକମାନେ ସମ୍ପାଦନା ନ କରି ସଂକଳନ ହିଁ କରନ୍ତି । ଓଡ଼ିଆ ଭାଷା ଓ ସାହିତ୍ୟଗତ ପ୍ରଗତିର ପରମ୍ପରା ଯେ ନାଇ, ଏହା ତାହାର ସ୍ପଷ୍ଟ ପ୍ରମାଣ ।

ସ୍ୱର୍ଗତ ରାଧାନାଥ ରାୟ ଓ ସ୍ୱର୍ଗତ ମଧୁସୂଦନ ରାଓ ସେଇକାଳର ଲୋକ । ସେମାନେ ସାହିତ୍ୟରେ ଯେ ଧାରା ଓ ଭାବ ପ୍ରକାଶରେ ଯେ ଶୈଳୀ ଦେଖାଇ ଦେଇ ଯାଇଚନ୍ତି, ତାହା ଏବେ ବି ପ୍ରତିଷ୍ଠାର ଭଙ୍ଗିମା ଆଦୌ ହରାଇ ନାଇ । ଅନୁସନ୍ଧାନ କଲେ ଦେଖାଯିବ, ତାଙ୍କ ଭାଷା ଓ ସାହିତ୍ୟ ଯେ ଏହାର ଏକମାତ୍ର କାରଣ, ତାହା ନୁହେ । ଭାଷା ଓ ସାହିତ୍ୟ ହିସାବରେ ସେମାନେ ନିଶ୍ଚୟ ବହୁ ଦିନରୁ ଅତୀତର ସାମଗ୍ରୀ ହୋଇ ଯାଇଥାନ୍ତେ । 'ଛ ମାଣ ଆଠଗୁଣ୍ଠ'ର ଫକୀରମୋହନଙ୍କ ପରି ସାହିତ୍ୟରେ ଜୀବନୀ ଶକ୍ତି ତାଙ୍କର ନ ଥିଲା । କିନ୍ତୁ ବିଶ୍ୱନାଥ କରଙ୍କ ସଂକେତରେ ଯେଉଁ ନିଷ୍ଠାର କଥା କୁହାଗଲା, ତାହାଇ ମଧୁ, ରାଧାନାଥଙ୍କୁ ବଞ୍ଚାଇ ରଖିବାର କେବଳ ଅନ୍ୟତମ ନୁହେ; ବରଂ ଶ୍ରେଷ୍ଠତମ ହେତୁ । ଶୁଦ୍ଧ ଭାଷା ବା ସାଧୁ-ଭାଷା ସମ୍ବନ୍ଧରେ ତାଙ୍କର ଧାରଣା ଓ ଆଦର୍ଶ ଯାହା ହେଉ, ସେ ନିଷ୍ଠାପର ଭାବରେ ତାହାର ପ୍ରକାଶ ଓ ପ୍ରଚାର ପାଇଁ ଚିର ଜାଗ୍ରତ ଓ ଚିରକର୍ମଠ ଥିଲେ । ଗୋଟିଏ ସାମାନ୍ୟ ଉଦାହରଣ ଦେଖ । ତା ହେଉଛି, ପଦ୍ୟରେ ତାଙ୍କ ଉପଧା ମିଳନ । ସେ ଦିନ ଜଣେ ମଧୁ ରାଓଙ୍କ 'ବର୍ଣ୍ଣବୋଧ'ର ଆଲୋଚନା କରିବାକୁ ଯାଇ ଦେଖାଇଚନ୍ତି, ଯେ କିପରି ପିଲାଙ୍କୁ ମଧ୍ୟ 'ବର୍ଣ୍ଣବୋଧ' ଶିଖାଇବାରେ ପଦ୍ୟରେ ଉପଧା ମିଳନ ପ୍ରତି ପୂର୍ଣ୍ଣ ଲକ୍ଷ୍ୟ ରଖି ପାଠର ଯୋଜନା କରିଥିଲେ । ଉପଧା ମିଳନଟି ସ୍ପଷ୍ଟ ଇଂରେଜୀ ତଥା ବଙ୍ଗଳାର

ଅନୁକରଣ । ଅକାରାନ୍ତ ଶବ୍ଦ ସମ୍ବଳିତ ଓଡ଼ିଆ ଭାଷା ପରି ଭାଷାରେ ତାହା ଗୋଟିଏ ଅଳଙ୍କାର ହୋଇ-ପାରେ; କିନ୍ତୁ ଗଦ୍ୟର ଅବିଚ୍ଛେଦ୍ୟ ଅଂଗ ନୁହେ । ତଥାପି ଫକୀରମୋହନଙ୍କଠାରୁ ଗୋପବନ୍ଧୁ, ଗୋଦାବରୀଶ, ଏପରିକି କାଳିନ୍ଦୀ, ମାନସିଂହଙ୍କ ପର୍ଯ୍ୟନ୍ତ କେହି ତାହା ଛାଡ଼ି ଗଦ୍ୟ ଲେଖିବାକୁ ଯାଇନାହାନ୍ତି । ଏପରି ଜନସମାନ ଓଡ଼ିଆ ଭାଷା ଓ ସାହିତ୍ୟରେ ସ୍ଥିର କରି ପ୍ରତିଷ୍ଠା ଦେବା କମ୍ ନିଷ୍ଠାର ପରିଚୟ ଦେଉ ନାହିଁ । ଆଜି ସେ ନିଷ୍ଠା ନାହିଁ ।

ନିଷ୍ଠାରେ ଅନୁକରଣ କଲେ, ଭୁଲ ମଧ୍ୟ ଠିକ୍ ବୋଲି ପରି ପ୍ରତିଷ୍ଠିତ ହୋଇଯାଏ । ଯେପରିକି, ମଧୁ, ରାଧାନାଥଙ୍କ କାଳରେ 'ଏବଂ' 'ସୁତରାଂ' ପ୍ରଭୃତି ଶବ୍ଦମାନ ବୃଥାରେ ଓଡ଼ିଆରେ ପଶିଯାଇଛି । 'ସକ୍ଷମ' ପରି ଅନେକ ବ୍ୟାକରଣ-ବିରୁଦ୍ଧ ଶବ୍ଦ ମଧ୍ୟ ଏବେ ଯଥା ତଥା ଓଡ଼ିଆରେ ଦେଖିବାକୁ ମିଳୁଛି । ଅବଶ୍ୟ ଫକୀରମୋହନ ଏସବୁ କୌଣସି ଜ୍ଞାତ ଅଜ୍ଞାତ ଅନୁକରଣ ପାଇଁ ନିଜେ ବିଶେଷ ଦାୟୀ ନୁହନ୍ତି । ଫକୀରମୋହନ ଥିଲେ ଖାଣ୍ଟି ଓଡ଼ିଆ । ସରଳ ସ୍ୱାଭାବିକ କୌତୁକଠାରୁ ଭାଷା, ଭାବ ଓ ସମସ୍ତ ପ୍ରକାଶ ଭଙ୍ଗୀରେ ସେ ଓଡ଼ିଆ । ମଧୁ, ରାଧାନାଥ ପ୍ରଭୃତି ତା ନୁହନ୍ତି । ତଥାପି ମଧୁ, ରାଧାନାଥ, ବିଶ୍ୱନାଥ ପ୍ରଭୃତିଙ୍କୁ ସେ ଓଡ଼ିଆର ପ୍ରତିଷ୍ଠିତ ଲେଖକ ବୋଲି ବିଚାରୁଥିଲେ । ତାଙ୍କ ପାଖେ ନିଜର ଗୌଣତ୍ୱ ମନୋବୃତ୍ତି ଫକୀରମୋହନଙ୍କର ଖୁବ୍ ଥିଲା । ଏପରିକି ଗଦ୍ୟରେ ଉପଧା ପର୍ଯ୍ୟନ୍ତ ଯଥାସାଧ୍ୟ ଅନୁକରଣ କରିବାରେ ଫକୀରମୋହନ ତ୍ରୁଟି କରିନାହାନ୍ତି ।

ଓଡ଼ିଆରେ ଗଦ୍ୟଧାରା ଧରି ରଖିଥିଲେ ମୁଖ୍ୟତଃ ମଧୁସୂଦନ । ତାଙ୍କର ପ୍ରକାଶ ଭଙ୍ଗୀରେ ବିଶ୍ୱନାଥ, ମୃତ୍ୟୁଞ୍ଜୟ ପ୍ରଭୃତି ପୂର୍ଣ୍ଣ ପ୍ରଭାବିତ ହୋଇଥିଲେ । ଅନେକେ ଜାଣନ୍ତି ନାହିଁ, ଅତି ପରିଣତ ବୟସରେ ଫକୀରମୋହନଙ୍କ ଥରୁଥିବା ହାତ ଯେତେବେଳେ ଭୁଲ କରି, ପୁଣି କେହି କେହି କହନ୍ତି, ଶୁଦ୍ଧ କରି ଲେଖିବାର କୃତିତ୍ୱ ହରାଇଥିଲା, ସେତେବେଳେ ବିଶ୍ୱନାଥ କର ଓ ତାଙ୍କ ସମଧର୍ମା ସହଯୋଗୀମାନେ ବୃଦ୍ଧ କବିଙ୍କ ଲେଖାକୁ ସଂଶୋଧନ କରି ପ୍ରକାଶ କରୁଥିଲେ । ଏଇ ସଂଶୋଧନର ଉତ୍କୃଷ୍ଟ ଦୃଷ୍ଟାନ୍ତ ହେଉଛି, ଫକୀରମୋହନଙ୍କ 'ପ୍ରାୟଶ୍ଚିତ୍ତ' । 'ପ୍ରାୟଶ୍ଚିତ୍ତ'ର ଭାଷା ଓ ପ୍ରକାଶ ଭଙ୍ଗୀ ଦେଖିଲେ ଏହା ସ୍ପଷ୍ଟ ଜଣାଯାଏ । ସେ ପ୍ରକାରରେ ବିଚାର କଲେ, 'ପ୍ରାୟଶ୍ଚିତ୍ତ' ଫକୀରମୋହନଙ୍କ ଲେଖା ନୁହେ ବୋଲି କୁହାଯାଇପାରେ । ବଡ଼ ଆଶ୍ଚର୍ଯ୍ୟ ଲାଗେ, ଖାଲି ଭାଷାର ପ୍ରକାଶ ଭଙ୍ଗୀରେ ନୁହେ, ଭାବର ପ୍ରେରଣା ଓ ପ୍ରକାଶରେ ମଧ୍ୟ 'ପ୍ରାୟଶ୍ଚିତ୍ତ' ବରାବର ଭିନ୍ନ ଧରଣର । 'ପ୍ରାୟଶ୍ଚିତ୍ତ'ରେ 'ରୋମିଓ ଜୁଲିଏଟ୍' ପ୍ରଭୃତି ପରି ଇଉରୋପୀୟ ବିୟୋଗାନ୍ତ ନାଟକର ରୂପ ଓ ପ୍ରକାରର ପ୍ରଚ୍ଛନ୍ନ ଭାବରେ ଅନୁକରଣ ଥିଲା ପରି ଜଣାଯାଏ । ଏପରିକି ଗ୍ରନ୍ଥମଧ୍ୟରେ ପ୍ରସଙ୍ଗକୁ ଟାଣି ଓଟାରି ଭିନ୍ନ ରୂପ ଦେବା ଉଦ୍ୟମ କରିଥିଲେ ବି ସଦାନନ୍ଦ ସ୍ପଷ୍ଟ ରୋମିଓ ଜୁଲିଏଟର ନାମ ମଧ୍ୟ କହିଛନ୍ତି ।

'ଲଛମା' ବିୟୋଗାନ୍ତ ନୁହେ । ଏହି 'ଲଛମା'ଟି ମଧ୍ୟ ଫକୀରମୋହନଙ୍କ ଅତି ପ୍ରିୟ ଥିବା କଥା ମୁଁ ବ୍ୟକ୍ତିଗତ ଭାବେ ଜାଣେ । ଫକୀରମୋହନଙ୍କଠୁ ଏହା ମୁଁ ଶୁଣିଛି । ମାତ୍ର ଯଥାର୍ଥରେ ଓଡ଼ିଆ ସାହିତ୍ୟରେ ଫକୀରମୋହନଙ୍କ ବିଶେଷତ୍ୱ 'ଲଛମା'ରେ ତାଦୃଶ ନାହିଁ । ଆମ 'ସମାଜ'ର ଚିତ୍ର ସେଥିରେ ଅତ୍ୟନ୍ତ ଗୌଣ । ବିଷୟାଂଶମାନଙ୍କ ସଂଶ୍ଳେଷଣରେ 'ଲଛମା'ର କୃତ୍ରିମତା ଅତ୍ୟନ୍ତ ସ୍ପଷ୍ଟ । ତେଣୁ ମୋ

ବିଗୃରରେ 'ଲଛମା'କୁ ଧରି ଫକୀରମୋହନଙ୍କୁ ଚହ୍ନିବାର ଉଦ୍ୟମ ହୁଏତ ସଫଳ ହେବ ନାଇ । 'ଲଛମା'ର ପୃଷ୍ଠପଟରେ ଯେଉଁ ଇତିହାସର ଧାରଟି ରହିଚ, ତା ଠିକ ଓଡ଼ିଆ କି ନୁହେ, ତା ବାରିବା ଦୁଷ୍କର । ଓଡ଼ିଶାରେ ମରହଟ୍ଟାଙ୍କ ଯେଉଁ ରାଜତ୍ୱ ବେଳ, ସେଥିରେ ବର୍ଣ୍ଣନା କରିବାର ପ୍ରୟାସ କରାଯାଇଚ, ତା ମୋଗଲ ରାଜତ୍ୱ କି ହିନ୍ଦୁ ରାଜତ୍ୱ କହିହେବ ନାଇ । ପରିସ୍ଥିତିର କଳନାରେ ଓଡ଼ିଆ ଅନ୍ତରଙ୍ଗଭାବରେ ଅନୁପ୍ରାଣିତ ହେବା ଭଳି ସାମଗ୍ରୀ ସେଥିରେ ବିଶେଷ ଥିବା ପରି ଲାଗୁନାଇ । ଖାଲି ଅଦ୍ଭୁତ ଭାବରେ ବିଚ୍ଛେଦ ଓ ଆକାଂକ୍ଷିତ ମିଳନରେ ବିଷୟ ପରିସମାପ୍ତ ହେଲେ କେବଳ ନାଟକ ବା ଉପନ୍ୟାସ ପୂର୍ଣ୍ଣାଙ୍ଗ ହୁଏ ବୋଲି ବିଗୃରିବା ଠିକ୍ ନୁହେ ।

ଉପନ୍ୟାସ ମଧ୍ୟରେ ପ୍ରଥମ ହେଉଚି, 'ଛମାଣ ଆଠଗୁଣ୍ଠ', ଦ୍ୱିତୀୟଟି ହେଉଚି 'ମାମୁଁ' । ଏଇ ଦୁଇଟିର ବିଗୃରରେ ଆମକୁ ଓଡ଼ିଆ ସମାଜର ସ୍ପଷ୍ଟ ଓ ଜୀବନ୍ତ ଚିତ୍ର ଦେଖିବାକୁ ମିଳେ । ସେଥିରେ ମଧ୍ୟ ଏହା 'ଛ ମାଣ ଆଠଗୁଣ୍ଠ' ରେ ଷୋଳକଳାରେ ଅଛି, 'ମାମୁଁ' ରେ ଟିକିଏ ଊଣା । 'ଛମାଣ ଆଠଗୁଣ୍ଠ'ରୁ ଟାଣି କରି ଖିଅ ବାହାର କଲାପରି 'ମାମୁଁ'ଟିର ପ୍ରକାଶ ବୋଲି ମନେ କରିବାର କାରଣ ଅଛି । ପଲ୍ଲୀର ରାମଚନ୍ଦ୍ର ମଙ୍ଗରାଜଙ୍କୁ ସହରର ବେଷ୍ଟନୀ ଓ ମନୋବୃତ୍ତିରେ ଦେଖାଇବା ପାଇଁ ଯେପରିକି 'ମାମୁଁ'ର କଳ୍ପନା ହୋଇଥିଲା । 'ଛମାଣ ଆଠଗୁଣ୍ଠ' ହେଉଚି, ପଲ୍ଲୀପରଂପରାର ପ୍ରତୀକ । 'ମାମୁଁ' ଫକୀରମୋହନଙ୍କ କାଳର ସହରୀ ପରିସ୍ଥିତିର ପ୍ରକାଶ । ମାନବଚରିତ୍ରର ମୌଳିକ ଦୃଷ୍ଟିଭଙ୍ଗୀ ପ୍ରକାଶ ପ୍ରକାର ଏ ଦୁଇଟିରେ ଜୀବନ୍ତ ।

ଏ ସବୁ ଉପନ୍ୟାସରେ ଫକୀରମୋହନ ଅନୁକରଣ କରିବା ଭଳି କୌଣସି ଆଧୁନିକ ଔପନ୍ୟାସିକଙ୍କୁ ଯେ ଆଗରେ ରଖି ନ ଥିଲେ, ତା କୁହାଯାଇ ନ ପାରେ । ମୁଁ ନିଜେ ଫକୀରମୋହନଙ୍କଠାରୁ ଶୁଣିଚି, ସେ କହୁଥିଲେ, 'ଯେତେବେଳେ ବଙ୍ଗଳାରେ, ବିଶେଷରେ ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସ ସବୁ ବାହାରେ, ସେତେବେଳେ ସେଥିରୁ ଖଣ୍ଡିଏ ଦେଖିଲେ ମତେ ବଡ଼ ଅମୃଛେଇ ଲାଗେ—ମୁଁ ବିଗୃରେ, ଆମ ଓଡ଼ିଆରେ ଏପରି ଖଣ୍ଡିଏ ଲେଖା ହୁଅନ୍ତା କି ?' ଫକୀରମୋହନଙ୍କ ଉପନ୍ୟାସର ପ୍ରେରଣା ଏଇଠାରେ । ବଙ୍ଗଳାର ସେକାଳର ଉପନ୍ୟାସମାନ ସବୁ ହେଉଚି, ମହାରାଣୀ ଭିକ୍ଟୋରିଆଙ୍କ ସମୟରେ ଫିଟିଥିବା ଚିନ୍ତାଧାରାର ସମଧର୍ମୀ । କୁହାଯାଇପାରେ, ଡିକେନ୍ସ ( Dickens ) ପ୍ରଭୃତି ବଙ୍କିମ ଆଦିଙ୍କର ଏ କ୍ଷେତ୍ରରେ ଗୁରୁ । ଉପରେ କୁହାଯାଇଥିବା ଫକୀରମୋହନଙ୍କ ଉକ୍ତିରୁ ଜଣାଯାଏ, ଫକୀରମୋହନଙ୍କ ପ୍ରେରଣା ଓ ପ୍ରଭାବର ମୂଳ ହେଉଚନ୍ତି, ବଙ୍କିମ । ତେଣୁ ଫକୀରମୋହନଙ୍କ ଉପନ୍ୟାସର ଘଟଣା ରାଶି କୌଣସି ଆଦର୍ଶ ଓ ଉଦ୍ଦେଶ୍ୟରେ ସଜଡ଼ା ହେଲା ଭଳି ଦେଖାଯାଏ । ଚମ୍ପା, ମଙ୍ଗରାଜଙ୍କଠାରୁ ନରୁ, ବିଶାଖା, ନଟବର ଦାସ, ସମସ୍ତଙ୍କ ଚରିତ୍ରର ପରିଣତି ପାଠକର ଆକାଂକ୍ଷାର ସଙ୍ଗେ ଗତି କରେ । ପାଠକ ଯାହା ଖୋଜୁଚି, ସେମାନଙ୍କର ସେଇ ପରିଣତି ହୋଇଚି । ମାନବ ପ୍ରକୃତିରେ ଏହା ପରମ କାମ୍ୟ । କର୍ମର ଏଇ ପରିଣତି ମାନବର ଅତି ବାଞ୍ଛିତ ହେଲେହେଁ, ପ୍ରକୃତିର ଶୃଙ୍ଖଳାରେ ଏହା କଦାଚିତ୍ ଘଟିଥାଏ । ଏହାର ଉପନ୍ୟାସରେ ଆଦର୍ଶ ଭାବ । ଅର୍ଥାତ୍, ମନୁଷ୍ୟର ଯାହା ଆଦର୍ଶ, ସେଇ ଅନୁକ୍ରମେ ଉପନ୍ୟାସ କ୍ରିୟାଂଶମାନଙ୍କର ଶୃଙ୍ଖଳା-ଗଠନ ।

ଅବଶ୍ୟ ଏଠାରେ କହିବାର ଅଛି, ମାନବ ପ୍ରକୃତିରେ ଏଥିରୁ ଅନ୍ୟଥା ହେବାର ପରଂପରା ନାଇ । ଆମର ଯେତେ ପୁରାଣ ଓ ପରଂପରା ମୁହଁରେ ଅଛି ବା ଲିପିବଦ୍ଧ ହୋଇଛି, ଏଇ ଅନୁକ୍ରମେ ତାହାର ଯୋଜନା ବରାବର ଘଟିଛି ହୁଏ । ସେ ସବୁ ଆଦର୍ଶ-ନିବଦ୍ଧ । ସେ ଆଦର୍ଶ ପୁଣି ମାନବିକ ଆଦର୍ଶ । କାଳେ କାଳେ ଏଇ ଆଦର୍ଶର ପରିବର୍ତ୍ତନ ଘଟେ । ସେଥିପାଇଁ ପୁରାଣ ପରଂପରାର ଗଳ୍ପସବୁ ଭିନ୍ନ ଭିନ୍ନ ଭାବେ କଳ୍ପିତ ଓ ପ୍ରସ୍ତୁତ ହୁଏ । କର୍ଣ୍ଣଙ୍କୁ ଦାନୀ କରି ଦେଖାଇବାକୁ ହେବ । ସେଥିପାଇଁ କେଉଁଠାରେ ତାଙ୍କ ଅଛେଦ୍ୟ କବଚ ଓ ଅମୃତ କୁଣ୍ଡଳ ଲୋକେ ମାଗି ଆଣି କର୍ଣ୍ଣଙ୍କ ଉଦାରତା ପ୍ରତିପାଦନ କରନ୍ତି । ଅନ୍ୟତ୍ର ପୁଣି ସେ ପୁଅକୁ ହାତରେ ହାଣି ମାଇପ ହାତରେ ରନ୍ଧାଇ ଅତିଥିକୁ ଖାଇବାକୁ ଦିଅନ୍ତି । ଦୁଇଟିଯାକ ଏକା ଜିନିସ ହେଲେ ମଧ୍ୟ ବିଭିନ୍ନ ରୂପରେ କଳ୍ପିତ ଓ ପ୍ରସ୍ତୁତ ହୋଇଛି ।

ଏ ସବୁ ମାନବୀୟ ପରଂପରା । ସମାଜରେ ଯାଗଯଜ୍ଞ ଓ ବ୍ରାହ୍ମଣଙ୍କୁ ଦାନ କରିବା ଅନୁଷ୍ଠାନସବୁ ତିଆରି କରି ବଢ଼ାଇବା ପାଇଁ ହୋଇଛି ଆମର ପୁରାଣାଦି । ତା ନ ହୋଇଥିଲେ ଆମ ସମାଜର କୌଣସି ଦୃଢ଼ ପୀଠ ବା ନୈଷ୍ଠିକତାର ପ୍ରତିଷ୍ଠିତ ନ ଥାନ୍ତା । ଏ ସବୁ ବିଚାର କରି ଦେଖିଲେ ଫକୀରମୋହନ ଅନୁକରଣ କରନ୍ତୁ ବା ଉଦ୍ଭାବନ କରନ୍ତୁ, ସେ ବିଷୟାଂଶମାନଙ୍କର ଯେ ଯୋଜନାମାନ ତିଆରି କରିଛନ୍ତି, ତା ଅତି ସଙ୍ଗତ, ସମୀଚୀନ ଓ ସୁନ୍ଦର । ସେଥିରେ ଯେଉଁ ଆଦର୍ଶବାଦ ଅଛି, ସମାଜରେ ତାହାଇ ହୋଇ ଆସିଛି ।

"ଅଧର୍ମ ବିତ୍ତ
ବଢ଼େ ବହୁତ,
ଗଲାବେଳେ ଯାଏ ମୂଳ ସହିତ ।"

ଏ ଯେଉଁ ପ୍ରବଚନଟି ଅଛି, ତା ସମାଜର ଅନୁଭବରେ ସ୍ୱତଃସିଦ୍ଧ ନ ହେଲେ ମଧ୍ୟ ଅନୁମାନର କଳ୍ପନାରେ ଆଦର୍ଶମୂଳକ । ପୃଥିବୀର ଜନସମାଜ ବରାବର ଏଇ ଆଦର୍ଶ ଦେଇ ଚଳେ । ପ୍ରକୃତି ବେଳେ ବେଳେ ଏହାର ବିରୋଧ କରେ । ସେ ବିରୋଧ ମନୁଷ୍ୟଙ୍କୁ ସ୍ୱାଭାବିକ ଲାଗେ ନାଇ । ତେଣୁ ତା ମାନବ ଆକାଂକ୍ଷାର ବହୁଦୂରରେ । ଫକୀରମୋହନଙ୍କ ଆଦର୍ଶବାଦ ବୁଝିଲାବେଳେ ଏହା ଖୁବ୍ ମନେ ରଖିବାର ଅଛି । ପ୍ରକୃତି ଆମ ଯୋଜନାର ବିରୋଧ କରେ—ଏହା ସତ୍ୟ । ମାତ୍ର ଏହା ଗ୍ରହଣୀୟ ନୁହେ । ଆଜି ନୂତନ ଭାବ-ଜଗତରେ କଳମ, ପ୍ରକୃତି ସଂଗେ ଗଢି କରିବାର ବାହାନା କରିପାରେ । ବେଳେ ବେଳେ ସେ ବାହାନା ସତ୍ୟର ଅନୁରୂପ ହୋଇପାରେ । କିନ୍ତୁ ସମାଜର ଗଠନ ପ୍ରକ୍ରିୟାରେ ତାହାର ସ୍ଥାନ ନାଇ, ଏହା ମଧ୍ୟ ମନେ ରଖିବାର ଅଛି । ଫକୀରମୋହନ ଯେଉଁ ଆଦର୍ଶବାଦ ଅବଲମ୍ବନ କରିଥିଲେ, ତା ମାନବିକ ଆଦର୍ଶ ଓ ଚରିତ୍ରଗତ କର୍ମନିଷ୍ଠାର ପରଂପରାରୁ ବାହାରିଥିଲା । ପୁଣି ଯେତେବେଳେ ଫକୀରମୋହନ ଏହା ଲେଖିଥିଲେ, ସେତେବେଳେ ଏ ସାମାଜିକ ଆଦର୍ଶବାଦ ଛାଡ଼ି ପୂର୍ଣ୍ଣ ପ୍ରକୃତିର ଆଦର୍ଶ ଧରି ଚାଲିଥିଲେ, ଫଳ କ'ଣ ହୋଇଥାନ୍ତା, ସମାଜ ତା କିପରି ଗ୍ରହଣ କରିଥାନ୍ତା, ତା ମଧ୍ୟ ଏଠାରେ ଭାବିବାର ବସ୍ତୁ ।

କିନ୍ତୁ ଏକଥା ଏତିକିରେ ଥାଉ । ଏତିକି ମାତ୍ର ଜାଣିଦେଲେ, ଅନ୍ୟତ୍ର, ବିଶେଷତଃ 'ଛମାଣ ଆଠଗୁଣ୍ଠ' ଓ 'ମାମୁଁ'ରେ ଫକୀରମୋହନ ପୃଥିବୀର ଓଡ଼ିଆ । 'ମାମୁଁ'ରେ ପରିସ୍ଥିତି ବର୍ଣ୍ଣନାରେ କଳ୍ପନାର ଟିକିଏ ଉଦ୍ଧାମତା ହୁଏତ ଠାଏ ଠାଏ ଅଛି । କିନ୍ତୁ 'ଛମାଣ ଆଠଗୁଣ୍ଠ' ନିଚ୍ଛକ ସ୍ୱାଭାବିକ ପରିସ୍ଥିତିର ଜୀବନ୍ତ ଚିତ୍ର । ସେ ଯାହାହେଉ, ଓଡ଼ିଶାର କୌଣସି ପଲ୍ଲୀରେ ରାମଚନ୍ଦ୍ର ମଙ୍ଗରାଜ ଓ କୌଣସି ସହରରେ 'ମାମୁଁ' ଯେ ଜୀବନ୍ତ ରୂପରେ ଥାଇପାରନ୍ତି ବା ରହିପାରନ୍ତି, ଏହା ସମ୍ଭାବନାରୁ ଦୂରରେ ନୁହେ ।

ତା'ପରେ ଫକୀରମୋହନଙ୍କ ଭାଷା । ଏହା ସରସତାରେ ପୂର୍ଣ୍ଣ । ଏପରି ସରସ ଭାଷା ଓଡ଼ିଆରେ ଆଉ କେବେ କେହି ଲେଖିନାହିଁ । ଏଥିରେ ଯେଉଁ ରସିକତା ଅଛି, ଓଡ଼ିଆରେ ଅନ୍ୟତ୍ର କୁତ୍ରାପି ତା ଦେଖାଯାଏ ନାହିଁ । 'ଛମାଣ ଆଠଗୁଣ୍ଠ' ରେ ଛତ୍ରେ ଛତ୍ରେ ଏହା ପୂର୍ଣ୍ଣ । କ୍ଷୁଦ୍ର ବାକ୍ୟାଂଶଠାରୁ ପ୍ରବନ୍ଧ ବିଷୟାଂଶ ପର୍ଯ୍ୟନ୍ତ ସବୁଠି ଭାଷା'ର ଏହି ମୋହନ ସାବଲୀଳତା ପାଠକକୁ ମୁଗ୍‌ଧ କରେ । ହେଲେହେଁ ଏହାର ଉଦାହରଣ ପାଇଁ ଓଡ଼ିଆ ଲେଖାରେ ଅନ୍ୟତ୍ର ଖୋଜି ହେବ ନାହିଁ । ଫକୀରମୋହନଙ୍କର ଏ ବିଶେଷତ୍ୱ ଏହା ଫକୀରମୋହନଙ୍କ ବିଶେଷତ୍ୱ । ପୁଣି ଏଥିରେ ଗ୍ରାମ୍ୟତାର ଗନ୍ଧ ନାହିଁ । ଏ ରସିକତା ଅତି ବିଶୁଦ୍ଧ ଓ ଅତି ମନୋରମ । ଉଦାହରଣ ଦେବା ନିଷ୍ପ୍ରୟୋଜନ । ପାଠକମାନେ ଯତ୍ରତତ୍ର ଏହା ଦେଖି ପାରିବେ ।

ବିଶେଷତଃରେ ଏଥିପାଇଁ ଫକୀରମୋହନଙ୍କ ଆତ୍ମଜୀବନୀ ଯେ କେହି ଦେଖି ପାରନ୍ତି । କି ସୁନ୍ଦର ସରସତାରେ ନିଜର ଦୈନ୍ୟ ଦୁର୍ବଳତା ପର୍ଯ୍ୟନ୍ତ ଫକୀରମୋହନ ଏଥିରେ ପ୍ରକାଶ କରି ବେଳେ ବେଳେ ଗଭୀର ଆତ୍ମଗ୍ଲାନିକୁ ଘୋର ଆତ୍ମଶ୍ଳାଘାରେ ପରିଣତ କରିଚନ୍ତି, ଅଥଚ ପ୍ରାଣର ଚଞ୍ଚଳତା ବା ନିଜକୁ ବହୁମାନ ଦେବାର ଉଦ୍‌ବେଗ ନାହିଁ, ଏହା ଏକା ଦେଖିବାର ଜିନିସ । ଏପରି ଆତ୍ମଜୀବନୀ ଆଉ ଜାଣିବାର ସାହିତ୍ୟରେ ଲେଖାଯାଇଚି ବୋଲି ମନେ ହୁଏ ନାହିଁ । ଅବଶ୍ୟ ଦୁଃଖର କଥା, ଏ ଘୋର ବିଚିତ୍ରତା, ରସିକତା ଓ ସରସତାର ଚିତ୍ର ବେଳେ ବେଳେ ଖଣ୍ଡିତ ହୋଇଚି—ତା ପୁଣି ହୋଇଚି, ତାଙ୍କ ପୁତ୍ର ସ୍ୱର୍ଗତ ମୋହିନୀମୋହନ ସେନାପତିଙ୍କ ପଟୁତାରେ । ସେଥିପାଇଁ 'ଉତ୍କଳ ସାହିତ୍ୟ'ର ମୌଳିକ ଲେଖା ସବୁ ଅନୁଧ୍ୟାନ ଯୋଗ୍ୟ ।

ଅବଶ୍ୟ ଏଇ ଅତିରମଣୀୟ ଆତ୍ମଜୀବନୀରେ ସ୍ୱର୍ଗତ ମୋହିନୀମୋହନଙ୍କ କାଟଛାଣ୍ଟ ଖୁବ୍ କାମ କରିଚି । ବରଂ କୁହାଯାଇ ପାରେ, ଏ ସବୁ କାଟଛାଣ୍ଟରେ କବିଙ୍କର ଭଙ୍ଗିମା ବା ଗୌରବ ବଢ଼ାଇବାର ଲେଶ ନାହିଁ । ଏହାର ଉଦ୍ଦେଶ୍ୟ ଭିନ୍ନ ଓ ଅସ୍ପୃହଣୀୟ । ଏଇ ଦୃଷ୍ଟିରେ କବିଙ୍କର ଆଦିମ କବିତାମାନଙ୍କରେ ବିଶେଷତଃ ପତ୍ନୀ ବିୟୋଗରେ ଲିଖିତ 'ଉପହାର'ରେ ବହୁ ସ୍ଥାନରେ ସଂଶୋଧନର ଛାୟା ପଡ଼ିଚି । ସେଥିରେ ବିଷୟ ଖଣ୍ଡିତ ହୋଇଚି ମାତ୍ର; ସୌନ୍ଦର୍ଯ୍ୟ ବୃଦ୍ଧି ପାଇ ନାହିଁ ।

ଗୋଟିଏ ଉଦାହରଣ ଦେଖ । ଫକୀରମୋହନ ନିଜ ଲିଖିତ ଗଳ୍ପଗୁଡ଼ିକ ଏକତ୍ର କରି ନାମ ଦେଇଥିଲେ, 'ଗଳ୍ପ ସ୍ୱଳ୍ପ' ଅର୍ଥାତ୍ ମେ ହର ଯାହା କିଛି ଅଳ୍ପ ଗଳ୍ପ ଅଛି, ତାହାର ସମବାୟ । ଫକୀର ମୋହନଙ୍କ ପୁତ୍ର ତାହାର ଦ୍ୱିତୀୟ ସଂସ୍କରଣ କଲାବେଳେ ବୋଧ ହୁଏ ବିନା ଉଦ୍ଦେଶ୍ୟରେ ସଂଶୋଧନ

କର ନାମ ଦେଲେ, 'ଗଳ୍ପ ସଳ୍ପ' । ସେ କହିଲେ 'ସ୍ୱଳ୍ପ' ଗୋଟାଏ କି କଥା ? ବରଂ ଓଡ଼ିଆରେ କହନ୍ତି 'ଗପସପ' । ତେଣୁ ଏହାର ସଂସ୍କୃତୀକରଣ ହେବ 'ଗଳ୍ପ ସଳ୍ପ' । ନିରୁଦ୍ଦେଶ୍ୟ ସମାଲୋଚନାରେ ମଧ୍ୟ କି ସୁନ୍ଦର ବିଗ୍ରହ ! କିନ୍ତୁ ଏପରି ଏକବାଗିଆ ବିଗ୍ରହ ମୋହିନୀମୋହନଙ୍କ ପ୍ରକୃତିଗତ ଥିଲା ।

ସେ ଯାହାହେଉ, ଫକୀରମୋହନଙ୍କ ଗଳ୍ପ ଏବେ ମଧ୍ୟ ଓଡ଼ିଶାରେ ଅନନୁକୃତ ରହିଚି । ଓଡ଼ିଶାର ପରିସ୍ଥିତି ଭିତରେ ଇତିହାସ ସଂଗେ ସାମାଜିକତାକୁ ମିଶାଇ ଏପରି ଗଳ୍ପ କଳ୍ପନା କରିବା ଆମ ସାହିତ୍ୟରେ ଏବେ ବି ଅନନ୍ୟସାଧାରଣ ।

ଆଉ ଗୋଟିଏ କଥା ରହିଗଲା—ତାହା ହେଉଚି, ଫକୀରମୋହନଙ୍କ ପଦ୍ୟ ଓ କବିତା । ତାଙ୍କ ପଦ୍ୟରେ ଯଥାର୍ଥ କବିତା ଥିଲା, ତାଙ୍କ ପିଲା ଦିନର କ୍ଷୁଦ୍ର କ୍ଷୁଦ୍ର କବିତାରେ । ସେ ସବୁ 'ପୁଷ୍ପମାଳା' ଆକାରରେ ଦକ୍ଷିଣରେ ପାଠ୍ୟ ପୁସ୍ତକ ହେବାପାଇଁ ସେ କାଳର ରଙ୍ଗାଭଟ୍ଟଲ୍ଲା ଗୁନ୍ନେୟା ଶାସ୍ତ୍ରୀଙ୍କୁ ବିକି ହୋଇ ଯାଇଥିଲା । କେତେ ମୂଲ୍ୟରେ, ମୂଲ୍ୟ ଥିଲା କି ନା, ଏସବୁ ବିଷୟରେ ଆମେ କିଛି ଜାଣୁ ନାଇ । ଏସବୁ ପରେ, ତାଙ୍କ ଗୌରବଗର୍ଭିକ କାବ୍ୟ ହେଉଚି 'ଉପହାର' । ସେ ପୁସ୍ତକଟି କୁହାଯାଇଚି, ଦ୍ୱିତୀୟ ସଂସ୍କରଣରେ ମୋହିନୀମୋହନ ଦ୍ୱାରା 'ସାଧୁକୃତ' । ସେ ପୁସ୍ତକର ପ୍ରଥମ ସଂସ୍କରଣରେ ସ୍ଥଳେ ସ୍ଥଳେ ହୃଦୟଗ୍ରାହୀ କବିତା ଥିଲା । ତୁଳନା ପାଇଁ ପାଠକମାନେ ଖୋଜି ଦେଖି ପାରନ୍ତି । ତା'ଛଡ଼ା ଗୋଟିଏ କୌତୁକାବହ କାବ୍ୟ ହେଉଚି, 'ଉତ୍କଳଭ୍ରମଣ' । ପ୍ରଥମ ସଂସ୍କରଣରେ ଏହାର ଆୟତନ ଓ ପରିସର ଅଳ୍ପରେ ଥିଲେ ହେଁ ଏହା ବଡ଼ ହୃଦୟଗ୍ରାହୀ ସରସତାରେ ପୂର୍ଣ୍ଣ ଥିଲା । ଉଦାହରଣସ୍ୱରୂପ ଜଣେ ମଠମହନ୍ତଙ୍କୁ ନାମତଃ ଲକ୍ଷ୍ୟ କରି ଫକୀରମୋହନ ଲେଖିଥିଲେ—

"ତହିଁ ମଧ୍ୟେ ଥିଲେ ଜଣେ ହୟଗ୍ରୀବ ଦାସ,<br>
ମହା ପାଜି ସଇତାନ ବଡ଼ ବଦମାସ ।"

ଝିଙ୍କାରପୁର ଜମିଦାରମାନଙ୍କୁ ଲକ୍ଷ୍ୟ କରି କବି ଲେଖିଥିଲେ—

"ଝିଙ୍କାରପୁରିଏ ସୁଖେ ଥାଅ ଚିରଦିନ୍<br>
କରୁଥାଅ ପ୍ରତିଦିନ ତାକ ଧିନ୍ ଧିନ୍ ।"

ନୂଆ ବାବୁମାନଙ୍କୁ ଲକ୍ଷ୍ୟ କରି ଲେଖିଥିଲେ—

"ବାବୁମାନେ ହେଲେ ସବୁ ଇଂରେଜି ପଢ଼ୁଆ<br>
ଓଡ଼ିଆ କହିଲେ ତାଙ୍କୁ ଲାଗିବ ଅଡୁଆ ।"

ଏସବୁ ଯେ ଦ୍ୱିତୀୟ ସଂସ୍କରଣରେ ନାଇ, ସେ କଥା ନୁହେ । କିନ୍ତୁ ଦ୍ୱିତୀୟ ସଂସ୍କରଣରେ କାବ୍ୟଟିର ନୀଳାକୃତି ପରିସରରେ କେବଳ ବଢ଼ାଇ ଦିଆଯାଇଚି ନୁହେ, ଠିକ୍ ସମାଲୋଚନାରେ,

ଏପରକି ଗାଳବର୍ଷଣରେ ପର୍ଯ୍ୟନ୍ତ ଯେଉଁ ପୂର୍ଣ ଗାଢ଼ ରସିକତା ଥିଲା, ତାହା ସବୁ ପାଣି ଫାଟି ଯାଇଚି କହିଲେ ହୁଏ । ଏ କାବ୍ୟଟିରେ ଯୌବନ ଉପରେ ବାର୍ଦ୍ଧକ୍ୟର ସ୍ତର, କୌତୁକ ଉପରେ ବିମୃଷ୍ୟକାରିତାର ଆଚ୍ଛାଦନ ପଡ଼ିଯାଇଚି ବୋଲି ବେଶ୍ ବୁଝାଯିବ ।

ତା ପରେ ତାଙ୍କର 'ବୌଦ୍ଧାବତାର କାବ୍ୟ' । ୧୯୦୭ ଖ୍ରୀଷ୍ଟାବ୍ଦ ବେଳକୁ ଏହାର ଶେଷ ଓ ପରିଶୁଦ୍ଧ ସଂସ୍କରଣ ପ୍ରକାଶ ହୋଇଥିଲା । ଫକୀରମୋହନ ନିଜେ ଏ କାବ୍ୟଟିକୁ ଶ୍ଳୋକରେ ଆବୃତ୍ତି କରିବାକୁ ଗୋଟିଏ ବିସ୍ତୃତ ମୁଖବନ୍ଧ ଲେଖିଚନ୍ତି । ହେଲେହେଁ, ଏ ମୁଖବନ୍ଧଟିର ଭାଷାରେ 'ଛମାଣ ଆଠଗୁଣ୍ଠ' ବା 'ଗଳ୍ପସ୍ୱଳ୍ପ' ର ଫକୀରମୋହନ ନାହାନ୍ତି । ଏହା ବରଂ 'ପ୍ରାୟଶ୍ଚିତ୍ତ'ର ଭାଷା ବୋଲି ବୁଝା ଯାଇପାରେ । ଏଥିରେ ମଧୁବାବୁଙ୍କ ପ୍ରକାଶଶୈଳୀ ଓ ଛାପ ସୁସ୍ପଷ୍ଟ ଦେଖାଯାଏ । ଏହା ଧର୍ମ ସମ୍ବନ୍ଧୀୟ ଲେଖା; ତେଣୁ ହୁଏତ ଧର୍ମ ଭାବରେ ପ୍ରଭାବିତ ପବିତ୍ର ଲେଖାର ଏହା ହୋଇଚି ଆଦର୍ଶ । ଏଥିରେ ପୁଣି ବିଷୟଟିର ଅବତାରଣା ଅତି ଦୀର୍ଘ, ପୁଣି ଜଟିଳତାରେ ହ୍ରସ୍ୱ ନୁହେ । 'ଆମକୁ କେହି ପଚାରୁ ନାହାନ୍ତି' 'ଆମର ବହୁ ବିଭବ ଅଛି, କେହି ଜାଣୁ ନାହାନ୍ତି'—ଏ ଗୌଣଭୁ ମନୋବୃତ୍ତିର ଛାପ ମଧ ଖୁବ୍ ଦେଖାଯାଏ । ସର୍ବୋପରି ଦେଖିବାର ଜିନିଷ ଏଥିରେ ହେଉଚି, ଖ୍ରୀଷ୍ଟିୟାନ ଜଗତର ଗୋଟିଏ ଅପ୍ରାକୃତିକ ନିତ୍ୟ ପ୍ରଶ୍ନ । ତା ହେଉଚି, ଈଶ୍ୱର ଅଛନ୍ତି କି ନାହାନ୍ତି । ଖ୍ରୀଷ୍ଟାନମାନେ ବୁଦ୍ଧଦେବ ସମ୍ବନ୍ଧରେ ଏଇ ପ୍ରଶ୍ନଟି ବରାବର ପଚାରି ତାହାର ନାନାପ୍ରକାର ସମାଧାନ କରି ଆସି ଅଛନ୍ତି; କିନ୍ତୁ ଯଥାର୍ଥ ବୁଦ୍ଧଦେବଙ୍କ ସମ୍ବନ୍ଧରେ ଏ ପ୍ରଶ୍ନର ଅର୍ଥ କିଛି ନାଇ । ସାଧନା ବା ଶୀଳରେ ଆତ୍ମାକୁ ନିର୍ମଳକରି ନିର୍ବାଣ ଲାଭ କରିବା ଯାହାଙ୍କର ଉଦ୍ଦେଶ୍ୟ, ତାଙ୍କ ସମ୍ବନ୍ଧରେ ଈଶ୍ୱର ଅଛନ୍ତି କି ନାହାନ୍ତି, ଏ କୃତ୍ରିମ ପ୍ରଶ୍ନ ଉଠି ନ ପାରେ । ପୁଣି ଖ୍ରୀଷ୍ଟାନ ପ୍ରଭୃତି ଆମ ବୈଷ୍ଣବଙ୍କ ପର୍ଯ୍ୟନ୍ତ ସମସ୍ତେ ଭକ୍ତିଧର୍ମୀ । ସେମାନେ ଗୋଟିଏ ଈଶ୍ୱର ତିଆରି କରି ସିଂହାସନରେ ନ ବସାଇଲେ ତାଙ୍କ ଆତ୍ମ ନିବେଦନ ସାର୍ଥକ ହୁଏ ନାଇ । ସେମାନେ ଆଦର୍ଶ ଗ୍ରହୀତା ନାଇ, ଗ୍ରହୀତା ନିଦେଶକ । ସେଇ ନିଦେଶକ ହେଉଚନ୍ତି ଈଶ୍ୱର । ଅତଏବ ବୁଦ୍ଧଙ୍କ ସମ୍ବନ୍ଧରେ ଏ ପ୍ରଶ୍ନ ନିତାନ୍ତ ଅଯୌକ୍ତିକ ଓ ଅସମୀଚୀନ ।

ପୁଣି ବୁଦ୍ଧ ଯେ ଦୁଇଟି—ଏ କଥା ଫକୀରମୋହନଙ୍କ ପରି ଭକ୍ତଙ୍କ ସମ୍ପର୍କରେ ବୁଝିବା ଦୁଷ୍କର । ଫକୀରମୋହନ କହିଚନ୍ତି, ସିଂହଳର ବୌଦ୍ଧ ଧର୍ମରେ ଈଶ୍ୱରଅସ୍ତିତ୍ୱ ମାନନ୍ତି କି ନାଇ କହି ହେବ ନାଇ—କିନ୍ତୁ ନେପାଳ, ଚୀନ, ଭୁଟାନ, ଜାପାନ ପ୍ରଭୃତିର ବୌଦ୍ଧଧର୍ମ ଏଥିରୁ ଭିନ୍ନ । ଏଥିରେ ଈଶ୍ୱର ନାନା ପରିସ୍ଥିତିରେ ନାନା ଭାବରେ ଉପସ୍ଥିତ ଅଛନ୍ତି । ଏହା ଠିକ, ଏଥିରେ ଭ୍ରାନ୍ତି ନାଇ । ମୌଳିକ ବୌଦ୍ଧଧର୍ମକୁ ମହାଯାନୀମାନେ ହୀନଯାନ ବୋଲି କହିଲେ ମଧ ବୁଦ୍ଧରେ ଯଥାର୍ଥ ଜିନିଷ ଏଇଥିରେଇ ପ୍ରତିଷ୍ଠିତ । ଏଥିରେ କର୍ମର ଫଳପାଇଁ ଏକମାତ୍ର ଆତ୍ମା ଦାୟୀ । କର୍ମରେ ଫଳକୁ ଲଗାଇବା ପାଇଁ ଈଶ୍ୱର ମଧ ଦରକାର ନାହାନ୍ତି । ଏହାଇ ମୌଳିକ ବୌଦ୍ଧଧର୍ମ ।

ଦ୍ୱିତୀୟଟି ହେଉଚି, ମହାଯାନର ବୌଦ୍ଧଧର୍ମ । ସେଥିରେ ଆଦର୍ଶ ପୁରୁଷର ମୈତ୍ରୀ ଛାଡ଼ି ବୁଦ୍ଧ, କରୁଣାମୟ ବୁଦ୍ଧରେ ପରିଣତ ହୋଇଚନ୍ତି । ଏଇ କରୁଣାମୟ ବୁଦ୍ଧ ହେଉଚନ୍ତି, ପ୍ରାର୍ଥନାର ଈଶ୍ୱର ।

ଈଶ୍ୱର ଅଛନ୍ତି କି ନାହାନ୍ତି, ଏ ପ୍ରଶ୍ନର ସମ୍ଭାବନା ଏଇ କରୁଣାମୟ ବୁଦ୍ଧରେ ଏକା ଦେଖାଯାଏ । କିନ୍ତୁ ବୌଦ୍ଧଧର୍ମର ଏହା ଏକ ଅର୍ବାଚୀନ ପନ୍ଥା । ମୌଳିକ ଶାକ୍ୟମୁନି ବୁଦ୍ଧ ଏଥିରେ ନାହାନ୍ତି । ଏ ହିସାବରେ ବୁଦ୍ଧଦେବ ଖ୍ରୀଷ୍ଟ ଓ ବାସୁଦେବଙ୍କ ସଙ୍ଗେ ସମାନ କହିଲେ ଅତ୍ୟୁକ୍ତି ହେବ ନାଇ । ଏ ବୁଦ୍ଧ ହେଉଛନ୍ତି ଭକ୍ତର ଭଗବାନ, ଅପୂର୍ଣ ପାପୀର ଆଦର୍ଶ ନୁହନ୍ତି ।

ସେଇ ଦୃଷ୍ଟିରେ ଫକୀରମୋହନ ଲେଖିଛନ୍ତି, 'ବୌଦ୍ଧାବତାର କାବ୍ୟ' । ସେ ସ୍ପଷ୍ଟ ଲେଖିଛନ୍ତି, ସେ କାଳ ଇଂରେଜୀ ବଙ୍ଗଳା ମାସିକ ପତ୍ରମାନଙ୍କ ଲେଖା ଓ କେତେକ ପୁସ୍ତକର ଅବଲମ୍ବନରେ ଏଇ ଗ୍ରନ୍ଥଟି ତାଙ୍କର ଲେଖା ହୋଇଛି । ବିଲାତର ଇଂରେଜ Edwin Arnold ( ଏଡ଼ୱଇନ୍ ଆର୍ନଲ୍ଡ଼ ), Light of Asia (ଏସିଆର ଆଲୋକ) ବୋଲି ଗୋଟିଏ ବୁଦ୍ଧ ଜୀବନୀ କାବ୍ୟ ଲେଖିଥିଲେ । ବୋଲିବା ବାହୁଲ୍ୟ, ଏହା ଭଗବାନ ବୁଦ୍ଧଙ୍କ ଜୀବନୀ । ଏହା ବିଶେଷରେ ଅଶ୍ୱଘୋଷଙ୍କ 'ବୁଦ୍ଧ ଚରିତ'ରୁ ଗ୍ରହଣ କରାଯାଇଛି । ଏଥିରେ ବୁଦ୍ଧ ହେଉଛନ୍ତି ମହାଯାନୀ ବୁଦ୍ଧ -- ହୀନଯାନୀ ନୁହନ୍ତି । ସେଇ ଗ୍ରନ୍ଥକୁ ବଙ୍ଗକବି ନବୀନଚନ୍ଦ୍ର ସେନ 'ଅମିତାଭ' ବୋଲି ଏକ କାବ୍ୟରେ ମର୍ମାନୁବାଦ କରିଛନ୍ତି । ଫକୀରମୋହନଙ୍କ 'ବୌଦ୍ଧାବତାର କାବ୍ୟ' ଦେଖିଲେ ମନେ ହୁଏ, ଏହା ସେଇ 'ଅମିତାଭ' କାବ୍ୟର ଗୋଟିଏ ବିସ୍ତୃତ ଅନୁବାଦ । ହୁଏତ ଅନ୍ୟ ଲେଖାରୁ ଫକୀର-ମୋହନ କଥଞ୍ଚିତ୍ ପ୍ରେରଣା ପାଇଥିବେ । ମାତ୍ର ମୁଖ୍ୟତଃ ଫକୀରମୋହନଙ୍କ ଲେଖାଟିକୁ 'ଅମିତାଭ' ଗ୍ରନ୍ଥର ବିସ୍ତାରିତ ଅନୁବାଦ ବୋଲି କହିଲେ ଅତିରଞ୍ଜିତ ହେବ ନାଇ । ଏ ଦୃଷ୍ଟିରେ ଦେଖିଲେ, ଫକୀରମୋହନଙ୍କ ମୁଖବନ୍ଧଟି ସମୀଚୀନ ହୋଇଛି ।

ଏ ଗଲା ମୋଟାମୋଟି ପ୍ରକାଶିତ ଫକୀରମୋହନଙ୍କ ଗ୍ରନ୍ଥାବଳୀ । ଏହାଛଡ଼ା ଫକୀରମୋହନଙ୍କର ବହୁ ଲେଖା ରହିଯାଇଛି । ଓଡ଼ିଆ ସାହିତ୍ୟର ପ୍ରଚୁରପାଇଁ ଫକୀରମୋହନଙ୍କର ଯେ ବ୍ୟାକୁଳତା ଥିଲା, ଏ ସବୁ ସେଇ ବ୍ୟାକୁଳତାର ପ୍ରତୀକ । ସେ ପ୍ରଥମେ ରାମାୟଣ ଓ ମହାଭାରତ ଅନୁବାଦ କରିବା ଆରମ୍ଭ କରିଥିଲେ । ବ୍ୟାସଙ୍କ ମହାଭାରତ ଓ ବାଲ୍ମୀକି ରାମାୟଣର ତଦ୍ରୂପ ଅନୁବାଦ ନ ଥିଲା । ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାରେ ତାଙ୍କର ଏ ଆଦି ଉଦ୍ୟମ । ଏ ଅନୁବାଦରେ ସାରଳା ଓ କୃଷ୍ଣସିଂହଙ୍କ ଉଶୃଙ୍ଖଳତା କିମ୍ବା ବଳରାମ ଦାସଙ୍କ ଗଭୀର ଭାବସମ୍ମିଶ୍ରଣ ଓ ଅନୁବାଦର ଉଦାରତା ନ ଥିଲା । ଫକୀରମୋହନଙ୍କ ସେ ମହାଭାରତ ବା ରାମାୟଣ ଏବେ ମିଳୁ ନାଇ । ତଥାପି କୁହାଯାଇପାରେ, ଓଡ଼ିଆ ସାହିତ୍ୟରେ ସେପରି ଆଉ କେହି କରିବାର ଉଦ୍ୟମ କରି ନାହାନ୍ତି ।

ଆଉ ଗୋଟିଏ ଜଣାଶୁଣା କଥା, ଫକୀରମୋହନଙ୍କ ଲିଖିତ ଭାରତବର୍ଷର ଇତିହାସ । ଏହା ଦୁଇଖଣ୍ଡରେ ପ୍ରକାଶିତ ହୋଇଥିଲା । ଅଳ୍ପ ସମୟ ପରେ ଓଡ଼ିଶାର ପାଠ୍ୟପୁସ୍ତକକୁ ଆଦର୍ଶ କରି ତାଳଚେରର ରାଜାଙ୍କ ନାମ ଦେଇ ହେଉ ବା ଆଉ କାହାର ନାମ ଦେଇ ହେଉ, ଓଡ଼ିଆରେ ଯେଉଁ ଭାରତ-ବର୍ଷର ଇତିହାସ ଲିଖିତ ହୋଇଥିଲା, ଏହା ସେ ଶ୍ରେଣୀର ନୁହେ । ଏଥିରେ ଛତେ ଛତେ ଫକୀରମୋହନ

ସ୍ୱରୂପରେ ବିଦ୍ୟମାନ ଥିଲେ । ଏବେ ମଧ୍ୟ ମନେ ଅଛି, ସେଥିରେ ଲେଖାଥିଲା, ବାବରଙ୍କ ମଦପିଆ ଗିନାରେ ପାରସିକ ଭାଷାରେ ଯାହା ଲେଖାଥିଲା, ତାହାର ଓଡ଼ିଆ ଅନୁବାଦ ହେଉଛି :—

"ପ୍ରାଚୀନ ସୁରା ଜହ୍ନରାତି
ଆଉର ନବୀନା ଯୁବତୀ
ଜଗତେ ସୁଖ ଏ ମିଳିବ
ବାବର ଏହା ନ ଛାଡ଼ିବ ।"

ମାମୁଦଙ୍କ ଚରିତ୍ର ଦେଖାଇବା ପାଇଁ ସେଥିରେ ଲେଖାଥିଲା, "ଦିନେ ଜଣେ ବୁଢ଼ୀ ବହୁଦୂରରୁ ଆସି ମାମୁଦଙ୍କୁ କହିଲା, 'ଦସ୍ୟୁମାନେ ମୋ ବିଧବାର ପୁଅକୁ ମାରି ଦେଇ ସବୁ ଧନରତ୍ନ ଲୁଟିକରି ନେଇଗଲେ ।' ମାମୁଦ ଅତି ଦୁଃଖିତ ହୋଇ ବୁଢ଼ୀ ସଙ୍ଗେ ସମବେଦନା ଜଣାଇ କହିଲେ, 'ମା, ଏତେ ଦୂରର କଥା, ମୁଁ କ'ଣ କରିବି ? ପାଖ ହୋଇଥିଲେ, ମୁଁ ଖୁବ୍ ସହଜରେ ଦସ୍ୟୁମାନଙ୍କ ଦମନ କରି ପାରିଥାନ୍ତି ।' ବୁଢ଼ୀ ସଙ୍ଗେ ସଙ୍ଗେ ଉତ୍ତର ଦେଲା, 'ତେବେ ସୁଲତାନ ଯେତିକ ରାଜ୍ୟ ସମ୍ଭାଳି ପାରିବେ, ସେତିକି ରାଜ୍ୟ ରଖନ୍ତୁ । ଏତେ ଦୂର ଦୂରାନ୍ତରର ରାଜ୍ୟ ରଖି ଲାଭ କ'ଣ ?' ମାମୁଦ ବିସ୍ମିତ ହେଲାପରି ଦେଖାଗଲେ, ସଙ୍ଗେ ସଙ୍ଗେ ସେ ଦୂର ଦେଶରେ ଦସ୍ୟୁଦମନ ପାଇଁ ସୈନ୍ୟସାମନ୍ତ ପଠାଇଲେ ।"

ମାମୁଦ ଓ କବି ଫେରଦୁସି, ଦୁହିଙ୍କ ସମ୍ବନ୍ଧରେ ଘଟିଥିବା ଆଉ ଗୋଟିଏ ଘଟଣା । ଫକୀରମୋହନଙ୍କ ଇତିହାସରୁ ମନେ ହେଉଛି, ମାମୁଦ ଜବାବ କରିଥିଲେ, ଗୋଟିଏ ଶ୍ଳୋକ ପାଇଁ ଗୋଟିଏ ସ୍ୱର୍ଣ୍ଣମୁଦ୍ରା ଦେବେ । ଫେରଦୁସି 'ସାହାନାମା' ମହାକାବ୍ୟ ଲେଖି ମାମୁଦଙ୍କ ପାଖକୁ ଆସିଲେ । ସେଥିରେ ମନେହୁଏ ୧୦ ସହସ୍ରାଧିକ ଶ୍ଳୋକ ଥିଲା । ମାମୁଦ ଟିକିଏ ବିସ୍ମିତ ହୋଇ କହିଲେ, ସେ ଶ୍ଳୋକ ପ୍ରତି ଗୋଟିଏ ରୌପ୍ୟମୁଦ୍ରା ପୁରସ୍କାର ଦେବେ । ତାହା ଶୁଣି ଫେରଦୁସି ନିର୍ବାକ ହୋଇ ରାଜସଭା ତ୍ୟାଗ କରି ନିଜ ଘରକୁ ଚାଲିଗଲେ । ଗଲାବେଳେ ଯାହା ଲେଖିଗଲେ, ତାହାର ଓଡ଼ିଆରେ ଅନୁବାଦ ଫକୀରମୋହନ ଦେଇଥିଲେ—

"ହୋଇଥିଲେ ରାଜେଶ୍ୱର ନୃପଙ୍କ କୁମର
ମଣି ମୁକୁଟରେ ଶିର ଶୋହିଥାନ୍ତା ମୋର ।"

ଏ ଗୀତରେ ଗୋଟିଏ ଗୂଢ଼ ସଙ୍କେତ ଥିଲା । ତାହା ହେଉଛି, ଏଇ ରାଜ୍ୟେଶ୍ୱର ମାମୁଦ ନୃପଙ୍କକୁମର ଅର୍ଥାତ୍ ରଜାଙ୍କ ପୁତ୍ର ନ ହୋଇ, ଥିଲେ ସାବକ୍ତଗୀନ ନାମକ ଆବିସିନିଆ ଉପକୂଳର ଜଣେ କ୍ରୀତଦାସଙ୍କ କୁମର । ମାମୁଦ ଏଥିରେ ଅନୁତାପଦଗ୍ଧ ହୋଇ ନିଜ ଅଙ୍ଗୀକୃତ ଅର୍ଥଠାରୁ ଅଧିକ ଅର୍ଥ ପଠାଇ ଦେଇଥିଲେ । କିନ୍ତୁ ଯେଉଁ ଓଟମାନେ ସେଇ ଅର୍ଥ ନେଇ ଯାଇଥିଲେ, ସେମାନେ ପହଞ୍ଚିଲା ବେଳକୁ ଫେରଦୁସିଙ୍କ ଶବ କବରକୁ ଯିବାପାଇଁ ଦରୁ ବାହାରୁଥିଲା ।

ଏ ସବୁ ମନୋଗ୍ରାହୀ-ଚିତ୍ର-ସମ୍ବଳିତ ଇତିହାସ ସେତେବେଳେ କିଛିକାଳ ବାଧ୍ୟ ହେବାରୁ ପାଠ୍ୟ-ପୁସ୍ତକ କରା ହୋଇଥିଲା । ତା ପରେ ପାଠ୍ୟପୁସ୍ତକର ଗତି ବଦଳି ଗଲା । ଏପରିକି ଫକୀରମୋହନଙ୍କ ଇତିହାସ ପାଠ୍ୟପୁସ୍ତକ ହେବା ଦୂରେଥାଉ, ତାଙ୍କ 'ଛମାଣ ଆଠଗୁଣ୍ଠ' ପର୍ଯ୍ୟନ୍ତ କୌଣସି ଗ୍ରନ୍ଥ ସ୍କୁଲରେ ପ୍ରାଇଜ ଲାଇବ୍ରେରୀ ପାଇଁ ମଧ୍ୟ ମନୋନୀତ ହୋଇ ନ ଥିଲା । ବୋଲିବା ବାହୁଲ୍ୟ, ସାହିତ୍ୟରେ ରୁଚି ଓ ପବିତ୍ରତା ନାମରେ ଏଇ ସମୟଠାରୁ ଯେଉଁ କୃତ୍ରିମ ନୂତନ ଯୁଗ ଆରମ୍ଭ ହୋଇଥିଲା, ତାହାର ପ୍ରଧାନ ଅବଲମ୍ବନ ଥିଲେ, ଶିକ୍ଷା ବିଭାଗ ଓ ଅଧସ୍ତନ ଶିକ୍ଷକମାନେ । ଫକୀରମୋହନଙ୍କ ଭଳି ମୌଳିକ-ପ୍ରତିଭା-ସମ୍ପନ୍ନ ବ୍ୟକ୍ତିମାନେ ବାଧ୍ୟହୋଇ ସ୍ଥିତି ହରାଇଥିଲେ । କେବଳ ନୁହେଁ; ବରଂ ଏଇମାନେ କ୍ରମେ ଆଗନ୍ତୁକ ନୂତନତାରେ ଅଜ୍ଞାତ ଭାବରେ ଆତ୍ମବଳି ଦେବାକୁ ବାଧ୍ୟ ହୋଇଥିଲେ ।

ଏକଥା ଉଦାହରଣ ସହ ବହୁତ ବୁଝାଇ କୁହାଯାଇଛି । ମୋଟାମୋଟି ଦେଖିଲେ, ଖ୍ରୀଷ୍ଟୀୟ ବିଂଶ ଶତାବ୍ଦୀର ପ୍ରାରମ୍ଭିକ ବର୍ଷମାନଙ୍କ ପୂର୍ବରୁ ଓ ପରେ ପ୍ରାୟଶଃ ଫକୀରମୋହନଙ୍କ ଲେଖନଶୈଳୀ ବେଶ ଅନୁଧାବନ କରାଯାଇପାରେ । 'ଛମାଣ ଆଠଗୁଣ୍ଠ' ବିଂଶ ଶତାବ୍ଦୀପରର ନୁହେ । ଏହା 'ଉତ୍କଳ ସାହିତ୍ୟ'ରେ ବାହାରି ଯାଇଥିଲା । ସେଇପରି ଅନ୍ୟାନ୍ୟ ବହୁ କାବ୍ୟ, ଗଳ୍ପ ଓ ଉପନ୍ୟାସ ସମ୍ବନ୍ଧରେ କୁହାଯାଇପାରେ । ପାଠକମାନଙ୍କ ବିଶେଷ ଜାଣିବାପାଇଁ ୧୯୨୭ରେ ପ୍ରକାଶିତ ଫକୀରମୋହନ ସେନାପତିଙ୍କ 'ଆତ୍ମ ଜୀବନ ଚରିତ' ଗ୍ରନ୍ଥ ଶେଷରେ ତାଙ୍କ ପୁତ୍ର ମୋହିନୀମୋହନ ଯେଉଁ ତାଲିକାଟି ସଂଗ୍ରହ କରି ପ୍ରକାଶିତ କରିଚନ୍ତି, ତାହା ଉଦ୍ଧାର କରି ଦିଆଗଲା—

| ଗ୍ରନ୍ଥରନାମ ଓ ପରିଚୟ | ସଂସ୍କରଣ | ଯେଉଁ ପ୍ରେସରେ ମୁଦ୍ରିତ | ଯେଉଁ ତାରିଖରେ ପ୍ରକାଶିତ |
|---|---|---|---|
| ୧ । ଜୀବନ ଚରିତ (ଅନୁବାଦ) | ୧ମ | ବେପ୍‌ଟିଷ୍ଟ ମିସନ ପ୍ରେସ, କଲିକତା | ୧୮୬୭ |
| ୨ । ଭାରତବର୍ଷର ଇତିହାସ | | | |
| ପ୍ରଥମ ଭାଗ | ୧ମ | ବାଲେଶ୍ୱର ଉତ୍କଳ ପ୍ରେସ | ୧୮୬୯ |
| ଦ୍ୱିତୀୟ ଭାଗ | ୧ମ | ,, | ୧୮୭୦ |
| ୩ । ଅଙ୍କମାଳା | ୨ୟ | ,, | ୧୮୭୦ |
| ୪ । ରାମାୟଣ (ପଦ୍ୟାନୁବାଦ) | | | |
| ବାଲକାଣ୍ଡ | ୨ୟ | ଦେଙ୍କ ଉତ୍କଳ ପ୍ରେସ, ବାଲେଶ୍ୱର | ୧୮୮୪ |
| ଅଯୋଧ୍ୟାକାଣ୍ଡ | ୨ୟ | ,, | ୧୮୮୪ |
| ଆରଣ୍ୟକାଣ୍ଡ | ୧ମ | ,, | ୧୮୮୩ |
| କିଷ୍କିନ୍ଧାକାଣ୍ଡ | ୧ମ | ,, | ୧୮୮୫ |
| ସୁନ୍ଦରକାଣ୍ଡ | ୧ମ | ,, | ୧୮୮୭ |
| ଲଙ୍କାକାଣ୍ଡ | ୧ମ | ,, | ୧୮୯୦ |
| ଉତ୍ତରକାଣ୍ଡ | ୧ମ | ,, | ୧୮୯୫ |

| | | | |
|---|---|---|---|
| ୫ । ମହାଭାରତ (ପଦ୍ୟାନୁବାଦ) | | | |
| ଆଦିପର୍ବ | ୧ମ | ଉତ୍କଳ ପ୍ରିଣ୍ଟିଂକମ୍ପାନୀଙ୍କ ପ୍ରେସ, ବାଲେଶ୍ୱର | ୧୮୮୭ |
| ସଭାପର୍ବ | ୧ମ | ,, | ୧୮୮୭ |
| ବନପର୍ବ | ୧ମ | ଅରୁଣୋଦୟ ପ୍ରେସ, କଟକ | ୧୯୦୪ |
| ବିରାଟ ପର୍ବ | ୧ମ | ମର୍ଦ୍ଦରାଜ ପ୍ରେସ, ରମ୍ଭା | ୧୯୦୫ |
| ଅନ୍ୟାନ୍ୟ ପର୍ବ —ଅପ୍ରକାଶିତ | | | |
| ୬ । ଶ୍ରୀମଦ୍‌ଭଗବଦ୍ ଗୀତା ( ପଦ୍ୟାନୁବାଦ ) | ୧ମ | ଉତ୍କଳ ପ୍ରିଣ୍ଟିଂକମ୍ପାନୀଙ୍କ ପ୍ରେସ, ବାଲେଶ୍ୱର | ୧୮୮୭ |
| ୭ । ଉତ୍କଳ ଭ୍ରମଣ ( କାବ୍ୟ ) | ୧ମ | ଆନନ୍ଦପୁର ପ୍ରେସ, କେଉଁଝର | ୧୮୯୨ |
| ୮ । ପୁଷ୍ପମାଳା ( କାବ୍ୟ ) | ୧ମ | କଟକ ପ୍ରିଣ୍ଟିଂକମ୍ପାନୀଙ୍କ ପ୍ରେସ | ୧୮୯୪ |
| ୯ । ଉପହାର ( କାବ୍ୟ ) | ୧ମ | ରାୟ ପ୍ରେସ, କଟକ | ୧୮୯୫ |
| ୧୦ । ଛମାଣ ଆଠଗୁଣ୍ଠ (ଉପନ୍ୟାସ) | ୧ମ | ଉତ୍କଳ ସାହିତ୍ୟ ପ୍ରେସ, କଟକ | ୧୯୦୨ |
| ୧୧ । ଖିଲ ହରିବଂଶ (ପଦ୍ୟାନୁବାଦ) | ୧ମ | ,, | ୧୯୦୨ |
| ୧୨ । ଉପନିଷଦ୍ ସଂଗ୍ରହ (ପଦ୍ୟାନୁବାଦ) | ୧ମ | ,, | ୧୯୦୫ |
| ୧୩ । ଅବସରବାସରେ ( କାବ୍ୟ ) | ୧ମ | କଟକ ପ୍ରିଣ୍ଟିଂକମ୍ପାନୀଙ୍କ ପ୍ରେସ | ୧୯୦୮ |
| ୧୪ । ବୌଦ୍ଧାବତାର କାବ୍ୟ | ୧ମ | ଦେଙ୍କ ଉତ୍କଳ ପ୍ରେସ, ବାଲେଶ୍ୱର | ୧୯୦୯ |
| ୧୫ । ପୁନର୍ମୂଷିକୋଽଭବ (ଉପନ୍ୟାସ) | ୧ମ | ମୁକୁର ପ୍ରେସ, କଟକ | ୧୯୦୯ |
| ୧୬ । ପୂଜାଫୁଲ ( କାବ୍ୟ ) | ୧ମ | କଲିକତା ଉତ୍କଳ ପ୍ରେସ | ୧୯୧୨ |
| ୧୭ । ପ୍ରାର୍ଥନା ( ସଙ୍ଗୀତ ) | ୪ର୍ଥ | ସାମନ୍ତ ପ୍ରେସ, ବାଲେଶ୍ୱର | ୧୯୧୨ |
| ୧୮ । ଧୂଳି ( କାବ୍ୟ ) | ୧ମ | ମୁକୁର ପ୍ରେସ, କଟକ | ୧୯୧୨ ନଭେମ୍ବର ୨୦ ତାରିଖ |
| ୧୯ । ମାମୁଁ ( ଉପନ୍ୟାସ ) | ୧ମ | ଉତ୍କଳ ସାହିତ୍ୟ ପ୍ରେସ, କଟକ | ୧୯୧୩ ସେପ୍ଟେମ୍ବର |
| ୨୦ । ଗଣ୍ଡିପୁଅ ଅନନ୍ତା | ୧ମ | ମୁକୁର ପ୍ରେସ, କଟକ | ୧୯୧୩ |
| ୨୧ । ଲଛମା ( ଉପନ୍ୟାସ ) | ୧ମ | ,, | ୧୯୧୪ ଏପ୍ରିଲ ୩୦ ତାରିଖ |
| ୨୨ । ବ୍ରାହ୍ମଣାନାଂ ସନ୍ଧ୍ୟା ପଦ୍ଧତି | ୧ମ | ଉତ୍କଳ ସାହିତ୍ୟ ପ୍ରେସ, କଟକ | ୧୯୧୪ |
| ୨୩ । ପ୍ରାୟଶ୍ଚିତ୍ତ ( ଉପନ୍ୟାସ ) | ୧ମ | ,, | ୧୯୧୫ ସେପ୍ଟେମ୍ବର ୧୦ ତାରିଖ |
| ୨୪ । ସମବାୟ ଋଣ ସମିତି ପ୍ରସଙ୍ଗ ( ପଦ୍ୟାନୁବାଦ ) | ୧ମ | ,, | ୧୯୧୬ ମାର୍ଚ୍ଚ ୭ ତାରିଖ |

୨୫ । ଛାନ୍ଦୋଗ୍ୟ ଉପନିଷଦ ( କାବ୍ୟ ) ୧ମ ଉତ୍କଳ ସାହିତ୍ୟ ପ୍ରେସ, କଟକ ୧୯୧୬
ଜୁନ୍ ୨୧ ତାରିଖ

୨୬ । ଗଳ୍ପ ସ୍ୱଳ୍ପ ୧ମ ,, ୧୯୧୭
ଅକ୍ଟୋବର ୧୮ ତାରିଖ

୨୭ । ଆତ୍ମ-ଜୀବନ ଚରିତ ୧ମ ଶ୍ରୀ ରାଧାନାଥ କୋ-ଅପରେଟିଭ୍
ପ୍ରେସ, କଟକ ୧୯୨୭

ତୁଳନା ପାଇଁ - ଫକୀରମୋହନଙ୍କ ଜନ୍ମ—ଜାନୁଆରି, ୧୮୪୩; ମୃତ୍ୟୁ ଜୁନ୍, ୧୯୧୮ । ରାଧାନାଥଙ୍କ ଜନ୍ମ—ସେପ୍ଟେମ୍ବର, ୧୮୪୮; ମୃତ୍ୟୁ—ଏପ୍ରିଲ ୧୯୦୮ । ମଧୁସୂଦନ ରାଓଙ୍କ ଜନ୍ମ—ଜାନୁଆରି, ୧୮୫୩; ମୃତ୍ୟୁ -- ଡିସେମ୍ବର ୧୯୧୨ ।

'ଅବସର ବାସରେ' ହେଉଚି ଫକୀରମୋହନଙ୍କ ଭିନ୍ନ ଭିନ୍ନ ସମୟରେ ଲିଖିତ କବିତାମାନଙ୍କର ସଂଗ୍ରହ । ଏଥିରେ ହୃଦୟସ୍ପର୍ଶୀ କବିତାର ସଂଖ୍ୟା ବଡ଼ ବେଶି ନୁହେଁ । ତଥାପି 'ହାଟବାହୁଡ଼ା', ବୋଲି ଯେଉଁ କବିତାଟି ଫକୀରମୋହନ ଲେଖିଚନ୍ତି, ସେଥିରେ ଗ୍ରାହକମାନଙ୍କ ପାଖେ ତଥା ପ୍ରକାଶକମାନଙ୍କ ପାଖେ ତାଙ୍କ ନିଜର ଓ ତାଙ୍କଭଳି ଲେଖକମାନଙ୍କର କି ଦୁର୍ଗତି, ତାହା ବେଶ୍ ବୁଝି ପଡ଼ୁଚି । ମୋଟ କଥା, ଓଡ଼ିଶାରେ ଏଇ ସମୟରେ ମୌଳିକ ପ୍ରତିଭାର ଯେଉଁ ବିକାଶ କାଳଗତିରେ ସ୍ୱତଃସ୍ଫୂର୍ତ୍ତ ହୋଇ ଉଠୁଥିଲା, ତହିଁରେ ଘୋର ବାଧା ପଡ଼ୁଥିଲା ଓ ନାନା କାରଣରୁ ତାହାର ସ୍ରୋତ ଗୋଟିଏ କଳ୍ପିତ ଖାଲରେ ଗତି କରୁଥିଲା, ଏହା ବୁଝାଇ କହିବା ଦରକାର ନାହିଁ । ଅବଶ୍ୟ ଏହାର ଗୋଟିଏ କାରଣ ହୋଇପାରେ "ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହଁ" ବୋଲି କଲିକତାରୁ ବାହାରିଥିବା ମହା ଉଦ୍ୟମ । ସେଥିରେ ଫକୀରମୋହନ ନିଜେ କହିଚନ୍ତି, ସେ ମର୍ମାନ୍ତିକ ପୀଡ଼ା ଭୋଗ କରିଥିଲେ । କୌଣସି ମତେ ନିଜ ଭାଷା ଓ ସାହିତ୍ୟକୁ ଅନ୍ୟ ଭାଷା ଓ ସାହିତ୍ୟର ସମକକ୍ଷ କରି ଦେଖାଇବା ପାଇଁ ସେ ଆନ୍ତରିକ ଉଦ୍ୟମରେ ପ୍ରବୃତ୍ତ ହୋଇଥିଲେ । ଅନ୍ୟମାନଙ୍କର ଏ ଉଦ୍ୟମ ନଥିଲା, ଫଳରେ ଫକୀରମୋହନ ନିଜ ଭାଷା ଓ ସାହିତ୍ୟକୁ ଟେକି ଦେଖାଇବାର ଯେ କୌଣସି ଉଦ୍ୟମରେ ଆତ୍ମଦାନ କରିଥିଲେ ।

ଆଉ ଗୋଟିଏ ପ୍ରଧାନ କାରଣ, ପାରମ୍ପରିକ । ଏହା ସୂଚନାରେ ଟିକିଏ ଦେଖାଇଦେବା ଉଚିତ । ଏ ଆଜିର କଥା ନୁହେଁ । ପୁରୁଷୋତ୍ତମ ପୁରୀ ବା ପୁରୀଧାମ ହେଲେ ଓଡ଼ିଶା । ଭାଷା ଯାହାହେଉ, ଏହାର ସାହିତ୍ୟ ବଡ଼ ବିସ୍ତୀର୍ଣ୍ଣ ଓ ବଡ଼ ସ୍ୱାଭାବିକ । ସ୍ୱୟଂ ଗୀତାକାର ଏଇ ପୁରୀଧାମର ପ୍ରସିଦ୍ଧି ଓ ଏଇ ସ୍ଥାନର ଜାତୀୟ ସାହିତ୍ୟ ଯାହା ଅନୁଭବ କରିଥିଲେ, ତାହା ଅନନ୍ୟସାଧାରଣ । ଆଉ କଥା ଛାଡ଼ି ଦେଲେ ମଧ୍ୟ ସ୍ପଷ୍ଟ ଯେ କେହି ଦେଖିପାରନ୍ତି, ୧୫ଶ ଅଧ୍ୟାୟରେ ୧୮ଶ ଶ୍ଳୋକରେ ଭଗବାନ କହିଚନ୍ତି:—

'ଅତୋଽହଂ ଲୋକେ ବେଦେ ଚ
ପ୍ରଥିତଃ ପୁରୁଷୋତ୍ତମଃ"

ଅର୍ଥାତ୍, ଅତଏବ ମୁଁ ଲୋକରେ ଓ ବେଦରେ ପୁରୁଷୋତ୍ତମ ବୋଲି ବିଖ୍ୟାତ । ଲୋକରେ ଅର୍ଥ ଏଠାରେ ଜଗତରେ ଉପାସ୍ୟ ପୁରୁଷରୂପେ ପ୍ରତିଷ୍ଠିତ । ପୁରୁଷୋତ୍ତମ କ୍ଷେତ୍ର ବା ପୁରୁଷୋତ୍ତମ ପୁରୀ ଛଡ଼ା

ଏଠାରେ ଅନ୍ୟ କୌଣସି ସ୍ଥାନକୁ ଲକ୍ଷ୍ୟ କରାଯାଇ ନାହିଁ । ଏ ସାହିତ୍ୟ କେତେ ପ୍ରାଚୀନ, ତାହା କେବଳ ଅନୁମାନ ଉପରେ ଛାଡ଼ି ଦିଆଗଲା । ଏଥିରେ ପୁଣି କି ପ୍ରାକୃତ କେତେ କାର୍ଯ୍ୟ କରୁଥିଲା, ତାହା କହିବାର ସାଧନ ନାହିଁ ସତ; କିନ୍ତୁ ଲୋକରେ ପ୍ରାକୃତର ପ୍ରଭାବ ଯେତେ ଏହାର ପ୍ରତିଷ୍ଠା ଯେ ଦୃଢ଼ ହୋଇଥିଲା, ଏହା କହିବାରେ ଅତିରଞ୍ଜନର କିଛି ନାହିଁ । ଏଇଠାରୁ ଦୁଇଟି ବିକାଶର ଧାରା ସ୍ପଷ୍ଟ ଦେଖିବାକୁ ମିଳେ । ଗୋଟିଏ ହେଉଛି ପୁରାଣର ଇନ୍ଦ୍ରଦ୍ୟୁମ୍ନ । ସେ ଆସି ଶବରର ବା ଉତ୍କଳର ସ୍ମାରକ ଦେବତା ନୀଳମାଧବଙ୍କୁ ବୈଦିକ ବିଷ୍ଣୁରେ ପରିଣତ କଲେ । ଏ ବିଷ୍ଣୁ ସେତେବେଳେ ବୃନ୍ଦାବନର କୃଷ୍ଣ ହେବା ଦୂରେଥାଉ, କୃଷ୍ଣ ବି ନୁହନ୍ତି । ସେଇଠାରୁ ପ୍ରାକୃତରେ ବାରମ୍ବାର ସଂସ୍କୃତର ସ୍ପଷ୍ଟ ଆଘାତ । ଭୌମମାନଙ୍କର ଲେଖା ଓ ଗଙ୍ଗମାନଙ୍କ ସଂଗୀତ ଓ ଛନ୍ଦଚର୍ଚ୍ଚା ଏଇଠାରେ ଉଲ୍ଲେଖଯୋଗ୍ୟ । ଏଇମାନଙ୍କ ପ୍ରଭାବରେ ଓଡ଼ିଶାର ପ୍ରାକୃତ ଦେବତା ଯେପରି ବୈଦିକ ଦେବତାରେ ପରିଣତ ହେଲେ, ସେଇପରି ଓଡ଼ିଆର ପରଂପରା ସ୍ରୋତ କ୍ରମେ ବୈଦିକ ଓ ଭକ୍ତି ସ୍ରୋତରେ ପରିଣତ ହେଲା ।

ଅନ୍ୟ ଦିଗରେ ମହାଯାନର ଶୂନ୍ୟବାଦ । ଜଗନ୍ନାଥଙ୍କ ଉପରେ ଉଡ୍ଡୀୟାନ-ତନ୍ତ୍ର-ଧର୍ମର ଏ ଆକ୍ରମଣ ଖ୍ରୀଷ୍ଟ ଅଷ୍ଟମ ଶତାବ୍ଦୀର ଅଦ୍ୱୟବଜ୍ର ଓ ଇନ୍ଦ୍ରଭୂତିଙ୍କଠାରୁ ସ୍ପଷ୍ଟ । ଏଥିରେ ଗୋଟିଏ ସାହିତ୍ୟ ପ୍ରକାଶ ପାଇଛି । ତାହା ସ୍ୱର୍ଗୀୟ ହରପ୍ରସାଦ ଶାସ୍ତ୍ରୀଙ୍କ ପ୍ରକାଶିତ 'ନେପାଳର ବୌଦ୍ଧଗାନ ଓ ଦୋହାଁ' । ଏଠାରେ ପ୍ରାକୃତ ଉପରେ ସଂସ୍କୃତର ଆକ୍ରମଣ ଆହୁରି ସ୍ପଷ୍ଟ । ଏ ଗାନରୁ ଜଣାଯାଏ, ଏହା ଉଡ୍ଡୀୟାନ ଧର୍ମର ଧର୍ମ ଭାଷା ତଥା ପ୍ରାକୃତ ଭାଷା ହେଲେ ମଧ୍ୟ ଏଠାରେ ଯଥାର୍ଥ ପ୍ରାକୃତର ସତ୍ତା ନାହିଁ । ଅଧିକାଂଶ ସ୍ଥଳରେ ମୂଳ ସଂସ୍କୃତକୁ ପ୍ରାକୃତରେ ପରିଣତ କରି ଏ ଭାଷା ଲେଖା ହୋଇଛି ବୋଲି ମନେ ହୁଏ । ଏଇଥିରେ ପୁଣି ଆସିଲା, ଗୌଡ଼ୀୟ ବୈଷ୍ଣବ । ଏଥିରେ ଧର୍ମ ଭାଷା ଉଡ୍ଡୀୟାନ ପ୍ରାକୃତ ନ ହୋଇ ହେଲା ବଙ୍ଗଳାର ତାତ୍କାଳିକ ଭାଷା । ମୋଟାମୋଟି ଏହାକୁ ଚୈତନ୍ୟଙ୍କ ସମସାମୟିକ ଭାଷା ବୋଲି କହିଲେ ହୁଏ । ଓଡ଼ିଆର ଯଥାର୍ଥ ପ୍ରାକୃତ ଉପରେ ଏହା ଗୋଟିଏ ନୂତନ ଆକ୍ରମଣ । ସାରଳାଦାସଙ୍କ ବେଳେ ଓଡ଼ିଆର ଯେ ସ୍ୱତନ୍ତ୍ର ଭାଷା ଓ ପରମ୍ପରା ବାହାରିଥିଲା, ଚୈତନ୍ୟଙ୍କ କାଳଠାରୁ ମଧ୍ୟ, ରାଧାନାଥଙ୍କ କାଳ ପର୍ଯ୍ୟନ୍ତ ଯେଉଁ ଆକ୍ରମଣ ଆସିଲା, ସେଥିରେ ସେ ପରମ୍ପରା ଓ ସ୍ୱାତନ୍ତ୍ର୍ୟ ଲୁପ୍ତ ହେଲା ବୋଲି କହିଲେ ହୁଏ । ଏହାର ମଧ୍ୟରେ ହେଉଛନ୍ତି, ଫକୀରମୋହନ । ଏକ ଦିଗରେ ଗଙ୍ଗମାନଙ୍କ ଦ୍ୱାରା ପ୍ରବର୍ତ୍ତିତ କର୍ଣ୍ଣାଟୀ ସଂଗୀତ ଉପରେ ପ୍ରତିଷ୍ଠିତ ଓଡ଼ିଆ ଛନ୍ଦ ଓ ସେଇ ସୂତ୍ରରେ ଭଞ୍ଜୀୟ କାବ୍ୟକଳା । ଏହା ଯଥାର୍ଥରେ ଓଡ଼ିଆ ପ୍ରାକୃତ ନୁହେଁ, କି ଓଡ଼ିଶାର ଶୁଦ୍ଧ ପରମ୍ପରା ଏଥିରେ ନାହିଁ । ଅନ୍ୟ ଦିଗରେ ଉଡ୍ଡୀୟାନ ପରମ୍ପରା ଓ ଭାଷା ଉପରେ ଗୌଡ଼ୀୟ ଭାଷା ଓ ପରମ୍ପରାର ସ୍ତର । ଏ ଦୁହିଙ୍କ ଭିତରେ ଯଥାର୍ଥ ଓଡ଼ିଆ ଫକୀରମୋହନଙ୍କ ପ୍ରାଣ ପ୍ରତିଷ୍ଠା ହେଲେହେଁ, ଏ ପ୍ରାଣପ୍ରତିଷ୍ଠାରେ ତାଙ୍କର ଯଥାର୍ଥ ଆତ୍ମପ୍ରତ୍ୟୟ ହଠାତ୍ କ୍ଷୀଣ ହେବାର ପରିସ୍ଥିତି ଜାଗ୍ରତ ହୋଇଥିଲା । ଫକୀରମୋହନଙ୍କ ମୌଳିକ ପ୍ରତିଭା ଓ ତାହାର ସ୍ୱାଭାବିକ ପ୍ରଗତିରେ ଏଇ ପରିସ୍ଥିତିର ପ୍ରକାଶ ସ୍ପଷ୍ଟ । ଏତିକମାତ୍ର ସୂଚନାରେ ଦେଖାଇ ଦେବା ପାଇଁ ପ୍ରୟାସ କରି ଅନ୍ୟାନ୍ୟ ଅନେକ କଥା ସଙ୍ଗେ ମୋହିନୀମୋହନଙ୍କ ସଙ୍କଳିତ ପୁସ୍ତକ ତାଲିକାଟି ପର୍ଯ୍ୟନ୍ତ ପ୍ରକାଶିତ କରିଦିଆଗଲା । ପାଠକମାନେ କ୍ଷମା କରିବେ ।

କୁମାର ପୂର୍ଣ୍ଣିମା
୧୯ । ୧୦ । ୧୯୫୬
ବଙ୍ଗାଳିସାହି, କଟକ

ନୀଳକଂଠ ଦାସ

# ଦୁଇପଦ

ବ୍ୟାସକବି ଫକୀରମୋହନଙ୍କ ଗ୍ରନ୍ଥାବଳୀ ପ୍ରକାଶନର ଭାର ଗ୍ରହଣ କରିବା ଏକ ଜଟିଳ ସମସ୍ୟା କହିଲେ ଅତ୍ୟୁକ୍ତି ହେବ ନାହିଁ । ବ୍ୟାସକବିଙ୍କ ତିରୋଧାନ ହେବାର ୮୯ ବର୍ଷ ହୋଇଗଲାଣି । ଇତିମଧ୍ୟରେ ନାନା ପରିବର୍ତ୍ତନ ଦେଇ ତାଙ୍କର ରଚନାବଳୀ ଗତି କରିଛି । ତଥାପି ଯଥାସାଧ୍ୟ ଚେଷ୍ଟା କରି ଓ ବହୁ ଶ୍ରମରେ ତାଙ୍କର ମୂଳ ଲେଖାଗୁଡ଼ିକୁ ସଂଗ୍ରହ କରିବାକୁ ଚେଷ୍ଟା କରାଯାଇଛି । ଅବଶ୍ୟ ଏହା ସ୍ୱୀକାର୍ଯ୍ୟ ଯେ, ସମସ୍ତ ଚେଷ୍ଟାସତ୍ତ୍ୱେ କବିଙ୍କର କେତୋଟି କ୍ଷୁଦ୍ର ରଚନା ଆମ୍ଭମାନଙ୍କର ହସ୍ତଗତ ହୋଇ ପାରିଲା ନାହିଁ । ଦୀର୍ଘ ଏକବର୍ଷ ଚେଷ୍ଟାକରି, କେତେକ ସାହିତ୍ୟିକ ବନ୍ଧୁଙ୍କ ନିକଟକୁ ପତ୍ର ଲେଖି ଏବଂ ପରିଶେଷରେ ସମ୍ବାଦପତ୍ର ମାଧ୍ୟମରେ ସେହି ରଚନାଗୁଡ଼ିକର ସୁଲଭତା ନିମନ୍ତେ ବିଜ୍ଞପ୍ତି ଦେଇ ମଧ୍ୟ କୌଣସି ସୂତ୍ରରୁ ସଂଗ୍ରହ କରାଯାଇ ପାରିଲା ନାହିଁ । ତାହାଛଡ଼ା କବିଙ୍କ ପ୍ରଣୀତ ରାମାୟଣ, ମହାଭାରତ, ଗୀତା, ହରିବଂଶ ଇତ୍ୟାଦି କେତେକ ଗ୍ରନ୍ଥ ଏଥିରେ ସ୍ଥାନ ପାଇ ନାହିଁ । ସହୃଦୟ ସୁଧୀ ପାଠକବୃନ୍ଦ ଏ ଦିଗରେ ସାହାଯ୍ୟ କଲେ ଶଗ୍ରୋପକୃତ ହେବା ସଙ୍ଗେ ସଙ୍ଗେ ବ୍ୟାସକବିଙ୍କ ରଚନାବଳୀ ପୂର୍ଣ୍ଣରୂପରେ, ପାଠକମାନଙ୍କୁ ଅର୍ପଣ କରିବାକୁ ସମର୍ଥ ହେବୁଁ ବୋଲି ଆଶାକରୁଁ ।

ଗ୍ରନ୍ଥାବଳୀର ପ୍ରକାଶନ ନିମନ୍ତେ ଶ୍ରୀମତୀ ହିରଣ୍‌ପ୍ରଭା ସେନାପତି ସ୍ୱୀକୃତି ପ୍ରଦାନ କରିଥିବାରୁ ତାଙ୍କୁ ବିଶେଷ ଧନ୍ୟବାଦ ଅର୍ପଣ କରୁଛୁଁ ।

ବ୍ୟାସକବିଙ୍କର ବହୁ ପ୍ରବନ୍ଧ ଓ କବିତା ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଥିଲା । ବହୁ ଶ୍ରମରେ ତନ୍ମଧ୍ୟରୁ କେତେକ ସଂଗ୍ରହ କରି ଏହି ଗ୍ରନ୍ଥାବଳୀର ପରିଶିଷ୍ଟରେ ସ୍ଥାନ ଦେଇଛୁଁ ।

ଉତ୍କଳର ପ୍ରବୀଣ ବାଣୀସାଧକ ଡକ୍ଟର ନୀଳକଣ୍ଠ ଦାସ ତାଙ୍କର ବହୁମୂଲ୍ୟ ସମୟ ଦେଇ ଗ୍ରନ୍ଥାବଳୀର ଉପୋଦ୍‌ଘାତ ଲେଖିଥିବାରୁ ତାଙ୍କ ନିକଟରେ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛୁଁ ।

ଉତ୍କଳର ବିଶିଷ୍ଟ ଜନପ୍ରିୟ ନେତା ଡକ୍ଟର ହରେକୃଷ୍ଣ ମହତାବ ତାଙ୍କର ମୂଲ୍ୟବାନ୍ ସମୟ ଦେଇ ଏହି ଗ୍ରନ୍ଥାବଳୀ ପ୍ରକାଶନର ଶୁଭେଚ୍ଛା ପ୍ରଦାନ କରିଥିବାରୁ ତାଙ୍କ ନିକଟରେ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛୁଁ ।

ଗ୍ରନ୍ଥାବଳୀ ପ୍ରକାଶନ ଏକ ଜଟିଳ ସମସ୍ୟା । ଏହି ସମସ୍ୟାର ସମାଧାନ ନିମନ୍ତେ ସର୍ବପ୍ରଥମେ ଅଧ୍ୟାପକ ଶ୍ରୀ ଗୌରୀକୁମାର ବ୍ରହ୍ମା ଓ କବି ଶ୍ରୀ ରାଧାମୋହନ ଗଡ଼ନାୟକ ଯେଉଁ ପରାମର୍ଶ ଓ ଉତ୍ସାହ ଦେଇଛନ୍ତି, ସେଥିନିମନ୍ତେ ବନ୍ଧୁଦ୍ୱୟଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛୁଁ । ବ୍ୟାସକବିଙ୍କ ରଚିତ ମୌଳିକ ରଚନାବଳୀ ପାଇବାରେ ଅଧ୍ୟାପକ ଶ୍ରୀ ନଟବର ସାମନ୍ତରାୟଙ୍କ ଉପାଦେୟ ସାହାଯ୍ୟ ଓ ସହାନୁଭୂତି ନିମିତ୍ତ ଅଶେଷ ଧନ୍ୟବାଦ । ଏତଦ୍‌ବ୍ୟତୀତ ଅଧ୍ୟାପକ ଶ୍ରୀ ଜାନକୀବଲ୍ଲଭ ମହାନ୍ତି, ଅଧ୍ୟାପକ ଶ୍ରୀ ବନମାଳୀ ମିଶ୍ର, ଐତିହାସିକ ଶ୍ରୀ କେଦାରନାଥ ମହାପାତ୍ର, ପଣ୍ଡିତ ଶ୍ରୀ ରଘୁନାଥ ମିଶ୍ର, ଶ୍ରୀ ରବିନାରାୟଣ ମିଶ୍ର, ଶ୍ରୀ ସୁନ୍ଦନ କର, ଡକ୍ଟର କୁଞ୍ଜବିହାରୀ ଦାଶ, ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ, ଅଧ୍ୟାପକ ଶ୍ରୀ ଭୋଳାନାଥ ମିଶ୍ର ପ୍ରମୁଖ ବନ୍ଧୁଗଣ ରଚନାବଳୀ ସଂଗ୍ରହରେ ଯଥୋଚିତ ସାହାଯ୍ୟ କରିଥିବାରୁ ସାଧୁବାଦ ଅର୍ପଣ କରୁଛୁଁ ।

ପରିଶେଷରେ ଏତିକିମାତ୍ର କହିଲେ ବୋଧହୁଏ ଯଥେଷ୍ଟ ହେବ ଯେ, ଓଡ଼ିଆ ସାହିତ୍ୟର ଏକ ବିଶେଷ ଅଭାବ ଦୂରୀକରଣ ନିମନ୍ତେ ଏହି ପ୍ରୟାସ କରାଯାଇଅଛି । ଶତ ଚେଷ୍ଟାସତ୍ତ୍ୱେ ଏଥିରେ ମୁଦ୍ରଣଗତ କିମ୍ବା ଅନ୍ୟାନ୍ୟ ପ୍ରମାଦ ନାହିଁ ବୋଲି କହିବାକୁ ସାହସ କରୁନାହୁଁ । ସହୃଦୟ ସାହିତ୍ୟିକ ବନ୍ଧୁଗଣ ଓ ପାଠକ ପାଠିକାବୃନ୍ଦ ଆମର ମହନୀୟ ଲକ୍ଷ୍ୟ ଦୃଷ୍ଟିରୁ ନିଜର ସ୍ୱଭାବସୁଲଭ ଉଦାରତା ଗୁଣରେ ପ୍ରମାଦାଦି ମାର୍ଜନା କରିବେ ବୋଲି ଆଶାକରୁଁ ।

ଶ୍ରୀପଞ୍ଚମୀ
ତା ୪ । ୨ । ୧୯୫୭ } **ଅନନ୍ତ ମିଶ୍ର**

# ଆଉଥରେ ଦୁଇପଦ

ଯୁଗସ୍ରଷ୍ଟା ବ୍ୟାସକବି ଫକୀରମୋହନ ସେନାପତିଙ୍କ ଗ୍ରନ୍ଥାବଳୀର ପ୍ରଥମ ସଂସ୍କରଣ ୧୯୫୭ ମସିହାରେ ପ୍ରକାଶ ଲାଭକରିଥିଲା । ସେତେବେଳେ ଫକୀରମୋହନଙ୍କର କେତେକ ଲେଖା ଆମର ହସ୍ତଗତ ହୋଇ ପାରି ନ ଥିବାରୁ ସେଗୁଡ଼ିକ ଗ୍ରନ୍ଥାବଳୀରେ ସ୍ଥାନ ପାଇ ନ ଥିଲା । ଇତିମଧ୍ୟରେ ବିଭିନ୍ନ ପତ୍ରପତ୍ରିକାରୁ କେତେକ ଲେଖା ସଂଗୃହୀତ ହୋଇ ଗ୍ରନ୍ଥାବଳୀର ଦ୍ୱିତୀୟ ସଂସ୍କରଣରେ ସନ୍ନିବେଶିତ ହୋଇଛି । ଅନ୍ୟାନ୍ୟ କେତେକ ପ୍ରବନ୍ଧ ଓ କବିତା ଏ ପର୍ଯ୍ୟନ୍ତ ଆମର ହସ୍ତଗତ ହୋଇ ପାରି ନାହିଁ । ଭବିଷ୍ୟତରେ ସେଗୁଡ଼ିକ ମିଳିଲେ ଗ୍ରନ୍ଥାବଳୀର ପରବର୍ତ୍ତୀ ସଂସ୍କରଣରେ ସ୍ଥାନ ପାଇବ । ଉକ୍ତ ଲେଖାଗୁଡ଼ିକ ସଂଗ୍ରହ କରିବା ନିମନ୍ତେ ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟ ବିହିତ ପରାମର୍ଶ ଦେଇଥିବାରୁ ତାଙ୍କୁ ଧନ୍ୟବାଦ ଜଣାଉଛି ।

ବ୍ୟାସକବି ଫକୀରମୋହନଙ୍କ ଆତ୍ମ-ଜୀବନ ଚରିତ ୧୯୧୮ ରୁ ୧୯୨୦ ମଧ୍ୟରେ ଉତ୍କଳ-ସାହିତ୍ୟ ପତ୍ରିକାର ବିଭିନ୍ନ ସଂଖ୍ୟାରେ ଏବଂ ୧୯୧୭ ରେ ସତ୍ୟବାଦୀର ଗୋଟିଏ ସଂଖ୍ୟାରେ ପ୍ରକାଶ ପାଇଥିଲା । ଫକୀରମୋହନଙ୍କର ଉକ୍ତ ଆତ୍ମ-ଜୀବନ ଚରିତ ତାଙ୍କ ପୁତ୍ର ମୋହିନୀମୋହନ ସେନାପତିଙ୍କ ଦ୍ୱାରା ସଂଶୋଧିତ ହୋଇ ୧୯୨୭ ମସିହାରେ ପ୍ରଥମେ ପୁସ୍ତକ ଆକାରରେ ପ୍ରକାଶିତ ହେଲା । ଗ୍ରନ୍ଥାବଳୀର ପ୍ରଥମ ସଂସ୍କରଣରେ ସଂଶୋଧିତ ଆତ୍ମ-ଜୀବନଚରିତ ସ୍ଥାନ ପାଇଥିଲା । ଇତିମଧ୍ୟରେ ଉତ୍କଳ-ସାହିତ୍ୟ ପତ୍ରିକାରୁ ଫକୀରମୋହନଙ୍କ ମୂଳ ଆତ୍ମ-ଜୀବନ ଚରିତ ଅଧ୍ୟାପକ ଶ୍ରୀଯୁକ୍ତ ଶ୍ରୀନିବାସ ମିଶ୍ରଙ୍କ ଦ୍ୱାରା ବହୁଶ୍ରମରେ ସଂଗୃହୀତ ହୋଇ ଗ୍ରନ୍ଥାବଳୀର ଏହି ସଂସ୍କରଣରେ ସନ୍ନିବେଶିତ ହୋଇଛି । ଏତଦ୍‌ଭିନ୍ନ କେତେକ ପ୍ରବନ୍ଧ ଓ କବିତା ମଧ୍ୟ ଅଧ୍ୟାପକ ମିଶ୍ର ସଂଗ୍ରହ କରିଥିବାରୁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ଫକୀରମୋହନ ଗ୍ରନ୍ଥାବଳୀର ପ୍ରଥମ ସଂସ୍କରଣ ପ୍ରକାଶିତ ହେବାର ଛଅବର୍ଷ ପରେ ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଲା । ଏହି ସଂସ୍କରଣର କଳେବର ବୃଦ୍ଧି ପାଇବାରୁ ପାଠକମାନଙ୍କ ସୁବିଧା ନିମନ୍ତେ ଗ୍ରନ୍ଥାବଳୀକୁ ପ୍ରଥମ ଓ ଦ୍ୱିତୀୟ ଖଣ୍ଡରେ ଦୁଇଟି ସ୍ୱତନ୍ତ୍ର ଗ୍ରନ୍ଥ ଆକାରରେ ପ୍ରକାଶ କରାଯାଇଛି । ଗ୍ରନ୍ଥାବଳୀର ପ୍ରଥମ ଖଣ୍ଡରେ

ଫକୀରମୋହନ ସେନାପତିଙ୍କ ଆତ୍ମ-ଜୀବନ ଚରିତ ସହ ତାଙ୍କର କାବ୍ୟ କବିତା ଏବଂ ଦ୍ୱିତୀୟ ଖଣ୍ଡରେ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ଇତ୍ୟାଦି ସ୍ଥାନ ପାଇଛି । ଲେଖିବା ବାହୁଲ୍ୟ ଯେ, ଗ୍ରନ୍ଥାବଳୀର ପ୍ରଥମ ସଂସ୍କରଣ ଓ ଦ୍ୱିତୀୟ ସଂସ୍କରଣ ପ୍ରକାଶନ ସମୟର ବ୍ୟବଧାନ ମଧ୍ୟରେ ପୁସ୍ତକ ପ୍ରକାଶନ ଉପଯୋଗୀ ସମସ୍ତ ଉପକରଣର ମୂଲ୍ୟ ବହୁ ପରିମାଣରେ ବୃଦ୍ଧି ପାଇଛି । ତେଣୁ ଗ୍ରନ୍ଥାବଳୀର ମୂଲ୍ୟ ତଦନୁରୂପ ବୃଦ୍ଧି କରିବାକୁ ବାଧ୍ୟ ହୋଇଛୁ ।

ଯେ କୌଣସି ଦେଶର ସଭ୍ୟତା ଓ ସଂସ୍କୃତି ସେ ଦେଶର ସାହିତ୍ୟ ଯୋଗୁ ବିକାଶ ଲାଭ କରିଥାଏ । ଆମର ପ୍ରତିବେଶୀ ଭାଷା ଓ ସାହିତ୍ୟ ବିପୁଳ ଅଗ୍ରଗତି କରୁଥିବାବେଳେ ପ୍ରକାଶକ ଭାବରେ ନିଜର ଭାଷା ଓ ସାହିତ୍ୟର ଅଭିବୃଦ୍ଧି ନିମନ୍ତେ ବ୍ରତୀ ହୋଇ ଉକ୍ତ ଅନୁଷ୍ଠାନ ୧୯୫୭ ମସିହାରେ **ଫକୀରମୋହନ ଗ୍ରନ୍ଥାବଳୀ,** ୧୯୬୦ରୁ ୧୯୬୩ ମସିହା ମଧ୍ୟରେ **ଗୋଦାବରୀଶ-ଗ୍ରନ୍ଥାବଳୀ** ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଖଣ୍ଡ ଏବଂ **ମଧୁସୂଦନ ଗ୍ରନ୍ଥାବଳୀ** ପରିବେଷଣ କରିଛି । ନିକଟ ଭବିଷ୍ୟତରେ ଅନ୍ୟାନ୍ୟ ଗ୍ରନ୍ଥାବଳୀ ସହିତ କେତେକ ଉପାଦେୟ ପୁସ୍ତକ ପ୍ରକାଶନର ସୁବ୍ୟବସ୍ଥା କରାଯାଉଛି । ଦେଶର ସାହିତ୍ୟିକଙ୍କ ସାହାଯ୍ୟ ଓ ସହାନୁଭୂତି ବିପୁଳ ପରିମାଣରେ ପାଇବାକୁ ଆଶା ଓ ଆକାଂକ୍ଷା ରହିଛି ।

ଉକ୍ତ ଗ୍ରନ୍ଥାବଳୀକୁ ନିର୍ଭୁଲଭାବରେ ଛାପି ଆଧୁନିକ ରୁଚିସମ୍ପନ୍ନ ଭାବରେ ସର୍ବାଙ୍ଗ ସୁନ୍ଦର କରିବାକୁ ବହୁ ଯତ୍ନ କରାଯାଇଛି । ଏ ସବୁ ସତ୍ତ୍ୱେ କୌଣସି ତ୍ରୁଟି ପରିଲକ୍ଷିତ ହେଲେ ପାଠକମାନେ ଉଦାର ଚିତ୍ତରେ କ୍ଷମାଦେବେ ବୋଲି ଆଶାକରେ ।

କଟକ
ଗାନ୍ଧୀଜୟନ୍ତୀ
୨-୧୦-୧୯୬୩ } ଅନନ୍ତ ମିଶ୍ର

# ଗ୍ରନ୍ଥସୂଚୀ



ବ୍ୟାସକବି ଫକୀର ମୋହନ ସେନାପତି
ଶ୍ରୀ ମୋହିନୀ ମୋହନ ସେନାପତି

## ସୂଚନା

ଆଜକୁ ଗ୍ଡ଼ର ପାଞ୍ଚ ବର୍ଷ ଗତ ହେଲ, ମୋହର କେତେଜଣ ମିତ୍ର ଏବଂ ସୁପ୍ରତିଷ୍ଠିତ ଶିକ୍ଷିତ ଯୁବକ ମୋହର ଆତ୍ମ-ଜୀବନ-କାହାଣୀ ଲେଖିବା ସକାଶ ମୋତେ ଅନୁରୋଧ କରି ଆସୁଅଛନ୍ତି । ସେମାନଙ୍କ ଅନୁରୋଧ ଅତିକ୍ରମ କରିବା ମୋ ପକ୍ଷରେ ସହଜସାଧ୍ୟ ନୁହେଁ । ଓଡ଼ିଆଭାଷାରେ ଜୀବନଚରିତର ବିଶେଷ ଅଭାବ । ମାତ୍ର ମୋ ଭୁଛ ଜୀବନରେ ଜୀବନଚରିତର ଉପଯୋଗୀ ସେହିପରି ଗୁରୁତର ଉପାଦାନର ମଧ୍ୟ ନିତାନ୍ତ ଅଭାବ । ବିଶେଷରେ ଯେପରି ସଜାଇ ଲେଖିଲେ, ପାଠକ ମହାଶୟଗଣ ଆଗ୍ରହ ସହିତ ପୁସ୍ତକ ପାଠରେ ପ୍ରବୃତ୍ତ ହେବେ, ସେପରି ଶକ୍ତି ମଧ୍ୟ ମୋର ନାହିଁ; ତେବେ ଏହି ଦୁଃସାହସିକ କାର୍ଯ୍ୟରେ ପ୍ରବୃତ୍ତ ହେବାର ଗୋଟିଏ ମାତ୍ର କୈଫିୟତ୍ ଅଛି । ଅଦୂର ଭବିଷ୍ୟତରେ ଅନେକଗୁଡ଼ିଏ ଆତ୍ମଜୀବନୀ-ଲେଖକ ଆମ୍ଭମାନଙ୍କର ଏହି ପବିତ୍ର ଜନ୍ମଭୂମିରେ ବିଚରଣ କରିବେ, ଏହା ମୋହର ଧ୍ରୁବ ବିଶ୍ୱାସ । ମୁଁ ସେମାନଙ୍କ ପାଇଁ ମୂଳଦୁଆ ମାତ୍ର ପ୍ରସ୍ତୁତ କରୁଅଛି ।

**ଲେଖକ**

# ସୂଚନା

'ସେନାପତିଙ୍କ ଆତ୍ମଚରିତ' ଫକୀରମୋହନ ସେନାପତିଙ୍କ ପୂର୍ବ-ପ୍ରକାଶିତ 'ଆତ୍ମଜୀବନ ଚରିତ'ର ମୂଳରୂପ । ବ୍ୟାସକବିଙ୍କର ଆତ୍ମଜୀବନୀ ତାଙ୍କ ଦେହାବସାନ ସଙ୍ଗେ ସଙ୍ଗେ ୧୯୧୮, ୧୯ ଓ ୨୦ ଖ୍ରୀଷ୍ଟାବ୍ଦରେ ତିନିବର୍ଷ କାଳ 'ଉତ୍କଳ ସାହିତ୍ୟ' ପତ୍ରିକାର ଦ୍ୱାବିଂଶ, ତ୍ରୟୋବିଂଶ ଓ ଚତୁର୍ବିଂଶ ଭାଗର ମୋଟ ତିରିଶ ଗୋଟି ସଂଖ୍ୟାରେ 'ସେନାପତିଙ୍କ ଆତ୍ମ-ଚରିତ' ନାମରେ ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା । ଫକୀରମୋହନଙ୍କ ମୃତ୍ୟୁର ନଅବର୍ଷ ପରେ ୧୯୨୭ ଖ୍ରୀଷ୍ଟାବ୍ଦରେ କବିଙ୍କ ପୁତ୍ର ମୋହିନୀମୋହନ ସେନାପତି ପୁସ୍ତକ ଆକାରରେ ଆତ୍ମଜୀବନ ଚରିତ ପ୍ରକାଶ କଲେ । ଏହି ପୁସ୍ତକରେ ପତ୍ରିକା-ପ୍ରକାଶିତ ମୂଳ ରଚନାବଳୀ ବହୁକ୍ଷେତ୍ରରେ ସଂଶୋଧିତ ସଂକ୍ଷିପ୍ତ ଓ ପରିବର୍ଜିତ ହୋଇ ପ୍ରକାଶିତ ହେଲା । ସେ ସମୟରୁ ଆଜି ପର୍ଯ୍ୟନ୍ତ ଏହି ଖଣ୍ଡିତ ଆତ୍ମଚରିତକୁ ଫକୀରମୋହନଙ୍କ ମୂଳ ଆତ୍ମଚରିତରୂପେ ପାଠକମଣ୍ଡଳୀ ପାଠ କରି ଆସିଛନ୍ତି ।

ନିମକ ମାହାଲ କଚେରିରେ ଫକୀର ମୋହନଙ୍କ କାର୍ଯ୍ୟ ଶିକ୍ଷାଠାରୁ କେନ୍ଦୁଝରର ପ୍ରଜାବିଦ୍ରୋହରେ ଧରଣୀଧର ପ୍ରମୁଖ ମେଳିଆମାନଙ୍କୁ କାରାଦଣ୍ଡ ଆଦେଶ ପର୍ଯ୍ୟନ୍ତ ଘଟଣାସମୂହ 'ଉତ୍କଳସାହିତ୍ୟ'ରେ ପ୍ରକାଶିତ ହୋଇଥିଲେ ସୁଦ୍ଧା ଏଗୁଡ଼ିକ କାଳାନୁକ୍ରମରେ ସ୍ଥାନ ଲାଭ କରି ନ ଥିଲା । ଉଦାହରଣ ସ୍ୱରୂପ 'କେନ୍ଦୁଝର ପ୍ରଜାବିଦ୍ରୋହ' ସେନାପତିଙ୍କ ଆତ୍ମଚରିତର ପ୍ରଥମ ପତ୍ରିକା ପ୍ରକାଶିତ ପରିଚ୍ଛେଦ । ପ୍ରଜାବିଦ୍ରୋହର ପର ପ୍ରକାଶିତ ପରିଚ୍ଛେଦ 'ଓଡ଼ିଶା ଦୁର୍ଭିକ୍ଷ' । ଏ ଦୃଷ୍ଟିରୁ ଫକୀରମୋହନଙ୍କ ଜୀବନର ବିବରଣୀ ଗୁଡ଼ିକ କାଳ ଅନୁକ୍ରମ ଓ ଘଟଣା ପାରମ୍ପର୍ଯ୍ୟ ଦୃଷ୍ଟିରେ ସମ୍ପାଦନା କାଳରେ ସଜ୍ଜିତ ହୋଇଅଛି । ଫଳତଃ ଫକୀରମୋହନଙ୍କ ବ୍ୟକ୍ତିତ୍ୱର ବହୁମୁଖୀ ବିକାଶର ଧାରା ନିର୍ଣ୍ଣୟ ସହଜ-ସାଧ୍ୟ ହେବ । 'ଉତ୍କଳ ସାହିତ୍ୟ'ରେ ଧାରାବାହିକ ରୂପେ ପ୍ରକାଶିତ ପରିଚ୍ଛେଦ ଗୁଡ଼ିକର ପ୍ରକାଶ କାଳ ଓ ସ୍ଥାନର ସୂଚନା ଅନ୍ୟତ୍ର ପ୍ରଦତ୍ତ ହୋଇଅଛି ।

ଆତ୍ମ-ଜୀବନଚରିତର ବଂଶଲତା, ଶୈଶବର କଥା, ବିଦ୍ୟାରମ୍ଭ ଓ ଅଖାଲ ସିଲାଇ ଶୀର୍ଷକ ପ୍ରଥମ ଚାରିଗୋଟି ପରିଚ୍ଛେଦ ସାଙ୍ଗକୁ ପ୍ରଜାବିଦ୍ରୋହ-ପର ପରିସ୍ଥିତି, ଡୋମପଡ଼ାରେ ଦ୍ୱିତୀୟ ଥର ଦେବାନୀ, କଟକରେ ଅବସ୍ଥାନ ଓ ବାଲେଶ୍ୱର ନିବାସ ନାମକ ଶେଷ ଚାରିଗୋଟି ମୋଟ ଆଠଗୋଟି ପରିଚ୍ଛେଦ ମୋହିନୀବାବୁଙ୍କ ପ୍ରକାଶିତ ପୁସ୍ତକରୁ ଅବିକଳ ଏଥିରେ ଉଦ୍ଧୃତ ହୋଇ-ଅଛି; କାରଣ ଏଗୁଡ଼ିକର ମୂଳରୂପ ଖୋଜି ପାଇବା ଅତ୍ୟନ୍ତ ଦୁଷ୍କର । ଅନ୍ୟ ପରିଚ୍ଛେଦ ପରି ଏଗୁଡ଼ିକ ଉପରେ ପୂର୍ବ ପ୍ରକାଶକ ସଂଶୋଧନୀ-ଲେଖନୀ ଚଳାଇ-ଥିବା ଅନୁମାନ କରାଯାଉ ଥିଲେ ସୁଦ୍ଧା ଆଜି ସେଗୁଡ଼ିକୁ ଗ୍ରହଣ କରିନେବା ଛଡ଼ା ମୂଳ ଅଂଶୋଦ୍ଧାରର ପନ୍ଥା ନାହିଁ । ସତ୍ୟବାଦୀ—୧୩୨୪ (୧୯୧୭) ଦ୍ୱିତୀୟଭାଗ ୮ମ—୧୨ଶ ସଂଖ୍ୟାରେ 'ବୃଦ୍ଧ ଶ୍ରୀ ଫକୀରମୋହନଙ୍କ ଆତ୍ମ ଜୀବନୀରୁ ଏକ ଅଧ୍ୟାୟ' ନାମରେ ପ୍ରକାଶିତ ଅଂଶଟି ୧୮୬୯-୭୦ ଖ୍ରୀଷ୍ଟାବ୍ଦ କାଳର ଘଟଣା । ଏହି ଅଂଶଟି ପ୍ରଥମେ 'ଫକୀରମୋହନ' ଶୀର୍ଷକ ପୁସ୍ତକରେ ଆଲୋଚକ ଶ୍ରୀ ସୁରେନ୍ଦ୍ର ମହାନ୍ତି 'ସତ୍ୟବାଦୀ' ପତ୍ରିକାରୁ ଉଦ୍ଧାର କରି ପ୍ରକାଶ କରିଥିଲେ ଏବଂ 'ଫକୀରମୋହନ ଗ୍ରନ୍ଥାବଳୀ' ପ୍ରଥମ ସଂସ୍କରଣରେ 'ଆତ୍ମଜୀବନ ଚରିତ'ର ଶେଷରେ ମଧ୍ୟ ଏହା ପରିଶିଷ୍ଟରୂପେ ସଂଯୋଜିତ ହୋଇଥିଲା ।

ବର୍ତ୍ତମାନ ତାହା 'ଆତ୍ମ-ଜୀବନ ଚରିତ'ର ଯଥାଯଥ ସ୍ଥାନରେ ସନ୍ନିବେଶିତ ଏବଂ ବିଷୟବସ୍ତୁର ସୁସ୍ପଷ୍ଟ ସୂଚନା ନିମନ୍ତେ ଏହାର ନାମ 'ଓଡ଼ିଆ ଭାଷାର ସଙ୍କଟ' ରଖାଯାଇଛି ।

ସଂସିତ "ଆତ୍ମଚରିତର" ଆକାର ପୂର୍ବ ପ୍ରକାଶିତ ପୁସ୍ତକର ଦ୍ୱିଗୁଣରୁ ଅଧିକ । ବାଲେଶ୍ୱରରେ ପ୍ରେସ କୋମ୍ପାନୀ ସ୍ଥାପନର ଭୂମିକା ରୂପେ ସମକାଳୀନ ବଙ୍ଗସାହିତ୍ୟର ବିକାଶ ଦର୍ଶନରେ ମାତୃଭାଷା ଓ ସାହିତ୍ୟର ଉନ୍ନତି ସାଧନ ନିମନ୍ତେ ଫକୀରମୋହନଙ୍କ ବ୍ୟାକୁଳତା; ବିଭିନ୍ନ ପରିଚ୍ଛେଦ ମଧ୍ୟରେ ବିକ୍ଷିପ୍ତ ଭାବେ ରହିଥିବା ସେ କାଳର ଶିକ୍ଷା, ସଂସ୍କାର, ଚଳଣି, ଆର୍ଥିକସ୍ଥିତି, ପୋଷାକ ପରିଚ୍ଛଦ, ଧର୍ମବିଶ୍ୱାସ, ଶାସନବ୍ୟବସ୍ଥା, ସାମାଜିକ ମୂଲ୍ୟବୋଧ, ଭାଷା ଓ ସାହିତ୍ୟ ସମ୍ବନ୍ଧୀୟ ବହୁ ମୂଲ୍ୟବାନ୍ ଏବଂ ଚିତ୍ତାକର୍ଷକ ତଥ୍ୟ ମୂଳରଚନାର ଉଦ୍ଧାର ହେତୁ ପାଠକମାନଙ୍କ ସମକ୍ଷରେ ଉପସ୍ଥାପନ କରିବା ସମ୍ଭବ ହୋଇଅଛି । ଏ ବିଗ୍ରହରେ 'ସମାଜର ଶାନ୍ତିମନ୍ତ ପରିବର୍ତ୍ତନ' ଏବଂ 'ସାଧାରଣ ଶିକ୍ଷା ଓ ଉଚ୍ଚଶିକ୍ଷା' ଶୀର୍ଷକ ଦୁଇଟି ନୂତନ ଅଧ୍ୟାୟ ପାଠକମାନେ ପାଠକରି ପାରନ୍ତି । ପୂର୍ବପ୍ରକାଶିତ ଆତ୍ମଜୀବନୀର 'ସେ କାଳର ନାନାକଥା' ପରିଚ୍ଛେଦଟି ମୂଳ ଆତ୍ମଚରିତର 'ମଫସଲରେ ସ୍କୁଲ ସ୍ଥାପନ ଚେଷ୍ଟା' 'ଇଂରାଜୀ ଶିଖିବାର ଇଚ୍ଛା ଓ ଶିକ୍ଷାରମ୍ଭ', 'ସ୍କୁଲକମିଟିର ମେମ୍ବରି' ଏବଂ 'ବ୍ରାହ୍ମଧର୍ମ ଅବଲମ୍ବନ' ଏହି ଚାରୋଟି ପରିଚ୍ଛେଦର ଏକ ବିକୃତ ସମବାୟ ଓ ବହୁ ସଂକ୍ଷେପୀକୃତ ରୂପ । ଊଣା ଅଧିକେ ବିଭିନ୍ନ ପରିଚ୍ଛେଦରେ ଏହି ଅପପ୍ରୟାସର ଚିହ୍ନ ନିହିତ । ବିଭିନ୍ନ ସାହିତ୍ୟ ଅଧ୍ୟୟନରେ ଫକୀର-ମୋହନଙ୍କର ଅନୁରାଗ, ବଙ୍ଗ ଭାଷାରେ 'ସୋମପ୍ରକାଶ' ପତ୍ରିକାରେ ରଚନା ପ୍ରକାଶ ରୂପୀ କୃତିତ୍ୱ ସଙ୍ଗକୁ ମଦ୍ୟପାନ ରୂପୀ ଜୀବନର ଦୁର୍ବଳତା ସ୍ୱୀକାର ପ୍ରଭୃତି ଜୀବନର ନୂତନ ଘଟଣାର ଚିତ୍ର ପାଠକ ଏଥିରେ ପାଇବାକୁ ସମର୍ଥ ହେବେ । ଦଣ୍ଡପଲ୍ଲୀ ଦେବାନୀ ଉପଲକ୍ଷେ ଫକୀରମୋହନଙ୍କ ନୌଯାତ୍ରା ଅବସରରେ ନାଉରୀମାନଙ୍କର ଜୀବନଯାତ୍ରା ପ୍ରଣାଳୀ, କର୍ମଠତା ଓ ଆହାରାଦିର ଠିକଣାଖି ବର୍ଣ୍ଣନା ଏକାନ୍ତ ହୃଦୟଗ୍ରାହୀ ଏବଂ ମାନବ ଚରିତ୍ର ଅଧ୍ୟୟନରେ ଫକୀରମୋହନଙ୍କ ସୂକ୍ଷ୍ମଦୃଷ୍ଟିର ପରିଚାୟକ । ପୁଣି ଏହି ସମୟରେ ଅପରାହ୍ଣକାଳରେ ଅସ୍ତଗମନୋନ୍ମୁଖ ସୂର୍ଯ୍ୟଦେବଙ୍କର ବର୍ଣ୍ଣନା ଅତ୍ୟନ୍ତ ରମଣୀୟ । ଗଦ୍ୟରେ ଏ ଧରଣର କାବ୍ୟୋଚିତ ବର୍ଣ୍ଣନା ନୈପୁଣ୍ୟ ଫକୀରମୋହନଙ୍କ ମନୋରମ ଗଦ୍ୟଶୈଳୀର ପ୍ରକୃଷ୍ଟ ଦୃଷ୍ଟାନ୍ତ । କଥନଭଙ୍ଗୀରେ ରସିକତା ସଙ୍ଗକୁ ବର୍ଣ୍ଣନାରେ ତଥ୍ୟମୂଳକତା 'ଆତ୍ମଚରିତକୁ' ଅତ୍ୟନ୍ତ ସରସ କରିଅଛି ।

ଫକୀରମୋହନଙ୍କ ଆତ୍ମଚରିତ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ଏକ ମନୋରମ ଇତିହାସ । କ୍ଷୁଦ୍ର ପରିସର ମଧ୍ୟରେ ଏହି ରଚନାର ମନୋହାରିତାର ଆଲୋଚନା ବିଡ଼ମ୍ବିତ ପ୍ରୟାସ ମାତ୍ର । କେବଳ ଦୃଷ୍ଟାନ୍ତ ସ୍ୱରୂପ କେତେକ କଥାର ସୂଚନା ହିଁ ଦିଆଗଲା । ପାଠକମାନେ ସେନାପତିଙ୍କ ଆତ୍ମଚରିତ ଅଧ୍ୟୟନ କରି ପରିତୃପ୍ତ ହେବେ ବୋଲି ଆଶାକରେ ।

ସାଧାରଣତନ୍ତ୍ର ଦିବସ
୧୯୬୩



**ଶ୍ରୀ ଶ୍ରୀନିବାସ ମିଶ୍ର**
ଅଧ୍ୟାପକ, ରେଭେନ୍ସା କଲେଜ
କଟକ

# ସୂଚୀ

# ଆତ୍ମଚରିତ ସ୍ମୃତି
# ଫକୀରମୋହନଙ୍କ ଜୀବନର ଘଟଣାକାଳ

ଜନ୍ମ—୧୮୪୩ ଜାନୁଆରି ମାସ ମକରସଂକ୍ରାନ୍ତି ଦିବସ

ବିଦ୍ୟାରମ୍ଭ—୧୮୫୨

ପ୍ରଥମ ବିବାହ—୧୮୫୬

ବାରବାଟୀ ସ୍କୁଲରେ ଅଧ୍ୟୟନ ଓ ଶିକ୍ଷକ କର୍ମ—୧୮୬୨—୧୮୬୪

ବାଲେଶ୍ୱର ମିସନରି ସ୍କୁଲରେ କର୍ମ—୧୮୬୪—୧୮୭୧

ଇଂରାଜୀ ଶିଖିବାର ଇଚ୍ଛା ଓ ଶିକ୍ଷାରମ୍ଭ—୧୮୬୫—୧୮୬୬

ଓଡ଼ିଶା ଦୁର୍ଭିକ୍ଷ (ନଅଙ୍କ)—୧୮୬୬

ଠାକୁର ମା’ଙ୍କ ପରଲୋକ—୧୮୬୭

ବାଲେଶ୍ୱରରେ ପ୍ରେସ୍ ସ୍ଥାପନ—୧୮୬୮

ଦ୍ୱିତୀୟ ବିବାହ—୧୮୭୧

ନୀଳଗିରିରେ ଦେବାନୀ—୧୮୭୧—୧୮୭୫

ଡୋମପଡ଼ାରେ ଦେବାନୀ—୧୮୭୬—୧୮୭୭

ଢେଙ୍କାନାଳରେ ଆସିଷ୍ଟାଣ୍ଟ ମ୍ୟାନେଜରୀ—୧୮୭୭—୧୮୮୩

ଦଶପଲ୍ଲା ଦେବାନୀ—୧୮୮୪—୧୮୮୬

ପାଲଲହଡ଼ାରେ ଦେବାନୀ—୧୮୮୬—୧୮୮୭

କେଉଁଝରରେ ମ୍ୟାନେଜରୀ—୧୮୮୭—୧୮୯୨

କେଉଁଝର ପ୍ରଜାବିଦ୍ରୋହ—୧୮୯୧—୧୮୯୨

ଡୋମପଡ଼ାରେ ଦ୍ୱିତୀୟଥର ଦେବାନୀ—୧୮୯୪—୧୮୯୬

କଟକରେ ଅବସ୍ଥାନ—୧୮୯୬—୧୯୦୫

ବାଲେଶ୍ୱର ନିବାସ—୧୯୦୫—୧୯୧୮

ମୃତ୍ୟୁ—୧୯୧୮ ଜୁନ୍ ୧୪ ତାରିଖ ।

---

# ସେନାପତିଙ୍କ

# ଆତ୍ମ-ଜୀବନ ଚରିତ

---

## ୧

## ବଂଶଲତା

କଟକଜିଲ୍ଲା ସଦ୍‌ଡିଭିଜନ୍‌ କେନ୍ଦ୍ରାପଡ଼ା ଅନ୍ତର୍ଗତ କୁଶିଦାନାମକ ଗ୍ରାମରେ ଗୋଟିଏ କ୍ଷମତାଶାଳୀ ଖଣ୍ଡାଏତବଂଶ ଅଧୀନରେ ଗୋଟିଏ ଚୌପାଢ଼ୀ ଥିଲା । ଉତ୍କଳର ପୂର୍ବତନ ସ୍ୱାଧୀନ ମହାରାଜାଙ୍କ ଦତ୍ତ ଅନେକଗୁଡ଼ିଏ ଭୂସମ୍ପତ୍ତି ଉକ୍ତ ଖଣ୍ଡାୟତବଂଶ ସୁଦୀର୍ଘକାଳ ଯାବତ୍‌ ଭୋଗ କରି ଆସୁଥିଲେ । ଉତ୍କଳର ମହାରାଷ୍ଟ୍ର ଅଧିକାର ସମୟରେ ଉକ୍ତ ସମ୍ପତ୍ତି ଛିନ୍ନଭିନ୍ନ ହୋଇଥିବାର କଥିତ ହୁଏ ।

ମହାରାଷ୍ଟ୍ର ଅଧିକାର ସମୟରେ ଉକ୍ତ ଖଣ୍ଡାଏତ ବଂଶଧର ହନୁମଲ୍ଲ ନାମକ ଜଣେ ଯୁବକ ମହାରାଷ୍ଟ୍ର ସେନାପତି ଅଧୀନରେ ପାଇକପଦରେ ନିଯୁକ୍ତ ହୋଇ ପ୍ରଥମେ ବାଲେଶ୍ୱର ଆସିଥିଲେ । ପଠାଣ ସେନାମାନଙ୍କୁ ଆଗୁଳି ରଖିବା ନିମନ୍ତେ ଫଲବାର ଘାଟଠାରେ ଜଗୁଆଳି ହୋଇ ରହିବା ତାହାଙ୍କର କାର୍ଯ୍ୟ ଥିଲା । ସ୍ୱକାର୍ଯ୍ୟ କାର୍ଯ୍ୟର ବେତନ ସ୍ୱରୂପ ପଇଁଚାଳିଶ ବାଟୀ ଭୂମି ନିଷ୍କର ସ୍ୱରୂପ ପ୍ରାପ୍ତ ହୋଇଥିଲେ । ଦଳପତି ହନୁମଲ୍ଲଙ୍କ ଅଧୀନରେ ଅନେକ ପାଇକ ନିଯୁକ୍ତ ଥିଲେ । ସେମାନଙ୍କ ପାଇଁ ସ୍ୱତନ୍ତ୍ରରୂପେ ପାଦୁକାଳୀ ନିଷ୍କର ଭୂମି ଖଞ୍ଜା ଥିଲା । ଗତ ୧୨୫୦ ସାଲ ପ୍ରଥମ ବନ୍ଦୋବସ୍ତ ସମୟ ପର୍ଯ୍ୟନ୍ତ ପାଇକ-ବଂଶଧରମାନେ ନିର୍ବିବାଦରେ ଉକ୍ତ ଜମିମାନ ଭୋଗ ଦଖଲ କରି ଆସୁଥିଲେ । ବନ୍ଦୋବସ୍ତ ସମୟକୁ ଥୋକେ ପାଇକ ବଂଶ ବିଲୁପ୍ତ ହୋଇ ଯାଇଥିଲେ । ଯେଉଁମାନେ ସନନ୍ଦ ଦେଖାଇ ପାରିଲେ ସେମାନଙ୍କ ଜମି ବାହାଲ ରହିଲା । ସନନ୍ଦହୀନ ପାଇକମାନଙ୍କ ଦଖଲି ଜମି ନିଷ୍କିବାଜେୟାପ୍ତ ହୋଇଗଲା ।

ହନୁମଲ୍ଲଙ୍କ ମରହଟ୍ଟା ଦତ୍ତ ପଦବୀ ଥିଲା ସେନାପତି । ତାଙ୍କର ଅଯୋଗ୍ୟ ବଂଶଧରମାନେ ଆପଣା ବଂଶ ସଂଜ୍ଞା ପରିତ୍ୟାଗ କରି ଭୂମିଶୂନ୍ୟ, ସେନାଶୂନ୍ୟ ହୋଇ ସେନାପତି ପଦବୀ ଭୋଗ କରି ଆସୁଛନ୍ତି; କେବଳ ପିତୃଶ୍ରାଦ୍ଧ କିମ୍ବା ତାଦୃଶ କୌଣସି ଧର୍ମାନୁଷ୍ଠାନ ସମୟରେ ମଲ୍ଲସଂଜ୍ଞା ଉଲ୍ଲେଖ କରିଥାନ୍ତି ମାତ୍ର ।

ଏହି ବଂଶରୁ ମରହଟ୍ଟା ଦତ୍ତ-ଜାଗିର ଜମି ବିଚ୍ୟୁତି ଗୋଟିଏ ରହସ୍ୟଜନକ ଘଟଣା ଅଟେ । ମହାମାନ୍ୟ ଇଷ୍ଟଇଣ୍ଡିଆ କୋମ୍ପାନୀଙ୍କ ବାଲେଶ୍ୱର ଅଧିକାର ସମୟରେ ( ସନ ୧।୦୩ ଖ୍ରୀ: ଅ: ) ଲେଖକଙ୍କର ପିତାମହୀ କୁଚିଲା ଦେଈ ଯୁବତୀ-ବିଧବା

ଥିଲେ । କୋଳରେ ଚାରିବର୍ଷ ଓ ଦୁଇବର୍ଷ ବୟସ୍କ ଦୁଇଗୋଟି ଶିଶୁସନ୍ତାନ ।

ଠାକୁର ମା ଗଳ୍ପ କରୁଥାନ୍ତି, କୋମ୍ପାନୀ ଫୌଜ ଦକ୍ଷିଣ ଏବଂ ପୂର୍ବ ଦୁଇ ଦିଗରୁ ବାଲେଶ୍ୱରକୁ ଆସିଥିଲେ । ଫୌଜଗଣ ବାଲେଶ୍ୱର ପୂର୍ବାଞ୍ଚଳ ନଦୀ ମୁହାଣ ବଲରାମ ଗଡ଼ ନାମକ ସ୍ଥାନରେ ଉପସ୍ଥିତ ସମ୍ବାଦ ଶୁଣିବା ମାତ୍ରକେ ଗ୍ରାମବାସୀମାନେ ପ୍ରାଣଭୟରେ ଘରର ସମସ୍ତ ଦ୍ରବ୍ୟ ପରିତ୍ୟାଗ କରି କେବଳ ପରିବାରମାନଙ୍କୁ ଘେନି ବଣ ମଧ୍ୟକୁ ପଳାଇ ଯାଇଥିଲେ । ଅଳ୍ପଦିନ ମଧ୍ୟରେ ଦେଶରେ ଶାନ୍ତି ସ୍ଥାପିତ ହେଲା । କୋମ୍ପାନୀ ବାହାଦୁରଙ୍କ ଅଭୟ ଘୋଷଣା ଶୁଣି ଗ୍ରାମବାସୀମାନେ ଆପଣା ଆପଣା ଗୃହକୁ ବାହୁଡ଼ି ଅଇଲେ । ଅନେକ ଲୋକ ଏପରି ତ୍ରସ୍ତ ଭାବରେ ପଳା'ଇ ଯାଇଥିଲେ ଯେ, ଆପଣା ଘରର କପାଟଟି ମଧ୍ୟ ଆଉଜି ନେବାକୁ ସମୟ ପାଇ ନ ଥିଲେ । ଲୋକେ ଘରକୁ ବାହୁଡ଼ି ଆସି ଦେଖିଲେ, ଆପଣା ଆପଣା ବାଡ଼ିରେ ଫଳମାନ ପାଚି ପଡ଼ି ରହିଥିଲା । ସମସ୍ତେ ଆପଣା ଆପଣା ପ୍ରାଣରକ୍ଷାରେ ବ୍ୟସ୍ତ, ଦ୍ରବ୍ୟ ଚୋରି କରିବାକୁ ଚୋର କାହାନ୍ତି ?

ଲେଖକ ବାଲ୍ୟକାଳରେ ଗ୍ରାମବାସୀ ପ୍ରତ୍ୟକ୍ଷଦର୍ଶୀ ଅତି ବୃଦ୍ଧ ଲୋକମାନଙ୍କ ମୁଖରୁ ଶୁଣିଛି ଯେ, ମରହଟ୍ଟାମାନଙ୍କ ଅଧିକାର ଅବସାନ ସମୟରେ ଦେଶ ମଧ୍ୟରେ ଏପରି ଅରାଜକତା ଉପସ୍ଥିତ ହୋଇଥିଲା ଯେ, ଚୋର, ଡକାଏତ, ନାଗା ସନ୍ନ୍ୟାସୀମାନଙ୍କର ଉପଦ୍ରବରେ ସୁନା, ରୂପା ଆଉ କଂସା ପିତ୍ତଳଖଣ୍ଡି ମଧ୍ୟ ଲୋକେ ଆପଣା ଆପଣା ଘରେ ପ୍ରକାଶ୍ୟରେ ରଖିବାକୁ ସାହସ କରୁ ନ ଥିଲେ । ଲୋକସାଧାରଣ ନିତାନ୍ତ ଦରିଦ୍ର ଓ ଭୟାର୍ତ୍ତ ଥିଲେ । ସେ ସମୟ ତୁଳନାରେ ବର୍ତ୍ତମାନ ଆମ୍ଭେମାନେ ସ୍ୱର୍ଗରାଜ୍ୟରେ ବାସ କରୁଅଛୁଁ ।

ଇଷ୍ଟଇଣ୍ଡିଆ କୋମ୍ପାନୀଙ୍କ ସୁଶାସନ ଓଡ଼ିଶା ବା ବାଲେଶ୍ୱରରେ ସ୍ଥାପିତ ହେବାର କେତେକ ମାସ ଉତ୍ତାରେ, ସରକାର ବାହାଦୁର ଦେଶମଧ୍ୟରେ ଘୋଷଣା କରିଦେଲେ ଯେ, 'ମରହଟ୍ଟା ଅଧିକାର ସମୟରେ ଯାହାର ଯେପରି ବୃତ୍ତିବିଧାନ ଥିଲା, ଠିକ୍ ସେହିପରି ରଖାଯିବ, କାହାରି ସମ୍ପତ୍ତିରେ ହସ୍ତକ୍ଷେପ କରାଯିବ ନାହିଁ । ବୃତ୍ତିଧାରୀମାନେ ନିରୂପିତ ତାରିଖରେ ଆପଣା ଆପଣା ସନନ୍ଦ ସହିତ କଚେରୀରେ ହାଜର ହୋଇ, କଲେକ୍ଟର ସାହେବଙ୍କ ହୁଜୁରରେ ନାମ ଲେଖାଇ ଦେଇଯିବେ ।' ରାଜକୀୟ ଘୋଷଣାର ମର୍ମ ବୁଝି ନ ପାରି ଅଥବା ଆଶଙ୍କା ପ୍ରଯୁକ୍ତ ଅଧିକାଂଶ ବୃତ୍ତିଧାରୀ କଚେରୀରେ ହାଜର ହୋଇ ନ ଥିଲେ । ସେମାନଙ୍କୁ ହାଜର କରାଇବା ନିମନ୍ତେ ପରବାନା ଧରି କଚେରୀରୁ ପାଇକମାନେ ବାହାରିଲେ । ଗୋଟିଏ ପାଇକ ପରବାନା ଧରି ଆମ୍ଭମାନଙ୍କ ଘରଠାରେ ଉପସ୍ଥିତ ହେଲା । ସେ ସମୟରେ ଠାକୁର ମା ଅଳ୍ପବୟସ୍କା ବିଧବା । ସରକାରୀ ପାଇକକୁ ଉପସ୍ଥିତ ଦେଖି ଠାକୁର ମା ଗ୍ରାମବାସୀଙ୍କ ଶରଣାପନ୍ନ ହେଲେ । ନିର୍ବୋଧ ଗ୍ରାମବାସୀଙ୍କ ମତରେ ସ୍ଥିର ହେଲା—ମରହଟ୍ଟାତରଫ ଲୋକଙ୍କୁ ମାରିପକାଇବା ପାଇଁ କୋମ୍ପାନୀ ଡାକୁଛନ୍ତି । ଠାକୁରମା ତ୍ରସ୍ତଭାବରେ ପିଲାଯୋଡ଼ିକୁ ଘର କୋଣରେ ଶୁଆଇ, ସେମାନଙ୍କୁ ମସିଣାରେ ଘୋଡ଼ାଇ ପକାଇ କବାଟ ଫାଙ୍କରେ ଜବାବ ଦେଲେ, "ଏ ଘରେ ଅଣ୍ଡିରା ପିଲା କେହି ନାହିଁ—ଆମ୍ଭର ଜମିର ଦରକାର ନାହିଁ ।" ଉପସ୍ଥିତ ଗ୍ରାମବାସୀମାନେ ଠାକୁରମା ଉକ୍ତିକୁ ସମର୍ଥନ କରିବାରୁ, ପାଇକ ବାହୁଡ଼ିଗଲା ଏବଂ ଆମ୍ଭ ବଂଶରୁ ଜାଗିର ଜମି ବିଲୁପ୍ତ ହେଲା ।

ପୂର୍ବୋକ୍ତ ହନୁମଲ୍ଲଙ୍କ ସହିତ ମୋହର ସମ୍ପର୍କ ନିମ୍ନଲିଖିତ ବଂଶଲତାରୁ ଅନୁମିତ ହେବ ।




---

## ୨

## ଶୈଶବର କଥା

୧୮୪୩ ଖ୍ରୀଷ୍ଟାବ୍ଦର ଜାନୁୟାରି ମାସରେ ଅଥବା ସନ ୧୨୫୦ ସାଲ ମକର ସଂକ୍ରାନ୍ତି ଶୁକ୍ରବାର ଦିନ ବାଲେଶ୍ୱର ସହରର ମଲ୍ଲିକାଶପୁର ନାମକ ଗ୍ରାମରେ ମୋହର ଜନ୍ମ । ମାତାଙ୍କର ନାମ ତୁଳସୀ ଦେଈ, ପିତାଙ୍କର ନାମ ଲକ୍ଷ୍ମଣଚରଣ ସେନାପତି । ଜ୍ୟୋତିଷଗଣ ଏହିପରି ମୋହର ଜନ୍ମକୋଷ୍ଠି ପ୍ରସ୍ତୁତ କରିଅଛନ୍ତି ।




ଶୁଣିଛୁ ଜନ୍ମମାତ୍ର ମୋ' ଡେହରି କାନ ଉପର ପୁଡ଼ା ଫୁଡ଼ାଇ ଗୋଟିଏ ସୁନା ଫାଶିଆ ପିନ୍ଧାଇ ଦିଆଯାଇଥିଲା । ମୋହର ଗୋଟିଏ ବଡ଼ଭାଇ ଥିଲେ, ନାମ ଚୈତନ୍ୟଚରଣ । ମୋ ଜନ୍ମ ପୂର୍ବେ ସେ ପରଲୋକ ପ୍ରାପ୍ତ ହୋଇଥିଲେ । ଲୋକଙ୍କର ସଂସ୍କାର ଥିଲା, ବଡ଼ ପୁଅ ମରିଥିଲେ, ତାହାର ତଳ ପୁଅ ଜନ୍ମମାତ୍ର, ସେହି ପୁତ୍ରର କାନ ଫୋଡ଼ାଇ ଦେଲେ, ଯମ ତା'କୁ ଅଗ୍ରାହ୍ୟ କରି ଘେନିଯାଏ ନାହିଁ । ବାଲ୍ୟକାଳରେ ମୁଁ ଏ ପ୍ରକାର ଶତ ଶତ କାନ ଫୁଡ଼ା ଦେଖିଛୁ ।

ମୋହର ଏକବର୍ଷ ପାଞ୍ଚମାସ ବୟସ ସମୟରେ ପିତୃଦେବ ଶ୍ରୀ ଜଗନ୍ନାଥ ଦେବଙ୍କ ରଥଯାତ୍ରା ଦର୍ଶନ ସକାଶେ ପୁରୀ ଯାତ୍ରା କରିଥିଲେ, ବାହୁଡ଼ା ସମୟରେ ଭୁବନେଶ୍ୱରଠାରେ ଓଲାଉଠା ରୋଗରେ ଲୋକାନ୍ତର ପ୍ରାପ୍ତ ହେଲେ । ସଙ୍ଗୀ ଯାତ୍ରୀ ଥିଲେ ଗ୍ରାମସ୍ଥ କେତେଜଣ ଲୋକ ଓ ତାହାଙ୍କର ଜନନୀ ( ମୋ ଠାକୁରମା ) । ଠାକୁରମାଙ୍କ ପାଖରୁ ଶୁଣିଛୁ ଯେ, ଭୁବନେଶ୍ୱର ମନ୍ଦିର ସମୀପସ୍ଥ ବିନ୍ଦୁସାଗର ପୁଷ୍କରିଣୀର ପଥର ଘାଟ ଉପରେ ବାବା ପ୍ରାଣତ୍ୟାଗ କଲେ । ତାଙ୍କର ପରଲୋକ ଗମନସଂବାଦ ଶୁଣି, ଗ୍ରାମସ୍ଥ ଲୋକେ କାନ୍ଦିବାକୁ ଲାଗିଲେ । ବାପାଙ୍କର ଗୋଟିଏ ପୋଷାକୁକୁର ଥିଲା । ସେ ମଧ୍ୟ ଲୋକମାନଙ୍କ ସହିତ ମିଶି ରଡ଼ି କରିବାକୁ ଲାଗିଲା । ଲୋକମାନେ ତୁନିହେଲେ, ମାତ୍ର ସେ ନିବୃତ୍ତ ହେଲା ନାହିଁ । ବାପା ଯେଉଁ ଯେଉଁ ସ୍ଥାନକୁ ଯାଉଥିଲେ, ଗ୍ରାମରେ ଯେଉଁ ଯେଉଁ ସ୍ଥାନରେ ବସୁଥିଲେ, ସେହି ସ୍ଥାନକୁ ବାରମ୍ବାର ଯାଇ ଶୁଙ୍ଘି ଆସେ, ଆଠଦିନ ପର୍ଯ୍ୟନ୍ତ ଅନାହାରରେ ରହି ମରିଗଲା ।

ବାବାଙ୍କର ମୃତ୍ୟୁ ସମ୍ବାଦ ଶୁଣି, ମାଆ ଯେଉଁ ଶଯ୍ୟା ଗ୍ରହଣ କଲେ, ସେଥିରୁ ଆଉ ସେ ଉଠିନାହାନ୍ତି । ଚଉଦ ମାସ ପର୍ଯ୍ୟନ୍ତ ଶାରୀରିକ ଏବଂ ମାନସିକ ଘୋର ଯନ୍ତ୍ରଣା ଭୋଗକରି ସନ ୧୨୫୨ ସାଲ ଭାଦ୍ରବ ଶୁକ୍ଳ ଅଷ୍ଟମୀ ଦିବସରେ ପ୍ରାଣତ୍ୟାଗ କଲେ ।

ମୁଁ ସେହିଦିନଠାରୁ ନିତାନ୍ତ ଅସହାୟ ହେଲି । ମୋର ସମବୟସ୍କ, ସହାୟସମ୍ପନ୍ନ, ବହୁ ପରିମାଣରେ ସୁସ୍ଥ ଶରୀର, ବଳିଷ୍ଠ ଓ ସୌଭାଗ୍ୟବାନ ଅନେକ ପୁରୁଷ ପୃଥିବୀ ତ୍ୟାଗ କରି ଚାଲିଯାଇଛନ୍ତି; ଅଥଚ ମାତୃପିତୃହୀନ, ଚିରରୋଗୀ ମୁଁ ଜୀବନକାଳରେ ବିବିଧ ପ୍ରକାର ଭୟଙ୍କର ବିପଦ-ସଙ୍କୁଳ-ଅବସ୍ଥା ଅତିକ୍ରମ କରି ସମ୍ପ୍ରତି ଜରାଜୀର୍ଣ୍ଣ ଦୁର୍ବଳ ହସ୍ତରେ ମୋହର ଦୀର୍ଘଜୀବନର ଅସାର ଚରିତ ଲେଖିବାକୁ ବସିଅଛି । ଏହା କାହାର ଆଦେଶ, କାହାର ଅନୁଗ୍ରହ ଓ ସହାୟତା ? ଗୋଟିଏ କ୍ଷୁଦ୍ରତମ ଦୂର୍ବାଦଳର ସୃଷ୍ଟି ମଧ୍ୟ ଉଦ୍ଦେଶ୍ୟ ବିହୀନ ନୁହେଁ । କି ଉଦ୍ଦେଶ୍ୟ ସାଧନ ସକାଶେ ଭଗବାନ୍ ମୋତେ ଏତେକାଳ ଜୀବିତ ରଖାଇ ଅଛନ୍ତି ?

ପିତାମାତାଙ୍କ ବିୟୋଗ ଉତ୍ତାରେ, ଯେମନ୍ତ ପ୍ରଭୁଙ୍କ ଆଦେଶରେ, ପିତାମହୀ କୁଚଳା ଦେଈ ମୋତେ କୋଳକୁ ଉଠାଇ ନେଲେ । ଦେଶରେ ପ୍ରବାଦ ଅଛି —'ପାଳେ ତ ବାପର ମା, ପାଳେ ତ ମାଆର ମା ।' ମୋ ଜୀବନ ରକ୍ଷା ନିମନ୍ତେ ଠାକୁରମା ଯେତେ ଯତ୍ନ, ଯେତେ ଦାରୁଣ ଯନ୍ତ୍ରଣା ଭୋଗ କରିଛନ୍ତି, ବର୍ତ୍ତମାନ ଛାୟାରୂପେ ସେ ସବୁ କଥା ମୋ ମନରେ ଉଦିତ ହେଲେ ପ୍ରାଣ ଆକୁଳ ହୋଇ ଉଠେ । ହାୟ ! ସେ ଉପକାରର ମୁଁ କିଛିହିଁ ପ୍ରତିଦାନ କରିପାରି ନାହିଁ ।

ଜନନୀଙ୍କ ପରଲୋକ ଗମନ ଉତ୍ତାରେ ସାତ ଆଠ ବର୍ଷ ପର୍ଯ୍ୟନ୍ତ ଗ୍ରହଣୀ, ଅର୍ଶ ପ୍ରଭୃତି ଯନ୍ତ୍ରଣାଦାୟକ ରୋଗରେ ଶଯ୍ୟାଗତ ହୋଇ ପଡ଼ିଥିଲି । ଠାକୁରମା ଦିବାନିଶି ମୋ ଶଯ୍ୟାପାଖରେ ଜଗି ବସିଥାନ୍ତି । ମାସକ ଉତ୍ତାରେ ମାସ, ବର୍ଷକ ଉତ୍ତାରେ ବର୍ଷ – କେତେ କାଳ ଏହି ଭାବରେ ବହି ଯାଇଛି । ଅନିଦ୍ରା, ଅନାହାରରେ ଠାକୁରମା ସେ ସମୟରେ କେତେ ଦିବାନିଶି କାଟିଛନ୍ତି; ଯେମନ୍ତ ମୃତ୍ୟୁ ମୋହର ଗୋଟାଏ ହାତ ଏବଂ ଠାକୁରମା ଅନ୍ୟ ହାତ ଧରି ଟାଣୁଥାନ୍ତି । ଶେଷରେ ଠାକୁରମା ଜୟୀ ହେଲେ ଏବଂ ମୁଁ ନିରାମୟ ହେବାକୁ ଲାଗିଲି ।

ମୋହର ପୀଡ଼ା ସମୟରେ ଠାକୁରମା ଶଯ୍ୟାରେ ବସି କରଯୋଡ଼ି ଜଗତର ଯାବତୀୟ ଦେବ ଦେବୀଙ୍କଠାରେ ମୋହର ପ୍ରାଣ ଭିକ୍ଷା କରୁଥିଲେ । ବାଲେଶ୍ୱରରେ ଦୁଇ ପୀର ଥିଲେ । ଶେଷରେ ଠାକୁରମା ସେହି ଦୁଇ ପୀରଙ୍କୁ ଧରି ବସିଲେ । ସେମାନଙ୍କଠାରେ ସେ ମାନସିକ କଲେ, "ମୋ ପିଲା ଭଲ ହୋଇଗଲେ, ମୁଁ ତାହାକୁ ତୁମ୍ଭମାନଙ୍କର ଫକୀର ବା ଗୋଲାମ କରିଦେବି ।" ପ୍ରଥମେ ମୋହର ନାମ ରଖାଯାଇଥିଲା—ବ୍ରଜମୋହନ । ଠାକୁରମା ମୋ ନାମ ରଖିଲେ—ଫକୀର । ପୀରମାନଙ୍କ ମନୋତୁଷ୍ଟି ସକାଶେ ଠାକୁରମା ଏହି ପଠାଣିଆ ନାମ ରଖିଥିଲେ ।

ରୋଗ ଛାଡ଼ିଗଲା—ମୁଁ ବଞ୍ଚିଗଲି । ମାତ୍ର ଠାକୁରମା ସର୍ବସ୍ୱ ତ୍ୟାଗ କରି ମୋତେ ପୀରମାନଙ୍କୁ ଦେଇ-ପାରିଲେ ନାହିଁ, କେବଳ ପ୍ରତିବର୍ଷ ମହରମ ସମୟରେ ଆଠଦିନ ସକାଶେ ମୋତେ ଫକୀର କରି ଦେଉଥିଲେ । ସେହି କେତେଦିନ ମୁଁ ଫକୀର ପୋଷାକ ପିନ୍ଧି ରହିଥାଏ—ଆଣ୍ଠୁ ଯାଏଁ ଗୋଟିଏ ଜଙ୍ଘିଆ, ଦେହରେ ନାନା ରଙ୍ଗକନାରେ ତିଆରି ଗୋଟିଏ ଚପକନ୍, ମୁଣ୍ଡରେ ଫକୀରୀ ଟୋପି, କାନ୍ଧରେ ନାନାରଙ୍ଗ ମିଶ୍ରିତ ଗୋଟାଏ ଝୁଲି ଏବଂ ହାତରେ ଜଉମଡ଼ା ଲାଲରଙ୍ଗର ଗୋଟାଏ ବାଡ଼ି । ସେହି ପୋଷାକ ପିନ୍ଧି, ମୁହଁରେ ଫୁଲ-ଖଡ଼ି ବୋଳିହୋଇ ସକାଳେ, ଉପରଓଳି ଗ୍ରାମ ମଧ୍ୟରେ ଘରେ ଘରେ ଭିକ ମାଗି ବୁଲେ, ସନ୍ଧ୍ୟା ସମୟରେ ସେହି ସମସ୍ତ ଚାଉଳ ବିକ୍ରି କରି ଯେତେ ପଇସା ମିଳେ ପୀରମାନଙ୍କ ସିର୍ନି ସକାଶେ ସେ ସବୁ ପଠାଇ ଦିଆଯାଏ ।

— — —

## ୩

## ବିଦ୍ୟାରମ୍ଭ

ଚଟଶାଳୀରେ ପଢ଼ାରମ୍ଭ ସମୟକୁ ମୋହର ପ୍ରାୟ ୯ ବର୍ଷ ବୟସ ହୋଇଥିଲା । ସହର ମଧ୍ୟସ୍ଥ ପ୍ରତ୍ୟେକ ବଡ଼ ଗ୍ରାମରେ, ଗ୍ରାମ ସାନ ଥିଲେ, ଦୁଇ ତିନଟା ଗ୍ରାମରେ ଗୋଟିଏ ଗୋଟିଏ ଚଟଶାଳୀ ଥିଲା । ସଚ୍ଛଳ ଲୋକମାନଙ୍କ ଘରେ ସ୍ୱତନ୍ତ୍ରରୂପେ ଜଣେ ଜଣେ ଅବଧାନ ଥିଲେ । ଗ୍ରାମର ବାଉରି, କଣ୍ଡରା, ଅସ୍ପୃଶ୍ୟ ଜାତିର ପିଲାମାନେ ମଧ୍ୟ ଉଚ୍ଚଜାତୀୟ ପିଲାମାନଙ୍କଠାରୁ କିଛି ଦୂରରେ ବସି ଚଟାଶାଳୀରେ ପାଠ ପଢୁଥିଲେ ।

ସେ ସମୟରେ କଟକ ଜିଲ୍ଲା, ବିଶେଷତଃ କଟକ ଜିଲାସ୍ଥ ଝଙ୍କଡ଼ ପ୍ରଗଣାରୁ ଅବଧାନମାନେ ବାଲେଶ୍ୱର ଜିଲ୍ଲାକୁ ଆସୁଥିଲେ । ଚୈତ୍ର ମାସଟା ଅବଧାନ ଆମଦାନୀର ସମୟ । ବେଶଭୂଷାରୁ ଅବଧାନ କର୍ମପ୍ରାର୍ଥୀ ବୋଲି ଚିହ୍ନା ପଡ଼ନ୍ତି । ଆଣ୍ଠୁଲୁଗା ଖଣ୍ଡିଏ ପାଖାଳକରିଆ, ମୁଣ୍ଡରେ ଖଣ୍ଡେ ମଳିଆ ଗାମୁଛା, କାନ୍ଧରେ ଗୋଟିଏ ଯାଉଁଳି, ଯାଉଁଳି ଏକ ପାଖରେ ଅଧସେର ଗୁଡ଼ଳ ଫୁଟିବା ଭଳି ଖଣ୍ଡେ ପିତ୍ତଳ, ସାନ ଉଶ୍ୱାସ ଗୋଟିଏ ଲୋଟା, ଆର ପାଖରେ ଯୋଡ଼ିଏ ତିନଟା ପୋଥିର ଖେଦା ଏବଂ ଖଣ୍ଡିଏ ଆଠ କି ନ'ହାତି ପିନ୍ଧା—ଏହା ହେଲା କର୍ମପ୍ରାର୍ଥୀ ଅବଧାନର ଚିହ୍ନ । ଫଗୁଣ ଅଧାଅଧିଠାରୁ ଚୈତ୍ର ଶେଷାଶେଷି ଯାଏଁ ଅବଧାନମାନେ ଗୋହିରି ଦାଣ୍ଡରେ ବୁଲୁଥିବାର ଦେଖାଯାଉଥିଲା ।

ଅବଧାନଙ୍କ ମଧ୍ୟରେ ଅଧିକାଂଶ କରଣଜାତି, ଅଳ୍ପସଂଖ୍ୟକ ମାତ୍ର ମାଟିବଂଶ ଓଝା । ବାଲେଶ୍ୱରବାସୀ ଅବଧାନ ଗୁଡ଼ିକ ଜାତିରେ ଜ୍ୟୋତିଷ । ଅବଧାନମାନଙ୍କ ମଧ୍ୟରେ ମାଟିବଂଶ ଓଝାମାନେ ଖଡ଼ିପାଠରେ ଖୁବ୍ ଟାଣ ବୋଲି ଦେଶରେ ଖ୍ୟାତି ଥିଲା । ସେମାନଙ୍କୁ ଲୀଳାବତୀ ସୂତ୍ର ଜଣାବୋଲି ଲୋକଙ୍କର ବିଶ୍ୱାସ । ପାଠ ବଳରେ ଓଝାମାନେ ଗଛର ପତ୍ର ଏବଂ ଉଡ଼ନ୍ତାପକ୍ଷୀର ପର ଗଣିପାରନ୍ତି ବୋଲି ମୁଁ ପିଲାଦିନୁ ଶୁଣି ଆସୁଅଛି ।

ଅବଧାନମାନେ କେବଳ ଯେ ବାଲେଶ୍ୱର ଜିଲାରେ ଚାହାଳୀ ବସାଇ ଚଟମାନଙ୍କୁ ପଢ଼ାଉଥିଲେ, ତାହା ନୁହେଁ । ବାଲେଶ୍ୱର ପାଖିଆ ଗଡ଼ଜାତ ଏବଂ ମେଦିନୀପୁର ଜିଲ୍ଲାର ଦାନ୍ତୁଣ, ପଟାଶପୁର, ମହିଷାଦଳ, କାନ୍ଥି, ହିଜଳୀ ପର୍ଯ୍ୟନ୍ତ ସେମାନଙ୍କର କର୍ମକ୍ଷେତ୍ର ବିସ୍ତୃତ ଥିଲା ।

ମେଦିନୀପୁର ଜିଲ୍ଲାର ପରିମାଣ ପ୍ରାୟ ୫ ହଜାର ଦୁଇଶତ ମାଇଲ; ସେଥିମଧ୍ୟରୁ ଜିଲ୍ଲାର ଦକ୍ଷିଣାଞ୍ଚଳ ପ୍ରାୟ ୨୨ ଶତ ମାଇଲ ନିରେଳା ଓଡ଼ିଆଭାଷିମାନଙ୍କ ସ୍ଥାନ । ସେମାନଙ୍କ ଘର ବାହାରର କଥାଭାଷା, ଚିଠି, ହିସାବ ପତ୍ର, ମହାଜନ ସିରସ୍ତା, ଦଲିଲ ଦସ୍ତାବିଜ କେବଳ ଓଡ଼ିଆଭାଷାରେ ଲେଖାପଢ଼ା ହେଉଥିଲା । ପୂର୍ବେ ମେଦିନୀପୁର ଜିଲ୍ଲାର କଚେରି ଭାଷା ମଧ୍ୟ ଆଂଶିକ ଓଡ଼ିଆ ଥିଲା । ବାଲେଶ୍ୱର ଜିଲ୍ଲା ସଦର କଚେରିରୁ ଅମଲମାନେ ନିଯୁକ୍ତ ହୋଇ ସେ ସ୍ଥାନକୁ ଯାଉଥିଲେ । ଏସବୁ ବର୍ତ୍ତମାନ ଅନେକାଂଶରେ ରହିତ ହୋଇଯାଇଛି ।

ସମ୍ପ୍ରତି ମଧ୍ୟ ଉକ୍ତ ସ୍ଥାନମାନଙ୍କ ଗ୍ରାମସ୍ଥ ପ୍ରଧାନ ଲୋକମାନଙ୍କ ଗୃହରେ ପ୍ରତିଦିନ ସନ୍ଧ୍ୟା ସମୟରେ ଜଗନ୍ନାଥ ଦାସଙ୍କ ଭାଗବତ, ଶାରଳା ମହାଭାରତ, ଓଡ଼ିଆ ରାମାୟଣ ପ୍ରଭୃତି ପଠିତ ହେଉଅଛି । ପଟାଶପୁର ଜମିଦାର ଗୃହର ଜଣେ ରମଣୀ ସଂସ୍କୃତ ଭାଗବତ ପଦ୍ୟାନୁବାଦ କରାଇଥିଲେ । ବର୍ତ୍ତମାନ ସ୍ଥାନେ ସ୍ଥାନେ ଉକ୍ତ ଭାଗବତ ପାଠ ହେଉଅଛି । ବାଲେଶ୍ୱର ଏବଂ କଟକ ଜିଲ୍ଲାରୁ ଶତଶତ ପୋଥିପଢ଼ା ବ୍ରାହ୍ମଣ

ସ୍ଥାନେ ସ୍ଥାନେ ପୋଥି ବସାଇ ଜୀବିକା ନିର୍ବାହ କରୁଅଛନ୍ତି । ଅନେକ ମହାଜନ ଏବଂ ଜମିଦାରଙ୍କ ଘରେ ପୋଥିପଢ଼ା ବ୍ରାହ୍ମଣ ଖଞ୍ଜା ଅଛନ୍ତି । ସମ୍ପ୍ରତି ଏହି ଅଞ୍ଚଳର ଇଂରଜୀ ପଢ଼ୁଆ ବାବୁମାନଙ୍କୁ ଓଡ଼ିଆ କହିବାକୁ ଅଡ଼ୁଆ ଲାଗୁଛି । ତେବେ କୁଳଲକ୍ଷ୍ମୀମାନଙ୍କ ଯୋଗେ ଅନ୍ତଃପୁର ମଧ୍ୟରୁ ଜାତୀୟ ଭାଷା ତଡ଼ିବାକୁ ସହଜରେ କୃତକାର୍ଯ୍ୟ ହୋଇପାରୁ ନାହାନ୍ତି ।

ମେଦିନୀପୁର ଦକ୍ଷିଣାଞ୍ଚଳରୁ ଗୃହାଳୀ ଏକାବେଳକେ ଉଠିଯିବା ଗୋଟିଏ ରହସ୍ୟମୟ, ଦାରୁଣ, ଶୋଚନୀୟ ବିଷୟ ଅଟେ । ୧୮୬୮-୧୮୭୦ ଖ୍ରୀ: ଅ: ରେ ମେଦିନୀପୁର ଜିଲ୍ଲା ଦକ୍ଷିଣାଞ୍ଚଳରେ ସ୍କୁଲ ସ୍ଥାପନ କରିବା ନିମନ୍ତେ ଜଣେ ବଙ୍ଗାଳୀ ସବ୍‌ଇନ୍‌ସପେକ୍ଟର ପଦରେ ନିଯୁକ୍ତ ହୋଇ ଆସିଥିଲେ । ସେ ବଙ୍ଗଳା ସ୍କୁଲ ବସାଇବାକୁ ଚେଷ୍ଟାକଲେ, ମାତ୍ର ଲୋକେ ପିଲାମାନଙ୍କୁ ବଙ୍ଗଳା ପଢ଼ାଇବାକୁ ଅସ୍ୱୀକୃତ ହେଲେ; ଅନେକ ଚେଷ୍ଟାକରି ମଧ୍ୟ କୃତକାର୍ଯ୍ୟ ହୋଇପାରିଲେ ନାହିଁ । ସେ କେବଳ ଦକ୍ଷିଣାଞ୍ଚଳରେ ସ୍କୁଲ ବସାଇବାକୁ ସ୍ୱତନ୍ତ୍ର ରୂପେ ନିଯୁକ୍ତ ହୋଇ ଆସିଛନ୍ତି; ସ୍କୁଲ ବସାଇ ନ ପାରିଲେ ତାହାଙ୍କର ଚାକିରି ରହିବା ଅସମ୍ଭବ । ଉପରିସ୍ଥ କର୍ମଚାରୀଙ୍କୁ ଆପଣାର ଅକୃତକାର୍ଯ୍ୟତା ଜଣାଇ ଏଡ଼େ ସୁନ୍ଦର ଚାକିରି ଖଣ୍ଡ କ'ଣ ହରାଇବେ ?

କାର୍ଯ୍ୟ ଅଟକିଲେ ବୁଦ୍ଧି ଦିଶେ । ବାବୁଙ୍କ ମୁଣ୍ଡରୁ ଚଞ୍ଚଳ ଗୋଟିଏ ବୁଦ୍ଧି ବାହାରି ପଡ଼ିଲା । ଗୋଟାଏ ଗୋଟାଏ ଥାନାରେ ବସି, ସେହି ଥାନା ଇଲାକାରେ ଗୃହାଳିଆ ଅବଧାନ ଯେତେ ଥିଲେ, ଗୋଟାଏ ଦିନ ଧାର୍ଯ୍ୟକରି, ଥାନା ଦାରୋଗା ଦ୍ୱାରା ସେହି ଅବଧାନଙ୍କୁ ଏକା ସଙ୍ଗରେ ଡକାଇ ଆଣିଲେ । ଇଂରଜୀଲେଖା ମୋହର ମାରି ଖଣ୍ଡିଏ କୃତ୍ରିମ ପରବାନା ଅବଧାନମାନଙ୍କୁ ଦେଖାଇ, ସେମାନଙ୍କୁ କହିଲେ, "ଏହି ଦେଖ, ମେଦିନୀ-ପୁର ଜିଲ୍ଲାର କଲେକ୍ଟର ସାହେବଙ୍କ ହୁକୁମ୍ । ଏହି ଥାନା ଇଲାକାରେ ଯେତେ ଗୃହାଳୀ ଅଛି ସମସ୍ତ ଉଠାଇ ଦିଆଯିବ ଏବଂ ଏହି ଥାନା ଇଲାକାରେ ଯେତେ ଅବଧାନ ଅଛନ୍ତି ଏହି ପରବାନା ଶୁଣିବା ତାରିଖଠାରୁ ସାତଦିନ ମଧ୍ୟରେ ଆପଣା ଆପଣା ଦେଶକୁ ଚାଲିଯିବେ । ନିରୂପିତ ଦିବସର ପରଦିନ ଯେଉଁ ଅବଧାନକୁ ମେଦିନୀପୁର ଇଲାକାରେ ଦେଖାଯିବ, ସେ ଓ୍ୟାରଣ୍ଟରେ ଧରାଯାଇ ସଦର କଚେରୀକୁ ଯିବ ଏବଂ ତାହାକୁ ଜରିମାନା ଓ ଜେଲ ଦୁଇପ୍ରକାର ଦଣ୍ଡ ଦିଆଯିବ ।" ସବ୍‌ଇନ୍‌ସପେକ୍ଟର ବାବୁ ଥାନା ଥାନା ବୁଲି ଅବଧାନମାନଙ୍କୁ ହୁକୁମ ଶୁଣାଇବାକୁ ଲାଗିଲେ । କ୍ଷୁଦ୍ରପ୍ରାଣୀ ବିଚାରି ଅବଧାନଙ୍କର ପିତ୍ତ କେତେ ? ଜିଲ୍ଲା କଲେକ୍ଟର ସାହେବଙ୍କ ହୁକୁମ, ପୁଣି ଥାନାରୁ ବାହାରିଛି । ଯେ ଯେତେ ଚଞ୍ଚଳ ପାରିଲା ଚିରକାଳ ସକାଶେ ଗୃହାଳୀ ଛାଡ଼ି ଦେଶମୁହାଁ ପଳାଇ ଆସିଲା ।

ସବ୍‌ଇନ୍‌ସପେକ୍ଟର ବାବୁ ଏଣିକି ସହଜେ ବଙ୍ଗଳା ସ୍କୁଲ ବସାଇ ଥିଲେ, ଏକଥା ଲେଖିବା ବାହୁଲ୍ୟ ଅଟେ । ଉଲ୍ଲିଖିତ ସବ୍‌ଇନ୍‌ସପେକ୍ଟରଙ୍କ ଜ୍ୟେଷ୍ଠଭ୍ରାତା ବାଲେଶ୍ୱର ଜିଲାସ୍କୁଲରେ ହେଡ଼ମାଷ୍ଟର ଥିଲେ । ହେଡ଼ମାଷ୍ଟରଙ୍କ ସହିତ ମୋର ବିଶେଷ ଆତ୍ମୀୟତା ଥିଲା । ସେ ନିଜ ଭ୍ରାତାର ବୁଦ୍ଧିମତ୍ତା ଓ କର୍ମଠତା ଜଣାଇବା ସକାଶେ ଉଲ୍ଲିଖିତ ଘଟଣାଟି ମୋ'ଠାରେ ବର୍ଣ୍ଣନା କରିଥିଲେ ।

ମେଦିନୀପୁର ଦକ୍ଷିଣ ଅଞ୍ଚଳସ୍ଥ ଲୋକଙ୍କର ପାଠଭାଷା ବଙ୍ଗଳା ହେଲେହେଁ ଗାର୍ହସ୍ଥ୍ୟ ଭାଷା ଓଡ଼ିଆ । ମାତୃଭାଷା କ'ଣ ସହଜରେ ଛାଡ଼ି ହୁଏ ? ଜଗନ୍ନାଥ ଦାସଙ୍କର ଓଡ଼ିଆ ଭାଗବତ ଏବଂ ଅନ୍ୟ କେତେଗୁଡ଼ିଏ ଓଡ଼ିଆ ପୁସ୍ତକ ବଙ୍ଗଳା ଅକ୍ଷରରେ ଛାପା କରାଇ ଘରେ ଘରେ ପଠିତ ହେଉଅଛି ।

ଗୃହଶାଳୀରେ ବେ-ଆଇନ୍ କାର୍ଯ୍ୟ କିଛି ନ ଥିଲା । ସମସ୍ତେ ନିୟମାବଦ୍ଧ । କାର୍ଯ୍ୟବିଧି ଲଙ୍ଘନ-କାରୀ ପ୍ରତି ଦଣ୍ଡ ଅନିବାର୍ଯ୍ୟ । ଅବଧାନଙ୍କର ଆଜ୍ଞା ବିନା କୌଣସି ଗୃହର ଉଠ ବସ ହେବାର ଆୟତ୍ତ ନ ଥିଲା । ଗୋଟିଏ ଜାଗାରେ ବସି ବସି ଗୋଡ଼ ଲାଗିଗଲେ, ସେହିଠାରେ ବସି ହାତଯୋଡ଼ି ପ୍ରାର୍ଥନା କରିବାକୁ ହୁଏ; "ଅବଧାନେ ଏକ" ଅର୍ଥାତ୍ ପ୍ରସାବ କରିବାକୁ ଯିବି—"ଅବଧାନେ ଦୁଇ" ଅର୍ଥାତ୍ ଝାଡ଼ା ଫେରିବାକୁ ଯିବି—"ଅବଧାନେ, ପାଞ୍ଚ" ଅର୍ଥାତ୍ ପାଣି ପିଇବାକୁ ଯିବି ।

ଗୃହାଳୀ ଦଣ୍ଡ-ବିଧିରେ ନିମ୍ନଲିଖିତ କେତେ ରୂପ ଦଣ୍ଡର ବିଧାନ ଥିଲା ।

୧ମ – ବେତ୍ରାଘାତ ।

୨ୟ—ଏକ ଗୋଡ଼ିଆ, ଅର୍ଥାତ୍ ଗୋଟିଏ ଗୋଡ଼ରେ ଛିଡ଼ା ହେବା ।

୩ୟ – ନାକ ବାଲ, ଗୋଟିଏ ହାତରେ ନାକ ଆଉ ଗୋଟିଏ ହାତରେ ମୁଣ୍ଡବାଲ ଧରି ଛିଡ଼ା ହେବା ।

୪ର୍ଥ – ଆଣ୍ଠୁ ଗୋପାଳ । ଆଣ୍ଠୁ ମାଡ଼ି, ବାଁ ହାତ ମୁଣ୍ଡରେ ଦେଇ, ଡାହାଣ ହାତରେ ଗୋଟାଏ ଖଡ଼ି ଗୋଟାଳ ଥୋଇ ସେହି ହାତ ଆଗକୁ ବଢ଼ାଇ ଦେଇ ବସିବା ।

୫ମ ମଟୁଆ ଶାଙ୍କୁଳ । ତାଳପତ୍ର ମଟୁଆରେ ଦେଢ଼ହାତ ପ୍ରାୟ ଲମ୍ବ ଗୋଟାଏ ଦଉଡ଼ି ତିଆରି ହୁଏ । ସେହି ଦଉଡ଼ି ଅପରାଧି ବେକରେ ପକାଇ ଦୁଇ ଗୋଡ଼ ବୁଢ଼ା ଆଙ୍ଗୁଳିରେ ଫାଶ ଲଗାଇ ଦିଆଯାଏ ।

ପ୍ରତିଦିନ ଗୃହାଳୀ ଛୁଟିବେଳେ ଗୃହମାନଙ୍କ ହାତରେ 'ଶୂନ୍ୟଗୃହି' ଦିଆଯାଏ । କେଉଁ ଗୃହ କେତେବେଳେ ଗୃହାଳୀକୁ ଆସିଥିଲା, ତାହା ଆପେ ଅବଧାନେ ଏବଂ ବଡ଼ ଗୃହ, ଅର୍ଥାତ୍ ଯେଉଁ ଗୃହ ସମସ୍ତଙ୍କଠାରୁ ବେଶି ପଢ଼ିଥାଏ, ମନରେ ରଖିଥାଆନ୍ତି । ଗୃହାଳୀ ଭାଙ୍ଗିବାବେଳେ ଗୃହମାନେ ଦୁଇ ହାତ ପାପୁଲି ଯୁକ୍ତ ଭାବରେ ମେଲାଇ ରଖି ଅବଧାନଙ୍କ ଆଡ଼କୁ ହାତ ବଢ଼ାଇ ଦେଇ, ଧାଡ଼ି ବାନ୍ଧି ଛିଡ଼ା ହୋଇ ଯାଆନ୍ତି; ଯେଉଁ ଗୃହ ସମସ୍ତଙ୍କ ଆଗେ ଗୃହାଳୀକୁ ଆସିଥାଏ, ତାହା ହାତ ପାପୁଲିରେ ଅବଧାନେ ବେତର ଅଗ ଛୁଆଇଁ ଦିଅନ୍ତି—ସେଇଟା ହେଲା ଶୂନ । ତହିଁ ଉତ୍ତାରେ ଦୁଇ, ତିନି କରି ଶେଷ ପର୍ଯ୍ୟନ୍ତ ଏକ ଏକ ସଂଖ୍ୟା ବଢ଼ି ଭିନ୍ନ ଭିନ୍ନ ଗୃହଙ୍କ ହାତରେ ବେତର ପାହାର ପଡ଼ୁଥାଏ, ଅର୍ଥାତ୍ ଉପସ୍ଥିତି ବିଷୟରେ ଯେ ଦ୍ୱିତୀୟ ତାହା ହାତରେ ଦୁଇଥର, ଯେ ତୃତୀୟ ତାହା ହାତରେ ତିନିଥର, ଯେ ଚତୁର୍ଥ ତାହା ହାତରେ ଚାରି-ଥର ବେତର ପାହାର ପଡ଼େ । ଏହି ବେତର ପାହାରର ବଳ ସବୁ ସମୟରେ ସମାନ ନୁହେଁ — ଟାଣ ଓ ଉଚ୍ଛ୍ୱାସ ଥାଏ । ଶୂନ ଗୃହି ଦେଲାବେଳେ ଅବଧାନେ ଗୃହ ମୁହଁକୁ ଅନାନ୍ତି । ଯେଉଁଠାରେ କୌଣସି ଜବାବଦିହି ହେବାର ସମ୍ଭାବନା ଥାଏ ସେଠାରେ ବେତର ଆଣ୍ଟା କିଛି କୋହଳ ହୋଇଯାଏ; ଅନ୍ୟ ଗୃହଙ୍କ ହାତରେ ବେତର ଶବ୍ଦଟା ପଟାପଟ୍ ଶୁଭେ ।

କୌଣସି ଗୃହ ଯଦି ବେଶି ବେଳଯାଏ ଶୋଇପଡ଼େ ଏବଂ ବିଛଣାରୁ ଉଠି ମଧ୍ଯ ବାହାରେ ଗୃହ ଉପରେ ଖରା ଚଢ଼ିଥିବାର ଦେଖେ, ତେବେ ସେ ଶୂନ-ଗୃହି ଡରରେ ଗୃହାଳୀକୁ ନ ଯାଇ; ନିରାପଦ ସ୍ଥାନ, ଅର୍ଥାତ ହାଣ୍ଡିଶାଳରେ ପଶି ହାଣ୍ଡି ଫନ୍ଦଟା ଧରି ବସି ପଡ଼େ, ହେଲେ ସେ ଅବସ୍ଥାରେ ମଧ୍ଯ ତାହାର ରକ୍ଷା ନାହିଁ । ସ୍ୱଜାତୀୟ ପୋଡ଼ାଏ ଲଙ୍ଗାଏ ପିଲା ଲଙ୍ଗଳା ହୋଇପଡ଼େ, ହାଣ୍ଡିଶାଳେ ପଶି ଅପରାଧୀକୁ ଧରିଆଣି ଶୂନ୍ୟେ ଶୂନ୍ୟେ ଟେକି ଗୃହାଳୀକୁ ଧରି ନେଇ ଯାଆନ୍ତି । ଗୃହାଳୀରେ ଉପସ୍ଥିତ ମାତ୍ରେ ବିଚାରକ ଅବଧାନ ତାହା ପିଠିରେ କେତୋଟା ପାହାର ବସାଇ ଦିଅନ୍ତି ।

ମୁଁ ଏହିପରି ଗୋଟିଏ ଚଟାଶାଳୀରେ ପଢ଼ିବାକୁ ଆରମ୍ଭ କଲି । ସେଠାରେ ସକାଳେ ଖଡ଼ିପାଠ ହୁଏ ଏବଂ ଉପରଓଳି ପୋଥି ପଢ଼ା ହୁଏ । ପଢ଼ା ସରିଲେ, ଅନ୍ୟାନ୍ୟ ଛାତ୍ରମାନେ ଘରକୁ ଯାଆନ୍ତି; କିନ୍ତୁ ମୋତେ ଚଟାଶାଳୀରେ ରହି ଅବଧାନଙ୍କର ସେବା ଏବଂ ତାଙ୍କର ରୋଷେଇରେ ସାହାଯ୍ୟ କରିବାକୁ ହୁଏ । ସେ ଅବଧାନଙ୍କ ନାମ—ବୈଷ୍ଣବ ମହାନ୍ତି—ନିବାସ କଟକ ଜିଲ୍ଲା ।

ମୋର ବଡ଼ବାପା ପୁରୁଷୋତ୍ତମ ସେନାପତି ମୋ ପ୍ରତି ବଡ଼ ନିଷ୍ଠୁର ଥିଲେ । ମାସ ଶେଷରେ ଅବଧାନ ଦରମା ମାଗିବାକୁ ଗଲେ ବଡ଼ ବାପା କହନ୍ତି, "ତୁମ୍ଭେ ତ ଫକୀରକୁ ପାଠ ପଢ଼ାଉ ନାହଁ, ଦରମା ମାଗୁଛ କ'ଣ ?" ଅବଧାନେ ଜବାବ ଦିଅନ୍ତି, "ମୁଁ ତ ଦିନ ରାତି ତାହାକୁ ପାଖରେ ବସାଇଛି, ଦଣ୍ଡେ ହେଲେ ଖେଳିବାକୁ, ବୁଲିବାକୁ ଛାଡ଼ୁ ନାହିଁ ।" ବଡ଼ ବାପା କହନ୍ତି, "କାହିଁ ତା'ପିଠିରେ ତ ଚିହ୍ନ ନାହିଁ ।" ଅବଧାନେ ବଡ଼ବାପାଙ୍କ ମନକଥା ଭଲକରି ବୁଝିଥିଲେ । ଚଟାଶାଳୀରେ ମୁଁ ବସିଥିଲି, ଅକାରଣ ବେତଟା ଧରି ମୋ ପିଠିରେ ଦଶ ବାର ପାହାର ବାଡ଼େଇ ଗଲେ । ମାଡ଼ର ଶବ୍ଦ ଓ ମାଡ଼ର ଚିତ୍କାର ଶୁଣି ବଡ଼ବାପା ଓ ବଡ଼ମା ଭାରି ଖୁସି; କିନ୍ତୁ ଠାକୁର ମା ଦଉଡ଼ି ଆସି କହନ୍ତି, "ଅବଧାନେ ତୁମ୍ଭର କି ପୁଅଝିଅ କେହି ନାହାଁନ୍ତି ? ଅକାରଣ ପିଲାଟାକୁ ବାଡ଼େଉଛ ।" ପ୍ରତ୍ୟେକ ଥର ଅବଧାନଙ୍କ ଦରମା ଦେବାବେଳେ ଏହିପରି ଅଭିନୟ ହୋଇଥାଏ ।

କିଛିକାଳପରେ ବୈଷ୍ଣବ ମହାନ୍ତି ତାଙ୍କ ଗ୍ରାମକୁ ଚାଲିଗଲେ । ଆମ୍ଭ ଗ୍ରାମରେ ନଣ୍ଡା ଗୋସାଇଁ ମଠରେ ଗୋଟାଏ ଚଟାଶାଳୀ ଥିଲା । ମୁଁ ସେହି ଚଟାଶାଳୀରେ ଭର୍ତ୍ତି ହେଲି । ସେଠାରେ ପ୍ରତିପଦ, ଅଷ୍ଟମୀ, ଚତୁର୍ଦ୍ଦଶୀ ଓ ଅମାବାସ୍ୟା ଏହି ତିଥିମାନଙ୍କରେ ଚଟାଶାଳୀପଢ଼ା ବନ୍ଦ । ଏହି ତିଥି ମାନଙ୍କରେ ଉପରଓଳି କେତେଜଣ ବଡ଼ ବଡ଼ ଛାତ୍ରପିଲା ମିଳି ଗ୍ରାମମଧ୍ୟରେ ସ୍ତ୍ରୀମାନଙ୍କ ପାଖରେ ବସି ଗୀତ ଗାଆନ୍ତି । ସେମାନେ ଛାତ୍ରଭିକ୍ଷା ଚାଉଳ ଦିଅନ୍ତି । ସେହି ଚାଉଳରେ ଅବଧାନଙ୍କର ଅନ୍ନ ବାଡ଼ଟା ଚଳି ଯାଏ । କେବେ କେବେ ଚାଉଳ ବଳି ପଡ଼ିଲେ, ଅବଧାନେ ବିକି ପଇସା ସଞ୍ଚନ୍ତି । ଛାତ୍ରଭିକ୍ଷା ଛଡ଼ା ଆହୁରି ମଧ୍ୟ ଢେର ଚାଉଳ ଅବଧାନେ ପାଉଥିଲେ । କେହି ଛାତ୍ର ନୂଆ ଗୋଟାଏ କିଛି ପାଠ ଆରମ୍ଭ କଲେ ଚଟାଶାଳୀକୁ ଗୋଟାଏ 'ସିଧା' ଆଣେ । ସିଧାର ସରଞ୍ଜାମ-ସେରେ ଚାଉଳ, ଗୋଟିଏ ଗୁଆ, କିଛି ଗୁଡ଼, ଉଖୁଡ଼ା ଓ କେତେଟା ଫୁଲ ।

ସେ ସମୟରେ ବାଲେଶ୍ୱରରେ ଗୋଟାଏ ପାର୍ଶି ଅବୈତନିକ ସ୍କୁଲ ଥିଲା । ଚଟାଶାଳୀପାଠ ଶେଷକରି ମୁଁ ଆପେ ଯାଇ ସେ ଇସ୍କୁଲରେ ନାମ ଲେଖାଇ ପଢ଼ିବାକୁ ଆରମ୍ଭ କଲି । ସ୍କୁଲରେ ତିନିଜଣ ଆଖୁନ୍‌ଜୀ ଓ ଜଣେ ଓଡ଼ିଆ ପଣ୍ଡିତ ନିଯୁକ୍ତଥିଲେ । ଓଡ଼ିଆ ପଣ୍ଡିତଙ୍କ ନାମ ବନମାଳୀ ବାଚସ୍ପତି । ବାପ, ଭାଇ ପ୍ରଭୃତିଙ୍କୁ କିପରି ଚିଠି ଲେଖିବାକୁ ହୁଏ, କଚେରୀରେ ଦରଖାସ୍ତ କିପରି ଲେଖିବାକୁ ହୁଏ—ପଣ୍ଡିତେ ଛାତ୍ରମାନଙ୍କୁ ଏତିକି ମାତ୍ର ଶିଖାନ୍ତି ।

ସେ ସମୟରେ ବାଇବେଲ ଛଡ଼ା ଓଡ଼ିଆରେ ଅନ୍ୟ କୌଣସି ଛାପାପୁସ୍ତକ ନ ଥିଲା । କଟକ ମିସନ୍ ପ୍ରେସ୍ ଛଡ଼ା ଓଡ଼ିଶାରେ ଅନ୍ୟ କୌଣସି ଛାପାଖାନା ମଧ୍ୟ ନ ଥିଲା । ବାଲେଶ୍ୱରରେ ପାଦ୍ରୀ ସାହେବଙ୍କର ଗୋଟିଏ ସ୍କୁଲ ଥିଲା । ସେଥିରେ ବାଇବେଲ୍ ଛଡ଼ା ଅନ୍ୟ କୌଣସି ପୁସ୍ତକ ପଢ଼ା ହେଉ ନ ଥିଲା । ମାତ୍ର ପାଦ୍ରୀ ସାହେବଙ୍କ ସ୍କୁଲରେ ଛାପା ପୋଥି ପଢ଼ିଲେ, 'ଜାତିଯିବ'—ଏହି ଭୟରେ କେହି ହିନ୍ଦୁପିଲା ସେ ସ୍କୁଲରେ ପଢ଼ୁ ନ ଥିଲେ ।

———

# ୪

## ଅଝ୍ଝାଲ ସିଲାଇ

ମୋର ବାଲ୍ୟକାଳରେ ବାଲେଶ୍ୱରରେ ଜାହାଜାଭି କାର୍ଯ୍ୟର ବଡ଼ କାରବାର ଥିଲା । ପାଞ୍ଚ ଛଅଶତ ଜାହାଜ ସମୁଦ୍ରରେ ଗତାୟାତ କରୁଥିଲେ; ବାରପଣି ଜାହାଜ ଲୁଣବୁହା କାର୍ଯ୍ୟରେ ଏବଂ ଅବଶିଷ୍ଟ ରେଙ୍ଗୁନ, ମାନ୍ଦ୍ରାଜ, କଲମ୍ବୋ ଏବଂ ସମୁଦ୍ର ମଧ୍ୟସ୍ଥ ଦ୍ୱୀପମାନଙ୍କୁ ବାଣିଜ୍ୟ ଦ୍ରବ୍ୟ ବହନରେ ନିଯୁକ୍ତ ଥିଲେ । ସେ ସମୟରେ ବାଲେଶ୍ୱରରେ ଷ୍ଟିମାରର ନାମ ଶୁଣା ନ ଥିଲା ।

ସମୁଦ୍ର ମଧ୍ୟରେ ଅଝ୍ଝାଲ ଭରରେ ଜାହାଜ ଚଳେ । ଜାହାଜର ଆକାର ଅନୁସାରେ ଗୋଟାଏ ଗୋଟାଏ ଜାହାଜ ସକାଶ ନାନା ଆକାରର, ଭିନ୍ନଭିନ୍ନ ମାପର, ଛଅଖଣ୍ଡଠାରୁ ବାରଖଣ୍ଡ ପର୍ଯ୍ୟନ୍ତ ଅଝ୍ଝାଲ ଲୋଡ଼ା ହେଉଥିଲା । ସେ ସମସ୍ତ ଅଝ୍ଝାଲର ଭିନ୍ନ ଭିନ୍ନ ନାମଥିଲା; ଯଥା କବାଜ୍, ସବର, ଟଭର, କଲମି, ଜଭ, ଦରିଆ, ପେଲ ଇତ୍ୟାଦି । ଗୋରାପ ଅର୍ଥାତ୍ ବଡ଼ବଡ଼ ଦୁଇ ଠୁଳିଆ ଜାହାଜର ଦୁଇଗୁଣ ଲୋଡ଼ା ହୁଏ । ସେହି ସମସ୍ତ ଅଝ୍ଝାଲ କେହି ଚତୁଷ୍କୋଣ, କେହି ତ୍ରିକୋଣ, କେହି ବିଷମ ବାହୁ ଚତୁର୍ଭୁଜ ଥାଏ । ଜାହାଜର ଆକାର ଦୃଷ୍ଟିରେ ମାପସଇ ଅଝ୍ଝାଲ ଦରକାର । ଅଝ୍ଝାଲ ମାପରୁ ବଡ଼ ହେଲେ, ଟାଣ ପବନରେ ଜାହାଜ ଓଲଟି ଯାଇପାରେ, ସାନ ହେଲେ ଜାହାଜ ଚଳିବ ନାହିଁ । ଅଜଣା ଲୋକ ଅଝ୍ଝାଲର ମାପ ଠିକ୍ ରଖି ପାରେ ନାହିଁ ।

ମୋ ବାପା ଏବଂ ବଡ଼ବାପା ଅଧିକାଂଶ ଜାହାଜର ଠିକାଦାର ଥିଲେ । ଅଧିକାଂଶ ଜାହାଜୀ ମହାଜନ ଫରମାସ ଦେଇ ଅଝ୍ଝାଲ ପ୍ରସ୍ତୁତ କରାଇ ନେଉଥିଲେ । ଅଝ୍ଝାଲ ପ୍ରସ୍ତୁତ କରିବା ନିମନ୍ତେ ଶତ ଶତ ଦର୍ଜି ଆମ୍ଭମାନଙ୍କ ଘରଠାରେ ଉପସ୍ଥିତ ଥାନ୍ତି । ଏହା ଗୋଟିଏ ବଡ଼ ଲାଭଜନକ ବ୍ୟବସାୟ ଥିଲା । ଏହି ସମସ୍ତ କାରବାର ହିସାବ ରଖିବା ନିମନ୍ତେ ଆମ୍ଭ-ମାନଙ୍କର ଗୋଟିଏ ସେରେସ୍ତା ଥିଲା । ଗୋମାସ୍ତା ଅଧୀନରେ କାର୍ଯ୍ୟ ଶିଖିବା ସକାଶେ ବଡ଼ବାପା ମୋତେ ନିଯୁକ୍ତ କରିଦେଲେ । ଗୋମାସ୍ତା ମେଟ୍ Mate) ରୂପେ ମୁଁ କାର୍ଯ୍ୟ କରିବାକୁ ଲାଗିଲି; ଦୁଇଓଳି ନଦୀକୂଳରେ ବୁଲି ବୁଲି, କେଉଁ ଜାହାଜରେ କେଉଁ ଅଝ୍ଝାଲ ତିଆର ହେଉଅଛି ଏବଂ କେଉଁ କେଉଁ ଦରଜିମାନଙ୍କ ଜିମାରେ କି କି କାର୍ଯ୍ୟ ଅଛି ଇତ୍ୟାଦି ବିଷୟ ବୁଝି ଆସି ଗୋମାସ୍ତାଙ୍କୁ ଲେଖାଇ ଦିଏଁ । ଏହି ସମସ୍ତ କାର୍ଯ୍ୟ ସାରି, ମୋର ଢେର ସମୟ ଥାଏ । ସେହି ସମୟଟାରେ ଅଝ୍ଝାଲ ସିଲାଇ କରିବା ସକାଶେ ବଡ଼ବାପା ମୋତେ ଲଗାଇ ଦିଅନ୍ତି ।

ବାଲେଶ୍ୱରରେ ଜାହାଜାଭି କାର୍ଯ୍ୟ କାର୍ତ୍ତିକଠାରୁ ଚୈତ୍ରମାସ ପର୍ଯ୍ୟନ୍ତ ଚଳୁଥିଲା । ଦକ୍ଷିଣା ପବନ ଟାଣ ହେଲେ, ଜାହାଜସବୁ ନଦୀମୁହାଣରୁ ବାହାରି ପାରୁ ନ ଥିଲେ; କାର୍ତ୍ତିକମାସ ପର୍ଯ୍ୟନ୍ତ ଗୁଡରେ ବନ୍ଧା ହୋଇ ପଡ଼ି ଥାଆନ୍ତି । ଏଥିକୁ ସମସ୍ତ କାର୍ଯ୍ୟ ବନ୍ଦ ହୋଇଯାଏ; ତଥାପି ମହାଜନ ଠାରୁ ବଙ୍କଶାଳ ଇଲାକାର ସମସ୍ତ ପ୍ରକାର କାରିଗର, ଠିକାଦାର, ମାଝି, ଖଲାସୀ ଏବଂ କର୍ମଚାରୀ କର୍ମ ଚଳୁଥିବା ଛଅ ମାସ ମଧ୍ୟରେ ଯାହା ରୋଜଗାର କରି ଥାଆନ୍ତି, ସେଥିରେ ଘରେ ବସି ମଧ୍ୟ ଆଉ ଛଅ ମାସ ଚଳାଇ ନିଅନ୍ତି । ବର୍ଷାକାଳରେ ପୋତାନ କାର୍ଯ୍ୟ ବନ୍ଦ ହେବାରୁ ସରକାରୀ ଇଲାକା ଓ ପୋତାନ ସମ୍ବନ୍ଧରେ ସମସ୍ତ ପ୍ରକାର କର୍ମଚାରୀ ଘରେ ବସି ରହନ୍ତି ।

---

୫

## କଚେରିରେ କାର୍ଯ୍ୟଶିକ୍ଷା

ଜାହାଜାଡି କାର୍ଯ୍ୟ ବନ୍ଦ ହେବାରୁ ବଡ଼ବାପା ଆମ୍ଭମାନଙ୍କ ଗ୍ରାମର ନିକଟବର୍ତ୍ତୀ ଭୁଇସାଇ ଗ୍ରାମ ନିବାସୀ ନିମକ ମାହାଲର ସିରସ୍ତାଦାର ବାବୁ ବିଶ୍ୱନାଥ ଦାସଙ୍କ ନିକଟରେ ମତେ ଗୁଡ଼ ଆସିଲେ । ମୁଁ ପ୍ରତିଦିନ ସିରସ୍ତାଦାରଙ୍କ ସଙ୍ଗରେ ଯାଇ କଚେରିରେ ନିମକ୍ ମାହାଲ ସିରସ୍ତାର କାର୍ଯ୍ୟ ଶିଖିବାକୁ ଲାଗିଲି । ବାବୁ ବିଶ୍ୱନାଥ ଦାସ ଜଣେ ସ୍ୱନାମଧନ୍ୟ ପୁରୁଷ । ସେ ଗୋଟିଏ ଦରିଦ୍ରା ବିଧବାର ପୁତ୍ର, ଅନ୍ୟ ଘରେ ଧାନ କୁଟୁଣୀ କାର୍ଯ୍ୟ କରିବା ମାତାଙ୍କର କାର୍ଯ୍ୟ ଥିଲା । ବିଶ୍ୱନାଥବାବୁ ଅବଧାନଙ୍କ ଚାଟଶାଳୀରୁ ଉଠି ଜଣେ ମୁସଲମାନ ରୁଟିବାଲା ଦୋକାନରେ ମାସିକ ଆଠଅଣା ଦରମାରେ ନିଯୁକ୍ତ ହୋଇଥିଲେ । ରୁଟିବାଲା ଦିନ-ମାନରେ ଯେଉଁ ଲଗୁଆ ସାହେବଙ୍କ କୋଠିକୁ ଯେତେଟା ପାଉଁରୁଟି ପଠାଇଥାଏ, ବିଶ୍ୱନାଥ ବାବୁ ସନ୍ଧ୍ୟାବେଳେ ତାହା ଖାତାରେ ଲେଖି ଦେଇ ଆସନ୍ତି, ମାସଶେଷରେ ସାହେବଙ୍କୁ ହିସାବ ଦେଇ ଟଙ୍କା ଆଣନ୍ତି । ଏହି ସୂତ୍ର ଧରି ବାବୁ ସାହେବମାନଙ୍କ ସହିତ ପରିଚିତ ହୋଇଗଲେ । ରାତିରେ କେବଳ ଦୁଇଘଣ୍ଟା ମାତ୍ର ତାଙ୍କୁ କାର୍ଯ୍ୟ କରିବାକୁ ହେଉଥିଲା । ଦିନମାନରେ କଚେରିକୁ ଯାଇ ନିମକ ମାହାଲରେ କାର୍ଯ୍ୟ ଶିକ୍ଷା କରୁଥାନ୍ତି । ପ୍ରଥମେ ଗୋଟିଏ ସାମାନ୍ୟ ମୋହରିର କାର୍ଯ୍ୟରେ ନିଯୁକ୍ତ ହୋଇ ସିରସ୍ତାଦାର ପର୍ଯ୍ୟନ୍ତ ସେ ଉନ୍ନିତ ହୋଇଥିଲେ । ଅନେକ ସମ୍ପତ୍ତି ମଧ୍ୟ ଉପାର୍ଜ୍ଜନ କରି ଯାଇଥିଲେ । ସମ୍ପ୍ରତି ତାହାଙ୍କ ଉତ୍ତରାଧିକାରୀମାନେ ସେ ସମସ୍ତ ନଷ୍ଟ କରି ପକାଇ ଅଛନ୍ତି ।

କଚେରିର ଅନ୍ୟାନ୍ୟ ମହକୁମାଠାରୁ ନିମକ ମାହାଲ ମହକୁମାଟା ବଡ଼ ଜବର ଥିଲା । ସେଥିରେ ଅନେକ ଅମଲା ନିଯୁକ୍ତ ଥିଲେ । କଚେରିର ନିମକ ମାହାଲ ସିରସ୍ତା ଦୁଇଭାଗରେ ବିଭକ୍ତ ଥିଲା । ସିରସ୍ତା ବିଭାଗ ଏବଂ ଦେବାନ ବିଭାଗ । ସିରସ୍ତା ବିଭାଗରେ ମଫସଲ ହିସାବ ସବୁ ଥାଏ । ସଦର ହିସାବପତ୍ର ସବୁ ଦେବାନ ବିଭାଗରେ ରହୁଥିଲା । ସେ ସମୟରେ ବାଲେଶ୍ୱରରେ ଯାହାକିଛି ଗୌରବ ଓ ସମ୍ପତ୍ତି ଉନ୍ନତି ଲାଭ କରିଥିଲା, ତାହା ନିମକ ମାହାଲ ସକାଶେ । ବାଲେଶ୍ୱରର ପୂର୍ବାଞ୍ଚଳ ସମୁଦ୍ର କୂଳବର୍ତ୍ତୀ ଉତ୍ତର ସୁବର୍ଣ୍ଣରେଖା ମୁହାଣଠାରୁ ଦକ୍ଷିଣ ଧାମରା ମୁହାଣ ପର୍ଯ୍ୟନ୍ତ ସ୍ଥାନମାନଙ୍କରେ ପଙ୍ଗାଲବଣ ପୋକ୍ତାନ ହେଉଥିଲା । ପ୍ରୋକ୍ତ ଲୁଣରୁ ବାଲେଶ୍ୱର ଖର୍ଚ୍ଚ ବାଦ ଯାଇ ଅବଶିଷ୍ଟ ଅଧିକାଂଶ କଲିକତା ସମୀପ ଗଙ୍ଗା ନଦୀ ପଶ୍ଚିମ କୂଳବର୍ତ୍ତୀ ସାଲିକା ଗୋଲାକୁ ଜାହାଜ ଦ୍ୱାରା ଚାଲାଣ ଯାଏ । ସେ ସ୍ଥାନରୁ ବଙ୍ଗଳାର ମଫସଲ ଗ୍ରାମମାନଙ୍କୁ ବିକ୍ରୟ ପାଇଁ ପଠାଯାଏ । ସେ ସମୟରେ ବଙ୍ଗ ଦେଶର ଅଧିକାଂଶ ଲୋକ ବାଲେଶ୍ୱରୀ ପଙ୍ଗାଲୁଣ କାରବାର କରୁଥିଲେ । ସେ ସମୟରେ ନିମକ ମାହାଲ ବାଲେଶ୍ୱର ସହର ନିବାସୀ ମାନଙ୍କର ଜୀବିକା ଅର୍ଜନର ପ୍ରାୟ ଏକମାତ୍ର ଉପାୟ ଥିଲା । ମହାଜନ, କାରିଗର ଓ ଅମଲାମାନଙ୍କୁ ଗୁଡ଼ ଜାହାଜ ସବୁ ସମୁଦ୍ରରେ କୁଶଳରେ ଯାତାୟତ କରିବା ନିମନ୍ତେ ସହରର ସମସ୍ତ ଦେବତାମାନଙ୍କ ପୂଜା ଏବଂ ଚଣ୍ଡୀପାଠ ସକାଶେ ଶତଶତ ବ୍ରାହ୍ମଣ ପଣ୍ଡିତ ନିଯୁକ୍ତ ଥିଲେ । ପ୍ରତିବର୍ଷ କାର୍ତ୍ତିକ ମାସରେ ଲୁଣ ପୋକ୍ତାନ ଆରମ୍ଭ ପୂର୍ବରୁ ପୋକ୍ତାନ କାର୍ଯ୍ୟ ସୁସାରରେ ସାଧନ ନିମନ୍ତେ ସରକାର ତରଫରୁ କଚେରି ନିକଟବର୍ତ୍ତୀ ଝାଡ଼େଶ୍ୱର ମହାଦେବଙ୍କ ପୂଜା ଦିଆ ଯାଉଥିଲା । ପୂଜାର ସମସ୍ତ ଖର୍ଚ୍ଚ ସରକାରୀ ଖଜଣାଖାନାରୁ ଦିଆ ଯାଉଥିଲା । ଲୁଣ ପୋକ୍ତାନ କାର୍ଯ୍ୟରେ ନିଯୁକ୍ତ ସମସ୍ତପ୍ରକାର କର୍ମଚାରୀ ପ୍ରାୟ ହିନ୍ଦୁଥିଲେ । ସେମାନଙ୍କ ମନୋରଞ୍ଜନ ନିମନ୍ତେ ସରକାରଙ୍କୁ ଏ କାର୍ଯ୍ୟ କରିବାକୁ ହେଉଥିଲା । ମୁଁ ନିମକ ମାହାଲ ସିରସ୍ତାରେ ବସି କାର୍ଯ୍ୟ ଶିଖିବାକୁ

ଲାଗିଲି । କଚେରିରେ ଚଳିତ ଭାଷା ଓଡ଼ିଆ, ବଙ୍ଗଳା ଏବଂ ପାର୍ସିଥିଲା । ଆମ୍ଭମାନଙ୍କ ଗ୍ରାମର ନିକଟବର୍ତ୍ତୀ ଅଜୁଆଁବାଦ ନାମକ ଗ୍ରାମରେ ଜଣେ ଡାକ୍ତର ଥିଲେ । ତାଙ୍କ ନାମ ପ୍ରସାଦ ନାୟକ । ସେ ଜେଲଖାନା ଡାକ୍ତରଙ୍କ ମେଣ୍ଟ ସହକାରୀ) ଥିଲେ । ଆପଣା ପୁଅମାନଙ୍କୁ ବଙ୍ଗଳା ପଢ଼ାଇବା ସକାଶେ ସେ ଜଣେ ଶିକ୍ଷକ ନିଯୁକ୍ତ କରିଥିଲେ । ଶିକ୍ଷକଙ୍କର ବସାଘର ଅନ୍ୟ ସ୍ଥାନରେ ଥିଲା, ସେ କେବଳ ରାତିରେ ଦୁଇଘଣ୍ଟା ସକାଶେ ଆସି ଛାତ୍ରମାନଙ୍କୁ ପଢ଼ାଇ ଦେଇ ଯାଉଥିଲେ । କେତେକ ମାସ ପର୍ଯ୍ୟନ୍ତ ମୁଁ ତାଙ୍କ ପାଖକୁ ଯାଇଁ ବଙ୍ଗଳା ଶିକ୍ଷାକଲି । ଛାପା ପୋଥି ମାତ୍ର ପଢି ପାରୁଥିଲି, ଭଲରୂପେ ଲେଖି ପାରୁ ନ ଥିଲି । କଚେରିର ନିମକ ମାହାଲ ଓଡ଼ିଆ ସିରସ୍ତାରେ କାର୍ଯ୍ୟ ଶିଖୁଥାଏ, ବେଳ ପାଇଲେ ଖଣ୍ଡେ ଛିଣ୍ଡା କାଗଜ ଗୋଟାଇ ଆଣି ବଙ୍ଗଳା ଅକ୍ଷର ଲେଖିବାକୁ ଶିଖୁଥାଏଁ । ମୋ ମାଉସୀପୁଅ ଭାଇ ବାବୁ ରାଜକିଶୋର ଚଉଧୁରୀ ମଫସଲ ଗୃହି ଗୋଲାରେ ପେସ୍କାର ଥିଲେ । ସେ ଦିନେ ସଦର କଚେରିକୁ ଆସି ସିରସ୍ତାଦାରଙ୍କ ନିକଟରେ ବସିଥିଲେ । ମୁଁ ସିରସ୍ତାରେ ବସି ଲେଖୁଥାଏଁ, କଥାକଥାକେ ମୋ କଥା ପଡ଼ିବାରୁ ମୁଁ ବଙ୍ଗଳା ସିରସ୍ତାରେ କାର୍ଯ୍ୟ କରି ପାରିବି କି ନାହିଁ, ଏହି ପ୍ରଶ୍ନ ଉଠିଲା । ମୋ ବଙ୍ଗଳା ହସ୍ତାକ୍ଷର ରାଜକିଶୋରବାବୁ ଏବଂ ସିରସ୍ତାଦାର ଦୁହେଁ ପରୀକ୍ଷା କଲେ । ସିରସ୍ତାଦାର ଅଳ୍ପ କଷ୍ଟରେ କହିଲେ, 'ହଁ ଏକପ୍ରକାର ଚଳି ଯାଇପାରେ ।' ସେହି ଦିନଠାରୁ ବଙ୍ଗଳା ସିରସ୍ତାରେ ବସି କାର୍ଯ୍ୟ ଶିଖିବାକୁ ଲାଗିଲି । ଓଡ଼ିଶାର ବିଶେଷତଃ ବାଲେଶ୍ୱରର ଦୁର୍ଭାଗ୍ୟର ବିଷୟ, ଅଳ୍ପଦିନ ଉତ୍ତାରେ ନିମକ ମାହାଲ ଉଠିଯିବା ବିଷୟ ସଦରରୁ ହୁକୁମ ଆସି ପହଞ୍ଚିଲା । ଉତ୍କଳର ଭାଗ୍ୟଲକ୍ଷ୍ମୀ ଲିଭରପୁଲ ଏବଂ ଅନ୍ୟାନ୍ୟ ସ୍ଥାନକୁ ଚାଲିଗଲେ । ନିମକ ମାହାଲ କଚେରିରେ ଅଧିକାଂଶ ଅମଲା ବଙ୍ଗାଳୀଥିଲେ । ସେମାନେ ସାଲିକା ଗୋଲାରୁ ନିଯୁକ୍ତ ହୋଇ ଆସୁଥିଲେ । ନିମକ ମାହାଲ ଉଠିଯିବାରୁ ପ୍ରାୟ ସମସ୍ତେ ସ୍ୱଦେଶକୁ ବାହୁଡ଼ିଗଲେ । ଯେଉଁମାନେ ଓଡ଼ିଆ ଲେଖାପଢ଼ି ଶିଖିଥିଲେ, ସେମାନେ କଚେରିର ଅନ୍ୟାନ୍ୟ ମହକୁମାରେ ନିଯୁକ୍ତ ହେଲେ । ସେ ସମୟରେ କଚେରିର ମହକୁମା ବିଶେଷରେ ଓଡ଼ିଆ ଭାଷା ଅଳ୍ପ ଅଳ୍ପ ଚଳୁଥିଲା, ମାତ୍ର ପ୍ରଧାନ ଚଳିତ ଭାଷା ଥିଲା ପାର୍ସି । ସନ ୧୮୩୭ ସାଲରେ କଚେରିରେ କେବଳ ଦେଶୀଭାଷା ଚଳିତ ହେବ ବୋଲି ଗବର୍ଣ୍ଣମେଣ୍ଟ ଏ ପ୍ରକାର ସ୍ପଷ୍ଟ ହୁକୁମ ଜାରି କଲେ ମଧ୍ୟ ପୁରୁଣା ଅମଲାମାନେ ପାର୍ସିର ମାୟାଗ୍ରାଡ଼ି ନ ପାରି ସାଇତି ରଖିଥିଲେ । କଚେରିରେ ଗୋଟିଏ ସ୍ୱତନ୍ତ୍ର କିରାଣୀଖାନାଥିଲା । ସଦରକୁ ଯିବାଭଳି ସମସ୍ତ ମହକୁମାର କାଗଜ ମାନ ସେହିଠାରେ ତର୍ଜମା ହେଉଥିଲା । ଦୁଇଜଣଙ୍କୁ ଛାଡ଼ି ସମସ୍ତ କିରାଣୀ ଫିରଙ୍ଗି (ବାଲେଶ୍ୱର ବାସୀ କହୁଥିଲେ ମାଟିଆ ପୁରୁଷ) ଥିଲେ । ସର୍ବପ୍ରଥମ ସାମୁଏଲ୍ ଏଣ୍ଡ୍ରୁଜ୍ ଏବଂ ଆଣ୍ଟନି ଡସୋ କଲିକତାରୁ ନିଯୁକ୍ତ ହୋଇ ବାଲେଶ୍ୱରକୁ ଆସିଥିଲେ । ପରବର୍ତ୍ତୀ କାଳରେ ସେହିମାନଙ୍କ ବଂଶଧରମାନେ କିରାଣୀଖାନାକୁ ଏକଚାଟିଆକରି ରଖିଥିଲେ । ଦେଶୀ କିରାଣୀ ମଧ୍ୟରେ ମୋ ଶ୍ୱଶୁର ୰ଶିବପ୍ରସାଦ ଚଉଧୁରୀ, ବର୍ତ୍ତମାନ ସବଜଜ୍ ବାବୁ ଗଗନବିହାରୀ ଚଉଧୁରୀଙ୍କ ପିତା ୰ଗଙ୍ଗାପ୍ରସାଦ ଚଉଧୁରୀ । ପ୍ରାୟ ୪୦ ବର୍ଷ ପୂର୍ବେ ବାଲେଶ୍ୱରରେ ଗୋଟିଏ ଇଂରାଜୀ ସ୍କୁଲ ସ୍ଥାପିତ ହୋଇଥିଲା । ୰ଶିବପ୍ରସାଦ ଚଉଧୁରୀ; ୰ଗଙ୍ଗାପ୍ରସାଦ ଚଉଧୁରୀ, କଣ୍ଟାବଣିଆ ଗ୍ରାମ ନିବାସୀ ୰ସଚ୍ଚିଦାନନ୍ଦ ଦାସ, ବୁଗୁଡ଼ା ନିବାସୀ ୰ଅଟଳବିହାରୀ ପାଳ, ଆଉ ଗୋଟିଏ ବଙ୍ଗାଳି ପିଲା ଏହିପରି ୫ ଜଣ ମାତ୍ର ଛାତ୍ର ଥିଲେ । ଜାତିପାତି ଭୟରେ ଅନ୍ୟକେହି ଦେଶୀପିଲା ଇଂରେଜୀ ସ୍କୁଲକୁ ନ ଆସିବାରୁ ସ୍କୁଲ ଉଠିଗଲା । ସର୍ବପ୍ରଥମେ ଇଂରାଜୀ ଶିକ୍ଷା, ବାଳିକାଶିକ୍ଷା; ଜନାନା ଶିକ୍ଷା ଏହି କ୍ଷୁଦ୍ର ଲେଖକ ମଲ୍ଲିବଂଶ ମଧ୍ୟରେ ସୂତ୍ରପାତ ହୋଇଥିଲା ।

ସେ ସମୟରେ କଟେଣରରେ ପୁଲସ୍ ମହକୁମା ନ ଥିଲା । ଆପେ ମେଜେଷ୍ଟର ସାହେବ ପୁଲସ୍ ସୁପରଣ୍ଟେଣ୍ଡେଣ୍ଟ ସ୍ୱରୂପ ଥିଲେ । ଖୁବ୍ ଭୋର ସୂର୍ଯ୍ୟୋଦୟ ପୂର୍ବେ ପୁରୁଣା ପୋଲସ୍ ଦାରୋଗା ମେଜେଷ୍ଟର ସାହେବଙ୍କ ନିକଟରେ ହାଜର ହୋଇ ସଲାମ୍ କରି ଜଣାନ୍ତି—

"ହଜୁର୍ ! ଦୁନିଆକା ହାଲଚାଲ୍ ଆଚ୍ଛା ହେ ।
ବାଲେଶ୍ୱର ସହରକା ହାଲଚାଲ୍ ଆଚ୍ଛା ହେ ।"

ଏତିକ କଥା କହି ସାରି ସାହେବଙ୍କୁ ସଲାମ୍ କରି ଆପଣା ଜାଗାକୁ ବାହୁଡ଼ି ଯାନ୍ତି । କଦାଚିତ୍ ବା ସହର ମଧ୍ୟରେ କିଛି ଦଙ୍ଗା ଫିସାଦ ହୋଇଥିଲେ ଦାରୋଗା ଜଣାଇ ଦିଅନ୍ତି । ସେ ଦିନକ ମେଜେଷ୍ଟର ସାହେବଙ୍କ ପୋଲସ୍ କାର୍ଯ୍ୟ ବିଷୟ ଶୁଣାଣିରେ ସମାପ୍ତ ହୋଇଯାଏ ।

ବାଲେଶ୍ୱର ଗୋଟିଏ ପ୍ରଧାନ ବନ୍ଦର ଏବଂ ବାଣିଜ୍ୟପ୍ରଧାନ ସ୍ଥାନ ବୋଲି କେବଳ ଭାରତରେ ନୁହେ, ଇଉରୋପ ଖଣ୍ଡରେ ମଧ୍ୟ ଖ୍ୟାତି ଲାଭ କରିଥିଲା । ବଙ୍ଗଦେଶକୁ ପ୍ରବେଶ କରିବା ପୂର୍ବେ ଓଲନ୍ଦାଜ, ଦିନାମାର, ଫରାସୀ, ଇଂରେଜ ପ୍ରଭୃତି ଇଉରୋପୀୟ ବଣିକ ଦଳ ଏହି ସ୍ଥାନରେ ଦୋକାନ ମେଲିଥିଲେ । ଚିରକାଳ କାହାରି ସମାନ ଯାଏ ନାହିଁ । ଉତ୍‌ଥାନ ପତନ ଜଗତର ନିୟମ । ସ୍ମରଣାତୀତ କାଳ ପୂର୍ବରୁ ଯେଉଁ ବାଲେଶ୍ୱରର ନଦୀକୂଳ ସହସ୍ର ସହସ୍ର ଲୋକ ଯୋଗେ କୋଳାହଳମୟ ହୋଇଥିଲା, ଆଜି ଯାଇ ଦେଖନ୍ତୁ, ସେ ସ୍ଥାନ ନୀରବ, ନିର୍ଜନ, ଅରଣ୍ୟମୟ, ଶ୍ମଶାନ ତୁଲ୍ୟ ନିସ୍ତବ୍ଧ । ନଦୀଟା ମଧ୍ୟ ପୋତି ହୋଇ ପଡ଼ିଲାଣି । ବାଲେଶ୍ୱରବାସୀ ଜାହାଜି, ଧୀମା ଓ ବଣିକମାନେ ନିଶ୍ଚିହ୍ନ ହୋଇଯିବାରୁ ବାଲେଶ୍ୱର ବାସୀଙ୍କ ହାତରୁ ଦେଶର ଆଭ୍ୟନ୍ତରିକ ଏବଂ ବୈଦେଶିକ ସମସ୍ତପ୍ରକାର ବାଣିଜ୍ୟ ବିଦେଶୀଙ୍କ ହସ୍ତଗତ ହୋଇ ଯାଇଅଛି ।

(ଉ. ସା. ୨୨ଶ ଭାଗ ୮ମ ସଂଖ୍ୟା)

---

## ୬
## କଚେରିରେ ଭ୍ରମଣ

ନିମକ ମାହାଲ ଉଠି ଯାଇଅଛି । ମାତ୍ର ମୋର କଚେରିକୁ ଯିବା ଆସିବା ବନ୍ଦ ହୋଇ ନାହିଁ । ପ୍ରତିଦିନ ସକାଳ ୧୦ଟା ସମୟରେ କଚେରିକୁ ଯାଏଁ । ଗୁଡ଼ାଏ ବେକାର୍ ନିଷ୍କର୍ମା ଉମେଦ୍‌ବାର ବୁଲୁଥାନ୍ତି, ମୁଁ ସେମାନଙ୍କ ସଙ୍ଗରେ ବୁଲୁଥାଏଁ । ଚାରିଟା ବାଜିଗଲେ ଘରକୁ ଫେରି ଆସେ । ସେ ସମୟରେ ଠିକ୍ ଚାରିଟା ବେଳେ କଚେରି ଭାଙ୍ଗୁଥିଲା । ସାହେବ ୧୨ଟା ଉତ୍ତାରେ ଯୋଡ଼ାକ ସମୟ ମଧ୍ୟରେ କଚେରିକୁ ଆସି ଚାରିଟା ବାଜିଗଲେ କୋଠିକୁ ଚାଲିଯାନ୍ତି, କଚେରି ଭାଙ୍ଗିଯାଏ । ସାହେବ ହାକିମମାନେ କଚେରିକୁ ଆସି ଉପରସ୍ଥ ହାକିମମାନଙ୍କୁ କମ୍ବା ବିଲାତକୁ ଚିଠି ଲେଖୁଥାନ୍ତି, ଚିଠି ଲେଖା କାର୍ଯ୍ୟ ନ ଥିଲେ ବସି ବସି ଖବରକାଗଜ ପଢ଼ୁଥାନ୍ତି । ଓଡ଼ିଆ କମ୍ବା ପାର୍ସି କୌଣସି ପ୍ରକାର ଭାଷା ଜଣା ନ ଥିବାରୁ କଚେରି ସିରସ୍ତାର ଅବସ୍ଥା କିଛି ବୁଝୁ ନ ଥିଲେ । ବାଦୀ ପ୍ରତିବାଦୀଙ୍କ ଜବାବ, ଗୁହା ଜବାନ୍‌ବନ୍ଦି, ରାଏ ଲେଖା ପ୍ରଭୃତି ସମସ୍ତ କାର୍ଯ୍ୟ ଅମଲାମାନେ କରୁଥିଲେ । ଚାରିଟା ବାଜିଗଲେ ହାକିମ ସେହି ସମସ୍ତ କାଗଜରେ ଦସ୍ତଖତ କରି ଦେଇ କୋଠିକୁ ଚାଲିଯାନ୍ତି । ସେ ସମୟରେ କଚେରିର ଅମଲାମାନଙ୍କ ଦରମା ୮୧୦୯ରୁ ଅଧିକ ନ ଥିଲା । କେବଳ ପେସ୍କାର ମାସକୁ ୮୧୫୯ ଏବଂ ସିରସ୍ତାଦାର କିଛି ବେଶି ଟଙ୍କା ଦରମା ପାଉଥିଲେ । ଅଦାଲତି କଚେରିର ଅମଲା ମାନଙ୍କ ଦରମା ଆହୁରି ଊଣା ଥିଲା । ମୋହରିର ଠାରୁ ସିରସ୍ତାଦାର ପର୍ଯ୍ୟନ୍ତ ପଦ ଅନୁସାରେ ମାସିକ ଦରମା ୮୨୪ ଠାରୁ ୮୧୦୯ ମଧ୍ୟରେ । ହେଲେ କ'ଣ ହେବ, ଅନେକ ଅମଲା ସବାରି କମ୍ବା ଯୋଡ଼ାରେ ଚଢ଼ି କଚେରିକୁ ଯିବା ଆସିବା କରୁଥିଲେ । ଅନେକ ଅମଲା ଉତ୍ତରାଧିକାରୀ ମାନଙ୍କ ପାଇଁ ଜମିଦାରୀ କିଣି ରଖି ଯାଇଅଛନ୍ତି । ଏଥିରୁ ବୁଝନ୍ତୁ, ଅମଲାମାନଙ୍କ ଆୟ ସେ ସମୟରେ କପରି ଥିଲା । ସେ ସମୟରେ ବାଲେଶ୍ୱରରେ କପଡ଼ା

ଛତା ଚଳି ନ ଥିଲା । ସମସ୍ତ ଅମଲା ତାଳପତ୍ର ଛତା ଧରି କଚେରିକୁ ଯାଉଥିଲେ । ବର୍ଷା କାଳରେ କଚେରି ବାରଣ୍ଡା ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ତାଳପତ୍ର ଛତା ଧାଡ଼ି ଧାଡ଼ି ହୋଇ ଥୁଆ ହୋଇଥାଏ । ଅମଲା ଓ ମାମଲତକାରମାନଙ୍କ ଛତାରଖା ସ୍ଥାନ ସ୍ୱତନ୍ତ୍ର ଥିଲା । ଛତାର ବିସ୍ତାର ଏବଂ ବିବିଧ ରଙ୍ଗର ଚିତ୍ର ବୈଚିତ୍ର୍ୟ ଦେଖିଲେ ଛତ୍ରାଧିକାରୀଙ୍କର ଅବସ୍ଥା ଜଣା ପଡ଼ୁଥିଲା । ଅନେକ ଅମଲା ଆପେ ଛତା ଧରି କଚେରିକୁ ଯାଉ ନ ଥିଲେ । କଚେରିକୁ ଯିବାବେଳେ ଗେରୁଆ କନାରେ ଗୋଟାଏ ବଡ଼ ବସ୍ତାନି ପିଠିରେ ବାନ୍ଧି ଆଉ ତାଳପତ୍ର ଛତାଟାଏ ବାବୁଙ୍କ ମୁଣ୍ଡ ଉପରେ ଧରି ପଛେ ପଛେ ଗୋଟାଏ ଭଣ୍ଡାରି ଧାଉଁଥାଏ । କଚେରିର ଅମଲା ମାନେ ଆପଣା ଆପଣା ଅଧିକାର ଭୁକ୍ତ ସମସ୍ତ ନଥି ଓ ଅନ୍ୟାନ୍ୟ କାଗଜ କଚେରିରେ ରଖି ଆସୁ ନ ଥିଲେ । ଗୋଟାଏ ବଡ଼ ବସ୍ତାନିରେ ବାନ୍ଧି ଘରକୁ ନେଇ ଆସୁଥିଲେ । ଯେଉଁ ଅମଲାର ଯେତେ ଉପରି ରୋଜଗାର, କଚେରି ଅମଲାଶ୍ରେଣୀ କିମ୍ବା ସମାଜରେ ତାହାର ତେତେ ସମ୍ମାନ । କରାମ ଚାକିରିର ଅର୍ଥ ଆଣ୍ଠୁକୁଡ଼ା ଚାକିରି, ଅର୍ଥାତ୍ ଦରମା ଛଡ଼ା ଆଉ ରୋଜଗାର ସେମାନଙ୍କର ନ ଥିଲା । ଘୁଷ୍ ନେବା ଅଧର୍ମର ବିଷୟ ବୋଲି ସେ ସମୟରେ କାହାରି ଜ୍ଞାନ ନ ଥିଲା । ଶିକ୍ଷା ପ୍ରଭାବରୁ ବ୍ୟଭିଚାର, ସୁରାପାନ ବାରଙ୍ଗିଣୀ କମି ଯାଇଅଛି । ଉତ୍କୋଚ ଗ୍ରହଣ ଥିଲା, ଅଛି, ଚିରକାଳ ଥିବ । ତେବେ ବର୍ତ୍ତମାନ ଫଲସୋତ ଆକାର ଧାରଣ କରିଅଛି ।

(ଉ ସା. ୨୨ଶ ଭାଗ ୮ମ ସଂଖ୍ୟା)

———

## ୭
## ବାରବାଟୀ ସ୍କୁଲରେ ଅଧ୍ୟୟନ

ବାଲେଶ୍ୱର ଗବର୍ଣ୍ଣମେଣ୍ଟ ସ୍କୁଲର ସେକେଣ୍ଡ ମାଷ୍ଟର ବାବୁ ଶିବଚନ୍ଦ୍ର ସୋମ ସେହି ସମୟରେ ସହରର ପୂର୍ବୋତ୍ତର ପ୍ରାନ୍ତ ବାରବାଟୀ ନାମକ ଗ୍ରାମରେ ଗୋଟିଏ ସାହାଯ୍ୟକୃତ ସ୍କୁଲ ସ୍ଥାପନ କଲେ । ସ୍କୁଲରେ ବଙ୍ଗଳା ଏବଂ ଓଡ଼ିଆ ଦୁଇ ଭାଷା ପଢ଼ା ହେଉଥିଲା । ସ୍କୁଲର ନାମ ବାରବାଟୀ ବଙ୍ଗୋତ୍କଳ ବିଦ୍ୟାଳୟ । ସ୍କୁଲର ବ୍ୟୟ ସକାଶେ ଅଧେ ଟଙ୍କା ବେତନରୁ ଏବଂ ଅଧେ ଟଙ୍କା ସରକାରୀ ସାହାଯ୍ୟରୁ ମିଳୁଥିଲା । ପ୍ରଥମେ ସ୍କୁଲ ସକାଶେ ସ୍ୱତନ୍ତ୍ର ଗୃହ ନ ଥିଲା । ଶିବଚନ୍ଦ୍ର ବାବୁଙ୍କ ବସା ଗୃହରେ ପ୍ରଥମେ କାର୍ଯ୍ୟାରମ୍ଭ ହୋଇଥିଲା । ବାବୁଙ୍କ ବସାର ପଛପଟକୁ ବେଢ଼େଇ ଘର ଲଗ ଲଗି ଗୋଟିଏ ମେଲାଘର ଥିଲା । ମେଲାଟିର ଲମ୍ବ ପ୍ରାୟ ପନ୍ଦର ହାତ, ଓସାର ପ୍ରାୟ ଦଶହାତ । ପ୍ରଥମେ ସ୍କୁଲର ଛାତ୍ର ସଂଖ୍ୟା ତିରିଶ ମଧ୍ୟରେ ଥିଲା । ସେ ସମୟରେ ବାଲେଶ୍ୱର ଗବର୍ଣ୍ଣମେଣ୍ଟ ଇଂରାଜୀ ସ୍କୁଲରେ ମଧ୍ୟ ଛାତ୍ର ସଂଖ୍ୟା ତିରିଶ ଚାଳିଶରୁ ଅଧିକ ନ ଥିଲା । ସ୍କୁଲରେ ସାନ ସାନ ପିଲାମାନେ ସପରେ ବସୁଥିଲେ । ଉପର ଶ୍ରେଣୀ ପିଲାମାନଙ୍କ ବସିବା ପାଇଁ ଚାରିଖଣ୍ଡ ବେଞ୍ଚ ପଡ଼ିଥିଲା । ସ୍କୁଲର ଶିକ୍ଷକ ଦୁଇଜଣଙ୍କ ମଧ୍ୟରୁ ଜଣେ ବଙ୍ଗାଳୀ, ଜଣେ ଓଡ଼ିଆ ପଣ୍ଡିତ ଥିଲେ । ଦେହ ଲଗାଲଗି ଦୁଇଖଣ୍ଡ କୁର୍ସିରେ ମାଷ୍ଟର ଦୁଇଜଣ ବସୁଥିଲେ ।

ଅକାରଣ କଚେରୀରେ ବୁଲିବାଟା ମୋତେ ଭଲ ଲାଗୁ ନ ଥିଲା । କାହାରିକୁ ନ ପଚାରି ଆପେ ଯାଇଁ ସ୍କୁଲରେ ନାମ ଲେଖାଇଲି । ମାତ୍ର ବିଷମ ଅସୁବିଧା ଉପସ୍ଥିତ—ଏକକାନିଆ ସ୍କୁଲକୁ ଯିବାର ନିୟମ ନ ଥିଲା । କାନ୍ଧରେ ଖଣ୍ଡିଏ ଚାଦର ପକାଇ ଯିବାର କଥା । ଠାକୁର ମାଙ୍କୁ ସବୁ କଥା କହିଲି । ସେ ତାଙ୍କ ପିନ୍ଧିବା ଖଣ୍ଡିଏ ତସର ଧୋତି ଏବଂ କାନ୍ଧରେ ପକାଇ ଯିବା ସକାଶେ ଖଣ୍ଡିଏ ଚଦର ସଂଗ୍ରହ କରି ଦେଲେ । ସେହି ସମୟରେ ମୋ ଭାଇ ନିତ୍ୟାନନ୍ଦ ଭଲ ଯୋଡ଼ି ପିନ୍ଧି ଦେହରେ ମଖମଲ କିମ୍ବା ମୂଲ୍ୟବାନ ସାଟିନ୍

ଅଙ୍ଗା ଲଗାଇ ଏବଂ ଶୀତ ଦିନେ ଶାଲ ରୁମାଲଯୋଡ଼ାଇ ହୋଇ ସ୍କୁଲକୁ ଯାଉଥାନ୍ତି । କେତେକ ମାସ ଉତ୍ତାରେ ଠାକୁର ମା ବିଶେଷରୂପେ ଅନୁରୋଧ କରିବାରୁ ବଡ଼ବାପା ମତେ ଗୋଟିଏ ଯଥାଳୁଗା କିଣି ଦେଇଥିଲେ । ସ୍କୁଲର ଛାତ୍ରଦତ୍ତ ବେତନ ମାସକୁ ଅଣାକଠାରୁ ଚାରିଅଣା ପର୍ଯ୍ୟନ୍ତ ଥିଲା । ମୁଁ ପ୍ରଥମ ଶ୍ରେଣୀରେ ପଢ଼ୁଥିଲି, ମୋର ଦେୟ ବେତନ ମାସକୁ ଚାରିଅଣା ଥିଲା । ମାସ ଶେଷରେ ପଣ୍ଡିତେ ବେତନ ମାଗିଲେ । ସେ ସମୟରେ ଠିକ୍ ମାସ ଶେଷରେ ବେତନ ଦେବାକୁ ହେଉ ନ ଥିଲା—ତିନି ଚାରି ମାସ ଉତ୍ତାରେ ଏକ ସଙ୍ଗରେ ଦେଲେ ଚଳେ । ମାସ ଶେଷରେ ପଣ୍ଡିତେ ଥରେ ଦରମା ମାଗନ୍ତି । ଆଜି କାଲି ବୋଲି ଟାଳମଟାଳ କରି ମାସ କଟାଇ ଦିଏଁ । କାରଣ ଠିକ୍ ମାସ ଶେଷରେ ବେତନ ଗଣିଦେବା ଠାକୁର ମା ପକ୍ଷରେ ସୁବିଧାଜନକ ନ ଥିଲା । ଟଙ୍କା ପଇସା ସଂଗ୍ରହ ବିଷୟରେ ଠାକୁର ମା ନିତାନ୍ତ ଉଦାସୀନା ଥିଲେ—କଦାଚିତ୍ ଟଙ୍କାଟାଏ; ପଇସାଟାଏ ତାଙ୍କ ହସ୍ତଗତ ହେଲେ ସେ ଚାଳରେ ଖୋସି ଦେଇଥାନ୍ତି କିମ୍ବା ଘର ପଛପଟ ଓଳିତଳେ ପୋତି ପକାଇଥାନ୍ତି । କେହି ମାଗିଲେ କିମ୍ବା କିଛି ପ୍ରୟୋଜନ ହେଲେ ତତ୍‌କ୍ଷଣାତ୍ ବାହାର କରି ଦିଅନ୍ତି । ଘରେ ହେଉ ବା ଜ୍ଞାତି କୁଟୁମ୍ବ ମଧ୍ୟରେ ହେଉ—ଲୋକସେବାରେ ଲାଗି ରହିଥାନ୍ତି । ସେହି ଲୋକସେବାହିଁ ତାଙ୍କ ଜୀବନର ସାରବ୍ରତ ଥିଲା ।

ସେ ସମୟରେ ଓଡ଼ିଆରେ ବର୍ଣ୍ଣବୋଧକ, ନୀତିକଥା ଚିନ୍ତାଭଗ ଏବଂ ହିତୋପଦେଶ ଏହି କେତେଖଣ୍ଡ ମାତ୍ର ପୁସ୍ତକ ଛାପା ହୋଇଥିଲା । ତଳଶ୍ରେଣୀଠାରୁ ଉପର ଶ୍ରେଣୀ ପର୍ଯ୍ୟନ୍ତ ସେହି କେତେଖଣ୍ଡ ମାତ୍ର ପାଠ୍ୟ ପୁସ୍ତକ ରୂପେ ନିରୂପିତ ଥିଲା । ଆମ୍ଭମାନଙ୍କ ସ୍କୁଲର ଓଡ଼ିଆ ପଣ୍ଡିତେ ସେହି କେତେ ଖଣ୍ଡ ପୁସ୍ତକ, ଫେଡ଼ ମିଶା, ଅଙ୍କ ଗୁଣା, ନଅ ଭିଆଣ, କୁଟା ଝସ୍ପି ବଝସ୍ପି ପ୍ରଭୃତି ଅଙ୍କ ପାଠମାନ ପଢ଼ାଉ ଥିଲେ । ପଣ୍ଡିତଙ୍କ ନାମ ହରେକୃଷ୍ଣ ପାଣିଗ୍ରାହୀ, ନିବାସ ବର୍ତ୍ତମାନ ବାଲେଶ୍ୱର ରେଲଷ୍ଟେସନ ନିକଟ ପଶ୍ଚିମ ପ୍ରାନ୍ତ ଶୋଭାରାମପୁର ନାମକ ଗ୍ରାମରେ । ସେ ସ୍କୁଲର ଛାତ୍ରମାନଙ୍କୁ ଏହିପରି ପଢ଼ାଉ ଥିଲେ—

ଛାତ୍ରମାନେ ଛିଡ଼ା ହୋଇ ପୁସ୍ତକରୁ ପାଠ୍ୟ ବିଷୟଟି ଥରେ ଥରେ ପଢ଼ିଯାଇ ବସିଲା ଉତ୍ତାରେ ପଣ୍ଡିତେ ଆପେ ଥରେ ପଢ଼ନ୍ତି । ଯଥା :—କୌଣସି ଦିନରେ ଗୋଟିଏ କାକ ଖଣ୍ଡିଏ ମାଂସ ମୁଖରେ ଧରି ଗୋଟାଏ ବୃକ୍ଷଡାଳରେ ବସିଥିଲା । ଏମନ୍ତ ସମୟରେ ଗୋଟାଏ ଶୃଗାଳ ସେହି ବୃକ୍ଷମୂଳରେ ଉପସ୍ଥିତ ହୋଇ ମାଂସ ଖଣ୍ଡ ଖାଇବା ଆଶାରେ କହିଲା, "ହେ କାକ, ତୁମ୍ଭେ ଦେଖିବାକୁ ବଡ଼ ସୁନ୍ଦର —।"

ପଣ୍ଡିତେ ପଢ଼ିସାରି ଏହିପରି ଅର୍ଥ ବୁଝାଇ ଦିଅନ୍ତି—"କୌଣସି ଦିନରେ—କି କେହି ଅହ୍ନରେ, ଗୋଟିଏ କାକ—କି ଏକଗୋଟି ବାୟସ, ଖଣ୍ଡିଏ ମାଂସ—କି ଖଣ୍ଡିଏ ପିଶିତ ପଳ, ମୁଖରେ ଧରି—କି ବଦନରେ ଧାରଣ କରି, ଗୋଟାଏ ବୃକ୍ଷ—କି ଏକ ଗୋଟା ମହୀରୁହ; ଡାଳରେ—କି ଶାଖାରେ, ବସିଥିଲା—କି ଉପବେଶନ କରିଥିଲା, ଏମନ୍ତ ସମୟରେ—କି ଏ ପ୍ରକାର କାଳରେ, ଗୋଟାଏ ଶୃଗାଳ—କି ଏକଗୋଟା ଜମ୍ବୁକ, ସେହି—କି ଉକ୍ତ, ବୃକ୍ଷ ମୂଳରେ—କି ତରୁ ତଳରେ, ଉପସ୍ଥିତ ହୋଇ—କି ପହୁଞ୍ଚିଯାଇ, ମାଂସ ଖଣ୍ଡ—କି ପିଶିତ ପଳ ଖଣ୍ଡ, ଖାଇବା—କି ଭୋଜନ କରିବା, ଲୋଭରେ—କି ଲାଳସାରେ, କହିଲା—କି ବଚନ ବୋଇଲା, ହେ—କି ସମ୍ବୋଧନ, କାକ—କି ବାୟସ, ତୁମ୍ଭେ—କି ଯୁଷ୍ମଦ, ଦେଖିବାକୁ—କି ଦର୍ଶନ କରିବାକୁ, ବଡ଼—କି ବୃହତ୍, ସୁନ୍ଦର—କି ଶୋଭବନ୍ତ, ଇତ୍ୟାଦି ।"

ପଣ୍ଡିତ ହରେକୃଷ୍ଣ ପାଣିଗ୍ରାହୀ ସର୍ବଦା ଛାତ୍ର-ମାନଙ୍କଠାରେ ପ୍ରକାଶ କରୁଥାନ୍ତି ଯେ, ତାଙ୍କପରି ପଣ୍ଡିତ ବାଲେଶ୍ୱର ଜିଲ୍ଲାରେ କେହି ନାହିଁ । ସେ ଅଭିଧାନ ବ୍ୟାକରଣ ପଢ଼ିଥିଲେ ବୋଲି କହୁଥାନ୍ତି ଏବଂ ଲୀଳାବତୀ ସୂତ୍ର ତାଙ୍କୁ ଜଣା । ଅବଧାନଙ୍କ ଚାଟଶାଳୀରେ ମାଟିବଂଶ ଓଝାମାନଙ୍କୁ ଲୀଳାବତୀ ସୂତ୍ର ଜଣା ବୋଲି ଶୁଣିଥିଲି । ଲୀଳାବତୀ ସୂତ୍ର ଜାଣିବା ଲୋକେ କେଉଁ ଗଛରେ କେତେ ପତ୍ର ଏବଂ ଉଡ୍ଡୀୟମାନ ପକ୍ଷିଦଳର ସଂଖ୍ୟା ବୋଲି ପାରନ୍ତି । ଲୀଳାବତୀ ସୂତ୍ର ଶିଖିବାକୁ ଅନେକ ଦିନରୁ ମୋର ଇଚ୍ଛା ଥିଲା । ବର୍ତ୍ତମାନ ଅନେକ ଦିନ ପର୍ଯ୍ୟନ୍ତ ଭକ୍ତି ଏବଂ ବିନୟ ସହିତ ଉପାସନା କରିବାରେ ପଣ୍ଡିତ ପାଣିଗ୍ରାହୀଏ ମୋତେ ଲୀଳାବତୀ ସୂତ୍ର ଶିଖାଇ ଦେବାକୁ ସମ୍ମତ ହେଲେ । ତାଙ୍କ ଘରଠାକୁ ଗଲେ ମୋତେ ଶିଖାଇ ଦେବେ, ଏହିପରି କଥା ସ୍ଥିର ହେଲା । ଆମ୍ଭମାନଙ୍କ ଘରଠାରୁ ପାଣିଗ୍ରାହୀଙ୍କ ଗ୍ରାମ ଶୋଭାରାମପୁର ପ୍ରାୟ ଦୁଇ ମାଇଲ ଦୂର । ଖରାଦିନଆ ସକାଳ ସ୍କୁଲ—ସ୍କୁଲ ବାହୁଡ଼ା ଘରେ ଭାତ ଖାଇ ସେହି ଖରାଏ ଖରାଏ ପଣ୍ଡିତଙ୍କ ଘରଠାକୁ ଯିବାସକାଶେ ବାହାରି ପଡ଼େଁ । ଗୋଡ଼ରେ ଜୋତା କି ମୁଣ୍ଡ ଉପରେ ଛତା ନାହିଁ । ସେଥିପ୍ରତି ଦୃଷ୍ଟି ନ ଥାଏ, କି ପ୍ରକାରେ ଲୀଳାବତୀସୂତ୍ରଟା ପଢ଼ି ପକାଇବି, ଏତିକ ମାତ୍ର ଇଚ୍ଛା । ପଣ୍ଡିତଙ୍କ ଘରେ ପହଞ୍ଚିବାକୁ ଦିନ ପ୍ରାୟ ଗୋଟାଏ ବାଜିଯାଏ । ପଣ୍ଡିତେ ଘର ମଧ୍ୟରେ ଶୋଇଥାନ୍ତି, ମୁଁ ତାଙ୍କ ପିଣ୍ଡାରେ ବସି ରହିଥାଏଁ । ତାଙ୍କ ନିଦ୍ରା ଭାଙ୍ଗିବାକୁ ତିନଟା ବା ଚାରିଟା ବାଜି ଯାଇଥାଏ । ପଣ୍ଡିତେ ନିଦ୍ରାରୁ ଉଠି କିଛି ପଖାଳ ଖାଇ ତାଳପତ୍ର ଛତାଟାଏ କାଖରେ ପକାଇ ବାଉଁଶ ଠେଙ୍ଗାଟାଏ ହାତରେ ଧରି ବିଲରେ ମୂଲିଆମାନଙ୍କ କାର୍ଯ୍ୟ ଦେଖିବା ସକାଶେ ବାହାରି ପଡ଼ନ୍ତି । ବିଲ ତାଙ୍କ ଘରଠାରୁ ପ୍ରାୟ ଅଧମାଇଲ ବାଟ । ବିଲରେ ମୂଲିଆ ମାନଙ୍କ କାର୍ଯ୍ୟ ତଦାରଖ କରି ସାରିବାକୁ ପ୍ରାୟ ଅଧଘଣ୍ଟାଏ କାଳ ବିତିଯାଏ । ତହିଁ ଉତ୍ତାରେ ଗୋଟାଏ ହିଡ଼ ଉପରେ ବସି ମୋତେ ଅନାଇ କହନ୍ତି—ହିଁ ଲୀଳାବତୀ ସୂତ୍ର ଶିଖିବ ପରା ? ଲେଖ – ଲେଖ । ମୁଁ ତ ରଙ୍କ ନିଧି ପାଇଲପରି ତାଙ୍କ ଆଗ ହିଡ ମୂଳରେ ବସିଯାଏଁ । ଲକ୍ଷାବଧି ଗୋଟାଏ ଅଙ୍କ ଡାକ ଦେଇ ଏହି ଅଙ୍କଟାକୁ ସେହିପରି ଲମ୍ବ ଗୋଟାଏ ଅଙ୍କ ଡାକ ଦେଇ କହନ୍ତି, ଏହି ଅଙ୍କରେ ଗୁଣ; ଆଉ ଗୋଟାଏ ଅଙ୍କ ଡାକଦେଇ କହନ୍ତି, ସେଥିରୁ ଫେଡ଼ିଦିଅ; ଆଉ ଗୋଟାଏ ଅଙ୍କ ଡାକ ଦେଇ କହନ୍ତି, ଏଇଟା ସେଥିରେ ମିଶାଇ ଦିଅ । ଅଙ୍କଟା କସୁଁ କସୁଁ ସଞ୍ଜ ଅନ୍ଧକାର ହୋଇଯାଏ, ସେଦିନ ଘରକୁ ଚାଲି ଆସେଁ । ଏହିପରି ଗୁଣନ, ଫେଡ଼ାଣ ପ୍ରାୟ ମାସେ ଯାଏ ଚାଲିଲା । କିଛି ବୁଝି ପାରୁନାହିଁ, ତଥାପି ଉତ୍ସାହ ସହିତ ପ୍ରତିଦିନ ଖରାବେଳେ ଧାଇଁଥାଏଁ । ମନରେ ଦୃଢ଼ ବିଶ୍ୱାସ ଥାଏ, ଏଥି ମଧ୍ୟରେ ମୂଳଅଙ୍କ ପ୍ରଚ୍ଛନ୍ନ ଭାବରେ ରହିଅଛି, ମୋହର ବୁଦ୍ଧିର ଅଳ୍ପତା ହେତୁରୁ ବୁଝି ପାରୁନାହିଁ । ପଣ୍ଡିତଙ୍କୁ ପଚାରିଲେ ସେ କହନ୍ତି, ଏହିପରି ଅଙ୍କ କଷିଯାଅ, ପଛକେ ସୂତ୍ର ବାହାରି ପଡ଼ିବ । ପଣ୍ଡିତେ ପ୍ରତିଦିନ ଅଙ୍କ ଦେଇ ଦେଇ ଆପେ ହାଲିଆ ହୋଇ ପଡ଼ିଲେଣି । କିଛି କଥା ପଚାରିଲେ ବିରକ୍ତ ହୁଅନ୍ତି, ଦିନେ ଦିନେ ଅଙ୍କ ଦିଅନ୍ତି ନାହିଁ । ମୁଁ ପଚାରିଲେ ନ ଶୁଣିଲା ପରି ହୋଇ ଚାଲିଯାନ୍ତି । ଶେଷକୁ ମୁଁ କ୍ଳାନ୍ତ ହୋଇ ପଡ଼ିଲି, ମନ ମଧ୍ୟରେ କେମନ୍ତ ଗୋଟାଏ ଅବିଶ୍ୱାସ ଦ୍ୱିଧା ଜାତ ହେଲା । ତାଙ୍କ ପାଖକୁ ଆଉ ଗଲି ନାହିଁ ।

ଏହି ଘଟନାର ଅନେକ ବର୍ଷ ଉତ୍ତାରେ ହିନ୍ଦୀରେ ଛାପା ଖଣ୍ଡିଏ ଲୀଳାବତୀ ସୂତ୍ର ଆଣାଇ ମନୋଯୋଗ ସହିତ ସମସ୍ତଟା ପଢ଼ିଲି । କୌଣସି ପ୍ରକାର ଗଣନା ନ କରି ଗଛପତ୍ରର ସଂଖ୍ୟା ସ୍ଥିର କରିବା ଅସମ୍ଭବ । ମୋହର ବୁଦ୍ଧିର ଅଳ୍ପତା ବିଷୟ ସ୍ମରଣକରି ହସିଲି ।

ଆମ୍ଭମାନଙ୍କ ସ୍କୁଲର ପ୍ରଥମ ଶ୍ରେଣୀରେ ବଙ୍ଗଳା ପାଠ୍ୟପୁସ୍ତକ ଥିଲା ସମ୍ବାଦସାର, ପିଆର୍ସ ସାହେବଙ୍କ ଭୂଗୋଳ, କଥ୍ ସାହେବଙ୍କ ବ୍ୟାକରଣ ଏବଂ ଅଙ୍କ । ସେ ସମୟ ପର୍ଯ୍ୟନ୍ତ ବଙ୍ଗାଳମାନେ ସ୍କୁଲ ପାଠ୍ୟ ପୁସ୍ତକ ଲେଖି ଜାଣିନଥିଲେ । ସରକାର ପାରତୋଷିକ ଘୋଷଣା କରିବାରୁ ମନୋରଞ୍ଜନ ଇତିହାସ, ହସ୍ତି ବିଷୟକ ଇତିହାସ, ଉଷ୍ଟ୍ର ବିଷୟକ ଇତିହାସ ଏହି କେତେଖଣ୍ଡି ଅତି କ୍ଷୁଦ୍ର ପୁସ୍ତକ ରଚିତ ବା ଅନୁବାଦିତ ହୋଇଥିଲା ।

ବଙ୍ଗାଳୀ ପଣ୍ଡିତ ବଙ୍ଗଳା ପୁସ୍ତକସବୁ ପଢାଉଥିଲେ । ବର୍ଷ ଶେଷରେ ଆମ୍ଭମାନଙ୍କର ପରୀକ୍ଷା ହେଲା । ଛାତ୍ରମାନେ ଭୁଲ୍ ଉତ୍ତର ଦେବାକୁ ଲାଗିଲେ । ମାତ୍ର ସମସ୍ତଙ୍କର ଭୁଲ୍ ସମାନ ରୂପ ହେବାରୁ ପରୀକ୍ଷକମାନେ ପଣ୍ଡିତ ମହାଶୟଙ୍କ ଯୋଗ୍ୟତା ବିଷୟ ସହଜରେ ଜାଣି ପାରିଲେ । ପରୀକ୍ଷା ଶେଷରେ ଅଳ୍ପଦିନ ଉତ୍ତାରେ ବଙ୍ଗଳା ପଣ୍ଡିତ ସ୍କୁଲରୁ ଅଦୃଶ୍ୟ ହୋଇଯିବାରୁ ହୁଗୁଳି ନର୍ମାଲ ସ୍କୁଲରୁ ଉତ୍ତୀର୍ଣ୍ଣ ଅନ୍ୟ ଜଣେ ପଣ୍ଡିତ ହୋଇ ଆସିଲେ । ଏହି ସମୟରେ ଅନେକ ଗୁଡ଼ାଏ ବଙ୍ଗଳା ପାଠ୍ୟପୁସ୍ତକ ରଚିତ ଏବଂ ଅନୁବାଦିତ ହୋଇଥିଲା ।

ପରୀକ୍ଷା ଶେଷରେ ଆମ୍ଭମାନଙ୍କ ପ୍ରଥମ ଶ୍ରେଣୀରେ ପାଠ୍ୟପୁସ୍ତକ ସ୍ଥିର ହେଲା—କାଦମ୍ବରୀ, ମାର୍ଶମାନ୍ ବଙ୍ଗଳା ଇତିହାସ, ଭୂଗୋଳ ଓ ଗଣିତ ସାର । ଓଡ଼ିଆ ପୁସ୍ତକ ହିତୋପଦେଶ ।

ଏହିଠାରେ ମୋହର ସ୍କୁଲରେ ପଢ଼ା ଶେଷ ହୋଇଥାନ୍ତା । କାରଣ ପ୍ରଥମ ଶ୍ରେଣୀରେ ଯେଉଁ ସମସ୍ତ ପାଠ୍ୟ ପୁସ୍ତକ ନିରୂପିତ ହେଲା, ସେଥିମଧ୍ୟରୁ ଖଣ୍ଡିଏ ମଧ୍ୟ କିଣିବାର ମୋହର ଶକ୍ତି ନ ଥିଲା । ମୁଁ ପଢ଼ିପାରିବି ନାହିଁ, ଏହି କଥା ନିଶ୍ଚୟ ଜାଣି ଘରେ ଯାଇ କ୍ଷୁନ୍ନ ହୋଇ ବସିଲି, ସ୍କୁଲକୁ ଗଲି ନାହିଁ; କିନ୍ତୁ ଦୟାମୟ ପ୍ରଭୁ ମୋ ସମ୍ବନ୍ଧରେ ସେ ସମୟରେ ଅନ୍ୟପ୍ରକାର ବିଧାନ କଲେ । ମୁଁ ଗତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପ୍ରଥମ ଶ୍ରେଣୀର ପ୍ରଥମ ପୁରସ୍କାର ପ୍ରାପ୍ତ ହେଲି । ପ୍ରାପ୍ତ ପୁରସ୍କାର ମଧ୍ୟରେ ମୋହର ପାଠ୍ୟପୁସ୍ତକ ସବୁ ଗୁଡ଼ିକ ଥିଲା । ସ୍କୁଲରେ ପଢ଼ିବାକୁ ଲାଗିଲି । ପରୀକ୍ଷା, ପାସ୍‌ପୁରସ୍କାର ପ୍ରାପ୍ତି ଏ ସମସ୍ତ ଜୀବନରେ ନୂତନ କଥା ଶୁଣି ଖୁବ୍ ଉତ୍ସାହ ସହିତ ପଢ଼ିବାକୁ ଲାଗିଲି । ନୂତନ ପଣ୍ଡିତ ଜଣେ ଶିକ୍ଷିତ ଯୋଗ୍ୟ ଲୋକ । ତାଙ୍କ ପଢ଼ାଇବା ରୀତି ଦେଖି ମନ ମଧ୍ୟରେ ଖୁବ୍ ଆନନ୍ଦ ଜାତ ହେଉଥାଏ । ପ୍ରକୃତ ପକ୍ଷରେ ଏହି ସମୟରେ କିଞ୍ଚିତ୍ ଶିଖିବାକୁ ସୁଯୋଗ ପାଇଥିଲି । ସେ ସମୟରେ ମୋହର ବୟସ ଚଉଦ ପନ୍ଦର ମଧ୍ୟରେ ।

ସେହି ବାରବାଟୀ ଗ୍ରାମରେ ଜଣେ ତେଲଙ୍ଗୀ ଜମିଦାର ଥିଲେ । ନାମ ଇଙ୍କାଇଲୁ ଶିବପ୍ରସାଦ ଭୂୟାଁ । ତାଙ୍କର ଏକମାତ୍ର ପୁତ୍ର ରଘୁନାଥ ମୋର ସମପାଠୀ । ରଘୁନାଥ ବାବୁ ସ୍କୁଲରେ ଏବଂ ତାଙ୍କ ଘରେ ନିଯୁକ୍ତ ଜଣେ ପଣ୍ଡିତଙ୍କ ନିକଟରେ ଅମରକୋଷ ଅଭିଧାନ ଏବଂ ମୁଗ୍ଧବୋଧ ବ୍ୟାକରଣ ପଢୁଥିଲେ । ମୁଁ ମଧ୍ୟ ତାଙ୍କ ସହିତ ସଂସ୍କୃତ ପଢ଼ିବାକୁ ଲାଗିଲି । ଏହି ସମୟରେ ମୁଁ ଖୁବ୍ ଆନନ୍ଦ ଓ ଉତ୍ସାହ ସହିତ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ପଢ଼ାରେ ଲାଗିଥାଏଁ । ରାତିରେ ପଢ଼ିବାର ଉପାୟ ନ ଥିଲା । ଭାଇ ନିତ୍ୟାନନ୍ଦ ଆଲୁଅ ଜାଳି ବସି ପଢୁଥାନ୍ତି । ମୋତେ ପାଖରେ ବସାଇ ଦିଅନ୍ତି ନାହିଁ । ସ୍ୱତନ୍ତ୍ର ଆଲୁଅ ଜାଳି ପଢ଼ିଲେ ବଡ଼ମା ଖପା ହୋଇଯାନ୍ତି । ଏହି ଭାବରେ ଛମାସ ମାତ୍ର ପାଠଗୃହଲିଛି, ଦାରୁଣ ଦୁର୍ଭାଗ୍ୟର କାରଣ ଉପସ୍ଥିତ ହେଲା । ମୋ ଉପରେ ଚାରିପାଞ୍ଚମାସର ଛାତ୍ରଦତ୍ତ ବେତନ ସ୍କୁଲର ପାଉଣା ହୋଇଗଲାଣି । ମାସକୁ ଚାରିଅଣା ପଇସା କାହୁଁ ପାଇବି ? ଠାକୁର ମା ତ ଏକପ୍ରକାର ସନ୍ନ୍ୟାସିନୀ, ଉଦାସୀନା । ତାଙ୍କୁ ବେତନ ସମ୍ବନ୍ଧରେ

କିଛି କଥା କହିବାକୁ ଇଚ୍ଛା ହେଲା ନାହିଁ । ତାଙ୍କର ତ ଗୋଟିଏ କଥା—"ପାଠ କଣ ହେବ ରେ - ବଞ୍ଚି ବର୍ତ୍ତି ପଢ଼ିଥା, କେତେ ଟଙ୍କା ରୋଜଗାର କରି ଆଣିବୁ ।" ମନରେ କଲି, ସ୍କୁଲରେ ପଢ଼ା ମୋର ଏହି ଶେଷ ।

( ଉ: ସା:— ଦ୍ୱାବିଂଶ ଭାଗ—୯ମ ସଂଖ୍ୟା )

———

## ୮
## ମୋର ଚାକିରି

ସ୍କୁଲରେ ଆଉ ପଢ଼ି ପାରିବି ନାହିଁ, ଏହି କଥା ମନ ମଧ୍ୟରେ ସ୍ଥିର କରି ତୁନି ହୋଇ ଘରେ ବସିଥିଲି ; ମାତ୍ର ଅଧିକ ଦିନ ସେ ଭାବରେ ରହିବାକୁ ହୋଇ ନ ଥିଲା । ସେହି ବାରବାଟୀ ସ୍କୁଲର ସମ୍ପାଦକ ବାବୁ ଶିବଚନ୍ଦ୍ର ସୋମ ମୋତେ ଡକାଇ ନେଇ ସ୍କୁଲର ତୃତୀୟ ଶିକ୍ଷକ ପଦରେ ନିଯୁକ୍ତ କଲେ । ମାସିକ ବେତନ ଅଢ଼େଇ ଟଙ୍କା । ଠାକୁର ମା ମୋହର ଚାକିରି କଥା ଶୁଣି ଆନନ୍ଦରେ ଅସ୍ଥିର । ଘରଭିତର ବରନ୍ଦାରେ ଏଣେ ତେଣେ ଧାଇଁବାକୁ ଲାଗିଲେ । ଆନନ୍ଦର ବେଗ କିଛି ଊଣା ପଡ଼ିବାରୁ ମୋତେ ଅନାଇ କହିଲେ, "ଯା ତୁ ରୋଜଗାର କରି ପାରିଲୁଣି, ଏବେ ରକ୍ଷା ପାଇଯିବୁ ଯେ । ମାସକୁ ଅଢ଼େଇ ଟଙ୍କା ଦରମା, କଣ କହୁଛୁରେ—ଆରେ ତୁ ବଡ଼ ହୋଇଗଲେ ଆହୁରି ଢେର ଟଙ୍କା ରୋଜଗାର କରି ପାରିବୁ ଯେ ।" ଠାକୁରମାଙ୍କ ଆଶୀର୍ବାଦ ବାଣୀ ମୋ ଜୀବନରେ ଶୀଘ୍ର ସଫଳ ହୋଇଥିଲା—ଦୁଇମାସ ମାତ୍ର ମାସିକ ଦରମା ଅଢ଼େଇଟଙ୍କା ହିସାବରେ ପାଇ-ଥିଲି । ତତ୍ପଶ୍ଚାତ୍ ମାସକୁ ଚାରିଟଙ୍କା ହିସାବରେ ପ୍ରାପ୍ତ ହେବାକୁ ଲାଗିଲି । ସେ ସମୟରେ ମାସିକ ଚାରିଟଙ୍କା ଦରମାର ଚାକିରି ବା ଚାକିରୀ ବୋଲି ଗଣନା ମଧ୍ୟରେ ଆସୁଥିଲା । ସେ ସମୟରେ ଦେୱାନୀ ଅଦାଲତରେ ଅମଲା ମାନଙ୍କ ଦରମା ମାସିକ ତିନିଟଙ୍କା ଠାରୁ ଦଶଟଙ୍କା ଯାଏ ଥିଲା । କେବଳ ସିରସ୍ତାଦାରଙ୍କ ଦରମା ମାସକୁ ଦଶଟଙ୍କା ମାତ୍ର ଥିଲା । ସେ ସମୟରେ ତେତିକି ମାତ୍ର ଦରମାରେ ଲୋକେ ବେଶ୍ ସୁଖ ସ୍ୱାଚ୍ଛନ୍ଦ୍ୟରେ ଚଳୁଥିଲେ । କେବଳ ଚଳିଯିବା କଥା ନୁହେଁ, ଉତ୍ତରାଧିକାରୀମାନଙ୍କ ସକାଶେ କୋଠାବାଡ଼ି ରଖି ଯାଇଅଛନ୍ତି । ସେ ସମୟରେ ହାକିମମାନେ କଚେରି ଭିତରେ ସିରସ୍ତାର କଥା କିଛି ବୁଝୁ ନ ଥିଲେ । ସବୁ-କାର୍ଯ୍ୟ ଅମଲା ମାନଙ୍କ ଜିମା ଥିଲା । ଏଥିକୁ ଉପରି ରୋଜଗାର ବାଟ ବେଶ ପରିଷ୍କାର ଥିଲା । ଏଣେ ସାଂସାରିକ ବ୍ୟୟ ଖୁବ ଅଳ୍ପ । ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ଖୁବ ସୁଲଭ ଥିଲା । ଅପ୍ରାସଙ୍ଗିକ ହେଲେ ମଧ୍ୟ ସେ ସମୟର ଦ୍ରବ୍ୟାଦିର ଦର ଦାମ ବିଷୟ ଉଲ୍ଲେଖ କରିବାକୁ ଇଚ୍ଛା କରେଁ ।

ସେ ସମୟରେ ଚାଉଳ ଟଙ୍କାକୁ ଦେଢ଼ ମହଣ
ବିରି ମହଣ ଟ୦।
ମୁଗ ,, ଟ୦।୵
ହରଡ଼ ,, ଟ୦।୵
ତେଲ ଟଙ୍କାକୁ ସାତସେର
ଘିଅ ,, ତିନିସେର

ମାଛ ଓଜନରେ ବିକି ହେଉ ନ ଥିଲା, ମାତ୍ର ଅନୁମାନ, ପଇସାକୁ ସେରେଠାରୁ ଦୁଇସେର । ପନିପରିବା ଖୁବ ଶସ୍ତା, ପୁଣି ଅଧିକାଂଶ ଲୋକଙ୍କୁ କିଣିବାକୁ ହେଉ ନ ଥିଲା; ଲୋକେ ଆପଣା ଆପଣା ବାଡ଼ିରୁ ପାଉଥିଲେ । ଦେଶୀ ଲୁଗା ଖୁବ ଶସ୍ତା, ପୁଣି କାଟ ଛାଟ ଲୁଗାର ବହୁତ ଚଳନ ନ ଥିଲା । ଦୁଇଖଣ୍ଡ ଲୁଗାରେ ସମସ୍ତଙ୍କର ଚଳିଯାଉଥିଲା । କେବଳ ଅମଲା ଏବଂ ବଡ଼ ବଡ଼ ଦରବାରୀ ଲୋକଙ୍କ ସକାଶେ ଗୋଟାଏ ଅଙ୍ଗା ଏବଂ ଗୋଟାଏ ଗୋଟାଏ ଚପକନ ଦରକାର ହେଉଥିଲା । ବୋତାମର ନାମ କେହି ଶୁଣି ନ ଥିଲେ । ଅଙ୍ଗା ବା ଚପକନରେ ଚାରି ଚାରି ଖଣ୍ଡ ବନ୍ଧନୀ ଦଉଡ଼ି ଏବଂ ବେକ ପାଖରେ ଗୋଟାଏ ଗୋଟାଏ ଘୁଣ୍ଡି

ଲାଗିଥାଏ । ଅମଲା ଆଉ ବଡ଼ ଲୋକ ବାଲେଶ୍ୱରୀ ପାଚଲ ଲୁଗା ପିନ୍ଧୁଥିଲେ । ଆଉ ଲୋକେ, ବିଶେଷରେ ମଫସଲବାସୀ ସମସ୍ତ ଗୃହୀ ଲୋକେ ଅରଟ କଟା ସୂତାରେ ବୁଣା ଲୁଗା ପିନ୍ଧୁଥିଲେ । ବଜାରରେ ଅଳ୍ପ ମାତ୍ର ଲୁଗା ଦୋକାନ ଥିଲା । ସୂତା କାଟିବା ନିମନ୍ତେ ଯେଉଁମାନଙ୍କ ଘରେ ମାଇପେ ନ ଥାନ୍ତି, ସେହିମାନେ କେବଳ ବଜାରରୁ ଲୁଗା କିଣୁ ଥିଲେ । କଟକ ଜିଲ୍ଲା ବାଲୁବିସି ପ୍ରଗନାରୁ ଲୁଗା ବିକ୍ରୟ ନିମନ୍ତେ ବାଲେଶ୍ୱରକୁ ଆସୁଥିଲା । ସେ ସମୟରେ ବାଲେଶ୍ୱର ସକାଶେ କଟକ ଜିଲ୍ଲାର ବାଲୁବିସି ପ୍ରଗନା ମାଞ୍ଚେଷ୍ଟର ଥିଲା । ମଫସଲବାସୀ ଲୋକେ ପ୍ରାୟ ଲୁଗା କିଣୁ ନ ଥିଲେ । ସମସ୍ତଙ୍କର କପା ଗଛ ଥାଏ । କପା ବିଲରୁ ତୋଳା ହୋଇ ଆସିଲେ ଘରର ଲୋକ ଲହାଜରେ ଘରର କର୍ତ୍ତା ମାଇକିନିଆ ମାନଙ୍କୁ ତୁଳା ବାଣ୍ଟି ଦିଅନ୍ତି । ପ୍ରତ୍ୟେକ ମାଇକିନିଆଙ୍କର ଗୋଟାଏ ଗୋଟାଏ ଅରଟ ଥାଏ । ସୂତା କଟା ହୋଇଗଲେ ତନ୍ତୀ ବାଣ ନେଇ ସେହି ସୂତାରେ ଲୁଗା ବୁଣି ଦିଏ । ବାଣି ସତରିଚର ହାତକୁ ପଇସାଏ ଲେଖାଏ ଥିଲା । ସହରବାସୀ ବଡ଼ ବଡ଼ ଲୋକେ ଶୀତକାଳରେ କେବଳ ଗୋଟାଏ ଅଙ୍ଗା ଦେହରେ ଲଗାଉଥିଲେ । ଆଉ ସବୁଦିନେ ସାନଠାରୁ ବଡ଼ଯାଏ ସମସ୍ତଙ୍କ ଦେହ ଫୁଙ୍ଗା ଥାଏ ।

ବାଲେଶ୍ୱରରେ ପୂର୍ବେ ଦୁଇ ପ୍ରକାର ଯୋତା ତିଆର ହେଉଥିଲା—ଜେରପାଇ ଆଉ ମରହଣ୍ଡୀ । ଜେରପାଇ ଦାମ ଜୋଡ଼ାକୁ ଛଅଣା ପର୍ଯ୍ୟନ୍ତ, ମରହଣ୍ଡୀ ଜୋଡ଼ା ଟଙ୍କାଏ । ଅମଲା ଆଉ ଖୁବ୍ ବଡ଼ଲୋକେ କେବଳ ଗୋଡ଼ରେ ଯୋତା ଲଗାଉଥିଲେ । ତାହା ମଧ୍ୟ କଚେରି ଦରବାର କିମ୍ବା ବିଶେଷ ସ୍ଥାନକୁ ଯିବା ସମୟରେ । ଦାଣ୍ଡ ଦୁଆର ଟପି ଘର ଭିତରକୁ ଜୋତା ଯାଉ ନ ଥିଲା । ଦାଣ୍ଡ ଦୁଆର ବାହାର ପାଖରୁ ଜୋତା ଗୋଡ଼ରୁ କାଢ଼ି ଚାଳରେ ଖୋସି ଦିଅନ୍ତି କିମ୍ବା ହାତରେ ଧରି ଯାଇ କୋଳଙ୍ଗାରେ ଥୋଇ ଦିଅନ୍ତି ।

ପ୍ରାୟ ୬୦ ବର୍ଷ ପୂର୍ବେ ଅଯୋଧ୍ୟାବାସୀ ତିନିଜଣ ବ୍ରାହ୍ମଣ ବାଲେଶ୍ୱର ମୋତିଗଞ୍ଜ ବଜାରରେ ବିଲାତି କପଡ଼ା ଦୋକାନ ପ୍ରଥମ ଫିଟାଇଥିଲେ । ମଲମଲ, ମାର୍କିନ୍, ଫରସି ଛିଟ, ବନାତ ପ୍ରଭୃତି ପାଞ୍ଚ ସାତ ରକମ ଲୁଗା ସେମାନଙ୍କ ଦୋକାନରେ ଥାଏ । ଦାମ ଭାରି ବେଶି, ମାର୍କିନ୍ ଗଜକୁ ବାରଅଣା, ଚୌଦ ଅଣା, ମଲମଲ ଟଙ୍କାଏ ପାଞ୍ଚସୁକା । କେହି ଜଣେ ବଡ଼ ଲୋକ ମାର୍କିନ ଚାଦର କାନ୍ଧରେ ପକାଇ ସହର ମଧ୍ୟରେ ଚାଲି ଯାଉଥିବା ବେଳେ ଦୁଇ ପାଖ ଲୋକେ ଚାହିଁ ରହିଥାଆନ୍ତି, ବୋଲାବୋଲି ହୁଅନ୍ତି, ଦେଖ ଦେଖ, କେମନ୍ତ ଚିକ୍କଣ ସଫେଦ ଚାଦର । ସେହି କପଡ଼ିଆ ମାନେ ପ୍ରଥମେ ବାଲେଶ୍ୱରକୁ କପଡ଼ା ଛତା ଆଣିଥିଲେ । ସେ ଛତା ଗୁଡ଼ାକ ନିତାନ୍ତ କଦର୍ଯ୍ୟ—ବେତର ସିକ, କାଠର ବେଣ୍ଟ ଉପରେ ଅତି କଦର୍ଯ୍ୟ କଳା ରଙ୍ଗର କନା ମଡ଼ା ହୋଇଥାଏ । ତାହା ମଧ୍ୟ ଅମଲା ଆଉ ଧନବନ୍ତ ଲୋକ କିଣନ୍ତି । ଧନବନ୍ତ ଲୋକେ ସେ ଛତା ଉଡ଼ାଇ ଚାଲିଯାଉଥିବା ସମୟରେ ଲୋକେ ଚାହିଁ ରହିଥାଆନ୍ତି । ବର୍ତ୍ତମାନ ସମୟରେ ସେପରି ଛତାକୁ ଚାରି ପାଞ୍ଚ ଅଣାରେ ମଧ୍ୟ କେହି କିଣିବେ ନାହିଁ ।

ସେ ଯାହାହେଉ, ସେ ସମୟରେ ଲୋକେ ନିଶ୍ଚିନ୍ତ ଥିଲେ । ଅନ୍ନ ବସ୍ତ୍ର ପାଇଁ କାହାରି ଚିନ୍ତା ନ ଥିଲା । ଆନନ୍ଦମନରେ ଲୋକେ ଦିନ କାଟି ଦେଉଥିଲେ । ପର୍ବ ପର୍ବାଣି ସମୟରେ ଗ୍ରାମବାସୀମାନେ ଏକତ୍ର ହୋଇ ଆମୋଦ ଆହ୍ଲାଦରେ ଉନ୍ମତ୍ତ ହୋଇ ପଡ଼ୁଥିଲେ । ସେମାନଙ୍କ ମଧ୍ୟରେ ଏକକୁ ଆରେକର ଖୁବ୍ ସହାନୁଭୂତି ଥିଲା । ଗ୍ରାମ ମଧ୍ୟରେ ବଡ଼ ସାନ ବ୍ରାହ୍ମଣ ଠାରୁ ବାଉରୀ ଗୁଡ଼ିଆଯାଏ କେହି କାହାରିକୁ ନାମଧରି ଡାକୁ ନ ଥିଲେ । ଗ୍ରାମ ସମ୍ପର୍କରେ ଗୋଟାଏ କିଛି ହେଲେ ଲେଖାଏ—ଦାଦି, ମଉସା, ପିଉସା, ମାମୁ, ଅଜା ଏହିପରି କିଛି ଗୋଟାଏ ଲେଖାଧରି

ଉକାଉକି ହେଉଥିଲେ । କାହାର ଉପରେ କିଛି ଗୋଟାଏ ବିପଦ ପଡ଼ିଲେ ଗାଁ ଯାକ ରୁଣ୍ଡ ହୋଇ ତାକୁ ଉଠାଇ ନେବାକୁ ଚେଷ୍ଟା କରୁଥିଲେ । କାହାର ଘରେ ବିବାହ ଶ୍ରାଦ୍ଧ ସମୟ ଉପସ୍ଥିତ ହେଲେ ଗ୍ରାମ ଲୋକେ ନିଜର କାର୍ଯ୍ୟତୁଲ୍ୟ ମଣି କର୍ମୀ ଦୁଆରେ ଉପସ୍ଥିତ ହୋଇ ସେହି କାର୍ଯ୍ୟ ତୁଲାଇ ନେଉଥିଲେ । ଦେଶ ମଧ୍ୟରେ ଏତେ ମାଲିମାମଲା ନ ଥିଲା । କାହାର କୌଣସି ମାଲିମାମଲା ଉପସ୍ଥିତ ହେଲେ ଗ୍ରାମଲୋକେ ମିଳି ଭାଙ୍ଗି ଦେଉଥିଲେ । ଲୋକେ ବୋଲନ୍ତି, ଆଜିକାଲିକା ଲୋକଗୁଡ଼ାକ ବଡ଼ ସ୍ୱାର୍ଥପର, କେହି କାହାର କଥା ବୁଝିବାକୁ ନାହିଁ । ବଳେ ସ୍ୱାର୍ଥପର ହେବାକୁ ପଡ଼ୁଛି । ସମସ୍ତଙ୍କର ସବୁ ବିଷୟରେ ଅଭାବ । ସମସ୍ତେ ସଂସାର ଚିନ୍ତାରେ ବୁଡ଼ି ରହିଛନ୍ତି, ପରକଥା ବୁଝିବାକୁ ବେଳ ନାହିଁ ।

"ନିଜ ରକ୍ଷଣ ଅସମ୍ଭବ,
ସେ କାହିଁ ଆନକୁ ରଖିବ ।"
( ଉ: ସା:—୨୨ଶ ଭାଗ--୯ମ ସଂଖ୍ୟା )

———

## ୯

## ବାରବାଟୀ ସ୍କୁଲର ଉନ୍ନତି

ସୁଯୋଗ୍ୟ ଏବଂ ଶିକ୍ଷିତ ଶିକ୍ଷକଙ୍କ ଦ୍ୱାରା ପରିଚାଳିତ ହେବାରୁ ବାରବାଟୀ ସ୍କୁଲ ଦିନକୁ ଦିନ ଉନ୍ନତି ଲାଭ କରୁଥାଏ, ଛାତ୍ର ସଂଖ୍ୟା ମଧ୍ୟ ବଢ଼ି ଯାଉଥାନ୍ତି । ଜଣେ ବଙ୍ଗାଳୀ ଶିକ୍ଷକ ଦ୍ୱାରା କାର୍ଯ୍ୟ ନ ଚଳିବାରୁ ଜଣେ ଦ୍ୱିତୀୟ ଶିକ୍ଷକ ମେଦିନୀପୁରରୁ ନିଯୁକ୍ତ ହୋଇ ଆସିଲେ । ମୋର ବେତନ ମଧ୍ୟ ମାସିକ ପାଞ୍ଚ ଟଙ୍କା ଧାର୍ଯ୍ୟ ହେଲା । ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ଭୂଗୋଳ ପଢ଼ାଇବାର ଭାର ମୋ ଉପରେ ରହିଲା । ସ୍କୁଲରେ ବଡ଼ ମ୍ୟାପ୍ ନ ଥିବାରୁ ସମ୍ପାଦକ ଶିବଚନ୍ଦ୍ର ସୋମ ମହାଶୟଙ୍କ ବନ୍ଦୋବସ୍ତ ଅନୁସାରେ ଗବର୍ଣ୍ଣମେଣ୍ଟ ଇଂରାଜୀ ସ୍କୁଲରୁ ବଡ଼ ମ୍ୟାପ୍ ଆଣି ପଢ଼ାଇବାକୁ ହୁଏ । ସ୍କୁଲ ଛୁଟି ପୂର୍ବରୁ ସେହି ମ୍ୟାପ୍ ଫେରସ୍ତ ଦେବାର କଥା ଥିଲା । କିଛିଦିନ ଉତ୍ତାରେ ମୁଁ ଆମେରିକାର ଖଣ୍ଡିଏ ମ୍ୟାପ୍ ଆପଣା ହାତରେ ଅଙ୍କିତ କଲି । ସ୍କୁଲ ସମ୍ପାଦକ, ଡେପୁଟି ଇନ୍‌ସ୍ପେକ୍ଟର ଓ ଅନ୍ୟାନ୍ୟ ଶିକ୍ଷକମାନେ ମ୍ୟାପ୍ ଦେଖି ବଡ଼ ପ୍ରଶଂସା କଲେ । ମ୍ୟାପ୍ ପଛରେ କନା ମଡ଼ାଇ ଏବଂ ଉପରେ ତଳେ ଦୁଇଖଣ୍ଡ ରୁଲ୍ ଲଗାଇ କାନ୍ଥରେ ଝୁଲାଇ ଦିଆଗଲା । ସେହି ମ୍ୟାପ୍ ଦେଖି ଛାତ୍ରମାନେ ଭୂଗୋଳ ପଢ଼ନ୍ତି । ଗବର୍ଣ୍ଣମେଣ୍ଟ ସ୍କୁଲରୁ ଆମେରିକା ମ୍ୟାପ୍ ଅଣାଇବାର ଆଉ ଆବଶ୍ୟକ ହେଲା ନାହିଁ । ଅନ୍ୟାନ୍ୟ ସମସ୍ତ ମ୍ୟାପ୍ ଅଙ୍କିତ କରିବାକୁ ଇଚ୍ଛାଥିଲା; ମାତ୍ର ଉପଯୁକ୍ତ ଯନ୍ତ୍ର ଅଭାବରୁ ପାରିଲିନାହିଁ । ତୃତୀୟ ବର୍ଷଠାରୁ ଅଙ୍କ ପଢ଼ାଇବାର ଭାର ମଧ୍ୟ ମୋ ଉପରେ ପଡ଼ିଲା । ସେ ସମୟରେ ସ୍କୁଲରେ କ୍ଷେତ୍ରତତ୍ତ୍ୱର ଏକ ଅଧ୍ୟାୟ, ଭଗ୍ନାଂଶ, ଦଶମିକ, ଘନମୂଳ ଓ ବର୍ଗମୂଳ ପର୍ଯ୍ୟନ୍ତ ଗଣିତ ପ୍ରଥମ ଶ୍ରେଣୀରେ ପାଠ୍ୟରୂପେ ନିରୂପିତ ଥିଲା । ମୁଁ ଅନ୍ୟର ବିନା ସାହାଯ୍ୟରେ ସମସ୍ତ ପାଟୀଗଣିତ, କ୍ଷେତ୍ରତତ୍ତ୍ୱ ଓ ବୀଜଗଣିତ ପଢ଼ି ପକାଇଲି । କାରଣ ସେ ସମୟରେ ବାଲେଶ୍ୱରରେ ସେ ସମସ୍ତ ଅଙ୍କ ଶିଖାଇ ଦେବା ନିମନ୍ତେ ଉପଯୁକ୍ତ ଶିକ୍ଷକ ନ ଥିଲେ ।

ସ୍କୁଲର ଡେପୁଟି ଇନ୍‌ସ୍ପେକ୍ଟର ମାସ ଶେଷରେ ଥରେ ଆସି ଛାତ୍ରମାନଙ୍କର ପାଠ ପରୀକ୍ଷା କରୁଥିଲେ । ସମସ୍ତ ଉତ୍କଳରେ ଜଣେ ମାତ୍ର ଡେପୁଟି ଇନ୍‌ସ୍ପେକ୍ଟର ଥିଲେ । ତାଙ୍କର ପ୍ରଧାନ କାର୍ଯ୍ୟାଳୟ ବାଲେଶ୍ୱର ସହର ମଧ୍ୟରେ ଥିଲା । ସେ ବର୍ଷକୁ ଦୁଇ ଥର ମାତ୍ର କଟକ ଓ ପୁରୀଯାଇ ତତ୍ରତ୍ୟ ସ୍କୁଲମାନ ଦେଖି ଆସୁଥିଲେ । ଶୁଣିଥିଲୁଁ, ତାଙ୍କ ଅଧୀନରେ ସମସ୍ତ ଉତ୍କଳରେ ସାତ କି ଆଠଗୋଟି ମାତ୍ର ସ୍କୁଲ ଥିଲା ।

ମୁଁ ପଣ୍ଡିତଙ୍କ ନିକଟରେ ଅଭିଧାନ ଏବଂ ବ୍ୟାକରଣ ପଢ଼ୁଥିଲି; ମାତ୍ର ମୁଗ୍ଧବୋଧର ସୂତ୍ରମାନଙ୍କର ଅର୍ଥ ବୁଝିବା ମୋ ସାମାନ୍ୟ ବୁଦ୍ଧିର ଅଗମ୍ୟ ଥିଲା । ତତ୍ପରେ ମହାତ୍ମା ବିଦ୍ୟାସାଗରଙ୍କ ବ୍ୟାକରଣ କୌମୁଦୀ ଚାରିଭାଗ ଏବଂ ଋଜୁ ପାଠ ତିନିଭାଗ ପ୍ରକାଶିତ ହେବାରୁ ମୋର ସଂସ୍କୃତ ଶିକ୍ଷା ପକ୍ଷରେ ବିଶେଷ ଅନୁକୂଳ ହୋଇଥିଲା । ପାଞ୍ଚ ଛ ବର୍ଷ ପର୍ଯ୍ୟନ୍ତ ବିଶେଷ ମନୋଯୋଗ ସହିତ ପରିଶ୍ରମ କରି ରଘୁବଂଶ, କୁମାର ସମ୍ଭବର କେତେକ ସର୍ଗ, ମେଘଦୂତ, ହଂସଦୂତ, ପଦାଙ୍କ ଦୂତ, ଶକୁନ୍ତଳା, ମୃଚ୍ଛକଟିକ, ମୁଦ୍ରାରାକ୍ଷସ, ଉତ୍ତରରାମଚରିତ, ମାଳବିକାଗ୍ନିମିତ୍ର ପ୍ରଭୃତି କାବ୍ୟ ନାଟକମାନ ପଢ଼ି ପକାଇଲି । ଶେଷରେ ଉପଯୁକ୍ତ ଶିକ୍ଷକ ଅଭାବରୁ କାବ୍ୟପାଠ ପରିତ୍ୟାଗ କରି ପୁରାଣ ପଢ଼ିବାକୁ ଆରମ୍ଭ କଲି । ସଂସ୍କୃତ କାବ୍ୟ ପଢ଼ିବା ପାଇଁ ଉପଯୁକ୍ତ ଶିକ୍ଷକ ନ ପାଇ ଟୀକା ଧରି ପଢ଼ୁଥାଏଁ । ନିତାନ୍ତ ଅବୋଧ ସ୍ଥାନମାନଙ୍କରେ ଚିହ୍ନ ଦେଇ ରଖିଥାଏଁ; କୌଣସି ପଣ୍ଡିତଙ୍କ ସହ ସାକ୍ଷାତ ହେଲେ ବୁଝିନିଏଁ ।

ଏହିସମୟରେ କଚେରିରେ ଦିନେ ରାଷ୍ଟ୍ରହେଲା ଯେ, ଜଣେ ବଙ୍ଗାଳୀ ବାବୁ ଏଣ୍ଟ୍ରାନ୍ସ ପାସ କରି ବାଲେଶ୍ୱର ଇଂରାଜୀ ସ୍କୁଲର ଥାର୍ଡ଼ ମାଷ୍ଟର ହୋଇ ଆସିଅଛନ୍ତି । ଏଥିପୂର୍ବେ "ଏଣ୍ଟ୍ରାନ୍ସ ପାସ୍" ଶବ୍ଦଟା ବାଲେଶ୍ୱରରେ ଶୁଣା ନ ଥିଲା । ହେଡ଼ ମାଷ୍ଟର ସେକେଣ୍ଡ ମାଷ୍ଟର-ମାନେ ଏଣ୍ଟ୍ରାନ୍ସ ପାସ୍ କରି ନ ଥିଲେ । ସ୍ମରଣ ହେଉଅଛି, ଯେମନ୍ତ ତତ୍ପୂର୍ବ ବର୍ଷଠାରୁ ଏଣ୍ଟ୍ରାନ୍ସ ପାସ୍ ପ୍ରଥା ଆରମ୍ଭ ହୋଇଥିଲା । କଚେରି ଅମଲାମାନେ ମନରେ କଲେ—ଯେଉଁ ଲୋକ ଇଂରାଜୀରେ ଏଣ୍ଟ୍ରାନ୍ସ ପାସ୍ କରି ପାରନ୍ତି, ସେ ଲୋକ ନ ଜାଣି କେତେ ବଡ଼ ମହାପୁରୁଷ ହୋଇଥିବେ । କଚେରି ବନ୍ଦ ହେବା ମାତ୍ରକେ ସମସ୍ତ ଓକିଲ,ମୁକ୍ତାର,ମାମଲତକାର, ସିରସ୍ତାଦାର, ପେସ୍କାର ଓ ଅନ୍ୟାନ୍ୟ ଅମଲାମାନେ କେହି ପାଲିକିରେ, କେହି ଘୋଡ଼ାରେ, ଅଧିକାଂଶ ପଯ୍ୟଦଳରେ ଚାଲିଆସି ମାଷ୍ଟରଙ୍କ ବସାଘର ଦୁଆର ସମ୍ମୁଖରେ ଉପସ୍ଥିତ ହୁଅନ୍ତି । ମାଷ୍ଟରଙ୍କ ବସାଘର ଇଂରାଜୀ ସ୍କୁଲ ନିକଟ ଦାମୋଦରପୁର ଗ୍ରାମସ୍ଥ ସଡ଼କ ଧାରରେ । ବସାଘରଟି ସାତ ପାଞ୍ଚ ଗୋଟିଏ ବୋଲି ଘର—ସେହି ଘରର ଗୋଟିଏ କୋଣ ପଟକୁ ଅଧାକାନ୍ଥି ଦିଆଯାଇ ରୋଷେଇ ଘର ହୋଇଅଛି । ଗୋଟିଏ ବୋଲି ଦୁଆର, ଆଗକୁ ହାତେ ଚୌଡ଼ାର ପିଣ୍ଡା । ଘରଟିକୁ ଘର ବା ପଲି ଯାହାଇଚ୍ଛା ନାମ ଦେଇପାର । ମାସିକ ଭଡ଼ା ବୋଧକରୁଁ ଆଠଅଣା ମଧ୍ୟରେ ହୋଇଥିବ । ମାଷ୍ଟର ବାବୁଙ୍କ ବସା ଓଳିଠାରୁ ସଡ଼କ ପର୍ଯ୍ୟନ୍ତ ଜନତାରେ ପୂର୍ଣ୍ଣ ହୋଇ ଯିବାରୁ ମାଷ୍ଟରବାବୁ ହଇରାଣରେ ପଡ଼ିଲେ । ଅଭ୍ୟାଗତମାନଙ୍କୁ ବସିବାକୁ ବୋଲିବେ, ଆସନ ତ ପଛ କଥା, ଜାଗା କାହିଁ ? ଲୋକମାନଙ୍କୁ ଦେଖି ମାଷ୍ଟରବାବୁଙ୍କ ମନରେ ବୋଧ କରୁଁ କିଛି ଗର୍ବ ଜାତ ହେଲାଣି । ଦର ମଇଳା ଖଣ୍ଡେ ଛିଟ କୁରୁତା ଦେହରେ ଦେଇ ଆଉ ଆଣ୍ଠୁଲୁଚା ଖଣ୍ଡେ ଥାନପଡ଼ା ଲୁଗା ପିନ୍ଧି ଗମ୍ଭୀର ଭାବରେ ପିଣ୍ଡା ଉପରେ ଟହଲ ହେଉଥାନ୍ତି । ଦର୍ଶକମାନେ ଦେବତା ଦର୍ଶନ କଲାପରି ଏକ ଧ୍ୟାନରେ ତାଙ୍କୁ ଦର୍ଶନ କରୁଥାନ୍ତି । ମାଷ୍ଟର ବାବୁଙ୍କ ବୟସ ଊଣେଇଶ କୋଡ଼ିଏ ମଧ୍ୟରେ । ଘୋର କୃଷ୍ଣବର୍ଣ୍ଣ, ଗୁଡିର ପଞ୍ଜରାହାଡ଼ ଗଣି ହେଉଥାଏ । ରୂପ କାଞ୍ଚିତ ଅସୁନ୍ଦର, ହେଲେ କଣ ହେବ ଗୁଣ କେତେ ? ମନୁଷ୍ୟ ତ ରୂପରେ ବିକାଏ ନାହିଁ, ଗୁଣରେ ବିକାଏ । ତିନି ଚାରିଦିନ ପର୍ଯ୍ୟନ୍ତ ମାଷ୍ଟରଙ୍କ ଦୁଆରେ ଭିଡ଼ ହୋଇଥିଲା, ତେଣିକି କ୍ରମଶଃ ଊଣା ହୋଇଗଲା ।

ପରବର୍ତ୍ତୀ ବର୍ଷ ବାଲେଶ୍ୱର ଗବର୍ଣ୍ଣମେଣ୍ଟ ଇଂରାଜୀ ସ୍କୁଲରୁ ଜଣେ ଛାତ୍ର ଏଣ୍ଟ୍ରାନ୍ସ ପରୀକ୍ଷା ଦେବା ସକାଶେ କଲିକତାକୁ ପ୍ରେରିତ ହେଲେ । ତାଙ୍କ ନାମ ରାଧାନାଥ ରାୟ । କବିବର ରାଧାନାଥ ରାୟ ବାଲେଶ୍ୱର ଜିଲ୍ଲାର ସର୍ବ ପ୍ରଥମ ଏଣ୍ଟ୍ରାନ୍ସ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ର । ରାଧାନାଥ

ବାବୁଙ୍କ ପାଶ ସମ୍ବାଦ ବାଲେଶ୍ୱରରେ ପହଞ୍ଚିବା ଦିନ କଚେରିରେ ଘର ଗୋଟାଏ ଚହଳ ପଡ଼ିଗଲା । ଅମଲାମାନେ ଗୋଟାଏ ସ୍ଥାନରେ ବସି ବୋଲାବୋଲି ହେଲେ—ଜଣା ଯାଉଅଛି, ଏଣ୍ଟ୍ରାନ୍ସ ପାଶଟା ଖୁବ୍ ଗୋଟାଏ ବଡ଼ କଥା ନୁହେଁ । ଆମ୍ଭମାନଙ୍କ ସୁନ୍ଦର ବାବୁଙ୍କ ସାନ ସଳୁଆ ପିଲାଟା ପାଶ୍ କରି ପକାଇଲା । ଏଇଟା ଆଉ କଣ ବଡ଼ କଥା ହୋଇପାରେ ? ରାଧାନାଥବାବୁଙ୍କ ପିତା ସୁନ୍ଦର ନାରାୟଣ ରାୟ କଚେରିରେ ଜଣେ ଅମଲା ଥିଲେ । ଏଫ୍. ଏ. ପଢ଼ିବା ସକାଶେ ରାଧାନାଥବାବୁ କଲିକତାକୁ ପଠାଗଲେ । ତାଙ୍କର ସାନ ଭାଇ ଜାହ୍ନବୀବାବୁ ରକ୍ଷକ ସ୍ୱରୂପ ଗଲେ । ସେ ସମୟରେ କଲିକତା ଯିବାକୁ ବଡ଼ ବଡ଼ ରଥୀମାନେ ଶଙ୍କି ଯାଉଥିଲେ । ପାଞ୍ଚ ସାତ ଜଣ ସଙ୍ଗ ନ ହେଲେ ଏକୁଟିଆ ଯିବାକୁ କାହାରି ଭରସା ପାଉ ନ ଥିଲା । ବାଲେଶ୍ୱରଠାରୁ କଲିକତାକୁ ଚାଲନ୍ତିରେ ଛ ଦିନର ବାଟ । ସେ ବାଟ ମଧ୍ୟ ନିତାନ୍ତ କଦର୍ଯ୍ୟ । ବର୍ଷାଦିନରେ ଯେମନ୍ତ ଆଣ୍ଠୁଆଣି କାଦୁଅ, ଶୀତ ଦିନରେ ସେହିପରି ରେକଟିଆ, ଖରାଦିନେ ଆଣ୍ଠିଏ ଧୂଳି । ତହିଁ ମଧ୍ୟରେ ପୁଣି ସରେଇ ଘରେ ଗୋଷେଇ, ନଦୀ ପାରି ସମୟରେ ଠିକାଦାର ନାଉରିମାନଙ୍କ ଅତ୍ୟାଚାରର ବଳ ପଡ଼ୁଥିଲା । ତାହା ଉପରେ ପୁଣି ଚୋର ଡକାଏତଙ୍କ କଥା ଉପରାନ୍ତ ଅଛି । କଲିକତା-ଠାରୁ ଭଦ୍ରଖ ପର୍ଯ୍ୟନ୍ତ ଚୋର ଡକାଏତଙ୍କ ଅତ୍ୟାଚାର ଅତ୍ୟନ୍ତ ପ୍ରବଳ ଥିଲା । ରାହାଜାନି ପ୍ରତିଦିନ ଲାଗି ରହିଥାଏ । ଅନେକ ଗୁଡ଼ିଏ ଦଳବନ୍ଧ ଡକାଏତ ଥିଲେ । ସେମାନଙ୍କ ମଧ୍ୟରୁ ସରଦାର ଗଦେଇ କଣ୍ଡରାର ଦଳ ବାଲେଶ୍ୱର ଅଞ୍ଚଳରେ ବିଖ୍ୟାତ ଥିଲା । ତାହା ଅଧୀନରେ ପ୍ରାୟ ଷାଠିଏ ସତୁରି ଜଣ ଡକାଏତ ଥିଲେ । ଡକାଏତମାନେ ରାଣୀଗଞ୍ଜ, କଲିକତାଠାରୁ କଟକ ଯାଏ ବୁଲି ବୁଲି ଧନବନ୍ତ ବାଛୋଇ ଏବଂ ମହାଜନ ମାନଙ୍କ ସନ୍ଧାନ ଦେଉଥାନ୍ତି । ସନ୍ଧାନ ପାଇ ସରଦାର ଗଦେଇ ଆପଣା ଅଧୀନସ୍ଥ ଦଳକୁ ଡକାଏତି କରିବା ସକାଶେ ପଠାଇଦିଏ । ଶେଷରେ ଜଣେ ମହାଜନଠାରୁ ପନ୍ଦର କୋଡ଼ିଏ ହଜାର ଟଙ୍କା ଲୁଟି ନେଇ ଡକାଏତି ଛାଡ଼ି ଦେଇଥିଲା । ଶେଷଜୀବନରେ ଭାଗବତ ପୁରାଣ ଶ୍ରବଣ, ଦେବ ବ୍ରାହ୍ମଣଠାରେ ଭକ୍ତି, ଉପଯୁକ୍ତ ପାତ୍ରରେ ଦାନ ପୁଣ୍ୟ ଏବଂ ଅନ୍ୟାନ୍ୟ ସତ୍ କାର୍ଯ୍ୟରେ ସାଧୁଲୋକ ପରି ଜୀବନ ଯାପନ କରିଥିଲା । ଗଦେଇ ଦଳ ଛଡ଼ା ସାନ ସାନ ଦଳ ମଧ୍ୟ କେତେଗୁଡ଼ିଏ ଥିଲେ । ସେମାନଙ୍କୁ ଛାଡ଼ି ଅନେକ ଗ୍ରାମପାଖିଆ ଛୁଟ୍‌କୁଟିଆ ଚୋରର ମଧ୍ୟ ଅଭାବ ନ ଥିଲା । ଛୁଟ୍‌କୁଟିଆ ଚୋରମାନେ ସନ୍ଧ୍ୟା ଉତ୍ତାରେ ସଡ଼କ ପାଖିଆ କୌଣସି ଗୋଟିଏ ଉହାଡ଼ ଜାଗାରେ ଲୁଚି ବସିଥାନ୍ତି । ଶଗଡ଼ଚଢ଼ା ଯାତ୍ରୀଙ୍କଠାରୁ ଚୋରି କରିବା ଏମାନଙ୍କ ବ୍ୟବସାୟ । ଶଗଡ଼ ଆଗ ଦଣ୍ଡାରେ ଶଗଡ଼ିଆ ଦୁଇ ଆଡ଼କୁ ଗୋଡ଼ ଝୁଲାଇ ଦେଇ ଢୋଲାଇ ଢୋଲାଇ ବଳଦ ଅଡ଼ାଉଥାଏ । ଯାତ୍ରୀ ଶଗଡ଼ ଭିତରେ କୁଟା ପାରି ତାହା ଉପରେ ବିଛଣା ପକାଇ ସୁନ୍ଦରରୂପେ ଶୋଇ ପଡ଼ିଥାନ୍ତି । ଇତ୍ୟବସରରେ ଚୋର ଶଗଡ଼ ପଛ ତାଟି କାଟି ଦେଇ ହାତରେ ଯାହାପଡ଼େ ତାହା ନେଇଯାଏ । ଚାଲନ୍ତି ଶଗଡ଼ର ଘଡର ଘଡର ଶବ୍ଦ ହେତୁରୁ ତାଟିକଟା ଖଡଖଡ ଶବ୍ଦ ଶୁଭେ ନାହିଁ । ପୁଣି ଯାତ୍ରୀ ତ ନିଶ୍ଚିନ୍ତ ମନରେ ଶୋଇଥାନ୍ତି, କଛିମାନ କଥା ଜାଣି ପାରନ୍ତି ନାହିଁ । ରାତି ପାହିଲେ ଜଣା ପଡ଼େ । ଏହା ନିତ୍ୟ-ନୈମିତ୍ତିକ ଘଟଣା ଥିଲା ।

ଶଡ଼କଧାର ଚଟିର ଅନେକ ଦୋକାନୀ ମଧ୍ୟ ଡକାଏତ ବା ଡକାଏତମାନଙ୍କ ସହକାରୀ ଥିଲେ । ସେହି ଦୋକାନମାନେ ଚଟିବାସିନ୍ଦା ଲୋକ ନୁହନ୍ତି । ସେମାନଙ୍କ ଘର ଚଟିଠାରୁ କୋଶେ ବା ଦେଢ଼କୋଶ ଦୂରରେ । ସଞ୍ଜାକୁ ରାତି ପହରେ ଯାଏ ଦୋକାନରେ ରହି ଯାତ୍ରିମାନଙ୍କୁ ଚୂଡ଼ା, ଚାଉଳ, ହାଣ୍ଡି, କାଠପ୍ରଭୃତି ଗୋଷେଇର ଉପଯୋଗୀ ଦ୍ରବ୍ୟମାନ ବିକ୍ରି କରି ଘରକୁ

ଗୃହଯାନ୍ତ । ଚରକାଶରେ ପକାଇବା ସକାଶେ ଦୋକାନମାନେ ଯେଉଁ ହଳଦଗୁଣ୍ଡା ବିକନ୍ତି, ସେଥିରେ ଏକପ୍ରକାର ବିଷ ମିଶିଥାଏ । ସେହି ବିଷମିଶା ଚରକାଶ ଯାତ୍ରିମାନେ ଖାଇ ଅଚେତ ହୋଇ ପଡ଼ଗଲେ ଅଧରାତ୍ରି ବେଳେ ଡକାଏତମାନେ ଆସି ସେମାନଙ୍କର ସର୍ବସ୍ୱ ଲୁଟି ନେଇଯାନ୍ତି । ଅତି ପୂର୍ବକାଳରୁ ଉତ୍କଳର ନିମ୍ନ ଶ୍ରେଣୀର ଲୋକମାନେ ସାମାନ୍ୟ ପ୍ରକାର ଚାକିରି କରିବା ଆଶାରେ କଲିକତାକୁ ଯାନ୍ତି । ବଙ୍ଗ ଦେଶରେ ଦୁଇ ତିନି ବର୍ଷ ରହି ରୋଜଗାର ଟଙ୍କା ଗୁଡ଼ିକ ନେଇ ଘରକୁ ବାହୁଡ଼ିବାବେଳେ ସେମାନଙ୍କ ଉପରେ ବାଟରେ ଡକାଏତି ହେଉଥିଲା । ଏଥିପାଇଁ ସେମାନେ ପଚିଶ ତିରିଶ ଜଣ ଏକ ସଙ୍ଗରେ ଘରକୁ ବାହୁଡ଼ୁଥିଲେ । ଏମନ୍ତ ଅବସ୍ଥାରେ ମଧ୍ୟ ସେମାନଙ୍କ ଉପରେ ସମୟ ସମୟରେ ଡକାଏତି ହେଉଥିଲା । ସେ ସମୟରେ ଗୋଟିଏ ପ୍ରବାଦ ବାକ୍ୟ ପ୍ରଚଳିତ ଥିଲା—

"ହଳଦି ମଖା ମଖି,
ନାରଣଗଡ଼ ପାରି ହେଲେ କୁଟୁମ୍ବ ଦେଖାଦେଖି ।"

ସେ ସମୟରେ ନାରଣଗଡ଼ ଅଞ୍ଚଳଟା ଡକାଏତ ମାନଙ୍କର ଗୋଟାଏ ବଡ଼ ଖଟି ଜାଗା ଥିଲା ।

ପୂର୍ବେ କି ମହାଜନମାନଙ୍କୀ, କି ଚାକରମାନଙ୍କ ଦରମା ଟଙ୍କା ସବୁ ଲୋକମାନଙ୍କ ଦ୍ୱାରା ବୁହା ଯାଉ-ଥିଲା । ବିଦେଶୀ ଚାକରିଆ ମାନଙ୍କ ଦରମା ଟଙ୍କା ନେବା ଆଣିବା ପାଇଁ ଉତ୍କଳର ନାନା ଅଞ୍ଚଳରୁ ଜଣେ ଜଣେ ଲୋକ ନିଯୁକ୍ତ ଥିଲେ । ସେମାନଙ୍କ ନାମ ହୁଣ୍ଡିଆ । ସେମାନେ ବିଦେଶୀ ଚାକରିଆ ମାନଙ୍କ ଚାକରି ଜାଗାରୁ ଟଙ୍କାଆଣି ସେମାନଙ୍କ ଘରଠାରେ ପହଞ୍ଚାଇ ଦେଉଥିଲେ । ଟଙ୍କା ଅନୁସାରେ କିଛି କିଛି ଭଡ଼ା ପାନ୍ତି ? ସେଇଟା ସେମାନଙ୍କ ଦରମା । ହୁଣ୍ଡିଆମାନେ ପ୍ରାୟ ଡକାଏତ ହାତରେ ପଡ଼ୁଥିଲେ । ଡକାଏତ ମାନଙ୍କ ଗୋଇନ୍ଦାମାନେ ଚାକର ସାଜି ହୁଣ୍ଡିଆ ସନ୍ଧାନରେ ବୁଲୁଥାନ୍ତି । ଆଉ ଏକପ୍ରକାର ଡକାଏତ ହିମାଳୟ ମୂଳଠାରୁ ରାମେଶ୍ୱର ପର୍ଯ୍ୟନ୍ତ ଭାରତରେ ସର୍ବତ୍ର ଦାଣ୍ଡେ ଦାଣ୍ଡେ ବୁଲି ଡକାଏତି କରୁଥିଲେ, ସେମାନଙ୍କ ନାମ ଠଗ । ସେମାନଙ୍କ ବାସସ୍ଥାନ ପଶ୍ଚିମାଞ୍ଚଳରେ । ଆଶ୍ୱିନଠାରୁ ଆଷାଢ଼ ପର୍ଯ୍ୟନ୍ତ ସେମାନଙ୍କ କାର୍ଯ୍ୟର ସମୟ ନିରୂପିତ ଥିଲା । ସେମାନଙ୍କ କାର୍ଯ୍ୟ ପ୍ରଣାଳୀ ଆଶ୍ଚର୍ଯ୍ୟଜନକ ଏବଂ ନିଷ୍ଠୁରତାମୟ ଥିଲା । ଗୋଟାଏ ଟଙ୍କା ପାଇଁ ମଧ୍ୟ ଗୋଟାଏ ଲୋକକୁ ମାରି ପକାଇବାକୁ ସେମାନେ ପଛଘୁଞ୍ଚା ଦେଉ ନ ଥିଲେ । ଧନ୍ୟ ବ୍ରିଟିଶ ଗବର୍ଣ୍ଣମେଣ୍ଟଙ୍କ କୌଶଳ ଏବଂ ଶାସନ ପ୍ରଣାଳୀ । ପଚିଶ ଷାଠିଏ ବର୍ଷ ହେଲା ସେହି ଠଗ ବଂଶ ଏକାବେଳକେ ନିର୍ମୂଳ ହୋଇ ଯାଇଅଛନ୍ତି । ମୁଁ ବାଲ୍ୟାବସ୍ଥାରେ ଗୋଟାଏ ଠଗକୁ ବନ୍ଦୀ ଅବସ୍ଥାରେ ବାଲେଶ୍ୱରରେ ଦେଖିଥିଲି । ଅନେକ ଜିଲ୍ଲାରେ ହଜାର ହଜାର ଠଗ ବନ୍ଦୀଥିଲେ । କେତେ ଦ୍ୱୀପାନ୍ତର ଓ ଫାଶି ମଧ୍ୟ ପାଇଥିଲେ । କେବଳ ଠଗମାନେ ଯେ ବନ୍ଦୀଥିଲେ, ଏମନ୍ତ ନୁହେଁ; କେହି ଯୋଡ଼ାଏ ପଇସାର ଡକାଏତି ମାଲ କିଣି ମଧ୍ୟ ଯାବ-ଜୀବନ ବନ୍ଦୀ ହେଉଥିଲା । ଠଗମାନଙ୍କ ମୂଳ ଉପାଡ଼ିବା ପାଇଁ ବୋଧକରୁଁ ଏପରି କଡ଼ା ନିୟମ ଜାରି ହୋଇ ଥିଲା । କଲିକତା ଯିବା ଆସିବା ବାଟ ବିଷୟ ବର୍ଣ୍ଣନା କରିବାକୁ ଯାଇ ଆଉ ଆଡ଼େ ପଶିଲିଣି ।

ଏଣ୍ଟ୍ରାନ୍‌ସ ପାସ୍ କରିବାବେଳକୁ ରାଧାନାଥଙ୍କ ବୟସ ପନ୍ଦର କି ଷୋହଳ ହୋଇଥିଲା ସତ୍ୟ;ମାତ୍ର ଅତି କ୍ଷୀଣ ଓ ଦୁର୍ବଳଶରୀର ଥିବାରୁ ଗୋଟିଏ ଦଶ ବାର ବର୍ଷିଆ ଟୋକା ପରି ଜଣା ପଡ଼ୁଥିଲେ । ରାଧାନାଥ ଏବଂ ତାଙ୍କ ଖୁଡ଼ୁତା ଜାହ୍ନବୀ ବାବୁ ସନ୍ଧ୍ୟା ସମୟରେ କଲିକତାରେ ପହଞ୍ଚି ଗୋଟାଏ ବସା ଧରି ରହିଲେ । ତହିଁ ଆରଦିନ ସକାଳେ ବିଛଣାରୁ ଉଠି ଦୁଇଜଣ ଯୋଡ଼ାଏ ଲୋଟା ଧରି ଝାଡ଼ା ଫେରି ଯିବା ଇଚ୍ଛାରେ

ଗୋଟାଏ ପଢ଼ୁଆ ଜାଗା ସନ୍ଧାନରେ ବାହାରିଲେ । ଅନେକ ବେଳ ଯାଏ ଗୃହଆଡ଼େ ବୁଲି ବୁଲି ଗୋଟାଏ ହିଗଣାବାଡ଼ ନ ପାଇବାରୁ କଲିକତା ଉପରେ ଘୃଣା ଖପାଟାଏ ହୋଇ କହିଲେ, ଏଟା ଘୃଣ ବେଜାଏ ସହର !

ସୁନ୍ଦର ନାରାୟଣ ବାବୁ ଜଣେ ସାଧାରଣ ଅମଲା ଥିଲେ, ତାହାଙ୍କ ଆୟ ମଧ୍ୟ ଅଳ୍ପଥିଲା । କଲିକତା ଖର୍ଚ୍ଚ ଯୋଗାଇ ନ ପାରିବାରୁ ରାଧାନାଥବାବୁ କେତେକ ମାସ ମାତ୍ର କଲିକତାରେ ରହି ବାଲେଶ୍ୱରକୁ ବାହୁଡ଼ି ଆଇଲେ । ଘରେ ପଢ଼ି ଏଫ. ଏ. ପାସ୍ କରିଥିଲେ ।

( ଉ: ସ:—୬୬ଶ ଭାଗ—୧୦ମ ସଂଖ୍ୟା )

———

## ୧୦

## ବାଲେଶ୍ୱର ମିସନରୀ ସ୍କୁଲରେ କର୍ମ

ବାଲେଶ୍ୱର ମିସନରୀ ସ୍କୁଲର ପ୍ରଧାନ ଶିକ୍ଷକ ପଦ ଖାଲି ହେଲା । ମାସିକ ବେତନ ଦଶଟଙ୍କା । ସ୍କୁଲର ସମ୍ପାଦକ ରେଭରେଣ୍ଡ ଏ. ମିଲର୍ ମୋତେ ସେହି ପଦରେ ନିଯୁକ୍ତ କଲେ । ଦ୍ୱିତୀୟ ଶିକ୍ଷକ ପଦ ମଧ୍ୟ ଶୂନ୍ୟ ଥିଲା । ସେଥିରେ ମୋର ପରମବନ୍ଧୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ନିଯୁକ୍ତ ହେଲେ । ତାଙ୍କର ମାସିକ ସାତଟଙ୍କା ବେତନ ହେଲା । ସେ ସମୟରେ ମାସିକ ଦଶଟଙ୍କା ବେତନର ପଦ ସମ୍ମାନର ବିଷୟ ଥିଲା । କଚେରିର ସମସ୍ତ ମହକୁମାରେ ସିରସ୍ତାଦାର ଓ ପେସ୍କାରଙ୍କୁ ଛାଡ଼ି ଆଉ ସମସ୍ତ ଅମଲାଙ୍କ ବେତନ ଦଶଟଙ୍କା ମଧ୍ୟରେ ଥିଲା ।

ନୂତନ ଚାକିରି କଥା ଶୁଣି ଠାକୁରମା ତ ଆନନ୍ଦରେ ଅସ୍ଥିର; କିନ୍ତୁ ବଡ଼ବାପା ଓ ବଡ଼ମା ଙ୍କ ମନକୁ ତାହା ଭଲ ଲାଗୁ ନ ଥାଏ । କାରଣ, ସେମାନଙ୍କ ପୁଅମାନେ ସେ ପର୍ଯ୍ୟନ୍ତ ରୋଜଗାର କରି ନାହାନ୍ତି । ଏଇଟା ସେମାନଙ୍କ ପକ୍ଷରେ ସହ୍ୟମାସ୍ୟ କଥା ନ ଥିଲା । ଠାକୁରମା ଦ୍ରୁଙ୍କାଟାରେ ଆନନ୍ଦରେ ଅସ୍ଥିର, ମୋ ଦରମାରୁ ଗୋଟିଏ ଟଙ୍କା ସୁଦ୍ଧା ଛୁଇଁ ନାହାନ୍ତି । ମାସ ଶେଷରେ ଦରମା ଟଙ୍କାଗୁଡ଼ିକ ବଡ଼ମା ଗଣି ନଅନ୍ତି, ତାହା ମଧ୍ୟ ବିରକ୍ତିର ସହିତ । କୌଣସି ମାସରେ ଟଙ୍କାଏ ଦୁଇଟଙ୍କାର କୁରୁତା ବା ଗୁଦରଟାଏ କିଣିଲେ ବଡ଼ମା କ୍ରୋଧରେ ଅସ୍ଥିର ହୋଇ କହନ୍ତି, "ଦରମା ଟଙ୍କାରେ ତ ଲୁଗା କିଣିଲୁ, ଖାଇବୁ କ'ଣ ?" ମୋ ଦରମା ଟଙ୍କା ଗୁଡ଼ାକ ତାଙ୍କ ପୁଅମାନଙ୍କ ଲୁଗା କିଣା ବା ଆଉ ଆଉ ଖରଚରେ ଲାଗିଯାଏ । ବାଲେଶ୍ୱର ମିସନ ସ୍କୁଲର ସେକ୍ରେଟେରି ରେଭରେଣ୍ଡ ଏ· ମିଲର ସାହେବ ଦୀର୍ଘାକାର, ସୁନ୍ଦର, ସୁଗଠିତଶରୀର ପୁରୁଷ ଏବଂ କିଞ୍ଚିତ୍ ସ୍ଥୂଳକାୟ ଥିଲେ । ଦୋଷ ମଧ୍ୟରେ ଭୟଙ୍କର କୋପନ ସ୍ୱଭାବ । ପୁଣି କିଛି କଥା ବୁଝନ୍ତି ନାହିଁ, ଯାହା ମନକୁ ଆସେ, ତାହା କରି ପକାନ୍ତି । ସେ ସମୟରେ ଖ୍ରୀଷ୍ଟାନ ଶିକ୍ଷକ ଅଭାବରୁ ସ୍କୁଲରେ ଆମ୍ଭ ହିନ୍ଦୁ ମାନଙ୍କୁ ଶିକ୍ଷକ ପଦରେ ନିଯୁକ୍ତ କରିଥିଲେ ସତ୍ୟ, ମାତ୍ର ହିନ୍ଦୁ ମାନଙ୍କ ପ୍ରତି ତାଙ୍କର ଆଦୌ ବିଶ୍ୱାସ ନ ନ ଥିଲା । ତାଙ୍କ ମତରେ ଦେବ ପୂଜକ ହିନ୍ଦୁମାନେ ସୟତାନର ରୂପାନ୍ତର । ଏହା ତାଙ୍କର ଧ୍ରୁବ ଧାରଣା ଥିଲା । ପ୍ରତ୍ୟେକ ହିନ୍ଦୁ ଦେବ ପୂଜକ, ମିଥ୍ୟାବାଦୀ, ଅବିଶ୍ୱାସୀ ଏବଂ ଦୁଷ୍ଟ । ମୁଁ ଜଣେ ହିନ୍ଦୁ, ସୁତରାଂ ଦୁଷ୍ଟ ଓ ବିଶ୍ୱାସର ଅଯୋଗ୍ୟ । ସେ ଓଡ଼ିଆ ଭାଷା ଭଲ ରୂପେ ଶିଖି ନ ଥିଲେ, ସ୍କୁଲର କାର୍ଯ୍ୟ ପ୍ରଣାଳୀ ମଧ୍ୟ ତାଙ୍କୁ କିଛି ଜଣା ନ ଥିଲା । ମୁଁ ସ୍କୁଲ ସମ୍ବନ୍ଧରେ କୌଣସି ବିଷୟ ପ୍ରସ୍ତାବ କଲେ ସେ ଅକାରଣରେ ଭୟଙ୍କର ରୂପେ ରାଗି ଯାଇ ବିପରୀତ କୌଣସି ପ୍ରକାର ଗୋଟାଏ ହୁକୁମ ଦେଇ ବସନ୍ତି । ଯେ ହେତୁ ମୁଁ ଜଣେ ହିନ୍ଦୁ, ସୁତରାଂ ଦୁଷ୍ଟ ଲୋକ । ଏଥିକୁ ମୋ ପ୍ରସ୍ତାବ ଅନୁମୋଦନ କରିବା ଧାର୍ମିକ ଖ୍ରୀଷ୍ଟାନଙ୍କର

ଉଚିତ ନୁହେ । ତାଙ୍କର ଅକାରଣ କ୍ରୋଧ ଜାତ ହେବାର ଦେଖିଲେ ମୋ ମନରେ ଭୟ ଜାତ ହୁଏ ନାହିଁ । ବରଞ୍ଚ ତାଙ୍କର ବିଚିତ୍ର ଓଡ଼ିଆ ଭାଷା ଶ୍ରବଣକରି ଏବଂ ବିଚିତ୍ର ରୂପ ହସ୍ତପଦ ସଞ୍ଚାଳନ ଦେଖି ମନେ ମନେ ହସେଁ । ମୁଁ ତୁନ ହୋଇ ସେ ସ୍ଥାନରୁ ଚାଲିଯାଏଁ । ସେହି ସମୟରେ ବାଲେଶ୍ୱର ମିସନ ବାଳିକା ବିଦ୍ୟାଳୟରେ ଜଣେ ପଣ୍ଡିତ ନିଯୁକ୍ତ ଥିଲେ । ତାଙ୍କର ନାମ ବିଶ୍ୱନାଥ ଶତପଥୀ । ସେ ଯେପରି ଶିକ୍ଷିତ, ସେହିପରି ବିଚିତ୍ର କର୍ମା । ଓଡ଼ିଆ ଓ ସଂସ୍କୃତ ଭାଷାରେ ଉପସ୍ଥିତ କବି; ସଙ୍ଗୀତ, ସୂଚୀ କାର୍ଯ୍ୟ ଓ କେତେକ କଳା ବିଦ୍ୟାରେ ଅଭିଜ୍ଞ ଥିଲେ । ଲୋକଟି ବିଶେଷ ଆମୋଦପ୍ରିୟ । ମୋ ସହିତ ତାଙ୍କର ବେଶ୍ ପ୍ରଣୟ ଥିଲା । ତାଙ୍କର ଉପସ୍ଥିତ କବିତ୍ୱ ସମ୍ବନ୍ଧରେ ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦେବାକୁ ଇଚ୍ଛା କରେ । ମିସନ ସ୍କୁଲ ଓ ବାଳିକା ସ୍କୁଲ ଗୋଟିଏ ବଡ଼ ବଙ୍ଗଳା ଘର ମଧ୍ୟରେ ଥିଲା । ମଧ୍ୟରେ ପଟେ କାନ୍ଥ ବ୍ୟବଧାନ । ବାଳିକା ବିଦ୍ୟାଳୟରେ କେବଳ ଖ୍ରୀଷ୍ଟାନ ଛାତ୍ରୀମାନେ ପଢ଼ୁଥିଲେ । ଜାତିପାତି ଆଶଙ୍କାରେ ବାଳକମାନଙ୍କୁ ପଢ଼ାଇବା ହିନ୍ଦୁମାନଙ୍କ ପକ୍ଷରେ ନିତାନ୍ତ ଭୟର କାରଣ ଥିଲା ।

ବାଳିକା ସ୍କୁଲରେ ଗୋଟିଏ ବଡ଼ ଛାତ୍ରୀ ପଢ଼ୁଥିଲା, ତାହାର ନାମ ଶାରଦା । କୌଣସି ପ୍ରୟୋଜନ ହେତୁରୁ ଶାରଦାକୁ ମୋ ପାଖକୁ ପଠାଇ ଦେବା ସକାଶେ ଖଣ୍ଡିଏ ସାନ କାଗଜରେ ଲେଖି ବିଶ୍ୱନାଥଙ୍କ ସମୀପକୁ ପଠାଇ ଦେଲି । ଶତପଥୀଏ ସେହି ସାନ ଚିଠି ଖଣ୍ଡିକର ପଛପଟରେ ଲେଖି ପଠାଇଲେ, "ଲଜ୍ଜାବତୀ ନେଚ୍ଛତି ତତ୍ର ଗନ୍ତୁମ୍ ।" ମୁଁ ସେହି କାଗଜ ଖଣ୍ଡ ଧରି ବାରନ୍ଦାକୁ ଉଠି ଯାଇ ବିଶ୍ୱନାଥ ପଣ୍ଡିତଙ୍କୁ ଡାକିଲି । ସେ ଉପସ୍ଥିତ ହେବାରୁ କହିଲି, "ଶୀଘ୍ର ଏହି କବିତାଟିର ପାଦ ପୂରଣ କର । ଗୋଟିଏ ମାତ୍ର ଚରଣ ଲେଖି କବିତ୍ୱ ଜଣାଇବ ପରା ?" ବିଶ୍ୱନାଥ ପଣ୍ଡିତ ସେହି ସ୍ଥାନରେ ଛିଡ଼ା ହୋଇ ତତ୍‌କ୍ଷଣାତ୍ ମୁହେଁ ମୁହେଁ କହିଲେ,

"ଉତ୍ତୁଙ୍ଗ ବକ୍ଷାହି ନିତମ୍ବ ଗୁର୍ବୀ
ନବୀନ ଧାରାଧର ଚାରୁ କେଶା ।
ସଦୈବ ହାସ୍ୟାମୃତ ପୂର୍ଣ୍ଣ ବକ୍ତ୍ରା
ଲଜ୍ଜାବତୀ ନେଚ୍ଛତି ତତ୍ର ଗନ୍ତୁମ୍ ।"

ଦିନେ ପଣ୍ଡିତ ବିଶ୍ୱନାଥ ଶତପଥୀ ସ୍କୁଲରେ ଅନୁପସ୍ଥିତ ଥିଲେ । ଦୈବାତ୍ ସେଦିନ ମୁସଲମାନମାନଙ୍କ ମହରମ ପର୍ବ ଥିଲା । ତହିଁ ଆରଦିନ ସେକ୍ରେଟରି ମିଲର ସାହେବ ତାଙ୍କୁ ଡକାଇ ନେଇ ପଚାରିଲେ, "ଓ ବିଶ୍ୱନାଥ ପଣ୍ଡିତ, ତୁମ୍ଭେ କି ସକାଶ ନ ଆସିଲ ଗଲା କାଲି ।"

ବିଶ୍ୱନାଥ—ଗଲା କାଲି ମୋହର ବେମାରି ହୋଇଥିଲା, ସେଥି ସକାଶେ ମୁଁ ଆସି ପାରିଲି ନାହିଁ ।

ମିଲର ସାହେବ—ଓ ତୁମ୍ଭେ ମିଥ୍ୟାବାଦୀ ଅଛ, କାଲି ମହରମ ପୂଜା କରିବାକୁ ଗଲ । ତୁମ୍ଭପାଇଁ ଗୋଟିଏ ଟଙ୍କା ଜରିମାନା ରଖାଗଲା ।

ବିଶ୍ୱନାଥ—ସାହେବ, ମୁଁ ହିନ୍ଦୁ ବ୍ରାହ୍ମଣ, ମୁସଲମାନ ମହରମ ପୂଜା କଲି କିପରି ?

ମିଲର—ଓ ତୁମ୍ଭେ ସମସ୍ତ ଦେବପୂଜକ ସମାନ ଅଛ ।

ସାହେବ ଏକଟଙ୍କା ଜରିମାନା କଲେ ମଧ୍ୟ ତାଙ୍କ ଅଜ୍ଞତା ଦେଖି ଆମ୍ଭେମାନେ ଖୁବ୍ ହସିଲୁଁ । ଆମ୍ଭମାନଙ୍କ ଅନ୍ୟାନ୍ୟ ବନ୍ଧୁମାନେ ମଧ୍ୟ ମାସେ ଯାଏ ଏହି କଥା ଘେନି ଖୁବ୍ ହାସ୍ୟ କୌତୁକ କଲେ ।

ପ୍ରଭୁ ଯିଶୁଖ୍ରୀଷ୍ଟଙ୍କ ଧର୍ମକାହାଣୀ ହାଟ ଏବଂ ଅନ୍ୟାନ୍ୟ ପ୍ରଧାନ ସ୍ଥାନମାନଙ୍କରେ ପ୍ରଚାର କରିବା ସକାଶେ ସାହେବ ପ୍ରଚାରକ ଭାଇମାନଙ୍କୁ ସଙ୍ଗରେ ଘେନି ମଫସଲର ଦୂରବର୍ତ୍ତୀ ସ୍ଥାନମାନଙ୍କୁ ଯାନ୍ତି । ସେମାନେ ବାଲେଶ୍ୱରକୁ ବାହୁଡ଼ିବା ସଙ୍ଗେ ସଙ୍ଗେ ତାଙ୍କ ବିପକ୍ଷରେ ଫୌଜଦାରିରେ ମାମଲି ଦାଏର ହୋଇଯାଏ ।

ମାମଲାର ବିବରଣ—ପ୍ରଚାରକ ଭାଇମାନଙ୍କ ସହିତ ସାହେବ ହାଟର ପ୍ରକାଶ୍ୟ ସ୍ଥାନରେ ଛିଡ଼ା ହୋଇ ଇଂରାଜୀ ରାଗିଣୀରେ ଉଚ୍ଚକଣ୍ଠରେ ପ୍ରଥମେ ଗୋଟିଏ ଗୀତ ଗାଇଲେ ହାଟର ଲୋକେ ସେହି ଅପୂର୍ବ ସ୍ୱରର ଗୀତ ଶୁଣିବାକୁ ରୁଣ୍ଡ ହୋଇଯାନ୍ତି । ଗୀତର ଅର୍ଥ ବୁଝିବା ହାଟୁଆ ବାଟୁଆଙ୍କ କଥା ତେଣିକି ଥାଉ, କୌଣସି ଶିକ୍ଷିତ ଲୋକ ମଧ୍ୟ ସେ ଗୀତର ଅର୍ଥ ବୁଝିବାକୁ ସମର୍ଥ ହେବେ ନାହିଁ । ସଙ୍ଗୀତ ସମାପ୍ତ ହେବା ଉତ୍ତାରେ ସାହେବ ସ୍ୱୟଂ ବକ୍ତୃତା ଆରମ୍ଭ କରନ୍ତି—ଏ ବାଇମାନେ, ତୁମ୍ଭ ମାନଙ୍କ ଜଗନ୍ନାଥ କାଷ୍ଠ ଅଛି, ପାଷାଣ ଅଛି, ସେ କିଛି ନୁହେ । ତାଙ୍କୁ ଭଜିଲେ ଅନନ୍ତ ନରକରେ ପଡ଼ିବ । ପ୍ରଭୁ ଯିଶୁଖ୍ରୀଷ୍ଟ ତ୍ରାଣକର୍ତ୍ତା ଅଟନ୍ତି । ତାଙ୍କୁ ଭଜିଲେ ଆଲୁଅ ପାଇବ, ସ୍ୱର୍ଗ ରାଜ୍ୟରେ ଅଧିକାରୀ ହେବ ।

କେହି ନିର୍ବୋଧ ଲୋକ ଯେବେ କହି ପକାଏ, 'ନାହିଁ ନାହିଁ ସାହେବ, ଆମ୍ଭ ଜଗନ୍ନାଥ ଭଲ, ତୁମ୍ଭ ଯିଶୁ ଖ୍ରୀଷ୍ଟ ଭଲ ନୁହେ ।' ସାହେବ ତ କ୍ରୋଧରେ ଅସ୍ଥିର । 'ଆରେ ଦୁଷ୍ଟ ଦେବପୂଜକ ହିନ୍ଦୁ, ପ୍ରଭୁ ଯିଶୁଖ୍ରୀଷ୍ଟଙ୍କୁ ନିନ୍ଦା କଲୁ ।' ହାତରେ ଘୋଡ଼ାଚାବୁକ ଥାଏ, ଦେ ପ୍ରହାର ! କେବଳ ଖ୍ରୀଷ୍ଟ ନିନ୍ଦୁକକୁ ନୁହେ, ଯେ ଆଗରେ ପଡ଼ଯାଏ, ତାହାକୁ ପ୍ରହାର । ଶେଷରେ ଫୌଜଦାରୀ ଅଦାଲତରେ ମାମଲି ଦାଏର ହୁଏ ।

ଭଲରୂପେ ଓଡ଼ିଆଭାଷା ଜାଣନ୍ତି ବୋଲି ସାହେବଙ୍କର ବିଶ୍ୱାସ ଥିଲା । କେତେକ ଦିନ ପରିଶ୍ରମ କରି ଖଣ୍ଡିଏ କ୍ଷୁଦ୍ର ଇଂରାଜୀ ପୁସ୍ତକ ଓଡ଼ିଆରେ ଅନୁବାଦ କରି ପକାଇଲେ । ଅନୁବାଦ କାର୍ଯ୍ୟ ସମାପ୍ତ ହେଲା ଉତ୍ତାରୁ କଥା ହେଲା ଯେ, ମୁଁ ସେହି ଅନୁବାଦ ପଢ଼ି ଭୁଲ୍ ସଂଶୋଧନ କରି ଦେବା ଉତ୍ତାରେ ସର୍ବପ୍ରଧାନ ପ୍ରଚାରକ ଭିକାରୀଭାଇ ମୂଳରୁ ଶେଷଯାଏ ପଢ଼ିଯିବେ । ଠିକ ଥିଲେ ଛାପାଖାନାକୁ ପଠାଯିବ । ମୁଁ ପାଣ୍ଡୁଲିପି ଖଣ୍ଡିକ ପାଇ ସଂଶୋଧନ କାର୍ଯ୍ୟ ଆରମ୍ଭ କରିଦେଲି । ମୋର ସ୍ମରଣ ଅଛି ପୁସ୍ତକର ପ୍ରଥମ ଅଂଶଟା ଏହିପରି ଥିଲା—"ଅଛନ୍ତି ଏପରି ଢେର ଲୋକ ପୃଥିବୀରେ ଯେଉଁମାନେ ସେମାନେ ବିଶ୍ୱାସ କଲେ ନାହିଁ ଅଛନ୍ତି ପରମେଶ୍ୱର ଜଗତରେ ।" ମୁଁ ଉପର ଲିଖିତ ଅଂଶଟା ସଂଶୋଧନ କରି ଲେଖିଥିଲି, ପରମେଶ୍ୱରଙ୍କ ଅସ୍ତିତ୍ୱ ଅସ୍ୱୀକାର କରନ୍ତି, ଏ ପ୍ରକାର ଲୋକ ପୃଥିବୀରେ ଅନେକ ଅଛନ୍ତି ।"

ପୁସ୍ତକ ଖଣ୍ଡିକ ସଂଶୋଧନ କରିସାରି ଭିକାରୀ ଭାଇଙ୍କ ନିକଟକୁ ଘେନିଗଲି । ସେ ହାତଲେଖା ପଢ଼ି ପାରନ୍ତି ନାହିଁ । ମୁଁ ପଢ଼ି ଶୁଣାଇବାକୁ ଲାଗିଲି । ଭିକାରୀ ଭାଇ ତ ପ୍ରଥମ ଧାଡ଼ିଟା ମାତ୍ର ଶୁଣି କ୍ରୋଧରେ ଅସ୍ଥିର, ଖୁବ୍ ପାଟିଟାଏ କରି କହିଲେ, "କ'ଣ ? କ'ଣ ? କ'ଣ ଲେଖିଛ ପଣ୍ଡିତେ ? ପରମେଶ୍ୱରଙ୍କ ହାଡ଼ ? ପରମେଶ୍ୱର ଦେବ ପୂଜକ ମୂର୍ତ୍ତିପରି କାଷ୍ଠ ପାଷାଣରେ ତିଆରି ଯେ ତାଙ୍କର ହାଡ଼ ଥିବ ?" ମୁଁ କିଛି କଥା ବୁଝି ନ ପାରି ଭକୁଆ ହୋଇ ତାଙ୍କ ମୁହଁକୁ ଚାହିଁ ରହିଥାଏଁ । ଭିକାରୀ ଭାଇ ମୋତେ ବୁଝାଇବାକୁ ଅନେକ ପ୍ରକାର ଚେଷ୍ଟା କରୁଥାନ୍ତି ଯେ ପରମେଶ୍ୱରଙ୍କ ହାଡ଼ ନାହିଁ । ମୁଁ କୋମଳ ବିନୀତ ଭାବରେ ପଚାରିଲି, "ଭିକାରୀ ଭାଇ, ମୁଁ ହାଡ଼ କଥା କେଉଁଠାରେ ଲେଖିଛି ?" ଭିକାରୀ ଭାଇ କହିଲେ, "ଏହି ଯେ ଲେଖିଛ ଅସ୍ଥି । ହାଡ଼କୁ ଅସ୍ଥି କହନ୍ତି, ଏ କଥା କ'ଣ

ଆମ୍ଭଙ୍କୁ ଜଣାନାହିଁ ?'' ମୋତେ ଏତିକ ମାତ୍ରକଥା କହି ସାହେବଙ୍କ ସମୀପରେ ଉପସ୍ଥିତ ହୋଇ କ୍ରୋଧରେ ଚିତ୍କାର କରି କହିଲେ, ''ସାହେବ ଭାଇ, ପଣ୍ଡିତ ତୁମ୍ଭ ପୁସ୍ତକରେ ଅପବିତ୍ର କଥା ଲେଖିଦେଇ ନଷ୍ଟ କରି ପକାଇଲେଣି ।''

ସାହେବଙ୍କ ଜାଣିବାରେ ଭିକାରି ଭାଇ ଜଣେ ବିଦ୍ୱାନ୍ ଲୋକ । ଯେ ହେତୁ ସେ କୁଚ୍ଛେଇ କୁଚ୍ଛେଇ ଜନ୍, ଲୁକ୍, ମାଥିଉ ଛାପା ବାଇବେଲ ପଢ଼ି ପାରନ୍ତି, ପୁଣି ଖ୍ରୀଷ୍ଟାନ୍, ସୁତରାଂ ବିଶ୍ୱାସୀ ଲୋକ; ତାଙ୍କ କଥା ନିଶ୍ଚୟ ସତ୍ୟ । ମୁଁ ଜଣେ ଦେବପୂଜକ ଦୁଷ୍ଟ ହିନ୍ଦୁ; ସୁତରାଂ ବିଶ୍ୱାସର ଅଯୋଗ୍ୟ । ସାହେବ ମୋତେ କିଛି ମାତ୍ର କଥା ନ ପଚାରି କ୍ରୋଧରେ ଗର୍ଜ୍ଜନ କରିବାକୁ ଲାଗିଲେ । ଅନେକ ଦିନ ପର୍ଯ୍ୟନ୍ତ ମୋ ସହିତ ଭଲରୂପେ କଥା କହିଲେ ନାହିଁ । ତାଙ୍କ ରଚିତ ପୁସ୍ତକର ପରିଣାମ ଫଳ କଣ ହେଲା, ମୋତେ ଜଣାନାହିଁ ।

ମୁଁ ଯେଉଁ ସମୟର କଥା କହୁଅଛି, ସେ ସମୟରେ ବାଲେଶ୍ୱରରେ ଖ୍ରୀଷ୍ଟାନମାନଙ୍କର ସାନ ସାନ ପାଞ୍ଚୋଟି ମାତ୍ର ଘରଦ୍ୱାର ଥିଲା । ବର୍ତ୍ତମାନକୁ ବଡ଼ ବଡ଼ ତିନୋଟି ଗ୍ରାମ ବସିଗଲାଣି । ପ୍ରତି ରବିବାର ଦିନ ଶତ ଶତ ଉପାସକମଣ୍ଡଳୀରେ ଭଜନାଳୟ ପୂର୍ଣ୍ଣ ହୁଏ । ସେମାନଙ୍କ ମଧ୍ୟରେ ଅନେକ ସମ୍ଭ୍ରାନ୍ତ, ପଦସ୍ଥ, ବିଦ୍ୱାନ ଲୋକଙ୍କୁ ମଧ୍ୟ ଦେଖିବାକୁ ପାଇବେ । ଏ ସମସ୍ତ ଖ୍ରୀଷ୍ଟାନ କାହୁଁ ଆସିଲେ ? ପ୍ରଚ୍ଛନ୍ନ ଭାବରେ ହିନ୍ଦୁସମାଜ ଯେ ପ୍ରକାର ଧ୍ୱଂସମାର୍ଗରେ ଧାବିତ ହେଉଅଛି କେତେକ ଶତାବ୍ଦୀ ଉତ୍ତାରେ ଏ ସମାଜର ଚିହ୍ନମାତ୍ର ରହିବ ନାହିଁ, ଏହା ନିଶ୍ଚୟ ଜାଣିବେ । ବେଳସୁଁ ଏଥିର ପ୍ରତିକାର ଲୋଡ଼ିବା ପ୍ରତ୍ୟେକ ଚିନ୍ତାଶୀଳ ହିନ୍ଦୁଙ୍କ ପକ୍ଷରେ କର୍ତ୍ତବ୍ୟ ଅଟେ । ପୃଥିବୀର ସର୍ବପ୍ରଥମ ଧର୍ମଗ୍ରନ୍ଥ ବେଦ, ଉପନିଷଦ୍ ଏବଂ ଜଗନ୍ମାନ୍ୟ ଗୀତାଶାସ୍ତ୍ର ଯେଉଁ ଜାତିର ମୂଳ ଧର୍ମଶାସ୍ତ୍ରରୂପେ ଅବଲମ୍ବନ, ସେ ଜାତିର ଦୁର୍ଦ୍ଦଶା ଦେଖିଲେ ସହଜରେ ଦାରୁଣ କଷ୍ଟ ମନରେ ଜାତ ହୁଏ ।

ରେଭରେଣ୍ଡ ମିଲର ସାହେବଙ୍କ ନାମରେ ଫୌଜଦାରି ମାମଲା ଦାଏର ହେବା'ରୁ ଆମେରିକା ମିସନ ସୋସାଇଟି ତାଙ୍କ ସମ୍ପର୍କ ତ୍ୟାଗ କଲେ । ମାତ୍ର ଅଧିକ ଦିନ ତାଙ୍କୁ ଅନର୍ଥକ କୋଠିରେ ବସି ରହିବାକୁ ହୋଇ ନ ଥିଲା । ବାଲେଶ୍ୱର ଜିଲ୍ଲାର ତାତ୍କାଳୀକ କଲେକ୍ଟର ମିଷ୍ଟର ବିଗନ୍‌ଲଡ୍ ସାହେବ ଗବର୍ଣ୍ଣମେଣ୍ଟଙ୍କୁ ଲେଖି ତାଙ୍କୁ ଡେପୁଟି କଲେକ୍ଟର ପଦରେ ନିଯୁକ୍ତ କରାଇଥିଲେ, ମାତ୍ର ଡେପୁଟି ପଦ ପ୍ରାପ୍ତିର ତେତେକ ମାସ, ଉତ୍ତାରେ ସେ ପରଲୋକ ଯାତ୍ରା କଲେ ।

ବାଲେଶ୍ୱର ଜିଲ୍ଲା'ର ଏକାଟିଂ କଲେକ୍ଟର ଆର୍. ଏଇଚ୍., ପଣି ସାହେବ ଏବଂ ଜଏଣ୍ଟ ମାଜିଷ୍ଟ୍ରେଟ ମେପୂର୍ଣ ସାହେବ ଏକ ସଙ୍ଗରେ ଏକକୋଠିରେ ଥାନ୍ତି । ମୁଁ ସେମାନଙ୍କୁ ବଙ୍ଗଳା ପଢ଼ାଉଥିଲି । ଆର୍ଥିକ ଉନ୍ନତି ଆଶାକରି ମୋତେ ସରକାରୀ କୌଣସି କର୍ମରେ ନିଯୁକ୍ତ କରିବା ସକାଶେ ଜଣାଇବାରୁ କଲେକ୍ଟର ପଣି ମହୋଦୟ ମୋତେ ବାଲେଶ୍ୱର କଲେକ୍ଟରୀ ସିରସ୍ତାରେ ମୁନସ୍ କାର୍ଯ୍ୟରେ ନିଯୁକ୍ତ କରିଦେଲେ । ମାତ୍ର ସେ କାର୍ଯ୍ୟରେ ରହିଲେ ଲେଖାପଢ଼ା ଶିଖିବାର ସମୟ ମିଳେ ନାହିଁ, ପୁଣି ସେହି ସମୟରେ ରେଭରେଣ୍ଡ ଇ. ସି. ବି. ହାଲମ୍ ବାଲେଶ୍ୱର ମିସନ ସ୍କୁଲର ସମ୍ପାଦକ ପଦରେ ନିଯୁକ୍ତ ହେବାରୁ ମୋର ପୂର୍ବ କାର୍ଯ୍ୟକୁ ଫେରି ଆସିଲି । ରେଭରେଣ୍ଡ ହାଲମ୍ ସାହେବ ଦେଖିବାକୁ ଯେମନ୍ତ ସୁନ୍ଦର ପୁରୁଷ, ସେହିପରି ବିଦ୍ୱାନ୍ ଏବଂ ଗୁଣବାନ୍ ଥିଲେ । ଅତି ମଧୁରଭାଷୀ ଏବଂ ସ୍ୱଭାବ ସୁନ୍ଦର ଓ କୋମଳ ଥିଲା । ଓଡ଼ିଆ ଭାଷାରେ ବିଶେଷ ପାରଦର୍ଶିତା

ଲାଭ କରିଥିଲେ । ତାଙ୍କର ଓଡ଼ିଆ ଶବ୍ଦ ଉଚ୍ଚାରଣ ଏବଂ ସ୍ୱର ପ୍ରକୃତ ଉତ୍କଳବାସିଙ୍କ ସ୍ୱର ପରି ଥିଲା । କଥା କହୁଥିବା ସମୟରେ ଠିକ୍ ଜଣେ ଓଡ଼ିଆ ଲୋକ କଥା କହୁଥିବା ପରି ଶୁଣାଯାଏ । ଉତ୍କଳରେ ଖ୍ରୀଷ୍ଟାନ ଧର୍ମ ପ୍ରଚାର ଠାରୁ ଜ୍ଞାନ ଓ ସୁନୀତି ପ୍ରଚାର ଅଧିକ ଉପଯୋଗୀ ବୋଲି ସେ ଜ୍ଞାନ କରୁଥିଲେ । ସେହିପରି ମଧ୍ୟ ତାଙ୍କର କାର୍ଯ୍ୟଥିଲା ।

ଇଂରାଜମାନଙ୍କ ଓଡ଼ିଆ ଶିକ୍ଷାର ସୁବିଧା ନିମନ୍ତେ ସାହେବ ଖଣ୍ଡେ ଓଡ଼ିଆ ଇଂରାଜୀ ବ୍ୟାକରଣ ସଂଗ୍ରହ କଲେ । ପୁସ୍ତକ ପ୍ରଣୟନ ସମୟରେ ମୁଁ ତାଙ୍କୁ କିଞ୍ଚିତ୍ ସାହାଯ୍ୟ କରିଥିଲି । କୃତଜ୍ଞ ହାଲମ୍ ସାହେବ ସେଥିସକାଶେ ମୋ ନାମ ତାଙ୍କ ପୁସ୍ତକରେ ଉଲ୍ଲେଖ କରି ଯାଇଅଛନ୍ତି । ଓଡ଼ିଆ ବ୍ୟାକରଣର ଅନ୍ୟାନ୍ୟ ବିଷୟରେ ତାଙ୍କ ମତ ସହିତ ମୋ ମତର ସାମଞ୍ଜସ୍ୟ ଥିଲେ ମଧ୍ୟ କେବଳ ଗୋଟିଏ ବିଷୟରେ ମତାନ୍ତର ଘଟିଥିଲା । ତାଙ୍କ ମତରେ ଓଡ଼ିଆ ଭାଷାରେ ସମ୍ପ୍ରଦାନ ବୋଲି ଗୋଟାଏ ସ୍ୱତନ୍ତ୍ର କାରକ ରହିବା ଉଚିତ ନୁହେ । କର୍ମ ଏବଂ ସମ୍ପ୍ରଦାନ ଉଭୟ କାରକର ବିଭକ୍ତି 'କୁ'; ଏ ସ୍ଥଳରେ ସମ୍ପ୍ରଦାନ ନାମ ସ୍ୱତନ୍ତ୍ରରୂପେ ଉଲ୍ଲେଖ କରିବା ପ୍ରୟୋଜନ କ'ଣ ? ପ୍ରକୃତରେ ସେ ତାଙ୍କ ବ୍ୟାକରଣରୁ ସମ୍ପ୍ରଦାନ କାରକର ନାମ ଉଠାଇ ଦେଇଅଛନ୍ତି ।

ଏହି ସମୟରେ ଉତ୍କଳରେ ସାହାଯ୍ୟକୃତ ବଙ୍ଗୋତ୍କଳ ବିଦ୍ୟାଳୟର ଶେଷ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରମାନଙ୍କୁ ମାସିକ ଚାରିଟଙ୍କା ବୃତ୍ତି ଦିଆଯାଇ ଚାରିବର୍ଷ ସକାଶେ ଇଂରାଜୀ ପଢ଼ିବାର ନିୟମ ପ୍ରଚଳିତ ହେଲା । ପ୍ରଥମ ବର୍ଷରେ ଚାରିଜଣ ଛାତ୍ର ବାଲେଶ୍ୱର ମିସନ ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇଥିଲେ । ସେଥି ମଧ୍ୟରୁ ତିନିଜଣ ମାସିକ ଚାରିଟଙ୍କା ହିସାବରେ ବୃତ୍ତି ପାଇଥିଲେ । ସେମାନଙ୍କ ମଧ୍ୟରେ ମୋହର ବଡ଼ ଜାମାତା ରଘୁନାଥ ପ୍ରସାଦ ଚୌଧୁରୀ ଅନ୍ୟତମ ଥିଲେ । ସମସ୍ତ ଉତ୍କଳ ମଧ୍ୟରେ ବାଲେଶ୍ୱର ମିସନ ସ୍କୁଲ ସର୍ବଶ୍ରେଷ୍ଠ ସ୍ଥାନ ଅଧିକାର କରିବାରୁ ଗୁଣଗ୍ରାହୀ ସମ୍ପାଦକ ରେଭରେଣ୍ଡ ହାଲମ୍ ସାହେବ ମୋର ବେତନ ପଚିଶ ଟଙ୍କା କରି ଦେଲେ ।

ଏହି ସମୟରେ ବାଲେଶ୍ୱର ଜିଲ୍ଲାର କଲେକ୍ଟର ମାଜିଷ୍ଟ୍ରେଟ ଜନ୍ ବୀମସ୍ ସାହେବ ଜଣେ ଅସାଧାରଣ ପଣ୍ଡିତ ବୋଲି ତତ୍କାଳୀନ ସିଭିଲିଆନ୍ ମଣ୍ଡଳୀ ଏବଂ ଦେଶୀୟ ଶିକ୍ଷିତ ସମାଜରେ ବିଶେଷରୂପେ ଖ୍ୟାତି ଲାଭ କରିଥିଲେ । ଏଗାରଟା ଭାଷାରେ ତାଙ୍କର ପାରଦର୍ଶିତା-ଥିଲା । ସେହି ସମୟରେ ବାଲେଶ୍ୱରରେ ସେ ତାଙ୍କର ଆର୍ଯ୍ୟଭାଷା ସମ୍ବନ୍ଧୀୟ ବ୍ୟାକରଣ (Grammar) ଲେଖିବାରେ ନିଯୁକ୍ତ ଥାନ୍ତି । ରେଭରେଣ୍ଡ ହାଲମ୍ ଜଣେ ସୁବିଖ୍ୟାତ ସାହିତ୍ୟଚର୍ଚ୍ଚାକାରୀ ଥିଲେ । ଏଥିକୁ ଉଭୟ ସାହେବଙ୍କ ମଧ୍ୟରେ ବିଶେଷରୂପେ ସମ୍ପ୍ରୀତି ଜାତ ହୋଇଥିଲା । ଜନ୍ ବୀମ୍ସ ସାହେବଙ୍କ ପଞ୍ଚଭାଷିକ ବ୍ୟାକରଣ ଲେଖା ସମୟରେ ସଂସ୍କୃତ ବଙ୍ଗଳା ଓ ଓଡ଼ିଆ ଏହି ତିନି ଭାଷାରେ ଜ୍ଞାନଥିବା ଜଣେ ପଣ୍ଡିତ ଆବଶ୍ୟକ ହେଲା । ମୋର ପରମ ହିତୈଷୀ ରେଭରେଣ୍ଡ ଇ. ସି. ବି. ହାଲମ୍ ସାହେବ ମୋତେ ସଙ୍ଗରେ ଘେନିଯାଇ ଜନ୍ ବୀମ୍ସ ସାହେବଙ୍କ ସହିତ ପରିଚିତ କରାଇ ଦେଲେ । ପ୍ରଥମ ସାକ୍ଷାତ୍ ଉତ୍ତାରେ ଜନ୍ ବୀମ୍ସ ମହୋଦୟ ସଂସ୍କୃତ ତଦ୍ଧିତ ପ୍ରତ୍ୟୟ ଓ ଅବ୍ୟୟ ଶବ୍ଦ ସମ୍ବନ୍ଧରେ ମୋତେ କେତୋଗୋଟି କଥା ପଚାରି ବସିଲେ । ଦୈବାତ୍ ସେଗୁଡ଼ିକର ଉତ୍ତର ସାହେବଙ୍କର ମନୋମତ ହେବାରୁ ମୋର ସେହି ଉତ୍ତର ଗୁଡ଼ିକ ତାଙ୍କ ରଚିତ ସେହି ପଞ୍ଚଭାଷିକ ଆର୍ଯ୍ୟଭାଷା ବ୍ୟାକରଣରେ ଯୋଗକରି ଦେଲେ । ସାହେବମାନଙ୍କ ମହଲରେ ମୁଁ ବିଶେଷରୂପେ ପରିଚିତ ହୋଇ ପଡ଼ିଲି । "ନିରସ୍ତ ପାଦପେ ଦେଶେ ଏରଣ୍ଡୋଽପି ଦ୍ରୁମାୟତେ ।"

ସେ ସମୟରେ ବାଲେଶ୍ୱରରେ ଶିକ୍ଷିତ ସମାଜର ସଙ୍କୀର୍ଣ୍ଣତା ହେତୁରୁ ସାହେବମାନଙ୍କ ମତରେ ମୁଁ ଜଣେ ପଣ୍ଡିତ ବୋଲି ପରିଚିତ ହୋଇ ପଡ଼ିଲି । ସପ୍ତାହରେ ଅନ୍ତତଃ ଥରେ ସାକ୍ଷାତ୍ କରିବା ସକାଶେ ସାହେବ ମୋତେ ଆଦେଶ ଦେଲେ । କଦାଚିତ୍ ଦିନେ ବା ଦୁଇଦିନ ବିଳମ୍ବ ହୋଇଗଲେ ସାକ୍ଷାତ୍ ହେବା ମାତ୍ରକେ ପଚାରନ୍ତି—'ବାବୁ, ମୋ ସହିତ ସାକ୍ଷାତ୍ କରିବାକୁ କି ସକାଶେ ଏତେ ବିଳମ୍ବ କଲ ?' ସାକ୍ଷାତରେ ସାହେବଙ୍କ ସହିତ ପ୍ରାୟୁଶ ଭାଷା ସମ୍ବନ୍ଧରେ ଚର୍ଚ୍ଚା ହୋଇଥାଏ । କେଉଁଦିନ ସଂସ୍କୃତ ଶ୍ଳୋକ, କେବେ ବା ବଙ୍ଗଳା ପଦ୍ୟ, ଓଡ଼ିଆ ରସକଲ୍ଲୋଳ, ସାପମନ୍ତ୍ର, ଡାଆଣି ମନ୍ତ୍ର ଏହି ସମସ୍ତ ବିଷୟରେ କଥୋପକଥନ ହୋଇଥାଏ ।

ସେ ସମୟରେ ବାଲେଶ୍ୱରରେ ବଙ୍ଗାଳୀ ଆଉ ଓଡ଼ିଆମାନଙ୍କ ମଧ୍ୟରେ ବିବାଦ ଚଳୁଥିଲା । ସାହେବମାନେ ମୋର ସପକ୍ଷ ଥିବାରୁ ବଙ୍ଗାଳୀ ହାକିମ ଏବଂ ବଡ଼ ବଡ଼ କିରାଣୀ ଅମଲାମାନେ ମୋ ପାଖରେ ଶଙ୍କି ରହିଥାନ୍ତି । ସେ ସମୟରେ ବାଲେଶ୍ୱରରେ ନିମ୍ନଶ୍ରେଣୀର ହାକିମ ଏବଂ ବଡ଼ ବଡ଼ ବେତନଭୋଗୀ କର୍ମଚାରୀ ପ୍ରାୟ ସମସ୍ତେ ବଙ୍ଗାଳୀ ଥିଲେ ।

ବାଲେଶ୍ୱରରେ ସ୍ତ୍ରୀ ଶିକ୍ଷା ପ୍ରଚାର ଏବଂ ଉତ୍କଳ ଭାଷାର ରକ୍ଷା ଓ ପୁଷ୍ଟିସାଧନ ବିଷୟରେ ମୁଁ କଲେକ୍ଟର ଜନ୍ ବିମ୍ସ ସାହେବଙ୍କଠାରୁ ଯଥେଷ୍ଟ ସହାୟତା ପ୍ରାପ୍ତ ହୋଇଅଛି । ସାହେବ ମହୋଦୟ ମୋତେ ଅନେକଥର ଅନେକ ପ୍ରକାର ବିପଦରୁ ରକ୍ଷା କରିଅଛନ୍ତି । ଗୋଟିଏ ମାତ୍ର କଥା କହିଲେ ଯଥେଷ୍ଟ ହେବ, ସାହେବ ମହୋଦୟ ମୋର ପରମ ସହାୟ ଓ ହିତୈଷୀ ଥିଲେ । ମୋର ସାଂସାରିକ ସର୍ବପ୍ରକାର ଉନ୍ନତିର ଏକମାତ୍ର ମୂଳାଧାର ମହାତ୍ମା ଜନ୍ ବିମ୍ସ । ମୋର ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କର ପବିତ୍ର ନାମ ସ୍ମରଣ କରିବି । ତାଙ୍କ ସ୍ୱର୍ଗତଃ ଆତ୍ମାର ସଦ୍‌ଗତି ନିମନ୍ତେ ମୁଁ ପ୍ରତିଦିନ ସକାଳ ସନ୍ଧ୍ୟା ଦୁଇଥର ଉପାସନା ସମୟରେ ପ୍ରଭୁ ପରମେଶ୍ୱରଙ୍କଠାରେ ପ୍ରାର୍ଥନା କରିଥାଏଁ । ମୁଁ ନିତାନ୍ତ ଲଜ୍ଜିତ ହୋଇ ଲେଖୁଅଛି, ମୁଁ ଜଣେ ଦେଶ ହିତୈଷୀ ପଣ୍ଡିତ ବୋଲି ସାହେବ ମହୋଦୟ ସମସ୍ତଙ୍କଠାରେ କହୁଥିଲେ ।

( ଉ. ସ. ୬୬ଶ ଭାଗ—୧୦ମ ସଂଖ୍ୟା )

———

## ୧୧

## କଟକ ନର୍ମାଲ ସ୍କୁଲର ପଣ୍ଡିତ କର୍ମ

ବଙ୍ଗଳା ଦକ୍ଷିଣ ପଶ୍ଚିମ ବିଭାଗର ସ୍କୁଲ-ଇନ୍‌ସ୍ପେକ୍ଟର ଆର୍. ଏଲ. ମାର୍ଟିନ୍ ସାହେବଙ୍କ ପ୍ରଧାନ କାର୍ଯ୍ୟାଳୟ ମେଦିନୀପୁରରେ ଥିଲା । ଓଡ଼ିଶାର ସ୍କୁଲ ସମୂହ ପରିଦର୍ଶନ କରିବା ନିମନ୍ତେ ସେ କଟକ ଆସିଥିଲେ । ସେହି ସମୟରେ କଟକ ନର୍ମାଲ ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦ ଶୂନ୍ୟ ଥିଲା । ମାସିକ ବେତନ ତିରିଶ ଟଙ୍କା । ମୁଁ ସେହି ପଦ ସକାଶେ ପ୍ରାର୍ଥୀ କି ନାହିଁ, ସାହେବ ଚିଠିରେ ମୋତେ ପଚାରିଲେ । ସେହି ଚିଠି ତଳେ ଏହା ମଧ୍ୟ ଉଲ୍ଲେଖ ଥିଲା ଯେ, ମୋତେ ସେହି ପଦରେ ନିଯୁକ୍ତ କରାଗଲେ ନିଶ୍ଚୟ ମୋତେ କଟକ ଯିବାକୁ ହେବ, ଅର୍ଥାତ୍ ମୋତେ ନିଯୁକ୍ତ କରାଗଲା ଉତ୍ତାରେ ମୁଁ ସେହି ପଦ ଗ୍ରହେଁ ନାହିଁ ବୋଲି ଅସ୍ୱୀକାର କରି ପାରିବି ନାହିଁ । ମିସନ୍ ସ୍କୁଲର ସମ୍ପାଦକ ରେଭରେଣ୍ଡ ଇ. ସି. ବି. ହାଲମ୍ ସାହେବ ସେହି ସମୟରେ ବାଲେଶ୍ୱର ଉତ୍ତରାଞ୍ଚଳ ଜଳେଶ୍ୱର ଇଲାକାରେ ଭ୍ରମଣ କରୁଥିଲେ । ତାଙ୍କ ସହିତ ଏ ବିଷୟରେ ପରାମର୍ଶ କରିବା ସକାଶେ ମୁଁ ତାଙ୍କ ପାଖକୁ ଗଲି । ସାହେବ ମହୋଦୟ ମୋହର ବେତନ

ତିରିଶ ଟଙ୍କା କରିଦେଇ କଟକ ଯିବା ସକାଶେ ନିଷେଧ କଲେ । ସୁତରାଂ ମୋହର କଟକ ଯିବାର ହେଲନାହିଁ । ଜଲେଶ୍ୱର ବାହୁଡ଼ା ବାଲେଶ୍ୱର ସହରଠାରୁ ଆଠକୋଶ ଉତ୍ତର ବସ୍ତା ନାମକ ଚଟିରେ ଉପସ୍ଥିତ ହୋଇଅଛୁ, ସନ୍ଧ୍ୟା ସମୟରେ ମୋତେ ଭୟଙ୍କର ରୂପେ ଜ୍ୱର ଆକ୍ରମଣ କଲା । ସଖାଳ ସରିକି ଦେହଯାକ ପାଣି ବସନ୍ତ ଫୁଟି ପଡ଼ିଲା । ସେଠାରୁ ଖଣ୍ଡେ ପାଲିକି ଭଡ଼ା କରି ବାଲେଶ୍ୱର ଚାଲି ଆସିଲି । ସନ୍ଧ୍ୟା ସମୟରେ ଘରଠାରେ ଉପସ୍ଥିତ ହୋଇ ମୋ ଶୋଇବା ଘର ଦୁଆର ବନ୍ଧ ଉପରେ ବସି ଶାରୀରିକ ଅତ୍ୟନ୍ତ ଯନ୍ତ୍ରଣା ହେତୁରୁ କାନ୍ଦୁଥାଏଁ । ଠାକୁର ମା ମୋ ପାଖରେ ଉପସ୍ଥିତ ହୋଇ କାନ୍ଦି କାନ୍ଦି ମୋତେ ପଚାରିଲେ, "ତୁ କଟକ ନ ଗିଲୁ ନାହିଁ, ସାହେବ ତତେ କ୍ୟାଁ ମାରିଲା କହ ।" ମୁଁ ବାରମ୍ବାର କହୁଅଛୁ, ସାହେବ ମୋତେ ମାରି ନାହାନ୍ତି, ମୋତେ ଜ୍ୱର ହୋଇଛି, ବସନ୍ତ ହୋଇଛି, ବସି ପାରୁନାହିଁ । ଶୀଘ୍ର ବିଛଣା କରିଦିଅ, ମୁଁ ଶୋଇବି, ବସି ପାରୁନାହିଁ । ସେ କଥା ଶୁଣୁଛି କିଏ ? ତୁହାଇ ତୁହାଇ ପଚାରିବାରେ ଲଗିଅଛନ୍ତି, ତତେ ସାହେବ କି ସକାଶେ ମାରିଲା କହ । ଅବଶେଷରେ ମୋତେ ନେଇ ବିଛଣାରେ ଶୁଆଇ ଦେଲେ । ଦେହଯାକ ବସନ୍ତ ଫୁଟି ପଡ଼ିଥିବାର ଦେଖିଲେ । ଦେହରେ ହାତ ଦେଇ ଗରମ ହୋଇ-ଥିବାର ଦେଖି ଚୁନ ହେଲେ । ମୁଁ ଶୋଇଥାଏଁ, ଠାକୁର ମା ମୋ ପାଖରେ ବସି ମୋ ମୁଣ୍ଡରେ ହାତ ବୁଲାଉଥାନ୍ତି । ମୁଁ ପଚାରିଲି, "ଠାକୁର ମା ! ସାହେବ ମୋତେ ମାରିଅଛନ୍ତି ବୋଲି କି ସକାଶେ ଥରକୁ ଥର ପଚାରୁଥିଲ ?" ଠାକୁର ମା କହିଲେ, କଥା କଣ କି, ସାହେବ ତତେ ମାରିଛି ବୋଲି ଗତକାଲି ରାତିରେ ସ୍ୱପ୍ନ ଦେଖିଲି । ତୋ ଦେହ ଯେପରି ଫୁଲି ଯାଇଛି, ଠିକ୍ ସଞ୍ଜବେଳେ ତୁ ଦୁଆର ବନ୍ଧ ଉପରେ ବସି ଯେପରି କାନ୍ଦୁଥିଲୁ, ଅବିକଳ ସବୁକଥା ସ୍ୱପ୍ନରେ ଦେଖିଥିଲି ।

ସ୍ୱର୍ଗସ୍ଥା ଠାକୁର ମା ! ମୋହର ଶୈଶବ କାଳରୁ ପରମେଶ୍ୱର ମୋହର ପିତାମାତାଙ୍କୁ ଗ୍ରହଣକରି ପ୍ରକୃତରେ ତୁମ୍ଭଙ୍କୁ ମୋ ଜୀବନପାଳିକା ରକ୍ଷୟିତ୍ରୀ ସ୍ୱରୂପ ନିଯୁକ୍ତ କରିଥିଲେ । ପ୍ରାଣର ଦରଦ କାହାକୁ ବୋଲନ୍ତି, ତାହା କେବଳ ତୁମ୍ଭଠାରୁ ପାଇଥିଲି । ହା କୃତଘ୍ନ ମୁଁ । ଦିନେ ହେଲେ ତୁମ୍ଭର କିଛି ମାତ୍ର ସେବା ଶୁଶ୍ରୂଷା କରିନାହିଁ, ଦିନେ ହେଲେ ତୁମ୍ଭର କିଛି ଉପକାର କରିନାହିଁ । ବର୍ତ୍ତମାନ ଅନୁତାପ ବିନା ମୋହର ଆଉ ଉପାୟ କଣ ?

( ଉ. ସା. ୨୨ଶ ଭାଗ—୧୦ମ ସଂଖ୍ୟା )

———

## ୧୨

## ଇଂରାଜୀ ଶିଖିବାର ଇଚ୍ଛା ଏବଂ ଶିକ୍ଷାରମ୍ଭ

ଦକ୍ଷିଣ-ପଶ୍ଚିମ ବିଭାଗର ସ୍କୁଲ ଇନ୍‌ସିପେକ୍ଟର ଆର. ଏଲ୍. ମାର୍ଟିନ ସାହେବ ସ୍କୁଲ ପରିଦର୍ଶନ କରିବାକୁ ଆସି ବାଲେଶ୍ୱର ସର୍କିଟ ବଙ୍ଗଳାରେ ଅବସ୍ଥାନ କରୁଥିଲେ । ସାକ୍ଷାତ୍ ନିମନ୍ତେ ମୁଁ ବଙ୍ଗଳାରେ ଉପସ୍ଥିତ ହେଲି । ସେ ସମୟରେ ସାହେବ ନିଦ୍ରିତ ଥିଲେ । ଅପେକ୍ଷା କରି ବାରନ୍ଦାରେ ଥାଏଁ । ଜଣେ ହିନ୍ଦୁସ୍ଥାନୀ ଦରବାନ୍ ଉପସ୍ଥିତ ହୋଇ ମୋ ସହିତ କଥୋପକଥନ କରିବାକୁ ଲଗିଲା । ତାହାର ବିଶ୍ୱାସ ମୁଁ ଜଣେ ଇଂରାଜୀ ସ୍କୁଲର ମାଷ୍ଟର, ସେହି ଭାବରେ କଥୋପକଥନ କଲା, ମୁଁ ସେ କଥା ସ୍ପଷ୍ଟ ବୁଝି ପାରି ମଧ୍ୟ ପ୍ରତିବାଦ କଲି ନାହିଁ । ଏଥିପାଇଁ ଲଜ୍ଜିତ ହେଲି—ସ୍ଥିରକଲି, ସମସ୍ତ ପଡ଼ା ଛାଡ଼ି ଇଂରାଜୀ ପଢ଼ିବାକୁ ହେବ । ସେ ସମୟରେ ମୋର ବୟସ ବାଇଶ ତେଇଶ ମଧ୍ୟରେ । ଅବସର କାଳରେ ସଂସ୍କୃତ କାବ୍ୟ ନାଟକ ଏବଂ ବଙ୍ଗଳା ପ୍ରାଚୀନ ଓ ନୂତନ ପୁସ୍ତକମାନ ପଢ଼ୁଥାଏ ।

ବାଲେଶ୍ୱର ମୋତିଗଞ୍ଜ ବଜାରର ଦକ୍ଷିଣ ପ୍ରାନ୍ତରେ ଗଡ଼ଗଡ଼ିଆ ପୋଖରୀ । ପୋଖରୀଟି ମଧ୍ୟଭଳ, ସୁନ୍ଦର ଜଳ, ସହରବାସୀ ଅଧିକାଂଶ ଲୋକଙ୍କର ପେୟ । ତୋଠରେ ଗୋଟିଏ ପ୍ରଶସ୍ତ ପକ୍କା ଘାଟ ବନ୍ଧା । ଗଡ଼ଗଡ଼ିଆ ପୁଷ୍କରଣୀ ବଟେଶ୍ୱର ମୌଜାର ଅନ୍ତର୍ଗତ । ବିଦେଶୀ ଅଧିକାଂଶ ଅମଲା, କିରାଣୀ, ଶିକ୍ଷକମାନଙ୍କର ଏହି ଗ୍ରାମରେ ବସାଘର । କଦାଚିତ୍ କେହି ଡେପୁଟି, ମୁନସଫ୍ ମଧ୍ୟ ବସା କରି ରହିଯାନ୍ତି । ଗ୍ରୀଷ୍ମକାଳରେ ପ୍ରାୟ ପ୍ରତିଦିନ ଅପରାହ୍ଣ ସମୟରେ ଯୁବକ କିରାଣୀ, ଅମଲା ଓ ସ୍କୁଲ ମାଷ୍ଟର ପୁଷ୍କରଣୀର ପକ୍କାଘାଟରେ ପରସ୍ପର କଥୋପକଥନ ଓ ବାୟୁ-ସେବନ ନିମନ୍ତେ ମିଳିତ ହୁଅନ୍ତି । ମୁଁ ପ୍ରାୟ ପ୍ରତିଦିନ ସେ ସ୍ଥାନରେ ଉପସ୍ଥିତ ଥାଏଁ । ଗଡ଼ଗଡ଼ିଆ ପୂର୍ବଦିଗ କିଛି ଦୂରରେ କବିବର ରାଧାନାଥ ବାବୁଙ୍କ ବସା । ପଶ୍ଚିମ ଦିଗକୁ କିଛି ଅଧିକ ଦୂରରେ ଆମ୍ଭମାନଙ୍କ ଘର । ରାଧାନାଥ ପିତାଙ୍କ ଭୟରେ ଦିବାଭାଗରେ ପ୍ରକାଶ୍ୟ ଭାବରେ ଆସି ଆମ୍ଭମାନଙ୍କ ସହିତ ବସି ପାରନ୍ତି ନାହିଁ । ଦିନେ ଦିନେ ସନ୍ଧ୍ୟା ଉତ୍ତାରେ ପହଞ୍ଚିଯାନ୍ତି । ବାବୁ ମଧୁସୂଦନ ଦାସ * ସେ ସମୟରେ ଗବର୍ଣ୍ଣମେଣ୍ଟ ସ୍କୁଲର ଥାର୍ଡ଼ ମାଷ୍ଟର ଥିଲେ । ତାଙ୍କର ବସା ମଧ୍ୟ ଗଡ଼ଗଡ଼ିଆ ସମୀପରେ ଥିବାରୁ ସେ ପ୍ରାୟ ପ୍ରତ୍ୟହ ଆସି ଆମ୍ଭମାନଙ୍କ ଦଳରେ ମିଶୁଥିଲେ । ଆଜି ଅର୍ଦ୍ଧ ଶତାବ୍ଦୀ କାଳ ଅତୀତ ପ୍ରାୟ । ତଥାପି ମୋର ବେଶ୍ ମନେ ଅଛି, ସେହି ତରୁଣ ବୟସରେ ମଧ୍ୟ ତାଙ୍କର ଉଚ୍ଚ ଭାବର କଥା ଓ ଉଚ୍ଚାକାଙ୍କ୍ଷା ବିଷୟ ଶୁଣି ଆମ୍ଭେମାନେ ସ୍ତମ୍ଭିତ ହୋଇ ଯାଉଥିଲୁଁ; ଆଉ ଉଚ୍ଚ ଧରଣରେ ବ୍ୟୟ ହେଉଥିବାରୁ ସ୍ୱଳ୍ପ ବେତନ ତାଙ୍କୁ 'ସଙ୍କୁଳାନ' ହେଉ ନ ଥିଲା । ସେଥିପାଇଁ ସେ କର୍ମତ୍ୟାଗ କରି କଲିକତା ଚାଲି ଯାଇଥିଲେ ।

ମୋର ଇଂରାଜୀ ଶିଖିବାକୁ ଇଚ୍ଛା ହେଲା । ମୁଁ ଖଣ୍ଡିଏ ଫାଷ୍ଟବୁକ୍ ସଂଗ୍ରହ କରି ଗଡ଼ଗଡ଼ିଆ ଘାଟରେ ଉପସ୍ଥିତ ବନ୍ଧୁମାନଙ୍କ ସାହାଯ୍ୟରେ ପଢ଼ିବାକୁ ଲାଗିଲି । ସଂସ୍କୃତ କାବ୍ୟ, ନାଟକ ପ୍ରଭୃତି ପାଠ ପରିତ୍ୟାଗ କରି କେବଳ ଇଂରାଜୀ ପଢ଼ିବାକୁ ଲାଗିଲି । ପଢ଼ିବା ସକାଶେ ଅଳ୍ପମାତ୍ର ସମୟ ମିଳେ । କୌଣସି ଇଂରାଜୀ ଶିକ୍ଷକ ମୋର ପରିଚିତ ନ ଥିଲେ । ମୋର ଜଣେ ବନ୍ଧୁ ଗବର୍ଣ୍ଣମେଣ୍ଟ ସ୍କୁଲର ସେକେଣ୍ଡ ମାଷ୍ଟର ଥିଲେ । ସେ କେବଳ ମୋତେ କେତେକ ଦିନ ପଢ଼ାଇ ଦେଇଥିଲେ । ମୁଁ ନିଜେ ନିଜେ ଡିକ୍ସିନାରି ସାହାଯ୍ୟରେ ଆରବିଆନ୍ ନାଇଟ୍, ରବିନସନ୍ କ୍ରୁଶୋ, ହିଷ୍ଟ୍ରି ଅଫ୍ ବେଙ୍ଗଲ; ରେଭରେଣ୍ଡ ଲାଲବିହାରୀଙ୍କ ଗୋବିନ୍ଦ ସାମନ୍ତ, ବାଇବେଲ, ମେରି ଲାମ୍ବଙ୍କ ସେକ୍ସପିଅର ଟେଲ୍ ପ୍ରଭୃତି କେତେକ ଖଣ୍ଡ ମାତ୍ର ଇଂରାଜୀ ବହି ପଢ଼ିଥିଲି । ସେହି ତେତିକ ଇଂରାଜୀ ଶିକ୍ଷା ମଧ୍ୟ ସମୟ ସମୟରେ କାର୍ଯ୍ୟକ୍ଷେତ୍ରରେ ସହାୟତା କରିଥିଲା । କେତେଥର ବଡ଼ ବଡ଼ ହାକିମଙ୍କ ସହିତ ମାଲିମକଦ୍ଦମା ସମ୍ବନ୍ଧରେ କଥୋପକଥନ କରିବାକୁ ପଡ଼ୁଥିଲା । ସେହି ସାମାନ୍ୟ ପ୍ରକାର ଇଂରାଜୀ ଜାଣି ନ ଥିଲେ କାର୍ଯ୍ୟ କରିବା ମୋ ପକ୍ଷରେ କଠିନ ବ୍ୟାପାର ହୋଇ ପଡ଼ିଥାନ୍ତା । ସେପରି ଗୋଟିଏ ମାତ୍ର ଘଟନାର ବିଷୟ ଏ ସ୍ଥାନରେ ଉଲ୍ଲେଖ କରିବାକୁ ଇଚ୍ଛା କରେଁ । କେଉଁଝର ଆଉ ଗୁରୁଁବସା ମଧ୍ୟରେ ସୀମାନ୍ତ ଭୂମିର ସ୍ୱାମିତ୍ୱ ସମ୍ବନ୍ଧରେ ବହୁବର୍ଷଯାଏ ଗୋଟିଏ ମାମଲା ଦାଏର ଥିଲା । ଚିଫ୍ କମିଶନର, ଡେପୁଟୀ କମିଶନର, ଚିଫ୍ ସର୍ଭେୟର ଓ କେଉଁଝର ମହାରାଜାଙ୍କ ପ୍ରଧାନ କର୍ମଚାରୀଙ୍କ ଉପସ୍ଥିତିରେ ମାମଲା ନିଷ୍ପତ୍ତି କରାଯିବା ବିଷୟ ଗବର୍ଣ୍ଣମେଣ୍ଟରୁ ତାକିଦ୍ ଆସିଲା ।

ନାଗପୁର ଚିଫ୍ କମିଶନର ମାମଲା ନିଷ୍ପତ୍ତି ସକାଶେ ଗୋଟାଏ ତାରିଖ ଧାର୍ଯ୍ୟ କରି ଗୁରୁଁବସା କଚେରୀରେ କେଉଁଝର ତରଫରୁ ଜଣେ ପ୍ରଧାନ କର୍ମଚାରୀଙ୍କୁ ହାଜର କରାଇବା ନିମନ୍ତେ ମହାରାଜାଙ୍କୁ ଜରୁରୀ ଚିଠି ଲେଖିଲେ ।

* ଅନରେବଲ ଏମ୍. ଏସ୍. ଦାସ, ଏମ୍. ଏ., ବି. ଏଲ୍. ସି. ଆଇ. ଇ

ମୁଁ ସେ ସମୟରେ କଲ୍ଲାର ପ୍ରଧାନ କର୍ମଚାରୀ । ମୋର କର୍ମକ୍ଷେତ୍ର ଆନନ୍ଦପୁର, ଏହା କଲ୍ଲାମଧ୍ୟରେ ଶ୍ରେଷ୍ଠ ସ୍ଥାନ, ନିଜ ଗଡ଼ଠାରୁ ପୂର୍ବକୁ ୫୨ ମାଇଲ ଦୂରରେ । ମୁହୂର୍ତ୍ତମାତ୍ର ବିଳମ୍ବ ନ କରି ନିଜଗଡ଼କୁ ରୱାନା ହେବା ନିମନ୍ତେ ସଦର କଚେରୀରୁ ଚିଠି ପାଇ ମହାରାଜାଙ୍କ ସମୀପରେ ଉପସ୍ଥିତ ହେଲି । ସୀମାନ୍ତ ମାମଲା ( Boundary Dispute Case ) ସମ୍ବନ୍ଧୀୟ ନଥି ସହିତ ଚିଫ୍-କମିଶନରଙ୍କ ଚିଠି ମହାରାଜା ବାହାଦୁର ମୋ ଜିମା କରିଦେଇ କାର୍ଯ୍ୟକ୍ଷେତ୍ରକୁ ଶୀଘ୍ର ରୱାନା ହେବା ସକାଶେ ମୋ ପ୍ରତି ଆଦେଶ ଦେଲେ । ସଦର କଚେରୀର ଆସିଷ୍ଟାଣ୍ଟ ମେନେଜର ବାବୁ ବିଚିତ୍ରାନନ୍ଦ ଦାସ ମୋତେ ସାହାଯ୍ୟ ଦେବା ସକାଶେ ସାଙ୍ଗରେ ବାହାରିଲେ । ଆମ୍ଭେମାନେ ଯୋଡ଼ାଏ ହାତୀରେ ଚଢ଼ି ଦୁଇ ଦିନ ଉତ୍ତାରେ କାର୍ଯ୍ୟକ୍ଷେତ୍ରରେ ଉପସ୍ଥିତ ହେଲୁ । ବିବାଦୀୟ ଭୂମିଟା ପ୍ରାୟ ଛ ମାଇଲ ଲମ୍ବ ଓ ଏକ ମାଇଲ ଓସାର । ଦୁଇଦିନ ପର୍ଯ୍ୟନ୍ତ ବଣ ମଧ୍ୟରେ ବୁଲି ସର୍ଭେ ମ୍ୟାପ୍ ଏବଂ ନଥିର କାଗଜପତ୍ର ସହିତ ଭୂମିର ଅବସ୍ଥା ମିଳାଇ ନେଇ ଚୁଲିଁବସା ଉଦ୍ଦେଶ୍ୟରେ ବାହାରିଲୁଁ । ବୈତରଣୀ ନଦୀର ଉତ୍ତର କୂଳଠାରୁ ଚୁଲିଁବସା ଇଲକା ଜୟନ୍ତୀଗଡ଼ ଏବଂ ଦକ୍ଷିଣ କୂଳଠାରୁ କେଉଁଝର ସୀମା ଆରମ୍ଭ । ଜୟନ୍ତୀଗଡ଼ଠାରୁ ଚୁଲିଁବସା ଯିବା ସକାଶେ ଗବର୍ଣ୍ଣମେଣ୍ଟ କୁହ୍ଲାନ ମଧ୍ୟରେ ଗୋଟିଏ କଚ୍ଚା ସଡ଼କ ପଡ଼ିଅଛି । ଜୟନ୍ତୀଗଡ଼ଠାରୁ ଚୁଲିଁବସା ତିନି ମୁକାମର ବାଟ । ସଡ଼କ ପାଖରେ ତିନି ସ୍ଥାନରେ ତିନିଗୋଟି ଡାକବଙ୍ଗଳା ଅଛି । ସଡ଼କ ଦୁଇ ପାଖ କୋଶେ ଅଧକୋଶ ଦୂରରେ ବିଲ ମଝିରେ ଗୋଟିଏ ଗୋଟିଏ କୋହ୍ଲ ସାଇ । ସାନ ସାନ ଗ୍ରାମର ଶୁକ୍ଳବର୍ଣ୍ଣ ଘରଗୁଡ଼ିକ ଗୁଡ଼ିଏ ସରକାରୀ ଡାକବଙ୍ଗଳା ଲଗାଲଗି ତିଆରି ହୋଇ ରହିଥିବା ପରି ଦିଶୁଥାଏ । ଗ୍ରାମର ଚତୁର୍ଦ୍ଦିଗ କେବଳ ସଜନା ବଗିଚାରେ ବେଷ୍ଟିତ । ଅନ୍ୟ କୌଣସି ପ୍ରକାର ଫଳବାନ୍ ବୃକ୍ଷ ନାହିଁ । ସବୁ ଗ୍ରାମର ବାହାର ଦୃଶ୍ୟ ସମାନ । ଏହି ଦୁଇ ତିନି ଦିନ ମଧ୍ୟରେ ମୁଁ ଆମ୍ବ ପଣସ ବା କୌଣସି ପ୍ରକାର ଫଳବାନ୍ ବୃକ୍ଷ ଅଥବା ବଂଶବୃଦ୍ଧିକାରୀ ଲତା ଦେଖିନାହିଁ । ସଡ଼କ ଦୁଇ ପାଖରେ ଦୃଷ୍ଟି ବ୍ୟାପୀ ସୀମା ପର୍ଯ୍ୟନ୍ତ ନିସ୍ତୁଠିଆ ପଦା । କଦାଚିତ୍ ବିଲ ମଝିରେ ଗୋଟିଏ ଗୋଟିଏ କାର୍ଯ୍ୟ ନିରତ କୋହ୍ଲ ଦମ୍ପତି ଦୃଷ୍ଟ ହୁଅନ୍ତି । ଉଭୟେ କାର୍ଯ୍ୟରେ ଲାଗିଥାନ୍ତି । କଦାଚିତ୍ ବା କୋହ୍ଲ ହଳ କରୁଥାଏ, କୋହ୍ଲଣୀ ହିଡ଼ରେ ବସି ସ୍ୱାମିର କାର୍ଯ୍ୟକୁ ଅନାଇ ରହିଥାଏ । କୋହ୍ଲଣୀ ଗୁଡ଼ିକ ଗୌରବର୍ଣ୍ଣା, ସୁଗଠନା । ମସ୍ତକରେ ଘୋର କୃଷ୍ଣବର୍ଣ୍ଣ ଦୀର୍ଘ କେଶଗୁଚ୍ଛ ସୁବିନ୍ୟସ୍ତ । ପୂର୍ଣ୍ଣ ଯୁବତୀ ମାନଙ୍କର ମଧ୍ୟ ପରିଧେୟ ବସ୍ତ୍ରଖଣ୍ଡ ଲମ୍ବ ଚାରିହାତ, ଓସାର ଦେଢ଼ହାତ । ନାଭିଠାରୁ ଆଣ୍ଠୁ ଉପର ପର୍ଯ୍ୟନ୍ତ ଆବୃତ ଥାଏ ।

ଦିନ ବାରଟା ବେଳେ ଗୋଟିଏ ଡାକ ବଙ୍ଗଳାରେ ପହଞ୍ଚିଲୁଁ । ଏହିଠାରେ ଦିନଯାକ ରହିବାକୁ ହେବ । କାରଣ ହାତୀ ମାନଙ୍କ ସକାଶେ ଚାରା ସଂଗ୍ରହ ଏବଂ ଦାନା ଖୁଆଇବା ସକାଶେ ଉପର ଓଳିଟା ଆବଶ୍ୟକ । ବଙ୍ଗଳା ଚୌକିଦାର ଜଣାଇଲା, ବର୍ତ୍ତମାନ ହାଟ ବସିଅଛି, ଚାଉଳ ପରିବା ପ୍ରଭୃତି ଯାହା ଦରକାର ଥାଏ, ତେବେ ପଇସା ଦିଅ, କିଣି ଆଣି ଦିଏଁ, ହାଟ ଭାଙ୍ଗିଗଲେ କିଛି ମିଳିବ ନାହିଁ । ପୂଜାହାରୀ କହିଲା, ସାଙ୍ଗରେ ଚାଉଳ ଡାଲି ପ୍ରଭୃତି ଯେ ସମସ୍ତ ରୋଷେଇ ସରଞ୍ଜାମ ଅଛି, ସେଥିରେ ଏହି ଓଳିକ ଚଳି ପାରେ, ଉପର ଓଳି ସକାଶେ ପ୍ରୟୋଜନ । ମୁଁ ପଇସା ଦେଲି, ଚୌକିଦାର ହାଟକୁ ଚାଲିଗଲା । ବୋଧକରେଁ ହାଟଟା କୋଶେ ଦୁଇକୋଶ ଦୂରରେ । କାରଣ କୌଣସି ହାଟୁଆ ବାଟୋଇର ଯା ଆସର ଚିହ୍ନବର୍ଣ୍ଣ ମଧ୍ୟ ଦିଶୁ ନ ଥିଲା ।

ଗୋଟାଏଓଳି ଚୁପ୍‌ଚାପ୍ ବସି ବସି ବେଳ କଟୁ ନାହିଁ । ବଙ୍ଗଳା ନିକଟରେ ଗୋଟିଏ ଅତି ସାନ

କୋହ୍ଲସାଇ । ଦେଖିବାପାଇଁ ସେ ଗ୍ରାମକୁ ଗଲି । ଗୋଟିଏ ଘର ଆଗରେ ତିନି ଚାରି ଜଣ ପୁରୁଷ ଓ ପିଲା ବୁଲୁଥିଲେ । ମୁଁ ଘର ଭିତର ଦେଖିବା ସକାଶେ ଇଚ୍ଛା ପ୍ରକାଶ କରିବାରୁ ସେମାନେ ମୋତେ ଖୁବ୍ ଆଦର ସହିତ ଡାକି ନେଇ ଘର ଅଗଣାରେ ବସାଇଲେ । ତିନି ପାଖରେ ଧାଡ଼ି ବାନ୍ଧି ସାନ ସାନ ଘର, ଗୋଟାଏ ପଟେ ମେଲା । ସେ ପରିବାରରେ ସ୍ତ୍ରୀ ପୁରୁଷ ପ୍ରାୟ ଦଶ ବାର ଜଣ, ସମସ୍ତେ ଉପସ୍ଥିତ ଥାନ୍ତି । କୋଶେ ଦୁଇକୋଶ ମଧ୍ୟରେ ଗ୍ରାମ ନ ଥିଲା । ଉପର ଓଳି କାହିଁ ବା ଯିବେ ? ମୁଁ ବସି ବସି ସେମାନଙ୍କ କାମ ପାଇଟି କଥା, ଖିଆପିଆ କଥା, ବୁଙ୍ଗାବୁଙ୍ଗି ( ଠାକୁର ଦେବତା ) କଥା ପ୍ରଭୃତି ଢେର କଥା ପଚାରିଲି । ସେମାନେ ହସି ହସି ଉତ୍ତର ଦେଉଥାନ୍ତି । ଆଠ ଦଶ ହାତ ଦୂରରେ ପରିବାରର ସମସ୍ତ ସ୍ତ୍ରୀ ଲୋକ ଠିଆ ହୋଇଥିଲେ । ସେମାନେ ମୁହଁରେ ଲୁଗା ଦେଇ ହସି ହସି ଅସ୍ଥିର । ସମୟ ସମୟରେ ଗୋଟାଏ ଗୋଟାଏ ପ୍ରଶ୍ନରେ ପୁରୁଷମାନେ ମଧ୍ୟ ହସ ସମ୍ଭାଳି ପାରୁ ନ ଥାନ୍ତି । ମୋ ବସିବା ଜାଗା ନିକଟ ଅଗଣାରେ ଗୋଟିଏ ଚୂଲିଥିଲା । ମୁଁ ପଚାରିଲି, ଏ ଚୂଲିଟା ବାହାରେ ଅଛି କାହିଁକି ? ଗୋଟିଏ ପୁରୁଷ ହସି ହସି କହିଲା, ଏ ଚୂଲିରେ ମାଂସ ରନ୍ଧାଯାଏ । ଗୋଟାଏ କୋଣରେ ଥିବା ଗୋଟିଏ ସାନ ଖୋଷେଇ ଘରକୁ ହାତ ବଢ଼ାଇ କହିଲା, ସେ ଘରେ ମାଂସ ରନ୍ଧା ନାହିଁ କି ସକାଶେ ? ମାଇକିନିଆ ଗୁଡ଼ାକ ତ ହସି ହସି ଅସ୍ଥିର, କେଜାଣି କଚଡ଼ି ହୋଇ ପଡ଼ିବେ । ବୋଧ କରେ, ସେମାନେ ସ୍ଥିର କରି ସାରିଲେଣି, ଏ ଲୋକଟା ନିଦା ମୂର୍ଖ ନା ବାଯ୍ୟା, ଭିତରନ୍ଧା ଘରେ ମାଂସ ରାନ୍ଧିବା କଥା କହୁଅଛି !

ଘରର ଉତ୍ତର ପଟେ ଅନ୍ଦାଜ ଶହେ ହାତ ଦୂରରେ ମୁଠିଏ ଠାରୁ ପାଞ୍ଚ ଛ ହାତ ଉଚ୍ଚ ଅଲଗା ଅଲଗା ଢେର ଗୁଡ଼ାଏ ପଥର ଖୁମ୍ବ ପରି ପୋତା ହୋଇଅଛି । ମୁଁ ପଚାରିଲି, ଏ ଗୁଡ଼ାକ କ'ଣ ?

ଉତ୍ତର—ପିତୃଲୋକେ ରାତିରେ ଏ ପଥର ଉପରେ ବସି ଗ୍ରାମକୁ ଅନାଇବେ ।

ମୁଁ ପଚାରିଲି—ପଥର କେବେ ପୋତାଯାଏ ?

ଉତ୍ତର—ଶ୍ରାଦ୍ଧ ଦିନ ପୋତାଯାଏ ।

ପ୍ରଶ୍ନ - ଶ୍ରାଦ୍ଧ କେବେ ହୁଏ, ଅର୍ଥାତ୍ ମୃତ୍ୟୁର କେତେଦିନ ଉତ୍ତାରେ ହୁଏ ?

ଉତ୍ତର—ଯେବେ ହୁଏ ଅର୍ଥାତ୍ ହାତକୁ ପଇସା ପେଠ ହେଲେ ହୁଏ । ବର୍ଷେ ଯାଉ ବା ଦୁଇବର୍ଷ ଯାଉ, ପଇସା ମିଳିଲେ ଶ୍ରାଦ୍ଧ ହୁଏ ।

ମୁଁ ଗ୍ରାମରୁ ବଙ୍ଗଳାକୁ ବାହୁଡ଼ିଲି । ଚୌକିଦାର ରଙ୍ଗା ରଙ୍ଗା ଗୁଡ଼ିଏ ଚାଉଳ ଆଉ ଦୁଇ ଗୋଡ଼ବନ୍ଧା ଗୋଟିଏ ପାରିଛୁଆ ମୋ ଆଗରେ ଥୋଇ ଦେଲା । କପୋତ ଶିଶୁଟି ପରିଶୂନ୍ୟ, କ୍ଷୁଦ୍ର, ଡେଣାଦ୍ୱୟ ପ୍ରାଣ ବିକଳରେ ମାଟିରେ ବାଡ଼ଉଥାଏ । ମୁଁ ପଚାରିଲି, 'ଏଇଟା କଣରେ ?'

ଚଉକିଦାର—ବାବୁ ତରକାରି ।

ପ୍ରଶ୍ନ—ତରକାରି କ'ଣ ରେ ?

ଉତ୍ତର – ଆଜ୍ଞା, ତରକାରି ।

ଅନେକ ସମୟ ପରେ ବୁଝିଲି, ଏ ଦେଶରେ ଧନବନ୍ତ ବାବୁ ଭଲଆ ଲୋକେ ପାରିଛୁଆକୁ ପୋଡ଼ି ଅଥବା ରାନ୍ଧି ଖାନ୍ତି । ମୁଁ ଗୋଟାଏ ହାତୀରେ ଚଢ଼ି ଆସିଅଛି, ଗହଣରେ ଗୁଡ଼ାଏ ଚାକର—ଅବଶ୍ୟ ଜଣେ ବାବୁ—ସୁତରାଂ ପାରିଛୁଆ ତରକାରି ଖାଇବି, ଚୌକିଦାର ଆପଣା ବୁଦ୍ଧି ପ୍ରଭାବରେ ଏ କଥା ସ୍ଥିର

କରି ମୋ ସ୍ୱଜନ ସକାଶେ ଏହି ପାରହୁଆଟି କିଣି ଆଣିଅଛି । ଏ ଅଞ୍ଚଳରେ ଅନ୍ୟ ପ୍ରକାର ପଦାପଶିବାର ଅଭାବ । ଇତର ସାଧାରଣଲୋକଙ୍କୁ ସଜନାଗଛ ପରିବାର ଅଭାବ ଜାଣିବାକୁ ହିଏ ନାହିଁ ।

ଚୌକିଦାରକୁ ସେହି ପାରି ହୁଆଟି ଏବଂ ତାହାର ଖାଇବା ପାଇଁ ଧାନ କିଣିବାକୁ ଦୁଇଅଣା ପଇସା ଦେଲି ଏବଂ ସେହି ହୁଆଟିକୁ ବଧ ନ କରି ପୋଷିବା ସକାଶେ ଦୃଢ଼ରୂପେ ଅନୁରୋଧ କଲି ।

ବେଳ ବାରଟା କି ଗୋଟାକ ସମୟରେ ଶୁଲିବସା କଚେରିରେ ଆସିଷ୍ଟାଣ୍ଟ ମେନେଜର ବାବୁ ବିଚିତାନନ୍ଦ ଦାସଙ୍କ ସହିତ ଉପସ୍ଥିତ ହେଲି । ଚିଫ୍ କମିଶନର, ଡେପୁଟି କମିଶନର, ସର୍ଭେ ବିଭାଗର ଜଣେ ଉଚ୍ଚ କର୍ମଚାରୀ ତିନିଜଣ ଉପସ୍ଥିତ ଥିଲେ । ସେମାନଙ୍କ ସାକ୍ଷାତରେ ବସିବା ସକାଶେ ଆମ୍ଭମାନଙ୍କୁ ଯୋଡ଼ାଏ ଚୌକି ମିଳିଲା । ପ୍ରଥମେ ମାମୁଲି କେତେ କଥା ଉତ୍ତାରେ କେଉଁଝରର ଜଙ୍ଗଲ ସମ୍ବନ୍ଧରେ କେତେ କଥା ହେଲା । ( ଅବଶ୍ୟ ଇଂରାଜୀରେ ସମସ୍ତ କଥୋପକଥନ ହେଉଥାଏ । ) ଶେଷରେ ସାହେବ ପ୍ରଶ୍ନ କଲେ— Do you Know every thing about the case ?

ମୁଁ ଉତ୍ତର ଦେଲି—Yes your honour, all the Records with me. I can explain all the matter, but I fear your honour will not understand my broken English. So I Pray, Please allow me to call a Pleader.

ମୋ କଥା ସମାପ୍ତ ନ ହେଉଣୁ ଜଣେ ସାହେବ କହିଲେ —Oh no Babu, don't fear, go on, you can speak English well.



ମାମଲାଟି କିଞ୍ଚିତ ଜଟିଳ । ବୁଝାଇବାର ଅନେକ ବିଷୟ ଥିଲା । ସାହେବମାନଙ୍କ ସାକ୍ଷାତରେ ବିବାଦୀ ସ୍ଥାନର ମ୍ୟାପ୍ ଏବଂ ମାମଲାର କାଗଜପତ୍ର ଥୋଇ ଦେଇ ଅନେକ ବେଳ ପର୍ଯ୍ୟନ୍ତ ମାମଲା ବିଷୟ ଧୀରେ ଧୀରେ ବୁଝାଇବାକୁ ଲାଗିଲି । ପୂର୍ବେ ଅନେକଥର ମାମଲା ଉପଲକ୍ଷରେ ଦୁଇ ପକ୍ଷରୁ ଭିନ୍ନ ଭିନ୍ନ ପ୍ରକାର ନକ୍ସା ତିଆର ହୋଇଥିଲା । ମୁଁ ବୁଝାଉଥିବା ବେଳେ ସାହେବମାନେ ଏକ ଏକ ପ୍ରସ୍ତ ନକ୍ସା ଆଗରେ ପକାଇ ଦେଖୁଥାନ୍ତି । ମୋ ଇଂରାଜୀ କଥା ଢେର ସ୍ଥଳରେ ଭୁଲ୍ ହୋଇ ଯାଉଥାଏ । ମୋ ଇଂରାଜୀ ଶୁଣି ସାହେବ-ମାନେ ହସିଲେ କି ନାହିଁ ଦେଖିବାପାଇଁ ସେମାନଙ୍କ ମୁହଁକୁ ମୁଁ ଅନାଉଥାଏଁ । ମାତ୍ର ଧନ୍ୟ ସେମାନେ ! ମୋ ଭୁଲ୍ ଇଂରାଜୀ କଥା ପ୍ରତି ଦୃଷ୍ଟି ନ ରଖି ମୋ ଯୁକ୍ତିଗୁଡ଼ିକ ମ୍ୟାପ୍ ସହିତ ମିଳୁଅଛି କି ନାହିଁ, ସେହି ମାର୍ବଲ ପଥର ପରି ଶୁକ୍ଳବର୍ଣ୍ଣ ବିଶାଳ ଗମ୍ଭୀର ମୂର୍ତ୍ତିଦ୍ୱୟ ମାର୍ବଲ ପଥର ମୂର୍ତ୍ତି ପରି ଅଚଳ ଭାବରେ ବସି କଥା ଗୁଡ଼ିକ ଶୁଣି ଯାଉଥାନ୍ତି ।

କେଉଁଝରର ପକ୍ଷରୁ ବହୁକାଳରୁ ଅନେକଗୁଡ଼ିଏ ଜମି ଖାସମାହାଲ ସହିତ ମିଶି ଯାଇଥିଲା । ସେ ସମସ୍ତ ଫେରସ୍ତ ଆସିଲା । ମାମଲା ଡିକ୍ରି କରି ଆଣିବାରୁ ମହାରାଜା ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ।

(ଉ: ସା: ୨୩ଶ ଭାଗ—୩ୟ ସଂଖ୍ୟା)

---

## ୧୩

## ଓଡ଼ିଶା ଦୁର୍ଭିକ୍ଷ

ମହାତ୍ମା ରେଭରେଣ୍ଡ ଇ. ସି. ବି. ହାଲମ ସାହେବଙ୍କଠାରୁ ସହାନୁଭୂତି ପାଇ ସୁଖ ଆନନ୍ଦ ଉପ୍ରେ ଦ

ସହିତ ସ୍କୁଲର କାର୍ଯ୍ୟ କରୁଥାଏଁ । ସ୍କୁଲ ଛୁଟି ଉତ୍ତାରେ ଅଧିକାଂଶ ସମୟ ସାହିତ୍ୟ ବିଷୟରେ ତାଙ୍କ ସହିତ ଚର୍ଚ୍ଚା ହୁଏ । ମୁଁ ତାଙ୍କର ଅଧୀନସ୍ଥ କର୍ମଚାରୀ ହେଲେ ମଧ୍ୟ ଉକ୍ତ ମହାତ୍ମା ମୋ ସହିତ ପରମାତ୍ମୀୟ ପରି ବ୍ୟବହାର କରୁଥିଲେ । ଓଡ଼ିଆ ଜାତିର ଉନ୍ନତି-କାମୀ ଥିବାରୁ ମୁଁ ତାଙ୍କୁ ଦେବତାତୁଲ୍ୟ ଭକ୍ତି କରୁଥିଲି । ଏହି ସମୟରେ ଖ୍ରୀଷ୍ଟଧର୍ମାବଲମ୍ବୀ ସଂଖ୍ୟା ଦିନକୁ ଦିନ ବୃଦ୍ଧି ପାଉଥାଏ । ଏହି ବୃଦ୍ଧିର ଅନ୍ୟତମ ଅଥବା ବିଶେଷ କାରଣ ଉତ୍କଳର ଭୀଷଣ ଦୁର୍ଭିକ୍ଷ । ନଅଙ୍କରେ ( ସନ ୧୮୬୭ ମସିହା ) ଏହି ଲୋମହର୍ଷଣ ବ୍ୟାପାର ଘଟିଥିଲା । ସେହି ଭୀଷଣ କାଣ୍ଡ ଆଜଯାଏ ଲୋକେ ଭୁଲି ପାରି ନାହାନ୍ତି । ସେହି ବର୍ଷ ମଧ୍ୟରେ ୩୦ ଲକ୍ଷ ଲୋକ ପ୍ରାଣତ୍ୟାଗ କରିଥିଲେ । ପ୍ରାୟ ଛଅପଣି ଲୋକଙ୍କ ବଂଶ ଉଚ୍ଛନ୍ନ ହୋଇ ଯାଇଅଛି । ଅନେକ ମୃତ, ଅବଶିଷ୍ଟ ଇତସ୍ତତଃ ହୋଇ ଯାଇଅଛନ୍ତି ।

ସେ ସମୟକୁ ମୋହର ବୟସ ୨୮ ବର୍ଷ । ବାଲେଶ୍ୱର ମିସନ ସ୍କୁଲର ପ୍ରଧାନ ଶିକ୍ଷକ ଥିଲି । ଆଜକୁ ୫୦ ବର୍ଷ ଗତ ହୋଇଅଛି; ମାତ୍ର ସେ ସମୟର ଘଟନାଗୁଡ଼ିକ ଯେମନ୍ତ ମୋ ହୃଦୟରେ ସୁସ୍ପଷ୍ଟରୂପେ ଅଙ୍କିତ ହୋଇ ରହିଅଛି । ଭାଦ୍ରମାସ ଚାରିଦିନ ଖୁବ୍ ଟାଣ ଅସ୍ରାଏ ପାଣି ବର୍ଷି ଛାଡ଼ିଗଲା; ଭାଦ୍ର ଉତ୍ତାରେ ଆଶିଣ ପ୍ରଥମରୁ ଲୋକେ ଜଳ ସକାଶେ କାତର ଭାବରେ ଆକାଶକୁ ଚାହିଁବାକୁ ଲାଗିଲେ । କାହାରି ମୁଖରୁ ଆଉ କୌଣସି କଥା ଶୁଣିବାକୁ ନାହିଁ, କେବଳ ଜଳ ଜଳ । କାର୍ତ୍ତିକ ମାସ ଆରମ୍ଭରୁ ଲୋକେ ନିତାନ୍ତ ନିରାଶ ହୋଇପଡ଼ିଲେ । ଜଳ ହେଲେ ମଧ୍ୟ ଆଉ ରକ୍ଷା ନାହିଁ । ଧାନଗଛ ମରିବାକୁ ଲାଗିଲାଣି । ବାଲେଶ୍ୱର ଜିଲ୍ଲାରେ ଏକମାତ୍ର ଫସଲ ଧାନ, ସେହି ଗୋଟିକ ମାତ୍ର ଫସଲ ପ୍ରତି ଲୋକଙ୍କ ଜୀବନ ନିର୍ଭର କରେ । ମୋ ଘରଠାରୁ ଅର୍ଦ୍ଧମାଇଲ ଦକ୍ଷିଣକୁ ବାଲେଶ୍ୱର ସହରର ଲୋକବସତି ଶେଷ । ସେହିଠାରୁ ଦିଗ୍‌ବଳୟ ସୀମା ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଧାନ୍ୟକ୍ଷେତ୍ର । ମଧ୍ୟରେ ମଧ୍ୟରେ ସମୁଦ୍ର ମଧ୍ୟଗତ ଦ୍ୱୀପସ୍ୱରୂପ ଗୋଟିଏ ଗୋଟିଏ ପୃଥକ୍ ପୃଥକ୍ ଗ୍ରାମ । ସେହି ସମୟରେ ପ୍ରତିଦିନ ପୂର୍ବାହ୍ନ ୯ ଘଣ୍ଟା ସମୟରେ ସ୍ନାନ କରି ଖଣ୍ଡିଏ କମ୍ବଳାସନ କାଖରେ ଯାକି ଏକାକୀ ଧାନ ବିଲକୁ ଯାଏଁ, ବିଲ ମଧ୍ୟରେ ଆସନ ପାରି ବସି ଈଶ୍ୱରଙ୍କଠାରେ ଲୋକମାନଙ୍କ ରକ୍ଷା ସକାଶେ ପ୍ରାର୍ଥନା କରେ । ଧାନଗଛଗୁଡ଼ିକ ଶୁଖି କୁଟା ପରି ହୋଇଗଲାଣି । କେତେକ ଧାନ ଅଧାଅଧି ବାହାରି, କେତେ ବା ସମ୍ପୂର୍ଣ୍ଣରୂପେ ବାହାରି ସାନ ସାନ ଧଳା ଧଳା ଅଣଖିଆ ଚଅଁର ପରି ଏପାଖ ସେପାଖ ଦୋହଲୁ ଥାଏ । ଲୋକେ ଗୋରୁ ଗାଈ ବିଲ ମଧ୍ୟରେ ଛାଡ଼ି ଦେଇଥାନ୍ତି; ମାତ୍ର ଗୋରୁଗୁଡ଼ାକ ଧାନଗଛ ସବୁ ଥରେ ଥରେ ଶୁଙ୍ଘି ଚାଲିଯାନ୍ତି, ଗଛ ଖାନ୍ତି ନାହିଁ ।

ଦିନ ମଜୁରିଆ ମୂଲିଆଗୁଡ଼ାକ କଂସା ପିତ୍ତଳ ଯାହା ଖଣ୍ଡେ ଖଣ୍ଡେ ଥିଲା ବିକିଦେଇ ଯେତେ ଦିନ ଚଳିଲା ଚଳିଲେ । କାର୍ତ୍ତିକ ଶେଷ ସରିକି ଯାହାକୁ ଯେଉଁ ବାଟ ଦିଶିଲା ଘରୁ ବାହାରି ଚାଲିଗଲେ । ସ୍ତ୍ରୀ ପୁରୁଷ, ବାପ ପୁଅ କାହାରି ସହିତ କାହାରି ଭେଟ ନାହିଁ । ଦୁଆର ଦୁଆର ବୁଲି ବୁଲି ଭିକ ମାଗୁଥାନ୍ତି । କାହା-ଘରେ ଚାଉଳ ଅଛି ଯେ ଭିକ ଦେବ । ଗୃହବନ୍ଧ ଲୋକେ ଅବସ୍ଥାନୁସାରେ ପ୍ରଥମେ କଂସା ପିତ୍ତଳ, ଗୋରୁ ଗାଈ, ସୁନା ରୂପା ଯାହା ଘରେ ଯାହା ଥିଲା ବିକିବାକି ମଧ୍ୟ ଫଗୁଣ ଯାଏ ଦାନ୍ତ କାମୁଡ଼ି ଘରେ ପଡ଼ି ରହିଲେ । ସେ ସମୟରେ ବଳଦ ଗୋଟାକର ଦାମ ଧାନ ଗୌଣିକ ଠାରୁ ଚାରି ପାଞ୍ଚ ଗୌଣି, ଗାଈଟାର ଦାମ ଧାନ ଗୌଣିଏ ଦୁଇଗୌଣି । ସୁନା ରୂପା ଓଜନ କରିବାକୁ ନିକ୍ତି ତୌଲ ନାହିଁ, ପୁଣି ନିକ୍ତି ଖୋଜିବାକୁ ତର ସହୁନାହିଁ । ଦରଦାମ ବୁଝୁଛି କିଏ ? ଯେତେ ଗୌଣି ଧାନ ବା ଚାଉଳ ଦେବୁ ଦେ । ଅନେକ ମଧ୍ୟବିତ୍ତ ଲୋକେ ଟଙ୍କା ଅଣ୍ଟାରେ ଖୋସି ଗାଁ ଗାଁ କରି

ଧାନ ଗୁଣ୍ଡଲ ଖୋଜି ବୁଲୁଥାନ୍ତି । ଧାନ ତ ନାହିଁ, ଯାହାର ଯାହାର ବା ଥିଲା ଲୁଚାଇ ଦେଲେଣି । ଫଗୁଣ ସରିକି ଗୃହବନ୍ଦି ଲୋକ ଅଧିକାଂଶ, କାରିଗର ଶ୍ରେଣୀର ପ୍ରାୟ ସମସ୍ତେ କୁଆଡ଼େ ଛିନ୍ନଭିନ୍ନ ହୋଇ ବୁଣି ପଡ଼ିଲେଣି । ଘାସପତ୍ର ଯେ ଯାହା ପାଇଲା ଗୋବାଉଥାଏ । ତେନ୍ତୁଳି ଗଛରେ କଅଁଳିଆ ପତ୍ର ବାହାରିବାରୁ ଗୋଟାଏ ଗୋଟାଏ ଗଛରେ ଦଶ କୋଡ଼ିଏ ଜଣ ଲେଖାଏଁ ଚଢ଼ି ମାଙ୍କଡ଼ ପରି ପତ୍ର ସବୁ ଝୁଣ୍ଟି ଝୁଣ୍ଟି ଖାଉଥାନ୍ତି । ଯେଉଁ ଲୋକକୁ ଅନାଅ, ହାଡ଼ ଆଉ ଚମ, ଆଖି ଭିତରକୁ ପଶିଗଲାଣି । ଅନେକ ଭଲ ଭଲ ଘର ଯୁବତୀ ବୋହୂ ଝିଅ ଦୁଇ ତିନି ହାତ ଲମ୍ବ ଶତେ ଗଣ୍ଠିଲା କନା ଖଣ୍ଡେ ଖଣ୍ଡେ ଅଣ୍ଟାରେ ଭିଡ଼ି ଦେଇ ଦାଣ୍ଡେ ଦାଣ୍ଡେ ବୁଲୁଥାନ୍ତି । ସେମାନଙ୍କର ମାତୃଚିହ୍ନ ଚର୍ମ ଦୁଇଖଣ୍ଡ ଛାତିରେ ଝୁଲୁଥାଏ । କାହାରି କାହାରି କୋଳରେ ଅସ୍ଥି ଚର୍ମମୟ ପିଲା ସେହି ଚର୍ମମୟ ସ୍ତନଟି ମୁହଁରେ ଦେଇ ଝୁଲି ପଡ଼ିଥାଏ । ଶିଶୁଟା ମୃତ କି ଜୀବିତ ଚିହ୍ନି ହେଉ ନ ଥାଏ । ମା'ଟା ପ୍ରାଣପଣରେ ଛୁଆଟାକୁ ଯାବୁଡ଼ି ଧରିଥାଏ । ଚୈତ୍ରଠାରୁ କ୍ରମଶଃ ମୃତ୍ୟୁସଂଖ୍ୟା ବଢ଼ିବାକୁ ଲାଗିଲା । ଦାଣ୍ଡରେ, ଘାଟରେ, ବଣରେ, ପୋଖରୀ କୂଳରେ ଯହିଁ ଦେଖିବ ମଡ଼ା ପଡ଼ି ରହିଥାନ୍ତି ।

ସେ ସମୟରେ ଉତ୍କଳର ପରମବନ୍ଧୁ ପରମ-ସହାୟ ରେଭେନ୍‌ସା ସାହେବ ବୋଧକରେ ନୂତନ କମିଶନର ପଦରେ ନିଯୁକ୍ତ ହୋଇ ଆସିଥାନ୍ତି । ସେପ୍‌ଟେମ୍ବର କି ଅକ୍ଟୋବର ମାସରେ ଗବର୍ଣ୍ଣମେଣ୍ଟରୁ କମିଶନରଙ୍କ ପାଖକୁ ଚିଠି ଆସିଲା—'ଅନାବୃଷ୍ଟି ହେତୁରୁ ଓଡ଼ିଶାରେ ଦୁର୍ଭିକ୍ଷ ଉପସ୍ଥିତ ହେବାର ଖୁବ୍ ସମ୍ଭାବନା । ପ୍ରଜାମାନଙ୍କ ରକ୍ଷା ନିମନ୍ତେ ଗବର୍ଣ୍ଣମେଣ୍ଟଙ୍କ ପକ୍ଷରୁ କୌଣସି ପ୍ରକାର ଉପାୟ ବିଧାନ କରାଯିବାର ଆବଶ୍ୟକ କି ନା ? ଯଦି ପ୍ରୟୋଜନ ହୁଏ, କି ପ୍ରକାର ଉପାୟ ବିଧାନ କରାଯାଇପାରେ ?' ଗବର୍ଣ୍ଣମେଣ୍ଟଙ୍କ ଚିଠିର ଉତ୍ତର ଦେବା ସକାଶେ କମିଶନର ସାହେବ କଚେରିର ସମସ୍ତ ଅମଲାଙ୍କୁ ବସାଇ ପରାମର୍ଶ କରିବାକୁ ଲାଗିଲେ । ସିରସ୍ତାଦାର ଦୁଇଜଣ କହିଲେ, 'ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ୁ, କିଛି ଚିନ୍ତା ନାହିଁ । ମଫସଲର ଜମିଦାର ମହାଜନମାନଙ୍କ ଘରେ ଯଥେଷ୍ଟ ଧାନ ମହଜୁଦ ଅଛି, ସେଥିରେ ବର୍ଷକ ଚଳି ଯାଇ ପାରେ । ସିରସ୍ତାଦାର ମାନେ ଯେ ସ୍ଥଳରେ ଏକଥା କହି ସାରିଲେଣି, ସେମାନଙ୍କର ମନୋରଞ୍ଜନ ସକାଶେ ପେସ୍କାର ମାନଙ୍କର ତ କିଛି ବଢ଼ାଇ କହିବା ଉଚିତ । କମିଶନରୀ ପେସ୍କାର କହିଲେ, ଗୋପାଳପୁର ମୌଜାର ଜମିଦାର ଘରେ ଦଶଟା ମରେଇରେ ପଚିଶ ହଜାର ଛେଳ ଧାନ ମହଜୁଦ ଅଛି, ତାହାଛଡ଼ା ହଜାର ହଜାର ଛେଳ ଧାନ ଖଣି ପଡ଼ିଛି । ଶ୍ରୀରାମପୁର ଶାମ ସାହୁ ଘରୁ ନିକୁଛିରେ ଚାଳିଶ ହଜାର ଛେଳ ଧାନ ବାହାରିବ । ଏହା ଛଡ଼ା ଫି ଗାଁରେ ଛୁଟକୁରିଆ ମହାଜନମାନଙ୍କ ଘରେ ଧାନ ତ ପୂରି ରହିଛି । କେବଳ ଏମାନେ ମରେଇ ଫିଟାଇ ଦେଲେ ଓଡ଼ିଶାକୁ ଦୁଇମାସ ସମ୍ଭାଳି ନେବେ ।' ପଲଟିକେଲ ଇଲାକା ପେସ୍କାର ବାବୁ ପଚିଶ ହଜାର ଛେଳରୁ ଉଠି ଲକ୍ଷ ଲକ୍ଷ ଛେଳ ଧାନ ଲୋକମାନଙ୍କ ଘରେ ଥିବାର ହିସାବ ଦେଲେ । ଆଉ ତଳ ଅମଲା-ମାନେ ଯେଉଁ ହିସାବ ଦେଲେ, ସେଥିରୁ ଜଣାଗଲା, ଓଡ଼ିଶାରେ ଅସୀମ ଧାନ ମହଜୁଦ ଅଛି, ସେଥିରେ ବର୍ଷକ ରକ୍ଷା ପାଇ ପାରେ ।

କମିଶନର ସାହେବ ଗବର୍ଣ୍ଣମେଣ୍ଟଙ୍କୁ ଲେଖିଲେ, 'ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିପାରେ; ମାତ୍ର ଦେଶ ମଧ୍ୟରେ ଅନେକ ଧାନ ମହଜୁଦ ଅଛି, ସେଥିରେ ବର୍ଷକ ଚଳି ଯାଇ ପାରିବ ।' କମିଶନର ସାହେବ ବଡ଼ ଭୁଲ କଲେ, ଓଡ଼ିଶାରେ ପ୍ରକୃତ ଏତେ ଧାନ ମହଜୁଦ ଅଛି କି ନାହିଁ, କଥାଟା ଭଲରୂପେ ତଦାରଖ କରିବା ପୁଣି ଯେଉଁମାନଙ୍କ ଘରେ ଧାନ ମହଜୁଦ ଅଛି, ସାଧାରଣ ସଙ୍କଟ ସମୟରେ ସେମାନେ ସେହି ଧାନ ବିକ୍ରୟ

ବା ବିଚରଣ କରିବେ କି ନାହିଁ, କଥାଟା ଭଲରୂପେ ତଦନ୍ତ କରି ଗବର୍ଣ୍ଣମେଣ୍ଟଙ୍କୁ ଜଣାଇବା ଉଚିତ ଥିଲା । ମାତ୍ର ଉତ୍କଳରୁ ୩୦ ଲକ୍ଷ ପର୍ଯ୍ୟନ୍ତ ମହାପ୍ରାଣୀ ବିନାଶ ଯିବା ଏବଂ ସମସ୍ତେ ଲଣ୍ଡଭଣ୍ଡ ହେବାର ଯେମନ୍ତ ବିଧିର ବିଧାନ । ଏ ସ୍ଥଳରେ କମିଶନରଙ୍କୁ ସୁବୁଦ୍ଧି ଆସିବ କାହୁଁ ?

ଫଗୁଣ ଆରମ୍ଭଠାରୁ ଲୋକେ ମରିବାର ଆରମ୍ଭ ହେଲା । ମୃତ୍ୟୁସଂଖ୍ୟା ଦିନକୁ ଦିନ ବଢ଼ିବାକୁ ଲାଗିଲା । ବାଟ ଘାଟ ତୋଠ ପଡ଼ିଆ ଅରଣ୍ୟ ଯେଉଁଠାକୁ ଯାଅ, ସେଠାରେ ମଡ଼ା ପଡ଼ିଥିବାର ଦେଖିବ । କ୍ରମଶଃ ମୃତ ଶରୀରରେ ଦେଶଟା ଯେମନ୍ତ ଗୁଇ ହୋଇଗଲା । ଚାଉଳର ଦର ହୋଇ ଗଲା ଟଙ୍କାକୁ ୧୦ ସେର । କେବଳ ୩।୪ ଦିନ ସକାଶେ ଟଙ୍କାକୁ ୩ ସେର ହୋଇଥିଲା, ତାହା ମଧ୍ୟ ସହର ମଧ୍ୟରେ ମିଳିଲା ନାହିଁ । ୩।୪ ଦିନ ଉତ୍ତାରେ ରେଙ୍ଗୁନରୁ ଚାଉଳ ଆସିବାରୁ ଯେଉଁ ଦଶକୁ ସେହି ଦଶସେର ହୋଇଗଲା । ସହର ମଧ୍ୟରେ କିଣିବାକୁ କଷ୍ଟରେ ଯାହା କିଛି କିଛି ମିଳୁଥିଲା, କିନ୍ତୁ ମଫସଲରେ ଏକାବେଳକେ ଦୁଷ୍ପ୍ରାପ୍ୟ । ମଫସଲରେ ଯେଉଁ ଯେଉଁ ଲୋକଙ୍କ ଘରେ ଧାନ ଚାଉଳ ଥିଲା, ସେମାନେ ଲୁଚାଇ ଦେଲେ; ଅଧିକାଂଶ ଲୋକେ ଘର ମଧ୍ୟରେ ଗାତ ଖୋଳି ପୋତି ପକାଇଲେ । ଯେଉଁସବୁ ଲୋକେ ଶସ୍ତା ପାଇ ପଲକୁ ପଲ ଗାଈଗୋରୁ କିଣିଥିଲେ, ନିତାନ୍ତ ଆଶ୍ଚର୍ଯ୍ୟର ବିଷୟ, ସେହିବର୍ଷ ମଧ୍ୟରେ ସେ ସମସ୍ତ କିଣା ଗୋରୁ ତ ମଲେ, ସେମାନଙ୍କ ସହିତ ମହାଜନମାନଙ୍କ ଘରେ ନିଜର ଯେଉଁ ଗୋରୁ ଗାଈଥିଲେ, ସେ ଗୁଡ଼ାକ ମଧ୍ୟ ମରିଗଲେ । ଏ ସମସ୍ତ ପ୍ରତ୍ୟକ୍ଷ ବିଷୟ, ଅବିଶ୍ୱାସର କୌଣସି କାରଣ ନାହିଁ । ଯେଉଁସବୁ ଧାନୁଆ ମହାଜନ ଧାନ ବିକି ଘରେ ଟଙ୍କା ପୋତି ପକାଇଥିଲେ, ସେ ସମସ୍ତ ଟଙ୍କା ସୁନା କାହିଁ ଉଡ଼େଇ ଗଲା । ଦୁର୍ଭିକ୍ଷ ପୂର୍ବ ବର୍ଷ ଧାନ ଟଙ୍କାକୁ ବାଲେଶ୍ୱରୀ ଓଜନରେ ପ୍ରାୟ ଦେଢ଼ଶ ସେର ଏବଂ ଚାଉଳ ଟଙ୍କାକୁ ଦେଢ଼ ମହଣ ଥିଲା । ସେହି ଚାଉଳ ଦୁର୍ଭିକ୍ଷ ବର୍ଷ ଟଙ୍କାକୁ ଦଶସେର ହିସାବରେ ବିକ୍ରି ହେବାରୁ ଏପରି ଦୁର୍ଯୋଗ ଘଟିଥିଲା । କେବଳ ତାହା ନୁହେଁ—ଗତ ପୂର୍ବ ପାଞ୍ଚ ସାତ ବର୍ଷଠାରୁ ଚାଉଳ ବାଲେଶ୍ୱରୀ ୧୦ ସେର ହିସାବରେ ବିକ୍ରି ହୋଇ ଆସୁଅଛି । ତେବେ ଦୁର୍ଯୋଗ ଘଟୁ ନାହିଁ କି ସକାଶେ ? ବର୍ତ୍ତମାନ ପୂର୍ବଠାରୁ ଟଙ୍କା ଖୁବ୍ ସୁଲଭ । ସମସ୍ତଙ୍କ ହାତରେ ଟଙ୍କା, ଚାଉଳ ସର୍ବତ୍ର ସୁପ୍ରାପ୍ୟ । ଟଙ୍କା ଦେଲେ ଯେତେବେଳେ ଯେତେ ଇଚ୍ଛା ଧାନ ଚାଉଳ ପାଇ ପାରିବ । ସେ ସମୟରେ ଚାଉଳ ଓ ଟଙ୍କା ଉଭୟ ଦୁର୍ଲ୍ଲଭ ଥିଲା । ସହସା ବିଦେଶରୁ ଅଣାଇବାର ଉପାୟ ମଧ୍ୟ ନ ଥିଲା । ମାର୍ଚ୍ଚ ବା ଏପ୍ରେଲ ସରିକି କମିଶନର ସାହେବ ଓଡ଼ିଶାର ଉପସ୍ଥିତ ପ୍ରକୃତ ଅବସ୍ଥା ଜଣାଇ ଯଥେଷ୍ଟ ପରିମାଣରେ ଧାନ ଚାଉଳ ପଠାଇ ଦେବା ସକାଶେ ଗବର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା କଲେ । ଗବର୍ଣ୍ଣମେଣ୍ଟ ବୋଧ କରୁଁ କମିଶନର ସାହେବଙ୍କ ପୂର୍ବ ରୀତି ସ୍ମରଣ କରି ଟେଲିଗ୍ରାମ କଲେ, 'ତୁମ୍ଭେ ଚାଉଳ ପଠାଇବା ସକାଶେ ଟେଲିଗ୍ରାମ କରିଅଛ । ମାତ୍ର ଟେଲିଗ୍ରାମରେ ଚାଉଳ ପଠା ଯାଇ ନ ପାରେ, ବର୍ତ୍ତମାନ କଲିକତା-ଠାରୁ ପୁରୀ ପର୍ଯ୍ୟନ୍ତ ଯେଉଁ ସୁନ୍ଦର ଟ୍ରଙ୍କ ରୋଡ଼ ବା ବଡ଼ଦାଣ୍ଡ ଦେଖୁଅଛ ସେ ସମୟରେ ସେଥିର ଚିହ୍ନ ମାତ୍ର ଗୋହିରିସ୍ୱରୂପ ଥିଲା । ତାହା ପୁଣି ଅରଣ୍ୟମୟ ଏବଂ ଚୋର ଡକାଏତରେ ପରିପୂର୍ଣ୍ଣ । ସୁତରାଂ ଉପର ଦାଣ୍ଡରେ ଧାନଚାଉଳ ଆସିବାର ଉପାୟ ନ ଥିଲା । ନିମକ୍ ମହାଲ ଉଠି ଯାଇଥିବାରୁ ବାଲେଶ୍ୱରୀ ସାମୁଦ୍ରିକ ଜାହାଜର ବଂଶ ବିଲୁପ୍ତ ହୋଇଥିଲା । ବାଲେଶ୍ୱରବାସୀ କଳଜାହାଜ ନାମକ ଗୋଟାଏ ପଦାର୍ଥ ଅଛି ବୋଲି ନାମ ମାତ୍ର ଶୁଣିଥିଲେ । ତଥାପି ଗବର୍ଣ୍ଣମେଣ୍ଟ କଲିକତାରୁ ବଡ଼ ବଡ଼ ମନୋହର ଜାହାଜ ଉଡ଼ା କରି ରେଙ୍ଗୁନ ଓ ବଙ୍ଗ ଦେଶରୁ ଚାଉଳ

ପଠାଇବାକୁ ଲାଗିଲେ । ସ୍ଥାନେ ସ୍ଥାନେ ଅନ୍ନଛତ୍ର ସରକାର ତରଫରୁ ଫିଟା ଗଲା । ଅନ୍ନଛତ୍ରର ନାମ ମଫସଲରେ ପ୍ରଚାରିତ ହେବା ମାତ୍ରକେ ଅନ୍ନକଷ୍ଟ କାଙ୍ଗାଳମାନେ ସହରକୁ ଧାଇଁଲେ । ପନ୍ଦର କୋଡ଼ିଏ ଦିନ ପୂର୍ବରୁ ଅନ୍ନ ସହିତ ସେମାନଙ୍କର ଭେଟ ନାହିଁ, କଅଁଳ ପତ୍ର ଓ ଅଖାଦ୍ୟ ଫଳମୂଳ ଖାଇ ବଞ୍ଚି ରହିଥିଲେ । ଅନ୍ନାଶାରେ ସହରକୁ ଧାଇଁଲେ, ମାତ୍ର ଏତେ ଦୂରକୁ ଆସି ପାରିବେ କିପରି ? ଦଶ ବାର ପଣି ଲୋକ ତ ବାଟରେ ମଲେ, ଯେଉଁମାନେ ଅନ୍ନଛତ୍ର ଯାଏଁ ଆସି ପାରିଲେ, ସେମାନେ କେବଳ ବଖତେ ବଖତେ ଅନ୍ନ ଖାଇ କେହି ଝାଡ଼ାବାନ୍ତିରେ କେହି ଆମାଶୟରେ ମଲେ । ସେମାନଙ୍କ ପେଟ ତ ଶୁଖି ରହିଥିଲା, ଏଣେ ଅନ୍ନ ପାଇଁ ରଙ୍କଣା ହୋଇଥିଲେ, ଭାତ ଦେଖି ଯେ ଯେତେ ପାଇଲା ସେତେ ସେତେ ଖାଇ ପକାଇଲା । ହଜମ ଶକ୍ତି ବିଲୁପ୍ତ, ଏତେ ଭାତ କଣି ପେଟ ସମ୍ଭାଳି ପାରିବ ? ପରଦିନ ରାତି ନ ପାହୁଣୁ ଝାଡ଼ାବାନ୍ତି ବା ଅନ୍ୟ ବେମାରି ଉପସ୍ଥିତ ହେଲା । ଦିନେ ଦୁଇଦିନ ମଧ୍ୟରେ ମରି ଶୋଇଲେ । ଶୁଷ୍କପେଟ କଙ୍ଗାଳମାନଙ୍କ ଚିକିତ୍ସା ସକାଶେ ଡାକ୍ତର ଉପସ୍ଥିତ । ସରକାର ବସ୍ତା ବସ୍ତା ସାଗୁଦାନା କଲିକତାରୁ ଅଣାଇ ଅନ୍ନଛତ୍ର ଗୋଦାମରେ ଜମା କରି ରଖିଲେ । କଙ୍ଗାଳମାନଙ୍କୁ ପ୍ରଥମ କେତେଦିନ ଯାଏ ସାଗୁଦାନା ଦିଆଯିବାର ବ୍ୟବସ୍ଥା କରାଗଲା; ମାତ୍ର କାହିଁରେ କିଛି ହେଲା ନାହିଁ, ପ୍ରାୟ ସବୁ ଗୁଡ଼ାକ ମଲେ । ଅନ୍ନଛତ୍ରର ଚତୁର୍ଦ୍ଦିଗରେ ଏବଂ ସହରର ଅନ୍ୟାନ୍ୟ ସ୍ଥାନ—ଦାଣ୍ଡରେ ଘାଟରେ ଯେଉଁ ସବୁ ଲୋକ ମରି ପଡ଼ି ରହିଥାନ୍ତି, ସକାଳୁ ମେହେନ୍ତରମାନେ ସେମାନଙ୍କୁ ଉଠାଇ ଶଗଡ଼ରେ ପୂରାଇ ନଦୀକୁ ଫୋପାଡ଼ି ଦିଅନ୍ତି । ମାସେ କି ଦେଢ଼ମାସ ପର୍ଯ୍ୟନ୍ତ ମେହେନ୍ତରମାନେ ତିନି ଚାରି ଖଣ୍ଡ ମଡ଼ା ବୋଝାଇ ଶଗଡ଼ ନଦୀ ଆଡ଼କୁ ନେଇ ଯାଉଥିବାର ଲେଖକ ପ୍ରତ୍ୟକ୍ଷ ଦେଖିଅଛି । ସରକାର ଯେଉଁ ଚାଉଳ ବିଦେଶରୁ ଅଣାଇଥିଲେ, ଅନ୍ନଛତ୍ର ଖରଚ ବାଦ ଟଙ୍କାକୁ ୧୦ ସେର ଦରରେ ସାଧାରଣରେ ବିକ୍ରୟ କରିବାର ମଧ୍ୟ ବ୍ୟବସ୍ଥା କରାଇଥିଲେ । ମାତ୍ର ଯାହାକୁ ଇଚ୍ଛା ତାକୁ କିମ୍ବା ଯେତେ ଇଚ୍ଛା ସେତେ ବିକ୍ରୟ କରିବାର ବ୍ୟବସ୍ଥା ନ ଥିଲା । ରିଲିଫ କମିଟି ନିଯୁକ୍ତ ମେମ୍ବରମାନେ ଲୋକ ଦେଖି ସେରେଠାରୁ ଟଙ୍କାକ ପର୍ଯ୍ୟନ୍ତ ଚାଉଳ ଦେବାର ଟିକଟ ଦେଲେ । ସେହି ଟିକଟ ଦେଖାଇ ଲୋକେ ଗୋଦାମରୁ ଚାଉଳ ନେଉଥିଲେ ।

ପୃଥିବୀରେ କିଛି ଚିରସ୍ଥାୟୀ ନୁହେ । ଦୁର୍ଭିକ୍ଷ ତ ଚାଲିଗଲା । ଦୁର୍ଭିକ୍ଷର ପରବର୍ଷ କେତେଗୁଡ଼ାଏ ବାଳକ ବାଳିକା ଏବଂ ମନୁଷ୍ୟ ଦାଣ୍ଡେ ଦାଣ୍ଡେ ବୁଲୁଥିଲେ । ସେମାନେ ଛତ୍ରଖିଆ ବୋଲି ହିନ୍ଦୁସମାଜ ସେମାନଙ୍କୁ ଛାଡ଼ିଦେଲା । ମାତ୍ର ମିଶନାରୀମାନେ ସେମାନଙ୍କୁ ଆଦର ପୂର୍ବକ କୋଳକୁ ଟେକି ନେଇ ପୁତ୍ର ପରି ପ୍ରତିପାଳନ କଲେ ଏବଂ ଶିକ୍ଷିତ ଉପଯୁକ୍ତ କରାଇବାକୁ ଲାଗିଲେ । ଏହିଠାରେ ହିନ୍ଦୁଧର୍ମ ଓ ଖ୍ରୀଷ୍ଟାନ ଧର୍ମର ପାର୍ଥକ୍ୟ ଜଣାଯାଏ । ଆମ୍ଭମାନଙ୍କ ସମାଜସ୍ଥ ସ୍ୱଧର୍ମାବଲମ୍ବୀ ଲୋକଗୁଡ଼ାଏ ପ୍ରାଣରକ୍ଷା ନିମନ୍ତେ ଅନ୍ୟଲୋକ ହସ୍ତରୁ ଅନ୍ନ ଗ୍ରହଣ କରିବାରୁ ଆମ୍ଭେମାନେ ସେମାନଙ୍କୁ ଦୂର ଦୂର କରି ପାଖରୁ ତଡ଼ି ଦେଲୁଁ, ମାତ୍ର ଦୂରଦେଶୀୟ ଭିନ୍ନ ଧର୍ମାବଲମ୍ବୀ ଲୋକେ ସେମାନଙ୍କୁ ଆଦର ପୂର୍ବକ କୋଳକରି ନେଇ ପ୍ରତିପାଳନ କଲେ ଓ ଉପଯୁକ୍ତ କରାଇଲେ । ଏଥିକି ଆମ୍ଭେମାନେ ସାହସ ପୂର୍ବକ ବୋଲିବାକୁ ପ୍ରସ୍ତୁତ— ଖ୍ରୀଷ୍ଟାନ ଧର୍ମ ଓ ଜାତି ପତିତ ପାବନ । ହିନ୍ଦୁସମାଜ ଯେ ସେ ସମୟରେ ସେ ଛତ୍ରଖିଆ ମାନଙ୍କୁ ସମାଜରୁ ତଡ଼ି ଦେଇଥିଲା, ଏଥିପାଇଁ ହିନ୍ଦୁଧର୍ମ ଦାୟୀ ନୁହେ, ଅବିବେକୀ ସମାଜର ଦୋଷ ଅଟେ । ଦୁରବସ୍ଥାରେ ପଡ଼ି ପ୍ରାଣରକ୍ଷା ନିମନ୍ତେ ଅତି ନୀଚ ଅସ୍ପୃଶ୍ୟ ଜାତିସ୍ପୃଷ୍ଟ ଅନ୍ନଗ୍ରହଣ କରିବା ଦୂଷଣୀୟ ନୁହେ ବୋଲି ହିନ୍ଦୁ

ପୁରାଣ ଶାସ୍ତ୍ର ମାନଙ୍କରେ ସୁସ୍ପଷ୍ଟ ଉଲ୍ଲେଖ ଅଛି । ରାଜର୍ଷି ବିଶ୍ୱାମିତ୍ର ଏକଦା ପ୍ରାଣରକ୍ଷା ନିମନ୍ତେ ଚଣ୍ଡାଳ ଦ୍ୱାରା ପାକ ହୋଇଥିବା କୁକୁର ମାଂସ ଭକ୍ଷଣକରି ପୁନର୍ବାର ମହର୍ଷି ମଣ୍ଡଳୀରେ ସ୍ଥାନ ଲାଭ କରିବା ବିଷୟ ମହାଭାରତରେ ସୁସ୍ପଷ୍ଟ ଉଲ୍ଲେଖ ଅଛି ।

(ଉ: ସା: ୨ଶ ଭାଗ ୭ମ ସଂଖ୍ୟା)

---

* The rain-fall of 1865 in Orissa was scanty and ceased prematurely, so that the out-turn of the great crop of winter rice on which the country mainly depends, was reckoned at less than a third of the average crop. Food-stocks were low,both because export had been unusually brisk of late and because the people had not been taught by precarious seasons to protect them selves by retaining sufficient stores at home. When the harvest failed, so totally new to them was the situation that no one realised its meaning and its probable results. The local Government and officials not taking alarm and misconceiving the gravity of the occasion abstained from making special enquiries, price along remained so moderate that they offered no temptaion to importers, and forced no reduction in consumption on the inhabitants, till suddenly the province was found to be almost bare of food. It was only in May 1866 that it was discovered that the markets were so empty that the jail-prisoners and the government establishments could not be supplied. But the southern mon soon had now begun and importation by sea or land became impossible. Orissa was at that time almost isolated from the rest of India, the only road leading to Calcutta across a country intersected by large rivers and liable to inundation, was unmetalled and unbridged and there was very little communication by sea, for what trade there was had hitherto been a purely export trade, carride on in the months of fine weather. No relief could be obtained from the south where lay the district of Ganjam, itself severely distressed. By great exertions and at enormous cost, the Government threw in about ten thousand tons of food-grain by the end of November, and this was given away gratuitously, or sold at low rates or distributed in wages to the starving population saving, no doubt, many thousands of lives. But meanwhile, the mortality among those whom this relief did not reach, or reached too late, had been very great and it was estimated that about a third of the population or nearly 1,000,000 persons had died. [Report of the Famine Commission of 1878 quoted in Buck lands "Bengal under the Lieutenant Governors"—P. 329. ]

## ୧୪

## ଠାକୁରମା'ଙ୍କ ପରଲୋକ ଯାତ୍ରା

ଠାକୁରମାଙ୍କ ପରଲୋକ ଯାତ୍ରା ମୋ ଜୀବନରେ ଗୋଟିଏ ବିଶେଷ ଘଟନାର ଦିବସ । ସନ ୧୮୬୭ ମସିହା ଜ୍ୟେଷ୍ଠମାସ । ଦିନେ ଅପରାହ୍ଣ ପାଞ୍ଚଘଣ୍ଟା ସମୟରେ ମୋହର ଜୀବନଦାୟିନୀ ପ୍ରତିପାଳକା ଠାକୁରମା କୋଶଳା ଦେହ ପରଲୋକ ଯାତ୍ରା କଲେ । ମୃତ୍ୟୁ ସମୟରେ ତାଙ୍କର ପ୍ରାୟ ଚଉସ୍ତରି ବର୍ଷ ବୟସ ହୋଇଥିଲା । ମୋହର ଜୀବନରକ୍ଷା ନିମନ୍ତେ ଯେମନ୍ତ ପରମେଶ୍ୱର ଆଜି ପର୍ଯ୍ୟନ୍ତ ତାଙ୍କୁ ପୃଥିବୀରେ ରଖିଥିଲେ । ମୁଁ ବର୍ତ୍ତମାନ ଆତ୍ମରକ୍ଷା କରିବାକୁ ସମର୍ଥ, ସୁତରାଂ ଜଞ୍ଜାଳମୟ ପୃଥିବୀରେ ତାଙ୍କର ଆଉ ଅଧିକ କାଳ ରହିବା ଆବଶ୍ୟକ ହେଲା ନାହିଁ ।

ମୋହର ଜୀବନରକ୍ଷା ଏବଂ ପୃଥିବୀର ଜ୍ୱାଳା ଯନ୍ତ୍ରଣା ବହନ ଯେମନ୍ତ ତାଙ୍କ ଜୀବନର ଉଦ୍ଦେଶ୍ୟ ଥିଲା । ଠାକୁର ବାବା କୃଷ୍ଣ ସେନାପତି ମୁର୍ଶିଦାବାଦ ନବାବ ସରକାରରେ ଦରୁଆନ କି ଜମାଦାର ଏହିପରି ଗୋଟାଏ କିଛି ସାମାନ୍ୟ କର୍ମରେ ନିଯୁକ୍ତ ଥିଲେ,ସେହି ବିଦେଶ ଭୂମିରେ ତାଙ୍କର ମୃତ୍ୟୁ ଘଟିଲା । ସେ ସମୟରେ ଠାକୁରମା ଅସହାୟା—ଦୁଇଗୋଟି ଅପ୍ରାପ୍ତ ବୟସ୍କ ପୁତ୍ରସନ୍ତାନ ବର୍ତ୍ତମାନ ଥିଲେ ।

ଠାକୁରମା ମଧ୍ୟମାକୃତି, ଗୌରବର୍ଣ୍ଣା, ସୁଗଠିତା, ନିରାମୟ-କର୍ମଠ ଶରୀର ଥିଲେ । ଚଉସ୍ତରି ବର୍ଷ ବୟସ ପର୍ଯ୍ୟନ୍ତ ତାଙ୍କର ଦନ୍ତପାତ ହୋଇ ନ ଥିଲା, ମସ୍ତକରେ ପ୍ରାୟ ଅର୍ଦ୍ଧେକ କେଶ କୃଷ୍ଣବର୍ଣ୍ଣ ଥିଲା । ସେ ଧୀର ପ୍ରକୃତି ଓ ସରଳସ୍ୱଭାବା ଥିଲେ । ସ୍ୱଭାବ ସମାନ, କଥାଭାଷା ମଧ୍ୟ କୋମଳ ଏବଂ ଧୀର ଥିଲା । ଚିତ୍କାର କରି କଥା କହିବାର କେବେ ଦେଖାଯାଏ ନାହିଁ । ସେ ସମୟରେ ଗ୍ରାମରେ କେତେଗୁଡ଼ିଏ କଳହପ୍ରିୟା ବିଧବା ଥିଲେ; ସେମାନଙ୍କ ମଧ୍ୟରେ କଳହ ଆରମ୍ଭ ହେଲେ ଠାକୁରମା ଆପଣା ଘରର କବାଟ କିଳି ଦିଅନ୍ତି । ମୋହର ବଡ଼ମା ଅର୍ଥାତ୍ ତାଙ୍କର ବଡ଼ ପୁତ୍ରବଧୂ କିଞ୍ଚିତ୍ ଗର୍ବିତା ଓ କର୍କଶଭାଷିଣୀ ଥିଲେ । କୌଣସି କାରଣରୁ ତର୍ଜନ ଗର୍ଜନ କରି ଗାଳିଦେଲେ ଠାକୁର ମା ସେ ସ୍ଥାନରୁ ପଳାଇ ଯାନ୍ତି, ଅଧିକ କଷ୍ଟବୋଧ ହେଲେ ଘର ମଧ୍ୟରେ ଅନ୍ଧାର କୋଣରେ ଲୁଚିବସି କାନ୍ଦନ୍ତି । ତାଙ୍କର ଉଚ୍ଚହାସ୍ୟ କେବେ ଦେଖି ନାହିଁ । ସର୍ବଦା ଯେମନ୍ତ ଗୋଟାଏ ଘୋର ବିଷାଦ-କାଳିମାର ଛାୟା ତାଙ୍କ ମୁଖକୁ ଆଚ୍ଛନ୍ନ କରି ରଖିଥାଏ । ସେ ବଡ଼ ନିଷ୍ଠାବତୀ ଏବଂ ଧର୍ମ ପରାୟଣା ଥିଲେ, ସମସ୍ତ ପ୍ରକାର ବାରବ୍ରତ ତାଙ୍କର ଅନୁଷ୍ଠେୟ ଥିଲା—ବର୍ଷର ଅଧିକାଂଶ ମାସ ଉପବାସ ଏବଂ ହବିଷ୍ୟାନ୍ନରେ ଅତିବାହିତ ହେଉଥାଏ । ଗୋରୁମାତା ଜାଣିରେ ଅର୍ଥାତ୍ ଗୋରୁ-ଗାଡ଼ିରେ ଚଢ଼ିବା ପାପ, ସେଥିପାଇଁ ଚାଲି ଚାଲି ଅନେକ ତୀର୍ଥସ୍ଥାନ ଭ୍ରମଣ କରିଥିଲେ । ତିନି ଚାରିମାସ ଅନ୍ତର ଥରେ ଥରେ ବାତଜ୍ୱର ଭିନ୍ନ ଅନ୍ୟ କୌଣସି ପ୍ରକାର ପୀଡ଼ାରେ ଶଯ୍ୟାଗତ ଥିବାର ମୁଁ ତାଙ୍କୁ କେବେ ଦେଖିନାହିଁ ।

ବ୍ରାହ୍ମ ମୁହୂର୍ତ୍ତ ପୂର୍ବରୁ ଶଯ୍ୟା ତ୍ୟାଗ କରି ଅର୍ଦ୍ଧରାତ୍ରି ପର୍ଯ୍ୟନ୍ତ ମୁଣ୍ଡ ନୁଆଇଁ କର୍ମରେ ଲାଗିଥାନ୍ତି; ପ୍ରୟୋଜନ ବ୍ୟତୀତ କାହାରିକୁ ଅନାଇ କଥା କହନ୍ତି ନାହିଁ । ମଧ୍ୟାହ୍ନ ସମୟରେ ସ୍ନାନାନ୍ତେ ପୂଜାସେବା, ସନ୍ଧ୍ୟା ସମୟରେ ମାଳା ଭଜନ ଏବଂ ପୁରାଣ ଶ୍ରବଣ ଭିନ୍ନ ଅନ୍ୟ ସମୟରେ ଗୃହକାର୍ଯ୍ୟରେ ଲାଗିଥାନ୍ତି । ଅର୍ଦ୍ଧରାତ୍ରି ସମୟରେ ପରିବାରଙ୍କ ଆହାର ଓ ଶୟନ ଉତ୍ତାରେ ଭୋଜନ କରି ଶୟନ କରନ୍ତି । ତାଙ୍କର ନିଦ୍ରା ସମୟ ତିନି ଚାରି ଘଣ୍ଟା ମାତ୍ର ଥିଲା; ତାହା

ମଧ୍ୟ ଏତେ ଲଘୁ ଯେ, ଘର ମଧ୍ୟରେ କିଛି ଶବ୍ଦ ହେଲେ କିମ୍ବା କେହି ଥରେ ଡାକଦେଲେ ଉଠି ବସନ୍ତି ।

ତାଙ୍କର ସମ୍ପତ୍ତି ମଧ୍ୟରେ ତିନିଗୋଟି ବାଡ଼ିଶ ପେଡ଼ି ଥିଲା । ଗୋଟିଏ କ୍ଷୁଦ୍ର ପେଡ଼ି ନାନାପ୍ରକାର ମୂଳମୂଳିକା ଓ ନାନା ପ୍ରକାର ଔଷଧରେ ପୂର୍ଣ୍ଣ । ଦ୍ୱିତୀୟଟି ବଗିଚାର ନାନାପ୍ରକାର ସାମୟିକ ଫସଲ ମଞ୍ଜି । ତୃତୀୟଟି ଅତି ବୃହତ୍—ଘରର ଯାହା କିଛି ଭଙ୍ଗାଭଙ୍ଗି ଜିନିଷ ସେଥିରେ ପଡ଼େ, କୌଣସି ଦ୍ରବ୍ୟ ଫୋପାଡ଼ି ଦିଆଯାଏ ନାହିଁ । ଘରେ କିମ୍ବା ଗ୍ରାମ ମଧ୍ୟରେ କୌଣସି ପିଲା ପୀଡ଼ିତ ହେଲେ ଆପେ ଚିକିତ୍ସା କରିବାକୁ ବସିଯାନ୍ତି— ତାଙ୍କ କଥା ପିଲାଙ୍କ ବେମାର କଥା କିଏ ବା ଚିଜେ ବୁଝିବେ କିଏ ? ସେ ସମୟରେ ଡାକ୍ତର ନାମ ଗ୍ରାମବାସୀ ଶୁଣି ନ ଥିଲେ । ଘରର ପଶ୍ଚାଦ୍‌ଭାଗରେ ଗୋଟିଏ କ୍ଷୁଦ୍ର ତୋଟା । ଗୃହକର୍ମରୁ ଅବକାଶ ପାଇଲେ ଗୋଟିଏ ମାଳିକୁ ଧରି କାର୍ଯ୍ୟରେ ଲାଗିଯାନ୍ତି । ସାମୟିକ ଫଳମୂଳରେ ବଗିଚା ସର୍ବଦା ପୂର୍ଣ୍ଣ ଥାଏ, ବଜାରରୁ କୌଣସି ପ୍ରକାର ପନି ପରିବା କିଣିବାର ଦରକାର ହୁଏ ନାହିଁ । ଠାକୁରମା ଚାଲି ଯାଇ ଅଛନ୍ତି, ବଗିଚାରେ ତାଙ୍କ ହସ୍ତରୋପିତ ଆମ୍ରକାନନ ବିଦ୍ୟମାନ ।

ଘରେ ସମସ୍ତଙ୍କ ସେବା ଏବଂ ନାନାପ୍ରକାର କଷ୍ଟ ଭୋଗ କରିବା ଯେମନ୍ତ ତାଙ୍କ ଜୀବନର ଉଦ୍ଦେଶ୍ୟ ଥିଲା । ତାଙ୍କର କଷ୍ଟର ବିଶେଷ କାରଣ ଥିଲା, ମୋ ପିତାଙ୍କ ମୃତ୍ୟୁ । ମୋ ଜୀବନରକ୍ଷାପାଇଁ ସେ ଯେଉଁ କଷ୍ଟଭୋଗ କରି ଯାଇଅଛନ୍ତି, ତାହା ବର୍ତ୍ତମାନ ସ୍ମରଣ କଲେ ପ୍ରାଣରେ ଦାରୁଣ ଯନ୍ତ୍ରଣା ଜାତ ହୁଏ । ମୋ ପୀଡ଼ା ସମୟରେ ଦିନ ଉତ୍ତାରେ ଦିନ, ମାସ ଉତ୍ତାରେ ମାସ କେତେ ରାତି କେତେଦିନ ଅନାହାର ଅନିଦ୍ରାରେ ତାଙ୍କର ସମସ୍ତ ଅତିବାହିତ ହୋଇଅଛି ! ଗାଈ ଚଡ଼ିଆରେ ଚରୁଥିବା ସମୟରେ ଆପଣା ବାଛୁରି ପ୍ରତି ଯେମନ୍ତ ଦୃଷ୍ଟି ରଖିଥାଏ, ସେହିପରି ଠାକୁର ମା ଯେ କୌଣସି କାର୍ଯ୍ୟରେ ନିଯୁକ୍ତ ଥାଆନ୍ତୁ ପଛକେ ମୋ ପ୍ରତି ତାଙ୍କର ଦୃଷ୍ଟି ରହିଥାଏ । ପ୍ରଥମ କଲିକତା ଯାତ୍ରା ସମୟରେ ମୋହର ବୟସ କୋଡ଼ିଏ ବାଇଶ ମଧ୍ୟରେ । କଲିକତାରୁ ବାହୁଡ଼ି ଘରେ ପହଞ୍ଚିବାର ସମୟ ସନ୍ଧ୍ୟା । ଠାକୁରମା ମୋତେ ଅନାଇଦେଇ ପାଗଳିନୀ ପ୍ରାୟ ଘରେ—ପିଣ୍ଡାରେ—ଅଗଣାରେ କାନ୍ଦି କାନ୍ଦି ଅର୍ଦ୍ଧଘଣ୍ଟା ପର୍ଯ୍ୟନ୍ତ ଅଜ୍ଞାନ ଭାବରେ—ଧାଇଁ ବୁଲିଲେ । ହା ଦୟାମୟ ପରମେଶ୍ୱର ! ଅସହାୟ ଶିଶୁସନ୍ତାନଙ୍କ ଜୀବନରକ୍ଷା ସକାଶେ କୋମଳ ସ୍ୱଭାବା ନାରୀ ହୃଦୟରେ କି ମାୟା—ମମତା—ସ୍ନେହର ବୀଜ ବପନ କରି ଦେଇଅଛ । ଫଳତଃ ମୋହର ଅସହାୟ ଜୀବନରକ୍ଷାର କାରଣ ଠାକୁରମାଙ୍କ ନିଃସ୍ୱାର୍ଥ ଆତ୍ମବଳିଦାନ, ଆଜି ମୋହର ଯାହା କିଛି ଉନ୍ନତି ଠାକୁର ମାଙ୍କ ପୁଣ୍ୟ ପ୍ରବାହର ପ୍ରତିଫଳ ବୋଲି ଜ୍ଞାନ କରେଁ ।

(ଉ: ସା: ୨ ଶ ଭାଗ ୨ୟ ସଂଖ୍ୟା)

---

## ୧୪

## ବାଲେଶ୍ୱରରେ ପ୍ରେସ କୋମ୍ପାନି ସ୍ଥାପନ (୧)

ପ୍ରକୃତରେ କହିବାକୁ ଗଲେ ସନ ୧୮୫୭ ସାଲ ସିପାହୀ ବିଦ୍ରୋହ ଉତ୍ତାରୁ ବଙ୍ଗଭାଷାର ଉନ୍ନତି ଓ ବିସ୍ତୃତି ଆରମ୍ଭ । ମହାତ୍ମା ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ପୂଜ୍ୟପାଦ ଭୂଦେବ ମୁଖୋପାଧ୍ୟାୟ, ବଙ୍କିମବର ଅକ୍ଷୟକୁମାର ଦତ୍ତ ମହୋଦୟ ମାନଙ୍କ ରଚିତ ବିବିଧ ପ୍ରକାର ପୁସ୍ତକ

ଯୋଗେ ବଙ୍ଗ ଏବଂ ଓଡ଼ିଶା ପ୍ରଦେଶସ୍ଥ ସ୍କୁଲ ସମୂହର ପାଠ୍ୟପୁସ୍ତକ ଅଭାବ ଦୂର ହୋଇଥିଲା । ବିଖ୍ୟାତନାମା ପ୍ରସନ୍ନ କୁମାର ସର୍ବାଧିକାରୀ, ବାବୁ ତାରିଣୀ ଚରଣ ଚଟ୍ଟୋପାଧ୍ୟାୟ ଏବଂ ପଣ୍ଡିତ ଲୋହାରାମ ପ୍ରଭୃତି ମହାତ୍ମାମାନେ ପାଟୀଗଣିତ, ବୀଜଗଣିତ, ଭୂଗୋଳ, ବ୍ୟାକରଣ ପ୍ରଭୃତି ଅନେକ ଗୁଡ଼ିଏ ପୁସ୍ତକ ରଚନା କରିଥିଲେ । ସେ ସମସ୍ତ ପୁସ୍ତକ ମଧ୍ୟ ବିଦ୍ୟାଳୟର ଛାତ୍ରମାନଙ୍କ ଉନ୍ନତି ପକ୍ଷରେ ବିଶେଷ ସହାୟତା କରିଥିଲା । ତତ୍ପୂର୍ବେ ସ୍କୁଲ ସମୂହରେ ଯେଉଁସବୁ ପାଠ୍ୟପୁସ୍ତକ ନିରୂପିତ ଥିଲା, ସେ ସବୁର ଭାଷା ଯେପରି କଦର୍ଯ୍ୟ, ବିଷୟ ମଧ୍ୟ ସେହିପରି ଅନୁପଯୁକ୍ତ ଥିଲା; ମାତ୍ର ଉତ୍କଳ ଭାଷାରେ ଯେଉଁ ତିନିଭାଗ ନୀତିକଥା ଓ ହିତୋପଦେଶ ସ୍କୁଲ ଆରମ୍ଭରୁ ପାଠ୍ୟପୁସ୍ତକ ରୂପେ ନିରୂପିତ ଥିଲା, ତାହା ଅଦ୍ୟାବଧି ସେହିପରି ରହିଅଛି । ନୂତନ ପୁସ୍ତକ ବାହାରିବାକୁ ନାହିଁ । ଉତ୍କଳ ଭାଷା ବିଷୟ ଉଲ୍ଲେଖ ସମୟରେ ବଙ୍ଗାଳି ଶିକ୍ଷକ ଓ ଅନ୍ୟାନ୍ୟ ବଙ୍ଗାଳି ବାବୁମାନେ ଯେପରି ତୁଚ୍ଛ ତାଚ୍ଛଲ୍ୟ ଭାବରେ ମନ୍ତବ୍ୟ ପ୍ରକାଶ କରିଥାନ୍ତି, ପ୍ରକୃତରେ ଆପଣାର ମାତାକୁ ଅପମାନ କଲାପରି ନିନ୍ଦାକାରିମାନଙ୍କ ପ୍ରତି ବିଷମ କ୍ରୋଧ ଏବଂ ପ୍ରାଣରେ ବଡ଼ ଆଘାତ ଲାଗେ । ସେ ସମୟରେ ମନ ମଧ୍ୟରେ ଏମନ୍ତ ଗୋଟାଏ ଧାରଣା ଜାତ ହୋଇଗଲା ଯେ, ପ୍ରକୃତରେ ଆମ୍ଭମାନଙ୍କର ମାତୃଭାଷାର ଉନ୍ନତି ନ ହେଲେ ଚିରକାଳ ଭିନ୍ନଦେଶୀୟ ଲୋକମାନଙ୍କଠାରେ ଅବଜ୍ଞାତ ହୋଇ ରହିଥିବୁଁ ଏବଂ ଆମ୍ଭମାନଙ୍କର ଜାତିୟ ଅବସ୍ଥା ମଧ୍ୟ ଉନ୍ନତି ଲାଭ କରିବାର ସମ୍ଭାବନା ବିରଳ ହେବ । ଭାଷା ଉନ୍ନତିର ଉପାୟ କଣ ? ବର୍ତ୍ତମାନ ହିବାନିଶି ଭାବନା ଏବଂ ଏକମାତ୍ର ଲକ୍ଷ୍ୟ, ଯେ କୌଣସି ପ୍ରକାରେ ହେଉ ମାତୃଭାଷାର ଉନ୍ନତି ସକାଶେ ପ୍ରାଣପାତ କରିବାକୁ ହେବ । ସେ ସମୟରେ ମୋର ବୟସ ୧୯।୨୦ ମଧ୍ୟରେ, ମୁଁ ବିଦ୍ୟାଶୂନ୍ୟ, ଶକ୍ତିହୀନ ଓ ଦରିଦ୍ର ।

ସେ ସମୟରେ ବଙ୍ଗଭାଷାରେ ପ୍ରତି ମାସରେ ନାନା ବିଷୟରେ କ୍ଷୁଦ୍ର ବୃହତ୍ ଅନେକ ପୁସ୍ତକ ବାହାରୁଥାଏ । ମୁଁ କେତେକ ପୁସ୍ତକ ନିଜ ବ୍ୟୟରେ କିଣି, କେତେକ ବାଲେଶ୍ୱର ସହରସ୍ଥ ସୁନହାଟ ଗ୍ରାମନିବାସୀ ବାବୁ ଦାମୋଦର ପ୍ରସାଦ ଦାସଙ୍କ ପୁସ୍ତକାଳୟରୁ ଆଣି ପଢ଼େଁ । ଦାମୋଦର ବାବୁ ନିଜେ ପଢ଼ନ୍ତୁ ବା ନ ପଢ଼ନ୍ତୁ, ଆମ୍ଭମାନଙ୍କ ଅଧ୍ୟୟନ ସକାଶେ ସମସ୍ତ ପ୍ରକାର ପୁସ୍ତକ କ୍ରୟକରି ରଖିଥିଲେ । ବର୍ତ୍ତମାନ ମନେ ପଡ଼ୁଅଛି, ସେ ସମୟରେ ପ୍ରକାଶିତ ପୁସ୍ତକମାନଙ୍କ ମଧ୍ୟରୁ ଅଧିକାଂଶର ଭାଷା କଦର୍ଯ୍ୟ ଏବଂ ବିଷୟ ନୀତିଜ୍ଞାନ ବିଶିଷ୍ଟ ଲୋକଙ୍କ ପକ୍ଷରେ ନିତାନ୍ତ ଅପାଠ୍ୟ ଥିଲା । ସୁଖର ବିଷୟ, ସେ ସମସ୍ତ ପୁସ୍ତକର ନାମ ଏକାବେଳକେ ବିଲୁପ୍ତ ହୋଇଅଛି । ଯେଉଁ ଅଳ୍ପସଂଖ୍ୟକ ଉତ୍ତମ ପୁସ୍ତକ ଥିଲା, ତାହା ଅଦ୍ୟାବଧି ରହିଅଛି ଏବଂ ବଙ୍ଗସାହିତ୍ୟ ସଂସାରରେ ରତ୍ନ ସ୍ୱରୂପ ଚିରକାଳ ବିଦ୍ୟମାନ ଥିବ ।

ଖଣ୍ଡିଏ ବଙ୍ଗଳା ନୂତନ ପୁସ୍ତକ ହସ୍ତଗତ ହେଲେ ମୁଁ ଅନେକବେଳ ପର୍ଯ୍ୟନ୍ତ ତାହା ହସ୍ତରେ ଧରି ଓଲଟ ପାଲଟ କରି ଚତୁର୍ଦ୍ଦିଗ ଦେଖେ ଏବଂ ମନରେ କରେଁ କେବେ ଉତ୍କଳ ଭାଷାରେ ଏପରି ଖଣ୍ଡିଏ ପୁସ୍ତକ ବାହାରିବ । ଅଜ୍ଞାତସାରରେ ଗୋଟିଏ ଦୀର୍ଘନିଶ୍ୱାସ ପଡ଼ିଯାଏ । ସେ ସମୟରେ ବଙ୍ଗଭାଷାରେ ଖଣ୍ଡିଏ ମାତ୍ର ମାସିକ ପତ୍ରିକା ପ୍ରକାଶିତ ହେଉଥିଲା । ନାମ ବିବିଧାର୍ଥ ସଂଗ୍ରହ । ମୋ ଭାଇ ନିତ୍ୟାନନ୍ଦ ତାହାର ଗ୍ରାହକ ଥିଲେ । ମୁଁ ତାଙ୍କଠାରୁ ପତ୍ରିକା ପଢ଼ିବାକୁ ପାଏଁ ଏବଂ ୩।୪ ଥର କରି ପଢ଼େଁ । ସେତେବେଳେ ବଙ୍ଗଭାଷାରେ ଦୁଇଖଣ୍ଡ ମାତ୍ର ସାପ୍ତାହିକ ପତ୍ରିକା ବାହାରୁଥିଲା; ନାମ 'ସୋମପ୍ରକାଶ' ଏବଂ 'ଏଡୁକେଶନ ଗେଜେଟ' । ବାଲେଶ୍ୱର ନିବାସୀ ଜଣେ ପ୍ରସିଦ୍ଧ ଜମିଦାର ସୋମ ପ୍ରକାଶର ଗ୍ରାହକ ଥିଲେ । ଏଡୁକେଶନ ଗେଜେଟ ଜିଲ୍ଲାସ୍କୁଲକୁ ଆସେ । ବହୁକଷ୍ଟରେ ବନ୍ଧୁ ପତ୍ର

ଓ ଅନୁସରଣରେ କଦାଚିତ୍ ବେଳେବେଳେ ଖଣ୍ଡେ ପଢ଼ିବାକୁ ମିଳୁଥିଲା । ବିଶେଷ ବ୍ୟାକୁଳତା ସହିତ ମନରେ ସମୟ ସମୟରେ ଏହି ଭାବର ଉଦୟ ହୁଏ ଯେ, ଓଡ଼ିଆରେ କଣ ଏପରି ସାପ୍ତାହିକ ସମ୍ବାଦପତ୍ର ବାହାରିବ ନାହିଁ ? ସଙ୍ଗେ ସଙ୍ଗେ ନୈରାଶ୍ୟ ଜଡ଼ିତ ଉତ୍ତର ମନମଧ୍ୟରୁ ମିଳେ—ଅସମ୍ଭବ, ଅସମ୍ଭବ ! ସେହି ସମୟରେ କଲିକତାରେ ସରକାର ବାହାଦୁରଙ୍କ ଅର୍ଥ ସାହାଯ୍ୟରେ ଗୋଟିଏ ଅନୁବାଦକ ସମିତି ଗଠିତ ହୋଇଥିଲା । ସମୟ ସମୟରେ କୌଣସି କୌଣସି ବିଦ୍ୱାନ୍ ଲୋକ ଇଂରାଜିରୁ ଖଣ୍ଡିଏ ଖଣ୍ଡିଏ ପୁସ୍ତକ ବଙ୍ଗଳାରେ ଅନୁବାଦ କରି ସହସ୍ର ସହସ୍ର ଟଙ୍କା ପୁରସ୍କାର ପାଉଥିବାର ଶୁଣୁଥାଏଁ । ଅନୁବାଦ ପୁସ୍ତକ ଗୁଡ଼ିକ ଆଣାଇ ପଢ଼େଁ, ଈର୍ଷାନଳରେ ପ୍ରାଣ ଯେପରି ଦଗ୍ଧ ହୋଇଯାଏ । ମନରେ କରେଁ, ସରକାର କି ସକାଶେ ଉତ୍କଳରେ ଅନୁବାଦ ସମିତି ପ୍ରତିଷ୍ଠା କରୁ ନାହାନ୍ତି ?

ଦିବାନିଶି ମନ ମଧ୍ୟରେ ଭାବନା—ଦେଶସ୍ଥ ଶିକ୍ଷିତ ବଡ଼ ଲୋକମାନଙ୍କର ମାତୃଭାଷା ପ୍ରତି କେବେ ଅନୁରାଗ ଜାତ ହେବ ? ସେ ସମୟରେ ଦେଶସ୍ଥ ଇଂରାଜୀ ଏବଂ ପାର୍ସି ପଢ଼ୁଆ ବାବୁମାନେ ଓଡ଼ିଆ ପୁସ୍ତକ ସ୍ପର୍ଶ କରିବା କିମ୍ବା ବିଶୁଦ୍ଧ ରୂପେ ଓଡ଼ିଆ କଥା କହିବା ଅପମାନ ବା କଥଞ୍ଚିତ ପ୍ରତ୍ୟବାୟର ବିଷୟ ବୋଲି ଜ୍ଞାନ କରୁଥିଲେ । ଅମଲମାନଙ୍କ କଥା ଅଧା ପାର୍ସି ଅଧା ଓଡ଼ିଆ, ଲେଖା ମଧ୍ୟ ବିଚିତ୍ର କଥୋପକଥନ ଚଳୁଥିଲା । ଆପଣା ଆପଣା ଘରର ଖର୍ଚ୍ଚ ଲେଖା ପର୍ଯ୍ୟନ୍ତ ପାର୍ସି । ପୂର୍ବେ କଚେରିର ଭାଷା ସମ୍ପୂର୍ଣ୍ଣ ପାର୍ସିଥିଲା । ସନ ୧୮୩୭ ସାଲରେ ସରକାର ବାହାଦୁର ତାହା ରହିତ କରି ଦେଶୀୟ ଭାଷା ପ୍ରଚଳନର ଆଦେଶ ପ୍ରଦାନ କଲେ । ହେଲେ କଣ ହେଲା, ଅମଲା ବାବୁମାନେ ବହୁ ଯତ୍ନ ଓ ପରିଶ୍ରମରେ ପାର୍ସି ଶିଖିଥିବା, ସେହି ଭାଷା ଲେଖା ଓ କଥାରେ ବ୍ୟବହାର କରିବା ସମାଜରେ ଗୌରବ ବିଷୟଥିବା ଏବଂ ଓଡ଼ିଆ ଲେଖିବାରେ ଅନଭ୍ୟସ୍ତ ଥିବା ଯୋଗୁ ବାହାରର ଦରଖାସ୍ତ ପ୍ରଭୃତି ଓଡ଼ିଆ ଭାଷାରେ ଲିଖିତ ହେଉଥିଲେ ମଧ୍ୟ ବହୁବର୍ଷ ପର୍ଯ୍ୟନ୍ତ କଚେରି ଭିତର ରେଜେଷ୍ଟରି ବହି ପ୍ରଭୃତି ପାର୍ସିରେ ଲିଖିତ ହେଉଥିଲା ।

ବାଲେଶ୍ୱର ବାରବାଟୀ ସ୍କୁଲ ଏବଂ ମିସନ ସ୍କୁଲରେ ଓଡ଼ିଆ ପଢ଼ା ହେଉଥିଲା । ଜିଲ୍ଲା ସ୍କୁଲର ପିଲାମାନେ ଓଡ଼ିଆ ପଢ଼ିବା ପାଇଁ ସରକାରରୁ ହୁକୁମ ଆସିଥିଲା ସତ୍ୟ; କିନ୍ତୁ ଛାତ୍ରମାନଙ୍କ ହାତରେ କେବେ ସୁଦ୍ଧା ଓଡ଼ିଆ ପୁସ୍ତକ ଦେଖାଯାଏ ନାହିଁ । ଛାତ୍ରମାନେ ଓଡ଼ିଆ ପୁସ୍ତକ କିଣିବା ସକାଶେ ଅଭିଭାବକ ମାନଙ୍କୁ ପଇସା ମାଗିଲେ ଉତ୍ତର ପାଆନ୍ତି ଯେ, 'ତୁ ତ ଅବଧାନ ପାଖରେ ଓଡ଼ିଆ ପଢ଼ି ସାରିଛୁ, ଆଉ ଓଡ଼ିଆ ବହି କଣ ହେବ ରେ ? ଯା ଇଂରାଜୀ ପଢ଼ୁଯା ।' ଜିଲ୍ଲାସ୍କୁଲରେ ସଂସ୍କୃତ ଓ ଓଡ଼ିଆ ପଢ଼ାଇବା ସକାଶେ ସୋରୋନିବାସୀ ଆର୍ତ୍ତତ୍ରାଣ ନନ୍ଦ ପଣ୍ଡିତ ନିଯୁକ୍ତ ଥିଲେ । ପୂର୍ବେ ସଂସ୍କୃତ ପଢ଼ୁଆ ପଣ୍ଡିତମାନେ ମଧ୍ୟ ଓଡ଼ିଆ ପଢ଼ିବାକୁ ଓ ପଢ଼ାଇବାକୁ ଘୃଣା କରୁଥିଲେ । ଆପେ ଓଡ଼ିଆ ହାତଲେଖା ପଢ଼ି ପାରନ୍ତି ନାହିଁ କିମ୍ବା ଲେଖି ଜାଣନ୍ତି ନାହିଁ । ବିଦେଶରେ ଥିବା ପଣ୍ଡିତମାନେ ଘରକୁ ଚିଠି ଲେଖିଲେ ଅନ୍ୟ ହାତରେ ଲେଖାଇ ନିଅନ୍ତି । ଛାତ୍ରମାନେ ଯଦି ଓଡ଼ିଆ ପୁସ୍ତକ କିଣି ନ ଆଣିଲେ ତେବେ ଭଲ କଥା । ପଣ୍ଡିତେ ଛାତ୍ରମାନଙ୍କୁ କେବଳ ବିଦ୍ୟାସାଗରକୃତ ଉପକ୍ରମଣିକା ଖଣ୍ଡିକ ପଢ଼ାଇ ଦେଇ ନିଶ୍ଚିନ୍ତ ଥାନ୍ତି । ଏଣେ ପୁଣି ସ୍କୁଲର ସବୁ ମାଷ୍ଟର ଗୁଡ଼ିକ ବଙ୍ଗାଳୀ । ଛାତ୍ରମାନେ ଓଡ଼ିଆ ପଢ଼ିଲେ କି ନାହିଁ, ଏହା ତଦନ୍ତ କରିବାର ସେମାନଙ୍କର ପ୍ରୟୋଜନ କ'ଣ ? ବରଞ୍ଚ ଓଡ଼ିଆଟା ଯଦି ସ୍କୁଲରୁ ଉଠିଯାଏ, ସେଇଟା ତ ଉତ୍ତମ କଥା । ଇଂରାଜୀ ସ୍କୁଲର ଛାତ୍ରମାନେ ଇଂରାଜୀ ମିଶା ବଙ୍ଗଳା କଥା ଭିନ୍ନ ଓଡ଼ିଆ କଥା କହିବା ଅପମାନର ବିଷୟ ବୋଲି

ଜ୍ଞାନ କରୁଥିଲେ । ଏହିପରି ବ୍ୟବହାର ଯୋଗରେ ପଡ଼ି ଓଡ଼ିଆ ଭାଷାଟି ଇଂରାଜୀ ସ୍କୁଲ ମାନଙ୍କରୁ ଏକାବେଳକେ ବିତାଡ଼ିତ ହୋଇଥିଲା ।

ପୂଜ୍ୟପାଦ ଜଗନ୍ନାଥ ଦାସ, ମହାକବି ଉପେନ୍ଦ୍ର-ଭଞ୍ଜ, କବିବର ଅଭିମନ୍ୟୁ ଓ ଦୀନକୃଷ୍ଣ ଦାସଙ୍କ ସ୍ୱର୍ଗଗତ ପବିତ୍ରାତ୍ମାମାନଙ୍କ ଉଦ୍ଦେଶ୍ୟରେ ଭକ୍ତିପୂର୍ବକ ବାରମ୍ବାର ନମସ୍କାର କରୁଅଛି । ପ୍ରକୃତରେ ଏହି ମହାତ୍ମାଗଣ ଉତ୍କଳ ସାହିତ୍ୟର ରକ୍ଷାକାରୀ ଅଟନ୍ତି । ଏମାନଙ୍କ ରଚିତ ପୁସ୍ତକାବଳୀ ଉତ୍କଳ ଭାଷାର ମୂଳ-ଦୁଆ ଅଟେ । ଯାବତ୍ ଉତ୍କଳ ଭାଷା ଥିବ, ତାବତ୍ ଏହି ମହାତ୍ମାମାନଙ୍କ ମହିମାନ୍ୱିତ ନାମ ଉତ୍କଳରେ ବିରାଜିତ ରହିଥିବ ।

ଉତ୍କଳର ପ୍ରତ୍ୟେକ ଗ୍ରାମରେ ଜଗନ୍ନାଥ ଦାସଙ୍କ ଭାଗବତ ପଠିତ ହୁଏ । ବଡ଼ ବଡ଼ ଗ୍ରାମମାନଙ୍କରେ ସ୍ଥାୟୀ ଭାଗବତ ଗାଦି ବିରାଜିତ ଓ ପୂଜିତ ହେଉଅଛି । ପୂର୍ବେ ଚଟଶାଳୀମାନଙ୍କରେ ଉକ୍ତ ଭାଗବତ ଓ ଅନ୍ୟାନ୍ୟ କବିମାନଙ୍କ ଗ୍ରନ୍ଥମାନ ପାଠ୍ୟପୁସ୍ତକ ରୂପେ ନିରୂପିତ ଥିଲା । ମଫସଲବାସୀ ଜମିଦାରମାନଙ୍କ ସଭା ଏବଂ ଖଣ୍ଡାଏତମାନଙ୍କ ଚୌପାଢ଼ୀରେ ଗ୍ରନ୍ଥପୁସ୍ତକ ମାନଙ୍କର ଆଲୋଚନା ଚିତ୍ତ ବିନୋଦନର ଗୋଟିଏ ପ୍ରଧାନ ଉପାୟ ଥିଲା । ଉତ୍କଳର ଗୋଟିଏ ଚଳିତ ଗୀତାର୍ଥୀ ଦଳ ଥିଲେ । ଗଡ଼ଜାତ ମାନଙ୍କରେ ଭ୍ରମଣ କରି ରାଜାମାନଙ୍କୁ ଗୀତାର୍ଥ ଶୁଣାଇବା ସେମାନଙ୍କର ବ୍ୟବସାୟ ଥିଲା । ଅରାଜକତା ତଥା ରାଷ୍ଟ୍ରବିପ୍ଳବ ସମୟରେ ଉତ୍କଳ ସାହିତ୍ୟଭଣ୍ଡାରରୁ ବହୁବିଧ ପୁସ୍ତକ ନଷ୍ଟହୋଇ ଯାଇଅଛି । ଲୋକେ ଅରଣ୍ୟାନୀ ଓ ପର୍ବତ-ମାଳା ମଧ୍ୟରେ ଆତ୍ମଗୋପନ କରି ପ୍ରାଣରକ୍ଷା କରୁଥିଲେ । ସାହିତ୍ୟଗ୍ରନ୍ଥ ସମ୍ଭାଳିବାକୁ ଅବକାଶ କାହିଁ ? ତଥାପି ଅନେକ ଗୁଡ଼ାଏ ଗ୍ରନ୍ଥ ହୃଦୟର ନିଭୃତ ସ୍ଥଳରେ ପ୍ରଚ୍ଛନ୍ନ ଭାବରେ ଲୁଚାଇ ରଖିଥିଲେ । ସେ ସବୁ ଅଦ୍ୟାବଧି ବିରାଜିତ ଅଛି ଏବଂ ଚିରକାଳ ରହିଥିବ ।

ସେ ସମୟରେ ଉତ୍କଳ ଭାଷାର ଉନ୍ନତି ସାଧନ ମୋର ଏକମାତ୍ର ଲକ୍ଷ୍ୟ ଥିଲା । ଅନ୍ୟାନ୍ୟ କାର୍ଯ୍ୟରେ ନିଯୁକ୍ତ ଥାଇ ମଧ୍ୟ କେବଳ ସେହି ବିଷୟ ମନ ମଧ୍ୟରେ ଚିନ୍ତା କରୁଥାଏଁ । ବଙ୍ଗ ଭାଷାରେ ଦିନକୁ ଦିନ ଯେପରି ନୂତନ ନୂତନ ପୁସ୍ତକମାନ ପ୍ରକାଶିତ ହେଉଅଛି, କି ଉପାୟରେ ଉତ୍କଳ ଭାଷାରେ ସେହିପରି ପୁସ୍ତକ ବାହାରିବ, ଏହାହିଁ ଉଦ୍ଦେଶ୍ୟ । ମାତ୍ର ଲେଖକ କାହାନ୍ତି ? ମୁଁ କଣ ଲେଖିପାରିବି ନାହିଁ ? ସମୟ ସମୟରେ ବଙ୍ଗଳା ସୋମ ପ୍ରକାଶରେ କିଛି କିଛି ଲେଖୁଥିଲି । ମୋ ପ୍ରେରିତ ପତ୍ରଗୁଡ଼ିକ ସମ୍ପାଦକ ଛପାଇ ଦେବାକୁ ଲେଖିବାରୁ ସାହସ ଏବଂ ଉତ୍ସାହ ଜାତ ହେଲା । ଆମ୍ଭମାନଙ୍କ ଗ୍ରାମରେ ଗୋଟିଏ କୃଷ୍ଣଲୀଳା ଯାତ୍ରାଦଳ ଥିଲା । ଗୁଡ଼ାଏ ଚୌପଦୀ ରଚନା କରି ସେମାନଙ୍କୁ ଗାଇବାକୁ ଦେଲି । ପିଲାମାନେ ଯାତ୍ରାରେ ଗାଇବାରୁ ମନ ମଧ୍ୟରେ ଆନନ୍ଦ ଜାତ ହେଲା । ସମୟ ପାଇଲେ କିଛିହେଲେ ଗୋଟିଏ ରଚନା କରି ପକାଏଁ । ସେଗୁଡ଼ାକ ଭୂତ କି ପ୍ରେତ କଣ ହେଉଥାଏ ମନରେ ନାହିଁ । ଏହିପରି ଲେଖୁଁ ଲେଖୁଁ ଗଦ୍ୟରେ ଖଣ୍ଡିଏ ପୁସ୍ତକ ଲେଖିପକାଇଲି—ତାହାର ନାମ ଦେଲି 'ରାଜପୁତ୍ର ଇତିହାସ' । ବନ୍ଧୁମାନଙ୍କୁ ଦେଖାଇଲି । ସେମାନେ ପଢ଼ି ଆନନ୍ଦିତ ହେଲେ । ସବୁ ତ ହେଲା, ଏବେ ତାହା କିପରି ଛପା ହେବ, ଏହାହିଁ ଭାବନା । ଉତ୍କଳରେ ଏକମାତ୍ର ପତିତପାବନ କଟକ ମିସନ ପ୍ରେସ । ପୁସ୍ତକ ଛପାର ଖର୍ଚ୍ଚ ବିଷୟ ପଚାରି ଉତ୍ତର ପାଇଲି, ଫର୍ମାକୁ ତିରିଶ ଟଙ୍କା । ହିସାବ କରି ଦେଖିଲି, ମୋ ପୁସ୍ତକ ଖଣ୍ଡିକ ଛପାଇବାକୁ ତିନିଶତ ଟଙ୍କା ଲୋଡ଼ା । ହରିବୋଲ ହରି ! ଟଙ୍କା କାହିଁ, ମୁଁ କାହିଁ ! ସେପର୍ଯ୍ୟନ୍ତ ଶହେଟଙ୍କା ଏକସଙ୍ଗରେ

ହାତରେ ଧରନାହିଁ । ଦରମା ମାସକୁ ଯାହା କୋଡ଼ିଏ ପଚଶ ଟଙ୍କା ପାଉଥିଲି, ସେହିଦିନ ମଧ୍ୟରେ ବଡ଼ମାଙ୍କ ଜମା କରିଦେବା ଆବଶ୍ୟକ । କିଛି ବିଳମ୍ବ ହେଲେ କୈଫିୟତ୍ ଦେବାକୁ ପଡ଼େ । ପୁସ୍ତକ ଛପା ସମ୍ବନ୍ଧରେ ଏକାବେଳକେ ନିରାଶ ହୋଇପଡ଼ିଲି । ମୋର ଉଦାସୀନତା ଓ ଅଯତ୍ନ ଦେଖି ରାଜପୁତ ଇତିହାସ ମଧ୍ୟ କାହିଁ ଉଭେଇ ଗଲା । ମାତ୍ର ଲେଖାରୁ ବିରତ ହେଲିନାହିଁ । ମୋର ଆଶାଥାଏ, ମୋର ଲେଖା ଦେଖିଲେ ଆଉ କେହି ଲେଖିବାକୁ ଏବଂ ଛପା ପୁସ୍ତକ ବାହାର କରିବାକୁ ଯତ୍ନ କରିବେ । ବଙ୍ଗାଳି ବାବୁମାନଙ୍କ ବିଦ୍ରୂପ ଏଣିକି ଅସହ୍ୟ ହୋଇ ପଡ଼ିଲାଣି, ସ୍ଥିରହୋଇ ରହିପାରୁ ନାହିଁ । ପୂଜ୍ୟପାଦ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ମହୋଦୟଙ୍କ ଆଦେଶରେ ତାହାଙ୍କ ରଚିତ ବଙ୍ଗଳା ଜୀବନଚରିତ ଖଣ୍ଡିକ ଉତ୍କଳ ଭାଷାରେ ଅନୁବାଦ କରି କଲିକତା ବାପ୍‌ଟିଷ୍ଟ ମିସନ ପ୍ରେସରୁ ଛପାଇ ଆଣିଲି । ଛାତ୍ରବୃତ୍ତି ପରୀକ୍ଷାରେ ହିତୋପଦେଶ ରହିତ ହୋଇ ଜୀବନଚରିତ ପାଠ୍ୟପୁସ୍ତକ ରୂପେ ନିରୂପିତ ହେଲା । ତହିଁ ଉତ୍ତାରେ ଖଣ୍ଡିଏ କ୍ଷୁଦ୍ର ବ୍ୟାକରଣ ଏବଂ ଖଣ୍ଡିଏ କ୍ଷୁଦ୍ର ଅଙ୍କ ପୁସ୍ତକ ଲେଖିଲି । ସେ ଦୁଇଖଣ୍ଡ ମଧ୍ୟ ସ୍କୁଲମାନଙ୍କରେ ପଢ଼ାହେବାକୁ ଲାଗିଲା । ଏହି ସମୟରେ ମୋର ସହପାଠୀ ଇକାଇଲ୍ ରଘୁନାଥପ୍ରସାଦ ଭୂୟାଁ ଶ୍ରେଣୀପାଠ ନାମକ ଖଣ୍ଡିଏ କ୍ଷୁଦ୍ର ପୁସ୍ତକ ଲେଖି ପ୍ରକାଶ କଲେ । ସେଖଣ୍ଡି ମଧ୍ୟ ଛାତ୍ରବୃତ୍ତି ପରୀକ୍ଷାର ନିମ୍ନ-ଶ୍ରେଣୀର ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇଗଲା । ମାତ୍ର ଏଥିରେ ମନ ମାନିଲା ନାହିଁ । ବିବେଚନା କଲି, କେବଳ ସ୍କୁଲର ଛାତ୍ରମାନେ ଓଡ଼ିଆ କିତାପ ପଢ଼ିଲେ କଣ ହେବ ? ବାହାରର ସର୍ବସାଧାରଣ ଲୋକେ କିତାପ ପଢ଼ିଲେ ସିନା ମାତୃଭାଷା ଉନ୍ନତି ଲାଭ କରିବ । ବିଶେଷତଃ ସେ ସମୟରେ ବାହାରର ଲୋକେ ଗଦ୍ୟ ପଢ଼ି ଜାଣୁ ନଥିଲେ । ମିତ୍ରକଥା ବା ହିତୋପଦେଶ ସେମାନଙ୍କ ହାତକୁ ଦେଲେ ସେମାନେ ଖୁବ୍ ଗୋଟାଏ ଉଚ୍ଚ ରାଗିଣୀ ଧରି ଛାନ୍ଦ ଗୀତ ପରି ପଢ଼ି ବସନ୍ତି । ମାତ୍ର ନାନାରୂପ ରାଗିଣୀରେ ବସାଇ ଯେତେରୂପେ ପଢ଼ିବାକୁ ଚେଷ୍ଟାକଲେ ମଧ୍ୟ ପଦ ମିଳେନାହିଁ । ଶେଷରେ ପୁସ୍ତକ ଖଣ୍ଡକ ଫୋପାଡ଼ ଦେଇ ଖପାଟାଏ ହୋଇଯାଇ ବୋଲନ୍ତି—ପଦ ମିଳିବାକୁ ନାହିଁ, ଏଇଟା କଣ ଛପା ବହିମ ? ଆମ୍ଭମାନଙ୍କର ଇଚ୍ଛା ଲୋକେ ଘରେଘରେ ବସି କିତାପ ପଢ଼ନ୍ତୁ । ହେଲେ—ଦେଖାଗଲାଣି, ପଦ୍ୟ ଛାନ୍ଦବନ୍ଧ ପୁସ୍ତକ ନ ହେଲେ ସେମାନେ ପଢ଼ିବେ ନାହିଁ । ସେମାନଙ୍କ ପଢ଼ିବା ଭଳି ଛାନ୍ଦବନ୍ଧ ପଦ୍ୟ ଲେଖିବାକୁ ଶକ୍ତି ବା କାହିଁ ? ବିଚାରି ବସିଲେ ବୁଦ୍ଧି ବାହାରେ—କେତେଦିନଯାଏ ଭାବୁଭାବୁ ଗୋଟାଏ ବୁଦ୍ଧି ଦିଶିଗଲା । ଯେଉଁସବୁ ପୁରୁଣା ପଦ୍ୟ କାବ୍ୟଗ୍ରନ୍ଥ ଅଛି, ତାହାକୁ ଛପା କରାଇ ଦେଲେ ତେର ପୁସ୍ତକ ବାହାରି ପଡ଼ିବ । ଲୋକେ ଆନନ୍ଦ ମନରେ କିଣି ପଢ଼ିବେ, ଏଣେ ପୁସ୍ତକ ବିକ୍ରୟରୁ ତେର ଟଙ୍କା ଲାଭ ମିଳିଯିବ । ସେହି ଟଙ୍କାରେ କ୍ରମେ କ୍ରମେ ଆଉ ତେର ପୁସ୍ତକ ଛପା ହୋଇପାରେ । ଶନ୍ତାରେ କଥାଗୁଡ଼ାକ ସୁନ୍ଦର ରଚିତ ହୋଇଗଲା ସତ୍ୟ, ମାତ୍ର ମୂଳ ପଦାର୍ଥ ଟଙ୍କା କାହିଁ ? କାହା ବଳରେ କାର୍ଯ୍ୟ ଆରମ୍ଭ କରାଯିବ ? ସେହି ସମୟରେ ଜଣାପଡ଼ିଲା, ଟଙ୍କାବଳ, ବୁଦ୍ଧିବଳ ପରି ଲୋକବଳ ମଧ୍ୟ ଆବଶ୍ୟକ । ଉପାୟ ଉଦ୍ଭାବନ ସକାଶେ ଗୋଟିଏ ସଭା ସ୍ଥାପନ କରାଗଲା । ସେଥିରେ ସଭ୍ୟ ହେଲେ—ବାବୁ ଜୟକୃଷ୍ଣ ଚୌଧୁରୀ, ବାବୁ ଭୋଳାନାଥ ସାମନ୍ତରାୟ, ବାବୁ ଦାମୋଦରପ୍ରସାଦ ଦାସ, ବାବୁ ରାଧାନାଥ ରାୟ, ଫକୀରମୋହନ ସେନାପତି । ବାବୁ ଦାମୋଦର ପ୍ରସାଦ ଦାସ ସଭାର ସମ୍ପାଦକ ଏବଂ କୋଷାଧ୍ୟକ୍ଷ ହେଲେ ।

ବାବୁ ରାଧାନାଥ ରାୟ ସଭାର ସଭ୍ୟ ଶ୍ରେଣୀ ଭୁକ୍ତ ହେଲେ ସତ୍ୟ, ମାତ୍ର ସ୍ଥିର ହେଲା ଯେ, କୌଣସି କାଗଜ ପତ୍ରରେ ତାଙ୍କର ନାମ ଉଲ୍ଲେଖ କରାଯିବ ନାହିଁ । ସେ ସର୍ବଦା ଗୋପନୀୟ ଭାବରେ ଆମ୍ଭମାନଙ୍କ

ସମ୍ଭବତ ଯୋଗ ଦେଇଥାନ୍ତି । କାରଣ କୌଣସି ସଭା ସମିତିରେ ଯୋଗଦେବା କିମ୍ବା କାହାରି ସହିତ ମିଳିମିଶି ବୁଲିବାକୁ ତାହାଙ୍କ ପିତା ବାବୁ ସୁନ୍ଦର ନାରାୟଣରାୟଙ୍କର ଦୃଢ଼ରୂପେ ମନା ଥିଲା । ପ୍ରାୟ ପ୍ରତିଦିନ ରାତିରେ ସୁନହଟ ଗ୍ରାମରେ ବାବୁ ଦାମୋଦର ପ୍ରସାଦ ଦାସଙ୍କ ବୈଠକ ଖାନାରେ ସଭା ବସେ । ବିଦ୍ୟା, ବୁଦ୍ଧି, ବିତ୍ତ, ତିନି ବକାରାଦ୍ୟ ବିଷୟରେ ସମସ୍ତେ ସମାନ ଅଧିକାରୀ । ରାଧାନାଥ ସେ ପର୍ଯ୍ୟନ୍ତ ଏଫ୍‌.ଏ. ପାଶ କରି ନ ଥିଲେ, ଘରେ ବସି ପଢ଼ୁଥିଲେ ମାତ୍ର । ଅନେକ ଦିବସ ତର୍କ ବିତର୍କ ଉତ୍ତାରେ ସଭାରେ ସ୍ଥିର ହୋଇଗଲା—ଉତ୍କଳର ସମସ୍ତ ପ୍ରାଚୀନ କାବ୍ୟ ଛାପା କରାଯାଉ । ପ୍ରଥମେ ରସକଲ୍ଲୋଳଠାରୁ କାର୍ଯ୍ୟାରମ୍ଭ କରାଯିବା ଆବଶ୍ୟକ । ଏହାର ବିକ୍ରୟ ଲବ୍ଧ ଅର୍ଥରେ ଅନ୍ୟାନ୍ୟ ପୁସ୍ତକ ଛାପା କରାଯିବ । ରସକଲ୍ଲୋଳର ଛାପା ଖର୍ଚ୍ଚ ସଂଗ୍ରହ ସକାଶେ ଗୋଟିଏ କୋମ୍ପାନି ସ୍ଥାପିତ ହେବା ଆବଶ୍ୟକ । ଏହାର ଏକ ଅଂଶର ମୂଲ୍ୟ ଦୁଇଟଙ୍କା ଧାର୍ଯ୍ୟ ହେଲା । ତିନି ଚାରି ମାସ ଯତ୍ନ କରି ଅଢ଼େଇ ଶତଟଙ୍କା ମୂଳଧନ ସଂଗ୍ରହ କରାଗଲା । ଏହି ସଂଗୃହୀତ ଅର୍ଥ କୋଷାଧ୍ୟକ୍ଷ ଦାମୋଦରବାବୁଙ୍କ ଜିମାରେ ରହିଲା ।

ବର୍ତ୍ତମାନ ଛାପା ସକାଶେ ପ୍ରସ୍ତୁତ ହେବା ଆବଶ୍ୟକ । ଆମ୍ଭେମାନେ ସଭାର ସଭ୍ୟ ମଲ୍ଲିନାଥ କେତେଜଣ ରସକଲ୍ଲୋଳ ଉପରେ ଟୀକା କରିବାକୁ ବସିଗଲୁଁ । ପ୍ରଥମେ ଭିନ୍ନ ଭିନ୍ନ ସ୍ଥାନରୁ ଚାରିଖଣ୍ଡି ପୁସ୍ତକ ଅଣାଗଲା । ସେ ସମସ୍ତର ପାଠ ମିଳାଇ ବିଶୁଦ୍ଧରୂପେ ଖଣ୍ଡିଏ ପୁସ୍ତକ ଲେଖାଗଲା । ଅମରକୋଷ ଏବଂ ଆଉ ତିନି ଚାରିଖଣ୍ଡ ଅଭିଧାନ ପାଖରେ ପଡ଼ିଥାଏ । ଗୋଟିଏ ଗୋଟିଏ ଶବ୍ଦାର୍ଥ ନିରୂପଣ ନିମନ୍ତେ ଆମ୍ଭମାନଙ୍କ ମଧ୍ୟରେ ଯେପରି ବାଦାନୁବାଦ ଚଳୁଥାଏ, ସେ ସମସ୍ତ ଉଲ୍ଲେଖ କରି ବର୍ତ୍ତମାନ ପାଠକମାନଙ୍କ ହାସ୍ୟବୃତ୍ତି ଉତ୍ତେଜିତ କରାଇବାକୁ ପ୍ରବୃତ୍ତି ଜାତ ହେଉ ନାହିଁ । ପ୍ରତିଦିନ ରାତି ୭ଟା ଠାରୁ ୯ଟା ପର୍ଯ୍ୟନ୍ତ ଟୀକା ଲେଖା କାର୍ଯ୍ୟ ଚଳେ । ଚାରିମାସ ପର୍ଯ୍ୟନ୍ତ ପ୍ରଗାଢ଼ ଯତ୍ନ ଏବଂ ପରିଶ୍ରମରେ କାର୍ଯ୍ୟ ଅଧାଅଧି ସରିକି ହୋଇଗଲା । ଏହି ସମୟରେ ମନରେ ଅନ୍ୟ ପ୍ରକାର ଭାବର ଉଦୟ ହେଲା । ଯଦି ରସକଲ୍ଲୋଳ ଖଣ୍ଡିକ ମାତ୍ର ଛାପା କରାଉଁ, ଆପାତତଃ ଖଣ୍ଡିଏ କାବ୍ୟ ଛାପା ହୋଇଯିବ ସତ୍ୟ, ମାତ୍ର ଅନ୍ୟାନ୍ୟ ପୁସ୍ତକମାନ ଛପାଇବାକୁ ଢେର ବିଳମ୍ବ ହେବ । ଯଦି ଗୋଟିଏ ପ୍ରେସ କୋମ୍ପାନି ସ୍ଥାପନ କରୁଁ, ତେବେ ଏକାବେଳକେ ଅନେକ ଗୁଡ଼ିଏ ପୁସ୍ତକ ସହଜରେ ଛପାଇ ପାରିବୁଁ । ଏହାର ଚାରି ପାଞ୍ଚ ବର୍ଷ ପୂର୍ବେ କଟକରେ ପ୍ରିଣ୍ଟିଂକୋମ୍ପାନି ସ୍ଥାପିତ ହୋଇଥିଲା । ତାହାର ଆଦର୍ଶରେ ଗୋଟିଏ କୋମ୍ପାନି ଗଠନ କରାଯିବା କଥା ସ୍ଥିର ହୋଇଗଲା । ମାତ୍ର ପ୍ରେସ କି ପଦାର୍ଥ, ସେଇଟା ମାଟିରେ କି କାଠରେ ତିଆରି, ସେଥିପାଇଁ କି କି ପଦାର୍ଥ ପ୍ରୟୋଜନ ଏବଂ ପ୍ରେସ ସ୍ଥାପନ କରିବାକୁ କେତେ ଟଙ୍କା ଆବଶ୍ୟକ, ଏ ସମ୍ବନ୍ଧରେ ବିନ୍ଦୁମାତ୍ର ଜ୍ଞାନ ଆମ୍ଭମାନଙ୍କ ମଧ୍ୟରୁ କାହାରି ଜଣକର ନ ଥିଲା । ଆମ୍ଭମାନଙ୍କ ମଧ୍ୟରୁ କେହି ଜଣେ ସୁଦ୍ଧା ପ୍ରେସ କିମ୍ବା ପ୍ରେସ ସମ୍ବନ୍ଧୀୟ କୌଣସି ପଦାର୍ଥ ଦେଖି ନ ଥିଲେ । ଅଥଚ ପ୍ରେସ ସ୍ଥାପନ କରିବା ସ୍ଥିର ହୋଇଗଲା । ରସକଲ୍ଲୋଳର ଟୀକା କାର୍ଯ୍ୟ ଏକାବେଳକେ ରହିତ ହୋଇଗଲା । କୋମ୍ପାନିର ମୂଳ ପୁଞ୍ଜି ଧନାଧ୍ୟକ୍ଷଙ୍କ ତହବିଲରେ କାହିଁ ଉଭେଇ ଗଲା । ଦେଖିଲି, ସେ ଟଙ୍କା ବାହାର କରିବାକୁ ହେଲେ ଆତ୍ମବିଚ୍ଛେଦ ଘଟିବ, ସୁତରାଂ ପ୍ରେସ କାର୍ଯ୍ୟ ବିଷୟରେ ବାଧା ପଡ଼ିବାର ସମ୍ଭାବନା । ଏହି ସମସ୍ତ ବିବେଚନା କରି ତୁନି ହୋଇ ରହିବାକୁ ହେଲା ।

(ଉତ୍କଳ ସାହିତ୍ୟ ୨୨ ଭାଗ ୧୧ଶ ସଂଖ୍ୟା)

———

## ପ୍ରେସ୍ କୋମ୍ପାନ ସ୍ଥାପନ (୨)

ଗୋଟିଏ ପ୍ରେସ୍ କୋମ୍ପାନ ସ୍ଥାପନ କରିବା ବିଷୟ ସଭାରେ ସ୍ଥିର ହୋଇଗଲା । ତାହାର ନାମ ହେଲା ପି. ଏମ୍. ସେନାପତି ଏଣ୍ଡ କୋ. ଉତ୍କଳ ପ୍ରେସ୍ । କୋମ୍ପାନିର ଏକ ଅଂଶର ମୂଲ୍ୟ ପାଞ୍ଚଟଙ୍କା । ସଭାରେ ଏ ସବୁ କଥା ସ୍ଥିର ହୋଇଗଲା ।

"ଆଉ ସବୁ କଥା କର ଠୁଳ ।
ଟଙ୍କାଟି ଅଟେ ସବୁର ମୂଳ ।"

ପୂର୍ବେ କହିଅଛି—ଆମ୍ଭେମାନେ ସମସ୍ତେ ଧନବନ୍ତ । ଚିଉଡ଼ା ଏବଂ କାଗଜ ପ୍ରଭୃତିର ବ୍ୟବସାୟରୁ ମୋର ମାସିକ କୋଡ଼ିଏଟଙ୍କା ପର୍ଯ୍ୟନ୍ତ ଆୟ ହୁଏ । ବଡ଼ମା ପ୍ରତି ମାସରେ ମୋର ଦରମା ଟଙ୍କା ଗୁଡ଼ିକ ଗୋଟି ଗୋଟି କରି ଗଣି ନିଅନ୍ତି । ବାକି ଆୟ ଟଙ୍କାରୁ ପ୍ରତି ମାସ ଶେଷ ହେବା ମାତ୍ରକେ ପନ୍ଦରଟି ଟଙ୍କା କଲିକତାର ଫକୀରମୋହନ ସାହାଣୀଙ୍କ ନିକଟକୁ ପଠାଇ ନ ଦେଲେ ନ ଚଳେ । ଆଉ କେତୋଟି ଟଙ୍କା ଦରିଦ୍ର ପିଲାଙ୍କ ସ୍କୁଲ ଦରମା ବହି କଣା କିଣିରେ ଓ ଅନ୍ୟାନ୍ୟ ଆବଶ୍ୟକ ଖରଚରେ ଶେଷ ହୋଇଥାଏ । ସେ ସମସ୍ତ କଥା ଏଠାରେ ଥାଉ ।

ସଭାର ଦୁଇଜଣ ସଭ୍ୟ କୋମ୍ପାନିର ମୂଳଧନ ସଂଗ୍ରହ ସକାଶେ ପଦାକୁ ବାହାରି ପଡ଼ିଲୁଁ । ସହର ମଧ୍ୟରେ ଯେତେ ଜମିଦାର, ମହାଜନ, ଅମଲା ପ୍ରଭୃତି ଥିଲେ, ସେ ସମସ୍ତଙ୍କ ଦ୍ୱାରକୁ କ୍ରମାଗତ ଦୁଇ ପାଞ୍ଚମାସ ପର୍ଯ୍ୟନ୍ତ ଯିବାକୁ ହେଲା । କୌଣସି କୌଣସି ବାବୁଙ୍କ ଦ୍ୱାରକୁ ଆଠ ଦଶ ଠାରୁ ପନ୍ଦର କୋଡ଼ିଏ ପର୍ଯ୍ୟନ୍ତ ଯିବାକୁ ପଡ଼ିଥିଲା । ପ୍ରତିଦିନ ସନ୍ଧ୍ୟାଠାରୁ ରାତି ଦଶ ଏଗାରଟା ପର୍ଯ୍ୟନ୍ତ କାର୍ଯ୍ୟ କରିବାକୁ ହୁଏ । ପ୍ରେସ କି ପଦାର୍ଥ ଓ ତଦ୍ଦ୍ୱାରା କେତେ ଲାଭ ହେବ, ଏ ସବୁ ବିଷୟରେ ସମସ୍ତଙ୍କର ସମାନ ଜ୍ଞାନ । ଥୋକେ ସେ ପର୍ଯ୍ୟନ୍ତ ପ୍ରେସର ନାମ ସୁଦ୍ଧା ଶୁଣି ନ ଥିଲେ । ତେବେ ସେ ସମୟରେ ବଙ୍ଗଳା ପାଞ୍ଜି, ଚୈତନ୍ୟ ଚରିତାମୃତ ଓ ସ୍କୁଲରେ ପଢ଼ା ଯାଉଥିବା ଛାପା ବହି ସମସ୍ତ ଦେଖୁଥିବାରୁ ପ୍ରେସ୍‌ରେ ପୋଥି ଛାପା ହୋଇ ପାରିବା ବିଷୟରେ କାହାରିକୁ ଅଧିକ ବୁଝାଇବାକୁ ହେଲା ନାହିଁ । ପ୍ରେସ୍‌ର ଉପକାରିତା ସମ୍ବନ୍ଧରେ ଲୋକମାନଙ୍କ ସାକ୍ଷାତରେ ତିନି ଚାରି ଘଣ୍ଟାକରି ବକ୍ତୃତା ଦେଇ ବିଷୟଟା ବୁଝାଇବାକୁ ହୁଏ । କୌଣସି କୌଣସି ଲୋକଙ୍କୁ ପାଞ୍ଚ ସାତ ଥର କରି ବୁଝାଇବାର ପ୍ରୟୋଜନ ହୋଇଥିଲା । କେତେକ ମାସ ପର୍ଯ୍ୟନ୍ତ ପ୍ରତିଦିନ କହି କହି ବକ୍ତୃତାଟା ଅଭ୍ୟାସ ହୋଇ ଯାଇଥିଲା । କୌଣସି ବାବୁଙ୍କ ପାଖକୁ ଗଲେ ବକ୍ତୃତାଟା ସହଜରେ ବାହାରି ପଡ଼େ । ବକ୍ତୃତାର ସାର ମର୍ମ—"ଯେଉଁମାନେ କୋମ୍ପାନିର ଅଂଶ କିଣିବେ, ସେମାନେ ଢେର ଟଙ୍କା ଲାଭ ପାଇବେ । ରାମାୟଣ ମହାଭାରତ ପ୍ରଭୃତି ଗ୍ରନ୍ଥ ଛାପା ହେଲେ ଖୁବ୍ ଶସ୍ତାରେ ବିକ୍ରି ହେବ । ସମସ୍ତେ ଆପେ ଆପେ ପଢ଼ି ପାରିବେ, ପୋଥି ପଢ଼ୁଆଳୁ ଆଉ ଡାକିବାକୁ ହେବ ନାହିଁ । ପିଲାମାନେ ଘରେ ପୋଥି ପଢ଼ି ଜ୍ଞାନୀ ହୋଇଯିବେ । କୌଣସି ବିଦେଶୀ ଲୋକ ଆମ୍ଭମାନଙ୍କୁ ଓଡ଼ିଆ ମେଣ୍ଢା ବୋଲି ଗାଳି ଦେଇ ପାରିବ ନାହିଁ । ଇତ୍ୟାଦି, ଇତ୍ୟାଦି ।" କେହି ପ୍ରେସ୍‌ର ଉପକାରିତା ବୁଝି, କେହି ଲାଭ ପ୍ରତ୍ୟାଶାରେ, କେହିବା ଆମ୍ଭମାନଙ୍କ ପୁନଃ ପୁନଃ ପ୍ରାର୍ଥନାରେ ପ୍ରେସ୍ କୋମ୍ପାନିର ଅଂଶ କିଣିବାକୁ ସମ୍ମତ ହେଲେ । ଦୁଇ ପାଞ୍ଚମାସ ଆବିଶ୍ରାନ୍ତ ପରିଶ୍ରମରେ ବାରଶତ ଟଙ୍କା ସଂଗୃହୀତ ହୋଇ କୋଷାଧ୍ୟକ୍ଷଙ୍କ ସମୀପରେ ଗଚ୍ଛିତ ହେଲା ।

ବର୍ତ୍ତମାନ ପ୍ରଥମ ପ୍ରଶ୍ନ କିତାପ ଛାପିବାକୁ ମିସ୍ତ୍ରି ବା କାରିଗର କାହିଁ ? ( ସେ ସମୟରେ କମ୍ପୋଜିଟର,

ପ୍ରେସ୍‌ମେନ୍ ଇତ୍ୟାଦି ଶବ୍ଦ କାହାରିକୁ ଜଣା ନ ଥିଲା ।) ସନ୍ଧାନରେ ଜଣାଗଲା, ଉତ୍କଳରେ କାରିଗରର ଅଭାବ. କଲିକତାରୁ କମ୍ପୋଜିଟର, ପ୍ରିଣ୍ଟର, ପ୍ରେସ୍‌ମେନ୍ ଇତ୍ୟାଦି ଉପାଧିଧାରୀ ଲୋକଙ୍କୁ ଆଣିବାକୁ ଗଲେ ପୁଞ୍ଜି ଗୁଡ଼ିକ କେତେକ ମାସ ମଧ୍ୟରେ ଶେଷହୋଇଯିବ । ପ୍ରେସ ସରଞ୍ଜାମ କିଣିବାକୁ ଅର୍ଥ ଅଣ୍ଟିବ ନାହିଁ । କତିପ ବିଷୟ ଶିଖି ଆସିବା ସକାଶେ ମୋର ମାତୁଳ ପୁତ୍ର ଗୋଟିଏ ଭାଇକୁ କଲିକତା ପଠାଇଲି । ଛାପାଖାନା ସକାଶେ କି କି ଜିନିଷ କିଣିବାକୁ ହେବ ଓ ସେ ସମସ୍ତର ମୂଲ୍ୟ କେତେ, ଏ ବିଷୟ ଅନୁସନ୍ଧାନ କରି ଲେଖି ପଠାଇବା ସକାଶେ ତାକୁ ଆଦେଶ ଦିଆଗଲା । କଲିକତାରେ ରହି କାର୍ଯ୍ୟ ଶିଖିବାକୁ ଗଲେ ଖାଇଖରଚ ଇତ୍ୟାଦି ସକଶେ ମାସକୁ ପନ୍ଦର ଟଙ୍କା ଆବଶ୍ୟକ । ଟଙ୍କା କାହୁଁ ଆସିବ ? କୋମ୍ପାନି ପୁଞ୍ଜିରୁ ଟଙ୍କା ଦେଲେ କଳ ଇତ୍ୟାଦି କିଣିବାକୁ ପଛକେ ନଅଣ୍ଟ ହୋଇପାରେ । କଣ କରିବ, ହାତରୁ ଦେବାକୁ ପଡ଼ିଲା । ବର୍ଷେକାଳ ତାକୁ ମାସିକ ପନ୍ଦର ଟଙ୍କା କରି ଖରଚ ଦେଇଥିଲି ।

ଛାପାଖାନା ସମ୍ପର୍କୀୟ ବସ୍ତୁ ସକଳର ନାମ ଏବଂ କେଉଁ ବସ୍ତୁ କେତେ ପରିମାଣରେ ପ୍ରୟୋଜନ ଓ ସେ ସବୁର ମୂଲ୍ୟର ପରିମାଣ ଇତ୍ୟାଦି ବିଷୟରେ କଲିକତାରୁ ପତ୍ର ପ୍ରାପ୍ତ ହେଲା । ସେଥିରୁ ଜଣାଗଲା ଯେ, ଅକ୍ଷର ଅର୍ଥାତ୍ ଟାଇପ୍ ନାମକ ପଦାର୍ଥର ପ୍ରୟୋଜନ । ମାତ୍ର ଓଡ଼ିଆ ଅକ୍ଷର କଲିକତାରେ ମିଳେ ନାହିଁ । କଲିକତାର ଉତ୍ତରାଞ୍ଚଳରେ ରାମଚନ୍ଦ୍ର କର୍ମକାର ନାମକ ଜଣେ ଲୋକ ଓଡ଼ିଆ ଅକ୍ଷର ତିଆର କରୁଥିବାର ସନ୍ଧାନ ପାଇ ତାହା ନିକଟକୁ ଗଲି । ସେ ଲୋକଟା ଓଡ଼ିଆ ଅକ୍ଷର ଚିହ୍ନେ ନାହିଁ, ଛାପା ଅକ୍ଷର ଦେଖି ଅକ୍ଷର ଗଢ଼ି ଦିଏ । ଅକ୍ଷର ଗୁଡ଼ାକ କଦର୍ଯ୍ୟ । ଯାହାହେଉ ମିଳିଗଲା, ଏହାହିଁ ସୌଭାଗ୍ୟ । ଅକ୍ଷର ତିଆରି ସକାଶେ ବଇନା ଦେଇ ଆସିଲି । ସେ ପରେ ଅକ୍ଷର ପ୍ରସ୍ତୁତ କରି ପଠାଇଦେଲା । ବର୍ତ୍ତମାନ ଅକ୍ଷର ଏବଂ ଅନ୍ୟାନ୍ୟ ସରଞ୍ଜାମମାନଙ୍କ ଦାମ ମୋଟ କରି ଦେଖାଗଲା, ସବସୁଦ୍ଧା ଆଠଶ ଟଙ୍କା ଖରଚ ହେବ । ବାକି ଚାରିଶତ ଟଙ୍କା ହାତରେ ବଳକା ରହୁଅଛି । କଲିକତାରେ କୋମ୍ପାନି ମାନଙ୍କୁ ପତ୍ର ଲେଖି ଏବଂ ଅନ୍ୟାନ୍ୟ ସ୍ଥାନରେ ଅନୁସନ୍ଧାନ କରି ଜଣାଗଲା ଯେ, ସାତ ଆଠଶ ଟଙ୍କାରୁ ଊଣାରେ ଭଲ ପ୍ରେସ୍ ଗୋଟାଏ ମିଳି ନ ପାରେ । ତେବେ କଣ ଏତେ ପରିଶ୍ରମ, ଏତେ ଅନୁଷ୍ଠାନ ସବୁ ବୃଥା ଯିବ ? ମେଦିନୀପୁରରେ ମିସନରୀ ମାନଙ୍କର ଗୋଟିଏ ଛାପାଖାନା ଥିଲା । ସେଠାରେ ଅଳ୍ପ ମୂଲ୍ୟରେ ଗୋଟିଏ ଛାପାଖାନା ମିଳିପାରେ କି ନାହିଁ ଜାଣିବାକୁ ପତ୍ର ଲେଖିଲି । ପତ୍ରର ଉତ୍ତର ଆସିବା ପୂର୍ବେ ଚାରି ପାଞ୍ଚଦିନ ମଧ୍ୟରେ ଶଗଡ଼ରେ ଗୋଟାଏ ଛାପାକଳ ଆସି ମୋ ପାଖରେ ପହଞ୍ଚିଲା । ସେ କଳଟିର ଲମ୍ବ ପ୍ରାୟ ଦୁଇଫୁଟ, ଓସାର ଦୁଇଫୁଟ, ଉଚ୍ଚତା ଦେଡ଼ଫୁଟ ହେବ— ଗୋଟିଏ ସମଚତୁଷ୍କୋଣ ବାକ୍ସ ପରି । ଉପରେ ଗୋଟାଏ ମୋଟା ଫମ୍ପା ଲୁହାର ରୁଲ ଗଡ଼ୁଥାଏ । ମୂଲ୍ୟ ଠିକ୍ ମନରେ ପଡ଼ୁନାହିଁ, ବୋଧକରେ ଦେଡ଼ଶ ଟଙ୍କା ହେବ । କଳଟି ଦେଖି ଆମ୍ଭମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ବୋଧକରୁଁ ଆଜକାଲି ଖଣ୍ଡିଏ ବିଶାଳ ଜମିଦାରୀ ହଠାତ୍ ହସ୍ତଗତ ହେଲେ ସେପରି ଆନନ୍ଦ ଜାତ ହେବା ଅସମ୍ଭବ ।

ଛାପାଖାନା ସମ୍ବନ୍ଧୀୟ ସରଞ୍ଜାମମାନ ବାଲେଶ୍ୱରୀ ଜାହାଜରେ କ୍ରମେ କ୍ରମେ ଆସିବାକୁ ଲାଗିଲା । ଜାହାଜ କଲିକତାରୁ ବାଲେଶ୍ୱରକୁ ଆସିବାକୁ ପବନର ସୁବିଧା ଅନୁସାରେ ଆଠ ଦଶ ଦିନ ଠାରୁ କୋଡ଼ିଏ ଦିନ ପର୍ଯ୍ୟନ୍ତ ଲାଗୁଥିଲା । ସବଶେଷରେ ଟାଇପ୍ ସବୁ ଧରି ଜଗନ୍ନାଥ ବାବୁ ମଧ୍ୟ ପହଞ୍ଚି ଗଲେ । ଆମ୍ଭମାନଙ୍କର

ବିଶ୍ୱାସ ଯେ, ଜଗନ୍ନାଥ ଛାପାଖାନା ସମ୍ପର୍କୀୟ ସମସ୍ତ କାର୍ଯ୍ୟ ଶିକ୍ଷି ଆସିଅଛି । ବର୍ତ୍ତମାନ କାର୍ଯ୍ୟାରମ୍ଭ କରାଇ ଦେଲେ ସବୁ ଠିକ୍ ହୋଇଯିବ ।

ବାଲେଶ୍ୱର ମୋତିଗଞ୍ଜ ବଜାରର ମଧ୍ୟଭାଗରେ ଆମ୍ଭମାନଙ୍କର ଗୋଟିଏ କୋଠାଘର ଥିଲା । ସେ ଘରଟି ଭଡ଼ା ଦିଆଯାଏ । ବଡ଼ବାବୁଙ୍କଠାରୁ ସେ ଘରଟି ଭଡ଼ା ନେଲୁଁ, ତହିଁରେ ଛାପାଖାନା କରାଯିବାର ସ୍ଥିର ହେଲା । ପ୍ରିଣ୍ଟର ଅର୍ଥାତ୍ ଜଗନ୍ନାଥବାବୁ ସମସ୍ତ ଜିନିସ ସେ ଘରେ ସଜାଇ ରଖିଲେ । ଛାପାଖାନା କାର୍ଯ୍ୟ ଚଳାଇବା ନିମନ୍ତେ ଆଉ ଛ ଜଣ ଲୋକ ନିଯୁକ୍ତ ହେଲେ । ପ୍ରିଣ୍ଟର ସେମାନଙ୍କୁ କାର୍ଯ୍ୟ ଶିଖାଇ ଦେବେ । ଅକ୍ଷର ସବୁ ଯୋଡ଼ା ଯାଇ ପ୍ରେସ ଭିତରେ ଥୁଆଗଲା । ଅକ୍ଷର ଉପରେ କାଳି ଲଗାଇବା ସକାଶେ ଗୋଟାଏ କାଠ ରୁଲରେ ଲୁହାର ହତା ଲଗାଇ ପ୍ରସ୍ତୁତ କରାଇ ରଖିଥିଲେ । ସେହି କାଠ ରୁଲରେ କାଳି ଲଗାଇ ଟାଇପ୍ ଉପରେ ଗଡ଼ାଇ ଦେବାରୁ ରୁଲଟା ଘଡ଼ ଘଡ଼ କରି ଗଡ଼ି ଗଲା । ତାହା ଉପରେ କାଗଜ ଦିଆଗଲା । ନିଶ୍ୱାସ ବନ୍ଦ କରି ଶତ ଶତ ଲୋକ ରହିଁ ଅଛନ୍ତି । ଏବେ ପ୍ରେସ ଭିତରୁ ଛାପା ବାହାରିବ । ଏ କଣରେ ବାବୁ ! ଗୋଟାଏ ବୋଲି ଅକ୍ଷର ଛପାନାହିଁ, କାଗଜରେ ସ୍ଥାନେ ସ୍ଥାନେ ମେଞ୍ଚାକୁ ମେଞ୍ଚା କାଳି ଲାଗି ଆସିଅଛି । ପ୍ରିଣ୍ଟର ତ ଶୁଖିଲା ମୁହଁରେ କାଠ ପିତୁଳିଟି ପରି ଠିଆ ହୋଇଅଛନ୍ତି । ଆମ୍ଭମାନଙ୍କୁ ପୃଥିବୀଟା ଅନ୍ଧକାରମୟ ପରି ଜଣା ଯାଉଅଛି । ଲଜ୍ଜା ଓ ମନଃ କଷ୍ଟରେ ମୁଖରୁ କଥା ବାହାରୁ ନାହିଁ । ଆଜି ଛାପା କାର୍ଯ୍ୟ ଆରମ୍ଭ ହେବ ବୋଲି ଆନନ୍ଦରେ ଘୋଷଣା କରାଯାଇ-ଥିଲା । ମୋତିଗଞ୍ଜ ବଜାରର ଅଧାଅଧି ଦୋକାନ ବନ୍ଦ । ସହରର ବଡ଼ ବଡ଼ ଲୋକମାନେ ମଧ୍ୟ ଛାପା ଦେଖିବାକୁ ଆସିଅଛନ୍ତି । ଛାପାଖାନା ଆଗ ସଡ଼କରେ ମଧ୍ୟ ଜନତା ପୂର୍ଣ୍ଣ । ବାଟୋଇମାନଙ୍କ ଗମନାଗମନ ବନ୍ଦ । ଆମ୍ଭମାନଙ୍କର ତ ବିଷମ ଶୋଚନୀୟ ଅବସ୍ଥା । ତହିଁ ଉତ୍ତାରୁ ପୁଣି ଆମ୍ଭମାନଙ୍କ ଉପରେ ଶତ ଶତ ପ୍ରଶ୍ନ ପଡ଼ୁଅଛି—ଛାପା କାହିଁ ? ଅତି କଷ୍ଟରେ ଉତ୍ତର ଦେଲୁଁ—'ଆଜି କାଗଜରେ କେବଳ କାଳି ଦିଆଗଲା । ଏ ଉତ୍ତାରୁ ଏହିସବୁ କାଳି ଅକ୍ଷର ପାଲଟି ଯିବ ।' ଆମ୍ଭମାନଙ୍କ ପରି ସାମାନ୍ୟ ଲୋକେ ଘୋର ବିପଦ ସମୟରେ ତୁଚ୍ଛ ଆତ୍ମ ସମ୍ମାନ ରକ୍ଷା ନିମନ୍ତେ ଯେ କୌଣସି ପ୍ରକାର ମିଥ୍ୟା ପ୍ରତାରଣା ଅବଲମ୍ବନ କରିବାକୁ ପଶ୍ଚାତ୍ପଦ ହୁଅନ୍ତି ନାହିଁ ! ଧିକ ! ବର୍ତ୍ତମାନ ଜୀବନକୁ ଧିକ୍କାର ଦେଲେ କ'ଣ ହେବ ?

ଜଗନ୍ନାଥ କଲିକତା ଛାପାଖାନା ମାନଙ୍କରେ ଦେଖି ଆସିଥିଲା, କାଠ ରୁଲରେ ଟାଇପ ଉପରେ କାଳି ଲଗାଇ ଦିଆଯାଏ । ମାତ୍ର ସେ ରୁଲ୍ଟା କିପରି ପ୍ରସ୍ତୁତ ହୁଏ, ତାହା ତାକୁ ଜଣା ନ ଥିଲା । ମନରେ କଲୁଁ, ରୁଲଟା ଠିକ୍ ସମାନ ଭାବରେ ତିଆର ହୋଇ ନ ଥିବାରୁ ଅକ୍ଷରରେ ସମାନରୂପେ କାଳି ଲାଗୁନାହିଁ । ବଢ଼େଇ ଡକରା ହେଲା, ରନ୍ଦା ପ୍ରୟୋଗ ଓ ଶିରିଷ କାଗଜ ଘଷା ଯୋଗୁଁ ରୁଲ ଚିକ୍କଣ କରାଗଲା । ମାତ୍ର ଫଳରେ "ଯଥା ପୂର୍ବଂ ତଥା ପରଂ ।"

ବର୍ତ୍ତମାନ ଦିବାରାତ୍ର ଆଉ କିଛି ନାହିଁ, ଆଉ କିଛି କାର୍ଯ୍ୟ ଦିଶୁନାହିଁ, ରୁଲ ଖଣ୍ଡ ଆଗରେ ପଡ଼ି ଦୃଷ୍ଟି ରେଖାକୁ ଯେମନ୍ତ ଡାକି ରଖିଅଛି । ନାନା ଉପାୟ ଅବଲମ୍ବନ ଓ ପ୍ରଗାଢ଼ ପରିଶ୍ରମରେ ବ୍ୟର୍ଥକାମ ହୋଇ ଚାରି ପାଞ୍ଚ ଦିନ ଉତ୍ତାରେ ଗୋଟାଏ ଉପାୟ ମନରେ ଉଦିତ ହେଲା, ରୁଲ ଉପରେ ଖଣ୍ଡେ ମୋଟା କୋମଳ ଚମଡ଼ା ଗୁଡ଼ାଇ ଦେଲେ କାଳି ସମାନ ରୂପେ ଲାଗିପାରେ । ଶନ୍ଧ୍ୟା ଉଦୟ ମାତ୍ର କାର୍ଯ୍ୟାରମ୍ଭ—ମୋଚି ଆସିଲା, ରୁଲ ଉପରେ ଚମଡ଼ା ଗୁଡ଼ାଇ ଦିଆଗଲା । ଫଳରେ ଯାହା ହୋଇଥିଲା, ତାହା ପାଠକ ମହାଶୟ

ବୁଝି ନେଉନ୍ତୁ, ଲେଖିବାର ଲୋଡ଼ାନାହିଁ । ଆଠ ଦଶ ଦିନ ପର୍ଯ୍ୟନ୍ତ ପ୍ରଗାଢ଼ ଚିନ୍ତା, ପରିଶ୍ରମ ଓ ଉପାୟ ଅବଲମ୍ବନରେ ବ୍ୟର୍ଥକାମ ହୋଇ କଲିକତାକୁ ଚିଠି ଲେଖିଲୁଁ । ଉତ୍ତର ଆସିଲା, ଶିରିଷ ଗଳି ରୁଲ ଉପରେ ଲଗାଇବାକୁ ହେବ । ଶିରିଷ ରନ୍ଧାଗଲା, ଖଣ୍ଡେ କାଠିରେ ଗରମ ଗରମ ତରଳ ଅବସ୍ଥାରେ ରୁଲ୍ ଉପରେ ଚତୁର୍ଦ୍ଦିଗରେ ଭଲ କରି ବୋଳି ଦିଆଗଲା । ସେଥିରୁ ଫଳଲାଭ ?

କଲିକତାକୁ ପତ୍ର ଲେଖିଲି । ରୁଲ ପ୍ରସ୍ତୁତ କରିବା ସମ୍ବନ୍ଧରେ ବିସ୍ତାରିତ ରୂପେ ଉପଦେଶ ଲିଖିତ ହୋଇ ଆସିଲା । ଭାଗ ହିସାବ ଅନୁସାରେ ଗୁଡ଼ ଏବଂ ଶିରିଷ ମିଶ୍ରିତ କରି ରନ୍ଧାହେବ; ଏଣେ ମୋଲଡ ଭିତରେ ଠିକ୍ ମଧ୍ୟସ୍ଥଳରେ କାଠ ରୁଲଟାକୁ ରଖି ଗରମ ତରଳ ଶିରିଷକୁ ମୋଲଡ ଭିତରେ ଢାଳି ଦିଆଯିବ; ଦଶ ବାର ଘଣ୍ଟା ଉତ୍ତାରେ ମୋଲଡ ଭିତରେ ରହି ଶିରିଷ ଶୀତଳ ହୋଇଗଲେ ରୁଲ୍ କର୍ମର ଉପଯୋଗୀ ହେବ । ବେଶ୍ କଥା, ଚିଠିର ଅର୍ଥାତ ପରିଷ୍କାର ରୂପେ ବୁଝାଗଲା । ମାତ୍ର ମୋଲଡ଼ ଭିତରେ ରୁଲ୍ ରଖି ଶିରିଷ ଢଳାଯିବ, Mould ଏଟା ତ ଇଂରାଜୀ କଥା, ତାହାର ଅର୍ଥ, ଛାଞ୍ଚ । ସେ ଛାଞ୍ଚର ଆକାର କିପରି, କେଉଁ ପଦାର୍ଥରେ ତାହା ପ୍ରସ୍ତୁତ ହୁଏ, କିଛି ଜଣାଗଲା ନାହିଁ । କାହାକୁ ପଚାରିବୁ, ଆମ୍ଭମାନଙ୍କ ପରି ବାଲେଶ୍ୱରବାସିଙ୍କ ଊର୍ଦ୍ଧ୍ୱତନ ବହୁପୁରୁଷଙ୍କୁ ମଧ୍ୟ ପ୍ରେସ୍ ରୁଲର ଅସ୍ତିତ୍ୱ ବୃତ୍ତାନ୍ତ ଅଗୋଚର । ପୁଣି କଲିକତାକୁ ପତ୍ରଲେଖି ଉତ୍ତର ଆଣିବାକୁ ତର କାହିଁ ? ଘରୁ ବାହାରିଲେ ସକାଳୁ ସଞ୍ଜଯାଏ ହାଟ ବାଟ କଚେରିରେ ବଡ଼ ସାନ ସବୁ ଶ୍ରେଣୀର ଲୋକମାନଙ୍କଠାରୁ କେବଳ ଏହି ପ୍ରଶ୍ନ ଶୁଣାଯାଏ—କେବେ ଛାପା ବାହାରିବ ? ଲଜ୍ଜାରେ ଭିତରର ଦୁର୍ଦ୍ଦଶା କଥା ଫେଇ କହି ହେଉ ନାହିଁ । ହସି ହସି ଖୁବ୍ ଉତ୍ସାହରେ ଉତ୍ତର ଦିଆଯାଉଅଛି, ହଁ, ଛାପା ବାହାରିଲା ପରି । ଘରେ ବାହାରେ ସ୍ତ୍ରୀ ଲୋକ ମାନଙ୍କଠାରୁ ମଧ୍ୟ ଏହି ପ୍ରଶ୍ନ ଶୁଣାଯାଏ । କିପରି କାହିଁରେ କି ଭାବରେ ମୋଲଡ ପ୍ରସ୍ତୁତ ହେବ; ଦିବାନିଶି କେବଳ ଏହି ଚିନ୍ତା । କଳ୍ପନାରେ କେତେ ପ୍ରକାର ମୋଲ୍ଡ଼ ସ୍ଫୁରି ହୋଇ ଭାଙ୍ଗିଗଲା । ତିନ ଚାରିଦିନ ଚିନ୍ତା କଲା ଉତ୍ତାରେ ଏକପ୍ରକାର ଛାଞ୍ଚ ମନରେ ଉଦିତ ହେଲା । ଗ୍ରାମ ନିକଟରେ ଗୋଟାଏ ଭରତକର ସାହି । କଂସା ପିତ୍ତଳ ପ୍ରଭୃତି ଢାଳି ବାସନ ଗଢ଼ିବା ସେମାନଙ୍କ ବ୍ୟବସାୟ । ସେମାନଙ୍କୁ ମୋଲ୍ଡର ଆକାର ପ୍ରକାର ବୁଝାଇ ଦେଲି । ଏକ ସପ୍ତାହ ମଧ୍ୟରେ ସେମାନେ ଗୋଟାଏ ପିତ୍ତଳର ମୋଲ୍ଡ଼ ଢାଳିଦେଲେ । ସେଥିରେ ଅଠର ଟଙ୍କା ଖରଚ ପଡ଼ିଲା । ତାହା ସାହାଯ୍ୟରେ ସୁନ୍ଦର ରୁଲ୍ ଉପଯୁକ୍ତ ରୂପେ ପ୍ରସ୍ତୁତ ହୋଇଗଲା । ଏବେ ଛାପା କାର୍ଯ୍ୟ ଆରମ୍ଭ ହେଲା । ହାୟ, ହାୟ, -! ଏ କ'ଣ ହେଲା ! ଛାପା ଅଧାଅଧି ଅକ୍ଷର ଉଠୁ ନାହିଁ, ଡାହାଣ ପାଖ ଉଠିଲେ ବାଁ ପାଖ ଉଠୁ ନାହିଁ, ବାଁ ପାଖ ଉଠିଲେ ଡାହାଣ ପାଖ ଉଠୁନାହିଁ । ନିରବଚ୍ଛିନ୍ନ ଭାବରେ ପନ୍ଦର ଦିନର ପ୍ରଗାଢ଼ ପରିଶ୍ରମ ବ୍ୟର୍ଥ ହୋଇଗଲା । ସେ ପ୍ରେସଟା ଅକର୍ମଣ୍ୟ ଥିବା ଯୋଗୁଁ ମେଦିନୀପୁର ମିସନ୍ ପ୍ରେସ୍ ତାକୁ ଫୋପାଡ଼ି ଦେଇଥିଲେ, ଏ କଥା ସେ ପର୍ଯ୍ୟନ୍ତ ଜଣା ନ ଥିଲା । ଏ ପ୍ରେସରେ ଛାପା ହୋଇ ପାରିବ ନାହିଁ ବୋଲି ସ୍ଥିର ହୋଇଗଲା । କଲିକତାରୁ ଗୋଟିଏ ନୂତନ କଲ ଅଣାଯିବା ପ୍ରୟୋଜନ । ନୋହିଲେ ବର୍ଷବ୍ୟାପୀ ଅନୁଷ୍ଠାନ ଓ ଅର୍ଥବ୍ୟୟ ସମସ୍ତ ବ୍ୟର୍ଥ ପ୍ରାୟ ।

ଆ-ଠ ଶ-ଟ-ଙ୍କା ? କାହୁଁ ଆସିବ ? ଯଦି ଭେଡା ରୁଣ୍ଡାଇବାକୁ ଯାଉଁ, ତେବେ ଟଙ୍କା ତ ମିଳିବ ନାହିଁ, ଅଧିକନ୍ତୁ ତିରସ୍କାର ସ୍ୱରୂପ ପ୍ରାପ୍ତି ଅପରିହାର୍ଯ୍ୟ । ହୁଏ ତ ଟଙ୍କା କରଜ ଆଣିନ୍ତୁ, କିନ୍ତୁ କିଏ କି ଭରସାରେ ମୋତେ ଏତେଗୁଡ଼ିଏ ଟଙ୍କା କରଜ ଦେବ ? ବିପଦ ଆଉ ଗୋଟାଏ ବିପଦକୁ ଟାଣି

ଆଣେ । ଜ୍ୟେଷ୍ଠ ମାସିଆ ସମୟ, ପ୍ରଚଣ୍ଡ ଖରା, ଦିବା ରାତ ଧାଁ ଦଉଡ଼, ଦୁର୍ଭାବନା, ଅନୟମିତ ଆହାର ଓ ନିଦ୍ରା ହେତୁରୁ ଦିନକୁ ଆଠ ଦଶ ଥର କରି ରକ୍ତଝାଡ଼ା ହେବାକୁ ଲାଗିଲା । ଦିନେ କଳ ସଜାଡ଼ିବା ପାଇଁ ଅନେକ ବେଳ ପର୍ଯ୍ୟନ୍ତ ଛିଡ଼ା ହୋଇ ପ୍ରଗାଢ଼ ପରିଶ୍ରମରେ ଲାଗିଥିବାବେଳେ ଝାଳରେ ସମସ୍ତ ଲୁଗା ଭିଜି ଗଲାଣି, ପଶ୍ଚାଦ୍ଭାଗରେ ରକ୍ତସ୍ରାବ ହୋଇ ଲୁଗା ତିନ୍ତି ରକ୍ତ ଭୂଇଁରେ ବହିଗଲା । ଘରକୁ ଆସି ଅଚେତ୍ ହୋଇ ପଡ଼ିଗଲି । ସେ ସମୟରେ ଅନେକ ଦିନ ରାତି ୯ଟା ବେଳେ ପ୍ରେସରୁ ବାହୁଡ଼ି ଆସି ଘରେ ପହଞ୍ଚିବା ମାତ୍ରକେ ଚେତା ବୁଡ଼ିଯାଏ । ଆପଣାର ଦୁର୍ଦ୍ଦଶା ବିଷୟ କାହାରିକୁ ଜଣାଏନାହିଁ ? ସାହସଧରି ହସିହସି ଲୋକଙ୍କ ସହିତ ପ୍ରେସ ସମ୍ବନ୍ଧରେ କଥାଭାଷା କରେ । ଆଣ୍ଠୁ କରି ମଙ୍ଗ ମାଡ଼ି ବସିଛି । ଏ ଘୋର ଦୁର୍ଯୋଗରେ ପଡ଼ି ମନ ମଧ୍ୟରେ ପ୍ରତିଜ୍ଞା କଲି, ପ୍ରେସ୍ ସ୍ଥାପନ, ନଚେତ୍ ଜୀବନ ତ୍ୟାଗ ।

କୌଣସି ସାଧୁକାର୍ଯ୍ୟରେ ନିଃସ୍ୱାର୍ଥ ଭାବରେ ପ୍ରାଣପଣେ ଲାଗି ପଡ଼ିଲେ ଦୟାମୟ ପ୍ରଭୁ ସହାୟ ହୁଅନ୍ତି । ବାଲେଶ୍ୱରର ଅନ୍ୟତମ ପ୍ରଧାନ ଜମିଦାର ଏବଂ ମହାଜନ ବାବୁ ମଦନମୋହନ ଦାସଙ୍କ ଭ୍ରାତା ବାବୁ କିଶୋରୀମୋହନ ଦାସ ମୋର ଜଣେ ପ୍ରକୃତ ବନ୍ଧୁ ଏବଂ ସହାୟ ଥିଲେ । ପ୍ରାର୍ଥନା କରିବା ମାତ୍ରକେ ବିନା ଲେଖାପଢ଼ିରେ ମୋତେ ଆଠଶତ ଟଙ୍କା ଧାର ଦେଲେ । ଗୋଟିଏ ସୁପର୍ ରଏଲ କଲମ୍ବିଆନ୍ ପ୍ରେସ କଲିକତାରୁ ଅଣାଇଲି । ସେ ସମୟରେ ବର୍ଷାକାଳ, ବାଲେଶ୍ୱରୀ ଜାହାଜର ଗତାୟତ ବନ୍ଦ; ତେଣୁ ପ୍ରେସଟି କଲିକତାରୁ ଶଗଡ଼ରେ ଆସିଲା । ବର୍ତ୍ତମାନ ଗୋଟିଏ କରକରି ଚଉଡ଼ା ଜଗନ୍ନାଥ ସଡ଼କ ( ଟ୍ରଙ୍କ ରୋଡ଼ ) ଏବେ ପକ୍କା କରା ଯାଇଅଛି; ମାତ୍ର ସେ ସମୟରେ କେବଳ ମାଟିର ସଡ଼କ ଥିଲା । ବର୍ଷାକାଳରେ ତାହା ନିତାନ୍ତ ଅଗମ୍ୟ ହୋଇ ପଡ଼େ । ସ୍ଥାନେ ସ୍ଥାନେ ବୋଝାଇ ଶଗଡ଼ କାଦୁଅରେ ଲାଖିଯାଏ । ପାର୍ଶ୍ୱବର୍ତ୍ତୀ ଗ୍ରାମମାନଙ୍କରୁ ମୂଲିଆ ଆଣି ଟଣା ଓଟରା କରି ଶଗଡ଼ ଉଠାଇବାକୁ ହୁଏ । ଆମ୍ଭମାନଙ୍କ ପ୍ରେସ ଶଗଡ ଦାନ୍ତୁନ ବଜାର ମଝିଦାଣ୍ଡି କାଦୁଅରେ ଲାଗିଗଲା । ପନ୍ଦର କୋଡ଼ିଏ ଜଣ କୁଲି ଲାଗି ବଜାର ଦାଣ୍ଡଟା ପାର କରି ଦେବାକୁ ଆଠ ଦିନ ଲାଗିଥିଲା । ଯାହାହେଉ, ପ୍ରେସ କଲିକତାରୁ ବାହାରି ବାଇଶ ଦିନରେ ବାଲେଶ୍ୱରରେ ପହଞ୍ଚି ଗଲା । ବର୍ତ୍ତମାନ ସମସ୍ତ ପ୍ରକାର ଅଭାବ ଓ ଦୁର୍ଯୋଗ ଗତ ହୋଇଅଛି । ନବନିଯୁକ୍ତ ଲୋକେ କର୍ମ ଶିଖି ଗଲେଣି । ଓଡ଼ିଆ ଏବଂ ଇଂରାଜୀ ସୁନ୍ଦର ରୂପେ ଛପା ହେଉଅଛି । ଦିନେ ବାଲେଶ୍ୱର ଜିଲ୍ଲାର କଲେକ୍ଟର ବିମ୍ସନୋଲଡ଼ୁ ସାହେବ ମୋତେ ଡକାଇ ଖୁବ୍ ଆନନ୍ଦ ମନରେ ଧନ୍ୟବାଦ ଦେଲେ ଏବଂ ଆମ୍ଭମାନଙ୍କ ଉତ୍ସାହ ବର୍ଦ୍ଧନ ନିମନ୍ତେ କଚେରିରୁ ଅନେକ ଗୁଡ଼ିଏ ଫାରମ ଛପାଇବାକୁ ଦେଲେ । ସେହି ସମସ୍ତ ଫାରମ ଛପାଇ ପ୍ରଥମ ଉଦ୍ୟମରେ ଢେର ଟଙ୍କା ଲାଭ ମିଳିଥିଲା । ରଥଦେଖା ଯାତ୍ରୀକାଳ ପରି ପ୍ରେସ ଦେଖିବା ସକାଶେ ଦୁଇ ତିନି ମାସ ପର୍ଯ୍ୟନ୍ତ ଦୂର ଦୂରାନ୍ତରରୁ ଲୋକେ ଧାଡ଼ି ଛୁଟିଥିଲେ । ମଫସଲରୁ ଜମିଦାରମାନେ ସବାରି ଚଢ଼ି ଛପା ଦେଖିବାକୁ ଆସୁଥିଲେ । ଏ କଥା ବୋଇଲେ ପାଠକେ ବିଶ୍ୱାସ କରିବେ ? ବିଶ୍ୱାସ କରନ୍ତୁ ବା ନ କରନ୍ତୁ, ଏହା ଯଥାର୍ଥ ଘଟନା । ଛାପାକାର୍ଯ୍ୟ ଆରମ୍ଭ ହେବାର ଛ ମାସ ଉତ୍ତାରେ ବିମ୍ସନୋଲଡ଼ୁ ଓ ପରବର୍ତ୍ତୀ କଲେକ୍ଟର ଜନ ବାମ୍ସ ସାହେବଙ୍କ ସହିତ ଉତ୍କଳର ପରମ ହିତୈଷୀ ଟି. ରେଭେନ୍ସା ସାହେବ ଦିନେ ପ୍ରାତଃକାଳରେ ଛାପାଖାନାରେ ଉପସ୍ଥିତ ହେଲେ । ପ୍ରେସର ସମସ୍ତ ପଦାର୍ଥ ଦେଖିଲେ । ପ୍ରେସ ସ୍ଥାପନର ସଂକ୍ଷିପ୍ତ ବିବରଣ ଶୁଣି ଆମ୍ଭମାନଙ୍କୁ ଦଶଟଙ୍କା ପାରି-ତୋଷିକ ସ୍ୱରୂପ ଦେଇଗଲେ । ମାତ୍ର ଆମ୍ଭେମାନେ

ସେହି ଟଙ୍କା ଆପଣା ସକାଶେ ନ ନେଇ ସାହେବ ମହୋଦୟଙ୍କ ନାମରେ କୋମ୍ପାନିର ଦୁଇଗୋଟି ସେୟାର ସ୍ୱରୂପ ଜମା କରି ଦେଲୁଁ । କୋମ୍ପାନି ଭାଙ୍ଗିଗଲା ଉତ୍ତାରେ ଲାଭ ସହିତ ତାହାଙ୍କୁ ତିରିଶ ଟଙ୍କା ଫେରାଇ ଦେଇଥିଲୁଁ ।

ଛାପାଖାନା କାର୍ଯ୍ୟ ଆରମ୍ଭ ଦିନଠାରୁ ଅନେକ ମାସ ପର୍ଯ୍ୟନ୍ତ ବାଲେଶ୍ୱର ନିବାସୀ ଦଳବନ୍ଧ ହୋଇ କାର୍ଯ୍ୟ ଦେଖିବାକୁ ଆସୁଥିଲେ । ଆଜି ଛାପାର ବହୁଳ ପ୍ରଚାର ଦିନରେ ଲୋକେ ଏ କଥାକୁ ଆଶ୍ଚର୍ଯ୍ୟ ମଣି ପାରନ୍ତି । ମାତ୍ର ଲଣ୍ଡନ ସହରରେ ପ୍ରଥମ ଛାପାଖାନା ସ୍ଥାପିତ ହେବା ଦିନ ସ୍ୱୟଂ ବ୍ରିଟେନର ମହାମାନ୍ୟ ଅଧୀଶ୍ୱର ମହାମାନ୍ୟା କୁଇନଙ୍କ ସହିତ ଛାପାରୂପ ଅଦ୍ଭୁତ ଘଟନା ଦେଖିବା ସକାଶେ ଛାପାଖାନାକୁ ଶୁଭାଗମନ କରିଥିଲେ । ତାହାପୁଣି ଅତି କଦର୍ଯ୍ୟ କାଠ ନିର୍ମିତ କଳ ଥିଲା ।

ପାର୍ବଣ ପୂଜା ଉପଲକ୍ଷରେ ବାଲେଶ୍ୱର ସହରସ୍ଥ ପ୍ରଧାନ ବ୍ୟବସାୟୀ ମହାଜନ ବାବୁ ମଦନମୋହନ ଦାସଙ୍କ ଘରଠାରୁ ସହରସ୍ଥ ଅନେକ ସମ୍ଭ୍ରାନ୍ତ ଲୋକ ନିମନ୍ତ୍ରିତ ହୋଇଥିଲେ । ବାବୁ ରାଧାନାଥରାୟ ଏବଂ ମୁଁ ମଧ୍ୟ ସେଠାରେ ଉପସ୍ଥିତ ଥିଲୁଁ । ପ୍ରକାଶ୍ୟ ସଭା ମଧ୍ୟରେ ରାଧାନାଥବାବୁ ମୋତେ ଅନାଇ କହିଲେ, "ଆପଣ ଯେଉଁଭାବରେ ପ୍ରେସ କୋମ୍ପାନି ସ୍ଥାପନ କରି ଅଛନ୍ତି, ତାହା ଇତିହାସରେ ସୁବର୍ଣ୍ଣ ଅକ୍ଷରରେ ଲିଖିତ ରହିବା ଉଚିତ ।" ହା ରାଧାନାଥ ! ତୁମ୍ଭେ ମହାଯାତ୍ରା କରି କାଳ ଅକ୍ଷରରେ ଛାପାଖାନା ଉତ୍ପତ୍ତିର ସଂକ୍ଷିପ୍ତ ବିବରଣ ଲେଖି ରଖିବା ସକାଶେ ମୋତେ ଛାଡ଼ି ଯାଇଅଛ !

ଛାପାଖାନାର କାର୍ଯ୍ୟ ସୁନ୍ଦରରୂପେ ଚଳିବାକୁ ଲାଗିଲା । କଚେରିର ଫାରମ ପ୍ରଭୃତି ଛପାଇ କାର୍ଯ୍ୟରୁ ଯଥେଷ୍ଟ ଟଙ୍କା ଲାଭ ହେଉଥିଲା । ସମୟ ସମୟରେ ଖଣ୍ଡିଏ ଖଣ୍ଡିଏ ପୁସ୍ତକ ମଧ୍ୟ ଛାପା ହେଉଥାଏ । ଇତିପୂର୍ବରୁ କଟକ ପ୍ରିଣ୍ଟିଂ କୋମ୍ପାନି ଉତ୍କଳ ଦୀପିକା ନାମ୍ନୀ ସାପ୍ତାହିକ ପତ୍ରିକା ପ୍ରକାଶ କରୁଥିଲେ । ଆମ୍ଭ-ମାନଙ୍କ ପ୍ରେସରୁ ଖଣ୍ଡିଏ ପାକ୍ଷିକ ପତ୍ରିକା ବାହାର କରାଯିବା ସକାଶେ କୋମ୍ପାନିର କାର୍ଯ୍ୟ ନିର୍ବାହିକା ସମିତି ପ୍ରସ୍ତାବ ଏବଂ ସ୍ଥିର କଲେ । ତଦନୁସାରେ 'ବୋଧଦାୟିନୀ' ଏବଂ 'ବାଲେଶ୍ୱର ସମ୍ବାଦ ବାହିକା' ନାମରେ ଖଣ୍ଡିଏ ପତ୍ରିକା ପ୍ରକାଶିତ ହେଲା । ବୋଧ-ଦାୟିନୀ ଅଂଶ ସାହିତ୍ୟ ବିଷୟକ ଏବଂ ବଲେଶ୍ୱର ସମ୍ବାଦ ବାହିକା ଅଂଶ ସମ୍ବାଦ ପ୍ରଚାର ବିଷୟକ । ପତ୍ରିକା ବାହାରିଲା, ମାତ୍ର ଲେଖକର ଅଭାବ । ମୁଁ ଦିନଯାକ ସ୍କୁଲ ଓ ପ୍ରେସକାର୍ଯ୍ୟ କରି ଥକି ପଡ଼େଁ । ରାତିରେ ବିଶେଷ କିଛି କାର୍ଯ୍ୟ କରିବାକୁ ବଳ ଅଣ୍ଟେ ନାହିଁ । ସୁତରାଂ ପତ୍ରିକା ଖଣ୍ଡିକ ଅନିୟମିତ ରୂପେ ବାହାରେ । ପ୍ରାୟ ଚାଳିଶ ପଞ୍ଚାଶ ଜଣ ପତ୍ରିକାର ଗ୍ରାହକ ଥିଲେ । ଆଠ ଦଶ ଜଣଙ୍କ ଠାରୁ ମୂଲ୍ୟ ଆଦାୟ ହେଉଥିଲା । ଅନୁମାନ କୋଡ଼ିଏ ପଚିଶ ଜଣ ମାତ୍ର ତାହା ପଢ଼ୁଥିଲେ କି ନାହିଁ ସନ୍ଦେହ । ଯାହାହେଉ ଛାପାକାର୍ଯ୍ୟ ସୁନ୍ଦର ରୂପେ ଚଳୁଥାଏ ।

(ଉ: ସା: ୨୨ଶ ଭାଗ ୮ସଂଖ୍ୟା)

---

## ୧୭

## ମଫସଲରେ ସ୍କୁଲ ସ୍ଥାପନ ଚେଷ୍ଟା

ଆମ୍ଭମାନଙ୍କ ପୂର୍ବୋକ୍ତ ସମାଜରେ ପ୍ରସ୍ତାବ ହେଲା, ଭାଷାର ବହୁଳ ପ୍ରଚାର ନିମନ୍ତେ ମଫସଲ ମାନଙ୍କରେ ସ୍କୁଲ ସ୍ଥାପନ କରାଯିବା ଉଚିତ । ସ୍ଥିର ହେଲା, ମଫସଲର ପ୍ରତ୍ୟେକ ବଡ଼ ବଡ଼ ଗ୍ରାମରେ ସ୍କୁଲ ସ୍ଥାପନ

ସକାଶେ ଚେଷ୍ଟା କରାଯିବ । ବର୍ତ୍ତମାନ ଏ ପ୍ରସଙ୍ଗ ଲେଖିବା ସମୟରେ ମନ ମଧ୍ୟରେ କିଞ୍ଚିତ ହାସ୍ୟୋଦ୍ରେକ ହେଉଅଛି । ପ୍ରସ୍ତାବକାରୀ ସବୁଗୁଡ଼ିକ ଧନହୀନ ଏବଂ ବିଦ୍ୟାଶୂନ୍ୟ ଭଟ୍ଟାଚାର୍ଯ୍ୟ । କି ସାହସରେ ଏପରି ଅର୍ଥସାଧ୍ୟ ଦୁରୂହ କାର୍ଯ୍ୟ ସାଧନ ସକାଶେ ମନ ବଳାଇଥିଲୁଁ । ଯାହାହେଉ ପ୍ରଥମ ଆମ୍ଭମାନଙ୍କ ଲକ୍ଷ୍ୟସ୍ଥଳ ହେଲା ରେମଣା ଗ୍ରାମ । ରେମଣା ବାଲେଶ୍ୱର ସହରଠାରୁ ପଶ୍ଚିମରେ ପ୍ରାୟ ତିନି କୋଶ ଦୂର । ବହୁକାଳ ପୂର୍ବରୁ ଏହି ଗ୍ରାମର ନାମ ବଙ୍ଗ ଏବଂ ଉତ୍କଳ ଦେଶରେ ସୁବିଖ୍ୟାତ । ଗୋପୀନାଥଜୀଙ୍କ ବିଗ୍ରହ ମନ୍ଦିର ଏହି ଗ୍ରାମରେ ବିରାଜିତ । ଚୈତନ୍ୟଦେବ ପୁରୀ ଯାତ୍ରା ସମୟରେ ଏହି ମନ୍ଦିରରେ ବାସ କରି ଯାଇଥିଲେ । ଅତି ପୂର୍ବେ ବୃନ୍ଦାବନ ଧାମ ନିବିଡ଼ ଅରଣ୍ୟରେ ଆଚ୍ଛାଦିତ ଥିଲା—ସେହି ଧାମର ମହିମା ପ୍ରଚାରର କାରଣ ଚୈତନ୍ୟଦେବ ଅଟନ୍ତି । ବୃନ୍ଦାବନ ଧାମରେ ଗୋବିନ୍ଦଜୀ ବିଗ୍ରହ ସ୍ଥାପିତ ହେବା ଉତ୍ତାରେ ତାଙ୍କର ଅର୍ଚ୍ଚନା ସକାଶେ କି ପ୍ରକାର ବ୍ୟବସ୍ଥା ଆବଶ୍ୟକ ବୈଷ୍ଣବ ମଣ୍ଡଳୀରେ ଏ ପ୍ରଶ୍ନ ଉଠିଲା । ମାଧବ ପୁରୀ ଗୋସାଇଁ ରେମଣାକୁ ଆସି ଗୋପୀନାଥ ଜୀଉଙ୍କ ପୂଜା ପ୍ରଣାଳୀ ପ୍ରତ୍ୟକ୍ଷ କରିଗଲେ, ତଦନୁସାରେ ଗୋବିନ୍ଦଜୀଙ୍କ ପୂଜା ଅର୍ଚ୍ଚନାର ବ୍ୟବସ୍ଥା କରାଯାଇଥିଲା ।

ପୂର୍ବେ ନିମକଚାଲାଣ ସମୟରେ ସହରର ପ୍ରଧାନ ପ୍ରଧାନ କାୟସ୍ଥ ଅମଲଙ୍କ ବାସସ୍ଥାନ ଥିଲା ରେମଣା । କଲିକତା ନିକଟବର୍ତ୍ତୀ ସାଲିକାସ୍ଥ ପ୍ରଧାନ ଗୋଲା କଚେରିରୁ ଅମଲା ନିଯୁକ୍ତ ହୋଇ ଆସୁଥିଲେ । ପୁଣି ବାଲେଶ୍ୱର ମଧ୍ୟରେ ଟଗୋଟିଏ ବିଖ୍ୟାତ ବାଣିଜ୍ୟସ୍ଥାନ ଥିବା ଯୋଗୁଁ ଏହା ଅନେକ ବାଣିଜ୍ୟ ବ୍ୟବସାୟୀଙ୍କ ବାସସ୍ଥାନ ଅଟେ ।

ଆମ୍ଭେମାନେ ପ୍ରାୟ ସମସ୍ତ ସଭ୍ୟ ଗୋଟିଏ ସ୍କୁଲ ସ୍ଥାପନ ସକାଶେ ରେମଣା ଯାତ୍ରା କଲୁଁ, ଆଉ ସାଙ୍ଗରେ ଗଲେ ସ୍କୁଲ ଡେପୁଟି ଇନ୍‌ସ୍ପେକ୍ଟର ବାବୁ ଶିବଦାସ ଭଟ୍ଟାଚାର୍ଯ୍ୟ । ରେମଣା କାୟସ୍ଥ ପଲ୍ଲୀ ନିକଟରେ ସ୍କୁଲ ସ୍ଥାପିତ ହେଲା । ଆମ୍ଭମାନଙ୍କ ସହପାଠୀ ବାବୁ ନନ୍ଦକୁମାର ଭଟ୍ଟାଚାର୍ଯ୍ୟ ସଙ୍ଗରେ ଯାଇଥିଲେ; ତାଙ୍କୁ ପ୍ରଧାନ ଶିକ୍ଷକ ପଦରେ ନିଯୁକ୍ତ କରାଗଲା । ସେଦିନ କାର୍ଯ୍ୟାରମ୍ଭ ।

ବର୍ତ୍ତମାନ ହିସାବ କରି ଦେଖାଗଲା, ଦୁଇଜଣ ଶିକ୍ଷକ, ଜଣେ ଚାକର ଓ ଅନ୍ୟାନ୍ୟ ବାହାର ଖରଚ ସମଷ୍ଟିରେ ମାସିକ ବ୍ୟୟ ପଚାଶ ଟଙ୍କା ଆବଶ୍ୟକ ହେବ ବୋଲି ହେଲା ! ମାସକୁ ଏତେ ଗୁଡ଼ାଏ ଟଙ୍କା କାହୁଁ ଆସିବ ? ଅପରିଣାମଦର୍ଶୀଙ୍କ ପକ୍ଷରେ ଶେଷ ଅବସ୍ଥା ଯାହା ଘଟେ, ଆମ୍ଭମାନଙ୍କ ଅବସ୍ଥା ସେହିପରି ଶୋଚନୀୟ ହୋଇ ପଡ଼ିଲା । ସଭାରେ ବସି ସମସ୍ତେ ସମସ୍ତଙ୍କ ମୁହଁକୁ ଅନାଇବାକୁ ଲାଗିଲୁଁ । ଶେଷରେ ଚାନ୍ଦା ସଂଗ୍ରହ କଥା ସ୍ଥିର ହେଲା । ମହାରାଜା ବାହାଦୁର ( ସେ ସମୟରେ ବାବୁ ବୈକୁଣ୍ଠନାଥ ଦେ ) କହିଲେ, ଚାନ୍ଦା ସଂଗ୍ରହର ପ୍ରୟୋଜନ ନାହିଁ । ସମସ୍ତ ବ୍ୟୟ ସେ ଏକାକୀ ବହନ କରିବା ସକାଶେ ପ୍ରସ୍ତୁତ ହୋଇ ଏକ ବର୍ଷର ଖରଚ ନିମନ୍ତେ ଅଗ୍ରିମ ୬୦୦ ଟଙ୍କା ମୋ ହସ୍ତରେ ପ୍ରଦାନ କଲେ । ବର୍ତ୍ତମାନ ପର୍ଯ୍ୟନ୍ତ ରେମଣା ସ୍କୁଲର କାର୍ଯ୍ୟ ବେଶ୍ ଉନ୍ନତ ଅବସ୍ଥାରେ ଚାଲୁଅଛି । ରେମଣାବାସୀ ବୈକୁଣ୍ଠଗତ ମହାରାଜା ବୈକୁଣ୍ଠନାଥ ଦେ ବାହାଦୁରଙ୍କ ପବିତ୍ର ନାମ ଚିରକାଳ ସ୍ମରଣ କରିବେ ।

(ଉ: ସା: ୮ମ ଭାଗ ୨ୟ ସଂଖ୍ୟା)

———

## ୧୭
## ଓଡ଼ିଆ ଭାଷାର ସଂକଟ

ବାଲେଶ୍ୱର ଜିଲ୍ଲାର ସୋର ଗ୍ରାମନିବାସୀ ପଣ୍ଡିତ ସଦାଶିବ ନନ୍ଦ ବାଲେଶ୍ୱର ଗବର୍ଣ୍ଣମେଣ୍ଟ ସ୍କୁଲରେ ଓଡ଼ିଆ ପଣ୍ଡିତ ପଦରେ ନିଯୁକ୍ତ ଥିଲେ । ଓଡ଼ିଆ ଆଉ ସଂସ୍କୃତ ପଢ଼ାଇବା ତାହାଙ୍କର କାର୍ଯ୍ୟ ଥିଲା । ନନ୍ଦ ଆପଣେ ପେନସନ୍ ନେବାରୁ ତାହାଙ୍କ ପଦରେ ବଙ୍ଗଦେଶବାସୀ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ନିଯୁକ୍ତ ହୋଇ ଆସିଲେ । ବୋଧକରି ସେ ମନରେ କରି ଆସିଥିଲେ, ଓଡ଼ିଆଟା ପଢ଼ାଇବା ତାହାଙ୍କ ପକ୍ଷରେ ଅସହଜ ହେବ ନାହିଁ । ଭଟ୍ଟାଚାର୍ଯ୍ୟ ଗୁରୁ ଛ'ମାସ ପରିଶ୍ରମ କରି ସ୍କୁଲର ସମସ୍ତ ଓଡ଼ିଆ ଛପା ପାଠ୍ୟ ପୁସ୍ତକ ଗୁଡ଼ିକ ପଢ଼ି ପକାଇଲେ । ହେଲେ କଣ ମୂଳ କଥାଟାରେ ରହିଲା ବଖେଡ଼ା । ଖୁବ୍ ଚେଷ୍ଟା କରି ମଧ୍ୟ ଓଡ଼ିଆ କଥା ତ କହି ପାରିଲେ ନାହିଁ, ଆଉ "ଣ" ଏବଂ "ଳ" ଉଚ୍ଚାରଣ କରିବା ତାହାଙ୍କ ପକ୍ଷରେ ନିତାନ୍ତ ଅସାଧ୍ୟ ହୋଇପଡ଼ିଲା । ଭଟ୍ଟାଚାର୍ଯ୍ୟଙ୍କ ବୟସ ସେ ସମୟରେ "ପଞ୍ଚାଶତଂ ବନଂ ବ୍ରଜେତ୍" ପ୍ରାୟ । ବୃଦ୍ଧ କାଠୁଆ ଜିଭରେ ଅନଭ୍ୟସ୍ତ ଅକ୍ଷର ଉଚ୍ଚାରଣ କରିବା କଣ ସହଜ କଥା ? 'ଳ' କୁ ଉଚ୍ଚାରଣ କରନ୍ତି 'ଡ', 'ଣ' କୁ ଉଚ୍ଚାରଣ କରନ୍ତି 'ନୋ' । ଯଥା "ହେ ବାଡ଼କ ଗନୋ"—ତାଙ୍କ କଥା ଶୁଣି ଶ୍ରେଣୀଯାକ ଛାତ୍ର ଠୋ ଠୋ କରି ହସି ପକାନ୍ତି । ଏପରି ଅପମାନ ଏଡ଼େ ବଡ଼ ପଣ୍ଡିତଟାଙ୍କ ଦେହ କେତେକେ ସହେ ? କାମ ଅଟକିଲେ ବୁଦ୍ଧି ବାହାରେ । ଦିନେ ଭଟ୍ଟାଚାର୍ଯ୍ୟ ସ୍କୁଲକୁ ଆସି ପିଲାମାନଙ୍କ ଆଗରେ କହି ପକାଇଲେ—

"ଆରେ ଉଡ଼ିଆ ତ ସ୍ୱତନ୍ତ୍ର ଭାଷା ନୟ । ବାଙ୍ଗଲାର ବିକୃତି ମାତ୍ର । ଉଡ଼େ ପଡ଼ାର ଆଉ ଦରକାର ନାଇଁ ।" ଅବଶ୍ୟ ମୁଁ ଠିକ୍ ଜାଣେନାହିଁ, ବୋଧକରେ ପିଲାଗୁଡ଼ାକ ଖୁବ୍ ଆନନ୍ଦରେ ମନ ମଧ୍ୟରେ ଆଶୀର୍ବାଦ କରିଥିବେ·—, "ପଣ୍ଡିତେ ସର୍ବଜୀବୀ ହୋଇ ଏହିଠାରେ ନିଶ୍ଚିନ୍ତରେ ବସିଥାଅ ।" କାରଣ ଓଡ଼ିଆ ପଢ଼ିବା ସେ ସମୟ ପିଲା-ମାନଙ୍କ ପକ୍ଷରେ ବଡ଼ ହରବରର କଥା ଥିଲା । ବର୍ତ୍ତମାନ ସମୟ ପରି ସେ ସମୟରେ Second Lgnguage ବୋଲି ଓଡ଼ିଆ ପଢ଼ାଟା ବିଷୟରେ କିଛି ଧର ପଗଡ଼ ନ ଥିଲା । ଯାହାର ଇଚ୍ଛାହେଲା ପଢ଼୍-କେହି ନ ପଢ଼ିଲା ତ କ୍ଷତି ନାହିଁ । ପଢ଼ୁଆ ପିଲାମାନଙ୍କର ତ ଏହି ଅବସ୍ଥା । ଏଣେ ଗୋଡ଼ଠାରୁ ମୁଣ୍ଡଯାଏଁ ସବୁ ଶ୍ରେଣୀରେ ବଙ୍ଗାଳୀ ମାଷ୍ଟର । ଓଡ଼ିଆ ପଦେ ଟାଣି କଥା ପଦେ ବୋଲିବାକୁ କେହି ନାହିଁ । ପଣ୍ଡିତଙ୍କର ତ ପଡ଼ିଗଲା ପୋ' ବାର ।

"ଉଡ଼ିଆ ସ୍ୱତନ୍ତ୍ର ଭାଷା ନୟ" ଲୁଚ୍ଛା ମୁହଁରେ କହିଲେ ତ ହେବ ନାହିଁ । ପ୍ରମାଣ କରାଇବାକୁ ହେବ । ପଣ୍ଡିତେ ଖଣ୍ଡିଏ ଗ୍ରନ୍ଥ ରଚନା କରିବାକୁ ବସିଗଲେ । ନାମ ହେଲା—"ଉଡ଼ିଆ ସ୍ୱତନ୍ତ୍ର ଭାଷା ନୟ ।" ଛାପାବହି ବାହାରିଲା । ବଙ୍ଗାଳୀ ହେଡ଼ମାଷ୍ଟର ଖଣ୍ଡିଏ ପୁସ୍ତକ ସହିତ ଇନ୍ସପେକ୍ଟର ସାହେବଙ୍କଠାକୁ ଖଣ୍ଡିଏ ରିପୋର୍ଟ ପଠାଇଲେ । ସେ ସମୟ ସ୍କୁଲ ଇନସ୍ପେକ୍ଟର-ଆର. ଏଲ. ମାର୍ଟିନ୍ । ତାଙ୍କ ହେଡ଼ ଅଫିସ ଥିଲା ମେଦିନୀପୁରରେ । ଅଫିସର ସମସ୍ତ କର୍ମଚାରୀ ଥିଲେ ବଙ୍ଗାଳୀ । ବାଲେଶ୍ୱରଜିଲ୍ଲାର ବଙ୍ଗାଳୀ ଡେପୁଟୀ ଇନ୍ସ-ପେକ୍ଟରଙ୍କ ଅନୁକୂଳ ମତ ପିଠିରେ ନେଇ, ହେଡ଼-ମାଷ୍ଟରଙ୍କ ରିପୋର୍ଟ ଇନ୍ସପେକ୍ଟରଙ୍କ ଅଫିସରେ ଉପସ୍ଥିତ ହେଲା ।

ସେ ସ୍ଥାନରୁ ଚଞ୍ଚଳ ହୁକୁମ ବାହାରି ବାଲେଶ୍ୱର ହେଡ଼ମାଷ୍ଟରଙ୍କଠାରେ ଉପସ୍ଥିତ । ସେଥିର ସାରମର୍ମ-

'ସତ୍ୟବାଦୀ—୧୩୨୪ ଦ୍ୱିତୀୟଭାଗ—୮ମ— ୨ଶ ସଂଖ୍ୟାରେ "ବୃଦ୍ଧ ଶ୍ରୀ ଫକୀରମୋହନଙ୍କ ଆତ୍ମଜୀବନୀରୁ ଏକ ଅଧ୍ୟାୟ" ପ୍ରକାଶିତ ହୋଇଥିଲା । ଏହି ଅଧ୍ୟାୟରେ ଓଡ଼ିଆ ଭାଷାର ଉଚ୍ଛେଦ ନିମନ୍ତେ ତତ୍କାଳୀନ ଆନ୍ଦୋଳନର ଚିତ୍ର ଥିବାରୁ ପରିଚ୍ଛେଦଟି ଉପରିସୂଚିତ ନାମରେ ନାମିତ ହୋଇଅଛି । —ସମ୍ପାଦକ

"ବାଲେଶ୍ୱର ଗବର୍ଣ୍ଣମେଣ୍ଟ ସ୍କୁଲରେ କେବଳ ସଂସ୍କୃତ ଆଉ ବଙ୍ଗଳା ପଢ଼ା ହେବ।"

ସେ ସମୟ କେବଳ ସ୍କୁଲ ବୋଲି ନୁହେଁ, ସରକାରୀ ସମସ୍ତ ବିଭାଗରେ ଜଣେ ମଧ୍ୟ ଓଡ଼ିଆ ଉଚ୍ଚପଦସ୍ଥ ଥିଲେ ନାହିଁ । ସମସ୍ତ ବଙ୍ଗାଳୀଙ୍କର ଏକମତ । ସମସ୍ତେ ସମାନ ଓଡ଼ିଆ-ବିଦ୍ୱେଷୀ ଆଉ ବିଦ୍ରୂପକାରୀ । ବର୍ତ୍ତମାନ ସେମାନଙ୍କ ମଧ୍ୟରେ ଆନନ୍ଦ ଉତ୍ସାହର ଚହଳ ପଡ଼ିଗଲା । କାନ୍ତି ଭଟ୍ଟାଚାର୍ଯ୍ୟଙ୍କର ଗୋଡ଼ ତଳେ ପଡ଼ୁ ନାହିଁ । ମନରେ କରୁଛନ୍ତି, "ଉଡ଼ିଶାରେ ଗୋଟାଏ ଅକ୍ଷୟ କୀର୍ତ୍ତି ସ୍ଥାପନ କରିଗଲେ ।"

କେବଳ ଇଂରେଜୀ ସ୍କୁଲରେ ନୁହେଁ, ଆଉ ଆଉ (ଏଡ଼େଡ଼) ସାହାଯ୍ୟକୃତ ସ୍କୁଲମାନଙ୍କରେ ଓଡ଼ିଆ ଉଠିବାର ପ୍ରସ୍ତାବ ଚଳିବାକୁ ଲାଗିଲା । ବଙ୍ଗାଳୀ ଜମିଦାର ମଣ୍ଡଳ ବାବୁ ତାଙ୍କ ମଫସଲ ଜମିଦାରୀରେ ଗୋଟାଏ ନିମ୍ନ ବଙ୍ଗଳା ସ୍କୁଲ ବସାଇ ଦେଲେ ।

କେବଳ ବାଲେଶ୍ୱର ବୋଲି ନୁହେ, ଉତ୍କଳ ଦେଶବାସୀ ସମସ୍ତ ବଙ୍ଗାଳୀ ରାଜକର୍ମଚାରୀମାନଙ୍କର ଏକମତ, ଏକ ପରାମର୍ଶ ଉତ୍କଳ ଭାଷା ଉଠାଇଦେବା ସମସ୍ତଙ୍କର ମତ ଏବଂ ଯତ୍ନ ।

ସେ ସମୟରେ ଉତ୍କଳରେ ବଙ୍ଗାଳୀ ଓଡ଼ିଆ ମଧ୍ୟରେ ଭୟଙ୍କର ଦଳାଦଳି ଚାଲୁଥାଏ । ବର୍ତ୍ତମାନ ଏକପକ୍ଷ ଆନନ୍ଦ ଉତ୍ସାହରେ ଅଭୀଷ୍ଟ ସାଧନରେ ନିଯୁକ୍ତ, ଅନ୍ୟପକ୍ଷ ସମ୍ପୂର୍ଣ୍ଣ ରୂପେ ନୀରବ ଏବଂ ନିଶ୍ଚେଷ୍ଟ ।

ସହସା ଆମ୍ଭମାନଙ୍କ ମସ୍ତକରେ ଯୁଗପତ୍ ସହସ୍ର ବଜ୍ରପାତ ପରି ଜଣାଗଲା । ଶତ୍ରୁମାନଙ୍କ ଆନନ୍ଦ ଉତ୍ସାହ, ବିଦ୍ରୂପ ବାଣୀ ହୃଦୟରେ ତୀର ପରି ବିନ୍ଧି ଯାଉଥାଏ । "ଏଁ, ଏ'କଣ ହେଲା ?" ଆମ୍ଭମାନଙ୍କର ମାତୃଭାଷା କ'ଣ ଆଉ ପଢ଼ି ହେବନାହିଁ ? ଆମ୍ଭମାନଙ୍କର ସେହି କ୍ଷୁଦ୍ର ଦୁର୍ବଳ କମିଟି ବସିଗଲା । ଦିବାରାତ୍ର ଚିନ୍ତା—ରକ୍ଷାର ଉପାୟ କ'ଣ ? ସଞ୍ଜଠାରୁ ରାତ୍ର ଛ'ଘଡ଼ି ଯାଏଁ ସହର-ବାସୀ ପ୍ରଧାନ ପ୍ରଧାନ ଲୋକମାନଙ୍କ ଦ୍ୱାର ଦ୍ୱାର ବୁଲିବାକୁ ଲାଗିଲୁ । କଚେରୀରେ ଅମଲାମାନଙ୍କୁ ଏକତ୍ର କରି ଆତ୍ମରକ୍ଷାର ଉପାୟ ନିର୍ଦ୍ଧାରଣ ନିମନ୍ତେ ପ୍ରାର୍ଥନା କରିବାକୁ ଲାଗିଲୁଁ । ସମସ୍ତେ ଏକ ବାକ୍ୟରେ ଜବାବ ଦେଲେ—

"ଆରେ ବାବୁ ! ଏଟା ହେଲା ସରକାରୀ ମାମଲା । ସରକାର ସ୍କୁଲରେ ଯାହା ପଢ଼ାଇବେ, ଆମ୍ଭମାନଙ୍କ ପିଲାମାନେ ତାହା ପଢ଼ିବେ । ସରକାରୀ ହୁକୁମ ଉପରେ କଥା କହି କଣ ବିପଦରେ ପଡ଼ିବୁଁ ?"

ଅମଲାମାନଙ୍କ ମତ ଶୁଣି ସହରବାସୀ ଜମିଦାର ମହାଜନଗଣ ଆମ୍ଭମାନଙ୍କ କଥା ପଦେ ମଧ୍ୟ ଶୁଣିବାକୁ ନାରାଜ । ଥୋକେ ସାଫ୍ ଜବାବ ଦେଲେ, "ଅମଲାମାନେ ଯେ କଥାରେ ଭରସୁ ନାହାନ୍ତି, ଆମ୍ଭେମାନେ ସେଥିରେ ପଶି କଣ ଜରିମାନା ଦେବୁଁ ?"

ବାବୁ ଗୌରୀଶଙ୍କର ରାୟଙ୍କ ଉଦ୍ଦେଶ୍ୟରେ ଶତ-ସହସ୍ର ପ୍ରଣିପାତ କରୁଥାଉଁ । ସେ ଉତ୍କଳଦୀପିକାରେ ଉତ୍କଳ ଭାଷା ସପକ୍ଷରେ ପ୍ରତିସପ୍ତାହ ଯୁକ୍ତିପୂର୍ଣ୍ଣ ପ୍ରବନ୍ଧ ବାହାର କରୁଥାନ୍ତି । ଆମ୍ଭେମାନେ ବାଲେଶ୍ୱରବାସୀ ସମସ୍ତ ଉତ୍କଳରୁ କେବଳ ତାହାଙ୍କର ଅମୃତମୟ ବାଣୀ ଶୁଣୁଥାଉଁ । ଆମ୍ଭମାନଙ୍କ ବାଲେଶ୍ୱରରେ ନବପ୍ରକାଶିତ "ବାଲେଶ୍ୱର ସମ୍ବାଦ ବାହିକା"ରେ କିଛି କିଛି ଲେଖୁଥାଉଁ ।

ଏଣେ ଆମ୍ଭେମାନେ ନିବୃତ୍ତ ନାହୁଁ । ପ୍ରତିଦିନ, ପ୍ରତିକ୍ଷଣ ଉପାୟ ଅନ୍ୱେଷଣରେ ନିଯୁକ୍ତ ଥାଉଁ । ଦିନେ କଚେରୀବନ୍ଦରେ ସମସ୍ତ ଅମଲାଙ୍କୁ ଏକତ୍ର କରି ଗୋଟିଏ ବକ୍ତୃତା କଲୁଁ । ସେଥିର ସାରମର୍ମ ଏହି—

"ହେ ମହାଶୟଗଣ ! ଏହି ଯେ ସ୍କୁଲମାନଙ୍କରୁ ଓଡ଼ିଆ ଉଠିଯାଇ ବଙ୍ଗଳା ପଢ଼ା ହେଉଛି, ଏହା ସରକାରଙ୍କ ହୁକୁମ ନୁହେ—ବଙ୍ଗାଳୀମାନେ ଚକ୍ରାନ୍ତ କରି ଇନ୍‌ସ୍ପେକ୍‌ଟର ସାହେବଙ୍କୁ ଭୁଲାଇ ଏପରି କରିଛନ୍ତି । ଅଳ୍ପଦିନ ଉତ୍ତାରେ କଚେରୀରୁ ମଧ୍ୟ ଓଡ଼ିଆ ଭାଷା ଉଠାଇ ଦେବେ, ସେଥିର କାରଣ କି ବୁଝିପାରୁନାହାନ୍ତି ? ଏତେବଡ଼ ଅଧିକ ଦରମାର ଚାକିରି ଏବଂ କିରାଣୀଗିରି ସବୁ ବଙ୍ଗାଳୀମାନେ ମାଡ଼ି ବସିଛନ୍ତି । ଆପଣମାନେ ପାଣିରେ ଏତେ ଲାଏକ—ମଉଲବୀ ପରି । ସେହି ପାଣି ଉଠାଇ ଦେଇ ବଙ୍ଗାଳୀମାନେ କିରାଣୀ ହୋଇଗଲେ, ଆପଣମାନଙ୍କ ଏତେ ବିଦ୍ୟା ସବୁ ମାଟି ହେଲା । ଓଡ଼ିଆ ଭାଷା ଉଠିଗଲେ ଏହି ବଙ୍ଗାଳୀମାନଙ୍କ ପୁଅ, ଭାଇ, ଜ୍ଞାତି, କୁଟୁମ୍ବମାନେ ଅମଲା ହୋଇଯିବେ । ଆପଣମାନେ ତ ନିଶ୍ଚୟ ବରଖାସ୍ତ ହେବେ—ଏଣିକି ଆପଣଙ୍କ ପୁଅ ନାତିମାନେ ଆଉ ସରକାରୀ ଚାକିରି ପାଇବେ ନାହିଁ ।"

ଆମ୍ଭମାନଙ୍କ ଏହି ପଦକ କଥା ଶୁଣିବା ମାତ୍ର ସଭାରେ ଭାରି ଗୋଟାଏ ଚହଲ ପଡ଼ିଗଲା । ସମସ୍ତେ ପାଟିକରି କହିବାକୁ ଲାଗିଲେ, "ନାହିଁ—ନାହିଁ—ତାହା କେବେ ହେବ ନାହିଁ । ଆମ୍ଭମାନଙ୍କ ପିଲାମାନେ ସ୍କୁଲରେ ଓଡ଼ିଆ ପଢ଼ିବେ ।"

ଆମ୍ଭମାନଙ୍କୁ ସମସ୍ତେ ଧରି ବସିଲେ—"ଉପାୟ କର—ଉପାୟ କର ।"

ଆମ୍ଭେମାନେ ଉତ୍ତର ଦେଲୁ, "ସହଜ ଉପାୟ, ସରକାରଙ୍କୁ ଦରଖାସ୍ତ ପଠାଇଲେ, ସ୍କୁଲରେ ଓଡ଼ିଆ ପଢ଼ାହେବ । ସୁତରାଂ କେହି ବଙ୍ଗାଳୀ ଅମଲା ହୋଇ ପାରିବେ ନାହିଁ ।"

ଏଣିକି ଆଉ ଡେରି ସହୁ ନାହିଁ । ସମସ୍ତେ ଶୀଘ୍ର ଧରି ବସିଲେ, "ଶୀଘ୍ର ଦରଖାସ୍ତ ତିଆର କର ।"

ଶୁଭକାର୍ଯ୍ୟରେ ମଠ କରିବା ଅନୁଚିତ । ଦିନରାତି ପଡ଼ି ଗୋଟାଏ ଦରଖାସ୍ତ ତିଆର ହେଲା । ପ୍ରାୟ ପାଞ୍ଚ ଶତ ଲୋକ ସେଥିରେ ଦସ୍ତଖତ କରି କଲେକ୍‌ଟରେ ସାହେବଙ୍କ ହଜୁରରେ ଦାଖଲ କଲେ ।

ନାନା କାରଣରୁ ସେ ସମୟରେ ବାଲେଶ୍ୱରବାସୀ ସମସ୍ତ ଇଂରେଜ ହାକିମ ଏବଂ ମିସନାରୀମାନେ ଆମ୍ଭମାନଙ୍କୁ ଅନୁଗ୍ରହ କରୁଥିଲେ । ଆମ୍ଭମାନଙ୍କ ପ୍ରାର୍ଥନାରେ ସମସ୍ତେ ସପକ୍ଷତା କରିବାକୁ ଲାଗିଲେ ।

ସେ ସମୟରେ ବାଲେଶ୍ୱରର କଲେକ୍‌ଟର, ଜନ ବିମସ୍ ସାହେବ ଜଣେ ଭାଷାବିତ୍ ପଣ୍ଡିତ ବୋଲି ଗବର୍ଣ୍ଣମେଣ୍ଟରେ ପରିଚିତ ଥିଲେ । ଆମ୍ଭମାନଙ୍କ ଦରଖାସ୍ତ ତାଙ୍କ ହଜୁରରେ ଦାଖଲ ହେବାରୁ ଅନୁକୂଳ ମତ ପ୍ରକାଶ କରି କମିଶନର ସାହେବଙ୍କ ସମୀପକୁ ପଠାଇ ଦେଲେ । ଓଡ଼ିଆ ଅତି ପ୍ରାଚୀନ ସ୍ୱତନ୍ତ୍ର ଭାଷା । ଏହି ଭାଷା ଦେଶରେ ବହୁଳରୂପରେ ଶିକ୍ଷା ଦିଆ ଯିବା ଉଚିତ । ଏହି ମର୍ମରେ ଖଣ୍ଡିଏ ଇଂରାଜୀ ପୁସ୍ତକ ମଧ୍ୟ ଲେଖି ସରକାରକୁ ପଠାଇ ଦେଲେ ।

ଓଡ଼ିଶାର ପରମବନ୍ଧୁ, ଟି. ରେଭେନ୍‌ସା ସେ ସମୟରେ ଉତ୍କଳର କମିଶନର । କଲେକ୍‌ଟରଙ୍କ ପ୍ରେରିତ ଦରଖାସ୍ତରେ ଆପଣାର ବିଶେଷରୂପେ ଅନୁକୂଳ ମତ ଲେଖି ଗବର୍ଣ୍ଣମେଣ୍ଟକୁ ପଠାଇଦେଲେ । ସରକାରରୁ ହୁକୁମ ଆସିଲା—

"ଓଡ଼ିଶାର ସମସ୍ତ ସ୍କୁଲରୁ ବଙ୍ଗଭାଷା ସମ୍ପୂର୍ଣ୍ଣରୂପେ ଉଠାଇ ଦିଆଯାଉ ଏବଂ ଉତ୍କଳ ଭାଷାର ବହୁଳ ପ୍ରଚାର ନିମନ୍ତେ ସ୍ଥାନେ ସ୍ଥାନେ ସ୍କୁଲ ସ୍ଥାପିତ ହେଉ ।"

କଲେକ୍‌ଟର ମହାତ୍ମା ଜନ୍ ବିମସ୍ ଏବଂ କମିଶନର ମହାତ୍ମା ଟି. ରେଭେନ୍‌ସାଙ୍କ ଅନୁଗ୍ରହ ଚିରକାଳ ଉତ୍କଳବାସୀ ସ୍ମରଣ କରିବେ ।

( ସତ୍ୟବାଦୀ—ଦ୍ୱିତୀୟ ଭାଗ ୮ମ-୯ମ ସଂଖ୍ୟା ୧୩୨୪ ସାଲ )

---

## ୧୮

## ସାଧାରଣ ଶିକ୍ଷା ଓ ଉଚ୍ଚଶିକ୍ଷା

ସନ ୧୮୬୮ ସାଲରେ କେମ୍ବେଲ ସାହେବ ବଙ୍ଗ ବିହାର ଓଡ଼ିଶାର ଲେଫ୍ଟେନେଣ୍ଟ ଗବର୍ଣ୍ଣର ଥିଲେ । ତାଙ୍କ ପରି ଅସାଧାରଣ କର୍ମବୀର ଓ ଶକ୍ତିଶାଳୀ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର କେବେ ଦେଖାଯାଇ ନାହାନ୍ତି । ସରକାରୀ ପ୍ରତ୍ୟେକ ବିଭାଗରେ ପ୍ରଚଳିତ ପୁରାତନ କାର୍ଯ୍ୟପ୍ରଣାଳୀ ପରିବର୍ତ୍ତିରେ ସେ ନୂତନ କାର୍ଯ୍ୟ ବିଧାନ ସ୍ଥାପନକରି ଦେଇ ଯାଇଅଛନ୍ତି । ପ୍ରତିଦିନ ପ୍ରତ୍ୟେକ ମହକୁମାର ମଫସଲ ହାକିମମାନେ ଅସ୍ଥିର ଭାବରେ ଡାକକୁ ଚାହିଁ ବସିଛନ୍ତି—କିଛି ନୂତନ ବିଧାନ ଆସିବ ପରା ! ପ୍ରକୃତରେ ପ୍ରତିଦିନ ନୂତନ ନୂତନ ବିଧାନ ପ୍ରଚଳନ ସମ୍ବାଦ ପ୍ରତି ମହକୁମାକୁ ଆସୁଥିଲା । କଚେରୀରେ ହାକିମ ଏବଂ ଅମଲା-ମାନଙ୍କଠାରୁ ଶୁଣା ଯାଉଥିଲା, କି ଆଶ୍ଚର୍ଯ୍ୟ ! ଜଣେ ମନୁଷ୍ୟ ଏତେ ଅନୁସନ୍ଧାନ ଓ ଏତେ କାର୍ଯ୍ୟ କରିପାରେ ! ସବ୍‌ଡେପୁଟି ଏବଂ କାନଗୋଇ ପଦ କାମ୍ବେଲ ସାହେବଙ୍କ ଦ୍ୱାରା ସୃଷ୍ଟ । ଡେପୁଟି ଏବଂ ସବ୍‌ଡେପୁଟିମାନେ ଘୋଡ଼ା ଚଢ଼ା ଏବଂ ସର୍ଭେ କାର୍ଯ୍ୟ ଶିଖିବାକୁ ବାଧ୍ୟ; ଏ ବିଧାନ କାମ୍ବେଲ ସାହେବଙ୍କ ସମୟରୁ ପ୍ରଚଳିତ ।

ଲେଫ୍‌ଟେନାଣ୍ଟ ଗବର୍ଣ୍ଣର କାମ୍ବେଲ ସାହେବ ପ୍ରସ୍ତାବ କଲେ ଯେ, ଦେଶସ୍ଥ ଲୋକ ସାଧାରଣଙ୍କ ବିଦ୍ୟାଶିକ୍ଷା ନିମନ୍ତେ ସରକାର ତରଫରୁ ବିଧାନ ପ୍ରଚଳନ ଏବଂ ଅଧିକ ପରିମାଣରେ ଅର୍ଥବ୍ୟୟ କରାଯିବା ଉଚିତ । ଏ ସମ୍ବନ୍ଧରେ ସର୍ବସାଧାରଣଙ୍କ ମତ ପରୱାନା ପଠାଇଲେ । ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ସାହେବଙ୍କ ପ୍ରଶ୍ନର ଉତ୍ତର ଦେବା ସକାଶେ ବାଲେଶ୍ୱରରେ ଗୋଟିଏ ମହତୀ ସଭା ଆହୂତ ହେଲା । ରାଜା ଶ୍ୟାମାନନ୍ଦ ଦେଙ୍କ ଦେବୀମନ୍ଦିର ଦୋମହଲା ବାରନ୍ଦାରେ ସନ୍ଧ୍ୟା ସାତ ଘଣ୍ଟାରେ ସଭାର କାର୍ଯ୍ୟ ଆରବ୍‌ଧ ହେଲା । ସଭାରେ ଡେପୁଟି, ମୁନସଫ, ଇଞ୍ଜିନିୟର, ସମସ୍ତ ସ୍କୁଲ ମାଷ୍ଟର, ବଡ ବଡ କିରାନି ପ୍ରଭୃତି ତିରିଶ ଚାଳିଶ ଜଣ ବଙ୍ଗାଳୀ ଓ ଓଡ଼ିଆମାନଙ୍କ ପକ୍ଷରୁ ସାତ ଆଠଜଣ ଉପସ୍ଥିତ ଥିଲେ । ସେ ସମୟରେ ବାଲେଶ୍ୱର ସହରବାସୀ ମହାଜନ ଓ ସମ୍ଭ୍ରାନ୍ତ ଲୋକମାନେ ଏ ପ୍ରକାର ସାଧାରଣ ସଭା ସମିତିରେ ଯୋଗ ଦେବାକୁ ପସନ୍ଦ କରୁନଥିଲେ । ସଭା ସମିତିର ନାମ ଶୁଣିଲେ ସେମାନଙ୍କର ବେଗମ ବାହାରପଡ଼େ କିମ୍ବା ଭାରି ଜରୁରି କାମ ଯୋଗୁଁ ସେମାନେ ଘରଛାଡ଼ି ଅନ୍ୟସ୍ଥାନକୁ ଚାଲିଯାନ୍ତି । ସଭାସମିତି ଅର୍ଥ ସାଧାରଣ ରୂପେ ବୁଝି ରଖିଥିଲେ ଯେ, ଭେଦାରେ ଟଙ୍କା ଦେବାକୁ ପଡ଼ିବ ।

ସେ ସମୟରେ ଓଡ଼ିଆଭାଷା ହେଲା ବଙ୍ଗାଳୀ ଓଡ଼ିଆ ଦୁଇ ଜାତି ମଧ୍ୟରେ ଦଳାଦଳି ଚାଲୁଥିଲା । ଗବର୍ଣ୍ଣମେଣ୍ଟ ସ୍କୁଲର ପଣ୍ଡିତ ଶ୍ରୀ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ବଙ୍ଗାଳୀ ଦଳର ନେତା ଥିଲେ ।

ଜଣେ ବଙ୍ଗାଳୀ ଇଞ୍ଜିନିୟର ପ୍ରଥମେ ଠିଆହୋଇ ସଭାର ଉଦ୍ଦେଶ୍ୟ ସଭ୍ୟମାନଙ୍କୁ ବିସ୍ତାରିତ ରୂପେ ବୁଝାଇ ଦେଲେ । ତାହାଁ ଉତ୍ତାରୁ ଆଉ ଜଣେ ବଙ୍ଗବାସୀ ଏବଂ ପଣ୍ଡିତ କାନ୍ତିଚନ୍ଦ୍ର ବିସ୍ତାରିତ ବକ୍ତୃତା ଯୋଗେ ପ୍ରଥମ ବକ୍ତାଙ୍କ ପକ୍ଷ ଅନୁମୋଦନ ଏବଂ ସମର୍ଥନ କଲେ । ସେମାନଙ୍କ ବକ୍ତୃତା ଦ୍ୱାରା ସଭାସ୍ଥ ସମସ୍ତ ସଭ୍ୟ ବୁଝିଗଲେ ଯେ, ଗବର୍ଣ୍ଣମେଣ୍ଟ ହାଇ ଏଡ଼ୁକେଶନ ଅର୍ଥାତ୍ ଉଚ୍ଚ ଇଂରାଜୀ ଶିକ୍ଷାର ସ୍କୁଲମାନ ସହରରୁ ଉଠାଇ ଦେଇ ମଫସଲରେ ଦେଶୀୟ ଭାଷାର ସ୍କୁଲମାନ ବସାଇ ସର୍ବସାଧାରଣ ଇତର ଲୋକଙ୍କ ଘରର ପିଲାମାନଙ୍କୁ ଶିକ୍ଷା ଦେବାକୁ ଇଚ୍ଛା କରୁଅଛନ୍ତି । ଏଥିଯୋଗେ ଆମ୍ଭମାନଙ୍କର ଘୋର ଅନିଷ୍ଟ ଜାତ ହେବାର ସମ୍ଭାବନା । ଏଥିକୁ ଗବର୍ଣ୍ଣମେଣ୍ଟଙ୍କ ପ୍ରସ୍ତାବ

ବିପକ୍ଷରେ ପ୍ରତିବାଦ କରିବା ସମ୍ପୂର୍ଣ୍ଣରୂପେ ଆମ୍ଭମାନଙ୍କ ପକ୍ଷରେ ଉଚିତ ।

ଦେଶସ୍ଥ ସର୍ବସାଧାରଣ ଓ ଅସମର୍ଥ ଲୋକମାନଙ୍କ ଘରର ପିଲମାନଙ୍କୁ କୌଣସିରୂପେ ବିଦ୍ୟାଶିକ୍ଷା ଦିଆଯିବା ଉଚିତ । ସେ ସମୟରେ ମୋ ମନରେ ଏହି ବିଷୟ କ୍ଷୀଣଭାବରେ ଉଦିତ ହୋଇଥିଲା । ଏଥିପାଇଁ ଆମ୍ଭମାନଙ୍କ ଗ୍ରାମ ଓ ସମୀପବର୍ତ୍ତୀ ଗ୍ରାମମାନଙ୍କରୁ ପିଲମାନଙ୍କୁ ସଂଗ୍ରହକରି ସ୍କୁଲରେ ପଢ଼ାଉଥିଲି । ବହି କିଣିବାକୁ କିମ୍ବା ସ୍କୁଲ ଦରମା ଦେବାକୁ ଅସମର୍ଥ ପିଲମାନଙ୍କୁ ହାତରୁ ପଇସା ଦେଉଥିଲି । ମିସନାରି ସ୍କୁଲର ପିଲମାନଙ୍କ ଦେୟ ବେତନ ମାସକୁ ଅଣାଏ ଦୁଇଅଣା ଥିଲା । ନିତାନ୍ତ ଅସମର୍ଥ ପିଲମାନେ ବିନା ବେତନରେ ପଢ଼ୁଥିଲେ ।

ଗବର୍ଣ୍ଣମେଣ୍ଟ ଗରିବ ପିଲମାନଙ୍କୁ ପଢ଼ାଇବା ସକାଶେ ପ୍ରସ୍ତାବ କରୁଅଛନ୍ତି ଶୁଣି ମୋ ମନରେ ଅତ୍ୟନ୍ତ ଆନନ୍ଦ ଜାତ ହେଲା । ମନରେ କଲି, ସରକାର ଯଦି ଇଂରାଜୀ ସ୍କୁଲ ଉଠାଇ ଦିଅନ୍ତି, ତେବେ ବଡ଼ ଲୋକଙ୍କ ପିଲମାନେ କୌଣସି ରୂପେ ପାଠ ପଢ଼ି ପାରିବେ, ମାତ୍ର ମଫସଲରେ ସ୍କୁଲ ବସିଲେ ଅନେକ ଦରିଦ୍ର ପିଲା ପାଠ ପଢ଼ିବାକୁ ସୁଯୋଗ ପାଇବେ । ତାହାହେଲେ ଦେଶରୁ ଅନେକ ପାଠୁଆ ବାହାରିବେ ।

ପଣ୍ଡିତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ବକ୍ତୃତା ସମାପ୍ତ ହେବାରୁ ମୁଁ ଠିଆ ହୋଇ ସାଧାରଣ ଶିକ୍ଷାର ଉପକାରିତା ବିସ୍ତାରିତରୂପେ ବୁଝାଇବାକୁ ଲାଗିଲି । ବକ୍ତବ୍ୟ ଶେଷ କରି ମୁଁ ଆପଣା ସ୍ଥାନରେ ବସିବା ମାତ୍ରକେ ବାରୁଦରେ ନିଆଁ ଲାଗିଲା ପରି କାନ୍ତି ପଣ୍ଡିତେ ଉତ୍ତେଜିତ ଭାବରେ ଭୟଙ୍କର ଚିତ୍କାର କରି ବକ୍ତୃତା କରିବାକୁ ଲାଗିଲେ । ତାଙ୍କ ବକ୍ତୃତା ସମାପ୍ତ ହୁଅନ୍ତେ ମୁଁ ପୁଣି ଠିଆ ହୋଇ ତାଙ୍କ ଯୁକ୍ତିମାନ ଖଣ୍ଡନ କରି ମୋ ମତ ସପକ୍ଷରେ କେତେଗୁଡ଼ିଏ କଥା କହିଲି । ସେ ଭୟଙ୍କର ଚିତ୍କାର ଶବ୍ଦରେ ଟୋମହଲ୍ ଘରଟା କମ୍ପି ଯାଉଥାଏ । ଥରେ ଦୁଇଥର ନୁହେଁ, ଆଠ ଦଶଥର ବାଦାନୁବାଦ ଚାଲିଲା । ଗୋଟିଏ ସୁରେଇରେ ଥଣ୍ଡା ଜଳ ରଖା ଯାଇଥାଏ । ବକ୍ତାମାନେ ସମସ୍ତ ସମୟରେ ଗ୍ଲାସେ ଗ୍ଲାସେ ପାଣି ପିଉଥାଆନ୍ତି । ସମସ୍ତ ବଙ୍ଗାଳୀ ମୋ ପ୍ରତି ଉତ୍ତେଜିତ ହୋଇ ପଡ଼ିଲେଣି । କେବଳ ବଗଳାନନ୍ଦ ନାମକ ଜଣେ ବଙ୍ଗବାସୀ ଡେପୁଟି ବାବୁ ସାଧାରଣ ଶିକ୍ଷା ସପକ୍ଷରେ କେତେକ କଥା କହିଥିଲେ । ଅବଶେଷରେ ଧୂର୍ତ୍ତ କାନ୍ତିଚନ୍ଦ୍ର ପଣ୍ଡିତ ଗୋଟିଏ ସୁନ୍ଦର ଉପାୟ ଅବଲମ୍ବନ କଲେ । ଠିଆ ହୋଇ ଖୁବ୍ ଉଚ୍ଚରେ ଚିତ୍କାର କରି କହିଲେ, "ହେ ସଭାସ୍ଥ ମହୋଦୟଗଣ, ମନରେ କରନ୍ତୁ, ଗବର୍ଣ୍ଣମେଣ୍ଟ ହାଇ ଏଡୁକେଶନ ଉଠାଇ ଦେଲେ ଆପଣମାନେ ଜଣ ମାସକୁ ପଚିଶ ତିରିଶ ଟଙ୍କା ଖରଚ କରି ଗୋଟିଏ ଗୋଟିଏ ପିଲାକୁ ପଢ଼ାଇ ପାରିବେ ? ତେବେ ଉଚ୍ଚ ଶିକ୍ଷା ସପକ୍ଷରେ ଯେଉଁମାନେ ଅଛନ୍ତି, ସେମାନେ ହସ୍ତୋତ୍ତଳନ କରନ୍ତୁ ।"

ସମସ୍ତେ ହାତ ଉଠାଇଲେ । ହରି ! ହରି ! ଯେଉଁ କେତେଜଣ ଓଡ଼ିଆ ସଭ୍ୟ ଉପସ୍ଥିତ ଥିଲେ, ସେମାନେ ମଧ୍ୟ ହାତ ଉଠାଇ ଦେଲେଣି । ତତ୍‌କ୍ଷଣାତ୍ ସମସ୍ତଙ୍କଠାରୁ ଦସ୍ତଖତ୍ କରାଇ ନିଆଗଲା । କାନ୍ତି ପଣ୍ଡିତେ ଚିତ୍କାରଟାଏ କରି କହିଲେ, 'ଫକୀରମୋହନ ବାବୁଙ୍କଠାରୁ ଦସ୍ତଖତ୍ କରାଇବେ ନାହିଁ ।' ମୁଁ ମନେ ମନେ କହିଲି, 'ତଥାସ୍ତୁ ?'

(ଉ. ସା. ୨୨ଶ ଭାଗ—୧୨ଶ ସଂଖ୍ୟା)

## ୧୯

## ସ୍କୁଲ କମିଟିର ମେମ୍ବରୀ

ସେ ସମୟରେ ଉତ୍କଳର ସର୍ବତ୍ର ସରକାରୀ ପ୍ରତ୍ୟେକ ମହକୁମାରେ ବଙ୍ଗାଳୀ ପ୍ରଧାନ କର୍ମଚାରୀ

ଥିଲେ । ଓଡ଼ିଆ ଭାଷା ଉଠାଇ ଦେଇ ବଙ୍ଗଳା ଭାଷା ଚଳାଇବା ସମସ୍ତଙ୍କର ଏକମତ । ଆପଣା ଆପଣା ମହକୁମାରେ ସାଧ୍ୟାନୁସାରେ ବଙ୍ଗଳା ଚଳାଇବା ବିଷୟରେ ସମସ୍ତେ ସଚେଷ୍ଟ । ସରକାରୀ କୌଣସି କାର୍ଯ୍ୟ ଖାଲି ହେଲେ ଆପଣା ପକ୍ଷର ଲୋକଙ୍କୁ ନିଯୁକ୍ତ କରିବା ସକାଶେ ପ୍ରାଣପଣେ ଚେଷ୍ଟା । ପବ୍‌ଲିକ୍ ଓଆର୍କସ ଏବଂ ଡାକ ବିଭାଗରେ ଜଣେ ମାତ୍ର ଓଡ଼ିଆର ପ୍ରବେଶାଧିକାର ନ ଥିଲା ।

ସେ ସମୟରେ ବାଲେଶ୍ୱର ଜିଲ୍ଲାରେ ବାବୁ ବୃନ୍ଦାବନ ଚନ୍ଦ୍ର ମଣ୍ଡଳ ସର୍ବପ୍ରଧାନ ଜମିଦାର ଥିଲେ । ଏହାଙ୍କର ନିବାସ ଚୁଁଚୁଡ଼ା । ବାଲେଶ୍ୱର ଜିଲ୍ଲାରେ ବିସ୍ତୃତ ଜମିଦାରୀ । ଲୋକଟି ଖୁବ୍ ସାହସୀ, ବୁଦ୍ଧିମାନ୍, ଦାନଶୀଳ; କିନ୍ତୁ ଭୟଙ୍କର ମଦୁଆଲ ଓ କ୍ରୋଧୀ । ଦିବାରାତ୍ର ମଦବୋତଲ ପାଖରେ ଥାଏ, ମଦବୋତଲ ଓ ଗ୍ଲାସ ବିଛଣାରେ ଥୁଆ ନ ଗଲେ ନିଦ ମାଡ଼େ ନାହିଁ । ବାଲେଶ୍ୱରର ସମସ୍ତ ବଙ୍ଗାଳୀ କର୍ମଚାରୀ ତାଙ୍କୁ ମୁରବି କରି ଧରିଥିଲେ । ସନ୍ଧ୍ୟାଠାରୁ ରାତି ନଅଟା ପର୍ଯ୍ୟନ୍ତ ମଣ୍ଡଳ ବାବୁଙ୍କ କଚେରୀ ଘରେ ସମସ୍ତ ବଙ୍ଗାଳୀ ବାବୁଙ୍କ ବୈଠକ ହୁଏ । ଆଜିକାଲି ବୈଠକରେ ପ୍ରଧାନ ବିଚାର୍ଯ୍ୟ ବିଷୟ—କି ଉପାୟରେ ସରକାରୀ ଅଫିସମାନଙ୍କରୁ ଓଡ଼ିଆ ଉଠାଇ ଦେଇ ବଙ୍ଗଳା ଭାଷା ପ୍ରଚଳନ କରାଯାଇ ପାରେ । ସଭା ସମିତିରେ ବକ୍ତୃତା, କର୍ମଚାରୀମାନଙ୍କୁ ବୁଝାବୁଝି, ସମ୍ବାଦବାହିକାରେ ପ୍ରସ୍ତାବ ଲେଖା ଏବଂ ବଙ୍ଗାଳୀମାନଙ୍କ ସହିତ ଖରାଖରିରେ ତର୍କବିତର୍କ କରିବା ଯୋଗୁ ମୁଁ ବଙ୍ଗାଳୀ ସମାଜର ପରମ ଶତ୍ରୁ ହୋଇ ପଡ଼ିଲି । ବଙ୍ଗାଳୀ ବାବୁମାନେ ଆତ୍ୟନ୍ତିକ ଘୃଣା ଯୋଗୁ ମୋ ନାମ ଧରନ୍ତି ନାହିଁ । ମୋ ନାମ ଦେଇଥିଲେ—'ବେଟା ଶଂ ଲଉର ।'

ବାବୁ ବୃନ୍ଦାବନଚନ୍ଦ୍ର ମଣ୍ଡଳ ଘୋର ମଫସଲ ଗ୍ରାମରେ ଗୋଟିଏ ବଙ୍ଗଳା ସ୍କୁଲ ବସାଇଲେ । ପ୍ରକୃତରେ ତାହା ସ୍କୁଲ ପରି ନୁହେ, କେବଳ ବଙ୍ଗାଳୀ ବାବୁମାନଙ୍କ ଅନୁରୋଧରେ ସେଇଟା ଲୋକଦେଖାଣ ମାତ୍ର । ସେ ସମ୍ବନ୍ଧରେ ବାର୍ତ୍ତାବହରେ ଗୋଟିଏ ବିଦ୍ରୂପାତ୍ମକ ପ୍ରବନ୍ଧ ବାହାରିବାରୁ ବୃନ୍ଦାବନବାବୁ ମୋ ପ୍ରତି ଅଗ୍ନିଶର୍ମା ହୋଇ ପଡ଼ିଲେ । ସୁଯୋଗ ପାଇ ବଙ୍ଗାଳିମାନେ ତାଙ୍କୁ ଉସ୍କାଉ ଥାନ୍ତି ।

ବାଲେଶ୍ୱର ବାରବାଟୀ ସ୍କୁଲରେ ସାତ ଜଣ ମେମ୍ବର । ଛ ଜଣ ବଙ୍ଗାଳୀ, ମୁଁ ଏକା ଜଣେ ମାତ୍ର ଓଡ଼ିଆ । ଦିନେ କମିଟି ଆହୂତ ହେଲା । ଦୈବାତ୍ ମୁଁ ସେଦିନ ଅନୁପସ୍ଥିତ ଥିଲି । ବୃନ୍ଦାବନ ବାବୁ ଛିଡ଼ା ହୋଇ ପ୍ରସ୍ତାବ କଲେ—ଫକୀର ମୋହନଙ୍କୁ କମିଟିରୁ ବାହାର କରି ଦିଆଯାଉ, ନଚେତ୍ ମତେ ବାହାର କରି ଦିଆଯାଉ । କମିଟି ଭୟଙ୍କର ବିପଦରେ ପଡ଼ିଲେ । କାରଣ ସ୍କୁଲଟି ଚାନ୍ଦା ଦ୍ୱାରା ଚଳେ । ବଙ୍ଗାଳୀ ଓ ଓଡ଼ିଆ ଚାନ୍ଦାଦାତା ସମାନ ସମାନ । ଫକୀରମୋହନଙ୍କୁ ଛାଡ଼ିଲେ ସମସ୍ତ ଓଡ଼ିଆ ସ୍କୁଲ ସମ୍ପର୍କ ତ୍ୟାଗ କରିବେ, ବୃନ୍ଦାବନ ବାବୁଙ୍କୁ ଛାଡ଼ିଲେ ବଙ୍ଗାଳୀ ଦଳରୁ ଚାନ୍ଦା ଆଦାୟ ହେବ ନାହିଁ । କମିଟି କିଂକର୍ତ୍ତବ୍ୟ ବିମୂଢ଼ ହୋଇ ପଡ଼ିଲେ । ନାନା ତର୍କ ବିତର୍କ ଉତ୍ତାରେ ବୃନ୍ଦାବନ ବାବୁ ସ୍କୁଲର ସମସ୍ତ ବ୍ୟୟ ଦେବା ପାଇଁ ସ୍ୱୀକୃତ ହେବାରୁ ମୋତେ କମିଟିରୁ ବାହାର କରି ଦେବା ସ୍ଥିର ହୋଇଗଲା । ବଙ୍ଗାଳୀ ବାବୁମାନେ ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲେ; କିନ୍ତୁ ହାୟ ! ପୃଥିବୀରେ କୌଣସି ବିଷୟ ଚିରସ୍ଥାୟୀ ନୁହେଁ । "ନୀଚୈର୍ଗଚ୍ଛତ୍ୟୁପରି ଚ ଦଶା ଚକ୍ରନେମି କ୍ରମେଣ ।" ସୁଖ ଦୁଃଖ ପରିବର୍ତ୍ତନଶୀଳ । ବଙ୍ଗାଳୀ ବାବୁମାନଙ୍କ ଆନନ୍ଦୋଲ୍ଲାସ ଦୀର୍ଘକାଳ ସ୍ଥାୟୀ ହୋଇ ପାରିଲା ନାହିଁ । ଉପସ୍ଥିତ ଘଟନାର ପରବର୍ତ୍ତୀ ସପ୍ତାହର ଗବର୍ଣ୍ଣମେଣ୍ଟ ଗେଜେଟରେ ବାହାରିଲା, "Babu Phakir Mohan Senapaty is appointed

as a member of Balasore Zilla school committee.'" ଗେଜେଟ ପଢ଼ି ବାବୁମାନେ ଏକାବେଳକେ ମୀରବ । ବାବୁ ଶ୍ରୀନାଥ ଦତ୍ତ ବାଲେଶ୍ୱର ଜିଲ୍ଲାସ୍କୁଲର ହେଡ଼୍‌ମାଷ୍ଟର ଥିଲେ । ସେ ଭଦ୍ର, ସଦାଶୟ, ନିରପେକ୍ଷ ଏବଂ ସ୍ପଷ୍ଟବାଦୀ । ସେ ବଙ୍ଗାଳୀ ଦଳରେ ମିଶି ରହିଥିଲେ ସତ୍ୟ; କିନ୍ତୁ ବିବାଦ ବିସମ୍ବାଦକୁ ଭଲ ପାଉ ନ ଥିଲେ । ବାରବାଟୀ ସ୍କୁଲ କମିଟିରୁ ମୋତେ ବାହାର କରି ଦେବା ସମୟରେ ସେ ମୋ ପାଇଁ ବିଶେଷ ଆପତ୍ତି ଉତ୍‌ଥାପନ କରିଥିଲେ । ସେ ଜଣେ ଉକ୍ତ କମିଟିର ମେମ୍ବର । ଗେଜେଟ ବାହାରିବା ଉତ୍ତାରେ ଦିନେ ମୋ ସଙ୍ଗେ ସାକ୍ଷାତ୍ ହେବାରୁ ସେ ମୋତେ ହସି ହସି କହିଲେ, "ମହାଶୟ, କିଛୁତେଇ ଆପନାକେ ଆଁଟତେ ପାରିଗେଲ ନା ।"

ବାବୁମାନଙ୍କ ପକ୍ଷରେ ଆଉ ଗୋଟିଏ ଅପ୍ରୀତିକର କାର୍ଯ୍ୟ ସେହି ସମୟରେ ସଂଘଟିତ ହେଲା । ମୁଁ ଓଡ଼ିଆରେ ଭାରତବର୍ଷର ଇତିହାସ ଲେଖିଥିଲି । ସେହି ପୁସ୍ତକ ଖଣ୍ଡି ଦୁଇ ଭାଗରେ ବିଭକ୍ତ । ଉତ୍କଳର ଛାତ୍ରବୃତ୍ତି ପରୀକ୍ଷାରେ ତାହା ପାଠ୍ୟପୁସ୍ତକ ମଧ୍ୟରେ ଗଣ୍ୟ ହୋଇଥିଲା । ସ୍କୁଲ ଇନ୍‌ସ୍ପେକ୍ଟର ସାତଶତ ଟଙ୍କା ଏବଂ ଓଡ଼ିଶା କମିଶନର ରେଭେନ୍‌ସା ସାହେବ ତିନିଶତ ଟଙ୍କା ମୋତେ ପୁରସ୍କାର ପ୍ରଦାନ କରିଥିଲେ ।

ସେ ସମୟରେ ବାଲେଶ୍ୱରରେ ମିଉନିସିପାଲିଟି ନ ଥିଲା, ଟାଉନ ମଧ୍ୟରେ ଚୌକିଦାରୀ ଟେକ୍‌ସ ଥିଲା । କମିଶନରମାନଙ୍କ ମଧ୍ୟରେ ମୁଁ ଏବଂ ବାବୁ ବୃନ୍ଦାବନ ଚନ୍ଦ୍ର ମଣ୍ଡଳ ଦୁଇ ଜଣ ଥିଲୁଁ । କମିଟିରେ ଆମ ଦୁଇ ଜଣଙ୍କ ମଧ୍ୟରେ ସର୍ବଦା ମତଭେଦ ହେଉଥିଲା । ସେ କଥା ଏଠାରେ ଉଲ୍ଲେଖ କରିବାର ପ୍ରୟୋଜନ ନାହିଁ ।

ବାରବାଟୀ ସ୍କୁଲକମିଟିରୁ ମୋତେ ବାହାର କରି ଦେବା ଯୋଗୁଁ ସମସ୍ତ ଓଡ଼ିଆ ଚନ୍ଦା ଦିଆରୁ ନାମ ଉଠାଇ ନେଲେ । ବାବୁ ବୃନ୍ଦାବନଚନ୍ଦ୍ର ମଣ୍ଡଳ କେତେକ ମାସ ମାତ୍ର ସ୍କୁଲର ବ୍ୟୟ ଚଳାଇ ପରେ ତାହା ବନ୍ଦ କରି ଦେବାରୁ ସ୍କୁଲ ଉଠିଗଲା ।

(ଉ. ସା. ୨୬ଶ ଭାଗ-୪ର୍ଥ ସଂଖ୍ୟା)

———

## ୨୦

## ସମାଜର ରୀତି ନୀତି ପରିବର୍ତ୍ତନ

ଇଂରାଜୀ ଶିକ୍ଷା ତଥା ବିଦେଶୀୟମାନଙ୍କ ସଂସର୍ଗ ହେତୁରୁ ବାଲେଶ୍ୱରସ୍ଥ ଉତ୍କଳୀୟ ସମାଜ ମଧ୍ୟରେ ଗୋଟାଏ ଭୟଙ୍କର ପରିବର୍ତ୍ତନର ସମୟ ଉପସ୍ଥିତ ହେଲାଣି । ବେଶଭୂଷା, ଆହାର ବିହାର, ରୀତି ନୀତି, ପାପ ପୁଣ୍ୟ ପ୍ରଭୃତି ସବୁ ବିଷୟରେ ପରିବର୍ତ୍ତନର ଆରମ୍ଭ । ଆଗେ ବାଳକଠାରୁ ବୃଦ୍ଧଯାଏ ସମସ୍ତଙ୍କ ମୁଣ୍ଡରେ ପେଣ୍ଡାବାଳ ଥିଲା । ଏହି ପେଣ୍ଡାବାଳ ଉଚ୍ଛେଦନ ପ୍ରଥା ପ୍ରଥମେ ସ୍କୁଲ ପଢ଼ୁଆଙ୍କ ଠାରୁ ଆରମ୍ଭ ହେଲା । ସେମାନଙ୍କ ଦେଖାଦେଖି ସହରବାସୀ ଅନ୍ୟାନ୍ୟ ନବ ଯୁବକଙ୍କ ମସ୍ତକରୁ ପେଣ୍ଡାବାଳ କ୍ରମଶଃ ଅଦୃଶ୍ୟ ହେବାକୁ ଲାଗିଲା । କେବଳ ଥୋକେ ଧର୍ମପ୍ରାଣ ଅଭିଭାବକଙ୍କ ଭୟରେ ଅତି ସୂକ୍ଷ୍ମାକାର କେରାଏ ମାତ୍ର ବାଳ ଚୂର୍ଣ୍ଣ ନାମ ଧାରଣପୂର୍ବକ ପ୍ରଚ୍ଛନ୍ନ ଭାବରେ କେତେକ ବର୍ଷ ଯାଏ ଥୋକେ ଯୁବକଙ୍କ ମସ୍ତକ ଉପରେ ବିରାଜିତ ଥିଲା । କାରଣ କୁଶ ବେଣ୍ଟିରେ ଗଣ୍ଠି ନ ପଡ଼ିଲେ ପିତୃଲୋକ ଜଳଗ୍ରହଣ କରିବେ ନାହିଁ । ପରେ ଦୀର୍ଘକାଳ ପର୍ଯ୍ୟନ୍ତ ନିତାନ୍ତ ହିନ୍ଦୁଧର୍ମ ପରାୟଣ ମହାତ୍ମାମାନଙ୍କ ମସ୍ତକରେ ଚୂର୍ଣ୍ଣର ଅସ୍ତିତ୍ୱ ଦୃଶ୍ୟ ହେଉଥିଲା । ଏବେ ଦେଖା ଯାଉଅଛି ଯେ, ସ୍କୁଲ

ପିଲାମାନଙ୍କ ଆଗରେ ଚୁର୍କି ବା ପେଣ୍ଡାବାଲ ଶବ୍ଦ ଉଚ୍ଚାରଣ କଲେ କେଜାଣି ବା ସେମାନେ ସେଥିର ଅର୍ଥ ବୁଝିବା ସକାଶେ ଅଭିଧାନର ପୃଷ୍ଠା ଓଲଟାଇ ବସିବେ । ପୂର୍ବେ ଥୋକେ ମାତ୍ର କେତେକ ଅମଲା କର୍ତ୍ତବ୍ୟ ବୋଧରେ ଯୋତା, ଅଙ୍ଗା, ଚପକନ ବ୍ୟବହାର କରୁଥିଲେ । ଯୋତା ଦାଣ୍ଡଦୁଆର ଟପି ଭିତରକୁ ଯାଉ ନ ଥିଲା । ଗୋରୁ ଚମ ଗୋଡ଼ରେ ଲାଗି ଥିବାରୁ ଯୋତାମଣ୍ଡା ବାବୁମାନେ ଗୋଡ଼ ଧୋଇ ଘର ଭିତରକୁ ଯାଉଥିଲେ । କ୍ରମଶଃ ହାଟ ବାଟରେ କୁର୍ତ୍ତା ଦେଖା ଗଲାଣି । ଆଜି ଯୋତା କ୍ରମେ ଘର ଭିତର ଅଗଣା ଓ ପିଣ୍ଡାରେ ସଞ୍ଚାର କରୁଅଛି । ଅନ୍ୟାନ୍ୟ ଚାଲିଚଳନ, ଆହାର ବିହାର ପ୍ରଭୃତି ସମସ୍ତ ବିଷୟର ପରିବର୍ତ୍ତନ ଆରମ୍ଭ ହୋଇଅଛି । ହିନ୍ଦୁ ତଥା ହିନ୍ଦୁ ସମାଜ ପକ୍ଷରେ ସେ ସମସ୍ତ ଶୁଭ କି ଅଶୁଭର ଚିହ୍ନ, ସେ ବିଷୟର ବିଚାର ଉପସ୍ଥିତ କ୍ଷେତ୍ରରେ ନିତାନ୍ତ ଅପ୍ରାସଙ୍ଗିକ ଅଟେ ।

ସହରବାସୀ ଧନବନ୍ତ ଲୋକମାନଙ୍କ ପୁତ୍ର ଓ ସ୍କୁଲ ପଢ଼ୁଆ ଯୁବକମାନେ କ୍ରମଶଃ ଉଚ୍ଛୃଙ୍ଖଳ ହୋଇ ପଡ଼ୁଅଛନ୍ତି । ଏହା ଅଭିଭାବକମାନଙ୍କ ନିର୍ବୋଧତା ବା ଶାସନାଭାବର ଫଳ ବୋଲିଯାଇପାରେ । ପାଞ୍ଚ ସାତ ବର୍ଷଠାରୁ ପୁତ୍ରକୁ ଶିକ୍ଷା ନିମନ୍ତେ ଅବଧାନ ଜିମା କରିଦେବା, ତହିଁ ଉତ୍ତାରୁ ସ୍କୁଲ ବା ମକ୍ତବକୁ ପଠାଇ ଦେବା ପିତା ବା ଅଭିଭାବକମାନଙ୍କ ପକ୍ଷରେ ଶେଷ କର୍ତ୍ତବ୍ୟ ବୋଲି ଗଣନା ମଧ୍ୟରେ ଆସୁଥିଲା । ବଡ଼ଲୋକ ଘରର ପିଲାମାନଙ୍କର ବାଲ୍ୟସଙ୍ଗୀ ନୀଚଶ୍ରେଣୀର ଚାକର, ଗଉଡ଼, ଭଣ୍ଡାରି ଓ ଯୌବନସଙ୍ଗୀ ଚଞ୍ଚଳପ୍ରକୃତି ସମବୟସ୍କ ତରଳମତି ଯୁବକବୃନ୍ଦ । ପିତା ପୁତ୍ର ମଧ୍ୟରେ କଦାଚିତ୍ ସାକ୍ଷାତ ହୁଏ । ପିତା ସମ୍ମୁଖରେ ମୁଣ୍ଡ ଟେକି ଚାଲିବା ବା ମୁଣ୍ଡ ଟେକି ପିତା ସହିତ କଥା କହିବା ପୁତ୍ର ପକ୍ଷରେ ନିତାନ୍ତ ନିନ୍ଦନୀୟ କାର୍ଯ୍ୟ ବୋଲି ଗଣ୍ୟ ହେଉଥିଲା । ସାଧାରଣତଃ ଧୀର ହୋଇ ଚାଲିବା ଓ ଧୀରେ ଧୀରେ କଥା କହିବା ସୁଶୀଳତାର ଚିହ୍ନ । ଧାଇଁ ବୁଲିବା, ପାଣିରେ ପହଁରିବା ଓ ଖେଳି ବୁଲିବା ନିତାନ୍ତ ଦୁର୍ବୃତ୍ତତାର ଚିହ୍ନ ଅଟେ । ତେବେ ଶିକ୍ଷା ବିସ୍ତାର ସହିତ ସମାଜ ମଧ୍ୟରେ ଯେ ପ୍ରକୃତ ଧର୍ମଭାବ ବିସ୍ତୃତି ଲାଭ କରିଅଛି, ଏ କଥା ନିଃସନ୍ଦେହ ରୂପେ ବୋଲିଯାଇ ପାରେ । ପୂର୍ବେ ମିଥ୍ୟାଭାଷଣ ବା ପୁରୁଷ ପକ୍ଷରେ ବ୍ୟଭିଚାରଟା ଦୋଷ ମଧ୍ୟରେ ଗଣ୍ୟ ହେଉ ନ ଥିଲା । ବଡ଼ଲୋକ, ବିଶେଷତଃ କରଣ ଖଣ୍ଡାଏତମାନଙ୍କ ଗୃହ ପିଶାଚୀ ଉପପତ୍ନୀମାନଙ୍କର ଆରାମପ୍ରଦ ବାସ ସ୍ଥାନ ଥିଲା । ଥୋକେ ଲଜ୍ଜା ସମ୍ପର୍କ ଶୂନ୍ୟ ଧନବନ୍ତ ଲୋକ ବିପଣୀବାସିନୀ ବାରବିଳାସିନୀଙ୍କୁ ବସନ ଭୂଷଣରେ ମଣ୍ଡିତ କରିବା କିମ୍ବା ସେମାନଙ୍କୁ କୋଠାଘର ବନାଇ ଦେବାକୁ ଗୌରବର ବିଷୟ ବୋଲି ଜ୍ଞାନ କରୁଥିଲେ ।

ଉତ୍କୋଚ ଗ୍ରହଣଟା ଦୋଷାବହ ବୋଲି ଗଣ୍ୟ ନ ହୋଇ ବରଞ୍ଚ ପ୍ରଶଂସାର ବିଷୟ ବୋଲି ଥୋକେ ଭାବୁଥିଲେ । ଯେଉଁ ଅମଲାର ଯେତେ ଉପରି ଲାଭ, ସମାଜରେ ତାହାର ସେତିକି ପ୍ରତିଷ୍ଠା—ପ୍ରବାଦ ଥିଲା—"ମିଛ ବଣିଜ, ଚାକର ଚୋର ।" ମିଥ୍ୟା, ବ୍ୟଭିଚାର, ଉତ୍କୋଚ ଥିଲା, ଅଛି ଓ ଚିରକାଳ ଥିବ । ମାତ୍ର ବର୍ତ୍ତମାନ ଶିକ୍ଷିତ ଲୋକ ମିଥ୍ୟା କହିବାକୁ ଅନେକ ପରିମାଣରେ ଭୀତ । ଅସତ୍ୟବାଦୀ ସମ୍ଭ୍ରାନ୍ତ ଲୋକ ସାଧାରଣର ଉପହାସ୍ୟ । ବର୍ତ୍ତମାନ ବ୍ୟଭିଚାରୀର ସାଧୁ ସମାଜରେ ସ୍ଥାନାଭାବ । ଉତ୍କୋଚ ଲୋକନେତ୍ରର ଅନ୍ତରାଳରେ ଫଲ୍‌ଗୁ ସ୍ରୋତସମ ପ୍ରଚ୍ଛନ୍ନ ଭାବରେ ତୁଲ୍ୟ ରୂପେ ପ୍ରବାହିତ ।

ଆଉ ଧର୍ମଚର୍ଚ୍ଚା—ଘର ମଧ୍ୟରେ କର୍ତ୍ତବ୍ୟ କର୍ମର ବିଭାଗ ଥିଲା । ଧର୍ମାନୁଷ୍ଠାନ କାର୍ଯ୍ୟଟା ବୁଢ଼ା ବୁଢ଼ୀ—

ବାଡ଼ିଭିତରେ ବୁଢ଼ୀଙ୍କ ଜମା । ସ୍ନାନାନ୍ତେ କୋଥଳୀ ମେଲାଇ ସେ ସେବା ପୂଜାରେ ବସନ୍ତି । କୋଥଳୀ ମଧ୍ୟରେ ଜଗନ୍ନାଥ ମହାପ୍ରଭୁଙ୍କ ଶୁଖିଲା ଅନ୍ନ ମହାପ୍ରସାଦ ଏବଂ ଖଣ୍ଡେ ଦଉଡ଼ିରେ ମାଳ ଗୁନ୍ଥା-ହୋଇଥିବା କେତେଗୁଡ଼ିଏ ସାନ ସାନ ବଟୁଆରେ ଶ୍ରୀକ୍ଷେତ୍ର, ବୃନ୍ଦାବନ, ମଥୁରା, ପ୍ରୟାଗ ପ୍ରଭୃତି ପୁଣ୍ୟ କ୍ଷେତ୍ରମାନଙ୍କ ପୁଣ୍ୟରେଣୁ ସଞ୍ଚିତ ଥାଏ । ତିଳକ ଲଗାଇସାରି ମହାରଦ ଓ ପବିତ୍ର ରେଣୁରୁ କଣିକାଏ କଣିକାଏ ସେବାକରି ତହିଁଉତ୍ତାରୁ ଫେରାଏ ମାଳ ଗଡ଼ାଇ ଦେଲେ ପୂଜା ସମାପ୍ତ ହୁଏ । ପ୍ରତ୍ୟେକ ସଚଳ ଲୋକଙ୍କ ଘରେ ଶାଳଗ୍ରାମ ଶିଳା ବିରାଜିତଥାନ୍ତି । ବେଳ ପହରକ ସରିକି ଗୃହସ୍ଥମାନଙ୍କ ମଙ୍ଗଳ କାମନା ଏବଂ ପୁଣ୍ୟ ସଞ୍ଚୟ ନିମନ୍ତେ ପୁରୋହିତ ଆସି ଦେବତାଙ୍କ ପୂଜା ବଜାଇ ଦେଇ ସହସ୍ର ନାମ ପାଠକରି ଚାଲିଯାନ୍ତି । ପୁରୋହିତଙ୍କ ପାଖରେ ପୂଜାର ଆୟୋଜନ କରିଦେବା ମଧ୍ୟ ବୁଢା ବୁଢ଼ୀଙ୍କ କାର୍ଯ୍ୟ । ସନ୍ଧ୍ୟା ସମୟରେ ପୁରାଣପାଠକ ଆସି ପୁରାଣ ପାଠ କରନ୍ତି । ଭଜନମାଳ ହସ୍ତରେ ଚଉଁରି ବା ଢୋଲାଇ ଢୋଲାଇ ପୁରାଣ ଶ୍ରବଣ କରିବା ମଧ୍ୟ ବୃଦ୍ଧବୃଦ୍ଧାମାନଙ୍କ ଧର୍ମାନୁଷ୍ଠାନର ଅଙ୍ଗବିଶେଷ ମଧ୍ୟରେ ଗଣ୍ୟ ଥିଲା । ପ୍ରତ୍ୟେକ ବାରବ୍ରତ ପାଳନ ଓ ଉପବାସ ଅବଶ୍ୟ କର୍ତ୍ତବ୍ୟ ମଧ୍ୟରେ ଗଣ୍ୟ ହେଉଥିଲା । ଗୃହର କର୍ତ୍ତା ବିଷୟ କାର୍ଯ୍ୟରେ ଲିପ୍ତ, ଗୃହିଣୀ ତ ଘର ଆବୋରି ବସିଅଛନ୍ତି, ପିଲାଗୁଡ଼ିକ ପାଠପଢ଼ାରେ ନିଯୁକ୍ତ, ଧର୍ମାନୁଷ୍ଠାନ କରିବାକୁ ସେମାନଙ୍କର ସମୟ କାହିଁ ? ମୁଁ ବାଲ୍ୟ, ଯୌବନ ଓ ବର୍ତ୍ତମାନ ଅବସ୍ଥା ପର୍ଯ୍ୟନ୍ତ ଲକ୍ଷ୍ୟକରି ଦେଖି ଆସୁଅଛି, ଏହି ପୌରୋହିତ୍ୟ ପୂଜାପାଠ କ୍ରମଶଃ ଦଶ ବାରପଣି ପର୍ଯ୍ୟନ୍ତ ଉଠିଗଲାଣି ! ଇଂରାଜୀ ଶିକ୍ଷା ଆଂଶିକ ଭାବରେ ଏବଂ ଲୋକଙ୍କ ଅସ୍ୱଚ୍ଛଳତା ଅଧିକ ପରିମାଣରେ ଏହାର କାରଣ ଅଟେ । ଜାହାଜ କାରବାର ସମୟରେ ପୁରୋହିତ-ମାନଙ୍କର ବିଶେଷ ଲାଭ ଏବଂ ସମ୍ମାନ ଥିଲା । ଜାହାଜ ସମୁଦ୍ରକୁ ଯାତ୍ରାକଲେ ପ୍ରତ୍ୟେକ ମହାଜନ ଘରେ ଚଣ୍ଡୀପାଠ, ଶିବଙ୍କଠାରେ ସହସ୍ର କୁମ୍ଭ, ବିଷ୍ଣୁ ସହସ୍ର ନାମ ଶ୍ରାବଣୀ, ସତ୍ୟନାରାୟଣ ପୂଜା ନିମନ୍ତେ ତିନିଚାରି ଜଣ ପୁରୋହିତ ଆବଶ୍ୟକ ହେଉଥିଲେ । ବାଲେଶ୍ୱରରେ ଏତେ ପୂଜକ କାହାନ୍ତି ? କଟକ ଏବଂ ପୁରୀ ଜିଲ୍ଲାର ଅନେକ ପୂଜକ ବ୍ରାହ୍ମଣଙ୍କ ଯଜମାନୀ ଏବଂ ବାର୍ଷିକ ନିରୂପିତ ଥିଲା । ଶୀତକାଳ ଜାହାଜ କାରବାର ସମୟ । ସେହି ପୁରୋହିତମାନେ ଏ ସମୟରେ ଆସି ପୂଜାପାଠ ସମ୍ପାଦନ ଉତ୍ତାରେ ନିରୂପିତ ଅର୍ଥ ଘେନି ଚାଲି ଯାଉଥିଲେ । ସମସ୍ତଙ୍କ ଧାରଣା ଥିଲା, ଜାହାଜ ଧର୍ମଡଙ୍ଗା । ଧର୍ମାନୁଷ୍ଠାନ ନ କଲେ ଡଙ୍ଗା ବୁଡ଼ିଯିବ । ହାୟ ! ହାୟ ! ବାଲେଶ୍ୱରରେ କେଉଁ ମହାପାପ ଯୋଗୁ ସେହି ଧର୍ମଡଙ୍ଗାଗୁଡ଼ିକ ଚିରକାଳ ପାଇଁ ବୁଡ଼ି ଯାଇଅଛି !

ଆମ୍ଭେ ବାଲେଶ୍ୱରବାସିମାନେ ବଙ୍ଗାଳୀବାବୁ-ମାନଙ୍କ ସଂସ୍ରବକୁ ଆସି ସଭ୍ୟତା, ସାଧୁ ବ୍ୟବହାର, ବିଦ୍ୟା ପ୍ରଭୃତି ବିଷୟରେ ଜ୍ଞାନ ଲାଭ କରିଅଛୁଁ । ଏକଥା ଆମ୍ଭେମାନେ ମୁକ୍ତକଣ୍ଠରେ ସ୍ୱୀକାର କରିବାକୁ ବାଧ୍ୟ । ମାତ୍ର ଅଶେଷ ଦୁର୍ଗୁଣର ହେତୁଭୂତ ମଦ୍ୟପାନଟା ସେ ବଙ୍ଗାଳୀବାବୁମାନଙ୍କ ଆଦର୍ଶରେ ଶିକ୍ଷା ଲାଭ କରିଅଛୁଁ, ଏ କଥା ସାହସ ପୂର୍ବକ ବୋଲିବାକୁ ମୁଁ ପ୍ରସ୍ତୁତ । ମୁଁ ଯେଉଁ ସଭ୍ୟତା ବା ତଥାକଥିତ ଜ୍ଞାନ ସଞ୍ଚାରର କଥା କହୁଅଛି, ମଦ୍ୟପାନ ସେ ସଭ୍ୟତାର ଅଙ୍ଗବିଶେଷ ବୋଲି ସେ ସମୟରେ ଗଣ୍ୟ ହେଉଥିଲା । ସେ ସମୟରେ ବାଲେଶ୍ୱରରେ ସାନବଡ଼ ଯେତେଗୁଡ଼ିଏ ବଙ୍ଗାଳୀ କର୍ମଚାରୀ ଥିଲେ, ସମସ୍ତେ ପ୍ରାୟ ମଦ୍ୟପ । କେବଳ ତିନି ଚାରି ଜଣ ମଦିରାବିଦ୍ୱେଷୀ ସ୍କୁଲ ମାଷ୍ଟରଙ୍କ ନାମ ଅଦ୍ୟାବଧି ମୋ ମନରେ ରହିଅଛି । ସେ ସମୟରେ ମଦ୍ୟପାନରେ ଅନଭ୍ୟସ୍ତ ଶିକ୍ଷିତ ଯୁବକ ତଥାକଥିତ ସଭ୍ୟସମାଜରେ

ଅବଜ୍ଞାର ପାତ୍ର ଥିଲା । ମଦ୍ୟତ୍ୟାଗୀ କୌଣସି କୌଣସି ଶିକ୍ଷିତ ଯୁବକ ଆପଣାର ମାନ ସମ୍ଭ୍ରମ ରକ୍ଷା ନିମନ୍ତେ କଞ୍ଜିତ ମଦ୍ୟ କିଣିଆଣି ଗୋଟିଏ ସାନ କାଚ କୁମ୍ପିରେ ଘରେ ରଖିଥାଏ । ତଥାକଥିତ କୌଣସି ଭଦ୍ରସମାଜକୁ ଯିବା ସମୟରେ ଆପଣା ଜିଣରେ କଞ୍ଜିତ ମଦ୍ୟ ବୋଲି ଦେଇ ନିଶା ହୋଇଥିବାର ବାହାନା କରେ ।

ପ୍ରଥମରେ ମୁଁ ମଦ୍ୟକୁ ବିଷତୁଲ୍ୟ ଘୃଣା କରୁଥିଲି । ସେ ସମୟରେ ଯୁବକସମାଜ ମଧ୍ୟରେ ଫିଷ୍ଟି ବା ଭୋଜି ଘର ଗୋଟାଏ ଚଳି ବିନୋଦର ବିଷୟ ଥିଲା । ଯୁବକ ମାନେ ଚାନ୍ଦା କରି ଭୋଜି ଦେଉଥିଲେ । ଭୋଜି ଖାଦ୍ୟ ଦ୍ରବ୍ୟ ମଧ୍ୟରେ ମୂଳ ପଦାର୍ଥ ମାଂସ ତରକାରୀ; ମିଷ୍ଟାନ୍ନ ପ୍ରଭୃତି ଅନ୍ୟାନ୍ୟ ଦ୍ରବ୍ୟ ଆନୁସଙ୍ଗିକ ମାତ୍ର । ଯେଉଁ ଭୋଜିରେ ନାନା ଶ୍ରେଣୀର ଲୋକ ଉପସ୍ଥିତ ଥିବାର କଥା, ସେ ସ୍ଥାନରେ ଗୋପନରେ ମଦ୍ୟ ଚଳେ । କେଜାଣି କି ସକାଶେ ଯୁବକଦଳ ମୋତେ କିଞ୍ଚିତ୍ ସମ୍ମାନ ଏବଂ ଭୟ କରୁଥିଲେ । ମୁଁ ମଦ ନ ଖାଇଲେ ମଧ୍ୟ କେହି କିଛି ଭରସି କହି ପାରୁ ନ ଥିଲେ ।

ବାଲେଶ୍ୱରର ସର୍ବପ୍ରଧାନ ବ୍ୟବସାୟୀ ବାବୁ ମଦନମୋହନ ଦାସଙ୍କ ଭ୍ରାତା ବାବୁ କଶୋରୀ ମୋହନ ଦାସଙ୍କର ଗୋଟିଏ ସୁନ୍ଦର ବଗିଚା ଥିଲା । ଉଦ୍ୟାନଟି ବାଲେଶ୍ୱର ମୋତିଗଞ୍ଜ ବଜାରର ପୂର୍ବ ପ୍ରାନ୍ତବର୍ତ୍ତୀ ଗୋଟିଏ ନିର୍ଜନ ସ୍ଥାନରେ । ପ୍ରତି ଶନିବାର ସନ୍ଧ୍ୟାଠାରୁ ରାତି ଏଗାରଟା ପର୍ଯ୍ୟନ୍ତ ସେଠାରେ ଗୋଟିଏ ବନ୍ଧୁ ସମିତି ବସେ । ସମିତିରେ ତାସ, ଶତରଞ୍ଜି, ମଦ୍ୟ, ଚରସ, ମଦକ, ବାଇନାଚ ଇତ୍ୟାଦି କୌଣସି ପ୍ରକାର ଆମୋଦର ଅଭାବ ନ ଥାଏ । ଆମୋଦ ପ୍ରମୋଦର ସମସ୍ତ ବ୍ୟୟ ଜଣେ ଧନବନ୍ତ ପୁରୁଷ ଆନନ୍ଦ ପୂର୍ବକ ଦେଉଥିଲେ । ସଭ୍ୟମାନଙ୍କ ମଧ୍ୟରେ ଜଣେ ଭଦ୍ରଲୋକ ସହିତ ମୋର ବିଶେଷ ବନ୍ଧୁତା ଥିଲା । ଦିନେ ସନ୍ଧ୍ୟା ସମୟରେ ସେ ମତେ ତାଙ୍କ ଘରଠାକୁ ନିମନ୍ତ୍ରଣ କଲେ । ପ୍ରଥମେ ତାସ ଖେଳ ହେଲା, ତତ୍ପରେ ଗୋଟିଏ ମେଜ ଉପରେ ନାନାପ୍ରକାର ଖାଦ୍ୟ ଦ୍ରବ୍ୟ ସଜିତ ହେଲା । ମେଜ ମଧ୍ୟଦେଶରେ ଗୋଟିଏ ସ୍ୱଚ୍ଛ ବୋତଲରେ ସୁରାଦେବୀ ବା ପିଶାଚୀ ସ୍ଥାପିତା । କେଜାଣି କି ସକାଶେ ମଦିରା ପ୍ରତି ମୋର ଯେ ଏତେ ବିଦ୍ୱେଷ ଏତେ ଘୃଣା ଥିଲା, ତାହା ଏକାବେଳକେ ବିନଷ୍ଟ ହୋଇଗଲା ମୁଁ ଅଭ୍ୟସ୍ତ ଲୋକପରି ସହଜ ମନରେ ବନ୍ଧୁମାନଙ୍କ ସହିତ ପାନ ଭୋଜନ କଲି । ତହିଁ ଉତ୍ତାରେ ପ୍ରତି ଶନିବାର କଶୋରୀମୋହନ ବାବୁଙ୍କ ବଗିଚାରୁ ନିମନ୍ତ୍ରଣ ଆସିବାକୁ ଲାଗିଲା । ମୁଁ ମଦ୍ୟ ପାନରେ ଅଭ୍ୟସ୍ତ ନ ଥିଲି । କେବଳ ମୌଜ ସଭାରେ ବନ୍ଧୁମାନଙ୍କ ସହିତ ସମୟ ସମୟରେ ପାନ କରୁଥାଏଁ । ସେହି ସାମୟିକ ପାନ ମଧ୍ୟ ମୋ ପକ୍ଷରେ ସ୍ୱାସ୍ଥ୍ୟ, ସମ୍ଭ୍ରମ ଓ ଆଂଶିକ ସମ୍ପତ୍ତି ବିନାଶର କାରଣ ହୋଇ-ଥିଲା । ଅବଶେଷରେ ସେହି ମଦିରାପାନ ବିଷବତ୍ ପରିତ୍ୟାଗ କରି ନ ଥିଲେ ମୋହର କଳଙ୍କିତ ଅତି ତୁଚ୍ଛ ଜୀବନଚରିତ ଲେଖି ନିର୍ଲ୍ଲଜ ଭାବରେ ସାଧାରଣଙ୍କୁ ଜଣାଇବା ସକାଶେ ଆଜଯାଏ ମୋର ସତ୍ତା ପୃଥିବୀରେ ବିଦ୍ୟମାନ ନ ଥାନ୍ତା ।

(ଉ. ସା. ୨୮ଶ ଭାଗ—୧ମ ସଂଖ୍ୟା)

---

## ୨୧

## ବ୍ରାହ୍ମଧର୍ମ ଅବଲମ୍ବନ

ବାଲ୍ୟକାଳରେ ମୋର ଦେବ ଦେବୀଙ୍କ ପ୍ରତି ବିଶେଷ ଭୟ ଓ ଭକ୍ତି ଥିଲା । ଆମ୍ଭମାନଙ୍କ ଗୃହଠାରୁ କିଛି ଦୂରରେ ଗୋଟିଏ ଅତି ପୁରୁଣା ବଉଳ ଗଛ ମୂଳରେ ଗ୍ରାମ ଦେବତୀ ଠାକୁରାଣୀ ବିରାଜିତା । ଗୋଟିଏ ମାଠିଆ ମୁହଁ ଉପରେ ପୋଡ଼ା ମାଟିର

ମନୁଷ୍ୟ ମୁଣ୍ଡ ପରି ଗୋଟିଏ ମୁଣ୍ଡ ଥୁଆ ହୋଇଅଛି, ତାଙ୍କ ନାମ ବଉଳ ମଙ୍ଗଳା । ତାଙ୍କ ସମ୍ମୁଖରେ ପାଏ ଓଜନ ଠାରୁ ସେରେ ଦୁଇସେର ଓଜନ ପର୍ଯ୍ୟନ୍ତ ଗୋଟା ଆଠ ଦଶ ମାଙ୍କଡ଼ା ଅକର୍ମଶିଳା ଅନାମିକା ଠାକୁରାଣୀଗୁଡ଼ିଏ ବିରାଜିତା । ପୂଜକ ମାଳୀଘର ଠାକୁରାଣୀ ବେଡ଼ା ଲଗାଓନ୍ତି । ଠାକୁରାଣୀମାନଙ୍କ ଦେହରେ ଏତେ ସିନ୍ଦୂର ବୋଳା ହୋଇଅଛି ଯେ, ଚିମ୍ଟି ପକାଇଲେ ମେଞ୍ଚା ମେଞ୍ଚା ସିନ୍ଦୂର ବାହାରି ପଡ଼ିବ । ଠାକୁରାଣୀ ପାଖରେ ଅନେକଗୁଡ଼ିଏ ମାଟିରେ ତିଆରି ଭଙ୍ଗା ଦଡ଼ ବିଚିତ୍ର ଆକାରର ଘୋଡ଼ା ହାତୀ ଜମା ହୋଇଥାଏ । ଏଗୁଡ଼ିକ ଠାକୁରାଣୀଙ୍କ ବାହନ । ଠାକୁରାଣୀ ଏ ସବୁ ବାହନ ଉପରେ ଚଢ଼ି ଥିବାର କେବେ ଦେଖି ନାହିଁ । ମାତ୍ର ପୂଜାବେଳେ କାଳିଶି ଆସି ସେହି ବାହନରୁ ଗୋଟାଏ ଯୋଡ଼ାଏ କାନ୍ଧରେ ପକାଇ ନାଚିବାର ଦେଖି ଅଛୁଁ । ବସନ୍ତ ବା ବାଡ଼ ପଡ଼ିଲେ ଗାଁ ଭେଦା ପଇସାରେ ଠାକୁରାଣୀ ମାଜଣା ହୁଏ । ମାନସିକ ପୂଜା ବି ଢେର ହୁଏ । ଗ୍ରାମମଧ୍ୟରେ ବିଭା ବନ୍ଦାପନାରେ ଆଗେ ଗ୍ରାମ ଦେବତାଙ୍କୁ ପୂଜିବା ବିଧି । ପୂଜାବେଳେ କାଳିଶି ଆସି ଗାଁର ଭଲ ମନ୍ଦ କଥା କହନ୍ତି । ମୁଁ ସର୍ବଦା ସେହି ଠାକୁରାଣୀଙ୍କୁ ଜୁହାର ହୋଇ ଆସେ । କିଛି ବେମାର ହେଲେ ବା କିଛି ବିପଦ ପଡ଼ିଲେ ଠାକୁରାଣୀଙ୍କୁ ସିନ୍ଦୂର ମାନନ୍ତି । ପରେ ସିନ୍ଦୂର ପଇସାକରି ଦେଲେ ମାଳୀ ଦେଉରୀ (ପୂଜକ) ଠାକୁରାଣୀ ଦେହରେ ଲେପି ଦିଏ, ପଇସାଟିଏ ଦକ୍ଷିଣା ନିଏ ।

ଗ୍ରାମ ମଧ୍ୟରେ ଆମ ଘରଠାରୁ କିଛି ଦୂରରେ ନଣ୍ଡା ଗୋସାଇଁ ମଠ । ମନ୍ଦିର ସିଂହାସନରେ ଚୈତନ୍ୟ, ନିତ୍ୟାନନ୍ଦ ବଡ଼ ବଡ଼ ଯୋଡ଼ିଏ ମୂର୍ତ୍ତି (କାଠର ହେବ) ଏବଂ ପାଷାଣ ଓ ପିତ୍ତଳର ଆଉ ଅନେକଗୁଡ଼ିଏ ମୂର୍ତ୍ତି ବିରାଜିତ । ସେହି ମନ୍ଦିର ସମ୍ମୁଖସ୍ଥ ବଉଳ ଗଛ ମୂଳରେ ଅବଧାନଙ୍କ ଚାଟଶାଳୀ ଥିଲା । ମୁଁ ସେହି ଚାଟଶାଳୀରେ ପଢ଼ୁଥିଲି । ପଢ଼ିବାକୁ ଯାଇ ଠାକୁରମାନଙ୍କୁ ଦର୍ଶନ କରେ, ଜୁହାର ହୋଇ ଆସେ । ସେହି ସମୟରେ ମନରେ କଲି, ବଉଳ ମଙ୍ଗଳା ଠାରୁ ଚୈତନ୍ୟ ମହାପ୍ରଭୁ ବଡ଼ । ଠାକୁରାଣୀଙ୍କ ପ୍ରତି ଆଉ ଭକ୍ତି ରହିଲା ନାହିଁ । ଠାକୁରମା ସ୍ନାନ ସାରି ପୂଜା କରନ୍ତି, ସନ୍ଧ୍ୟାବେଳେ ମାଳା ଜପନ୍ତି । ତାଙ୍କ ଦେଖାଦେଖି ମୁଁ ମଧ୍ୟ ସ୍ନାନ ସମୟରେ 'ପାପୋଽହଂ ପାପ କର୍ମାହଂ' ଇତ୍ୟାଦି ମନ୍ତ୍ର ପଢ଼ି ଗାଧୋଇ ଆସେ । ଗାଧୋଇ ଆସି ଉମା କାତ୍ୟାୟିନୀ ଗୌରୀ ଇତ୍ୟାଦି ଦୁର୍ଗା ଏବଂ ମହାଦେବଙ୍କ ନାମ ଯାହା ଅଭିଧାନରେ ପଢ଼ିଥିଲି, ସେହି ଦେବତାମାନଙ୍କ ନାମ ପଢ଼େଁ । ଠାକୁରମାଙ୍କ ମାଳ ଜପିବାର ଦେଖି ମୋର ମଧ୍ୟ ମାଳ ଜପିବାକୁ ମନ ବଳିଲା । ତୁଳସୀ ମାଳଟିଏ କାହିଁ ପାଇବି ମନ ମଧ୍ୟରେ ଖୋଜୁଥାଏ । ଦିନେ ଉପରଓଳି ହେବ, ମୋତିଗଞ୍ଜ ବଜାରରୁ ଘରକୁ ଆସୁଅଛି, ମୋ ସମ୍ମୁଖ ସଡ଼କ ମଧ୍ୟରେ ଗୋଟିଏ ସୁନ୍ଦର ତୁଳସୀ ମାଳ ପଡ଼ିଥିବାର ଦେଖିଲି—ସେ ମାଳଟି ଯେମନ୍ତ କି ମୋ ପାଇଁ କିଏ ଥୋଇ ଦେଇ ଯାଇଛି । ମୁଁ ଯେ ମନ ମଧ୍ୟରେ ଗୋଟିଏ ମାଳ ଖୋଜୁଅଛି, କିନ୍ତୁ ଏକଥା କାହାରିକୁ କହି ନାହିଁ । ପ୍ରଭୁ ମୋତେ ଏ ମାଳ ଦେଲେ, ଏହା ମନରେ କରି ଘେନି ଆସିଲି ।

"ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।
ହରେ ରାମ ହରେ ରାମ ରାମ ରାମ ହରେ ହରେ ।"

ଠାକୁରମା ଏହି ମନ୍ତ୍ର ପଢ଼ି ମାଳା ଜପନ୍ତି । ମୁଁ ବି ସନ୍ଧ୍ୟା ସମୟରେ ମାଳ ଜପିବାକୁ ଲାଗିଲି ।

ଆମ ଘରେ ଶାଳଗ୍ରାମ ଶିଳା ଥିଲେ । ପୁରୋହିତ ପ୍ରତିଦିନ ପୂଜା କରି ସହସ୍ର ନାମ ପଢ଼ିଯାନ୍ତି । ସମୟ ସମୟରେ ଚଣ୍ଡୀପାଠ ହୁଏ । ମୋ ମନ୍ତ୍ର ପାଠ ଶୁଣିଲେ କେହି କେହି ହସନ୍ତି ।

ଆମ ଘରଠାରୁ ଅଧ କୋଶ ଦୂର ନୂଆବଜାର ପାଖରେ ଝାଡ଼େଶ୍ୱର ମହାଦେବଙ୍କ ମନ୍ଦିର । ମୋ ବଡ଼ମା ସେହି ମହାଦେବଙ୍କର ବଡ଼ ଭକ୍ତ । ବଗିଚାର ପାଚିଲା କଦଳୀ ଆଉ ଦୁଧ ଦହି ଗୁଡ଼ ଏହିସବୁ ଦ୍ରବ୍ୟରେ ପଞ୍ଚାମୃତ ହୁଏ । ଏହି ପଞ୍ଚାମୃତ ମହାଦେବଙ୍କ ଠାରେ ଭୋଗ ଲାଗେ । ବଡ଼ମା ଘରଠାରେ ଜଣେ ବ୍ରାହ୍ମଣ ହାତରେ ପଞ୍ଚାମୃତ ତିଆରି କରାଇ ମହାଦେବଙ୍କ ଭୋଗ ସକାଶେ ପଠାଇ ଦିଅନ୍ତି । ମହାଦେବଙ୍କ ପଣ୍ଡା ବ୍ରାହ୍ମଣ ମହାଦେବଙ୍କର ଅନେକ ମହିମା ପ୍ରକାଶ କରେ । ସେ କହେ, 'ମହାଦେବଙ୍କୁ ଭୋଗ ଦେଇ ଯେ ଯାହା ବର ମାଗିବ, ସେ ସେହି ବର ପାଇବ ।' ପିଲାଦିନେ ଦେଖିଅଛୁ, ମହାଦେବଙ୍କର ବଡ଼ ମହିମା ପ୍ରକାଶ ଥିଲା । ବେମାରି ଭଲ ହେବାପାଇଁ ଅନେକ ଲୋକ ଧାରଣା ପଡ଼ୁଥିଲେ । କଟେରି ନିକଟରେ ମହାଦେବ ମନ୍ଦିର । ଅନେକ ମାମଲାରେ ମୁଦେଇ ମୁଦାଲା ଦୁଇ ପକ୍ଷ ମାମଲାରେ ଜୟୀ ହେବା ପାଇଁ ମହାଦେବଙ୍କୁ ଭୋଗ ମନାସନ୍ତି । ଆଗେ ମହାଦେବଙ୍କଠାରେ ମାମଲାତକାରଙ୍କର ଅନେକ ମିଠେଇ ଭୋଗ ଲାଗୁଥିଲା । ଏଣିକି ଢେର ଊଣା ପଡ଼ି ଗଲାଣି । ଇଷ୍ଟ-ଇଣ୍ଡିଆ-କୋମ୍ପାନି ଲୁଣ ପୋକ୍ତାନ ପୂର୍ବେ ଝାଡ଼େଶ୍ୱର ମହାଦେବଙ୍କୁ ପୂଜା ଦେଉଥିଲେ । ପୂଜାହାରି ପଣ୍ଡା ଆମ ଘରଠାରେ କହେ, 'ଝାଡ଼େଶ୍ୱର ପ୍ରତ୍ୟକ୍ଷ ଦେବତା; ଡାକିଲେ ଜବାବ ଦିଅନ୍ତି, ଆଉ ପାଣି ଦୁଧ ମିଶାଇ ମହାଦେବଙ୍କ ମୁଣ୍ଡରେ ଢାଳିଲେ ପାଣି ବହିଯାଏ, ସେ ଦୁଧ ପିଇ ଦିଅନ୍ତି ।'

ଝାଡ଼େଶ୍ୱରଙ୍କୁ ଦର୍ଶନ କରିବାକୁ ଗଲି । ବୋମ୍ ବୋମ୍ ବାବା ବାବା ଡାକି ଶିବଲିଙ୍ଗ ଉପରେ ଦୁଧମିଶା ପାଣି ଢାଳିଦେଲେ ମହାଦେବ ମୁଣ୍ଡରୁ ଛିଧକ୍ତ୍ ଭୁଡ଼୍ ଭୁଡ଼୍ ଶବ୍ଦ ଶୁଭେ । ପାଣି ଭୁଡ଼ିକିନି ଦିଏ, ଏହା ଦେଖି ମୋ ହୃଦୟରେ ପ୍ରଗାଢ଼ ଭକ୍ତି ଜାତ ହେଲା । ବିଶ୍ୱାସ କଲି, ସତକଥା—ଡାକିଲେ ମହାଦେବ ଜବାବ ଦିଅନ୍ତି । ଦର୍ଶନ କରିବା ସକାଶେ ପ୍ରତି ସୋମବାର, କଦାଚିତ୍ ଅନ୍ୟ ବାରରେ ଯାଏଁ । ପୂଜାହାରି ପାଦୋଦକ; ଅର୍ଥାତ୍ ମହାଦେବଙ୍କ ଉପରେ ଢଳା ପାଣି ବେଲପତ୍ର ଆଣି ଦିଏ । ମୁଁ ଭକ୍ତି ପୂର୍ବକ ପାନ କରେ । ଅନେକ ଦିନ ପର୍ଯ୍ୟନ୍ତ ଭଲକରି ଦେଖିଲି, ଦୁଧ ଆଉ ପାଣି ମିଶାଇ ମହାଦେବଙ୍କ ମୁଣ୍ଡରେ ଢାଳି ଦେଲେ ଠିକ୍ ସେହି ପାଣିମିଶା ଦୁଧ ବହିଯାଏ । ମହାଦେବ ଦୁଧ ଛାଙ୍କି ପିଅନ୍ତି, ଛୁଛାପାଣି ବହିଯାଏ, ସେ କଥା କାହିଁ ? ମୋ ମନ ନିତାନ୍ତ ଦୁର୍ବଳ—ପୁଣି ବୁଦ୍ଧି ଏବଂ ଭକ୍ତି ତତୋଧିକ ଦୁର୍ବଳ । ମହାଦେବଙ୍କଠାରୁ ଭକ୍ତି ଊଣା ହୋଇ ପଡ଼ିଲା ।

ସେହି ସମୟରେ ବାଇବେଲ ଏବଂ ଅନ୍ୟାନ୍ୟ ପୁସ୍ତକ ପାଠ ଏବଂ ପାଦ୍ରି ସାହେବମାନଙ୍କ ସହିତ କଥୋପକଥନ ଦ୍ୱାରା ଜାଣିଲି, ଏକମାତ୍ର ପ୍ରଭୁ ପରମେଶ୍ୱର ଜଗତର ସୃଷ୍ଟିକର୍ତ୍ତା ଏବଂ ପ୍ରଭୁଙ୍କ ପୁତ୍ର ଯିଶୁଖ୍ରୀଷ୍ଟ ଆତ୍ମାର ତ୍ରାଣକାରୀ । ଖ୍ରୀଷ୍ଟଙ୍କ ନାମରେ 'ଡୁବିତ' ନ ହେଲେ ମୃତ୍ୟୁ ଉତ୍ତାରେ ଅନନ୍ତ ନରକରେ ପଡ଼ିବାକୁ ହେବ । ସେହି ସମୟରେ ମନ ମଧ୍ୟରେ ଧାରଣା ଜାତ ହେଲା—ଈଶ୍ୱର ତ ପୃଥିବୀରେ ଆମ୍ଭମାନଙ୍କୁ ସୃଷ୍ଟି କରି ଅଛନ୍ତି, ତାଙ୍କର ଉପାସନା କଲେ ଉଦ୍ଧାର କରିବେ, ଏ ସବୁ ଠାକୁର ଠାକୁରାଣୀ କିଏ ? ପ୍ରତି ଗ୍ରାମରେ ଗ୍ରାମଦେବତା, ମନ୍ଦିରମାନଙ୍କରେ କେତେ ଦେବତା—ଏତେଗୁଡ଼ାଏ ଦେବତାଙ୍କୁ କିପରି ପୂଜା କରିବି ? ଏମାନେ ତ ତ୍ରାଣ କରି ପାରିବେ ନାହିଁ, ପୂଜା କଲେ ବା କ'ଣ ହେବ ? (କବି) ରାଧାନାଥ ବାବୁଙ୍କୁ ଏ ସବୁ କଥା କହିଲି; ଏ ବିଷୟରେ କଣ କରିବା କର୍ତ୍ତବ୍ୟ, ଦୁଇଜଣ ଅନେକ ଦିନ ପର୍ଯ୍ୟନ୍ତ ବସି ବିଚାର କଲୁଁ । ଶେଷରେ ଦୁଇଜଣ-ଯାକ ଏକାଦିନରେ ଖ୍ରୀଷ୍ଟାନ ଧର୍ମ ଗ୍ରହଣ କରିବା ସ୍ଥିର କଲୁଁ । ଶେଷରେ ଦିନେ ରାଧାନାଥବାବୁ

ହିନ୍ଦୁଧର୍ମ ପରିତ୍ୟାଗ କରି ପାରିବେ ନାହିଁ ବୋଲି ସ୍ପଷ୍ଟ ରୂପେ ପ୍ରକାଶ କଲେ । ଏକୁଟିଆ ଖ୍ରୀଷ୍ଟାନ ହେବାକୁ ମୋର ସାହସ ଅଣ୍ଟିଲା ନାହିଁ ।

ବର୍ତ୍ତମାନ ଦେବଦେବୀ ପ୍ରତି ଆଉ ଆସ୍ଥା ନାହିଁ । ମନ ମଧ୍ୟରେ ଈଶ୍ୱର ଚିନ୍ତା କରୁଥାଏଁ, ମାତ୍ର ଈଶ୍ୱରଙ୍କୁ କି ପ୍ରକାରେ ପୂଜା କରିବାକୁ ହୁଏ ଜାଣେ ନାହିଁ । ଏହି ସମୟରେ କଲିକତାରୁ ଜଣେ ବ୍ରାହ୍ମଧର୍ମ ପ୍ରଚାରକ ବାଲେଶ୍ୱରକୁ ଆସିଲେ—ନାମ ଈଶାନ ଚନ୍ଦ୍ର ବସୁ । ତାଙ୍କ ସହିତ ସାକ୍ଷାତ୍ ହେଲା । ତାଙ୍କ ସହିତ ପ୍ରତିଦିନ ସନ୍ଧ୍ୟା ସମୟରେ ଧର୍ମ ସମ୍ବନ୍ଧରେ କଥୋପକଥନ ହୁଏ । ଠିକ୍ ସେହି ସମୟରେ ବଙ୍କିମବାବୁଙ୍କ ଦୁର୍ଗେଶ ନନ୍ଦିନୀ ଉପନ୍ୟାସ ପ୍ରଥମ ବାହାରିଥିଲା—ବାଲେଶ୍ୱରକୁ ଆସି ନ ଥିଲା । ଈଶାନବାବୁ କଲିକତାରେ ସେହି ପୁସ୍ତକ ଖଣ୍ଡିକ ପଢ଼ି ଆସିଥିଲେ । ସେହି ପୁସ୍ତକଗତ ଭାଷା ଏବଂ ବିଷୟ ସମ୍ବନ୍ଧରେ ଖୁବ୍ ପ୍ରଶଂସା କଲେ । ସଙ୍ଗେ ସଙ୍ଗେ ପ୍ରମାଣ କରାଇବାକୁ ଚାହିଁଲେ, ବଙ୍ଗଳା ଭାଷା ବଡ଼ ଭଲ, ଓଡ଼ିଆ ଭାଷାଟା ଭଲ ନୁହେ । ଥରେ ଦୁଇଥର ବୋଲି ନୁହେ, ଶେଷରେ ତିନି ଚାରିଦିନ ପର୍ଯ୍ୟନ୍ତ ସେ ଧର୍ମଚର୍ଚ୍ଚା ଛାଡ଼ି କେବଳ ଭାଷାଚର୍ଚ୍ଚା କରିବାକୁ ଲାଗିଲେ । ମୋ ମନରେ ବଡ଼ ରାଗ ହେଲା, ଆଉ ତାଙ୍କ ସହିତ ସାକ୍ଷାତ୍ କଲି ନାହିଁ ।

ଏହି ଘଟଣାର ଅନେକ ଦିନ ଉତ୍ତାରେ ବାଲେଶ୍ୱର ନିମକ ମାହାଲକୁ ଜଣେ କିରାଣି ବଙ୍ଗଦେଶରୁ ଆସିଲେ · ନାମ ପ୍ରସନ୍ନ କୁମାର ଚଟ୍ଟୋପାଧ୍ୟାୟ । ଶୁଣିଲି, ସେ ଲୋକଟି ବ୍ରାହ୍ମ । ତାଙ୍କ ସହିତ ସାକ୍ଷାତ କରି ବ୍ରାହ୍ମଧର୍ମ ସମ୍ବନ୍ଧରେ କଥୋପକଥନ କଲି । ପ୍ରସନ୍ନବାବୁଙ୍କ ବସା ଝାଡ଼େଶ୍ୱର ମହାଦେବଙ୍କ ମନ୍ଦିର ପଶ୍ଚାଦ୍ଭାଗରେ । ବାବୁଙ୍କ ବସା ଓ ମନ୍ଦିର ମଧ୍ୟଭାଗରେ ଗୋଟିଏ ସରୁ ଗଳି ବାଟ ମାତ୍ର ବ୍ୟବଧାନ । ପ୍ରତି ରବିବାର ରାତିରେ ପ୍ରସନ୍ନବାବୁଙ୍କ ବସାରେ ବ୍ରହ୍ମୋପାସନା ହୁଏ । ଉପାସନା ଉତ୍ତାରେ ଉପାସକମାନେ ବସି ମଦ ଖାଆନ୍ତି । ସେ ସମୟରେ ଥୋକେ ବ୍ରାହ୍ମମାନଙ୍କ ମଧ୍ୟରେ ମଦ୍ୟପାନଟା ଉପାସନାର ଅଙ୍ଗୀଭୂତ ହୋଇ ପଡ଼ିଥିଲା । ବଙ୍ଗଦେଶରେ ଋଷିତୁଲ୍ୟ ପ୍ରଧାନ ପ୍ରଧାନ ବ୍ରାହ୍ମ ମହାତ୍ମାମାନେ ମଧ୍ୟ ମଦ୍ୟପାନରୁ ବିରତ ନ ଥିଲେ; କିନ୍ତୁ ଅବଶେଷରେ ସେହି ମହାତ୍ମାମାନେ ବିଷବତ୍ ମଦ୍ୟ ପରିତ୍ୟାଗ କରିଥିଲେ । ସେହି ମହାତ୍ମାମାନଙ୍କ ପ୍ରଗାଢ଼ ଯତ୍ନରେ ବଙ୍ଗ ଯୁବକମାନଙ୍କ ମଧ୍ୟରୁ ବହୁ ପରିମାଣରେ ମଦ୍ୟପାନ ନିବାରିତ ହୋଇଥିଲା ।

କେତେକ ମାସ ଉତ୍ତାରେ ପ୍ରକାଶ୍ୟରୂପେ ଗୋଟିଏ ସ୍ୱତନ୍ତ୍ର ବ୍ରାହ୍ମସମାଜ ସ୍ଥାପନ କରାଯିବାର ସ୍ଥିର କରାଗଲା । ଉପାସକ ଆମ୍ଭମାନଙ୍କ ସେହି ସଭାର ସଭ୍ୟ, ଅର୍ଥାତ୍ ଦାମୋଦର ପ୍ରସାଦ ଦାସ, ଗୋବିନ୍ଦ ପ୍ରସାଦ ଦାସ, ଜୟକୃଷ୍ଣ ଚୌଧୁରୀ, ଭୋଳାନାଥ ବାବୁ । ଏମାନଙ୍କୁ ଛାଡ଼ି ସମୟସମୟରେ ଅନ୍ୟାନ୍ୟ କେତେଜଣ ସଙ୍ଗୀ ମଧ୍ୟ ଉପାସନାରେ ଯୋଗ ଦିଅନ୍ତି । ବାଲେଶ୍ୱର ମୋତିଗଞ୍ଜ ବଜାର ପଶ୍ଚିମପ୍ରାନ୍ତରେ ମୟୂରଭଞ୍ଜ ମହାରାଜାଙ୍କର ଗୋଟିଏ କୋଠା ବସାଘର ଥିଲା । ସହର ମଧ୍ୟରେ ସେହି କୋଠାର ଡାକନାମ ରଜାକୋଠା । ( ବର୍ତ୍ତମାନ ସେ କୋଠାରେ ମୟୂରଭଞ୍ଜର ଅଧିକାର ନାହିଁ । ସ୍ୱର୍ଗୀୟ ମହାରାଜା ମହାତ୍ମା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେବ ବ୍ରାହ୍ମ ସମାଜକୁ ଦାନ କରିବାରୁ ରାଜାଙ୍କ ପୁରାତନ କୋଠା ଭଙ୍ଗାଯାଇ ଗୋଟିଏ ବୃହତ୍ ଉପାସନା ମନ୍ଦିର ପ୍ରସ୍ତୁତ ହୋଇଅଛି । ) ଉକ୍ତ ରଜାକୋଠାରେ ସନ ୧୮୬୭ କି ୬୮ ସାଲରେ ସମ୍ଭବତଃ ଗ୍ରୀଷ୍ମକାଳରେ ଉପାସନା କାର୍ଯ୍ୟ ଆରମ୍ଭ ହେଲା । ଉକ୍ତ ସମୟ ପର୍ଯ୍ୟନ୍ତ ବାଲେଶ୍ୱରବାସୀ ବ୍ରାହ୍ମଧର୍ମର ନାମ ଶୁଣି ନ ଥିଲେ । ସମାଜସ୍ଥାପନର ନାମ ଶୁଣି ପ୍ରଧାନ ପ୍ରଧାନ ଲୋକମାନେ ଚମକୃତ ହେଲେ । ପ୍ରଶ୍ନ ଉଠିଲା—ବ୍ରାହ୍ମଧର୍ମ କ'ଣ ? କଚେରିରେ ସଭା ବସିଗଲା । ଅନେକ ଆନ୍ଦୋଳନ

ଉତ୍ତରରେ ଜ୍ଞାନୀ ବହୁଦର୍ଶୀ ମହାତ୍ମାମାନେ ଅର୍ଥକଲେ— 'ବ୍ରାହ୍ମଧର୍ମ ଅର୍ଥ କଣ କି—ଠାକୁର୍ ଦେବତାଙ୍କୁ ଗୋଡ଼ରେ ଫୋପାଡ଼ ଦେବେ, ବ୍ରାହ୍ମଣ ବୈଷ୍ଣବ ମାନବେ ନାହିଁ, ସେମାନଙ୍କର ଜାତି ନାହିଁ; ବ୍ରାହ୍ମସମାଜର ଅର୍ଥ-ଗୋଟାଏ ବଡ଼ ଘରରେ ଭାତ ଜମାହେବ, ତା ଉପରେ ମଦ ଛୁଆସିବ, ବ୍ରାହ୍ମଣ, ପାଣ ପଠାଣ ଛତିଶ ଜାତି ଏକାସାଙ୍ଗରେ ବସି ଖାଇବେ ।' କଟେକରେ ହୁଲହୁଲ ପଡ଼ିଗଲା । ସ୍ଥିର ହେଲା— ଏହା ସେହି ରୂପ୍ ସଇତାନର କାର୍ଯ୍ୟ । କୁଳ ମହତ୍ତ୍ୱ ସବୁ ଯାଉଥିଲା, ଏବେ ଜାତି ଯାଇବାକୁ ବସିଅଛି । ମାତ୍ର କଥାଟା ସତ୍ୟ କି ମିଥ୍ୟା, ଆଖିରେ ଦେଖିବା ଦରକାର । ପ୍ରତି ରବିବାର ସନ୍ଧ୍ୟା ଉତ୍ତାରେ ରାଜା କୋଠାରେ ଉପାସନା ହୁଏ । ରାଧାନାଥ ବାବୁଙ୍କ ପିତା ସୁନ୍ଦର ନାରାୟଣ ବାବୁ ଏବଂ କେତେଜଣ ଅମଲା ପ୍ରଚ୍ଛନ୍ନ ଭାବରେ ଦେଖିବାକୁ ଆସିଲେ । ଉପାସନା ସମୟରେ ବାହାର ପଟରେ ଥାଇ ଖିଡ଼କି ଫାଙ୍କବାଟେ ଅନାଇ ଦେଖିଲେ । ଦୁଇ ତିନଥର ଏହିପରି ଦେଖିଯାଇ କଟେକରେ ପ୍ରକାଶ କଲେ— 'ନାହିଁ ନାହିଁ, ଭାତ ଫାତ କଥା ନୁହେଁ, ଚାରିପାଞ୍ଚ ଜଣ ବସି ପ୍ରଥମେ ଗୀତ ଗାଇଲେ, ତା ବାଦ କିତାପ ପଢ଼ିଲେ, ତା ବାଦ ଆଖି ବୁଜି ବସିଲେ, ଶେଷରେ ଗୀତ ଗାଇ ଉଠି ଚାଲିଗଲେ ।' ଗୋଳମାଳ ଶେଷ ହେଲା, ସୋଡ଼ା ବୋତଲ କର୍କ ଫଟ୍ କରି ଉଠି ପଡ଼ିଗଲା ।'

ପ୍ରାୟ ଚାରି ଛ ମାସ ଉତ୍ତାରେ ଭେଦା ଦ୍ୱାରା ଗୋଟିଏ ସମାଜ ଗୃହ ପ୍ରସ୍ତୁତ କରାଯାଇଥିଲା । ସେ କଚ୍ଚା ଘର ଭାଙ୍ଗି ଯାଇଅଛି । ବାଲେଶ୍ୱରରେ ଅଳ୍ପ ସଂଖ୍ୟକ ବ୍ରାହ୍ମ ଥିଲେ ମଧ୍ୟ ପ୍ରଭୁଙ୍କ କୃପାରୁ ଗୋଟିଏ ସ୍ୱତନ୍ତ୍ର ସମାଜ ମନ୍ଦିର ପ୍ରସ୍ତୁତ ହୋଇଅଛି ।

ଏହି ସମୟରେ ନାରୀଜାତିର ପରିବର୍ତ୍ତନ ସମ୍ବନ୍ଧରେ ସମ୍ବାଦ ବାହିକାରେ ଗୋଟିଏ ଦୀର୍ଘ ପ୍ରବନ୍ଧ ଲେଖିଥିଲି । ଶୀତ ନିବାରଣ ଏବଂ ସମ୍ଭ୍ରମ ରକ୍ଷା ନିମନ୍ତେ ନାରୀଜାତିର ପରିଧେୟ ପରିବର୍ତ୍ତନ ଆବଶ୍ୟକ —ସେହି ପ୍ରବନ୍ଧର ପ୍ରତିପାଦ୍ୟ ବିଷୟ ଥିଲା । ସେଥିରେ ଲିଖିତ ଥିଲା—ଶାଢ଼ୀ ତଳେ ଆଉ ଗୋଟିଏ କୌଣସି ପ୍ରକାର କଟା ଲୁଗା ଦେଲେ ବରଞ୍ଚ ସେମାନଙ୍କର ସୌନ୍ଦର୍ଯ୍ୟ ବୃଦ୍ଧି ହେବ ଏବଂ ସମ୍ମାନରକ୍ଷା ହେବ । ବର୍ତ୍ତମାନ ଶିକ୍ଷିତ ସମାଜର ସ୍ତ୍ରୀ ମାନେ ସେମିଜ୍ ପିନ୍ଧୁ ଅଛନ୍ତି । ଲେଖକ ସେହିପରି ପୋଷାକ ସକାଶେ ପ୍ରସ୍ତାବ କରିଥିଲି । ମାତ୍ର ସେମିଜ୍ ନିର୍ମାଣ କୌଶଳ ତାହା ମନରେ ଉଦିତ ହୋଇ ନ ଥିଲା । ପ୍ରବନ୍ଧଟି ପଢ଼ି ସାହେବମାନେ ପ୍ରକାଶ୍ୟରେ ଲେଖକଙ୍କୁ ପ୍ରଶଂସା କରିଥିଲେ । ବିଦ୍ରୂପାତ୍ମକ ଲେଖା ପଢ଼ି ଅମଲାମାନେ ଖୁବ ହସିଲେ । ସ୍ତ୍ରୀମାନେ ଅଙ୍ଗା ପିନ୍ଧିବେ, ଏ ପ୍ରକାର ଅସଙ୍ଗତ ଅଦ୍ଭୁତ ବିଷୟ ସେମାନଙ୍କର ହାସ୍ୟୋଦ୍ରେକର କାରଣ । କଥାଟା ହସରେ ହସରେ ଉଡ଼ିଗଲା । ଏ ପ୍ରକାର ଅଦ୍ଭୁତ ଅସଙ୍ଗତ ପ୍ରସ୍ତାବ କରିଥିବା ଯୋଗୁଁ ଲେଖକଙ୍କୁ କେହି ଆକ୍ରମଣ କଲେ ନାହିଁ ।

( ଉ: ସା: ୧୩ଶ ଭାଗ, ଚତୁର୍ଥସଂଖ୍ୟା )

## ୨୨

## ଦ୍ୱିତୀୟ ବିବାହ

ଠାକୁରମାଙ୍କ ମୃତ୍ୟୁ ଉତ୍ତାରୁ ଗୃହବାସ ମୋ ପକ୍ଷରେ ନିତାନ୍ତ ଯନ୍ତ୍ରଣାଦାୟକ ହୋଇ ପଡ଼ିଲା । "ମାତା ଯସ୍ୟ ଗୃହେ ନାସ୍ତି ଭାର୍ଯ୍ୟାଚାପ୍ରିୟ ବାଦିନୀ" ସେ ଗୃହରୁ ସୁଖଶାନ୍ତି ପ୍ରତ୍ୟାଶା କରିବା ବିଡ଼ମ୍ବନା ମାତ୍ର । ବଡ଼ମା ମାସକୁ ଥରେ ଦରମା ଟଙ୍କାଟା ଗଣି ନିଅନ୍ତି, ନିଜପାଇଁ ଗୋଟିଏ ମାତ୍ର ଟଙ୍କା ବ୍ୟୟ କଲେ ତର୍ଜନ ଗର୍ଜନ କରନ୍ତି । ତାଙ୍କ ସହିତ ସେହି ଦିନକ ସକାଶେ ମାତ୍ର ସମ୍ପର୍କ । ମୋ ଦରମା ଟଙ୍କାରୁ

ଅଧିକାଂଶ ତାଙ୍କ କନିଷ୍ଠ ପୁତ୍ରଙ୍କ ପୋଷାକ ଓ ଅଳଙ୍କାର ପ୍ରସ୍ତୁତ କରିବାରେ ଏବଂ ଆମୋଦ ପ୍ରମୋଦରେ ବ୍ୟସ୍ତ ହୁଏ । ମୋ ଭୋଜନ ବିଷୟରେ କାହାର ଯତ୍ନ ନ ଥାଏ । ଉପର ଓଳି ତାଙ୍କ ପୁତ୍ରମାନଙ୍କ ସକାଶେ ଜଳଖିଆ ପ୍ରସ୍ତୁତ ହୁଏ । ମୋ ଜଳଖିଆ ମୁଁ ବଜାରରୁ କିଣି ଆଣେ । ତାହାମଧ୍ୟ କେବେ କେବେ କୌଣସି ବାହାନା କରି ତାଙ୍କ ପୁତ୍ରମାନଙ୍କ ସକାଶେ ନେଇଯାନ୍ତି । ସେ ଦିନ ମୋର ଉପବାସ । ମୁଁ ସକାଳ ଓଳିଟା ମାତ୍ର ଘରୁ ଖାଇ ବାହାରିଯାଏଁ । ଦିନଯାକ ବାହାର କର୍ମରେ ଲିପ୍ତଥିବା ଯୋଗୁଁ ଅକ୍ଳେଶରେ ସମୟ କଟିଯାଏ । ସନ୍ଧ୍ୟାବେଳେ ଛାପାଖାନାର ଜଣେ ଚାକର ଦୁଇଖଣ୍ଡ ଗହମ ରୁଟି ସେକି ଦିଏ; କେବଳ ସେହି ଶୁଖିଲା ରୁଟି ଦୁଇଖଣ୍ଡ ଖାଇ ଦେଇ ଘରକୁ ଆସେଁ । ଆତ୍ୟନ୍ତିକ ପରିଶ୍ରମ ହେତୁ ଶରୀର ଅବସନ୍ନ ହୋଇ ପଡ଼ିଥାଏ । ଅନିୟମିତ ଆହାର ଓ ଆତ୍ୟନ୍ତିକ ପରିଶ୍ରମ ଯୋଗୁଁ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଲି । ସମ୍ବାଦବାହିକା ପରିଚାଳନା ଭିନ୍ନ ଆଉ କୌଣସି ପ୍ରକାର ଲେଖାପଢ଼ା କରିବାକୁ ଶକ୍ତି ନ ଥିଲା । ସପ୍ତାହର ଛଅଟା ଦିନ ନାନାପ୍ରକାର କର୍ତ୍ତବ୍ୟ କାର୍ଯ୍ୟ ସାଧନାରେ ଅତିବାହିତ ହୁଏ । ଶନିବାର ରବିଟା ଆମୋଦ ପ୍ରମୋଦ ଉପଭୋଗ ସକାଶେ ନିରୂପିତଥିଲା । ଶନିବାର ସନ୍ଧ୍ୟାଠାରୁ ରାତି ଏଗାରଟା ପର୍ଯ୍ୟନ୍ତ ପୂର୍ବୋକ୍ତ ବାବୁ କିଶୋରୀମୋହନ ଦାସଙ୍କ ଉଦ୍ୟାନରେ ବନ୍ଧୁବାନ୍ଧବ ସହିତ ଆମୋଦ ପ୍ରମୋଦରେ ଅତିବାହିତ ହୁଏ । ଆମୋଦ ପ୍ରମୋଦର ଅର୍ଥ ତାସ ସତରଞ୍ଚି ଖେଳ, ନାନାପ୍ରକାର ଦ୍ରବ୍ୟ ଭୋଜନ, ମଦ୍ୟପାନ, କେବେ କେବେ ବାଇନାଚ । ସମୟ ସମୟରେ ଅତିରିକ୍ତ ମଦ୍ୟପାନ ଯୋଗୁଁ କୌଣସି କୌଣସି ବାବୁ ଉନ୍ମତ୍ତ ହୋଇ ପଡ଼ନ୍ତି । ମଦୁଆ-ମାନଙ୍କର ସ୍ୱଭାବ ଯେ, ସେମାନେ ଅନ୍ୟ ଲୋକଙ୍କୁ ଅଧିକ ପରିମାଣରେ ପାନ କରିବା ସକାଶେ ଅନୁରୋଧ କରିଥାନ୍ତି । ମାତ୍ର ସେମାନଙ୍କ ମଧ୍ୟରେ ମୁଁ ଖୁବ୍ ସଚେତଥାଏ । ନିଶା ହେବା ଭୟରେ ଅତି ମାତ୍ରାରେ ମଦ୍ୟପାନ କରେ ନାହିଁ । ମାତ୍ର ଶରୀରର ଦୁର୍ବଳତା ହେତୁରୁ ଅଳ୍ପମାତ୍ର ପାନ ମଧ୍ୟ ମୋ ପକ୍ଷରେ ଅସହ୍ୟ ହୋଇ ପଡ଼େ । ଚବିଶଘଣ୍ଟା ମାତ୍ର ଆମୋଦ ଭୋଗ ଲୋଭରେ ପଡ଼ି ଚାରିଦିନ ପର୍ଯ୍ୟନ୍ତ ଯନ୍ତ୍ରଣା ଭୋଗ କରିବାକୁ ହୁଏ । ମଦ୍ୟପାନ ବାସିଦିନଠାରୁ ଯେଉଁ ଅବସାଦ ଆସେ, ତାହା ମେଣ୍ଟିବାକୁ ଚାରି ପାଞ୍ଚଦିନ ଲାଗେ; ମାତ୍ର ଅନେକ ବାବୁ ମୋଠାରୁ ଚାରି ପାଞ୍ଚଗୁଣ ମଦ୍ୟପାନ, ତାହାବାଦ ଅଫିମର ଗୁଳି ସେବାକରି ମଧ୍ୟ ବେଶ୍ ସୁସ୍ଥ ଶରୀରରେ ଥାନ୍ତି । ସେହି ଶିଥିଳ ଚରିତ୍ର ବନ୍ଧୁମାନଙ୍କ ସହିତ ସମ୍ମିଳନ ଏବଂ ଶନିବାସରୀୟ ନୈଶ ଦୋଷାଶ୍ରିତ ଆମୋଦପ୍ରମୋଦ ସେ ସମୟରେ ମୋ ଜୀବନରେ ଏକମାତ୍ର ବିନୋଦନ ବିଷୟ ଥିଲା । ଗାର୍ହସ୍ଥ୍ୟ ସମ୍ପର୍କକୁ ଯନ୍ତ୍ରଣାର ବିଷୟ ବୋଲି ଜ୍ଞାନ କରୁଥିଲି ।

ମୋ ସ୍ତ୍ରୀ ବ୍ୟାଧିଗ୍ରସ୍ତ ହୋଇ ପଡ଼ିଲେ, କ୍ରମଶଃ ବ୍ୟାଧି ବୃଦ୍ଧିହୋଇ ବର୍ଷକ ପରେ ଜଣାଗଲା ପୀଡ଼ା ଦୁଶ୍ଚିକିତ୍ସ୍ୟ ଏବଂ ମାରାତ୍ମକ । ରୁଗ୍‌ଣାର ଉତ୍ତମ ଚିକିତ୍ସା ଏବଂ ସେବା ଶୁଶ୍ରୂଷା ନିମନ୍ତେ ତାଙ୍କ ପିତାମାତା ସେମାନଙ୍କ ଘରକୁ ନେଇଗଲେ । ସେହି ପିତ୍ରାଳୟରେ ତାଙ୍କର ଜୀବନାବସାନ ହେଲା । ସେ ସମୟରେ ମୁଁ ପୁରୀ କ୍ଷେତ୍ରରେ ବାସ କରୁଥିଲି ।

ଦ୍ୱିତୀୟ ଦାର ଗ୍ରହଣ ନ କଲେ ମୋର ପିତାଙ୍କ ନାମ ବିଲୁପ୍ତ ହେବ; ପୁଣି ପିତୃଲୋକେ ପିଣ୍ଡପ୍ରାପ୍ତିରୁ ନିରାଶ ହୋଇ ପଡ଼ିବେ, ଏହି ଆଶଙ୍କାରେ ମୋର ଜଣେ ହିତୈଷିଣୀ ଆତ୍ମୀୟା ମୋତେ ବୁଝାଇ କନ୍ୟା ଅନ୍ୱେଷଣ କରିବାକୁ ଲାଗିଲେ । କନ୍ୟା ସ୍ଥିର ହୋଇଗଲା, ନାମ କୃଷ୍ଣକୁମାରୀ ଦେଈ । ନିବାସ ମୋତିଗଞ୍ଜ ବଜାର ସମୀପବର୍ତ୍ତୀ ପାଟଣାଜାତ ଗ୍ରାମ । ମୋର ବିବାହ ହୋଇଗଲା । ତାତ୍କାଳୀକ ବାଲେଶ୍ୱରସ୍ଥ ଅଭିଜାତ ଏବଂ ଗଣ୍ୟମାନ୍ୟ ବଂଶ ଶ୍ରେଣୀ ମଧ୍ୟରେ ମୋର

ଶ୍ୱଶୁର ବଂଶ ଅନ୍ୟତମ ଥିଲା । ଅଶୀ ନବେବର୍ଷ ପୂର୍ବେ ବାଲେଶ୍ୱରରେ ଇଷ୍ଟ ଇଣ୍ଡିଆ କମ୍ପାନୀଙ୍କର ଗୋଟିଏ ପଲ୍‌ଟନ ରହୁଥିଲେ । ମୋର ଗୋସେଇଁ ଶଶୁର ଚୌଧୁରୀ ବଳରାମ ମଲ୍ଲ ସେହି ପଲ୍‌ଟନର ଗୁମାସ୍ତା ଥିଲେ । ମୋ ଶଶୁର ଶିବପ୍ରସାଦ ମଲ୍ଲ ଚୌଧୁରୀ ବାଲେଶ୍ୱର ଫୌଜଦାରୀ ହେଡ୍‌କ୍ଳର୍କ ଥିଲେ । ଶିବପ୍ରସାଦ ବାବୁଙ୍କ ପୁତ୍ର ପ୍ରସନ୍ନକୁମାର ମଲ୍ଲ ଚୌଧୁରୀ କଷ୍ଟମ୍ ହେଡ୍‌କ୍ଳର୍କ ଥିଲେ । ପ୍ରସନ୍ନ ବାବୁଙ୍କଠାରୁ ସେ ବଂଶର ପତନର ସୂତ୍ରପାତ ହେଲା । ପରବର୍ତ୍ତୀ ମଦ୍ୟପ, ଦୁର୍ବୃତ୍ତ ଓ ଅତ୍ୟାଚାରୀ ଲୋକଙ୍କ ଅପବିତ୍ର ନାମ ଉଲ୍ଲେଖ କରିବାକୁ ଇଚ୍ଛା ବଳୁ ନାହିଁ । ନାନାପ୍ରକାର ମାଦକ ସେବନ ଏବଂ ଦୁଷ୍ଟଚରିତ୍ରତା ହେତୁରୁ ସେ ବଂଶ ଉଚ୍ଛନ୍ନ ହୋଇ ଯାଇଅଛି । କୁଳର ନାମ ଉଲ୍ଲେଖ କରିବାକୁ ବଂଶରେ ପ୍ରାଣୀ ମାତ୍ର ବିଦ୍ୟମାନ ନାହିଁ । ଗୃହବାସ୍ତୁ ପ୍ରଶସ୍ତ ଇଷ୍ଟକାଳୟ ସୁନ୍ଦର ଆମ୍ରକାନନ ଯୁକ୍ତ ପତିତ ଉଦ୍ୟାନ ଭୂମି ପରହସ୍ତଗତ ।

ସାଂସାରିକ ସମସ୍ତ ପ୍ରକାର ଦୁଃଖ ଦୁର୍ଦ୍ଦଶା ମୋଚନ ଓ ସୌଭାଗ୍ୟ ସୁଖ ସମ୍ପତ୍ତି ବର୍ଦ୍ଧନ ନିମନ୍ତେ ଯେମନ୍ତ ଦୟାମୟ ପରମେଶ୍ୱର କୃଷ୍ଣକୁମାରୀ ଦେବୀଙ୍କୁ ଭାର୍ଯ୍ୟା ସ୍ୱରୂପେ ମୋ ନିକଟକୁ ପଠାଇଥିଲେ । ସତ୍ୟନିଷ୍ଠା, ପତି ପରାୟଣତା, ଧାର୍ମିକତା ସମସ୍ତପ୍ରକାର ସଦ୍‌ଗୁଣ ତାଙ୍କଠାରେ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ଥିଲା । ତାଙ୍କର ଧ୍ରୁବ ଧାରଣା ଥିଲା—ମୋର ସେବା ଶୁଶ୍ରୂଷା କରିବା, ସର୍ବପ୍ରକାରରେ ସର୍ବ ବିଷୟରେ ମୋର ଆଜ୍ଞାନୁବର୍ତ୍ତିନୀ ହୋଇ ରହିବା ତାଙ୍କ ପକ୍ଷରେ ଏକମାତ୍ର କର୍ତ୍ତବ୍ୟ ଏବଂ ପରମ ଧର୍ମ । ସେ ମୋର କପରି ସେବାକାରିଣୀ ଥିଲେ, ଶତ ସହସ୍ର ଘଟନା ମଧ୍ୟରୁ ଗୋଟିଏ ମାତ୍ର ଘଟନା ଏ ସ୍ଥାନରେ ଉଲ୍ଲେଖ କରିବାକୁ ଇଚ୍ଛା କରେଁ । ମୋର ବିବାହର ଅଳ୍ପଦିନ ଉତ୍ତାରୁ (ସେ ସମୟରେ ମୋର ସ୍ତ୍ରୀଙ୍କର ବୟସ ତେରବର୍ଷ ମାତ୍ର) ମୁଁ ଜ୍ୱର ରୋଗରେ ଶଯ୍ୟାଗତ ହୋଇ ପଡ଼ିଲା । ମୋ ସ୍ତ୍ରୀ ଗୋଡ଼ ପାଖରେ ବସି ଦେହରେ ହାତ ବୁଲଉଥାନ୍ତି । ରାତିରେ ମୋତେ ନିଦ ହୁଏ ନାହିଁ; ଦେଖେଁ, ରାତିଯାକ ବସି ଗୋଡ଼ରେ ହାତ ବୁଲଉଥାନ୍ତି । ମୁଁ କହେଁ, ତୁମେ ଶୋଇପଡ଼ । 'ହଁ ଶୋଇବି' କହି ଶୁଅନ୍ତି ନାହିଁ । ମୁଁ କଷ୍ଟତ ବିରକ୍ତ ହେଲେ ଲଟ୍ କରି ଗୋଡ଼ତଳେ ଶୋଇପଡ଼ି ମୋତେ ଚାହିଁ ରହି-ଥାନ୍ତି । ମୁଁ ଆଖି ବୁଜିଲେ ଉଠି ବସି ଗୋଡ଼ରେ ହାତ ବୁଲନ୍ତି । ତାଙ୍କର ଇଚ୍ଛା, କୌଣସି ପ୍ରକାରେ ମୁଁ ଟିକିଏ ଆରାମ ପାଏଁ । ଠିକ୍ ତିନିଦିନ ତିନିରାତି ଉତ୍ତାରେ ଗ୍ରାମ-ବାସିନୀ ଗୋଟିଏ ଆତ୍ମୀୟା ସ୍ତ୍ରୀ ଆସି ଗାଳି ଦେଇ କହିଲା, "ବୋହୂ, ତୁ ତିନିଦିନ ହେଲା ଗୋଟାଏ ଜାଗାରେ ବସିଛୁ, ଉଠିନାହୁଁ, ଦାନ୍ତ ବି ଘଷି ନାହୁଁ, ମରିଯିବୁ ଯେ ।" ମୋର କଥା କହିବାର ତାଦୃଶ ଶକ୍ତି ନ ଥାଏ । ଚାହିଁ ଦେଖିଲି, ସେ ଏତେ ଦୂର କ୍ଷୀଣ ହୋଇଅଛନ୍ତି ଯେ ଚାହିଁ ପାରିଲି ନାହିଁ । ବିରକ୍ତ ଭାବରେ ତାଙ୍କୁ ଚାହିଁବାରୁ ସେ ହାତ ଯୋଡ଼ି କହିଲେ, "ମୁଁ ଏଇଲାଗେ ଗାଧୋଇ ଯାଉଛି, ତୁମେ ବିରକ୍ତ ହୁଅ ନାହିଁ, ବେରାମ ବଢ଼ି ପଡ଼ିବ ।"

ଥରେ ଦୁଇଥର ନୁହେଁ, ମୋର ପ୍ରତ୍ୟେକ ବେମାର ସମୟରେ ଏହିପରି ସେବା ପାଇଅଛି । ମୁଁ ରୋଗଶଯ୍ୟା ଛାଡ଼ି ନ ଉଠିଲେ ସେ ଉଠନ୍ତି ନାହିଁ ।

ପୃଥିବୀରୁ ମୋର ସହାନୁଭୂତି ପ୍ରାପ୍ତି ଶେଷ ହୋଇ-ଅଛି । ବର୍ତ୍ତମାନ ମୋ ଜୀବନ ଶୂନ୍ୟ ।

(ଉ. ସା. ୬ଷ୍ଠ ଭାଗ ୪ର୍ଥ ସଂଖ୍ୟା)

—o—

୨୩

## ନୀଳଗିରିରେ ଦେବାନ ଚାକିରି

ନୀଳଗିରି କିଲ୍ଲାର ଦେବାନ ପଦ ଶୂନ୍ୟ ହେଲା । ବାଲେଶ୍ୱର ଜିଲ୍ଲାର କଲେକ୍ଟର ଜନ ବୀମସ୍ ସାହେବଙ୍କ

ପ୍ରସ୍ତାବ ଅନୁସାରେ ଗଡ଼ଜାତ ମାହାଲର ସୁପରି-ଣ୍ଟେଣ୍ଡେଣ୍ଟ ସାହେବ ମୋତେ ସେହି ପଦରେ ନିଯୁକ୍ତ କରି ପଠାଇଲେ । ନୀଳଗିରିର ରାଜା କୃଷ୍ଣଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ ମୋତେ ଆଦର ପୂର୍ବକ ଗ୍ରହଣ କଲେ । କିଲ୍ଲାର ସମସ୍ତ ଭାର ମୋ ଉପରେ ନ୍ୟସ୍ତ ହେଲା । ରାଜାସାହେବ କିଲ୍ଲା ସମ୍ବନ୍ଧରେ କୌଣସି କାର୍ଯ୍ୟ ବୁଝନ୍ତି ନାହିଁ । ମୋର କୌଣସି କାର୍ଯ୍ୟ ତାଙ୍କର ଅପ୍ରୀତିକର ହେଲେ ମଧ୍ୟ ସେ ମୁହଁ ଫିଟାଇ ମୋତେ କିଛି କହନ୍ତି ନାହିଁ । ମୋ ସମ୍ବନ୍ଧରେ ତାଙ୍କର ଅତ୍ୟନ୍ତ ଚକ୍ଷୁଲଜ୍ଜା ଥିଲା । ମୋ ପ୍ରତି ଅସନ୍ତୁଷ୍ଟ ହେଲେ ମଧ୍ୟ ସେ ଏପରି ପ୍ରେମରେ ଓ ହାସ୍ୟ କୌତୁକରେ କଥୋପ-କଥନ କରୁଥିଲେ ଯେ, ତାଙ୍କର ମାନସିକ ଭାବ ବୁଝିବା ମୋ ପକ୍ଷରେ ସହଜ ନ ଥିଲା ।

ବର୍ଷେ ପର୍ଯ୍ୟନ୍ତ ସହଜରେ କାର୍ଯ୍ୟ କରିଗଲି । ନୀଳଗିରି ଗଡ଼ଠାରୁ ବାଲେଶ୍ୱର ପ୍ରାୟ ଏଗାର ମାଇଲ ଦୂର । ବାଲେଶ୍ୱରକୁ ଯାତାୟତ ପାଇଁ ଦୁଇଗୋଟି ବାଟ ଥିଲା । ଗୋଟିଏ ବାଟ କିଲ୍ଲାଠାରୁ ଠିକ୍ ପୂର୍ବ ଦିଗକୁ ପ୍ରାୟ ଚାରି ମାଇଲ ଆସି ଶେରଗଡ଼ ଚଟିରେ ପହଞ୍ଚିବାକୁ ହୁଏ । ସେ ସ୍ଥାନରୁ ବଡ଼ ସଡ଼କରେ ବାଲେଶ୍ୱର ଆସିବା ପର୍ଯ୍ୟନ୍ତ ସହଜ । ଆଉ ଗୋଟିଏ କିଞ୍ଚିତ ଉତ୍ତର ଦିଗକୁ ଗ୍ରାମ ଗୋହିରି ଆଉ ବିଲବାଟ । ମୁଁ ପ୍ରତି ଶନିବାର ଆପଣା ଗୃହକୁ ଆସେଁ । ବର୍ଷାଦିନରେ ବିଲ ବାଟ ଓ ଖାଲ ନାଳରେ ଜଳ ପୂର୍ଣ୍ଣ ହୋଇଯାଏ । ଘୋଡ଼ା କିମ୍ବା ପାଲିକି ସହଜରେ ଚଳେ ନାହିଁ । ମୁଁ ହାତୀରେ ଯିବା ଆସିବା କରେ । ନୀଳଗିରି ଗଡ଼ଠାରୁ ଶେରଗଡ଼ ନିକଟ ବଡ଼ ସଡ଼କ ପର୍ଯ୍ୟନ୍ତ ଯେଉଁ ଚାରି ମାଇଲ ଦୂର, ବର୍ଷା-କାଳରେ ହିଡ଼ ଆଉ ବୁଲାଣିଆ ସର୍ପଗତି ପରି ବଙ୍କ ଥିବାରୁ ତାହା ପ୍ରାୟ ଛ ମାଇଲ ହୋଇପଡ଼େ । ମନରେ ବିଚାର କଲି, ନିଜଗଡ଼ଠାରୁ ଠିକ୍ ପୂର୍ବଦିଗକୁ ସଳଖରେ ସଡ଼କ ପ୍ରସ୍ତୁତ କରି ବଡ଼ ସଡ଼କରେ ମିଶାଇଦେଲେ ଯାତାୟତ ପକ୍ଷରେ ବଡ଼ ସୁବିଧା ହେବ । ସଡ଼କର କାର୍ଯ୍ୟ ଆରମ୍ଭ କରିଦେଲି । ପ୍ରାୟ ଅର୍ଦ୍ଧ ମାଇଲ ଦୂରରେ ଗୋଟାଏ ବଡ଼ ଗିରିନାଳ ପଡ଼ିଲା । ବର୍ଷା ସମୟରେ ଗଡ଼ ନିକଟବର୍ତ୍ତୀ ସୁନଚୋଟ ପର୍ବତ ଉପରୁ ପାଣି ବହି ଆସି ସମୟ ସମୟରେ ବାଟୋଇମାନଙ୍କ ପକ୍ଷରେ ଅଗମ୍ୟ ହୋଇପଡ଼େ । କଦାଚିତ ତିନିଚାରି ହାତ ପର୍ଯ୍ୟନ୍ତ ଗଭୀରରେ ପାଣି ଚାଲେ । ସେହି ନାଳ ସମୀପବର୍ତ୍ତୀ ସ୍ଥାନଟା ନିବିଡ଼ କଣ୍ଟା ବାଉଁଶ ବଣରେ ଆଚ୍ଛନ୍ନ ଥିଲା । ପର୍ବତ ବନ ପାର୍ଶ୍ୱବର୍ତ୍ତୀ ଥିବାରୁ ଭାଲୁମାନଙ୍କର ଏପରି ଉପଦ୍ରବ ଥିଲା ଯେ, ସନ୍ଧ୍ୟା ଉତ୍ତାରେ ବାଟ ପଡ଼ି ଯାଉଥିଲା । ବାଟୋଇମାନେ ଯା ଆସ କରି ପାରୁ ନ ଥିଲେ । ସୂର୍ଯ୍ୟାସ୍ତ ଉତ୍ତାରେ ଗ୍ରାମ ପାଖରେ ଚରିବାପାଇଁ ଭାଲୁପଲ ଓ ବାରହା ପଲ ପର୍ବତରୁ ଗଡ଼ି ଆସୁଥିଲେ । ଦିନେ ଠିକ୍ ସୂର୍ଯ୍ୟାସ୍ତ ସମୟରେ ଗୋଟାଏ ଭାଲୁ ପର୍ବତରୁ ଗଡ଼ି ଆସୁଥିବାର ମୁଁ ନିଜେ ଦେଖିଥିଲି । ବାଉଁଶବଣ ସବୁ କଟାଇ ସେହି ନାଳ ଉପରେ ଗୋଟାଏ ପଥରର ପୋଲ ବନ୍ଧାଇ ଦେଲି । ଗଡ଼ଠାରୁ ପୂର୍ବ ଦିଗକୁ ତିନିମାଇଲ ପର୍ଯ୍ୟନ୍ତ ସଡ଼କ ପ୍ରସ୍ତୁତ ହୋଇ ଯାଇଅଛି । ଭୂମିଟା ମାଙ୍କଡ଼ା ପଥରିଆ ଓ ଉଚ୍ଚନୀଚ ଥିବାରୁ ଶାଳଗଛର ମୂଳ ଖୋଳାଇ ସଡ଼କ ପ୍ରସ୍ତୁତ କରିବା ନିତାନ୍ତ କଷ୍ଟସାଧ୍ୟ ହୋଇଥିଲା ।

ନୀଳଗିରିରେ ହାଟ ବଜାର କିଛି ନ ଥିଲା । ଖାଦ୍ୟ ବା ଅନ୍ୟ କୌଣସି ଜିନିଷ ଦରକାର ହେଲେ ବାଲେଶ୍ୱର ମୋତିଗଞ୍ଜ ବଜାର କିମ୍ବା ଉତ୍ତରରେ ଛଅ ମାଇଲ ଦୂରବର୍ତ୍ତୀ ରେମୁଣାକୁ ଲୋକ ପଠାଇବାକୁ ହେଉଥିଲା । ରେମୁଣା ସାହାଜି ହାଟରୁ ଦୁଇ ତିନି ଜଣ ବିଧବା ପନିପରିବା ନେଇ ସପ୍ତାହରେ ଦୁଇ ତିନି ଥର ଗଡ଼ରେ ବିକ୍ରୟ କରନ୍ତି । କଦାଚିତ୍ କେହି ଗଡ଼ରେ ମୁଦି ଦୋକାନ ଖୋଲି ବସେ । ଅମଲା ଏବଂ ରାଜାଙ୍କ ପାଖ ଲୋକେ କାଳରେ ସଉଦା ନେଇ ମୂଲ୍ୟ ଦିଅନ୍ତି ନାହିଁ ।

ଦୋକାନୀ ପୁଞ୍ଜି ପଟା ହରାଇ ଘୁରୁ ପଳାଏ । ସମସ୍ତେ ହାଇରାଣରେ ପଡ଼ନ୍ତି । ମୁଁ ଏହି ଅଭାବ ଦୂର କରିବା ନିମନ୍ତେ ଗଡ଼ ସମ୍ମୁଖସ୍ଥ ଶଙ୍କରଖୁଣ୍ଟା ନାମକ ପୋଖରୀ ପୂର୍ବ କୂଳସ୍ଥ ଆମ୍ରତୋଟାରେ ଗୋଟିଏ ହାଟ ବସାଇ ଦେଲି । ନୂଆ ରାଣୀ ମଣିମାଙ୍କ ନାମାନୁସାରେ ସେହି ହାଟର ନାମ ନିର୍ମଳାହାଟ ହେଲା । ସପ୍ତାହରେ ମଙ୍ଗଳବାର ଓ ଶନିବାରରେ ଦୁଇଥର ହାଟ ବସେ । ଚତୁର୍ଦ୍ଦିଗର ଚାରି ପାଞ୍ଚ କୋଶ ଦୂରରୁ ଲୋକେ ଆସି କିଣାବିକା କରିବାକୁ ଲାଗିଲେ । ପ୍ରାୟ ଚାଳିଶ ପଚାଶ ବର୍ଷ ଗତ ହୋଇଅଛି, ବର୍ତ୍ତମାନ ମଧ୍ୟ ନୀଳଗିରି ହାଟ କାରବାରୀ ଜାଗା ବୋଲି ବାଲେଶ୍ୱର, ନୀଳଗିରି ଓ ମୟୂରଭଞ୍ଜରେ ଖ୍ୟାତ ।

ସେ ସମୟରେ ନୀଳଗିରିରେ ଲେଖାପଢ଼ାର କୌଣସି ପ୍ରକାର ଚର୍ଚ୍ଚା ନ ଥିଲା । ରାଜା ସାହେବଙ୍କର ୧୨-୧୪ ବର୍ଷର ଦିଓଟି ପୁତ୍ର * ଏବଂ ବାବୁ ସାହେବଙ୍କର ୧୪ ବର୍ଷର ଗୋଟିଏ ପୁତ୍ର ଏହି ତିନୋଟି ପିଲା ଗୁଡ଼ାଏ ବଜାରୀ ପିଲାଙ୍କ ସହିତ ଦିନରାତି ଖେଳି ବୁଲୁଥାନ୍ତି । ଗୋବରା ଚଢ଼େଇ ଫୋଡ଼ିବା ସେମାନଙ୍କର ଘୋର ଗୋଟାଏ ଆନନ୍ଦଜନକ ବିଷୟ ଥିଲା । ସେହି ପିଲା ତିନୋଟିଙ୍କ ଶିକ୍ଷା ନିମନ୍ତେ ମୁଁ ବାଲେଶ୍ୱରରୁ ଗୋଟିଏ ମାଷ୍ଟର ଆଣି ନିଯୁକ୍ତ କରିଦେଲି । ମାଷ୍ଟର ବାବୁ ସେମାନଙ୍କୁ ଇଂରାଜୀ ପଢ଼ାଇବାକୁ ଲାଗିଲେ ।

ନୀଳଗିରିର ପୂର୍ବତନ ମହାରାଜାମାନେ କେତେ-ଗୁଡ଼ିଏ ବ୍ରାହ୍ମଣ ଶାସନ ବସାଇ ଦେଇ ଯାଇଅଛନ୍ତି । ଭରଣ ପୋଷଣ ନିମନ୍ତେ ଉପଯୁକ୍ତ ରୂପେ ନିଷ୍କର ଭୂମି ଖଞ୍ଜା ଥିବାରୁ ଶାସନବାସୀ ବିପ୍ରମଣ୍ଡଳୀ ନିଶ୍ଚିନ୍ତ ମନରେ ବୁଲୁଥାଆନ୍ତି । ସେମାନଙ୍କ ମଧ୍ୟରେ ବିଦ୍ୟାଚର୍ଚ୍ଚାର ନାମ ଗନ୍ଧ ନ ଥିଲା । ସମଗ୍ର କିଲ୍ଲା ମଧ୍ୟରେ ଜଣେ ସୁଦ୍ଧା ସଂସ୍କୃତଜ୍ଞ ପଣ୍ଡିତ ନ ଥିଲେ । ମୁଁ ସରକାରୀ ବ୍ୟୟରେ ନିଜଗଡ଼ ମୁକାମରେ ଗୋଟିଏ ସଂସ୍କୃତ ଟୋଲ ବସାଇଲି । ଗଡ଼ବାସୀ ବ୍ରାହ୍ମଣ ପିଲାମାନେ ଟୋଲରେ ପଢ଼ିବାକୁ ଲାଗିଲେ । ଗଡ଼ରେ ରହି ସଂସ୍କୃତ ଟୋଲରେ ପଢ଼ିବା ମଫସଲସ୍ଥ ଶାସନୀ ପିଲାମାନଙ୍କ ପକ୍ଷରେ ସୁବିଧା ହେଲା ନାହିଁ । ହିସାବ କରି ଦେଖିଲି, ଯେତେ ନିଷ୍କର ବ୍ରହ୍ମୋତ୍ତର ଭୂମି ଅଛି, ମାଣ ପ୍ରତି ବାର୍ଷିକ ଦୁଇପଇସା କରି ଚାନ୍ଦା ଦେଲେ ମଫସଲମାନଙ୍କରେ ଅନେକ ଗୁଡ଼ିଏ ଟୋଲ ବସିପାରେ । ମଫସଲର ଶାସନୀ ବ୍ରାହ୍ମଣମାନଙ୍କୁ ଡକାଇ ମୋର ଅଭିପ୍ରାୟ ଜଣାଇଲି । ଶିକ୍ଷାର ଉପକାରିତା ଏବଂ ବ୍ରାହ୍ମଣ ପିଲାମାନଙ୍କ ପକ୍ଷରେ ସଂସ୍କୃତ ଶିକ୍ଷା ଅବଶ୍ୟ କର୍ତ୍ତବ୍ୟ ଇତ୍ୟାଦି ବିଷୟ ଅନେକ ଦିନ ପର୍ଯ୍ୟନ୍ତ ଅନେକ ପ୍ରକାରରେ ବୁଝାଇଲି । ମାତ୍ର ବ୍ରାହ୍ମଣମାନେ ମୋ ପ୍ରସ୍ତାବରେ ଏକାବେଳକେ ଅସମ୍ମତି ପ୍ରକାଶ କଲେ । ବିଦ୍ୟାଶିକ୍ଷାର ମର୍ଯ୍ୟାଦା ତ ବୁଝିଲେ ନାହିଁ; ଅଧିକନ୍ତୁ ମନରେ କଲେ— ନିଷ୍କର ଭୂମି ଉପରେ କର ବସାଇବାର ଏହା ଗୋଟିଏ କୌଶଳ ଅଟେ । ଚାନ୍ଦା ନୁହେ, ଏହା ଖଜଣା । ଆଜି ମାଣ ପ୍ରତି ଦୁଇ ପଇସା କଲେ, ପରେ ଟଙ୍କାଏ ଖଜଣା ଧାର୍ଯ୍ୟ କରିବେ । ନାନାପ୍ରକାର ଯତ୍ନ ଓ କୌଶଳରେ ବ୍ୟର୍ଥକାମ ହୋଇ ଶେଷବେଳେ ମନରେ ବିଚାର କଲି—ଘୋର ମୂର୍ଖଲୋକଙ୍କୁ ବିଦ୍ୟାର ଉପକାରିତା ବୁଝାଇବା ବିଡ଼ମ୍ବନା ମାତ୍ର । କିଞ୍ଚିତ କ୍ଷମତା ପ୍ରକାଶ କରି ଚାନ୍ଦା ଅସୁଲ କରିବା ଉଚିତ । ବ୍ରାହ୍ମଣମାନଙ୍କ ନେତା ଉପରେ ଚାନ୍ଦା ଧାର୍ଯ୍ୟ କରି ତାହାର ଗୋଟିଏ ଟାଟୁଘୋଡ଼ା ନିଲାମ କରାଇ ଟଙ୍କା ଅସୁଲ କଲି ।

ଆତ୍ମକୃତ ଦୁଷ୍କୃତିର ପ୍ରତିଫଳ ଭୋଗ ସମୟରେ ଅବିବେକୀ ଲୋକମାନେ କପାଳ ପ୍ରତି ଦୋଷାରୋପ କରିଥାନ୍ତି ସତ୍ୟ, ମାତ୍ର ଅନ୍ୟ ସାଧାରଣ ଲୋକମାନେ ଆପଣାର ଅଜ୍ଞତା ଜନିତ କାର୍ଯ୍ୟର ପରିଣାମ ଭୋଗ ସମୟରେ ସହଜରେ ନିଜ କାର୍ଯ୍ୟର ଗୁରୁତ୍ୱ ଅନୁଭବ କରିଥାନ୍ତି । ବଳ ପ୍ରକାଶ ପୂର୍ବକ ବ୍ରାହ୍ମଣମାନଙ୍କୁ

* ରାଜା ଅପୁତ୍ରିକ ଥିଲେ । ସମ୍ଭବତ ଫୁଲବାଈର ପୁତ୍ର ଦୁଇଟିକୁ ଲେଖକ ୧୨-୧୪ ବର୍ଷର ପୁତ୍ର ବୋଲି ଲେଖିଛନ୍ତି—ପ୍ରକାଶକ

ବିଦ୍ୟାଶିକ୍ଷା ଦେବାକୁ ଚେଷ୍ଟା କରିବା ମୋ ପକ୍ଷରେ ଯେ ନିତାନ୍ତ ଅବିବେଚନାର କାର୍ଯ୍ୟ ହୋଇଥିଲା, ସେଥିରେ ସନ୍ଦେହ ନାହିଁ । କୌଣସିରୂପେ ଗୋଲ ତ ବସିଲା ନାହିଁ, ଅଧିକନ୍ତୁ ସମସ୍ତ ବ୍ରାହ୍ମଣ ଏକମନ ହୋଇ ମୋର ସର୍ବନାଶ ସାଧନ ବିଷୟରେ ସଚେଷ୍ଟ ହୋଇ ରହିଲେ ।

ମୁଁ ଯେ କ୍ରମଶଃ ରାଜା ସାହେବଙ୍କର ବିରାଗ-ଭାଜନ ହୋଇ ପଡ଼ୁଅଛି, ଏ କଥା ବୁଝି ପାରି ନ ଥିଲି । ମୋ ପ୍ରତି ରାଜା ସାହେବଙ୍କର ସମାନ ମୌଖିକ ଅନୁଗ୍ରହ ପ୍ରଦାନ ସେଥିର କାରଣ ଅଟେ । ରାଜା-ସାହେବଙ୍କର ମୋପ୍ରତି ବିରକ୍ତିର କାରଣ— ରାଜାସାହେବ ଅପୁତ୍ରିକ ଥିଲେ । ବାବୁ ସାହେବ ହରିହର ଭ୍ରମରବରଙ୍କ ଏକମାତ୍ର ପୁତ୍ର ଜାତ ହେବା ସମୟରେ ସେହି ପୁତ୍ରକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିବା ସକାଶେ ମନସ୍ଥ କରିଥିଲେ । ପରେ ତାଙ୍କର ମତ ପରିବର୍ତ୍ତନ ଘଟିଲା । ସେହି ପୁତ୍ରକୁ ତ୍ୟାଗ କରି ଗୋଟିଏ ଫୁଲବାଣ୍ଟି ପୁତ୍ରକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିବାକୁ ମନସ୍ଥ କଲେ । ଏହି ସୂତ୍ରରେ ରାଜାଭ୍ରାତା ହରିହର ଭ୍ରମରବର ରାୟଙ୍କ ସହିତ ରାଜାଙ୍କର ମନୋମାଳିନ୍ୟ ଘଟିଲା । କ୍ରମଶଃ ବିବାଦ ଭୟଙ୍କର ରୂପ ଧାରଣ କଲା । ରାଜାସାହେବ କନିଷ୍ଠ ଭ୍ରାତାଙ୍କୁ ଅତ୍ୟନ୍ତ କଷ୍ଟ ଦେବାକୁ ଲାଗିଲେ । ରାଜାଙ୍କ ଭୟରେ ଚାକରମାନେ ବାବୁ ସାହେବଙ୍କୁ ଛାଡ଼ି ପଳାଇଲେ । ରାଜା ସାହେବ ବାବୁ ସାହେବଙ୍କର ସମସ୍ତ ପ୍ରକାର ଆୟ ବନ୍ଦ କରି ଦେବାରୁ ତାଙ୍କୁ ଅନ୍ନ ବସ୍ତ୍ର ବିଷୟରେ ଦାରୁଣ କଷ୍ଟ ଭୋଗ କରିବାକୁ ହେଲା । ବାବୁ ସାହେବ ଗଡ଼ଜାତ ମହାଲର ସୁପରିଣ୍ଟେଣ୍ଡେଣ୍ଟ ମହାତ୍ମା ରେଭେନ୍‌ସା ସାହେବଙ୍କ ନିକଟରେ ପୁନଃ ପୁନଃ ନାଲିସ କରିବାକୁ ଲାଗିଲେ । ସାହେବ ମହୋଦୟ ଦୁଇ ଭାଇଙ୍କ ମଧ୍ୟରେ ସମ୍ପ୍ରୀତି ସ୍ଥାପନ ବିଷୟରେ ବିଶେଷ ଚେଷ୍ଟାକରି ଅକୃତକାର୍ଯ୍ୟ ହେବାରୁ ରାଜାସାହେବଙ୍କ ପ୍ରତି ଅତ୍ୟନ୍ତ ବିରକ୍ତ ହେବାକୁ ଲାଗିଲେ । ସାହେବ ମହୋଦୟଙ୍କ ବିଶେଷ ତଦନ୍ତରେ ଦେବାନ ଦାମୋଦର ମହାପାତ୍ର ସମସ୍ତ ବିବାଦର ମୂଳକାରଣ ରୂପେ ପ୍ରତିପନ୍ନ ମାନ ହେବାରୁ ତାଙ୍କୁ ପଦଚ୍ୟୁତ କରି ମୋତେ ଦେବାନ ପଦରେ ନିଯୁକ୍ତ କରି ପଠାଇଥିଲେ ।

ରାଜସଂସାର ମଧ୍ୟରେ ଶାନ୍ତି ସ୍ଥାପନ ମୋର ଆନ୍ତରିକ ଇଚ୍ଛା ଥିଲା । ପୁଣି ଏହି ଭ୍ରାତୃବିବାଦ ଯୋଗୁଁ ମୋର ପୂର୍ବବର୍ତ୍ତୀ ଦେବାନ ପଦଚ୍ୟୁତ ହୋଇଅଛନ୍ତି । ଶାନ୍ତିସ୍ଥାପନ ଦ୍ୱାରା ହାକିମମାନଙ୍କ ସନ୍ତୁଷ୍ଟି ସାଧନ କରିବା ମୋର କର୍ତ୍ତବ୍ୟ । ବିଶେଷତଃ ରାଜଭ୍ରାତା ହରିହର ଭ୍ରମରବର ରାୟଙ୍କ ସହିତ ମୋର ନୀଳଗିରି ଯିବା ପୂର୍ବରୁ ବିଶେଷ ପ୍ରଣୟ ଥିଲା । ଏହି ସମସ୍ତ କାରଣରୁ ଅବସର ସମୟରେ ମୁଁ ସର୍ବଦା ବାବୁ ସାହେବଙ୍କ ଉଆସକୁ ଯାତାୟତ କରେଁ । ରାଜାସାହେବ ମଧ୍ୟ ବାବୁ ସାହେବଙ୍କ ପ୍ରସ୍ତକୁ ଆସି ବସନ୍ତି । ଉଭୟ ଭ୍ରାତାଙ୍କ ମଧ୍ୟରେ ସମ୍ପ୍ରୀତି ଜାତ ହେବାର ଦେଖି ଅତ୍ୟନ୍ତ ଆନନ୍ଦିତ ହେଲି । ମାତ୍ର ଅନ୍ତର୍ବହ୍ନି ଯେ ପ୍ରଚ୍ଛନ୍ନଭାବରେ ରହିଅଛି, ବୁଦ୍ଧିର ଅଳ୍ପତା ଯୋଗୁଁ ତାହା ବୁଝି ପାରିଲି ନାହିଁ । ବିବାଦର ମୂଳକାରଣ ପୋଷ୍ୟପୁତ୍ର । ଫୁଲବାଣ୍ଟି ପୁତ୍ରକୁ ଗଦିନସିନ୍ କରିବା ରାଜାସାହେବଙ୍କର ନିତାନ୍ତ ଇଚ୍ଛା । କଥାଟା ମନ ମଧ୍ୟରେ ସ୍ଥିର କରି ରଖି ଅଛନ୍ତି । ଏହା ମଧ୍ୟ ତାଙ୍କର ବିଶ୍ୱାସ ଥିଲା—ମୁଁ ସାହାଯ୍ୟ କଲେ ତାଙ୍କର ବାସନା ସଫଳ ହୋଇ ପାରିବ ।

ମୁଁ ସର୍ବଦା ବାବୁ ସାହେବଙ୍କ ଉଆସକୁ ଯାଏଁ । ବାବୁ ସାହେବ ମଧ୍ୟ ସାକ୍ଷାତ୍ କରିବା ସକାଶେ ସର୍ବଦା ମୋ ପାଖିକୁ ଆସନ୍ତି । ଏହି କାରଣରୁ ରାଜାସାହେବ ତାଙ୍କର ଆନ୍ତରିକ ବାସନା ମୋ ନିକଟରେ ଦୀର୍ଘକାଳ ପର୍ଯ୍ୟନ୍ତ ପ୍ରକାଶ କରିବାକୁ ସାହସ କରୁ ନ ଥିଲେ; କିନ୍ତୁ ଆଉ ଅଧିକ ଦିନ ସ୍ଥିର ହୋଇ ରହି ପାରିଲେ

ନାହିଁ । ଦିନେ ମୋତେ ନିଏଲାକୁ ଡାକି ନେଇ କହିଲେ, ଯେ ପ୍ରକାରେ ହେଉ ଉମାକାନ୍ତକୁ ଉତ୍ତରାଧିକାରୀ କରିବାକୁ ହେବ, ତୁମ୍ଭେ ଏ ବିଷୟରେ ବିଶେଷ ଯତ୍ନ କର । ( ରାଜାସାହେବଙ୍କ ଫୁଲବାଈ ପୁତ୍ରର ନାମ ଉମାକାନ୍ତ । ) ମୁଁ ବିବେଚନା କଲି, ଏ ବିଷୟରେ ବୃଥା ଯତ୍ନ କରିବାକୁ ଗଲେ ଉଭୟ ଭ୍ରାତାଙ୍କ ମଧ୍ୟରେ ବିଲୁପ୍ତ ପ୍ରାୟ ବିବାଦାଗ୍ନି ପୁନର୍ବାର ପ୍ରଜ୍ୱଳିତ ହେବ । ପୁଣି କାର୍ଯ୍ୟର ସଫଳତା ଲାଭ ନିତାନ୍ତ ଅସମ୍ଭବ । ରାଜାସାହେବଙ୍କୁ ଅନ୍ଧକାରରେ ପକାଇ ରଖିବା ଭଲ ନୁହେଁ । ତାଙ୍କ ମନରୁ ଏ ବୃଥା ଆଶା ଦୂରକରିବା ଉଚିତ । ମୁଁ ପରିଷ୍କାରରୂପେ ଜବାବ ଦେଲି, 'ହଜୁର, ଏପରି ଇଚ୍ଛା ପରିତ୍ୟାଗ କରନ୍ତୁ । ଗଡ଼ଜାତର ଆଇନ ଚଷ୍ପଶ ସବାଲ ଅନୁସାରେ ଭ୍ରାତୃଷ୍ପୁତ୍ର ଥାଉଁ ଥାଉଁ ଫୁଲବାଈ ପୁତ୍ର ଉତ୍ତରାଧିକାରୀ ହୋଇ ନ ପାରେ ।' ସେ ସମୟରେ ଗଡ଼ଜାତର ରାଜାମାନେ ଆଇନ କାନୁନ କିଛି ବୁଝି ନ ଥିଲେ । ସେମାନଙ୍କ ମନରେ ଧାରଣା ଥିଲା—ସେମାନେ ରାଜ୍ୟେଶ୍ୱର, ଯାହା ଇଚ୍ଛା ତାହା କରି ପାରନ୍ତି, ସରକାର ତାଙ୍କ ରାଜ୍ୟରେ କିଏ ? ରାଜାସାହେବ ମନରେ କଲେ, ମୁଁ ତାଙ୍କ ଶତ୍ରୁପକ୍ଷ । ମୁଁ ନୀଳଗିରିର ଦେୱାନ ଥିଲେ ତାଙ୍କ ବାସନା ସଫଳ ହେବ ନାହିଁ । ମୁଁ ବର୍ତ୍ତମାନ ସମ୍ପୂର୍ଣ୍ଣରୂପେ ଶତ୍ରୁପକ୍ଷ । ମୋ ପ୍ରତି ରାଜା ସାହେବଙ୍କର ଆଉ ବିଶ୍ୱାସ ନାହିଁ । ମାତ୍ର ମୁଁ ଗଡ଼ଜାତ ମାହାଲର ସୁପରିଣ୍ଟେଣ୍ଡେଣ୍ଟଙ୍କ ଦ୍ୱାରା ନିଯୁକ୍ତ । ମୋତେ କିଛି କହିବା ତାଙ୍କର ଅଧିକାର ନ ଥିଲା ।

ମୋ ଦେୱାନିର ତୃତୀୟ ବର୍ଷ ଆରମ୍ଭରେ ନୀଳଗିରିରେ ଗୋଟାଏ ଭୟଙ୍କର ପ୍ରଜାମେଳି ଉପସ୍ଥିତ ହେଲା ।

ନୀଳଗିରି ପର୍ବତ ଶ୍ରେଣୀ ମଧ୍ୟରେ ଗୋଟିଏ ପର୍ବତର ନାମ ବିଷ୍ଣୁପୁର ପାହାଡ଼ । ଏହି ପର୍ବତ ଶୃଙ୍ଗଟି ନୀଳଗିରି ଗଡ଼ର ଦକ୍ଷିଣ ଦିଗକୁ ପ୍ରାୟ ଦୁଇ କୋଶ ଦୂର । ଏହି ପର୍ବତର ଶିଖରରେ ମୁଗୁନି ପଥରର ଦୁଇଗୋଟି ଖଣି ଅଛି । ଗୋଟିଏ ଖଣିର ନାମ ବିଷ୍ଣୁପୁର, ଅନ୍ୟଟିର ନାମ ତାଳସଜିଆ । ଏକ ଶ୍ରେଣୀର ଲୋକ ଅଛନ୍ତି, ସେମାନଙ୍କ ନାମ ପଥୁରିଆ । ପଥୁରିଆମାନେ ଖଣିରୁ ପଥର କାଟି ଆଣି ସେଥିରେ ଥାଳି, ଡାଟିଆ, ଗିଲାସ, ଗିନା ଇତ୍ୟାଦି ବାସନ ତିଆର କରନ୍ତି । ଏହି ବାସନ ବଙ୍ଗଦେଶ ବାସିମାନଙ୍କର ବଡ଼ ପ୍ରିୟ । ବାର୍ଷିକ କୋଡ଼ିଏ ପଚିଶ ହଜାର ଟଙ୍କାର ବାସନ ବଙ୍ଗ ଦେଶକୁ ରପ୍ତାନି ହୁଏ । ପଥୁରିଆମାନେ ନିହାଣ ମୁଗୁରରେ ପଥର କାଟନ୍ତି । ରାଜାଙ୍କର ମୁଗୁର ପିଚ୍ଛି ଖଜଣା ଟ୧/୦ । ଯେଉଁ ଲୋକ ପଥୁରିଆମାନଙ୍କ ନିକଟରୁ ଖଜଣା ଅସୁଲ କରି ଦାଖଲ କରେ, ତାହାର ଉପାଧି ମାହାଲ ଦାର । ମାହାଲଦାରୀ ପ୍ରତିବର୍ଷ ନିଲାମ ହୁଏ । ଅବଶ୍ୟ ଯେ ସବୁଠାରୁ ଅଧିକ ଟଙ୍କା ଦେବାକୁ ରାଜି ହେଁ, ସେ ମାହାଲଦାରୀ ପାଏ ।

ମୋର ଦେୱାନୀ ଗ୍ରହଣ କରିବା ପ୍ରଥମ ବର୍ଷରେ କହ୍ନେଇ ମିଶ୍ର ନାମକ ଜଣେ ଲୋକ ବାର୍ଷିକ ଚାରି ହଜାର ଟଙ୍କା ଜମାରେ ପଥର ଖଣି କବୁଲିୟତ୍ କରିବା ସକାଶେ ଦରଖାସ୍ତ କଲା । ତତ୍ପୂର୍ବରୁ ବାର୍ଷିକ ଅଢ଼େଇ ହଜାର ଟଙ୍କାରୁ ବେଶି ଅସୁଲ ହେଉ ନ ଥିଲା । ପଥୁରିଆମାନଙ୍କ ଖଜଣା ବୃଦ୍ଧି ନ କରି କି ଉପାୟରେ ଅଧିକ ଟଙ୍କା ଅସୁଲ କରିବ, ଏ ବିଷୟ ପ୍ରଶ୍ନ କରିବାରେ ଉତ୍ତର ଦେଲା—ଅନେକ ଲୋକ କବୁଲିୟତ ନ ଦେଇ ଚୋରା ଭାବରେ ପଥର କାଟି ନିଅନ୍ତି । ସେହିମାନଙ୍କ ଠାରୁ ଟଙ୍କା ଅସୁଲ କରି ଦାଖଲ କରିବ । ରାଜ ସରକାରଙ୍କ ଅଧିକ ଲାଭର ପ୍ରଲୋଭନରେ ଉକ୍ତ ମିଶ୍ରଠାରୁ କବୁଲିୟତ ନିଆଯାଇ ମାହାଲଦାରୀ ସନନ୍ଦ ଦିଆଗଲା ।

ପର୍ବତ ଉପରେ ପଡ଼ିଥିବା ପଥର ଗୁଡ଼ାକ ଅବ୍ୟବହାର୍ଯ୍ୟ । ଗଭୀର ଖଣି ଖୋଳି ସେଥି ମଧ୍ୟରୁ

ବାସନ ହେବା ଯୋଗ୍ୟ ପଥର ଖୋଳାଯାଏ । ସେହି ଖଣି ମଧ୍ୟରେ ବିଭାଗ ଅନୁସାରେ ପୃଥକ୍ ପୃଥକ୍ ସ୍ଥାନ ଥାଏ । ଯେ ଯାହା ଖଣିରୁ ପଥର କାଟେ । ଜଣକ ନାମରେ ପଟ୍ଟା ଥାଏ ସତ୍ୟ, ମାତ୍ର ପଟ୍ଟାଦାରର ପୁଅ ଭାଇ ମିଶି ପାଞ୍ଚଜଣ ପଥର କାଟନ୍ତି । ପୂର୍ବ ପୂର୍ବ ମାହାଲଦାର ମାନଙ୍କ ଘର ପଥର ମାହାଲରେ । ପଡ଼ା ପଡ଼ୋଶୀଙ୍କ ଚକ୍ଷୁଲଜ୍ଜା ହେତୁରୁ ସେ ଏଥିର ପ୍ରତିବାଦ କରେ ନାହିଁ; ଅଥବା କିଛି କିଛି ଟଙ୍କା ନେଇ ସେମାନଙ୍କୁ ଛାଡ଼ିଦିଏ ।

କହ୍ନେଇ ମିଶ୍ର ଘର ପଥର ମାହାଲରେ । ତାକୁ ଖଣିର ଅବସ୍ଥା ବିଶେଷ ଜଣା । ସେ ମାହାଲଦାରି ପାଇ ଯାହା ନାମରେ କବୁଲିୟତ୍ , ତାହା ଛଡ଼ା ଅନ୍ୟ ସମସ୍ତଙ୍କୁ ପଥର କାଟିବା ସକାଶେ ନିଷେଧ କରି ଦେଲା । ପଥୁରିଆ ଜଣେ ସରକାରରୁ ପଟ୍ଟା ନିଏ, ତାହା ଘରର ପୁଅ ଭାଇ ଯେତେ ଜଣ ଥାନ୍ତି, ସମସ୍ତେ ପଥର କାଟନ୍ତି । ଏହିପରି ଚିରକାଳ ଭୋଗ କରି ଆସୁଅଛନ୍ତି । ବର୍ତ୍ତମାନ ବନ୍ଦ କଲେ ସେମାନଙ୍କର ଭୟଙ୍କର କ୍ଷତି, ସହଜରେ କି ସ୍ୱୀକାର କରିବେ ? ଭୟଙ୍କର ଗୋଳମାଳ କରିବାକୁ ଲାଗିଲେ । ସମସ୍ତେ ଏକମେଳ ହୋଇ ପଥର କଟା ବନ୍ଦ କରିଦେଲେ । କହ୍ନେଇ ମିଶ୍ରଟା କିଛି ସାହସୀ ଏବଂ ଅତ୍ୟାଗ୍ରହୀ ଲୋକ ଥିଲା । ସେ ପଥୁରିଆମାନଙ୍କ ଉପରେ ଅତ୍ୟାଗ୍ରହ ମଧ୍ୟ କରିଥିଲା । ନୀଳଗିରିର ସମସ୍ତ ଇଲାକାର ପ୍ରଜାମାନେ ନିତାନ୍ତ ସରଳ ଏବଂ ନିରୀହ ଲୋକ; ମାତ୍ର ପଥର ମାହାଲର ପ୍ରଜାମାନେ କିଛି ବୁଦ୍ଧିମାନ୍, ବଦମାଏସ୍ ଏବଂ ପ୍ରତାରକ । ଖଡ଼୍‌ଗପୁର ମାହାଲରେ ତିନି ଗୁରିଟା ହାଟ । ସେହି ହାଟ ମାନଙ୍କରେ ପ୍ରତିଦିନ ଅନେକ ଟଙ୍କାର ପଥର ବାସନ କିଣା ବିକା ହୁଏ । ନାନା ସ୍ଥାନରୁ ବ୍ୟବସାୟୀମାନେ ଆସି ପଥର ବାସନ କିଣିଥାନ୍ତି । ସେମାନଙ୍କ ହସ୍ତ ହେତୁରୁ ପଥୁରିଆ ମାନେ ଚାଲାକ ହୋଇ ପଡ଼ିଥିଲେ । ପଥୁରିଆ ମାନଙ୍କର ଯଥେଷ୍ଟ ଆୟ ଥିଲା । ମାତ୍ର ସମସ୍ତେ ପ୍ରାୟ ଅପବ୍ୟୟୀ । ସୁତରାଂ ସମସ୍ତେ ଦରିଦ୍ର ଓ ଋଣଗ୍ରସ୍ତ । ପଥର କାରବାରି ମହାଜନମାନଙ୍କୁ ପଥର ଦେବା କରାରରେ ଟଙ୍କା ବୟନା ନେଇ ପ୍ରାୟ ପରିଶୋଧ କରନ୍ତି ନାହିଁ । ଜଣେ ଜଣେ ପଥୁରିଆ ପାଞ୍ଚ ସାତ ଜଣ ମହାଜନଙ୍କ ଠାରେ ଋଣୀ । ଗୋଟାଏ ପଦଲ ଥିଲା —"ପଥୁରିଆ ଜାତି, ଉଧାର ପାଇଲେ କିଏ ନ ନିଅନ୍ତି ହାତି ।"

କହ୍ନେଇ ମିଶ୍ରର ଅତ୍ୟାଗ୍ରହ ବିଷୟ ଉଲ୍ଲେଖ କରି ତାହାକୁ ମାହାଲଦାରିରୁ ବରଖାସ୍ତ କରିବା ସକାଶେ ସମସ୍ତେ ଦରଖାସ୍ତ ଦେବାକୁ ଲାଗିଲେ । ସେହି ସମୟରେ ମିଶ୍ରକୁ ମାହାଲଦାରିରୁ ବରଖାସ୍ତ କରିଥିଲେ କିଲ୍ଲା ମଧ୍ୟରେ କୌଣସି ପ୍ରକାର ଗୋଳମାଳ ଘଟିବାର ସମ୍ଭାବନା ନ ଥିଲା । ମୁଁ ଦେଖିଲି, କହ୍ନେଇ ମିଶ୍ରକୁ ମାହାଲଦାରିରୁ ବରଖାସ୍ତ କଲେ ବୃଦ୍ଧିଜମା ଅସୁଲ ହୋଇ ପାରିବ ନାହିଁ । ପୁଣି ରାଜ ସରକାର ଯାହାକୁ ନିଯୁକ୍ତ କରିଅଛି, ପଥୁରିଆ ମାନଙ୍କ ପ୍ରାର୍ଥନାରେ ତାହାକୁ ବରଖାସ୍ତ କଲେ ସରକାରର ସମ୍ଭ୍ରମ ନଷ୍ଟ ହୋଇଯିବ । ଏହି କାରଣରୁ ପଥୁରିଆମାନଙ୍କ ଦରଖାସ୍ତ ଅଗ୍ରାହ୍ୟ କରିବାକୁ ଲାଗିଲି ।

ବର୍ତ୍ତମାନ ପ୍ରଜାମାନେ ରାଜସରକାରଙ୍କ ସମସ୍ତ ପ୍ରକାର ହୁକୁମ ଅଗ୍ରାହ୍ୟ କରି ପ୍ରକାଶ୍ୟ ରୂପେ ଗୋଟାଏ ମେଳି ସୃଷ୍ଟି କଲେ । କିଲ୍ଲାର ବ୍ରାହ୍ମଣମାନେ ଏବଂ ସଦର କଚେରୀର ଦୁଇ ଚାରି ଜଣ ଅମଲା ପ୍ରଚ୍ଛନ୍ନ ଭାବରେ ଯୋଗ ଦେବାରୁ ସେମାନଙ୍କ ସାହସ ଖୁବ୍ ବଢ଼ିଗଲା । ପଥୁରିଆ ମାନଙ୍କର ବିଶ୍ୱାସ (ପ୍ରକୃତରେ ସତ୍ୟ କଥା), ମୁଁ ସପକ୍ଷତା କରିବାରୁ କହ୍ନେଇ ମିଶ୍ର ବରଖାସ୍ତ ହେଲା ନାହିଁ । ସେମାନଙ୍କ ଜାଣିବାରେ ମୁଁ ଏବଂ କହ୍ନେଇ ମିଶ୍ର ଦୁଇଜଣ ସେମାନଙ୍କ ଶତ୍ରୁ ।

ପ୍ରଜାମାନଙ୍କ ମଧ୍ୟରେ ଚାନ୍ଦା ସଂଗ୍ରହ ହେଲା । କୋଡ଼ିଏ ପଚିଶ ଜଣ ପ୍ରଜା ଖର୍ଚ୍ଚା ଟଙ୍କା ଧରି

ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କ ନିକଟରେ ନାଲିସ କରିବାକୁ କଟକ ଗଲେ । ଦେବାନ ଏବଂ ମାହାଲଦାର ଦୁଇ ଜଣଙ୍କ ଅତ୍ୟାଚାରର ହେତୁରୁ ପ୍ରଜାମାନେ ଅସ୍ଥିର ହୋଇ ଘର ଛୁଡ଼ି ପଳାଇଲେଣି । ନାନା ପ୍ରକାର ମିଥ୍ୟା ଅତ୍ୟାଚାରର ବିଷୟ ବର୍ଣ୍ଣନ କରି ସାହେବଙ୍କ ହଜୁରରେ ଦରଖାସ୍ତ ଦାଖଲ କରିବାରୁ ଖୋଦ ସୁପରିଣ୍ଟେଣ୍ଡେଣ୍ଟ ରେଭେନ୍‌ସା ସାହେବ ମାମଲା ତଦନ୍ତ କରିବାକୁ ସରଜମିନ ନୀଳଗିରି କଚ୍ଛାକୁ ଆସିଲେ । ସାହେବ ମହୋଦୟଙ୍କ ସୂକ୍ଷ୍ମ ତଦନ୍ତରେ ଦରଖାସ୍ତ ଲିଖିତ ଅତ୍ୟାଚାରର ବିଷୟମାନ ମିଥ୍ୟା ବୋଲି ପ୍ରତିପନ୍ନ ହେଲା । ସାହେବଙ୍କ ତଦନ୍ତରେ ସ୍ଥିର ହେଲା ଯେ, ପଥର ଖଣିର ଖଜଣା ବୃଦ୍ଧି ମେଳିର କାରଣ ଅଟେ । ବେଆଇନ ଜନତା କରିଥିବାରୁ କେତେ ଜଣ ସରଦାର ମେଳିଆ ଦୁଇ ତିନି ମାସ ଲେଖାଏଁ ଜେଲ ଗଲେ । ମାହାଲଦାର କହ୍ନେଇ ମିଶ୍ର କେତେକ ଜଣ ପଥୁରିଆଙ୍କ ଉପରେ ଅତ୍ୟାଚାର କରିଥିବା ହେତୁ ମାହାଲଦାରୀରୁ ବରଖାସ୍ତ ହେଲା । ମୁଁ ପ୍ରଜାମାନଙ୍କୁ ସମ୍ଭାଳି ରଖି ପାରିନାହିଁ, କହ୍ନେଇ ମିଶ୍ରର ଅତ୍ୟାଚାର ଦମନ କରି ପାରିନାହିଁ, ଇତ୍ୟାଦି ବିଷୟ ଉଲ୍ଲେଖ କରି ସାହେବ ମୋତେ ତିରସ୍କାର କଲେ । ରାଜା ସାହେବ ପୂର୍ବରୁ ମୋ ଉପରେ ଅସନ୍ତୁଷ୍ଟ ଥିଲେ, ବର୍ତ୍ତମାନ ପ୍ରଜା ମେଳି ହେତୁରୁ ବର୍ଦ୍ଧିତ ପଥର ଖଣିର ଖଜଣା ନଷ୍ଟ ହୋଇଗଲା, ଇତ୍ୟାଦି କାରଣରୁ ରାଜା ସାହେବଙ୍କର ମୋ ପ୍ରତି ଅତ୍ୟନ୍ତ କ୍ରୋଧ ଜାତ ହେଲା । ତାଙ୍କ ସ୍ୱାଭାବିକ ଚକ୍ଷୁଲଜ୍ଜା ହେତୁରୁ ସେ ମୋ ସହିତ ପୂର୍ବବତ୍ ବ୍ୟବହାର କରୁଥାନ୍ତି; ମାତ୍ର ତାଙ୍କର ମାନସିକ ଭାବ କଥା କଥାକେ ପ୍ରକାଶ ପାଇବାକୁ ଲାଗିଲା । ମୋର ଆତ୍ମସମ୍ଭ୍ରମ ରକ୍ଷା ନିମନ୍ତେ ମୁଁ ନୀଳଗିରିରୁ ଚାଲିଆସିଲି ।

ନୀଳଗିରି କଚ୍ଛାରେ ଶିକ୍ଷା ବିସ୍ତାର, କୃଷି ବାଣିଜ୍ୟର ଉନ୍ନତି, ଯାତାୟାତ ନିମନ୍ତେ ରାସ୍ତା ନିର୍ମାଣ ପ୍ରଭୃତି ସାଧାରଣ କାର୍ଯ୍ୟରେ ହସ୍ତକ୍ଷେପ ମାତ୍ର କରିଥିଲି । ନୀଳଗିରି ଗଡ଼ଠାରୁ ଜଗନ୍ନାଥ ସଡ଼କ ପର୍ଯ୍ୟନ୍ତ ସରଳ ଭାବରେ ଯେଉଁ ସଡ଼କ ତିଆରି ଆରମ୍ଭ କରାଇଥିଲି, ତାହା କେବଳ ତିନି ମାଇଲ ଓ ମଧ୍ୟରେ ଗୋଟିଏ ପଥର ଶଙ୍ଖ ମାତ୍ର ନିର୍ମିତ ହୋଇଥିଲା ।

ନୀଳଗିରି ନିଜ ଗଡ଼ରେ ଗୋଟିଏ ସଂସ୍କୃତ ଟୋଲ ବସିଥିଲା । ପଚିଶ ଷାଠିଏ ବର୍ଷ ପୂର୍ବେ ବାଲେଶ୍ୱରବାସୀ କୋବି, ମଟର ପ୍ରଭୃତିର ଚାଷ ଜାଣୁ ନ ଥିଲେ । ବିଲାତି ଆଳୁ ଗଛର ଫଳ ବା ମୂଳ, ତାହା କହିବାକୁ ଜଣା ନ ଥିଲା । ନୀଳଗିରି ଗଡ଼ରେ ଗୋଟିଏ ପୁଷ୍ପୋଦ୍ୟାନ ଓ କୋବି ପ୍ରଭୃତିର ଚାଷ ଆରମ୍ଭ କରାଇ କୃତକାର୍ଯ୍ୟ ହୋଇଥିଲି । ଗୋଟିଏ ତୁତ ବଗିଚା କରି ରେଶମ ଚାଷ ଆରମ୍ଭ କରାଇଥିଲି । ମୋର ନୀଳଗିରି ତ୍ୟାଗ ପୂର୍ବେ ଯୋଡ଼ିଏ ମାତ୍ର ରେଶମ ଲୁଗା ବୁଣା ହୋଇଥିଲା ।

ନୀଳଗିରିରେ ଚା ଉତ୍ପନ୍ନ ହୋଇପାରେ କି ନାହିଁ ପରୀକ୍ଷା କରିବା ନିମନ୍ତେ ପୁସ୍ତକମାନଙ୍କରେ ଅନୁସନ୍ଧାନ କରି ଏବଂ ଆସାମ ଚା ବଗିଚା ବିଷୟ ଅବଗତ ଥିବା କେତେକ ସାହେବଙ୍କୁ ପଚାରି ଗୋଟିଏ ପର୍ବତ ଖୋଲରେ ବଗିଚା ଆରମ୍ଭ କରିଥିଲି । ମୋର ନୀଳଗିରି ତ୍ୟାଗ ସମୟରେ ଚା ଗଛ ଆଠ ଦଶ ଇଞ୍ଚ ମାତ୍ର ଉଚ୍ଚ ହୋଇଥିଲା । ଫଳତଃ କୌଣସି କାର୍ଯ୍ୟର ସାଫଲ୍ୟ ଦର୍ଶନ ପର୍ଯ୍ୟନ୍ତ ସମୟ ମୋ ଅଦୃଷ୍ଟରେ ଘଟି ନ ଥିଲା । କେବଳ ନାରିକେଳ ଗଛ ରୋପଣ କରିଥିଲି, ସେ ସମସ୍ତ ଗଛ ପ୍ରଚୁର ପରିମାଣରେ ଫଳ ପ୍ରଦାନ କରୁଥିବାର ଶୁଣିବାକୁ ପାଏଁ ।

(ଉ. ସା. ୧୩ଶ ଭାଗ—୫ମ ସଂଖ୍ୟା)

## ୨୪

## କଟକ ଯାତ୍ରା

ମାଳଗିରିରୁ ଫେରିଆସି ଏକାବେଳକେ ନିଃସ୍ୱ ହୋଇ ପଡ଼ିଅଛି । ଘରେ ପରିବାର ମଧ୍ୟରେ ଜଣେ ମଧ୍ୟ ମୋର ସହାୟ କିମ୍ବା ସମଦରଦୀ ନ ଥିଲେ । ବରଞ୍ଚ ମୋ ଦୁଃଖ ଦୁର୍ଦ୍ଦଶା ଦେଖି କେହି କେହି ଆନନ୍ଦିତ । କେବଳ ପନ୍ଦର ବର୍ଷ ବୟସ୍କା ବାଳିକା ସ୍ତ୍ରୀଟି ଦୁଃଖରେ ସୁଖରେ ସବୁ ସମୟରେ ଛାୟାପରି ସଙ୍ଗେ ସଙ୍ଗେ ରହିଥାନ୍ତି । ମନଦୁଃଖରେ କାତରହୋଇ ନପଡ଼େଁ, ସେଥିପ୍ରତି ତାଙ୍କର ଦୃଷ୍ଟି ଥାଏ । ସେ ଦିନେ ମୋତେ କହିଲେ, "କି ସକାଶେ ଏପରି ବ୍ୟସ୍ତହୋଇ ପଡ଼ୁଛ ? ମୋର ଯେତେ ସୁନା ଅଳଙ୍କାର ଅଛି, ସବୁ ବିକି ପକାଅ । ସ୍ୱଚ୍ଛନ୍ଦରେ ଦୁଇ ତିନିବର୍ଷ ଖର୍ଚ୍ଚ ଚଳିଯିବ । ଏ ଭିତରେ ଭଗବାନ୍ କୌଣସି ପ୍ରକାର ଉପାୟ ଦେବେ ଯେ ।"

ଅବଶେଷରେ ଚିନ୍ତାକରି ଦେଖିଲି, ବାଲେଶ୍ୱରରେ ଉପାର୍ଜ୍ଜନର କୌଣସି ପ୍ରକାର ଉପାୟ ନାହିଁ । କଟକ ଫେରିଯିବା ସକାଶେ ସ୍ଥିର କଲି । ସେ ସମୟରେ ମୋର ପରମ ସହାୟ ମହାତ୍ମା ଜନ୍ ବିମ୍ସ ସାହେବ କଟକର କଲେକ୍ଟର ଥିଲେ । ଉକ୍ତ ମହାତ୍ମା ମୋ ସକାଶେ କୌଣସି ପ୍ରକାର ଉପାୟ ବିଧାନ କରିଦେବେ ବୋଲି ଦୃଢ଼ ବିଶ୍ୱାସ ଥିଲା । କଟକ ଯିବାକୁ ହେଲେ ବାଟଖର୍ଚ୍ଚ ଆବଶ୍ୟକ । ମୋ ସ୍ତ୍ରୀ ତାଙ୍କ ବାକ୍ସ ଝାଡ଼ିଝୁଡ଼ି ଚଉ଼ ଟି ଟଙ୍କା, କେତେଅଣା ପଇସା ଓ ଗୋଟିଏ ଜୟପୁରି ମୋହର ବାହାର କରିଦେଲେ । ମୋହରଟି ବନ୍ଧକ ସ୍ୱରୂପ ରଖି କେତୋଟି ଟଙ୍କା ଆଣିବା ସକାଶେ ଜଣେ ଖୁବ୍ ନିକଟ ସମ୍ପର୍କୀୟ ବନ୍ଧୁଙ୍କ ନିକଟକୁ ଗଲି । ବନ୍ଧୁ ଧନବାନ ଓ ଉପାର୍ଜ୍ଜନଶୀଳ; ମୁଁ ସମ୍ପତ୍ତି ନିଃସ୍ୱ । ଏଥିସକାଶେ ମୋ ପ୍ରତି ତାଙ୍କର ସ୍ନେହ ପ୍ରୀତି ଊଣା ପଡ଼ି ଯାଇଅଛି । ସହଜ ବୁଦ୍ଧିରେ ଅଥବା ବୁଦ୍ଧିର ନ୍ୟୂନତା ଯୋଗୁଁ ମୁଁ ତାହା ବୁଝିପାରି ନ ଥିଲି । ମୁଁ ଟଙ୍କା ବିଷୟ ଉଲ୍ଲେଖ କରିବା ମାତ୍ରକେ ସେ ତର୍ଜ୍ଜନ ଗର୍ଜ୍ଜନ କରି କହିଲେ, ମୋ ପାଖରେ ଟଙ୍କା ଦେଖି-ଅଛନ୍ତି ବୋଲି ଧାଇଁ ଆସୁଅଛନ୍ତି ? ମନରେ ଦୁଃଖ କରିବେ ବୋଲି ସ୍ତ୍ରୀଙ୍କଠାରେ ଉପସ୍ଥିତ ପ୍ରସଙ୍ଗ ଉତ୍ଥା-ପନ କଲିନାହିଁ । ନିକଟ ପ୍ରତିବାସୀ ଗବର୍ଣ୍ଣମେଣ୍ଟ ପ୍ଲିଡ଼ର ଭୂମ୍ୟା ଅବଦୁସ୍ ଶୋଭାନ ଖାଁଙ୍କ ନିକଟରେ ମୋହରଟି ରଖି କେତୋଟି ଟଙ୍କା ଧାର ଆଣିଲି । ଆଶ୍ଚର୍ଯ୍ୟର ବିଷୟ, ତିନିବର୍ଷ ଉତ୍ତାରେ ମୋର ସେହି ଅପମାନକାରୀ ବନ୍ଧୁ ଗୋଟାଏ ଗୁରୁତର ଫୌଜଦାରୀ ମାମଲାରେ ଜଡ଼ିତ ହୋଇ ଜେଲ ଗଲେ । ପ୍ରକୃତରେ ସେ ସମ୍ପୂର୍ଣ୍ଣରୂପେ ନିର୍ଦ୍ଦୋଷ ଥିଲେ । ଘଟନା ସମୟରେ ମଦ୍ୟପାନ କରି ଗୋଟିଏ ଦୁଷ୍ଟଚରିତ୍ରା ସ୍ତ୍ରୀ ଘରେ ବାସ କରୁଥିବା ଯୋଗୁଁ ତାଙ୍କ ପ୍ରତି ଏହି ଭୀଷଣ ଦୁର୍ଯୋଗ ଘଟିଥିଲା । ତାଙ୍କୁ ଜେଲରୁ ଉଦ୍ଧାର କରିବା ନିମନ୍ତେ ମୋତେ ଦୁଇମାସ ପର୍ଯ୍ୟନ୍ତ ଦୃଢ଼ଗାଢ଼ ପରିଶ୍ରମ ଏବଂ ହାତରୁ ପ୍ରାୟ ଛଅଶତ ଟଙ୍କା ପର୍ଯ୍ୟନ୍ତ ବ୍ୟୟ କରିବାକୁ ହୋଇଥିଲା । ଦୟାମୟ ପ୍ରଭୁ ତାଙ୍କ ପରଲୋକଗତ ଆତ୍ମା ପ୍ରତି ସଦ୍‌ଗତି ବିଧାନ କରନ୍ତୁ ।

କଟକ ଯିବି, ସେ ସ୍ଥାନର ସମସ୍ତେ ଅପରିଚିତ । (ରାୟ ବାହାଦୂର) ବାବୁ ଗୌରୀଶଙ୍କର ରାୟ, ନର୍ମାଲ ସ୍କୁଲ ସୁପରିଣ୍ଟେଣ୍ଡେଣ୍ଟ ବାବୁ ଦ୍ୱାରକାନାଥ ଚକ୍ରବର୍ତ୍ତୀଙ୍କ ସହିତ କେବଳ ପତ୍ରଯୋଗେ ପରିଚୟ । (ରାୟ ବାହାଦୂର ) ବାବୁ ସୁଦାମଚନ୍ଦ୍ର ନାୟକ ସେ ସମୟରେ ବାଲେଶ୍ୱରରେ ଥିଲେ । ତାଙ୍କ ଜ୍ୟେଷ୍ଠଭ୍ରାତା ( ରାୟ ବାହାଦୂର ) ବାବୁ ନାରାୟଣଚନ୍ଦ୍ର ନାୟକ ଟାଉନରେ ସର୍ଭେ କାର୍ଯ୍ୟରେ ନିଯୁକ୍ତ ଥିଲେ । ତାଙ୍କ ନାମରେ ଖଣ୍ଡିଏ ପରିଚୟ ପତ୍ର ସୁଦାମବାବୁଙ୍କଠାରୁ ଲେଖାଇ କଟକ ଯିବାକୁ ପ୍ରସ୍ତୁତ ହେଲି ।

ଅର୍ଦ୍ଧରାତ୍ର, ପୃଥିବୀ ଅନ୍ଧକାରମୟ  ମୋ ମନ ଓ ହୃଦୟ ସେହିପରି ତମିସାଚ୍ଛନ୍ନ । ଘରେ ସମସ୍ତ ପରିବାର ନିଦ୍ରିତ । କେବଳ ମୋ ସ୍ତ୍ରୀ ଜାଗ୍ରତା । ପୂର୍ବେ ମୋ ପଦସ୍ଥ ଅବସ୍ଥାରେ ବିଦେଶଯାତ୍ରା ସମୟରେ ମୋତେ ମେଲାଣି ଦେବା ସକାଶେ କେତେ ଲୋକ ଉପସ୍ଥିତ ଥାଆନ୍ତି । ବର୍ତ୍ତମାନ ସେମାନେ କାହାନ୍ତି ?

"ଅବସ୍ଥା ପୂଜ୍ୟତେ ରାଜନ୍
ନ ଶରୀରଂ ଶରୀରିଣାଂ ।"

ଘରୁ ବାହାରି ପଛକୁ ଅନାଇଲି, ଗୋଟିଏ ବିଷାଦ-ମୟୀ ବାଳିକାମୂର୍ତ୍ତି ଅନ୍ଧକାର ମଧ୍ୟରେ କବାଟକୁ ଧରି ଜଡ଼ ମୂର୍ତ୍ତିବତ୍ ଦଣ୍ଡାୟମାନା । ପରସ୍ପର ସମ୍ପ୍ରୀତି ଓ ସହାନୁଭୂତି ହିଁ ବିପଦ୍‌ଗ୍ରସ୍ତ ନିରାଶ ହୃଦୟ ମାନବର ସାନ୍ତ୍ୱନା ଏବଂ ଧୈର୍ଯ୍ୟଲାଭର ପ୍ରକୃଷ୍ଟ ଅବଲମ୍ବନ । ପୂର୍ବ ବନ୍ଦୋବସ୍ତ ଅନୁସାରେ ଡାକ ପାଲିଙ୍କି ଦୁଆର ଆଗରେ ଉପସ୍ଥିତ ଥିଲା । କଟକ ଯାତ୍ରା କଲି । ମୋର ପ୍ରଥମ ଜାମାତା ବାବୁ ରଘୁନାଥ ପ୍ରସାଦ ଚୌଧୁରୀ ସେ ସମୟରେ କଟକ କଲେଜରେ ଏଫ୍. ଏ. ପଢ଼ୁଥିଲେ । ଗୃଦ୍ଧନଚୌକରେ ତାଙ୍କର ବସା । ମୁଁ ସେହି ବସାରେ ରହିଲି ।

କଟକ ନାବାଳକ ଜମିଦାରୀ ମାହାଲର ଅଡ଼ିଟରୀ ପଦ ଶୂନ୍ୟ ହେଲା । ମାସିକ ବେତନ ସତୁରି ଟଙ୍କା । କଲେକ୍ଟର ମହାତ୍ମା ଜନ୍ ବୀମ୍‌ସ ସାହେବ ମୋତେ ସେହି ପଦରେ ନିଯୁକ୍ତ କରିବା ସକାଶେ ଆଦେଶ କଲେ । ଅନୁସନ୍ଧାନ ଦ୍ୱାରା ବୁଝିଲି, କଟକ ଜିଲ୍ଲାଯାକ ସାନ ସାନ ନାବାଳକ ଜମିଦାର ମାନଙ୍କ ମାହାଲ୍ ଗୁଡ଼ିକ ବୁଣି ହୋଇ ପଡ଼ିଅଛି । ସମସ୍ତ ମାହାଲରେ ବୁଲି ବୁଲି ମଫସଲ ତହସିଲର ଆୟ ବ୍ୟୟ ପରୀକ୍ଷା କରିବାକୁ ହେବ । ଖଣ୍ଡିଏ ପାଲିଙ୍କି ସକାଶେ ଆଠ ଜଣ ଆପଟ ଏବଂ ଜଣେ ରାନ୍ଧୁଣିଆ ଚାକର ରଖିବା ନିତାନ୍ତ ଆବଶ୍ୟକ । ସେମାନଙ୍କ ଦରମା ଏବଂ ଖୋରାକି ସକାଶେ ମାସିକ ଷାଠିଏ ଟଙ୍କା ଆବଶ୍ୟକ । ଏଥିକୁ ସତୁରି ଟଙ୍କା ବେତନରେ ଚଳିବା ଜଣେ ଭଦ୍ରଲୋକ ପକ୍ଷରେ ସମ୍ଭବପର ନୁହେଁ । ସାହେବ ମହୋଦୟଙ୍କୁ ଏ ବିଷୟ ଜଣାଇବାରୁ ସେ ମଧ୍ୟ ମୋ ପ୍ରସ୍ତାବକୁ ଯୁକ୍ତିଯୁକ୍ତ ବୋଲି ସ୍ୱୀକାର କଲେ । ମାସିକ ସତୁରି ଟଙ୍କା ସ୍ଥଳରେ ପଞ୍ଚାନବେ ଟଙ୍କା ସ୍ଥିର କରିବା ନିମନ୍ତେ ବୋର୍ଡ଼କୁ ରିପୋର୍ଟ କଲେ । ଆଦେଶ ପ୍ରତୀକ୍ଷାରେ ମତେ ବସି ରହିବାକୁ ହେଲା ।

(ଉ: ସା: ୧୩ଶ ଭାଗ—୬ମ ସଂଖ୍ୟା)

---

## ୨୪

## ଡୋମପଡ଼ାର ଦେବାନୀ (୧)

କଟକ ଅବସ୍ଥାନ କାଳରେ ବାବୁ ନାରାୟଣ ଚନ୍ଦ୍ର ନାୟକ ମୋର ପ୍ରଧାନ ବନ୍ଧୁ, ସହାୟ ଓ ପରାମର୍ଶଦାତା ଥିଲେ । କଚେରି ବାହୁଡ଼ା ସେ ମୋ ପାଖକୁ ଆସନ୍ତି, ନ ହେଲେ ମୁଁ ତାଙ୍କ ପାଖକୁ ଯାଏଁ । ଦୁଇଜଣ ରାତ୍ରି ଦଶଟା ପର୍ଯ୍ୟନ୍ତ ଏକତ୍ର ଭ୍ରମଣ କରୁଁ । ସାନ ବଡ଼ ଅନେକ ବାବୁଙ୍କ ଘରେ ବୈଠକ ବସେ । ତାସ ସତରଞ୍ଜ ଖେଳ, ମଦ୍ୟପାନ ଓ ଭୋଜ ହୋଇଥାଏ । ସେ ସମୟରେ କି ବଙ୍ଗାଳୀ, କି ଓଡ଼ିଆ, ସମସ୍ତ ସଭ୍ୟ ବାବୁ ସୁରାସେବୀ ଥିଲେ । କଟକରେ ସର୍ବପ୍ରଥମ ପ୍ରଧାନ ଓକିଲ ପରଶୁରାମ ଲାଲ, ଶ୍ରୀରାମ ବୋଷ ଓ ଈଷାନଚନ୍ଦ୍ର ବାନୁର୍ଯ୍ୟା । ପ୍ରଥମ ଦୁଇବଂଶ ବିଲୁପ୍ତ, ଈଶାନ ବାବୁଙ୍କ ପୁତ୍ର ବାବୁ କାଳୀପଦ ବାନୁର୍ଯ୍ୟା ଜଣେ ଶିକ୍ଷିତ, ଉତ୍ସାହୀ ଓ ଆମୋଦପ୍ରିୟ ଲୋକ ଥିଲେ । ସନ୍ଧ୍ୟାଉତ୍ତାରେ ତାଙ୍କ ବୈଠକ ଖାନାରେ ଅନେକ ବାବୁ ସମ୍ମିଳିତ ହୁଅନ୍ତି । ମୁଁ ଓ ନାରାୟଣ ବାବୁ ମଧ୍ୟ ଯାଇଁ ଉପସ୍ଥିତ ହେଉଁ । ରାତି ଦଶଟା ପର୍ଯ୍ୟନ୍ତ ତାସ

ପଶା ଖେଳ, ଗଳ୍ପ, ପାନାହାର ଓ ଆମୋଦ ପ୍ରମୋଦରେ କଟେ । ତାଙ୍କ ଭୋଜ ପ୍ରାୟ ପ୍ରତିଦିନ ହୁଏ । ନାରାୟଣ ବାବୁ ସାଙ୍ଗରେ ଥିବାରୁ ସମୟଟା ବେଶ୍ ଆମୋଦ ପ୍ରମୋଦରେ କଟିଥାଏ । ହେଲେ ବୋର୍ଡ଼ ହୁକୁମକୁ ଚୃହିଁ ବସିଥାଏଁ । ଆଜ କାଲପରି ପ୍ରାୟ ଦେଢ଼ମାସ କାଳ ବିତିଗଲାଣି । ହାତରେ ଯେତୋଟି ଟଙ୍କା ଥିଲା ସରିଗଲାଣି । ଦିନେ ସଖଲେ ରାନ୍ଧୁଣିଆ କହିଲା, ବସାରେ ରାତିକୁ ରୋଷେଇ ସରଞ୍ଜାମ କିଛି ନାହିଁ । କଣ କରିବି, ଉପାୟ କିଛି ଦିଶୁ ନାହିଁ । ମୋର ଯାହା ହେଉ, ବସାରେ ପିଲାଟା ଯେ ଉପବାସରେ ରହିଯିବ । ବସାରେ ମନ ଲଗିଲା ନାହିଁ, ଗୃହଟା ଉତ୍ତରେ କଲେକ୍ଟରୀ କଚେରୀର ପୂର୍ବ ତରଫ କାଠଯୋଡ଼ି ନୂଆ ପଥର ବନ୍ଧ ଉପରେ ଯାଇ ତୁନି ହୋଇ ବସି ଉଦାସ ଭାବରେ ନଈ ଭିତରକୁ ଚୃହିଁ ରହିଥାଏଁ । ପଛରୁ ଜଣେ ବାବୁ ଡାକିଲେ, "ଓ ହେ ଫକୀରମୋହନ, ଏଠାରେ ଏକୁଟିଆ ବସି କ'ଣ କରୁଛ ?" ପଛକୁ ଚୃହିଁ ଦେଖିଲି, ନର୍ମାଲ ସ୍କୁଲ ସୁପରିଣ୍ଟେଣ୍ଡେଣ୍ଟ ବାବୁ ଦ୍ୱାରକାନାଥ ଚକ୍ରବର୍ତ୍ତୀ । ଦ୍ୱାରୀବାବୁଙ୍କୁ ମୁଁ ଖୁଡ଼ୁତା ପରି ସମ୍ମାନ କରୁଥିଲି, ସେ ମଧ୍ୟ ମୋତେ ପୁତ୍ରପରି ସ୍ନେହ କରୁଥିଲେ । ଦ୍ୱାରୀବାବୁ କହିଲେ, "ଆସ ଫକୀରମୋହନ ଆଜ ତୁମର ହିସାବ ନିକାଶ କରାଯିବ ।" ବର୍ତ୍ତମାନ ମୋ ମନରେ ଦାରୁଣ ଭାବନା ଉପସ୍ଥିତ, ହିସାବ ପତ୍ର କଥା ଭଲ ଲଗିବ କ୍ୟାଁ ? ମୁଁ କହିଲି, "ଆଜ୍ଞା ମୋତେ କ୍ଷମା କରନ୍ତୁ, ଆଜ ଆପଣଙ୍କ ବସାକୁ ଯାଇ ପାରିବିନାହିଁ ।" ଦ୍ୱାରୀବାବୁ କହିଲେ, "ହିଁ ଯିବ, ଅବଶ୍ୟ ଯିବ ।" ମୁଁ ହାତଯୋଡ଼ି କ୍ଷମା ପ୍ରାର୍ଥନା କଲି । ମାତ୍ର ଦ୍ୱାରୀବାବୁ ମୋ ବାହୁକୁ ଆଣ୍ଟରେ ଧରି ତାଙ୍କ ବସା ନର୍ମାଲ ସ୍କୁଲକୁ ଭିଡ଼ି ନେଇଗଲେ । ସ୍କୁଲ ବାରନ୍ଦାରେ ଗୋଟାଏ ଚୌକିରେ ବସିଲି । ଦ୍ୱାରୀବାବୁ ଘର ଭିତରୁ ଅଠେଇଶି ଟଙ୍କାକେତେ ଅଣା (ଠିକ ମନରେ ନାହିଁ) ମୋ ହାତରେ ଦେଇ କହିଲେ, "ତୁମର ମୋ ଉପରେ ଅଠସ୍ତୁଳିଶ ଟଙ୍କା ଥିଲା, ତୁମେ ଗୋଟିଏ ବନ୍ଧୁକ ନେଇଅଛ, ତାହାର ଦାମ କୋଡ଼ିଏ ଟଙ୍କା କାଟି ନେଲି, ବାକି ଅଠେଇଶି ଟଙ୍କା କେତେ ଅଣା ନିଅ ।" ଶୁରବର୍ଷ ପୂର୍ବେ ଦ୍ୱାରୀବାବୁ ମୋ ପାଖରୁ କେତେଖଣ୍ଡ ଭାରତବର୍ଷର ଇତିହାସ କିଣି ନେଇଥିଲେ । ସେ ବାବଦକୁ ଅଠସ୍ତୁଳିଶ ଟଙ୍କା ଯେ ବାକି ପାଉଣା ତାଙ୍କ ଉପରେ ଥିଲା, ସେ କଥା ମୋ ମନରେ ମଧ୍ୟ ନ ଥିଲା । ଟଙ୍କା କେତୋଟା ମୋ ହାତରେ ପଡ଼ିବାରୁ ବେଶ ଆମୋଦ ପ୍ରମୋଦରେ ଦିନ କଟିବାକୁ ଲଗିଲା । ଉପସ୍ଥିତ ଅବସ୍ଥା ପ୍ରତି ଦୃଷ୍ଟିରଖି ବ୍ୟୟ କରିଥିଲେ କିଛି ଅଧିକ ଦିନ ଖର୍ଚ୍ଚ ଚଳିଥାନ୍ତା । ମାତ୍ର ମୁଁ ଚିରକାଳ ଅପରିଣାମ ଦର୍ଶୀ, ଅର୍ଥ ବ୍ୟବହାର ବିଷୟରେ ସାବଧାନତା ଅବଲମ୍ବନ ମୋ ଲଲାଟ ଲିପିରେ ନାହିଁ । ନିତାନ୍ତ ଅର୍ଥାଭାବ ଉପସ୍ଥିତ, ବର୍ତ୍ତମାନ ଅନେକ ଧନବନ୍ତ ବାବୁଙ୍କ ସହିତ ପ୍ରଣୟ ଅଛି, ଧାର ମାଗିଲେ ଟଙ୍କା ପାଇ ପାରେ, ମାତ୍ର ଧାର ମାଗିବାକୁ ଇଚ୍ଛା ବଳିଲା ନାହିଁ । ଅଭାବ କଥା ବନ୍ଧୁ ନାରାୟଣ ବାବୁଙ୍କୁ ମଧ୍ୟ କହିଲି ନାହିଁ, ମନରେ କଲି, ସେ ମୋ ଅଭାବ କଥା ଶୁଣିଲେ ନିଶ୍ଚୟ ବଳେ ବଳେ କୋଡ଼ିଏ ଟଙ୍କା ହାତରେ ଗୁଞ୍ଜିଦେଇ ଯିବେ । ମାତ୍ର ପରିଶୋଧ କରିବାର ଉପାୟ ଯେ ନାହିଁ । ନାରାୟଣ ବାବୁଙ୍କ ହାତରେ ମଧ୍ୟ ଯଥେଷ୍ଟ ଟଙ୍କା ନ ଥାଏ; ସବୁଦିନେ ଭାରି ଉଚ୍ଚ ମନ, ବଡ଼ଲୋକୀ ଚାଲି ଚଳନ, ନବାବୀ ଖରଚ । ସର୍ବଦା ଆମୋଦରେ ଆହ୍ଲାଦରେ ଉନ୍ମତ୍ତ । ତାଙ୍କର ଗୋଟିଏ ସୁନ୍ଦର ପେଗୁ ଟଟ୍ଟୁ ଥିଲା; ମୋର ମଧ୍ୟ ଗୋଟିଏ କାଠିଆବାଡ଼ ଘୋଡ଼ା ଥିଲା । ପଛେ ଅର୍ଥାଗମ ହେବାରୁ ମୁଁ ଘୋଡ଼ାଟିକୁ ବାଲେଶ୍ୱରରୁ କଟକକୁ ଅଣାଇଥିଲି । ଦୁଇଜଣ ଘୋଡ଼ା ଚଢ଼ି ପ୍ରତିଦିନ ସକାଳେ ଓ ଅପରଓ୍ୱେଳ ଭ୍ରମଣ କରୁ । ଫଳତଃ ସେ ମୋର ଏକମାତ୍ର ହୃଦୟବନ୍ଧୁ ଥିଲେ । ମହାତ୍ମା ଜନ୍ ବିମ୍ସ୍ ସାହେବ ଆମ ଦୁଇ ବନ୍ଧୁଙ୍କର ଓ କବିବର ରାଧାନାଥ ବାବୁଙ୍କର ସମସ୍ତ ପ୍ରକାର ଉନ୍ନତିର ମୂଳ କାରଣ ଥିଲେ । ଏକମାତ୍ର ଭରସା ଅବଲମ୍ବନ

କଲେକ୍ଟର ସାହେବଙ୍କ ସଙ୍ଗରେ ସାକ୍ଷାତ୍ କଲି । ସାକ୍ଷାତ୍ ହେବା ମାତ୍ରକେ ସାହେବ ମହୋଦୟ କହିଲେ, "ସେହି-କଥା ତ ଆମ୍ଭେ ଭାବୁଛୁଁ, ଆପଣ କାହିଁତକ ବୋର୍ଡ଼ ଚିଠିକୁ ଅନାଇ ଅନର୍ଥକ ବସିରହିବେ ।" ମୁଁ କହିଲି, "ହଁ ହଜୁର୍, ଅନର୍ଥକ ବସି ରହିବାକୁ ମୁଁ କଷ୍ଟକର ବୋଧ କରୁଅଛି ।" ସାହେବ କହିଲେ, "ଠିକ ସତ କଥା, ସବୁ ବେମାରଠାରୁ ନିଷ୍କର୍ମା ହୋଇ ବସିବା ଭୟଙ୍କର କଷ୍ଟକର ।" ମୋତେ ଏହି କଥା କହି କେତେକ ମିନଟ ପର୍ଯ୍ୟନ୍ତ ସ୍ଥିର ଭାବରେ ଉପରକୁ ଅନାଇ ବସିଲେ ତହିଁ ଉତ୍ତାରୁ କହିଲେ, "ଆଚ୍ଛା, ଆପାତତଃ ଆପଣଙ୍କୁ ଡୋମପଡ଼ା କିଲ୍ଲାରେ ଦେୱାନ ପଦରେ ନିଯୁକ୍ତ କରିବାକୁ ଇଚ୍ଛା କରୁଅଛୁ, ଆପଣ ଯିବାକୁ ସମ୍ମତ ହେବେ କି ?" (ମନ ମଧ୍ୟରେ ହସିଲି, ମୋର ଗୋଟାଏ ସମ୍ମତି—ପ୍ରାର୍ଥନା ପୂର୍ବରୁ ବରପ୍ରାପ୍ତି—ବାପ୍ପାରେ ଭାତ ଖାଇବୁ ? ହାତ ଧୋଇବ କେଉଁଠି ? ) ତତ୍‌କ୍ଷଣାତ୍ କହିଲି, "ହଁ ହଜୁର୍, ଯେଉଁଠାକୁ ପଠାଇବେ ଯିବାକୁ ସମ୍ମତ ଅଛି ।" ସାହେବ କହିଲେ, "ତେବେ ଯାଉନ୍ତୁ, ଆପାତତଃ ସେଠାରେ ତିନିମାସ ଚୁପ ହୋଇ ବସିବେ, କିଛି କାମ କରିବେ ନାହିଁ—କରି ବି ପାରିବେ ନାହିଁ । ପାଞ୍ଚବର୍ଷ ହେଲା ରଜା ପ୍ରଜାଙ୍କ ମଧ୍ୟରେ ଭୟଙ୍କର ଗୋଳମାଳ ଚାଲିଅଛି । ନାନା ପ୍ରକାର ମାମଲାର ଖବର ଆସୁଅଛି । ଆପଣ ଦୃଷ୍ଟି ରଖିବେ, ଯେମନ୍ତ ଗୋଳଯୋଗ ବେଶି ବଢ଼ି ନ ପଡ଼େ, ଆପାତତଃ ଆପଣଙ୍କର ଏତିକମାତ୍ର କର୍ତ୍ତବ୍ୟ । ଗବର୍ଣ୍ଣମେଣ୍ଟରୁ ତମ୍ବି ଚିଠି ଆସିଅଛି, ଯେପରି ହେଉ ଏହି ବର୍ଷ ମଧ୍ୟରେ ଗୋଳଯୋଗ ନିଷ୍ପତ୍ତି କରିବାକୁ ହେବ । ଆଉ ଗୋଟାଏ କଥା—ରଜାଟା ବାୟା, କେ ଜାଣେ ଆପଣଙ୍କୁ ଦରମା ଦେବାକୁ ହରକତ କରିବ । କାଲି କଚେରିରୁ ଚିଠି ଲେଖି ରଜା ନିକଟରୁ ଅଗ୍ରୀମ ତିନି ମାସର ଦରମା ଅଣାଇ ଦେବି । ସେହି ଟଙ୍କା ପାଇଲେ ଡୋମପଡ଼ା ରମାନା ହେବେ । ଜଗମୋହନ ବାବୁଙ୍କୁ କହିଦେବୁଁ, ସେ ରଜାଙ୍କ ଠାରୁ ଶୀଘ୍ର ଟଙ୍କା ଅଣାଇ ଆପଣଙ୍କୁ ଦେବେ ।" ସେ ସମୟରେ ବାବୁ ଜଗମୋହନ ରାୟ କଟକ ଜିଲ୍ଲାର ପ୍ରଧାନ ଡେପୁଟି କଲେକ୍ଟର ଥିଲେ । ଡୋମପଡ଼ା କିଲ୍ଲା ସମ୍ବନ୍ଧୀୟ ଭବିଷ୍ୟତ ପ୍ରସଙ୍ଗ ବର୍ଣ୍ଣନାର ସୁବିଧା ନିମନ୍ତେ ଉଲ୍ଲିଖିତ ଗୋଳମାଳର ସଂକ୍ଷିପ୍ତ ବିବରଣ ଏ ସ୍ଥାନରେ ପ୍ରକାଶ କରିବା ଉଚିତ ।

ଡୋମପଡ଼ାର ପୂର୍ବ ରାଜା ପୁରୁଷୋତ୍ତମ ମାନସିଂହ ଭ୍ରମରବରରାୟ ନିଃସନ୍ତାନ ଅବସ୍ଥାରେ ପରଲୋକ ଯାତ୍ରା କରିବାରୁ ତାଙ୍କର ଜ୍ଞାତି ଭ୍ରାତୃଷ୍ପୁତ୍ର ରାଜା ରଘୁନାଥ ମାନସିଂହ ଭ୍ରମରବର ରାୟ ଉପଯୁକ୍ତ ଉତ୍ତରାଧିକାରୀ ବୋଲି ମହାମାନ୍ୟ ଗବର୍ଣ୍ଣମେଣ୍ଟ ସ୍ଥିର କଲେ । ସେ ସମୟରେ ଉପସ୍ଥିତ ରାଜା ନିତାନ୍ତ ନାବାଳକ, ତାଙ୍କର ଗୋଟିଏ କନିଷ୍ଠଭ୍ରାତା ମଧ୍ୟ ଥିଲେ । ଗବର୍ଣ୍ଣମେଣ୍ଟ ଏହି ଦୁଇଗୋଟି ବାଳକଙ୍କୁ ଶିକ୍ଷିତ କରାଇବା ନିମନ୍ତେ କଲିକତା ନେଇଗଲେ । ସେ ସମୟରେ ନାବାଳକ ରାଜପୁତ୍ରମାନଙ୍କ ସ୍କୁଲ କଲିକତାରେ ଥିଲା । ସୁବିଖ୍ୟାତ ରାଜେନ୍ଦ୍ରଲାଲ ମିତ୍ର ତାହାର ତତ୍ତ୍ୱାବଧାରକ ଥିଲେ ।

ରାଜା ସାହେବ ସାବାଳକ ହୋଇ କିଲ୍ଲାର ଭାର ପ୍ରାପ୍ତ ହେଲେ । କିଲ୍ଲାର ଅବସ୍ଥା ବୁଝିଲେ । କୋର୍ଟ ଅବ୍ ଭାର୍ଡ଼୍ସ ସମୟର ମେନେଜର କୋହଲ ଜମାରେ ଜମି ବନ୍ଦୋବସ୍ତ କରି ଯାଇଅଛନ୍ତି ଏବଂ ଅନେକ ବର୍ଷରୁ ଆବାଦୀ ଜମି ପ୍ରଜାମାନେ ବିନା କରରେ ଭୋଗ କରି ଆସୁଅଛନ୍ତି । ରାଜା ସାହେବଙ୍କର ଇଚ୍ଛା, ସମସ୍ତ କିଲ୍ଲା ଜରିପ କରି ଚୌହଦୀ ନିରଖ ଅନୁସାରେ କର ଧାର୍ଯ୍ୟ କରିବେ; ମାତ୍ର ପ୍ରଜାମାନଙ୍କର ଇଚ୍ଛା ଯେ, ସାବିକ ଦର ଉପରେ ପଇସାଏ ମଧ୍ୟ ବେଶି ଖଜଣା ଦେବେ ନାହିଁ । ଏହି ସୂତ୍ରରେ ରାଜା ପ୍ରଜା ମଧ୍ୟରେ ବିବାଦ ଆରମ୍ଭ ହେଲା । ସମସ୍ତ ପ୍ରଜା ଏକଯୋଟ ହୋଇ ମେଳ ବାନ୍ଧିଗଲେ । ରାଜାଙ୍କ ସାବିକ

ଦେବାନ ନଧି ପଟ୍ଟନାୟକ ମେଳର ସରଦାର ହେଲେ । ପଟ୍ଟନାୟକେ ବଡ଼ ସାଧାସିଧା ଲୋକ, ବିଦ୍ୟାରେ ବୁଦ୍ଧିରେ ରାମଚନ୍ଦ୍ରଦୂତଙ୍କ ବଂଶଧର ବିଶେଷ ।

ମେଳ ଦରବାରରୁ ପ୍ରକାଶ୍ୟ ଭାବରେ ହୁକୁମ ଜାରି ହେଲା ଯେ, ରାଜାଙ୍କୁ କେହି ଖଜଣା ଦେବେନାହିଁ, ରାଜାଙ୍କ ନଅରକୁ କେହି ଯିବେନାହିଁ, କେହି କୌଣସି ପ୍ରକାର ଚାକିରି କରିବେ ନାହିଁ, ଧୋବା ଭଣ୍ଡାରି ବନ୍ଦ । ଶାନ୍ତ ଶିଷ୍ଟ ପ୍ରଜାମାନେ ମେଳରେ ଯୋଗ ନ ଦେବା ଯୋଗୁଁ ମେଳଆ ସରଦାରମାନେ ସେମାନଙ୍କ ଘରର ସର୍ବସ୍ୱ ଲୁଟ୍‌ତରାଜ କରି ନେଇ ସେମାନଙ୍କୁ ନିର୍ଦ୍ଦୟରୂପେ ପ୍ରହାର କରିବାକୁ ଲାଗିଲେ । ଚାକରମାନେ ଉଆସ ଛାଡ଼ି ପଳାଇଗଲେ । ଉଆସ ପରିଜନମାନଙ୍କ ମଇଳା ଲୁଗା କଟକରେ କଚା ହେବାକୁ ଲାଗିଲା । ରାଜାଙ୍କ ନଅରଠାରୁ କଟକ ସହର ପ୍ରାୟ କୋଡ଼ିଏ ମାଇଲ । ଉଭୟ ପକ୍ଷରୁ ନାନାପ୍ରକାର ଫୌଜଦାରି ମାମଲା ଉଭୟ ପକ୍ଷରୁ ମେଜେଷ୍ଟ୍ରର ସାହେବଙ୍କ ହଜୁରରେ ଦାଖଲ ହେବାକୁ ଲାଗିଲା । ମେଜେଷ୍ଟ୍ରର ସାହେବ ରାଜା ସାହେବଙ୍କୁ ଉପଦେଶ ଦେଲେ—'ଆପଣ ବର୍ତ୍ତମାନ କୌଣସି ପ୍ରକାର ପ୍ରଜାମାନଙ୍କୁ ମିଳାଇ ନିଅନ୍ତୁ । ପ୍ରଜାମାନେ ଖଜଣାର ଯେଉଁ ନିରଖ କହୁଅଛନ୍ତି, ଆପାତତଃ ସେଥିରେ ସମ୍ମତ ହୋଇଯାନ୍ତୁ । ପଶ୍ଚାତ୍ ବେଶି ଜମା ଧାର୍ଯ୍ୟ କରି ପାରିବେ ।' ରାଜା ସାହେବ ସେଥିରେ ସମ୍ମତ ନ ହେବାରୁ ମାଜିଷ୍ଟ୍ରେଟ ଖପା ହୋଇଗଲେ । ରାଜା ଏବଂ କଲେକ୍‌ଟର ସାହେବଙ୍କ ମଧ୍ୟରେ ଏ ପ୍ରକାର ଅପ୍ରତ୍ୟୟ ଜାତ ହେବା ଯୋଗୁଁ ପ୍ରଜାମାନଙ୍କର ସାହସ ବଢ଼ିଗଲା । ଇତ୍ୟବସରରେ ଦେବାନ୍ ନିଧି ପଟ୍ଟନାୟକେ ବାରମ୍ବାର କଲେକ୍‌ଟର ସାହେବଙ୍କ ସହିତ ସାକ୍ଷାତ୍ କରି ସାହେବଙ୍କୁ ବୁଝାଇବାକୁ ଲାଗିଲେ ଯେ, 'ରାଜା ସାହେବ ବାୟା ଏବଂ ଅତ୍ୟାଚାରୀ । ରାଜା ସାହେବଙ୍କ ଅବସ୍ଥା କ୍ରମଶଃ ଶୋଚନୀୟ ହୋଇ ପଡ଼ୁଅଛି, ଖଜଣା ଏକ ପଇସା ଅସୁଲ ହେବାକୁ ନାହିଁ ।' ଏଣେ ମହା ଉପଦ୍ରବ ଜାତ ହେଲାଣି, କାଳେ କଲେକ୍‌ଟର ସାହେବ କୌଣସି ମାମଲାର ସୂତ୍ରଧରି ତାଙ୍କୁ ଜେଲ ଦେବା ମାମଲାର ମଧ୍ୟ ଅଭାବ ନ ଥିଲା । କଲକତା, କଟକ ଏହି ଦୁଇ ସ୍ଥାନରେ ଲୁଚି ଲୁଚି ବୁଲୁଥାନ୍ତି । ନିଜର ଖରଚ ଓ ମାମଲାର ଖରଚ ଯୋଗୁଁ କ୍ରମଶଃ କରଜ ବଢ଼ୁଅଛି । ଏଣେ ଉଆସ ମଧ୍ୟରେ ଅବସ୍ଥା ତତୋଽଧିକ ଶୋଚନୀୟ । ଉଆସ ମଧ୍ୟରେ ଆବଦ୍ଧ ବାହ୍ୟଜଗତ ସହ ସମ୍ପର୍କଶୂନ୍ୟ ହୋଇ ଅନ୍ନ ବସ୍ତ୍ରାଭାବ କଷ୍ଟ ଅସହ୍ୟ ହେବାରୁ ରାଜମାତା ଓ ରାଜଭ୍ରାତା ଖୋରାକ ପୋଷାକ ସକାଶେ ମେଜେଷ୍ଟ୍ରରରେ ନାଲିସ ଉପସ୍ଥିତ କଲେ । କଲେକ୍‌ଟର ସାହେବ କହିଲେ, "ସତ ତ, ରାଜା କେବଳ ବାୟା ନୁହେ, ନିତାନ୍ତ ନିଷ୍ଠୁର ।" ଚାକର ସାଧାରଣଙ୍କ ବିଶ୍ୱାସ ଘାତକତା, ମାତା ଓ ଭ୍ରାତାଙ୍କ ନାଲିସ ଯୋଗୁଁ ବ୍ରତିଦାନ ଦେଣା ବୃଦ୍ଧି ହେବାରୁ ରାଜା ସାହେବ ହତାଶ ହୋଇ ପଡ଼ିଲେଣି । ଜଗତ୍ ସଂସାର ପ୍ରତି ଅବିଶ୍ୱାସ, କାଳେ କେହି ଭାତରେ ବିଷଦେଇ ମାରିପକାଇବ । ଏହି ଭୟରୁ ଅନ୍ନାହାର ତ୍ୟାଗକରି ଲିଆ ଆଉ ଦୁଗ୍ଧ ଖାଇ ଜୀବନରକ୍ଷା କରୁଥିଲେ ।

କଟକରେ ମୋ ସହିତ ପ୍ରଥମ ସାକ୍ଷାତ୍ ସମୟରେ ଦେଖିଲି, ଅସ୍ଥି ଚର୍ମ ସାର ମାତ୍ର, ନିୟତ ଦୁର୍ଭାବନାରେ ଶରୀର ଓ ମନ ପୋଡ଼ି ଜଳ ଗଲାଣି । କଟକ ଗୃହନ-ଚୌକିରେ ତାଙ୍କ ଦୋମହଲା ଉପରେ ତାଙ୍କ ବୈଠକ-ଖାନାରେ ଦୁଇଜଣ ଯୋଡ଼ାଏ ଚୌକିରେ ବସିଥାଉଁ । ମଧ୍ୟରେ ଗୋଟିଏ ବଡ଼ ମେଜ ବ୍ୟବଧାନ ଥାଏ । ରାଜା ସାହେବ ତୀକ୍ଷ୍ଣ ଦୃଷ୍ଟିରେ ମୋତେ ଅନାଇ ଦେଖୁଥାନ୍ତି । (ମୋ ପ୍ରତି ତାଙ୍କର ପରବର୍ତ୍ତୀ ବ୍ୟବହାରରୁ ବୁଝିଲି) ସେତେବେଳେ ସେ ମନେକରୁଥିଲେ, ଏ ଗୋଟାଏ ବିପଦ ପୁଣି କାହୁଁ ଅଇଲା ? ଏଇଟା ନିଶ୍ଚୟ କଲେକ୍‌ଟର ସାହେବଙ୍କ ଗୁପ୍ତଚର, ନିଶ୍ଚୟ ଆମ୍ଭଙ୍କୁ ଧରାଇ ଦେବାକୁ ଆସିଅଛି । ଏଣେ ରାଜା ସାହେବଙ୍କର

ଶୋଚନୀୟ ଅବସ୍ଥା ଦେଖି ମୋ ମନରେ ଦାରୁଣ କଷ୍ଟ ଜାତ ହେଲା । ମନରେ କଲି, ଏହି ବିପଦ୍‌ଗ୍ରସ୍ତ ରାଜାଟିର କୌଣସି ପ୍ରକାର ଉପକାର ଯଦି କରିପାରେଁ, ତେବେ ଆଗମନ ସଫଳ ହେବ ।

ରାଜାସାହେବ ମୋର ତିନି ମାସର ଦରମା ଅଗ୍ରୀମ ଦାଖଲ କରିଥିଲେ । ମୁଁ ଜଗମୋହନ ବାବୁଙ୍କ ନିକଟରୁ ଟଙ୍କା ଗଣି ନେଲି । ରାଜାସାହେବଙ୍କ କନିଷ୍ଠ ସାନ ସା'ନ୍ତ ମୋତେ ଗଡ଼ରେ ପହଞ୍ଚାଇ ଦେବାକୁ ବାହାରିଲେ । ଜୁଲାଇ କି ଅଗଷ୍ଟ ମାସ, କାଠଯୋଡ଼ିରେ ବଢ଼ିପାଣି ଏକୂଳ ସେକୂଳ ଖାଉଅଛି । ଆମ୍ଭେ ଦୁଇଜଣ ଯୋଡ଼ାଏ ପାଲିକିରେ ବସି ଗଡ଼କୁ ରମାନା ହେଲୁଁ । ସନ୍ଧ୍ୟା ସମୟରେ ଗଡ଼ରେ ଉପସ୍ଥିତ ହେଲୁଁ । ରାଜାଙ୍କ ନଅର କାହିଁ ? ଚତୁର୍ଦ୍ଦିଗରେ ପଡ଼ିଆ ଜଙ୍ଗଲ ମଧ୍ୟରେ ଗୁଡ଼ିଏ ଭଙ୍ଗା ଦଦରା କୋଠା, ଭଗ୍ନ ଇତସ୍ତତଃ ବିକ୍ଷିପ୍ତ ଗୁଡ଼ିଏ କଚ୍ଚା ଘର ।

ପ୍ରତିଦିନ ସକାଳେ ରାଜାଙ୍କ ନଅରରୁ ଉପଯୁକ୍ତ ସଜ୍ଜା ଆସେ । ବସାଘର ସମ୍ମୁଖସ୍ଥ ଗୋଟାଏ ବୃହତ୍ ଆମ୍ବଗଛ ମୂଳରେ ମାଞ୍ଚିଅଟାଏ ପକାଇ ତୁନି ହୋଇ ବସିଥାଏଁ । ନିଧି ପଟ୍ଟନାୟକ ପ୍ରଭୃତି ସମସ୍ତ ପୁରୁଣା ଅମଲା ଏବଂ ଗ୍ରାମମାନଙ୍କର ପଧାନମାନଙ୍କୁ (ବର୍ତ୍ତମାନ ସରଦାର ମେଳିଆ) ଡକାଇ କିଲ୍ଲାର ଅବସ୍ଥା ବୁଝୁଥାଏଁ । ଗଡ଼ରେ ମୋର ଉପସ୍ଥିତି ଦିବସଠାରୁ କିଲ୍ଲା ମଧ୍ୟରେ ବର୍ତ୍ତମାନ ତେତେ ଉତ୍ପାତ ନାହିଁ । ମୁଁ ସରକାର ତରଫରୁ ପ୍ରେରିତ ବୋଲି ସରଦାରମାନେ କିଛିତ୍ ଶାନ୍ତ ଭାବରେ ରହିଅଛନ୍ତି ।

ପାଞ୍ଚବର୍ଷ ହେଲା କିଲ୍ଲାରୁ ଖଜଣା ଆଦାୟ ହୋଇ ନାହିଁ । ଖଜଣା ତଲବ କଲି, ପଧାନମାନେ କେବଳ ବର୍ଷକର ଖଜଣା ଦେବାକୁ କହିଲେ । ଆଉ ମତେ ବୁଝାଇବାକୁ ଲାଗିଲେ, "ଆଜ୍ଞା ଦେବାନ ବାବୁ, ତୁମର ଗୋଟିଏ ଦୁହାଁଳ ଗାଈ ଅଛି, ତାକୁ ପାଞ୍ଚ ଦିନ ଦୁହିଁବ ନାହିଁ, ତାହାପରେ ଦିନେ ଦୁହିଁବାକୁ ଯିବ । ଦିନକର ଦୁଧ ପାଇବ, କି ପାଞ୍ଚ ଦିନର ଦୁଧ ପାଇବ ?'' ଭିନ୍ନ ଭିନ୍ନ ସମୟରେ ଯେତେବେଳେ ଯେଉଁ ପଧାନକୁ ଯେଉଁ କଥା ପଚାରେଁ, ସମସ୍ତଙ୍କର ସମାନ ଉତ୍ତର ।

ମୋ କାର୍ଯ୍ୟକ୍ଷେତ୍ର ବର୍ତ୍ତମାନ ସଙ୍କଟ ସଙ୍କୁଳ । କୌଣସି କାର୍ଯ୍ୟରେ ହାତ ଦେବାକୁ ଭରସା ପାଉ ନାହିଁ । ରାଜା ପ୍ରଜା ଦୁଇ ପକ୍ଷଙ୍କର ମୋ ପ୍ରତି ଅବିଶ୍ୱାସ । ଏଣେ କୌଣସି କାର୍ଯ୍ୟ ନ କରି କିଲ୍ଲାକୁ ଜଗି ରହିବା ସକାଶେ କାଲେକ୍ଟର ସାହେବଙ୍କର ଆଦେଶ । ସମୟ ସମୟରେ କଟକ ଯାଇ ରାଜା ସାହେବଙ୍କ ସହିତ ସାକ୍ଷାତ କରେଁ । ଅନେକ ବିଷୟ ପ୍ରସ୍ତାବ କରେଁ, ହୁକୁମ ମାଗେଁ । କେବଳ ହଁ – ନା ଯୋଡ଼ିକ ଅକ୍ଷରରୁ ଗୋଟିଏ ଶବ୍ଦ ଶୁଣେଁ । ତାହା ମଧ୍ୟ ସହଜଲଭ୍ୟ ନୁହେଁ । ରାଜା ସାହେବ ଅନେକ ଭାବି ଚିନ୍ତି ଗୋଟିଏ ଉତ୍ତର ଦିଅନ୍ତି । ପ୍ରତ୍ୟେକ ବିଷୟରେ ମୋ ପ୍ରତି ଅବିଶ୍ୱାସ ।

ଡିସେମ୍ବର ମାସ ଶେଷଆଡ଼କୁ ସାହେବ ମହୋଦୟ କଟକରୁ ଡୋମପଡ଼ା ଗସ୍ତକୁ ବାହାରିଲେ । ପ୍ରଥମ ଡେରା ପଡ଼ିଲା କଟକ ବାଆଁରି ଦୋହମାଳ ବାଆଁରି ନାମକ ମୌଜାରେ । ସାହେବଙ୍କ ହମରାଏ ଥିଲେ କୋଡ଼ିଏ ଜଣ କନଷ୍ଟେବଲ ସହିତ ଡିଷ୍ଟ୍ରିକ୍ଟ ସୁପରିଣ୍ଟେଣ୍ଡେଣ୍ଟ ସାହେବ, ଆଉ ଜଣେ ଏ. ମାଜିଷ୍ଟ୍ରେଟ ସାହେବ, ପେସ୍କାର, ମୁନ୍‌ସି, ଅମଲା, ଚପରାସି ପ୍ରଭୃତି ପ୍ରାୟ ଶତାଧିକ ଲୋକ । ପୂର୍ବରୁ ପରୁଆନା ପାଇ ମୁଁ ସମସ୍ତ ବିଷୟ ଠିକ୍ କରି ରଖାଇଥିଲି । ଡୋମପଡ଼ାରେ କିଛି କିଣିବାକୁ ମିଳେ ନାହିଁ । ସରକାର ପକ୍ଷର କୌଣସି ପ୍ରକାର ଦ୍ରବ୍ୟର କିଛି ମାତ୍ର ଅଭାବ ନ ଘଟୁ ମୋର ବର୍ତ୍ତମାନ କର୍ତ୍ତବ୍ୟ ବୋଲି ବୁଝିଲି ।

"ଧନ କାର୍ପଣ୍ୟ ସେବା ଫଳେ,
କିବା ଅସାଧ୍ୟ ମହୀତଳେ ।"

ରଜାସାହେବ ମଧ୍ୟ ବାଆଁଗ୍ର ଗ୍ରାମରେ ଉପସ୍ଥିତ ଥିଲେ; କିନ୍ତୁ କିଛି ଶୁଣନ୍ତି ନାହିଁ, କି କିଛି ବୁଝନ୍ତି ନାହିଁ; ଯେମନ୍ତ ତାଙ୍କର କିଛି କାର୍ଯ୍ୟ ନୁହେ, କି କିଛି କର୍ତ୍ତବ୍ୟ ନାହିଁ; ସବୁ ମୋହର । ସାହେବଙ୍କ ଭଲୁରମାନଙ୍କ ଠାରୁ ସିରସ୍ତାଦାର ପର୍ଯ୍ୟନ୍ତ ସମସ୍ତଙ୍କର ଶେଷେଇବାସ କଥା ବୁଝିବାକୁ ହେବ । ଏଣେ ମୂଳକଥା ମାମଲର ଚିନ୍ତା । ଦିବା ନିଶି କାର୍ଯ୍ୟରେ ବ୍ୟସ୍ତ, ସହାୟ କେହି ନାହିଁ । ହାକିମମାନଙ୍କ ଗତିବିଧି ଦେଖି ମୋର ହୃତକମ୍ପ ଉପସ୍ଥିତ ହେଲାଣି । ଗବର୍ଣ୍ଣମେଣ୍ଟଙ୍କ ବିଶେଷ ତାକିଦ୍, ଯେ କୌଣସିରୂପେ ହେଉ ଡୋମପଡ଼ା କିଲ୍ଲାର ଗୋଲମାଲ ନିଷ୍ପତ୍ତି କରିଦିବ । ବର୍ତ୍ତମାନ ସଙ୍କଟ ସମସ୍ୟା ଉପସ୍ଥିତ । ହୁଏତ କିଲ୍ଲା ରଜାଙ୍କ ହାତରେ ରହିବ, ନଚେତ ରଜାଙ୍କ ଅଯୋଗ୍ୟତା ଉପଲକ୍ଷ କରି ସରକାରଙ୍କ ଖାସ୍ ଦଖଲକୁ ଆସିବ । କିଲ୍ଲା ଖାସ୍ ହେବା ଖୁବ୍ ସମ୍ଭବପର ହୋଇ ଗଲାଣି । କାରଣ ରଜା ସାହେବ ମାଜିଷ୍ଟ୍ରେଟଙ୍କ କଥା ନ ଶୁଣିଲେ ତାଙ୍କ ବିରୁଦ୍ଧରେ ରିପୋର୍ଟ ହେବା ଏକାବେଲକେ ନିଶ୍ଚିତ କଥା । ଆତ୍ମପକ୍ଷ ସମର୍ଥନ ନିମନ୍ତେ ରଜାଙ୍କ ପକ୍ଷରୁ କୌଣସି ଲୋକ ଉପସ୍ଥିତ ନାହିଁ । ଏଣେ ମୋ ପ୍ରତି ଘୋର ସନ୍ଦେହ । ରଜାସାହେବ ଦାରୁଭୂତୋ ମୁରାରି ପରି ଗୋଟିଏ ପ୍ରଜାର କ୍ଷୁଦ୍ର ମେଲା ଘରେ ତୁନି ହୋଇ ବସିଥାନ୍ତି । ମୁଁ ରଜା ସାହେବଙ୍କୁ ନାନା ଯୁକ୍ତି ଓ ଦୃଷ୍ଟାନ୍ତ ଦେଇ ବୁଝାଇଲି, ବିନୟରେ ହାତ ଯୋଡ଼ି ପ୍ରାର୍ଥନା କଲି, ଭୟ ଦେଖାଇଲି, ଶେଷକୁ ଅସହ୍ୟ ହେବାରୁ ତିରସ୍କାର କଲି । ତଥାପି ସେହି ଏକ କଥା "ଜମା ବୃଦ୍ଧିରେ ବନ୍ଦୋବସ୍ତ ନିଷ୍ପନ୍ନ ହେବାକୁ ହେବ ।" ମୁଁ ସ୍ପଷ୍ଟ ରୂପେ କହିଲି, "ଆପଣ ମତ ପରିବର୍ତ୍ତନ ନ କଲେ ରାଜ୍ୟ ଖାସ ହୋଇଯିବ ।" ରଜାସାହେବ ଅବିଚଳିତ କଣ୍ଠରେ ଦୃଢ଼ରୂପେ ଉତ୍ତର ଦେଲେ— 'ଯାଉ ଖାସ ହୋଇ' । ରଜାଙ୍କ କଥାଗୁଡ଼ିକ ନିତାନ୍ତ ସଂକ୍ଷିପ୍ତ, ନିତାନ୍ତ ଅଳ୍ପ । ରଜା ତିନୋଟି ଶବ୍ଦ ଉଚ୍ଚାରଣ କରି ଯେପରି ଦୃଢ଼ ଭାବରେ ମୌନରେ ରହିଲେ, ମୁଁ ବୁଝିଗଲି, ତାଙ୍କର ଅଭିପ୍ରାୟ ଯେ ରାଜ୍ୟରେ ମୋ କଥା ନ ରହିଲେ ପ୍ରଜାମାନଙ୍କ ଯୋଗେ ପରାଜୟ ପାଇଲି, ସେ ରାଜ୍ୟରେ ପ୍ରୟୋଜନ କଣ ? ଦୁଇଜଣ ଦୁହିଙ୍କ ମୁହଁକୁ ପରସ୍ପର ସ୍ଥିର ଦୃଷ୍ଟିରେ କେତେକ ମିନଟ ପର୍ଯ୍ୟନ୍ତ ଅନାଇ ବସିଥାଉଁ । ମୁହୂର୍ତ୍ତକ ପାଇଁ ରଜାଙ୍କୁ ପ୍ରଶଂସା କଲି —କ୍ଷତ୍ରିୟ ଏକା । ପର ମୁହୂର୍ତ୍ତରେ ବିରକ୍ତ ଜାତ ହେଲା । ମନରେ କଲି, ଏଇଟା କିନ୍ତୁ ଅନର୍ଥକ ସାହସ । ତହିଁ ଉତ୍ତାରୁ ସାହେବଙ୍କ ସହିତ ସାକ୍ଷାତ କରିବା ସକାଶେ ରଜାଙ୍କୁ ଅନୁରୋଧ କଲି । ରଜା ସାହେବ କିଞ୍ଚିତ ଉଚ୍ଚ ସ୍ୱରରେ କହିଲେ,—'ନା' । ମୁଁ 'ନା' ଶବ୍ଦର ଅର୍ଥ ବେଶ୍ ବୁଝିଲି । ମାମଲା ଚଳୁଛି ମୋର ନ୍ୟାଯ୍ୟ ପ୍ରାପ୍ୟ ପାଇବା ପାଇଁ, ଖୋସାମଦ କରିବାକୁ ଯିବି କାହିଁକି ?

ପୂଷ ମାସିଆ ଦିନ । ସାହେବମାନେ ବାଆଁଗ୍ର ମୌଜାରେ ପହଞ୍ଚିବା ସମୟଠାରୁ ଅବିରତ ବୃଷ୍ଟି ସଙ୍ଗେ ସଙ୍ଗେ ପ୍ରବଳ ପବନ ଅବିରାମ ଚାଲିଅଛି । ସମସ୍ତେ ଆପଣା ଆପଣା ସ୍ଥାନ ଧରି ବସି ଅଛନ୍ତି । ମୁଁ ଏକା କାଦୁଅ ପାଣି ଚକଟି ଦିନରାତି ଏଣେ ତେଣେ ଧାଇଁଛି । ଅପରାହ୍ଣ ସମୟରେ କଲେକ୍ଟର ସାହେବଙ୍କ ଡେରାକୁ ଯାଇ ସାକ୍ଷାତ କଲି । ଅନ୍ୟାନ୍ୟ ପ୍ରସଙ୍ଗ ଉତ୍ତାରେ ଡୋମପଡ଼ା ମେଳ ସମ୍ବନ୍ଧରେ କଥା ଉଠିଲା । ସେ ସମୟରେ ସାହେବ ମହୋଦୟଙ୍କୁ ଯାହା ଜଣାଇଲି, ସେଥିର ସଂକ୍ଷିପ୍ତ ବିବରଣୀ ଏହି—"ମୁଁ ଆଜକୁ ପ୍ରାୟ ତିନିମାସ ହେଲା ଡୋମପଡ଼ା ଗଡ଼ରେ ରହି ଆଭ୍ୟନ୍ତରିକ ବିଷୟ ତନ୍ନ ତନ୍ନ କରି ବୁଝିଲି । କୋଡ଼ିଏ ବର୍ଷ ପୂର୍ବେ କିଲ୍ଲାର ବନ୍ଦୋବସ୍ତ ହୋଇଥିଲା । ଏ ମଧ୍ୟରେ ଅନେକ ପଡ଼ିତ ଜମି ଆବାଦ ହୋଇ ଗଲାଣି । ପୂର୍ବେ ଖୁବ୍ କୋହଳ ଜମାରେ ବନ୍ଦୋବସ୍ତ

ହୋଇ ଅଛି । ରାଜାଙ୍କର ଇଚ୍ଛା ନୂତନ ବନ୍ଦୋବସ୍ତ କରିବେ । ଜମିର ଜମା ଆଇନ ଅନୁସାରେ ଚୌଦ୍ଦ—ନିରଖ ଅର୍ଥାତ୍ ଗଡ଼ଜାତ ତିଗିରିଆ, ଖାସ ମାହାଲ ବାଙ୍କି, ଖୋରଧା ଏବଂ ମୋଗଲବନ୍ଦୀ ନଗର ପ୍ରଚଳିତ ନିରଖ ଅନୁସାରେ ଜମା ଧାର୍ଯ୍ୟ ହେବା ଉଚିତ । ମାତ୍ର ରାଜାସାହେବ ଏକାବେଳକେ ପୂର୍ବ ଜମା ଧାର୍ଯ୍ୟ କରିବାକୁ ଇଚ୍ଛାକରନ୍ତି ନାହିଁ; ମାଣ ପ୍ରତି କେବଳ ଦୁଇପଇସା ଅଧିକ କରି ଧାର୍ଯ୍ୟ କରିବେ । ହଜୁରଙ୍କ ହୁକୁମ ଅନୁସାରେ ରାଜାସାହେବ ବନ୍ଦୋବସ୍ତ କାର୍ଯ୍ୟ ଆରମ୍ଭ କରିଥିଲେ; ମାତ୍ର ପଧାନମାନେ ଜମି ଜରିବ କରାଇ ଦେଲେ ନାହିଁ । ବର୍ତ୍ତମାନ ଯେ ଗୋଳଯୋଗ ଉପସ୍ଥିତ ହୋଇଅଛି, ତାହା ପ୍ରକୃତରେ ରାଜା ପ୍ରଜା ମଧ୍ୟରେ ବିବାଦ ନୁହେଁ; କେବଳ ପଧାନ ଓ ପୁରୁଣା ଅମଲାମାନେ ଗୋଳଯୋଗ ଉପସ୍ଥିତ କରିଅଛନ୍ତି । ହାଲ ଆବାଦ ଜମି ପ୍ରକୃତରେ ପ୍ରଜାମାନେ ନିସ୍ତର ଭାବେ ଭୋଗ କରୁ ନାହାନ୍ତି, ପଧାନ ଓ ଅମଲାମାନେ ସେମାନଙ୍କଠାରୁ ଖଜଣା ଅସୁଲ କରି ଭୋଗ କରୁଅଛନ୍ତି । ଉପସ୍ଥିତ ଗୋଳମାଳରେ ରାଜା ପ୍ରଜା ଦୁଇପକ୍ଷରେ ଦାରୁଣ କଷ୍ଟ ଉପସ୍ଥିତ । ମୁଁ ଦେଖିଲି, ରାଜା ସାହେବ ନିତାନ୍ତ ସଦାଶୟ, ଅତି ନିର୍ବିରୋଧୀ ଓ ଶିକ୍ଷିତ ବ୍ୟକ୍ତି । ଆଜକୁ ପାଞ୍ଚବର୍ଷ ହେଲା ପ୍ରଜାମାନେ ଖଜଣା ଦେଉ ନାହାନ୍ତି । ରାଜାସାହେବ କରଜ କରି ପେସ୍କସ୍ ଦାଖଲ କରୁଅଛନ୍ତି । ରାଜା ସାହେବଙ୍କର ଏତେ ଅର୍ଥାଭାବ ଯେ, କେବଳ ରାଜକର ନୁହେଁ, ରାଜମାତା, ରାଜଭ୍ରାତା ଓ ଉଆସର ଦାସ ଦାସୀ ମାନଙ୍କର ମଧ୍ୟ ଅନ୍ନ ବସ୍ତ୍ର ସକାଶେ ଦାରୁଣ କଷ୍ଟ ଉପସ୍ଥିତ ହୋଇଅଛି । ବର୍ତ୍ତମାନ ହଜୁର କେବଳ ମାଣ ପ୍ରତି ଦୁଇ ପଇସା ମାତ୍ର ବୃଦ୍ଧି ଜମାରେ ବନ୍ଦୋବସ୍ତ କରିବାକୁ ହୁକୁମ ଦେଲେ ସହଜରେ ସମସ୍ତ ଗୋଳଯୋଗ ନିଷ୍ପତ୍ତି ହୋଇଯିବ । ପ୍ରଜାମାନେ ସହଜରେ ଜମି ବନ୍ଦୋବସ୍ତ କରାଇ ଦେବେ ।”

ସାହେବ ମହୋଦୟ ସ୍ଥିର ଭାବରେ ବସି ମୋର ସମସ୍ତ କଥା ମନୋଯୋଗ ପୂର୍ବକ ଶୁଣିଲେ । ଶେଷରେ କହିଲେ ବାବୁ, “ବନ୍ଦୋବସ୍ତ ସମ୍ବନ୍ଧରେ ଯେଉଁ କଥାସବୁ କହିଲେ, ସେ ସମସ୍ତ ଠିକ୍ କଥା । ଯେ କୌଣସିରୂପେ ହୁଏ ଏ ବର୍ଷ ଜମି ଜମାର ବନ୍ଦୋବସ୍ତ କରାଯିବ । ମାତ୍ର ଜମା ବୃଦ୍ଧି ହେବ ନାହିଁ । ଆମ୍ଭେ ପ୍ରଜାମାନଙ୍କୁ ହୁକୁମ ଦେଇ ସାରିଅଛୁଁ—ଜମାବୃଦ୍ଧି ହେବ ନାହିଁ ।”

ମହାତ୍ମା ଜନ ବାମ୍ସ ସାହେବ ଜଣେ ଅସାଧାରଣ ବିଦ୍ୱାନ୍, ପ୍ରଜାହିତୈଷୀ, ଉତ୍କଳର ଉନ୍ନତି କାମୀ, ଗରିବର ମା-ବାପ । ମାତ୍ର ତାଙ୍କର ଗୋଟିଏ ଦୋଷ—ଭଲ ହେଉ ବା ମନ୍ଦ ହେଉ, ଯାହା ଥରେ ହୁକୁମ ଦେବେ, ସେଥିର କୌଣସି ପ୍ରକାର ଅନ୍ୟଥା ହେବ ନାହିଁ । ମୁଁ ଆଉ ଅଧିକ କୌଣସି କଥା ନ ବଳାଇ ବିଦାୟ ଗ୍ରହଣ କରି ଚାଲି ଆସିଲି । ରାତିରେ ପୁନର୍ବାର ରାଜାସାହେବଙ୍କ ସହିତ ସାକ୍ଷାତ୍ କରି ସାହେବଙ୍କ ଅଭିପ୍ରାୟ ଜଣାଇଲି । ରାଜାସାହେବ କହିଲେ, “ଦେବାନ ବାବୁ, ମୁଁ ଯାହା କହିଅଛି, ସେଥିର ଅନ୍ୟଥା ହେବନାହିଁ । ଆପଣ ଦୁଇ ପଇସା ବୃଦ୍ଧି ଜମାରେ କଲ୍ଲା ବନ୍ଦୋବସ୍ତ କରି ଦେଉନ୍ତୁ । ମଫସଲରେ ଆମ୍ଭର ପାଞ୍ଚ ବର୍ଷର ଖଜଣା ବାକି ପଡ଼ିଅଛି । ସମସ୍ତ ଅସୁଲ କରି ନେଉନ୍ତୁ, ସେଥିରୁ ଆମ୍ଭେ ପଇସାଏ ସୁଦ୍ଧା ନେବୁଁ ନାହିଁ ।”

ସେ ସମୟରେ ରାଜାଙ୍କର ଦୁରବସ୍ଥା ଦେଖି ମୋ ମନରେ ଅତ୍ୟନ୍ତ କଷ୍ଟ ଜାତ ହେଲା । ନିତାନ୍ତ କ୍ଷୁଦ୍ର ଗୋଟିଏ ଭଗ୍ନ ଗୃହର ଗୋଟିଏ କୋଣରେ ରାଜା ତୁନ ହୋଇ ବସିଥାନ୍ତି । ଗୋଟାଏ ମାଟି ବଇଠାରେ ଗୋଟାଏ ବଳିତା ମିଞ୍ଜି ମିଞ୍ଜି ହୋଇ ଜଳୁଅଛି । ରାଜାଙ୍କ ସଙ୍ଗରେ ଯୋଡ଼ିଏ ମାତ୍ର ଚାକର । ହାୟ ! ହାୟ ! କଲ୍ଲାଟା କଣ ଖାସ୍ ହୋଇଯିବ ? ରାଜାସାହେବ କଣ ବିପଦରୁ ଉଦ୍ଧାର ପାଇବେ ନାହିଁ ?

ବାଆଁରି ଗ୍ରାମର ଦକ୍ଷିଣ ଭାଗରେ ଗ୍ରାମକୁ ଲାଗି କଟକ ବାଙ୍କି ସଡ଼କ । ସଡ଼କର ଦକ୍ଷିଣକୁ ଗୋଟିଏ ମହାଦେବ ମନ୍ଦିର । ମନ୍ଦିରଟି ସାନ ଛପର ଘର । ମନ୍ଦିର ଭିତରେ ସାପ ଥିବାର ଶୁଣିଥିଲି । କଟକ ଯାତାୟାତ ସମୟରେ ସେହି ଗ୍ରାମରେ କେତେଥର ରହିବାକୁ ପଡ଼ୁଥାଏ । ସାପ ଭୟରେ ମନ୍ଦିର ଆଡ଼କୁ ରାତିରେ ଯାଏ ନାହିଁ, ଆଉ କେହି ମଧ୍ୟ ରାତିରେ ସେ ମନ୍ଦିରରେ ରହନ୍ତି ନାହିଁ । ଅନ୍ୟାନ୍ୟ ସ୍ଥାନାଭାବରୁ ଆଜି ସେହି ମନ୍ଦିର ମୋର ଆଶ୍ରୟସ୍ଥଳ । ଦିନମାନର ସମସ୍ତ କାର୍ଯ୍ୟ ସମାପ୍ତକରି ମନ୍ଦିର ସମ୍ମୁଖସ୍ଥ ମେଲା ଘରେ ଶିବବାହନ ପାଷାଣମୟ ବୃଷଭଙ୍କ ନିକଟରେ ଲଗାଲଗି ଶୋଇ ପଡ଼ିଲି । ଆଜି ସାପର ଭୟ ଏକାବେଳକେ ମନରୁ ଛାଡ଼ି ଯାଇଅଛି । ରାତିଯାକ ବାହାରେ ତୋଫାନ ଓ ବର୍ଷା । ଏଣେ ମନ ମଧ୍ୟରେ ପ୍ରବଳ ଚିନ୍ତାର ତୋଫାନ । ଏଥିରେ କି ନିଦ ମାଡ଼େ ! ବିଛଣାରେ ପଡ଼ି ଉପାୟ ଚିନ୍ତା କରୁଥାଏଁ । ଉପାୟର ଗୋଟିଏ କ୍ଷୀଣଜ୍ୟୋତି ମନ ମଧ୍ୟରେ ଚହଟି ଗଲା ।

ଜିଲ୍ଲାର ସମସ୍ତ ମୌଜାର ପଧାନମାନଙ୍କ ନାମରେ ସରକାର ତରଫରୁ ପରୁଆନା ଜାରି ହୋଇଯାଇଅଛି । ଆଜି ଉପରଓଳି ଗୃରିଟା ସମୟରେ ସମସ୍ତ ପଧାନ ଓ ପ୍ରଜା କଚେରିରେ ଉପସ୍ଥିତ ହେବେ । ଆଜି ପାଞ୍ଚବର୍ଷ ବ୍ୟାପୀ ଗୋଳଯୋଗ ଶେଷ ହେବ ଏବଂ ରାଜା ସାହେବଙ୍କ ଭାଗ୍ୟ ପରୀକ୍ଷା ହେବ ।

ବାଆଁରି ସନ୍ନିକଟବର୍ତ୍ତୀ ଭଗୀପୁର ଓ ଶଅଳବାଙ୍କ ଏହି କେତେଟା ମୌଜାରେ ପ୍ରଜା ରାଜାଙ୍କ ସପକ୍ଷରେ ଥିଲେ । ଭୋର ହେବା ମାତ୍ରକେ ସେହି ସମସ୍ତ ମୌଜାକୁ ପାଇକ ପଠାଇ ପଧାନ ଏବଂ ମୁଖିଣ୍ଡ ମୁଖିଣ୍ଡ ପ୍ରଜାମାନଙ୍କୁ ଡକାଇ ଆଣିଲି । ବହୁତ ଆଶ୍ୱାସନା ବାକ୍ୟରେ କୋମଳ ଭାବରେ ସେମାନଙ୍କୁ କହିଲି, "ତୁମେମାନେ ଚିରଦିନ ରାଜଭକ୍ତ । ରାଜାସାହେବ ତୁମମାନଙ୍କର ଢେର ପ୍ରଶଂସା କରନ୍ତି । ବର୍ତ୍ତମାନ ତୁମେମାନେ ରାଜା ସାହେବଙ୍କ ସକାଶେ ଆଜି କଚେରିରେ ହାକିମଙ୍କୁ ଯଦି ପଦେ କଥା କହିବ, ତେବେ ରାଜାସାହେବ ତୁମମାନଙ୍କ କଥା ଚିରଦିନ ମନରେ ରଖିବେ, ଆଉ ପ୍ରତି ଜଣକୁ ଦଶ ଦଶ ମାଣ ଭଲ ଜମି ଜାଗିର ଦେବେ । ସେଥି ସକାଶେ ତୁମମାନଙ୍କୁ ପଇସାଏ ମଧ୍ୟ କରି ଦେବାକୁ ପଡ଼ିବ ନାହିଁ ।"

ସମସ୍ତ ପ୍ରଜା ଏକାବେଳକେ ଗୋଳମାଳ କରି କହି ପକାଇଲେ, "ବୋଲନ୍ତୁ ବୋଲନ୍ତୁ ଦେବାନ ବାବୁ, ଆପଣ ଯାହା କହିବେ, ଆମେମାନେ ତାହା କରିବୁଁ ।"

ମୁଁ କହିଲି, କଚେରିବେଳେ ତୁମେମାନେ ହାକିମଙ୍କୁ ଏତିକି କହିବ—"ହଜୁର, ଆମ ରଜା ପ୍ରଜାଙ୍କ ମଧ୍ୟରେ ଯେଉଁ ଗୋଳମାଳ ଲାଗିଛି, ହଜୁର ଯେଉଁ ଦେବାନଙ୍କୁ ପଠାଇଅଛନ୍ତି, ତାଙ୍କୁ ଆମେମାନେ ମଧ୍ୟସ୍ଥ ମାନିଲୁଁ । ହଜୁର ହୁକୁମ କରନ୍ତୁ, ସେ ସମସ୍ତ ଗୋଳମାଳ ରଫା କରିଦେବେ ।" ପିଲାଙ୍କୁ ପାଠ ପଢ଼ାଇଲା ପରି ଓଳିଟାଯାକ ଲାଗି ଉପସ୍ଥିତ ସମସ୍ତ ପ୍ରଜାଙ୍କୁ ଏହି କେତୋଟି କଥା ଶିଖାଇଲି । ପ୍ରତି ଜଣ ଦୁଇ ତିନି ଥର କରି ପାଠ ସଇଦେଲେ । ସେମାନେ ସାହେବଙ୍କୁ କିପରି ସଲାମ କରିବେ, କିପରି ଧାଡ଼ି ବାନ୍ଧି ଛିଡ଼ା ହେବେ, ପରେଡ୍ ଶିଖାଇଲା ପରି ତାହା ମଧ୍ୟ ଶିଖାଇ ଦେଲି । ମୋର ଅଭିପ୍ରାୟ, ଏମାନେ ଭିଡ଼ାଭିଡ଼ି ଧାଡ଼ିବାନ୍ଧି ହୋଇ ଛିଡ଼ା ହେଲେ, ଆଉ ପ୍ରଜାମାନେ ଆଗେଇ କଥା କହିବାକୁ ସୁଯୋଗ ପାଇବେ ନାହିଁ । ଆଜି ଦିନଯାକ ବୃଷ୍ଟି ଓ ପବନର ବିରାମ ନାହିଁ, ନିବିଡ଼ରୂପେ ମେଘ ଘୋଡ଼ାଇଅଛି, ଦିନ ଦୁଇ ପ୍ରହରରେ ମଧ୍ୟ ସନ୍ଧ୍ୟାପରି ଅନ୍ଧକାର ।

ଉପରଓଳି ପ୍ରାୟ ଗୃରିଟା ସମୟ, ବୃଷ୍ଟି ଅଳ୍ପ ଊଣା ପଡ଼ିଅଛି, ତଥାପି କୁଣ୍ଡାଝଡ଼ା ପାଣି ସହିତ ପବନ

ପ୍ରବଳରୂପେ ବହୁଅଛି । ହାକିମଙ୍କ ଡେରା ନିକଟ କଚେରି ଡେରାରେ ମୁଁ, ରାଜାସାହେବ, କଚେରିର ତିନି ଚାରିଜଣ ଅମଲା ଓ ଚପରାସି ଉପସ୍ଥିତ । ମୁଁ ସାହେବଙ୍କ ଡେରା ଭିତରକୁ ଯାଇ ଜଣାଇଲି— "ପ୍ରଜାମାନେ ମୋତେ ମଧ୍ୟସ୍ଥ ମାନୁ ଅଛନ୍ତି । ସେମାନଙ୍କର ଇଚ୍ଛା, ହଜୁର ମଞ୍ଜୁର କଲେ ରାଜା ପ୍ରଜାଙ୍କ ମଧ୍ୟରେ ଯେଉଁ ବିବାଦ ଚାଲିଅଛି; ତାହା ବୁଝି ନିଷ୍ପତ୍ତି କରିଦେବି ।" ସାହେବ ମୋ କଥା ଶୁଣି ଭାରି ଖୁସିଟାଏ ହୋଇ କହିଲେ, "ବେଶ୍ କଥା ବାବୁ, ବେଶ୍ କଥା, ଆପଣ ଏହି କାର୍ଯ୍ୟଟି କରିଦେଲେ ଆମ୍ଭେ ଅତ୍ୟନ୍ତ ଆନନ୍ଦିତ ହେବୁଁ । ଦୁଇବର୍ଷ ହେଲା ବାରମ୍ବାର ଏହିକଥା ଶୁଣି ଶୁଣି ବିରକ୍ତ ହୋଇ ଯାଇଅଛୁଁ ।"

ବେଳ ପ୍ରାୟ ଦଶଟା ଗଡ଼ି ଗଲାଣି, ହାକିମଙ୍କ ଡେରା ସମ୍ମୁଖରେ ଜଣେ ଚପରାସି ଖୁବ୍ ପାଟିଟାଏ କରି ଛୁହାଇ ଛୁହାଇ ଡାକିବାକୁ ଲାଗିଲା "ଡୋମପଡ଼ାକା ପଧାନ ଲୋକ, ପ୍ରଜାଲୋକ ହାଜର ହୋ, ଡୋମ-ପଡ଼ାକା ପଧାନ ଲୋକ ପ୍ରଜା ଲୋକ ହାଜର ହୋ ।" ତୋଟା ଆମ୍ବଗଛ ମୂଳରୁ, ଗ୍ରାମ ଲୋକଙ୍କ ଓଳି ତଳରୁ, ପିଣ୍ଡାରୁ, ଘର ଭିତରୁ, ପଞ୍ଝାକୁ ପଞ୍ଝା ଲୋକ ବାହାରି ଆସିଲେ । ଥୋକେ ପହଞ୍ଚି ପାରି ନ ଥିଲେ, ପଡ଼ି ଉଠି ଧାଇଁ ଅଛନ୍ତି । ସାହେବଙ୍କ ଡେରା ସାକ୍ଷାତରେ ଧାଡ଼ିକୁ ଧାଡ଼ି ଛିଡ଼ା ହୋଇଗଲେ । ଲୋକ ପ୍ରାୟ ଦୁଇହଜାର ହେବେ । ମୁଁ ବ୍ୟାକୁଳ ଭାବରେ ଖୋଜି ବୁଲୁଅଛି, ମୋ ଲୋକେ କାହାନ୍ତି, ସକାଳ ଓଳି ଗୋଟାକ ଲାଗି ଚଡ଼ି ଯାହାଙ୍କୁ ଶିଖାଇ ବୁଝାଇ ଠିକ୍‌କରି ରଖିଥିଲି, ସେମାନେ କାହାନ୍ତି ? ମୋ ପକ୍ଷରେ ବର୍ତ୍ତମାନ ଦିଙ୍‌ମଣ୍ଡଳ ଅନ୍ଧକାରମୟ; ହୃଦୟ ଭିତରଟା ତଦ୍ରୂପ ତମିସ୍ରାଚ୍ଛନ୍ନ ହୋଇ ପଡ଼ିଲାଣି । କିଛି ଉପାୟ ସ୍ଥିର କରି ପାରୁନାହିଁ । ସାହେବ ମୋତେ ପଚାରିଲେ କଣ ଜବାବ ଦେବି ? ଡୋମପଡ଼ା ରାଜବଂଶ ରକ୍ଷାର ଆଉ ଉପାୟ ନାହିଁ ! ସାକ୍ଷାତ୍ ସମ୍ବନ୍ଧରେ ଯଦିଚ ମୁଁ ରାଜାଙ୍କର ଦେବାନ, ନୁହେ—ଯଦିଚ ରାଜାସାହେବ ମତେ ହାକିମଙ୍କ ଗୋଇନ୍ଦା ଜ୍ଞାନକରି ନିତାନ୍ତ ଅବିଶ୍ୱାସ ଚକ୍ଷୁରେ ଦେଖୁଅଛନ୍ତି; ତଥାପି ତାଙ୍କର ଏବଂ ରାଜବଂଶର ଦୁର୍ଦ୍ଦଶା ଦେଖି ମୁଁ ମନ ମଧ୍ୟରେ ଦାରୁଣ କଷ୍ଟ ଅନୁଭବ କରୁଥାଏଁ । ସେମାନଙ୍କ ଉପକାର ସାଧନ ନିମନ୍ତେ ମନ ପ୍ରାଣ ସମର୍ପଣ କରିଥାଏଁ । ରାଜାସାହେବ ପ୍ରତିଜ୍ଞାକରି ମତେ ଅନେକଥର କହିଲେଣି, ବୃଦ୍ଧି ଜମାରେ ବନ୍ଦୋବସ୍ତ କରିଦେଲେ ମଫସଲର ବାକି ଖଜଣା ସବୁ ଅସୁଲ କରି ନେବା ନିମନ୍ତେ ମୋତେ ଛାଡ଼ି ଦେବେ । ମାତ୍ର ମୁଁ ଅବଜ୍ଞା ଭାବରେ ସେ କଥା ପ୍ରତି କର୍ଣ୍ଣପାତ କରେ ନାହିଁ । ରାଜାସାହେବଙ୍କର ଉପକାର କରିବା ମୋର ଏକମାତ୍ର ଲକ୍ଷ୍ୟଥିଲା ।

ହାକିମ ମୁଣ୍ଡଠାରୁ ଗୋଡ଼ ପର୍ଯ୍ୟନ୍ତ ଗୋଟାଏ ବିଲାତି କମ୍ବଳ ଢାଙ୍କି ହୋଇ ଭିତରୁ ବାହାରି ରାଉଟି ବାରନ୍ଦାରେ ଛିଡ଼ା ହୋଇଗଲେ । ସାହେବଙ୍କର କେବଳ ଆଖି ଯୋଡ଼ିକ ଆଉ ମୁହଁଟି ଦିଶୁଥାଏ । ମୁଁ ଆଉ ପେସ୍କାର ସାହେବଙ୍କ ସାମନାରେ ଏକପାଖିଆ ଛିଡ଼ା ହୋଇଥାଉଁ । ହାକିମ ହିନ୍ଦୀଭାଷାରେ କହିଲେ, "ଉଏଲ୍ ପ୍ରଜାମାନେ, ତୁମ୍ଭେମାନେ କହୁଛ, ରଜାଙ୍କ ସହିତ ତୁମ୍ଭମାନଙ୍କର ଯେଉଁ ବିବାଦ ଚାଲୁଅଛି, ଦେବାନ ଫକୀରମୋହନ ବାବୁ ମଧ୍ୟସ୍ଥ ହୋଇ ସେ ଗୋଳମାଳ ନିଷ୍ପତ୍ତି କରିଦେବେ ?" ଚାରି ପାଞ୍ଚ ଜଣ ସରଦାର ପଧାନ ଏକ ସାଙ୍ଗରେ ପାଟିକରି କହିଲେ, "ଦେବାନ ବାବୁ ଯଦି ଗୋଳମାଳ ନିଷ୍ପତ୍ତି କରିଦେବେ, ତେବେ ଆପଣ କି ସକାଶେ ଏଡ଼େ ବର୍ଷା ତୋଫାନରେ କଟକରୁ ଧାଇଁ ଆସିଲେ ?" ସାହେବ ସେମାନଙ୍କ କଥା ବୁଝି ନପାରି ମୋତେ ଅନାଇ ପଚାରିଲେ, "ଏମାନେ କଣ କହୁଛନ୍ତି ?" ମୁଁ ତତ୍‌କ୍ଷଣାତ୍ ଜବାବ ଦେଲି— "ଏମାନେ କହୁଛନ୍ତି କି, ଦେବାନବାବୁ ଆମ୍ଭମାନଙ୍କ

ମାମଲା ନିକାଶ କରିଦେବେ, ଆପଣ ଏ ବର୍ଷା ତୋଫାନରେ କଷ୍ଟକରି ଆସି କଷ୍ଟ ପାଉଛନ୍ତି କାହିଁକି ?”

ସାହେବ କହିଲେ,“ବହୁତ ଆଚ୍ଛା, ବହୁତ ଆଚ୍ଛା, ଦେବାନ ବାବୁ ସବୁ କଥା ନିଷ୍ପତ୍ତି କରିଦେବେ । ସେ ଜଣେ ଯୋଗ୍ୟ ଲୋକ, ଆମ୍ଭେ ତାଙ୍କୁ ବିଶ୍ୱାସ କରୁଁ । ସଲାମ, ସଲାମ,ପ୍ରଜାମାନେ,ବିଦାୟ ବିଦାୟ ।” ଏତିକି କଥା କହି ଚଞ୍ଚଳ ଡେରା ଭିତରକୁ ପଶିଯାଇ ପର୍ଦ୍ଦା ପକାଇଦେଲେ । ପଧାନମାନେ ପରସ୍ପର ମୁହଁ ଚୁହାଁ ଚୁହିଁ ହେଉଥାନ୍ତି । ଏ କଣ ହେଲା ? ହାକିମଟା କଣ ବୁଝିଗଲା ? ଅମଲାମାନେ ମୋର ବନ୍ଧୁ, ଚପରାସିମାନେ ଅନୁଗତ । ତତ୍‌କ୍ଷଣାତ୍ ରାଉଟି ପାଖରୁ ପ୍ରଜାମାନଙ୍କୁ ତଡ଼ି ଦେଲେ ।

ସେ ଦିବସର ଘଟନା ମନରେ ପଡ଼ିଲେ ଅତ୍ୟନ୍ତ କଷ୍ଟ ଜାତ ହୁଏ । ସାହେବଙ୍କର ମୋ ପ୍ରତି ସମ୍ପୂର୍ଣ୍ଣ ବିଶ୍ୱାସ ଥିଲା । ମୁଁ ପ୍ରଜାମାନଙ୍କ କଥା ତାଙ୍କୁ ଅନ୍ୟରୂପେ ବୁଝାଇଦେଇ କି ବିଶ୍ୱାସଘାତକତା କରିଅଛି ! କେବଳ ଏତିକି ନୁହେ, ଅନେକ ଥର ମିଥ୍ୟା କଥା କହିଅଛି, ନିଷ୍ଠୁର ବ୍ୟବହାର କରିଅଛି । ରାଜା ଓ ରାଜପରିବାରଙ୍କ ଉପକାର ସାଧନ ନିମନ୍ତେ ସେ ସମୟରେ ମୋର ପାପପୁଣ୍ୟ ଜ୍ଞାନ ନ ଥିଲା ।

( ଉ: ସ: ୧୮ଶ ଭାଗ—୭ମ ସଂଖ୍ୟା )

---

## ଡୋମପଡ଼ାର ଦେବାନୀ (୨)

ଦ୍ୱିତୀୟ ଦିନ ବାଆଁରି ଠାରୁ ପାଞ୍ଚ କୋଶ ଦୂର ପାଥପୁର ମୁକାମରେ ହାକିମମାନଙ୍କ କଚେରି ଡେରା ପଡ଼ିଲା । ଆଜି ମାଲମକଦ୍ଦମା ସବୁ ବନ୍ଦ, ବୃଷ୍ଟି ପବନ ପୂର୍ବଦିବସ ପରି ଚାଲିଅଛି । ସରକାରୀ ଲୋକମାନଙ୍କୁ ରସଦ ଦେବା ସକାଶେ ମହଣେ ଘିଅ ଓ ଚାରି ପାଞ୍ଚ ମହଣ ଦୁଧ ଦହି ଦାଖଲ କରିବା ନିମନ୍ତେ ଗଉଡ଼ ବେହେରା ମାନଙ୍କ ନାମରେ ପରୁଆନା କରିଥିଲି ରାଜ ନଅରର ନ୍ୟାୟ ନିମିତ୍ତ ଏବଂ ସରକାରୀ କାର୍ଯ୍ୟ ଉପସ୍ଥିତ ହେଲେ ଗଉଡ଼ମାନେ ବେଠିରେ ଦୁଧ ଦହି ଯୋଗାଇ ଥାନ୍ତି । ପ୍ରାୟ ସମସ୍ତ ଗଡ଼ଜାତରେ ଚିରକାଲରୁ ଏହି ନିୟମ ପ୍ରଚଳିତ ଅଛି । ଗୁଆଲ ଓ ମହିଷାଲମାନଙ୍କ ଗୋରୁ ମଇଁଷି ରାଜାଙ୍କ ଜଙ୍ଗଲରେ ଚରୁଥିବାରୁ ସେମାନଙ୍କୁ ଏପରି ବେଠି ଦେବାକୁ ପଡ଼େ । ଡୋମପଡ଼ାରେ ପ୍ରଜା ମେଳ ଯୋଗୁ ଗଉଡ଼-ମାନେ ଏପରି ବେଠିରେ ଦୁଧ ଦହି ଦେବା ବନ୍ଦ କରିଥିଲେ । ସକାଳ ଦିନ ଦଶ ଘଡ଼ିକ ସମୟରେ ମୁଁ ଗୋଟାଏ ପିଣ୍ଡାରେ ବସିଥାଏଁ । ଅମଲା ପାଇକମାନେ ମୋତେ ବେଢ଼ି ରହିଥାନ୍ତି । ଝିପିରି ଝିପିରି ବୃଷ୍ଟି ହେଉଛି । ଡୋମପଡ଼ା ଇଲାକାର ଷଠ ବେହେରା ଗୋଟାଏ ଠେକିରେ ସେର ଦୁଇ ଭଲ ଦୁଧ, ଆଉ ଗୋଟାଏ ସାନ ଠେକିରେ ଅଧସେର ଭଲ ଘିଅ ଧରି ଉପସ୍ଥିତ ହେଲା । ତାକୁ ଦେଖିବା ମାତ୍ରକେ ମୋର ଭୟଙ୍କର ରାଗ ଜାତ ହେଲାଣି । ମୋ ସମ୍ମୁଖ ଗୋହିରି-ଦାଣ୍ଡରେ ଗୋଟିଏ ଶାଳ ପତନି କାଠ ପଡ଼ିଥିଲା, ବୃଷ୍ଟି ଯୋଗୁଁ ଦାଣ୍ଡଟା ଭୟଙ୍କର କାଦୁଅ ହୋଇଅଛି । ଯୋଡ଼ାଏ ପାଇକଙ୍କୁ ହୁକୁମ ଦେଲି—ଏହି ଷଠଟାକୁ କାଦୁଅରେ ଶୁଆଇ ଦେଇ କାଠ ସଙ୍ଗରେ ଭିଡ଼ି ବାନ୍ଧିଦିଅ । ଆଉ ଜଣେ ପାଇକ ତା ପିଠିରେ ଘିଅ ଦୁଧ ଢାଳୁ, ଆଉ ଜଣେ ବେତ ଧରି ତା ପିଠିରେ ବାଡ଼େଉ-ଥାଉ । ସଙ୍ଗେ ସଙ୍ଗେ ହୁକୁମଟା କାର୍ଯ୍ୟରେ ପରିଣତ ହୋଇଗଲା । ଷଠ ପିଠିରେ ଦୁଇ ଚାରି ପାହାର ବେତ ପଡ଼ିଅଛି, ଆଠ ଦଶ ଜଣ ଗଉଡ଼ ବେହେରା ଧାଇଁ ଅଇଲେ । ଗୋଡ଼ତଳେ ଲମ୍ବ ଲମ୍ବ ପଡ଼ିଯାଇ ରଡ଼ି କରୁଥାନ୍ତି । “ଧର୍ମାବତାର ! ଷଠକୁ ଫିଟାଇ ଦିଅନ୍ତୁ, ଏହିକ୍ଷଣି ବେଠି ଦୁଧ ଦହି ହାଜର କରି ଦେଉଛୁ ।” ସତକୁ ସତ ଅଧ ଘଣ୍ଟାକ ମଧ୍ୟରେ ଭାରକୁ ଭାର ଦୁଧ ଘିଅ ପହଞ୍ଚିଗଲା । ଆଉ ବିନା ତଲବରେ ମାଛଭାର ମଧ୍ୟ ପହଞ୍ଚିଲା । କର୍ତ୍ତବ୍ୟ କଥା ସେମାନଙ୍କୁ ଭଲରୂପେ

ଜଣା । ତେବେ ପ୍ରଜାମେଳ ହୋଇଅଛି, ଏହି ସୁଯୋଗରେ ଯେବେ କିଛି ଦେବାକୁ ନ ପଡ଼େ, ସେଇଟା ବେହେରାମାନଙ୍କ ଲାଭ ମଧ୍ୟରେ ଯିବ ।

ରାଜ୍ୟଶାସନର ଚାରିଗୋଟି ଉପାୟ—ସାମ, ଦାନ, ଦଣ୍ଡ, ଭେଦ । ଯଥୋଚିତ ଉପାୟ ଅବଲମ୍ବନ କରି ମଧ୍ୟ ପ୍ରଥମ ଦୁଇଗୋଟିରେ ଅକୃତକାର୍ଯ୍ୟ ହୋଇଅଛି; ବର୍ତ୍ତମାନ ଶେଷ ଦୁଇ ଗୋଟିର ଆଶ୍ରୟ । ସମସ୍ତ ରାଜ୍ୟର ରାଜମନ୍ତ୍ରିଗଣ କାର୍ଯ୍ୟକ୍ଷେତ୍ରରେ ଏହି ଚାରିଗୋଟି ଉପାୟ ଅବଲମ୍ବନ କରିଥାନ୍ତି । ଅତି କ୍ଷୁଦ୍ରତମ ଜମିଦାରୀ ରାଜ୍ୟର କ୍ଷୁଦ୍ରାଦପି କ୍ଷୁଦ୍ରତମ ରାଜମନ୍ତ୍ରୀ କଣ ବର୍ତ୍ତମାନ ମହାଜନ ମାନଙ୍କ ପନ୍ଥାକୁ ଅବଲମ୍ବନ ନ କରି ଚଳି ପାରନ୍ତି ? ଦୁଇ ଚାରି ଜଣ ମେଳିଆ ସରଦାରଙ୍କୁ ଇତିମଧ୍ୟରେ ପ୍ରଲୋଭନ ଏବଂ ଭୟ ଦେଖାଇ ରାଜପକ୍ଷକୁ ଟାଣି ଆଣିଲଣି ।

ସନ୍ଧ୍ୟା ସମୟରେ ସମ୍ବାଦ ପାଇଲି, ଶିମିଳିପୁର ମୌଜାରେ ମେଳିଆ ସରଦାରମାନଙ୍କର ଘରେ ଗୋଟାଏ ସଭା ବସିଥିଲା । ସେହି ସଭାରେ ସ୍ଥିର ହୋଇଅଛି—କାଲି କଚେରିରେ ଉପସ୍ଥିତ ହୋଇ ହାକିମଙ୍କୁ ବୁଝାଇବେ, 'ଦେବାନ ରାଜପକ୍ଷୀୟ ଲୋକ, ସେ କଦାଚ ପ୍ରଜାଙ୍କ ପକ୍ଷରେ ନ୍ୟାୟ ବିଚାର କରିବେ ନାହିଁ । ହାକିମ ସ୍ୱୟଂ ସେମାନଙ୍କ ଗୁହାରି ଶୁଣନ୍ତୁ ।'

ପରଦିନ ସକାଳେ ରାଉଟିକୁ ଯାଇ ହାକିମଙ୍କ ସହିତ ସାକ୍ଷାତ୍ କଲି । ଦେଖିଲି, ସାହେବ ନିତାନ୍ତ ବ୍ୟସ୍ତ । ଗତ ରାତିରେ ବୃଷ୍ଟିଜଳ ତମ୍ବୁ ଭିତରେ ପଶି ଜିନିଷ ପତ୍ରଗୁଡ଼ାକ ଭିଜାଇ ଦେଇଅଛି । ସାହେବ ଆପେ ସେଗୁଡ଼ାକ ଟଣାଟଣି କରି ଏ କୋଣ ସେ କୋଣରେ ସଜଡ଼ାସଜଡ଼ି କରି ରଖୁଅଛନ୍ତି । ମତେ ଦେଖି ତାଙ୍କର ଗତ ରାତିର ହଇରାଣ କଥାଗୁଡ଼ାକ କହିଲେ । ତହିଁ ଉତ୍ତାରୁ ସ୍ଥିର ହୋଇ ବସି ମତେ ପଚାରିଲେ—"ବାବୁ, ଖବର କ'ଣ ?"

ମୁଁ କହିଲି—ହଜୁର, ଗତ ପରଦିନ ଉପରଓଳି ଦୁଇ ହଜାର ପ୍ରଜା ହଜୁରଙ୍କ ସାକ୍ଷାତରେ ମତେ ମଧ୍ୟସ୍ଥ ମାନିଥିଲେ, ତାହା ତ ହଜୁର ଜାଣନ୍ତି ?

ସାହେବ—ହଁ ହଁ, ପ୍ରଜାମାନେ ତ ସେ କଥା ଆମ୍ଭ ସାକ୍ଷାତରେ କହି ଯାଇଅଛନ୍ତି । ପୁଣି କଣ ହେଲା ?

ମୁଁ କହିଲି—ଗତ କାଲି ଉପରଓଳି ପଧାନମାନେ ସମସ୍ତ ପ୍ରଜାଙ୍କୁ ଡକାଇ ଉପଦେଶ ଦେଇଅଛନ୍ତି, ସେ ଦିନର କଥା ଅମାନ୍ୟ କରି ପୁନର୍ବାର ଗୋଳଯୋଗ ଆରମ୍ଭ କରିବେ ।

ସାହେବ—କି ସକାଶେ ପ୍ରଜାମାନେ ସେହି ମନ୍ଦ ଲୋକମାନଙ୍କ କଥାରେ ଚାଲୁଅଛନ୍ତି ?

ମୁଁ କହିଲି—ହଜୁର, ଗରିବ ପ୍ରଜାମାନେ ପ୍ରକୃତରେ ନିରୀହ ଲୋକ । ସମସ୍ତ ଉତ୍ପାତର ମୂଳ କାରଣ ପଧାନମାନେ । କୌଣସି ପ୍ରଜା ପଧାନମାନଙ୍କ କଥାରେ ନ ଚାଲିଲେ ତାହାର ସମ୍ପତ୍ତି ସବୁ ଲୁଟତରାଜ କରି ନେଇ ଘର ଭାଙ୍ଗି ପକାଉ ଅଛନ୍ତି, ଘରର ପ୍ରତ୍ୟେକ ଲୋକକୁ ନିର୍ଦ୍ଦୟରୂପେ ପ୍ରହାର କରୁଅଛନ୍ତି । ଏଥିପାଇଁ ସମ୍ପତ୍ତି ନାଶ ଓ ପ୍ରହାରିତ ହେବା ଭୟରେ ସେମାନେ ପଧାନମାନଙ୍କ ଆଜ୍ଞାବହ ହୋଇ ରହିଅଛନ୍ତି ।

ସାହେବ କହିଲେ—ଏପରି ଅତ୍ୟାଚାର କେଉଁ କେଉଁ ପ୍ରଜା ଉପରେ ହୋଇଅଛି ?

ମୁଁ କହିଲି—ପୂର୍ବେ ତ ଅନେକ ଲୋକଙ୍କ ଉପରେ ହୋଇ ଯାଇଅଛି । ଆପାତତଃ ଚାରିଦିନ ପୂର୍ବେ ଗୋଟାଏ ଧୋବା ରାଜାଙ୍କ ନଅରର ପରିଜନ

ମାନଙ୍କ ଲୁଗା କାଚୁଥିଲା ବୋଲି ତାହା ଘରର ସମ୍ପତ୍ତି ସବୁ ଲୁଠତରାଜ କରିନେଇ ତାଙ୍କୁ ନିର୍ଦ୍ଦୟରୂପେ ପ୍ରହାର କରିଅଛନ୍ତି ।

ସାହେବ—ଆଚ୍ଛା, କେବଳ ଏହି ମାମଲାଟା ପ୍ରମାଣ କରନ୍ତୁ ।

ମୁଁ କହିଲି—ହଜୁର, ପଧାନମାନଙ୍କ ଉପରେ କୌଣସି ପ୍ରଜା ସାକ୍ଷ ଦେବେ ନାହିଁ ।

ସାହେବ—ଆଚ୍ଛା ଯାଉନ୍ତୁ, ଚେଷ୍ଟା କରନ୍ତୁ ।

ମୁଁ ସାହେବଙ୍କଠାରୁ ବିଦାୟ ଗ୍ରହଣ କରି ଉଠି ଆସିଲି । ମୁଣ୍ଡ ମୋଡ଼ି ଧୀରେ ଧୀରେ ବସାକୁ ଆସୁଥାଏ । ମନ ମଧ୍ୟରେ ଘୋର ଚିନ୍ତା ଉପସ୍ଥିତ । କଣ କରିବି ? ରାଜାଙ୍କଠାରୁ କୌଣସି ପ୍ରକାର ସାହାଯ୍ୟ ପାଇବାର ତ ଆଶା ନାହିଁ । କଥାଟା ସତ୍ୟ ହେଲେ ମଧ୍ୟ ମୋ ବୋଲରେ କିଏ ସାକ୍ଷ ଦେବ ? ଏହା ଭାବି ଆସୁଁ ଆସୁଁ ମୋ କାନରେ ଗୋଟାଏ ଶବ୍ଦ ପଡ଼ିଲା । "କି ହେ ଦେବାନ, ସାହେବଙ୍କ ଡେରାଆଡ଼ୁ ଏପରି ମୁଣ୍ଡ ମୋଡ଼ି ଧୀରେ ଧୀରେ ଆସୁଛ କାହିଁକି ?"

ଚାହିଁ ଦେଖିଲି, ନିଧି ପଟ୍ଟନାୟକେ ଗୋଟିଏ କ୍ଷୁଦ୍ର ପିଣ୍ଡାରେ ବସିଅଛନ୍ତି । ମୁଁ ହଠାତ୍ କହିପକାଇଲି— "କଣ କହିବି ପଟ୍ଟନାୟକ ଆପଣେ, ସରିଗଲା, ସବୁ କଥା ସରିଗଲା । ଆଜିଠାରୁ କରଣକୁଳରେ କାଳି ଲାଗିଗଲା ।" ପଟ୍ଟନାୟକେ ପିଣ୍ଡାଉପରୁ ଚଞ୍ଚଳ ଡେଇଁପଡ଼ି ମତେ ଆଣ୍ଟକରି କୁଣ୍ଢେଇ ପକାଇ ପଚାରିଲେ —"କଣ କଣ, କଥା କଣ ଦେବାନ !" ମୁଁ କହିଲି, "ନାହିଁ ନାହିଁ ପଟ୍ଟନାୟକ ଆପଣେ, ମତେ ଛାଡ଼ିଦିଅନ୍ତୁ, ମୁଁ ଯାଏଁ । ହେଲେ ଆପଣଙ୍କୁ ମୁଲକରେ କିଏ ନ ଜାଣେ ? କଟକ ଜିଲ୍ଲାଯାକ ନିଧି ପଟ୍ଟନାୟକଙ୍କ ନାମ ଡାକ । ବଂଶରୁ ଜଣେ ବେଡ଼ି ପିନ୍ଧି ହାଡ଼ି ହାତରୁ ଭାତ ଖାଇଲେ କାହାର ଜାତି ପତି ରହିବ, ନା କେହି ଛୁଇଁବ ? ଗଲା ଗଲା, ସରିଲା ସରିଲା ! ଆପଣଙ୍କ ସଙ୍ଗରେ ଖୁବ୍ ଭାବ ଅଛି ସତ; ମାତ୍ର ସରକାରୀ ଗୁପିତା କଥା ମୁଁ କହିପାରିବି ନାହିଁ । ମତେ ଛାଡ଼ିଦେଉନ୍ତୁ, ମୁଁ ଯାଏଁ ।"

ମୁଁ ଚାହିଁ ଦେଖିଲି, ଲୋକଟା ଉପରେ କଳାକାଠ ହୋଇଗଲାଣି ।

ନିଧି ପଟ୍ଟନାୟକେ ଖୁବ୍ ଆଣ୍ଟ କରି ଧରି କହିଲେ, "ନାହିଁ ନାହିଁ ବାବୁ, ମୁଁ କେବେଁ ଆପଣଙ୍କୁ ଛାଡ଼ିଦେବି ନାହିଁ । ମତେ ବୋଲିବାକୁ ହେବ ।"

ମୁଁ କହିଲି, "କଣ କରିବି ପଟ୍ଟନାୟକେ, ଆପଣଙ୍କ ସାଙ୍ଗରେ ଏଡ଼େ ଭାବ, ଆପଣ ପଚାରନ୍ତେ କହିବେ, ଏହି ଘୋର ବିପଦ ସମୟରେ ମୁଁ ପଦେ କଥା କହିଲି ନାହିଁ । ଚାରିଆଡ଼କୁ ଖୁବ୍ ସାବଧାନରେ ଅନାଇ ଟିକିଏ ଅନ୍ତର ନିରୋଳା ଜାଗାକୁ ଯାଇ ପଟ୍ଟନାୟକଙ୍କ କାନରେ ଗୁନ ଗୁନ କହିଲି—ଚାରିଦିନ ତଳେ ପଧାନମାନେ ନିସ୍ତିପୁରର ଅମୁକ ଶେଠୀ ଘରୁ ମାଲମତା ସବୁ ଲୁଠତରାଜ କରି ତାକୁ ମାଡ଼ ମାରିଥିବାର ଆପଣ ତ ଜାଣନ୍ତି ? ଡୋମପଡ଼ା କିଲ୍ଲାରେ ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ କିଏ ବା ନ ଜାଣେ ? କେତେଜଣ ମନ୍ଦଲୋକ ସାହେବଙ୍କ ଆଗରେ କହି ଗଲେଣି—ଜଗୁ ଗୁଡ଼ାଏ ମଣିଷ ଆଣି ଏହି ସବୁ କାଣ୍ଡ କରିଅଛି । ହଁ ହେ ପଟ୍ଟନାୟକେ, ଏକଥା କଣ ସତ ? ମୁଁ ତ ଜଗୁ ନାମ ଶୁଣି ନାହିଁ । ଶିମିଳିପୁର ଜଗୁନ ସୁବୁଦ୍ଧି ଆଉ କେତେଜଣ ଥିଲେ, ମୁଁ ଜାଣେ । ଦେଖି ଆସିଲି, ସାହେବ ହୁକୁମ ଦେଲେ - ପୋଲିସ ହାତକଡ଼ି ଗୋଡ଼କଡ଼ି ଦେଇ ନେଇଯିବ । ଘରଭିତରେ ପଶି ଜଗୁକୁ ଧରି ବେଡ଼ି ଲଗାଇବ, ଗାଁ ମଝିଦାଣ୍ଡରେ ଘୋଷାରି ଘୋଷାରି କଚେରୀକୁ ନେଇ ଆସିବ । ହାୟ ! ହାୟ ! କଣ ହେଲା ! ଯାଆନ୍ତୁ

ପାଇବେ, ବେଗି ବେଗି ଏଥର ଉପାୟ କରନ୍ତୁ, ଦଣ୍ଡେ ଡେରି କଲେ ଚଳିବ ନାହିଁ ।”

ନିଧି ପଟ୍ଟନାୟକ ମୋତେ ଆମ୍ଭକର କୁଣ୍ଡେଇ ଧରି କହିଲେ,“ବାବୁ, ଜଗୁକୁ ରକ୍ଷା କରିବାର କଣ ଉପାୟ ଅଛି କହନ୍ତୁ ଏବଂ ଆପଣ ଏଥିରେ ଉପାୟ କରନ୍ତୁ ।” ମୁଁ ଉପାୟ ଚିନ୍ତା କରୁଥିବାର ବାହାନା କରି ଦଣ୍ଡେ ପର୍ଯ୍ୟନ୍ତ ଆଖିବୁଜି ଛିଡ଼ାହୋଇ କହିଲି -“ଶୁଣନ୍ତୁ ପଟ୍ଟନାୟକେ ହାକିମଙ୍କର ଆପଣଙ୍କ ଉପରେ ଖୁବ୍ ବିଶ୍ୱାସ । ଆପଣ ଯାହା କହିବେ, ହାକିମ ତାହା ବିଶ୍ୱାସ କରିବେ । ମାତ୍ର ଗୋଟାଏ ମିଛ ମିଶାଇଲେ କିମ୍ବା ଜାଣିଶୁଣି କିଛି କଥା ଲୁଚାଇଲେ ଚଳିବ ନାହିଁ । ଏ କି କଥା ? ଜଣେ ଦୋଷ କରିବ, ଆଉ ଜଣେ ଦଣ୍ଡ ପାଇବ ? ଏହା ତ କେବେହେଁ ଉଚିତ ନୁହେଁ । ଆପଣ କାହିଁକି ଜାଣିଶୁଣି ମିଛ କହି ଆପଣାର ମାନ ମହତ୍ତ୍ୱ ସବୁ ବୁଡ଼ାଇବେ । ଆପଣ ହାକିମଙ୍କୁ ଏତିକି କହିବେ— ଜଗୁ ବିନ୍ଧ୍ୟପୁର ଶେଠୀ ଧୋବା ଘର ଲୁଟତରାଜ କରିନାହିଁ । ତାହାହେଲେ ଜଗୁ ଏକାବେଳକେ ଖଲାସ ହୋଇଯିବ । ଆଉ କାହାରି ସହିତ ସାକ୍ଷାତ ନ କରି ସଳଖେ ସଳଖେ ହାକିମଙ୍କ ନିକଟକୁ ଚାଲିଯାନ୍ତୁ । ସାବଧାନ, ଆଉ ବେଳ ନାହିଁଟି ।”

ନିଧି ପଟ୍ଟନାୟକେ ମୋ ହାତ ଧରି ଓଟାରି ଓଟାରି ହାକିମଙ୍କ ଡେରା ଆଡ଼କୁ ଚାଲିଲେ । ମତେ କହିଲେ, “ଆସନ୍ତୁ ବାବୁ, ଆପଣ ମୋ ସଙ୍ଗରେ ନଗଲେ ହେବନାହିଁ । ମୋ ପାଇଁ ଆପଣ ବି ଦିପଦ କହିବେ ।”

ମୁଁ କହିଲି, “କଣ କରିବି, ଆପଣ ଏତେକରି ଡାକୁଅଛନ୍ତି, ନଯିବି କପରି ? ଦିପଦ କାହିଁକି, ଆପଣଙ୍କ ସକାଶେ ଅବଶ୍ୟ ଢେର ପଦ କହିବି । ଶୁଣିବେ ଚାଲନ୍ତୁ ।”

ନିଧି ପଟ୍ଟନାୟକଙ୍କୁ ଡେରା ଆଗରେ ଛିଡ଼ା କରାଇ ଭିତରକୁ ଯାଇଁ ହାକିମଙ୍କୁ କହିଲି, “ହଜୁର ବିନ୍ଧ୍ୟପୁର ମୌଜାର ଶେଠୀ ଧୋବାଘର ଲୁଟତରାଜ କଥା ନିଧି ପଟ୍ଟନାୟକଙ୍କୁ ସବୁ ଜଣା । ହଜୁର ତାଙ୍କୁ ପଚାରିଲେ ସେ ସବୁ କଥା କହିବେ । ଆଉ ମୋର ପ୍ରାର୍ଥନା, ବର୍ତ୍ତମାନ ତାଙ୍କର ଜମାନବନ୍ଦି ନିଆଯାଉ, ନଚେତ୍ ସେ ପରେ ପଧାନମାନଙ୍କ ସହିତ ମିଶିଲେ ସତ୍ୟ କଥା କହିବେ ନାହିଁ ।”

ସାହେବ ତାଙ୍କ କଚେରି ମେଜ ପାଖରେ ବସି ନିଧି ପଟ୍ଟନାୟକଙ୍କୁ ଡକାଇଲେ । ନିଧି ଉପସ୍ଥିତ ହେବା ମାତ୍ରକେ ଚଞ୍ଚଳ କହିପକାଇଲେ, “ସାହେବ, ସାହେବ, ଧୋବାଘର ଲୁଟତରାଜ ବେଳେ ଜଗୁ ସେଠାରେ ନ ଥିଲା ମୁଁ ଜାଣେ ।”

ହାକିମ ସାକ୍ଷୀ ଫାରମ ପୂର୍ଣ୍ଣକରି ନିଧି ପଟ୍ଟନାୟକଙ୍କ କଥିତ ବିଷୟ ଲେଖିନେଲା ଉତ୍ତାରେ ମୁଁ ପ୍ରଶ୍ନକଲି ।

ପ୍ରଶ୍ନ—ଆଚ୍ଛା ପଟ୍ଟନାୟକେ, ଯେଉଁ ଧୋବାଘର ଲୁଟତରାଜ ହୋଇଅଛି, ତାହାର ଘର କେଉଁ ଗ୍ରାମରେ ? ତାହାର ନାମ କଣ ?

ଉତ୍ତର—ତାହା ଘର ବିନ୍ଧ୍ୟପୁର, ନାମ— ( ବର୍ତ୍ତମାନ ମୋ ମନରେ ପଡ଼ୁନାହିଁ । )

ପ୍ରଶ୍ନ—ଆଉ କେଉଁ କେଉଁ ପଧାନ ଲୁଟତରାଜ ବେଳେ ଥିଲେ ?

ଉତ୍ତର—ଜଗୁନି ସୁବୁଦ୍ଧି ଆଉ ଅମୁକ ଅମୁକ ଛଜଣ । (ପ୍ରତ୍ୟେକ ଲୋକର ନାମ କହିଲେ ।)

ପ୍ରଶ୍ନ—ଜଗବନ୍ଧୁ ପଟ୍ଟନାୟକ ଆପଣଙ୍କର କିଏ ?
ଉତ୍ତର—ନିଜନ ପୁତୁରା ।

ପ୍ରଶ୍ନ—ଏକ ଘରେ, ଏକ ଅନ୍ନରେ ଅଛନ୍ତି କି ନାହିଁ ?

ଉତ୍ତର—ହଁ, ଏକ ଘରେ ଏକ ଅନ୍ନରେ ଅଛୁଁ ।

ହାକିମ ଆସାମିମାନଙ୍କ ଗ୍ରେପ୍ତାର ସକାଶେ ପୋଲିସ ନାମରେ ଉଆରଣ୍ଟ ଦେଇ ଆମ୍ଭମାନଙ୍କୁ ବିଦାୟ ଦେଲେ ।

ନିଧି ପଟ୍ଟନାୟକ ବାଟରେ ମୋତେ ପଚାରିଲେ, ବାବୁ ଜଗୁର କଣ ହେବ ? ମୁଁ କହିଲି, ଆପଣ ସବୁ ଠିକ ଠାକ କରି ଦେଇ ଆସି ଅଛନ୍ତି । ନିଶ୍ଚିନ୍ତରେ ବସାରେ ବସି ରହନ୍ତୁ ।

ଆଜି ସକାଳ ଶଯ୍ୟା ତ୍ୟାଗଠାରୁ ଦଶଟାବେଳ ପର୍ଯ୍ୟନ୍ତ ଯେ ସମସ୍ତ କଥା କହିଅଛୁ, ଯେ ସମସ୍ତ ବ୍ୟବହାର କରିଅଛୁ, ସେ ସମସ୍ତ ମିଥ୍ୟା, ପ୍ରତାରଣା ଏବଂ ନିଷ୍ଠୁରତାମୟ । ବର୍ତ୍ତମାନ ନିର୍ଲଜଭାବରେ ସେ ସମସ୍ତ ବିଷୟ ଲେଖି ଭଦ୍ର ପାଠକମାନଙ୍କ ସମୀପରେ ପ୍ରକାଶ କଲି । ପାଠକ ମହାଶୟମାନେ ମତେ ଯଦି ମିଥ୍ୟାବାଦୀ ପ୍ରତାରକ ସ୍ଥିରକରି ମୋ କଳଙ୍କିତ ନାମରେ ଦୋଷାରୋପ ନିନ୍ଦାବାଦ କରନ୍ତି, ତେବେ ସେମାନଙ୍କ ସମୀପରେ ଆତ୍ମପକ୍ଷ ସମର୍ଥନ ନିମନ୍ତେ ତାଙ୍କ ବାକ୍ୟର ପ୍ରତିବାଦ କରିବାକୁ ମୋ ପକ୍ଷରୁ ଯୁକ୍ତିଯୁକ୍ତ ଦ୍ୱାର ଅଭାବ । ତେବେ ଜଞ୍ଜାଳମୟ ଜଗତରେ ସମୟ ସମୟରେ କାର୍ଯ୍ୟକାରଣ ସମ୍ବନ୍ଧ ପରମ୍ପରା ସୂତ୍ରଧରି ଏପରି ଅନେକ ଘଟନା ଉପସ୍ଥିତ ହୁଏ ଯେ, ସାଧାରଣତଃ ମୋ ସଦୃଶ ଦୁର୍ବଳଚେତା ସ୍ୱଳ୍ପମେଧା-ବିଶିଷ୍ଟ ଲୋକ ପକ୍ଷରେ ସତ୍ୟମାର୍ଗରେ ଅବିଚଳିତ ଭାବରେ ସ୍ଥିର ରହିବା ସାଧ୍ୟାତୀତ ହୋଇପଡ଼େ । ଆଉ ମୋ ଆତ୍ମସାନ୍ତ୍ୱନା ନିମନ୍ତେ ଏହି କଥା ସ୍ମରଣ କରୁଅଛୁ କି, ପ୍ରକୃତ ମୂଳସତ୍ୟ ସାବ୍ୟସ୍ତ ଏବଂ ନ୍ୟାୟ ବିଚାରର ପୋଷକତା ନିମନ୍ତେ ଅନ୍ୟାୟ ଉପାୟ ଅବଲମ୍ବନ କରିଥିଲି । ଅତ୍ୟାଚାରିତ ଲୋକ ପ୍ରତି ନ୍ୟାୟ ବିଚାର, ଅତ୍ୟାଚାରୀ ପ୍ରତି ଦଣ୍ଡବିଧାନ ଏବଂ ଭବିଷ୍ୟତରେ ଗରିବ ନିରୂପାୟ ପ୍ରଜାଙ୍କ ପ୍ରତି ଅକାରଣ ଅତ୍ୟାଚାରର ନିବାରଣ, ବିଶେଷତଃ ବିପଦଗ୍ରସ୍ତ ରାଜପରିବାରଙ୍କ ପ୍ରତି ସହାୟତା କରିବା ଏ ସମୟରେ ମୋର ଏକମାତ୍ର ଲକ୍ଷ୍ୟ ଥିଲା । ଥୋକେ ବାଗୁଆ ଗୋଲାପ ଗଛ ମୂଳରେ ନିତାନ୍ତ ଦୁର୍ଗନ୍ଧମୟ ପଚିମାଛ ଓ ପିଡ଼ିଆ ଦେଇ ବୃକ୍ଷକୁ ପଲ୍ଲବିତ ଏବଂ ସୁନ୍ଦର ସୁଗନ୍ଧମୟ ଗୋଲାପ ଫୁଲ ଉତ୍ପାଦନ କରାଇବାକୁ ଚେଷ୍ଟା କରିଥାଆନ୍ତି ।

ଦିନ ବାରଟା ସମୟରେ ମହାନଦୀ କୂଳସ୍ଥ ଶିମିଳିପୁର ଓ କରବର ମୌଜାହଦଗରୁ ଆଠ ଦଶ ଜଣ ପଧାନ ଆଗେ ଆଗେ, ସେମାନଙ୍କ ସଙ୍ଗରେ ହଜାର ଜଣ ପ୍ରଜା ପାଥପୁର ଆଡ଼କୁ ଭାରି ଆନନ୍ଦ ଉତ୍ସାହରେ ଚାଲି ଅଛନ୍ତି । ପଧାନମାନେ ପ୍ରଜାମାନଙ୍କୁ ଖୁବ୍ ଭରସା ଦେଉଅଛନ୍ତି ଯେ, ଆଜି ଆମ୍ଭମାନଙ୍କ ମାମଲା ଡିକ୍ରୀ ହେବ । ପଇସାଏ ବି ବେଶି କର ଦେବାକୁ ହେବ ନାହିଁ, କି ଜମି ଜବାବ ହେବ ନାହିଁ । ପଧାନଦଳ ରଣନଦୀ ଦକ୍ଷିଣକୂଳ ଅତଡ଼ାରୁ ଯେଉଁ ସମୟରେ ନଦୀଗର୍ଭ ବାଲିକୁ ଓହ୍ଲାଇ ଅଛନ୍ତି, ଠିକ୍ ସେହି ସମୟରେ ଆଠ ଦଶ ଜଣ କନଷ୍ଟେବଲ ଗୁଡ଼ାଏ ଗାଁ ଚୁକିଆଙ୍କୁ ଧରି ରଣନଦୀର ଉତ୍ତର କୂଳ ଅତଡ଼ାରୁ ନଈ ବାଲିକି ଓହ୍ଲାଇ ପଡ଼ିଲେ । ନଦୀର ଠିକ୍ ମଧ୍ୟ ସ୍ଥଳରେ ଦୁଇ ପକ୍ଷର ଭେଟ ହେଲା । ଜଣେ କନଷ୍ଟେବଲ ଡାକ ଦେଲା—"ଜଗୁନି ସୁବୁଦ୍ଧି କିଏ ?" ନାମ କହିବା ମାତ୍ର ହାତକଡ଼ି ପଡ଼ିଗଲା । "ଜଗବନ୍ଧୁ ପଟ୍ଟନାୟକ କିଏ ?" "ଲଗା ଯା ହାତକଡ଼ି ।" ଆଉ ଅମୁକ ପଧାନ—ଅମୁକ ପଧାନ ଏହିପରି ତତ୍‌କ୍ଷଣାତ୍ ହାତକଡ଼ି ପଡ଼ିଗଲା ଫଳରେ ଯେଉଁ ହଜାର ଜଣ ପ୍ରଜା ଚାଲୁଥିଲେ,

ସେମାନେ ପଛକୁ ବୁଲିପଡ଼ି ଦଉଡ଼ିଲେ—ମହାନଦୀ କୂଳ ଅରଡ଼ା ଧରି, ଗୁଡ଼ାଏ ପଡ଼ଆରେ ପଡ଼ି ଧାଇଁ ଅଛନ୍ତି । କେତେକ ମିନିଟ ମଧ୍ୟରେ ଉଆରଣ୍ଟ ଆସାମୀ କନଷ୍ଟେବଲ ଓ ଗୁଡ଼ିଆଙ୍କୁ ଛାଡ଼ ଆଉ ଜନପ୍ରାଣୀର ଭେଟ ନାହିଁ ।

ଉପରଓକ୍ତ ହାକମଙ୍କ କଚେରିରେ ନିସ୍ତିପୁର ଶେଠୀ ଧୋବାର ମାମଲା ହେଲା । ପଧାନମାନେ ଗ୍ରେପ୍ତାର ହେବାରୁ ଅନ୍ୟ ଦୁଇଜଣ ପ୍ରଜା ଗୃହସ୍ଥ ସାକ୍ଷୀ ସାକ୍ଷ ଦେବା ନିମନ୍ତେ ବାହାରି ପଡ଼ିଲେ । ମାମଲା ସାବ୍ୟସ୍ତ ହୋଇ ଯିବାରୁ ଆସାମିମାନଙ୍କର ଛ ମାସ ଲେଖାଏଁ ମିଆଦ ହୋଇଗଲା ।

ମୁଁ ନିଧି ପଟ୍ଟନାୟକଙ୍କ ସହିତ ଯେଉଁ ଅସଦ୍ ବ୍ୟବହାର କରିଥିଲି, ଡୋମପଡ଼ା ପରିତ୍ୟାଗ ପୂର୍ବେ ସେଥିର କିଞ୍ଚିତ୍ ପ୍ରାୟଶ୍ଚିତ୍ତ କରି ଆସିଅଛି । ରାଜସ୍ୱ ଆଦାୟ ନ କରିବାରୁ ପଟ୍ଟନାୟକେ ତାଙ୍କର ସମସ୍ତ ଗୃହ ଜମିରୁ ବେଦଖଲ ହୋଇଥିଲେ । ସେ ସମୟରେ ତାଙ୍କର ଯେପରି ଦୁରବସ୍ଥା ସେଥିରେ ରାଜସ୍ୱ ଆଦାୟ କରି ଜମି ଦଖଲ କରିବା ତାଙ୍କ ପକ୍ଷରେ କୌଣସି ପ୍ରକାର ସମ୍ଭବ ନ ଥିଲା । ମୁଁ ତାଙ୍କର ଦେୟ ବକେୟା ଖଜଣା ଛତିଶନବେ ଟଙ୍କା ନିଜ ହାତରୁ ଆଦାୟ କରି ଦେଇ ଚିରସ୍ଥାୟୀ ରୂପେ ତାଙ୍କ ନାମରେ ଜମି ବନ୍ଦୋବସ୍ତ କରି ଦେଇ ଆସିଅଛି ।

କଟକ ମୁକାମରେ ମାଜିଷ୍ଟ୍ରେଟ ସାହେବଙ୍କ କଚେରିରେ ଡୋମପଡ଼ାନିବାସୀ ତିନିଜଣ ପ୍ରଜା ମୋ ନାମରେ ନାଲିସ ଦାଏର କରିଥିଲେ । ପଧାନମାନଙ୍କ ମକଦ୍ଦମା ଶେଷ ହେବା ପରେ ସେହି ମାମଲା ଡାକରା ହେଲା । ମାମଲାର ବିଶେଷ ବିବରଣୀ ଏହି—ବର୍ତ୍ତମାନ ମାମଲାର ମୁଦେଇ ତିନିଜଣ ରଜାଙ୍କ ଉଆସର ପଶ୍ଚାଦ୍ଭାଗରେ ଥିବା ସରକାରି ଗୋଟାଏ ପୁରୁଣା ବଗିଚାରୁ ଆମ୍ବପେଡ଼ା ଘଣାର ଗଣ୍ଡି ସକାଶେ ଗୋଟାଏ ତେନ୍ତୁଳିଗଛ କାଟୁଥିଲେ । ମୋ ପାଖରେ ସମ୍ବାଦ ପହଞ୍ଚିବାରୁ ମୁଁ ସେହି ବୃକ୍ଷଚ୍ଛେଦନକାରୀ ତିନିଜଣଙ୍କୁ ଧରାଇ ଆଣି ଗୋଟାଏ ଘରେ ଅବରୋଧ କରି ରଖିଥିଲି । ପୋଲିସକୁ ଚାଲାଣ ଦେବାକୁ ମୋର ଇଚ୍ଛା ଥିଲା । ରଜାଙ୍କ ଅନୁମତି ଆବଶ୍ୟକ । ସେ ସମୟରେ ରଜାସାହେବଙ୍କର ମୋ ପ୍ରତି ଘୋର ଅବିଶ୍ୱାସ, ଘୋର ସନ୍ଦେହ । ( ତାଙ୍କ ଜାଣିବାରେ ) ମୁଁ ଯେ ମେଜେଷ୍ଟର ସାହେବଙ୍କ ଗୋଇନ୍ଦା । କେଜାଣି ତାଙ୍କୁ କୌଣସି ପ୍ରକାର ବିପଦରେ ପକାଇବା ସକାଶେ ମୁଁ ଏହି ମାମଲା ରଚନା କରିଅଛି । ରଜାସାହେବଙ୍କ ଠାରେ ମାମଲାର ପ୍ରସ୍ତାବ ଉତ୍‌ଥାପନ କରିବା ମାତ୍ରକେ ସେ ଚିତ୍କାର କରି କହିଲେ, "ନା ନା ଆମ୍ଭେ କିଛି ଜାଣୁ ନାହୁଁ ।" ମତେ ଏତିକ କଥା କହି ଆଉ ଗୋଟାଏ ଘରକୁ ଚାଲିଯାଇ କବାଟ ଆଉଜାଇ ଦେଲେ; ସୁତରାଂ ମତେ ଗଛକଟାଳିମାନଙ୍କୁ ଛାଡ଼ ଦେବାକୁ ପଡ଼ିଲା ।

କଟକ ମେଜେଷ୍ଟରୀରେ ମୋ ନାମରେ ଦରଖାସ୍ତ ଦାଖଲ ହେବାରୁ ମୁଁ ମାମଲା ସମ୍ବନ୍ଧୀୟ ସମସ୍ତ ସଠିକ ବୃତ୍ତାନ୍ତ ମାଜିଷ୍ଟ୍ରେଟ ସାହେବଙ୍କୁ ଜଣାଇଥିଲି । ବର୍ତ୍ତମାନ ପଧାନମାନଙ୍କ ମାମଲା ଶେଷ ହେବା ଉତ୍ତାରେ ମୋ ବିପକ୍ଷରେ ଅନ୍ୟାୟ ଅବରୋଧ ଯୋଗୁ ଫୌଜଦାରୀ ମାମଲା ଡାକରା ହେଲା । ମୁଦେଇମାନଙ୍କ ଇଜାହାର ଉତ୍ତାରେ ସେମାନଙ୍କ ପକ୍ଷରୁ ତିନି ଚାରି ଜଣ ସାକ୍ଷିଙ୍କ ଜବାନବନ୍ଦି ଗ୍ରହଣ କରାଗଲା । ମୁଦେଇମାନେ ପ୍ରାୟ ସମସ୍ତ ସତ୍ୟକଥା କହିଥିଲେ । ମାତ୍ର ସାକ୍ଷୀମାନେ ଗଠିତ—ପ୍ରକୃତରେ ସେମାନେ ଘଟନା ସମୟରେ ସରଜମିନରେ ଉପସ୍ଥିତ ନ ଥିଲେ । ସାକ୍ଷିମାନଙ୍କ ବର୍ଣ୍ଣନାର ସାର ମର୍ମ—"ଦେବାନ ବାବୁ ଫକୀରମୋହନ ସେନାପତି ମୁଦେଇ ତିନିଜଣଙ୍କୁ ଗିରିଧାରୀ ଠାକୁର ମନ୍ଦିର ବେଢ଼ା ଭିତର ଗୋଟାଏ ପକ୍କା କୋଠରିରେ କଏଦ କରି ରଖିବାର ସେମାନେ ପ୍ରତ୍ୟକ୍ଷ ଦେଖି

ଅଛନ୍ତି । ଘଟଣା ସମୟରେ ସେମାନେ ବେଡ଼ା ବାହାରରେ ଥିବା ଗୋଟାଏ ତେନ୍ତୁଳିଗଛ ମୂଳରେ ଛିଡ଼ା ହୋଇ ସବୁ ଦେଖିଅଛନ୍ତି ।" ସରଜମିନ ତଦନ୍ତ ସକାଶେ ସେଦିନ ମାମଲା ସ୍ଥଗିତ ରହିଲା ।

ପରଦିନ ଉପରଓଳି ପାଥପୁରରୁ ହାକିମଙ୍କ ଡେରା ସଙ୍ଗେ ତାଲବସ୍ତ ମୁକାମକୁ ରମାନା ହେଲା । ରଜାଙ୍କ ନଅର ସମ୍ମୁଖକୁ ଲାଗି ତାଲବସ୍ତ ଯିବାକୁ ବାଟ । ଦିନ ପ୍ରାୟ ଶେଷ ସମୟରେ ହାକିମ ତିନିଜଣ ଘୋଡ଼ାରେ ଚଢ଼ି ରଜାଙ୍କ ନଅର ଦ୍ୱାରରେ ଉପସ୍ଥିତ ହେଲେ । ହାକିମମାନେ ଭଲରୂପେ ଦେଖିଲେ, ଯେଉଁ ଘରେ ମୁଦେଇମାନେ ଅବରୁଦ୍ଧ ଥିବାର ଏବଂ ଯେଉଁ ସ୍ଥାନରେ ସାକ୍ଷିମାନେ ଛିଡ଼ା ହୋଇ ଘଟନା ଦେଖି ଥିବାର ନଥିରେ ଲିଖିତ ଅଛି, ସେ ମଧ୍ୟରେ ଯୋଡ଼ାଏ ଘରର କାନ୍ଥ ଏବଂ ଗୋଟାଏ ଇଟାର ଉଚ୍ଚ କାନ୍ଥ ଓ ପ୍ରାଚୀର ବ୍ୟବଧାନ । ଘରର ଦ୍ୱାର ପୂର୍ବମୁହାଁ, ସାକ୍ଷିମାନେ ପଶ୍ଚିମ ଦିଗରେ ଛିଡ଼ା ହୋଇଥିଲେ; ସୁତରାଂ, ଘର ମଧ୍ୟରେ ଘଟୁଥିବା କୌଣସି କାର୍ଯ୍ୟ ସାକ୍ଷିମାନେ ଦେଖିବା ନିତାନ୍ତ ଅସମ୍ଭବ । ମାମଲା ଆସିଷ୍ଟାଣ୍ଟ ମାଜିଷ୍ଟ୍ରେଟଙ୍କ କୋଟରେ ଥିଲା । ହାକିମ ମାମଲା ଡିସମିସ୍ କରିଦେଲେ ।

ଡୋମପଡ଼ା କିଲ୍ଲା ମଧ୍ୟରେ ତାଲବସ୍ତ ବୃହତ୍ତମ ଏବଂ ସର୍ବଶ୍ରେଷ୍ଠ ଗ୍ରାମ । ଗ୍ରାମର ପୂର୍ବ ପ୍ରାନ୍ତରେ ଜଙ୍ଗଲ । ସେହି ଜଙ୍ଗଲ ମଧ୍ୟସ୍ଥ ଗୋଟିଏ ଆମ୍ବ ତୋଟା ମଧ୍ୟରେ ହାକିମମାନଙ୍କ ଡେରା ପଡ଼ିଲା । ଗ୍ରାମ ମଧ୍ୟଭାଗସ୍ଥ ଗୋଟିଏ ତେଲି ମହାଜନଙ୍କ ଘରେ ମୋ ବସା । ଅମଲା ଓ ସରକାରୀ ଆଉ ଆଉ ଲୋକଙ୍କ ରହିବା ସକାଶେ ଗ୍ରାମ ମଧ୍ୟରେ ସ୍ଥାନେ ସ୍ଥାନେ ଘର ଖାଲି କରି ଯାଇଥିଲା ।

ମୁଁ ପ୍ରାତଃକାଳରେ ମହାଜନ ଘର ଦାଣ୍ଡପାଖିଆ ଉଚ୍ଚପିଣ୍ଡାରେ କଚେରି ଜାରି କରି ବସିଲି । ପିଣ୍ଡାତଳେ ଦଶବାର ଜଣ ହେଣ୍ଡିଆ ପଠାଣ ପାଇକ ହୁକୁମକୁ ଗୃହିଁ ଛିଡ଼ା ହୋଇଥାନ୍ତି । ପ୍ରଥମେ ଗ୍ରାମ ପ୍ରଧାନକୁ ଖଜଣା ତଲବ କଲି, ତହିଁ ଉତ୍ତାରେ ପ୍ରଜାମାନଙ୍କ । ମେଳି ଦରବାରରେ ରାଜକର ଦେବା କଥା ସ୍ଥିର ହୋଇ ନାହିଁ, ପାଞ୍ଚ ବର୍ଷ ହେଲା ଅଭ୍ୟାସଟା ଛୁଡ଼ ଯାଇଅଛି, ବର୍ତ୍ତମାନ କିଏ ସହଜରେ କର ଦେବେ ? ଅଧମାଇଲ ଭଳି ଲମ୍ବ ଗ୍ରାମଟାରେ କୂଅ ବୋଲି ଗୋଟିଏ । ସେଇଟା ପୁଣି ଗ୍ରାମ ମଝାମଝି ଗୋହିରି-ଦାଣ୍ଡ ଉପରେ । ସେ କୂଅଟା ସରକାରୀ । ଆମ ଦରବାରର ନ୍ୟାୟ ବିଚାରରେ ସ୍ଥିର ହେଲା, ପ୍ରଜାମାନେ ଯେବେ ରାଜସ୍ୱ ଆଦାୟ ନ କରିବେ, ତେବେ ରାଜାଙ୍କ କୂଅରୁ ଜଳ ନେବାର ସେମାନଙ୍କର କି ଅଧିକାର ଅଛି ? କୂଅ ପାଖରେ ଯୋଡ଼ାଏ ପଠାଣ ପାଇକ ପହରା ବସିଗଲେ । ଗ୍ରାମ ମଧ୍ୟରେ ପ୍ରାୟ ତିନି ଶତ ଘର, ସମସ୍ତଙ୍କର ରୋଷେଇ ବନ୍ଦ । ଅମଲା ଓ ଅନ୍ୟାନ୍ୟ ସରକାରୀ ଲୋକଙ୍କୁ ରସଦ ଦିଆଯିବା ସକାଶେ କଟକରୁ ପରୱାନା ଆସିଥିଲା । ସବୁ ଶେଷ ହୋଇଥିବାର ରସଦ ଘର କରଣ ଜଣାଇଲା । ବର୍ତ୍ତମାନ ଆମ କଚେରିର ହୁକୁମ ଏବଂ କାର୍ଯ୍ୟର ଗତି ନ୍ୟାୟମାର୍ଗ ଛାଡ଼ି ଢେର ଦୂରରେ ପଡ଼ିଅଛି । ଆରେ ରସଦ ଘରେ ପଶିବା ନାହିଁ, ଗାଁବାଲାମାନଙ୍କ ବାଡ଼ିରେ ଅଛି ତ ? ହୁକୁମ ପାଇବା ମାତ୍ରକେ ସରକାରୀ କନଷ୍ଟେବଲ ସହିତ ଚପରାଶି ପ୍ରଭୃତି ଲୋକେ ରାଜସରକାରର ପାଇକମାନଙ୍କ ସହାୟତାରେ ଗ୍ରାମସ୍ଥ ବାଡ଼ିମାନଙ୍କରୁ ବାଇଗଣ, କଦଳୀ, କଖାରୁ ଯାହା କିଛି ଥିଲା, ସମସ୍ତ ଲୁଟି ଆଣିଲେ । ପ୍ରକୃତରେ କେବଳ ଡୋମପଡ଼ା ବୋଲି ନୁହେଁ, ମୁଁ ଜାଣେ, ଓଡ଼ିଶାର ସମସ୍ତ ଗଡ଼ଜାତରେ ଆଗନ୍ତୁକ ହାକିମମାନଙ୍କୁ ରସଦର ସମସ୍ତ ସରଞ୍ଜାମ ପ୍ରଜାମାନଙ୍କର ଦେବାର ନିୟମ ଚିରକାଳରୁ ଧାରାବାହିକରୂପେ ଚଳି ଆସୁଥିଲା । ବର୍ତ୍ତମାନ ମେଳି ଯୋଗୁ ପ୍ରଜାମାନେ ଦେଇ ନାହାନ୍ତି ।

ତାଲବସ୍ତର ସମସ୍ତ ମେଳିଆ ସରଦାରମାନଙ୍କ ନାମ ମୋତେ ଜଣା ନ'ଥିଲା । ତାଲଚସ୍ତ ନିକଟବର୍ତ୍ତୀ ଗ୍ରାମ ଦୁଲଣାପୁର ମୌଜାର ସରକାରୀ ଧାନଘର ଖମାରୀ ମୋ ପାଖରେ ବସି ସେମାନଙ୍କ ନାମ ଡାକି ଦେଉଥାଏ, ଜଣେ ଜଣେ ସରଦାରକୁ ଡାକିବାପାଇଁ ଦୁଇ ଦୁଇ ଜଣ ପାଇକ ଧାଇଁଥାନ୍ତି । ଆଜି କଚେରୀରେ ନ୍ୟାୟର ବ୍ୟଭିଚାର ଦେଖି ବେଣ୍ଟିଆ ଅଶିକ୍ଷିତ ଉଦ୍ଧତ ପଠାଣ ପାଇକମାନେ ନିତାନ୍ତ ଅଗ୍ନିଶର୍ମା ହୋଇ ପଡ଼ିଲେଣି । ପୁଣି ବହୁଦିନରୁ ପ୍ରଜାମାନଙ୍କ ହାତରେ ସେମାନେ ଲାଞ୍ଛିତ ହୋଇ ଆସୁଥିଲେ । ବର୍ତ୍ତମାନ ସେଥିର ପ୍ରତିଶୋଧ ନେବାର ପାଳି ପଡ଼ିଅଛି । ଜଣେ ସରଦାରକୁ ତଲବ କଲେ ତାହାର ପୁଅ, ଭାଇ, ମଉଳା, ଶଳା ସମସ୍ତେ ବନ୍ଦୀ ହୋଇ ଆସୁ ଅଛନ୍ତି । ପ୍ରତ୍ୟେକ ଘରେ ତାଟି କବାଟ କିଳା—ପାଇକମାନେ ଡାକିଲେ ଭିତରୁ କବାଟ କୋଣରୁ କ୍ଷୀଣସ୍ୱରରେ ଜବାବ ଆସୁଅଛି—"ପୁରୁଷ କେହି ଘରେ ନାହାନ୍ତି ।" କୌଣସି ସ୍ତ୍ରୀ ଲୋକଙ୍କୁ ଅସମ୍ମାନ କରିବା କିମ୍ବା କୌଣସି ବାଳକ ବାଳିକାର ଦେହ ସ୍ପର୍ଶ କରିବାକୁ ପାଇକମାନଙ୍କୁ ବାରମ୍ବାର ଦୃଢ଼ରୂପେ ନିଷେଧ କରାଯାଇଥିଲା । ନଚେତ୍ କେଜାଣି କେତେ ଲୋକଙ୍କ ଘରର କବାଟ ଭଙ୍ଗା ହୋଇ ଯାଇଥାନ୍ତା ।

ବେଳ ପ୍ରାୟ ପହରେ ହେବ, ଏହି ସମୟରେ ମୋ କଚେରି ସମ୍ମୁଖ ଗୋହିରୀ ମଧ୍ୟରେ ଜଣେ ଧୀମାନ୍ ବୃଦ୍ଧ ବ୍ରାହ୍ମଣ ଚଞ୍ଚଳ ଚାଲିଯାଉଥିବାର ଦେଖାଗଲା । ବିପ୍ରବରଙ୍କ ବୟସ କାଳିତଠା ଅତିକ୍ରମ କରି ଯାଇଅଛି । ପାତଳ ଶରୀର, ଦନ୍ତବିହୀନ, ଗୌରବର୍ଣ୍ଣ, ପରିଧାନ ଗୋଟିଏ ପାଟ ଯଥା । ଧାନ ଘର ଖମାରୀ ତାଙ୍କ ଆଡ଼କୁ ହାତ ବଢ଼ାଇ ମୋତେ କହିଲେ, "ଓ ହୋ ! ଏହି ଯେ ପଣ୍ଡିତ ଗୋସାଇଁ ଯାଉଛନ୍ତି, ଏ ଜଣେ ଠାଣୁଆ ସରଦାର, ମେଳିଆଙ୍କ ଧରି ମଝିରେ ବସନ୍ତି ।"

ପଣ୍ଡିତଙ୍କ ଦୁଇବାହୁ ଧରି ଗୋହିରୀ ଦାଣ୍ଡ ମଝିରେ ତିନିଥର ଦଉଡ଼ାଇବା ସକାଶେ କଚେରୀରୁ ହୁକୁମ ଜାରି ହେଲା । ହୁକୁମ ପାଇବା ମାତ୍ରକେ ଯୋଡ଼ାଏ ପଠାଣ ପାଇକ ହୁକୁମ ସମ୍ପୂର୍ଣ୍ଣରୂପେ ତାମିଲ କରି ଦେଲେ ।

ବେଳ ବାରଟା ପରେ ଯୋଡ଼ାଏ ବାଜି ଗଲାଣି, ଗ୍ରାମଯାକର ଚୁଲି ଲଗି ନାହିଁ । କଷ୍ଟବୋଧ ହେଲା, ହୁକୁମ ହେଲା କି ସରକାରୀ, କି ରାଜସରକାର ତରଫର ପାଇକ ବା କୌଣସି ପୁରୁଷ ଗୋହିରୀକୁ ବାହାରିବେ ନାହିଁ, ସ୍ତ୍ରୀ ଲୋକମାନେ ଆସି ପାଣି ନେଇ ଯାଉନ୍ତୁ । ହୁକୁମ ପାଇଲା ମାତ୍ରକେ ପ୍ରତ୍ୟେକ ଗୃହରୁ ବୋହୂ, ଝିଅ, ବୁଢ଼ୀ ଦୁଇ ତିନି ଜଣ ଲେଖାଏଁ ମାଠିଆ, ଗରା, ତାଳ ଧରି ବାହାରି ପଡ଼ିଲେ । କୂଅ ମୂଳେ ଭୟଙ୍କର ଭିଡ଼—ସେ ଗୋଟିଏ ବିଚିତ୍ର ଦୃଶ୍ୟ ।

ଉପରଓଳି ବେଳ ଦୁଇଟା ସମୟରେ ମେଜେଷ୍ଟ୍ରର ସାହେବଙ୍କ କଚେରି ବସିବାର ହୁକୁମ ଗ୍ରାମ ମଧ୍ୟରେ ଘୋଷଣା କରାଗଲା ।

ନିର୍ଦ୍ଧାରିତ ସମୟରେ ରାଜପକ୍ଷର ଲୋକେ ଏବଂ ପ୍ରଜାମାନେ ହାଜର ହୋଇଗଲେ । ପ୍ରାୟ ହଜାରେ ଜଣ ଲୋକ କଚେରୀରେ ଉପସ୍ଥିତ । ମୋ ନାମରେ ଦୁଇ ନମ୍ବର ନାଲିସି ଉପସ୍ଥିତ ହେଲା । ପ୍ରଜାମାନଙ୍କ ତରଫରୁ ପ୍ରଥମ ନାଲିସ—"ଦେବାନ ବାବୁ ଫକୀର-ମୋହନ ସେନାପତି ସାନ ପଦିକାରେ ଜମି ଜରିବ କରାଉଅଛନ୍ତି ।" ମୋ ସଙ୍ଗରେ ଅନେକ ଖଣ୍ଡ ପଦିକା ଥିଲା, ସେଥିମଧ୍ୟରୁ ଖଣ୍ଡିଏ କାଠର ପଦିକା, ମାପ ଚଉଦ ଦସ୍ତି ହିସାବରେ ୧୦ ଫୁଟ ୫ ଇଞ୍ଚ ୨ ଯବ । ସେହି ପଦିକା ଖଣ୍ଡକ କଲେକ୍‌ଟରୀ ସଦର କଚେରୀରୁ ଆସିଥିଲା । ସେଥିରେ ଖଣ୍ଡିଏ କାଗଜର ଟିକଟ୍ ଲଗା, ସ୍ୱୟଂ କଲେକ୍‌ଟର ସାହେବଙ୍କ ଦସ୍ତଖତ ଥିଲା ।

ଦେଖାଗଲା ସେହି ମାପରେ ସମସ୍ତ ପଦକା ତିଆର । ଏଥିକୁ ହୁକୁମ ହେଲା କି ପ୍ରଜାମାନଙ୍କ ଦାବୀ ଡିସମିସ୍ ।

ଦ୍ୱିତୀୟ ନମ୍ବର—ତାଳବସ୍ତ ନିବାସୀ ଜଣେ ପ୍ରଜା ନାଲିସ ଉପସ୍ଥିତ କଲା । ସେଥିର ମର୍ମ—ଦେବାନଙ୍କ ହୁକୁମରେ ତାହାର କୁଠାଗଦା ଲୋକେ ଲୁଟିତରାଜ କରି ନେଇ ଯାଇଅଛନ୍ତି ।

ହାକମ ମୋ ମୁହଁକୁ ଚାହିଁଲେ । ମୁଁ ଜବାବ ଦେଲି—ସରକାର ତରଫ ଲୋକମାନଙ୍କ ସକାଶେ ରସଦ ଦରକାର ଥିଲା । ଡୋମପଡ଼ା ଲୋକଙ୍କୁ ଟଙ୍କା ଯାଚିଲେ ମଧ୍ୟ ମୂଲ୍ୟ ନେଇ ରସଦ ସରଞ୍ଜାମ ଦେଲେ ନାହିଁ । କଟକରୁ ସବୁ ଅଣାଇଲି; ମାତ୍ର କୁଠା ଅଣାଇ ପାରି ନାହିଁ । ଗତ ରାତିରେ ବୃଷ୍ଟି ଯୋଗୁଁ ହଜୁରଙ୍କ ଘୋଡ଼ା କାଦୁଅରେ ଛିଡ଼ା ହୋଇଥିଲା । ତା ବିଛଣା ପାଇଁ ଏହି ଲୋକର କୁଠା ଗଦାରୁ କେତେକ କୁଠା ଅଣା ଯାଇଅଛି । ଦାମ ଦେବାକୁ ମୁଁ ପ୍ରସ୍ତୁତ ଅଛି, ନେଉ ପକେଟରୁ ଗୋଟାଏ ଟଙ୍କା ବାହାର କରି ଦେଖାଇଲି । ମୁଦେଇର ଦାବୀ ଯେ ଡିସମିସ୍, ଏ କଥା ଲେଖିବା ନିଷ୍ପ୍ରୟୋଜନ ।

ଠିକ୍ ଏହି ମୁହୂର୍ତ୍ତରେ ସକାଳର ସେହି ପଣ୍ଡିତ ସାହେବଙ୍କ ସାକ୍ଷାତରେ ପହଞ୍ଚିଗଲେ । କଚେରି ଡେରାଠାରୁ ପଣ୍ଡିତଙ୍କ ଘର ପ୍ରାୟ ଅଧ କୋଶ ବାଟ । ବୋଧ କରେଁ, ଧାଇଁଧାଇଁ ଆସିଅଛନ୍ତି । ବୁଢ଼ା ଲୋକ, ନିଃଶ୍ୱାସ ବଳି ପଡ଼ୁଅଛି । କ୍ରୋଧରେ ଆପାଦମସ୍ତକ କମ୍ପମାନ, ଦୁଇକାନରେ ଯୋଡ଼ାଏ ସୁନାର ମକର କୁଣ୍ଡଳ ଦୁଇ ଗାଲରେ ଡପ ଡପ ହୋଇ ବାଡ଼େଇ ହେଉଥାଏ । ତହିଁଉତ୍ତାରେ ପୂର୍ବ ପାଳୁଆ ପାଟି, ସମସ୍ତ ଦୁର୍ଯୋଗ ଏକତ୍ରିଭୂତ । ସାଧ୍ୟାନୁସାରେ ଉଚ୍ଚୈଃ ସ୍ୱରରେ ତାଙ୍କ ନାଲିସ ବୃତ୍ତାନ୍ତ ବର୍ଣ୍ଣନ କରିବାକୁ ଲାଗିଲେ । ପାଟି ଖନି ବାକି କେବଳ ହାଉହାଉ ଶବ୍ଦ ଶୁଭୁଥାଏ । ସାହେବଙ୍କର ସାଧ୍ୟ କାହିଁ ଯେ, ସେଥିରୁ ଗୋଟାଏ ହେଲେ ଶବ୍ଦର ଅର୍ଥ ବୁଝିବେ । ମୁଁ କଷ୍ଟରେ ତାଙ୍କ ନାଲିସର ମର୍ମାର୍ଥ ଏହି କେତେଟା କଥା ସଂଗ୍ରହ କଲି—ସେ ସୁନାର ମକରକୁଣ୍ଡଳ ଆଉ ପାଟଯୋଷୀ ପଦ ପାଇଅଛନ୍ତି । ଆଠଗଡ଼, ତାଳଚେର ଓ ଢେଙ୍କାନାଳ ରାଜାଙ୍କ ଦରବାରରେ ବସନ୍ତି । ଆଜି ସକାଳେ ଦେବାନ ପଠାଣ ପାଇକ ହାତରେ ତାଙ୍କୁ ଦଉଡ଼ାଇ ଅଛି । ଇତ୍ୟାଦି, ଇତ୍ୟାଦି ।"

ପାଟଯୋଷୀଙ୍କ ମୁଣ୍ଡର ଚିତା ଏବଂ କାନ୍ଧ ଉପରେ ଲମ୍ବମାନ ମଇଳା ଦେଖି ସାହେବ ସ୍ଥିର କଲେଣି, ଏ ଲୋକଟା ପୁରୋହିତ ହେବ । ତାଙ୍କର ତୀବ୍ର କଟାକ୍ଷପାତରୁ ମୁଁ ଏ କଥା ମନ ମଧ୍ୟରେ ଅନୁମାନ କରି ନେଲି । ସାହେବଙ୍କ ମନରେ ସାଧାରଣତଃ ଗୋଟିଏ ଧାରଣାଥିଲା, ପୁରୋହିତମାନେ ଭଣ୍ଡ ଓ ଅଳସୁଆ; ସେମାନେ କୌଣସି କର୍ମ କରନ୍ତି ନାହିଁ, କେବଳ ଲୋକମାନଙ୍କୁ ଭଣ୍ଡାଇ ଟଙ୍କା ରୋଜଗାର କରନ୍ତି ।

ସାହେବ ମୋତେ ପଚାରିଲେ ଏ ଲୋକଟା କଣ କହୁଛି ? ମୁଁ ତତ୍‌କ୍ଷଣାତ୍ ଜବାବ ଦେଲି—"ଏ ଲୋକଟି ପଧାନମାନଙ୍କ ପୁରୋହିତ, ସେମାନଙ୍କ ଘରେ ପୂଜା କରେ । ସେ ବର୍ତ୍ତମାନ ପ୍ରାର୍ଥନା କରୁଛି—ହଜୁର ତା ଜଜମାନ ଲୋକମାନଙ୍କ ମାମଲା ଡିଗ୍ରୀ କରି ଦିଅନ୍ତୁ ।" ସାହେବ ମୋ କଥା ଶୁଣିବା ମାତ୍ରକେ ଗମ୍ଭୀର ସ୍ୱରରେ ଡାକିଲେ 'କୋଇ ହେ ଏ ଏ !' ହାତଯୋଡ଼ି ଦୁଇଜଣ ପଠାଣ ଚପରାସି ଆଗରେ ଛିଡ଼ା ହୋଇଗଲେ । ହୁକୁମ ହେଲା—"ଏହି ବ୍ରାହ୍ମଣଟାକୁ ତଡ଼ିଦିଅ ।" ହୁକୁମ ପାଇଲାକ୍ଷଣି ପଠାଣ ଚପରାସିଦ୍ୱୟ ପାଟଯୋଷିଙ୍କ ଦୁଇବାହୁ ଆଣ୍ଟିକରି ଧରି ସେମାନଙ୍କର ଯେତେ ବଳ ସାହେବଙ୍କ ଦୃଷ୍ଟିର ବାହାର ପର୍ଯ୍ୟନ୍ତ ଦଉଡ଼ାଇ ନେଇଗଲେ । ପାଟଯୋଷୀଙ୍କ ଦୁର୍ଗତି ଦେଖି

ପଧାନ ଓ ପ୍ରଜାଦଳ ଛିନ୍ନଭିନ୍ନ ହୋଇ ଊର୍ଦ୍ଧ୍ୱଶ୍ୱାସରେ ପଡ଼ଉଠି ପଳାୟନ କଲେ ।

ସାହେବ ମୋତେ କହିଲେ—"ଆମ୍ଭେ ଯେତେଦୂର ବୁଝି ଦେଖିଲୁଁ, ରଜାଙ୍କ ତରଫରୁ କୌଣସି ପ୍ରକାର ଜୁଲମ ନାହିଁ, ତେବେ କି ସକାଶେ ପ୍ରଜାମାନେ ଏପରି ଗୋଳମାଳ କରୁଅଛନ୍ତି ?" ମୁଁ କହିଲି "ପ୍ରକୃତରେ ପ୍ରଜାମାନେ କିଛି ଗୋଳମାଳ କରୁ ନାହାନ୍ତି, ଗୁଡ଼ିଏ ସ୍ୱାର୍ଥପର ଦୁଷ୍ଟ ପଧାନ ଅଛନ୍ତି, ସେହିମାନେ ସମସ୍ତ ପ୍ରକାର ଉତ୍ପାତର ମୂଳକାରଣ ଅଟନ୍ତି । ବର୍ତ୍ତମାନ ଗୋଳମାଳଟା ସେମାନଙ୍କର ବ୍ୟବସାୟ ହୋଇ ପଡ଼ିଲାଣି । ସରକାରରେ ମାମଲା କରି ନିଷ୍କରରେ ଜମିସବୁ ଦଖଲ କରାଇଦେବେ ଏହି ପ୍ରକାର ପ୍ରଲୋଭନ ପ୍ରଜାମାନଙ୍କୁ ଦେଖାଇ ସେମାନଙ୍କ ନିକଟରୁ ଟଙ୍କା ଭେଦା କରି ନେଉଅଛନ୍ତି । ଗୁଡ଼ିଏ ସରଦାର କଟକରେ ଥାନ୍ତି, ଗୁଡ଼ିଏ ମଫସଲରୁ ଟଙ୍କା ଅସୁଲ କରନ୍ତି, ଅସୁଲ ଟଙ୍କା ଆପଣା ମଧ୍ୟରେ ବାଣ୍ଟି ନିଅନ୍ତି । କୌଣସି ପ୍ରଜା ଭେଦା ଟଙ୍କା ନ ଦେଲେ ତାହା ଘର ଲୁଟତରାଜ କରି ନିଅନ୍ତି । ପ୍ରଜାମାନେ ପାଞ୍ଚବର୍ଷ ହେଲା ରଜାଙ୍କୁ ଖଜଣା ଦେଇ ନାହାନ୍ତି; ମାତ୍ର ପଧାନ ସରଦାରମାନେ ଅନେକ ଟଙ୍କା ଅସୁଲ କରି ନେଲେଣି । ଆଉ ଯେଉଁ ପଧାନ ସରଦାରମାନେ ଅଛନ୍ତି, ସେମାନେ ପୁନର୍ବାର ଗୋଳମାଳ ଲଗାଇବେ ବୋଲି ମୁଁ ଭୟ କରେଁ । ହଜୁର ତ ପ୍ରତ୍ୟକ୍ଷରେ ଦେଖିଲେ, ଅକାରଣରେ ଗୁଡ଼ାଏ ପ୍ରଜାଙ୍କୁ ଠୁଳକରି ମାମଲା କରିବାକୁ ଆସିଥିଲେ ।"

ସାହେବ - ଆଉ ଯେଉଁ ଦୁଷ୍ଟ ପଧାନମାନେ ରହି ଯାଇଅଛନ୍ତି, ସେମାନଙ୍କ ନାମ ଲେଖାଇ ଦିଅନ୍ତୁ ।

ମେଳର ସରଦାର ପଧାନମାନଙ୍କ ନାମ କହିଲି, ହାକମ ନିଜେ ସେମାନଙ୍କ ନାମ ଲେଖିନେଲେ । ବର୍ତ୍ତକ ସକାଶେ ସଚ୍ଚରିତ୍ର ରହିବା ନିମନ୍ତେ ଜାମିନ ଦେବା ସକାଶେ ସେମାନଙ୍କ ନାମରେ ପରୁଆନା ବାହାରିଲା ।

( ଉ. ସା. ୨'ଶ ଭାଗ—୭ମ, ୮ମ ସଂଖ୍ୟା )

---

## ଡୋମପଡ଼ାରେ ଦେବାନୀ (୩)

ପରଦିନ ସକାଳେ ମୁଁ ବସାରୁ ବାହାରି କଚେରି ପିଣ୍ଡା ଉପରେ ବସିବା ମାତ୍ରକେ ଦଶ ବାରଜଣ ପଧାନ ଏବଂ ଗୁଡ଼ିଏ ପ୍ରଧାନ ପ୍ରଜା ପିଣ୍ଡାତଳେ ଗୋହିରି ଦାଣ୍ଡ କାଦୁଅରେ ଲମ୍ବ ଲମ୍ବ ପଡ଼ିଗଲେ । ଧର୍ମାବତାର, ରକ୍ଷାକରନ୍ତୁ, ହଜୁର ଆମ୍ଭମାନଙ୍କର ମା-ବାପ, ରକ୍ଷା କରନ୍ତୁ ।

ଆଜକୁ ଚାରିମାସ ହେଲା ଏହି ଲୋକମାନଙ୍କୁ କେତେ ପ୍ରକାର ବୁଝାଇଅଛି, କେତେ ପ୍ରକାର ଯୁକ୍ତି ଦେଖାଇ ରଜା ପ୍ରଜା ମଧ୍ୟରେ ମିଳନ ସକାଶେ କେତେ ଯତ୍ନକରି ବ୍ୟର୍ଥ କାମ ହୋଇଅଛି; ଏହି ଲୋକଙ୍କୁ ପାଞ୍ଚଥର ଡାକଲେ ଶୁଣୁ ନ ଥିଲେ, ବରଞ୍ଚ ମୋ ସହିତ ଅବଜ୍ଞା ଭାବରେ କଥା କହୁଥିଲେ । ଏହି ଦୁଇଦିନ ମଧ୍ୟରେ ମୁଁ ଧର୍ମାବତାର ପାଲଟି ଗଲିଣି, ପୁଣି ଏମାନଙ୍କର ମା, ବାପ, ଆଉ ରକ୍ଷାକାରୀ ହୋଇ ଗଲିଣି । ଏଥିର କାରଣ ଆଜକ ତିନିଦିନହେଲା ମୋର ନ୍ୟାୟାନ୍ୟାୟ ଜ୍ଞାନ ନାହିଁ, ଅତ୍ୟାଚାର କରିବାକୁ ମୁଁ କିଛିମାତ୍ର କୁଣ୍ଠିତ ନୁହେଁ, ମିଥ୍ୟାକଥା କହିବାକୁ ମୋର କିଛିମାତ୍ର ଭୟ ଜାତ ହେଉନାହିଁ, ସୁତରାଂ ମୁଁ ଗୋଟିଏ ଧର୍ମାବତାର । କେବଳ ମୁଁ ଏକୁଟିଆ ଧର୍ମାବତାର ନୁହେ, ଲୋଡ଼ି ବସିଲେ ସଂସାରରେ ମୋ ଭଳିଆ ଧର୍ମାବତାର ଢେର ପାଇବେ । ମାତ୍ର ପ୍ରକୃତରେ ମୁଁ ସର୍ବଦା ପ୍ରଜାସାଧାରଣଙ୍କର ପକ୍ଷପାତୀ, ସେହିମାନେ

ଲୋକସମାଜର ମେରୁଦଣ୍ଡ, ସେମାନଙ୍କ ଶୁଭାଶୁଭରେ ଦେଶର ଉନ୍ନତି ଓ ଅବନତି ନିର୍ଭର କରେ । ଆଉ ପ୍ରଜାଶକ୍ତି ରାଜଶକ୍ତି ରୂପ ବୃକ୍ଷର ଚେର ସ୍ୱରୂପ । ଚେର ହିଁ ବୃକ୍ଷର ଜୀବନୋପାୟର ଏକମାତ୍ର ଅବଲମ୍ବନ ଏବଂ ସହାୟ । ରାଜଶକ୍ତିର ଉପାସକମାନେ ପ୍ରଜାଶକ୍ତିକୁ ଉପେକ୍ଷା କରି ରାଜା ଓ ପ୍ରଜା ଉଭୟ ପକ୍ଷର ପରମ ଶତ୍ରୁ ହୁଅନ୍ତି ।

ବର୍ତ୍ତମାନ କ୍ଷେତ୍ରରେ ପ୍ରଜାସାଧାରଣଙ୍କ ଅନିଷ୍ଟ ସାଧନ ମୋର ଉଦ୍ଦେଶ୍ୟ ନୁହେ, କିଲ୍ଲା ମଧ୍ୟରେ ଶାନ୍ତିସ୍ଥାପନ ଓ ଅକାରଣ ଅତ୍ୟାଚାର ପୀଡ଼ିତ ରାଜ ସଂସାରର ଦୁର୍ଦ୍ଦଶା ମୋଚନ ମୋର ପ୍ରଧାନ ଉଦ୍ଦେଶ୍ୟ । କର୍ତ୍ତବ୍ୟ ସାଧନ ନିମନ୍ତେ ମଧ୍ୟବର୍ତ୍ତୀ ସ୍ୱାର୍ଥପର ଅତ୍ୟାଚାରୀ ଲୋକମାନଙ୍କୁ ଦମନ କରିବାକୁ ମୁଁ ପ୍ରସ୍ତୁତ, ନ୍ୟାୟ ଅନ୍ୟାୟ ଓ ସତ୍ୟ ମିଥ୍ୟା ପ୍ରତି ବର୍ତ୍ତମାନ ମୋର ଦୃଷ୍ଟି ନାହିଁ । ମୁଁ ଉଦ୍ଦେଶ୍ୟ ସାଧନ ସକାଶେ କୌଣସି ପ୍ରକାର ଉପାୟ ଅବଲମ୍ବନ କରିବାକୁ ପଶ୍ଚାତ୍‌ପଦ ନୁହେଁ । ମେଳିଆ ସରଦାରମାନଙ୍କ ମୁଖରେ ବର୍ତ୍ତମାନ ଆଉ କିଛି କଥା ନାହିଁ, ବେକରେ ପଟକା ପକାଇ ଉଚ୍ଚସ୍ୱରରେ ରଡ଼ି କରୁଅଛନ୍ତି—"ଧର୍ମାବତାର ! ଆମ୍ଭମାନଙ୍କୁ ରକ୍ଷାକର ।" ହୁକୁମ ହେଲା—ତୁମ୍ଭେମାନେ ଯେବେ ଆମ୍ଭ କଥା ଅନୁସାରେ କାର୍ଯ୍ୟ କର, ତେବେ ରକ୍ଷା ପାଇପାର । ସମସ୍ତ ପଧାନ ଏକାବେଳକେ କହି ପକାଇଲେ—"ଆଜ୍ଞା କରନ୍ତୁ, ଆଜ୍ଞା କରନ୍ତୁ ।" ଆମ୍ଭର ପ୍ରଥମ କଥା—"ତୁମ୍ଭେମାନେ ଆପଣା ଆପଣା ଜମି ଜରିବ କରାଇ ଦେବ, କୌଣସି ପ୍ରକାର ଗୋଲମାଲ କରିବ ନାହିଁ ।"

ପଧାନମାନେ—ଆଜ୍ଞା ଆଜ୍ଞା, ଆଜ୍ଞା ।

ଦ୍ୱିତୀୟ ଆଦେଶ—କଳ୍ପିତ ବୃଦ୍ଧି ଜମାରେ ଜମିର ଜମା ଉଆସ ହେବ ।

ପଧାନେ—ଆଜ୍ଞା, ଆଜ୍ଞା, ଆଜ୍ଞା ।

ତୃତୀୟ ଆଦେଶ—ଗତ ପାଞ୍ଚବର୍ଷର ଖଜଣା କଲନ୍ତର ସହିତ ଆଜ ସୂର୍ଯ୍ୟାସ୍ତ ପୂର୍ବରୁ ସମସ୍ତ ମୌଜାର ପଧାନମାନେ ଦାଖଲ କରିବେ ।

ଏହି ବିଷୟ ଘେନି ଅନେକ ପ୍ରାର୍ଥନା, ଅନେକ କଥା ରଦକଦ ଉତ୍ତାରେ ସ୍ଥିରହେଲା ଖଜଣା ଟଙ୍କା ଉପରେ କଲନ୍ତର ଧରାଯିବ ନାହିଁ । ବର୍ତ୍ତମାନ ତିନି-ବର୍ଷର ଖଜଣା ଦେବେ, ଆସନ୍ତା ବର୍ଷ ଫସଲ ଅମଳ ପର୍ଯ୍ୟନ୍ତ ବାକି ଦୁଇବର୍ଷର ଖଜଣା ତଲବ ମହକୁଫ୍ ରହିବ ।

କିଲ୍ଲାର ସମସ୍ତ ପ୍ରଜା ଆପଣା ଆପଣା ଦେୟ ପାଞ୍ଚବର୍ଷର ଖଜଣା ଘରେ ବାନ୍ଧି ରଖିଥିଲେ । ପ୍ରଜା-ମାନଙ୍କର ବିଶ୍ୱାସ—ରାଜକର କେବେହେଁ ବୁଡ଼େ ନାହିଁ । କେତେବେଳେ ହେଲେ ଦେବାକୁ ପଡ଼ିବ । ମାତ୍ର ମାମଲା ଖର୍ଚ୍ଚ ସକାଶେ ପଧାନମାନେ ପ୍ରାୟ ଦୁଇବର୍ଷର ଖଜଣା ପ୍ରଜାମାନଙ୍କ ଠାରୁ ଅସୁଲ କରି ନେଇ ଅଛନ୍ତି । ସୁତରାଂ, ସମସ୍ତ ପାଞ୍ଚବର୍ଷର ବକେୟା ଖଜଣା ଏକା-ବେଳକେ ଆଦାୟ କରିବା ପ୍ରଜାମାନଙ୍କ ପକ୍ଷରେ ବର୍ତ୍ତମାନ ସାଧ୍ୟାତୀତ ହୋଇ ପଡ଼ିଅଛି ।

ହାକିମଙ୍କ କଚେରିଠାରୁ ଡୋମପଡ଼ା ଇଲାକାର ପ୍ରତ୍ୟେକ ଗ୍ରାମକୁ ପ୍ରଜାମାନଙ୍କ ପକ୍ଷରୁ ଟପା ବସିଅଛି । ହାକିମଙ୍କ କଚେରିରୁ କୌଣସି ହୁକୁମ ବାହାରିବା ମାତ୍ରକେ କିଲ୍ଲାଯାକ ସେହି ସମ୍ବାଦ ପ୍ରଚାରିତ ହେଉଅଛି । ରାଜଦରବାରରେ ଖଜଣା ଆଦାୟ ସମ୍ବନ୍ଧରେ କଥା ସ୍ଥିର ହୋଇଯିବାରୁ ସମସ୍ତ ପଧାନ ଏବଂ ପ୍ରଜାମାନେ ଖଜଣା ଆଣିବା ସକାଶେ ଆପଣା ଆପଣା ଗ୍ରାମକୁ ଧାଇଁଲେ ।

ତାଳବସ୍ତ ଗ୍ରାମରେ ରାଜାଙ୍କ ବସା ଏବଂ ମୋ ବସା ବା ରାଜକଚେରି ଅଳ୍ପ ଦୂର । ଖଜଣା ଆଦାୟ ଏବଂ ଅନ୍ୟାନ୍ୟ ବିଷୟ ସମ୍ବନ୍ଧରେ ପ୍ରଜାମାନଙ୍କ ସହିତ ଯେ ପ୍ରକାର ବନ୍ଦୋବସ୍ତ ହେଲା, ସେ ସମସ୍ତ କଥା ଜଣେଇବା ସକାଶେ ମୁଁ ରାଜାସାହେବଙ୍କ ନିକଟକୁ ଗଲି । ରାଜାସାହେବ ଉଦାସୀନ ଭାବରେ ମୋହର ସମସ୍ତ କଥା ଶୁଣି କହିଲେ, "ଆମ୍ଭେ ବକେୟା ପାଞ୍ଚବର୍ଷର ଖଜଣା ନେବୁ ନାହିଁ, ସମସ୍ତ ଟଙ୍କା ଅସୁଲ କରି ତୁମ୍ଭେ ନିଅ, ଆମ୍ଭର କଚ୍ଛା ବନ୍ଦୋବସ୍ତ ଏବଂ ମାଣ ପ୍ରତି ଦୁଇପଇସା ବୃଦ୍ଧି ଜମାରେ ଜମିର ଭିଆଣ ଲୋଡ଼ା ।" ରାଜାସାହେବଙ୍କ ହୁକୁମ ଶୁଣିବାମାତ୍ରକେ ମୋ ମନରେ ଗୋଟାଏ ଆତଙ୍କ ଉପସ୍ଥିତ ହେଲା । ବକେୟା ଖଜଣା ଅସୁଲ ସମ୍ବନ୍ଧରେ ରାଜାଙ୍କର ଅଭିପ୍ରାୟ କଥା ଶୁଣିଲେ କେଜାଣି ବା ପ୍ରଜାମାନେ କିଛି ଗୋଳମାଳ କରିବେ—"ରାଜାଙ୍କୁ କହିଲ, ଆଜ୍ଞା ତାହା ହିଁ ହେବ, ଆପଣ ତୁନି ହୋଇ ବସନ୍ତୁ, ମୋ ବନ୍ଦୋବସ୍ତରେ ହାତ ଦେବେ ନାହିଁ ।" ରାଜାସାହେବ କହିଲେ—"ନାହିଁ, ନାହିଁ,ଆମ୍ଭେ କୌଣସି କଥାରେ ପାଟି ଫିଟାଇବୁନାହିଁ ।"

ରାଜାସାହେବଙ୍କ ସହିତ କଥାବାର୍ତ୍ତାରୁ ବୁଝିଲି, ଏ ପର୍ଯ୍ୟନ୍ତ ମୋ ଉପରୁ ତାଙ୍କର ସନ୍ଦେହ ଛାଡ଼ି ନାହିଁ । ରାଜାସାହେବଙ୍କର ବିଶ୍ୱାସ—ମୁଁ ଜଣେ କଲେକ୍ଟର ସାହେବଙ୍କ ଗୋଇନ୍ଦା, କୌଣସି ସୁଯୋଗରେ ତାହାଙ୍କୁ ଧରି ନେଇ ଜେଲ କରାଇଦେବି । ଏ ବିଶ୍ୱାସଟା ତାଙ୍କ ମନରେ ବଦ୍ଧମୂଳ ରହିଅଛି । ଦିବା ନିଶି ଆହାର ନିଦ୍ରା ଏକପ୍ରକାର ତ୍ୟାଗ କରି ରାଜାସାହେବଙ୍କର ମଙ୍ଗଳ ସାଧନ କାମନାରେ ଧାଇଁଅଛି; ମାତ୍ର ରାଜାସାହେବ ମୋର ପ୍ରତ୍ୟେକ କାର୍ଯ୍ୟକୁ ସନ୍ଦେହ ଚକ୍ଷୁରେ ଦେଖୁଅଛନ୍ତି ।

ସେହିଦିନ ଦିବା ବାରଘଣ୍ଟାଠାରୁ ଖଜଣା ଅସୁଲ କାର୍ଯ୍ୟ ଆରମ୍ଭ ହେଲା । ଶେଷ ରାତି ପର୍ଯ୍ୟନ୍ତ ଅଠର ହଜାର ଟଙ୍କା ଅସୁଲ ହୋଇଗଲା । ଏଥିଉତ୍ତାରୁ ନିଜଗଡ଼ କଚେରୀରେ ଖଜଣା ଅସୁଲ ହେବାର ଆଦେଶ କରି ଅସୁଲ କାର୍ଯ୍ୟ ବନ୍ଦ କରାଇଦେଲି ।

ସଚ୍ଚରିତତାର ଜାମିନ ଦେବା ନିମନ୍ତେ ଯେଉଁ ପଧାନମାନଙ୍କ ନାମରେ ପରୁଆନା ବାହାରିଥିଲା ହାକିମଙ୍କୁ ଜଣାଇ ତାହା ରହିତ କରାଇ ଦେଲି । ହାକିମମାନେ ତାଳବସ୍ତ ଚଟି ଭାଙ୍ଗି ଖୋରଧା ତରଫ ଗସ୍ତକୁ ବାହାରିଗଲେ ।

ମୋହର ତାଳବସ୍ତ ପରିତ୍ୟାଗ ପବେ ଉକ୍ତ ପାଟଜୋଷୀ ପଣ୍ଡିତଙ୍କୁ ଡକାଇଲି । ପାଖରେ ବସାଇ ନାନାପ୍ରକାର ମିଷ୍ଟାଳାପରେ ତାଙ୍କୁ ସାନ୍ତ୍ୱନା ଦେଇ କ୍ଷମା ପ୍ରାର୍ଥନା କଲି । ବ୍ରାହ୍ମଣ ପଣ୍ଡିତଗୁଡ଼ିକ ପିତ୍ତଳ ତଳ ପରି, ଯେତେ ଜଳଦି ଗରମ, ତେତେ ଜଳଦି ଥଣ୍ଡା ହୋଇଯାନ୍ତି । ପଣ୍ଡିତେ ମୋ ଉପରେ ଖୁବ୍ ଖୁସି ହୋଇଗଲେ । ମୋ ପରି ଟାଣୁଆ ହାକିମଟା ପ୍ରଜା-ମାନଙ୍କ ସାକ୍ଷାତରେ ହାତଯୋଡ଼ି ତାହାଙ୍କ ସହିତ କଥା କହୁଅଛି, ବାରମ୍ବାର କ୍ଷମା ପ୍ରାର୍ଥନା କରୁଅଛି, ଏହା ହିଁ ତାଙ୍କର ଆନନ୍ଦର କାରଣ ଥିଲା । ଏହି କେତେଟା ଦିନ ମଧ୍ୟରେ ଡୋମପଡ଼ା ଅଞ୍ଚଳରେ ମୁଁ ଗୋଟାଏ ଟାଣୁଆ ହାକିମ ନାମରେ ଖ୍ୟାତ । ଲୋକ-ମାନଙ୍କର କଥା—"ତିନି ତିନିଟା ସାହେବଙ୍କ ଆଗରେ ଲୋକଗୁଡ଼ାଙ୍କୁ ବାଡ଼େଇ ପକାଉଅଛି, ଜେଲ କରାଇ ଦେଉଅଛି, ଏଇଟା ନିଶ୍ଚୟ ଗୋଟାଏ ଭାରି ଟାଣୁଆ ହାକିମ ।"

ତାଳବସ୍ତ କଚେରି ଭାଙ୍ଗି ନିଜଗଡ଼କୁ ଚାଲି-ଆସିଲି । ରାଜାସାହେବ ରାଜନଅର ପଛପଟ ଉଦ୍ୟାନସ୍ଥ ତାହାଙ୍କ ନିଜ ନିର୍ମିତ ଛୋଟ କୋଠାରେ ଥିଲେ । ଉଆସ ଭିତରକୁ ଆସନ୍ତି ନାହିଁ, ଉଆସର କାହାରି ପ୍ରତି ତାଙ୍କର ବିଶ୍ୱାସ ନ ଥିଲା । ପାରିପାର୍ଶ୍ୱିକ ଘଟଣାବଳୀ ମନୁଷ୍ୟ ମନରେ ଗୋଟାଏ ଛାପ ମାରିଦିଏ ।

ସେଇଟା ଗୁଡ଼ଯିବା ସହଜ ନୁହେଁ । ରାଜାସାହେବ କୋଠା ବାରଣ୍ଡାରେ ଗୋଟାଏ ମାଞ୍ଚିଆ ଉପରେ ବସିଥିଲେ । ମୁଁ ଅସୁଲ ଟଙ୍କାଗୁଡ଼ିକ ଧରି ତାହାଙ୍କ ନିକଟରେ ଉପସ୍ଥିତ ହେଲି । ଟଙ୍କା ତୋଡ଼ା ଦେଖି ରାଜାସାହେବ କହିଲେ, "ନାହିଁ, ନାହିଁ, ଆମ୍ଭେ ଏ ଟଙ୍କା ନେବୁଁ ନାହିଁ । ତୁମ୍ଭେ ଅସୁଲ କରି ଆଣିଛ, ତୁମ୍ଭେ ନିଅ । ଆମ୍ଭେ କେବଳ କିଲ୍ଲାର ବନ୍ଦୋବସ୍ତ ଚାହୁଁ ।" ଏତିକି କଥା କହି ଭିତରକୁ ଉଠିଗଲେ । ପାଖ ଲୋକ କବାଟ ଆଉଜାଇ ଦେଲା । କିଛି କଥା ଜଣାଇବାକୁ ଅବକାଶ ପାଇଲି ନାହିଁ ରଜାଙ୍କ ନିକଟରୁ ବାହୁଡ଼ି ଆସି ରାଣୀମାତାଙ୍କୁ ଖବର ଦେଲି । ଉଆସ ଭିତରିଆ ପଡ଼ିଆରି ଆସି ସମ୍ବାଦ ଦେଲା, 'ରାଜାସାହେବ ଯେ ସ୍ଥଳରେ ଟଙ୍କା ରଖିଲେ ନାହିଁ, ରାଣୀମାତା କିପରି ରଖିବେ ?'

ଟଙ୍କା ରଖିବା ସକାଶେ ଗୋଟାଏ ସିନ୍ଦୁକ ବା ପେଟରା ମାଗି ମଧ୍ୟ ପାଇଲି ନାହିଁ । ଟଙ୍କା ପଇସା ମିଶି ଗୁଡ଼ାଏ କଚେରୀ ବାରଣ୍ଡାରେ ଜମା ହୋଇଅଛି । ତାହା ମଧ୍ୟ ଥଳୀରେ ଉପଯୁକ୍ତ ରୂପେ ରଖାଯାଇନାହିଁ । ଛିଣ୍ଡା ଅଖା ଓ ଛିଣ୍ଡା କନାରେ ପୋଟଲା ପୋଟଲା କରି ବନ୍ଧା ହୋଇଥାଏ । ରାଜାସାହେବ ତ ସ୍ପଷ୍ଟ ଜବାବ ଦେଲେ, ଟଙ୍କା ସେ ନେବେ ନାହିଁ । ଯେତିକି ଟଙ୍କା ଅସୁଲ ହୋଇଅଛି ଓ ହେବ, ସେସବୁ ମୁଁ ନେବି । ମୁଁ ମନରେ ବିଚାର କଲି—ମୁଁ ଏପରି କି କାର୍ଯ୍ୟ କରିଅଛି ଯେ, ଏତେଗୁଡ଼ାଏ ଟଙ୍କା ଘେନିଯିବି ? ତିନି-ମାସର ଆଗତୁରା ଦରମା ପାଇଅଛି । ପୁଣି ଖାଇଖରଚ ରାଜାସାହେବ ସବୁ ଦେଉ ଅଛନ୍ତି । ଏହାପରେ ଏତେଗୁଡ଼ାଏ ଟଙ୍କା କି ସକାଶେ ଘେନି ଯିବି ? ପ୍ରକୃତରେ ସେ ସମୟରେ ଟଙ୍କା ପ୍ରତି ମୋର କୌଣସି ପ୍ରକାର ଲୋଭ ନ ଥିଲା । ଅନେକ ହାକମ ଓ ଅନେକ ଭଦ୍ରଲୋକ ମଧ୍ୟସ୍ଥତା କରି ପାଞ୍ଚବର୍ଷ ମଧ୍ୟରେ ଗୋଲମାଲ ଭାଙ୍ଗି କିଲ୍ଲା ବନ୍ଦୋବସ୍ତ କରାଇ ପାରି ନାହାନ୍ତି । କଟକ ଓ କଲିକତାର କେତେଜଣ ବଡ଼ ବଡ଼ ଓକିଲ ବୁଦ୍ଧି-ଜମାରେ ବନ୍ଦୋବସ୍ତ କରାଇ ଦେବାର ବିଶ୍ୱାସ ଦେଇ ରାଜାଙ୍କଠାରୁ ପ୍ରାୟ କୋଡ଼ିଏ ହଜାର ଟଙ୍କା ପର୍ଯ୍ୟନ୍ତ ନେଇ ସାରିଲେଣି । ରାଜାସାହେବ କରଜ କରି ଓକିଲ-ମାନଙ୍କୁ ଏହି ଟଙ୍କା ଦେଇ ଅଛନ୍ତି । ଯଦିଚ ରାଜାସାହେବଙ୍କର ମୋ ପ୍ରତି ଏ ପର୍ଯ୍ୟନ୍ତ ବିଶ୍ୱାସ ଜାତ ହୋଇନାହିଁ ଏବଂ ଆଜକୁ ଚାରି ପାଞ୍ଚ ମାସ ମଧ୍ୟରେ ମୋ ସହିତ ଭଲକରି ମନ ଖୋଲି ଗୋଟିଏ ମାତ୍ର କଥା କହି ନାହାନ୍ତି, ତଥାପି ତାଙ୍କର କାର୍ଯ୍ୟ ସାଧନ ସକାଶେ ମୁଁ ମନପ୍ରାଣ ସହିତ ଦିବା ରାତ୍ର ଲାଗିପଡ଼ିଥାଏଁ । ଏମନ୍ତ କି, ସେ ସମୟରେ ମୁଁ ମୋ ନିଜ ଘରର ବିଷୟ ପର୍ଯ୍ୟନ୍ତ ପାସୋରି ପକାଇଥିଲି ।

ସେ ସମୟକୁ ରାଜାସାହେବଙ୍କର କଟକସ୍ଥ ଦୁଇଟି ଶୁଣ୍ଡି ମହାଜନଙ୍କଠାରେ ପଚିଶ ହଜାର ଟଙ୍କା ପର୍ଯ୍ୟନ୍ତ ଦେଣା ଥିଲା । ରାଜାସାହେବଙ୍କୁ କିଛି ନ ଜଣାଇ ସେହି ଅସୁଲ ଟଙ୍କାଗୁଡ଼ିକ ଭାରୁଆ ଯୋଗେ କଟକ ଘେନି ଆସିଲି । ବାଲୁବଜାର ନିବାସୀ ଜଣେ ଶୁଣ୍ଡି ମହାଜନଙ୍କୁ ସମସ୍ତ ଟଙ୍କା ଦେଇ ରେଜେଷ୍ଟରି ତମସୁକ ପିଠିରେ ଅସୁଲ ଲେଖିଦେଲି ।

ଅନେକଗୁଡ଼ିଏ ଅମିନ ନିଯୁକ୍ତ କରି କିଲ୍ଲାର ସମସ୍ତ ମୌଜାର ଜରିବ ଏକାବେଳକେ ଆରମ୍ଭ କରିଦେଲି । ମୋହର ଗୋଟିଏ ବଡ଼ କାଠିଆବାଡ଼ ଘୋଡ଼ା ଥାଏ । ସେହି ଘୋଡ଼ାରେ ଚଢ଼ି ସମସ୍ତ ସମୟରେ ମଫସଲ ଅମିନମାନଙ୍କ କାର୍ଯ୍ୟ ଦେଖି ଆସୁଥାଏଁ । ଯେଉଁ ସମସ୍ତ ସରଦାର ପଧାନ ଜେଲ ଯାଇଅଛନ୍ତି, ସେମାନେ ଖଲସ ହୋଇ ଆସି ଜରିବରେ ବାଧାଦେଇ ପାରନ୍ତି, ଏ ପ୍ରକାର ଆଶଙ୍କା ମନରେ ଜାଗ୍ରତ ଥାଏ । ଏଥିପାଇଁ ମଫସଲର ଜରିବ କାର୍ଯ୍ୟ ଯେତେ ଶୀଘ୍ର ହୋଇ ପାରେ, ତେତେ ଶୀଘ୍ର ତାହା

ନିକାଶ କରାଇବା ପାଇଁ ଯତ୍ନ କରୁଥାଏଁ । ମଫସଲର ଜରିପ କାର୍ଯ୍ୟ ଶେଷ ପର୍ଯ୍ୟନ୍ତ ରାଜାସାହେବ କଟକ କଲିକତାରେ ବୁଲୁଥାନ୍ତି । ମୋ ପ୍ରତି ଘୋର ସନ୍ଦେହ, କେଜାଣେ ମୁଁ ଜଣେ କମିସନର ସାହେବଙ୍କ ଗୋଇନ୍ଦା, କୌଣସି ମାମଲାରେ ତାହାଙ୍କୁ ପକାଇ ଜେଲ୍ କରାଇ ଦେବି । ରାଜାସାହେବ ଗଦିନସୀନ ହେବା ଦିନଠାରୁ କ୍ରମାଗତ ଛଅବର୍ଷ କାଳ ନାନାପ୍ରକାର ମାମଲାରେ ପଡ଼ି ଅତ୍ୟାଚାରର ଭୋଗକରି ବୁଦ୍ଧିଭ୍ରଷ୍ଟ ହୋଇ ଯାଇ-ଥିଲେ । ମାତା, ଭ୍ରାତା, ସମସ୍ତ ଚାକର ଓ ସ୍ତ୍ରୀ ପର୍ଯ୍ୟନ୍ତ କାହାରି ପ୍ରତି ତାଙ୍କର ବିଶ୍ୱାସ ନ ଥିଲା । କେହି କାଳେ ଭାତରେ ବିଷ ଦେବ, ଏଥିପାଇଁ ଚାରି ପାଞ୍ଚବର୍ଷ କାଳ ଅନ୍ନ ତ୍ୟାଗ କରିଥିଲେ । ମୁଁ ଜଣେ ଅଜ୍ଞାତ-କୁଳଶୀଳ ଆଗନ୍ତୁକ ଲୋକ ? ପୁଣି ତାଙ୍କର ପରମ ଶତ୍ରୁ କମିସନର ସାହେବଙ୍କ ନିଯୁକ୍ତ ଲୋକ । ମୋ ପ୍ରତି ଅବିଶ୍ୱାସ ଜାତ ହେବା ସ୍ୱାଭାବିକ କଥା । ନିତାନ୍ତ ପ୍ରୟୋଜନ ନ ହେଲେ ରାଜାସାହେବ କାହାରି ସହିତ ସାକ୍ଷାତ୍ କରନ୍ତି ନାହିଁ । ଗୋଟାଏ ନିର୍ଜନ କୋଠରିରେ ବସି ନିଜେ ନିଜେ ବର୍ ବର୍ କରି କଣ କହୁଥାନ୍ତି । ଡାହାଣ ହାତ ବଡ଼ିଆଙ୍ଗୁଠିରେ କଣ ଲେଖୁଥାନ୍ତି । ଏହା ତାହାଙ୍କର ନିଜ ସହିତ ଯୁକ୍ତି ପରାମର୍ଶ କରିବାର ଚିହ୍ନ ।

ରାଜା ସାହେବଙ୍କର ଏ ପ୍ରକାର ବ୍ୟବହାର, ନଅର ଭିତରେ ରାଜମାତା, ରାଣୀ ଆଉ ଆଉ ପରିଜନ-ମାନଙ୍କ ଦୁର୍ଗତି ବିପଦ ଦେଖି ଶୁଣି ମୋ ମନରେ ଦାରୁଣ କଷ୍ଟ ଜାତ ହୁଏ । ମୋହର ବର୍ତ୍ତମାନ ଏକମାତ୍ର ଭାବନା ଓ ଲକ୍ଷ୍ୟ—କି ଉପାୟରେ ବିପଦ୍‌ଗ୍ରସ୍ତ ରାଜ-ସଂସାରଟି ଶାନ୍ତି ଏବଂ ସୁଖ ଲାଭ କରିବ । ରାଜାସାହେବ ଅତ୍ୟାଚାରୀ ହୋଇଥିଲେ ମୁଁ ତାଙ୍କ ପକ୍ଷ ଅବଲମ୍ବନ କରି ନ ଥାନ୍ତି । ରାଜ ନଅର ପ୍ରାଚୀର ମୂଳ ପର୍ଯ୍ୟନ୍ତ ପତର ଜଙ୍ଗଲ ମାଡ଼ି ଆସିଥିଲା । ରଜାଙ୍କ ନଅରକୁ ଯିବାକୁ ବାହାର ଲୋକଙ୍କ ସକାଶେ ବାଟ ନାହିଁ; ଲୋକେ ଜଙ୍ଗଲ ଆଡ଼େଇ ଆଡ଼େଇ ବାହାରକୁ ଯା ଆସ କରୁଥିଲେ । ଆଜକୁ ଛ ବର୍ଷ ହେଲା ଦାଣ୍ଡର ଗୋଟାଏ ଦୁବ ଉପାଡ଼ିବାକୁ ଲୋକ ନ ଥିଲେ । ସରଦାରମାନଙ୍କ ପକ୍ଷରୁ ଜଗୁଆଳ ବସିଥାଏ, ନଅରକୁ କୌଣସି ପ୍ରଜା ବା ନିୟୋଗ ଚାକର ଯା ଆସ କଲେ ତାହାର ଘର ଲୁଟତରାଜ ହୁଏ, ଲୋକଟି ଭୟଙ୍କରରୂପେ ପ୍ରହାରିତ ହୁଏ । ମୋହର ବସା ବା କଚେରି ଘର ନଅରକୁ ଲାଗିଥାଏ । ମୁଁ ପ୍ରଥମ ପ୍ରଥମ ସକାଳୁ ଘରୁ ବାହାରି ଦେଖେଁ ଯେ, ପଲକୁ ପଲ ଜଙ୍ଗଲି କୁକୁଡ଼ା ଦୁଆରେ ଚରୁଥାନ୍ତି । ନଅର ସିଂହଦ୍ୱାର ସମ୍ମୁଖରେ ଗିରିଧାରୀ ଠାକୁରଙ୍କ ମନ୍ଦିର ଓ ବେଢ଼ା । ମୁଁ ସଞ୍ଜ ସକାଳେ ସେହି ବେଢ଼ା ମଧ୍ୟସ୍ଥ ପକ୍କା ମେଲାରେ ଅଳ୍ପ ସମୟ ସକାଶେ ବୁଲେଁ । ଦିନେ ସକାଳେ ମନ୍ଦିର ବେଢ଼ା ସମ୍ମୁଖସ୍ଥ ଫାଟକ ବାହାରେ ଗୋଟାଏ ଆଠ ଦଶ ହାତ ଲମ୍ବ ଅହିରାଜ ସାପ ଗୋଟାଏ ତେନ୍ତୁଳି ଗଛ ଉପରେ ଗୋଟାଏ ନେପାଳୀ ମୂଷାକୁ ଧରି ଖାଉଥିବାର ଦେଖି ମୋ ମନରେ ବଡ଼ ଭୟ ଜାତ ହେଲା । ବଣୁଆ ସବର-ମାନଙ୍କ ହାତରେ ନଅର ପ୍ରାଚୀର ମୂଳଠାରୁ ଶଏ ହାତ ପର୍ଯ୍ୟନ୍ତ ଜଙ୍ଗଲ କଟାଇ ସଫା କରାଇ ଦେଲି । ନଅରର ପଛପଟ ଜଙ୍ଗଲ କାଟିଲେ ନଅରର ମର୍ଯ୍ୟାଦା ବାହାରି ଯିବ । ସେହି ଜଙ୍ଗଲରେ ହାତ ନ ଦେବା ପାଇଁ ନଅର ଭିତରୁ ଆଦେଶ ଆସିବାରୁ ମର୍ଯ୍ୟାଦାର ଆଶ୍ରୟରେ ରହି ଜଙ୍ଗଲଟି ରକ୍ଷା ପାଇଗଲା ।

ଗଡ଼ଜାତ କର୍ମକ୍ଷେତ୍ରରେ ମୋ ସଙ୍ଗରେ ନିଜର ଗୋଟିଏ ଦୋହରି ବନ୍ଧୁକ ଥାଏ । ଗୋଟିଏ ଶିକାରୀ ପାଇକ ମଧ୍ୟ ମୋ ସଙ୍ଗରେ ଥିଲା । ପ୍ରତିଦିନ ମୁଁ ସକାଳୁ ଘରୁ ବାହାରିବା ମାତ୍ରକେ ଶିକାରୀ ଦୁଇ ତିନୋଟା ବଣ କୁକୁଡ଼ା ଶିକାର କରି ଆଣି ଦେଖାଏ ।

ଚାରି ପାଞ୍ଚ ମାସ ମଧ୍ୟରେ ସମସ୍ତ ମୌଜାରେ ଜରିପ କାର୍ଯ୍ୟ ସମାପ୍ତ ହୋଇଗଲା । ଅମିନମାନେ ସଦର

କଚେରିକୁ ଆସି ଉଆରଜା କରି ପକାଇଲେ । ପ୍ରଜା ମୁକାବିଲା ମଧ୍ୟ ହୋଇଗଲା । ଏବେ ଜମା ଭିଆଣ କରାଯିବାର କାର୍ଯ୍ୟ ଆରମ୍ଭ କରାଯିବ । ସୁତରାଂ ରାଜାସାହେବଙ୍କ ଉପସ୍ଥିତି ନିତାନ୍ତ ଆବଶ୍ୟକ । ରାଜାସାହେବ ସେ ସମୟରେ କଲିକତାରେ ଥିଲେ । ମୋ ପତ୍ର ପାଇ ଗଡ଼କୁ ଅଇଲେ । ବର୍ତ୍ତମାନ ରାଜା ସାହେବଙ୍କର ମନର ଭାବ ଅନ୍ୟପ୍ରକାର ଦେଖି ଆନନ୍ଦିତ ହେଲି । ମୋ ପ୍ରତି ଅବିଶ୍ୱାସର ଭାବ ନାହିଁ । ହସି ହସି କଥା କହନ୍ତି । ସଞ୍ଜ ସକାଳେ ଦୁଇଜଣ ନିରୋଳାରେ ଯୋଡ଼ାଏ ମାଞ୍ଚିଆରେ ବସି ନାନାପ୍ରକାର କଥୋପକଥନ କରୁଁ । ଦିନେ ଦିନେ ରାତିରେ ବିଅର ମଦ୍ୟ ପାନ କରିବା ସକାଶେ ବଗିଚାରୁ ନିମନ୍ତ୍ରଣ ଆସେ ।

ବର୍ତ୍ତମାନ ଜମିର ଭିଆଣ ପ୍ରସଙ୍ଗ ଉପସ୍ଥିତ । ରାଜାସାହେବ ମାଣପ୍ରତି ଗୁରିଅଣା ଅଧିକ ଜମାରେ ଜମି ଭିଆଣ କରିବା ସକାଶେ ମତେ ହୁକୁମ ଦେଇ ବସିଲେ । ସର୍ବନାଶ ! ହୁକୁମ ଶୁଣି ମୋର ବୁଦ୍ଧି ଲୋପ ପ୍ରାୟ ହେଲାଣି । କଣ କରିବି କିଛି ସ୍ଥିର କରି ପାରୁନାହିଁ । ରାଜାସାହେବଙ୍କୁ ଅନେକ ପ୍ରକାର ଯୁକ୍ତି ଦେଖାଇ ବୁଝାଇଲି, ଭୟ ଦେଖାଇଲି, "ଆପଣ ଦୁଇ ପଇସା ବୃଦ୍ଧି ଜମାରେ ବନ୍ଦୋବସ୍ତ କରିବାକୁ ଯାଇ ପଞ୍ଚାଶ ହଜାର ଟଙ୍କା କରଜ କରି ସାରିଲେଣି । କେତେ ହାକିମ, କେତେ ଭଲଲୋକ ଥକିଗଲେ, ପାଞ୍ଚବର୍ଷ ବିତିଗଲା, କିଛି ହୋଇ ପାରିଲା ନାହିଁ । ଗୁରିଅଣା ବୃଦ୍ଧିଜମା କେତେବେଳେ କୌଣସି ପ୍ରକାର ହୋଇ ନ ପାରେ । ମୁଁ ତ ଏହା ପାରିବି ନାହିଁ; କଟକ ଗୁଲି ଯାଉଅଛି ।" ଗୃକିରି ଛାଡ଼ି ଦେଇ କଟକ ଗୁଲି ଆସିବା ସକାଶେ ଭୟ ଦେଖାଇଲି ସତ୍ୟ; ମାତ୍ର ମୋତେ ଛାଡ଼ିଦେଲେ ମଧ୍ୟ ମୁଁ ଆସନ୍ତି ନାହିଁ । ଏତେ ଦୂରକୁ ଆସି ଶେଷରେ କଣ ଛାଡ଼ି ଦିଅନ୍ତି ? ଥରେ ନୁହେଁ, ଦୁଇଥର ନୁହେଁ, ଅନେକ ଥର ରାଜାସାହେବଙ୍କ ନିକଟରୁ ବିରକ୍ତ ହୋଇ ଉଠି ଆସେଁ । ପୁନର୍ବାର ଯାଇ ବୁଝାଏଁ । ପ୍ରତ୍ୟେକ ଥର ରାଜାସାହେବ ଧୀର କୋମଳ ଭାବରେ ହସି ହସି କହନ୍ତି, "ବାବୁ, ଆପଣଙ୍କୁ ଏଇଟା କରାଇ ଦେବାକୁ ହେବ ।" 'ମୋ ଦ୍ୱାରା ଏହା ହୋଇ ପାରିବ ନାହିଁ', ମୁଁ ଏତିକି କହି ଉଠି ଆସେଁ । ଏଣେ କେତେ ଜଣ ପ୍ରଧାନ ଓ ବଡ଼ ବଡ଼ ରଇତଙ୍କୁ ମଣାଉ ଥାଏଁ ।

ପ୍ରତ୍ୟେକଥର ରାଜାସାହେବଙ୍କୁ କହି ଆସେଁ, ମୋ ଯୋଗେ ଏହା ହୋଇ ନ ପାରେ । ପ୍ରତ୍ୟେକ ଥର ରାଜାଙ୍କର ସେହି ଗୋଟିଏ କଥା—"ବାବୁ, ଆପଣଙ୍କୁ କରି ଦେବାକୁ ହେବ ।" ରାଜାସାହେବଙ୍କ ସହିତ ଉଦକଦରେ ପାଞ୍ଚ ଛ ଦିନ ବିତିଗଲା । ଏଣେ ମଧ୍ୟ ପଧାନ ଓ ବଡ଼ ବଡ଼ ରଇତଙ୍କୁ ବୁଝାଇ ଯୁକ୍ତି ଦେଖାଇ ସମ୍ମତ କରି ପକାଇଲି । ମାଣ ପ୍ରତି ଗୁରିଅଣା ବୃଦ୍ଧି ଜମାରେ ବନ୍ଦୋବସ୍ତ ହେବାର କଥା ସ୍ଥିର ହୋଇଗଲା ।

ବନ୍ଦୋବସ୍ତ କାର୍ଯ୍ୟ ପ୍ରାୟ ଚଉପଣୀ ପର୍ଯ୍ୟନ୍ତ ଶେଷ ହୋଇଅଛି, ଏହି ସମୟରେ ଢେଙ୍କାନାଳ କାଲା କୋର୍ଟ ଅଫ ଉଆର୍ଡ଼ରେ ଆସିଷ୍ଟାଣ୍ଟ ମେନେଜର ପଦରେ ନିଯୁକ୍ତି ପତ୍ର କମିଶନରଙ୍କ ଅଫିସରୁ ପ୍ରାପ୍ତ ହେଲି; କିନ୍ତୁ ରାଜାସାହେବ ମୋତେ କୌଣସିରୂପେ ଛାଡ଼ି ଦେବାକୁ ସମ୍ମତ ହେଉ ନାହାନ୍ତି । ମୋତେ କହିଲେ, "ମାସିକ ଅଢ଼ାଇଶତ ଟଙ୍କା ଦରମା ଦେବେ । ଆଉ ବତିଶ ଟଙ୍କା ମୂଲ୍ୟର ଷ୍ଟାମ୍ପ କାଗଜରେ ଏହିପରି ସର୍ତ୍ତ ଲେଖିଦେବେ ଯେ, ଯେ କୌଣସି ଅପରାଧରେ ମୋତେ ପଦଚ୍ୟୁତ କଲେ ମୋହର ଯାବଜ୍ଜୀବନ ମାସିକ ସେହି ଅଢ଼ାଇ ଶତ ଟଙ୍କା ପେନସନ୍ ଦେବେ ।"

ରାଜାସାହେବ ଏବଂ ମୁଁ ଦୁଇଜଣ ଏକସଙ୍ଗରେ କଟକ ଆସି କମିଶନର ସାହେବଙ୍କ ସହିତ ସାକ୍ଷାତ୍ କଲୁଁ । ରାଜାସାହେବ ସାହେବ ମହୋଦୟଙ୍କୁ ମୋ ସମ୍ବନ୍ଧରେ

ଜଣାଇବାରୁ ସାହେବ ମହୋଦୟ ହୁକୁମ ଦେଲେ ଯେ, "ନାହିଁ ନାହିଁ ଫକୀରମୋହନ ବାବୁଙ୍କୁ ଛାଡ଼ ଦେବାକୁ ହେବ । ତାଙ୍କ ସମ୍ବନ୍ଧରେ ଗବର୍ଣ୍ଣମେଣ୍ଟଙ୍କୁ ରିପୋର୍ଟ କରାଯାଇଅଛି । ସେଥିର ଅନ୍ୟଥା ହେବ ନାହିଁ ।"

ସାହେବ ମହୋଦୟ ଅନ୍ୟ ସମୟରେ ମୋତେ ଡକାଇ କହିଲେ, "ଏ ରଜାଟା ବାୟା, ଏହାର କଥା ଠିକ ନାହିଁ । ଏହାର କଥା ଶୁଣିବା ଉଚିତ ନୁହେଁ । ଆମ୍ଭେ ସରକାର ତରଫରୁ ଆପଣଙ୍କୁ ଗୋଟିଏ ଉଚ୍ଚ ପଦ ଦେବା ଉଦ୍ଦେଶ୍ୟରେ ଢେଙ୍କାନାଳକୁ ଅଣାଇଅଛୁଁ ।"

ମୋହର ଡୋମପଡ଼ା ତ୍ୟାଗକରି ଢେଙ୍କାନାଳ ଆସିବା କଥା ସ୍ଥିର ହୋଇଗଲା । ଡୋମପଡ଼ା କିଲ୍ଲା ବନ୍ଦୋବସ୍ତର ଯେଉଁ କାର୍ଯ୍ୟ ବାକି ଥିଲା, ଢେଙ୍କାନାଳରେ ରହି ସେ କାର୍ଯ୍ୟ ନିକାଶ କରି ଦେବି ବୋଲି ପ୍ରତିଶ୍ରୁତ ହେଲି ।

ମୁଁ କଟକରେ ଗୋଟିଏ ବସାଘର ତିଆର କରିବା ଇଚ୍ଛାରେ ଖଣ୍ଡେ ଜାଗା ଅନ୍ୱେଷଣ କରୁଥିଲି । ରାଜା ସାହେବ ସେ କଥା ଶୁଣିଥିଲେ । ମୋହର ଡୋମପଡ଼ା ଛାଡ଼ିବାର କେତେକ ଦିନ ପୂର୍ବ ଦିନେ ବଗିଚା କୋଠା ବାରନ୍ଦାରେ ବସି ଦୁଇଜଣ କଥୋପକଥନ କରୁଥିଲୁଁ । କଥାପ୍ରସଙ୍ଗରେ ରାଜାସାହେବ ମୋତେ ପଚାରିଲେ, "ଆପଣଙ୍କର କଟକରେ ବସାଘର ତିଆରି କଥା କଣ ହେଲା ?" ମୁଁ କହିଲି, "ଏପର୍ଯ୍ୟନ୍ତ ଜାଗା ଠିକ୍ ହୋଇନାହିଁ, ମିଳିଲେ ଘର ତିଆର କରିବି ।"

ରାଜାସାହେବ—କିପରି ଘର ତିଆର କରିବେ ? ସେଥିରେ କେତେ ଟଙ୍କା ଖର୍ଚ୍ଚ ହେବ ?

ମୁଁ କହିଲି,—ଏଇ ଗୋଟାଏ କ୍ଷୁଦ୍ର ମାଟିଘର ତିଆର କରିବି, ଅନୁମାନ ଅଢେଇଶ କି ତିନିଶ ଟଙ୍କା ପର୍ଯ୍ୟନ୍ତ ଖରଚ ହେବ ।

ରାଜାସାହେବ—ଆପଣଙ୍କ ମନମାଫିକେ ଗୋଟେ କୋଠାଘର ତିଆର କରିବାକୁ ହେଲେ କେତେ ଟଙ୍କା ଖର୍ଚ୍ଚ ହୋଇପାରେ ?

ମୁଁ କହିଲି—ପାଞ୍ଚ ହଜାର ଟଙ୍କାରେ ଗୋଟାଏ ଭଲ ଘର ତିଆର ହୋଇପାରେ । ମାତ୍ର ମୁଁ ଏତେ ଟଙ୍କା କାହୁଁ ପାଇବି ଯେ କୋଠାଘର ତିଆର କରିବି ?

ରାଜାସାହେବ ହସି ହସି କହିଲେ, "ଆଚ୍ଛା ପାଞ୍ଚ ହଜାର ଟଙ୍କା ନେଇ ଯାଉନ୍ତୁ, ଗୋଟିଏ କୋଠା ଘର ତିଆର କରିବେ ।" ଏହି ପାଞ୍ଚ ହଜାର ଟଙ୍କା ଛଡ଼ା ଗୋଟିଏ ନେପାଳୀ ଭୋଜାଲି ଏବଂ ତାହାଙ୍କ ମେଜ ଉପର ଦୁଆତଟି ମୋତେ ଦେଇଥିଲେ । ମୁଁ ରାଜା ସାହେବଙ୍କ ଠାରୁ ପୁରସ୍କାର ପାଇବି, ଏ ଆଶା ସ୍ୱପ୍ନରେ ସୁଦ୍ଧା ମୋ ମନରେ ଉଦିତ ହୋଇ ନ ଥିଲା । ରାଜା-ସାହେବ ମଫସଲ ବକେୟା ପଚାଶ ହଜାର ଟଙ୍କା ଅସୁଲ କରି ନେବା ସକାଶେ ମୋତେ ପୁନଃ ପୁନଃ କହୁଥାନ୍ତି; ମାତ୍ର ମୁଁ ଅବଜ୍ଞା ଭାବରେ ସେ କଥା ଶୁଣୁଥାଏ । ମନରେ କରେ, ଉପଯୁକ୍ତ ଦରମା ପାଉଅଛି; ପୁଣି ବନ୍ଦୋବସ୍ତ ନ ଥିଲେ ମଧ୍ୟ ମୋତେ ଖୋରାକି ଖର୍ଚ୍ଚ ଦେଉ ଅଛନ୍ତି । ତହିଁ ଉପରେ ମଫସଲର ଟଙ୍କା ଗୁଡ଼ାଏ ଅସୁଲ କରି ନେବି କି ସକାଶେ ।

ରାଜା ସାହେବ ମୋତେ ଯେଉଁ ପାଞ୍ଚହଜାର ଟଙ୍କା ପୁରସ୍କାର ଦେଇଥିଲେ, କେତେଟା ବର୍ଷ ମଧ୍ୟରେ ସମସ୍ତ ଖରଚ କରି ପକାଇଅଛି; ମାତ୍ର ତାହାଙ୍କ ନିଜ ଦପ୍ତରରୁ ଯେଉଁ ବଡ଼ କାଚ ଦୁଆତଟି ଦେଇଥିଲେ,

ସେହି ଦୁଆତଟି ମୋ ସଙ୍ଗେ ସଙ୍ଗେ ଅଛି, ଶେଷ ଦିନ ପର୍ଯ୍ୟନ୍ତ ରହିବ । ବର୍ତ୍ତମାନ ସେହି ଦୁଆତରେ ଲେଖୁଅଛି । ମୋହର ସମସ୍ତ କବିତା, ଉପନ୍ୟାସ ଏହି ଦୁଆତ କାଳିରେ ଲେଖା । ଦୁଆତ ପାଖରେ ବସିଲେ ସେହି ରାଜା ରଘୁନାଥ ମାନସିଂହ ଭ୍ରମରବରଙ୍କ ଗମ୍ଭୀର ମୂର୍ତ୍ତି ମନରେ ପଡ଼େ । ରାଜାସାହେବଙ୍କ ଉକ୍ତି ବୋଲି ଯେତୋଟି କଥା ଲେଖିଅଛି, ସେଗୁଡ଼ିକ ଲେଖିବା ସମୟରେ ମନେ ପଡ଼େ—ଯେମନ୍ତ ରାଜାସାହେବ ମୋତେ କହୁଅଛନ୍ତି, ମୁଁ ଲେଖି ଯାଉଅଛି ।

ରାଜସାହେବ ଜଣେ ଶିକ୍ଷିତ ଲୋକ, ନୂତନ ନୂତନ ପ୍ରକାର ଲାଭବାନ୍ କୃଷି ପ୍ରବର୍ତ୍ତନ ଦ୍ୱାରା ଜିଲ୍ଲାର ଉନ୍ନତି ସାଧନ କରିବା ସକାଶେ ତାଙ୍କର ନିତାନ୍ତ ଇଚ୍ଛା ଥିଲା । ବିବିଧ ପ୍ରକାର ବିଦେଶୀୟ ଫଳ ପୁଷ୍ପ ବୃକ୍ଷ କଲିକତାରୁ ଅଣାଇ ଗୋଟିଏ ସୁନ୍ଦର ଉଦ୍ୟାନ ପ୍ରସ୍ତୁତ କରାଇଥିଲେ; ମାତ୍ର ଇଚ୍ଛାନୁସାରେ କୌଣସି କାର୍ଯ୍ୟ ସାଧନ କରି ପାରି ନାହାନ୍ତି । ତାହାଙ୍କ ରାଜତ୍ୱରେ ଅଧିକାଂଶ ସମୟ ହାହାକାରରେ କଟାଇ ଯାଇଅଛନ୍ତି । ଦୟାମୟ ପରମେଶ୍ୱର ତାହାଙ୍କ ସ୍ୱର୍ଗସ୍ଥ ଆତ୍ମାକୁ ଶାନ୍ତିଦାନ କରନ୍ତୁ ।

(ଉ. ସା. ୨୩ଶ ଭାଗ-୯ମ । ୧୦ମ ସଂଖ୍ୟା)

---

୨୭

## ଢେଙ୍କାନାଳରେ ଆସିଷ୍ଟାଣ୍ଟ ମ୍ୟାନେଜରୀ (୧)

ଢେଙ୍କାନାଳର ମ୍ୟାନେଜର ବାବୁ ବନମାଳୀ ସିଂହ । ସେ ଜଣେ ସୁଶିକ୍ଷିତ ନ୍ୟାୟପରାୟଣ ଧର୍ମନିଷ୍ଠ ପରିମିତବ୍ୟୟୀ ଏବଂ ଯତ୍ନବାନ୍ ଲୋକ ଥିଲେ । ଅନ୍ୟାନ୍ୟ ରାଜକର୍ମଚାରୀମାନଙ୍କ ମଧ୍ୟରେ ବାବୁ ପ୍ୟାରୀମୋହନ ସେନ ରାଜଶିକ୍ଷକ, ବାବୁ ବିଜୟକୁମାର ଚକ୍ରବର୍ତ୍ତୀ ଆସିଷ୍ଟାଣ୍ଟ ସର୍ଜନ । ନାବାଳକ ରାଜା ସ୍ୱର୍ଗୀୟ ଦିନବନ୍ଧୁ ମହେନ୍ଦ୍ର ବାହାଦୁର । ପୂର୍ବବର୍ତ୍ତୀ ମହାରାଜା ସ୍ୱର୍ଗୀୟ ଭଗୀରଥ ମହେନ୍ଦ୍ର ବାହାଦୁର ଅପୁତ୍ରିକ ଥିବାରୁ ବୌଦ ରାଜାଙ୍କ ତୃତୀୟ ପୁତ୍ରଙ୍କୁ ପୋଷ୍ୟପୁତ୍ର ସ୍ୱରୂପ ଗ୍ରହଣ କରିଥିଲେ । ଦିନବନ୍ଧୁ ମହେନ୍ଦ୍ର ବାହାଦୁର କି ରୂପରେ, କି ଗୁଣରେ, ସର୍ବବିଷୟରେ ମହାତ୍ମା ଭଗୀରଥ ମହେନ୍ଦ୍ର ବାହାଦୁରଙ୍କର ଉପଯୁକ୍ତ ଉତ୍ତରାଧିକାରୀ ଥିଲେ । ଯେପରି ଲାବଣ୍ୟମୟୀ ମୂର୍ତ୍ତି, ସେହିପରି ପ୍ରଶସ୍ତ ଚିତ୍ତ । ସମସ୍ତ ଲୋକଙ୍କ ପ୍ରତି ତାହାଙ୍କର ସମଦୃଷ୍ଟି ଓ ଦୟା ଥିଲା । ସେ ନାବାଳକ ଥିବା ସମୟରେ ଇଚ୍ଛାନୁସାରେ ବ୍ୟୟ କରିବା ସକାଶେ ସରକାରୀ ତହବିଲରୁ ମାସିକ ପରିମିତ କେତେ ଟଙ୍କା ତାହାଙ୍କ ସକାଶେ ନିର୍ଦ୍ଧାରିତ ଥିଲା; ମାତ୍ର ସେ ନିତାନ୍ତ ଦାନଶୀଳ ଥିବାରୁ ତେତିକ ମାତ୍ର ଟଙ୍କା ସଙ୍କୁଳାନ ହୁଏ ନାହିଁ । ଗୋପନରେ ପ୍ରାୟ ପ୍ରତି ମାସରେ ଅନ୍ୟ ଲୋକଠାରୁ ଟଙ୍କା କରଜ କରୁଥିଲେ । ବିଶେଷ ପରିତାପର ବିଷୟ, ସିଂହାସନ ପ୍ରାପ୍ତିର ଅତ୍ୟଳ୍ପ କାଳ ଉତ୍ତାରେ ପାର୍ଥିବ ସମସ୍ତ ସମ୍ପର୍କ ପରିତ୍ୟାଗ ପୂର୍ବକ ସ୍ୱର୍ଗଯାତ୍ରା କରି ଅଛନ୍ତି ।

ମାସେ ମାତ୍ର କର୍ମ କଲା ଉତ୍ତାରେ ପୂଜାବନ୍ଦ ସମୟ ଉପସ୍ଥିତ ହେଲା । ଏହି ଅବସରରେ ବାଲେଶ୍ୱର ଆସି ବାଳିକା ସ୍ତ୍ରୀଟିକୁ ଢେଙ୍କାନାଳ ନେଇଗଲି । ମୋହର ପ୍ରଥମ ସ୍ତ୍ରୀର ବାଳିକା କନ୍ୟାଟି ମଧ୍ୟ ସଙ୍ଗରେ ଯାଇଥିଲା । ଆସିଷ୍ଟାଣ୍ଟ ମ୍ୟାନେଜର ରହିବା ସକାଶେ ସ୍ୱତନ୍ତ୍ର ଘର ନ ଥିଲା । ପ୍ରଥମେ ଯାଇଁ ଡାକବଙ୍ଗଳାରେ ରହିଲି । ପରେ ସୁପରିଣ୍ଟେଣ୍ଡେଣ୍ଟ ସାହେବ ଗୃହ ନିର୍ମାଣ ସକାଶେ ଛଅ ଶତ ଟଙ୍କା ମଞ୍ଜୁର କଲେ । ଗଡ଼ଠାରୁ ଅଳ୍ପ ଦୂର ଉତ୍ତର ଦିଗରେ ଗୋଟିଏ ଘୋର ନିବିଡ଼ ବାଉଁଶ ବଣ ଥିଲା । ବୋଧ କରେଁ, ବହୁପୂର୍ବେ କୌଣସି ରାଜାଙ୍କର ଏ ସ୍ଥାନଟା ଗଡ଼ ଥିଲା । ଚତୁର୍ଦ୍ଦିଗରେ ଗଡ଼ଖାଇ ବେଷ୍ଟିତ ଏବଂ ଭଗ୍ନ କାନ୍ଥ, ମଧ୍ୟସ୍ଥାନଟା ସମତଳ ଭୂମି ।

ବାଉଁଶବଣ କଟାଇ ଆପଣାର କଳ୍ପନା ଅନୁସାରେ ନିଜ ତତ୍ତ୍ୱାବଧାନରେ ଗୋଟିଏ ଘର ପ୍ରସ୍ତୁତ କରାଇଲି, ଜଳ ସକାଶେ ଭିତରେ ବାହାରେ ଯୋଡ଼ିଏ କୂପ ଖୋଳାଇଲି । କର୍ମଟି ସମ୍ପୂର୍ଣ୍ଣ କରିବାକୁ ଷୋଳଶତ ଟଙ୍କା ବ୍ୟୟ ହୋଇଥିଲା । ପ୍ରଥମରେ ମଞ୍ଜୁରୀ ଛଅଶତ ଟଙ୍କା ଉପରେ ବ୍ୟୟ ହଜାରେ ଟଙ୍କା ଆପଣା ହାତରୁ ଦେଇଥିଲି । ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ରାୟ ନନ୍ଦକିଶୋର ଦାସ ବାହାଦୁର ମହାଶୟ ଅନୁଗ୍ରହ ପୂର୍ବକ ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କୁ ଜଣାଇ ସରକାରୀ ତହବିଲରୁ ସେ ଟଙ୍କା ମୋତେ ଦିଆଇ ଦେଇଥିଲେ ।

ସେ ସମୟରେ ଶିକ୍ଷିତ ଚରିତ୍ର ଗ୍ରନ୍ଥକାର ଦଳ ମଧ୍ୟରେ ବାବୁ ବିଚ୍ଛନ୍ଦ ପଟ୍ଟନାୟକ ଜଣେ ଅନ୍ୟତମ । ତାହାଙ୍କର ପ୍ରଥମ କାର୍ଯ୍ୟ ସମ୍ବଲପୁରର ସ୍କୁଲ ଡେପୁଟି ଇନ୍‌ସପେକ୍‌ଟରୀ । ତହିଁ ଉତ୍ତାରେ ଅନୁଗୁଳର ତହସିଲଦାରୀ ପଦରେ ନିଯୁକ୍ତ ହୋଇଥିଲେ । ମୋହର ଢେଙ୍କାନାଳ ଅବସ୍ଥାନର ତିନି ଚାରି ମାସ ଉତ୍ତାରେ ବିଚ୍ଛନ୍ଦବାବୁଙ୍କ ନିକଟରୁ ଚିଠି ଆସିଲା, ସେ ଛୁଟି ନେଇ ଗ୍ରାମକୁ ଯିବେ । ଅନୁଗୁଳ ଠାରୁ ତାଲଚେର ପର୍ଯ୍ୟନ୍ତ ଆସି ସେଠାରୁ ନଦୀ ମଧ୍ୟରେ ନୌକାଯୋଗେ ତାହାଙ୍କ ନିଜ ଗ୍ରାମକୁ ଯିବାର ସୁବିଧା । ବିଚ୍ଛନ୍ଦବାବୁଙ୍କ ଅଭ୍ୟର୍ଥନା ନିମନ୍ତେ ଗଡ଼ଠାରୁ ତିନିକୋଶ ଉତ୍ତର ନଦୀକୂଳସ୍ଥ ବଉଳପୁର ନାମକ ଗ୍ରାମ ନିକଟବର୍ତ୍ତୀ ଆମ୍ବ ତୋଟା ତଳ ପରିଷ୍କାର କରାଯାଇ କେତୋଟା ଗୁମ୍ଫୁଡ଼ିଆ ଘର ପ୍ରସ୍ତୁତ ଏବଂ ନାନାପ୍ରକାର ଖାଦ୍ୟଦ୍ରବ୍ୟ ସଂଗୃହୀତ ଥିଲା । ଭୋରୁ ବନମାଳୀବାବୁ, ବିଜୟ ବାବୁ, ପ୍ୟାରୀବାବୁ ଏବଂ ମୁଁ ଚାରିଜଣ ଯୋଡ଼ାଏ ହାତୀରେ ଚଢ଼ି ସକାଳ ବେଳ ଅନୁମାନ ୯ ଘଣ୍ଟା ସମୟରେ ବଉଳପୁର ତୋଟାରେ ପହଞ୍ଚିଲୁଁ । ଅଳ୍ପ ସମୟ ଉତ୍ତାରେ ବିଚ୍ଛନ୍ଦ ବାବୁଙ୍କ ନୌକା ମଧ୍ୟ କୂଳରେ ଭିଡ଼ିଲା । ସମସ୍ତେ ଏକ ସଙ୍ଗରେ ମିଶି ବ୍ରାହ୍ମଣୀ ଜଳରେ ସ୍ନାନ ସାରି ଆସିଲୁଁ, ତହିଁ ଉତ୍ତାରେ ଆମୋଦ ପ୍ରମୋଦ ଆରମ୍ଭ । ବିଚ୍ଛନ୍ଦବାବୁ ନମ୍ବର ଉଆନ ଅର୍ଥାତ୍ ପ୍ରଥମ ଶ୍ରେଣୀର ଏକ ବୋତଲ ବ୍ରାଣ୍ଡି ପେଡ଼ିରୁ ବାହାର କରି ବୋତଲ ମୁହଁରୁ ଠିପି କାଢ଼ି ପକାଇଲେ । ବିଚ୍ଛନ୍ଦବାବୁ ସମସ୍ତଙ୍କର ପ୍ରିୟ ରୁଣୀ ବନ୍ଧୁ । ବହୁଦିନ ଉତ୍ତାରେ ଆଜି ଭେଟ । ସହଜରେ ଆନନ୍ଦର ସୀମା ନାହିଁ । ତହିଁ ଉପରେ ପୁଣି ଆନନ୍ଦମୟୀର ଆବିର୍ଭାବ ! ମଦର ଗୋଟାଏ ଗୁଣ ବା ଭଦ୍ରଙ୍କର ଦୋଷ, ଥରେ ମାତ୍ର ପିଇଲେ ପୁନଃ ପୁନଃ ପିଇବାକୁ ଇଚ୍ଛା ହୁଏ; ଯେତେ ପିଉଥିବ, ତେତେ ଅଧିକ ପିଇବାକୁ ଇଚ୍ଛା ଜାତ ହୁଏ । ଅନେକ ନିର୍ବୋଧ ଅସାବଧାନ ଲୋକ ମଦ ପିଇଁ ପିଇଁ ମରି ଯାଇଅଛନ୍ତି । ବନମାଳୀବାବୁ ଖୁବ୍ ସାବଧାନ, ପରିମିତ ପରିମାଣରେ ପାନ କରି ବୁଝିଗଲେ । ବାବୁ ପ୍ୟାରୀମୋହନ ସେନ ସର୍ବଦା ମଦୁଆଲମାନଙ୍କ ସଙ୍ଗରେ ମିଶି ରହିଥାନ୍ତି, ( ସେ ସମୟରେ ଶିକ୍ଷିତ ଭଦ୍ରଲୋକ ମାତ୍ରକେ ମଦ୍ୟପ ଥିଲେ ) ମାତ୍ର ଆପେ କେବେହେଁ ମଦ୍ୟ ସ୍ପର୍ଶକରନ୍ତି ନାହିଁ । ଡାକ୍ତର ବିଜୟବାବୁ ଏବଂ ବିଚ୍ଛନ୍ଦ ବାବୁଙ୍କର ଦିବାନିଶି ମଦ୍ୟପାନ କରିବାର ଅଭ୍ୟାସ ବୋଲି ସର୍ବଦା ସଙ୍ଗେ ସଙ୍ଗେ ମଦ୍ୟ ଥାଏ । ପରିତାପର ବିଷୟ, ଏହି ଦୁଇଜଣ ଶିକ୍ଷିତ ଯୋଗ୍ୟଲୋକ କେବଳ ମଦ୍ୟପାନ ହେତୁରୁ ଅସମୟରେ ପ୍ରାଣତ୍ୟାଗ କରି ଚାଲିଯାଇ ଅଛନ୍ତି । ମୋହର ମଦ୍ୟପାନ କରିବା ରୀତିମତ ଅଭ୍ୟାସ ନ ଥିଲା ସତ୍ୟ, ମାତ୍ର ବନ୍ଧୁ ସମାଜରେ ମିଶିବାବେଳେ ପାନ କରେଁ, ତେବେ ସର୍ବଦା ଖୁବ୍ ସାବଧାନ ଥାଏଁ, ନିଶାରେ ଅଚେତ ହେବାଭଳି କେବେହେଁ ପାନ କରେ ନାହିଁ । ଭୟରେ ବିଶୁଦ୍ଧ ମଦ୍ୟ କିମ୍ବା ଅତ୍ୟନ୍ତ ଉଗ୍ରବୀର୍ଯ୍ୟ ମଦ୍ୟ କେବେହେଁ ସ୍ପର୍ଶ କରେ ନାହିଁ । ମଦ୍ୟରେ ଅନେକ ପରିମାଣ ଜଳ ମିଶ୍ରିତ କରି ବ୍ୟବହାର କରେଁ । ଆଜି କିନ୍ତୁ ଜ୍ଞାନ ଲୋପ ! ଆମ୍ଭେ ତିନିଜଣ ମିଶି ସେହି ତୀକ୍ଷ୍ଣବୀର୍ଯ୍ୟ ମଦ ବୋତଲଟା ଶୂନ୍ୟ କରି ପକାଇଲୁଁ । ମଦ୍ୟପାନ ସମୟରେ ଜିହ୍ୱାଗ୍ର ଠାରୁ ନାଭି ପର୍ଯ୍ୟନ୍ତ ଅଗ୍ନିପୂର୍ଣ୍ଣବତ୍ ଜଳିଯାଉଥାଏ, ତଥାପି ତାନ୍ତ୍ରିକ ମତ, "ପିତ୍ୱା ପିତ୍ୱା ପୁନଃ ପିତ୍ୱା ଯାବତ୍ ପତତି ଭୂତଳେ ।"

ବେଳ ପ୍ରାୟ ତିନଟା ସମୟରେ ଆମ୍ଭେମାନେ ବଉଲପୁର ଗୁଡ଼ ନାଆରେ ତିନକୋଶ ପର୍ଯ୍ୟନ୍ତ ତଳକୁ ଆସି ଆଉ ଗୋଟିଏ ଗ୍ରାମ ନିକଟ ନଦୀ କୂଳରେ ରହିଲୁଁ । ସେଠାରେ ମଧ୍ୟ ସମସ୍ତପ୍ରକାର ଦ୍ରବ୍ୟ ପ୍ରସ୍ତୁତ ଥିଲା । ସମସ୍ତେ ପାନାହାର କଲେ, ମାତ୍ର ମୁଁ ଉଠି ପାରିଲି ନାହିଁ । ପରଦିନ ପ୍ରାତଃକାଳରେ ନନ୍ଦବାବୁ ନାଆରେ ବସି ଆପଣା ଗ୍ରାମ ଦିଗକୁ ଚାଲିଗଲେ । ଆମ୍ଭେମାନେ ଗଡ଼କୁ ବାହୁଡ଼ି ଆସିଲୁଁ । ଦୁଇଦିନ ଉତ୍ତାରେ ମୁଁ ପ୍ରକୃତିସ୍ଥ ହେଲି ସତ୍ୟ, ମାତ୍ର ଶରୀରଟା ଏପରି ବିଷାକ୍ତ ଏବଂ ରୋଗାକ୍ରାନ୍ତ ହୋଇ ପଡ଼ିଲା ଯେ, ଅନେକ ବର୍ଷ ପର୍ଯ୍ୟନ୍ତ ନିତାନ୍ତ ଅକର୍ମଣ୍ୟ ହୋଇ ପଡ଼ିଥିଲି । ଶିରଃପୀଡ଼ା, ଅଜୀର୍ଣ୍ଣ, ଅନିଦ୍ରା, ଅର୍ଶରୋଗ ଜନିତ ଅତ୍ୟନ୍ତ ରକ୍ତସ୍ରାବ ସମସ୍ତପ୍ରକାର ରୋଗ ଏକାବେଳକେ ଶରୀରକୁ ଆକ୍ରମଣ କରି ବସିଥିଲେ । ମଦ୍ୟ ଏକାବେଳକେ ପରିତ୍ୟାଗ କରିଥିଲେ କେଜାଣି ବା ସ୍ୱାସ୍ଥ୍ୟଲାଭ କରିଥାନ୍ତି; କିନ୍ତୁ କ୍ଷଣିକ ସ୍ୱାସ୍ଥ୍ୟ ଲାଭ ନିମନ୍ତେ ପ୍ରତିଦିନ ସନ୍ଧ୍ୟାସମୟରେ ଦୁଇତୋଳା ଓଜନର ଦେଶୀ ମଦ୍ୟ ପାନ କରିବାକୁ ଲାଗିଲି । ସେ ସମୟରେ ନୀଚ ଜାତି ଲୋକଙ୍କଠାରୁ କରଣ ବ୍ରାହ୍ମଣ ପର୍ଯ୍ୟନ୍ତ ପ୍ରାୟ ସମସ୍ତେ ମଦ୍ୟପ ଥିଲେ । ସେମାନଙ୍କ ମଧ୍ୟରେ ମଦ୍ୟଟା ଯେମନ୍ତ ସାଧାରଣ ପେୟ ମଧ୍ୟରେ ହୋଇ ଯାଇଥିଲା । ବାବୁମାନଙ୍କ ଚାକର ସନ୍ଧ୍ୟା ସମୟରେ ବଜାରରୁ ଅନ୍ୟାନ୍ୟ ଖାଦ୍ୟଦ୍ରବ୍ୟ ସହିତ ପିତା ପୁତ୍ର ଭ୍ରାତା ଘରର ସମସ୍ତ ପୁରୁଷ ଲୋକଙ୍କ ସକାଶେ ପୃଥକ୍ ପୃଥକ୍ କାଚ କୁମ୍ପିରେ ମଦ୍ୟ କିଣି ଆଣେ । ପୁଣି ସନ୍ଧ୍ୟାଠାରୁ ରାତି ଦଶଘଣ୍ଟା ପର୍ଯ୍ୟନ୍ତ ଶୁଣ୍ଡୀ ଦୋକାନରେ ଭଦ୍ରଲୋକମାନଙ୍କର ବୈଠକ ବସିଯାଏ । ଢେଙ୍କାନାଳର ଜଣେ ଶୁଣ୍ଡୀ କେତେଥର ମୋ ପାଖରେ କହିଛି— "ଆଜ୍ଞା, ବାବୁମାନଙ୍କ ସକାଶେ ମୁଁ ରାତିରେ ତିଅଣ ଖାଇ ପାରେ ନାହିଁ । ମାଛ ଡାଲି ଯାହା କିଛି ରାନ୍ଧି ରଖେଁ, ବାବୁମାନେ ଗୋଟେଇ ଘରେ ପଶି ହାଣ୍ଡିରୁ ସମସ୍ତ ପଦାର୍ଥ ଖାଇଯାନ୍ତି ।"

ପ୍ରଶ୍ନ—"କେଉଁ ବାବୁ ରେ ?"

"ଆଜ୍ଞା, କାହା ନାମ କହିବି, ବ୍ରାହ୍ମଣ କରଣ ସମସ୍ତେ ।" ମଦ୍ୟପ ଯେ କେତେଦୂର ନୀଚ, କେତେଦୂର ଜଘନ୍ୟ କାର୍ଯ୍ୟ କରି ପାରେ, ସେଥିର ଏହା ଅନ୍ୟତମ ଦୃଷ୍ଟାନ୍ତ । କେବଳ ମଦ୍ୟ ନୁହେ, ସେ ସମୟରେ ଢେଙ୍କାନାଳରେ ଆଫୁ ଓ ମଦକର ମଧ୍ୟ ବହୁଳ ପ୍ରଚାର ଥିଲା । ଲୋକ ସାଧାରଣ ମାଦକସେବୀ ଥିଲେ ମଧ୍ୟ ଭଦ୍ରଶ୍ରେଣୀ ଲୋକମାନଙ୍କ ମଧ୍ୟରେ ଦୁଷ୍କର୍ମଶାଳୀ ଲୋକ ପ୍ରାୟ ନ ଥିଲେ ।

ଗଡ଼ଜାତମାନଙ୍କ ମଧ୍ୟରେ ଜ୍ଞାନ ଓ ସଭ୍ୟତା ପ୍ରଚାର ସମ୍ବନ୍ଧରେ ଢେଙ୍କାନାଳ ସର୍ବପ୍ରଥମ । ଜ୍ଞାନ ଏବଂ ଭାଷାର ପ୍ରଚାର, ଇଂରାଜୀ ସ୍କୁଲ, ଟୋଲ, ଦାତବ୍ୟ ଔଷଧାଳୟ, ରାଜଦାଣ୍ଡ ନିର୍ମାଣ ସମସ୍ତ ବିଷୟରେ ଭୂତପୂର୍ବ ମହାରାଜା ପ୍ରାତଃ ସ୍ମରଣୀୟ; ମହାରାଜ ଭଗୀରଥ ମହେନ୍ଦ୍ର ବାହାଦୁର ପ୍ରଥମ ପ୍ରତିଷ୍ଠାତା । ସେ ନିଜେ ଜଣେ ସଂସ୍କୃତ ଏବଂ ଉତ୍କଳ ଭାଷାଭିଜ୍ଞ ଏବଂ ନୈୟାୟିକ ଥିଲେ । ପ୍ରତିଦିନ ସନ୍ଧ୍ୟାଠାରୁ ରାତି ଦଶଘଣ୍ଟା ପର୍ଯ୍ୟନ୍ତ ଅନ୍ୟ ସମସ୍ତ ଦୈନିକ କାର୍ଯ୍ୟ ସମାପ୍ତ କରି ପଣ୍ଡିତ ସଭା କରି ବସନ୍ତି । ଦିନେ ଉତ୍କଳଭାଷା ଓ ଦିନେ ସଂସ୍କୃତ କାବ୍ୟଗ୍ରନ୍ଥର ଚର୍ଚ୍ଚା ହୁଏ । ନ୍ୟାୟଶାସ୍ତ୍ର ଚର୍ଚ୍ଚାକୁ ସେ ଅଧିକ ସୁଖକର ମଣୁଥିଲେ । କାଶୀ, ନବଦ୍ୱୀପ ଓ ଅନ୍ୟାନ୍ୟ ଦେଶୀୟ ପଣ୍ଡିତମଣ୍ଡଳୀ ସର୍ବଦା ତାହାଙ୍କ ସଭାରେ ଉପସ୍ଥିତ ଥାନ୍ତି । ଆଖେଟକ ତାହାଙ୍କର ନିତାନ୍ତ ବିନୋଦର ବିଷୟ ଥିଲା । ହତ ମହାବଳ ବ୍ୟାଘ୍ରର ଗୋଟାଏ ରେଜିଷ୍ଟ୍ରୀ ଖାତା ଥିଲା, ସେଥିର ସଂଖ୍ୟା ତିନିଶତଅଶୀ ପର୍ଯ୍ୟନ୍ତ ଆମ୍ଭେ ଶୁଣିଥିଲୁଁ । ବ୍ୟାଘ୍ର ପେଣ୍ଡରା ଧର୍ତ୍ତବ୍ୟ ମଧ୍ୟରେ ନ ଥିଲା । ପ୍ରଜାମାନଙ୍କୁ ସେ ପୁତ୍ରବତ୍ ପାଳନ କରୁଥିଲେ । ନିଜଗଡ଼ରେ ବୃହତ୍ତମ ଭଗୀରଥୀ ସରୋବର ତାହାଙ୍କର ଅକ୍ଷୟ କୀର୍ତ୍ତି । ମହାରାଜାଙ୍କ ପରି

ଉନ୍ନତ ସ୍ଥୂଳଶରୀର ମନୁଷ୍ୟ ମୁଁ ଜୀବନରେ ଦେଖିନାହିଁ । ତାହାଙ୍କ ବସିବା ଚୌକି ସ୍ୱତନ୍ତ୍ର ଆକାରରେ ନିର୍ମିତ; ଦୁଇଜଣ ମନୁଷ୍ୟ ସହଜରେ ସେଥିରେ ବସି ପାରନ୍ତି । କଟକ ପ୍ରିଣ୍ଟିଂକୋମ୍ପାନୀ ଯନ୍ତ୍ରାଳୟକୁ ସେ ସମୟ ସମୟରେ ଆଗମନ କରୁଥିଲେ । ସେଥିସକାଶେ ତାହାଙ୍କ ପାଇଁ ଦୁଇଗୋଟି ଚୌକି ଦ୍ୱିତଳ ଉପରେ ସର୍ବଦା ଥୁଆ ହୋଇଥାଏ । ଆଜି ପର୍ଯ୍ୟନ୍ତ ମଧ୍ୟ ରହିଅଛି । କମିଶନର ସେରସ୍ତାଦାର ବାବୁ ବିଚିତ୍ରାନନ୍ଦ ଦାସଙ୍କ ତୁଳସୀପୁରସ୍ଥ ଉଦ୍ୟାନରେ ସମସ୍ତ ଗଡ଼ଜାତ ରାଜା, ଦେବାନ, କେନ୍ଦ୍ରାପଡ଼ାର ରାଧାଶ୍ୟାମ ନରେନ୍ଦ୍ର ପ୍ରଭୃତି ବଡ଼ ବଡ଼ ଜମିଦାରମାନଙ୍କ ଥେନ ଗୋଟାଏ ସଭା ହୋଇଥିଲା । ସେହି ସଭା କ୍ଷେତ୍ରରେ ମୁଁ ମହାରାଜାଙ୍କଠାରେ ପ୍ରଥମ ପରିଚିତ ହୋଇଥିଲି । କାରଣ ଅବଶ୍ୟ ମୁଁ ଜାଣେ ନାହିଁ—ପ୍ରଥମ ସାକ୍ଷାତ୍ ଏବଂ କଥୋପକଥନ ଦିନଠାରୁ ସେ ମୋତେ ନିତାନ୍ତ ସ୍ନେହ ଚକ୍ଷୁରେ ଦେଖୁଥିଲେ । ଅନ୍ୟ କୌଣସି ସ୍ଥାନରେ ସମୟରେ ସାକ୍ଷାତ୍ ହେଲେ ଘଣ୍ଟାଏ କାଳ ପର୍ଯ୍ୟନ୍ତ ନିତାନ୍ତ ସ୍ନେହ ଭାବରେ କଥୋପକଥନ କରୁଥିଲେ । ଦିନେ କଟକ ବକ୍ସିବଜାର ମଧ୍ୟରେ ହଠାତ୍ ସାକ୍ଷାତ ହୋଇଗଲା । ମାଲତିଣି ରାଜପରିବାର ସକାଶେ ଅନେକଗୁଡ଼ିଏ ମନୋହର ଜିନିସ କିଣି ଦୁଇହାତରେ କୁଣ୍ଢାଇ ଧରିଥାଏଁ । ଦୂରରୁ ମହାରାଜାଙ୍କର ବିଶାଳ ଯୋଡ଼ି ଗାଡ଼ି ଦେଖି ଦୋକାନ ମଧ୍ୟରେ ଲୁଚିଗଲି । ତାଙ୍କର କିନ୍ତୁ ମୋ ପ୍ରତି ଦୃଷ୍ଟି ପଡ଼ିଥିଲା । ଦୋକାନ ଆଗରେ ଗାଡ଼ି ଛିଡ଼ାକରାଇ ଗାଡ଼ିରୁ ଓହ୍ଲାଇ ପଡ଼ିଲେ । ଫକୀରମୋହନ ବାବୁ ! ଫକୀରମୋହନ ବାବୁ ! ଡାକି ଡାକି ମୋ ଆଡ଼କୁ ଚାଲିଚାଲି ଆସିଲେ । ମୁଁ ଅନାୟତ୍ତ ଭାବରେ ଲୁଚିବା ସ୍ଥାନରୁ ବାହାରିପଡ଼ି ତାଙ୍କ ସମୀପକୁ ଧାଇଁ ଆସିଲି । ଯୋଡ଼ାକ ହାତ ବାନ୍ଧି; ମସ୍ତକ ନୁଆଇଁ ଅଭିବାଦନ କଲି । ମହାରାଜା ବାହାଦୁର ପ୍ରାୟ ଅର୍ଦ୍ଧଘଣ୍ଟା ପର୍ଯ୍ୟନ୍ତ ସଡ଼କ ଧାରରେ ଛିଡ଼ାହୋଇ ମୋ ସହିତ କଥୋପକଥନ କଲେ । ମହାରାଜାଙ୍କ ନିରହଙ୍କାର ସ୍ୱଭାବ ଓ ସଦାଶୟତାର ପରିଚୟ ନିମନ୍ତେ ଏହି ଅତି ତୁଚ୍ଛ ବିଷୟଟି ଏ ସ୍ଥାନରେ ଉଲ୍ଲେଖ କଲି । ମହାରାଜା ଅତ୍ୟନ୍ତ ଗୁଣଗ୍ରାହୀ ଥିଲେ, ମାତୃଭାଷାର ଉନ୍ନତି ପ୍ରତି ତାହାଙ୍କର ବିଶେଷ ଯତ୍ନ ଥିଲା ।

ଆସିଷ୍ଟାଣ୍ଟ ସର୍ଜନ ବାବୁ ବିଜୟକୁମାର ଚକ୍ରବର୍ତ୍ତୀ ଢେଙ୍କାନାଳରେ ସସ୍ତ୍ରୀକ ବାସ କରୁଥିଲେ । ତାଙ୍କର ସ୍ତ୍ରୀ ଯେପରି ରୂପବତୀ, ସେହିପରି ପତିପରାୟଣା ଥିଲେ । ବଙ୍ଗଳା ଓ ସାମାନ୍ୟରୂପେ ଇଂରାଜୀ ଭାଷାରେ ତାଙ୍କର ଜ୍ଞାନ ଥିଲା । ଡାକ୍ତରବାବୁଙ୍କ ସ୍ତ୍ରୀ ଏବଂ ମୋ ସ୍ତ୍ରୀ ଉଭୟେ ବିଦେଶିନୀ, ଅନ୍ୟ ବନ୍ଧୁବାନ୍ଧବ ନିକଟରେ କେହି ନାହିଁ, ସୁତରାଂ ଉଭୟଙ୍କ ମଧ୍ୟରେ ପରସ୍ପର ବିଶେଷ ସମ୍ପ୍ରୀତି ଥିଲା । ପ୍ରାୟ ସର୍ବଦା ଉଭୟେ ଉଭୟଙ୍କ ବସାକୁ ଗତାୟତ କରୁଥିଲେ । ଏଣିକି କ୍ରମଶଃ ଢେଙ୍କାନାଳ ଅବସ୍ଥାନ କାଳଟା ମୋ ପକ୍ଷରେ ଅତ୍ୟନ୍ତ କଷ୍ଟକର ହୋଇ ପଡ଼ିଥିଲା । ସର୍ବଦା ପୀଡ଼ିତ, ଅଧିକାଂଶ ସମୟ ଶଯ୍ୟାଗତ ହୋଇ ପଡ଼ିଥାଏଁ । ନ କଲେ ନ ହୁଏ; କଷ୍ଟ ସୃଷ୍ଟରେ କଚେରୀକୁ ଯାଇ କାର୍ଯ୍ୟଟା ଚଳାଇଦେଇ ଆସେ । ବିପଦ ଏକାକୀ ଆସେ ନାହିଁ, ବିପଦ ପଛକୁ ବିପଦ ଲାଗିହୋଇ ଆସେ । ଭବିଷ୍ୟତ ଉନ୍ନତି ଆଶାରେ ମାସିକ ଅଢ଼େଇଶତ ଟଙ୍କା ବେତନ, ବିଶେଷରେ ଚିରସ୍ଥାୟୀ ବେତନ ପରିତ୍ୟାଗ କରି ଆସିଥିଲି । ବର୍ତ୍ତମାନ ସମସ୍ତ ଆଶା ଭରସା ନିର୍ମୂଳ ପ୍ରାୟ । ଏଥିର କାରଣ ମେଳିବାକୁ ହେଲେ ତତ୍କାଳୀନ ତତ୍ସମ୍ପର୍କୀୟ ବିବରଣ ସଂକ୍ଷେପରେ ବର୍ଣ୍ଣନ ଆବଶ୍ୟକ ।

ଉତ୍କଳର ସ୍ଥାୟୀ କମିଶନର ଉତ୍କଳବନ୍ଧୁ ରେଭେନ୍‌ସା ସାହେବ ତିନିମାସ ସକାଶେ ରେଭିନିଉ ବୋର୍ଡ଼ର ମେମ୍ବର ହୋଇ ଯିବାରୁ କଟକ ଜିଲ୍ଲାର କଲେକ୍ଟର ଜନ୍ ବିମ୍‌ସ ସାହେବ କମିଶନର ପଦରେ ନିଯୁକ୍ତ ହେଲେ । ରେଭେନ୍‌ସା ଏବଂ ବିମ୍‌ସ ସାହେବଙ୍କ ମଧ୍ୟରେ ପୂର୍ବରୁ ମନୋମାଳିନ୍ୟ ଚାଲି ଆସୁଥିଲା ।

ବୋର୍ଡ଼ର କାର୍ଯ୍ୟକାଳ ସମାପ୍ତି ଉତ୍ତାରେ ରେଭେନ୍‌ସା ସାହେବ ଅନ୍ୟତ୍ର କମିଶନର ପଦରେ ନିଯୁକ୍ତ ହୋଇ ଯାଇଥିଲେ ଜନ୍ ବାମସ୍ ସ୍ଥାୟୀରୂପେ ଉତ୍କଳରେ ରହି ଯାଇଥାନ୍ତେ ଏବଂ ସେ ସମୟରେ ରେଭେନ୍‌ସା ସାହେବଙ୍କର ଅନ୍ୟତ୍ର ଯିବାର ନିତାନ୍ତ ସମ୍ଭାବନା ଥିଲା । ମାତ୍ର ବାମ୍‌ସ୍ ସାହେବଙ୍କର ଉତ୍କଳର କମିଶନର ପଦରେ ନିଯୁକ୍ତି ରେଭେନ୍‌ସା ସାହେବଙ୍କର ବାଞ୍ଛନୀୟ ନୁହେଁ । ଆମ୍ଭେ ଉତ୍କଳବାସୀମାନେ ବିଷୟଟାକୁ ଉତ୍କଳର ଦୁର୍ଭାଗ୍ୟ ବିଷୟ ବୋଲି ମଣୁଥିଲୁଁ । ଯେହେତୁ ବାମ୍‌ସ ସାହେବ ଜଣେ ଉତ୍କଳର ପରମ ହିତୈଷୀ ଥିଲେ । ଉତ୍କଳବାସୀମାନଙ୍କ ପ୍ରତି ତାହାଙ୍କର ବିଶେଷ ସହାନୁଭୂତି ଥିଲା । ଉତ୍କଳର ଚିହ୍ନିତ ବଂଶଗୁଡ଼ିକ ମାଲିମାମଲାରେ ପଡ଼ି ଛିନ୍ନଭିନ୍ନ ହୋଇ ଯାଉନ୍ତି, ସାହେବ ମହୋଦୟ ଏ ବିଷୟଟାକୁ କଷ୍ଟକର ମଣୁଥିଲେ । ଏପରି ଘଟଣାରେ ଉପସ୍ଥିତ କ୍ଷେତ୍ରରେ ସ୍ୱୟଂ ଉପସ୍ଥିତ ହୋଇ ଘରୋଇ ଭାବରେ ମାଲିମାମଲା ମୀମାଂସା କରାଇ ଦେଉଥିଲେ । କୌଣସି ଭଦ୍ରସନ୍ତାନ ଦୈବାତ୍ କୌଣସି ପ୍ରକାର ବିପଦରେ ପଡ଼ିଯାଇ ତାହାଙ୍କୁ ଧରି ବସିଲେ ସାଧ୍ୟାନୁସାରେ ତାହାଙ୍କୁ ରକ୍ଷା କରିବାକୁ ଚେଷ୍ଟା କରନ୍ତି । ଅତ୍ୟାଚାରୀ ଜମିଦାରମାନେ ତାହାଙ୍କର ଶତ୍ରୁ ଥିଲେ । ଉତ୍କଳର ପରମ ଦୁର୍ଭାଗ୍ୟ, ମହାତ୍ମା ରେଭେନ୍‌ସା ଏବଂ ବାମ୍‌ସଙ୍କ ପରି ଜଣେ କମିଶନର ମଧ୍ୟ ଏପର୍ଯ୍ୟନ୍ତ ଉତ୍କଳକୁ ଆସିଲେ ନାହିଁ । ବ୍ରିଟିଶ ଗବର୍ଣ୍ଣମେଣ୍ଟଙ୍କ ଶାସନ ଯନ୍ତ୍ରରେ ହାକିମମାନେ ଗୋଟିଏ ଗୋଟିଏ ଚକ ସ୍ୱରୂପ । ରେଭେନ୍‌ସା ସାହେବ ଅଳ୍ପଦିନ ସକାଶେ ଉତ୍କଳକୁ ଫେରି ଆସିଲେ । ଜନ୍ ବାମ୍‌ସ ଆପଣାର ପୂର୍ବପଦ କଲେକ୍ଟରୀକୁ ବାହୁଡ଼ି ଗଲେ । ପୂର୍ବେ ଏହି ଦୁଇ ହାକିମଙ୍କ ମଧ୍ୟରେ ମନୋମାଳିନ୍ୟ ଉପସ୍ଥିତ ଥିଲା । ବର୍ତ୍ତମାନ ଆହୁରି ମଧ୍ୟ ପ୍ରବଳତର ରୂପେ ବିବାଦ ଚାଲିବାକୁ ଲାଗିଲା । ଏହି ସମୟରେ ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ଓଡ଼ିଶା ଗସ୍ତକୁ ଆସିଥିଲେ । ହାକିମମାନଙ୍କ ମଧ୍ୟରେ ଏ ପ୍ରକାର ବିବାଦ ବିସମ୍ବାଦ ଚାଲୁଥିବାର ଶୁଣି କହିଲେ, "Orissa wants new blood" । ରେଭେନ୍‌ସା ବର୍ଦ୍ଧମାନର କମିଶନର ପଦରେ, ଜନ୍ ବାମସ୍ ଶ୍ରୀହଟ୍ଟର ଜଜ୍ ଏବଂ କମିଶନର ପଦରେ ନିଯୁକ୍ତ ହୋଇ ଚାଲିଗଲେ । ଓଡ଼ିଶାର କମିଶନର ପଦରେ ନିଯୁକ୍ତ ହୋଇ ଆସିଲେ ମିଷ୍ଟର ସ୍ମିଥ୍ । ସ୍ମିଥ୍ ଏବଂ ରେଭେନ୍‌ସା ଉଭୟଙ୍କ ମଧ୍ୟରେ ବିଶେଷ ବନ୍ଧୁତା ଥିଲା । ସୁତରାଂ ଜନ୍ ବାମ୍‌ସଙ୍କର କୌଣସି କାର୍ଯ୍ୟରେ ସ୍ମିଥ୍ ସାହେବଙ୍କର ସହାନୁଭୂତି ନ ରହିବା ସ୍ୱାଭାବିକ । ଲୋକମାନେ ଜନ୍ ବାମ୍‌ସଙ୍କ ଅନୁଗୃହୀତ ଏବଂ ନିଯୁକ୍ତ ଲୋକମାନଙ୍କ ପ୍ରତି ବିପତ୍‌ପାତର ଆଶଙ୍କା କରୁଥିଲେ । କିଛିଦିନ ଉତ୍ତାରେ ବାମ୍‌ସ ସାହେବଙ୍କ ନିଯୁକ୍ତ କେତେଜଣ ପ୍ରଧାନ କର୍ମଚାରୀ ପଦଚ୍ୟୁତ ହେବାରୁ ଲୋକଙ୍କ ଅନୁମାନ ବିଶ୍ୱାସରେ ପରିଣତ ହୋଇଥିଲା ।

(ଉତ୍କଳ ସାହିତ୍ୟ ୧୩ ଭାଗ—୧୧ଶ ସଂଖ୍ୟା)

---

## ଢେଙ୍କାନାଳରେ ଆସିଷ୍ଟାଣ୍ଟ ମ୍ୟାନେଜରୀ (୨)

ଏହି ସମୟରେ ମୋହର ଗୋଟିଏ ପୁତ୍ର ଜାତ ହୋଇଥିଲା । ଜ୍ୟୋତିଷୀମାନେ ଗଣନା କରି କୋଷ୍ଠୀ ପ୍ରସ୍ତୁତ କଲେ । ରାତି ବାରଟା ସମୟରେ ଜନ୍ମ, ସୁତରାଂ ସିଂହଲଗ୍ନ; କିନ୍ତୁ ସେ ଦିନର ସିଂହ ଲଗ୍ନରେ ଜାତ ସନ୍ତାନର ସୂତିକାଗାରରେ ମୃତ୍ୟୁ ନିଶ୍ଚିତ । ଜାତ ସନ୍ତାନ ଯେ ସ୍ଥଳରେ ଜୀବିତ ଅଛି, ସେ ସ୍ଥଳରେ ସିଂହ ଲଗ୍ନ ହୋଇ ନ ପାରେ । ସମୟ ଠିକ୍ କରିବାରେ ଭୁଲ୍ ହୋଇଅଛି । ରାତି ବାରଟା ଉପରେ ଗୋଟାକ ସମୟରେ କନ୍ୟା ଲଗ୍ନ, ଅବଶ୍ୟ ସେହି ସମୟରେ ଶିଶୁ ଜନ୍ମ ଗ୍ରହଣ କରିଅଛି । ବାଲେଶ୍ୱରରୁ ମଧ୍ୟ ଏହି ଭାବରେ ପତ୍ର ପାଇଲି । ଠିକ୍ ରାତି ବାରଟା ସମୟରେ ଯେ ଶିଶୁ ଜନ୍ମଗ୍ରହଣ କରିଥିଲା, ଏକଥା ନିଶ୍ଚିତ ଅଟେ । ଶିଶୁ ଜାତ ହେବା ସମୟରେ ଢେଙ୍କାନାଳ ରାଜକଚେରୀରେ ବାରଟା ବାଜିବାର ମୁଁ ନିଜେ ଶୁଣିଥିଲି । ଏକ ଦୁଇ କରି ଘଣ୍ଟା ଗଣିଥିଲି । ସ୍ୱାର୍ଥହାନି

ଭୟରେ ମାନବ ଜାଣିଶୁଣି ଆପଣାକୁ ଆପେ ଭୁଲାଇଥାଏ । ମନେ କଲି, ଏ କି କଥା ବାରଟା ବେଳେ ଜାତ ହେଲେ ଶିଶୁଟି ମରିଯିବ ନାହିଁ, ମୋର ନିଶ୍ଚୟ ଭୁଲ । ସେ ସମୟରେ ବାରଟା ବାଜି ନ ଥିବ, ନିଶ୍ଚୟ ଗୋଟାଏ ସମୟ, ମୁଁ ଭୁଲ୍ ଶୁଣିଅଛି । ପୁତ୍ର ଜାତ ହୋଇଅଛି, ପୁଣି ପ୍ରଥମ ପୁତ୍ର, ମନର ଆନନ୍ଦରେ ସେ ସମୟରେ ଯେତେ ଟଙ୍କା ହାତରେ ଥିଲା, ଗରିବ ଦୁଃଖିମାନଙ୍କୁ ଦାନ କରି ପକାଇଲି ।

ଶିଶୁଟି ଛ ମାସ ମାତ୍ର ବଞ୍ଚି ସାମାନ୍ୟ ଗୋଟାଏ ରୋଗରେ ମରିଗଲା । ପୁତ୍ରଟି ପରମ ସୁନ୍ଦର ଥିଲା । ତାହାର ନାମ ମନୋମୋହନ ଦେଇଥିଲି । ସୁଗଠିତ ମୁଖଟି ଆଜି ପର୍ଯ୍ୟନ୍ତ ହୃଦୟରେ ଯେମନ୍ତ ଚିତ୍ରିତ ରହିଅଛି; ଅନନ୍ତ କୌଶଳୀ ପରମେଶ୍ୱର ପ୍ରାଣି-ସମାଜର ବୃଦ୍ଧି ଏବଂ ରକ୍ଷା ନିମିତ୍ତ ଜନକ ଜନନୀ ହୃଦୟରେ କି ପ୍ରବଳ ଅପତ୍ୟସ୍ନେହ ସ୍ଥାପନ କରିଅଛନ୍ତି ! ପୁତ୍ରଟି ମରିଯିବାରୁ ଜଗତ୍ ସଂସାରଟା ମୋତେ ଅନ୍ଧକାରମୟ ଜଣାଗଲା । ସୂର୍ଯ୍ୟକିରଣ ଯେମନ୍ତ ଆଲୋକଶୂନ୍ୟ, ଗୋଡ଼ତଳେ ପୃଥିବୀଟା ଯେମନ୍ତ ବୁଲି ଯାଉଥାଏ । ମୋ ସ୍ତ୍ରୀଙ୍କ ଅବସ୍ଥା ଅଧିକତର ଶୋଚନୀୟ ହୋଇ ପଡ଼ିଥିଲା, ସର୍ବଦା ଶଯ୍ୟାଗତ ହୋଇ ପଡ଼ିଥାନ୍ତି । ମୁଁ କାନ୍ଦିବି ବୋଲି ସେ କାନ୍ଦନ୍ତି ନାହିଁ । ସେ କାନ୍ଦିବେ ବୋଲି ମୁଁ କାନ୍ଦେ ନାହିଁ । ଉଭୟେ ପରସ୍ପର ଅଗୋଚରରେ କାନ୍ଦୁ । ମୋ ସ୍ତ୍ରୀଙ୍କ ମନରେ ସାନ୍ତ୍ୱନା ଦେବା ନିମନ୍ତେ ବଳରାମ ଦାସ ରାମାୟଣ ବସାଇଲି । ଢେଙ୍କାନାଳରେ ଜଣେ ଯୁବକ ବ୍ରାହ୍ମଣ ଥିଲେ । ଦାଣ୍ଡି ପୋଥି ଭଲ ଗାଇ ପାରନ୍ତି ବୋଲି ତାଙ୍କର ନାମ ଡାକ ଥିଲା । ଅନେକ ଲୋକଙ୍କ ଘରେ ପୋଥି ପଢ଼ନ୍ତି, ପୋଥି ପଢ଼ାଟା ତାଙ୍କର ବ୍ୟବସାୟ ଥିଲା । ପ୍ରତିଦିନ ସନ୍ଧ୍ୟା ସମୟରେ ଆସି ରାମାୟଣ ପାରାୟଣ କରିବାକୁ ଲାଗିଲେ । ସେ ଖୁବ୍ ଚିତ୍କାର କରି ଲମ୍ବାଳ ରାଗିଣୀରେ ଗାଇ ଯାଉଥାନ୍ତି ସତ୍ୟ; ମାତ୍ର ତାଙ୍କ ପାଠ-ସମୟରେ ମୋ ସ୍ତ୍ରୀ ଭକଭକ କରି ମୋ ମୁହଁକୁ ଚାହିଁ ରହିଥାନ୍ତି, କିଛି ମାତ୍ର ବିଷୟ ବୁଝି ପାରନ୍ତି ନାହିଁ । ତାଙ୍କର ବୁଝିବା ତ ଥାଉ, ପାଠର ସମସ୍ତ ବିଷୟ ବୁଝିବା ମୋ ପକ୍ଷରେ ନିତାନ୍ତ ଅସାଧ୍ୟ ଥିଲା । ପୁସ୍ତକ ପାଠ ବନ୍ଦ କରାଇ ଦେଲି । ଢେଙ୍କାନାଳ ମହାରାଜାଙ୍କ ପୁସ୍ତକାଳୟରୁ ସଂସ୍କୃତ ବାଲ୍ମୀକି ରାମାୟଣ ଆଣି ପଦ୍ୟାନୁବାଦ କରିବାକୁ ଲାଗିଲି । ଦିନବେଳେ ଅନୁବାଦ କରେଁ । ସନ୍ଧ୍ୟା ସମୟରେ ସ୍ତ୍ରୀଙ୍କୁ ଶୁଣାଏଁ । ପ୍ରାୟ ବୁଝାଇବାକୁ ହୁଏ ନାହିଁ । ପଦ୍ୟଗୁଡ଼ିକ ପଢ଼ିଯିବା ମାତ୍ରକେ ସେ ବୁଝି ଯାଉଥିଲେ । ପ୍ରକୃତରେ ସେ କ୍ରମଶଃ ପୁତ୍ରଶୋକ ପାସୋରିବାକୁ ଲାଗିଲେ । ବାଳ ବା ଆଦିକାଣ୍ଡ ରଚନା ଓ ଛପା ସମାପ୍ତ ହୋଇଗଲା ।

---

ରାମାୟଣ ବାଳକାଣ୍ଡର ପ୍ରଥମ ମୁଦ୍ରଣ ( ୧୮୮୦ ) । ଏହା ଜନ୍ ବିମ୍ସ ସାହେବଙ୍କୁ ଉତ୍ସର୍ଗୀକୃତ । ତହିଁରେ ନିମ୍ନ ଉତ୍ସର୍ଗ ପତ୍ର ଥିଲା ।

**To**

John Beames Esquire B. C. S.

Honoured Sir.

I beg most respectfully to dedicate this work to you as a token of the affectionate gratitude which Orissa has always felt towards you for the intelligent and heart-felt interest you have evinced in the improvement of the Oriya language and in the welfare of her people.

I am
Honoured Sir,
Your most obedient servant,
Phakir Mohan Senapati

Dhenkanal
1880

ବାଲକାଣ୍ଡର ମୁଦ୍ରିତ ପୁସ୍ତକଗୁଡ଼ିକ ବିନାମୂଲ୍ୟରେ ସର୍ବସାଧାରଣରେ ବିତରଣ କରିଦେଲି । କ୍ରମଶଃ ଅଯୋଧ୍ୟାକାଣ୍ଡ ଅନୁବାଦ ଏବଂ ପାଠ ହେବାକୁ ଲାଗିଲା । ମୋ ସ୍ତ୍ରୀ ହାତଯୋଡ଼ି ସ୍ଥିରଭାବରେ ମୋ ସମ୍ମୁଖରେ ନିଶ୍ଚଳ ମନରେ ବସି ଶୁଣୁଥାନ୍ତି । ସେ ସମୟରେ ତାଙ୍କର ବାହ୍ୟଜ୍ଞାନ ନ ଥାଏ । ରାମ ବନବାସ ଆରମ୍ଭଠାରୁ ତାଙ୍କ ନେତ୍ରରୁ ଲୋତକଧାରା ବହିବାକୁ ଲାଗିଲା । ପାଠ ସମାପ୍ତି ଉତ୍ତାରେ ଦେଖେଁ, ଲୋତକ ପାତରେ ସମ୍ମୁଖସ୍ଥ ଭୂମିଖଣ୍ଡ ତିନ୍ତି ଯାଇଥାଏ । ସୂର୍ପଣଖା ରାକ୍ଷସୀ ଶ୍ରୀରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କୁ ଭୁଲାଇବା ବିଷୟରେ ଅକୃତକାର୍ଯ୍ୟ ହୋଇ ସୀତାଦେବୀଙ୍କୁ ଖାଇବାକୁ ଉଦ୍ୟତ ହେଲା; ସେହି ଅଂଶଟା ଶ୍ରବଣ ମାତ୍ରକେ ମୋ ସ୍ତ୍ରୀ କ୍ରୋଧରେ ଗର୍ଜନ କରି ଉଠିପଡ଼ି କହିଲେ, "ଦୁଷ୍ଟା ରାକ୍ଷସୀ—ଦୁଷ୍ଟଚରିତ୍ରା ନିର୍ଲଜ୍ଜା, ତୁ ମରିଯା, ମରିଯା ।"

ପ୍ରତିଦିନ ରାମାୟଣ ପାଠ ସମୟକୁ ମୋ ସ୍ତ୍ରୀ ଅପେକ୍ଷା କରିଥାନ୍ତି । ସମୟ ଉପସ୍ଥିତ ହେବା ପୂର୍ବରୁ ସମସ୍ତ କର୍ମ ତ୍ୟାଗକରି ଦୁଇଖଣ୍ଡ ଆସନ ପକାଇ ବସିଥାନ୍ତି । କୌଣସି କୌଣସି ଦିନ ଅନ୍ୟ ସମୟରେ ମଧ୍ୟ ରାମାୟଣ ପାଠ ହୁଏ । ତାଙ୍କର ଇଚ୍ଛା ମୁଁ ଅନ୍ୟ କୌଣସି କର୍ମ ନ କରି କେବଳ ରାମାୟଣ ଲେଖେଁ, ସେ ଦିନଯାକ ଅନ୍ୟ ସର୍ବପ୍ରକାର କର୍ମ ପରିତ୍ୟାଗ କରି ପାଠ ଶ୍ରବଣ କରୁଥିବେ । ଅଯୋଧ୍ୟାକାଣ୍ଡ ଅନୁବାଦ ସମାପ୍ତ ହେଲା । ମୋ ସ୍ତ୍ରୀ କହିଲେ, 'ଆମ୍ଭେମାନେ ପୁତ୍ର ସକାଶେ କିମ୍ପାଇଁ କାନ୍ଦିବା ? ପୁତ୍ର ଆମ୍ଭମାନଙ୍କ ନାମ ରକ୍ଷା କରିବ, ଏଥିପାଇଁ ସିନା ? ପୁସ୍ତକ ଖଣ୍ଡିକ ହାତରେ ଧରି କହିଲେ, ଏହି ପୁସ୍ତକ ଆମ୍ଭମାନଙ୍କ ପୁତ୍ର, ଚିରକାଳ ଆମ୍ଭମାନଙ୍କ ନାମ ରକ୍ଷା କରିବ ।" ଏହି ସମୟରେ ଆମ୍ଭମାନଙ୍କ ଦ୍ୱିତୀୟ ପୁତ୍ର ଜାତ ହୋଇଥିଲା । ପୁସ୍ତକ ପାଠ ସମାପ୍ତ ଉତ୍ତାରେ ମୋତେ ଅନାଇ କହନ୍ତି, "ତୁମେ କପରି ଏ ପ୍ରକାର ଛନ୍ଦ ମିଳାଇ ସାଙ୍ଗେ ସାଙ୍ଗେ ପଦ୍ୟ ରଚନା କରିପାର ? ଦିବାରାତ୍ରି ସୀତାଦେବୀ ଏବଂ ରାମଚନ୍ଦ୍ରଙ୍କ ବୃତ୍ତାନ୍ତ କଥୋପକଥନ କରିବାକୁ ତାଙ୍କର ଖୁବ ଇଚ୍ଛା, ମାତ୍ର ପାଖରେ ଅନ୍ୟ ସ୍ତ୍ରୀ ଲୋକ କେହି ନାହିଁ । ଗୋଟାଏ ଦାସୀ ଥିଲା, ତାକୁ ପାଖରେ ବସାଇ ରାମଚନ୍ଦ୍ର ଏବଂ ସୀତାଦେବୀଙ୍କ ବୃତ୍ତାନ୍ତ କହନ୍ତି । ମାତ୍ର ସେଇଟା ଭକଭକ କରି ମୁହଁକୁ ଅନାଇ ରହିଥାଏ, କଥା କିଛି ବୁଝେ ନାହିଁ । ଦିନେ ମୁଁ ଅନ୍ୟ ଘରେ ବସି ଶୁଣୁଥାଏଁ, ମୋ ସ୍ତ୍ରୀ ଗର୍ବିତ ଭାବରେ ଭାରି ଆନନ୍ଦରେ ସେହି ଦାସୀକୁ କହୁଥିଲେ, "ଆମ ବାବୁ ତ ବଡ଼ ସୁନ୍ଦର ପଦ୍ୟ ରଚନା କରିପାରନ୍ତି, ଖୁବ୍ ଚଞ୍ଚଳ ଲେଖିଯାନ୍ତି ।" ଦାସୀ କହିଲା, "ହଁ ହଁ, ଆମ ଗାଁର ତ ଢେର ଲୋକ ପୋଥି ପଢ଼ନ୍ତି, ଗୀତ ଗାନ୍ତି ।" ମୋ ସ୍ତ୍ରୀଙ୍କ ମୁହଁ ଶୁଖିଗଲା । ସେ ଆଶା କରିଥିଲେ, ଦାସୀଟା ତାଙ୍କ ସ୍ୱାମୀଙ୍କର ପ୍ରଶଂସା କରିବ; କିଣ କହୁଛି ନା, ତା ଗାଁରେ ଢେର ଲୋକ ପୋଥି ପଢ଼ନ୍ତି ।

ମୋ ସ୍ତ୍ରୀଙ୍କ ଉପାସନା ସ୍ଥାନରେ ଖୁବ୍ ଯତ୍ନରେ ଖଣ୍ଡିଏ ରାମାୟଣ ପୁସ୍ତକ ଥୁଆ ହୋଇଥାଏ । ସେ ପ୍ରତିଦିନ ସ୍ନାନାନ୍ତେ ଉପାସନା ଉତ୍ତାରେ ଅଧ୍ୟାୟେ ବା ଦୁଇ ଅଧ୍ୟାୟ ପାଠ କରି ପୁସ୍ତକ ଉପରେ ଫୁଲ ଚନ୍ଦନ ଦେଇ ପୂଜା କରନ୍ତି । ଯେ କୌଣସି ଦିନ ଯେ କୌଣସି ସମୟରେ ହେଉ 'ସୀତାଦେବୀ" ଏହି ଶବ୍ଦ ଶ୍ରବଣ ମାତ୍ରକେ ତାଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ି ନମସ୍କାର କରନ୍ତି । ତତ୍‌କ୍ଷଣାତ୍ ତାଙ୍କ ନେତ୍ରରୁ ଲୋତକ ଧାରା ବହିଯାଏ । ସେ ଅତ୍ୟନ୍ତ ଈଶ୍ୱର ପରାୟଣା ଓ ସତ୍ୟବାଦୀ ଥିଲେ, ଧ୍ୟାନ ଧାରଣାରେ ତାଙ୍କର ଅନେକ ସମୟ ଅତିବାହିତ ହେଉଥିଲା ।

ମୋହର ଜ୍ୟେଷ୍ଠ ପୁତ୍ରର ଜନ୍ମ ବା ମୃତ୍ୟୁର ଦଶ ବାର ବର୍ଷ ପୂର୍ବରୁ ମାତୃଭାଷାର ଆଲୋଚନା ପ୍ରାୟ ପରିତ୍ୟାଗ କରିଥିଲି । ନାନା କାରଣରୁ ସ୍କୁଲ ପାଠ୍ୟପୁସ୍ତକ ତାଲିକାରୁ ମୋହର ସମସ୍ତ ପୁସ୍ତକ ଉଠିଯାଇ

ଥିଲି । ନୂତନ ପୁସ୍ତକ ଲେଖିଲେ ଚଳିବାର ଆଶା ମଧ୍ୟ ନ ଥିଲା । ପୁଣି କୌଣସି ପୁସ୍ତକ ଲେଖିଲେ ଛାପିବାକୁ ଅର୍ଥାଭାବ । ପଢ଼ିବ ବା କିଏ ! ସ୍କୁଲ ପଢ଼ୁଆ ବାବୁମାନେ ଅବଜ୍ଞା ନେତ୍ରରେ ଉତ୍କଳ ପୁସ୍ତକକୁ ଦେଖୁଥିଲେ । ମାତ୍ର କେମନ୍ତ ଗୋଟା ସ୍ୱଭାବ, କିଛି ନ ଲେଖିଲେ ରହିପାରେ ନାହିଁ । ସମୟ ସମୟରେ ବଙ୍ଗଳା ମାସିକ ପତ୍ର ଏବଂ ସାପ୍ତାହିକ ପତ୍ରିକାରେ କିଛି କିଛି ଲେଖୁଥିଲି । ଉତ୍କଳର ଅତ୍ୟାଚାରୀ ହାକିମ, ଉତ୍କୋଚଗ୍ରାହୀ ପ୍ରଧାନ ଅମଲା, ପ୍ରଜାପୀଡ଼କ ପ୍ରଧାନ ଜମିଦାରମାନଙ୍କୁ ଲକ୍ଷ୍ୟକରି ବିଦ୍ରୂପାତ୍ମକ ପଦ୍ୟ ବେନାମୀରେ ଲେଖେଁ ସମୟ ସମୟରେ ସେହି ପଦ୍ୟ ବିଷୟ ଘେନି ଅନେକ ଦିନ ପର୍ଯ୍ୟନ୍ତ ଲୋକମାନଙ୍କ ମଧ୍ୟରେ ଆନ୍ଦୋଳନ ଚଳେ । ରାମାୟଣ ଲେଖିବା ସମୟରେ ମନ ମଧ୍ୟରେ ଭାବାନ୍ତର ଉପସ୍ଥିତ ହେଲା । ବଙ୍ଗଳା ଲେଖି ବଙ୍ଗଦେଶୀୟ କବି ଶ୍ରେଣୀ ମଧ୍ୟରେ ଗଣ୍ୟ ହୋଇ ପାରିବି ନାହିଁ, ବଙ୍ଗ ଭାଷାରେ ଅଭାବ ବା କଣ ଅଛି ? କେହି ପଢ଼ନ୍ତୁ ବା ନ ପଢ଼ନ୍ତୁ ଓଡ଼ିଆରେ ପୁସ୍ତକ ଲେଖିବି । ବର୍ତ୍ତମାନ କେହି ନ ପଢ଼ନ୍ତୁ, ଭବିଷ୍ୟତରେ କେହି ହେଲେ ପଢ଼ିବେ । ମୋ ମାତୃଭାଷାରେ ପୁସ୍ତକ ଖଣ୍ଡିଏ ବଢ଼ିବ ତ । ବଙ୍ଗଳା ଲେଖା ଏକାବେଳକେ ପରିତ୍ୟାଗ କରି ଓଡ଼ିଆରେ କବିତା ଲେଖିବାକୁ ଆରମ୍ଭ କଲି । ବିଶେଷରେ ମୋ ସ୍ତ୍ରୀ ବିଶେଷ ଶ୍ରଦ୍ଧା ଏବଂ ଭକ୍ତିପୂର୍ବକ ଶୁଣୁଥିବାରୁ ସମୟ ପାଇଲେ ରାମାୟଣ ଲେଖିବାକୁ ବସିଯାଏଁ । ମାତ୍ର ସେ ସମୟରେ ଢେଙ୍କାନାଳରେ ମୋ ପୀଡ଼ା ଦିନକୁ ଦିନ ବୃଦ୍ଧି ପାଇବାରୁ କ୍ରମଶଃ ଶଯ୍ୟାଗତ ହୋଇପଡ଼ିଲି, ଅଧିକ ସମୟ ପର୍ଯ୍ୟନ୍ତ ଲେଖିବାକୁ ବେଳ ଅଣ୍ଟେ ନାହିଁ ।

ଢେଙ୍କାନାଳରେ ଜଣେ ଇଂରେଜ ଇଞ୍ଜିନିୟର ଓ ଜଣେ ବଙ୍ଗାଳୀ ଓଭରସିୟର ଥିଲେ; ଏ ଦୁଇଜଣ-ଯାକ ମହାତ୍ମା ବାମ୍‌ସଙ୍କ ନିଯୁକ୍ତ ଏବଂ ଅନୁଗୃହୀତ ଲୋକ । କାର୍ଯ୍ୟରେ ତ୍ରୁଟି କରିବାରୁ ଉଭୟେ ବରଖାସ୍ତ ହୋଇଗଲେ । ବର୍ତ୍ତମାନ ମୋ ପଦଚ୍ୟୁତି ବିଷୟରେ ଲୋକେ ଆଶଙ୍କା କରିବାକୁ ଲାଗିଲେ । ସେ ସମୟରେ ସାଧାରଣ କର୍ମଚାରୀମାନଙ୍କ ମଧ୍ୟରେ ଗୋଟାଏ ଧାରଣା ହୋଇଯାଇଥିଲା ଯେ ମହାତ୍ମା ବାମ୍‌ସଙ୍କ ନିଯୁକ୍ତ କର୍ମଚାରୀ ମାନେ କମିଶନରଙ୍କ ଅପ୍ରିୟପାତ୍ର ।

ସେ ସମୟରେ ଢେଙ୍କାନାଳ ରାଜସଂସାର ମଧ୍ୟରେ ଜଣେ ବ୍ରାହ୍ମଣ ଯୁବକ କର୍ମଚାରୀ ଥିଲା । ତାହାର ପଦବୀ ଖାନସାମା । ସେ ଆପଣାକୁ ରାଜାଙ୍କ ବ୍ରାହ୍ମଣ ପୁତ୍ର ବୋଲି ପରିଚୟ ଦିଏ ଏବଂ ରାଜପୁତ୍ର ପରି ଲୋକଙ୍କ ସାକ୍ଷାତରେ ଆଚରଣ ଦେଖାଏ । ଲୋକଟା ଏପରି ସ୍ୱାର୍ଥପର ଯେ, ଏକୁଟିଆ ସୁଖରେ ରହିବ ବୋଲି ଆପଣା ପିତାଠାରୁ ପୃଥକ୍ ରହିଥିଲା । ଥରେ କୌଣସି ମକଦ୍ଦମାରେ ତାହାର ବାପ ନାମରେ ୱାରେଣ୍ଟ ବାହାର କରିବା ସକାଶେ ମୋ ଅଦାଲତରେ ପ୍ରାର୍ଥନା କରିଥିଲା । ମାତ୍ର ମୁଁ ତାହା ନାମଞ୍ଜୁର କରିଥିଲି ।

ମହାରାଜା ଭାଗୀରଥୀ ମହେନ୍ଦ୍ର ବାହାଦୁରଙ୍କ ପରଲୋକର ଗମନ ଉତ୍ତାରେ ରାଜସରକାରର କର୍ମଚାରୀ ବନ୍ଦବୋସ୍ତ କରିବା ସକାଶେ କମିଶନର ସାହେବ ଢେଙ୍କାନାଳ ଯାଇଥିଲେ । ଅନ୍ୟାନ୍ୟ କେତେକ ବିଭାଗର କର୍ମଚାରୀ ବନ୍ଦୋବସ୍ତ ଉତ୍ତାରେ ମହାରାଜାଙ୍କ ନିଯୋଗ ଖଟଣୀ ଚାକର ବନ୍ଦୋବସ୍ତ ଆରମ୍ଭ ହେଲା । ସେ ବିଭାଗରେ ଚାକର ଥିଲେ ବାସ୍ତରି ଜଣ । କମିଶନର ସାହେବ ହୁକୁମ କଲେ, ଗୋଟିଏ ପିଲା ରାଜା ପାଖରେ ଏତେଗୁଡ଼ାଏ ଚାକର ରହି ଗୋଲମାଲ କରିବା ଉଚିତ ନୁହେଁ । କମାଇବାକୁ ଆରମ୍ଭ କଲେ । କାଠିଲଗି ଚାକର ଚାରିଜଣ । ଜଣେ ବଣରୁ ଦାନ୍ତକାଠି ସକାଶେ ଡାଳ ଖଣ୍ଡେ କାଟି ଆଣେ । ଜଣେ ସେ ଡାଳକୁ କାଟି ଉପଯୁକ୍ତ ମାପରେ ଦାନ୍ତକାଠି ପ୍ରସ୍ତୁତ କରେ । ଜଣେ ବାହାର ପାଖରୁ

ସେ ଦାନ୍ତକାଠି ଦେବାପାଇଁ ମଣିମାଙ୍କ କାଠିଲାଗି ସ୍ଥାନରେ ଥୋଇ ଦିଏ । ଚତୁର୍ଥ ଚାକରଟି ଶ୍ରୀଗୁରୁଙ୍କ ଶ୍ରୀହସ୍ତକୁ ବଢ଼ାଇ ଦିଏ । ସେ ହେବ ତିନିଜଣ ଚାକରଙ୍କୁ ବାହାର କରି ଜଣେ ମାତ୍ର ରଖିଥିଲେ ।

ଏହିପରି ଅନ୍ୟାନ୍ୟ ବିଭାଗରୁ ମଧ୍ୟ ଚାକର କମାଇବାକୁ ଲାଗିଲେ । ଖିଆଘରେ ସୁଆର (ପାଚକ) ବ୍ରାହ୍ମଣଥିଲେ ନ ଜଣ ଦୁଇ ଜଣ ରଖି ଚାରିଜଣଙ୍କୁ ବାହାର କରିଦେଲେ । ପଦଚ୍ୟୁତ ସୁଆରମାନଙ୍କ ମଧ୍ୟରେ ଜଣେ କଟକଜିଲ୍ଲାବାସୀ ଲୋକ ଥିଲା । ଅନେକ ଦିନ ରହିବା ହେତୁରୁ ସେ ଢେଙ୍କାନାଳ ଗଡ଼ରେ ଦୋହରା ଘର ପ୍ରସ୍ତୁତ କରାଇ ଏକପ୍ରକାର ଢେଙ୍କାନାଳବାସୀ ହୋଇ ଯାଇଥିଲା । ତା ପକ୍ଷରେ ବର୍ତ୍ତମାନ ସମୂହ ବିପଦ ଉପସ୍ଥିତ । ଚାକରି ଖଣ୍ଡ ରକ୍ଷାପାଇଁ ମୋତେ ଧରି ପଡ଼ିଲା । ତାକୁ ସଙ୍ଗରେ ନେଇ ଯାଇ ସାହେବଙ୍କୁ ଜଣାଇଲି । ଏହି ପାଚକଟି ନ ରହିଲେ ରାଜାଙ୍କ କାର୍ଯ୍ୟ ଚଳିବ ନାହିଁ । ଏହି ପାଚକଟି ରାଜାଙ୍କ ସକାଶେ ମିଷ୍ଟାନ୍ନ ପ୍ରସ୍ତୁତ କରେ, ପାଉଁରୁଟି ତିଆରି କରି ଜାଣେ । ସାହେବ ହୁକୁମ କଲେ, ଏପରି ପାଚକ ଜଣେ ରହିବା ନିତାନ୍ତ ଆବଶ୍ୟକ । କେତେ ଦରମା ପାଏ ? ସାତ ଟଙ୍କା । ନାହିଁ ନାହିଁ, ଏପରି ଯୋଗ୍ୟ ଲୋକର ବେତନ ମାସିକ ତିରିଶ ଟଙ୍କା ହେବା ଉଚିତ । ସେ ସେହି ବେତନରେ ରହିଗଲା । ସେ ଲୋକଟିର ମୋ ପ୍ରତି ପ୍ରଗାଢ଼ ଭକ୍ତି । ସମସ୍ତ ସମୟରେ ମୋ ବସାକୁ ଯାଏ । ପ୍ରୟୋଜନ ହେଲେ ମୋ ବସାରେ ଲଡ଼ୁ ପ୍ରସ୍ତୁତ କରି ଦେଇ ଆସେ । ସେ ଲୋକଟି ଭଲ କହିପୋଛି ପାରେ, ଓଡ଼ିଆ ଲେଖି ପଢ଼ି ଜାଣୁଥିଲା । ଢେଙ୍କାନାଳ ରାଜକଚେରିରେ ସେ ସମୟରେ ଓକିଲ ମୁକ୍ତାର ନ ଥିଲେ । ସେ ଲୋକଟିର ଆସ୍ୟବୃଦ୍ଧି କାମନାରେ ଅଦାଲତରେ ତାହାକୁ ମୁକ୍ତାର ପଦରେ ନିଯୁକ୍ତ କରିଦେଲି ।

ମୁକ୍ତାରରେ ସେ ଲୋକଟିର ମାସିକ ଶତାବଧି ଟଙ୍କା ଆୟ ହେବାକୁ ଲାଗିଲା । ମୋ ପ୍ରଥମ ପୁତ୍ର ମୃତ୍ୟୁର ଅଳ୍ପ ଦିବସ ଉତ୍ତାରେ ମୁଁ ଯେଉଁ ସମୟରେ ପୀଡ଼ିତାବସ୍ଥାରେ ଶଯ୍ୟାଗତ ପ୍ରାୟ, ଠିକ୍ ସେହି ସମୟରେ ଉକ୍ତ ମୁକ୍ତାରର ଜଣେ ମହକିଲର ଗୋଟାଏ ମକଦ୍ଦମା ଡିସ୍‌ମିସ୍ କରିଦେଲି । ସେହି ଦିନଠାରୁ ମୁକ୍ତାରବାବୁ ମୋ ବିପକ୍ଷରେ ଘୋର ଶତ୍ରୁତାଚରଣ କରିବାକୁ ଲାଗିଲେ । ଢେଙ୍କାନାଳ କଚେରିର ଜମାଦାର ଜଣେ ଘୋର ଗଞ୍ଜୋଡ଼, କିଛି କର୍ମ କରେ ନାହିଁ, ସର୍ବଦା ଗଞ୍ଜେଇ ଖାଇ ବୁଲୁଥାଏ । ସମସ୍ତ ସମୟରେ ନିଶାଖିଆଙ୍କରେ ମୋ ଅଦାଲତରେ ଉପସ୍ଥିତ ହୋଇ ଭୟଙ୍କର ଗୋଲମାଲ କରେ । ବାରମ୍ବାର ନିବାରଣ କଲେ ମଧ୍ୟ ଶୁଣେ ନାହିଁ । ଦିନେ କଚେରି ସମୟରେ ମୁଁ ସାକ୍ଷୀ ଜବାନ-ବନ୍ଦି ନେଉଥିବା ସମୟରେ ଉପସ୍ଥିତ ହୋଇ ଭୟଙ୍କର ଗୋଲମାଲ କରିବାରୁ ତାକୁ ଅଦାଲତର ଅବମାନନା ହେତୁ ପାଞ୍ଚଟଙ୍କା ଜରିମାନା କଲି । ସେ ହେଲା ମୋହର ଶତ୍ରୁ ନମ୍ବର ତିନି । କଚେରିର ମହାଫିଜ ଗୋଟାଏ ସାମାନ୍ୟ କାରଣରୁ ମୋ ସହିତ ଶତ୍ରୁତା କରିବାକୁ ଲାଗିଲା । ଗାଏ ଶତ୍ରୁ ସଂଖ୍ୟା ହେଲେ ଚାରି ଜଣ । ଏହି ସମୟରେ ମୁଁ ପୀଡ଼ିତ, ପ୍ରାୟ ଶଯ୍ୟାଗତ, ଅତି କଷ୍ଟରେ କେତେ ଘଣ୍ଟା ପର୍ଯ୍ୟନ୍ତ କଚେରିରେ ବସି ଦୈନିକ କାର୍ଯ୍ୟଗୁଡ଼ିକ ଶେଷ କରି ବସାକୁ ଚାଲି ଆସେଁ । ସେରସ୍ତାର ଆଭ୍ୟନ୍ତରିକ କାର୍ଯ୍ୟ ଗୁଡ଼ିକ ଦେଖିବା ସକାଶେ ମୋହର ସାମର୍ଥ୍ୟ ନ ଥାଏ । ଏହି ଦୁର୍ଯୋଗ ବା ସୁଯୋଗଟା ବିପୁଳ ଧନାଗମ ସମ୍ବନ୍ଧରେ କଚେରିର ପେସ୍କାର ବାବୁଙ୍କ ପକ୍ଷରେ ବିଶେଷ ଅନୁକୂଳ ହୋଇ ପଡ଼ିଥିଲା । ସେ ରେଜେଷ୍ଟର ବହି ଏବଂ ନଥିରେ ମୋ ଲିଖିତ ରାୟ ସବୁ କାଟି ଡିକ୍ରୀ ସ୍ଥଳରେ ଡିସ୍‌ମିସ୍, ବା ଡିସ୍‌ମିସ୍ ସ୍ଥଳରେ ଡିକ୍ରୀ, ଆଉ ଦେବାନି ମାମଲା ନଥିରେ ଶଏ ଟଙ୍କା ଡିକ୍ରୀ ସ୍ଥଳରେ ଦଶଟଙ୍କା, ପାଞ୍ଚଟଙ୍କା ସ୍ଥଳରେ

ପଚ୍ଛଣ ଟଙ୍କା ଲେଖି ଦେଇ ଲୋକମାନଙ୍କ ନିକଟରୁ ଟଙ୍କା ସଂଗ୍ରହ ବିଷୟରେ ନିଯୁକ୍ତ ଥିଲି । ଏହି ସମୟରେ ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ରାୟ ନନ୍ଦକିଶୋର ଦାସ ବାହାଦୁର କୋର୍ଟ ଅଫ୍ ୱାର୍ଡ୍ସର କାର୍ଯ୍ୟପ୍ରଣାଳୀ ତଦନ୍ତ କରିବା ସକାଶେ ଢେଙ୍କାନାଳକୁ ଆସିଲେ । ଅନ୍ୟାନ୍ୟ ବିଭାଗର କାର୍ଯ୍ୟାବଳୀ ପରିଦର୍ଶନ ଉତ୍ତାରେ ମୋ ସେରସ୍ତା ତଦାରର ସମୟ ଉପସ୍ଥିତ ହେଲା ।

ପେସ୍କାର ଏବଂ ଅନ୍ୟ ଅମଲାମାନେ ଆପଣା ଆପଣା ଇଲାକାର ରେଜେଷ୍ଟର ବହି ଧରି ହାକିମଙ୍କ ମିସଲରେ ଉପସ୍ଥିତ । ହାକିମ ଖଣ୍ଡେ ରେଜଷ୍ଟର ବହି ଧରି ଯେମନ୍ତ ଗୋଟାଏ ପୃଷ୍ଠା ଓଲଟାଇ ଅଛନ୍ତି, କେତେଟା ନମ୍ବର କାଟକୁଟ ଦେଖାଗଲା । ହାକିମ ମୋତେ ଅନାଇ ପଚାରିଲେ, "ଏତେ କାଟକୁଟ କି ସକାଶେ ?" ଗୋଟାଏ ପୃଷ୍ଠା ଏପରି ଅସଙ୍ଗତ କାଟକୁଟ ଦେଖି ମୁଁ ତ ଅସ୍ଥିର ହୋଇ ପଡ଼ିଲିଣି । ବହି ଦେଖେଁ ବୋଲି କହି ରେଜେଷ୍ଟର ବହିଟା ତାଙ୍କ ହାତରୁ ଟାଣି ନେଲି; ଓଲଟାଇ ଦେଖେଁ, ପ୍ରତ୍ୟେକ ପୃଷ୍ଠାରେ କାଟକୁଟ । ମୋତେ ଯେମନ୍ତ ଆଉ କିଛି ପଦାର୍ଥ ଦିଶୁ ନାହିଁ, ମୁଣ୍ଡ ବୁଲିଉଅଛି । ହାକିମଙ୍କୁ ପ୍ରାର୍ଥନା କଲି, "ମୋ ସେରସ୍ତା ତଦାରଖି କାର୍ଯ୍ୟ ଆଜି ବନ୍ଦ ଥାଉ, କାଲି ତଦାରଖ କରିବେ ।" ଦୟାମୟ ପ୍ରଭୁ ଆବାଲ୍ୟରୁ ମୋତେ ରକ୍ଷା କରି ଆସୁ ଅଛନ୍ତି, ବର୍ତ୍ତମାନ ମଧ୍ୟ ସହାୟ ହେଲେ । ହାକିମ ମୋହର ପରମ ହିତୈଷୀ ବନ୍ଧୁ, ନଚେତ୍ ସେହି ମୁହୂର୍ତ୍ତରେ ସବୁ ଶେଷ ହୋଇ ଯାଇଥାନ୍ତା ।

ବସାକୁ ଆସି ସବୁ ରେଜେଷ୍ଟର ବହିଗୁଡ଼ିକ ଦେଖିଲି, ଦଶ ପାଞ୍ଚ ଜାଗା ନୁହେଁ, ଶତ ଶତ ନମ୍ବର କାଟକୁଟ ! ମୋ ପକ୍ଷରେ ଯେ କଣ ଘଟଣା ହେବ, ସେ ଚିନ୍ତା ମୋ ମନ ମଧ୍ୟରେ ମୁହୂର୍ତ୍ତିକ ପାଇଁ ଉଦୟ ହୋଇ ନାହିଁ । ଏହି ଅମଲାଟା ଯେ ସେସନ ସମ୍ପ୍ରୋଦ ହେବ, ଏହା ଏକାବେଳକେ ନିଶ୍ଚିତ କଥା; କି ଉପାୟରେ ଏହି ଲୋକଟା ରକ୍ଷା ପାଇବ, ଏହି ଚିନ୍ତାରେ ଅସ୍ଥିର ହୋଇ ପଡ଼ିଲିଣି । ପେସ୍କାର ମୁହଁକୁ ଅନାଇ ଦେଖିଲି, ତାହା ମନରେ ଯେମନ୍ତ ଭୟ ବା ଚିନ୍ତାମାତ୍ର ସ୍ପର୍ଶ କରି ନାହିଁ । ମୋ ମୁହଁକୁ ଅନାଇ ପ୍ରଫୁଲ୍ଲ ମନରେ କଥୋପକଥନ କରୁଥାଏ । ସେହି ପେସ୍କାରର ଗୋଟିଏ ବୃହତ୍ ପରିବାର, ଅନେକଗୁଡ଼ିଏ ଭାଇ, ସବୁଗୁଡ଼ିକ ମଉଆଲି, ବଦମାସ୍, ଦାମ୍ଭିକ ଏବଂ ଅନ୍ୟର ଅନିଷ୍ଟକାରୀ । ପଶ୍ଚାତ୍ ଶୁଣିଲି, ହାକିମ ଅର୍ଥାତ୍ ମୋ ହୁକୁମ ଅନୁସାରେ ରେଜେଷ୍ଟର କାଟକୁଟ ହୋଇଅଛି ବୋଲି ତଦାରଖି ହାକିମ୍ ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଜଣାଇବେ ବୋଲି ସବୁ ଭାଇ ଏକତ୍ର ବସି ସ୍ଥିର କରିଥିଲେ ।

ଅନ୍ୟ କୌଣସି ଉପାୟ ନ ଦେଖି ପୁରୁଣା ସମସ୍ତ ରେଜେଷ୍ଟର ବହି ଚିରି ପକାଇ ସାତ ଯାକ ଅନିଦ୍ରାରେ ବସି ନୂତନ ରେଜେଷ୍ଟର ବହି ଏକପ୍ରସ୍ଥ ପ୍ରସ୍ତୁତ କରି ପକାଇଲି । ତିନିଜଣ ଅମଲା ସାରିରାତି ବସି ନୂତନ ରେଜେଷ୍ଟର ବହି ଲେଖି ପକାଇଲେ । ରେଜେଷ୍ଟର ବହି ପ୍ରସ୍ତୁତ ହୋଇଗଲା, ମାତ୍ର ଚାରି ପାଞ୍ଚ ଶତ ନଥି ସଂଶୋଧନ କରିବା ସହଜ କଥା ନୁହେଁ, ଏକାବେଳକେ ସାଧ୍ୟାତୀତ । ପରଦିନ କଚେରୀରେ ରେଜେଷ୍ଟର ବହିସବୁ ତଦାରଖ ହୋଇଗଲା । ମାତ୍ର କାଟକୁଟ ନଥିସବୁ ଧରା ପଡ଼ିଗଲା । ମୋହର ପରମ ହିତୈଷୀ ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଆପଣା ଇନ୍‌ସ୍ପେକ୍‌ଶନ୍ ରିପୋର୍ଟରେ କେବଳ ମାତ୍ର ମନ୍ତବ୍ୟ ପ୍ରକାଶ କଲେ, "ଆସିଷ୍ଟାଣ୍ଟ ମ୍ୟାନେଜରଙ୍କ ସେରସ୍ତାରେ ଅନେକଗୁଡ଼ିଏ ନଥି ନଷ୍ଟ ଅବସ୍ଥାରେ ଦେଖାଗଲା ।" ହାକିମ କେବଳ ମୋତେ ବଞ୍ଚାଇବା ପାଇଁ କାଟକୁଟ କଥା ଜାଲ ଶବ୍ଦ ଉଲ୍ଲେଖ କଲେ ନାହିଁ । ସୁପରିଣ୍ଟେଣ୍ଡେଣ୍ଟ ସ୍ମିଥ୍ ସାହେବ ଇନ୍‌ସ୍ପେକଶନ ରିପୋର୍ଟ ପାଠକରି

ଢେଙ୍କାନାଳ ସେରସ୍ତା ତଦନ୍ତ କରିବା ସକାଶେ ତାରିଖ ନିରୂପଣ କରି ଫେରିଆସିଲେ । ମୋ ପ୍ରତି ସାହେବଙ୍କ ଅଭିପ୍ରାୟ ବିଷୟ ମୋତେ ଭଲ ଜଣା ଥିଲା । ଏ ଯାତ୍ରା ମୋହର ଯେ ରକ୍ଷା ନାହିଁ, ଭଲରୂପେ ବୁଝି ପାରିଲି । ତଥାପି ମୋ ଆତ୍ମରକ୍ଷା ସକାଶେ ଓ କିଛିମାତ୍ର ହେଲେ ଭାବନା ମନରେ ଉଦୟ ହେଉ ନାହିଁ; ଯାହା ହେବାର ହୋଇ ଯାଇଅଛି, କିପରି ଏହି ଅମଲଟା ଜେଲରୁ ରକ୍ଷା ପାଇବ, ଏତିକି ମାତ୍ର ଚିନ୍ତା । ନିତାନ୍ତ ବ୍ୟାକୁଳ ହୋଇ ପଡ଼ିବେ ବୋଲି ମୋ ସ୍ତ୍ରୀଙ୍କୁ କିଛି ଜଣାଇଲି ନାହିଁ । ମୁଁ ନିଶ୍ଚଳ ହୋଇ ବସି ଚିନ୍ତା କରୁଥିବାର ଦେଖି ମୁଁ ମୃତ ପୁତ୍ର ବିଷୟ ଭାବନା କରୁଅଛି ବୋଲି ମନରେ କରି ସେ ବ୍ୟାକୁଳ ହୋଇ ପଡ଼ନ୍ତି । କିଛି ମାତ୍ର କଥା ନ କହି ତୁନି ହୋଇ ପାଖରେ ବସନ୍ତି । ପେଷ୍କାରକୁ ଜେଲରୁ ବଞ୍ଚାଇବା ସକାଶେ ମୁଁ ବ୍ୟସ୍ତ, ଇତ୍ୟବସରରେ ସଦ୍‌ଭ୍ରାତା ପେଷ୍କାର ବାବୁ ମୋ ମୁଣ୍ଡରେ ସମସ୍ତ ଅପରାଧ ଲଦି ଦେଇ ଆପେ ଖଲାସ ହୋଇଯିବାର ଉପାୟ ଅନ୍ୱେଷଣରେ ବ୍ୟସ୍ତ ଥାନ୍ତି । କି ଉପାୟ ଅବଲମ୍ବନ କରିବି, ଏ ବିଷୟରେ ପରାମର୍ଶ କରିବା ସକାଶେ ପ୍ରକୃତ ବନ୍ଧୁ ଢେଙ୍କାନାଳରେ କେହି ନାହିଁ । ପ୍ରତ୍ୟୁତ ପରମ ଶତ୍ରୁର ଅଭାବ ନ ଥିଲା । ହୋମିଓପ୍ୟାଥିଙ୍କର ମୂଳମନ୍ତ୍ର "Similia Similibus." "ସମେ ସମ" ଉପାୟଟି ଅବଲମ୍ବନ କରିବାକୁ ଅଗତ୍ୟା ବାଧ୍ୟ ହୋଇ ପଡ଼ିଲି । ଅର୍ଥାତ୍ ଗୋଟିଏ ଅନ୍ୟାୟକୁ ଆଉ ଗୋଟିଏ ଅନ୍ୟାୟରେ ଯୋଡ଼ାଇବାକୁ ସ୍ଥିର କଲି ।

ମୋ ଅଫିସ ମହାଫିସଖାନା ଅର୍ଥାତ୍ ନଥି ପ୍ରଭୃତି କାଗଜପତ୍ର ରଖିବାର ଘରଟି ଅତି କ୍ଷୁଦ୍ର ଚାଳଘର, ପୁଣି ପୁରୁଣା । ସେହି ଘର ଉପର ଚାଳଆରୁ କୁଟା ଓଟାରି ପକାଇ ସ୍ଥାନେ ସ୍ଥାନେ ଫାଙ୍କ କରାଇ ଦିଆଗଲା । ନଥିସବୁ ଗୋଟାଏ କୋଣରେ ଜମାକରି ତାହା ଉପରେ ପାଣି ଢାଳି ଛିନ୍ନ ଭିନ୍ନ କରାଇ ଦିଆଗଲା । ଅବଶ୍ୟ ମୋ ପରାମର୍ଶ ଅନୁସାରେ ପେଷ୍କାର ବାବୁ ଏହି ସମସ୍ତ କାର୍ଯ୍ୟ କରି ପକାଇଲେ । ବର୍ତ୍ତମାନ ଏ ସମସ୍ତ କଥା ଲେଖିବାକୁ ହସ୍ତ କମ୍ପିତ ହେଉଅଛି, ମାତ୍ର ସେ ସମୟରେ ନିତାନ୍ତ ସହଜରେ ଏ ସମସ୍ତ କାର୍ଯ୍ୟ କରି ପକାଇଥିଲି ।

ଗଡ଼ଜାତ ସୁପରିଣ୍ଟେଣ୍ଡେଣ୍ଟ ମିଷ୍ଟର ସ୍ମିଥ୍ ସେରେସ୍ତା ପରିଦର୍ଶନ ନିମନ୍ତେ ଢେଙ୍କାନାଳକୁ ଆସିଲେ । ଉଚ୍ଚ, ସ୍ଥୂଳ ଭୀଷଣ ମୂର୍ତ୍ତିଟି ଅତି କ୍ଷୁଦ୍ର ମହାଫିସଖାନା ଗୃହ ମଧ୍ୟସ୍ଥଳରେ ଉଭା ହୋଇ ଊର୍ଦ୍ଧ୍ୱ ନିମ୍ନ ଚତୁର୍ଦ୍ଦିଗ ମନୋଯୋଗ ପୂର୍ବକ ନିରୀକ୍ଷଣ କରି ଦେଖିଲେ । ଉପର ପାଣି ପଡ଼ି ଭିଜା ପରି ଗୋଟାଏ କୋଣରେ ସ୍ତୂପୀକୃତ ଜମା ହୋଇଥିବା ନଥିଗୁଡ଼ିକୁ ଅନାଇ ମୋତେ ତୀକ୍ଷ୍ଣଭାବରେ କହିଲେ, "ବାବୁ, ତୁମେ ବଡ଼ ରକ୍ଷା ପାଇଗଲ; ମାତ୍ର ମୋଗଲ ବନ୍ଦୀ ହୋଇଥିଲେ କେବେ ରକ୍ଷା ପାଇ ନ ଥାନ୍ତ ।" ମୁଁ ନିଶ୍ୱାସ ପକାଇ ମନେ କଲି, ଯାହାହେଉ ପେଷ୍କାରଟା ବଞ୍ଚିଗଲା । ହାକିମ ତାକୁ କେବଳ ତିନି ମାସ ସକାଶେ ପଦଚ୍ୟୁତ କଲେ; ମହାଫିସଖାନା ସକାଶେ ଆଲମାରି କିଣାଯିବାର ଟଙ୍କା ମଞ୍ଜୁର କରିଦେଇ କଟକ ବାହୁଡ଼ି ଗଲେ । ପେଷ୍କାର ତିନି ମାସ ସକାଶେ ସସ୍‌ପେଣ୍ଡ ହେବାରୁ ତାଙ୍କ ଭ୍ରାତାମାନଙ୍କର ଭୟଙ୍କର କ୍ରୋଧ ଜାତ ହେଲା । ମୋତେ ଗାଳି ଦେବାକୁ ଲାଗିଲେ, ସର୍ବତ୍ର କହି ବୁଲିଲେ, ସେରସ୍ତାର ଦୋଷ ସକାଶେ ହାକିମ ଦାୟୀ, ପେଷ୍କାର ସସ୍‌ପେଣ୍ଡ ହେବା ନିତାନ୍ତ ଅନ୍ୟାୟ । ଆଶ୍ଚର୍ଯ୍ୟର ବିଷୟ, ଈଶ୍ୱରଙ୍କ ନ୍ୟାୟ ବିଚାରରୁ ସେମାନେ ମୁକ୍ତିଲାଭ କରି ପାରିଲେ ନାହିଁ । ସେମାନଙ୍କ ବିଶାଳ ବଂଶଟା ଉଚ୍ଛନ୍ନ ହୋଇ ଯାଇଅଛି ।

ଉପସ୍ଥିତ ଘୋର ବିପଦରୁ ରକ୍ଷା ପାଇଗଲି, କିନ୍ତୁ ଶରୀର ଦିନକୁ ଦିନ ଅବସ ହୋଇ ପଡ଼ୁଥାଏ । ଅଳ୍ପ

ସମସ୍ତ ସକାଶେ କଚେରି କାର୍ଯ୍ୟ କରେ । ହନପାକ ବାଛଣାରେ ପଡ଼ି ରହିବାକୁ କଷ୍ଟକର ବୋଧ ହୁଏ ।

(ଉ: ସା: ୨୭ଶ ଭାଗ—୧୨ ସଂଖ୍ୟା)

---

## ଢେଙ୍କାନାଳରେ ଆସିଷ୍ଟାଣ୍ଟ ମ୍ୟାନେଜରୀ (୩)

ଆମ୍ଭମାନଙ୍କ ଗୃହ ବାଲେଶ୍ୱର ସହର ଦକ୍ଷିଣ ପ୍ରାନ୍ତବର୍ତ୍ତୀ ଗୋଟିଏ କ୍ଷୁଦ୍ର ଗ୍ରାମରେ । ଏହାର ଚତୁଃପାର୍ଶ୍ୱବର୍ତ୍ତୀ ଗ୍ରାମଗୁଡ଼ିକ ମଧ୍ୟ ସାନ ସାନ । ପୂର୍ବେ ଏହି ସମସ୍ତ ଗ୍ରାମରେ କେତେଗୁଡ଼ିଏ ଜାହାଜୀ ମହାଜନ ଓ କ୍ଷୁଦ୍ର କ୍ଷୁଦ୍ର ଜମିଦାର ବାସ କରୁଥିବାରୁ ଏ ସମସ୍ତ ଗ୍ରାମର ବେଶ୍ ଗୌରବ ଥିଲା, ସର୍ବଦା ଆନନ୍ଦୋତ୍ସବରେ ପୂର୍ଣ୍ଣ ଥାଏ । ମହାଜନ ଓ ଜମିଦାରମାନଙ୍କୁ ଛାଡ଼ି ଅନ୍ୟାନ୍ୟ ଶ୍ରେଣୀର ଲୋକମାନେ ମଧ୍ୟ ବେଶ୍ ସୁଖ ସ୍ୱାଚ୍ଛନ୍ଦ୍ୟରେ ବାସ କରୁଥିଲେ । ପୂର୍ବେ ସହର ଚଳାଆ ଗୃହକାର୍ଯ୍ୟକୁ ପସନ୍ଦ କରୁ ନ ଥିଲେ, ଜାହାଜ ଛଆଁର କାର୍ଯ୍ୟ ଚଳୁଥିବା ସମୟରେ ନାନା ଶ୍ରେଣୀର କାରିଗରଙ୍କୁ ଘରୁ ବାହାରିଲେ ପଇସା ମିଳି ଯାଉଥିଲା । ସେମାନେ କି ସକାଶେ ବଳବ ଡ଼ରେ କାଦୁଅ ଚକଟିବାକୁ ଯିବେ ? ନିମକ୍ ମହାଲ ଉଠିଯିବାରୁ କେବଳ ଜାହାଜାଓ ମହାଜନ ନୁହେଁ, ସର୍ବ ଶ୍ରେଣୀର ଲୋକେ ନିତାନ୍ତ ଦୁର୍ଦ୍ଦଶାରେ ପଡ଼ି ଯାଇ ଅଛନ୍ତି ।

ଆମ୍ଭମାନଙ୍କ ଗ୍ରାମ ସଂଲଗ୍ନ ଗୋଟିଏ ବୃହତ୍ ତନ୍ତୁସାହି । ବାଲେଶ୍ୱରକୁ କଳଲୁଗା ଆମଦାନି ହେବା ପୂର୍ବେ ଅର୍ଥାତ୍ ପଚାଶ ଷାଠିଏ ବର୍ଷ ପୂର୍ବେ ଏହି ତନ୍ତୀମାନେ ମଧ୍ୟବିତ୍ତ ଲୋକଶ୍ରେଣୀ ମଧ୍ୟରେ ଗଣ୍ୟ ହେଉଥିଲେ । ଦୁଇଶହ ନମ୍ବର ସୂତାରେ ଅତି ପାତଳା ଦଶବାର ଟଙ୍କା ମୂଲ୍ୟର ଧୋତି ବୁଣା ହେଉଥିଲା । ସତର ଶହ ଖ୍ରୀଷ୍ଟାବ୍ଦରେ ଓଲନ୍ଦାଜ, ଦିନାମାର, ଫରାସୀ ସଉଦାଗରମାନେ ବାଲେଶ୍ୱରୀ ଲୁଗା ବିଲାତକୁ ଚଲାଣ ଦେଉଥିଲେ । ବର୍ତ୍ତମାନ ସେହି ସମସ୍ତ ତନ୍ତୁବଂଶ ଉଚ୍ଛନ୍ନ ହୋଇ ଯାଇ ଅଛନ୍ତି ।

ଏହି ଅପ୍ରାସଙ୍ଗିକ କଥାଗୁଡ଼ିକ ଏ ସ୍ଥାନରେ ଉଲ୍ଲେଖ କରିବାର ଉଦ୍ଦେଶ୍ୟ, ବର୍ତ୍ତମାନ ଆମ୍ଭମାନଙ୍କ ଗ୍ରାମଗୁଡ଼ିକ ଦରିଦ୍ରମାନଙ୍କ ବାସସ୍ଥଳୀ ଅଟେ । ବାଲେଶ୍ୱରରେ ଦାତବ୍ୟ ଚିକିତ୍ସାଳୟ ସ୍ଥାପିତ ହେବା ପୂର୍ବେ ପୀଡ଼ିତାବସ୍ଥାରେ ଅର୍ଥବ୍ୟୟ କରି କବିରାଜ ଡାକ୍ତର ଡାକିବା କିମ୍ବା ମୂଲ୍ୟବାନ୍ ଔଷଧ କ୍ରୟ କରିବା ଦରିଦ୍ର ଶ୍ରେଣୀର ଲୋକମାନଙ୍କ ପକ୍ଷରେ କଷ୍ଟକର ହୋଇ ପଡ଼ୁଥିଲା । ସେମାନଙ୍କ ଉପକାର ସକାଶେ କସ୍ତୁରୀ ମକରଧ୍ୱଜ ପ୍ରଭୃତି ମୂଲ୍ୟବାନ୍ ଔଷଧ ସଂଗ୍ରହ କରି ରଖିଥାଏଁ । ସାଧାରଣ ରୋଗର ଚିକିତ୍ସା ନିମନ୍ତେ ଆୟୁର୍ବେଦୀୟ ନିଦାନ, ଚରକ, ସୁଶ୍ରୁତ, ବାଗ୍‌ଭଟ୍ଟ ଏବଂ ରସେନ୍ଦ୍ରସାର ସଂଗ୍ରହ ପ୍ରଭୃତି କେତେକ ଶାସ୍ତ୍ର ଅଧ୍ୟୟନ କରିଥିଲି । ବର୍ତ୍ତମାନ ଢେଙ୍କାନାଳରେ ସମୟ ଯାପନ ଏବଂ ଅଶକ୍ତ ପୀଡ଼ିତ ଲୋକମାନଙ୍କ ମଧ୍ୟରେ ବିତରଣ ନିମନ୍ତେ ନାନାପ୍ରକାର ତୈଳପାକ, ଧାତୁ ଜାରଣ ମାରଣ, ବଟିକା ପ୍ରସ୍ତୁତ କରିବା ପ୍ରଭୃତି କାର୍ଯ୍ୟରେ ଲାଗିଗଲି । ସମୟ ସମୟରେ ତୈଳ ଭସ୍ମ ପ୍ରାର୍ଥନାରେ କଟକ ଭୁବନେଶ୍ୱର ପ୍ରଭୃତି ଅଞ୍ଚଳରୁ ଲୋକ ମୋ ପାଖକୁ ଆସୁଥିଲେ ।

କଥଞ୍ଚିତ ଆନନ୍ଦରେ ସମୟ ଯାପନ ନିମନ୍ତେ ପଶାଖେଳ ଆରମ୍ଭ କଲି । ପ୍ରାୟ ପ୍ରତିଦିନ ଉପରଓଳି ବସାରେ ପଶାଖେଳର ଆଡ଼୍ଡା ବସେ । କେତେଜଣ ନିଷ୍କର୍ମା କରଣ ବ୍ରାହ୍ମଣ ଜୁଟିଗଲେ । ଏହି ବ୍ୟର୍ଥ ଆମୋଦରେ ବୃଥା ସମୟ ଅତିବାହିତ ହେଉଥିଲା ।

ଦୁର୍ଭାଗ୍ୟ ସମୟରେ ଦୁର୍ବୁଦ୍ଧି ଉପସ୍ଥିତ ହୁଏ । ଆୟୁର୍ବେଦରେ ଏକପ୍ରକାର ସୁରାର ନାମୋଲ୍ଲେଖ ଅଛି, ତାହାର ନାମ ମୃତସଞ୍ଜୀବନୀ ସୁରା । ଶାସ୍ତ୍ରରେ ଉଲ୍ଲେଖ, ଦେବାସୁର ସମର ସମୟରେ ସୁରମାନେ ଏହି ସୁରା ପିଇ ଘୋର ଲଢ଼ାଇ କରିବାରୁ ଅସୁରଗୁଡ଼ାକ ହାରିଯାଇ ପଳାୟନ କଲେ । ଆଉ ହାରୁଆ ଅସୁରଙ୍କ ପରି ଅନେକଗୁଡ଼ାଏ ବ୍ୟାଧି ମଧ୍ୟ ଦେହରୁ ଗୁଡ଼ି ପଳାଇ-ଯାନ୍ତି । ମନରେ କଲି, ମଦ୍ୟପାନ ଜନିତ ଆନନ୍ଦ, ପୁଣି ରୋଗରୁ ମୁକ୍ତିଲାଭ ଏପରି ଉପାୟ ଅପରିହାର୍ଯ୍ୟ, ପ୍ରତ୍ୟୁତ ଆଶୁ କରଣୀୟ । ଶୁଣ୍ଢିକୁ ଡକାଇ ଶୀଘ୍ର ଦ୍ରବ୍ୟ ସଂଗ୍ରହ ନିମନ୍ତେ ଶାସ୍ତ୍ରରୁ ଭାବ ଉଠାଇ ଦେଲି । ହାକମର ହୁକୁମ, ଏଣେ ପୁଣି ଗୋଟାଏ ନୂତନ ବ୍ୟବସାୟ ଶିକ୍ଷା । ଶୁଣ୍ଢି ଦିନ ରାତି ଲାଗି କେତେଟା ଦିନ ମଧ୍ୟରେ ମୃତସଞ୍ଜୀବନୀ ବାହାର କରି ପକାଇଲା । ମୁଁ ପୂର୍ବେ ଲେଖିଅଛି; ସେ ସମୟରେ ଢେଙ୍କାନାଳରେ ବଳାଇ ପିଲାଠାରୁ ମହାଦେବ ପର୍ଯ୍ୟନ୍ତ ସମସ୍ତେ ସୁରାଦେବୀର ଉପାସକ ଥିଲେ । ନୂତନ ଆବିଷ୍କୃତ ଶାସ୍ତ୍ରୀୟ ସୁରା ପ୍ରାପ୍ତ ହୋଇ କେତେ ଲୋକ ଉନ୍ମତ୍ତ ହୋଇ ପଡ଼ିଲେ । ପ୍ରତିଦିନ ସନ୍ଧ୍ୟା ଉତ୍ତାରେ ମୁଁ ମଧ୍ୟ ଅର୍ଦ୍ଧଛଟାଙ୍କି ମାତ୍ରାରେ ପାନ କରିବାକୁ ଲାଗିଲି । ମାତ୍ର ହାୟ ହାୟ ! ଏ କଣ ହେଲା ! ରୋଗମୁକ୍ତ କଥା ତେଣିକି ଥାଉ, ଅର୍ଶ, ଅତିସାର, ଦୌର୍ବଲ୍ୟ ପ୍ରଭୃତି ରୋଗଗୁଡ଼ାକ ଅଧିକ ମାତ୍ରାରେ ବଢ଼ିବାକୁ ଲାଗିଲା । ତଥାପି ପରିତ୍ୟାଗ କରି ପାରିଲି ନାହିଁ । କ୍ଷଣିକ ଯନ୍ତ୍ରଣାର ଅବସାନ ନିମନ୍ତେ ପାନ କରୁଥାଏଁ । ପୁଣି ମଦ୍ୟର ଏମନ୍ତ ଗୋଟାଏ ଆକର୍ଷଣ ଶକ୍ତି ଅଛି, ଥରେ ମାତ୍ର ଅଭ୍ୟାସ କଲେ ନିରୂପିତ ସମୟରେ ମଦ୍ୟଟା ଯେମନ୍ତ ମଦ୍ୟପକୁ ଅଲକ୍ଷ୍ୟ ସୂତ୍ରରେ ଆପଣା ନିକଟକୁ ଟାଣିନିଏ ।

ଏହି ସମୟରେ ଅମଙ୍ଗଳ ଏବଂ ବିପଦ ଗୁଡ଼ାକ ଯେମନ୍ତ ମୋତେ ବେଢ଼ି ଆସୁଥାନ୍ତି । ଦିନେ ସନ୍ଧ୍ୟା ଉତ୍ତାରେ ମୁଁ ବଙ୍ଗଳା ଭିତରୁ ସଦର ବଙ୍ଗଳାକୁ ଆସୁଥିଲି, ମଧ୍ୟରେ ଗୋଟାଏ ସାନ କୋଠରି ଘର ଭିତରେ ବାଟ । ମୁଁ ଯେମନ୍ତ କୋଠରି ଘର ଭିତରେ ପହଞ୍ଚିଛି, ଡାହାଣ ଗୋଡ଼ ପାଖରେ ପ୍ରାୟ ଗୋଟାଏ କଣ ଖସ୍ ଖସ୍ ଶବ୍ଦ ଜଣାଗଲା । ଶବ୍ଦ ବାରିବା ସକାଶେ ପ୍ରାୟ ଦୁଇ ମିନିଟ୍ ପର୍ଯ୍ୟନ୍ତ ଛିଡ଼ା-ହୋଇ ରହିଲି । ଆଉ ଶବ୍ଦ ଶୁଭିଲା ନାହିଁ, ଚାଲିଗଲି । ଦୁଇ ଦିନ ଉତ୍ତାରେ ପ୍ରାୟ ତିନି ହାତ ଲମ୍ବ ଖୁବ୍ ମୋଟା ଗୋଟାଏ ଗୋକ୍ଷୁର ସାପ ଠିକ୍ ସେ ସ୍ଥାନରେ ଘରର ଜଣେ ଲୋକ ମାରି ପକାଇଲା ।

ସେହି ସମୟରେ ମୁଁ ନିତାନ୍ତ ଅର୍ଥଶୂନ୍ୟ ହୋଇ ପଡ଼ିଥିଲି । ମୋହର ଷାଠିଏ ବର୍ଷ ବୟସ ପର୍ଯ୍ୟନ୍ତ ନିଜର ଆୟ ବ୍ୟୟ ବିଷୟ ବୁଦ୍ଧି ନ ଥିଲା । ବାକ୍ସର କଞ୍ଚିକାଠି ଚାକରମାନଙ୍କ ହାତରେ ଥାଏ । ଜମା ଖରଚର ହିସାବ ମଧ୍ୟ ରଖିବାକୁ ବିରକ୍ତ ବୋଧହୁଏ । ଚାକରମାନେ ଦରମା ଟଙ୍କା ତହବିଲରୁ ଆଣି ଖର୍ଚ୍ଚ କରନ୍ତି । ଯବ ଆୟ ତବ ବ୍ୟୟ ହୋଇ ଯାଉଥାଏ । ମୁଁ ନିତାନ୍ତ ଅପରିଣାମଦର୍ଶୀ । ମନେକରେଁ, ଏହିପରି ଆୟ ଚିରକାଳ ହେଉଥିବ । ବାରମ୍ବାର ଅର୍ଥ କୃଚ୍ଛ୍ରତାରେ ପଡ଼ି ମଧ୍ୟ ଚେତନା ହୁଏ ନାହିଁ ।

ଢେଙ୍କାନାଳରେ ମୋ ସ୍ତ୍ରୀ ଦରମା ଟଙ୍କାଟା ହାତରେ ରଖିଥିଲେ । ଉପଯୁକ୍ତରୂପେ ଖରଚ କରି ମଧ୍ୟ ତାଙ୍କ ବାକ୍ସରେ ପ୍ରାୟ ହଜାରେ ଟଙ୍କା ପର୍ଯ୍ୟନ୍ତ ଜମା ହୋଇ ଯାଇଥିଲା । ପ୍ରଥମ ପୁଅଟିର ଜନ୍ମ ସମୟରେ ସେହି ଟଙ୍କାଗୁଡ଼ିକ ମନ ଆନନ୍ଦରେ ଭୋଜି ଏବଂ ଦାନରେ ବ୍ୟୟ କରି ପକାଇ ଅର୍ଥଶୂନ୍ୟ ହୋଇ ବସିଥିଲି । ମୋ ସ୍ତ୍ରୀ ପରିମିତବ୍ୟୟୀ ଥିଲେ । ବୃଥା ଅର୍ଥବ୍ୟୟ କରିବା ସମୟରେ ମୋତେ ବାରମ୍ବାର ଉପଦେଶ ଦେଉଥିଲେ—"ତୁମ୍ଭଙ୍କୁ ସାହାଯ୍ୟ କରିବା ପାଇଁ ଆଗକୁ ପଛକୁ କେହି ନାହିଁ । ଯୋଡ଼ାଏ ପଇସା ମଧ୍ୟ କାହାଠାରୁ ପାଇବାର ଆଶା ରଖ ନାହିଁ । ଅବଶ୍ୟ

ପ୍ରଭୁ ଆମ୍ଭମାନଙ୍କୁ ଯଥେଷ୍ଟ ଅର୍ଥ ଦେଇଅଛନ୍ତି । ଆପଣା ପାଇଁ ଉପଯୁକ୍ତ ରୂପେ ବ୍ୟବହାର କରିବା, ଅସହାୟ ପ୍ରତିବାସୀ କିମ୍ବା ଉପଯୁକ୍ତ ଦରିଦ୍ରମାନଙ୍କୁ ଦାନ କଲା ଉତ୍ତାରେ ବଳକା ଟଙ୍କା ସାଇତି ରଖିବା ଉଚିତ । ନଚେତ୍ ଈଶ୍ୱର ଅସନ୍ତୁଷ୍ଟ ହେବେ । ଆପଣା ଖାଇବା ପିନ୍ଧିବାରେ କୃପଣତା କରି କିମ୍ବା ଦରିଦ୍ର ଲୋକକୁ ସାହାଯ୍ୟ ନ କରି ଟଙ୍କା ସଞ୍ଚୟ କରିବା କଦାଚ ମନୁଷ୍ୟ ପକ୍ଷରେ ଉଚିତ ନୁହେଁ ।'' ଥରେ ନୁହେଁ, ଦୁଇଥର ନୁହେଁ, ଅର୍ଥ ବ୍ୟବହାର ବିଷୟରେ ମୋହର ତାଚ୍ଛଲ୍ୟ ଦେଖିଲେ ପୁନଃ ପୁନଃ ଏହି କଥା ସେ କହୁଥିଲେ ।

ମୁଁ ବର୍ତ୍ତମାନ ମୋ ସ୍ତ୍ରୀଙ୍କ ସମାଧିସମ୍ମୁଖରେ ବସି ଏହି କଥାଗୁଡ଼ିକ ଲେଖୁଅଛି । ତାଙ୍କ କଥିତ ଉକ୍ତ ଉପଦେଶ ଗୁଡ଼ିକ ଯେମନ୍ତ ସମାଧି ଭିତରୁ ବାହାରି ଆସୁଅଛି; ମୁଁ ସେହି କଥାଗୁଡ଼ିକ ଲେଖି ଯାଉଅଛି । ଶେଷ ବୟସରେ ବିଶ୍ୱାସଘାତକ ଚାକରଗୁଡ଼ାକ ମୋତେ ଋଣଗ୍ରସ୍ତ କରିପକାଇବାରୁ ଷାଠିଏ ବର୍ଷ ବୟସ ଉତ୍ତାରେ ସ୍ତ୍ରୀଙ୍କ ଉପଦେଶ ଅନୁସାରେ ଆୟ ବ୍ୟୟର ସମସ୍ତ ହିସାବ ସ୍ୱହସ୍ତରେ ରଖିବାରୁ ରକ୍ଷା ପାଇଅଛି । ମୋ ସ୍ତ୍ରୀଙ୍କର ଅଳଙ୍କାର ବିକ୍ରୟ ଲବ୍ଧ ଅର୍ଥ ଏବଂ ତାଙ୍କ ନାମରେ କିମ୍ବା ତାଙ୍କ ମନୋରଞ୍ଜନ ସକାଶେ ଯେଉଁ ସମ୍ପତ୍ତି ଗୁଡ଼ିଏ କରି ପକାଇଥିଲି, ସେଥିରୁ ସାମାନ୍ୟ ଆୟ ମୋହର ଶେଷ ଦୁର୍ବଳ ଅସହାୟ ଜୀବନ ରକ୍ଷାର ଏକମାତ୍ର ଅବଲମ୍ବନ ।

ମୋହର ପ୍ରଚ୍ଛନ୍ନ ଶତ୍ରୁ ଖାନ୍‌ସମା ତଥାକଥିତ ରାଜାଙ୍କ ବ୍ରାହ୍ମଣ ପୁତ୍ର ଏବଂ କଚିରିର ମହାଫିସ୍‌ର ନାମ ପୂର୍ବେ ଉଲ୍ଲେଖ କରିଅଛି । ଖାନ୍‌ସମାକୁ ବନ୍ଧୁତୁଲ୍ୟ ଜ୍ଞାନ କରୁଥିଲି । ଅନେକଥର ମୋ ଘରକୁ ନିମନ୍ତ୍ରଣ-କରେଁ, ସେ ମଧ୍ୟ ପଶା ଖେଳିବା ନିମନ୍ତେ ମୋ ନିକଟକୁ ସମୟ ସମୟରେ ଆସୁଥିଲେ । ପୂର୍ବ କମିଶନରଙ୍କ ନିଯୁକ୍ତ ଢେଙ୍କାନାଳ ରାଜାଙ୍କର ଇଞ୍ଜିନିୟର ମିଷ୍ଟର ମେଜ୍ ଏବଂ ଓଭରସିଅର ପଦଚ୍ୟୁତ ହୋଇଯିବାରୁ ମୋତେ ବିପଦରେ ପକାଇ ତାମସା ଦେଖିବା ସକାଶେ ଖାନ୍‌ସମା ଏବଂ ମହାଫିସ୍ ଦୁଇଜଣ ମୋ ନାମରେ କମିଶନର ସାହେବଙ୍କ ନିକଟକୁ ବେନାମିରେ ଦରଖାସ୍ତ ପଠାଇବାକୁ ଲାଗିଲେ । ଦରଖାସ୍ତର ମର୍ମ, ମୁଁ ଚାକିରି ପ୍ରାର୍ଥୀମାନଙ୍କ ନିକଟରୁ ଉତ୍କୋଚ ଗ୍ରହଣ କରିଥାଏଁ ।

ବେନାମି ଦରଖାସ୍ତ ହାକିମମାନେ ଗ୍ରହଣ କରନ୍ତି ନାହିଁ; ମାତ୍ର ମୋ ନାମ ସମ୍ପର୍କ ଥିବାରୁ ଦରଖାସ୍ତ ଲିଖିତ ବିଷୟ ତଦନ୍ତ ନିମନ୍ତେ ଆ: ସୁ. ରାୟ ନନ୍ଦକିଶୋର ଦାସ ବାହାଦୁର ଆସିଲେ । ଅପକ୍ଷ-ପାତରେ ତଦନ୍ତ କରିବାରୁ ସ୍ପଷ୍ଟ ସାବ୍ୟସ୍ତ ହେଲା; ଦରଖାସ୍ତ ଲିଖିତ ବିଷୟ ସର୍ବୈବ ମିଥ୍ୟା ଅଟେ । ନନ୍ଦକିଶୋର ବାବୁ ଏବଂ ମ୍ୟାନେଜର ବନମାଳୀ ବାବୁ ଦୁଇଜଣ ଏକତ୍ର କମିଶନର ସାହେବଙ୍କ ସହିତ ମୋ ସମ୍ବନ୍ଧରେ କଥୋପକଥନ ସମୟରେ କହିଲେ, "Phakir Mohan Baboo is a very honest man"—('ଫକୀରମୋହନ ବାବୁ ସାଧୁ ପ୍ରକୃତିର ଲୋକ') ମାତ୍ର ସାହେବ କହିଲେ, 'I have no faith inthe man"—('ସେହି ଲୋକ ପ୍ରତି ମୋହର ବିଶ୍ୱାସ ନାହିଁ ।') କାରଣ ମୁଁ ମହାତ୍ମା ଜନ୍ ବିମ୍‌ସଙ୍କ ନିଯୁକ୍ତ ଲୋକ । ବେନାମି ଦରଖାସ୍ତ-ଗୁଡ଼ିକ ବ୍ୟର୍ଥ ହୋଇଯିବାରୁ ଗୋଟିଏ ସ୍ୱନାମି ଜୀବନ୍ତ ମନୁଷ୍ୟ ସ୍ୱୟଂ କମିଶନର ସାହେବଙ୍କ ନିକଟରେ ଉପସ୍ଥିତ ହୋଇ, ମୁଁ ତାହାଠାରୁ କେତେକ ଶତଟଙ୍କା ଉତ୍କୋଚ ନେଇଥିବାର ଦରଖାସ୍ତ ଦାଖଲ କଲା । ସାହେବ ସ୍ୱୟଂ ତଦନ୍ତ କରିବାକୁ ଲାଗିଲେ । ମୁଁ ନ୍ୟାଯ୍ୟ ରୂପେ ତାହାର ମକଦ୍ଦମା ଗୁଡ଼ିକ ଡିସ୍‌ମିସ୍ କରି ଦେଇଥିବାରୁ ଲୋକଟା କ୍ରୋଧପରବଶ ହୋଇ ମୋ ନାମରେ ମିଥ୍ୟା ମାମଲା ଆଣିଥିବାର ତଦନ୍ତରେ ସୁସ୍ପଷ୍ଟରୂପେ ପ୍ରକାଶିତ ହେଲା । ଇଂରେଜ ହାକିମ

ସହଜରେ ନ୍ୟାୟ ବିଚାରରୁ ବିଚଳିତ ହୁଅନ୍ତି ନାହିଁ । ସେହି ଦରଖାସ୍ତକାରୀ ଦଣ୍ଡବିଧି ଆଇନର ୨୧୧ ଦଫାରେ ଅର୍ଥାତ୍ ମିଥ୍ୟା ମାମଲା କରିଥିବା ବିଷୟରେ ଅଭିଯୁକ୍ତ ହେଲା । ମ୍ୟାନେଜର ବନମାଳୀ ବାବୁ ପୀଡ଼ିତ ଥିବାରୁ ଛ ମାସ ସକାଶେ ଛୁଟି ନେଲେ । ଅନ୍ୟ ଜଣେ ବାବୁ ତାହାଙ୍କର ପ୍ରତିନିଧି ସ୍ୱରୂପ ନିଯୁକ୍ତ ହୋଇ ଆସିଲେ ।

ବର୍ତ୍ତମାନ ସରକାର ଅଫିସରେ ଚଳୁଥିବା ଆଭ୍ୟନ୍ତରିଣ ଅବସ୍ଥା ତାଙ୍କୁ ଭଲ ଜଣା ଥିଲା; ପୁଣି ସେ ଅତ୍ୟନ୍ତ ଉନ୍ନତି ପ୍ରୟାସୀ ଥିଲେ । ସେ ଭଲରୂପେ ବୁଝିଥିଲେ ଯେ, ଜନ୍ ବାମ୍ସଙ୍କ ନିଯୁକ୍ତ କର୍ମଚାରୀମାନଙ୍କ ଦୋଷ ଦେଖାଇ ପାରିଲେ ତାଙ୍କ କର୍ମଠତା ପ୍ରକାଶ ପାଇବ; ସୁତରାଂ ପଦୋନ୍ନତିର ସମ୍ଭାବନା । ଏପରି ସୁଯୋଗ ସାଧାରଣ ମନୁଷ୍ୟ ପକ୍ଷରେ ସହଜରେ ପରିତ୍ୟାଗ କରିବାର କଥା ନୁହେଁ । ସେ ମୋ ଦୋଷ ଅନ୍ୱେଷଣ କରିବାକୁ ଲଗିଲେ । ମ୍ୟାନେଜର ବାବୁ ସର୍ବଦା ମୋ ବସାକୁ ଯା ଆସ କରନ୍ତି । ଅନେକ ଦିନ ଏକତ୍ର ଆହାରାଦି ହୁଏ । ସେ ଯେ ଅକାରଣ ମୋହର ବିପକ୍ଷତା କରିବେ, କୌଣସିରୂପେ ମୋ ମନରେ ଉଦୟ ହୋଇ ନ ଥିଲା; ମାତ୍ର ମୋହର ବୁଝିବା ଉଚିତ ଥିଲା, ସ୍ୱାର୍ଥର ଶକ୍ତି ଭୟଙ୍କର ବଳବାନ୍ । ବନ୍ଧୁତା ବା ନ୍ୟାୟପରତା ତାହାର ମାର୍ଗ ଅବରୋଧ କରିବାକୁ ସମର୍ଥ ହୋଇ ପାରନ୍ତି ନାହିଁ । ବାବୁ ରାଧାନାଥ ରାୟ ସେ ସମୟରେ ଉତ୍କଳର ସ୍କୁଲ ବିଭାଗର ଜଏଣ୍ଟ ଇନ୍‌ସପେକ୍ଟର । ଗଡ଼ଜାତ ରାସ୍ତାକୁ ବାହାରିଲେ ଯିବା ଆସିବା ସମୟରେ ମୋ ବସାରେ କେତେକଦିନ ରହିଯାନ୍ତି । ସେ ମ୍ୟାନେଜର ବାବୁଙ୍କ ମନର ଭାବ କୌଣସି ସୂତ୍ରରେ ଜାଣି ପାରିଥିଲେ । ତାଙ୍କ ସହିତ କଥୋପକଥନରୁ ମୁଁ ସେଥିର କିଞ୍ଚିତ୍ ଆଭାସ ପାଇଥିଲି । ଠିକ୍ ସେହି ସମୟରେ ଶିକାର କପରି କରିବାକୁ ହୁଏ, ଦେଖାଇବା ସକାଶେ ରାଧାନାଥ ବାବୁଙ୍କୁ ସଙ୍ଗରେ ଘେନି ଜଙ୍ଗଲକୁ ଗଲି ।

ଗୋଟିଏ ଜଙ୍ଗଲ ଘେରାଉ କରାଗଲା । କେତେକ ଜଣ ସଙ୍ଗୀ ଶିକାରୀ ସ୍ଥାନେ ସ୍ଥାନେ ଘାଟ ଜଗି ବସିଗଲେ । ବାଘ କମ୍ବା ଭାଲୁ ଶିକାର କରିବାକୁ ହେଲେ ଗଛ ଉପରେ କମ୍ବା ଭାଡ଼ ବାନ୍ଧି ଉଚ୍ଚସ୍ଥାନରେ କମ୍ବା ପାହାଡ଼ିଆ ଜାଗାରେ ଶିକାରୀଙ୍କୁ ପ୍ରଚ୍ଛନ୍ନ ଭାବରେ ବସିବାକୁ ହୁଏ । ଦୈବଗତ୍ୟା ମୋତେ ସେଦିନ ବସିବାପାଇଁ ଉପଯୁକ୍ତ ସ୍ଥାନ ମିଳିଲା ନାହିଁ । ରାଧାନାଥ ବାବୁ ଓ ମୁଁ ଦୁଇଜଣ ଗୋଟାଏ କ୍ଷୁଦ୍ର ବଣ ମଧ୍ୟରେ ଭୂମିରେ ବସି ରହିଲୁ । କାଳୁଆ (ବଣଘଉଡ଼ାମାନେ) ସମ୍ମୁଖସ୍ଥ ଜଙ୍ଗଲର ଏକ ମାଇଲ ଦୂରରୁ ଜଙ୍ଗଲ ବାଡ଼େଇ ଆସିଲେ । ଗୋଟାଏ ଭୟଙ୍କର ଅତି ବୃହତ୍ ଭାଲୁ ଆମ୍ଭମାନଙ୍କ ସମ୍ମୁଖ ପ୍ରାୟ ପାଞ୍ଚ ଛ ହାତ ଦୂରରେ ହଠାତ୍ ବାହାରି ପଡ଼ିଲା । ଆମ୍ଭେମାନେ ଯେଉଁସ୍ଥାନରେ ବସିଥିଲୁ, ଠିକ୍ ସେହି ବାଟେ ପଳାଇବା ସେହି ହିଂସ୍ର ପଶୁର ଲକ୍ଷ୍ୟ ଥିଲା । ଆମ୍ଭମାନଙ୍କ ଉପରେ ପଡ଼ିବାକୁ ଅର୍ଦ୍ଧମିନିଟ ବା ତହିଁରୁ ଅଳ୍ପ ସମୟ ବାକି । ଭାଲୁର ଶବ୍ଦ ପାଇଥିଲି, ମାତ୍ର ଲକ୍ଷ୍ୟ ଥିଲା ଦୂରକୁ, ଏତେ ନିକଟରେ ଭାଲୁ ଅଛି ବୋଲି ଜଣା ନ ଥିଲା । ଭାଲୁକୁ ଦେଖି ବନ୍ଧୁକ ଉଠାଇଅଛି, ଭାଲୁ ମଧ୍ୟ ଆମ୍ଭମାନଙ୍କୁ ଦେଖି ଉହାଡ଼କୁ ପଳାଇଗଲା । ସେ ସମୟରେ ଯେପରି ଅବସ୍ଥା, ଭାଲୁର ଆକ୍ରମଣ ଆଉ ମୋହର ବନ୍ଧୁକ ଚାଳନା ଏକ ସଙ୍ଗରେ କମ୍ବା ଦୁଇଚାରି ସେକେଣ୍ଡ ଆଗ ପଛ ହୋଇଥାନ୍ତା । ଉତ୍କଳରେ ରାଧାନାଥ ଗ୍ରନ୍ଥାବଳୀ ବାହାରିବାର କଥା, ତୁଚ୍ଛ ଭାଲୁଟା କି ବାଧା ଦେଇପାରେ ? ରାଧାନାଥଙ୍କ ପୁଣ୍ୟବଳରୁ ଏହି ତୁଚ୍ଛ ଲେଖକଟା ମଧ୍ୟ ରକ୍ଷାପାଇଗଲା ।

ଅସାମୟିକ, ଅପ୍ରାସଙ୍ଗିକ ହେଲେ ମଧ୍ୟ ଏ ସ୍ଥାନରେ ଆଉ ଗୋଟିଏ ଦିନର ଘଟଣା ଲେଖିବି ।

ପାଠକ ଆପଣେ ଏହି ପୁସ୍ତକର ଅନେକ ସ୍ଥାନରେ ଅସାମୟିକ ଓ ଅପ୍ରାସଙ୍ଗିକ ବିବରଣ ପାଇବେ ।

ରେଲ ଚଳିବା ପୂର୍ବେ ଲୋକେ କେନାଲ ଇଷ୍ଟିମର ଯୋଗେ କଟକ—ବାଲେଶ୍ୱର ଯା ଆସ କରୁଥିଲେ । ସେ ସମୟରେ ମୁଁ ଦଶପଲ୍ଲାର ଦେବାନ, ଛୁଟୀରେ ଘରକୁ ଆସିଥିଲି । ରାଧାନାଥବାବୁ ମଫସଲ ଗସ୍ତରୁ ତାଙ୍କ ପ୍ରଧାନ କର୍ମସ୍ଥାନ କଟକ ବାହୁଡ଼ି ଯିବାର କଥା; ମୋହର ମଧ୍ୟ ଅବକାଶ ସମୟ ସମାପ୍ତ, କର୍ମସ୍ଥାନକୁ ଯିବି । ଦୈବାତ୍ ବାଲେଶ୍ୱର ନଦୀ ଇଷ୍ଟିମର ଘାଟରେ ଉଭୟଙ୍କର ପରସ୍ପର ସାକ୍ଷାତ ହେଲା । ପୂର୍ବାହ୍ନ ପ୍ରାୟ ଦଶ ଘଣ୍ଟା ସମୟରେ ଇଷ୍ଟିମରରେ ବସି କଟକ ଯାତ୍ରା କଲୁଁ । ରାତ୍ରି ପ୍ରାୟ ପହରେ, ଇଷ୍ଟିମର ମତାଇ ନଦୀ ପାର ହୋଇ ଯେମନ୍ତ ଧାମରା ନଦୀରେ ପ୍ରବେଶ କରିଛି, ଘୋର ବୃଷ୍ଟି ସହିତ ତୋଫାନ ଆରମ୍ଭ ହେଲା । ଘଡ଼ିଆମାଳ ନଦୀର ଉତ୍ତାଳ-ତରଙ୍ଗାଘାତରେ କ୍ଷୁଦ୍ର କେନାଲ ଇଷ୍ଟିମର ଖଣ୍ଡିକ ଅସ୍ଥିର ବିଶୃଙ୍ଖଳ ଭାବରେ ଇତସ୍ତତଃ ବିକ୍ଷିପ୍ତ ହେଉଥାଏ । ଏହି ବୁଡ଼ିଲା, ଏହି ବୁଡ଼ିଲା ! ଆରୋହୀମାନେ ଭୟରେ କାତର ହୋଇଗଲେଣି, ଘଡ଼ିଆମାଳ ସ୍ୱତନ୍ତ୍ର ନଦୀ ନୁହେଁ । ବ୍ରାହ୍ମଣୀ, ବୈତରଣୀ, ସାଳନ୍ଦୀ, ମତାଇର ସମୁଦ୍ର ମୁହାଣ ସହିତ ଏକତ୍ର ଯୋଗସ୍ଥାନର ନାମ ଘଡ଼ିଆମାଳ । ନାଉରୀମାନେ ଏ ସ୍ଥାନକୁ ବଡ଼ ଭୟ କରନ୍ତି । ସେମାନଙ୍କ ମଧ୍ୟରେ ଗୋଟାଏ ଚଳିତ କଥା ଅଛି, "ଯେବେ ପାରି ହେବୁ ଘଡ଼ିଆମାଳ, ଆଉ ଘରୁ ନଣ୍ଡ × × × ।" ପୁଣି ପୃଥିବୀର ସମସ୍ତ କୁମ୍ଭୀରଙ୍କର ଏଇଟା ଯେମନ୍ତ ଖଟି ସ୍ଥାନ । ଲୋକେ କହନ୍ତି, "ମତାଇ ନଈକୁ ପରତେ ନାହିଁରେ ପାଟରୁ କୁମ୍ଭୀର ଖାଏ ।" ଏଇଟା ହେଲା ମତାଇର ମୁହାଣ । ରାଧାନାଥ ବାବୁ ଆଉ ମୁଁ ଦୁଇଜଣ ମାତ୍ର ସେକେଣ୍ଡ କ୍ଲାସ ପାସେଞ୍ଜର କେବିନ ଭିତରେ, ଆଉ କେହି ନାହିଁ । ରାଧାନାଥ ବାବୁ ତ ଏକାବେଳକେ ଜୀବନ ଆଶା ପରିତ୍ୟାଗ କରି ବସିଲେଣି । ସେ ସମୟର ତାଙ୍କର ସ୍ୱରୂପଟି ସୁସ୍ପଷ୍ଟରୂପେ ବର୍ତ୍ତମାନ ପର୍ଯ୍ୟନ୍ତ ମୋ ହୃଦୟରେ ଚିତ୍ରିତ ରହିଅଛି । ଶୀତ ଲାଗୁଥିବାରୁ ପିନ୍ଧିଲା ଲୁଗା ଖଣ୍ଡିକ କୁଞ୍ଚ ପିଟାଇ ଘୋଡ଼ି ହୋଇ ଅଛନ୍ତି । ଗୁଡ଼ାଏ ଆପୁ ଚଞ୍ଚଳ ଲୁଗା କାନରେ ବାନ୍ଧି ପକାଇଲେ । ସତର ଅଠର ବର୍ଷ ବୟସ ସମୟରେ ତାଙ୍କୁ ଯକ୍ଷ୍ମାରୋଗ ଆକ୍ରମଣ କରିଥିଲା । ଯାବଜ୍ଜୀବନ ନିୟମିତ ରୂପେ ଆପୁସେବନ କରିବା ନିମନ୍ତେ ଡାକ୍ତର କବିରାଜମାନେ ତାଙ୍କୁ ଉପଦେଶ ଦେଇଥିଲେ । ରାଧାନାଥବାବୁ ଯେମନ୍ତ ସମ୍ପୂର୍ଣ୍ଣରୂପେ ଜୀବନାଶା ପରିତ୍ୟାଗ କରି କେବଳ ଇଷ୍ଟିମର ବୁଡ଼ିବା ସମୟକୁ ଅପେକ୍ଷା କରି ନିର୍ଜୀବ ଭାବରେ ଛିଡ଼ା ହୋଇଥାନ୍ତି । ଇଷ୍ଟିମରର କୌଣସି ଦିଗରୁ କିଛି ଶବ୍ଦ ଆସିଲେ ଚମକି ପଡ଼ି ସେହି ଦିଗକୁ ଚାହାନ୍ତି । ସେହି ଦିଗରୁ ଇଷ୍ଟିମର ବୁଡ଼ିଲା ପରି ! ସମୟ ସମୟରେ ଅର୍ଥଶୂନ୍ୟ ଭାବରେ ମୋ ମୁହଁକୁ ଅନାଇ ଥାନ୍ତି । ତାଙ୍କ ଲୁଗା ଘୋଡ଼େଇ ହେବା, ଆପୁ ଲୁଗା ଗଣ୍ଠିରେ ବାନ୍ଧିବା ଦେଖି ସେ ସମୟରେ ମଧ୍ୟ ମୋତେ ଟିକିଏ ହସ ମାଡ଼ୁଥିଲା । ଆମ୍ଭେମାନେ ତ ବର୍ତ୍ତମାନ ପାଣିରେ ବୁଡ଼ିବୁ, ଲୁଗା ଘୋଡ଼େଇ ହେଲେ କ'ଣ ହେବ । ରାଧାନାଥ ବାବୁଙ୍କର ମହାଯାତ୍ରା ଲେଖିବା କାର୍ଯ୍ୟ ବାକି ଥିଲା, ସୁତରାଂ ତାହାଙ୍କର ମହାଯାତ୍ରା ହେଲା ନାହିଁ । ମୁଁ ମଧ୍ୟ ତାଙ୍କ ପୁଣ୍ୟବଳରୁ ସେ ଯାତ୍ରା ରକ୍ଷା ପାଇଗଲି । ଏକଥା ଲେଖି ପାଠକ ମହାଶୟଙ୍କୁ ଜଣାଇବା ନିଷ୍ପ୍ରୟୋଜନ ।

କେବଳ ଏହି ଥରକ ନୁହେଁ, ପ୍ରଭୁଙ୍କ ପ୍ରସାଦରୁ ମୁଁ ଅନେକଥର ମୃତ୍ୟୁ ଯାତ୍ରାରୁ ରକ୍ଷା ପାଇଅଛି । ସେଥିର ତାଲିକା ଏହି—ତିନିଥର ଗୋକ୍ଷୁର ସାପ ମୁଖରୁ, ଥରେ ଭାଲୁ ମୁଖରୁ, ଥରେ ଆରଣ୍ୟ ମତ୍ତହସ୍ତିଠାରୁ, ଦୁଇ ଥର ଭଲ୍ଲୁକ ଆକ୍ରମଣରୁ, ଥରେ ବନଗୟଳ ଦଳରୁ, ଥରେ ମନୁଷ୍ୟ ହସ୍ତସ୍ଥ ଛୁରିରୁ, ଥରେ ମନୁଷ୍ୟ ହସ୍ତସ୍ଥ ଖଡ଼୍‌ଗରୁ, ଥରେ ବିଷ ପାନରୁ, ଦୁଇଥର ଜାହାଜ ଡୁବିରୁ ରକ୍ଷା ପାଇଅଛି ।

(ଉ: ସା: ୨୦ଶ ଭାଗ-୧ମ ସଂଖ୍ୟା)

———

## ଡେଙ୍କାନାଲରେ ଆସିଷ୍ଟାଣ୍ଟ ମ୍ୟାନେଜରୀ (୪)

ଇତ୍ୟବସରରେ ଅନ୍ୟ ଥର ଜାହାଜ ଡୁବି ଆଉ ବିଷପାନ କଥାଟା ଲେଖି ପକାଏଁ । ଅସାମୟିକ ଓ ଅପ୍ରାସଙ୍ଗିକ ଏହି ଉତ୍କଟ ଦୋଷ ଯୋଡ଼ାକ ପାଠକ ଆପଣେ ଏହି ସାମାନ୍ୟ ପୁସ୍ତକ ମଧ୍ୟରେ ଅନେକ ସ୍ଥାନରେ ଭେଟିବେ । ପୂର୍ବେ ଏ ବିଷୟ ଆପଣମାନଙ୍କୁ ଜଣାଇ ଦେଇଅଛି ।

ଖ୍ରୀ: ୧୮୬୭ କ ୬୮ ସାଲରେ କଲକତା ଯିବାର ପ୍ରଥମଥର । ସେ ସମୟରେ ବାଲେଶ୍ୱରବାସୀ ଇଷ୍ଟିମର ନାମ ମାତ୍ର ଶୁଣିଥିଲେ । ବାଲେଶ୍ୱର ନଦୀକୁ ଇଷ୍ଟିମର ସ୍ପର୍ଶ କରି ନ ଥିଲେ । ବାଲେଶ୍ୱରବାସୀ କଲକତାକୁ ବଡ଼ ସଡ଼କ ଦାଣ୍ଡରେ ଯା-ଆସ କରୁଥିଲେ । ବାଲେଶ୍ୱରଠାରୁ କଲକତା ଛ' ଦିନର ବାଟ । ମୁଁ ଆଉ ଗ୍ରାମବାସୀ ଅନ୍ୟ ତିନିଜଣ ଏପରି ଚାରିଜଣ ମିଶି କଲକତା ଯାଉଥିଲୁଁ । ଯିବା ସମୟରେ ଶଗଡ଼ରେ କଚଡ଼ାକଚଡ଼ ଆଉ ଚଟିଘରେ ରୋଷାଇ କରି ଖିଆପିଆରେ ବଡ଼ କଷ୍ଟ ହୋଇଥିଲା । ବାହୁଡ଼ିବା ସମୟରେ ସଡ଼କ ଦାଣ୍ଡରେ ନ ଆସି ବାଲେଶ୍ୱର ସହରବାସୀ ଜଣେ ମହାଜନଙ୍କର ଖଣ୍ଡେ ବାଲେଶ୍ୱରୀ ଜାହାଜ ବାଲେଶ୍ୱର ଆସୁଥିବାର ଦେଖି ସେହି ଜାହାଜରେ ଚଢ଼ି ବାଲେଶ୍ୱରକୁ ବାହାରିଲୁଁ । ଗଙ୍ଗାନଦୀ ଅତିକ୍ରମ କରି ସମୁଦ୍ରରେ ପଡ଼ିବାକୁ ତିନିଦିନ ଗତ ହେଲା । ଚତୁର୍ଥ ଦିନ ସନ୍ଧ୍ୟା ସମୟରେ ଗଙ୍ଗାସାଗର ବତୀଘର ସଳଖା ସଳଖି ଜାହାଜ ନଙ୍ଗର କରି ରହିଲା । ରାତି ଅଧାଅଧି ସମୟରେ ଭୟଙ୍କର ବୃଷ୍ଟି ସହିତ ତୋଫାନ ଆରମ୍ଭ ହେଲା । ଦଶ ବାର ହାତ ଉଚ୍ଚ ସମୁଦ୍ରରୁ ଢେଉଗୁଡ଼ାକ ଆସି ଜାହାଜଟାକୁ ଖଣ୍ଡେ ସାମାନ୍ୟ ସୋଲ ପରି ଦୂରକୁ ଫୋପାଡ଼ି ଦେଉଥାଏ, ଯୋଡ଼ାଏ ନଙ୍ଗର ଜାହାଜଟାକୁ ଧରି ରଖି ପାରୁ ନ ଥାଏ । ବେଳେ ବେଳେ ଢେଉ ଉପରକୁ ଜାହାଜଖଣ୍ଡି ଉଠେ ପୁଣି ଦଶହାତ ଗର୍ତ୍ତର ଜଳରେ ପଡ଼ି ଯାଉଥାଏ । ଥରକୁ ଥର ଜାହାଜ ଉପରକୁ ପାଣି ଉଠି ଯାଉଥାଏ । ତଳେ ଚଢ଼ି ଯିବା-ବେଳେ ଜଣାଯାଏ, ଏହି ଥର ଜାହାଜ ରସାତଳକୁ ଗଲା, ଆଉ ଉଠିବ ନାହିଁ; ପରମୁହୂର୍ତ୍ତରେ ତାଳଗଛ ଉଚ୍ଚ ପ୍ରମାଣ ଜଳ ଉପରକୁ ଭାସି ଉଠେ । ସେହି ସମୟରେ ମାଝି, ଖଲାସୀ, ତଣ୍ଡେଲ ପ୍ରଭୃତି ଜାହାଜର କର୍ମଚାରୀମାନେ ଜାହାଜରକ୍ଷା ବିଷୟରେ ନିରାଶ ହୋଇ କେବଳ ହାତ ଯୋଡ଼ି ଚିତ୍କାର କରୁଥାନ୍ତି । ମା ଝାଡ଼େଶ୍ୱରୀ, ବାବା କଦମରସୁଲ, ହେ ଦରିଆ ପୀର, ରକ୍ଷାକର ରକ୍ଷାକର, ପ୍ରାଣ ବଞ୍ଚାଅ । ଆହୁରି ମଧ୍ୟ ଢେର ଦେବାଦେବୀ ନାମ ଧରି ରଡ଼ି କରୁଥାନ୍ତି । ବୋଧ କରେଁ, ସେମାନଙ୍କ ଅଭିପ୍ରାୟ, ସବୁ ଦେବତାଙ୍କୁ ଡାକଲେ କେହି ହେଲେ ରକ୍ଷା କରିବେ । ମୁଁ ଜାହାଜ ଛାତ ଉପରେ ନିଶ୍ଚିନ୍ତ ମନରେ ଛିଡ଼ା ହୋଇ ଜାହାଜର ଗତି ଏବଂ ମାଝି ଖଲାସିମାନଙ୍କ ବ୍ୟାକୁଳ ଅବସ୍ଥା ଦେଖୁଥାଏଁ, ମନରେ କରୁଥାଏଁ, ମରିଗଲେ କୁଆଡ଼େ କପରି ଯିବି, ବର୍ତ୍ତମାନ ଦେଖାଯିବ ।

ଆମ୍ଭମାନଙ୍କ ଗ୍ରାମରୁ ଗୋଟିଏ ପିଲା ମୋ ସାଙ୍ଗରେ ଯାଇଥିଲା, ସେହି ସମୟରେ ମୋ ସମ୍ମୁଖ ବାଟେ ସେ ଗଡ଼ିଗଲା । ସେ ପିଲାଟାକୁ ଦେଖି ଅସ୍ଥିର ହୋଇ ପଡ଼ିଲି । ପିଲାଟା ତାହାର ମାତାର ଏକମାତ୍ର ପୁତ୍ର, କଲକତା ଯିବା ସମୟରେ ତାହାର ମାତା କାନ୍ଦି କାନ୍ଦି ତାହାର ପୁତ୍ରର ହାତ ଧରି ମୋ ହାତରେ ସମର୍ପି ଦେଇଥିଲା । ପିଲାଟିକୁ ବିଦେଶରେ ରକ୍ଷା କରିବା ସକାଶେ ବାରମ୍ବାର ଅଙ୍ଗୀକାର କରିଥିଲି । ସେ କଥାଟା ମନରେ ପଡ଼ିଗଲା । ମନରେ କଲି, ହାୟ ହାୟ ! ପିଲାଟା ତ ବର୍ତ୍ତମାନ ମରିଯିବ, ତାହାର ମା ଶୁଣିଲେ କେତେ କାନ୍ଦିବ ! ପ୍ରଭୁଙ୍କ କୃପାରୁ ହଠାତ୍ ତୋଫାନ ବନ୍ଦ ହୋଇଗଲା । ତୋଫାନ ଆଉ ପାଣି ଘଣ୍ଟାଏ ମାତ୍ର ସ୍ଥାୟୀ ହୋଇଥିଲେ ଜାହାଜ ରକ୍ଷା ପାଇବାର କୌଣସି ପ୍ରକାର ସମ୍ଭାବନା ନ ଥିଲା ।

ଖ୍ରୀଷ୍ଟାବ୍ଦ ୧୯୦୯ ସାଲର ଜୁନ କ ଜୁଲାଇ ମାସ । ହଠାତ୍ ସଖାଳେ ମୋର ଉଦରପୀଡ଼ା ଜାତ ହୋଇ ତିନି ଚାରିଥର ଝାଡ଼ା ହୋଇଗଲା । ମୋହର ଗୁମାସ୍ତା ପୂର୍ବରୁ ଶୁଣିଥିଲେ, ଏପରି ଅବସ୍ଥାରେ ଗନ୍ଧକ ଦ୍ରାବକ ଖାଇଲେ ଶରୀର ସୁସ୍ଥ ହୋଇଯାଏ । ଆମ୍ଭମାନଙ୍କ ପ୍ରତିବାସୀ ସରକାରୀ ଓକିଲ ଏବଂ ଜମିଦାର ଭୂୟାଁ ଅବଦୁଲ ଯୋଗାନ ଖାଁଙ୍କ ଘରେ ଗନ୍ଧକ ଦ୍ରାବକ ଥାଏ । ସେ ସ୍ଥାନରୁ ପୀଡ଼ାଗ୍ରସ୍ତ ଲୋକେ ନେଇ ସେବନ କରନ୍ତି । ଅଜୀର୍ଣ୍ଣ ଜନିତ ଝାଡ଼ା ବେମାରରେ ଗନ୍ଧକ ଦ୍ରାବକ ସେବନ କଲେ ଶରୀର ସୁସ୍ଥ ହୋଇଯାଏ । ମାତ୍ର କେତେ ମାତ୍ରାରେ କପରି ଭାବରେ ସେବନ କରିବାକୁ ହୁଏ, ଏ କଥା ତାଙ୍କୁ ଅଜଣା । ମୋହର ଗୋଟିଏ ପ୍ରିୟତମ ନାତି ଏବଂ ଗୁମାସ୍ତା ଦୁଇଜଣ ଭୂୟାଁଙ୍କ ଘରୁ ଛଟାଙ୍କିଏ ଅନ୍ଦାଜ ଗନ୍ଧକ ଦ୍ରାବକ ନେଇ ଆସିଲେ । ମୁଁ ଘର ମଧ୍ୟରେ ଗୋଟାଏ ପଲଙ୍କ ଉପରେ ପଡ଼ି ଖଣ୍ଡେ ପୁସ୍ତକ ପଢ଼ୁଥିଲି, ଗୁମାସ୍ତା ଉପସ୍ଥିତ ହୋଇ କହିଲେ, ଆପଣ ଆଖି ବୁଜି ଏହି ଔଷଧ ସମସ୍ତଟା ଚୋପ୍ କରି ପିଇ ଦେଉନ୍ତୁ, ସାବଧାନ ଥିବେ, ଯେମନ୍ତ ଦାନ୍ତରେ ନ ଲାଗେ ।

ସେ ସମୟକୁ ପ୍ରାୟ ଚାଳିଶ ବର୍ଷ ପୂର୍ବରୁ ମୁଁ ଏଲୋପ୍ୟାଥିକ୍ ଔଷଧ ପରିତ୍ୟାଗ କରିଥିଲି । ବର୍ତ୍ତମାନ ଗୁମାସ୍ତାଦତ୍ତ ଔଷଧଟା ଦେଶୀ କି ବିଲାତି, କେଉଁଠାରୁ ଆସିଲା, କଏ ଦେଲା, କିଛି ପଚାରିଲି ନାହିଁ । ପୁସ୍ତକ ପାଠରେ ମନ ଲାଗିଥାଏ, କୌଣସି ପ୍ରକାରେ ଔଷଧଟା ପିଇଦେଲେ ପଢ଼ିବାରେ ଲାଗିବି, ଏହି ଇଚ୍ଛା । ଗୁମାସ୍ତାଙ୍କ ମୁହଁକୁ ନ ଅନାଇ ଡାହାଣ ହାତ ବଢ଼ାଇ ଦେଇ ଔଷଧ କପ୍‌ଟା ହାତକୁ ନେଲି—ଉଠି ବସି ଏକ ତୋଳା ଅନ୍ଦାଜ ପିଇ ଦେଇଅଛି, ବୋଧ ହେଲା, ଯେମନ୍ତ କି ଅଗ୍ନିମୟ ତରଳ ଧାତୁସ୍ରୋତ ଗୋଟାଏ ପ୍ରବଳବେଗରେ କଲିଜା ପର୍ଯ୍ୟନ୍ତ ଧାଇଁଗଲା । ସର୍ବାଙ୍ଗ ଜ୍ୱଳନ୍ତା ଅଗ୍ନିରେ ଭାଜି ହେଉଥିବା ପରି ଜଣାଗଲା । ଚିତ୍କାର କରି ପଲଙ୍କ ଉପରୁ ତଳକୁ ଡେଇଁ ପଡ଼ିଲି । ଭୂଇଁରେ ପଡ଼ି ଗଡ଼ୁଥାଏଁ, କେତେଥର ମାତ୍ର ଚିତ୍କାର କରିଅଛି, ସ୍ୱର ବନ୍ଦ ହୋଇଗଲା, ଅଚେତ ଭାବରେ ପଡ଼ିଗଲି । ଗୋଟିଏ ଆଶ୍ଚର୍ଯ୍ୟ ଘଟଣା—ମୁଁ ଯେଉଁ ଘରେ ଶୋଇଥିଲି, ମଧ୍ୟରେ ଗୋଟିଏ କୋଠରୀ ଘର ବ୍ୟବଧାନ, ଆଉ ଗୋଟିଏ କୋଠରୀ ମଧ୍ୟରେ ଗୋଟାଏ ପଲଙ୍କରେ ମୋ ପୁତ୍ରବଧୂ ଅର୍ଦ୍ଧନିଦ୍ରାରେ ଶୋଇଥିଲେ, ସେ ଠିକ୍ ସେହି ସମୟରେ ସ୍ୱପ୍ନ ଦେଖୁଥାନ୍ତି—ମୁଁ ବିଷ ଖାଇଅଛି, ସେ (ପୁତ୍ରବଧୂ) ମୋ ପୁତ୍ରକୁ ଏ କଥା ଟେଲିଗ୍ରାମ କରୁଅଛନ୍ତି । ମୋ ପୁତ୍ର ସେ ସମୟରେ ବିହାର ଅଞ୍ଚଳରେ ଆସିଷ୍ଟାଣ୍ଟ ସେଟଲମେଣ୍ଟ ଅଫିସର ଥିଲେ । ଚିତ୍କାର ଶୁଣି ବଧୂ ମୋ ପାଖକୁ ଧାଇଁ ଆସିଲେ । ମୋହର ଅବସ୍ଥା ଦେଖି ଡାକ୍ତରମାନଙ୍କୁ ଡାକି ଆଣିବା ସକାଶେ ପାଞ୍ଚ ସାତ ଜଣ ଲୋକ ଦଉଡ଼ାଇ ଦେଲେ । ଯେଉଁ ଡାକ୍ତର ଯେଉଁ ସ୍ଥାନରେ ଯେପରି ଭାବରେ ବସିଥିବେ, ସେ ସ୍ଥାନରୁ ଅତି ଶୀଘ୍ର ଡାକି ଆଣିବା ସକାଶେ ପ୍ରେରିତ ଲୋକମାନଙ୍କ ପ୍ରତି ଆଦେଶ ଥିଲା । ଅର୍ଦ୍ଧ ଘଣ୍ଟା ମଧ୍ୟରେ ବାଲେଶ୍ୱରର ସମସ୍ତ ଡାକ୍ତର ଉପସ୍ଥିତ । କେବଳ ଜଣେ ବହୁଦର୍ଶୀ ଆସିଷ୍ଟାଣ୍ଟ ସର୍ଜନ ଚିକିତ୍ସାରେ ନିଯୁକ୍ତ ରହିଲେ । ଆଉ ସମସ୍ତ ଡାକ୍ତର ସେମାନଙ୍କ ପ୍ରାପ୍ୟ ଦର୍ଶନୀ ଟଙ୍କା ନେଇ ଚାଲିଗଲେ ।

ମୁଁ ବିଛଣାରେ ଅଚେତ ଭାବରେ ପାଟି ବୁଜି ପଡ଼ି ରହିଥାଏଁ । ଆଁ କରିବାକୁ କଷ୍ଟ ବୋଧହୁଏ । ଜିହ୍ୱା ଅଗ୍ରଭାଗଠାରୁ କଲିଜାର ଅର୍ଦ୍ଧଭାଗ ପର୍ଯ୍ୟନ୍ତ ପ୍ରବଳ ଘା ହୋଇ ଯାଇଥିବାର ଡାକ୍ତର ପରୀକ୍ଷା କରି କହିଲେ । ସମୟ ସମୟରେ ପେଟ ଭିତରୁ ଖଣ୍ଡେ ଖଣ୍ଡେ ମାଂସ ପାଟିବାଟେ ଦେଇ ବାହାରି ପଡ଼ୁଥାଏ । କଣ୍ଠ ଭିତରେ ଘା—ଅଳ୍ପ ପରିସରର ଗୋଟିଏ ଛିଦ୍ର ମାତ୍ର ଥାଏ । ଡାକ୍ତରଙ୍କ ବ୍ୟବସ୍ଥା ଅନୁସାରେ ଦୁଇଓଳି

ଯୋଡ଼ାଏ କୁକୁଡ଼ା ଅଣ୍ଡାର ହରିଦ୍ରାବର୍ଣ୍ଣର କୁସୁମ ମୋହର ଆହାର ଥିଲା । ପନ୍ଦର ଦିନ ପର୍ଯ୍ୟନ୍ତ ସେହି କୁସୁମ ମାତ୍ର ଥିଲା ପଥ୍ୟ ଏବଂ ଔଷଧ । ସେହି କୁସୁମ ଟିକିକ ପିଇଦେବା ଅତ୍ୟନ୍ତ କଷ୍ଟକର ଥିଲା । ପିଇବା ବେଳେ ତ କଷ୍ଟବୋଧ ହୁଏ, ପୁଣି ପିଇ ସାରିବା ଉତ୍ତାରେ ଅନେକ ସମୟ ପର୍ଯ୍ୟନ୍ତ କଣ୍ଠ ଏବଂ କଲିଜା ଜ୍ୱାଲା କରେ । ବହୁ ଅନେକ ସାଧ ସାଧନାରେ ଅଣ୍ଡା କୁସୁମ ତେତିକ ପିଆଇ ଦିଅନ୍ତି । ତାହାଛଡ଼ା ଆଉ କେହି ପିଆଇ ପାରେ ନାହିଁ ।

କୌଣସି ଦିନ ନିତାନ୍ତ ସାଧ ସାଧନାରେ ମୁଁ ନ ପିଇଲେ ବଧୂମାତା ମୋତେ ଧମକାଇ କହନ୍ତି —“ଆପଣ ଔଷଧ ଖାଉ ନାହାନ୍ତି, ମୁଁ ଏକ୍ଷଣି ଡାକ୍ତରବାବୁଙ୍କୁ ଚିଠି ଲେଖିବି ।” ଡାକ୍ତରବାବୁ ଆସି ମୋ କାନ କାଟି ପକାଇବେ ନାହିଁ, ମୁଁ ଜାଣେ; ମାତ୍ର ନ ପିଇଲେ ଏଇଟା ବସି ମୋତେ ନିତାନ୍ତ ବିରକ୍ତ କରିବ, କାନ ପାଖରେ ବର୍‌ବର୍ କରି ଗୁଡ଼ାଏ କଥା କହିବ, ତହିଁରୁ ରକ୍ଷା ପାଇବା ନିମନ୍ତେ ଦୁଇ ତିନି ଜଣ ଲୋକ ଅତି ସନ୍ତର୍ପଣରେ ଅତି ଧୀରେ ମୋତେ ଉଠାଇ ବସାନ୍ତି, ଅତ୍ୟନ୍ତ କଷ୍ଟରେ କୁସୁମ ଟିକିକ ପିଇଦିଏଁ । ଏହି ସମୟରେ ଆଉ ଗୋଟାଏ ଉପସର୍ଗ ଉପସ୍ଥିତ । ଗନ୍ଧକ ଦ୍ରାବକ ପିଇବାବେଳେ ବୋଧ କରେଁ ଟୋପାଏ ଦ୍ରାବକ କୌଣସି ପ୍ରକାରେ ଡାହାଣ ହାତ ପାପୁଲିରେ ପଡ଼ି ଯାଇଥିଲା । ପାପୁଲିରେ ଅର୍ଦ୍ଧଇଞ୍ଚ ପର୍ଯ୍ୟନ୍ତ ଗୋଟାଏ କଣା ହୋଇଗଲା । ସେଥିରୁ ପୂଜ ବାହାରୁଥାଏ । ଦୁଇଓଳି ଆସିଷ୍ଟାଣ୍ଟ ସର୍ଜନ ଆସି ଘା ପରିଷ୍କାର କରି ପଟି ବାନ୍ଧି ଦେଇ ଯାଉଥାନ୍ତି ।

ଜନନୀ କ୍ଷୁଦ୍ରଶିଶୁକୁ ଲାଳନ ପାଳନ କଲାପରି ବଧୂମାତା ସେ ସମୟରେ ମୋତେ ରକ୍ଷା କରୁଥିଲେ । ମୋହର ମୁଖ ବନ୍ଦ—ନେତ୍ର ମୁଦ୍ରିତ—ପ୍ରସ୍ରାବ କରିବାକୁ ହେଲେ ଦୁଇ ତିନି ଜଣ ଲୋକ ଅତି ସାବଧାନରେ ଉଠାଇ ବସାନ୍ତି । ଦୁଇ ତିନି ଜଣ ଚାକର ପାଖରେ ଉପସ୍ଥିତ ଥାଇ ବିଞ୍ଚୁଥାନ୍ତି । ମୁହୂର୍ତ୍ତେ ମାତ୍ର ପଙ୍ଖା ବନ୍ଦ ହେଲେ ସର୍ବାଙ୍ଗ ଜଳିଉଠେ । ଦୂର ସ୍ଥାନରୁ ଅନ୍ୟ ଗ୍ରାମରୁ କେତେକ ଜଣ ବନ୍ଧୁବାନ୍ଧବ ମୋତେ ଦେଖିବାକୁ ଆସିଥିଲେ । ସେମାନଙ୍କ ଅଭ୍ୟର୍ଥନା ସକାଶେ ଘରେ ଅନ୍ୟ କେହି ଆତ୍ମୀୟ ପରିଜନ ନ ଥିଲେ । ପ୍ରାତଃକାଳରୁ ରାତି ଦଶଘଣ୍ଟା ପର୍ଯ୍ୟନ୍ତ ବଧୂମାତାଙ୍କୁ ସେମାନଙ୍କ ତର୍ଦ୍ଦା ବୁଝିବାକୁ ପଡ଼େ । ଇତ୍ୟବସରରେ ପୁନଃ ପୁନଃ ଆସି ମୋ ଅବସ୍ଥା ବୁଝି ଯାଉଥାନ୍ତି । ରାତି ଦଶଟା ପରେ ସମସ୍ତେ ଶୟନ କଲା ଉତ୍ତାରେ ପଙ୍ଖା କରୁଥିବା ଚାକରମାନେ ମଧ୍ୟ ଶୋଇପଡ଼ନ୍ତି । ବଧୂମାତା ଅନେକ ରାତିରେ ନିଜେ ପଙ୍ଖାଟି ଧରି ଭୋର ପର୍ଯ୍ୟନ୍ତ ମୋତେ ବିଞ୍ଚିବାରେ ଲାଗିଥାନ୍ତି । ଶେଷ ରାତିରେ ମୋତେ ବିଞ୍ଚୁ ବିଞ୍ଚୁ ନିଦରେ ତାଙ୍କ ମୁଣ୍ଡ ଭୂଇଁରେ ଲାଗି ଯାଉଥାଏ । ତାଙ୍କର ତତ୍କାଳୀନ ଅବସ୍ଥା ଦେଖିଲେ ମୋ ମନରେ କଷ୍ଟ ଜାତ ହୁଏ । ବିଞ୍ଚଣା ବନ୍ଦ କରିବାକୁ କହିବା ସକାଶେ ମୋହର ଶକ୍ତି ନ ଥିଲା । ହାତରେ ସଙ୍କେତ କରି କହିବାକୁ ମଧ୍ୟ ହାତ ଅବଶ । କେବଳ କାୟିକ ବୋଲି ନୁହେଁ—ଭକତ୍ ବୋଲି କେବଳ ଡାକ୍ତର-ମାନଙ୍କୁ ତାଙ୍କ କ୍ଷୁଦ୍ର ବାକ୍‌ସରୁ ଶତାବଧି ଟଙ୍କା କାଢ଼ି ଦେଇଥିଲେ । ଫଳତଃ ସେ ସମୟରେ ମୁଁ ସ୍ୱାସ୍ଥ୍ୟ, ସାମର୍ଥ୍ୟ, ଅର୍ଥ, ସର୍ବ ବିଷୟରେ ନିଃସମ୍ବଳ ହୋଇ-ଥିଲି । କ୍ଷୁଦ୍ର ଶିଶୁ ପରି ଅଚେତନ ଭାବରେ ଶଯ୍ୟାରେ ପଡ଼ିଥାଏଁ । ଦକ୍ଷିଣ ହାତ ପୋଡ଼ିଯାଇ ଥିବାରୁ ଧୀରେ ଧୀରେ ଅତି ସାବଧାନରେ କଞ୍ଚିଏ କଞ୍ଚିଏ ଦୁଧ ପିଆଇ ଦେଉଥିଲେ । ଅନେକ ଦିନ ପର୍ଯ୍ୟନ୍ତ କଣ୍ଠନାଳୀ ଦୁର୍ବଳ ହୋଇ ପଡ଼ିଥିବାରୁ ପାନ କରିବାର ଶକ୍ତି ନ ଥିଲା । କେବଳ ମୋ ପାଇଁ ଏପରି କରିଥିଲେ ତାହା ନୁହେଁ, ଗ୍ରାମ ପ୍ରତିବାସୀମାନଙ୍କ ମଧ୍ୟରେ ଶିଶୁ ସନ୍ତାନମାନଙ୍କର ଏବଂ ଦରିଦ୍ର ଅସହାୟ ଲୋକମାନଙ୍କର ପୀଡ଼ା ସମୟରେ ସେ ବିନା ଆହ୍ୱାନରେ ଉପସ୍ଥିତ

ହୋଇ ପୀଡ଼ିତର ସେବା ଶୁଶ୍ରୂଷାର ଭାର ଗ୍ରହଣ କରନ୍ତି । ସାମାନ୍ୟ ସାମାନ୍ୟ ରୋଗରେ ଔଷଧର ବ୍ୟବସ୍ଥା ମଧ୍ୟ କରିଥାନ୍ତି । ରୋଗୀମାନଙ୍କ ପ୍ରତି ତାଙ୍କର କିପରି ସହାନୁଭୂତି ଥାଏ, ସେଥି ସମ୍ବନ୍ଧରେ ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦେବାକୁ ଇଚ୍ଛା କରେଁ ।

ଆମ୍ଭମାନଙ୍କ ଘରେ ଗୋଟିଏ ବୃଦ୍ଧା ଦାସୀ ଥିଲା । ଆମ୍ଭମାନଙ୍କ ଘରଠାରୁ କିଛି ଦୂରରେ ସେ ଗୋଟିଏ ସାମାନ୍ୟ କୁଡ଼ିଆ ବାନ୍ଧି ପଡ଼ିଥାଏ । ଦରିଦ୍ରା ଏବଂ ଅସହାୟା । ତାହାର ସମୟ ସମୟରେ ବାତଜ୍ୱର ହୁଏ । ସେ ସମୟରେ ତାହାର ଚେତନା ଥାଏ ନାହିଁ, ବିଛଣାରେ ପ୍ରସ୍ରାବ ଏବଂ ବାନ୍ତି କରେ । ପୀଡ଼ା ସମୟରେ ତାକୁ ଦେଖିବା ସକାଶେ ବଧୂମାତା ମୋ ଅନୁମତି ନେଇ ତାହା ଦୁଆରକୁ ଯାନ୍ତି । ଦିନବେଳେ ଗ୍ରାମ ଦାଣ୍ଡରେ ଲୋକ ଚଳାଚଳ ହେଉଥିବାରୁ ତାହା ଦୁଆରକୁ ଯିବାକୁ ଆପ୍ରବୃତ୍ତି ନ ଥାଏ । ରାତି ନଅଘଣ୍ଟା ଉତ୍ତାରେ ଗ୍ରାମ ମାର୍ଗ ନିର୍ଜନ ହେଲେ ଗୋଟିଏ ଦାସୀକୁ ସଙ୍ଗରେ ନେଇ ତାହା ଦୁଆରେ ଉପସ୍ଥିତ ହୁଅନ୍ତି । ତାହା ମଧ୍ୟ ଅନ୍ଧକାରରେ ଯିବାକୁ ହୁଏ । ଲଣ୍ଠନ ଆଲୁଅରେ ଦାଣ୍ଡରେ ଚାଲିଯିବାକୁ ଲାଜ ମାଡ଼େ । ରୋଗୀ ନିକଟରେ ଉପସ୍ଥିତ ହୋଇ ସ୍ୱହସ୍ତରେ ବାନ୍ତି ପ୍ରସ୍ରାବ ଭିଜା ଲୁଗାଗୁଡ଼ାକ କାଢ଼ିପକାଇ ଭଲ ଲୁଗା ପିନ୍ଧାଇ ଦେବା—ଘର ପରିଷ୍କାର କରି ସ୍ଥାନେ ସ୍ଥାନେ ଲିପିଦେବା, ଭଲ ଲୁଗାରେ ବିଛଣା ପାରିଦେବା—ସବୁ କାର୍ଯ୍ୟ ସ୍ୱହସ୍ତରେ କରନ୍ତି । ଘୃଣା କରିବ ବୋଲି ଦାସୀକୁ ସେ ସବୁ କାର୍ଯ୍ୟ କରିବା ସକାଶେ କହନ୍ତି ନାହିଁ । ଅଫିମ, ଘୃ, ସାଗୁ ପ୍ରଭୃତି ପ୍ରସ୍ତୁତ କରି ସାଙ୍ଗରେ ନେଇ ଯାଇଥାନ୍ତି । ରୋଗିଣୀ ଆରାମରେ ଶୋଇଲେ ଔଷଧ ପଥ୍ୟ ତାକୁ ଖୁଆଇ ତା ଦେହରେ ଗୋଡ଼ରେ ହାତ ବୁଲାଇ ବହୁତ ଆଶ୍ୱାସ ବାକ୍ୟ କହି ଘରକୁ ବାହୁଡ଼ିବାକୁ ପ୍ରାୟ ଦୁଇଘଣ୍ଟା ସମୟ ଗତ ହୋଇଥାଏ । କେବଳ ସେହି ଦରିଦ୍ରା ବିଧବା ନୁହେଁ, ଆହୁରି ମଧ୍ୟ ଅନେକ ଅସହାୟା ବିଧବା ତାଙ୍କ ନିକଟରୁ ସାହାଯ୍ୟ ପ୍ରାପ୍ତ ହେଉଥିଲେ ।

ସାଧାରଣରେ ଆପଣା ପୁତ୍ରବଧୂର ଗୁଣ ଗାୟନ କରିବା ନିଶ୍ଚୟ ଶୋଭନୀୟ ବିଷୟ ନୁହେ; ମାତ୍ର ସେହି ସମ୍ଭ୍ରାନ୍ତ ଉଚ୍ଚବଂଶଜାତା କନ୍ୟାଟି ଗୁଣରେ ଏତେଦୂର ବାଧ୍ୟ ଯେ, ତାହା ସମ୍ବନ୍ଧରେ ଦୁଇ ଚାରି କଥା ନ ବୋଲି ସ୍ଥିର ରହିପାରୁ ନାହିଁ । ସେ ସେପରି ବିଦ୍ୟାବତୀ ନୁହନ୍ତି । କଲିକତା ବେଥୁନ ସ୍କୁଲର ଏଣ୍ଟ୍ରାନ୍ସ ପାସ, ତତ୍ତୁଲ୍ୟ ସଂସ୍କୃତ ବଙ୍ଗଳା ଭାଷାରେ ଶିକ୍ଷିତା, ମୋ ଘରକୁ ଆସି ଓଡ଼ିଆ ଭାଷାଟା ମଧ୍ୟ ଶିଖି ପକାଇଅଛନ୍ତି । ସଙ୍ଗୀତରେ, ହାରମୋନିୟମ ବାଦ୍ୟରେ, ସୂଚୀ କାର୍ଯ୍ୟରେ ବିଶେଷ ନିପୁଣା । ନାନାପ୍ରକାର ଖାଦ୍ୟଦ୍ରବ୍ୟ, ବିଶେଷରେ ମିଷ୍ଟାନ୍ନ-ପାକରେ ସିଦ୍ଧହସ୍ତା । ଶିଳ୍ପ କାର୍ଯ୍ୟରେ ନିପୁଣତା ହେତୁ ଅନେକ ପ୍ରଦର୍ଶନୀରୁ ସାର୍ଟିଫିକେଟ୍ ଏବଂ ରୌପ୍ୟ ପଦକ ପ୍ରାପ୍ତ ହୋଇଅଛନ୍ତି । ଯେଉଁ ସମସ୍ତ ଗୁଣରେ ବଧୂଗଣ ଆଦରଣୀୟା ବଂଶଶୋଭନା ହୁଅନ୍ତି, ସେ ସମସ୍ତ ଗୁଣର କିଛିମାତ୍ର ଅଭାବ ନାହିଁ । ଘରର ପ୍ରତ୍ୟେକ ଲୋକ, ଦାସଦାସୀ ପର୍ଯ୍ୟନ୍ତ ଶଯ୍ୟାତ୍ୟାଗ କରିବା ପୂର୍ବରୁ ଉଠି ଘର ଅଗଣା ପରିଷ୍କାର ପ୍ରଭୃତି ବାସିପାଇଟି ସାରି ଦେଇଥାନ୍ତି । ପ୍ରତିଦିନ ବ୍ରାହ୍ମ ମୁହୂର୍ତ୍ତରେ ଶଯ୍ୟାତ୍ୟାଗ କରିବା ମୋହର ଅଭ୍ୟାସ ଥିଲା । ମାତ୍ର ମୋ ଉଠିବା ପୂର୍ବେ ବଧୂମାତା ଶଯ୍ୟାତ୍ୟାଗ କରି ବାସିପାଇଟି ନ ସାରିଥିବାର କେବେ ଦେଖି ନାହିଁ ।

ଶଯ୍ୟାତ୍ୟାଗଠାରୁ ରାତି ଦଶଘଣ୍ଟା ପର୍ଯ୍ୟନ୍ତ ନିରଳସ ଭାବରେ ନାନା କର୍ମରେ ଲାଗି ରହିଥିବାର ତାଙ୍କର ଅଭ୍ୟାସ । ସର୍ବଦା ପାଚକ ଏବଂ ଦାସଦାସୀ ଉପସ୍ଥିତ ଥିଲେ ମଧ୍ୟ ପ୍ରତ୍ୟେକ ଖାଦ୍ୟଦ୍ରବ୍ୟ ପ୍ରସ୍ତୁତ ବିଷୟରେ ତତ୍ତ୍ୱାବଧାନ କରିଥାନ୍ତି । ଦୁଇପ୍ରହର ସମୟଟା ସିଲାଇ କଲ ଚାଳନା ଏବଂ ସିଲାଇ କାର୍ଯ୍ୟରେ

ଅତିବାହିତ ହୁଏ । ସନ୍ଧ୍ୟା ଉତ୍ତାରେ ଉପାସନା, ନାନା ପୁସ୍ତକ ପାଠ, ସଙ୍ଗୀତ ଚର୍ଚ୍ଚାର ସମୟ ।

ଗ୍ରାମର ଅତି ସାମାନ୍ୟ ଘରର ସ୍ତ୍ରୀମାନଙ୍କ ପ୍ରତି ମଧ୍ୟ ଯଥାଯୋଗ୍ୟ ସମ୍ମାନ ଏବଂ କୋମଳ ଭାବରେ କଥୋପକଥନ କରନ୍ତି । ତାଙ୍କର ନାମ ଭୁଲ୍ ଚରିତ୍ରଟି ମଧ୍ୟ ହରଣପ୍ରଭାମୟ । ତାଙ୍କର ପିତା ଜଣେ ନିଷ୍ଠାପର ବ୍ରାହ୍ମ ଏବଂ ପୂର୍ବ-ବଙ୍ଗରେ ଋଷିତୁଲ୍ୟ ସମ୍ମାନିତ ଥିଲେ ।

ପ୍ରତିଦିନ ସକାଳ ସନ୍ଧ୍ୟା ଦୁଇଓଳି ଆସିଷ୍ଟାଣ୍ଟ ସର୍ଜନ ଆସି ରୋଗର ଅବସ୍ଥା ଦେଖିଯାନ୍ତି, ପ୍ରତିଥର ଦର୍ଶନୀ ଟଙ୍କା ବଧୂମାତାଙ୍କ କ୍ଷୁଦ୍ର ବାକ୍‌ସରୁ ବାହାରେ । ପ୍ରତ୍ୟେକଥର ଡାକ୍ତର ରୋଗ ପରୀକ୍ଷା କରିବା ସମୟରେ ଉପସ୍ଥିତ ଆତ୍ମୀୟ ଲୋକେ ତାଙ୍କ ମୁଖକୁ ଚାହିଁ ରହିଥାନ୍ତି, ମାତ୍ର ଡାକ୍ତରଙ୍କ ନୈରାଶ୍ୟଭାବ ଓ ଶୁଷ୍କ ମୁଖ ଦେଖି ତାଙ୍କୁ କିଛି କଥା ପଚାରିବା ସକାଶେ କେହି ସାହସ କରନ୍ତି ନାହିଁ । ମୁଁ ମଧ୍ୟ ଡାକ୍ତରଙ୍କ ମୁଖକୁ ଅନାଇ ନିଜ ଅବସ୍ଥା ବୁଝିପାରେଁ । ସାତ ଆଠଦିନ ଉତ୍ତାରେ ମୋହର ଯେ ମୃତ୍ୟୁ, ଏ ଯାତ୍ରା ଅବଧାରିତ, ଏ କଥା ବୁଝି ପାରିଲି । ସେହି ସମୟରେ ଦିନେ ଉପରଓଳି ବାଲେଶ୍ୱରର ଅନ୍ୟତମ ପ୍ରଧାନ ଜମିଦାର ବାବୁ ଭଗବାନଚନ୍ଦ୍ର ଦାସ ଏବଂ ଆହୁରି କେତେ ଜଣ ବନ୍ଧୁ ବାନ୍ଧବ ଏବଂ ଆତ୍ମୀୟ ଲୋକେ ମୋତେ ବେଢ଼ି ବସିଥିଲେ । ମୋ ମନରେ ହେଲା, ମୋ ମୃତ୍ୟୁ ଉତ୍ତାରେ ପୋଲିସ ଆସି, ଯେଉଁମାନେ ବିଷ ଆଣି ଦେଇଅଛନ୍ତି, ସେମାନଙ୍କୁ ହଇରାଣ କରିବେ । ସେହି ଲୋକମାନଙ୍କ ଭାବୀ ଅବସ୍ଥା କଳ୍ପନା କରି ମୋ ମନରେ କଷ୍ଟଜାତ ହେଲା । ମୋ ବିଛଣା ପାଖରେ କାଗଜ ପେନ୍‌ସିଲ୍ ରଖା ହୋଇଥାଏ; ମୋହର କିଛି କଥା ଲୋକଙ୍କୁ ଜଣାଇବାର ଆବଶ୍ୟକ ହେଲେ ସେଥିରେ ଲେଖିଦିଏଁ । ଗୋଟିଏ ଗୋଟିଏ ଅକ୍ଷର ଲେଖିବାକୁ ବଡ଼ କଷ୍ଟ ହୁଏ ।

ବର୍ତ୍ତମାନ ଉପସ୍ଥିତ ଭଗବାନ ବାବୁ ଓ ଅନ୍ୟାନ୍ୟ କେତେଜଣ ଆତ୍ମୀୟ ଲୋକମାନଙ୍କ ନାମ ଲେଖି ତାହା ତଳେ ବଡ଼ବଡ଼ ଅକ୍ଷରରେ ଲେଖିଦେଲି—"ମୋ ମୃତ୍ୟୁ ସକାଶେ କେହି ଦାୟୀ ନୁହେଁ; ଦୈବାତ୍ ଘଟନା"— ଏହି କେତୋଟି କଥା ଲେଖିଦେଇ କିଞ୍ଚିତ ଶାନ୍ତିଲାଭ କଲି, ମନରେ କଲି, ମୁମୂର୍ଷୁ ଲୋକର ଲେଖା ଅଦାଲତରେ ଗ୍ରାହ୍ୟ ହେବ । ମୃତ୍ୟୁ ସକାଶେ ପ୍ରସ୍ତୁତ ଥିଲି; ମାତ୍ର ଯନ୍ତ୍ରଣାଟା ସମୟରେ ଅସହ୍ୟ ହୋଇ ପଡ଼ୁଥିଲା । ସେ ସମୟରେ—

"ମାତ୍ରା ସ୍ପର୍ଶାସ୍ତୁ କୌନ୍ତେୟ
ଶୀତୋଷ୍ଣ ସୁଖ ଦୁଃଖଦାଃ ।
ଆଗମା ପାୟିନୋ ନିତ୍ୟଂ
ତାନ୍‌ତିତିକ୍ଷସ୍ୱ ଭାରତ ।"

ଗୀତାର ଏହି ଶ୍ଲୋକଟି ପୁନଃ ପୁନଃ ମନ ମଧ୍ୟରେ ପାଠକରି ଧୈର୍ଯ୍ୟାବଲମ୍ବନ କରେଁ । ମନରେ ଭାବ ଉଦୟ ହୁଏ, ଏହି ରୋଗ ଆସିଅଛି, ଚାଲିଯିବ, ବର୍ତ୍ତମାନ ଧୈର୍ଯ୍ୟାବଲମ୍ବନ ଆବଶ୍ୟକ ।

ପନ୍ଦରଦିନ ଉତ୍ତାରେ ଦିନେ ଡାକ୍ତର ଖୁବ୍ ଆନନ୍ଦିତ ହୋଇ କହିଲେ—"ଏବେ ଆଉ କିଛି ଚିନ୍ତାନାହିଁ, ମୋହର ଆଉ ଆସିବା ଅନାବଶ୍ୟକ ।" ଡାକ୍ତର ଗୁଡ଼ିଗଲେ ମଧ୍ୟ ବିଛଣା ଛାଡ଼ିବାକୁ ମୋତେ ଦୁଇମାସ ଲାଗିଥିଲା । ଡାକ୍ତର ଗୁଡ଼ିଗଲେ; ମାତ୍ର ବନ୍ଧୁ ଗୁଡ଼ ନାହାନ୍ତି । ଗୋଟାଏ ଗୃମଚରେ ଅତି ସନ୍ତର୍ପଣରେ ଅଳ୍ପ ଅଳ୍ପ ଦୁଧ ପିଆଇ ଦିଅନ୍ତି—କେତେଦିନ ଉତ୍ତାରେ ରୁଟି ମିଶ୍ରିତ ଦୁଗ୍ଧ, ମାସକ ଉତ୍ତାରେ ଅନ୍ନ ସ୍ପର୍ଶ କଲି ।

ମୋ ଜୀବନର ପ୍ରଧାନ ବିପଦ ପ୍ରଧାନ ପ୍ରଧାନ ଦୁର୍ଘଟନା ଗୁଡ଼ିକ ଏକତ୍ର କହିବା ସକାଶେ ପରବର୍ତ୍ତୀ କେତେକ ଘଟନା ପୂର୍ବେ ଲେଖିଗଲି । ବର୍ତ୍ତମାନ ମୋ

ଜୀବନର ସେ ସମୟରେ କଥା ଲେଖୁଅଛୁ । ସେଗୁଡ଼ିକ ଅନେକ ପରବର୍ତ୍ତୀ ଘଟନା ଅଟେ ।

ଢେଙ୍କାନାଳରେ ମୋର ଦ୍ୱିତୀୟ ପୁତ୍ରଟି ଜାତହେଲା । ଗ୍ରାମାୟଣ ଲେଖା ପୂର୍ବବତ୍ ଚାଲିଥାଏ । ରୋଗ କ୍ରମଶ ବଢ଼ିବାକୁ ଲାଗିଲା । ଦିନ ସାରା ବିଛଣାରେ ପଡ଼ିଥାଏଁ । ଦେହର ଶୁଶ୍ରୂଷାପର ମୋ ସ୍ତ୍ରୀ ସର୍ବଦା ବିଛଣାରେ ବସି ଦେହରେ ହାତ ବୁଲାଉ ଥାନ୍ତି । କେବଳ କଷ୍ଟମଷ୍ଟରେ ଅଳ୍ପସମୟ ସକାଳେ ଉଠି କଚେରୀକୁ ଯାଏଁ । କୌଣସି ପ୍ରକାରେ କଚେରୀ କାମ ସମାପ୍ତ କରି ଘରକୁ ଚାଲିଆସେଁ । ଏହି ସମୟରେ ମେନେଜର ବାବୁଙ୍କ ସହିତ ନାନାପ୍ରକାର ମାଲମାମଲା ସମ୍ବନ୍ଧରେ ଅକାରଣ ବିରକ୍ତିକର ଚିଠି ଲେଖା ଚାଲିବାକୁ ଲାଗିଲା । ମେନେଜର ବାବୁ ପୂର୍ବ ବନ୍ଧୁତା ଫାସୋରି ପକାଇ ବର୍ତ୍ତମାନ ପ୍ରଚ୍ଛନ୍ନ ଭାବ ଧାରଣ କରି ବସିଲେଣି । ମୋତେ କୌଣସିରୂପେ କଳଙ୍କିତ କରାଇ ଆପଣାର ପଦୋନ୍ନତି କରାଇ ନେବେ, ଏହାହିଁ ବର୍ତ୍ତମାନ ତାଙ୍କର ଲକ୍ଷ୍ୟ ।

ମୁଁ ଜୀବନବ୍ୟାପୀ କାର୍ଯ୍ୟକାରଣ ସମ୍ବନ୍ଧ ଜନିତ ଘଟନା ପରମ୍ପରାର ଉତ୍ପତ୍ତି ବିଷୟ ଆଲୋଚନା କରି ଦେଖିଲି, ମାନବ ମଣ୍ଡଳୀ ମଧ୍ୟରେ ପ୍ରକୃତରେ କେହି କାହାର ଶତ୍ରୁ ବା ମିତ୍ର ନୁହେଁ । ସ୍ୱାର୍ଥ ତଥା ଅବସ୍ଥା ପ୍ରଭାବରେ ମାନବ ରୂପାନ୍ତର ଧାରଣ କରେ । ଏହା ମଧ୍ୟ ପ୍ରତ୍ୟକ୍ଷୀଭୂତ ବିଷୟ ଯେ, ଏକ ଅଲକ୍ଷ୍ୟ ଅମୋଘ ହସ୍ତଦ୍ୱାରା ମାନବର ଭାଗ୍ୟଚକ୍ର ଚାଲିଛି, ମାନବ ପୌରୁଷ ତାହା ନିକଟରେ ପରାସ୍ତ । ଆହୁରି ମଧ୍ୟ ଗୋଟିଏ କଥା—ପୃଥିବୀ ରଙ୍ଗଭୂମି ବିଶେଷ, ମାନବ ସେଥିରେ ଅଭିନେତା । ସୂତ୍ରଧର ନେପଥ୍ୟରେ ଥାଇ ଗୋଟିଏ ଗୋଟିଏ ମାନବଦ୍ୱାରା ସ୍ୱତନ୍ତ୍ର ସ୍ୱତନ୍ତ୍ର ଭାବରେ ଅଭିନୟ କରାଇ ନେଉଅଛନ୍ତି । ସମସ୍ତ ବିଷୟ ଚିନ୍ତାକରି ମୁଁ ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇଅଛି—ଶତ୍ରୁ ବୋଲି କାହାରିକୁ ଘୃଣା କରିବା ବା ତାହାପ୍ରତି ପ୍ରତିହିଂସା ସାଧନ କରିବା ଆମ୍ଭମାନଙ୍କ ପକ୍ଷରେ ଯୁକ୍ତିଯୁକ୍ତ କାର୍ଯ୍ୟ ନୁହେଁ । ସର୍ବଦା ସର୍ବ ସମୟରେ ନ୍ୟାଯ୍ୟ ଉପାୟରେ ଆତ୍ମରକ୍ଷା ହିଁ ମାନବ ପକ୍ଷରେ ଏକାନ୍ତ କର୍ତ୍ତବ୍ୟ ।

ପୀଡ଼ା ଦିନକୁ ଦିନ ବଢ଼ିବାକୁ ଲାଗିଲା । ମୁଁ କାର୍ଯ୍ୟରେ ଅକ୍ଷମ ହୋଇ ପଡ଼ିଲି । ଛ ମାସର ଛୁଟି ନେଇ ବାଲେଶ୍ୱର ଚାଲିଆସିଲି । ମୋହର ଏହି ଦୁର୍ଭାଗ୍ୟ ସମୟରେ ମଧ୍ୟ ମେନେଜର ବାବୁ ମୋ ଅନିଷ୍ଟ ଚିନ୍ତାରେ ନିଯୁକ୍ତ ଥାନ୍ତି । ମୋ ଅନୁପସ୍ଥିତ ସମୟରେ ଗୋଟିଏ ସୁଯୋଗ ପାଇଗଲେ । ମୋହର ଗୋଟିଏ ଭୟଙ୍କର ଅପରାଧ ତାଙ୍କ ଦୃଷ୍ଟିରେ ପଡ଼ିଗଲା ।

ପୂର୍ବକଥିତ ବଉଳପୁର ମୌଜାସ୍ଥିତ ଗୋଟାଏ ପାଣି-ନାଳ ଉପରେ ବନ୍ଧର ସ୍ୱତ୍ୱାସ୍ୱତ୍ୱ ଦାବୀ ମାମଲା ନିଷ୍ପତ୍ତି କରିଥିଲି । ସେହି ମାମଲାର ଅପିଲ ହେଲା । ଉପର ଅଦାଲତକୁ ନଥି ପଠାଇବା ସମୟରେ ରାୟ ଫର୍ଦ୍ଦଟା ଅନେକ ସ୍ଥାନରେ ଚଞ୍ଚଳ ଲେଖିବା ହେତୁ ମୁଁ ନିଜେ ଅନେକ ସ୍ଥାନରେ କାଟକୁଟ କରିଥିବାରୁ ଅନେକ ସ୍ଥାନରେ ଅକ୍ଷର ଅସ୍ପଷ୍ଟରୂପେ ଲିଖିତ ଥିବାରୁ ସେହି ରାୟ ଫର୍ଦ୍ଦଟା ଚିରି ପକାଇ ପରିଷ୍କାରରୂପେ ଆଉ ଗୋଟାଏ ରାୟ ଲେଖିଦେଲି । ଅବଶ୍ୟ ଲେଖାଟା କୌଣସି ସ୍ଥାନରେ ଅଦଳବଦଳ କରିନାହିଁ । ଯାହା ଲେଖାଥିଲା, ଠିକ୍ ସେହି କଥାଗୁଡ଼ିକ ନକଲ କରି ଦେଇଥିଲି ମାତ୍ର ।

'ମୁଁ ମକଦ୍ଦମା ନିଷ୍ପତ୍ତିର ଅନେକ ଦିନ ଉତ୍ତାରେ ରାୟ ଲେଖେଁ ଏବଂ ସରଜମିନକୁ ନ ଯାଇ ସରଜମିନ ତଦନ୍ତ କରିଅଛି ବୋଲି ରାୟରେ ଉଲ୍ଲେଖ କରେଁ,' ଏହି ଦୁଇଗୋଟି ମହତ୍ତ୍ୱ ଦୋଷ ଉଲ୍ଲେଖକରି ମେନେଜର ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କ ଅଫିସକୁ ରିପୋର୍ଟ କଲେ

ଏବଂ ସେଥିର ପ୍ରମାଣ ସକାଶେ ଉକ୍ତ ମାମଲାର ନଥି ପଠାଇଦେଲେ ।

ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କ ଅଫିସରୁ କୈଫିୟତ ତଲବ ଚିଠି ବାଲେଶ୍ୱରରେ ଉପସ୍ଥିତ ହେଲା । ସେ ସମୟରେ ମୁଁ ଶଯ୍ୟାଗତ । ମୋହର ପରମ ହିତୈଷୀ ବନ୍ଧୁ ରାୟ ନନ୍ଦକିଶୋର ଦାସ ବାହାଦୁରଙ୍କ ଗୁପ୍ତ-ଚିଠିର ପରାମର୍ଶ ଅନୁସାରେ ଚାକିରିରେ ଇସ୍ତଫା ଦେଲି ।

ପୀଡ଼ା ଏବଂ ବିପଦ ଯେମନ୍ତ ବାଲ୍ୟକାଳରୁ ମୋ ପଛେ ପଛେ ଗୋଡ଼ାଇ ଅଛନ୍ତି । ସୁଖ ସୌଭାଗ୍ୟର ମଧ୍ୟ ଅଭାବ ନାହିଁ । ଦାରିଦ୍ର୍ୟ-ଅର୍ଥ ସ୍ୱାଚ୍ଛଲ୍ୟ, ସୁଖ୍ୟାତି, ଅଖ୍ୟାତି, ସ୍ୱାସ୍ଥ୍ୟ, ବ୍ୟାଧି ଯେମନ୍ତ ପାଳକରି ମୋ ଉପରେ ପଡ଼ୁଅଛନ୍ତି । ଚାକିରି ହେବା—ଯିବା ମୋ ଜୀବନର ନିତ୍ୟ ଘଟଣା । ଚାକିରିର ବେତନ, ରାଜାମାନଙ୍କଠାରୁ ପ୍ରାପ୍ତ ପୁରସ୍କାର, ନାନା ପ୍ରକାର ବାଣିଜ୍ୟରୁ ଲଭ୍ୟଦ୍ୱାରା ସମୟ ସମୟରେ ଅନେକଗୁଡ଼ିଏ ଟଙ୍କା ହସ୍ତଗତ ହୋଇଯାଏ । ପୁଣି ସମୟ ସମୟରେ ଏକାବେଳକେ ଅର୍ଥଶୂନ୍ୟ ହୋଇପଡ଼େଁ । ଆମେରିକାବାସୀ ଜଣେ ମହାପଣ୍ଡିତ କହିଅଛନ୍ତି—"ଅର୍ଥ ଉପାର୍ଜ୍ଜନ କରିବା ହାଟକୁ ଯିବାପରି ସହଜ କଥା; ମାତ୍ର ଉପାର୍ଜିତ ଅର୍ଥ ସମ୍ଭାଳି ରଖିବା କଠିନ ବିଷୟ ଅଟେ ।" ସତ୍ୟକଥା, ଅତି ସତ୍ୟକଥା । ଅବଶ୍ୟ କୁକାର୍ଯ୍ୟରେ ମୋହର ଉପାର୍ଜିତ ଅର୍ଥ ନଷ୍ଟ ହୋଇନାହିଁ । ଅନ୍ୟପ୍ରତି ଅତିରିକ୍ତ ବିଶ୍ୱାସ ସ୍ଥାପନ, ପର ହସ୍ତରେ ଅର୍ଥ ଗଚ୍ଛିତ ରଖିବା ମୋହର ସାମୟିକ ଅଭାବର ମୂଳକାରଣ ଅଟେ । ଫଳତଃ ଜୀବନକାଳରେ ଏତେ ଉତ୍‌ଥାନ ଏତେ ପତନ ପର୍ଯ୍ୟାୟକ୍ରମେ ଏତେ ଅଧିକ ପରିମାଣରେ ଘଟିବା ସଚରାଚର ମନୁଷ୍ୟ ମଧ୍ୟରେ ବିରଳ ଦୃଷ୍ଟ ହୁଏ ।

(ଉ. ସା: ୧୪ଶ ଭାଗ—୧ମ, ୫ମ ସଂଖ୍ୟା)

---

## ୨୭

## ଦଶପଲ୍ଲାର ଦେବାନ (୧)

ଢେଙ୍କାନାଳରୁ ଚାଲିଆସି ବାଲେଶ୍ୱରରେ ବ୍ୟର୍ଥ ବସି ରହିଥାଏଁ । ପୀଡ଼ାଗୁଡ଼ିକ ସମାନ ଭାବରେ ଦେହରେ କ୍ରିୟା କରୁଥାନ୍ତି । ସେହି ସମୟରେ ଜେଜ୍‌ଶାପୁଅ ଭାଇ ନିତ୍ୟାନନ୍ଦ ସେନାପତିଙ୍କର ଏକମାତ୍ର ପୁତ୍ରର ବିବାହ ସମୟ ଉପସ୍ଥିତ । ନିତ୍ୟାନନ୍ଦ ସେନାପତି ସେ ସମୟରେ ଉଦ୍ଧ ନାମକ ମାହାଲର ସେରସ୍ତାଦାର; ସୁତରାଂ ତାଙ୍କର ଅର୍ଥାଭାବ ନ ଥାଏ । ଆମ୍ଭେମାନେ ଏକାନ୍ନଭୁକ୍ତ ପରିବାର ଥିଲୁଁ । ପୁତୁରା ବିବାହରେ ମୋହର ମଧ୍ୟ ଅର୍ଥ ସାହାଯ୍ୟ କରିବା ଉଚିତ; ମାତ୍ର ଅର୍ଥାଭାବ । ମୋ ସ୍ତ୍ରୀକୁ କହିଲି, ସେ ଛ ଶତ ଟଙ୍କାର କେତେଖଣ୍ଡ ନୋଟ ରଖିଥିଲେ, ମୁଁ କହିବା ମାତ୍ରକେ ତତ୍‌କ୍ଷଣାତ୍ ବାହାର କରି ଦେଲେ । ହା ସ୍ୱର୍ଗଗତା-ଦେବି ! ଯେତେ କଷ୍ଟକର ହେଉପଛକେ ମୋ କଥାରେ ପ୍ରତିବାଦ କରି ନାହାନ୍ତି—ମୋହର ଆଦେଶ ପାଳନକୁ ବ୍ରତ କରି ବସିଥିଲେ ।

ଏହି ସମୟଟା ମୋ ପକ୍ଷରେ ନିତାନ୍ତ କଷ୍ଟକର ହୋଇ ପଡ଼ିଥିଲା । ରୋଗର ପ୍ରାବଲ୍ୟ ହେତୁରୁ ଶାରୀରିକ ଯନ୍ତ୍ରଣା, ପାରିବାରିକ ଘଟଣା ବିଶେଷରୁ ଆତ୍ୟନ୍ତିକ ମାନସିକ କଷ୍ଟ, ତଥା ଅର୍ଥାଭାବ; ସମସ୍ତ ପ୍ରକାର ଦୁର୍ଯୋଗ ଏକତ୍ର ଉପସ୍ଥିତ । କେବଳ ନିଃସ୍ୱାର୍ଥ-ପରାୟଣା ମୋ ସ୍ତ୍ରୀଙ୍କର ଅକ୍ଲାନ୍ତ ସେବା ଓ ତାଙ୍କ ଦତ୍ତ ସାନ୍ତ୍ୱନା ହେତୁରୁ ଜୀବନମାତ୍ର ଧାରଣ କରି ରହିଥିଲି । ସୌଭାଗ୍ୟ ସମୟରେ ମୋହର ସାମାନ୍ୟ ପୀଡ଼ା ଉପସ୍ଥିତ ହେଲେ ମଧ୍ୟ କେତେ ବନ୍ଧୁବାନ୍ଧବ ଆସି ବେଢ଼ି ବସୁଥିଲେ । ମଧୁମୟ ପ୍ରସ୍ଫୁଟିତ ପୁଷ୍ପକୁ ମଧୁପଗଣ ସିନା ବେଢ଼ି ରହିଥାନ୍ତି । ମଧୁହୀନ ପର୍ଯ୍ୟୁସିତ ପୁଷ୍ପ ଭୂମିରେ ପଡ଼ି ରହିଥାଏ । ମୋହର ସୁଖ ଦୁଃଖ,

ସମ୍ପଦ ବିପଦ ସକଳ ସମୟରେ ସହାୟ ଏକମାତ୍ର ନିଃସ୍ୱାର୍ଥବନ୍ଧୁ ବାଲେଶ୍ୱର ନର୍ମାଲ ସ୍କୁଲର ହେଡ଼୍ ମାଷ୍ଟରବାବୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ । ତାଙ୍କ ଅବସର ସମୟରେ ମୋ ପାଖରେ ବସି ସାନ୍ତ୍ୱନା ବାକ୍ୟଦ୍ୱାରା ମୋ ମନୋରଞ୍ଜନ କରଉଥାନ୍ତି ।

ମାନବର, ବିଶେଷରେ ମୋହର କୌଣସି ଅବସ୍ଥା ଚିରସ୍ଥାୟୀ ନୁହେଁ । କ୍ରମଶଃ ରୋଗର ପ୍ରାବଲ୍ୟ ହ୍ରାସ ହେବାକୁ ଲାଗିଲା — ଉଠି ଚାଲବୁଲ ହୋଇ ପାରିଲିଣି । ରାମାୟଣ ସାତକାଣ୍ଡ ଲେଖିସାରି ମହାରାଜ ( ସେ ସମୟରେ କୁମାର ) ବୈକୁଣ୍ଠନାଥ ଦେଙ୍କ ପରାମର୍ଶରେ ମହାଭାରତ ଲେଖା ଆରମ୍ଭ କରି ଦେଇଥିଲି । ଦିନମାନରେ ତିନି ଚାରି ଘଣ୍ଟା ବସି ମହାଭାରତ ଅନୁବାଦ କରେଁ, ସେହି ସମୟଟା ପରମ ସୁଖରେ ଅତିବାହିତ ହୁଏ । ପୁସ୍ତକ ଲେଖିବା ସମୟରେ ପାର୍ଥିବ କୌଣସି ପ୍ରକାର ଦୁଃଖ-ଦୁର୍ଦ୍ଦଶା ମନରେ ପଡ଼େ ନାହିଁ । ରାମାୟଣ କେତେକ କାଣ୍ଡ ପର୍ଯ୍ୟନ୍ତ ଛପା ହୋଇ ଯାଇଥିଲା; ଅବଶିଷ୍ଟ କାଣ୍ଡମାନ ଛପା ସକାଶେ ଅର୍ଥାଭାବ । କୁମାର ବୈକୁଣ୍ଠନାଥ ଦେ ସ୍ୱତନ୍ତ୍ରରୂପେ ସାତକାଣ୍ଡ ରାମାୟଣ ଛପାଇ ଦେବାକୁ ସ୍ୱୀକୃତ ହେଲେ । ପ୍ରକାଶକରୂପେ ରାଜା ଶ୍ୟାମାନନ୍ଦ ଦେ ବାହାଦୁରଙ୍କ ନାମରେ ପୁସ୍ତକ ମୁଦ୍ରିତ ହେବା କଥା ସ୍ଥିର ହେଲା । ରାଜା ବାହାଦୁର ପୁରସ୍କାରସ୍ୱରୂପ ମୋତେ ସାଢ଼େ ସାତ ଶତ ଟଙ୍କା ଦେଲେ । ପୂର୍ବରୁ କିଛି ଦେଣା ଥିଲା, ସେହି ଟଙ୍କାରେ ସମସ୍ତ ଦେଣା ପରିଶୋଧ କରି ପକାଇଲି । ବର୍ତ୍ତମାନ ନିତାନ୍ତ ଅର୍ଥାଭାବ, ଦିବାନିଶି ଉପାର୍ଜନର ଉପାୟ ଅନ୍ୱେଷଣରେ ବ୍ୟସ୍ତ ଥାଏଁ । ଏହି ସମୟରେ ଦିନେ ସଖାଳ ଓଳି ଡାକରୁ ତିନିଖଣ୍ଡ ଚିଠି ପାଇଲି; ଦୁଇ ଖଣ୍ଡ ଚିଠି ଫିଟାଇ ପଢ଼ିଲି, ତୃତୀୟ ଚିଠିଖଣ୍ଡ ପଢ଼ିବାକୁ କେଜାଣି କି ସକାଶେ ସେ ସମୟରେ ମନ ବଳିଲା ନାହିଁ । ମୋ ଶୋଇବା ପଲଙ୍କ ଶିରନା ପାଖରେ ଛିଡ଼ା ହୋଇ ଚିଠି ପଢ଼ୁଥିଲି—ଅପଠିତ ଚିଠି ଖଣ୍ଡିକ ଅନ୍ୟ ସମୟରେ ପଢ଼ିବି ମନେ କରି ମାଣ୍ଡି ଖୋଲ ଭିତରେ ଗୁଞ୍ଜି ଦେଇ ସ୍ନାନ କରିବାକୁ ଚାଲିଗଲି । ସେ ଚିଠିଖଣ୍ଡ ପଢ଼ିବାକୁ ଆଉ ମନରେ ପଡ଼ିଲା ନାହିଁ । ସେହି ସମୟରେ କଲିକତାରେ ବୃହତ୍ ପ୍ରଦର୍ଶନୀ ବସିଥିଲା * । ତହିଁ ପରଦିନ ପ୍ରଦର୍ଶନୀ ଦେଖିବାସକାଶେ କଲିକତା ଚାଲିଗଲି । ପନ୍ଦର କୋଡ଼ିଏ ଦିନ ଉତ୍ତାରେ ବାଲେଶ୍ୱରକୁ ଫେରିଆସି ଧୋବା ଘରକୁ ଦେବା ସକାଶେ ବିଛଣା ଲୁଗା ସମସ୍ତ ବାହାର କଲି; ମାଣ୍ଡିଖୋଲ ମଧ୍ୟରୁ ଚିଠିଖଣ୍ଡ ବାହାରି ପଡ଼ିଲା —ଫିଟାଇ ପଢ଼ିଲି, କେଉଁଝର ମହାରାଜା ଲେଖିଅଛନ୍ତି, ମାସିକ ଦେଢ଼ଶତ ଟଙ୍କା ଦରମାରେ ମୋତେ ତାଙ୍କ କିଲ୍ଲାରେ ମାନେଜରୀରେ ନିଯୁକ୍ତ କରିବାକୁ ତାଙ୍କର ଇଚ୍ଛା; ମୁଁ ସମ୍ମତ ଅଛି କି ନାହିଁ ଶୀଘ୍ର ଉତ୍ତର ଦେବା ସକାଶେ ଲେଖି ଅଛନ୍ତି । ଅନୁସନ୍ଧାନ କରି ଜାଣିଲି, ମୋଠାରୁ ଉତ୍ତର ନ ପାଇବାରୁ ଦଶପଲ୍ଲାର ମାନେଜର ବାଲେଶ୍ୱର-ନିବାସୀ ବାବୁ କୁଞ୍ଜବିହାରୀ ଦେ ସେହି ପଦରେ ନିଯୁକ୍ତ ହୋଇ ଯାଇଥିଲେ ।

ଯଦିଚ ରୋଗଗୁଡ଼ାକ ଶରୀର ମଧ୍ୟରେ ପ୍ରଚ୍ଛନ୍ନ ଭାବରେ ରହିଥାନ୍ତି; ମାତ୍ର ଶରୀର କଥଞ୍ଚିତ ପ୍ରକାରେ କର୍ମକ୍ଷମ ହେଲାଣି—ବିଶେଷରେ ବର୍ତ୍ତମାନ ଅର୍ଥ ଉପାର୍ଜନର ଚେଷ୍ଟା ନ କଲେ ନ ଚଳେ । ଗଡ଼ଜାତର ସୁପରିଣ୍ଟେଣ୍ଡେଣ୍ଟ ମିଷ୍ଟର ସ୍ମିଥ୍ ସାହେବ ବଦଳି ହୋଇ

* ପ୍ରଦର୍ଶନୀ କାଳ—୧୮୮୩-୮୪

In the year 1883-84 an international exhibition was held in Calcutta. It was the first undertaking of its kind in india. ( Buckland's Bengal P. 799 )

ଅନ୍ୟତ୍ର ଚାଲିଗଲେଣି; ସୁତରାଂ ଗଡ଼ଜାତର କୌଣସି କିଲ୍ଲାରେ କର୍ମ ପାଇବାର ଖୁବ୍ ସମ୍ଭାବନା ଜାଣି କଟକ ଚାଲିଗଲି । ମୋହର ପରମବନ୍ଧୁ ଏବଂ ସହାୟ ରାୟ ନନ୍ଦକିଶୋର ଦାସ ବାହାଦୁର ମୋ ପାଇଁ ଗୋଟିଏ ଉପଯୁକ୍ତ ପଦ ଅନ୍ୱେଷଣ କରିବାକୁ ଲାଗିଲେ । ହଠାତ୍ ଦଶପଲ୍ଲା ଏବଂ ନରସିଂହପୁର ଦୁଇ କିଲ୍ଲାର ଦେୱାନ ପଦ ଶୂନ୍ୟ ହୋଇ ପଡ଼ିଲା । ଦଶପଲ୍ଲାରେ ମୁଁ ଏବଂ ନରସିଂହପୁରରେ କେଉଁଝରର ଭୂତପୂର୍ବ ଦେୱାନ ବାବୁ ଜଗମୋହନ ଦାସ ଦୁଇଜଣ ନିଯୁକ୍ତ ହେଲୁଁ । ଏହି ଦୁଇ କିଲ୍ଲାର ରାଜାମାନେ ଗଦିନସୀନ ହେବା ଦିନଠାରୁ ସରକାର ନିଯୁକ୍ତ ଦେୱାନମାନଙ୍କ ଦ୍ୱାରା କିଲ୍ଲାର ଶାସନ କାର୍ଯ୍ୟ ଚାଲି ଆସୁଥିଲା । ଉକ୍ତ ଦୁଇ କିଲ୍ଲାର ରାଜାମାନେ ପ୍ରଜାମାନଙ୍କ ଘରୁ ସମସ୍ତ ଟଙ୍କା ପଇସା ବୋହିଆଣି ରାଜକୀୟ ଗନ୍ଧାଘରେ ନିରାପଦରେ ରଖାଇବା ରାଜ୍ୟପାଳନର ବିଧି ବୋଲି ଜ୍ଞାନ କରୁଥିଲେ । ଦୃଷ୍ଟାନ୍ତସ୍ୱରୂପ ଦଶପଲ୍ଲା ରାଜାଙ୍କ ପ୍ରତିଷ୍ଠିତ ଫୌଜଦାରୀ ମାମଲାର କାର୍ଯ୍ୟବିଧାନର ଯୋଡ଼ିଏ ମାତ୍ର ଦଫା ବିଷୟ ଉଲ୍ଲେଖ କଲେ ପାଠକ ଆପଣେ ଅନ୍ୟାନ୍ୟ ବିଷୟର ପଦ୍ଧତିର କଥଞ୍ଚିତ ଆଭାସ ପ୍ରାପ୍ତ ହେବେ ।

ରାମା ମାହିଁ ଶ୍ରୀ ମଣିମାଙ୍କ ଶ୍ରୀ ପଦତଳେ ପଡ଼ି ଗୁହାରି କଲା—"ଆଜ୍ଞା, ଖ୍ରୀମା ମାହିଁର ଗୋଟାଏ ବଳଦ ମୋ ଧାନ ବିଲରୁ ଖାଉଥିଲା, ମୁଁ ସେ ବଳଦକୁ ଅଡ଼ାଇ ଦେବା ଲାଗି ପାହାରେ ମାରିବାରୁ ଖ୍ରୀମା ମୋତେ ସେହି ବାଡ଼ିରେ ବାଡ଼େଇ ପକାଇଲା । ମୋ ଗୁହାରି ବୁଝିବାକୁ ମଣିମାଙ୍କ ଛାମୁରୁ ସିଲ ହେଉ ।"

ଗୁହାରି ଶୁଣିବା ମାତ୍ରକେ ଶ୍ରୀଛାମୁ ଆଜ୍ଞା କଲେ—"ଏଁ—କଣ—କଣ—ଖ୍ରୀମା ତୋତେ ବାଡ଼େଇଲା ? ଯାଅ—ଚାରିଜଣ ପାଖ ଲୋକ ଖ୍ରୀମାକୁ ଭଲକରି ବାନ୍ଧିବ—ତାହା ଘରଠାରୁ ବାଡ଼େଇ ବାଡ଼େଇ ଆମ୍ଭ ଶ୍ରୀଛାମୁକୁ ଭିଡ଼ି ଆଣିବ । ଆଉ ତାହାର ବଳଦକୁ ବାନ୍ଧି ଆଣିବ ।"

ଖ୍ରୀମା ଆଉ ବଳଦ ବନ୍ଧାହୋଇ ଆସିଲେ—ଖ୍ରୀମା ଆପେ ମାମଲତ କଥା ଜାଣେ କିମ୍ବା ଲୋକେ ତାକୁ ଶିଖାଇ ଦେଇଥିଲେ—ସେ ଶ୍ରୀଛାମୁ ସାକ୍ଷାତରେ କେତୋଟି ଟଙ୍କା ଥୋଇଦେଇ ଗୋଡ଼ତଳେ ପଡ଼ି କହିଲା—"ଆଜ୍ଞା, ମୁଁ ରାମାକୁ ବାଡ଼େଇ ନାହିଁ, ସେ ମୋ ନାମରେ ତୁଚ୍ଛା ମିଛଟାରେ ଗୁହାରି କରିଛି ।"

ଖ୍ରୀମା ଦତ୍ତ କର୍ପୂର ଚନ୍ଦନ ଲାଗି ଟଙ୍କା ପ୍ରତି ଦୃଷ୍ଟିପାତ ହେବାକ୍ଷଣି ଶ୍ରୀଛାମୁ ବୁଝିଗଲେ—ଖ୍ରୀମା କଥା ସମ୍ପୂର୍ଣ୍ଣ ସତ୍ୟ—ରାମା ମିଛରେ ଗୁହାରି କରିଛି । ଆଜ୍ଞା ହେଲା—

"ଆରେ—ରାମା ଆମ୍ଭ ଶ୍ରୀଛାମୁରେ ମିଛ ଗୁହାରି କରିଛି, ତାକୁ ବାନ୍ଧି ବାଡ଼ାଅ ।"

ରାମା ବନ୍ଧାହୋଇ ବାଡ଼ଆ ଖାଇଲା ପରେ ଘରୁ କିଛି ଟଙ୍କା ଆଣି ଶ୍ରୀଛାମୁରେ ଦାଖଲ କରିବାରୁ ମାମଲା ଶେଷ ହୋଇଗଲା ।

ମୋହର ଦଶପଲ୍ଲାର ଦେୱାନୀ କାର୍ଯ୍ୟଭାର ଗ୍ରହଣ କରିବାର ଦୁଇ ତିନିମାସ ଉତ୍ତାରେ ଦଶପଲ୍ଲା ଜୋରମୋ ଇଲାକାର ଜଣେ ପଧାନ ମୋ ସହିତ ସାକ୍ଷାତ୍ କରିବାକୁ ଆସିଥିଲେ । ପଧାନଟି ଜାତିରେ କରଣ, ସ୍ଥୂଳ ଶରୀର, ଗୋଟିଏ ମାମଲତକାର ଲୋକ, ଲେଖି ପଢ଼ି ଶିଖିଥିଲେ—କଥାପ୍ରସଙ୍ଗରେ ତତ୍ପୂର୍ବ ବର୍ଷ ରାଜ-ସରକାର ତରଫରୁ ତାଙ୍କ ବିପକ୍ଷରେ ଗୋଟିଏ ମାମଲା ଉପସ୍ଥିତ ହୋଇଥିବା ବିଷୟ ଉଲ୍ଲେଖ କଲେ । ତାଙ୍କ କଥାର ସଂକ୍ଷିପ୍ତ ବିବରଣ ଏହି—

କୌଣସି ଜଣେ ଖଚୁଆ ଲୋକ ମଣିମାଙ୍କ ଛାମୁରେ ସମ୍ବାଦ ଦେଲା, ଜୋରମୋ ପଧାନ ଆପଣା ଘର ଦାଣ୍ଡ ଦୁଆରେ କାନ୍ଥରେ ଯୋଡ଼ାଏ ପଦ୍ମଫୁଲ

ଚଷ କରଅଛୁ । ଶ୍ରୀମଣିମାଙ୍କ ନଅର କାନ୍ଥରେ ସିନା ପଦ୍ମଫୁଲ ଚଷ ହେବ, ପଧାନ ବାପୁଡ଼ା କାନ୍ଥରେ ପଦ୍ମଫୁଲ ଚଷ କଲାଣି ! ଭାର ବହପ !

ଶ୍ରୀମଣିମାଙ୍କ ଶ୍ରୀଆଜ୍ଞାରେ ଯୋଡ଼ାଏ ପାଖ ଲୋକ ଯାଇ ପଧାନକୁ ଧର ଆଣି ଶ୍ରୀଗ୍ରୁମୁରେ ଉପସ୍ଥିତ କରାଇ ଦେଲେ । ଶ୍ରୀଗ୍ରୁମୁ ସେ ସମସ୍ତଙ୍କୁ ପଦ୍ମଫୁଲ ଚଷ କଥା ପାସୋର ପକାଇଲେଣି । ପଧାନ ଉପରେ ଶ୍ରୀ ଦୃଷ୍ଟିପାତ ମାତ୍ରକେ ପଚାରି ଆଜ୍ଞା ଦେଲେ—"ହୋଇରେ ପଧାନ, ତୁ ଏତେ ମୋଟ ହୋଇଛୁ, ରୋଜନା କେତେ ଘିଅ ଖାଉ, କହ ।"

ପଧାନ ଭୟରେ ହାତ ଯୋଡ଼ି ଜଣାଇଲା—ମହାପ୍ରଭୁ ! ମୁଁ ପଇସା କାହୁଁ ପାଇବ ଯେ ଘିଅ ଖାଇବ ?

ଶ୍ରୀମଣିମା ଆଜ୍ଞା କଲେ—ଆମ ଶ୍ରୀଗ୍ରୁମୁ ପଚାରି ଆଜ୍ଞା କଲୁଁ, ଏଇଟା ଆମ ଶ୍ରୀ ଆଜ୍ଞା ଅମାନ୍ୟ କରି ମିଛ କହିଲା । ଘିଅ ଅବଶ୍ୟ ଖାଏ, ନୋହିଲେ ଏତେ ମୋଟ ହେଲା କପରି ? ହୋଇରେ ପାଖ ଲୋକେ, ଏ ପଧାନ ଘିଅ ଖାଏ କି ନାହିଁ ?

ପାଖ ଲୋକେ—ଆଜ୍ଞା ମା ଠାକୁର, ମଣିମା, ଗ୍ରୁମୁ, ଶ୍ରୀଆଜ୍ଞା କି ମିଛ ?

ଶ୍ରୀମଣିମାଙ୍କ ସୂକ୍ଷ୍ମ ବିଚାରରେ ସ୍ଥିର ହୋଇଗଲା, ଏହି ପଧାନ ମୁଲକରୁ ଟଙ୍କା ଲୁଟକରି ଘିଅ ଖାଇ ମୋଟ ହୋଇଅଛି । ପାଖ ଲୋକେ ତାହା ଘରେ ପଶି ଟଙ୍କା ବାହାର କରି ଆଣିବେ ।

ପୂର୍ବ ରାଜାଙ୍କ ସମୟରୁ ରାଜାଙ୍କ ନଅରରେ ଜଣେ ପୁରୁଣା ପାଞ୍ଜିଆ ଥିଲେ । ସେ ପାଞ୍ଜିଆଟି ନୂଆ ରାଜାଙ୍କ ନାଡ଼ି ନକ୍ଷତ୍ର ଚିହ୍ନିଲେଣି । ପୁଣି ସେ ପଧାନର ଆତ୍ମୀୟ ଲୋକ । ପାଞ୍ଜିଆ ଶ୍ରୀଗ୍ରୁମୁରେ ହାତ ଯୋଡ଼ି ଜଣାଇଲେ,—"ଆଜ୍ଞା ମହାପ୍ରଭୁ ! ଏହି ପଧାନ ଘରୁ ଟଙ୍କା ଅଣିବା ଯେ, କେତେ ଟଙ୍କା ଅଣାଯିବ, ତାହା କାଗଜପତ୍ର ବୁଝିଲେ ଠିକ୍ ହିସାବ ଧରା ପଡ଼ିଯିବ; ତେଣିକି ଯେତେ ଇଚ୍ଛା ଟଙ୍କା ଘେନ ଆସିଲେ କମିଶନ ସାହେବ ଧରି ପାରିବେ ନାହିଁ ।"

ଶ୍ରୀମଣିମା ଆଜ୍ଞା କଲେ—ଠିକ୍, ଠିକ୍, ଆମ ଗ୍ରୁମୁରୁ ସେହି ଆଜ୍ଞା କରୁଛୁଁ ।

ପଧାନ ଅନେକଗୁଡ଼ାଏ ତାଳପତ୍ର ଅଣାଇ ପାଞ୍ଜି ତିଆର କଲା । ଶ୍ରୀଗ୍ରୁମୁଙ୍କ ଦୃଷ୍ଟି ପଡ଼ିବା ଭଳି ସ୍ଥାନରେ ବସି ଚରଚର କରି ଦିନଯାକ ଲେଖୁଥାଏ । ହିସାବ ଠିକ୍ କରିବାକୁ ମାସେ କାଳ ଲାଗିଲା ।

ଦିନେ ସକାଳେ ନଅର ପାଞ୍ଜିଆ ଶ୍ରୀଗ୍ରୁମୁଙ୍କ ଅବସର ବୁଝି ପଧାନକୁ ହିସାବ ତଲବ କରିବାରୁ ସେ ବଡ଼ ବଡ଼ ପାଞ୍ଚ ସାତ ବିଡ଼ା ପାଞ୍ଜି ଶ୍ରୀଗ୍ରୁମୁ ଆଗରେ ଥୋଇ ଦେଲା । ଶ୍ରୀଗ୍ରୁମୁଙ୍କ ଆଜ୍ଞାରେ ପାଞ୍ଜିଆ ହିସାବ ବୁଝିବାକୁ ଲାଗିଲେ । ପାଞ୍ଜିଆ ପାଞ୍ଜି ବିଡ଼ା ଫିଟାଇ ମନେ ମନେ ଢେର ଗୁଡ଼ାଏ ତାଳପତ୍ର ଓଲଟ ପାଲଟ କରି ଗଲେ । ସମସ୍ତ ତାଳ ପତ୍ରରେ କେବଳ ଲେଖା ଅଛି—"ହରି ମୋତେ ରକ୍ଷାକର—ହରି ମୋତେ ରକ୍ଷାକର ।" ମନ ମଧ୍ୟରେ ଖୁବ୍ ହସି ପାଞ୍ଜିଆ ପାଞ୍ଜି ବିଡ଼ା ଥୋଇଦେଲେ ।

ଶ୍ରୀମଣିମା ପଚାରି ଆଜ୍ଞା ହେଲେ—କି ହେ ପାଞ୍ଜିଆ, କଣ ବୁଝିଲ ?

ପାଞ୍ଜିଆ—ଆଜ୍ଞା, ଯେତିକିକୁ ସେତିକି ।

ଶ୍ରୀମଣିମା—କଣ—କଣ ?

ପାଞ୍ଜିଆ—ଆଜ୍ଞା ମଣିମା କଣ କ ? ପଧାନ ରଇତ ଠାରୁ ଯେତେ ଟଙ୍କା ଅସୁଲ କଲା, ସବୁ ଟଙ୍କା ଗଡ଼ାଘରେ ପେଠ କଲା; ଆପେ ଖାଇ ଯିବାକୁ ବାଟ ପାଇଲା ନାହିଁ ।

ଶ୍ରୀମଣିମା—ଏଁ—ଆମ ଗ୍ରାମୁ ପାଞ୍ଜି ବଡ଼ାକୁ ଅନାଇ ଦେଇ ବୁଝି ଆଜ୍ଞା କଲୁଁ—ଯେତକକୁ ତେତକ, ପଧାନ ଟଙ୍କା ଖାଇ ନାହିଁ । ହୋଇ ହେ ପାଞ୍ଜିଆ, ନୂଆଗଡ଼, ଆଠଗଡ଼ ଏତେ ଯେ ରଜା ଅଛନ୍ତି, ଆମ ଗ୍ରାମ୍ଭ ପରି ସେମାନେ କଣ ବୁଦ୍ଧିଆ ? ନାହିଁରେ ବାପ ନାହିଁ ।

ରାଜା ସାହେବଙ୍କର ଗୋଟାଏ ବିଶ୍ୱାସ ଥିଲା, ତାଙ୍କ ପରି ବିଦ୍ୟାବନ୍ତ, ଧନବନ୍ତ, ବୁଦ୍ଧିମନ୍ତ ପୃଥିବୀରେ ଆଉ କେହି ନାହିଁ ।

ଉକ୍ତ ଦୁଇ କିଲ୍ଲାରୁ ଅତ୍ୟାଚରିତ ଶତ ଶତ ପ୍ରଜା ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କ ହଜୁରରେ ଗୁହାରି କରିବାରୁ ରାଜାମାନଙ୍କୁ ସତ୍ ପରାମର୍ଶ ଦେବା ଏବଂ କିଲ୍ଲାରେ ଶାନ୍ତି ସ୍ଥାପନ ନିମନ୍ତେ ସରକାର ତରଫରୁ ଦେବାନ ନିଯୁକ୍ତ ହେଉଥିଲେ ।

ଜଗମୋହନବାବୁ ଏବଂ ମୁଁ ଦୁଇଜଣ ଠିକ୍ ଏକ ତାରିଖ ଏକ ସମୟରେ ଦେବାନରେ ନିଯୁକ୍ତ ହେଲୁଁ । ବର୍ତ୍ତମାନ କର୍ମସ୍ଥାନକୁ ଯିବାର କଥା ।

ଶ୍ରାବଣ ମାସିଆ ଦିନ—ଘୋର ବୃଷ୍ଟି କାଳ, ମହାନଦୀର ବଢ଼ିପାଣି ଦୁଇ କୂଳ ଉଛୁଳି ପଡ଼ୁଅଛି । କଟକଠାରୁ ଦଶପଲ୍ଲା ଯିବାକୁ ମହାନଦୀ ଦକ୍ଷିଣ କୂଳେ କୂଳେ ସଡ଼କ ବଢ଼ି ପାଣିରେ ସ୍ଥାନେ ସ୍ଥାନେ ବୁଡ଼ି ଯାଇଅଛି । କାହିଁ କାହିଁ ଆଣ୍ଠିଏ, ପେଟେ, ଗୁଣ୍ଡିଏ ପାଣି; ପୁଣି ସ୍ଥାନେ ସ୍ଥାନେ ପର୍ବତଠାର ନାଳ, ବୃଷ୍ଟି ସମୟରେ ପ୍ରଖର ସ୍ରୋତ, ପହଁରି ଜଳ—ଡଙ୍ଗା ନ ହେଲେ ପାର ହେବାର ଆପୃତ୍ତ ନାହିଁ; ବୃଷ୍ଟି ବନ୍ଦ ହେବା ମାତ୍ରକେ ନାଳ ଶୁଖିଲା ପଡ଼ିଯାଏ । ଶଗଡ଼ ବା ସୁଆରିରେ ଯିବାର ଉପାୟ ନାହିଁ । ଦେବାନ ଯୋଡ଼ାକ ମିଳି ଖଣ୍ଡେ ମହାଜନୀ ଉଠାଣି ନାଆ ଭଡ଼ା କଲୁଁ । ଗଡ଼ଜାତ ଭିତରୁ ସରକ (ବାଣିଜ୍ୟ ଦ୍ରବ୍ୟ) ବୋଝାଇ ନାଆ କଟକରେ ମାଲ ଓଜାଡ଼ ଦେଇ ଖାଲି ବାହୁଡ଼ି ଯାଏ । ନଦୀ ସ୍ରୋତ ଉପରକୁ ଉଠିଯାଏ, ଏଥିପାଇଁ ଏହାର ନାମ ଉଠାଣି ନାଆ । ଗଡ଼ଜାତ କାରବାରୀ ମହାଜନମାନଙ୍କର ଏହି ନାଆଗୁଡ଼ିକ ପ୍ରଧାନ ଅବଲମ୍ବନ । ପାଠକ ଆପଣେ କଟକ ସହର ବାରବାଟୀ କିଲ୍ଲା ନିକଟ ମହାନଦୀ କୂଳରେ ଗଡ଼ଗଡ଼ିଆ ମହାଦେବ ତୋଠଠାରୁ ଉପରକୁ ଅନେକ ଦୂର ପର୍ଯ୍ୟନ୍ତ ବୃଷ୍ଟି କାଳରେ ଏହିପରି ଶତ ଶତ ନାଆ ଖଟା ହୋଇଥିବାର ଦେଖିପାରିବେ । ସମ୍ବଲପୁର ରେଲଲାଇନ ଫିଟିବା ଦିନଠାରୁ ଏହି ନାଆ ସଂଖ୍ୟା ଅନେକ ଊଣା ପଡ଼ିଗଲାଣି । ନାଆଗୁଡ଼ିକ ଲମ୍ବରେ ଷୋଳ ଗୋଡ଼ିଆଠାରୁ ପଚିଶ ଗୋଡ଼ିଆ (ଅର୍ଥାତ୍ ଷୋଳ ହାତଠାରୁ ପଚିଶ ହାତ); ଓସାର ଲମ୍ବ ଅନୁପାତରେ ପାଞ୍ଚ ଛ ହାତ; ଉତ୍ସର୍ଗ ତିନି ଚାରି ହାତ ମଧ୍ୟରେ । ଜଳମାର୍ଗର ଅବସ୍ଥା ଦୃଷ୍ଟିରେ ନାଆ ପ୍ରସ୍ତୁତ ହୋଇଅଛି । ନାଆ ଓସାର ବେଶି ହେଲେ ସ୍ରୋତ ଉପରକୁ ଉଠିବା କିମ୍ବା ଖରସ୍ରୋତୟ ବାଟରେ ସର୍ପ ପରି କୁଟିଳ ଗତିରେ ସ୍ରୋତ ତଳକୁ ଆସିବା ପକ୍ଷରେ ନିତାନ୍ତ ଅସୁବିଧା ହୋଇପଡ଼ନ୍ତା । ସେହିପରି ଅନେକ ସ୍ଥାନରେ ଦୁଇ ପାଖରେ ପର୍ବତ ଶ୍ରେଣୀ ଅର୍ଥାତ୍ ମହାନଦୀ ଗର୍ଭରେ ପଡ଼ିରହିଥିବା ବୃହଦାକାର ପାଷାଣ ଖଣ୍ଡ ମଧ୍ୟରେ ଆସିବା ସମୟରେ ପ୍ରବଳ ପବନ ଜୋରରେ ନାଆ ପଥର ଉପରେ ପଡ଼ିଯିବାର ସମ୍ଭାବନା । ସେଥିପାଇଁ ଉଚ୍ଚତା ଯଥାସମ୍ଭବ ଊଣା ।

ନାଆର ଠିକ୍ ମଧ୍ୟଭାଗ ଦୁଇପାଖ ମଙ୍ଗ ସୂତ୍ରପାତରେ ଚାରିଟା କିମ୍ବା ପାଞ୍ଚଟା ଖୁମ୍ବ ପୋତା

ଥାଏ—ଖୁମ୍ବ ମୁଣ୍ଡରେ ଲମ୍ବାଲମ୍ବି ମଥାନ । ତହିଁ ଉପରେ ଦୁଇପାଖକୁ ଗଡ଼ାଣିଆ ଚୂଳ । ସେହି ଚୂଳ ପ୍ରଥମେ ବତା ଉପରେ ଚଉକେ ବହଳରେ ଛଣ ଛୁଉଣି । ସେହି ଛୁଉଣି ଉପରେ ବତାର ପେଟ ପାର ଅନ୍ତଟା ଚୂଞ୍ଚିପକାଇ କେବଳ ପିଠି ପାର ଶକ୍ତ ପାତଳ ଭାଗଟାରେ ଲଗାଲଗି ଶକ୍ତରୂପେ ବୁଣଟ ଛୁଉଣି । ସେହି ଗଡ଼ାଣିଆ ଚୂଳ ଉପରେ ନାଉରିମାନେ ଧାଁଦଉଡ଼ କରି ନାଆ ବାହାନ୍ତି । ଭିତରଟା ଖୁମ୍ବ ହିସାବରେ ବତାର ଚୌଖରି କାନ୍ଥ ସ୍ୱରୂପ କରି ଖୋପକୁ ଖୋପ କୋଠରୀରୂପେ ବିଭକ୍ତ କରାହୋଇଥାଏ । ଗୋଟିଏ ଗୋଟିଏ ଖୋପରେ ଭିନ୍ନ ଭିନ୍ନ ପ୍ରକାର ସରକ ଲଦନ ହୁଏ । ସରକ ଲଦନ ଉତ୍ତାରେ ଉପର ଚୂଳଟା ନାଆ ଫନ୍ଦରେ ଶକ୍ତରୂପେ ବାନ୍ଧି ଦିଆଯାଏ । ନାଆରେ ସରକ ପୂରାପୂରି ଲଦନ—ଚଉକେ ମାତ୍ର ଫନ୍ଦ ଉପରକୁ ଦିଶୁଥାଏ । ନଦୀ ଭିତରେ ନାଆ ଚାଲିବା ସମୟରେ ପବନ ଟିକଏ ଟାଣ ହେଲେ— ଲହରୀ ହେଲେ ଟେଣ୍ଡା ଜଳ ଉପରକୁ ଉଠିଯାଇ ତଳକୁ ଖସିପଡ଼େ । ନାଆ ଖୋପ ଭିତରକୁ ଜଳ ପଶି ସରକ ଭିଜାଇ ପାରେ ନାହିଁ । ପୂରି ବୋଝାଇ ନାଆର ଦୁଇ ମଙ୍ଗ ଆଉ ଚୂଳ ମାତ୍ର ଦିଶୁଥାଏ ।

ମହାନଦୀର ଗଡ଼ଗଡ଼ିଆ ମହାଦେବ ଘାଟରେ ଆମ୍ଭମାନଙ୍କ ଭଡ଼ା ନାଆ ଖଣ୍ଡ ଥିଲା । ସକାଳଓଳି ଦିନ ପହରକ ପ୍ରାୟ ସମୟ—ମାଝି ଆମ୍ଭମାନଙ୍କ ସାମାନ ସହିତ ଆମ୍ଭ ଦେବାନ ଯୋଡ଼ାକୁ ନାଆର ମଝି ଖୋପରେ ପୂରାଇ ଦେଇ ଉପର ଚୂଳଟା ନାଆ ଫନ୍ଦରେ ଆଣ୍ଟିକରି ବାନ୍ଧିଦେଲା । ଆମ୍ଭମାନଙ୍କ ଚାକରମାନେ ଆଉ ଗୋଟାଏ ଖୋପ ବା ବିଲରେ ପଶିଲେ । ଖୋପ ଭିତରଟା ପବନ ଶୂନ୍ୟ ଏବଂ ପ୍ରାୟ ଆଲୋକଶୂନ୍ୟ । ଖୋପ ଭିତରେ ଆମ୍ଭେମାନେ ଦେବାନ ଯୋଡ଼ାକ ବିଛଣା ପାରି ବସିଲୁଁ ବା ଶୋଇଲୁଁ । କାରଣ ବସିଲେ ମୁଣ୍ଡରେ ଚୂଳ ବାଜେ, ଗୋଡ଼ ଲମ୍ବାଇ ଶୋଇବାକୁ ଜାଗା ନାହିଁ; ମାଣ୍ଡିକୁ ଆଉଜି ପଡ଼ିଥାଉଁ । ଶୋଇବା ସମୟରେ ତେଲୁଣି ପୋକ ପରି ରକାହୋଇ ପଡ଼ିଥାଉଁ ।

'ଜେ-ଜେ-ଗଙ୍ଗା ମାତା' କହି ନାଉରିମାନେ ନାଆ ମେଲିଦେଲେ । ନାଆ ସ୍ରୋତ ଉଜାଣିକୁ ଉଠିବ, ସୁତରାଂ କାତରେ ପେଲି ନେବା ଦରକାର, ଆମ୍ଭମାନଙ୍କ ନାଆରେ ପାଞ୍ଚଜଣ କାତୁଆ ଏବଂ ଜଣେ ଆଗମଙ୍ଗୁଆ । କାତଗୁଡ଼ିକ ସରୁ ପାକଳ ବାଉଁଶ, ପ୍ରାୟ ପାଞ୍ଚ ଛ ହାତ ଲମ୍ବ । ଆଗମଙ୍ଗୁଆ ହାତରେ ମଧ୍ୟ ସେହିପରି ଖଣ୍ଡେ କାତ—ପାର୍ଥକ୍ୟ ମଧ୍ୟରେ ମଙ୍ଗୁଆ କାତ ମୁଣ୍ଡରେ ଛଣି ସୂତାରେ ଖୁବ୍ ଶକ୍ତରୂପେ ଆଙ୍କୁଶି ବନ୍ଧା । ନାଆ ଚଳୁଥିବାବେଳେ ଆଗମଙ୍ଗୁଆ ଦରକାର ମାଫିକେ ଏ ପାଖ ସେ ପାଖ କାତ ପକାଇ ନାଆ ମଙ୍ଗାଉଥାଏ । ନାଆ ବଣ ମଧ୍ୟରେ ଯିବା ସମୟରେ ଆଙ୍କୁଶିରେ ଗଛ ଡାଳ ଧରି ନାଆ ମଙ୍ଗାଏ । ବାହାଣ ନାଉରିମାନେ ଆଗମଙ୍ଗ ନିକଟ ଘୁତ ଉପରେ ଧାଡ଼ିବାନ୍ଧି ଛିଡ଼ାହୋଇ ଏକ ସଙ୍ଗରେ ପାଣିରେ କାତ ପକାନ୍ତି । ତହିଁ ଉତ୍ତାରେ କାତ ମୁଣ୍ଡଟା କାନ୍ଧ ଉପରେ ଥୋଇ ଦୁଇହାତ ମୁଠାରେ ଖୁବ୍ ଶକ୍ତରୂପେ କାତ ଧରି, ଦେହର ସମସ୍ତ ବଳ କାତ ଉପରେ ପକାଇ ପଛ ମଙ୍ଗ ଯାଏ ପେଲି ଘେନିଯାନ୍ତି । ସେ ସମୟରେ ବାହାଣିଆମାନଙ୍କର ମେରୁଦଣ୍ଡ ଏବଂ ପଞ୍ଜରାହାଡ଼ ଗୁଡ଼ିକ ମୋଡ଼ି ହୋଇ ଯାଉଥାଏ । ଟିକିଏମାତ୍ର ସମୟ ପାଇଲେ ନାଆଟା ସ୍ରୋତ ବଳରେ ପଛକୁ ଘୁଞ୍ଚି ଆସିବ ବୋଲି ପଛମଙ୍ଗ ପାଖ ପାଣିରୁ କାତ ଉଠାଇବା ମାତ୍ରକେ ପାଞ୍ଚଜଣଯାକ ଆଗମଙ୍ଗ ଯାଏ ଧାଇଁଯାଇଁ ଚଞ୍ଚଳ କାତ ପାଣିରେ ପକାଇ ଦେଇ ନାଆଟାକୁ ଅଟକାଇ ଧରନ୍ତି । ନାଆ ଉପର ନଳଟା ଯେପରି ଗଡ଼ାଣିଆ, ଅନଭ୍ୟସ୍ତ ଲୋକ ଚଞ୍ଚଳରେ ଧାଇଁଲେ ନିଶ୍ଚୟ ତଳକୁ ପାଣିରେ ପଡ଼ିଯିବାର କଥା, ସମୟ ସମୟରେ ଜଣେ ଜଣେ ନାଉରି ମଧ୍ୟ ନଦୀସ୍ରୋତରେ ପଡ଼ିଯାନ୍ତି ।

ଆଶ୍ଚର୍ଯ୍ୟର କଥା -- ପାଣିରେ ପଡ଼ିଯିବା ଲୋକଙ୍କୁ ଉପରକୁ ଉଠାଇବା ସକାଶେ ସାହାଯ୍ୟ କରିବା ଥାଉ—କାହିଁକି ପଡ଼ିଗଲୁ କହି, ସମସ୍ତେ ଖପା ହୋଇ ଯାଇ ତାକୁ ବାଡ଼ାନ୍ତି । ଆହୁରି ଆଶ୍ଚର୍ଯ୍ୟର କଥା—ଆଉ ଗୋଟାଏ ନାଉରି ପାଣିରେ ପଡ଼ିଗଲେ, ଆଉ ଆଉ ନାଉରିଙ୍କ ସଙ୍ଗେ ମିଶି ମାଡ଼ଖିଆ ନାଉରିଟା ମଧ୍ୟ ପାଣିପଡ଼ା ନାଉରିଟାକୁ ବାଡ଼େଇବାକୁ ଧାଏଁ ।

ବେଳ ଦଶ କି ଏଗାରଟା ସମୟ—ଅନୁମାନ କୋଶ ଦେଢ଼ ମାତ୍ର ବାଟ ଉପରକୁ ଉଠି କୁଶଳେଶ୍ୱର ମହାଦେବଙ୍କ ପଠାରେ ନାଆ ଲାଗିଲା । ମାଝି କୂଳପାଖ ବାଲିରେ ଗୋଟାଏ କାଠ ପୋତି ନାଆକୁ ଖଟାଇ ଦେଲା । ତହିଁ ଉତ୍ତାରେ ନାଆ ଫନ୍ଦରୁ ଗୁଳ ବନ୍ଧନ ଫିଟାଇ ଆମ୍ଭମାନଙ୍କୁ ବାହାର କରି ଦେଲା । ଗୁକରମାନେ ରୋଷେଇରେ ଲାଗିଗଲେ । ସ୍ନାନ ଭୋଜନାଦି ଅନ୍ତେ ମାଝି ଆମ୍ଭମାନଙ୍କୁ ଅନ୍ଧକୂପ ମଧ୍ୟରେ ପକାଇ ନାଆ ପେଲି ଦେଲା ।

(ଉ. ସା: ୮ମ ଭାଗ—୪ର୍ଥ ସଂଖ୍ୟା)

---

## ଦଶପଲ୍ଲାର ଦେବାନୀ (୨)

ନାଉରିମାନଙ୍କର ଦିନବେଳେ ରୋଷେଇ ହୁଏ ନାହିଁ । ନାଆ ଉପରେ ଗୋଟାଏ ଉଠାଚୁଲି ଏବଂ ବଡ଼ ବଡ଼ ଯୋଡ଼ାଏ ହାଣ୍ଡି ଥାଏ । ରାତିବେଳେ ନାଆ ଉପରେ ରୋଷେଇ ହୁଏ । ରାତି ଓଳିଟା ତତଲା ଭାତ ଖାଇ ତହିଁ ଉତ୍ତାରେ ଆଉ ପାଞ୍ଚ ସାତ ସେର ଅନ୍ଦାଜ ଭାତ ରାନ୍ଧି ତହିଁରେ ଦୁଇ ତିନି ମାଠିଆ ପାଣି ପୂରାଇ ରଖି ଦେଇଥାନ୍ତି । ହାଣ୍ଡି ପାଖରେ ଖଣ୍ଡେ କଂସା ଥୁଆ ହୋଇଥାଏ । ଦିନ ଦଢ଼କଠାରୁ ନାଉରିମାନଙ୍କ ପଖାଳ ଖିଆ ଆରମ୍ଭ ହୁଏ । ଜଣେ ଜଣେ ବାହାଣରୁ ଫିଟି ଆସି ଚଞ୍ଚଳ ଅଧ କଂସାଏ ଭାତ ଅଧ କଂସାଏ ତୋରାଣି ବାଡ଼ି ପକାଇ ଦୁଇ ତିନି ମିନିଟ ମଧ୍ୟରେ ପିଇ ଦେଇ କାଠ ଧରି ଛିଡ଼ା ହୋଇଯାନ୍ତି । ସଖାଳୁ ସନ୍ଧ୍ୟାଯାଏ କଂସା ଖଣ୍ଡକର ବିଶ୍ରାମ ଥାଏ ନାହିଁ । ଜଣେ ଜଣେ ନାଉରି କେଜାଣି ଦଶ ପନ୍ଦର ଥର ଲେଖାଏଁ ତୋରାଣି ପିଇଥାନ୍ତି । ସେ ସମୟରେ ତିଅଣ ସହିତ ସମ୍ପର୍କ ନ ଥାଏ । ତିଅଣ ଖାଇବାକୁ ତର କାହିଁ ? କଦାଚିତ୍ କାହାରି କପାଳରେ ଖୋଷାଏ ଦୁଇ ଖୋଷା ପିଆଜ ବା ଟିକିଏ ଆମ୍ବୁଲ ଘଟିଯାଏ, ନୋହିଲେ ଲୁଣ ଟିକିକ ମୂଳ ।

ନଈ ଭିତରେ ଅକାତ ପାଣି—ପୁଣି ସୁଅ ତୋଡ଼ ନାଆ ସମ୍ଭାଳି ପାରିବ ନାହିଁ । ଏଥିପାଇଁ କୂଳଠାରୁ ଗୁରି ପାଞ୍ଚ ହାତ ଦୂର ବା କୂଳ ଲଗାଲଗି ତିନିଗୁରି ହାତ ଦୂରରେ ନାଆ ଉପରକୁ ଉଠୁଥାଏ । କୌଣସି ସ୍ଥାନରେ ବହୁ ଦୂରଯାଏ ପରଚ୍ଛି ବାଲି ଆଡ଼ିଆ କୂଳ ମିଳିଗଲେ ନାଆରେ ଯେ ତିରିଶ କି ଗୁଳିଶ ହାତ ଲମ୍ବ ଖଣ୍ଡେ ଦଉଡ଼ି ଥାଏ, ସେହି ଦଉଡ଼ି ଖଣ୍ଡ ନାଆ ଆଗ ମଙ୍ଗରେ ବାନ୍ଧି ଦେଇ ବାହାଣିଆ ନାଉରିମାନେ କାଠ ଥୋଇ ଦେଇ ସେହି ଦଉଡ଼ି ମୁଣ୍ଡ ଧରି କୂଳ ବାଲି ଉପରେ ଗୁଲି ଗୁଲି ନାଆକୁ ଭିଡ଼ି ଭିଡ଼ି ନିଅନ୍ତି । ଢେର ସ୍ଥାନରେ ବଡ଼ି ପାଣି କୂଳ ବୁଡ଼ାଇ ଉପରକୁ କୋଶେ ଦେଢ଼କୋଶ ପର୍ଯ୍ୟନ୍ତ ମାଡ଼ି ଯାଇଅଛି — ନଦୀ ବା ନଦୀ କୂଳର ଚିହ୍ନ ନାହିଁ —ସବୁ ଏକାକାର; କାନ୍ତୁ ନାଆକୁ କୂଳ ଭିଡ଼ି ଗୁଲିବାକୁ ହେବ । କେବେ ଗହୀର ବିଲ ଭିତରେ--ଗ୍ରାମ ଗୋହିରି ଭିତରେ ନାଆ ଗୁଲେ । ସ୍ଥାନେ ସ୍ଥାନେ ବଣ ଭିତର ବାଟେ ନାଆକୁ ନେବାକୁ ହୁଏ । ସେ ସମୟରେ ଆଗ ମଙ୍ଗୁଆ ଗଛ ଡାଳରେ ଆଙ୍କୁଶିଟା ଲଗାଇ ଲଗାଇ ନାଆକୁ ମଙ୍ଗାଏ । କଦାଚିତ୍ କେତେଜଣ ବାହାଣିଆ ମଧ୍ୟ ଗଛଡାଳ ଭିଡ଼ି ଭିଡ଼ି ଗଛ ଡାଳ ଆଡ଼େଇ ଆଡ଼େଇ ନାଆକୁ ଉଠାନ୍ତି । କଦାଚିତ୍ ଅପରାହ୍ନ ସମୟରେ

ଅତି ସୁନ୍ଦର ମନୋହର ସ୍ଥାନରେ ନାଆ ଭିଡ଼େ । କୂଳଟା ବହୁଦୂର ବିସ୍ତୃତ ଉଚ୍ଚ ନୀଚ ସିକତା ସ୍ତୂପମୟ; ଉତ୍ତର ପଶ୍ଚିମ ଦକ୍ଷିଣ ତିନି ଦିଗରେ ବିଶାଳ ପ୍ରାଚୀର ପରି ଗିରିଶ୍ରେଣୀ ଦଣ୍ଡାୟମାନ, ପଶ୍ଚିମ ପର୍ବତ ଶୃଙ୍ଗରେ ଜ୍ୱଳନ୍ତ ସୁବର୍ଣ୍ଣ ପିଣ୍ଡବତ୍ ସୂର୍ଯ୍ୟଦେବ ଅସ୍ତଗମନୋନ୍ମୁଖ; ମସ୍ତକ ଉପରେ ଆକାଶରେ ଦଳବଦ୍ଧ ନାନାଜାତୀୟ ପକ୍ଷୀ କଳରବ କରି ପଶ୍ଚିମ ପର୍ବତ ଦିଗକୁ ଉଡ଼ି ଯାଉଥାନ୍ତି । ବୋଧହୁଏ ପଶ୍ଚିମ ଦିଗସ୍ଥ ପର୍ବତ ପ୍ରାଚୀର ମୂଳରେ ଯେମନ୍ତ ମହାନଦୀ ସ୍ରୋତ ଶେଷ ହୋଇଅଛି— ନିର୍ଜନ, ନିସ୍ତବ୍ଧ ଗ୍ରାମ୍ୟ ସମସ୍ତ ପ୍ରକାର ପ୍ରାଣୀ-ମାନଙ୍କଠାରୁ ସମ୍ପର୍କ ଶୂନ୍ୟ । ସେହିପରି ସ୍ଥାନରେ ଠିକ୍ ସନ୍ଧ୍ୟା ସମୟରେ ସିକତାସ୍ତୂପ ଉପରେ ବସି ପଶ୍ଚିମ ଦିଗକୁ ଅନାଇଲେ ମନ ମଧ୍ୟରେ କି ପ୍ରକାର ଗୋଟିଏ ଅନିର୍ବଚନୀୟ ଗମ୍ଭୀର ପବିତ୍ର ଭାବର ଉଦୟ ହୁଏ, ତାହା ବର୍ଣ୍ଣନାତୀତ । ସେହି ମହାନ୍ ଭାବ ଦର୍ଶକଙ୍କ ପ୍ରାଣରେ ଅନୁଭୂତ ହୁଏ ।

ଏହିପରେ ନଶ୍ବର ଗତିରେ ଅଷ୍ଟମଦିନ ପ୍ରାୟ ମଧ୍ୟାହ୍ନ ସମୟକୁ ଆମ୍ଭମାନଙ୍କ ନାଆ ନରସିଂହପୁର କିଲ୍ଲା ଇଲାକା ଗୋଟିଏ ଗ୍ରାମ ତୋଟରେ ଭିଡ଼ିଲା । ଏ ସ୍ଥାନରେ ମହାନଦୀ ଉତ୍ତର ଦକ୍ଷିଣ ଦୁଇକୂଳ ନରସିଂହପୁର ଏବଂ ଦଶପଲ୍ଲା କିଲ୍ଲା ଇଲାକାର ସୀମାନ୍ତ ସ୍ଥାନ । ମହାନଦୀ କୂଳରୁ ନରସିଂହପୁର ଗଡ଼ କୋଶେ ବାଟ ମାତ୍ର ଦୂର । ଦକ୍ଷିଣ ଦିଗକୁ ନଦୀକୂଳଠାରୁ ପ୍ରାୟ ସାତକୋଶ ଦୂରରେ ଦଶପଲ୍ଲା ରାଜଧାନୀ ମଧୁବନ ଗଡ଼ । ନଦୀ କୂଳରେ ଦଶପଲ୍ଲା ଇଲାକାର ବେଲପଡ଼ା ଗ୍ରାମ । ଏହି ଗ୍ରାମର ଦକ୍ଷିଣ ପ୍ରାନ୍ତରେ ଗୋଟିଏ ସରକାରୀ ଡାକବଙ୍ଗଳା ଅଛି । ସମ୍ବଲପୁରଠାରୁ ଗୋଟିଏ ସଡ଼କ ମହାନଦୀ କୂଳେ କୂଳେ ବେଲପଡ଼ା ଗ୍ରାମ ଓଳିତଳ ସ୍ପର୍ଶକରି ପୁରୀ ପର୍ଯ୍ୟନ୍ତ ଯାଇଅଛି । ମଧ୍ୟ-ଭାରତବର୍ଷ ଏବଂ ଉତ୍କଳର ପଶ୍ଚିମ ଗଡ଼ଜାତସ୍ଥ ତୀର୍ଥଯାତ୍ରିମାନେ ଏହି ବାଟରେ ପୁରୀ ଧାମକୁ ଯାତାୟାତ କରନ୍ତି । ବେଲପଡ଼ା ଗ୍ରାମର ପଶ୍ଚିମ ଦିଗକୁ ପ୍ରାୟ ଆଠକୋଶ ଦୂରରେ ସୁବିଖ୍ୟାତ ହରିମୂଳ ଘାଟି । ମହାନଦୀ ଉତ୍ତର ଦକ୍ଷିଣ ଦୁଇ କୂଳରେ ନଦୀ ସ୍ରୋତ ଭିତରୁ ଉଠି ବିଶାଳ ପର୍ବତ ପ୍ରାଚୀର ଦଣ୍ଡାୟମାନ । ମଧ୍ୟରେ ଅତି ଗମ୍ଭୀର ଅପ୍ରଶସ୍ତ ମହାନଦୀ ସ୍ରୋତ ପ୍ରବାହିତ । ଏହା ଗୋଟିଏ ଅପୂର୍ବ ବିଚିତ୍ର ଦୃଶ୍ୟ ।

ନାଆ ନରସିଂହପୁର କିଲ୍ଲା ଇଲାକା ଗ୍ରାମ ତୋଟରେ ଉପସ୍ଥିତ । ଦେବାନ ବାବୁଙ୍କ ସାମାନ ଘେନିଯିବା ସକାଶେ ଗଡ଼ରୁ ବେଠିଆ ଏବଂ କର୍ମଚାରୀ ଆସି ଉପସ୍ଥିତ ଥିଲେ । ବାବୁ ଜଗମୋହନ ଦାସ ଆପଣେ ବିଦାୟ ଗ୍ରହଣ କରି ନାଆରୁ ଓହ୍ଲାଇ ଗଲେ । ବର୍ତ୍ତମାନ ମନରେ ଭାରି ଆନନ୍ଦ—ଆଲୋକ ପବନ ବାହ୍ୟ ଜଗତର ସର୍ବପ୍ରକାର ସମ୍ପର୍କଶୂନ୍ୟ ନାଆଖୋପ ଅଥବା ଅନ୍ଧକୂପ ମଧ୍ୟରେ ପଡ଼ିରହି ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଅଗ୍ରପଶ୍ଚାତ୍ ଧାବମାନ ପାଞ୍ଚଗୋଟି ବାହାଣିଆଙ୍କ ଦଶଗୋଟି ଦୃଢ଼ ପଦକ୍ଷେପର ଏକ ପ୍ରକାର କର୍କଶ ବିରକ୍ତିକର ଶବ୍ଦ ଶୁଣିବାକୁ ହେବ ନାହିଁ । ରାତ୍ରିନିଦ୍ରା ମଧ୍ୟ ଚିର୍ଥୈବଚ । ପ୍ରାଣଧାରଣ ବା କ୍ଷୁଧା ନିବାରଣ ନିମନ୍ତେ ଆହାର ପତିତପାବନ ଡାଲି ମାତ୍ର ସହାୟ, ଆଉ କଟକରୁ ସଂଗୃହୀତ ମାର୍ଗସମ୍ବଳ ବାସି ମିଷ୍ଟାନ୍ନ ।

ମନ ମଧ୍ୟରେ ନାଆ ଖୋପ ମଧ୍ୟରୁ ଆନନ୍ଦପୂର୍ବକ ଚିରବିଦାୟ ଗ୍ରହଣକରି ବାହାରକୁ ବାହାରି ଆସିଲି । କଟକଠାରୁ କର୍ମକ୍ଷେତ୍ରରେ ପହଞ୍ଚାଇବା ସକାଶେ ସେ ସମୟରେ ଏକମାତ୍ର ସହାୟ ନାଆ ଖୋପଠାରେ କୃତଜ୍ଞତା ସ୍ୱୀକାର କରିବା ତ ଦୂର କଥା, ଥରେ ପଛ ଫେରି ଅନାଇବାକୁ ମଧ୍ୟ ଇଚ୍ଛା ବଳିଲା ନାହିଁ । ଏହି କୃତଘ୍ନ ମାନଙ୍କର ଦଣ୍ଡଭୋଗ ଅବଶ୍ୟମ୍ଭାବୀ—ସେଥିରେ ପ୍ରମାଣ ପାଠକ ଆପଣେ ଶୀଘ୍ରପ୍ରାପ୍ତ ହେବେ ।

ଘେଦୁଅ ଶେଷିଆ ମୁଣ୍ଡଫଟା ଖରା—ଛତାଟିଏ ମୁଣ୍ଡେଇ ନାଆ ମଥାନ ଉପରେ ବସିଲି, ଗୋଟିଏ

ପିଲାଟା ଆସି ପାଖରେ ବସିଲା । ଖୁବ୍ ମନସୁଖରେ ତାକୁ ବୁଝାଇବାକୁ ଲାଗିଲି—ଏହି ଦେଖ, ଦଶପଲ୍ଲୀ ଇଲାକା ବେଲପଡ଼ା ଗ୍ରାମ ଦିଶୁଛି—ନଦୀଟା ପାରି ହେବାକୁ ଚାରି ପାଞ୍ଚଘଣ୍ଟା ଲାଗିବ—ସନ୍ଧ୍ୟା ସରିକି ଆମ୍ଭେମାନେ ଗ୍ରାମରେ ପହଞ୍ଚିବା । ପଧାନ ସଞ୍ଜା ଦେବ—ନାନାପ୍ରକାର ପନିପରିବା ମାଛ ସଞ୍ଜାରେ ଥିବ - ଭଲକରି ଚୁଲିରେ ରଜମ ରାନ୍ଧିବୁ, ମାରି ହାତ ଚଞ୍ଚଳ କରିବୁ । ଆଜି ଭଲକରି ଖାଇ, ଗୋଡ଼ ଲମ୍ବାଇ ଦେଇ, ଭଲକରି ଶୋଇବାକୁ ହେବ, ପୁଡ଼ାଏ କଟକୀ ମିଷ୍ଟାନ୍ନ ସଙ୍ଗରେ ଥିଲା, ଆଉ ପ୍ରୟୋଜନ କ'ଣ—ଦେ ନାଉରିମାନଙ୍କୁ ବାଣ୍ଟି ଦେ ।

ନାଉରିମାନେ ନାଆ ମେଲି ଦେଇ ଆହୁଲା ଧରିଲେ । ନଦୀ ଗର୍ଭଟାରେ ଅକାତ ପାଣି । ଗୋଟାଏ ବଡ଼ ଆହୁଲା ଯୋଡ଼ାଏ ବାହାଣିଆ ଧରି ଏକ ପାଖରେ ବାହାନ୍ତି । ମଙ୍ଗଧରା ମଙ୍ଗଟା ବାହି ନାଆ ସଳଖାଏ ।

ନାଆ ମେଲିବାର ପ୍ରାୟ ଦୁଇଘଣ୍ଟା ଉତ୍ତାରେ ନାଆଟା ନଦୀର ପ୍ରାୟ ମଝାମଝିରେ ଚାଲୁଅଛି, ବାହାଣିଆମାନେ ଖୁବ୍ ଉତ୍ସାହରେ ଆହୁଲା ବାହୁଅଛନ୍ତି । ମଙ୍ଗୁଆ ମାଝି ଖୁବ୍ ରଡ଼ିଟାଏ କରି ଡାକିଲା—ଚଞ୍ଚଳ ବାହା, ଚଞ୍ଚଳ ବାହା—ମଣିଭଦ୍ରା ପର୍ବତ ଶିଖରେ ମେଘ ଚରିଲାଣି ଏହିଲଗେ ଝଡ଼ ବର୍ଷାହେବ । ମୁଁ ଚମକି ପଡ଼ି ଚାରିଆଡ଼କୁ ଚାହିଁ ଦେଖିଲି—ଚାରିଆଡ଼େ ଖରା ପଡ଼ୁଛି—ମେଘ କାହିଁ । ଅଳ୍ପ ଦୂରରେ ମହାନଦୀ ଗର୍ଭରେ ବାଲିର ଗୋଟାଏ କ୍ଷୁଦ୍ର ପଠା ଥିଲା; ନାଉରିମାନେ ଚଞ୍ଚଳ ବାହି ନେଇ ସେହି ବାଲି ପଠା ଧାରରେ ନାଆଟାକୁ ଖଟାଇ ପକାଇଲେ । ଅନାଇ ଦେଖିଲି, ଦକ୍ଷିଣ ପଶ୍ଚିମ କୋଣ ପର୍ବତ ଶିଖରେ କେତେ ଖଣ୍ଡ କ୍ଷୁଦ୍ର ମେଘ ମାନ ଘୋଡ଼ାଇ ରହିଥିଲେ । ପର୍ବତ ବିଶେଷର ଶିଖରେ ସଞ୍ଚରଣଶୀଳ ମେଘର ଅବସ୍ଥା ଦୃଷ୍ଟିରେ ନାଉରିମାନେ ଶୀଘ୍ର ବୃଷ୍ଟି ଓ ପବନ ଆଗମ ବିଷୟ ବୁଝି ପାରନ୍ତି । ସତକୁ ସତ ସେଦିନ ଅର୍ଦ୍ଧଘଣ୍ଟା ମଧ୍ୟରେ ଭୟଙ୍କର ତୋଫାନ ସହିତ ବୃଷ୍ଟି ଉପସ୍ଥିତ । ମାଝି ମୋ ଚାକର ସହିତ ମୋତେ ପରିତ୍ୟକ୍ତ ଅନ୍ଧକୂପ ମଧ୍ୟରେ ପୁନର୍ବାର ପକାଇ ଚାଳିଆ ଆଣ୍ଟି କରି ବାନ୍ଧି ଦେଲା । ସାମାନ ସବୁ ବାନ୍ଧି ରଖି ଦେଇଥିଲୁଁ, ପୁନର୍ବାର ଫିଟାଇ ବିଛଣା କରିବାକୁ ହେଲା । ଦୁଃଖ ଆଉ ଗୁଡ଼ାଏ ସଙ୍ଗୀ ଦୁଃଖକୁ କୁଆଡ଼ୁ ଟାଣି ଆଣେ । ଜଗମୋହନ ବାବୁ ସାଙ୍ଗରେ ଥିଲେ ଦୁଇଜଣ ମୁହଁ ଚାହାଁ ଚାହିଁ ହୋଇ ନାନାପ୍ରକାର କଥାଭାଷା କରି ଦୁଃଖ ଗୁଡ଼ାକୁ ଆଗରୁ ଆଡ଼େଇ ଦେଉଥିଲୁଁ—ଆଜି ଏକାକୀ । ସେ ସମୟରେ ହାରିକେନ ଲଣ୍ଠନର ଆବିର୍ଭାବ ହୋଇ ନ ଥିଲା, ଖୋପ ଭିତରେ ଦୀପ ଆଲୁଅ ଜାଳିବା ନିରାପଦ ନୁହେଁ—ଅନ୍ଧକୂପ ଅନ୍ଧ ତମସାବୃତ ତହିଁ ଉପରେ ଦୁଃଖ – ଉପବାସ ଜନିତ ଯନ୍ତ୍ରଣା । ଦିନବେଳେ ପ୍ରାୟ ଅର୍ଦ୍ଧ ଭୋଜନ ହୋଇଥିଲା । ରାତିରେ ସୁନ୍ଦର ଭୋଜନ ହେବ, ଏହି ଆଶାରେ ବାଲିରେ ବସି ଅର୍ଦ୍ଧସିଦ୍ଧ ପ୍ରାୟ ମୁଗଡାଲି ସହାୟତାରେ ଭୋଜନରେ ପ୍ରବୃତ୍ତି ଜାତ ହେଲା ନାହିଁ । ସମସ୍ତ କଷ୍ଟର ଅବସାନ, ଏହିକଥା ସ୍ମରଣକରି ମନ ଉଦର ପରିପୂର୍ଣ୍ଣ । କଟକୀ ବାସି ମିଷ୍ଟାନ୍ନ ଗୁଡ଼ାଏ ଥିଲା, ଦିନବେଳେ ନାଉରିମାନଙ୍କୁ ବାଣ୍ଟି ଦେଇଅଛି; ଭୟଙ୍କର ଭୋକ । ରାତିଯାକ ଅବିଚ୍ଛେଦ ଭୟଙ୍କର ପବନ ସହିତ ବୃଷ୍ଟି—ବାହାରକୁ ସାଇଁ ସାଇଁ ଗୁମ୍ ଗୁମ୍ ଭୀଷଣ ଶବ୍ଦ ଶୁଭୁଥାଏ । ଖାକୁତରେ (୧) ( ହାତୀବନ୍ଧା ଖମ୍ବ ) ବନ୍ଧା ମତ୍ତ ବାୟା ହାତୀପରି ନାଆଟା ଏପାଖ ସେପାଖ ବାଡ଼େଇ ହୋଇ ଉଠୁଥାଏ ପଡ଼ୁଥାଏ । ଖୋପ ଭିତରେ ସ୍ଥିର ହୋଇ ଶୋଇବାର ମଧ୍ୟ ଆୟତ୍ତ ନାହିଁ—ଗଡ଼ି ବୁଲୁ ଥାଉଁ । ନାଆ ପାଗଡ଼ (୨) ( ନାଆବନ୍ଧା ଦଉଡ଼ି ) ଛିଡ଼ାଇଲେ ଶରୀରରୁ ପ୍ରାଣ ଛାଡ଼ି ଯିବା ଏକାବେଳକେ ଅବଧାରିତ । ପ୍ରବଳ ସ୍ରୋତ ପାଣି ଭଉଁରୀରେ ପଡ଼ି ନାଆଖଣ୍ଡ ବୁଡ଼ିଯିବା କମ୍ବା ପର୍ବତ ନାସିରେ ବାଜି ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଯିବା ଉତ୍ପାତ ନିବାରଣର ଉପାୟ ନାହିଁ । ଏଥି

୧ । ଖାକୁତ—ହାତୀବନ୍ଧା ଖମ୍ବ । ୨ । ପାଗଡ଼—ନାଆବନ୍ଧା ଦଉଡ଼ି ।

ସକାଶେ ସମସ୍ତ ସମୟରେ ଜୀବନ ନାଶର ଆଶଙ୍କା ପ୍ରାଣକୁ ଅସ୍ଥିର କରି ପକାଉଥାଏ । ରୋଗର ଯନ୍ତ୍ରଣା, ଶରୀରର ଅସ୍ଥିରତା—ଜୀବନନାଶର ଆଶଙ୍କା—ଦୁର୍ଯୋଗଗୁଡ଼ିକ ପୂର୍ଣ୍ଣ ମାତ୍ରାରେ ଜୀବନକୁ ବେଢ଼ି ବସି ଅଛନ୍ତି । ଏପରି ଅବସ୍ଥାରେ ସନ୍ତାପ ନାଶିନୀ ସନ୍ତୋଷ-ଦାୟିନୀ ନିଦ୍ରାଦେବୀଙ୍କର ପାଖ ପଶିବାକୁ ଆସୁଛି କାହିଁ ? ସେ ସମୟରେ ମନରେ ପଡ଼ିଥିଲା କି ନାହିଁ ସ୍ମରଣ ହେଉ ନାହିଁ, ବର୍ତ୍ତମାନ ଏହି ପ୍ରାଚୀନ ଶ୍ଳୋକଟି ଲେଖୁଅଛି ।

"ଯଚ୍ଚିନ୍ତିତମ୍ ତଦିହ ଦୂରତରଂ ପ୍ରୟାତି
ଯଚ୍ଚେତସା ନଗଣିତଂ ତଦିହୋପପେତି ।"

ଏଥି ପାଇଁ ହିନ୍ଦୁ ଜାତି ଟିକିଏ ଅଧିକ ଅଦୃଷ୍ଟବାଦୀ; ବିଶେଷରେ ମୁଁ ଜୀବନ କାଳରେ ଶତ ସହସ୍ର ଘଟଣା ଦେଖି—ଶୁଣି—ଭୋଗି ଘୋର ଅଦୃଷ୍ଟବାଦୀ ହୋଇ ପଡ଼ିଅଛି ।

ସୁଖରେ ହେଉ ବା ଦୁଃଖରେ ହେଉ, ରାତି ପାହେ—ରାତି ପାହିଲା । ବୃଷ୍ଟି ଏବଂ ପବନର ପ୍ରାବଲ୍ୟ ଭାଙ୍ଗି ଗଲାଣି – କେବଳ ଅଳ୍ପ ଅଳ୍ପ ବୃଷ୍ଟିଟା ହେଉଥାଏ । ଭୋର ହେବା ମାତ୍ରକେ ନାଉରୀମାନେ ନାଆଟା ମେଲି ଦେଲେ । ଦିନ ପହରକ ସରିକି ନାଆ ବେଲପଡ଼ା ଘାଟରେ ଭିଡ଼ିଲା । ନୂଆ ଦେବାନଙ୍କୁ ସଙ୍ଗୋଳି ନେବା ସକାଶେ ଗ୍ରାମର ପଧାନ ଅନେକ ଗୁଡ଼ିଏ ପ୍ରଜାଙ୍କୁ ଧରି ଘାଟ ନିକଟରେ ଉପସ୍ଥିତ ଥିଲେ ।

ସେ ସମୟରେ ମୁଁ ଅର୍ଦ୍ଧମୃତ ପ୍ରାୟ—ଲୋକ ସାହାଯ୍ୟ ବିନା ନାଆ ଉପରୁ ତଳକୁ ଓହ୍ଲାଇବାକୁ ପ୍ରାୟ ଶକ୍ତିହୀନ; ମାତ୍ର ମୁଁ ଯେ କିଲ୍ଲାର ଦେବାନ ହାକମ—ମାଜିଷ୍ଟ୍ରେଟ, ମୁଁ ଦୁର୍ବଳ ନୁହେଁ, ମନରେ ଦେହରେ ଖୁବ୍ ତେଜ ଅଛି, ଏଇଟା ପ୍ରଜାମାନଙ୍କୁ ଦେଖାଇବାକୁ ହେବ । ମୁଁ ବର୍ତ୍ତମାନ ଲୋକ ସାହାଯ୍ୟରେ ନାଆରୁ ଓହ୍ଲାଇଲେ ଲୋକେ କହିବେ ଏ ହାକମଟା ବୀର ପୁରୁଷ ନୁହେଁ । ଶକ୍ତି ନ ଥିଲେ ମଧ୍ୟ ନାଆ ଉପରୁ ଡେଇଁ ପଡ଼ିଲି, କାଦୁଅ ମାଟି—ଗୋଡ଼ ଖସିଗଲା—ତେତିକିବେଳେ 'ପପାତ ଧରଣୀ ତଳେ—' ବୋଲି ଜଣା ପଡ଼ିଗଲା । ପାଠକ ଆପଣେ ମୋହର ଏହି କପଟାଚାରର କଥା ପଢ଼ି ହସିବେ, ମୋତେ ଧିକ୍କାର କରିବେ, ମୋହର ଗତ ଜୀବନର ଅନେକ କପଟ ବ୍ୟବହାର କଥା ମନେ କରି ମୁଁ ନିଜେ ହସେଁ—ଅନୁତାପ କରେ—ଆପଣଙ୍କର ଅପରାଧ କ'ଣ ? କଥା କ'ଣ ଜାଣନ୍ତି ଆପଣେ । ସଂସାରଟା ହେଲା ନାଟ୍ୟ ଭୂମି—ମାନବ ଶ୍ରେଣୀ ଅଭିନେତା, ଯେଉଁ ଲୋକ ଖୁବ୍ ନାଚି କୁଦି ପାରେ—ଅଙ୍ଗ ଭଙ୍ଗି କରି ଲୋକଙ୍କୁ ଭୁଲାଇ ପାରେ, ତାହାରି ଜିତା ପଟ ।

ମୋତେ ଗଡ଼କୁ ନେଇଯିବା ସକାଶେ ଜଣେ ରାଜକର୍ମଚାରୀ ପାଲଙ୍କି ଧରି ଆସି ଉପସ୍ଥିତ ଥିଲା । ବେଲପଡ଼ାରେ ଆହାରାଦି ସାରି ଉପରଓଳି ଯାତ୍ରା କଲୁଁ । ବେଲପଡ଼ାଠାରୁ ଗଡ଼ ପ୍ରାୟ ସାତ କୋଶ ଦୂର—ଗଡ଼ରେ ପହଞ୍ଚିବାକୁ ସେ ଓଳି ଅଣ୍ଟିଲା ନାହିଁ । ଗଡ଼ଠାରୁ ଦୁଇକୋଶ ଦୂର ମଧୁଖଣ୍ଡ ନାମକ ଗ୍ରାମରେ ରାତିବାସର ବ୍ୟବସ୍ଥା ସରବରାକାର କରି ରଖିଥିଲା । ଦଶପଲା କିଲ୍ଲା ମଧ୍ୟରେ ମଧୁଖଣ୍ଡଟି ପ୍ରସିଦ୍ଧ ଗ୍ରାମ । ଏ ସ୍ଥାନରେ ରାଜସରକାରଙ୍କ ଖମାର ଏବଂ କଚେରୀ ଘର ଅଛି । କୁମାରିକା ଉପନଦୀଟି ଏହି ଗ୍ରାମ ମଧ୍ୟଭାଗ ବାଟେ ବହି ଆସି ମହାନଦୀରେ ପଡ଼ିଅଛି । ଏଥି-ସକାଶେ ଏହି ଗ୍ରାମର ଜଳ ଏବଂ ପାଳ ଜମି ଖୁବ୍ ଉର୍ବର ।

ପର ଦିବସ ସଖାଳ ଦିନ ପ୍ରହରକ ସମୟରେ ନିଜଗଡ଼ସ୍ଥ ନିରୂପିତ ବସାରେ ଉପସ୍ଥିତ ହେଲୁଁ । ରାଜା ସାହେବଙ୍କ ସରଘରୁ ସଞ୍ଜା ଆସି ଗୋଟାଏ ଘର

ପ୍ରଷ୍ଟି କରିଦେଲି । ପୂର୍ବେ ପ୍ରତ୍ୟେକ ଗଡ଼ଜାତ ରାଜାମାନଙ୍କ ସରଘରୁ ଏହିପରି ସଞ୍ଜା ବାହାରିବାର ବ୍ୟବସ୍ଥା ଥିଲି । କୌଣସି ଭଦ୍ର ଅତିଥି ଗଡ଼ରେ ଉପସ୍ଥିତ ହେଲେ ତାଙ୍କ ଦିନମାନ ଖୋରାକ ସକାଶେ ଯେଉଁ ସଞ୍ଜା ଆସେ, ସେଥିରେ ମାସକ ସକାଶେ ଖୋରାକ ସହଜରେ ଚଳିପାରେ । ଅଭ୍ୟସ୍ତ ସରଘରିଆ ଏପରି ବନ୍ଦୋବସ୍ତରେ ଧଞ୍ଜା ସଜାଡ଼ି କରି ଦେଇଥାଏ ଯେ, ଅଭ୍ୟାଗତଙ୍କର କୌଣସି ବିଷୟରେ ଅଭାବ ହୁଏ ନାହିଁ । ଦାଲିଖଣ୍ଡା ଦାଲିକାଠି ପର୍ଯ୍ୟନ୍ତ ସେଥିରେ ଥାଏ ।

ଦିନ ଦଶ କି ଏଗାରଟା ସମୟରେ ରାଜାସାହେବଙ୍କ ଗୁମୁକୁ ସାକ୍ଷାତ ସକାଶେ ଗଲୁଁ । ରାଜାସାହେବ ଗୋଟାଏ ବଡ଼ ମାଣ୍ଡିକୁ ଆଉଜି ଖରଡ଼ଟା ଉପରେ ବିଜେ ହୋଇଥିଲେ । ଗୁମୁକରଣ, ଗନ୍ତାଘରିଆ, ଧାନଘରିଆ, ପାଞ୍ଜିଆ ପ୍ରଭୃତି ରାଜକର୍ମଚାରୀମାନେ ଶ୍ରୀଗୁମୁଙ୍କ ସମ୍ମୁଖଭାଗ, ବାଁ ଭାଗ ପାଞ୍ଚ ସାତ ହାତ ଦୂରରେ ବସିଥିଲେ । ଏମାନଙ୍କର ଭୂମ୍ୟାସନ । ପଶ୍ଚାତ୍ ଭାଗରେ ଆଠ ଦଶ ଜଣ ନିଯୋଗ ଖଟାଣିଆ ଠିଆ ହୋଇଥାନ୍ତି । ନୂଆ ଦେବାନଙ୍କୁ ଦେଖିବା ସକାଶେ ମଫସଲରୁ ଗୁଡ଼ିଏ ପଧାନ ପାଞ୍ଜିଆ ମଧ୍ୟ ଆସି ଉପସ୍ଥିତ । ଶ୍ରୀଗୁମୁଙ୍କ ସମ୍ମୁଖ ଦକ୍ଷିଣ ଭାଗକୁ ତିନି ଚାରି ହାତ ଦୂରରେ ଖଣ୍ଡିଏ ଖରଡ଼ି ପଡ଼ିଥିଲି । ଏ ଖଣ୍ଡିକ ଦେବାନଙ୍କ ଆସନ ।

ରାଜାସାହେବ ଦୀର୍ଘାକାର, ମପାଣସହି ସ୍ଥୂଳ, ଆବକ୍ଷ ବିସ୍ତୃତ ଶ୍ମଶ୍ରୁ । ବାସ୍ତବିକ ଶରୀରଟି ରାଜ ଶରୀରର ଉପଯୁକ୍ତ । ଦର୍ଶନ ମାତ୍ରକେ ସମ୍ମାନ ସହିତ ଅଭିବାଦନ କରିବାକୁ ଇଚ୍ଛା ହେଲେ । ଦୁଃଖର ବିଷୟ, ଶରୀରର ସ୍ଥୂଳତାଠାରୁ ବୁଦ୍ଧିର ସ୍ଥୂଳତା ଖୁବ୍ ବେଶି ପରିମାଣରେ ବଳିପଡ଼ିଥିଲି ।

ମୁଁ ଆସନ ଗ୍ରହଣ କରିବା ମାତ୍ରକେ ଶ୍ରୀଗୁମୁ ମୋ ପଦାଙ୍ଗୁଳି ନଖଠାରୁ ମସ୍ତକ କେଶାଗ୍ରଭାଗ ପର୍ଯ୍ୟନ୍ତ ଖୁବ୍ ମନୋଯୋଗ ସହିତ ପୁନଃ ପୁନଃ ଦେଖିବାକୁ ଲାଗିଲେ । ସେ ପ୍ରକାର ସନ୍ଧାନ୍ତା ଚରୁଛି ଚାହାଣି ଦେଖି ମୋତେ ଆଶ୍ଚର୍ଯ୍ୟ ବୋଧହେଲି । ମୋ ଶରୀର ଉପରେ ଶ୍ରୀଗୁମୁଙ୍କ ଦୃଷ୍ଟି ଆବଦ୍ଧ ଥାଏ— ଅନ୍ୟଆଡ଼େ ମୁଷ୍ଟିବଦ୍ଧ ଦକ୍ଷିଣ ହସ୍ତଟା ପଶ୍ଚାଦ୍‌ଭାଗକୁ ନେଇ ବୃଦ୍ଧାଙ୍ଗୁଷ୍ଠ ବେଗରେ ପୁନଃ ପୁନଃ ହଲାଇ, ପାଞ୍ଜିଆ, ପାଖ ଲୋକ, ପଧାନମାନଙ୍କ ମୁହଁକୁ ପୁନଃ ପୁନଃ ଅନାଉଥାନ୍ତି । ମୁଁ ଯେପରି ଅନ୍ୟମନସ୍କ, ଅନ୍ୟଆଡ଼େ ମୋର ଦୃଷ୍ଟି ଅଛି, ଏପରି ବାହାନା କରି ରାଜାସାହେବଙ୍କ ଅଦ୍ଭୁତ କ୍ରିୟାକଳାପ ମନୋଯୋଗ ସହିତ ଦେଖୁଥାଏଁ । ମୋ ଶାରୀରିକ ଗଠନ ପ୍ରଣାଳୀ ବିଷୟ ଦୀର୍ଘକାଳ ବ୍ୟାପୀ ପରୀକ୍ଷା ସମାପ୍ତ ହେବା ଉତ୍ତାରେ ଶ୍ରୀଗୁମୁରୁ ମୋ ପ୍ରତି ପ୍ରଥମ ପ୍ରଶ୍ନ ହେଲି —

"ଆହେ ଦେବାନ ବାବୁ ! ଆପଣ ରୋଜ କେତେ ଘିଅ ଭାତରେ ଖାଅ ?"

ମୁଁ କହିଲି—'ଆଜ୍ଞା, ଭାତରେ ଆଉ କେତେ ଘିଅ ଖାଇବି—ଏହି ତୋଳାଏ ଅନ୍ଦାଜ ।"

ଶ୍ରୀଗୁମୁ ଲୋକମାନଙ୍କ ମୁହଁକୁ ଅନାଇ ତାଚ୍ଛଲ୍ୟ ଭାବରେ ମୁହଁ ମୋଡ଼ି ଆଜ୍ଞା କଲେ—"ନାହିଁ ନାହିଁ, ତାହା ହେବ ନାହିଁ । ପ୍ରତିଦିନ ଭାତରେ ଅଧସେର ଘିଅ ଖାଅ ତ, ଦେଖିବ, କପରି ହେବ । ଆମ ଶ୍ରୀଗୁମୁ ଭରିଆରେ (୧) ଦୁଇଓଳି ଦୁଇ ସେର ଘିଅ ମଣୋହି କରୁଁ । ଆରେ ସରଘରିଆ ! ଦେବାନ ବାବୁଙ୍କ ବସାକୁ ପ୍ରତିଦିନ ଦୁଇସେର ଘିଅ ପଠାଇବୁ ।" ସତକୁ ସତ ଅନେକ ଦିନ ପର୍ଯ୍ୟନ୍ତ ବସାକୁ ପ୍ରତିଦିନ ଦୁଇସେର ଘିଅ ଆସିବାକୁ ଲାଗିଲା । ଏତେଗୁଡ଼ାଏ ଘିଅ କ'ଣ ହେବ, ପ୍ରତିଦିନ ମନା କରେଁ, ଶୁଣୁଛି

(୧) ଭରିଆ—ରାଜାଙ୍କ ମଣୋହି ଅନ୍ନ ।

କଥ ? ପରେ କଟେଜ ପେଷ୍କାର ମୋତେ ବୁଝାଇ ଦେଲା, ଘିଅ ସହିତ ପ୍ରୟୋଜନ ନ ଥାଏ, ତେବେ ସେ କଥା ରାଜାଙ୍କୁ କହି କହିବେ ନାହିଁ, ବନ୍ଦ ହୋଇଯିବ । ପ୍ରକୃତରେ ତାହାହିଁ ହେଲା । ଦଶପଲ୍ଲା କଟେଜ ପେଷ୍କାର ଗୃହ ଯାଜପୁର । ଅନେକ ଦିନ ପୂର୍ବରୁ ପେଷ୍କାର କାର୍ଯ୍ୟରେ ନିଯୁକ୍ତ ଅଛି, ରାଜା ସାହେବଙ୍କ ମତିଗତି ବୃତ୍ତାନ୍ତ ତାଙ୍କୁ ଭଲରୂପେ ଜଣା । ପ୍ରଥମେ ରାଜା ସାହେବଙ୍କ ସହିତ ସାକ୍ଷାତ କରି ବସାକୁ ଆସିବା ସମୟରେ ପେଷ୍କାର ବାବୁ ସଙ୍ଗେ ସଙ୍ଗେ ମୋ ବସାକୁ ଆସିଲେ । ପ୍ରଥମ ସାକ୍ଷାତରେ ରାଜା ସାହେବଙ୍କର ମୋ ସହିତ ବ୍ୟବହାର ବୃତ୍ତାନ୍ତ—ଅର୍ଥାତ୍ ମୋତେ ଅନେକ ବେଳଯାଏ ଗୋଡ଼ଠାରୁ ମୁଣ୍ଡଯାଏ ପୁନଃ ପୁନଃ ଅନାଇବା—ମୁଷ୍ଟିବଦ୍ଧ ହସ୍ତ ପାଶ୍ଚାତ୍ ଭାଗକୁ ରଖି ବୃଦ୍ଧାଙ୍ଗୁଷ୍ଠି ହଲାଇବା—ଅନ୍ୟ କିଛି ପ୍ରସଙ୍ଗ ସମ୍ବନ୍ଧରେ କଥୋପକଥନ ନ କରି ହଠାତ୍ ଘିଅ ଖାଇବା କଥା ପଚାରିବା ଇତ୍ୟାଦି ବିଷୟର ଅର୍ଥ ନ ବୁଝି ପାରି ସେଥିର ବୃତ୍ତାନ୍ତ ପେଷ୍କାର ବାବୁଙ୍କୁ ପଚାରିବାରେ ସେ ଏହିପରି ବ୍ୟାଖ୍ୟା କରି ବୁଝାଇ ଦେଲେ ।

ରାଜାସାହେବ ପୁନଃ ପୁନଃ ମୋ ଶରୀରକୁ ଅନାଇ ଦେଖିଲେ, ମୁଁ ପାତଳ, ଅର୍ଥାତ୍ ସ୍ଥୂଳକାୟ ମନୁଷ୍ୟ ନୁହେଁ । ସୁତରାଂ ଅସୁନ୍ଦର—ସୁତରାଂ ଜ୍ଞାନହୀନ । ଏଥିରୁ ସେ ସ୍ଥିର ସିଦ୍ଧାନ୍ତରେ ପହଞ୍ଚିଲେ ଯେ, ‘ଏହି ନୂଆ ଦେବାନଟା ଅସୁନ୍ଦର ଏବଂ ମୂର୍ଖ । ତେବେ ଲୋକଟାକୁ ସୁପରିଣ୍ଟେଣ୍ଡେଣ୍ଟ ସାହେବ ପଠାଇଅଛନ୍ତି, ଏହାକୁ ସୁନ୍ଦର ଏବଂ ଜ୍ଞାନବାନ୍ କରାଇବା ଆବଶ୍ୟକ ।’ ସେଥିପାଇଁ ସେତେ ପରିମାଣରେ ଘିଅ ଖାଇବାର ବ୍ୟବସ୍ଥା କରିଦେଲେ । ରାଜାସାହେବଙ୍କ ମନରେ ଗୋଟାଏ ଧ୍ରୁବ ଧାରଣା ଥିଲା, ଲୋକ ଘିଅ ଖାଇଲେ ସୁନ୍ଦର ଏବଂ ଜ୍ଞାନବନ୍ତ ହୋଇଯାଏ ।

ମୁଁ ବସାକୁ ବାହୁଡ଼ି ଆଇଲା ଉତ୍ତାରେ ରାଜାସାହେବ ପାଖ ଲୋକମାନଙ୍କ ନିକଟରେ ମୋହର ଶାରୀରିକ ସୌନ୍ଦର୍ଯ୍ୟ ଏବଂ ଜ୍ଞାନ ସମ୍ବନ୍ଧରେ ଯେଉଁ ଅଭିମତ ପ୍ରକାଶ କରିଥିଲେ, ତାହା ପରେ ଶୁଣିବାକୁ ପାଇଲି । ପେଷ୍କାରଙ୍କ ଉକ୍ତ ସହିତ ସେହି ମନ୍ତବ୍ୟର ସମ୍ପୂର୍ଣ୍ଣ ସାମଞ୍ଜସ୍ୟ ଥିଲା ।

ବର୍ତ୍ତମାନ ସ୍ୱର୍ଗଗତ ଜଣେ ରାଜପୁରୁଷଙ୍କ ଅଶୋଭନୀୟ ଆଚରଣ ବିଷୟ ପ୍ରକାଶ କରିବା ମୋ ପକ୍ଷରେ ଉଚିତ ନ ଥିଲା; କିନ୍ତୁ ପ୍ରକୃତ କଥାଗୁଡ଼ିକ ପ୍ରଥମରୁ ପ୍ରକାଶ ନ କଲେ ପରବର୍ତ୍ତୀ ଘଟନାବଳୀ ସହିତ ସେଥିର ସାମଞ୍ଜସ୍ୟ ରହିବ ନାହିଁ; ସୁତରାଂ ଅଗତ୍ୟା ସମସ୍ତ ବିଷୟ ବାଧ୍ୟ ହୋଇ ଲେଖିବାକୁ ପଡ଼ୁଅଛି ।

ରାଜାସାହେବଙ୍କ ମନ ମଧ୍ୟରେ ଧ୍ରୁବ ଧାରଣା ଥିଲା, ତାଙ୍କ ପରି ରୂପବାନ୍, ଜ୍ଞାନବାନ୍, ବିଦ୍ୱାନ୍, ଧନବାନ୍ ଲୋକ ପୃଥିବୀରେ ଦ୍ୱିତୀୟ କେହି ନାହିଁ । ଏ ସମସ୍ତ ବିଷୟ ଦିନେ ପ୍ରାୟ ପ୍ରତିଦିନ ଶ୍ରୀଗୁରୁଙ୍କ ଭିତରିଆ ବେହରଣ କଚେରୀରେ ଆଲୋଚନା ହୋଇଥାଏ । ପାଖଲୋକେ ଏବଂ ଭିତରିଆ ପାଞ୍ଜିଆ କରଣମାନେ ଆଜ୍ଞା ମହାପ୍ରଭୁ ଆଜ୍ଞା ମହାପ୍ରଭୁ କହି ଶ୍ରୀଗୁରୁଙ୍କ ଉକ୍ତିର ଯାଥାର୍ଥ୍ୟ ସମ୍ବନ୍ଧରେ ସାକ୍ଷ ଦେଉଥାନ୍ତି । ପ୍ରକୃତ ତାହାଙ୍କର ଶରୀରଟି କାବୁଲଦେଶୀୟ ବୀରପୁରୁଷ ପରି ଦୀର୍ଘ ଏବଂ ବଳିଷ୍ଠତା ବ୍ୟଞ୍ଜକ; ଦର୍ଶକ ମନରେ ସହସା ଭୟଭକ୍ତି ଜନ୍ମାଇବାର ଯୋଗ୍ୟ । ରାଜାସାହେବଙ୍କ ସ୍ୱର୍ଗୀୟ ପିତୃଦେବ ତାହାଙ୍କୁ ଶିକ୍ଷିତ କରାଇବା ନିମନ୍ତେ ଦଶ ପନ୍ଦରବର୍ଷ ପର୍ଯ୍ୟନ୍ତ ଜଣେ ଅବଧାନ ନିଯୁକ୍ତ କରାଇଥିଲେ । ଅବଧାନ ଆପଣଙ୍କ ଯୁଗାନ୍ତବ୍ୟାପୀ ପ୍ରଗାଢ଼ ଶିକ୍ଷାଦାନରେ ଫଳସ୍ୱରୂପ ଶ୍ରୀ ମଣିମାଙ୍କ ଗୁରୁ ଲେଖିବାକୁ ଶିଖିଥିଲେ । —‘ଶ୍ରୀଚୈତନ୍ୟ ଦେଓ ଭଞ୍ଜ ରାଜା—କିଲ୍ଲେ ଦଶପଲ୍ଲା

ଏବଂ ଯୋରମୋ । ଅବଶ୍ୟ ଏହି ଲେଖା ମଧ୍ୟରେ କେଉଁଟା 'ଟ' କେଉଁଟା 'ଦ' କେଉଁଟା 'ନ' ସ୍ୱତନ୍ତ୍ର ରୂପେ ଅକ୍ଷର ବାଛି ଦେଇ ନ ପାରନ୍ତି; ମାତ୍ର ଦୀର୍ଘକାଳ ଯାବତ୍ ଅଭ୍ୟାସ ହେତୁରୁ ଖୁବ୍ ଚଞ୍ଚଳ ଲେଖି ପାରୁ ଥିଲେ ।

ଦଶପଲ୍ଲାରେ ଯୋଡ଼ଏ କଚେରି । ଭିତରଆ ବେହେରଣ କଚେରି – ସେଇଟା ରଜାଙ୍କ ନିଜସ୍ୱ ( ଖାସ୍ କାମରା ), ବାହାରେ ଦେବାନୀ କଚେରି । ବାହାର କଚେରିରେ କୌଣସି ଦିବସ ଅନେକ ବିଷୟର ପ୍ରାର୍ଥୀ ପ୍ରଜାପାଟକ ଉପସ୍ଥିତ ହୋଇଥିବା କଥା ଶ୍ରୀ ମଣିମାଙ୍କ ଶ୍ରୀକର୍ଣ୍ଣ ଗୋଚରକୁ ଆସିବା ମାତ୍ରକେ ଚଞ୍ଚଳ ଗମନାଗମି ହୋଇ କଚେରିକୁ ବିଜେ ହୋଇ ପଡ଼ନ୍ତି । ଚଉକିରେ ବିଜେ ହୋଇ ଦୁଇବାହୁ ଟେକି ଖୁବ୍ ଉଚ୍ଚରେ କହି ଆଜ୍ଞା କରନ୍ତି—"ଶୁନ ହୁଅ ଶୁନ ହୁଅ ···ଆମ ଶ୍ରୀହସ୍ତ ଲେଖି ଆଜ୍ଞା କରିବେ ।"

ଅଭ୍ୟସ୍ତ ଦପ୍ତରି ଦୁଆତ ମୁହଁ ଯାଏ କାଳି ପୂର୍ଣ୍ଣ କରି ଯୋଡ଼ାଏ ଧଳା କାଗଜ ଓ କଲମଟିଏ ଶ୍ରୀହସ୍ତଙ୍କ ଶ୍ରୀକରପେଠ ସ୍ଥାନରେ ଥୋଇଦିଏ । ଶ୍ରୀ ହସ୍ତ ଲେଖି ଆଜ୍ଞା କରନ୍ତି—"ଶ୍ରୀଚୈତନ୍ୟ ଦେଓ ଭଞ୍ଜ, ରାଜା କଲ୍ଲେ ଦଶପଲ୍ଲା ଏବଂ ଯେ ରମୋ ।" ଅବିଶ୍ରାନ୍ତ ଶ୍ରୀକର ଗୃଳୁଥାଏ; କାଗଜ ପୃଷ୍ଠାଟା ଓଲଟାଇବା ବେଳେ ଲିଖିତ ପୃଷ୍ଠା କାଳି ଦୁଇ ପୃଷ୍ଠା ହୋଇଯାଏ । ଅଳ୍ପ ସମୟ ମଧ୍ୟରେ ଲେଖା ସମାପ୍ତ ହୋଇଗଲେ କାଗଜ ଦୁଇଖଣ୍ଡ ଶ୍ରୀକର ଯୁଗଳରେ ଉପରକୁ ଟେକିଧରି ଅଗ୍ର ପଶ୍ଚାତ ଚତୁର୍ଦ୍ଦିଗ ଉପସ୍ଥିତ ଲୋକମାନଙ୍କୁ ଦେଖାଇ ପଚାରି ଆଜ୍ଞା ହୁଅନ୍ତି—"ଦେଖ, ସମସ୍ତେ ଦେଖ—ଦେଖ, ଆମ ହସ୍ତ କେମନ୍ତ ଲେଖି ଆଜ୍ଞାକଲୁଁ । ଆମ ଦଦେଇ ( ପିତାରାଜା ) ଏପରି କଣ ଲେଖି ପାରୁଥିଲେ ? ସତ କଥାଟି କହିବ—ନା ?" ଲୋକଙ୍କର ବାଡ଼ଆ ଖାଇବାର, ଜୋରିମାନା ଦେବାର କମ୍ବା ଜେଲ ଯିବାର ସମ୍ପୂର୍ଣ୍ଣ ଭୟ । ଉପସ୍ଥିତ ଲୋକଗଣ ଏକ ବାକ୍ୟରେ ଖୁବ୍ ଉଚ୍ଚ ସ୍ୱରରେ ଉଚ୍ଚାରଣ କରନ୍ତି,—"ଆଜ୍ଞା, ନା ମହାପ୍ରଭୁ ! ଶ୍ରୀହସ୍ତଙ୍କ ପରି ଲେଖି ପାରୁ ନ ଥିଲେ ।" "ନୂଆଗଡ଼ ରାଜା—ଖଣ୍ଡପଡ଼ାର ରାଜା—ଆଉ ଆଉ ରାଜାମାନେ କଣ ଏପରି ଲେଖି ପାରନ୍ତି ?" ଲୋକଙ୍କ ମୁଖରୁ ଉତ୍ତର ଶୁଣିବା ପୂର୍ବରୁ ଶ୍ରୀହସ୍ତ ଆଗେ ମୁଷ୍ଟିବଦ୍ଧ ହସ୍ତ ଉପରକୁ ଟେକି ବୃଦ୍ଧାଙ୍ଗୁଷ୍ଠି ହଲାଇ ହଲାଇ କହି ଆଜ୍ଞା କରନ୍ତି—"ନାହିଁରେ ବାପା, ନାହିଁ ।" ମୁଁ ନିକଟରେ ଆଉ ଗୋଟାଏ ଚୌକିରେ ଭୁନ ହୋଇ ବସି ଶ୍ରୀହସ୍ତଙ୍କ କାର୍ଯ୍ୟପ୍ରଣାଳୀ ଦେଖୁଥାଏ । ସମୟ ସମୟରେ ଝାଳ ବାହାନାରେ ହସଟା ରୁମାଲ ଖଣ୍ଡକରେ ପୋଛି ପକାଇବା ପ୍ରୟୋଜନ ହୁଏ ।

ହସ୍ତଙ୍କ କଚେରି କାର୍ଯ୍ୟ ସମାପ୍ତ—ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ମୋତେ ଭଲକରି ଥରେ ଦେଖି ଆଜ୍ଞା କରନ୍ତି; ତହିଁ ଉତ୍ତାରେ ଉପସ୍ଥିତ ସମସ୍ତଙ୍କୁ ଦୃହିଁ ଆଖିଠାରରେ ମୋତେ ଦେଖାଇ ଦିଅନ୍ତି । ସେଥିର ଅଭିପ୍ରାୟ—ଏ ଲୋକଟାକୁ ଦେଖ, କପରି ପାତଳା ଶରୀର—ଅର୍ଥାତ୍ ନିବୁଦ୍ଧିଆ । ଥରେ ଦୁଇଥର ନୁହେଁ, ପ୍ରତି ମାସରେ ପାଞ୍ଚ ସାତ ଥର କଚେରିରେ ଏହିପରି ଅଭିନୟ ହୁଏ ।

ଦୂରବର୍ତ୍ତୀ ଘଟଣା ହେଲେ ମଧ୍ୟ ଶ୍ରୀ ହସ୍ତଙ୍କ ବିଦ୍ୟାପରିଚୟ ସମ୍ବନ୍ଧରେ ଆଉ ଯୋଡ଼ଏ ମାତ୍ର କଥା ଏ ସ୍ଥାନରେ ଉଲ୍ଲେଖ କରିବାକୁ ଇଚ୍ଛା କରେ ।

ଗଡ଼ଜାତ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ରେଭେନ୍‌ସା ସାହେବ ଗଡ଼ଜାତ ଗସ୍ତ ସମୟରେ ଦଶପଲ୍ଲା ଯାଇଥିଲେ । ରାଜା ସାହେବଙ୍କ ଅନ୍ୟାୟ ବିଷୟର ସମ୍ବନ୍ଧରେ ଅନେକ ଗୁଡ଼ଏ ନାଲିସ ଉପସ୍ଥିତ ହେବାରୁ ସାହେବ ମହୋଦୟ କହିଲେ, "ରାଜା ସାହେବ,

ତୁମ୍ଭେ ତ ମୂର୍ଖ—କଲ୍ଲା କାର୍ଯ୍ୟ ଚଳାଇ ପାରିବ ନାହିଁ । ସରକାର ତରଫରୁ ଆମ୍ଭେ ଜଣେ ଦେୱାନ ପଠାଇବୁ ।" ଶ୍ରୀଗ୍ରୀମ୍ଭ ଚଞ୍ଚଳ ଉତ୍ତର ଦେଲେ—"କଣ କଣ—କଣ କହିଲ ସାହିବ ! ଆମ ଗ୍ରୀମ୍ଭ ମୂର୍ଖ !—ଆଣ କାଗଜ—ଆଣ କାଗଜ—ଏହି ଲଗେ ଆମ ଶ୍ରୀଗ୍ରୀମ୍ଭ ନାମ ଆଉ କଲ୍ଲା ଦଶପଲ୍ଲ ଯୋରମୋ ସବୁ କଥା ଲେଖିବୁ । ଆମ୍ଭ ଦଦେଇ ରଜା ଯେ ଥିଲେ, ସେ ମୂର୍ଖ ଥିଲେ ।" ଦୁଃଖର ବିଷୟ ରଜା ସାହେବଙ୍କ ବିଦ୍ୟାବୁଦ୍ଧିର ପରିଚୟ ନେବା ସକାଶେ ସାହେବ ଇଚ୍ଛା କଲେ ନାହିଁ ।

ପରେ ଶ୍ରୀଗ୍ରୀମ୍ଭ କଟକ ବିଜେ ହୋଇଥିଲେ; ଶୁଣି ଆଜ୍ଞା ହେଲେ—କଟକରେ ଗୋଟାଏ କଲେଜ ଘର ଅଛି, ସେଠାରେ ପିଲାମାନେ ପାଠ ପଢ଼ନ୍ତି; ସେଇଟା କିପରି ଜିନିଷ ଦେଖି ଯିବାର ତ ଉଚିତ । ଶ୍ରୀଗ୍ରୀମ୍ଭ ସ୍ୱୟଂ କଲେଜରେ ଉପସ୍ଥିତ । ପ୍ରଫେସରମାନେ ଖୁବ୍ ଆଦର ଯତ୍ନ କରି ନେଇ କଲେଜର ସମସ୍ତ ଶ୍ରେଣୀ ଦେଖାଇଲେ । ତହିଁ ଉତ୍ତାରେ ଲାଇବ୍ରେରୀ ଘରେ ବସାଇ ଭିଜିଟର ବହି ଏବଂ ଦୁଆତ କଲମ ଶ୍ରୀଗ୍ରୀମ୍ଭଙ୍କରେ ଥୋଇ ଦେବାରୁ ଶ୍ରୀ ମହିମା ପଚାରି ଆଜ୍ଞା ହେଲେ—"ଏଇଟା କଣ, ଏଇଟା କଣ ?" ଉତ୍ତର— "ଆଜ୍ଞା ଏଇଟା ଭିଜିଟର ବହି—ଆପଣ କଲେଜରେ କଣ ଦେଖିଲେ ସେଥି ସମ୍ବନ୍ଧରେ ଆପଣଙ୍କ ମନ୍ତବ୍ୟ ଏଥିରେ ଲେଖି ଦେବେ ।" ରଜା ସାହେବ କହିଲେ— "ହଁ, ହଁ, ଆମ୍ଭ ଗ୍ରୀମ୍ଭରୁ ଲେଖି ଆଜ୍ଞା କରିବୁ—ବୋଲ, ବୋଲ, କେଉଁଠାରେ ଲେଖିବୁ ।" ଜଣେ ପ୍ରଫେସର ଭିଜିଟର ପୁସ୍ତକ ଖୋଲି ସମ୍ମୁଖରେ ଥୋଇ ଦେବାରୁ ଶ୍ରୀଗ୍ରୀମ୍ଭ ଲେଖି ଆଜ୍ଞା କଲେ—"ଶ୍ରୀ ଚୈତନ୍ୟ ଭଞ୍ଜ ଦେଓ ରଜା କଲେ ଦଶପଲ୍ଲ ଏବଂ ଯୋରମୋ ।" ଲେଖା ଚାଲିଛି ତ ଚାଲିଛି ବିଶ୍ରାମ ନାହିଁ । ତିନି ଚାରି ପୃଷ୍ଠା ଲେଖା ହୋଇ ଗଲାଣି ବହି ଏବଂ ଟେବଲର ଅଧାଅଧି କାଳି ପୂର୍ଣ୍ଣ ହୋଇ ଗଲାଣି । କଲମ ଥୋଇ ଦେଇ ଶ୍ରୀଗ୍ରୀମ୍ଭ ବିଜେ ଆଜ୍ଞା ହେଲେ । ସେ ସମୟରେ ସବୁଗୁଡ଼ିକ ବଙ୍ଗାଳି ପ୍ରଫେସର ମେଜ ଚାରି ପାଖରେ ଛିଡ଼ା ହୋଇ ଦେଖୁଥିଲେ । ଶ୍ରୀଗ୍ରୀମ୍ଭଙ୍କ ଶ୍ରୀହସ୍ତର ଚଞ୍ଚଳତା ଦେଖି ମନେ କରୁଥିଲେ, କେତେ ଅବା କଣ ମନ୍ତବ୍ୟ ପ୍ରକାଶ କରିଗଲେ । ଡାକ ପଣ୍ଡିତଙ୍କୁ— ପଣ୍ଡିତେ ଦୁଇପୃଷ୍ଠା ପର୍ଯ୍ୟନ୍ତ ହସି ଅସ୍ଥିର କହିବେ କ'ଣ ? ପ୍ରଫେସରମାନେ ଘରି ଗୋଟି ଏ ହସ ହସିଲେ । ଭିଜିଟର ବହି ଚାରିପୃଷ୍ଠା କାଳିମୟ ହୋଇ ଯାଇଥିଲା ।

ଦେଖିଲ, ଦଶପଲ୍ଲାରେ ମାଲି ମାମଲା ଖୁବ୍ ଅଳ୍ପ—ଖୁବ୍ ସହଜ । ମଫସଲର ଅଧିକାଂଶ ଲୋକ କନ୍ଧ ଏବଂ ଖଇରା । ସେମାନେ ସେ ସମୟରେ ନିତାନ୍ତ ସରଳ ଏବଂ ନିରୀହ ଲୋକ ଥିଲେ । ସେମାନଙ୍କ ମଧ୍ୟରେ ମାଲି ମାମଲାରେ ବାଦୀ, ପ୍ରତିବାଦୀ, ସାକ୍ଷୀ ସମସ୍ତେ ଠିକ୍ ଠିକ୍ କଥାଗୁଡ଼ିକ କହି ଯାନ୍ତି । କାହାରି କଥା ସହିତ କାହାରି ଅମେଳ ହୁଏ ନାହିଁ ।

କଲ୍ଲା ମଧ୍ୟରେ କନ୍ଧଜାତୀୟ ଲୋକ ଅଧିକାଂଶ । ସେମାନେ ଆପଣାକୁ ଜମିଦାର ବୋଲନ୍ତି । ରଜାଙ୍କୁ କିଛି ମାତ୍ର କର ଦେଉ ନ ଥିଲେ । ଏକବର୍ଷ କମିଶନର ରେଭେନ୍‌ସା ସାହେବ କନ୍ଧଜାତୀୟ ପରଗଣା ଅର୍ଥାତ୍ ପଧାନମାନଙ୍କୁ ଡକାଇ କହିଲେ "ତୁମ୍ଭେମାନେ ରଜାଙ୍କ ରାଜ୍ୟରେ ଅଛ । କିଛି କିଛି କର ନ ଦେବାଟା ଭଲନୁହେଁ—କିଛି କିଛି କର ଦିଅ । ଫି ହଳ ପିଛା କଟକୀ ସେରେ ହିସାବରେ ଧାନ ଦିଅ । ଯେଉଁ ପ୍ରଜା ଯେତେ ହଳର ଚାଷ କରିବ ସେ ସେତେସେର ଧାନ ଦେବ ।"

ସମସ୍ତ ପରଗଣା ଏକତ୍ର ବସି ସ୍ଥିରକଲେ— ସାହେବଟା କହୁଛି, କର ଦେବା । କଟକୀ ସେରେ ଲେଖାଏ କରି ଧାନ ଦେଇପାରିବା ନାହିଁ । ସେମାନେ ବୁଝିଲେ, କଟକୀ ସେରେ ଧାନ ଶଗଡ଼େ କି ଦି ଶଗଡ଼

କେବେ ହେବ, କିଏ ଜାଣେ । ସାହେବଙ୍କୁ ଜଣାଇଲେ, "ଆମ୍ଭେମାନେ ହଳପିଚ୍ଛା ଚାମ୍ଭି ଏ ଧାନ ଦେବା, କଟକୀ ସେରେ ଧାନ ଦେଇପାରିବା ନାହିଁ ।" ଚାମ୍ଭିକ ଧାନ କଟକୀ ତିନି କି ଚାରିସେର ହେବ, ବର୍ତ୍ତମାନ ମୋହର ସ୍ମରଣ ହେଉନାହିଁ । ସାହେବ ଚାମ୍ଭିକ ଧାନର ପରିମାଣ ବୁଝି ସେଥିରେ ସମ୍ମତ ହେଲେ ।

ଘୁମୁସର ଏବଂ ଦଶପଲ୍ଲା ଦୋଧମାଲି ଗୋଟାଏ ମାମଲା ତଦନ୍ତ କରିବାକୁ ଯାଇଥିଲି । ସେହି ସମୟରେ କନ୍ଧ ଗ୍ରାମମାନ ଏବଂ ଗ୍ରାମସ୍ଥ ଦେବତା ସ୍ଥାନମାନ ବୁଲି ବୁଲି ଦେଖିଅଛି । କନ୍ଧମାନଙ୍କର ପ୍ରଧାନ ଶସ୍ୟ ହଳଦୀ, ସେହି ହଳଦୀର ରଙ୍ଗ ବଢ଼ାଇବା ପାଇଁ କନ୍ଧମାନେ ଦେବତା ଜାଗାରେ ମେରିଆ ଅର୍ଥାତ୍ ନରବଳି ଦେଉଥିଲେ । ୧୯୩୭ ସାଲରେ ଗବର୍ଣ୍ଣମେଣ୍ଟ ସେହି ନରବଳି ରହିତ କରି ଦେଇଅଛନ୍ତି । ଉକ୍ତ ସାଲରେ ସରକାରଙ୍କ ପଲଟଣ ଯାଇଁ ବଳିଦାନ ସକାଶେ ରକ୍ଷିତ ଅନେକଗୁଡ଼ିଏ ମାନବଶିଶୁ କନ୍ଧ ମାହାଲ ମଧ୍ୟରୁ ସଂଗ୍ରହ କରି ଆଣିଥିଲେ । ମିସନାରିମାନଙ୍କ ତତ୍ତ୍ୱାବଧାନରେ ଥାଇ ଶିକ୍ଷିତ ହେଉଥିବା ସେପରି ଗୁଡ଼ିଏ ଶିଶୁଙ୍କୁ ମୁଁ ଦେଖିଅଛି । ମୁଁ ଜାଣେ, ସେହି ଶିଶୁମାନଙ୍କ ପରିବାର ସମ୍ପ୍ରତି ନାନା ଜିଲ୍ଲାରେ ବିଦ୍ୟମାନ ଅଛନ୍ତି । ଧନ୍ୟ ବ୍ରିଟିଶ ଗବର୍ଣ୍ଣମେଣ୍ଟ—ଧନ୍ୟ ମିସନାରି ମାନଙ୍କର ନରସେବା । ଆମ୍ଭେମାନେ ପୁଣି ଶ୍ରେଷ୍ଠ ହିନ୍ଦୁଜାତି ବୋଲି ଅହଙ୍କାର କରିଥାଉଁ । ପବିତ୍ର ଭାରତ ଭୂମିରେ ବହୁ ଶତାବ୍ଦୀ ଯାବତ୍ ଏହି ଖ୍ରାପଣ ନୃଶଂସ ପ୍ରଥା ଚଳି ଆସୁଥିଲା; ଆମ୍ଭେମାନେ ନିର୍ବିକାର ଚିତ୍ତରେ ଦେଖି ଆସୁଥିଲୁଁ ।

ଅତି ସହଜରେ, ଅତି ସୁବିଧାରେ ରାଜକାର୍ଯ୍ୟ ଚଳୁଥିଲା । କେବଳ ମୋ ପକ୍ଷରେ ଗୋଟିଏ ଅଶାନ୍ତିକର ବିଷୟ ଥିଲା । ରାଜାସାହେବ ବୁଝିଥିଲେ, ମୋ ପରାମର୍ଶ ଗ୍ରହଣ ନ କରିବା, ମୋ କାର୍ଯ୍ୟରେ ବାଧାଦେବା ତାହାଙ୍କ ଆଧିପତ୍ୟ ଏବଂ ମହିମା ବିସ୍ତାରର ଉପାୟ ଅଟେ । ସର୍ବଦା ପ୍ରର୍ଦ୍ଧା ସହିତ ଲୋକମାନଙ୍କ ନିକଟରେ ପ୍ରକାଶ କରନ୍ତି—'ଆମ୍ଭେ ଘୁମୁ ରଜା, ଆମ୍ଭେ କଣ ଦେବାନ କଥା ଶୁଣିବୁଁ ?' ଏହି ପ୍ରକାର ନିର୍ବୋଧତା ହେତୁରୁ ସମୟ ସମୟରେ ବିପଦରେ ମଧ୍ୟ ପଡ଼ୁଥାନ୍ତି । ଦୃଷ୍ଟାନ୍ତ ସ୍ୱରୂପ ଗୋଟିଏ ବିଷୟ ଉଲ୍ଲେଖ କରୁଅଛି ।

ଦିନେ ସକାଳେ ରାଜାଙ୍କ ସହିତ ସାକ୍ଷାତ ସମୟରେ ରାଜା କହିଲେ—"ଦେବାନ ବାବୁ ! ଆଜି ଆମ ଘୁମୁକୁ ବଡ଼ ଶର୍ଦ୍ଦି ହୋଇଛି ।" ମୁଁ କହିଲି—"ଶର୍ଦ୍ଦି ହୋଇଥିଲେ ଆଜି ସ୍ନାନ ନ କରନ୍ତୁ ।" ରାଜାସାହେବ—"କଣ କହିଲ, କଣ କହିଲ ଦେବାନ ବାବୁ ! ଆଜି ଆମ ଘୁମୁର ମାଜଣା ବଡ଼ିବ ନାହିଁ ।" ମୁଁ କହିଲି—"ସେପରି କଲେ ଭଲ ହେବ ।" ରାଜା-ସାହେବ—"କିଏ ପାଖ ଲୋକ ଅଛରେ, ଜଲଦି ପାଣିଆକୁ ଆପଟକୁ ଧରିଆଣ, ଆଜି ଜଲଦି ଆମ ଘୁମୁରୁ ଦେହପାଣି ବଡ଼ିବ ।" ପ୍ରକୃତରେ ସେଦିନ ଅନ୍ୟାନ୍ୟ ଦିନଠାରୁ ଜଲଦି ସ୍ନାନ କରନ୍ତି, ସୁତରାଂ ଜ୍ୱର ହୁଏ ।

ରାଜ ବୈଦ୍ୟ କେତେଥର ଆସି ମୋ ପାଖରେ କହନ୍ତି ତାଙ୍କଛଡ଼ା ରାଜାଙ୍କୁ ଅନ୍ୟ ବୈଦ୍ୟ ଚିକିତ୍ସା କରିପାରିବ ନାହିଁ । ମୁଁ କାରଣ ପଚାରିବାରେ ସେ କହିଲେ, ବୈଦ୍ୟ ଯାହା କହିବ ରାଜା ତାହାର ବିପରୀତ କାର୍ଯ୍ୟ ନିଶ୍ଚୟ କରିବେ । ସେଥିସକାଶେ ଯେଉଁଦିନ ଲଙ୍ଘନ କରିବା ଆବଶ୍ୟକ, ସେଦିନ ମୁଁ ଖୁବ୍ ଖଟା ଦହି ସହିତ ଉତ୍ତମରୂପେ ଭୋଜନ କରିବାକୁ ବ୍ୟବସ୍ଥା କରେଁ । ରାଜା ଆଜ୍ଞା କରନ୍ତି, "ଆମ ଘୁମୁ ରାଜା, ଆମେ କ'ଣ ବୈଦ୍ୟ କଥା ଶୁଣିବୁ ? ଆଜି କିଛି ଠାଆ ହେବନାହିଁ ।" ପ୍ରକୃତରେ ସେଦିନ କିଛି ନ ଖାଇ ଉପବାସରେ ରହନ୍ତି ।

କ ଖାଦ୍ୟ, କ ପରିଧେୟ, କ ଆମୋଦ, ସମସ୍ତ ବିଷୟରେ କିଛି କିଛି ବିଶେଷତ୍ୱ ଥିଲା । ସମସ୍ତ ବିଷୟ ନିତାନ୍ତ ହାସ୍ୟଜନକ ।

ରାଜାସାହେବଙ୍କ ଭୌଗୋଳିକ ଜ୍ଞାନ ଅତି ଚମତ୍କାର ଥିଲା—ସମସ୍ତ ପୃଥିବୀରେ ପାଞ୍ଚଜଣ ସାହେବ, ଯୋଡ଼ାଏ ବିବି; ଏହି ସାହେବ ବିବି ମାନଙ୍କୁ କେଉଁଠାରେ କ ଅବସ୍ଥାରେ ଦେଖିଥିଲେ, ବିଶେଷରୂପେ ବ୍ୟାଖ୍ୟାକରି କହିଥାନ୍ତି, ପୃଥିବୀରେ ଆଉ ସାହେବ ବିବି ଥିଲେ ଶ୍ରୀଗ୍ରାମ୍ଭୁ ଅବଶ୍ୟ ଦେଖି ଆଜ୍ଞା କରିଥାନ୍ତେ, ସୁତରାଂ ଆଉ ସାହେବ ବିବି ଥିବା ଅସମ୍ଭବ । ମୟୂରଭଞ୍ଜ, କେଉଁଝର, ନୟାଗଡ଼ ପ୍ରଭୃତି ଏହି କେତେଜଣ ରାଜାଙ୍କୁ ଶ୍ରୀଗ୍ରାମ୍ଭୁ ତିନ ଚାରିଥର କଟକ ବିଜେ ହୋଇ ଦେଖି ଆସିଲେଣି । ଆଉ ରାଜା ନାହାନ୍ତି, ଥିଲେ ଅବଶ୍ୟ କଟକ ଆସିଥାନ୍ତେ, ଶ୍ରୀଗ୍ରାମ୍ଭ୍ ଦେଖି ଆଜ୍ଞା କରିଥାନ୍ତେ । ସବୁ ରାଜାଙ୍କ ମଧ୍ୟରେ ବିଦ୍ୟା ବୁଦ୍ଧି ଧନ ନ୍ୟାୟ ସବୁ ବିଷୟରେ ଦଶପଲ୍ଲା ଶ୍ରୀ ମଣିମା ଶ୍ରେଷ୍ଠ ଏବଂ ବଡ଼ । ସମସ୍ତ ପୃଥିବୀ ମଧ୍ୟରେ କଟକ, ପୁରୀ, ବାଲେଶ୍ୱର ଏହି ତିନୋଟି ସହର । ଏଥିର ପ୍ରତିବାଦକାରୀ ବିଦେଶୀ ଲୋକ ହେଲେ ଶ୍ରୀଗ୍ରାମ୍ଭଙ୍କ ଦରବାରରେ ଉପସ୍ଥିତ ମନା । ଦଶପଲ୍ଲବାସୀ ପକ୍ଷରେ ଜୋରିମାନା ଏବଂ ଅନେକ ପ୍ରକାର ଦଣ୍ଡ ଅବାଧାରିତ ।

ପ୍ରାୟ ପ୍ରତିବର୍ଷ ଶୀତକାଳ ଗସ୍ତରେ ଗଡ଼ଜାତ ମାହାଲର ସୁପରିଣ୍ଟେଣ୍ଡେଣ୍ଟ କମ୍ବା ଆସିଷ୍ଟାଣ୍ଟ ସମସ୍ତ ଗଡ଼ଜାତର କାର୍ଯ୍ୟ ପ୍ରଣାଳୀ ପରୀକ୍ଷା କରିବା ସକାଶେ ବାହାରି ଥାନ୍ତି । ମୋହର ଦଶପଲ୍ଲା ଦେବାନର ପ୍ରଥମବର୍ଷ ସୁପରିଣ୍ଟେଣ୍ଡେଣ୍ଟ ମେଟକାଫ ସାହେବ ଦଶପଲ୍ଲା ଗସ୍ତକୁ ଆସୁ ଥିବାର ପରୁଆନା ପାଇ ମୁଁ ଓ ରାଜାସାହେବ ଦୁଇଜଣ ହାକମଙ୍କୁ ସଙ୍ଗୋଳ ଆଣିବା ସକାଶେ ବେଲପଡ଼ା ମୁକାମକୁ ଯାଇଥିଲୁଁ । ଗଡ଼ ତରଫକୁ ଆଗମନ ସମୟରେ ସାହେବଙ୍କ ହାତୀ ଆଗରେ, ମଧ୍ୟରେ ରାଜାଙ୍କ ହାତୀ, ପଶ୍ଚାତରେ ମୋ ହାତୀ । ଗୋଟାଏ ଗହୀର ବିଲ ମଧ୍ୟରେ ସାହେବ ପଶ୍ଚାତକୁ ମୁହଁ ଫେରାଇ କହିଲେ—"ରାଜାସାହେବ,ଖଡ଼ଗପୁରଠାରୁ ବିଲାସପୁର ପର୍ଯ୍ୟନ୍ତ ରେଲବାଟ ପିଟିବାର ଗବର୍ଣ୍ଣମେଣ୍ଟରୁ ହୁକୁମ ବାହାରିଗଲା ।"

ରାଜାସାହେବ—କଣ-କଣ-ରେଲଗାଡ଼ି ଚଳିବ ? ଅଚ୍ଛା ସାହେବ, ସେ ଶଗଡ଼ ତ ଏପରି ବିଲ ବାଟରେ ଚଳି ପାରିବ ନାହିଁ ?

ସାହେବ—ନାହିଁ-ନାହିଁ, ରାଜାସାହେବ ! ତାହାପାଇଁ ସଡ଼କ ତୟାର ହେବ ।

ରାଜାସାହେବ—ଅଚ୍ଛା ସାହିବ-ଅଚ୍ଛା ସାହିବ, ବାଟ ବନାଇଲେ ତ ଢେର ଟଙ୍କା ଖରଚ ହୋଇଯିବ ? ପାଞ୍ଚ ହଜାର ଟଙ୍କା ଖରଚ ହୋଇ ଯାଇପାରେ ।

ସାହେବ—ହୋ-ହୋ-ରାଜାସାହେବ ! ଢେର ଟଙ୍କା ଖରଚ ହେବ ।

ରାଜାସାହେବ—ଦଶହଜାର ଟଙ୍କା ଖରଚ ହୋଇଯିବ ?

ସାହେବ—ହୋ ହୋ-ରାଜାସାହେବ ! ବହୁତ ରୁପେୟା ଖୁବ୍ ବହୁତ ରୁପେୟା ।

ରାଜାସାହେବ—ପନ୍ଦର ହଜାର ଟଙ୍କା ଖରଚ ହୋଇଯିବ ?

ଇତ୍ୟବସରରେ ମୁଁ ସ୍ୱସ୍ତ ଭାବରେ ପଛରୁ ହାତଠାରି ସାହେବଙ୍କୁ ଟଙ୍କା ବିଷୟ କିଛି ନ ପଚାରିବା

ପାଇଁ ନିଷେଧ କରୁଥାଏଁ । ରଜାସାହେବ ମୋ ନିଷେଧ ଶୁଣିବେ କିଆଁ ? ପୁନଃ ପୁନଃ ପଚାରିବା ରଜାସାହେବ ରେଲ ନିର୍ମାଣ ଖର୍ଚ୍ଚ କୋଡ଼ିଏ ହଜାର ଟଙ୍କା ପର୍ଯ୍ୟନ୍ତ ଉଠିଲେ । ଆଉ ଅଧିକ ଉପରକୁ ଯିବା ସକାଶେ ମନ ବଳିଲା ନାହିଁ । କିଣି ମନରେ ପାଞ୍ଚ ବରିକ୍ତ ଭାବରେ ଚୁନ ହୋଇ ରହିଲେ । ପୃଥିବୀରେ ଏତେ ଟଙ୍କା କାହିଁ ଯେ ଖରଚ ହେବ । ସବୁ ଟଙ୍କାଗୁଡ଼ିକ ତ ଶ୍ରୀ ଗୁମୁଙ୍କ ଗନ୍ତାଘରେ—ଆଉ ଟଙ୍କା କେଉଁଠି ଅଛି ?

ସୁପରିଣ୍ଟେଣ୍ଡେଣ୍ଟ ସାହେବ ସମସ୍ତ ସେରସ୍ତା ତଦାରଖ କରି ଚାଲିଗଲେ ।

ସେଥିର ଅଳ୍ପଦିନ ଉତ୍ତାରେ ଅକସ୍ମାତ୍ ଗୋଟିଏ ଭୟଙ୍କର ବିପତ୍ତିପାତ ହେଲା । ପ୍ରତିଦିନ ରାତି ଦଶଟା ପୂର୍ବେ ମୁଁ ଆହାରାଦି କାର୍ଯ୍ୟ ସାରି ଶୟନ କରିବାକୁ ଯାଏଁ । ସେ ଦିନ ରାତିରେ ଦଶପଲ୍ଲୀ ଡାକ ମୁନସିଙ୍କୁ ମୋ ବସାକୁ ନିମନ୍ତ୍ରଣ କରିଥିଲି । ଆହାରାଦି କାର୍ଯ୍ୟ ସମାପ୍ତ ହେବାକୁ ଏଗାରଟା ବାଜିଗଲା । ମୁନସି ବସାକୁ ଚାଲିଗଲେ; ମୁଁ ଶୟନ କରିବାକୁ ଗଲି । ମୋହର ଶୟନ ଉତ୍ତାରେ ଚାକର ଭଣ୍ଡାରି ଘର ଭିତରୁ ଶିକୁଳି ଲଗାଇ ଦେଇ ମୋ ବିଛଣାଠାରୁ କିଛି ଦୂରରେ ଶୟନ କରେ । ସେ ଦିନ ଅକାରଣ ଅନେକରାତି ଯାଏ ଶୋଇବାକୁ ନ ଯାଇ ବାହାରେ ବସି ରହିଲି । ସେ ଶୟନ କରିବାକୁ ଭିତରକୁ ଯାଇ ଯେମିତି ଦୁଆର ବନ୍ଦ କରିଅଛି, ଗୋଟାଏ ଗୋକ୍ଷୁର ସାପ ଚାଳରୁ ମୋ ଶୋଇବା ଖଟ ମୁଣ୍ଡ ତରଫ କିଛି ଦୂରରେ ଯେଉଁଠାରେ ଭଣ୍ଡାରି ଶୁଏ, ଠିକ୍ ସେହି ସ୍ଥାନରେ ଦୁଲ୍ କରି ଖସି ପଡ଼ିଲା । ସାପଟା ଭାରି ବଡ଼ ଏବଂ ଲମ୍ବା, ଏଡ଼େ ବଡ଼ ଗୋକ୍ଷୁର ସାପ ମୁଁ କେବେ ଦେଖି ନାହିଁ । ମୁଁ ଶୋଇ ଯାଇଥିଲି । ବାରିକ ତ୍ରସ୍ତ ଭାବରେ ମୋ ଉପରେ ହାତ ପକାଇ 'ଉଠିବା ହେଉ' କହି ଯେମିତି ଡାକ ଦେଲା, ମୁଁ କିଛି ମାତ୍ର କଥା ନ ବୁଝି କେବଳ ନିତାନ୍ତ ଭୟରେ ଉଠି ପଡ଼ି ମୋ ବିଛଣା ପାଖରେ ଥିବା ପୁସ୍ତକ ଲମ୍ପ କାଗଜ ପ୍ରଭୃତିରେ ସଜ୍ଜିତ ଗୋଟାଏ ବଡ଼ ଗୋଲାକାର ମେଜ ଉପରକୁ ଉଠିଗଲି । ମୁଁ ଯେପରି ମେଜ ଫିଟରେ ଗୋଡ଼ ପକାଇ ଉପରକୁ ଉଠିବାକୁ ଯିବି, ମେଜଟା (ଏକ ପାଦିଆ) ମୋ ଉପରକୁ ଓଲଟି ପଡ଼ିଲା । ମୁଁ ତଳେ ପଡ଼ିଗଲି—ମେଜ ଉପର ପଦାର୍ଥ ସବୁ ମୋ ଉପରେ ଓଜାଡ଼ ହୋଇ ପଡ଼ିଲା । ମୁଁ ଉଠିପଡ଼ି ବାହାରକୁ ପଳାଇ ଆସିଲି; ଦେଖିଲି ପିନ୍ଧା ଖଦଖଣ୍ଡ ରକ୍ତମୟ । ହୃତ୍ପିଣ୍ଡରେ ଆଘାତ ଲାଗି ଥିବାରୁ ସେଥିରୁ ରକ୍ତସ୍ରୋତ ପ୍ରସ୍ରାବ ବାଟେ ବହି ଲୁଗା ଗୋଟାକ ଭିଜି ଯାଇଥିଲା । ଅଚେତ ପ୍ରାୟ ତଳେ ପଡ଼ିଗଲି । ଆଉ ଆଉ ଚାକରମାନେ ଯାଇଁ ସାପଟାକୁ ମାରି ପକାଇଲେ । ସେ ରାତିରେ ଚାକର ଭଣ୍ଡାରି ଦୈବାତ୍ ଶୋଇବା ସକାଶେ ବିଳମ୍ବ କରି ନ ଥିଲେ ଦୁଇଜଣଙ୍କର ସର୍ପାଘାତରେ ମୃତ୍ୟୁ ଅବଧାରିତ ଥିଲା ।

ପ୍ରାୟ ଅଚେତ ଭାବରେ ବିଛଣାରେ ପଡ଼ି ରହିଥାଏ । ଅନେକ ବେଳଯାଏ ଯନ୍ତ୍ରଣା ଭୋଗ ଉତ୍ତାରେ କେତେ ବିନ୍ଦୁ ମାତ୍ର ପ୍ରସ୍ରାବ ହୁଏ । ପ୍ରସ୍ରାବ କରିବା ସମୟରେ ଦୁଇଜଣ ଚାକର ଯୋଡ଼ାଏ ପଙ୍ଖା ଧରି ବିଞ୍ଚୁଥାନ୍ତି । ଏହି ପ୍ରକାର ଯନ୍ତ୍ରଣା ଭୋଗର ଚାରି ପାଞ୍ଚଦିନ ଉତ୍ତାରେ ଠିକ ଚବିଶ ଘଣ୍ଟା ପର୍ଯ୍ୟନ୍ତ ଝାଡ଼ା ପ୍ରସ୍ରାବ ସବୁ ବନ୍ଦ । ଜୀବନର ଆଶା ପରିତ୍ୟାଗ କରି ବିଛଣାରେ ପଡ଼ି ରହିଥାଏଁ । ଇତ୍ୟବସରରେ ତତ୍ସ୍ଥାନୀୟ ଆତ୍ମୀୟ ଲୋକେ ଏବଂ ଚାକରମାନେ ମୋତେ ଭୂତ ମାଡ଼ି ବସିଥିବାରୁ ଝାଡ଼ା ପ୍ରସ୍ରାବ ବନ୍ଦ ହୋଇ ଯାଇଥିବାର ସ୍ଥିର କରି ନେଲେ । ଦେଶ ମଧ୍ୟରେ ଯେତେ ଟାଣୁଆ ଟାଣୁଆ ଗୁଣିଆ ଥିଲେ, ସମସ୍ତେ ଉପସ୍ଥିତ ହୋଇ ଫୁଙ୍କା ଝଡ଼ାରେ ଏବଂ ଘରର ଚତୁର୍ଦ୍ଦିଗରେ ଭୂତ ବାଟ ବନ୍ଦ କରିବା ନିମନ୍ତେ ମନ୍ତ୍ରା ଯାଇ ଚୁଣା ଏବଂ ଲୁହାକଣ୍ଟା ପୋତିବାରେ ଲାଗିଥାନ୍ତି ।

ମୁଁ ଦେଖୁଥାଏଁ, ପାଟି ଫିଟାଇ କଣ୍ଟ୍ରୁ କଥା କହିବାର ଶକ୍ତି ନାହିଁ । ଶେଷରେ ଦକ୍ଷିଣ ଜଙ୍ଘ ମୂଳରେ ଏକ ସ୍ଥାନ ହଠାତ୍ ଫାଟି ଯାଇ ସେଠାରେ ଅନ୍ଦାଜ ପୂଜ ରକ୍ତ ବାହାରିଗଲା । ସେହି କ୍ଷତ ସ୍ଥାନ ବାଟେ ପୂଜରକ୍ତ ସହିତ ପ୍ରସ୍ରାବ ବାହାରୁ ଥାଏ । ଆଠ ଦିନ ଉତ୍ତାରେ ସହଜ ରୂପେ ପ୍ରସ୍ରାବ ହେଲା, କ୍ରମଶଃ କ୍ଷତ ସ୍ଥାନ ଶୁଖିଗଲା । ବିନା ଚିକିତ୍ସାରେ କେବଳ ପ୍ରଭୁଙ୍କ ମହାକରୁଣା ପ୍ରଭାବରୁ ଏ ଯାତ୍ରା ରକ୍ଷା ପାଇଗଲି ।

(ଉ: ସା: ୨୪ଶ ଭାଗ—୫ମ, ୬ଷ୍ଠ ସଂଖ୍ୟା)

---

## ଦଶପଲ୍ଲାର ଦେବାନୀ (୩)

ଯୋରମୋ ଦଶପଲା କିଲ୍ଲାର ଗୋଟିଏ ସ୍ୱତନ୍ତ୍ର ଅଂଶ, ମହାନଦୀର ଉତ୍ତର ପାର୍ଶ୍ୱରେ ଅବସ୍ଥିତ । ଏହି ଅଂଶ ସକାଶେ ସ୍ୱତନ୍ତ୍ର ବନ୍ଦୋବସ୍ତ—ମାତ୍ର ନଗଦ ଟଙ୍କା ଗବର୍ଣ୍ଣମେଣ୍ଟଙ୍କୁ ଦେବାକୁ ହୁଏ ନାହିଁ । ସେଥି ବଦଳରେ ପୁରୀର ଶ୍ରୀ ଜଉଙ୍କୁ ଗୁଣ୍ଡିଚ୍ଚ ରଥ ନିର୍ମାଣ ସକାଶେ ପ୍ରତିବର୍ଷ କାଠ ଦେବାକୁ ପଡ଼େ । ଉତ୍କଳର ସ୍ୱାଧୀନ ରାଜାମାନଙ୍କ ଅଧିକାର ସମୟରୁ ଏହିପରି ବନ୍ଦୋବସ୍ତ ଅଛି ।

ଯୋରମୋ ଉତ୍ତରାଂଶରେ ଅନୁଗୁଳ । ଅନୁଗୁଳର ସରକାରୀ ବନରଖା କର୍ମଚାରୀମାନେ ଅନୁଗୁଳ ଦକ୍ଷିଣ ସୀମାନ୍ତ ବନ ବିଭାଗ କ୍ରମଶଃ ବଢ଼ାଇ ଆଣି ଯୋରମୋ ଗ୍ରାମମାନଙ୍କର ଓଳିତଳେ ପହଞ୍ଚାଇଲେଣି । ଯୋରମୋର ଦକ୍ଷିଣାଂଶ ମହାନଦୀ କୂଳସ୍ଥିତ ଭୂମି ଶସ୍ୟ କ୍ଷେତ୍ର । କ୍ଷେତ୍ରର ଉତ୍ତର ଓ ପଶ୍ଚିମ ଅଂଶରେ ଗ୍ରାମମାଳା । ଗ୍ରାମର ଓଳିତଳ ଲଗାଲଗି ଅନୁଗୁଳର ରଖଣି ବଣ । ସୁତରାଂ ଗ୍ରାମ୍ୟ କୃଷକମାନଙ୍କ ଏକମାତ୍ର ସହାୟ ପଶୁଦଳ ଚରିବାକୁ ସ୍ଥାନାଭାବ । ଗ୍ରାମ୍ୟ ପଶୁଦଳ ଫିଟିବା ମାତ୍ରକେ ଅନୁଗୁଳର ରଖଣି ଜଙ୍ଗଲରେ ପଡ଼ି ପାଉଣ୍ଡ ହାଉସକୁ ଚାଲାଣ ଯାନ୍ତି । କଦାଚିତ୍ ସରକାରୀ ନିମ୍ନଶ୍ରେଣୀର ପାଇକମାନେ ନିରୀହ ପ୍ରଜାଙ୍କଠାରୁ ଅର୍ଥ ଆଦାୟ କରିବା ଲାଳସାରେ ଅକାରଣ ପଡ଼ିଆରୁ ପଶୁପଲ ଅଡ଼ାଇ ଦେଉଥାନ୍ତି । ପ୍ରଜାମାନେ ପାଉଣ୍ଡ ହାଉସରେ ଜୋରିମାନା ଗଣି ଗଣି ହାଲିଆ ହୋଇ ପଡ଼ିଲେଣି । ପୁନଃ ପୁନଃ ଦଶପଲ୍ଲାର ରାଜ ଦରବାରରେ ଗୁହାରି କରି ଆସୁ ଅଛନ୍ତି, କେହି ଶୁଣିବାକୁ ନାହିଁ ।

ଯୋରମୋର କେତେଜଣ ପଧାନ ଏବଂ ପ୍ରଧାନ ପ୍ରଧାନ ପ୍ରଜା ସେମାନଙ୍କର କଷ୍ଟର କାରଣ ମୋ ନିକଟରେ ପ୍ରକାଶ କରି ପ୍ରତିକାର ଲାଭ ନିମନ୍ତେ ମୋତେ ଦୃଢ଼ରୂପେ ଧରିଲେ । ଅନୁଗୁଳର ସରକାରୀ ଫରେଷ୍ଟର ହାକମ ଯୋରମୋର ଉତ୍ତରାଂଶର ଅନେକ ଜଙ୍ଗଲ ଅନୁଗୁଳ ଜଙ୍ଗଲରେ ମିଶାଇ ଦେଇଥିବା ବିଷୟ ମଧ୍ୟ ପ୍ରକାଶ କଲେ । ମୁଁ ଏ ସମସ୍ତ ବିଷୟ ରାଜା ସାହେବଙ୍କ ଦ୍ୱାରା ଗଡ଼ଜାତ ମାହାଲର ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କ ହଜୁରକୁ ରିପୋର୍ଟ କରିବାରୁ ଅନୁଗୁଳର ତହସିଲଦାର, ଫରେଷ୍ଟର ଏବଂ ଦଶପଲ୍ଲାର ଦେବାନ ଏକତ୍ର ସରଜମିନ ତଦନ୍ତକରି ରିପୋର୍ଟ କରିବା ସକାଶେ ସରକାରରୁ ହୁକୁମ ଆସିଲା । ପୂର୍ବ ବନ୍ଦୋବସ୍ତ ଅନୁସାରେ ନିରୂପିତ ତାରିଖରେ ମୁଁ ଯାଇଁ ଯୋରମୋ ଗ୍ରାମରେ ଉପସ୍ଥିତ ହେଲି । କଟକରେ ପ୍ରଥମ ଅବସ୍ଥାନ କାଳରେ ମୋହର ଏକମାତ୍ର ସହାୟ ପରମବନ୍ଧୁ ରାୟ ନାରାୟଣ ଚନ୍ଦ୍ର ନାୟକ ବାହାଦୁର ସେ ସମୟରେ ଅନୁଗୁଳର ତହସିଲଦାର । ଫରେଷ୍ଟର ସାହେବ ମଧ୍ୟ ଆପଣା ଆପଣା କର୍ମଚାରୀମାନଙ୍କ ସହିତ ସରଜମିନରେ ଉପସ୍ଥିତ ହେଲେ । ଯୋରମୋ ପ୍ରଜାଗଣ ସେମାନଙ୍କ ଗ୍ରାମ ସଂଲଗ୍ନ ବୋଲି ଦାବି କରି ଯେଉଁ ବନାଂଶ ଦେଖାଇଲେ ସେଥିର ପରିମାଣ ଫଳ ପ୍ରାୟ ୨୦।୨୫ ମାଇଲରୁ ଊଣା ନୁହେଁ । ପ୍ରାଚୀନ ସର୍ଭେ

ମ୍ୟାପ୍ ଦୃଷ୍ଟିରେ ସେମାନଙ୍କ ଉକ୍ତିର ଯାଥାର୍ଥ୍ୟ ହୃଦୟଙ୍ଗମ ହୁଏ । ମାତ୍ର ସୀମାନ୍ତରେଖା କେଉଁଠା ? ଗ୍ରାମ ନିକଟବର୍ତ୍ତୀ ବନ ମଧ୍ୟରେ ଦୁଇ ପକ୍ଷର ହାକିମ ଏବଂ କର୍ମଚାରୀମାନଙ୍କ ଡେରା ଲଗାଇଲି ପ୍ରାୟ ୪ଣା ହୋଇଥାଏ । ଅନେକ ଦିନ ଉତ୍ତାରେ ପ୍ରିୟ ବନ୍ଧୁ ମିଳନ, ଏକତ୍ର ପାନ ଭୋଜନ, ଅରଣ୍ୟ ଭ୍ରମଣ, ପାରିଧି, ଖୁବ୍ ଆମୋଦ ପ୍ରମୋଦରେ କେତୋଟି ଦିନ କଟିଲି । ଠିକ୍ ସେହିସମୟରେ ଗଡ଼ଜାତ ମାହାଲର ଡିଷ୍ଟ୍ରିକ୍ଟ ସୁପରିଣ୍ଟେଣ୍ଡେଣ୍ଟ ସାହେବ ପହଞ୍ଚିବାରୁ, ପ୍ରବଳତର ରୂପେ ପାରିଧି କାର୍ଯ୍ୟ ଚଳିବାକୁ ଲାଗିଲା । ସାହେବଟି ଏକ ନେତ୍ର ବଶିଷ୍ଟ—ମାତ୍ର ସୁଶିକାରୀ । ଦିନେ ସଖାଲଓ୍ଵଲ ସମସ୍ତେ ମିଶି ପାରିଧି କରିବାକୁ ଯାଇଥିଲୁଁ । ସେହି କଣା ସାହେବ ବଡ଼ ଗୋଟାଏ ସମ୍ବର ମାଇଲେ; ଆମ୍ଭମାନଙ୍କଠାରୁ ଖୁବ୍ ଅଳ୍ପ ଦୂରରେ ଗୟଲ ଗଲ ପଲ ପଳାଇଗଲେ, ପଥର ଉହାଡ଼ ଥିବାରୁ ମାରି ପାରିଲୁଁ ନାହିଁ ।

ସୀମାନ୍ତ ରେଖା ସ୍ଥିର କରିବା ସକାଶେ ଅନୁଗୁଳ ତହସିଲଦାର ମୋତେ ସରଜମିନ୍‌ରେ ରଖି ଅନୁଗୁଳ ସଦର କଚେରିକୁ ଚାଲି ଗଲେ । ମୁଁ ମ୍ୟାପ୍ ଖଣ୍ଡ ହାତରେ ଧରି ବଣ ମଧ୍ୟରେ ସୀମାନ୍ତ ରେଖା ଖୋଜି ବୁଲିବାକୁ ଲାଗିଲି । ଖୋଜୁଁ ଖୋଜୁଁ ଯୋରମୋ ଉତ୍ତର ପଶ୍ଚିମ କୋଣସ୍ଥିତ ଗୋଟାଏ ପର୍ବତ ଶିଖରର ଏକ ସ୍ଥାନରେ ଗୋଟାଏ ସର୍ଭେ ଷ୍ଟେସନର ଚିହ୍ନ ମିଳିଗଲା । ମ୍ୟାପ୍ ସହିତ ଡିଗ୍ରୀ ମିଳାଇ ପୂର୍ବ ଦିଗକୁ ସରଳରେଖା କ୍ରମେ ଗୋଟାଏ ଡୁଙ୍ଗର କାଟିଗଲା । ଯୋରମୋ ଇଶାଣ କୋଣ ସେହି ଡୁଙ୍ଗରର ଶେଷସୀମାଠା ଅନୁଗୁଳ-ନରସିଂହପୁର--ଯୋରମୋ ତେସମାଳ ସ୍ଥାନ । ନରସିଂହପୁର ଦେବାନ ଦଳବଳ ସହିତ ଧାଇଁ ଆସି ନରସିଂହପୁର କାଳ୍ପ ଇଲାକାରୁ କେତେକ ଜଙ୍ଗଲ ଯୋରମୋ ଜଙ୍ଗଲ ମଧ୍ୟରେ ମିଶାଇ ଦେଉଛୁ ବୋଲି ଉଲ୍ଲେଖକରି ଭୟଙ୍କର ବାଦାନୁବାଦ ଆରମ୍ଭ କଲେ । କର୍ମକ୍ଷେତ୍ରରେ ଆମ୍ଭଉଭୟଙ୍କ ମଧ୍ୟରେ ବାଦାନୁବାଦ ଶୁଣି କେହି ଲୋକ ଅନୁମାନ କରନ୍ତେ ନାହିଁ ଯେ, ଆମ୍ଭେ ଉଭୟେ ପୂର୍ବରୁ ପରସ୍ପର ମିତ୍ରତା ସୂତ୍ରରେ ଆବଦ୍ଧ ବାମ୍ଧା ପରିଚିତ ଲୋକ । ମୋହର ମନରେ ପଡ଼ୁଅଛି, ନରସିଂହପୁର ଆଉ ଯୋରମୋ ମଧ୍ୟସ୍ଥଳରେ ଗୋଟାଏ ଆରଣ୍ୟ କ୍ଷୁଦ୍ରନଦୀ ଥିବାରୁ ଆମ୍ଭମାନଙ୍କ ମଧ୍ୟରେ ବିବାଦଟା ଅଗ୍ରସର ହୋଇ ପାରିଲା ନାହିଁ ।

ସୁପରିଣ୍ଟେଣ୍ଡେଣ୍ଟ ମେଟକାଫ୍ ସାହେବ ଅନୁଗୁଳ ସଦର କଚେରି ମୁକାମରେ ନିରୂପିତ ମାସ ତାରିଖରେ ସୀମାବିବାଦ ମାମଲା ନିଷ୍ପତ୍ତି ସକାଶେ ଦିନ ଧାର୍ଯ୍ୟକରି ସ୍ୱୟଂ ହାକିମ ଅ: ସୁ: ରାୟ ନନ୍ଦକିଶୋର ଦାସ ବାହାଦୁରଙ୍କ ସହିତ ସଦର ମୁକାମରେ ଉପସ୍ଥିତ ହେଲେ । ମୁଁ ମଧ୍ୟ ସରକାରୀ ଚିଠି ପାଇ ନିରୂପିତ ତାରିଖର ତିନି ଚାରିଦିନ ପୂର୍ବେ ଉକ୍ତ ସ୍ଥାନରେ ଉପସ୍ଥିତ ହେଲି । ସେ ସମୟରେ ଢେଙ୍କାନାଳର ମ୍ୟାନେଜର ବାବୁ ସୁଦାମଚନ୍ଦ୍ର ନାୟକ (ପରେ ରାୟ ବାହାଦୁର) ଆପଣେ ସାହେବଙ୍କ ଗହଣରେ ସେ ସ୍ଥାନକୁ ଆସିଥିଲେ । ସମସ୍ତ ବନ୍ଧୁବାନ୍ଧବ ଏକତ୍ରିତ, ଏକ ସଙ୍ଗରେ ପାନାହାର, ଗଳ୍ପ ଆମୋଦ ପ୍ରମୋଦରେ ଅର୍ଦ୍ଧ ରାତ୍ରିକାଳ ଅତିବାହିତ ହୁଏ । ପ୍ରଭାତଠାରୁ ଅପରାହ୍ଣ ପର୍ଯ୍ୟନ୍ତ ସମସ୍ତେ ଆପଣା ଆପଣା କାର୍ଯ୍ୟରେ ନିଯୁକ୍ତ ଥାଉଁ । ସୁପରିଣ୍ଟେଣ୍ଡେଣ୍ଟ ସାହେବ ସୀମାନ୍ତ ମକଦ୍ଦମା ତଦନ୍ତ କଲେ । ମକଦ୍ଦମାର ଅବସ୍ଥା ସବୁ ଶୁଣିଗଲେ, ମାତ୍ର ଶେଷ ହୁକୁମ ଦେଲେ ନାହିଁ । ମୁଁ ଦଶପଲ୍ଲାରୁ ଚାଲି ଆସିବାର ଦୁଇବର୍ଷ ଉତ୍ତାରେ ଅନ୍ୟ ଜଣେ ସୁପରିଣ୍ଟେଣ୍ଡେଣ୍ଟ ସାହେବ ମକଦ୍ଦମାର ଶେଷ ତଦନ୍ତ କଲେ । ମୁଁ ଯେଉଁ ଲାଇନ କାଟି ଦେଇ ଆସିଥିଲି, ତାହା ସ୍ଥିର ରଖି ଶେଷ ନିଷ୍ପତ୍ତି କରି ଦେଇ ଯାଇଅଛନ୍ତି ।

ଅନୁଗୁଳରୁ ଯୋରମୋକୁ ବାହୁଡ଼ ଆଇଲି । ଯୋରମୋ ମହାନଦୀ କୂଳେ କୂଳେ ଅନେକଗୁଡ଼ିଏ ଆମ୍ବତୋଟା ଅଛି । ମହାନଦୀର ପ୍ରବଳ ବଢ଼ିରେ ନଦୀ ଗର୍ଭରୁ ବାଲି ଉଠି ଅନେକଗୁଡ଼ିଏ ତୋଟାର ଗଛମାନଙ୍କର ଅଧାଅଧି ପୋତି ହୋଇ ଯାଇଅଛି । ମୁଁ ଯେଉଁ ବର୍ଷ କଥା କହୁଅଛି, ସେ ବର୍ଷ ଗଛମାନଙ୍କରେ ଯଥେଷ୍ଟ ଆମ୍ବ ଫଳିଥିଲା । ପେଣ୍ଡାକୁ ପେଣ୍ଡା ଆମ୍ବ ବାଲିରେ ପଡ଼ି ଲୋଟୁଥାଏ । ତୋଟା ଗଛ ମୂଳଠାରୁ ମହାନଦୀ ଏବଂ ଦକ୍ଷିଣ ପାଶ୍ୱରେ ଥିବା ଗିରିମାଳା ଏବଂ ଦକ୍ଷିଣ ପଶ୍ଚିମ ଭାଗରେ ଅବସ୍ଥିତ ବରମୂଳ ଘାଟିର ସ୍ୱାଭାବିକ ଦୃଶ୍ୟ ବଡ଼ ମନୋହର । ସେହି ପ୍ରକୃତିର ସାୟାହ୍ନିକ ମନୋମୋହନ ଦୃଶ୍ୟରେ ଆକୃଷ୍ଟ ହୋଇ ପକ୍ଷାଧିକ କାଳ ଆମ୍ବତୋଟା ମଧ୍ୟରେ ରହିଥିଲି । ମୁଁ ଯେଉଁ ଆମ୍ବତୋଟା ମଧ୍ୟରେ ଥିଲି, ସେଥିର ପଶ୍ଚିମ ଦିଗକୁ କିଛି ଦୂର ଅନ୍ତରେ ମହାନଦୀର କୂଳ ଭାଙ୍ଗି ଗୋଟିଏ ଘାଇ ହୋଇଯାଇଅଛି । ନଦୀବଢ଼ି ସମୟରେ ସେହି ଘାଇ ବାଟେ ମହାନଦୀରୁ ପାଣି ପଶି ଯୋରମୋ ଇଲାକା ଶସ୍ୟକ୍ଷେତ୍ର ସବୁ ଭସାଇ ଦେଉଥିବାରୁ କୃଷକମାନଙ୍କୁ ଭୟଙ୍କର କ୍ଷତି ସହ୍ୟ କରିବାକୁ ହୁଏ । ପ୍ରଜାମାନେ ମୋତେ ସେହି ଘାଇ ଦେଖାଇ ତାହାର ଭୀଷଣ ଅନିଷ୍ଟକାରିତା ବିଷୟ ମୋ ନିକଟରେ ପ୍ରକାଶ କଲେ । ସେହି ଘାଇର ଉତ୍ତର ଦିଗସ୍ଥ ଭୂମି ଦିଗକୁ ଅଳ୍ପ ଦୂରରେ ଗୋଟିଏ ପାହାଡ଼ ଅଛି । ମୋହର ଯେମନ୍ତ ସ୍ମରଣ ହେଉଅଛି, ଏହି ଅନଧିକ ଉଚ୍ଚ ପର୍ବତଟି ଦେଶର ଅଭ୍ୟନ୍ତରସ୍ଥ ଗିରିମାଳାର ନାସି ବିଶେଷ । ଯୋରମୋ ଇଲାକାର ସମସ୍ତ ପ୍ରଜାଙ୍କୁ ଡକାଇ ଘାଇରେ ବନ୍ଧ ପକାଇବା ସକାଶେ ପ୍ରସ୍ତାବ କଲି । ସମସ୍ତ ପ୍ରଜା ଆନନ୍ଦ ପୂର୍ବକ ସମ୍ମତ ହୋଇଗଲେ । କଥା ସ୍ଥିର ହେଲା—ପ୍ରତ୍ୟେକ ପ୍ରଜା ଆସି ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ କର୍ମରେ ନିଯୁକ୍ତ ହେବେ । ସକାଳ ଓଳିଟାରେ ସେହି କର୍ମସ୍ଥାନରେ ଚୂଡ଼ା ଖାଇବା ସକାଶେ ଦୁଇ ତିନି ପଇସା ହିସାବରେ ପ୍ରାପ୍ତ ହେବେ । ମୋ ହାତରୁ ସେହି ପଇସା ଦେବା ସକାଶେ ସ୍ୱୀକୃତ ହେଲି । ପରଦିନ ପ୍ରାତଃକାଳରୁ କର୍ମ ଆରମ୍ଭ ହୋଇଗଲା । ନିକଟବର୍ତ୍ତୀ ପର୍ବତରୁ ଜଣକିଆ, ଦୁଇଜଣିଆ, ତିନିଜଣିଆ ପଥର ଖଣ୍ଡ ବହି ଆଣି ବନ୍ଧରେ ପକାଇବାକୁ ଲାଗିଲେ । ଅଳ୍ପଦିନ ମଧ୍ୟରେ ବନ୍ଧ ପ୍ରସ୍ତୁତ ହୋଇଗଲା ।

ବନ୍ଧକାର୍ଯ୍ୟ ସହଜରେ ନିବାଡ଼ ହୋଇଯିବାରୁ ମୁଁ ଆନନ୍ଦ ପୂର୍ବକ ପ୍ରଜାମାନଙ୍କୁ ଗୋଟିଏ ଭୋଜି ଦେଲି । କେତେଜଣ ବାଣୁଆ ଯାଇ ବଣ ମଧ୍ୟରୁ ପାଞ୍ଚଗୋଟା ସମ୍ବର ମୃଗ ମାରି ଆଣିଲେ—ତୋଟା ମଧ୍ୟରେ ଖଦା ହେଲା । ଡାଲି, ଭାତ, କାକରା ପିଠା, ମାଂସ ତରକାରିରେ ଗୋଟିଏ ସୁନ୍ଦର ଭୋଜି ହୋଇଗଲା ।

ମୁଁ ଶୁଣିବାକୁ ପାଏଁ, ସେହି ବନ୍ଧ ଏବଂ ସୀମାନ୍ତ ଡିଙ୍ଗୁରସଙ୍ଗରେ ଏ ପର୍ଯ୍ୟନ୍ତ ମୋ ନାମର ସମ୍ପର୍କ ରହିଅଛି । କଟକ କଲେଜିଏଟ ସ୍କୁଲର ପଣ୍ଡିତ ମୃତ୍ୟୁଞ୍ଜୟ ରଥ ବାଣୀଭୂଷଣ ଆପଣେ ଜଣେ ଉତ୍କଳର ପ୍ରତ୍ନତତ୍ତ୍ୱାନୁସନ୍ଧିତ୍ସୁ ଲୋକ । ସେ ଆପଣେ କର୍ମକ୍ଷେତ୍ରରୁ ଅବସରପ୍ରାପ୍ତି ସମୟରେ ଉତ୍କଳର ସ୍ଥାନେ ସ୍ଥାନେ ଭ୍ରମଣ କରି ପ୍ରତ୍ନତତ୍ତ୍ୱ ସଂଗ୍ରହ କରିଥାନ୍ତି । ତାହାଙ୍କ ଅନୁସନ୍ଧାନର କେତେଗୋଟି ବିଷୟ ମଧ୍ୟ ସାଧାରଣରେ ପ୍ରକାଶିତ ହୋଇଗଲାଣି । ବର୍ତ୍ତମାନ ସମୟରେ ବାବୁ ଚିନ୍ତାମଣି ଆଚାର୍ଯ୍ୟ ଏବଂ ବାଣୀଭୂଷଣ ଆପଣଙ୍କୁ ଐତିହାସିକ ତଥ୍ୟ ଏବଂ ପ୍ରତ୍ନତତ୍ତ୍ୱ ବିଷୟ ଅନୁସନ୍ଧାନରେ ନିଯୁକ୍ତ ଥିବାର ଦେଖିବାକୁ ପାଉଁ । ବର୍ତ୍ତମାନ ପର୍ଯ୍ୟନ୍ତ ଉତ୍କଳ ସାହିତ୍ୟ ସଂସାରରେ ଏହି ବିଷୟର ଅବସ୍ଥା ନିତାନ୍ତ ଶୋଚନୀୟ । ଉକ୍ତ ଦୁଇ ଉତ୍ସାହୀ ବ୍ୟକ୍ତିଙ୍କ କାର୍ଯ୍ୟକଳାପ ଦୃଷ୍ଟିରେ ଏହି ବିଭାଗ ରୂପାନ୍ତର ଧାରଣ କରିବ ବୋଲି ସମ୍ପୂର୍ଣ୍ଣରୂପେ ଆଶା କରାଯାଇପାରେ ।

ମୃତ୍ୟୁଞ୍ଜୟ ବାଣୀଭୂଷଣ ଆପଣେ ତାହାଙ୍କ ଦଶପଲ୍ଲା ଭ୍ରମଣ ବିବରଣ ୧୯୨୦ ସାଲର ମୁକୁର ଅଷ୍ଟମଭାଗ ମାଘ ଫାଲ୍‌ଗୁନ ସଂଖ୍ୟାରେ ଯାହା ପ୍ରକାଶ କରିଅଛନ୍ତି, ସେଥିର ଶେଷ ପରିଚ୍ଛେଦର ଏକ ଅଂଶ ଏହି—

"ସୁଖର କଥା ଏହି ଯେ, ଯୋରମୋ ଅଞ୍ଚଳରେ ଆମ୍ଭମାନଙ୍କ ଭକ୍ତିଭାଜନ ବୃଦ୍ଧ କବି ଫକୀରମୋହନ ସେନାପତିଙ୍କ ନାମ ଗୋଟିଏ ପାହାଡ଼ ଏବଂ ଗୋଟିଏ ବନ୍ଧରେ ଚିରସ୍ମରଣୀୟ ହୋଇ ରହିଅଛି । ଦଶପଲ୍ଲାରେ ଦେବାନ ଥିବା ସମୟରେ ଏହି ଯୋରମୋ ଘେନି ଅନୁଗୁଳ ସହିତ ଏକ ବିବାଦ ହୋଇଥିଲା । ତାଙ୍କର ଚେଷ୍ଟା ଏବଂ ଅନୁକୂଳ ମତ ବଳରେ ଏହା ନିରୁପଦ୍ରବ ହେବାରୁ ପ୍ରଜାମାନେ ଗୋଟିଏ ସୀମାନ୍ତ ଶୈଳକୁ ସେହିଦିନଠାରୁ ଅଦ୍ୟାପି ଫକୀରମୋହନ ଡୁଙ୍ଗୁରି ବୋଲି କହି ଆସୁଅଛନ୍ତି ।

ମହାନଦୀର ବନ୍ୟା ଯେଉଁ ନୁଆଣିଆ ଅଂଶରେ ଆସି ଏହି ଅଂଶକୁ ଜଳପ୍ଳାବିତ କରି ପକାଉଥିଲା, ସେହି ଅଂଶରେ କର୍ମବୀର ଫକୀରମୋହନ ପ୍ରଜାମାନଙ୍କୁ ମିଳାଇ ଗୋଟିଏ ପଥରବନ୍ଧ ନିର୍ମାଣ କରାଇବା ଦ୍ୱାରା ବଡ଼ିପାଣି ଉପଦ୍ରବରୁ ଏହାକୁ ରକ୍ଷା କରାଇଥିବାରୁ ସ୍ଥାନୀୟ ଲୋକେ ତାହାକୁ 'ଫକୀରମୋହନ ବନ୍ଧ' ବୋଲି କହିଥାନ୍ତି । ପ୍ରାଚୀନ ଭାବରେ ଏହି ସହଜ ସୁନ୍ଦର ସ୍ମୃତିରକ୍ଷା ପ୍ରସ୍ତାବ ସଭ୍ୟ ସମାଜର ଶିକ୍ଷଣୀୟ ନୁହେ କି ?"

ଦଶପଲ୍ଲା ମଧୁବନ ନିଜ ଗଡ଼ଠାରୁ ବେଲପଡ଼ା ଗ୍ରାମ ପର୍ଯ୍ୟନ୍ତ ଗୋଟିଏ ସଡ଼କ ପ୍ରସ୍ତୁତ କରାଇବା ସକାଶେ ମନସ୍ଥ କରିଥିଲି, ମାତ୍ର ବାଟ ତ ଚିରକାଳ ଅଛି, ସବୁଦିନେ ଲୋକ ଯା–ଆସ କରୁଅଛନ୍ତି— ଟଙ୍କା ଖରଚ କରି ସଡ଼କଟାଏ ତୟାରି କରି ? ତଥାପି ମୁଁ ନିବୃତ୍ତ ହେଲି ନାହିଁ । ଜେଲଖାନାର କଏଦୀମାନଙ୍କ ଦ୍ୱାରା ସଡ଼କ ତୟାର ଆରମ୍ଭ କରାଇ ଦେଲି । ବନ୍ଦୀମାନଙ୍କଠାରୁ କାର୍ଯ୍ୟ ଆଦାୟ କରି ନେବା ସହଜ କଥା ନୁହେଁ, ବିଶେଷରେ ପାଣ ବନ୍ଦୀ । ଦକ୍ଷିଣ ପଶ୍ଚିମ ଗଡ଼ଜାତ ଜେଲଖାନାରେ ପ୍ରାୟ ସମସ୍ତ ବନ୍ଦୀ ପାଣ । ସେ ସମସ୍ତ ଅଞ୍ଚଳରେ ବୁଣା ଆଉ ଓଡ଼ିଆ ଦୁଇଜାତି ପାଣ ଅଛନ୍ତି । ଚୋରି କରିବା ଓଡ଼ିଆ ପାଣମାନଙ୍କର ଏକପ୍ରକାର ଜୀବିକା । ବୁଣା ପାଣମାନେ ପ୍ରାୟ ଚୋରି କରନ୍ତି ନାହିଁ, ଲୁଗାବୁଣା ଏମାନଙ୍କର ବ୍ୟବସାୟ । ପ୍ରାତଃକାଳରୁ ବେଳ ୯ ଘଣ୍ଟା ପର୍ଯ୍ୟନ୍ତ କଏଦୀମାନଙ୍କ ସଙ୍ଗେ ସଙ୍ଗେ ଥାଇ ସଡ଼କ ତୟାରିରେ ଲାଗି ପଡ଼ିଥାଏଁ । ପ୍ରାୟ ଅର୍ଦ୍ଧମାଇଲ ଦୂର ପର୍ଯ୍ୟନ୍ତ ସଡ଼କ ତୟାର ହୋଇଅଛି, ଏମନ୍ତ ସମୟରେ ରାଜାସାହେବଙ୍କର ଗୋଟିଏ ପୁତ୍ର ଜାତ ହେବାରୁ ବନ୍ଦୀମାନେ ମୁକ୍ତିଲାଭ କରି ଆପଣା ଆପଣା ଘରକୁ ଚାଲିଗଲେ, ସୁତରାଂ ସଡ଼କ ତୟାରି କାର୍ଯ୍ୟ ଶେଷ ହୋଇଗଲା ।

ସରକାର ବାହାଦୁରଙ୍କର ପ୍ରତ୍ୟକ୍ଷ ଭାବରେ ହସ୍ତକ୍ଷେପ କରିବା ପୂର୍ବେ ଅନ୍ୟାନ୍ୟ ବିଭାଗ ପରି ଜେଲ ବିଭାଗର କାର୍ଯ୍ୟ ପ୍ରଣାଳୀ ମଧ୍ୟ ନିତାନ୍ତ ଶିଥିଳ ଏବଂ ବିଶୃଙ୍ଖଳ ଥିଲା । ବନ୍ଦୀମାନଙ୍କ ଝିଅ ପୁଅ ବାପ କମ୍ବା କିଛି ଜାତିଆଣି କାର୍ଯ୍ୟ ପଡ଼ିଲେ ଛୁଟି ନେଇ ଘରକୁ ଯାନ୍ତି । କାର୍ଯ୍ୟ ସମାପ୍ତି ପରେ ଆପେ ଆପେ ଆସି ଜେଲରେ ଉପସ୍ଥିତ ହୋଇଯାନ୍ତି । ପୁଣି ଜେଲ ରକ୍ଷକମାନଙ୍କର ଗୁଡ଼ିଏ ଚହ୍ନିତ ବନ୍ଦୀ ଥାନ୍ତି; ସନ୍ଧ୍ୟା ଉତ୍ତାରେ ଜେଲ ରକ୍ଷକ ସେହି କଏଦୀମାନଙ୍କୁ ଛାଡ଼ି ଦିଅନ୍ତି । ସମସ୍ତ ବନ୍ଦୀଙ୍କୁ ପରଦିନ ପ୍ରାତଃକାଳରେ ଆପଣା ଆପଣା ସ୍ଥାନରେ ଶୋଇଥିବାର ଦେଖାଯାଏ । କଏଦୀମାନଙ୍କ ରାତି ଉପାର୍ଜିତ ଚୋରା ଦ୍ରବ୍ୟ ଜେଲରକ୍ଷକ ଏବଂ ଚୋରମାନଙ୍କ ମଧ୍ୟରେ ସମାନ ଭାବରେ ବାଣ୍ଟ ହୁଏ ।

ଆହାର ପରିଧେୟ କଥୋପକଥନ ଆମୋଦ ପ୍ରମୋଦ, ଅନ୍ୟାନ୍ୟ ସମସ୍ତ ବିଷୟରେ ରାଜାସାହେବଙ୍କ ଆଚରଣ ଅତ୍ୟନ୍ତ ଅଦ୍ଭୁତ ଏବଂ ଅମାନୁଷିକ ଥିଲା । ରାଜାସାହେବ ମଧ୍ୟ ପ୍ରତ୍ୟେକ ବିଷୟରେ ସର୍ବଦା କହନ୍ତି, 'ଆମ ଗୁମ୍ମୁ କଣ ଆଉ ମଣିଷ ପରି ଗୋଟିଏ ? ଆମ ଗୁମ୍ମୁ ରାଜା—ମାଜିଷ୍ଟର, ଯାହା ଆଜ୍ଞା କରିବୁଁ ସେହି କଥା ଠିକ୍ । ରାଜାସାହେବଙ୍କ ଗନ୍ଧା ଖଦି ଓସାର ଚାରିହାତ, ଲମ୍ବ ପନ୍ଦର ଷୋଳ ହାତ । ଶ୍ରୀ ଗୁମ୍ମୁଙ୍କ ପନ୍ଦ୍ରି ବିଜେ ବେଳେ ଗୋଟାଏ ଭଣ୍ଡାରି କୁଞ୍ଚ ଧରି ପଛରେ ଚାଲେ । ଗଞ୍ଜାମ ବ୍ରହ୍ମପୁରରେ ବିନ୍ଧାଣୀ ରହି ନାମରେ ଜଣେ ତନ୍ତି ଥିଲା, ଶ୍ରୀଗୁମ୍ମୁଙ୍କ ଲାଗି ଲୁଗା ଆଣି ଦିଏ । ଶ୍ରୀ ଗୁମ୍ମୁଙ୍କ ଚପକନ ତିଆରିରେ ଯେତେ ଓସାର ହେଉ ପଛକେ ଦଶ ବାରଗଜ କପଡ଼ା ଲାଗେ । ସେ ବିଚିତ୍ର ଚପକନର ଆକାର ବର୍ଣ୍ଣନାତୀତ । ଦର୍ଜି କାକୁତି ଓଜର କଲେ ଆଜ୍ଞା ହୁଏ,—"ଆରେ କଟକ ବାବୁଗୁଡ଼ାକ କଙ୍ଗାଳ, ଲୁଗା କିଣିବାକୁ ଟଙ୍କା ନାହିଁ । ଦେଖିଛୁ—ଦେଖିଛୁ—ଗୁଣ୍ଡିରେ କେମନ୍ତ କପଡ଼ା ଟାଣି ହୋଇ ଭିଡ଼ ହୋଇ ଯାଇଥାଏ । ଦେ—ଦେ—ଆଉ ଚାରିଗଜ କପଡ଼ା ଦେଇ ପିଠି ଗୁଣ୍ଡି ଢିଲା କରି ଦେ ।"

ଶ୍ରୀ ଗୁମ୍ମୁଙ୍କ ମନୋହର ଯୋଗ୍ୟ ବ୍ୟଞ୍ଜନ ଖୁବ୍ ବଡ଼ ବଡ଼ କେତେ ଫଡ଼ା ଆମ୍ବୁଲ ସହିତ ପନ୍ଦର କୋଡ଼ିଏ ଦିନର ପଚା ଦହି ଆଉ ଅଞ୍ଜୁଳାଏ ଧାନୁଆ ଲଙ୍କା ମରିଚ ଏକତ୍ର ପାକ । ବଡ଼ ବଡ଼ ଲଙ୍କା ମରିଚର ରାଗ ନ ଥାଏ । ପନ୍ଦର ଦିନର ପଚା ପୋକପଡ଼ା ଶୁଖୁଆ କମ୍ପା ମାଂସ ପାକ । ଖନାଘରେ ଅବଶ୍ୟ ଅନ୍ୟାନ୍ୟ ଦ୍ରବ୍ୟ ପାକ ହୁଏ, କିନ୍ତୁ ଉପରୋକ୍ତ ଦୁଇଗୋଟି ବ୍ୟଞ୍ଜନ ଗୁମ୍ମୁଙ୍କ ମନୋହର ସକାଶେ ଯୋଗ୍ୟ ଦ୍ରବ୍ୟ । ସବୁଥିରେ କିନ୍ତୁ ଯଥେଷ୍ଟ ପରିମାଣରେ ଘିଅ ଦିଆଯିବା ଦରକାର । କୋବି ମଟର ସାଲଗମ ଏବଂ ମୂଳା ପ୍ରଭୃତି ପରିବାର ନାମ ଦଶପଲ୍ଲାରେ କେହି ଶୁଣି ନ ଥିଲେ । ମୁଁ ପ୍ରଥମେ ସେହି କଲ୍ଲା ଇଲାକାରେ ଏହି ଚାଷ ଆରମ୍ଭ କରିଥିଲି । ଅନେକ ଚେଷ୍ଟା ଅନୁରୋଧ କରି ମଧ୍ୟ ରାଜାସାହେବଙ୍କୁ ଏ ସମସ୍ତ ଦ୍ରବ୍ୟ ଖୁଆଇ ପାରିଲି ନାହିଁ । ଥରେ କି ଦୁଇଥର ମାତ୍ର ରାଜାଙ୍କ ଖଦାରେ ରନ୍ଧା ହୋଇଥିଲା । ଶ୍ରୀ ମଣିମାଙ୍କ ଗୁମ୍ଫୁ ଥରେ ମାତ୍ର ଶ୍ରୀମୁଖରେ ସ୍ପର୍ଶ ଆଜ୍ଞା କରି ଫୋପାଡ଼ି ଦେଲେ । ଅନେକ ଗୁଡ଼ିଏ କୋବି ଚାଷ କରିଥିଲି । ପ୍ରଜା ଏବଂ ପଧାନମାନେ କୋବିର ଆସ୍ୱାଦନ ପାଇଲେ ସେମାନେ ସେହି ପଦାର୍ଥର ଚାଷ କରିବାରେ ପ୍ରବୃତ୍ତ ହେବେ, ଏହି ଉଦ୍ଦେଶ୍ୟରେ ମୁଁ ସେମାନଙ୍କୁ ଯାଚି ଯାଚି ବଡ଼ ବଡ଼ ବନ୍ଧା କୋବି ଦିଏଁ । ପଚାରେଁ—'କୋବି କପରି ଲାଗିଲା ?' 'ଉତ୍ତର ପାଏଁ—'ଆଜ୍ଞା ! ଆଜ୍ଞା—ଆଁ ; ମାତ୍ର ସେମାନେ ଅନିଚ୍ଛାରେ କୋବି ନେଉଥିବାର ଦେଖେଁ । ଦିନେ ଦଶପଲ୍ଲା ଇଲାକା ଖଣ୍ଡପଡ଼ା ନାମକ ଗ୍ରାମର ପଧାନ ସଭୟରେ ହାତ ଯୋଡ଼ି ସାହସ ପୂର୍ବକ କହିଲା, "ଆଜ୍ଞା ! ଆମ୍ଭମାନଙ୍କୁ ଏ ପଦାର୍ଥଗୁଡ଼ାକ ଦେବା ହେବେ ନାହିଁ । ଯେତେ ପ୍ରକାରେ ରାନ୍ଧିଲୁଁ, ଭଲ ଲାଗିଲା ନାହିଁ । କାଲି ଖୁବ୍ ଆମ୍ବୁଲ ପକାଇ ରନ୍ଧାଇଲି, ତେବେ ବି ତାହାର ହାଁ—ଇଁ—ଘୁଁ ଗନ୍ଧ ମଲା ନାହିଁ ।" ଅନେକଗୁଡ଼ିଏ କୋବି କରିଥିଲି, ଅଧିକାଂଶ ଗୋରୁ ଖାଇଲେ ।

ରାମନବମୀ କି ଦୋଳ ମୋ ମନରେ ପଡ଼ୁ ନାହିଁ । ପର୍ବ ଉପଲକ୍ଷରେ ଖୁବ୍ ସମାରୋହ ଉପସ୍ଥିତ । କଲ୍ଲାର ସମସ୍ତ ପଧାନ ଓ ଅନେକ ପ୍ରଜା ଏକତ୍ରିତ । ଗଞ୍ଜାମ, ବ୍ରହ୍ମପୁର, କଟକ ଏବଂ ଅନ୍ୟାନ୍ୟ ଗଡ଼ଜାତ ଅଞ୍ଚଳରୁ ବାଈ, ଗୋଟିପୁଅ, ରାମଲୀଳା, ପାଲା ଗାଆଣ ପ୍ରଭୃତି ଦଶ ପନ୍ଦର ଦଳ ଉପସ୍ଥିତ । ପ୍ରତିବର୍ଷ ସେମାନଙ୍କର ଆସିବାର ମାମୁଲି ଥିଲା । ସନ୍ଧ୍ୟା ଉତ୍ତାରେ ଶ୍ରୀଗୁମ୍ମୁ ନଅର ବାହାରେ ଦୋଳ ମଣ୍ଡପକୁ ବିଜେ ହେଲେ । ମଣ୍ଡପ ଉପରେ ଖରଡ଼ି, ବଡ଼ ବଡ଼ ମାଣ୍ଡିପଡ଼ି ଶ୍ରୀଗୁମ୍ମୁଙ୍କ ବିଜେ ସକାଶେ ସିଂହାସନ ପ୍ରସ୍ତୁତ ହୋଇଥିଲା ।

ସିଂହାସନରେ ବସିଲେ ଉତ୍ତାରେ ଶ୍ରୀମସ୍ତକରେ ପାଗ ଲଗି, ଶ୍ରୀଅଙ୍ଗରେ ଅଳଙ୍କାର ଲଗି କାର୍ଯ୍ୟ ଆରମ୍ଭ ହେଲା । ନାନା ରଙ୍ଗର ରତ୍ନ ଜଡ଼ାଉ ଖୁବ୍ ଭରି ସୁନା ଅଳଙ୍କାର ବୋଝେ ଲଗି ହେବାକୁ ଅଧଘଣ୍ଟାଏ କାଳ ବିତିଗଲା । ସେହି ସମୟରେ ହିଡ଼ାଳିଆ ପୁଞ୍ଜାଏ ଅର୍ଥାତ୍ ଆଠଗୋଟା ମଶାଲ ଜଳୁଥାଏ । ବାଳକମାନଙ୍କ ପ୍ରତି ବାରମ୍ବାର ଆଜ୍ଞା ହେଉଅଛି—"ଆରେ ମଶାଲରେ ତେଲ ପକାଇ ଦେ, ଭଲ ଆଲୁଅ ହେଉ । ଆମ୍ଭ ପ୍ରଭୁ ଶ୍ରୀଅଙ୍ଗ ଲଗି ଅଳଙ୍କାର ଲୋକେ ଦେଖନ୍ତୁ ।" ଭଣ୍ଡାରିଗୁଡ଼ାକ ଖୁବ୍ ପାଖେଇ ମଶାଲ ଧରିଥାନ୍ତି, ତଥାପି ପୁନଃ ପୁନଃ ଆଜ୍ଞା—ମଶାଲ ପାଖେଇ ଧର, ପାଖେଇ ଧର । ଏଣେ ମଶାଲଚିମାନେ ଡରି ମରୁଅଛନ୍ତି, କାଳେ ଜ୍ୱଳନ୍ତ ମଶାଲ ଶ୍ରୀମଣିମାଙ୍କ ଶ୍ରୀମୁଖରେ ଲାଗିଯିବ । ଅଳଙ୍କାର ଲଗି ଉତ୍ତାରେ ନିକଟରେ ଉପସ୍ଥିତ ଲୋକମାନଙ୍କୁ ପଚରାଗଲା—"ଆମ ପ୍ରଭୁ ଖୁବ୍ ସୁନ୍ଦର ଦିଶୁଛନ୍ତି କି ନାହିଁ ?" ପ୍ରକୃତ କଥା, ରାଜା ସେ ସମୟରେ ପୁରାଣ ବର୍ଣ୍ଣିତ ସିଂହାସନସ୍ଥ ରାଜା ପରି ଦିଶୁଥାନ୍ତି । ସେହିପରି ସୁନ୍ଦର ସୁଗଠିତ ବିଶାଳ ଶରୀର— ବ୍ୟୂଢୋରସ୍କ— ବୃଷସ୍କନ୍ଧ— ଶାଳପ୍ରାଂଶୁ — ମହାଭୁଜ । ତହିଁ ଉତ୍ତାରେ ସଙ୍ଗୀତ ଆରମ୍ଭ—ଯେତେ-ପ୍ରକାର ସଙ୍ଗୀତକାର ଉପସ୍ଥିତ ଥିଲେ, ସମସ୍ତଙ୍କ ବାଦ୍ୟକ ଅର୍ଥାତ୍ ସାରଙ୍ଗ, ବାଦ୍ୟା, ମୃଦଙ୍ଗ, ପଖୋଉଜ, ବେହେଲା, ମନ୍ଦିରା, କରତାଳ ପ୍ରଭୃତି ବାଦ୍ୟଯନ୍ତ୍ର ଧାରିମାନେ ବୃତ୍ତାକାରରେ ଛିଡ଼ା ହୋଇ ଯାହାର ଯାହା ଇଚ୍ଛା ଏକ ସମୟରେ ବଜାଇବାକୁ ଲାଗିଲେ । ଗୋଟିପୁଅ, ଲୀଳା ପିଲା, ନର୍ତ୍ତକୀ, ପାଲବାଲାମାନେ ଧାନ ବେଙ୍ଗଲା ବଳଦମାନଙ୍କ ପରି ବୁଲି ବୁଲି ନାଚି ନାଚି ଗାୟନ କରୁଥାନ୍ତି । ସେ ଯେ କି ପ୍ରକାର ଅଭିନୟ, ଯେଉଁମାନେ ଦେଖିଅଛନ୍ତି, ସେହିମାନେ ଏକା ସଙ୍ଗୀତ ରସାସ୍ୱାଦ ଗ୍ରହଣ କରିଅଛନ୍ତି—ଅନ୍ୟ ଲୋକଙ୍କୁ ବୁଝାଇ ଦେବାକୁ ମୁଁ ନିତାନ୍ତ ଅକ୍ଷମ ।

ସମସ୍ତ ସମୟରେ ବ୍ରହ୍ମପୁରର ନର୍ତ୍ତକୀଦଳ ଆପଣା ଆପଣା ଶିକ୍ଷା ନୈପୁଣ୍ୟ ଦେଖାଇ ଅର୍ଥୋପାର୍ଜନ ଆଶାରେ ଦଶପଲ୍ଲା ଶ୍ରୀମଣିମାଙ୍କ ସମୀପକୁ ଆସନ୍ତି । ସେଗୁଡ଼ିକ ଯୁବତୀ—ସାଳଙ୍କାରା—ଅବଶ୍ୟ ଆପଣା ଆପଣା ବ୍ୟବସାୟ ଅର୍ଥାତ୍ ସଙ୍ଗୀତ କରିବାରେ ଶିକ୍ଷିତା; ମାତ୍ର ଗୋଟିଏ ଦୋଷ ଯୋଗୁଁ ସବୁ ଗୁଣ ବୃଥା ହୋଇଯାଏ; ଅର୍ଥାତ୍ ସେଗୁଡ଼ିକ ମୋଟା ଲୁହନ୍ତି, ସୁତରାଂ ଅସୁନ୍ଦରୀ, ସଙ୍ଗୀତ ବିଦ୍ୟାରେ ଅନିପୁଣା; ସେମାନଙ୍କ ସଙ୍ଗିନୀ ଦାସୀଟା କାଳୀ କୁତ୍ସିତା ବୁଢ଼ୀ ହେଉ, ନାଚି ଗାଇ ନ ଜାଣୁ ପଛକେ, ଯଦି ମୋଟି ହୋଇଥାଏ, ସେହିଟା ଶ୍ରୀମଣିମାଙ୍କ ଦରବାରରେ ଉଆଁ ଡେଇଁ କରି ଭୁକ୍ତାଟାରେ ପାଟି କଲେ ମଧ୍ଯ ପୁରସ୍କାର ପ୍ରାପ୍ତିର ଯୋଗ୍ୟ ହୁଏ ।

ମୋହର ଦଶପଲ୍ଲା ଯିବା ପୂର୍ବରୁ ଅନ୍ୟ ଦୁଇଜଣ ଦେବାନ ଯାଇଥିଲେ । ସେମାନଙ୍କ ସହିତ ରାଜାଙ୍କର ଅପଡ଼ ହେବାରୁ ସେମାନଙ୍କୁ ଅନ୍ୟତ୍ର ବଦଳ କରା-ଯାଇଥିଲା । ଦଶପଲ୍ଲା ଯିବା ସମୟରେ ନନ୍ଦକିଶୋର ବାବୁଙ୍କୁ କହିଲି, "ସେହି ଦେବାନ ବାବୁମାନଙ୍କ ସହିତ ରାଜାଙ୍କର ମନ ମିଳିଲା ନାହିଁ, ମାତ୍ର ମୁଁ ରାଜାଙ୍କୁ ପଟାଇ ଦେବି ।" ନନ୍ଦକିଶୋର ବାବୁଙ୍କ ଲୋକଚରିତ୍ର ଭଲ ଜଣା । ସେ ହସି ହସି କହିଲେ, "ଆଚ୍ଛା ଭଲ କଥା, ଆଗେ ଦଶପଲ୍ଲାକୁ ଯାଅ ତ ?" ନନ୍ଦକିଶୋର ବାବୁ ଯେପରି ଭାବରେ ହସି ହସି କଥା କହିଲେ, ସେଥିରୁ ମୁଁ ଜାଣିଲି, ତାଙ୍କର ବିଶ୍ୱାସ, ମୁଁ ପାରିବି ନାହିଁ । ମୁଁ ମଧ୍ଯ ହସି ହସି ମନେ କଲି, ଆଚ୍ଛା ଆପଣଙ୍କୁ ଦେଖାଇ ଦେବି ।

ଏଣିକି ସତରଚର ରାଜା ସାହେବଙ୍କ ସହିତ ମତାନ୍ତର ଘଟିବାକୁ ଲାଗିଲା । ରାଜାସାହେବଙ୍କର ବିଶ୍ୱାସ, ମୋ ମତ ଅନୁସାରେ କାର୍ଯ୍ୟ କରିବା କିବା ମୋ ପ୍ରସ୍ତାବରେ ସମ୍ମତି ଦେବା ତାହାଙ୍କ ପକ୍ଷରେ

ଅଗୌରବର ବିଷୟ । ସବୁବେଳେ ଲୋକମାନଙ୍କୁ କହନ୍ତି—"ଦେଖ, ଆମ ହୁଜୁର ରାଜା—ଦେବାନର କିଛି କଥା କେବେହେଁ ଶୁଣିବୁ ନାହିଁ ।"

ରାଜାସାହେବଙ୍କ ସହିତ ମୋହର କ୍ରମଶଃ ମତାନ୍ତର ଓ ମନାନ୍ତର ଘଟିବାକୁ ଲାଗିଲା । ଏପରି କେତୋଟି ଘଟନାର ସଂକ୍ଷିପ୍ତ ବିବରଣ ଏହି —

ରାଜାସାହେବଙ୍କର ଅଭ୍ୟାସ, ଯେ କୌଣସି ଶ୍ରେଣୀର ହେଉ ବିଦେଶୀ ଭଦ୍ରଲୋକ ରାଜାଙ୍କ ନିକଟରେ ଉପସ୍ଥିତ ହେବା ମାତ୍ରକେ ରାଜାସାହେବ ଖୁବ୍ ପାଟିକରି କହନ୍ତି—"ଆରେ ଗନ୍ତାଘରିଆ, ଏହି ବାବୁଙ୍କୁ ଆମ ହୁଜୁର ଗନ୍ତାଘର ଦେଖାଇ ଆଣ ।" ଗନ୍ତାଘରିଆ ଆଗନ୍ତୁକ ଲୋକଙ୍କୁ ନେଇ ଗନ୍ତାଘରରେ ଥିବା ପାଟଲୁଗା, ସୁନା, ରୂପା ସମସ୍ତ ଗୋଟି ଗୋଟି କରି ଦେଖାଇ ଆଣେ । ରାଜାସାହେବ ପଚାରନ୍ତି—"ହୋଇହେ ବାବୁ ! ଏତେ ପାଟ ଯଥା, ଏତେ ସୁନାରୂପା ଆଉ କାହାରି ଘରେ ଅଛି କି ? ନାହିଁ ଲୋ ବାପା ନାହିଁ । ଆମ ହୁଜୁର ରାଜା—ଆମ ଘରେ ସିନା ଥିବ, ଆଉ କାହାଘରେ ଥିବ ?" ରାଜାଙ୍କ ପ୍ରକୃତି ସମସ୍ତଙ୍କୁ ଜଣା—ଆଗନ୍ତୁକ କୌଣସି କାର୍ଯ୍ୟ ଉପଲକ୍ଷରେ ଆସିଥାଏ । ରାଜାଙ୍କ କଥା ଅସ୍ୱୀକାର କଲେ କାର୍ଯ୍ୟ ତ ପାଇବ ନାହିଁ, ଅଧିକନ୍ତୁ ବାଡ଼ିଆ ଖାଇ ତଡ଼ାଯିବ । ଆଗନ୍ତୁକ ବୋଲେ—"ଆଜ୍ଞା ! ଆଜ୍ଞା ! ଶ୍ରୀହୁଜୁର ରାଜା—ଶ୍ରୀହୁଜୁରଙ୍କ ଗନ୍ତାଘରେ ସିନା ସବୁ ସମ୍ପତ୍ତି ଥିବ, ଆଉ କାହାଘରେ ଏତେ ରହିବ ?"

ଏ ସମସ୍ତ କଥା ଦେଖି ଶୁଣି ମୋ ମନରେ ଲଜ୍ଜା ଏବଂ କଷ୍ଟ ବୋଧହୁଏ । ଖୁବ୍ ଧୀରେ ଧୀରେ ନିମ୍ନ ସ୍ୱରରେ ରାଜାଙ୍କୁ କହେଁ—"ଆଜ୍ଞା ! ବିଦେଶୀ ଲୋକ ଗୁଡ଼ାଙ୍କୁ ଗନ୍ତାଘର ଦେଖାଇବେ ନାହିଁ । ସହର ଜାଗା ମାନଙ୍କରେ ଅନେକ ମୂର୍ଖ, ବିଧବା ଆଉ ସାଧାରଣ ଲୋକମାନଙ୍କ ଘରେ ମଧ୍ୟ ଆପଣଙ୍କ ଗନ୍ତାଘର ଦ୍ରବ୍ୟଠାରୁ ଢେର ଢେର ପରିମାଣରେ ସୁନା, ରୂପା ଓ ଲୁଗା ଅଛି । ସେଉଁ ସମସ୍ତ ଲୋକମାନେ ଆପଣଙ୍କ ଗନ୍ତାଘରେ ଅଳ୍ପ ଜିନିଷ ଦେଖି ଯାଉଅଛନ୍ତି, ସେମାନେ ପଛରେ ହସିବେ, ଥଟ୍ଟା କରିବେ ।"

ମୋ କଥା ଶୁଣି ରାଜାସାହେବ ରାଗରେ ଗମ୍ଭୀର ଭାବରେ ବସି ରହନ୍ତି, ମୁଁ ବାହାରି ଆସିଲେ ପାଖଲୋକମାନଙ୍କୁ କହନ୍ତି—"ଶୁଣିଲ ତ, ଶୁଣିଲ ତ— ଦେବାନ ଆମ୍ଭ ହୁଜୁରଙ୍କୁ କେମନ୍ତ ଅପମାନ କରିଗଲା ।" ଏ ଦେବାନ ସଙ୍ଗରେ ଆମ୍ଭ ହୁଜୁରଙ୍କର ପଟିବ ନାହିଁ । ଅମଲା ପାଞ୍ଜିଆମାନେ କଥା ବୁଝନ୍ତି, ମାତ୍ର ଉପରେ କହନ୍ତି—"ଆଜ୍ଞା ! ଆଜ୍ଞା ! ଶ୍ରୀହୁଜୁରୁ ଯେଉଁ ଆଜ୍ଞା ହେଉଛି, ତାହା ସତ ନୁହେଁ ତ କଣ ? ଦେବାନ ବାବୁଟା ଭଲ ଲୋକ ନୁହେଁ ।"

ଦିନେ ରାଜାସାହେବଙ୍କ ସହିତ ମୋହର ମନାନ୍ତରର ଭାରି ଗୋଟାଏ ବଡ଼ କାରଣ ଉପସ୍ଥିତ ହେଲା । ପୂର୍ବେ ଅନେକ ଭ୍ରମଣକାରୀ ନାଗା ସାଧୁ ଜମାତ ଓଡ଼ିଶାକୁ ଆସୁଥିଲେ । ଦେବପୂଜା ବାହାନାରେ ମଫସଲ ଗ୍ରାମମାନଙ୍କରୁ ଅର୍ଥ ଲୁଣ୍ଠନ କରିବା ଏମାନଙ୍କର ବ୍ୟବସାୟ । ଅନୁସନ୍ଧାନ କରି ସେହି ଜମାତ ମାନଙ୍କ ଆଭ୍ୟନ୍ତରିକ ବିଷୟ ମୁଁ ବୁଝିଅଛି । ଅନେକ ଛୋଟ ଜାତି ଲୋକ, ଚୋର, ଡକାଇତ ମଧ୍ୟ ଫାଉଣ୍ଡି ବୋଲହୋଇ ସାଧୁସାଜି ସେହି ଜମାତ ଦଳରେ ମିଶିଥାନ୍ତି । ମଫସଲ ଗ୍ରାମବାସୀ ଲୋକମାନେ ସେମାନଙ୍କ ଠାକୁର ପୂଜା ସାଧୁସେବା ସକାଶେ ଯଥେଷ୍ଟ ଟଙ୍କା ନ ଦେଲେ ଲୋକମାନଙ୍କ ଘରର ଖୁଣ୍ଟ କବାଟ ଓପାଡ଼ି ଆଣି ଧୂନିରେ ଜାଳି ଦିଅନ୍ତି ।

ଦଶପଲ୍ଲାର କୌଣସି ଗୋଟିଏ ମଫସଲ ଗ୍ରାମରେ ଜମାତ ସାଧୁଦଳ ଉପସ୍ଥିତ ହେଲେ । ସେ ଗ୍ରାମରେ

ଗୋଟିଏ ଧନବନ୍ତ ଗଉଡ଼ ଥିଲା । ସେ ସାଧୁସେବା ସକାଶେ ଯଥେଷ୍ଟ ଟଙ୍କା ନ ଦେବାରୁ ଦୁଇ ଜଣ ସାଧୁ ତା ଘର ଭିତରେ ପଶି ଖୁମ୍ବ ଏବଂ କବାଟ ସବୁ ଭାଙ୍ଗିବାକୁ ଲାଗିଲେ । ଗଉଡ଼ ସେହି ସାଧୁ ଯୋଡ଼ାଙ୍କୁ ଧରି ଖୁବ୍ ବାଡ଼େଇବାରୁ ସେମାନେ ଆସି ରାଜା ସାହେବଙ୍କଠାରେ ନାଲିସ କଲେ । ସେହି ଗଉଡ଼ର ଗୋରୁ ମଇଁଷି ଚଳ ଏବଂ ତାହାଠାରେ ଅନେକ ଟଙ୍କା ଥିବା ବିଷୟ ପାଖ ଲୋକମାନେ ଜଣାଇ ଦେବାରୁ ଶ୍ରୀମୁଖରୁ ଆଜ୍ଞା ହେଲା—"ଏଁ—ଏଁ କ'ଣ କ'ଣ? ଗଉଡ଼ ବାପୁଡ଼ା ସାଧୁମାନଙ୍କୁ ବାଡ଼େଇଲା ? ପୋଲିସ ଦାରୋଗା ପ୍ରତି ହୁକୁମ ହେଲା – ଯାଅ,ଗଉଡ଼ର,ଗୋରୁ, ମଇଁଷି, ତାହାଠାରୁ ସମସ୍ତ ସମ୍ପତ୍ତି ବାନ୍ଧି ଆଣ ।" ସେହିପରି ଜଣେ ପୋଲିସ ଦାରୋଗା ସେ ସମୟରେ ରାଜାଙ୍କ କଚେରିରେ ନିଯୁକ୍ତ ଥିଲା । ତାହା ପକ୍ଷରେ ଏଇଟା ହେଲା ଲାଭର ମୁକାମ । ଘର କୋରଖରେ ତାହାର ପକେଟ ପୂର୍ତ୍ତି ହେବାର ସମ୍ଭାବନା । ସେ ପାଇକ ସଂଗ୍ରହ କରିବା ସମୟରେ ଗଉଡ଼ ଧାଇଁ ଆସି ବକଲରେ ମୋ ପାଖରେ ଭୂଇଁରେ ପଡ଼ି ଗଡ଼ିବାକୁ ଲାଗିଲା । ମୁଁ କଚେରିରେ ଉପସ୍ଥିତ ହୋଇ ମାଲ କୋରଖ ହୁକୁମ ବନ୍ଦ କରାଇ ଦେଲି । ପୋଲିସ ଦାରୋଗା ମୋ ସାକ୍ଷାତରେ ରାଜାଙ୍କୁ ବୁଝାଇଲା—ଏପରି ଅପମାନ ପାଇଲେ ସାଧୁ ଜମାତ ଦଳ ଏ କିଲ୍ଲାକୁ ଆସିବେ ନାହିଁ; ରାଜ୍ୟରୁ ଧର୍ମ ଛାଡ଼ିଯିବ । ମୁଁ ଧମକାଇ ତାହାକୁ ଚୁପ କରାଇଲି । ମାଡ଼ ଖାଇଥିବା ଗୁହାରିଆ ସାଧୁ ଯୋଡ଼ାକ ଛିଡ଼ା ହୋଇଥିଲେ । ସେମାନଙ୍କୁ କହିଲି, "ଏହିକ୍ଷଣି କିଲ୍ଲାରୁ ବାହାରି ଅନ୍ୟତ୍ର ଚାଲି ନ ଗଲେ ତୁମ୍ଭମାନଙ୍କୁ ଜେଲ ଦେବ ।" ମୋ କଥା ଶୁଣି ସେମାନେ ତତ୍‌କ୍ଷଣାତ୍ ପଳାଇ ଗଲେ । ଏହିପରି ରାଜା ସାହେବଙ୍କ ସହିତ ମନାନ୍ତର କ୍ରମଶଃ ବଢ଼ିବାକୁ ଲାଗିଲା ।

ସୁପରିଣ୍ଟେଣ୍ଡେଣ୍ଟ ମେଟ୍‌କାଫ ସାହେବ ଦଶପଲ୍ଲା କିଲ୍ଲାର କାର୍ଯ୍ୟ ତଦାରଖ କରିବାକୁ ଆସିବେ । ମଫସଲ ଗସ୍ତ କରି ମାହାଲ ମୁକାମ ଅଫିସରୁ ଚିଠି ପାଇ ତାହାଙ୍କୁ ପାଛୋଟି ଆଣିବା ସକାଶେ ଦଶପଲ୍ଲା ସୀମାନ୍ତ କୁଲୁରକୁମ୍ପା ନାମକ ଗ୍ରାମ ପର୍ଯ୍ୟନ୍ତ ଗଲି । ଏକା ସଙ୍ଗରେ ଗଡ଼ ମୁକାମକୁ ଆସିଲୁଁ । ଗଡ଼ ମୁକାମରେ ସାହେବ ମହୋଦୟ ଗୋଟି ଗୋଟି କରି ସମସ୍ତ ବିଭାଗ ତଦାରଖ କଲେ । ଶେଷ ଦିନରେ ରାଜା ସାହେବଙ୍କୁ କହିଲେ,"ଏ ଦେବାନଙ୍କ ସହିତ ଆମ୍ଭର ପଟିବ ନାହିଁ । ଆମ୍ଭଙ୍କୁ ଆଉ ଜଣେ ଦେବାନ ଦେଉନ୍ତୁ ।" ମୁଁ ସାହେବଙ୍କୁ ପଚାରିଲି, "ଆପଣ ମୋ କାର୍ଯ୍ୟରେ କି ଦୋଷ ଦେଖିଲେ ?" ସାହେବ କହିଲେ—"ଆମ୍ଭେ ତ କିଛି ଦେଖି ନାହୁଁ । ରାଜାଙ୍କୁ ପଚାରିଲୁଁ, ସେ ମଧ୍ୟ କିଛି ଦୋଷ ଦେଉ ନାହାନ୍ତି । ତେବେ ରାଜାଙ୍କ ସହିତ ଯେତେବେଳେ ମନାନ୍ତର, ସେଥିରେ ତୁମ୍ଭେ ଏଠାରେ କିପରି କାର୍ଯ୍ୟ କରିବାକୁ ସମର୍ଥ ହେବ ?" ସାହେବ ମହୋଦୟ ମତେ ମୟୂରଭଞ୍ଜ ଇଲାକା ବାମୁଣ ଘାଟି ସବ୍‌ଡିଭିଜନରେ ନିଯୁକ୍ତ କରି, କମିସନର କଚେରିର ଜଣେ କିରାଣୀକୁ ଦଶପଲା ଦେବାନ ପଦରେ ନିଯୁକ୍ତ କଲେ ।

ମୁଁ ନୂତନ ଦେବାନ ହାତରେ ଚାର୍ଜ ଦେଇ କଟକ ଚାଲି ଆସିଲି । ବାଲେଶ୍ୱର ଠାରୁ ଅପେକ୍ଷାକୃତ ନିକଟବର୍ତ୍ତୀ ସ୍ଥାନରେ ଚାକିରୀ ହେଲା—ମନ ଖୁବ୍ ଆନନ୍ଦିତ, ମାତ୍ର କଟକରେ ଉପସ୍ଥିତ ହେବା ମାତ୍ରକେ ଆ. ସୁ. ନନ୍ଦକିଶୋର ବାବୁ ମୋତେ କହିଲେ, "ଖୋଦ ଗବର୍ଣ୍ଣମେଣ୍ଟ ସ୍ୱର୍ଗୀୟ କୃଷ୍ଣଚନ୍ଦ୍ର ଦେଓଙ୍କ କନିଷ୍ଠ ଭ୍ରାତା ଗ୍ରେଟରାୟ ବାବୁଙ୍କୁ ବାମୁଣ ଘାଟିରେ ନିଯୁକ୍ତ କଲେଣି ।" ସୁତରାଂ କର୍ମଶୂନ୍ୟ ହୋଇ ମୋତେ କଟକରେ ବସି ରହିବାକୁ ପଡ଼ିଲା ।

(ଉ. ସା. ୧୪ଶ ଭାଗ—୭ମ ସଂଖ୍ୟା)

———

୨୮

## ପାଲଲହଡ଼ାରେ ଦେବାନୀ

କିଛିଦିନ ପୂର୍ବେ ପାଲଲହଡ଼ାର ପ୍ରଜାମାନେ ଛତ୍ରତ୍ୟ ରାଜା ସାହେବଙ୍କ ବିପକ୍ଷରେ ମେଳ କରି ଥିବାରୁ ପ୍ରଧାନ ପ୍ରଧାନ ମେଳିଆମାନେ ଧରାଯାଇ ଦଣ୍ଡପ୍ରାପ୍ତ ହୋଇଥିଲେ । ଆଉ କେହି କେହି ମେଳିଆ ସର୍ଦ୍ଦାର ଲୁଚି ରହିଥିଲେ । ପୁନର୍ବାର କେହି ମେଳ ଆରମ୍ଭ କଲେ ସେମାନଙ୍କୁ ଧରି ବିଚାର ପୂର୍ବକ ଦଣ୍ଡଦେବା ସକାଶେ ସୁପରିଣ୍ଟେଣ୍ଡେଣ୍ଟ ସାହେବ ମୋତେ ପ୍ରଥମ ଶ୍ରେଣୀର ମାଜିଷ୍ଟ୍ରେଟ କ୍ଷମତା ଦେଇ ପାଲଲହଡ଼ା ପଠାଇଦେଲେ । ମୁଁ ଯାଇ ଦେଖିଲି, ସର୍ଦ୍ଦାର ମେଳିଆମାନେ ଦଣ୍ଡିତ ହେବାରୁ ଅନ୍ୟାନ୍ୟ ମେଳିଆମାନେ ଛିନ୍ନଭିନ୍ନ ହୋଇ ନିବିଡ଼ ଅରଣ୍ୟ ମଧ୍ୟକୁ ପଳାଇ ଗଲେଣି । ଅନ୍ୟାନ୍ୟ ପ୍ରଜାଗଣ ସୁବାଧ୍ୟଭାବରେ ରହିଅଛନ୍ତି । କୌଣସି ପ୍ରକାର ମାଲିମାମଲି ନାହିଁ - ରାଜ କଚେରି ଶୂନ୍ୟ । ମୋ ହାତରେ କିଛିମାତ୍ର କାର୍ଯ୍ୟନାହିଁ । ସକାଳ ଓଳିଟା ମହାଭାରତ ଅନୁବାଦରେ ଯାଏ । ଉପରେ ଓଳି ରାଜା ସାହେବଙ୍କର ଜଣେ ବିରାଦର ବାବୁ, ପୁଟରିହିତ ମହାପାତ୍ରେ ଏବଂ ଆଉ ଦୁଇଜଣ ବ୍ରାହ୍ମଣ ଆସନ୍ତି, ସନ୍ଧ୍ୟା ପର୍ଯ୍ୟନ୍ତ ଚୌପଟ ଖେଳ ହୁଏ । ସନ୍ଧ୍ୟା ଉତ୍ତାରେ କେହି ଘରୁ ବାହାରନ୍ତି ନାହିଁ । ସେ ସମୟରେ ପାଲଲହଡ଼ାଟା ଅତ୍ୟନ୍ତ ଜଙ୍ଗଲମୟ ଥିଲା । ସନ୍ଧ୍ୟା ଉତ୍ତାରେ ବାଘ ଭାଲୁ ଗାଁ ଗୋହିରୀ ମଧ୍ୟରେ ବୁଲନ୍ତି ।

ଅପରାହ୍ଣ ସମୟରେ ଦିନେ ଦିନେ ମୁଁ ରାଜା ସାହେବଙ୍କ ସହିତ ସାକ୍ଷାତ୍ କରିବାକୁ ଯାଏଁ । ରାଜାସାହେବ ଅତି ଭଦ୍ର, ବୁଦ୍ଧିମାନ୍, ମିଷ୍ଟଭାଷୀ; ମାତ୍ର ଅସଙ୍ଗତ ଦାତା । ଏ ଦାତୃତ୍ୱ ହେତୁରୁ ନିତାନ୍ତ ଋଣଗ୍ରସ୍ତ ହୋଇ ପଡ଼ିଥିଲେ । ପରନ୍ତୁ ଶୁଣି ପାରିଲେ, ରାଣୀସାହେବ ଓ ରାଜଭଗିନୀଗଣ ଯେପରି ପୁଣ୍ୟବତୀ, ସେହିପରି ଦାନଶୀଳା ଥିଲେ ।

ରାଜାସାହେବ କି ପ୍ରକାର ଅସଙ୍ଗତ ଦାତୃତ୍ୱ ପଣ ହେତୁରୁ ଋଣଗ୍ରସ୍ତ ହୋଇ ପଡ଼ିଲେ, ସେ ସମ୍ବନ୍ଧରେ ଅନେକ କଥା ଶୁଣିଥିଲି । ଏ ସ୍ଥାନରେ ଦୃଷ୍ଟାନ୍ତସ୍ୱରୂପ ଗୋଟିଏ ମାତ୍ର ବିଷୟ ଉଲ୍ଲେଖ କରିବାକୁ ଇଚ୍ଛା କରେଁ । କଟକରେ ଗୋଟାଏ ଦରିଦ୍ର କାବୁଲି ବୁଲୁଥିଲା । ସ୍ୱଜାତୀୟ ଲୋକମାନଙ୍କ ଠାରୁ ଭିକ୍ଷା କରି ଖାଏ । ପାଲଲହଡ଼ା ରାଜାଙ୍କ ନିକଟରୁ କିଛି ଟଙ୍କା ଆଣି ବ୍ୟବସାୟରେ ନିଯୁକ୍ତ ହେବା ସକାଶେ ଅନ୍ୟାନ୍ୟ କାବୁଲିମାନେ ତାହାକୁ ପରାମର୍ଶ ଦେଲେ; ମାତ୍ର କଥା ଉଠିଲା—ଛୁଚ୍ଛା ହାତଟାରେ କପରି ଯିବ ? କଟକରେ ସମସ୍ତ କାବୁଲି ତିନି କି ଚାରି ଟଙ୍କା ଭେଦା କରି ଖଣ୍ଡିଏ ବନାତ କମ୍ବଳ କିଣି ଦେଲେ । ସେହି ବାଣିଜ୍ୟ ଦ୍ରବ୍ୟ ଘେନି ସଉଦାଗର ସାହେବ ପାଲଲହଡ଼ାରେ ଉପସ୍ଥିତ । ସଉଦାଗରମାନଙ୍କ ଶିକ୍ଷା ଅନୁସାରେ ଆମ୍ଭମାନଙ୍କ ସଉଦାଗର କମ୍ବଳଖଣ୍ଡି ରାଜାସାହେବଙ୍କ ଛାମୁରେ ଥୋଇ ସଲାମ ଦେଇ ବାହାରି ଆସିଲା । କଚ୍ଛାର ପ୍ରଚଳିତ ପ୍ରଥାନୁସାରେ ଗଡ଼ାଘର ପାଞ୍ଜିଆ ସୌଦାଗରକୁ ପ୍ରତିଦିନ ଏକ ଟଙ୍କା କରି ଖୋରାକ ଦେଉଥାଏ; ମାତ୍ର ସଉଦାଗର ସରଘରୁ ଡାଲି ଚାଉଳ ମାଗି ଆଣି ଖାଏ । ଟଙ୍କାଟି ବାନ୍ଧି ରଖେ । କମ୍ବଳ ଖଣ୍ଡି ଦରଦାମକରି କିଣିବା ସକାଶେ ରାଜାଙ୍କର ଅବକାଶ ନାହିଁ । ରାଜା ସାହେବ ବୁଦ୍ଧିମାନ୍, କିନ୍ତୁ ନିତାନ୍ତ ଦୟାଶୀଳ । ସଉଦାଗର ଅବସ୍ଥା ଦେଖି ବୁଝିଲେଣି, ଲୋକଟା ନିତାନ୍ତ କଙ୍ଗାଳୀ, କିଛି ମାଗିବାକୁ ଆସିଅଛି । ତିନି ମାସ କାଳ ଗତ—ଇତ୍ୟବସରରେ ନବେଟି ଟଙ୍କା ସଉଦାଗର ସାହେବଙ୍କ ଅଣ୍ଟାରେ ଅଣ୍ଟା କରି ବନ୍ଧା । ଯେଉଁ ପୁରୁଣା ଚିରା ପୋଷାକଟା ପିନ୍ଧି କଟକରୁ ବାହାରିଥିଲେ, ତାହା ପରି ଛିଡ଼ି ଡୋରି ହୋଇ ଗଲାଣି । ଅଣ୍ଟାରୁ

ଟଙ୍କା କାଢ଼ି ପୋଷାକ କଣିଲେ ସୌଦାଗର କରିବେ କାହିଁରେ ?

ଶୀତକାଳ, ଖୁବ୍ ଭୋର, ପାଲଲହଡ଼ା ପାର୍ବତ୍ୟ ଜଙ୍ଗଲ ଜଗାରେ ଖୁବ ଶୀତ । ଗୋଟାଏ ଖୁବ୍ ବଡ଼ ଧୂନି ଜାଳି ଅର୍ଦ୍ଧ ଉଲଗ୍ନ ଅବସ୍ଥାରେ ସଉଦାଗର ସାହେବ ପାଉଁଶ ଗଦା ଉପରେ ବସି ନିଆଁ ପୋହୁ ଅଛନ୍ତି; ରାଜାସାହେବ ସକାଳୁ ଦାଣ୍ଡକୁ ବୁଲି ବାହାରିଥିଲେ, ହଠାତ୍ ସଉଦାଗରଠାରେ ଦୃଷ୍ଟି ପଡ଼ିଗଲା । ତାହାଙ୍କୁ ଏପର୍ଯ୍ୟନ୍ତ ବସାଇ ରଖିବାରୁ ସେ ବିଚାରି କଷ୍ଟ ପାଉଅଛି ମନରେ କରି ଦୁଃଖିତ ହେଲେ । ତାହାଠାରୁ କଣା କମ୍ବଳ ଖଣ୍ଡିକ ତାହାକୁ ଘୋଡ଼େଇ ହେବା ପାଇଁ ଦେବା ନିମନ୍ତେ ଗନ୍ତାଘରିଆ ପ୍ରତି ଆଜ୍ଞା ହେଲା । ସେହି ମୁହୂର୍ତ୍ତରେ କମ୍ବଳ ଖଣ୍ଡିକର ମୂଲ୍ୟ ଦଶଟଙ୍କା ଆଉ ବାଟଖର୍ଚ୍ଚ ଦେଇ ବିଦାୟ କରିଗଲା । ମୟୂରଭଞ୍ଜ କଣ୍ଟରର ସ୍ୱର୍ଗୀୟ ମହାରାଜା ମହାତ୍ମା ଯଦୁନାଥ ଭଞ୍ଜ ଏହିପରି ଦାତା ଥିଲେ । ତାହାଙ୍କର ବାଲେଶ୍ୱର ବିଜେ ସମୟରେ ଏହିପରି ଦାନପୁଣ୍ୟ କରୁଥିବାର ଲେଖକ ବାଲ୍ୟକାଳରେ ପ୍ରତ୍ୟକ୍ଷ କରିଅଛି ।

ସରକାରୀ ଗନ୍ତାଘରୁ ପ୍ରତିଦିନ ସକାଳେ ମାଂସ ସହିତ ସିଧା ଆସେ । ମାଛ ଯୋଗାଣ ଦେବା ସକାଶେ ଜଣେ ( ବୋଧ କରେ ଡିଅର ଜାତି ) ଖଞ୍ଜା ଥିଲା । ସେହି ଢିଅର ଦିନେ ଦିନେ ମାଛ ଦିଏ ନାହିଁ । କାରଣ ପଚାରିଲେ, 'ସୁନା ଧରିବାକୁ ଯାଇଥିବାର ପ୍ରକାଶ କରେ ।' ଗୋଟିଏ ଗିରିନଦୀ ରାଜାଙ୍କ ନଅର ଦକ୍ଷିଣ ପଟ କାନ୍ଥକୁ ଲଗାଲଗି ପ୍ରବାହିତ ହେଉଅଛି । କୌଣସି କୌଣସି ବର୍ଷ ପ୍ରବଳ ବୃଷ୍ଟିରେ ସେହି ନଦୀର ବଢ଼ିପାଣି ନଅର ମଧ୍ୟରେ ପ୍ରବେଶ କରି ଅନେକ ସମ୍ପତ୍ତି ନଷ୍ଟ କରି ପକାଏ । ସେହି ନଦୀ ବାଲିରେ ସୁବର୍ଣ୍ଣ ରେଣୁ ମିଶ୍ରିତ ଅଛି । ମାଛ ଯୋଗାଣିଆ ଢିଅର ଦିନେ ଦିନେ ମାଛଧରା ଛାଡ଼ି ସୁନା ଧରିବାକୁ ଯାଏ । ମୁଁ ଶୁଣିଛି ବୁଝିଅଛି, ସେ ଦିନଯାକ ବାଲି ଘାଣ୍ଟି ଘାଣ୍ଟି ଦୁଇ ତିନି ଅଣାରୁ ବେଶି ସୁନା ପାଏ ନାହିଁ । ମାଛ ଧରି ମଧ୍ୟ ଦିନକୁ ସେତିକି ମାତ୍ର ପଇସା ଅର୍ଜନ କରେ । ତୁମେ ମାଛ ଧର ଅବା ସୁନା ଧର—ତୁମର ପୂର୍ବ ଜନ୍ମାର୍ଜିତ ଯେତିକି ସମ୍ପତ୍ତି ବିଧାତାଙ୍କ କୋଠ ଭଣ୍ଡାରରେ ଜମା ଦେଇ ଆସିଅଛ, ହିସାବ ଅନୁସାରେ ପ୍ରତିଦିନ ସେଥିରୁ ତେତିକି ହିସାବରେ ପାଇବ । ଅବିବେକୀ ନିର୍ବୋଧ ଲୋକ ମାହାଲଆଟାରେ ଚରି ବେକ କାଟି ଟଙ୍କା ଅର୍ଜିବାକୁ ଧାଆନ୍ତି - ହେଲେ ପାରନ୍ତି ନାହିଁ । ଥୋକେ ସଟାବଟା କରି କାହାର ବିଉ ଘରେ ପୂରନ୍ତି ସତ୍ୟ, ମାତ୍ର ସମୟରେ ଗନ୍ତାଘର ପାଞ୍ଜିଆ ହିସାବ ଧରି ପାଇକ ପଠାଇ ଅନ୍ୟାୟ ଧନ ମୂଳ କଳନ୍ତର ସହିତ କାଢ଼ି ଘେନିଯାଏ । ତହିଁ ଉପରେ ବେତ, କୋରଡ଼ା, ଅପମାନ ଆଉ ମନସ୍ତାପ ।

ପାଲଲହଡ଼ାରେ ମୋ ପକ୍ଷରେ ଗୋଟିଏ ବିଷୟ କିଛି ଅସୁବିଧାଜନକ ଥିଲା । ମୋହର ଅତିରିକ୍ତ ପାନ ଚୋବାଇବା ଗୋଟିଏ ବଦ୍ ଅଭ୍ୟାସ । ପ୍ରତିଦିନ ପଞ୍ଚାଶ ଷାଠିଏ ବିଡ଼ିଆ ଚୋବାଉ ଥିଲି । ସେ ସମୟରେ ପାଲଲହଡ଼ାରେ ପାନ ଦୋକାନ ନ ଥିଲା। ପାଲଲହଡ଼ା ଗଡ଼ଠାରୁ ଅଠର କୋଶ ଦୂର ତାଲଚେର ଗଡ଼ରେ ପାନ ଦୋକାନ । ରାଜା ସାହେବ, ରାଣୀ ସାହେବ, ଭଗିନୀ ମଣିମା ସମସ୍ତଙ୍କ ପାଇଁ ପୃଥକ୍ ପୃଥକ୍ ରୂପେ ପାନ କଣିବା ସକାଶେ ସପ୍ତାହକୁ ଥରେ ଗୋଟାଏ ଲୋକ ତାଲଚେର ଯାଏ । ମୁଁ ମଧ୍ୟ ପ୍ରତି ସାତଦିନିଆ ପାଇଁରେ ସେହି ଲୋକକୁ ଯୋଡ଼ିଏ କରି ଟଙ୍କା ଦିଏଁ । ଟଙ୍କାଏ ତାହାର ମଜୁରି, ଆଉ ଟଙ୍କାକର ପାନ କଣି ଆଣେ । ଅବଶ୍ୟ ଏତେ ପାନ ମୋହର ଲୋଡ଼ା ନ ଥାଏ, ଅଧାଅଧି ପାନ ପଚିଯାଏ । ଦିନେ ସକାଳେ ମୋ ବଟାରେ ପାନ ନ ଥିଲା । ଭାତ ଖାଇସାରି ରାଜା ସାହେବ, ରାଣୀ ସାହେବ, ଭଗିନୀ ମଣିମା ସମସ୍ତଙ୍କ ନିକଟକୁ ପାନ

ପଚାଶେ ଲୋକ ଠୋଇଲି । କାହାର ଉଆସରେ ପାନ ନାହିଁ । ପୁନର୍ବାର ଲୋକ ଠୋଇଲି, ଅଚ୍ଛା କିଛି ପାନ ଶୁଙ୍ଖୁଆ ✣ ଦେଉନ୍ତୁ । ମାତ୍ର 'ନାସତେ ବିଦ୍ୟତେ ଭାବଃ।' ଅଭାବ ବେଳେ ସବୁ ଅଭାବ । ଉଆସର କାହାରଠାରୁ ପାନ ଶୁଙ୍ଖୁଆ ଗୁଣ୍ଡ ମଧ୍ୟ ମିଳିଲା ନାହିଁ । ମୁଁ ଖୁବ୍ ଗୋଟାଏ ଦୀର୍ଘନିଃଶ୍ୱାସ ପକାଇ ଖୁବ୍ ପାଟି କରି କହିଲି, "ହେ ଈଶ୍ୱର ! ମୋତେ ଆଜି ପାନ ଖାଇବାକୁ ଦେଲ ନାହିଁ ।"

ଏତିକି କଥା କହି ଦାଣ୍ଡକୁ ଅନାଇ ଦେଖିଲି, ଗୋଟିଏ ଲୋକ ପିଠିରେ ବୋଝଟିଏ ବାନ୍ଧି ନେଇ ନେଇ ଧୀରେଧୀରେ ଯାଉଅଛି । ମୁଁ ପଚାରିଲି,ତୁମ୍ଭେ କିଏ ହୋ ! ଉତ୍ତର, "କଟକ ପୋଲିସର ବାବୁ କେଉଁଝର ବଣରେ ଅଛନ୍ତି, ତାଙ୍କ ଘରଠାରୁ ଜିନିସ ନେଇ ଯାଉଛି ।"ଦେଖେ ଦେଖେ - ଆସ ଆସ—ମୋ ପାଖକୁ ଆସ କହି ପାଖକୁ ଡାକିଲି । ଅବଶ୍ୟ ପାନ ପାଇବି, ଏ ଆଶା ମୋ ମନରେ ଉଦିତ ହୋଇ ନ ଥିଲା, କେବଳ କଟକ କଥା ପଚାରିବି ବୋଲି ସେ ଲୋକଟିକୁ ପାଖକୁ ଡାକିଥିଲି । ବୋଝଟା ଓହ୍ଲାଇବା ମାତ୍ରକେ ଦୁଇ ତିନିଶ ପାନ ବନ୍ଧା ଗୋଟାଏ ବିଡ଼ା ଟପ କରି ମୋ ଆଗରେ ପଡ଼ିଗଲା । ମୁଁ ଚଞ୍ଚଳ ତିନି ଚାରିଟା ପାନ ଚୋବାଇ ପକାଇ ପ୍ରଭୁଙ୍କ ଉଦ୍ଦେଶ୍ୟରେ ପ୍ରଣିପାତ କଲି । କ୍ଷୀଣ ଦୃଷ୍ଟିସମ୍ପନ୍ନ ଅଜ୍ଞାନାନ୍ଧ ଲୋକେ ଈଶ୍ୱରଙ୍କ ଅସ୍ତିତ୍ୱ ଅନୁଭବ କରିବାକୁ ଅକ୍ଷମ, ପ୍ରଭୁଙ୍କ କାର୍ଯ୍ୟକାରୀ ହସ୍ତ ଦେଖି ପାରନ୍ତି ନାହିଁ । ମନୋଜ୍ଞାନ ସମର୍ପଣ ପୂର୍ବକ ଈଶ୍ୱରଙ୍କ ପ୍ରତି ନିର୍ଭର କର—ଭକ୍ତିପୂର୍ଣ୍ଣ ସରଳ ମନରେ ପ୍ରାର୍ଥନା କର, ସୁଖ—ଶାନ୍ତି - ସାନ୍ତ୍ୱନା—ସ୍ୱାସ୍ଥ୍ୟ ସମସ୍ତ ପ୍ରଭୁଙ୍କ ଠାରୁ ପ୍ରାପ୍ତ ହେବ । ✻ ମୁଁ ପ୍ରତ୍ୟେକ ମୁହୂର୍ତ୍ତ ପ୍ରତ୍ୟେକ ଘଟଣାରେ ପ୍ରଭୁଙ୍କ ହସ୍ତ ଦେଖିବାକୁ ପାଏ । ମୁଁ ଶୈଶବ ଅବସ୍ଥାରୁ ପିତା, ମାତା, ଭ୍ରାତା, ଭଗିନୀ ସମସ୍ତ ସହାୟଶୂନ୍ୟ । ଏକମାତ୍ର ପ୍ରଭୁ ମୋହର ରକ୍ଷାକାରୀ । ମୋହର ନିଜସ୍ୱ ବୋଲି କହିବାକୁ କିଛି ନାହିଁ, ସମସ୍ତ ପ୍ରଭୁ ଦତ୍ତ । ସମ୍ପ୍ରତି ତାହାଙ୍କ ଦତ୍ତ ଜ୍ଞାନ ବଳରେ ମୋହର ଏହି କଦର୍ଯ୍ୟ ଜୀବନଚରିତ ଲୋକଙ୍କୁ ଶୁଣାଇବାକୁ ବସିଅଛି । ଆଜି କେବଳ ପାନ ଖାଇବାକୁ ପାଇଲି, ତାହା ନୁହେଁ, ଆଉ ଥରେ ମଧ୍ୟ ଏହିପରି ଅବସ୍ଥାରେ ଅନ୍ୟତ୍ର ପାନ ପାଇଥିଲି । କେବଳ ପାନ ନୁହେଁ, ଶତ ଶତ ଥର ପ୍ରଭୁଙ୍କ କରୁଣାମୟ ପ୍ରସାରିତ ହସ୍ତ ଅନୁଭବ କରିଅଛି ।

ପାଲଲହଡ଼ାରେ ସେ ସମୟରେ ମୋହର କିଛି ଅଭାବ ନ ଥିଲା । ମହାଭାରତ ଲେଖା ଆଉ ଚୌପଟ ଖେଳରେ ସୁନ୍ଦର ଦିନ କଟୁଥାଏ । ତଥାପି ସେ ସ୍ଥଳରେ ଅଧିକ ଦିନ ରହିବାକୁ ଇଚ୍ଛା ବଳିଲା ନାହିଁ । ମୂଳ କାରଣ, ହାତରେ କିଛି କର୍ମ ନାହିଁ । କାର୍ଯ୍ୟ ବିନା ତୁନି ହୋଇ ବସିବା ମନୁଷ୍ୟ ପକ୍ଷରେ ନିତାନ୍ତ କଷ୍ଟକର । ଗୀତାରେ ଭଗବାନ୍ ବାସୁଦେବ କହିଅଛନ୍ତି—

'ନ ହି କଶ୍ଚିତ କ୍ଷଣମପି
ଜାତୁ ତିଷ୍ଠତ୍ୟ କର୍ମକୃତ୍ ।"

ସେହି ସମୟରେ ଦିନେ ସକାଳେ ଗୋଟିଏ ବୁଢ଼ୀ ମୋ ବସାକୁ ମାଛ ବିକି ଆସିଥିଲା—ମୋ ଚାକର ତାହାକୁ କହିଲା,"ନାହିଁ ଲୋ ବୁଢ଼ୀ, ଆମର ମାଛ ଲୋଡ଼ା ନାହିଁ ।" ବୁଢ଼ୀ କହିଲା, "କି ହୋ, ତୁମେ ରଜାଙ୍କର ସର ଘରୁ ପଡ଼ ଖାଅ ପରା ।" ମୁଁ ନିକଟରେ ଛିଡ଼ା ହୋଇଥିଲି

---

✣ ପାନ ଶୁଙ୍ଖୁଆ—ପତ୍ର ପାନ, ପାନଶିରା ଶୁଖାଇ ଗୁଣ୍ଡ କରି ରଖା ହୋଇଥାଏ । ପାନ ନ ଥିଲାବେଳେ ଗୁଆ ଚୂନ ଖଇର ମିଶାଇ ସେ ଗୁଣ୍ଡ ଖିଆଯାଏ ।

✻ 'ହାତ ମାର, ତୁମ୍ଭପାଇଁ କବାଟ ଫିଟିଯିବ ।' —ବାଇବେଲ ।

ବୁଢ଼ୀ କଥା ଶୁଣି ବଡ଼ ଅପମାନ ବୋଧ କଲି । ମନେ କଲି, ସତ କଥା, କିଛି ମାତ୍ର କର୍ମ ନ କରି ମାହାଳିଆ-ଟାରେ ବସି ବସି ଦରମା ନେବି, ଚଡ଼ ଖାଇବି, ଏ କି କଥା ? ଚାକିରି ଛାଡ଼ି ଦେଲେ ଦୁର୍ଦ୍ଦଶାରେ ପଡ଼ିବାକୁ ହେବ, ଏ ଜ୍ଞାନ ରହିଲା ନାହିଁ । କର୍ମତ୍ୟାଗ କରିବାର ଇଚ୍ଛା ରାଜାସାହେବଙ୍କୁ ଜଣାଇଲି । ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କୁ ମଧ୍ୟ ଲେଖିଲି । ଅଳ୍ପ ଦିନ ଉତ୍ତାରେ ମୋହର କର୍ମତ୍ୟାଗ ପ୍ରାର୍ଥନାର ମଞ୍ଜୁରି ହୁକୁମ କଟକରୁ ଉପସ୍ଥିତ ହେଲା । ମୋହର ଦରମା ଟଙ୍କା ସମସ୍ତ ରାଜାସାହେବ ହିସାବ କରି ଦେଲେ । ଦରମା ଛଡ଼ା ଅନେକ ଗୁଡ଼ାଏ ଟଙ୍କା, ସାଲ, ପାଟଯୋଥା ଏବଂ ରାଣୀ ସାହେବ, ଭଗିନୀ ମଣିମାମାନେ ବାଟଖର୍ଚ୍ଚ ବୋଲି ଗୁଡ଼ାଏ ଟଙ୍କା ଲୁଗାଯୋଥା ଦେଲେ । ରାଜ କର୍ମଚାରୀ ଏବଂ ଅନ୍ୟାନ୍ୟ ଭଦ୍ରଲୋକମାନେ କହିଲେ—ଏହା ପାଲଲହଡ଼ା ରାଜ ସଂସାରର ବିଧି । ଏହି ମେଲାଣି ଟଙ୍କା ଓ ଯୋଥା ନ ନେଲେ ରାଜା ସାହେବ ଆପଣାକୁ ଅପମାନିତ ବୋଧ କରିବେ । ସଙ୍କୋଚ ଅଥଚ ଆନନ୍ଦ ପୂର୍ବକ ସେହି ସମସ୍ତ ପୁରସ୍କାର ଗ୍ରହଣ କରି ବାଲେଶ୍ୱର ଚାଲି ଆସିଲି ।

(ଉ. ସା. ୨୪ଶ ଭାଗ—୯ମ ସଂଖ୍ୟା)

---

## ୨୯

## କେଉଁଝରରେ ମାନେଜରୀ *

ମୋହର ବାଲେଶ୍ୱର ଚାଲିଆସିବା ଅଳ୍ପଦିନ ଉତ୍ତାରେ ଅର୍ଥାଭାବ ଜନିତ କ୍ଲେଶ ଅନୁଭବ କରିବାକୁ ଲାଗିଲା । ଗଡ଼ଜାତ ମାହାଲର ସାନ୍ତାଳ ଗାଁ ପାଖ ଲୋକମାନଙ୍କଠାରୁ ଗୋଟିଏ ଢଗ ଶୁଣିଥିଲି —

"ପାଚିଲା ଧାନ ବାଜିଲା ଚାଙ୍ଗୁ
ଗାଲର ଉପରେ ଗାଲ ।
ହେଲା ଚଇତ ସରିଲା ଧାନ
ଯେଉଁଠି ଖାଲ ସେଇଠିକି ଚାଲ ।"

ପୌଷ ମାସରେ ଧାନ ପାଚିଲେ ସାନ୍ତାଳମାନେ ଦୁଇ ଓଳି ଭାତ ଖାଆନ୍ତି । ବଳକା ଧାନରେ ହାଣ୍ଡିଆ ( ଏକପ୍ରକାର ମଦ ) ପ୍ରସ୍ତୁତ କରି ଖାଇ ଚାଙ୍ଗୁ ବଜାଇ ରାତିଯାକ ନାଚନ୍ତି । ଚଇତ ମାସରେ ଧାନ ସରିଯାଏ । ଭାତ ଓ ହାଣ୍ଡିଆ ଖାଇ ଗାଲ ଫୁଲିଥାଏ, ଅର୍ଥାତ୍ ଦେହମୋଟା ହୋଇଥାଏ । ଚୈତ୍ର ମାସରେ ଧାନ ସରିଗଲେ ଦେହ ଶୁଖିଯାଏ । ତେଣିକି ଆଠମାସ କାଳ ଆହାର ଟୁଙ୍ଗା, କଡ଼ିବା, ମସିଆ ପ୍ରଭୃତି ଜଙ୍ଗଲି ଆଳୁ ଆଉ ମହୁଲ, ଆମ୍ବ ପ୍ରଭୃତି ନାନାପ୍ରକାର ଫଳ ମୂଳ । ଆଉ ମଧ୍ୟ ସେମାନଙ୍କର ଆହାର ପାରିଧିରୁ ଆଣିଥିବା ମାଂସ । ଏଣିକି ସେମାନଙ୍କର ଅବସ୍ଥା ଢେର ଉନ୍ନତ ହେଲାଣି । ମୁଁ ସେହିପରି ଗୋଟିଏ ଅପରିଣାମଦର୍ଶୀ ସାନ୍ତାଳ ସ୍ୱଭାବର ଲୋକ । ଅର୍ଥୋପାର୍ଜ୍ଜନ ସମ୍ବନ୍ଧରେ ମୋହର ଭବିଷ୍ୟତ୍ ଭାବନା କିଛି ମାତ୍ର ନ ଥାଏ ।

ବର୍ତ୍ତମାନ ବାଲେଶ୍ୱରରେ ଅର୍ଥାଭାବ ଜନିତ ମୋର ଅସ୍ଥିରତା ଦେଖି ମୋହର ଏକମାତ୍ର ହୃଦୟବନ୍ଧୁ ସୁଖରେ ଦୁଃଖରେ ପରମ ସହାୟ ବାଲେଶ୍ୱର ନର୍ମାଲ ସ୍କୁଲର ହେଡ଼ମାଷ୍ଟର ବାବୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ପୁନଃ ପୁନଃ ଉପଦେଶ ଦେଉଥାନ୍ତି—'ବ୍ୟସ୍ତ ହେବାର ଦରକାର ନାହିଁ, ପ୍ରଭୁ କାହୁଁ ହେଲେ ଦେବେ । ପ୍ରାର୍ଥନା କର ।' ଗୋବିନ୍ଦ ଯେପରି ନିଷ୍କଳଙ୍କ ଚରିତ୍ର, ସେହିପରି ଈଶ୍ୱର ବିଶ୍ୱାସୀ ଏବଂ ପ୍ରାର୍ଥନାଶୀଳ ଥିଲେ ।

---

* 'କେଉଁଝରରେ ମାନେଜରୀ' ଶୀର୍ଷକ ସ୍ୱତନ୍ତ୍ର ପରିଚ୍ଛେଦ 'ଉତ୍କଳ ସାହିତ୍ୟ'ରେ ନାହିଁ । ପାଲଲହଡ଼ାରେ ଦେୱାନୀ ପରିଚ୍ଛେଦର ଏହା ଅନ୍ତର୍ଭୁକ୍ତ । ପ୍ରକାଶିତ ଆତ୍ମଜୀବନ ଚରିତ ପୁସ୍ତକର ଅନୁସରଣରେ ଏହି ଅଧ୍ୟାୟର ନାମ 'କେଉଁଝରରେ ମାନେଜରୀ' ରଖାଯାଇଛି ।

ଏହି ସମୟରେ କେଉଁଝରର କଲ୍ଲାର ମାନେଜର ପଦ ଶୂନ୍ୟ ହେବାରୁ ସେହି ପଦ ପ୍ରାପ୍ତି ନିମନ୍ତେ ଦରଖାସ୍ତ କଲି । ମୋହର ଯୋଗ୍ୟତା ଏବଂ ଚରିତ୍ର ସମ୍ବନ୍ଧରେ ମହାରାଜ ବାହାଦୁର ଆ: ସ୍ଟୁ: ରାୟ ନନ୍ଦକିଶୋର ବାହାଦୁରଙ୍କୁ ପଚ୍ଛରିଲେ । ଏକ ସମୟରେ ମହାରାଜାଙ୍କଠାରୁ ନିଯୁକ୍ତ ପତ୍ର ଏବଂ ନନ୍ଦକିଶୋର ବାବୁଙ୍କଠାରୁ ଶୀଘ୍ର କେଉଁଝର କଲ୍ଲାରେ ଉପସ୍ଥିତ ନିମନ୍ତେ ଉପଦେଶ ପତ୍ର ପ୍ରାପ୍ତ ହୋଇ କେଉଁଝର ଚାଲିଗଲି । ସେ ସମୟରେ କେଉଁଝର ନିଜଗଡ଼ଟା ନିତାନ୍ତ ଅସ୍ୱାସ୍ଥ୍ୟକର ଥିଲା । ଆଷାଢ଼ ଆରମ୍ଭଠାରୁ କାର୍ତ୍ତିକ ଶେଷ ପର୍ଯ୍ୟନ୍ତ ବର୍ଷାକାଳଟାରେ କି ସ୍ୱଦେଶୀ କି ବିଦେଶୀ ସମସ୍ତଙ୍କର ଜ୍ୱର ହୁଏ । ଶୀତ ପଡ଼ିଲେ ଛାଡ଼ିଯାଏ । ଆନନ୍ଦପୁରରେ ଉପସ୍ଥିତ ହେବା ମାତ୍ରକେ ମହାରାଜାଙ୍କଠାରୁ ଖଣ୍ଡିଏ ପତ୍ର ପାଇଲି । ପତ୍ରର ବିଷୟ—ଅଳ୍ପକାଳ ମଧ୍ୟରେ ଶ୍ରୀଯୁତଙ୍କର ଆନନ୍ଦପୁରକୁ ଶୁଭାଗମନ କରିବାର କଥା ଅଛି । ନିଜଗଡ଼କୁ ରମାନା ନ ହୋଇ ଶ୍ରୀଯୁତଙ୍କର ଉପସ୍ଥିତି ପର୍ଯ୍ୟନ୍ତ ଆନନ୍ଦପୁରରେ ଅପେକ୍ଷା କରିବା ସକାଶେ ମୋ ପ୍ରତି ଆଦେଶ ଥିଲା । ମୋହର ଆନନ୍ଦପୁରରେ ପହଞ୍ଚିବାର ଚାରି ଦିନ ଉତ୍ତାରେ ଦଳବଳ ସହିତ ମହାରାଜା ଆନନ୍ଦପୁରରେ ଉପସ୍ଥିତ ହେଲେ । କିଛି ଦୂରରୁ ହାତୀ ଉପରୁ "ଓହ୍ଲାଇବା ପୂର୍ବରୁ ମାନେଜର ବାବୁ,ମାନେଜର ବାବୁ ବୋଲି ଚିତ୍କାର କରି ଡାକିଲେ", ତର ପରିଚିତ ପରି କଥାବାର୍ତ୍ତା ଆରମ୍ଭ କରିଦେଲେ ।

ମହାରାଜା ଧନଞ୍ଜୟ ନାରାୟଣ ଭଞ୍ଜ ସବୁ ବିଷୟରେ ବିଚକ୍ଷଣ ଲୋକ । ସମସ୍ତ କେଉଁଝର କଲ୍ଲା ପ୍ରାୟ ତିନି ହଜାର ବର୍ଗମାଇଲ । ସମସ୍ତଟାକୁ ଯେମନ୍ତ ନଖଦର୍ପଣ ସ୍ୱରୂପ କରି ରଖିଥିଲେ । କଲ୍ଲା ମଧ୍ୟରେ କେଉଁ ଲୋକର ସ୍ୱଭାବ କପରି, ତାହା ତାଙ୍କୁ ଜଣାଥିଲା । ବାକ୍‌ପଟୁ, କର୍ମବୀର, ଚୁରନ୍ଧର, କ୍ଷୀଣଶରୀର, ମାତ୍ର ପ୍ରାତଃକାଳରୁ ଅର୍ଦ୍ଧ ରାତ୍ର ପର୍ଯ୍ୟନ୍ତ କାର୍ଯ୍ୟରେ ଲାଗି ରହିଥାନ୍ତି । ରାଜ୍ୟଶାସନ ସମ୍ପର୍କୀୟ ପ୍ରତ୍ୟେକ କାର୍ଯ୍ୟ ସ୍ୱଚକ୍ଷୁରେ ଦେଖୁଥିଲେ । ରାଜ୍ୟର ସାଧାରଣ କାର୍ଯ୍ୟର ଉନ୍ନତି ସକାଶେ ତାଙ୍କର ବିଶେଷ ଉତ୍ସାହ ଏବଂ ଇଚ୍ଛା ଥିଲା, ମାତ୍ର ଉପଯୁକ୍ତ କର୍ମଚାରୀ ଅଭାବରୁ ବିଶେଷ କିଛି କରି ଯାଇ ପାରି ନାହାନ୍ତି ।

ଆନନ୍ଦପୁରଠାରୁ ଛ ମାଇଲ ଦକ୍ଷିଣକୁ ଦେଓଗାଁ ନାମକ ଗ୍ରାମରେ କୁଣ୍ଟଳେଶ୍ୱର ମହାଦେବ ମନ୍ଦିର ବିରାଜିତ । ଏହି ମନ୍ଦିର ଅତି ପ୍ରାଚୀନ । ଉତ୍କଳର ପୂର୍ବତନ ସ୍ୱାଧୀନ ମହାରାଜା ଯଯାତିକେଶରୀଙ୍କ ଦ୍ୱାରା ଏହି ମନ୍ଦିର ନିର୍ମିତ । ମନ୍ଦିର ଅଦୂରବର୍ତ୍ତୀ ଦକ୍ଷିଣ ଦିଗରେ କୁଶଭଦ୍ରା ନଦୀ ପ୍ରବାହିତା । ଏହି ନଦୀଟି ବ୍ରାହ୍ମଣୀର ଶାଖା ବିଶେଷ । ଏହାର ପ୍ରବଳ ସ୍ରୋତରେ ଉତ୍ତର କୂଳ ମାଟି ଅତଡ଼ା ଖାଇ ଖାଇ ଯାଇ ଉକ୍ତ ମନ୍ଦିରଟିକୁ ଗର୍ଭସାତ୍ କରିବାକୁ ଆରମ୍ଭ କରିଥିଲା । ଏହି ଉତ୍ପାତରୁ ମନ୍ଦିରକୁ ରକ୍ଷା କରିବା ଉଦ୍ଦେଶ୍ୟରେ ସ୍ୱର୍ଗୀୟ ମହାରାଜା ଧନଞ୍ଜୟ ନାରାୟଣ ଭଞ୍ଜ ମହୋଦୟ ନଦୀର ଉତ୍ତର କୂଳରେ ଗୋଟିଏ ବିଶାଳ ପଥର ବନ୍ଧ ନିର୍ମାଣ କରାଇ ଦେଇ ଅଛନ୍ତି । ଅନ୍ୟ ବହୁଦର୍ଶୀ ସ୍ଥପତିର ବିନା ସାହାଯ୍ୟରେ ସ୍ୱୟଂ ମହାରାଜାଙ୍କ ନିଜ କଳ୍ପନା ଓ ତତ୍ତ୍ୱାବଧାନରେ ସାଧାରଣ ପଥୁରିଆ ମିସ୍ତ୍ରିଙ୍କ ଦ୍ୱାରା ଏହି ବନ୍ଧଟି ନିର୍ମିତ । ଏହା ମହାରାଜାଙ୍କ ବୁଦ୍ଧିମତ୍ତା ଓ ଶିଳ୍ପକଳା ଜ୍ଞାନର ପରିଚାୟକ । ନିକଟରେ ପଥର ରାଶି ସୁପ୍ରାପ୍ୟ, କାରିଗର ଏବଂ କୁଲି ମୂଲିଆ ମଜୁରି ଶସ୍ତା, ତଥାପି ଏହାର ନିର୍ମାଣରେ ରାଜଭଣ୍ଡାରରୁ ଦେଢ଼ଲକ୍ଷ ପର୍ଯ୍ୟନ୍ତ ଟଙ୍କା ବ୍ୟୟ ହୋଇଥିଲା । ଉତ୍କଳରେ କଟକ ନିକଟବର୍ତ୍ତୀ କାଠଯୋଡ଼ି କୂଳସ୍ଥିତ ମର୍କଟକେଶରୀଙ୍କ ନିର୍ମିତ ପଥର ବନ୍ଧ ସଦୃଶ ଏହି କୀର୍ତ୍ତି ଯୁଗ ଯୁଗାନ୍ତର ପର୍ଯ୍ୟନ୍ତ ମହାରାଜାଙ୍କ ନାମ ଘୋଷଣା କରୁଥିବ ।

ବୈତରଣୀ ନଦୀର ଉତ୍ପତ୍ତି ସ୍ଥାନ ଗୋନାସିକା ନାମକ ନିବିଡ଼ ଅରଣ୍ୟ ପ୍ରଦେଶରେ ଗୋଟିଏ ବିଶାଳ ମନ୍ଦିର ଓ କେଉଁଝର ନିଜଗଡ଼ ବିରାଜିତ ବଳଦେବ ଜିଉଙ୍କ ବିଶାଳ ଗୁଣ୍ଡିଚା ମନ୍ଦିର ମହାରାଜାଙ୍କ ଦ୍ୱାରା ନିର୍ମିତ ଅଟେ ।

କେଉଁଝର ରାସ୍ତା ସମୀପ ବୁଡ଼ାପଥର ନାମକ ଗୋଟିଏ ସ୍ଥାନରେ ନୀଳକଣ୍ଠେଶ୍ୱର ମହାଦେବ ବିରାଜିତ । ଉକ୍ତ ମହାଦେବଙ୍କ ନିକଟକୁ ଯିବା ସକାଶେ ରାସ୍ତା ନ ଥିଲା । ପୂଜକ ଏବଂ ଭକ୍ତ ଦର୍ଶକଗଣ ଲୁହା ଶିକୁଳି ଅବଲମ୍ବନରେ ପଥର ଉପରକୁ ଉଠୁଥିଲେ । ମହାରାଜା ଧନଞ୍ଜୟ ନାରାୟଣ ଭଞ୍ଜ ଉକ୍ତ ମହାଦେବଙ୍କ ମନ୍ଦିର ଏବଂ ୨୫୦ହାତ ଉଚ୍ଚ ପଥର ଶିଡ଼ି ନିର୍ମାଣ କରାଇ ଦେଇ ଅଛନ୍ତି । ଭୂୟାଁପୀଢ଼ ନିକଟ ପାଟଣାଣଠାରେ ବିରାଜିତ ପାଟେଶ୍ୱର ମହାଦେବଙ୍କ ବିଶାଳ ମନ୍ଦିର ମହାରାଜାଙ୍କ ଅନ୍ୟତମ କୀର୍ତ୍ତି ଅଟେ ।

ମହାରାଜାଙ୍କ କୀର୍ତ୍ତିକଳାପ ଅଧିକାଂଶ ସ୍ୱୟଂ ପ୍ରତ୍ୟକ୍ଷ କରିଅଛୁ ଏବଂ ଏ ସମସ୍ତ କାର୍ଯ୍ୟର ଉତ୍ପତ୍ତିର ଇତିହାସ ଏବଂ ବ୍ୟୟର ହିସାବ ତାତ୍କାଳୀକ ସଦର କଚେରିର ପେସ୍କାର ବର୍ତ୍ତମାନ ଆସିଷ୍ଟାଣ୍ଟ ମାନେଜର ବାବୁ ବୈକୁଣ୍ଠନାଥ ଦାସ ମହାଶୟଙ୍କ ପ୍ରମୁଖାତ୍ ଶୁଣିଅଛୁ । ରାଜସରକାରରେ ନିଯୁକ୍ତ ପ୍ରାଚୀନ କର୍ମ-ଚାରୀମାନଙ୍କ ମଧ୍ୟରେ ବୈକୁଣ୍ଠବାବୁ ଜଣେ ବିଶ୍ୱାସୀ, ବୁଦ୍ଧିମାନ୍, କର୍ମଠ, ରାଜଭକ୍ତ ଏବଂ ଧର୍ମଭୀରୁ ଥିଲେ । ମହାରାଜଙ୍କର ତାଙ୍କ ପ୍ରତି ବିଶେଷ ବିଶ୍ୱାସ ଥିଲା । ସାଧାରଣ ଲୋକେ ମଧ୍ୟ ତାଙ୍କୁ ସମ୍ମାନ କରୁଥିଲେ । ସମସ୍ତ କର୍ମଚାରୀ ମଧ୍ୟରେ ମୁଁ କେବଳ ତାଙ୍କୁ ବିଶ୍ୱାସ କରୁଥିଲି । ତାତ୍କାଳିନ ନିଯୁକ୍ତ ଅନ୍ୟାନ୍ୟ କର୍ମଚାରୀ-ମାନଙ୍କ ଦୁଷ୍ଟଚରିତ, ଅତ୍ୟାଚାର ଏବଂ ସ୍ୱାର୍ଥପରତା ଯୋଗୁ ମହାରାଜ ଧନଞ୍ଜୟ ନାରାୟଣ ଭଞ୍ଜଙ୍କୁ ଅନେକ କର୍ମ ଭୋଗ କରିବାକୁ ହୋଇଥିଲା । 'ଭୃତ୍ୟାପରାଧେ ସ୍ୱାମିନଃ ଦଣ୍ଡଂ ହୋଇଥିଲା ।'

ମୁଁ ପୂର୍ବେ କହିଅଛୁ, ମହାରାଜାଙ୍କର ପ୍ରବଳ ଇଚ୍ଛା ଥିଲେ ମଧ୍ୟ କେବଳ କର୍ମଚାରୀ ଅଭାବରୁ ଅଧିକ କିଛି କରି ପାରି ପାରି ନାହାନ୍ତି । ମହାରାଜା ବିଶେଷ ଅଧ୍ୟୟନଶୀଳ ଥିଲେ । ବଙ୍ଗବାସୀ, ସଞ୍ଜୀବନୀ, ଦୀପିକା ପ୍ରଭୃତି ସମ୍ବାଦ ପତ୍ରିକାଗୁଡ଼ିକ ମନୋଯୋଗ ସହିତ ପାଠ କରୁଥିଲେ । ତାଙ୍କ ପାଠ ସକାଶେ ତତ୍କାଳ ପର୍ଯ୍ୟନ୍ତ ପ୍ରକାଶିତ ଅନେକ ଗୁଡ଼ିଏ ବଙ୍ଗଳା ଏବଂ ଉତ୍କଳ ପୁସ୍ତକ ତାଙ୍କ ପୁସ୍ତକାଳୟରେ ସଂଗୃହିତ ଥିଲା ।

ମହାରାଜା ଆନନ୍ଦପୁର ମୁକାମରେ ସାତ ଆଠ ଦିନ ମାତ୍ର ଥିଲେ । ଗଡ଼କୁ ବାହୁଡ଼ା ବିଜେ ସମୟରେ ମୋତେ ଡାକି ଆଜ୍ଞା କଲେ—"ଦେଖ ମାନେଜର ବାବୁ, ବୃଷ୍ଟିକାଳ ଅତିତ ପ୍ରାୟ, ଗଡ଼ରେ ପ୍ରତ୍ୟେକ ଲୋକର ଜ୍ୱର ହେବ । ତୁମ୍ଭେ ନିଜଗଡ଼କୁ ଗଲେ ନିଶ୍ଚୟ ଜ୍ୱର ହେବାର କଥା । ଅତଏବ ତୁମ୍ଭେ ଏହି ଆନନ୍ଦ-ପୁରରେ ରହିଯାଅ, ଏ ଦେଶର ଜଳବାୟୁ ସହ୍ୟ ହୋଇଗଲେ ଆସନ୍ତା ଶୀତ କାଳରେ ଗଡ଼କୁ ଯିବ ।" ମୋହର ମଧ୍ୟ ସେହିପରି ଇଚ୍ଛା ଥିଲା । ଈଶ୍ୱର ବାସନା ସଫଳ କଲେ । ମହାରାଜା ନିଜଗଡ଼କୁ ବାହୁଡ଼ା ବିଜେ କଲେ । ମୁଁ ଆନନ୍ଦପୁରରେ ରହିଗଲି । ଆନନ୍ଦପୁରଠାରୁ ନିଜଗଡ଼ ପ୍ରାୟ ବାବନ ମାଇଲ ଦୂର ।

ଆନନ୍ଦପୁର କଚେରୀଘର ବୈତରଣୀ ଉତ୍ତର କୂଳରେ । ସ୍ଥାନଟି ମନୋହର । କଚେରି ଘରର ପୂର୍ବ ଏବଂ ଉତ୍ତର ଦିଗରେ ଆନନ୍ଦପୁର ଗ୍ରାମ, କିନ୍ତୁ ବୈତରଣୀ କୂଳରେ ନିବିଡ଼ କଣ୍ଟାବାଉଁଶ ବଣ । ପଶ୍ଚିମପଟ କଚେରି ହତା ଲଗତଲ ପର୍ଯ୍ୟନ୍ତ ନିବିଡ଼ ଜଙ୍ଗଲ ।

ସମୟ ସମୟରେ ରାତିରେ କଚେରିଘର ତଳ ପର୍ଯ୍ୟନ୍ତ ବାଘ ଚରିବାକୁ ଆସୁଥିଲେ । କଚେରି ଘରଟାରୁ ବୈତରଣୀକୁ ସ୍ନାନ କରିବା ନିମନ୍ତେ ଛତା ଉଡ଼ାଇ ଯିବାକୁ ବାଟ ନ ଥିଲା; ସ୍ଥାନେସ୍ଥାନେ ଖାଲ ଯିବା ସମୟରେ ମଧ୍ୟ ବାଳିଶ କଣ୍ଟାରେ ଦେହଲୁଗା ଛିଦ୍ର ହୋଇଯାଏ । ମୋହର କର୍ମଭାର ଗ୍ରହଣ କରିବାର ଅଳ୍ପଦିନ ଉତ୍ତାରେ ନଦୀକୂଳସ୍ଥିତ ସମସ୍ତବଣ କଟାଇ ପୋଡ଼ି ପରିଷ୍କାର କରାଇଦେଲି । ପଶ୍ଚିମ ପଟ କଚେରିଘର ତଳତଳଠାରୁ ଅନେକ ଦୂର ପର୍ଯ୍ୟନ୍ତ ଜଙ୍ଗଲ କଟାଇ, ମୂଳ ତଡ଼ାଇ ବଗିଚା ପ୍ରସ୍ତୁତ କରାଇବାକୁ ଆରମ୍ଭ କରିଦେଲି । ଜଙ୍ଗଲ ମଧ୍ୟରୁ କେତୋଟି ଗୋକ୍ଷୁର ସାପ ମରାଗଲେ । ଦିନେ ସକାଳ-ଓଳି କେତେଜଣ ମୂଲିଆ ଜଙ୍ଗଲ କାଟୁଥିବା ସମୟରେ ଗୋଟାଏ ଅହିରାଜ ସାପ ଗୋଟାଏ ଠେକୁଆକୁ ଗୋଡ଼ାଇ ଆଣିଲା । ଠେକୁଆଟା ବଣ ମଧ୍ୟରୁ ପଳାଇ ଆସି ଜଙ୍ଗଲକଟାଳି ମୂଲିଆମାନଙ୍କ ପାଖରେ ପହଞ୍ଚିଗଲା । ପଛରେ ସାପ ଆଗରେ ମୂଲିଆ, ଠେକୁଆଟା ଦାବରେଇ ଯାଇ ଛିଡ଼ା ହୋଇଯିବା ମାତ୍ର ଅହିରାଜ ସାପଟା ତାକୁ କାମୁଡ଼ି ବଣକୁ ନେଇ ଗଲା । ଜଙ୍ଗଲ ପରିଷ୍କାର ଉତ୍ତାରେ କଲିକତାରୁ ନାନାପ୍ରକାର କଲମୀ ଆମ୍ବ, ଲିଚୁ, ଜାମରୋଳ, ପିଜୁଳି ଓ ପଣସ ଅଣାଇ ରୋପଣ କରାଗଲା । ବଗିଚାର ଏକ ଅଂଶରେ ଗୋଲାପ ଓ ଅନ୍ୟାନ୍ୟ ଜାତୀୟ ପୁଷ୍ପର କଲମ ଗଛ ଅଣାଇ ସ୍ୱତନ୍ତ୍ରରୂପେ ଗୋଟିଏ ସୁନ୍ଦର ପୁଷ୍ପୋଦ୍ୟାନ ପ୍ରସ୍ତୁତ କରାଗଲା । କୋବି, ମଟର, ଆଳୁ, ପୋଟଳ, କଦଳୀ, ପଳା ପଡ଼ିତ ଶାକ ସବଜିରେ ମଧ୍ୟ ଉଦ୍ୟାନ ପୂର୍ଣ୍ଣ ହୋଇଗଲା ।

ଆନନ୍ଦପୁର କଚେରି ଘରଟି ପକ୍କା ଦୋମହଲା— ନଦୀ କୂଳଠାରୁ ସୁନ୍ଦର ଦୃଶ୍ୟ । ମାତ୍ର ଘରଟା ଦରବନା ଅବସ୍ଥାରେ ପଡ଼ି ପୁରୁଣା କାନ୍ଥଡ଼ା ପରି ଛିଡ଼ା ହୋଇଥିଲା । ସଦର କଚେରୀରୁ ଆଦେଶ ଅଣାଇ ନିର୍ମାଣ କାର୍ଯ୍ୟ ଆରମ୍ଭ କରାଇ ଦେଲି । କଚେରିଘର ସମ୍ମୁଖ ବାରଣ୍ଡା ଭୂମିଠାରୁ ପ୍ରାୟ ପାଞ୍ଚ ଛ ଫୁଟ ଉଚ୍ଚ, ଆଗରେ ଆବରଣ ନ ଥିଲା । ରାତିରେ କିମ୍ବା ଅସାବଧାନତାରେ ମନୁଷ୍ୟ ଉପରୁ ତଳକୁ ପଡ଼ିଗଲେ ଗୋଡ଼ହାତ ଭାଙ୍ଗି ଯିବାର ସମ୍ଭାବନା । ଶୁଣିଲି ଥରେ ଗୋଟିଏ ଲୋକ ପଡ଼ିଯାଇ ଜଖମ ହୋଇଯାଇଥିଲା । କଲିକତାରୁ ଢଳା ଲୁହାର ରେଲିଂ ଅଣାଇ ବାରଣ୍ଡା ଧାରରେ ବସାଇ ଦେଲି ।

କଚେରି ସିରସ୍ତା ନିତାନ୍ତ ବିଶୃଙ୍ଖଳ ଥିଲା । ରୀତିମତ ରେଜେଷ୍ଟ୍ରୀ ବହି ନ ଥିଲା । ସେ ସମସ୍ତ ନୂତନରୂପେ ଗଠନ କରିବାକୁ ପଡ଼ିଲା । ସମନ, ଓଆରେଣ୍ଟ ପ୍ରଭୃତି ନାନାପ୍ରକାର ଫାରମ ବାଲେଶ୍ୱରରୁ ଛପାଇ ନେଇ ଚଳାଇଲି । ବର୍ଷକଉତ୍ତାରେ ମହାରାଜାଙ୍କ-ଠାରୁ ଅନୁମତି ଗ୍ରହଣ କରି ଆନନ୍ଦପୁରରେ ଗୋଟିଏ ପ୍ରେସ ସ୍ଥାପନ କଲି । ସେଥିରେ ଆନନ୍ଦପୁର କଚେରି ଏବଂ ସଦର କଚେରି ସକାଶେ ସମନ, ଏତଲାନାମା, ଅନ୍ୟାନ୍ୟ ଚିଠିପତ୍ର ଏବଂ କ୍ଷୁଦ୍ରକ୍ଷୁଦ୍ର ପୁସ୍ତକ ଛପା ହେବାକୁ ଲାଗିଲା ।

ଆନନ୍ଦପୁରରେ ଗୋଟିଏ ପକ୍କା ସ୍କୁଲ ଗୃହ ନିର୍ମାଣ ନିମନ୍ତେ ପ୍ରସ୍ତାବ କରିଥିଲି । ସେଥିରେ ସମସ୍ତ ଅମଲା ମୁକ୍ତାରମାନଙ୍କର ବିଶେଷ ସହାନୁଭୂତି ଥିଲା ଏବଂ ସେମାନଙ୍କ ଚେଷ୍ଟାରେ କେତେକ ଟଙ୍କା ଚାନ୍ଦା ମଧ୍ୟ ଉଠିଥିଲା, ମାତ୍ର ମୁଁ ଆନନ୍ଦପୁର ତ୍ୟାଗ କରି ଚାଲି ଆସିଲି ।

ମୋହର ମାନେଜରୀ ପଦର ନିଯୁକ୍ତିର ଅଳ୍ପ ଦିନ ପୂର୍ବରେ ଆନନ୍ଦପୁର ଇଲାକାରେ ଗୋଟିଏ ଫୌଜଦାରୀ ମାମଲା ଉପସ୍ଥିତ ହୋଇଥିଲା । ବାଦୀ କେଉଁଝର କଣ୍ଟା ଇଲାକାବାସୀ । ମୁଦାଲମାନଙ୍କ ଗୃହ ସୁକନ୍ଦା କଣ୍ଟା ଇଲାକାରେ । ସୁକନ୍ଦା ରାଜ୍ୟଟା କଣ୍ଟା-

ଜାତ, ସୁତରାଂ ମୋଗଲବନ୍ଦି ସାମିଲ । ଆନନ୍ଦପୁର ଇଲାକାର ଭାରପ୍ରାପ୍ତ କର୍ମଚାରୀ ଆସାମିମାନଙ୍କୁ କଚ୍ଛାବନ ହାଜତରେ ରଖିବା ଉତ୍ତାରେ ମହାରାଜ ବାହାଦୁର ଆସାମିମାନଙ୍କ ବାସସ୍ଥାନ ମୋଗଲବନ୍ଦି ଇଲାକାରେ ଥିବା ହେତୁରୁ ସେହି ମାମଲା ବିଚାର ନିମନ୍ତେ ଯାଜପୁର ସବ୍‌ଡିଭିଜନର ଭାରପ୍ରାପ୍ତ କର୍ମଚାରୀଙ୍କ ନିକଟକୁ ସମସ୍ତ ନଥି ସହିତ ଆସାମିମାନଙ୍କୁ ପଠାଇ ଦେଲେ । ଇତ୍ୟବସରରେ ମୁଁ ଯାଇ ଆନନ୍ଦପୁରଠାରେ ଉପସ୍ଥିତ ହେଲି । ମାମଲାର ଉକ୍ତ ସ୍ଥାନ ଗଡ଼ଜାତରେ ଥିବା ସ୍ଥଳରେ ସେ ମାମଲା ଆନନ୍ଦପୁର ଅଦାଲତରେ ବିଚାର୍ଯ୍ୟ ବିଷୟ ଥିଲା । ମହାରାଜା ବାହାଦୁର ଆପେ ଆପଣାର ଭ୍ରମ ବିଷୟ ବୁଝିପାରି ପଶ୍ଚାତ ଅନୁତପ୍ତ ହୋଇଥିଲେ; ମାତ୍ର ସେ ସମୟରେ ଭ୍ରମ ସଂଶୋଧନର ଉପାୟ ନ ଥିଲା । ଯାଜପୁରରେ ଉପସ୍ଥିତ ଥାଇ ସେହି ମାମଲା ଚଳାଇବା ସକାଶେ କେଉଁଝର ସଦର କଚେରୀରୁ ମହାରାଜାଙ୍କ ସ୍ୱାକ୍ଷରିତ ଆଦେଶ ପତ୍ର ପ୍ରାପ୍ତ ହୋଇ ଯାଜପୁର ଚାଲିଗଲି । କଟକରୁ ଦୁଇଜଣ ଓକିଲ ଅଣାଇ ମାମଲା ଚଳାଇବାକୁ ଲାଗିଲି । ଯାଜପୁର ଅଦାଲତର ବିଚାରରେ ଆସାମିମାନେ ମୁକ୍ତିଲାଭ କଲେ, ଅଧିକନ୍ତୁ ଆନନ୍ଦପୁର କର୍ମଚାରୀ ମୋଗଲବନ୍ଦି ପ୍ରଜାମାନଙ୍କୁ ଅନ୍ୟାୟ ରୂପେ ଅବରୋଧ କରି ରଖିଥିବା ଅପରାଧରେ ଅଭିଯୁକ୍ତ ହେଲେ । ମାମଲା କ୍ରମଶଃ ଚଳ ଅଦାଲତରୁ ଉଠି ହାଇକୋର୍ଟରେ ଉପସ୍ଥିତ । ମୁଁ କଲିକତାରେ ଉପସ୍ଥିତ ହୋଇ ଚାରିଜଣ ଓକିଲଙ୍କ ଦ୍ୱାରା ମାମଲା ଚଳାଇବାକୁ ଲାଗିଲି । ଗବର୍ଣ୍ଣମେଣ୍ଟଙ୍କ ତରଫରୁ ଜଣେ ଇଂରେଜ ବାରିଷ୍ଟର ଉପସ୍ଥିତ ଥିଲେ ।

କେତେକ ଦିନ ଯାଏ ହାଇକୋର୍ଟରେ ମାମଲା ଚଳିଲା ଉତ୍ତାରେ କେଉଁଝର ସପକ୍ଷରେ ଡିକ୍ରୀ ରାୟ ପ୍ରଚାରିତ ହେଲା । ହାଇକୋର୍ଟ ସୁସ୍ପଷ୍ଟ ରୂପେ ଆପଣା ରାୟରେ ଉଲ୍ଲେଖ କଲେ କି, 'ବ୍ରିଟିଶ ଅଦାଲତରେ ପ୍ରଚଳିତ କୌଣସି ପ୍ରକାର ଆଇନ କରଦ ମହାଲରେ ପ୍ରଚଳିତ ହେବା ଉଚିତ ନୁହେଁ ।' ମାମଲାର ରାୟ ଶୁଣି ମହାରାଜା ଅତ୍ୟନ୍ତ ଆନନ୍ଦିତ ହେଲେ । ସେହିଦିନଠାରୁ ମୋ ବେତନ ଉପରେ ମାସିକ କୋଡ଼ିଏ ଟଙ୍କା ବୃଦ୍ଧି ହେଲା । ଅନ୍ୟାନ୍ୟ କେତେକ ଗଡ଼ଜାତର ପ୍ରଜାମାନଙ୍କଠାରୁ ଧନ୍ୟବାଦ ସମ୍ବଳିତ ଅନୁଗ୍ରହ ପ୍ରାପ୍ତ ହେଲି । କରଦ ରାଜାମାନଙ୍କ ପକ୍ଷରେ ବ୍ରିଟିଶ ଗବର୍ଣ୍ଣମେଣ୍ଟଙ୍କ ଅଦାଲତରେ ପ୍ରଚଳିତ କେଉଁ କେଉଁ ଆଇନ କେତେଦୂର ମାନ୍ୟ, ଏ ବିଷୟରେ ସୁସ୍ପଷ୍ଟ ବିଧାନ କୌଣସି ସ୍ଥାନରେ ଉଲ୍ଲେଖ ନ ଥିବାରୁ ରାଜାମାନେ ଅନ୍ଧକାରରେ ଧନ୍ଦି ହେଉଥିଲେ । ସମ୍ପ୍ରତି ସେମାନେ ଆପଣା ଆପଣା କ୍ଷମତାର ସୀମା ସୁସ୍ପଷ୍ଟ ରୂପେ ବୁଝିବାକୁ କ୍ଷମ ହେଲେ । ସତର ଦଫା ନାମକ ବିଧାନରେ ସରକାର ବାହାଦୁରଙ୍କ ଆଦେଶ ଅଛି କି, 'ଗବର୍ଣ୍ଣମେଣ୍ଟ ପ୍ରତିଷ୍ଠିତ ଅଦାଲତରେ ପ୍ରଚଳିତ ଆଇନ କାନୁନ ପ୍ରଭୃତି ପ୍ରତି ଦୃଷ୍ଟି ରଖି କରଦ ରାଜାଗଣ ଆପଣା ଆପଣା ରାଜ୍ୟ ଶାସନ ବିଷୟରେ ମନୋଯୋଗୀ ହେବେ' ; ମାତ୍ର ଏଥିର ସୁସ୍ପଷ୍ଟ ଅର୍ଥ ଅନେକ ରାଜା ବୁଝିପାରୁ ନ ଥିଲେ । ପ୍ରଥମ ଅବସ୍ଥାରେ କରଦ ମହାଲର ରାଜାମାନଙ୍କ ହସ୍ତରେ ଅପରାଧିମାନଙ୍କୁ ଚରମ ଅର୍ଥାତ୍ ପ୍ରାଣଦଣ୍ଡ ଦେବାର କ୍ଷମତା ଅର୍ପିତ ଥିଲା । ନରସିଂହପୁରର ପୂର୍ବତନ କୌଣସି ଜଣେ ରାଜା କୌଣସି ଜଣେ ଅପରାଧୀକୁ ଢେଙ୍କିରେ କୁଟାଇ ପ୍ରାଣବଧ କରିଥିବା ଯୋଗୁଁ ନ୍ୟାୟପର ବ୍ରିଟିଶ ଗବର୍ଣ୍ଣମେଣ୍ଟ ସେହି ଶାସନ କ୍ଷମତା ରହିତ କରାଇ ଦେଇ ଅଛନ୍ତି । ମାତ୍ର ପଶ୍ଚିମାଞ୍ଚଳରେ ଅନେକ ଚିଫ୍ ଏବଂ ମୟୂରଭଞ୍ଜ ରାଜାଙ୍କ ହସ୍ତରେ ସେହି କ୍ଷମତା ରହିଅଛି ।

କେଉଁଝର ଏବଂ ଚ୍ଛୋଟନାଗପୁର ସୀମାନ୍ତ ସମ୍ବନ୍ଧରେ ବହୁ କାଳ ପୂର୍ବରୁ ବିବାଦ ଚାଲିଆସୁଥିଲା । ମୋହର କେଉଁଝର ମାନେଜରୀର ଦ୍ୱିତୀୟ ବର୍ଷରେ ସେହି ବିବାଦ ନିଷ୍ପତ୍ତି କରାଇବା ପାଇଁ କେଉଁଝର ମହାରାଜା ଏବଂ ନାଗପୁରର ଚିଫ୍ କମିଶନରଙ୍କ

ଡାକତ ହୁକୁମ ଆସିବାରୁ ସେହି ମାମଲା ଚଳାଇବା ସକାଶେ ମହାରାଜା ମୋ ପ୍ରତି ଭାରାର୍ପଣ କରିଥିଲେ । କେଉଁଝରର କେତେଗୁଡ଼ିଏ ଅପହୃତ ଜମି ଉଦ୍ଧାର କରାଇ ଆଣିବାରୁ ମହାରାଜା ମୋ ପ୍ରତି ଅତ୍ୟନ୍ତ ସନ୍ତୋଷ ପ୍ରକାଶ କରିଥିଲେ ।

( ଉ: ସା: ୨୦ଶ ଭାଗ—୧୨-୧୦ମ ସଂଖ୍ୟା )

———

୩୦

## କେଉଁଝର ପ୍ରଜାବିଦ୍ରୋହ

ମୋହର କେଉଁଝର ମାନେଜରୀର ତୃତୀୟ ବର୍ଷରେ କେଉଁଝରର ଭୟଙ୍କର ପ୍ରଜାବିଦ୍ରୋହ ଆରମ୍ଭ ହେଲା । ରାଜ୍ୟଶାସନ ସମ୍ବନ୍ଧରେ କେଉଁଝର ଦୁଇଭାଗରେ ବିଭକ୍ତ, ପୂର୍ବାଞ୍ଚଳ ଆନନ୍ଦପୁର ବିଭାଗ, ପଶ୍ଚିମାଂଶ କିଜଗଡ଼ ବିଭାଗ । ଆନନ୍ଦପୁର ବିଭାଗଟା କେଉଁଝରର ଭୂଷଣ ସ୍ୱରୂପ ଯାବନ୍ତ ସ୍ୱଚ୍ଛଳ କୃଷକ ବ୍ୟବସାୟୀ ମହାଜନମାନଙ୍କର ନିବାସ । ମଧ୍ୟଭାଗରେ ବୈତରଣୀ ପ୍ରବାହିତ ହେଉଥିବାରୁ ଭୂମି ଉର୍ବର । ଏହି ଅଂଶରେ ଅପେକ୍ଷାକୃତ ବନ ପର୍ବତ ବିରଳ । ପଶ୍ଚିମାଞ୍ଚଳରେ ଯାବନ୍ତ ଭୂୟାଁ—ଅପେକ୍ଷାକୃତ ଅଳ୍ପ-ସଂଖ୍ୟକ କୃଷକ ଶ୍ରେଣୀୟ ଲୋକଙ୍କ ନିବାସ ।

ମୁଁ ଆନନ୍ଦପୁର ଇଲାକାର ଭାରପ୍ରାପ୍ତ କର୍ମଚାରୀ ଥିଲି । ଆଉ ଜଣେ ଆସିଷ୍ଟାଣ୍ଟ ମାନେଜର ମଧ୍ୟ ଥିଲେ । ସବୁ ବିଷୟରେ ରାଜ୍ୟର ଆଦାୟ ବେଶି । ସନ ୧୮୯୧ ମସିହାରେ ପ୍ରଜାବିଦ୍ରୋହ ଉପସ୍ଥିତ ହୋଇଥିଲା । ଏହି ବିଦ୍ରୋହ ସହିତ ଆନନ୍ଦପୁର ପ୍ରଜାଗଣ ସମ୍ପର୍କଶୂନ୍ୟ ଥିଲେ । ମୁଁ ମଫସଲ ଗସ୍ତକୁ ଯାଇ ଆନନ୍ଦପୁର କଚେରିଠାରୁ ପ୍ରାୟ ପାଞ୍ଚମାଇଲ ଦୂର ବୈତରଣୀ କୂଳବର୍ତ୍ତୀ ନୂଆଗଡ଼ ଗ୍ରାମ ନିକଟସ୍ଥ ଗୋଟିଏ ଆମ୍ବ ତୋଟାରେ ଡେରା ପକାଇ ରହିଥିଲି । ପ୍ରାୟ ରାତି ଏଗାରଟା ସମୟରେ ଆହାରାଦି ସାରି ତମ୍ବୁ ବାରନ୍ଦାରେ ଗୋଟିଏ ଆରାମ ଚୌକିରେ ବସି ନଦୀର ଶୀତଳ ବାୟୁ ସେବନ କରୁଥାଏଁ, ଏମନ୍ତ ସମୟରେ କେଉଁଝର ଗଡ଼ରୁ ଦୁଇଜଣ ଦୌଡ଼ ପାଇକ ମହାରାଜାଙ୍କର ଖଣ୍ଡିଏ ଗୋପନୀୟପତ୍ର ଧରି ମୋ ନିକଟରେ ଉପନୀତ ହେଲେ । କେଉଁଝରର ପ୍ରଜା-ବିଦ୍ରୋହ ବିବରଣ ସଂକ୍ଷେପତଃ ସେହି ପତ୍ରରେ ଉଲ୍ଲେଖ ଥିଲା । ସେହିକ୍ଷଣି ଡେରା ଭଙ୍ଗାଇ ମୁଁ ଆନନ୍ଦପୁରକୁ ଚାଲି ଆସିଲି ।

ପରଦିନ ପ୍ରାତଃକାଳଠାରୁ ପ୍ରତିଦିନ ଦୌଡ଼ ପାଇକ ଯୋଗେ ମହାରାଜାଙ୍କଠାରୁ ଦୁଇ ତିନିଖଣ୍ଡ ପତ୍ର ପାଉଥାଏଁ । ପତ୍ରରେ ଅନ୍ୟାନ୍ୟ ବିଷୟ ସହିତ ଆନନ୍ଦପୁର ଇଲାକାରୁ ଅନେକ ପରିମାଣରେ ପାଇକ କିଜଗଡ଼କୁ ପଠାଇବାର ଆଦେଶ ଥାଏ । ପ୍ରତି ମୁହୂର୍ତ୍ତରେ କିଜଗଡ଼ରୁ ସମ୍ବାଦ ନେବା ଓ ଆନନ୍ଦପୁର ଇଲାକାରୁ ପାଇକ ସଂଗ୍ରହକରି କିଜଗଡ଼କୁ ପଠାଇବା ବର୍ତ୍ତମାନ ମୋହର କାର୍ଯ୍ୟ । କିଜଗଡ଼ ସଦର କଚେରିଠାରୁ ଆନନ୍ଦପୁର କଚେରି ପର୍ଯ୍ୟନ୍ତ ଡାକ ଚଳାଚଳ ବନ୍ଦ; ମେଳିଆମାନେ ଦିନକରି ଡାକ ଚିଠିପୂର୍ଣ୍ଣ ଥଳୀ ଲୁଟିକରି ନେଲେଣି; ବାଟରେ ସ୍ଥାନେ ସ୍ଥାନେ ମେଳିଆମାନଙ୍କର ଜଗୁଆଳ ଘାଟି ବସି ଯାଇଛି; ବଣ ବାଟରେ ଗୋପନ ଭାବରେ ପାଇକମାନଙ୍କ ଦ୍ୱାରା ଚିଠି ଯାତାୟାତ ହେଉଥାଏ ।

ତୃତୀୟ ଦିବସ ରାତି ୯ ଘଣ୍ଟା ସମୟରେ ମୋହର ଦୈନିକ କାର୍ଯ୍ୟ ସମାପ୍ତ କରି ଆହାର କରିବା ନିମନ୍ତେ ଯିବାକୁ ପ୍ରସ୍ତୁତ—ଏମନ୍ତ ସମୟରେ ସ୍ୱୟଂ ଶ୍ରୀଯୁକ୍ତ ମହାରାଜା, ଆସିଷ୍ଟାଣ୍ଟ ମେନେଜର ବିଚିତ୍ରାନନ୍ଦ ଦାସ ଓ କେତେଜଣ ବିଶ୍ୱାସୀ ପାଖଲୋକ ସହିତ ତିନିଗୋଟା

ହାତୀରେ ଆନନ୍ଦପୁର କଚେରୀଠାରେ ଉପସ୍ଥିତ । ହାତୀଗୁଡ଼ିକ ଖୁବ୍ ଭୋରରୁ ନିଜ ଗଡ଼ରୁ ବାହାରି ଅନେକ ସ୍ଥଳରେ ଅବାଟରେ ବଣେ ବଣେ ଘୂରି ଘୂରି ଜଣ ଆରୋହୀଙ୍କୁ ପୃଷ୍ଠୋପରି ଧାରଣକରି ଯଥାଶକ୍ତି ଦ୍ରୁତ-ଗତିରେ ବାବନ ମାଇଲ ପଥ ଅତିକ୍ରମକରି ଆସିଅଛନ୍ତି । ପଶୁଗୁଡ଼ିକ ମୁମୂର୍ଷୁ ପ୍ରାୟ, ଆରୋହୀମାନଙ୍କ ଅବସ୍ଥା ତତୋଽଧିକ ଶୋଚନୀୟ । ଗ୍ରୀଷ୍ମକାଳ, ଦିନ ଯାକ ବିନ୍ଦୁମାତ୍ର ଜଳ ସ୍ପର୍ଶ ନାହିଁ, ମୁଣ୍ଡ ଉପରେ ପ୍ରଚଣ୍ଡ ଖରା, ହାତୀର ଝଙ୍କରେ ଦେହ ଗୋଟାକ ଖଞ୍ଜା ଜାଗା ଯେମନ୍ତ ଶିଥିଳ ହୋଇଗଲାଣି । ମହାରାଜା ଏବଂ ଅନ୍ୟ ସମସ୍ତ ଆରୋହୀ ହାତୀରୁ ଓହ୍ଲାଇ ତଳେ ପଡ଼ିଗଲେ, ସେମାନଙ୍କୁ ବିଶ୍ରାମ କରିବାକୁ ଘଣ୍ଟାକରୁ ଅଧିକ ସମୟ ପ୍ରୟୋଜନ ହେଲା । ମୋ ବସାରେ ଏବଂ ଅନ୍ୟାନ୍ୟ ଅମଲାମାନଙ୍କ ବସାରେ ଅନ୍ନ ବ୍ୟଞ୍ଜନ ପ୍ରସ୍ତୁତ ଥିଲା । ମହାରାଜାଙ୍କ ଗହଣରେ ଆସିଥିବା ଲୋକମାନେ ଭୋଜନ କଲେ । ମହାରାଜାଙ୍କ ଖିଆ ସକାଶେ ଚଞ୍ଚଳ ବନ୍ଦୋବସ୍ତ କରାଇ ଦିଆଗଲା ।

ମହାରାଜା, ମୁଁ ଏବଂ ଅନ୍ୟ ଦୁଇ ତିନି ଜଣ ଲୋକ ବସି କର୍ତ୍ତବ୍ୟ ନିର୍ଦ୍ଧାରଣ ନିମନ୍ତେ ଆଲୋଚନା କରିବାକୁ ଲାଗିଲୁଁ । ସ୍ଥିର ହେଲା, ମହାରାଜା ଆନନ୍ଦ-ପୁରରେ ରହିବେ, ମୁଁ କଟକ ଯାଇ ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କୁ ପ୍ରଜାମେଳି ବିଷୟ ଜଣାଇ ସର୍ଦ୍ଦାର ମେଳିଆମାନଙ୍କୁ ଧରିବା ସକାଶେ ପୋଲିସ ସାହାଯ୍ୟ ଆଣିବି । ପରଦିନ ସକାଳେ ହାତୀରେ ଚଢ଼ି କଟକ ଯିବା ସକାଶେ ବାହାରିଲି । ସେହିଦିନ ରାତିରେ କେଉଁଝର ଜମିଦାରୀ କଣ୍ଠାଝରି କଚେରିଘରେ ରହିବାକୁ ପଡ଼ିଲା । ଦ୍ୱିତୀୟ ଦିନ ଦିବା ୪ ଘଣ୍ଟା ସମୟରେ ବ୍ରାହ୍ମଣୀ ନଦୀ ନିକଟ ଦୁଲଡିହା ଲକ୍ଠାରେ ହାତୀକୁ ବିଦାୟ ଦେଇ ଇଷ୍ଟିମାରରେ ଚଢ଼ି ତୃତୀୟ ଦିନ ପ୍ରାତଃକାଳ ୯ ଘଣ୍ଟା ସମୟରେ କଟକରେ ଉପସ୍ଥିତ ହେଲି । ପ୍ରଥମେ ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ରାୟ ନନ୍ଦକିଶୋର ଦାସ ବାହାଦୁରଙ୍କୁ ସମସ୍ତ ହାଲ ଜଣାଇ ସୁପରିଣ୍ଟେଣ୍ଡେଣ୍ଟ ମୂନଗୀ ସାହେବଙ୍କ ସହିତ ସାକ୍ଷାତ୍ କରିବାକୁ ଗଲି ।

ସୁପରିଣ୍ଟେଣ୍ଡେଣ୍ଟ ସାହେବ ମୋହର ସମସ୍ତ କଥା ଶୁଣି କ୍ରୋଧରେ ଅସ୍ଥିର ହୋଇ ପଡ଼ିଲେ, ଏଡ଼େ ବଡ଼ ପଦସ୍ଥ ଲୋକ ଅସମ୍ଭାଳ ଭାବରେ ଚୌକିରୁ ଉଠି ପଡ଼ି କାମରା ଏଣେ ତେଣେ ଦୌଡ଼ି ବୁଲି ବୁଲି କହୁଥାନ୍ତି — "ଆଚ୍ଛା ହେଲା, ଭଲ ହେଲା, ରାଜା ଯେପରି ଅତ୍ୟାଚାରୀ, ଗବର୍ଣ୍ଣମେଣ୍ଟଙ୍କ ହୁକୁମ ଅମାନ୍ୟକାରୀ, ସେହିପରି ଦଣ୍ଡ ଭୋଗ କରନ୍ତୁ, ଆମ୍ଭେ କିଛି ମାତ୍ର ସାହାଯ୍ୟ କରିବୁ ନାହିଁ ।" ମୁଁ ସ୍ପଷ୍ଟରୂପେ ବୁଝିଲି, ମୋ ଉପସ୍ଥିତି ପୂର୍ବରୁ ସାହେବ ପ୍ରଜାମେଳି ଘଟିତ ସମସ୍ତ ବିବରଣ ଶୁଣିଥିଲେ । ଏଥିର ସଠିକ ବୃତ୍ତାନ୍ତ ପରେ ଉଲ୍ଲେଖ କରିବି । ଯେ ସ୍ଥଳରେ ସେ ଚୌକିରୁ ଉଠିପଡ଼ି ଘର ଭିତରେ ଧାଁ ଦଉଡ଼ରେ ଲାଗି ଅଛନ୍ତି, ମୋହର ଚୌକିରେ ବସି ରହିବାର ଆୟତ କାହିଁ ? ସାହେବ ଟିକିଏ ନିବୃତ୍ତ ହେବାରୁ ମୁଁ ଖୁବ୍ ଧୀର ଭାବରେ ଖୁବ୍ ବିନୟ ସହକାରେ ଜଣାଇଲି, "ହଜୁର ! କେଉଁଝର ମହାରାଜା ଚିରକାଳ ଗବର୍ଣ୍ଣମେଣ୍ଟଙ୍କ ଆଦେଶ ପାଳନ-କାରୀ, ଏ ବିଷୟ ସରକାରୀ କାଗଜପତ୍ରରେ ପ୍ରକାଶିତ ଅଛି, ହଜୁର ଅନୁଗ୍ରହ କରି କାଗଜ ପତ୍ର ଅନୁସନ୍ଧାନ କଲେ ସହଜରେ ମୋ କଥାର ସତ୍ୟତାର ପ୍ରମାଣ ପାଇବେ; ଆଉ ହଜୁର ଆଜ୍ଞା କରୁଅଛନ୍ତି, ରାଜା ଅତ୍ୟାଚାରୀ—ଏ ସମ୍ବନ୍ଧରେ ମୁଁ ଦୃଢ଼ରୂପେ କହିପାରେ, ମହାରାଜାଙ୍କ ଅତ୍ୟାଚାର ସମ୍ବନ୍ଧରେ କି କେଉଁଝର ପ୍ରଜା, କି ନିସମ୍ପର୍କୀୟ ବାହାରର ଲୋକ, କେହି ହେଲେ ଗୋଟିଏ ପ୍ରମାଣ ଦେବାକୁ ସମର୍ଥ ହେବେ ନାହିଁ । ବର୍ତ୍ତମାନ ଯେଉଁ ପ୍ରଜାବିଦ୍ରୋହ ଉପସ୍ଥିତ, ଏଥିରେ କିଲ୍ଲାର ଅନ୍ୟାନ୍ୟ ପ୍ରଜାଙ୍କର ସମ୍ପର୍କ ନାହିଁ, କେବଳ ଭୂୟାଁ ଜାତୀୟ ପ୍ରଜାମାନେ ଗୋଳଯୋଗ ଆରମ୍ଭ କରି ଅଛନ୍ତି । ସେମାନେ ଦୁଷ୍ଟପ୍ରକୃତିର ଲୋକ, ସମୟ ସମୟରେ ମେଳି କରିବା ସେମାନଙ୍କର ସ୍ୱଭାବ,

ମହାରାଜାଙ୍କ ଅତ୍ୟାଚାର ଯୋଗୁ ପ୍ରଜାମେଳ ହୋଇଥିଲେ ସମସ୍ତ ପ୍ରଜା ଏକତ୍ରିତ ହୋଇଥାନ୍ତେ ।

ବର୍ତ୍ତମାନ ବିଦ୍ରୋହୀ ପ୍ରଜା ସଂଖ୍ୟା ଅଳ୍ପମାତ୍ର, ମହାରାଜା ଅତି ସହଜରେ ସେମାନଙ୍କୁ ଦମନ କରିବାକୁ ସମର୍ଥ, ମାତ୍ର ମହାରାଜା ହଜୁରଙ୍କୁ ମୁରବି ସ୍ୱରୂପ ଜାଣନ୍ତି—ହଜୁରଙ୍କ ଉପଦେଶ ଏବଂ ସାହାଯ୍ୟ ବିନା ସେ କିଛି କର୍ମ କରିପାରୁ ନାହାନ୍ତି, ସେଥି ସକାଶେ ମତେ ହଜୁରଙ୍କଠାକୁ ପଠାଇ ଅଛନ୍ତି, ବିଶେଷରେ ଭୂୟାଁ ଜାତି ନିତାନ୍ତ ବଣୁଆ ମୂର୍ଖ ଏବଂ ହାଣ୍ଡିଆଖିଆ—ସାମାନ୍ୟ କଥାରେ ମଧ୍ୟ କାଣ୍ଡ କରିବାକୁ ଟଳାଇଥାନ୍ତି; ରକ୍ତପାତ ହେଉ, ଏହା ମହାରାଜାଙ୍କର ଇଚ୍ଛା ନୁହେ । ଏଥି ସକାଶେ ମହାରାଜାଙ୍କର ଇଚ୍ଛା, ହଜୁର ଶହେ ଜଣ କନଷ୍ଟବଲ ସାହାଯ୍ୟ ଦେଲେ ବଣୁଆ ଲୋକେ ସେମାନଙ୍କୁ ଦେଖି ଭୟରେ ପଳାଇଯିବେ, ସହଜରେ ବିଦ୍ରୋହର ଶାନ୍ତି ହୋଇଯିବ ।”

ସୁପରିଣ୍ଟେଣ୍ଡେଣ୍ଟ ଟେମ୍ପୁନଜୀ ସାହେବ କିଛିକ୍ଷଣ ଶାନ୍ତଭାବରେ ଚୌକିରେ ବସି କଣ ଭାବିଲେ, ତହିଁ ଉତ୍ତାରେ କହିଲେ, “ଆଚ୍ଛା ବାବୁ, ଆମ୍ଭେ ବାଲେଶ୍ୱର ଜିଲ୍ଲାର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଗାପୁସ ସାହେବଙ୍କୁ ଲେଖିବୁ, ସେ ଶହେ ଜଣ କନଷ୍ଟବଲ ଧରି ତୁମ୍ଭଙ୍କୁ ସାହାଯ୍ୟ ଦେବା ସକାଶେ କେଉଁଝର ଯିବେ, ତୁମ୍ଭେ ବର୍ତ୍ତମାନ ରୋକ୍‌ସୋତ୍ ହୋଇପାର ।”

ମୁଁ ଖୁବ୍ ଧନ୍ୟବାଦ ଦେଇ ମୁଣ୍ଡ ଖୁବ୍ ଝୁଙ୍କାଇ ସଲାମ କରି ବିଦାୟ ଗ୍ରହଣ କଲି ।

ସାହେବଙ୍କ ସହିତ ଯାହା କିଛି କଥୋପକଥନ ଏବଂ ବନ୍ଦୋବସ୍ତ ହେଲା, ନନ୍ଦକିଶୋର ବାବୁଙ୍କୁ ଜଣାଇ ଦେଇ ସେହି ମୁହୂର୍ତ୍ତରେ କଟକ ପରିତ୍ୟାଗ କଲି । ପରଦିନ ସନ୍ଧ୍ୟା ସମୟରେ କଟକରୁ ଆସି ମୁଁ ଝାଙ୍ଗି ମୁକାମରେ ପହଞ୍ଚିଛି, ଠିକ୍ ସେହି ସମୟରେ ମହାରାଜା ମଧ୍ୟ କେତେଜଣ ମାତ୍ର ନୌକର ସଙ୍ଗରେ ଦେନ ଆନନ୍ଦପୁରଠାରୁ ଆସି ସେହି ଝାଙ୍ଗିରେ ଉପସ୍ଥିତ । କଟକ ସମ୍ବାଦ ମୋଠାରୁ ସମସ୍ତ ଶ୍ରବଣ କଲେ । କଥା ହେଲା, ସେତେବେଳେ ଏତେଦୂର ଆସିଅଛନ୍ତି, ସାହେବଙ୍କ ସହିତ ସାକ୍ଷାତ କରି ଯିବା ଉଚିତ ।

ପରଦିନ କଟକରେ ନନ୍ଦକିଶୋର ବାବୁଙ୍କ ଘରଠାରେ ଉପସ୍ଥିତ ହେଲୁଁ । ଉପସ୍ଥିତ ଘଟଣା ସମ୍ବନ୍ଧରେ ନାନାପ୍ରକାର ଆଲୋଚନା ଉତ୍ତାରେ କର୍ତ୍ତବ୍ୟ ସ୍ଥିର ହେଲା—ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ଏବଂ ଚିଫ୍ ସେକ୍ରେଟେରି କଟନ୍ ସାହେବଙ୍କୁ ବିଦ୍ରୋହର ସଂକ୍ଷିପ୍ତ ବିବରଣ ଟେଲିଗ୍ରାଫ ଦ୍ୱାରା ଜଣାଇ ଅଧିକା ପୁଲିସ ସାହାଯ୍ୟ ପ୍ରାର୍ଥନା କରାଗଲା । ସେହି ଟେଲିଗ୍ରାଫରେ ଉଲ୍ଲେଖ କରାଗଲା—‘ବିଦ୍ରୋହ ସାମାନ୍ୟ, କେବଳ ରକ୍ତପାତ ନିବାରଣ ନିମନ୍ତେ ସୈନ୍ୟ ପ୍ରାର୍ଥନା କରାଯାଉଅଛି ।’ ତହିଁ ଉତ୍ତାରେ ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କ ସହିତ ସାକ୍ଷାତ୍ କରିବାର କଥା । ମହାରାଜା କେବଳ ଖଣ୍ଡେ ଧୋତି ଓ ଗୋଟିଏ କୁରୁତା ପିନ୍ଧି କଟକ ଯାଇଥିଲେ । ସଙ୍ଗରେ ଆଉ କୌଣସି ପଦାର୍ଥ ନ ଥିଲା । ମହାରାଜା କହିଲେ, “ଆମ୍ଭେ ଏହିପରି ଅବସ୍ଥାରେ ଯାଇ ସାହେବଙ୍କ ସହିତ ସାକ୍ଷାତ କରିବୁଁ, ସାହେବ ଦେଖନ୍ତୁ, ପ୍ରଜାମାନେ ଆମ୍ଭଙ୍କୁ କିପରି ଅବସ୍ଥାରେ ରଖିଅଛନ୍ତି ।” ମୁଁ କହିଲି, ଆଃ ! ଏ କଣ ଆଜ୍ଞା କରୁଅଛନ୍ତି ? ସାହେବ ଯେ ହଜୁରଙ୍କୁ ଭୀରୁ, ପ୍ରଜାଙ୍କୁ ଡରି ପଳାଇ ଆସିଛି ବୋଲି କହିବେ । ଖୁବ୍ ସାହସ ସହିତ କଥା କହିବେ, ଏହି ପ୍ରଜାବିଦ୍ରୋହକୁ ଗ୍ରାହ୍ୟ କରୁ ନାହାନ୍ତି, ଏହିପରି ଭାବ ପ୍ରକାଶ କରିବେ । ନନ୍ଦକିଶୋର ବାବୁ, ମହାରାଜା ଏବଂ ମୁଁ ଏହି ତିନିଜଣ ନିର୍ଜନରେ ବସି କଥୋପକଥନ

କରୁଥିଲୁଁ, ନନ୍ଦକିଶୋର ବାବୁ ମୋ କଥା ଶୁଣି ମୁରୁକି ମୁରୁକି ହସୁଥାନ୍ତି । ମହାରାଜା ସାହେବଙ୍କ ସହିତ ସାକ୍ଷାତ କରିବାକୁ ଯିବେ, ଉପଯୁକ୍ତ ପୋଷାକ ଦରକାର । ନନ୍ଦକିଶୋର ବାବୁ ତାଙ୍କ ଅର୍ଦ୍ଦଳିକୁ ପଠାଇ ସେହି ସ୍ଥାନକୁ ଜଣେ ଦରଜି ଅଣାଇଲେ, ମହାରାଜାଙ୍କ ଦେହର ମାପ ନେଲା—ସେଦିନ ସନ୍ଧ୍ୟାସରିକି ପୋଷାକ ତିଆରି କରାଇଦେବ ବୋଲି କବୁଲ କରିଗଲା ।

ଦରଜି ବାହାରି ଗଲା ଉତ୍ତାରେ ଆମ୍ଭେମାନେ ତିନିଜଣ ନନ୍ଦକିଶୋର ବାବୁଙ୍କ ଦପ୍ତରଖାନା କୋଠରିରେ ବସି କଥୋପକଥନ କରୁଥାଉଁ, ଠିକ ସେହି ସମୟରେ ଅାମ୍ଭମାନଙ୍କ ମାନନୀୟ ମଧୁସୂଦନ ଦାସ ପହଞ୍ଚିଗଲେ । ମଧୁବାବୁଙ୍କୁ ଦୂରରୁ ଆସୁଥିବାର ଦେଖି ମହାରାଜାଙ୍କୁ ଭୁନି ଭୁନି କହିଲି, "ଆମ୍ଭମାନଙ୍କ ପରାମର୍ଶ ଭିତରକୁ ମଧୁବାବୁଙ୍କୁ ଆଣିଲେ ଭଲ ହେବ । ଏ ଉତ୍ତାରେ ଏଥି ସମ୍ବନ୍ଧରେ କଟକରେ ଅନେକ କାର୍ଯ୍ୟ ଉପସ୍ଥିତ ହେବ—ଆମ୍ଭମାନଙ୍କ ଓକିଲ ସ୍ୱରୂପ ସେ ସମସ୍ତ କାର୍ଯ୍ୟ କରିବେ, ବିଶେଷରେ ମାଲି ମକଦ୍ଦମା ସମୟରେ ତାଙ୍କ ସାହାଯ୍ୟ ପରାମର୍ଶ ନିତାନ୍ତ ଅବଶ୍ୟକ ହେବ ।" ନନ୍ଦକିଶୋର ବାବୁ ମହାରାଜାଙ୍କୁ କହିଲେ— "ହଁ, ମୁଁ ମଧ୍ୟ ସେହି କଥା ଅପଣଙ୍କୁ କହିବାକୁ ଯାଉଥିଲି, ଫକୀରମୋହନ ବାବୁଙ୍କ ପ୍ରସ୍ତାବ ଅନୁସାରେ କାର୍ଯ୍ୟ କରାଯାଉ ।"

ମାନନୀୟ ମଧୁସୂଦନ ବାବୁ କେଉଁଝର ତରଫରୁ ଓକିଲାତିରେ ନିଯୁକ୍ତ ହେଲେ—ବିଦ୍ରୋହର ସମସ୍ତ ବିବରଣ ମଧୁବାବୁଙ୍କୁ କହିଲି ।

ପରଦିନ ପ୍ରାତଃକାଳରେ ମୁଁ ଏବଂ ମହାରାଜା କମିଶନର ଟ୍ୟୁନବୀ ସାହେବଙ୍କ କୋଠିକୁ ଗଲୁଁ । ସାହେବଙ୍କ ଖାସ ଦପ୍ତରଖାନାକୁ ଆମ୍ଭମାନଙ୍କୁ ତଲବ ହେଲା । ଅାମ୍ଭେମାନେ ସଲାମ କରି ସାହେବଙ୍କ ସମ୍ମୁଖରେ ଯୋଡ଼ାଏ ଚୌକିରେ ବସିବା ମାତ୍ରକେ ସାହେବ ଯେମନ୍ତ ଖୁବ୍ କ୍ରୋଧଟାକୁ ସମ୍ଭାଳି ନେଇ ମୁହଁ ତଳକୁ କରି କହିଲେ—

"ରଜାସାହେବ, ଗଡ଼ରେ ରାଣୀସାହେବ ଆଉ ପିଲା ସ୍ତ୍ରୀ ଲୋକମାନଙ୍କୁ ନିରାଶ୍ରୟ ଭାବରେ ବିଦ୍ରୋହୀ-ମାନଙ୍କ ହସ୍ତରେ ପକାଇ ଦେଇ ଆପଣ ଉପୁରେ କଟକ ପଳାଇ ଆସି ଅଛନ୍ତି, ଏ କପରି କଥା ?"

ମହାରାଜା ସାହେବଙ୍କ କଥାର ଉତ୍ତର ଦେବା ପୂର୍ବରୁ ମୁଁ ଚଞ୍ଚଳ କହି ପକାଇଲି—"ନାହିଁ ହଜୁର, ଗଡ଼ରେ ଉପଯୁକ୍ତ ପ୍ରହରୀ ଅଛନ୍ତି । ବିଶେଷରେ ଗଡ଼ ଚତୁର୍ଦ୍ଦିଗରେ ବିଶ୍ୱାସୀ ପ୍ରଜାମାନଙ୍କ ଗ୍ରାମ, ବିଦ୍ରୋହୀମାନେ ଗଡ଼କୁ ଅନାଇ ମଧ୍ୟ ପାରିବେ ନାହିଁ ।" ସାହେବ କ୍ରୁଦ୍ଧ ନେତ୍ରରେ ମୋତେ ଅନାଇ ରହିଲେ ।

ବିଦ୍ରୋହ ସମ୍ବନ୍ଧରେ କଥୋପକଥନ ହେଲା । ଇତ୍ୟବସରରେ ଗବର୍ଣ୍ଣମେଣ୍ଟ ତରଫ ସେକ୍ରେଟେରୀଙ୍କଠାରୁ ଟେଲିଗ୍ରାଫ ଆସି ପହଞ୍ଚିଲା । ଅବଶେଷରେ ସ୍ଥିର ହେଲା—କେଉଁଝର ଯିବା ସକାଶେ ବାଲେଶ୍ୱର ଜିଲ୍ଲାର ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ରାଇସ୍ ସାହେବଙ୍କ ପ୍ରତି ଟେଲିଗ୍ରାଫ ଆଦେଶ ହୋଇଥିଲା, ତାହା ରହିତ କରାଯିବ । ଦୁଇଶତ ମିଲିଟାରୀ ପୋଲିସ ସହିତ ଜାନ୍‌ସନ୍ ସାହେବ ଖୁର୍ଦ୍ଦବସା ବାଟରେ ଗଡ଼ରକ୍ଷା କରିବା ସକାଶେ ଆସିବେ ।

କଟକରୁ ବିଦାୟ ଗ୍ରହଣ କରି ମୁଁ ଆଉ ମହାରାଜା ଦୁଇଜଣ ଆସି ଆନନ୍ଦପୁରରେ ଉପସ୍ଥିତ ହେଲୁଁ । ଆନନ୍ଦପୁର ଇଲାକାରୁ ପାଇକ ସଂଗ୍ରହ କରିବାକୁ ଗୋଟାଏ ଦିନ ଗଲା । ଶନିବାର ପ୍ରାତଃକାଳ ପୂର୍ଣ୍ଣ ବାରବେଳା ସମୟରେ ପ୍ରାୟ ତିନିଶତ ପାଇକ ଧରି

ମହାରାଜା କେଉଁଝରର ନିଜଗଡ଼ ଅଭିମୁଖରେ ଯାତ୍ରା କଲେ । ଆନନ୍ଦପୁର ଠାରୁ ପ୍ରାୟ ଚାରିକୋଶ ଦୂର କେଉଁଝରର ବାଟରେ ଗୋଟାଏ ଗିରିନଦୀ ବା ଜୋର—ଜୋରର ଦୁଇ କୂଳ ଜଙ୍ଗଲପୂର୍ଣ୍ଣ—ସେ ସ୍ଥାନରୁ ଅଳ୍ପ-ଦୂରରେ ଗ୍ରାମ । ପୂର୍ବ ଆଦେଶ ଅନୁସାରେ ଜୋର ପୂର୍ବକୂଳ ଏକ ସ୍ଥାନରେ ଜଙ୍ଗଲ କାଟି ହୋଇ ପରିଷ୍କାର କରାଯାଇ ଯୋଡ଼ାଏ ଡାଳ ଗୁମ୍ଫୁଡ଼ିଆ ଘର ପ୍ରସ୍ତୁତ ହୋଇଥିଲା । ନିକଟବର୍ତ୍ତୀ ଗ୍ରାମ ପ୍ରଧାନମାନେ ରସଦ ସରଞ୍ଜାମ ପ୍ରସ୍ତୁତ କରିଥିଲେ । ସେହି ସ୍ଥାନରେ ଶ୍ରୀଯୁତଙ୍କ ପୂର୍ବାହ୍ନିକ ମଣ୍ଡ ବଢ଼ିଲା । ଆମ୍ଭେମାନେ ଗହଣ ଲୋକେ ମଧ୍ୟ ସ୍ନାନାହାର ସାରିଲୁଁ ।

ବାରଟା ଉପରେ ପୋଡ଼ାକ ସମୟରେ ମହାରାଜାଙ୍କ ଦରବାର ବସିଲା—ପାର୍ଶ୍ୱବର୍ତ୍ତୀ ଗ୍ରାମମାନଙ୍କରୁ ପଧାନ ଏବଂ ପ୍ରଧାନ ପ୍ରଧାନ ପ୍ରଜା ଏବଂ ମଫସଲ କର୍ମଚାରୀମାନେ ଉପସ୍ଥିତ । ଯଥାସମ୍ଭବ ବିଦ୍ରୋହୀମାନଙ୍କ ଗତିବିଧି କାର୍ଯ୍ୟକଳାପର ସମ୍ବାଦ ସଂଗ୍ରହ କରାଗଲା । ତହିଁ ଉତ୍ତାରେ ମହାରାଜା ଆଜ୍ଞା କଲେ—ଦିନ ଥାଉଁ ଥାଉଁ ପାଇକେ ଆଉ ଆଉ ଗହଣ ଲୋକେ ବେଗେଇ କରି ଭୋଜନ କରିନିଅ, ସନ୍ଧ୍ୟା ଆରମ୍ଭ ମାତ୍ରକେ ନିଜଗଡ଼ ଦିଗକୁ ଯାତ୍ରା ଆରମ୍ଭ କରାଯିବ ।

ମୁଁ ଜଣାଇଲି—"ଆଜ୍ଞା ! ଆଜି ରାତିରେ ଯାତ୍ରା ଆରମ୍ଭ କରିବା ଉଚିତ ନୁହେ । ଶୁଣାଯାଉଛି ବିଦ୍ରୋହୀ ଭୂୟାଁମାନେ ତୀର ତରବାରି ଧରି ପଞ୍ଝାକୁ ପଞ୍ଝା ବଣ ମଧ୍ୟରେ ବୁଲୁଅଛନ୍ତି, ଅନ୍ଧକାରରେ ସେମାନଙ୍କ ଭିତରେ ବାଟରେ ଯିବା ଯୁକ୍ତିଯୁକ୍ତ ବୋଲି ବୋଧ କରୁନାହିଁ । ରାତି ଯାତ୍ରା ରହିତ କରାଯାଉ, କାଲି ସକାଳୁ ଯାତ୍ରା ଆରମ୍ଭ କରିବା ।" ଅନେକ ଦିନ ହେଲା ଗଡ଼ ଛାଡ଼ି ଆସିଅଛନ୍ତି, ନଅର ଭିତର ଅବସ୍ଥା କିଛି ଜଣାଗଲା ନାହିଁ, ଏଥିକୁ ଖୁବ୍ ଶୀଘ୍ର ଗଡ଼ରେ ପହଞ୍ଚିବାକୁ ଇଚ୍ଛା—ମୋ ପ୍ରସ୍ତାବ ଅଗ୍ରାହ୍ୟ ହେଲା । ମୁଁ ଦ୍ୱିତୀୟଥର ଜଣାଇଲି—"ତେବେ ଅଳ୍ପସଂଖ୍ୟକ ପାଇକ ଧରି ମୁଁ ଆଗରେ ଯାଏଁ, ବାଟର ଅବସ୍ଥା ବୁଝି ପାଇକଦ୍ୱାରା ଜଣାଉଥିବି, ଦୁଇ ତିନି କୋଶ ପଛରେ ରହି ମହାରାଜାଙ୍କ ଗହଣ ଚାଲୁଥିବେ ।" ଏ ପ୍ରସ୍ତାବ ମଧ୍ୟ ଅଗ୍ରାହ୍ୟ ହେଲା ।

ସନ୍ଧ୍ୟା ଦୀପ ଜଳିଉଠିବା ମାତ୍ରକେ ଅମ୍ଭମାନଙ୍କ ଯାତ୍ରା ଆରମ୍ଭ ହେଲା । ସର୍ବାଗ୍ରେ ମହାରାଜାଙ୍କ ହାତୀ, ତାଙ୍କ ପଛରେ ମୋ ହାତୀ, ମୋ ପଛରେ କେତେକ ଜଣ ଅମଲାଙ୍କ ହାତୀ, ହାତୀମାନଙ୍କ ପଛରେ ପ୍ରାୟ ତିନିଶତ ଶ୍ରେଣୀବଦ୍ଧ ପାଇକ ।

ଅନ୍ଧକାର ରାତି—ବାଟ ଅନେକ ସ୍ଥାନରେ ଏକପଦିଆ ଆବଡ଼ାଆବଡ଼ା—ଉଞ୍ଚ ଖାଲ; ପୁଣି ଢେର ଜାଗାରେ ଦୁଇପାଖ ଡାଳ ଝୁଙ୍କି ପଡ଼ିଥିବାରୁ ବାଟ କିଛିମାତ୍ର ହେଲେ ଦିଶୁନାହିଁ । ଏପରି ବାଟରେ ଦିନ ବେଳେ ମଧ୍ୟ ବାଟକୁ ଚାହିଁ ନ ପାରିଲେ ଝୁଣ୍ଟି—ହାବୁଡ଼ି ଅଣ୍ଟୋଇ ତଳେ ପଡ଼ିଯିବା ସହଜ କଥା ।

ପାଇକଗୁଡ଼ିକ ବୁଢ଼ା ନିର୍ଜୀବା, କେଜାଣି ଅଧାଅଧି ଅନ୍ଧାରକଣା । ସହଜରେ ତ ରାଜାଙ୍କର ବେଠିକୁ ଭେଣ୍ଡିଆ ପାରିଲା ଲୋକ କେହି ଯାଏ ନାହିଁ । ବୁଢ଼ା ରୋଗା ଯେଉଁଟା ଘରକାମ ପାଇଟିକୁ ଅଯୋଗ୍ୟ, ସେଇଟା ରାଜାଙ୍କ ଘର ବେଠିକୁ ଯାଏ । ଆଜି ପୁଣି ପ୍ରଜାବିଦ୍ରୋହ ଉପସ୍ଥିତ, ବନ୍ଧୁକ ତରବାରି ଧରି ଯିବା ସକାଶେ ସରକାରରୁ ହୁକୁମ ଆସିଅଛି—ହାଣକାଟ ହେବାର କଥା—ଘରର ଭେଣ୍ଡିଆ ଯୋଗା ପାଇକଟିଆ ପୁଅଟା କଣ ହାଣକାଟ ଜାଗାକୁ ଯିବ ? ବୁଢାଟା ଯାଉ । ବୁଢ଼ା ପାଇକଙ୍କ ମୁଣ୍ଡରେ ଦୋହରି ଚିରା ଖଦି ଖଣ୍ଡ ବା ଗାମୁଛାଖଣ୍ଡ ଗୁଡ଼ିଆ— କାନ୍ଧ ଉପରେ ଦଶ ସେରିଆ ସାଢ଼େ ତିନିହାତ ଲମ୍ବ ତୋଡ଼ାଦାର

ବନ୍ଧୁକ— ଅଣ୍ଟାରେ ତରବାରି ଝୁଲୁଛି—ହାତରେ ଖଣ୍ଡେ ଠେଙ୍ଗା—ପିଠିରେ ଦଶଦିନର ଦିନ ସକାଳେ ଖାଇବା ଭଳି ଦଶଦିନର ସେରି ଗୁଡ଼ଲ ଭିତରେ ଖଣ୍ଡେ ଚିଡ଼ଲ ସହିତ ଟଙ୍କୁଣୀଟିଏ ମିଶି ବୋକଚାଟିଏ ଅଣ୍ଟାକରି ଭିଡ଼ା ହୋଇଅଛି—ଏହି ବେଶରେ ଏର ପାଇକେ ସେହି ଅନ୍ଧାରିଆ ବାଟରେ ବାଡ଼ଗୁଡ଼ିବ ମାରି ବାଟ ଠଉରାଇ ଚାଲିଅଛନ୍ତି । ମଝିରେ ଗୋଟିଏ ପାଇକ ହାବୁଡ଼ ମୁହଁମାଡ଼ ଚଳେ ପଡ଼ିଗଲେ ତ, ପଛ ପାଇକ-ଶ୍ରେଣୀ ତାହା ଜାଣିବା ଯାଏ ପଞ୍ଚମିନିଟ ଛିଡ଼ା ହୋଇଗଲେ—ହାତୀମାନେ ଦୁଇଶ ହାତ ଆଗକୁ ବାହାରି ଗଲେଣି ତ, ପାଇକଶ୍ରେଣୀ ଶଏହାତ ପଛରେ ପଡ଼ି ରହିଅଛନ୍ତି । ପାଇକମାନଙ୍କୁ ଛାଡ଼ି ହାତୀମାନେ ଆଗେଇ ଯାଇ ପାରିବେ ନାହିଁ, ହାତୀ ଉପରୁ ଡାକ ପଡ଼ିଲା, ଅରେ କନଷ୍ଟବଲମାନେ, ଚଞ୍ଚଳଚାଲ—ପାଇକଦଳକୁ ଅଡ଼ାଇ ନେବା ପାଇଁ ପାଞ୍ଚ ସାତ ଜଣ କନଷ୍ଟବଲ ନିଯୁକ୍ତ ଥିଲେ । କୋଶେବାଟ ମଧ୍ୟରେ ହାତୀ ଗୁଡ଼ାକ ଚାଳିଶ ପଚାଶ ଜାଗା ଛିଡ଼ା ହେଲେଣି । ଏପରିଭାବରେ ଚାଲିଲେ କେଣେ ବାଟ ଛିଡ଼ିବ ? ପରାମର୍ଶ ହେଲା, ସବୁ ହାତୀ ପଛରେ ରହିବେ, ପାଇକଶ୍ରେଣୀ ଆଗରେ ଚାଲିବେ । ସେହିପରି ହେଲା—ବୋକଚା ପିଠିଆ ପାଇକଶ୍ରେଣୀ ନଇଁ ନଇଁ କଇଁଛ ପରି ଧୀରେ ଧୀରେ ଆଗରେ ବାଟ ବାଛି କରି ଚାଲିଅଛନ୍ତି, ହାତୀମାନଙ୍କୁ ସହଜରେ ଚାଲିବା ସକାଶେ ବାଟ କାହିଁ ? ପଛ ପାଇକକୁ ତଡ଼ା ଦେଲେ ମଧ୍ୟ ଚଞ୍ଚଳ ଚାଲିବାକୁ ଅଯୋଗ୍ୟ କାହିଁ ? ଏକପଦିଆ ବାଟ—ଆଗ ପାଇକେ ଯେ ବାଟ ବାଛି କରି ଚାଲିଅଛନ୍ତି । ପଛ ପାଇକଙ୍କୁ ଟିକିଏ ତଡ଼ା ଦେବାପାଇଁ ହାତୀମାନଙ୍କୁ ସେମାନଙ୍କ ପିଠି ଲଗାଲଗି ଟିକିଏ ପାଖକୁ ଚଳାଇ ଦେଲେ ସେମାନେ ବ୍ୟସ୍ତ ହୋଇ ଧାଇଁଯାଇ ଆଗ ପାଇକମାନଙ୍କ ଉପରେ ପଡ଼ିଯିବାରୁ ଗୁଡ଼ାଏ ପାଇକ ଦୁଲଦାଲ ହୋଇ ଭୂଇଁରେ ପଡ଼ିଯାନ୍ତି । ଚାଲିବା ସକାଶେ ଏ ନିୟମଟା ବି ସୁବିଧାଜନକ ହେଲା ନାହିଁ । ଅବଶେଷରେ ସ୍ଥିର କରାଗଲା, ମହାରାଜାଙ୍କ ସବାରି ହାତୀ, ଆଉ କର୍ମଚାରୀମାନଙ୍କ ହାତୀ ଏ ଦୁଇ ହାତୀ ଆଗରେ ଚାଲିବେ—ସମସ୍ତଙ୍କ ପଛରେ ମେନେଜରଙ୍କ ହାତୀ ରହିବ । ହଜୁରଙ୍କ ହାତୀ ପିଛୁଲାଗି ଚାଲିବା ସକାଶେ ଆଗ ପାଇକମାନଙ୍କୁ ବିଶେଷରୂପେ ଆଦେଶ କରାଗଲା । ପଛ ପାଇକମାନଙ୍କ ତତ୍ତ୍ୱ ନେବାପାଇଁ ପଛରେ ମେନେଜରଙ୍କ ହାତୀ ଚାଲିବାକୁ ଲାଗିଲା । ଏଇଟା ଅବଶ୍ୟ ପୂର୍ବଠାରୁ ସୁବିଧାଜନକ ହେଲା । ଯାହାହେଉ ଏହାଛଡ଼ା ଅନ୍ୟ ଉପାୟ ନାହିଁ । ଏହିପରି ନବରଙ୍ଗ ଚାଲିରେ ଅର୍ଦ୍ଧରାତ୍ରି ସରକ ଦାଣ୍ଡପାଖ ଗୋଟିଏ ବଣୁଆ ଜାତି ଗାଁ ମୁଣ୍ଡରେ ପହଞ୍ଚିଲୁଁ । ମୁଁ ଦେଖିଲି, ପଦାତିଦଳ ଲୋକଗୁଡ଼ାକ ଦରମଲା ପରି ହୋଇ ପଡ଼ିଲେଣି । ବାଟ ଚାଲିବାକୁ ଅଧିକାଂଶ ଲୋକ ଅକ୍ଷମ । ସେମାନଙ୍କର ଅପରାଧ କ'ଣ ? ବୁଢ଼ା ବିଚରାଗୁଡ଼ିକ ଦିନଯାକ ପାଞ୍ଚ ଛ' କୋଶ ଚାଲିଥିଲେ, ପୁଣି ସଞ୍ଜବେଳେ ପେଟେ ପେଟେ ଭାତ ଖାଇ ପିଠିରେ ଭାରୀ ବୋକଚାଟିଏ ବାନ୍ଧି ଅନ୍ଧାର ମଧ୍ୟରେ ଅଦୃଶ୍ୟ ବାଟରେ ଚାଲିଅଛନ୍ତି, ପଥର ଝିଙ୍କି ଝିଙ୍କି ଢେର ଲୋକଙ୍କ ଗୋଡ଼ ଆଙ୍ଗୁଳି ଛିଣ୍ଡିଯାଇ ସେଥିରୁ ରକ୍ତ ବହିଲାଣି । ମହାରାଜାଙ୍କୁ ଜଣାଇ ବିଶ୍ରାମ କରିବା ସକାଶେ ଅଧଘଣ୍ଟାଏ ପାଇଁ ସେମାନଙ୍କୁ ସମୟ ଦିଆଗଲା । ହୁକୁମ ପାଇବା ମାତ୍ରକେ ଯେ ଯେଉଁଠାରେ ଛିଡ଼ା ହୋଇଥିଲା, ଠିକ୍ ସେହି ସେହି ଜାଗାରେ ଲଡ଼୍ କରି ଭୂଇଁରେ ଶୋଇପଡ଼ିଲେ—ପିଠିରେ ବୋକଚା ସେହିପରି ଅଛି, କାନ୍ଧ ବନ୍ଧୁକଟାମାନଙ୍କୁ ପାଖରେ ଶୁଆଇଦେଲେ, ତଳେ କଣ୍ଟା କି କାକରଭିଜା ଘାସବଣ, ସେଥିକି କାହାରି ଲକ୍ଷ୍ୟ ନାହିଁ । ମୁଁ ମଧ୍ୟ ନିତାନ୍ତ କାତର ହୋଇ ପଡ଼ିଥିଲି—ବଡ଼ ନିଦ ମଧ୍ୟ ମାଡ଼ୁଥାଏ । ହାତୀ ଉପରୁ ଓହ୍ଲାଇ ପଡ଼ି ଗୋଟାଏ କାକରଭିଜା ଆବଡ଼ାଖାବଡ଼ା ପଥର ଉପରେ ଶୋଇପଡ଼ିଲି । ସେହି ପଥର ଉପରୁ ଗେବ ପରି ଗୋଟାଏ ଗୋଟାଏ ପିଠିରେ ବେକରେ ଗୋଡ଼ରେ ବାଜି କାଟୁଥାଏ । ରାମ ! ରାମ ! ସେପରି ପଥର

ଉପରେ ପଡ଼ଲେ କଣ ନଦ ମାଡ଼େ । ଏକଡ଼ ସେକଡ଼ ଦୁଇ ଗୃହଥର ଗଡ଼େଇ ପଡ଼େଇ ହୋଇ ଉଠିବସିଲି । ଅନ୍ଧକାରରେ ଦିଶୁ ନ ଥାଏ; ମାତ୍ର ନିଶ୍ୱାସ ବାର ଜାଣିଲି, ଢେର ଲୋକ ଏଥିମଧ୍ୟରେ ନଦେଇ ଗଲେଣି । ମୋ ପ୍ରାର୍ଥନାରେ ମହାରାଜା ଅଧଘଣ୍ଟା ସକାଶେ ବିଶ୍ରାମ ପାଇଁ ସମୟ ଦେଇଥିଲେ ସତ; ମାତ୍ର ତାଙ୍କର ଇଚ୍ଛା ନୁହେଁ—ଚାଲ—ଚାଲ—ଚାଲ, କୌଣସି ରୂପେ ଗଡ଼ରେ ଚଞ୍ଚଳ ପହଞ୍ଚ ଯାଉଁ । ଅଧଘଣ୍ଟା ଉତ୍ତାରେ ମହାରାଜାଙ୍କର ହୁକୁମ ହେଲା, ଉଠ—ଚାଲ । ଆଗ ବନ୍ଦୋବସ୍ତ ପରି ହାତୀମାନେ ଆଗିଲା ପିଛିଲାରେ ରହି ଚାଲିଲେ, ମଧ୍ୟରେ ପାଇକଶ୍ରେଣୀ । ସବୁଦିନ ପରି ଆଜି ବି ରାତି ପାହିଗଲା—ଆମ୍ଭମାନଙ୍କୁ ବୋଧହେଲା, ଯେମନ୍ତ କେତେ ଅନ୍ଧକାରମୟ, କେତେ କଷ୍ଟକର, କେତେ ଅସରନ୍ତିଆ ରାତି ଭିତରୁ ବାହାରି ହଠାତ୍ ଗୋଟିଏ ସୁଖମୟ ରାଜ୍ୟରେ ପଡ଼ିଗଲୁଁ । ଗତକାଲି ସନ୍ଧ୍ୟାଯାକ ସମୟଠାରୁ କେହି କାହାରି ମୁଖ ଦେଖି ନ ଥିଲେ କିମ୍ବା କାହାରି ମୁହଁରୁ କଥା ପଦେ ବାହାରି ନ ଥିଲା । ପରସ୍ପର ମୁହଁ ଚାହାଁଚାହିଁ ହୋଇ କଥା ବୋଲାବୋଲି ହେବାରୁ ସମସ୍ତଙ୍କ ମନରେ ଯେମନ୍ତ ଗୋଟାଏ ଭରସା ଜାତ ହେଲା ।

୧୮୯୧ ମସିହା ମଇମାସ ୧୩ ତାରିଖ ରବିବାର ପୂର୍ବାହ୍ନ ଆଠଘଣ୍ଟା ସମୟରେ ଆମ୍ଭେମାନେ ଘଟଗ୍ରାମ ନାମକ ଗ୍ରାମରେ ଉପସ୍ଥିତ ହେଲୁଁ । କେଉଁଝରର ବାଟରେ ଏହା ଗୋଟାଏ ମୁକାମ ଜାଗା । ପାଖ ଲୋକମାନଙ୍କ ସହିତ ମହାରାଜା ସରକାରୀ ଘରେ ରହିଲେ । ମାନେଜର ରହିବା ସକାଶେ ସ୍ୱତନ୍ତ୍ର ଗୋଟାଏ ଘର ପ୍ରସ୍ତୁତ ଥିଲା । ପାଇକମାନେ ଦାଣ୍ଡପାଖ ଆମ୍ବତୋଟାରେ ପଡ଼ିଗଲେ । ପୂର୍ବ ଆଦେଶ ଅନୁସାରେ ପାଖ ଗ୍ରାମମାନଙ୍କରୁ ପଧାନମାନେ ରସଦ ସରଞ୍ଜାମ ହାଣ୍ଡି କାଠ ଧରି ପ୍ରସ୍ତୁତ ଥିଲେ, ଅଳ୍ପକ୍ଷଣ ବିଶ୍ରାମ ଉତ୍ତାରେ ସମସ୍ତଙ୍କର ପେଟପୂଇବାର କାର୍ଯ୍ୟ ଆରମ୍ଭ ହୋଇଗଲା । ମହାରାଜାଙ୍କର ଇଚ୍ଛା—ଯେତେ ରାତି ହେଉ ଯେପରି ହେଉ, ଆଜି ଗଡ଼ରେ ପହଞ୍ଚିବାକୁ ହେବ ।

ଦିନ ପ୍ରାୟ ଏଗାରଟା ସମୟ, ଝୋଲାଘରେ ମହାରାଜାଙ୍କ ଠାକୁରଙ୍କ ଠାଁ ସକାଶେ ଉରିଆ ବଢ଼ା ହେଲାଣି, ମହାରାଜା ଆଉ ଗୋଟିଏ ଟମ୍ବୁଘରରୁ ଦେବାର୍ଚ୍ଚନ ବଢ଼ାଇ ଝୋଲାଘରକୁ ବିଜେ ହେବା ସକାଶେ ବାହାରି ଆସିଲେ, ମୁଁ ବାଟରେ ଛିଡ଼ା ହୋଇଥିଲି, ଦୁଇଜଣଙ୍କ ମଧ୍ୟରେ କଥାଭାଷା ଚାଲିଅଛି, ଠିକ୍ ଏମନ୍ତ ସମୟରେ ଯୋଡ଼ାଏ ଧାଉଡ଼ ପାଇକ ଅବାଟରେ ବଣ ପର୍ବତ ମଧ୍ୟରେ ରାତିଯାକ ବୁଲି ବୁଲି ନିଜଗଡ଼ ମୁକାମରୁ ଖଣ୍ଡେ ଭାଷା ଆଣି ମହାରାଜାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ପାଇକମାନଙ୍କ ହାତରୁ ମୁଁ ଭାଷାଖଣ୍ଡ ନେଇ ପଢ଼ି ମହାରାଜାଙ୍କୁ ଶୁଣାଇଲି । ଭାଷାର ମର୍ମାର୍ଥ ଏହି—

"ମଇ ମାସ ୧୨ ତାରିଖ ଶନିବାର ସନ ୧। ୯୧ ନିଜଗଡ଼—ଆଜି ସକାଳଓଳି ବେଳ ଛ ଘଡ଼ି ସମୟ ପ୍ରାୟ ପାଞ୍ଚଶତ ଭୂୟାଁ ଆସି ଗଡ଼ ଘେରିଥିଲେ, ଗଡ଼ ଭିତରକୁ ପଶିବା ସକାଶେ ଉଦ୍ୟୋଗ କରିବାରୁ ଆମ୍ଭେମାନେ ଗଡ଼ ପାଚିରି ଉପରେ ଥାଇ ବନ୍ଧୁକ ଫାଏର କଲୁଁ । ଭୂୟାଁମାନେ ଭୟରେ ପଳାଇଯାଇ ରାଇସୁଆଁ ମୁକାମରେ ଅଡ଼ା ବାନ୍ଧି ରହିଅଛନ୍ତି ।"

ମହାରାଜା ପତ୍ର ଶୁଣିବା ମାତ୍ର ଖୁବ୍ ଉଚ୍ଚୈଃସ୍ୱରରେ ଡାକଦେଲେ—"ମାହୁନ୍ତ, ହାତୀ କଷ—ହାତୀ କଷ ।"

ମହାରାଜା ଝୋଲାଘରକୁ ନ ଯାଇ ପୋଷାକ ଲାଗି ସକାଶେ ଭିତରକୁ ବାହାରିଗଲେ । ମୁଁ ଠାଁ ଜାଗାରେ ସ୍ଥିରହୋଇ ଛିଡ଼ା ହୋଇ ରହିଥାଏଁ । ମହାରାଜା ପୋଷାକ ଲାଗି ହୋଇ ଚଞ୍ଚଳ ବାହାରି ଆସି ମୋ

ମୁହଁକୁ ଚକିତ ଭାବରେ ଅନାଇଲେ । ମୁଁ ଦୃଷ୍ଟିରୁ ଅନୁମାନ କଲି, ମହାରାଜା ପ୍ରଶ୍ନ କରୁଅଛନ୍ତି, ତୁମେ ଲୁଗା ପିନ୍ଧିବାକୁ ଏତେ ଡେରି କରୁଅଛ କିଆଁ ? ମୁଁ ହାତଯୋଡ଼ି ବିନୟ ସହକାରେ କହିଲି, "ଆଜ୍ଞା, ଆମ୍ଭେମାନେ ତ ପଳାଇଯିବା, ଗଡ଼ରେ ରାଣୀସାହେବା, ଜେମାମଣିମା, ଶିଶୁ ରାଜକୁମାରମାନଙ୍କ ମାନ ଇଜ୍ଜତ ଓ ପ୍ରାଣରକ୍ଷା କରିବାକୁ କିଏ ରହିଲା ? ହଜୁର ଆନନ୍ଦପୁରକୁ ବାହୁଡ଼ି ଯାଉନ୍ତୁ, ମୁଁ ଗଡ଼କୁ ଯାଉଅଛି ।" ମହାରାଜା ଚଞ୍ଚଳ ଭାବରେ କହିଲେ, "ଆଚ୍ଛା ତେବେ ଗଡ଼କୁ ଯାଅ ।" ମୁଁ କହିଲି, "ଆଜ୍ଞା ଶଠି ତ ଶୁଣିଲେ, ଭୂୟାଁମାନେ ଗଡ଼ ଘେରି ରହିଅଛନ୍ତି, ସେମାନେ କଣ ସହଜରେ ମୋତେ ବାଟ ଛାଡ଼ି ଦେବେ ? ମୋତେ ଆଜ୍ଞା ହେଉ, ସେମାନେ ଯଦି ମୋତେ ମାରିବାକୁ ଆସିବେ, ସେମାନଙ୍କ ସହିତ ଯୁଦ୍ଧକରି ହତ୍ୟା କରିପାରିବି ।"

ଲିଖିତ ଆଦେଶ ପ୍ରୟୋଜନ; ମାତ୍ର ଦୁଆତ କଲମ କାଗଜ ନାହିଁ । ଖଣ୍ଡେ ତାଳପତ୍ରରେ ଲେଖି ଦେଲେ, ସେଥିର ସଂକ୍ଷିପ୍ତ ବିବରଣ ଏହି—

"ଭୂୟାଁମାନେ ତୁମ୍ଭସହିତ ଯୁଦ୍ଧ କରିବାକୁ ଆସିଲେ ତୁମ୍ଭେ ସେମାନଙ୍କୁ ହତ୍ୟା କରି ପାରିବ ।"

ମହାରାଜା ବାହାଦୁର ସେହି ଅନାହାର ଅବସ୍ଥାରେ ହାତୀ ଚଢ଼ି ଚଞ୍ଚଳ ଆନନ୍ଦପୁରକୁ ବାହୁଡ଼ିଗଲେ । ପାଇକମାନଙ୍କୁ ଧରି ମୁଁ ସେହି ଘଟଗ୍ରାମରେ ରହିଗଲି । ମୋ ପକ୍ଷରେ ବର୍ତ୍ତମାନ ଦାରୁଣ ସଙ୍କଟ ସମୁପସ୍ଥିତ । ଏହି ମହାରାଜାଙ୍କ ଗଦିନସିନ ହେବା ସମୟରେ ଭୂୟାଁମାନେ ମେଳକରି କେଉଁଝରର ପ୍ରଧାନ କର୍ମଚାରୀ ଦେବାନଙ୍କୁ ହତ୍ୟା କରିଥିଲେ । ମୁଁ ବର୍ତ୍ତମାନ କେଉଁଝର ଜିଲ୍ଲାର ପ୍ରଧାନ କର୍ମଚାରୀ । ମୋତେ ହାତରେ ପାଇଲେ ସେ ହତ୍ୟା କରିବେ, ଏହା ନିଶ୍ଚିତ କଥା । ହେଉ, ମୋହର ପାଇକ ଅଛନ୍ତି, ମରିବା ତ ଯୁଦ୍ଧକରି ମରିବା । ଘରେ ସଂସାରର ଅବସ୍ଥାନଙ୍କ ଅଲ୍ପବୟସ୍କା ନିରାଶ୍ରୟା ସ୍ତ୍ରୀ, ଶିଶୁ ସନ୍ତାନ, ବିପକ୍ଷମଣ୍ଡଳୀ ବେଷ୍ଟିତ ହୋଇ ରହିଅଛନ୍ତି, ସେମାନଙ୍କ ପ୍ରତିପାଳକ ରକ୍ଷାକାରୀର ଅଭାବ, ସେ ବିଷୟ ସମ୍ବନ୍ଧରେ ଚିନ୍ତାମାତ୍ର ମଧ୍ୟ ମନରେ ସ୍ଥାନ ପାଉନାହିଁ, ଏକମାତ୍ର ଲକ୍ଷ୍ୟ— ଯେପରି ହେଉ, ରାଜପରିବାରକୁ ରକ୍ଷା କରିବାକୁ ହେବ ।

ଯୁଦ୍ଧ ଉପସ୍ଥିତ, ପାଇକମାନଙ୍କୁ ସମୟୋଚିତ କାର୍ଯ୍ୟପ୍ରଣାଳୀ ଶିକ୍ଷାଦେବା ଏବଂ ଅସ୍ତ୍ରଶସ୍ତ୍ର ପରୀକ୍ଷା କରିବା ସକାଶେ ସେମାନଙ୍କୁ ଶ୍ରେଣୀବଦ୍ଧ କରି ଛିଡ଼ା କରାଇ ଦେଖିଲି, ପାଇକ ସଂଖ୍ୟା ପ୍ରାୟ ତିନିଶତ; ସେମାନଙ୍କ ଅସ୍ତ୍ରଶସ୍ତ୍ର ଦେଖିଲି । ହା ଅଦୃଷ୍ଟ ! ଏ କ'ଣ ରେ ! ତିନିଶ ମଧ୍ୟରୁ ପ୍ରାୟ ଦୁଇଶ ବନ୍ଧୁକ ଫଟା ଦରଭଙ୍ଗା—କେଉଁଠାର ଅଧାଅଧି, କେଉଁଠାର ପାଭାଗ ଭାଙ୍ଗି ପଡ଼ିଲାଣି । ବାକି ନଳଗୁଡ଼ାକର ଭିତରେ ବାହାରେ ଅଧ ଆଙ୍ଗୁଳିଏ ଭଲି ମରିଚା ବସିଅଛି, ତେର ନଳର ମରିଚା ବସି ରଞ୍ଜକ ଛିଦ୍ର ବୁଜି ଗଲାଣି । ତହିଁ ଉପରେ ଗୁଳି ବାରୁଦ— ବାରୁଦ ଦାନ; ଅର୍ଥାତ୍ ବାରୁଦ ରଖା ନଡ଼ିଆ କୁରୁଙ୍ଗ ଅଣ୍ଟାରେ ପଛ ଆଡ଼କୁ ଝୁଲୁଅଛି । କୁରୁଙ୍ଗରେ ଟେକେ ଦୁଇ ଟେକ, ଅତି ଅଧିକ ଚାରି ଟେକରୁ ବଳି ବାରୁଦ ନାହିଁ । ଅଣ୍ଟିରେ ଯୋଡ଼ାଏ ତିନିଟା ଅଡବଳ କାହା କାହା ଅଣ୍ଟିରେ ବା ପାନ-ବଟୁଆରେ ସୀସା ଗୁଳି ରହିଅଛି । ଅନେକ ଲୋକଙ୍କ ବନ୍ଧୁକ କୁନ୍ଦାରେ ରଞ୍ଜକ ବଳତା ମଧ୍ୟ ଝୁଲୁ ନାହିଁ । ପ୍ରାୟ ସମସ୍ତଙ୍କ ତରବାରି ମରିଚାଧରା ଦରଦରା । ପାଇକ-ମାନେ ଜବାବ ଦେଲେ— ଆଜ୍ଞା, ଚଞ୍ଚଳ ଚାଲି ଆସିବାକୁ ଆଜ୍ଞା ହେବାରୁ ଦାରୁ ପେଶି ପାରିଲୁଁ ନାହିଁ, ଗୁଳି ବଳିବାକୁ ମଧ୍ୟ ବେଳ ନ ଥିଲା । ଏଣେ କାହା ପଣ ଗୋସେଇଁ ବାପ ଆଉ ଅଣନିଜ ବାପ ଏହି ବନ୍ଧୁକ ଧରି ମରହଟ୍ଟା ସାଙ୍ଗରେ ଲଢ଼େଇ କରିଥିଲେ, ପଠାଣ ଲଢ଼େଇ ଜଣିଥିଲେ, ଏକଥା ମନରେ ଅଛି,

ଗବଂଶ ବ ଏଣ୍ଟୁ । ଉକ୍ତର ଗୁଣା ଗୁଣ ଅନେକ ଅଧସ୍ତନ ପୁରୁଷ ପର୍ଯ୍ୟନ୍ତ ନିଜ ଧର୍ମ ପ୍ରକାଶ କରିଥାଏ । ଗୁଡ଼ାଏ ସାହସୀ ପାଇକ ଆଗୁଆ ବାହାରି ଚଡ଼ କହିଲେ— "ଆପଣ ଆଜ୍ଞା ଦେଇ ଠିଡ଼ା ହୋଇଥିବେ, ଦେଖି ଆଜ୍ଞାହେବେ, ଏହି ଭଙ୍ଗା ଚରବାଗରେ, ବନ୍ଧୁକ କୁନ୍ଦାରେ ହାଣି ବାଡ଼େଇ ଭୂୟାଁଙ୍କୁ ଗଦା କରିଦେବୁ ।"

ସତକୁ ସତ ସେମାନଙ୍କ ମଧ୍ୟରେ ସାହସୀ, ବୁଦ୍ଧିମାନ ପାଇକ ଥିଲେ, ଉପଯୁକ୍ତ ଶିକ୍ଷା ଓ ଅସ୍ତ୍ର ପାଇଲେ ଯୁଦ୍ଧ-କ୍ଷେତ୍ରରେ ସହାୟ ହୋଇ ପାରନ୍ତେ । ପାଇକମାନଙ୍କ କଥା ଶୁଣି ମୋହର କିଞ୍ଚିତ ସାହସ ହେଲା,ଭୟ ବି ମାଡ଼ିଲା । ଯାହାହେଉ ଅଗ୍ରସର ହେବାକୁ ହେବ; ମାତ୍ର ଉପସ୍ଥିତ ପାଇକମାନଙ୍କ ପ୍ରତି ନିର୍ଭର କରି ନିଶ୍ଚିନ୍ତ ହୋଇ ପାରୁ ନାହିଁ । ମନରେ ପଡ଼ିଲା, ଗଡ଼ରେ ଅନେକ ପାଇକ ଜମା ଅଛନ୍ତି, ଥୋକେ ପାଇକ ଗଡ଼ରୁ ବାହାରି ବାଟରେ ମୋତେ ସାହାଯ୍ୟ ଦେବା ନିମନ୍ତେ ସେ ସମୟରେ ଗଡ଼ର ଭାରପ୍ରାପ୍ତ ସେରସ୍ତାଦାରଙ୍କୁ ଚିଠି ଲେଖିଲି । ସେହି ମୁହୂର୍ତ୍ତରେ ଚାରିଜଣ ଧାଉଡ଼ିଆ ପାଇକ ଚିଠି ଧରି ବାଟଗୁଡ଼ି ବଣେ ବଣେ ଗଡ଼କୁ ରମାନା ହେଲେ । ବର୍ତ୍ତମାନ ଭୂୟାଁମାନଙ୍କ ସଂଖ୍ୟା ଚେଷ୍ଟା ଓ ଗତିବିଧିର ସମ୍ବାଦ ନେବା ମୋ ପକ୍ଷରେ ନିତାନ୍ତ ଆବଶ୍ୟକ । ସନ୍ଧାନ ଦ୍ୱାରା ଜାଣିଲି, ଭୂୟାଁମାନେ ବଇସୁଆଁ ଗ୍ରାମ ଆଡ଼କୁ ଚାଲି ଯାଇଅଛନ୍ତି । ଦୁର୍ଭାଗ୍ୟର ବିଷୟ, ଏହି ତ ସୈନ୍ୟବଳ—ପୁଣି ପରାମର୍ଶ କରିବାକୁ ସଙ୍ଗରେ କେହି ଲୋକ ନାହାନ୍ତି, ଆଉ ଯେଉଁମାନଙ୍କୁ ଗୁପ୍ତଚରରୂପେ ନିଯୁକ୍ତ କରିଥିଲି, ସେମାନେ ପ୍ରଚ୍ଛନ୍ନଭାବରେ ଭୂୟାଁ-ମାନଙ୍କ ହିତୈଷୀ । ମୋ କାର୍ଯ୍ୟ ପ୍ରତି ସେମାନଙ୍କର କିଛିମାତ୍ର ସହାନୁଭୂତି ନ ଥିଲା ।

ଘଟଗ୍ରାମରୁ ଯାତ୍ରାକରି ଦିବାବସାନ ସମୟରେ ବସନ୍ତପୁର ମୁକାମରେ ପହଞ୍ଚିଲି । ବସନ୍ତପୁର ଆଉ ନିଜଗଡ଼ ମଧ୍ୟରେ ପର୍ବତ ଶ୍ରେଣୀ ମଧ୍ୟରେ ଘାଟି, ସେହି ସ୍ଥାନଟାକୁ ମୋହର ବଡ଼ ଭୟ ଥିଲା । ଘାଟି ଦୁଇପାଖ ପର୍ବତ ଉପରେ ଦଶ ଜଣ ଲୋକ ଅଦୃଶ୍ୟ ଭାବରେ ଛିଡ଼ା ହୋଇ ଶହେ ଜଣ ଲୋକଙ୍କୁ ଅଟକାଇ ପାରିବେ । ସେହିସ୍ଥାନରେ ଭୂୟାଁମାନେ ଲୁଚି ରହିଥିବାର ଆଭାସ ପାଇଥିଲି, ସେ ସ୍ଥାନର ସନ୍ଧାନ ନ ନେଇ ଅଗ୍ରସର ହେବାକୁ ମୋହର ସାହସ ଅଣ୍ଟିଲା ନାହିଁ । ବସନ୍ତପୁର ମୌଜାର ମଉଜୁଦ ଫୌଜଦାରଙ୍କୁ ଡକାଇ ଘାଟିର ଅବସ୍ଥା ସନ୍ଧାନ ନେବା ନିମନ୍ତେ ପଠାଇଲି । ଫୌଜଦାର ସରକାରୀ ଚାକର, ସେ ଯେ ସମ୍ପୂର୍ଣ୍ଣରୂପେ ଭୂୟାଁଙ୍କ ସହିତ ମିଶିଅଛି, ସେ ସମୟରେ ମୋତେ ଜଣା ନ ଥିଲା । ଦୁଇ ଘଣ୍ଟା ଉତ୍ତାରେ ଫୌଜଦାର ଘାଟି ଦେଖି ଆସି ମୋତେ ସମ୍ବାଦ ଦେଲା—ବାଟ ପରିଷ୍କାର, ଏ ତରଫରେ ଜଣେ ମଧ୍ୟ ଭୂୟାଁ ନାହିଁ ।

ରାତି ହୋଇଗଲାଣି, ଅନ୍ଧକାରରେ ଘାଟିବାଟରେ ଚାଲିବାକୁ ଇଚ୍ଛା ବଳିଲା ନାହିଁ, ପାଇକମାନେ ମଧ୍ୟ ଥକି ପଡ଼ି ଅଛନ୍ତି । ଏହି ସମୟରେ ଗଡ଼ରୁ ଚିଠି ଆସିଲା, ଗଡ଼ ପାଇକେ ମୋତେ ସାହାଯ୍ୟ ଦେଇ ପାରିବେ ନାହିଁ । ଅଚ୍ଛା ହେଉ, ବାଟ ତ ପରିଷ୍କାର ଅଛି, ଏଠାରୁ ଗଡ଼ ପାଞ୍ଚକୋଶ ମାତ୍ର ଦୂର, କାଲି ସକାଳେ ଯିବା । ସେହି ସ୍ଥାନରେ ରାତି ବିଶ୍ରାମ ନିମନ୍ତେ ଆଦେଶ ପ୍ରଚାରିତ କଲି । ବସନ୍ତପୁର ଗ୍ରାମର ପଶ୍ଚିମପଟ କାଣିଜୋର ନାଳଧାର ଆମ୍ବତୋଟାରେ ପାଇକମାନେ ବୋକରୁ ଓହ୍ଲାଇ ଚୋଟେଇ ଆୟୋଜନ କରିବାକୁ ଲାଗିଲେ, ଗୋଟାଏ ବଡ଼ ଆମ୍ବଗଛ ମୂଳରେ ମୋହର ବିଶ୍ରାମ ସ୍ଥାନ ସ୍ଥିର ହେଲା ।

ଏହି ସ୍ଥାନରେ ମୋର ବଡ଼ ଭୁଲ୍ ହୋଇଗଲା, ବୁଦ୍ଧିର ଅଳ୍ପତା ହେତୁରୁ ଦାରୁଣ ଯନ୍ତ୍ରଣା ଭୋଗ କରିବାକୁ ହୋଇଥିଲା । ସେ ସମୟରେ ଘାଟିରେ ଅଳ୍ପମାତ୍ର ଜଗୁଆଳ ଭୂୟାଁ ଥିଲେ । ମୁଁ ସେହି ମୁହୂର୍ତ୍ତରେ ଚାଲି ଯାଇଥିଲେ ଅର୍ଦ୍ଧ ରାତି ସରିକି

ନିରାପଦରେ ଗଡ଼ରେ ପହଞ୍ଚିଥାନ୍ତି; ମାତ୍ର ବିପଦବେଳେ ବିପରୀତ ବୁଦ୍ଧି ! ମୁଁ ଏହି ଦୀର୍ଘ ଜୀବନ କାଳରେ ନାନା ଘଟଣା ଦେଖି ଦେଖି ନିତାନ୍ତ ଅଦୃଷ୍ଟବାଦୀ ହୋଇ ପଡ଼ିଲିଣି ।

ସମ୍ମୁଖଘାଟି ବାଟ ପରିଷ୍କାର ଅଛି କି ନାହିଁ, ସନ୍ଧାନ ବୁଝି ଆସିବା ନିମନ୍ତେ ବସନ୍ତପୁର ଫୌଜାର ଫୌଜଦାରକୁ ଯେ ଚରରୂପେ ପଠାଇଥିଲି, ସେ ଯାଇଁ ଭୂୟାଁଙ୍କ ତରଫର ଘାଟି ଜଗୁଆଳକୁ ମୋ ସଙ୍ଗରେ ଥିବା ପାଇକର ସଂଖ୍ୟା, ସେମାନଙ୍କର ଅସ୍ତ୍ରଶସ୍ତ୍ରର ବିବରଣ, କେତେବେଳେ ଗଡ଼କୁ ଯାତ୍ରା କରିବି ଇତ୍ୟାଦି ବିଷୟ ସମ୍ବାଦ ଦେବାରୁ ସେ ଧାଇଁ ଯାଇ ରାଇସୁଆଁ ମୁକାମରେ ଧରଣୀ ଭୂୟାଁକୁ ସମ୍ବାଦ ଦେଲା । ରାଇସୁଆଁ ମୁକାମରେ ଏବଂ ଅନ୍ୟ ସ୍ଥାନମାନଙ୍କରେ ଯେଉଁଠାରେ ଯେତେ ଭୂୟାଁ ଥିଲେ, ସମସ୍ତଙ୍କୁ ସଂଗ୍ରହ କରି ବସାଢର ଘାଟି ମୁକାମକୁ ମୋତେ ଧରିବା ସକାଶେ ପଠାଇ ଦେଲା । ସେମାନେ ବନ୍ଧୁକ ତରବାରି ଧନୁ ଶର ଧରି ପର୍ବତ ମୂଳଠାରୁ ଶିଖ ପର୍ଯ୍ୟନ୍ତ ବ୍ୟାପି ଘାଟି ଦୁଇ ପାଖରେ ଗୁପ୍ତ ଭାବରେ ଜଗି ରହିଲେ । ପ୍ରଥମରୁ ସେ ସ୍ଥାନକୁ ମୁଁ ବଡ଼ ଭୟ କରୁଥିଲି । କାରଣ ଶତ୍ରୁପକ୍ଷ ଗଛମୂଳରେ ପଥର ଉହାଡ଼ରେ ଲୁଚି ରହି ବାଟଚଲା ଲୋକମାନଙ୍କ ପ୍ରତି ଅସ୍ତ୍ର ପ୍ରୟୋଗ କରି ପାରିବେ, ଅଥଚ ଚଲା ଲୋକଙ୍କ ପକ୍ଷରେ ସେହି ଅଦୃଶ୍ୟ ଶତ୍ରୁଙ୍କ ପ୍ରତି ଅସ୍ତ୍ର ପ୍ରୟୋଗ କରିବାର ଉପାୟ ନ ଥିଲା । ପୁଣି ଘାଟି ବାଟଟା ଏଡ଼େ ସଙ୍କୀର୍ଣ୍ଣ ଯେ, ଅଧିକ ଲୋକଙ୍କ ପକ୍ଷରେ ଛିଡ଼ା ହୋଇ ଏକାବେଳକେ ଯୁଦ୍ଧ କରିବାର ସମ୍ଭାବନା ନ ଥିଲା ।

ଖୁବ୍ ଭୋର ଘାଟିର ସନ୍ଧାନ ବୁଝି ଆସିବା ନିମନ୍ତେ ପୁନର୍ବାର ବସନ୍ତପୁରର ସେହି ଫୌଜଦାରକୁ ପଠାଇ ଦେଲି । ଯାତ୍ରା ସକାଶେ ପ୍ରସ୍ତୁତ ହେବା ନିମନ୍ତେ ପାଇକମାନଙ୍କୁ ଆଦେଶ କଲି । ଏତେ ଲୋକ ପ୍ରସ୍ତୁତ ହେବାକୁ ପୁଣି ହାତୀ କଷାକଷିରେ ପ୍ରାୟ ଦଣ୍ଡାଏ କାଳ ବିତିଗଲା । ସୂର୍ଯ୍ୟ ଉଦୟ ହୋଇ ସର୍ବତ୍ର ଖରା ପଡ଼ିଗଲାଣି, ଆମ୍ଭେମାନେ କାଣିଜୋର ପାରି ହୋଇ ଅଳ୍ପ ଦୂର ଯାଇଅଛୁ, ବସନ୍ତପୁର ଫୌଜଦାର ବସାଢର ଘାଟି ତରଫରୁ ବାହୁଡ଼ି ଆସି ସମ୍ବାଦ ଦେଲା, ଘାଟିଠାରେ କେହି ନାହାନ୍ତି, ସ୍ୱଚ୍ଛନ୍ଦରେ ଚାଲି ଯାଉନ୍ତୁ । ଏତିକି କଥା ବୋଲି ଦେଇ ଫୌଜଦାର ବଣ ମଧ୍ୟରେ କାହିଁ ଅନ୍ତର୍ଦ୍ଧାନ ହୋଇଗଲା, ପଶ୍ଚାତ୍ ତଲାସ କରି ତାହାର ଭେଟ ପାଇଲି ନାହିଁ । ଆମ୍ଭେମାନେ ସହଜ ଅନ୍ୟମନସ୍କ ଭାବରେ ଚାଲିବାକୁ ଲାଗିଲୁ । କାଣିଜୋର ଠାରୁ ପ୍ରାୟ ଅର୍ଦ୍ଧକୋଶ ଯାଇ ପର୍ବତ ମୂଳରେ ଉପସ୍ଥିତ ହେବାମାତ୍ରକେ ବନ୍ଧୁକ ଆବାଜ ଓ ମନୁଷ୍ୟମାନଙ୍କ ରଡ଼ିରେ ତିନି ଦିଗର ସମସ୍ତ ପର୍ବତ କେତେ ମିନିଟ୍ ପର୍ଯ୍ୟନ୍ତ କମ୍ପିତ ହେବାକୁ ଲାଗିଲା । ମୋ ସବାରି ହାତୀ ସମସ୍ତ ପାଇକଙ୍କ ସମ୍ମୁଖରେ ଥିଲା, ହାତୀଟା ମଧ୍ୟ ଚମକି ପଡ଼ି ଛିଡ଼ା ହୋଇଗଲା । ମୋ ସମ୍ମୁଖ ଆଉ ଦୁଇ ପାଖର ପର୍ବତଶ୍ରେଣୀ ମଧ୍ୟରେ ବହୁସଂଖ୍ୟକ ଲୋକ ପରିପୂର୍ଣ୍ଣ ଥିବାର ମୋତେ ବୋଧ ହେଲା । ପରେ ବୁଝିଲି, ଯେତେ ଲୋକ ଥିବାର ଓ ଯେତେ ବନ୍ଧୁକ ଆବାଜ ହୋଇଥିବାର ଅନୁମାନ କରିଥିଲି, ପ୍ରକୃତରେ ତେତେ ନ ଥିଲେ । ପର୍ବତ ଗହ୍ୱରର ମଧ୍ୟରୁ ଉତ୍ଥିତ ପ୍ରତିଧ୍ୱନି ମୋହର ଭ୍ରମ ଜାତ କରାଇ ଦେଇଥିଲା । ସେ ସ୍ଥାନରେ ଗୋଟାଏ ବନ୍ଧୁକ ଆବାଜ କଲେ ଦଶଗୋଟା ବନ୍ଧୁକର ଆବାଜ ପରି ଶୁଣାଯାଏ ।

ମୁହୂର୍ତ୍ତକ ପାଇଁ ହାତୀ ଉପରେ ବସି ଚିନ୍ତା କଲି । ବର୍ତ୍ତମାନ କଣ କର୍ତ୍ତବ୍ୟ । ପାଇକମାନଙ୍କୁ ସେ ସ୍ଥାନରେ ଛିଡ଼ା କରାଇ ଦୁଇପାଖରେ କିଛି ଦୂର ହାତୀ ଦଉଡ଼ାଇ ଗୋଟାଏ ଉପଯୁକ୍ତ ସ୍ଥାନ ଅନ୍ୱେଷଣ କଲି । ଅଭିପ୍ରାୟ ଗୋଟାଏ ଉଚ୍ଚ ବୃକ୍ଷବହୁଳ ସ୍ଥାନ ପାଇଲେ ସେ ସ୍ଥାନରେ ପାଇକମାନଙ୍କୁ ରଖି ଆତ୍ମରକ୍ଷା କରିବାକୁ ଚେଷ୍ଟା କରିବି । ଦୁର୍ଭାଗ୍ୟ ଉପସ୍ଥିତ ହେବାବେଳେ କୌଣସି

ପ୍ରକାର ସୁବିଧା ଘଟେ ନାହିଁ । ସେ ସ୍ଥାନଟା ପଡଲା ଜଙ୍ଗଲମୟ, ଶତ୍ରୁପକ୍ଷର ଦୃଷ୍ଟିଗୋଚର ସ୍ଥାନ । ଆଉ କୌଣସି ପ୍ରକାର ଉପାୟ ନାହିଁ, ସମ୍ପୂର୍ଣ୍ଣରୂପେ ନିରାଶ ହୋଇ ପଡ଼ିଲି । ଶହାବଧି ବନ୍ଧୁକ ଗୁଳି ବାରୁଦରେ ପ୍ରସ୍ତୁତ ଥିଲା, କାଳେ ମୁଁ କାହାରି ପ୍ରତି ବନ୍ଧୁକ ଚଳାଇବାର ହୁକୁମ ଦେଇ ପକାଇବି—ପରାଜୟ ନିଶ୍ଚୟ, ଗୋଟାଏ ଅକାରଣ ରକ୍ତପାତ କାଣ୍ଡ କିଆଁ ହେବ ? ସମସ୍ତ ବନ୍ଧୁକ ଝଲସ କରିବା ପାଇଁ ଆଦେଶ କଲି । ସେହି ଶହ ବନ୍ଧୁକ ଆବାଜ ସହସ୍ର ବନ୍ଧୁକ ଶବ୍ଦ ପରି ଶୁଣାଗଲା । ତେତେବେଳେ ମୋ ଭ୍ରମ ବୁଝିପାରିଲି, ତେବେ ତ ଭୂୟାଁଙ୍କ ନିକଟରେ ଏତେ ବନ୍ଧୁକ ନାହିଁ, ଭୁକ୍କାଟାରେ ପ୍ରତିଧ୍ୱନି ଶୁଣି ଏତେ ଭୟ କଲି । ବୃଥା ଚିନ୍ତା, ସବୁ ସମାପ୍ତ ହୋଇଅଛୁ ।

ମୁଁ ହାତୀ ଦଉଡ଼ାଇ ଦେଇ ସ୍ୱଚ୍ଛନ୍ଦରେ ଆନନ୍ଦପୁରକୁ ଚାଲି ଆସିଥାନ୍ତି; କିନ୍ତୁ ପାଇକମାନଙ୍କୁ ଶତ୍ରୁ ହାତରେ ପକାଇ ଦେଇ ପଳାଇ ଆସିବାକୁ ବଡ଼ ଲଜ୍ଜା ବୋଧ ହେଲା । ପଛକୁ ଫେରି ଆସି ବସନ୍ତପୁର ସେହି ଆମ୍ବତୋଟାରେ ଉପସ୍ଥିତ ହେଲି । ପାଇକମାନଙ୍କୁ ଶ୍ରେଣୀବଦ୍ଧ କରି ଆତ୍ମରକ୍ଷାର ବନ୍ଦୋବସ୍ତ କରୁଅଛୁ, ଇତ୍ୟବସରରେ ଭୂୟାଁମାନେ ଆସି ଅମ୍ଭମାନଙ୍କୁ ବେଢ଼ିଗଲେ । ବେଷ୍ଟନକାରୀ ଭୂୟାଁ ସଂଖ୍ୟା ଅଳ୍ପମାତ୍ର ଥିଲା, ସ୍ୱଚ୍ଛନ୍ଦରେ ସେମାନଙ୍କୁ ମାରି ତଡ଼ି ଦେଇ ପାରିଥାନ୍ତି; ମାତ୍ର ଅଳ୍ପ ଦୂରରେ ବହୁସଂଖ୍ୟକ ଭୂୟାଁ ଉପସ୍ଥିତ ଥିବାରୁ ଭରସା ପାଇଲି ନାହିଁ ।

(ଉ. ସା. ୨୧ଶ ଭାଗ—୪ର୍ଥ ସଂଖ୍ୟା)

—୦—

## କେଉଁଝର ପ୍ରଜାବିଦ୍ରୋହ ( ଶେଷାଂଶ )

ଭୂୟାଁମାନେ ମୋହ ନିକଟରେ ଉପସ୍ଥିତ ହୋଇ କହିଲେ, ଧରଣୀଧର ବାବୁଙ୍କ ନିକଟକୁ ଯିବାକୁ ହେବ । ମୁଁ ବିରୁକ୍ତି ମାତ୍ର ନ କରି ହାତୀରେ ଚଢ଼ି ଦଳବଳ ସମସ୍ତଙ୍କୁ ସଙ୍ଗରେ ନେଇ ବାହାରିଲି । ବସନ୍ତପୁର ପଶ୍ଚିମଦିଗସ୍ଥ ସେହି ବରାଗିରି ପର୍ବତ ମୂଳ ବସାଘରର ଘାଟିଠାରେ ଭୂୟାଁମାନଙ୍କର ଗୋଟାଏ ପ୍ରଧାନ ଖଟିଜାଗା । ଧରଣୀଧରର ବଡ଼ଭାଇ ଗୋପାଳିଆ ସେହି ବସାଘରର ଘାଟିର ରକ୍ଷକ, ପୁଣି ସେ ଭୂୟାଁଙ୍କ ସମସ୍ତ ସୈନ୍ୟଙ୍କ ଉପରେ ସେନାପତି । ଏହାର ଛମାସ ପୂର୍ବେ ତାହାକୁ ନିଜଗଡ଼ ଜେଲ୍‌ଖାନାରେ ଦେଖିଥିଲି,ଗୋଡ଼ରେ ଗୋଟାଏ ମୋଟା ଲୁହାର ବେଡ଼ି ପିନ୍ଧି ହରିକାଠରେ ବନ୍ଧା ଥିଲା । ଗୋପାଳିଆ ଗୋଟାଏ ପଞ୍ଚହତା ମର୍ଦ୍ଦ, ବିଶାଳ ଶରୀର, ସ୍ଥୂଳ ଏବଂ ଭୟଙ୍କର ବୃହତ୍ ଦେହର ମାଂସପେଶୀ ଗୁଡ଼ାକ ଯେମନ୍ତ କାଷ୍ଠ ନିର୍ମିତ, ଚୌଡ଼ା ଛାତି, ମୁଖଟା ଚେପ୍‌ଟା, ବିଶାଳ ଏବଂ ବିକୃତାକାର, ଭୟଙ୍କର କ୍ଷୁଦ୍ର କ୍ଷୁଦ୍ର ଚକ୍ଷୁ, ଗୋଟାଏ ପୋଡ଼ ପରି ବଳବାନ୍; ଲୋକଟା ଯେପରି ମୂର୍ଖ, ସେହିପରି ନୃଶଂସ ଏବଂ ଅତ୍ୟାଚାରୀ; ଢେର ଗୁଡ଼ାଏ ଲମ୍ବା ତରବାରି ଓ କାଣ୍ଡ ବାଉଁଶ ଦୁଇ ପାଖରେ ଥୋଇ ଦେଇ ଗୋଟାଏ ପଥର ଉପରେ ବସିଥିଲା । ଅନେକଗୁଡ଼ାଏ ଭୂୟାଁ କାଣ୍ଡ, ବାଉଁଶ, ଠେଙ୍ଗିଆ, ଲମ୍ବା, ତରବାରି ଧରି ଗୋପାଳର ହୁକୁମ ଅପେକ୍ଷାରେ ତାହାକୁ ବେଢ଼ି ଛିଡ଼ା ହୋଇଥାନ୍ତି । ମୁଁ ଉପସ୍ଥିତ ହେବାମାତ୍ରକେ ରକ୍ତବର୍ଣ୍ଣ କ୍ଷୁଦ୍ର ଚକ୍ଷୁରେ କର୍କଶ ଭାବରେ ମୋତେ ଦଣ୍ଡେ ବେଳଯାଏ ଚାହିଁଲା । ମୁଁ ମଧ୍ୟ ବନ୍ଦୀ ଭାବରେ ସମ୍ମୁଖରେ ଛିଡ଼ାହୋଇ ତାହାର ଭୀଷଣ ଆକୃତି, ମୁଖର ଭାବ ଚାହିଁ ଚାହିଁ ଦେଖୁଥାଏ । ଦଣ୍ଡକ ବାଦେ ମୋ ପ୍ରତି ହୁକୁମ ହେଲା—'ଚାଲ ସାଇ-ସୁଆଁ ଧରଣୀ ବାବୁଙ୍କ ପାଖକୁ ।' ମୁଁ ହାତୀରେ ବସିଲି, ଦୁଇହାତରେ ଯୋଡ଼ାଏ ଲମ୍ବା ତରବାରି ଧରି ସେ ମୋ ପାଖରେ ବସି ମୋତେ ପଚାରିଲା—'ତୋ ହାତରେ ପିସ୍ତଲ ଅଛି କିରେ ?' ମୁଁ କହିଲି—'ନା ।' ସେ କହିଲା—''ଆଚ୍ଛା ଶୁଣ, ତୁ ଯେବେ ଗଡ଼କୁ ପଳାଇବାକୁ ବାହାରିବୁ,ତେବେ ତୋତେ ହାଣି ପକାଇବି,ଜାଣିଥା ।''

କମରରେ ଟାଙ୍ଗିଆ ଓ ତରବାରି ବାନ୍ଧି, ଗୁଣଚଢ଼ା କାଣ୍ଡ ବାଉଁଶ ହାତରେ ଧରି ଚାଳିଶ ପଞ୍ଚାଶ ଜଣ ପ୍ରହରୀ ମୋତେ ବେଢ଼ି ରାଇସୁଆଁ ତରଫକୁ ବାହାରିଲେ । ଆମ୍ଭମାନଙ୍କ ଯାତ୍ରା ସମୟରେ ପଞ୍ଚାକୁ ପଞ୍ଚା ଲୋକ ରାଇସୁଆଁ ତରଫରୁ ବସାଢର ଘାଟି ତରଫକୁ ଆସୁଥାନ୍ତି । ସମ୍ମୁଖରେ କେହି ଲୋକ ଆସୁଥିବାର ଦେଖିଲେ ଆମ୍ଭମାନଙ୍କ ପ୍ରହରୀ ଡାକ ଦିଏ । "ହୁସିଆର", ଆଗନ୍ତୁକ ଯେବେ ଜବାବ ଦିଏ—"ହୁସିଆର", ତେବେ ତ କିଛି କଥା ନାହିଁ; ଯେବେ କିଛି ଜବାବ ନ ଦିଏ, ତେବେ ତାହାପ୍ରତି ହୁକୁମ ହୁଏ—ତଫାତ୍, ତଫାତ୍, ତଫାତ୍ । ଭୂୟାଁମାନଙ୍କ ମଧ୍ୟରେ ସଙ୍କେତ ଥିଲା; "ହୁସିଆର" ବୋଲି ଡାକ ଦେଲେ ଯେ "ହୁସିଆର" ବୋଲି ଜବାବ ଦେବ, ସେ ଆତ୍ମପକ୍ଷୀୟ ଲୋକ, ଜବାବ ନ ଦେଲେ ସେଇଟା ପରଲୋକ ।

ଆମ୍ଭମାନଙ୍କ ଯାତ୍ରାର ପ୍ରାୟ ଅଧାଅଧି ବାଟରେ ଗୋଟାଏ ଭୀଷଣ ଲୋକ ଧନୁଗୁଣରେ କାଣ୍ଡ ବସାଇ ମୋତେ ଡାକ ଦେଲା—ହରସାନନ୍ଦ ସକାଳୁ ସଞ୍ଜଯାଏ ମୋତେ ଉପାସରେ ଦୁଃଖ ଦେଇ କାମ କରାଉଥିଲୁ ପରା ? ଆଜି ତୋତେ ନିଶ୍ଚୟ ମାରିବି । ମୋତେ ଲକ୍ଷ୍ୟକରି ଗୁଣ ଭିଡ଼ିଲା । ଆଉ ପାଏ ସେକେଣ୍ଡ ମାତ୍ର ବିଳମ୍ବ, ସେହି ସମୟରେ ସ୍ଥିର କଲି, ମୃତ୍ୟୁ ନିଶ୍ଚୟ, ଇତ୍ୟବସରରେ ପଛରୁ ଜଣେ ଲୋକ ଧାଇଁଆସି ସେହି ଧନୁକଧାରୀର ଗୁଣ ମୁଠିଟା ଧରିନେଲା ।

ବେଳ ଅନ୍ଦାଜ ତିନିଟା ସମୟ, ଆମ୍ଭେମାନେ ରାଇସୁଆଁରେ ପହଞ୍ଚିଲୁଁ । ହାତୀରୁ ଓହ୍ଲାଇବା ମାତ୍ର ଧରଣୀ ଭୂୟାଁ ମୋ ପାଖକୁ ଧାଇଁଆସି କହିଲା - "ମୋ ଗୋଡ଼ତଳେ ପଡ଼, ମୋ ଗୋଡ଼ତଳେ ପଡ଼ ।" ମୁଁ ସ୍ଥିର ଭାବରେ ଛିଡ଼ା ହୋଇଥାଏଁ, ମନରେ କଲି—କଣ, କାଲି ଏହି ଲୋକଟା ମୋ ଅଧୀନରେ ସର୍ବେ କାମ କରୁଥିଲା, ଆଜି ଏହି ଟୋକାଟା ଗୋଡ଼ତଳେ ପଡ଼ିବି ? ମୋ ପୂଜାହାରୀ ବ୍ୟାକୁଳ ଭାବରେ କାନ୍ଦକାନ୍ଦ ପଛରୁ ଧାଇଁଆସି ମୋତେ କୁଣ୍ଢାଇ ପକାଇ କହିଲା—"ଆପଣ ଗୋଡ଼ତଳେ ପଡ଼ନ୍ତୁ ।" ମନ ମଧ୍ୟରେ ଚିନ୍ତାକଲି, ଧରଣୀ ହୁକୁମ ଦେଲେ ଗୋପାଳଆ ମୋତେ ଏହିଲଗେ ହାଣି ପକାଇବ; ଚିନ୍ତାନାହିଁ—ମାତ୍ର ମୋ ଲୋକ-ଗୁଡ଼ାଙ୍କୁ ଯେ କଷ୍ଟଦେବ । ମୁଁ ଗୋଡ଼ତଳେ ନ ପଡ଼ି ଅବନତ ମସ୍ତକରେ ନମସ୍କାର କରିବାରୁ ଧରଣୀ ମୋ ହାତ ଧରି ନେଇଯାଇ ତାହାର ବିଛଣା ପାଖରେ ବସାଇଲା ।

ଦିବା ଅବସାନ ପ୍ରାୟ, ସ୍ନାନାହାର କରିବାକୁ ଅନୁମତି ପାଇଲି । ଧରଣୀର ଦରବାର ଘରର ଅଳ୍ପ ଦୂରରେ ମୋ ରହିବାସ ସକାଶେ ଗୋଟାଏ ଝୁମୁଡ଼ିଆ ଘର ଦିଆଗଲା । ଝୁମୁଡ଼ିଆ ଭିତରଟା ପାଞ୍ଚ ପାଞ୍ଚ ହାତ ଦୀର୍ଘ ପ୍ରସ୍ଥ । କେତେଟା ପତ୍ର ଲଗା ଶାଳଗଜାରେ ଚାରିପାଖ ବାଡ଼—ସେହିପରି କେତେଟା ଶାଳଗଜାରେ ଉପର ଛାଇ, ଭିତରେ ବସି ଆକାଶର ନକ୍ଷତ୍ର ଗଣି ହୁଏ । କେତେଦିନ ପୂର୍ବେ ବୃଷ୍ଟି ହୋଇଯାଇଥିଲା, ଭୂଇଁ ତଳଟା ଓଦା । ମୋ ଝୁମୁଡ଼ିଆ ଦୁଆର ଆଗରେ ଲମ୍ବା ତରବାରି ଧରି ପଞ୍ଚାଏ ଭୂୟାଁ ମୋତେ ଜଗି ବସିଲେ । ଝୁମୁଡ଼ିଆ ଚଉପଟରେ ମଧ୍ୟ ଜଗୁଆଳ ରହିଲେ । ମୁଁ ନିତାନ୍ତ ଥକି ପଡ଼ିଥିଲି । ଚାକର ସେହି ଓଦା ମାଟି ଉପରେ ବିଛଣା ପାରିଦେଲା । ସନ୍ଧ୍ୟା ଉତ୍ତାରେ ଆହାର କରି ଶୋଇ ପଡ଼ିଲି । ଶୋଇ ପଡ଼ିବାର ଅଳ୍ପକ୍ଷଣ ଉତ୍ତାରେ ପଣକୁପଣ ଜନ୍ଦା ମୋ ଉପରକୁ ଉଠି କାମୁଡ଼ିବାକୁ ଲାଗିଲେ । ଝୁମୁଡ଼ିଆ ଭିତରେ ଓଦାମାଟି ଉପରେ ଜନ୍ଦାଧାଡ଼ି ଚାଲୁଥିଲେ, ମୋତେ ଆଗରୁ ଜଣା ନ ଥିଲା । ଶୋଇବି କଣ ? ଦେହଯାକ ନିଆଁ ଲାଗିଲା ପରି ଜଳୁଥାଏ । ଦେହ

ଆଉଁସିବାରେ ବିଛଣା ଉପରୁ ଜଦା ଚଡ଼ିବାରେ ରାତିଟା ବିତିଗଲା । ସକାଳେ ଧରଣୀଧରର ଦରବାର ବସିଲା । ଚାରିଆଡ଼ୁ ଭୂଇଁମାନେ ଆସି ରୁଣ୍ଡ ହେବାକୁ ଲାଗିଲେ । ଆଜି ଭୂଇଁପୀଢ଼ ଗୋଟାଯାକର ଭାରି ଆନନ୍ଦ, ମେନେଜରର ଧରା ପଡ଼ିଛି । ପାଠକମାନଙ୍କ ବୁଝିବା ସୁବିଧା ନିମନ୍ତେ ଧରଣୀର ସଂକ୍ଷିପ୍ତ ବୃତ୍ତାନ୍ତ ଏଠାରେ ପ୍ରକାଶ କରିବା ଆବଶ୍ୟକ ।

ଧରଣୀଧର ଗୋଟାଏ ଭୂଇଁ ପିଲା । ମହାରାଜା ଧନଞ୍ଜୟ ନାରାୟଣ ଭଞ୍ଜ ତାହାକୁ କଟକ ପଠାଇ ସର୍ଭେ ପଢ଼ାଇଥିଲେ । ମହାରାଜାଙ୍କ ଖରଚରେ କେତେକଦିନ କେଉଁଝରର ବସାରେ ରହି ସର୍ଭେ ସ୍କୁଲରେ ପଢ଼ୁଥିଲା । ସ୍କୁଲରୁ ପାସ କରି ଆସି କେଉଁଝର ରାଜସରକାରରେ କେତେକ ମାସ ସର୍ଭେୟାର କାର୍ଯ୍ୟ କରିବା ଉତ୍ତାରେ ପ୍ରଚାର କରିଦେଲା—ମହାରାଜ ପ୍ରଜାପୀଡ଼କ, ଅତ୍ୟାଚାରୀ । ସେ (ଧରଣୀ) କଟକରୁ ମହାରାଣୀଙ୍କ ଧର୍ମପୁତ୍ର ହୋଇ ଆସିଛି; ରାଜ୍ୟରେ ନ୍ୟାୟ ବିଚାର କରିବ । ଭୂଇଁ ପ୍ରଜାଗଣ ନାନା କାରଣରୁ ମହାରାଜାଙ୍କ ପ୍ରତି ଅସନ୍ତୁଷ୍ଟ ଥିଲେ । ଧରଣୀ ଏହି କଥା ପ୍ରକାଶ କରିବା ମାତ୍ରକେ ସମସ୍ତେ ତାହାର ବଶ୍ୟତା ସ୍ୱୀକାର କରି ରାଜଶକ୍ତିକୁ ଅମାନ୍ୟ କରିବାକୁ ଲାଗିଲେ । ଧରଣୀର ଆଦେଶ ଲଙ୍ଘନକାରୀ ଅନ୍ୟ ଜାତୀୟ ପ୍ରଜାମାନଙ୍କର ଏବଂ ରାଜାଙ୍କ ଖମାରଘରର ଲୁଟତରାଜ ହେବାକୁ ଲାଗିଲା । କେତେଜଣ ପୋଲିସ୍ କର୍ମଚାରୀଙ୍କୁ ଧରି ନେଇଯାଇ କଏଦ କରି ରଖିଥିଲେ । ସିଂହଭୂମି ତରଫର ମହାପାତ୍ର ନାମକ ଗୋଟାଏ ଭୂଇଁ ଆସି ଧରଣୀ ସହିତ ଯୋଗ ଦେଲା । ଏ ଲୋକଟା ବୁଦ୍ଧିମାନ୍, ମାଲମକଦ୍ଦମାର ଅବସ୍ଥା ବୁଝେ । ମେଳିର ପ୍ରାବଲ୍ୟ ଦେଖି ମହାରାଜା ନିଜଗଡ଼ ପରିତ୍ୟାଗପୂର୍ବକ ଆନନ୍ଦପୁରକୁ ଚାଲି ଯାଇଥିଲେ ।

✻ ପରଲୋକ ଗତ ମୃତ୍ୟୁଞ୍ଜୟ ରଥ "ଉତ୍କଳ ସାହିତ୍ୟ"ର ୨୨ଶ ଭାଗ, ୫ମ ସଂଖ୍ୟାରେ ମେଳିର ଯେଉଁ କାରଣ ଦର୍ଶାଇ ଅଛନ୍ତି, ତାହା ନିମ୍ନରେ ପ୍ରଦତ୍ତ ହେଲା ।—"ଏ ବିଦ୍ରୋହର ପ୍ରଧାନ କାରଣ ଏହି ଯେ, କେଉଁଝରର ଭୂତପୂର୍ବ ମହାରାଜା ଧନୁର୍ଜୟ ନାରାୟଣ ଭଞ୍ଜଦେବ ବଡ଼ ପ୍ରଜାପୀଡ଼କ ଥିଲେ, ତାଙ୍କର ଅତ୍ୟାଚାରରେ ପ୍ରଜାମାନେ ବିଶେଷତଃ ଭୂଇଁମାନେ ଅତ୍ୟନ୍ତ ଉତ୍ତେଜିତ ହୋଇ ମେଳି ବାନ୍ଧିଥିଲେ । ଧରଣୀଧର ନାୟକ ନାମକ ଜଣେ ଭୂଇଁ ଯୁବକ ଏହି ବିଦ୍ରୋହର ଦଳପତି ହୋଇଥିଲା । ବିଦ୍ରୋହର ସୂତ୍ରପାତ ଏହିରୂପେ ହୋଇଥିଲା । ଧରଣୀଧର ରାଜଦତ୍ତ ବୃତ୍ତିରେ କଟକ ସର୍ଭେ ସ୍କୁଲରେ ଶିକ୍ଷା କରି, ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଉତ୍ତାରେ ବିନା ବେତନରେ କେଉଁଝରର ସର୍ଭେୟର କାର୍ଯ୍ୟ କରୁଥିଲା । ଏହି ସମୟରେ କେଉଁଝର ସିଂହଭୂମିର ସୀମା ବିବାଦ ଉପସ୍ଥିତ ହୁଅନ୍ତେ କେଉଁଝର ମହାରାଜଙ୍କ ପକ୍ଷରୁ ଉକ୍ତ ଧରଣୀଧର ବିବାଦସ୍ଥଳକୁ ପ୍ରେରିତ ହୋଇଥିଲା । ସେଠାକୁ ଯାଇ ସେ ଶୁଣିଲା ଯେ ବିନାଦୋଷରେ ତାହାର ଭାଇ ଏବଂ କେତେକଜଣ ଭୂଇଁ ମହାରାଜାଙ୍କ ଆଦେଶରେ କାରାରୁଦ୍ଧ ହୋଇଅଛନ୍ତି ଏବଂ ସେ ମଧ୍ୟ ଫେରିଲେ ଏହି ଦୁର୍ଦ୍ଦଶା ଭୋଗକରିବ । ଧରଣୀ ଏହା ଶୁଣିଲାକ୍ଷଣି ରାଜକାର୍ଯ୍ୟ ଛାଡ଼ି ତାହାର ଶ୍ୟାଳକ ନରେନ୍ଦ୍ର ମହାପାତ୍ର ଗୃହରେ ଆଶ୍ରୟ ନେଲା ଏବଂ ଅତ୍ୟାଚାର ନିବାରଣ-ଉପାୟ-ବିଧାନ ନିମିତ୍ତ ଭୂଇଁମାନଙ୍କୁ ମତାଇ ଦେବା ସଂକଳ୍ପ କଲା । ୧୮୯୧ ମସିହାର ଜାନୁୟାରୀ ମାସରେ ସେମାନେ କମିଶନର ସାହେବଙ୍କ ନିକଟକୁ ଏକ ବିବରଣ ପତ୍ର ଏବଂ ତାହାର ଗୋଟିଏ ପ୍ରତିଲିପି ମୟୂରଭଞ୍ଜ ମେନେଜରଙ୍କ ନିକଟକୁ ପ୍ରେରଣ କରିଥିଲେ; କିନ୍ତୁ ସେଥିରେ କିଛି ଫଳ ନ ହେବାର ଦେଖି, ଅତ୍ୟାଚାର ନିବାରଣ ନିମିତ୍ତ ଧରଣୀଧର ଭୂଇଁମାନଙ୍କର "ନାୟକ," ପଦରେ ଅଭିଷିକ୍ତ ହୋଇ ଗୁପ୍ତ ଭାବରେ ଚାରିଆଡ଼କୁ ସମ୍ବାଦ ପଠାଇଲା । ଅଳ୍ପକାଳ ମଧ୍ୟରେ ପାଞ୍ଚଶତ ଭୂଇଁ ତାହା ନିକଟରେ ରୁଣ୍ଡ ହୋଇଥିଲେ ଏବଂ ଅନେକ ଗ୍ରାମରୁ ବହୁ ଲୋକ ସ୍ୱାକ୍ଷରିତ ଅତ୍ୟାଚାରକାହାଣୀ ତାହା ନିକଟରେ ଉପସ୍ଥିତ ହୋଇଥିଲା । ଧରଣୀଧର ନିଜ ଦଳବଳ ଯେନି ସେମାନଙ୍କର ଆହାରାଦି ବ୍ୟୟ ନିର୍ବାହ ନିମିତ୍ତ ମହାରାଜାଙ୍କ ଖମାରାଦି ଲୁଣ୍ଠନ କରାଯାଇଥିଲା । ଯୁଦ୍ଧ ଲାଗି ତିନିଗୋଟି ତୋପ ଓ ଆଉ କେତେଗୁଡ଼ିଏ ଅସ୍ତ୍ର ଶସ୍ତ୍ର ସଂଗୃହୀତ ହୋଇଥିଲା । ମହାରାଜା ଏସବୁ ଦେଖି ରାଜ୍ୟ ଛାଡ଼ି କଟକ ପଳାଇ ଆସିଲେ ।"—ପ୍ରକାଶକ ।

ସଖାଲଓଳ ମହାରାଣୀ ପୁତ୍ର ଧରଣୀଧର ବାବୁ ଦରବାର କରି ବସିଅଛନ୍ତି, କେଉଁଝର ଭୂୟାଁପୀଡ଼ର ସମସ୍ତ ପ୍ରଧାନ ପ୍ରଧାନ ଭୂୟାଁ ଉପସ୍ଥିତ । ମୋତେ ତଲବ ହେଲା । ଧରଣୀ ମୋତେ ପାଖରେ ବସାଇ ପଚାରିଲା—"ଫକୀରମୋହନ ବାବୁ, ତୁମ୍ଭର ବର୍ତ୍ତମାନ କ'ଣ କହିବାର ଅଛି ?" ମୁଁ ତତ୍‌କ୍ଷଣାତ୍ ଜବାବ ଦେଲି—"ମୋହର ଆଉ କଥା କଣ ? ମୁଁ କଛୁ ଏ ଦେଶ ଲୋକ ନୁହେଁ, ବାଲେଶ୍ୱରରୁ ଚାକରି କରିବାକୁ ଆସିଛି । ମହାରାଜା ମୋତେ ମେନେଜରରେ ରଖିଥିଲେ । ବର୍ତ୍ତମାନ ମହାରାଜା ଚାଲିଯାଇ ଅଛନ୍ତି, ଆପଣ ବର୍ତ୍ତମାନ ଦେଶର ଅଧିପତି । ପ୍ରକୃତରେ ଏଇଟା ଭୂୟାଁମାନଙ୍କର ରାଜ୍ୟ । ମୋତେ ମେନେଜରରେ ରଖିବେ ତ ରହିବି, ନୋହିଲେ ଦେଶକୁ ଚାଲିଯିବି । ମୋହର ଆଉ କହିବାର ବୋଲିବାର କଣ ଅଛି ?" ଧରଣୀ କହିଲା, "ସତ କହିଲ, ବାବୁଟା ସତ କହିଲା । ଆମ୍ଭେ ତୁମ୍ଭଙ୍କୁ ମେନେଜରରେ ରଖିବୁଁ ।" ଭୂୟାଁମାନଙ୍କୁ ଅନାଇ ଧରଣୀ ପଚାରିଲା, "ତୁମ୍ଭେମାନେ କଣ କହୁଛ ?" ସମସ୍ତ ଭୂୟାଁ ଏକବାକ୍ୟରେ ଚିତ୍କାର କରି କହିଲେ, "ନାହିଁ - ନାହିଁ, ଏ ଲୋକଙ୍କୁ ମେନେଜରରେ ରଖାଯିବ ନାହିଁ । ଏ ହେଲା ମହାରାଜା ତରଫର ଲୋକ ।" ଧରଣୀ କହିଲା—"ମହାରାଜା କଣ ହେ ! ଆମ୍ଭ ମହାରାଣୀ ପୁତ୍ର, ଆମ୍ଭେ ମହାରାଜା, ଏ ତ ଆମ୍ଭର ମେନେଜର ।" ମୁଁ ଯେ କହିଥିଲି—ଏ ରାଜ୍ୟଟା ଭୂୟାଁମାନଙ୍କର, ଏ କଥାଟା ଶୁଣି ଢେର ଭୂୟାଁ ମୋ ଉପରେ ଖୁସି ହୋଇଗଲେଣି । ଭୂୟାଁମାନଙ୍କର ଏ ପର୍ଯ୍ୟନ୍ତ ଗୋଟାଏ ଅନ୍ଧବିଶ୍ୱାସ ଥିଲା, ପ୍ରକୃତ କେଉଁଝର ରାଜ୍ୟଟା ସେମାନଙ୍କର; ଇଚ୍ଛାକଲେ ପୁରୁଣା ରାଜାଙ୍କୁ ବାହାର କରିଦେଇ ନୂଆରାଜା ନିଯୁକ୍ତ କରିବାର ସେମାନଙ୍କର ଅଧିକାର ଅଛି । ଏହି ଭ୍ରାନ୍ତ ନିତାନ୍ତ ମୂର୍ଖ ଧାରଣା ହେତୁରୁ ଏଥିପୂର୍ବେ ମଧ୍ୟ କେତେଥର ମେଳି କରିଥିଲେ । ଏ ପ୍ରକାର ମାରାତ୍ମକ ବିଶ୍ୱାସର ଐତିହାସିକ କାରଣ—

ପ୍ରଥମ ଅବସ୍ଥାରେ ମୟୂରଭଞ୍ଜ ଏବଂ କେଉଁଝର ଗୋଟାଏ ରାଜ୍ୟ ଥିଲା । ମୟୂରଭଞ୍ଜ ରାଜଧାନୀକୁ ଯାଇ ହାରଗୁହାରି କରିବା ଅତି ଦୂରବର୍ତ୍ତୀ କେଉଁଝର ଭୂୟାଁମାନଙ୍କ ପକ୍ଷରେ ଅସୁବିଧାଜନକ । ଏଥି ସକାଶେ ଭୂୟାଁମାନେ ମୟୂରଭଞ୍ଜ ରାଜବଂଶରୁ ଗୋଟିଏ ପିଲା ଚୋରି କରି ଆଣି କେଉଁଝର ରାଜଗାଦିରେ ବସାଇ-ଥିଲେ । ନୂତନ ଗାଦିରେ ବସିବାକୁ ଯିବା ସମୟରେ ରାଜାଙ୍କର ହାତୀ ଘୋଡ଼ା ନ ଥିଲା । ଯୋଡ଼ାଏ ଭୂୟାଁ ହାମୁଡ଼ି ପଡ଼ି ହାତୀ ଘୋଡ଼ା ହେଲେ । ମୟୂରଭଞ୍ଜରୁ ଅପହୃତ ଶିଶୁରାଜା ସେମାନଙ୍କ ଉପରେ ଚଢ଼ି ରାଜସିଂହାସନରେ ବସିବାକୁ ଗଲେ । ରାଜା ଗଦିନସିନ ହେଲା ଉତ୍ତାରେ ଗୋଟାଏ କଳ୍ପିତ ଅପରାଧୀ ଭୂୟାଁ ସିଂହାସନ ଆଗରେ ଲମ୍ବ ଭାବରେ ପଡ଼ିଗଲା । ରାଜାସାହେବ ଗାଦିରେ ବସି ତାହା ବେକରେ ଗୋଟାଏ ଲଙ୍ଗା ତରବାରି ଝୁଲାଇ ଦେଲେ । ସେଥିର ଅର୍ଥ—ଅପରାଧୀ ଭୂୟାଁକୁ ହାଣି ପକାଇବାର ଅଧିକାର ରାଜାଙ୍କୁ ଦିଆଗଲା । ବର୍ତ୍ତମାନ କାଳ ପର୍ଯ୍ୟନ୍ତ ମଧ୍ୟ କେଉଁଝର ନୂତନ ରାଜା ଗଦିନସିନ ହେବା ସମୟରେ ସେହି ପରି ଅଭିନୟ ହୋଇଥାଏ ।

ବର୍ତ୍ତମାନ ବିଦ୍ରୋହର କାରଣ—ମାଛକାନ୍ଦଣା ଜୋର । ନଜଗଡ଼ର ନୈଋତ କୋଣସ୍ଥିତ ଗୋଟିଏ ଅନୁଚ୍ଚ ପର୍ବତଶ୍ରେଣୀ ମଧ୍ୟଭାଗରେ ମାଛକାନ୍ଦଣା ଜୋର ପ୍ରବାହିତ । ସେହି ଜୋର ଜଳ ଉତ୍ତର ଦିଗକୁ ବହିଯାଇ ବୈତରଣୀ ନଦୀରେ ପଡ଼େ । ନଜଗଡ଼ ମୁକାମରୁ ପାର୍ବତ୍ୟ ପ୍ରଦେଶକୁ ଯିବା ସକାଶେ ଯେଉଁ ବାଟ ପଡ଼ିଅଛି, ପର୍ବତ ମୂଳରୁ ଉଠି ଅଳ୍ପ ଦୂରକୁ ଗଲେ ମାଛକାନ୍ଦଣା ଜୋର ପଡ଼େ । କେଉଁଝରର ନଜଗଡ଼ ଗ୍ରାମଟା ପର୍ବତର ଉପତ୍ୟକା ମଧ୍ୟରେ ଅବସ୍ଥିତ । ବାଟପାଖ ପର୍ବତ ଶୃଙ୍ଗର ଅତି ଅଳ୍ପ ଅଂଶ ମାତ୍ର ଭାଙ୍ଗିଦେଇ ପୂର୍ବ ଦିଗକୁ ଗୋଟିଏ ମାହାରି ଖୋଲିଦେଲେ ଜୋର ଜଳଟା ଉତ୍ତର ଦିଗକୁ ନ ଯାଇ

ପୂର୍ବ ଦିଗସ୍ଥ ନଜଗଡ଼ର ସମସ୍ତ ବିଲରେ ମାଡ଼ିଯାନ୍ତା । ଜୋର ଖୋଲା କାର୍ଯ୍ୟ ଲାଗିଥିବା ସମୟରେ ମୁଁ ସେହି ମାଛକାନ୍ଦଣା ଦେଖିବାକୁ ଯାଇଥିଲି । ଜୋର ଦେଖି ମୋ ମନରେ ଅତ୍ୟନ୍ତ ଆନନ୍ଦ ଜାତ ହେଲା । ଅନୁମାନ କଲି, ଏହି ଜୋରଟି ନଜଗଡ଼ ପକ୍ଷରେ ନିତାନ୍ତ ଆୟୁକର ଏବଂ ସ୍ୱାସ୍ଥ୍ୟପ୍ରଦ ଅଟେ; ମାତ୍ର ଯେ ପ୍ରକାର କଳ୍ପନା ସ୍ଥିର କରାଯାଇ କାର୍ଯ୍ୟ ଆରମ୍ଭ କରାଯାଇଅଛି, ସେଥିରୁ ସେପରି ଉପକାର ଲାଭର ସମ୍ଭାବନା ନ ଥିଲା । ଅନୁମାନ କଲି, ଜୋର ଦୁଇ ପାଖରେ ଉଚ୍ଚ ପର୍ବତ ଶିଖ, ଉତ୍ତର ପଟରେ ଜୋର ସ୍ରୋତଜଳ ଅଟକାଇବା ପାଇଁ ଗୋଟିଏ ବଡ଼ ବନ୍ଧ ବାନ୍ଧଦେଲେ ଗୋଟିଏ ହ୍ରଦ ପରି ପାଣି ଜମା ହୋଇପିବ । ପୂର୍ବ ଦିଗରୁ ମାହାରି ଖୋଲଦେଇ କବାଟ ଲଗାଇଦେଲେ ଇଚ୍ଛାନୁସାରେ ସମୟରେ ଗ୍ରାମ ମଧ୍ୟକୁ ଜଳ ନେଇ ହେବ । ଏଥିରେ ଯେତେ ଅନାବୃଷ୍ଟି ହେଲେ ମଧ୍ୟ ଫସଲ ନଷ୍ଟ ହେବ ନାହିଁ । କେବଳ ଏତିକି ନୁହେ, ପର୍ବତ ମୂଳରୁ ପୂର୍ବ ଦିଗକୁ ନଜଗଡ଼ ଗ୍ରାମକୁ ଦୁଇ ଭାଗରେ ବିଭକ୍ତ କରି କେନାଲ ପରି ଗୋଟାଏ ନାଳ ଅଛି । ବୃଷ୍ଟି କାଳରେ ମାତ୍ର ଜଳ ଥାଏ, ଅନ୍ୟ ସମୟରେ ଶୁଷ୍କ । ସେଥିରେ ଜଳ ପୂର୍ଣ୍ଣ କରି ରଖିଲେ ଗଡ଼ବାସୀଙ୍କ ପକ୍ଷରେ ସ୍ନାନ, ପାନ ଏବଂ ବାଡ଼ିର ଫସଲ ଆବାଦ ପକ୍ଷରେ ବଡ଼ ଉପକାର ହୁଅନ୍ତା । ଗଡ଼ବାସୀ ଯେ ସର୍ବଦା ଜ୍ୱର ଭୋଗ କରୁଅଛନ୍ତି, ଭଲ ଜଳ ବ୍ୟବହାର କଲେ ସ୍ୱାସ୍ଥ୍ୟ ରକ୍ଷା ହୁଅନ୍ତା, ଆଉ ଜ୍ୱର ହୁଅନ୍ତା ନାହିଁ । ଏହି ଜୋର କାର୍ଯ୍ୟ ସକାଶେ ଆନୁମାନିକ ଦଶହଜାର ଟଙ୍କା ବ୍ୟୟ ଆବଶ୍ୟକ । ଗଡ଼ର ଆସିଷ୍ଟାଣ୍ଟ ମେନେଜର ବାବୁ ବିଚିତ୍ରାନନ୍ଦ ଦାସ ମୋ ସଙ୍ଗରେ ଥିଲେ । ମୋ ଅଭିପ୍ରାୟ ତାଙ୍କୁ ଜଣାଇଲି ।

ଜୋର ଦେଖି ବାହୁଡ଼ିବା ଉତ୍ତାରେ ମହାରାଜା ବିଚିତ୍ରାନନ୍ଦ ବାବୁଙ୍କୁ ପଚାରିଲେ—"ଜୋର ଦେଖି ମେନେଜର ବାବୁ କ'ଣ କହିଲେ ?" ବିଚିତ୍ରାନନ୍ଦବାବୁ କେବଳ ଏତିକି କଥା କହିଲେ ଯେ, "ମାହାରି ଖୋଲାଇଲେ ଦଶହଜାର ଟଙ୍କା ଖରଚ ହେବ ।" ମହାରାଜା ବିରକ୍ତ ହୋଇ କହିଲେ, "ମେନେଜର ବାବୁ ସବୁ ବିଷୟରେ ଟଙ୍କା ଖରଚ କରିବାକୁ ଚାହାନ୍ତି ।" ମହାରାଜା ମୋତେ ସେ ସମ୍ବନ୍ଧରେ କିଛି କଥା ପଚାରିଲେ ନାହିଁ, ମୁଁ ମଧ୍ୟ କିଛି କହିଲି ନାହିଁ । ମହାରାଜାଙ୍କ ଆଦେଶ ଅନୁସାରେ ମୁଁ କଟକରୁ ଖୁବ୍ ମୋଟା ଚରିଟା ଉଚ୍ଚ ଇସ୍ପାତ ଲୁହା ସାବଳ ଅଣାଇ ଦେଲି । ମାଛକାନ୍ଦଣା ଜଳ ନଜଗଡ଼ ମୌଜା ବିଲକୁ ଅଣାଯିବା ସକାଶେ ପର୍ବତ ଶୃଙ୍ଗ ଭାଙ୍ଗି ମାହାରି ଖୋଲା ଲାଗିଲା । ସେଥିରେ ଇଞ୍ଜିନିୟର ନିଯୁକ୍ତ ହେଲେ ନଜଗଡ଼ କଚେରିର ଆସିଷ୍ଟାଣ୍ଟ୍ ମେନେଜର ବାବୁ ବିଚିତ୍ରାନନ୍ଦ ଦାସ । ଭୂମ୍ୟାଁ ପ୍ରଜାମାନଙ୍କୁ ବେଠିରେ ଧରାଇ ଆଣି କାମରେ ଲଗାଇ ଦିଆଗଲା ।

ଆସିଷ୍ଟାଣ୍ଟ ମେନେଜର ବାବୁ ଆନନ୍ଦପୁର ଅଫିସରେ ପେସ୍କାର ଥିଲେ । ଲୋକଟି ଅତ୍ୟନ୍ତ ପରିଶ୍ରମୀ—ସ୍ନାନାହାର ନ କରି ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ କାର୍ଯ୍ୟରେ ଲାଗିଥାନ୍ତି । ତାଙ୍କ କର୍ମଠତା ଗୁଣ ଦେଖି ମହାରାଜା ନଜଗଡ଼ ଇଲାକାରେ ତାଙ୍କୁ ଆସିଷ୍ଟାଣ୍ଟ ମେନେଜରରେ ନିଯୁକ୍ତ କରିଥିଲେ । ବିଚିତ୍ରାନନ୍ଦ ବାବୁଙ୍କର ଇଚ୍ଛା—ସେ ଯେପରି ପରିଶ୍ରମୀ ବେଠିଆମାନେ ମଧ୍ୟ ସେହିପରି ପରିଶ୍ରମୀ ହୁଅନ୍ତୁ । ଭୂୟାଁ ବେଠିଆମାନେ ମାହାରି ଖୋଲାରେ ଲାଗିଥାନ୍ତି । ଦଶ ପନ୍ଦର ସେର ଓଜନ ସାବଳରେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ପଥର ଭାଙ୍ଗିବାକୁ ହେବ, ସହଜ କଥା ନୁହେଁ । ମଧ୍ୟରେ ବାରଟା ସମୟରେ ଖାଇବା ସକାଶେ ଦୁଇଘଣ୍ଟା ଛୁଟି । କାମରେ କିଞ୍ଚିତ ଢିଲା କଲେ ବେଠିଆ ବାଡ଼ଆ ଖାଏ । ଯେଉଁ ବେଠିଆଟା ଘରୁ ଗୁଣ୍ଡଳ ବାନ୍ଧି ଆଣିଅଛି, ସେ ଗୋଡ଼ାଇ କରି ଖାଉ, ଯେଉଁ କଙ୍ଗାଳଟାର ଘରେ କିଛି ନ ଥିଲା, ଗୁଣ୍ଡଳ

ଆସି ପାରି ନାହିଁ, ସେଇଠା ଓପାସରେ ଶୋଉ;
ବେଠିଆକୁ ପୁଣି ଶୃଙ୍ଖଳ ଦିଆ ଯିବ କ'ଣ ?

ନିତାନ୍ତ କଷ୍ଟ ପାଇ ବିରକ୍ତ ହୋଇ ସମସ୍ତ ଭୂୟାଁ ଏକଯୋଗରେ ବିଦ୍ରୋହୀ ହୋଇଗଲେ । ଇଚ୍ଛା, ଆସିଷ୍ଟାଣ୍ଟ ମେନେଜର ବାବୁ ବିଶ୍ୱାନନ୍ଦ ଦାସଙ୍କୁ ହାଣି ପକାଇ ରାଜାଙ୍କୁ ବାହାର କରି ଦେବେ । ବିଶ୍ୱାନନ୍ଦ ବାବୁ ହାତରେ ପଡ଼ିଥିଲେ ନିଶ୍ଚୟ ହାଣ ଖାଇଥାନ୍ତେ । ପଳାଇ ଯାଇ ରକ୍ଷା ପାଇଲେ ।

ଏହି ସମୟରେ ଧରଣୀଧର ଭୂୟାଁ କଟକରୁ ଆସି ଆପଣାକୁ ମହାରାଣୀ ପୁତ୍ର ବୋଲି ପରିଚୟ ଦେବାରୁ ତାଙ୍କୁ ମହାରାଜା ପଦରେ ନିଯୁକ୍ତ କରାଯାଇଥିଲା । ଭୂୟାଁମାନଙ୍କର ବିଶ୍ୱାସ – ରାଜାଙ୍କୁ ବାହାର କରି ଦେବାର ଏବଂ ନୂତନ ରାଜା ନିଯୁକ୍ତ କରିବାର ସେମାନଙ୍କର ଅଧିକାର ଅଛି । ପ୍ରସଙ୍ଗକ୍ରମରେ ଦୂରବର୍ତ୍ତୀ କେତେ ଗୁଡ଼ାଏ କଥା ଲେଖିଗଲି, ବର୍ତ୍ତମାନ ଉପସ୍ଥିତ ଘଟଣା ବିଷୟ ଆରମ୍ଭ କରାଯାଉ ।

ସେ ଦିବସ ମୋହର ମେନେଜର ନିଯୁକ୍ତି ସମ୍ବନ୍ଧରେ ଚୂଡ଼ାନ୍ତ ନିଷ୍ପତ୍ତି ହୋଇ ପାରିଲା ନାହିଁ । ଅନ୍ୟାନ୍ୟ ପ୍ରସଙ୍ଗ ଆଲୋଚନା ଉତ୍ତାରେ ଦରବାର ଭଙ୍ଗ ହେଲା । ସେଦିନ ରାତିରେ ମଧ୍ୟ ମୋ ଗୁମୁଡ଼ିଆ ଭିତରେ ଜନ୍ଦାଙ୍କ ଉତ୍ପାତ, ନିଦ୍ରାର ଅଭାବ । ଦ୍ୱିତୀୟ ଦିନର ଦରବାର ଆରମ୍ଭରେ ମୋତେ ମେନେଜର ପଦରେ ନିଯୁକ୍ତ କରାଯିବାର ପ୍ରସଙ୍ଗ ଉଠିଲା । ଅଧିକାଂଶ ସରଦାର ମୋତେ ମେନେଜର ପଦରେ ନିଯୁକ୍ତ କରାଯିବା ସମ୍ବନ୍ଧରେ ଆପତ୍ତି ଉତ୍ଥାପନ କରିବାରୁ ମହାରାଣୀ ପୁତ୍ର ଧରଣୀଧର କହିଲେ, "ଜଣେ ବୁଦ୍ଧିମାନ୍ ଯୋଗ୍ୟ ଲୋକ ମୋ ପାଖରେ ନ ରହିଲେ ଏତେବଡ଼ ରାଜ୍ୟଟା କପରି ଚଳାଇ ପାରିବ ? ଅଚ୍ଛା, ତୁମ୍ଭେମାନେ ତ ଏତେ ଲୋକ ଅଛ, ଏହି ବାବୁଙ୍କୁ ତଡ଼ା କରାଇ ଦେଲ—ଏପରି ବୁଦ୍ଧିବନ୍ତ, ଗୁଣବନ୍ତ ଗୋଟାଏ ଲୋକ ବାହାର କଲ, ତାଙ୍କୁ ମନ୍ତ୍ରି-ପଦରେ ନିଯୁକ୍ତ କରିବି, ଫକୀରମୋହନ ବାବୁଙ୍କୁ ବାହାର କରିଦେବି ।" ସେ ସମୟରେ ଭୂୟାଁପୀଡ଼ର ସମସ୍ତ ଲୋକ ଧରଣୀକୁ ଦେବାବତାର ବୋଲି ବିଶ୍ୱାସ କରୁଥିଲେ । ମୁଁ ମନ୍ତ୍ରିପଦରେ ନିଯୁକ୍ତ ହୋଇଗଲି ।

ଭୂୟାଁମାନେ ନିତାନ୍ତ ଆରଣ୍ୟ ଲୋକ । ନିଜ ଦେଶ ବନ ପର୍ବତ ଛାଡ଼ି ଅନ୍ୟ ଦେଶକୁ ଯିବା ଇଚ୍ଛା କରନ୍ତି ନାହିଁ । ନିତାନ୍ତ ମୂର୍ଖ, ସୁତରାଂ ଅନ୍ୟ ଦେଶର ଅସ୍ତିତ୍ୱ ସମ୍ବନ୍ଧରେ ଜ୍ଞାନ ସେମାନଙ୍କର ଏକାବେଳକେ ନ ଥିଲା । ଭୂୟାଁମାନେ ଜାଣିଥିଲେ, ଜଣେ ମହାରାଣୀ ଅଛନ୍ତି, ସେ ପୃଥିବୀର ସମସ୍ତ ରାଜାଙ୍କ ଉପରେ ଅଧୀଶ୍ୱରୀ । ତାହାଙ୍କ ରାଜଧାନୀ କଟକରେ । ଧରଣୀଧର କଟକ ଯାଇଥିଲେ । କେଉଁଝରର ମହାରାଜା ଅନ୍ୟାୟ ବିଚାର କରିବାରୁ ମହାରାଣୀ ଧରଣୀଧର ଭୂୟାଁଙ୍କୁ ପୋଷ୍ୟପୁତ୍ର ଗ୍ରହଣ କରି ତାଙ୍କୁ କେଉଁଝରର ମହାରାଜା ପଦରେ ନିଯୁକ୍ତ କରି ଅଛନ୍ତି । ଏଥକୁ ସେହି ମହାରାଣୀ ପୁତ୍ର ଧରଣୀଧର ଭୂୟାଁଙ୍କ ଆଜ୍ଞା ଅମାନ୍ୟ କରିବା କାହାରି ଶକ୍ତି ନ ଥିଲା । ପୂର୍ବଲିଖିତ ମହାପାତ୍ର ଭୂୟାଁ ସମସ୍ତ ସରଦାର ଭୂୟାଁଙ୍କୁ ଗୁପ୍ତ ଭାବରେ ବୁଝାଉଥାଏ, ଫକୀରମୋହନ ମହାରାଜା ତରଫର ଲୋକ, ସେ ମନ୍ତ୍ରି-ପଦରେ ନିଯୁକ୍ତ ହେଲେ ଭୂୟାଁମାନଙ୍କର ଅମଙ୍ଗଳ କରିବ । ତାଙ୍କୁ ମନ୍ତ୍ରିପଦରେ ନିଯୁକ୍ତ କରିବା ଉଚିତ ନୁହେଁ; ମାତ୍ର ପ୍ରକାଶ୍ୟ ଭାବରେ ମୋ ବିପକ୍ଷରେ କିଛି କଥା କହେ ନାହିଁ । ଧରଣୀଧରର ଇଚ୍ଛା ବିରୁଦ୍ଧରେ କିଛିମାତ୍ର କଥା ବୋଲିବାକୁ ତାହାର ସାହସ ନ ଥିଲା । ଅନେକ ସରଦାରଙ୍କର ଇଚ୍ଛା ନ ଥିଲେ ମଧ୍ୟ ମହାରାଣୀ ପୁତ୍ର ଧରଣୀଧର ଭୂୟାଁ ମୋତେ ତାଙ୍କ ମନ୍ତ୍ରି-ପଦରେ ନିଯୁକ୍ତ କଲେ । ନିଯୁକ୍ତି ପତ୍ର ଉପରେ ଦସ୍ତଖତ କରିଦେଲେ—"ମହାରାଣୀ ପୁତ୍ର ଧରଣୀଧର

ଭୂଞାଁ । ପ୍ରତ୍ୟେକ କାଗଜରେ ଏହିପରି ଦସ୍ତଖତ ରହିଥାଏ ।"

ମୁଁ ମନ୍ତ୍ରିପଦରେ ନିଯୁକ୍ତ ହୋଇ ଦରମା ବିଷୟ ଉତ୍ଥାପନ କଲି । ମହାରାଣୀ ପୁଣି ଆଜ୍ଞା କଲେ— କେହି କର୍ମଚାରୀ ବର୍ତ୍ତମାନ ଦରମା ପାଇବେ ନାହିଁ । ଆମ୍ଭେ କେଉଁଝରର ରାଜ୍ୟରେ ନ୍ୟାୟ ବିଚାର କରିବାକୁ ଆସିଛୁଁ । କେହି ପ୍ରଜା ଖଜଣା ଦେବେ ନାହିଁ । ମୁଁ ନିତାନ୍ତ ଓଜର କରିବାକୁ ଲାଗିଲି—ବାଲେଶ୍ୱରରେ ମୋହର ଢେର କୁଟୁମ୍ବ ଅଛନ୍ତି । ଦରମା ନ ପାଇଲେ ସେମାନେ ରକ୍ଷା ପାଇବେ କିପରି ? ଅନେକବେଳ ପର୍ଯ୍ୟନ୍ତ ଏ ବିଷୟରେ ଆଲୋଚନା ହେବାକୁ ଲାଗିଲା । ମୁଁ ଦୃଢ଼ରୂପେ କହିଲି, 'ଦରମା ନ ପାଇଲେ ମୁଁ ଚାକିରି କରି ପାରିବି ନାହିଁ । ମୋହର ଚାକିରି କରିବାକୁ ନିତାନ୍ତ ଇଚ୍ଛା, ଏ ବିଷୟ ଭୂଞାଁମାନଙ୍କୁ ଜଣାଇବା ଏବଂ ଧରଣୀ ଓ ଭୂଞାଁ ସରଦାରମାନଙ୍କୁ ଅନ୍ୟମନସ୍କ କରାଇ ସମୟ କାଟିବା ମୋହର ଉଦ୍ଦେଶ୍ୟ । ଏହି ଉଦ୍ଦେଶ୍ୟରେ ସମୟ ସମୟରେ ଗୋଟାଏ ଗୋଟାଏ ଛୁଛା ବିଷୟ ନେଇ ଏ ପ୍ରକାର ଆଲୋଚନା ଲଗାଇ ଦିଏ ଯେ, ସେଥିପାଇଁ ବାଦାନୁବାଦରେ ଅନେକ ସମୟ କଟିଯାଏ, ମହାରାଜା କିମ୍ବା ରାଜପରିବାର ବିପକ୍ଷରେ କୌଣସି ବିଷୟ ଆଲୋଚନା କରିବାକୁ ସମୟ ମିଳୁ ନାହିଁ । ଅନେକ ପ୍ରାର୍ଥନା ଓ ବାଦାନୁବାଦ ଉତ୍ତାରେ ବେତନ ସ୍ୱରୂପ ସାତମାଣ ଜମି ନୟରରେ ଭୋଗ କରିବାର ସ୍ଥିର ହୋଇଗଲା ।

ରାଇସୁଆଁକୁ ଆସିବାର ଆଜି ତୃତୀୟ ରାତି ଉପସ୍ଥିତ । ଗତ ଦୁଇ ରାତିରେ ଶୋଇବାକୁ ପାଇନାହିଁ । ଅନେକ ଚେଷ୍ଟା ଓ ପ୍ରାର୍ଥନାରେ ରାଇସୁଆଁ ମୌଜାର ପଧାନ ମେଘେ ଖଣ୍ଡେ ଛିଣ୍ଡା ପୁରୁଣା ବୁଦେଇ ଦଉଡ଼ିବୁଣା ଖଟିଆ ଆଣି ଦେଲା । ଚାକର ତାହା ଉପରେ ସୁନ୍ଦର ରୂପେ ମୋ ଶେଯ ପାରି ଦେଇଥିଲା । ଆହାରାଦି ସମାପ୍ତ କରି ଖଟିଆ ଉପରେ ଯାଇ ବସିଲି । ମନରେ ଭାରି ଆନନ୍ଦ, ଏହି ଦଉଡ଼ି ଖଟିଆ ଖଣ୍ଡିକ ବର୍ତ୍ତମାନ ମୋ ପକ୍ଷରେ ଦ୍ୱିରଦରଦ-ନିର୍ମିତ ପର୍ଯ୍ୟଙ୍କ ବିଶେଷ । ଗତ ଦୁଇ ରାତି ଶୋଇ ପାରିନାହିଁ, ଆଜି ଭଲକରି ଶୋଇବି । ଚାକରକୁ ଡାକଦେଲି—ଚିଲମରେ ବହୁତ ଗୁଡ଼ାଖୁ, ଢେର ରଡ଼ନିଆଁ ପୂରାଇ ଆଣି ଦେ । ଇଚ୍ଛା, ଭଲ କରି ଗୁଡ଼ାଖୁ ଖାଇ ଶୋଇବି । ଚାକର ଗୁଡ଼ାଖୁ ସାଜ ଆଣି ମୋ ଆଗରେ ଚିଲମ ନିଆଁ ଭଲକରି ଫୁଙ୍କିଲା । ରଡ଼ ନିଆଁ ଗୁଡ଼ାକ ଦପ୍ ଦପ୍ କରି ଜଳି ଉଠୁଥାଏ । ଚାକର ମୋ ହାତକୁ ହୁକା ବଢ଼ାଇ ଦେଲା । ହା ଅଦୃଷ୍ଟ, ଏ କଣରେ ! ମୁଁ ଖାଇବା ହାତରେ ଧରି ହୁକା ନଳିଟାରେ ଯେମନ୍ତ ମୁହଁ ଲଗାଇଛି, କପରି କେଜାଣି ହୁକା ନାଳରୁ ମୁଣ୍ଡ ଉପରୁ ଚିଲମଟା ଖସି ମୋ ମୁଣ୍ଡ ଉପରେ ଅଜାଡ଼ ହୋଇ ପଡ଼ିଲା । ହାଁ ହାଁ, ଝାଡ଼୍ ଝାଡ଼୍,—ଝାଡ଼୍ ଝାଡ଼୍ ରଡ଼ ନିଆଁ ଗୁଡ଼ାକ ମୋ ମୁଣ୍ଡଠାରୁ ଗୋଡ଼ଯାଏ, ବିଛଣା ଗୋଟାକରେ ପଡ଼ି ମେଲିଗଲା । ଝାଡ଼ ଝୁଡ଼ ହୋଇ ଖଟିଆ ଉପରେ ବସିଲି । ହାତ ବୁଲାଇ ଦେଖିଲି, ଦେହରେ ସାନ ବଡ଼ ଅନେକ ଗୁଡ଼ାଏ ଫୋଟକା ବାହାରି ପଡ଼ିଅଛି । କେଉଁଠି କେଉଁଠି ଫୋଟକା ବାହାରି ନାହିଁ, ଛୁଛାଟାରେ ଜଳୁଅଛି । ସେହି ଦାରୁଣ ଯନ୍ତ୍ରଣା ସମୟରେ ମଧ୍ୟ ବଡ଼ ହସ ମାଡ଼ିଲା । ମନରେ କଲି, ବିପଦ ଏହିପରି ଅକସ୍ମାତ୍ ଆସେ ।

ମୁଁ ମହାରାଣୀଙ୍କ ପୁଣି ଧରଣୀଧରଙ୍କର ମନ୍ତ୍ରୀ, ଏ କଥା ଭୂଞାଁ ପୀଡ଼ରେ ପ୍ରଚାର ହୋଇଗଲାଣି । ଧରଣୀ-ଧରଙ୍କର ମଧ୍ୟ ମୋ ପ୍ରତି ଭାରି ବିଶ୍ୱାସ, ରାଜକାର୍ଯ୍ୟ ନିର୍ବାହ ସମ୍ବନ୍ଧରେ ମୋ ପରାମର୍ଶ ଅଗ୍ରାହ୍ୟ କରନ୍ତି ନାହିଁ । ଧରଣୀଧର ବର୍ତ୍ତମାନ ସେହି ଅଞ୍ଚଳରେ ଦେବତାତୁଲ୍ୟ ପୂଜ୍ୟ । ପ୍ରତିଦିନ ଭିନ୍ନ ଭିନ୍ନ ଗ୍ରାମ-ମାନଙ୍କରୁ ଟଙ୍କାକୁ ପଞ୍ଚା ଭରିଲା ଶଙ୍ଖ ବଜାଇ

ହୁଳହୁଳି ଦେଇ ଧରଣୀଙ୍କୁ ପୂଜା କରିବାକୁ ଆସନ୍ତି । ଧରଣୀଧର ଗୋଡ଼ ବଢ଼ାଇ ଦିଏ, ଝିଅମାନେ ହଳଦୀ ପାଣିରେ ଗୋଡ଼ ଧୋଇ ଦେଇ ଚନ୍ଦନ ବାଦ ଫୁଲ ଦେଇ ପୂଜା କରନ୍ତି । ଧରଣୀର ପୂଜା ସମାପ୍ତ ହୋଇ ଗଲେ ମୋ ଗୋଡ଼ ଧୋଇ ପୂଜା କରିବାକୁ ଆସନ୍ତି । ମୁଁ ମନ୍ତ୍ରୀ କନା, ସେଥିପାଇଁ ମୋହର ପୂଜା ଆବଶ୍ୟକ । ମାତ୍ର ମୁଁ ସେମାନଙ୍କୁ ନମସ୍କାର କରି କହେଁ—“ତୁମ୍ଭେମାନେ ମୋ ମା, ମୋ ଗୋଡ଼ ଛୁଅଁ ନା । ମୁଁ ଗୋଟାଏ ଶୂଦ୍ର, ମୋର ପୁଣି ପୂଜା କ'ଣ ?” ଧରଣୀ ମୋ କଥା ଶୁଣନ୍ତି, ମୋ ଗ୍ରାମୁଡ଼ିଆକୁ ଆସି ମୋ ସାଙ୍ଗରେ ପାନ ଖାନ୍ତି । ଏ କଥା ଗୋପାଳିଆ ଆଉ ମହାପାତ୍ରଙ୍କ ପକ୍ଷରେ ଅସହ୍ୟ । ଗୋପାଳିଆ ପୂର୍ବେ ଅପରାଧ କରିଥିବାରୁ କେଉଁଝରର ଜେଲଖାନାରେ ହରିକାଠରେ ପଡ଼ି ବଡ଼ କଷ୍ଟ ପାଇଥିଲା । ସେଥିପାଇଁ ମହାରାଜାଙ୍କ ଉପରେ, ମୁଁ ମହାରାଜାଙ୍କର ମେନେଜର, ସୁତରାଂ ମୋ ଉପରେ ତାହାର ବଡ଼ ରାଗ; ମୋତେ ହାଣି ପକାଇବାକୁ ତାହାର ନିତାନ୍ତ ଇଚ୍ଛା । ଅନେକ ଥର ମୋତେ କଟମଟ କରି ଗୃହିଁ ରହେ—ଉଃ । ଏଇଟାର ବେକ ଚିମିଡ଼ିକା ଲମ୍ବା ହୋଇଛି, ହାଣି ଦିଅନ୍ତି ପରା । ମୋତେ ପାହାଡ଼ ଉପରେ ଭୂଇଁା ଗ୍ରାମ ମଧ୍ୟରେ ବନ୍ଦୀ କରି ରଖିବାକୁ ମହାପାତ୍ରର ନିତାନ୍ତ ଇଚ୍ଛା; ମାତ୍ର ଧରଣୀ ଭୟରେ ସେମାନେ କିଛି କରି ପାରୁ ନ ଥିଲେ । ଶେଷରେ ଧରଣୀଙ୍କ ଅନୁପସ୍ଥିତି ସମୟରେ ମୋତେ ଧରି ନେଇ ବଣକୁ ପଳାଇବା ପାଇଁ ମହାପାତ୍ର ଆଉ କେତେଜଣ ଭୂଇଁା ଗୋପନରେ ପରାମର୍ଶ ସ୍ଥିର କଲେ । ସତକୁ ସତ, ଦିନେ ମୋତେ ନେଇଯିବା ପାଇଁ ବେଢ଼ିଗଲେ । ଧରଣୀ ସମ୍ବାଦ ପାଇ ଧାଇଁଆସି ସେମାନଙ୍କ ପାଖରୁ ମୋତେ ଛଡ଼ାଇ ନେଲା ।

ମୁଁ ମନ୍ତ୍ରୀ; ମାତ୍ର ମୋ ଗ୍ରାମୁଡ଼ିଆ ଘରି ପାଖରେ ଟାଙ୍ଗିଆ—କାଣ୍ଡ ବାଉଁଶଧାରୀ ପାଇକ ପହରା ବସିଅଛି । ମୁଁ ରାତିରେ ଅନେକଥର ବାହାରକୁ ଉଠେଁ । ପ୍ରହରୀ ପାଇକେ ବସି ଢୋଳାଉଥାନ୍ତି । ମୁଁ ଖୁବ୍ ତେଜରେ ସେମାନଙ୍କୁ କହେଁ—“ଆରେ, ତୁମ୍ଭେମାନେ ପହରାରେ ଡିଲ୍ କରୁଛ ? ଏଠି ଜଣେ ଠିଆ ହୁଅ; ସେଠି ଜଣେ ଠିଆ ହୋଇ ପହରା ଦିଅ ।” ଏତେ ତେଜ କରି କହିବାର ଉଦ୍ଦେଶ୍ୟ—ମୁଁ ହାକିମ, ମନ୍ତ୍ରୀ, ବନ୍ଦୀ ନୁହେଁ; ପାଇକମାନେ ହାକିମ ଦୁଆରେ ପହରା ଦେଉଅଛନ୍ତି । ମାତ୍ର ମନରେ ଡର ବି ଥାଏ, ଏମାନେ ଖପ୍ପା ହୋଇ ମୋତେ ହାଣି ପକାଇଲେ କଣ କରିବ ? ମାତ୍ର ପାଇକମାନେ ମୋ ତେଜ କଥା ଶୁଣି ଆଜ୍ଞା, ଆଜ୍ଞା, କହି ଡରରେ ପହରାରେ ଛିଡ଼ା ହୋଇଯାନ୍ତି ।

ରାଜାଙ୍କ ନଅରରେ ଅନେକ ଲକ୍ଷ ଟଙ୍କା ଜମା ଅଛି । ସେହି ଟଙ୍କା ସବୁ ବାହି ନେଇଯିବା, ଆଉ ରାଜପରିବାର ପରିଜନମାନଙ୍କୁ ଧରି ଆଣିବା ଭୂଇଁାମାନଙ୍କର ପ୍ରଧାନ ଉଦ୍ଦେଶ୍ୟ । ମୋତେ ବନ୍ଦୀ କରିବା, ମୋତେ ମନ୍ତ୍ରିପଦରେ ନିଯୁକ୍ତ କରିବା ବିଷୟରେ ଲାଗି ରହିଥିବାରୁ ରାଜାଙ୍କ ଲୁଟ୍ ତରାଜ ବିଷୟରେ ମନ ଦେଇ ପାରି ନ ଥିଲେ । ବର୍ତ୍ତମାନ ସେ ସମସ୍ତ କାର୍ଯ୍ୟ ଆରମ୍ଭ କରିବାର ସମୟ ଉପସ୍ଥିତ । ରାଜରାଣୀ, ରାଜକନ୍ୟା, ଆଉ ଆଉ ପରିଜନମାନଙ୍କ ରହିବା ସକାଶେ ପର୍ବତ ମୂଳରେ ଧାଡ଼ିକୁ ଧାଡ଼ି ଗ୍ରାମୁଡ଼ିଆ ଘର ପ୍ରସ୍ତୁତ ହେବାକୁ ଲାଗିଲା । ଆଗରୁ ଘର ପ୍ରସ୍ତୁତ ନ ଥିଲେ ସେମାନେ ଧରାହୋଇ ଆସି ରହିବେ କେଉଁଠାରେ ? ଏତେ ଦିନଯାଏ ଏତେ କଷ୍ଟରେ ପଡ଼ି ଧୈର୍ଯ୍ୟାବଲମ୍ବନ କରି ରହିଥିଲି । ରାଣୀ, ରାଜକନ୍ୟାମାନଙ୍କୁ ଭୂଇଁାଗୁଡ଼ାକ ଧରି ଆଣିବେ, ଏ କଥା ଶୁଣିଲା ବେଳଠାରୁ ମୋହର ବୁଦ୍ଧି ହଜି ଗଲାଣି । କିଛି ଉପାୟ ସ୍ଥିର କରି ପାରୁନାହିଁ ।

ଆଜି ଭାରି ଗୋଟାଏ ବଡ଼ ଦରବାର ବସିଅଛି । ଭୂଇଁାପୀଢ଼ର ସମସ୍ତ ସରବରାକାର, ପ୍ରଧାନ ପ୍ରଧାନ

ଭୂୟାଁ—ନିଜେ ମହାପାତ୍ର ପାଇକ ଦଳପତି ଗୋପାଳଆ ସମ୍ପ୍ରେ ଉପସ୍ଥିତ । ଦରବାରରେ ସ୍ଥିର ହୋଇଗଲା—ଟାଙ୍ଗିଆ ଚରଦାର ଅଣ୍ଟାରେ ବାନ୍ଧି, ହାତରେ କାଣ୍ଡ-ବାଉଁଶଧରି ଚାରି ପାଞ୍ଚ ହଜାର ପାଇକ ବାଣୁଆ (ବନ୍ଧୁକଧାରୀ) ଅମୁକ ଦିନ ସକାଳେ ଏଠାରେ ଉପସ୍ଥିତ ହେବେ । ସମସ୍ତେ ଏକାବେଳକେ ରାଜାଙ୍କ ନଅର ବେଢ଼ିପିବେ । ପାଚେରୀ ତୋଡ଼ ଦେଇ ଘରଙ୍କି ପକାଇ ଭିତରେ ପଶିଯାଇ ନଅର ପରିଜନଙ୍କୁ ଧରି ଆଣିବେ ।

ମୁଁ ଗୁମୁଡ଼ଆ ଭିତରେ ବସି ଶୁଣୁଥାଏଁ । ସବୁ କଥା ସ୍ଥିର ହୋଇଗଲା ଉତ୍ତାରେ ମହାରାଣୀଙ୍କ ପୁଅ ଧରଣୀଧର ଭୂୟାଁ କହିଲେ, "ଆଚ୍ଛା, ସବୁ ତ ସ୍ଥିର ହୋଇଗଲା, ମନ୍ତ୍ରୀଙ୍କୁ ପଚାରିଯାଉ, ସେ କଣ ପରାମର୍ଶ ଦେବେ ।" ମୁଁ ଦରବାର ମଝିରେ ଉପସ୍ଥିତ ହୋଇ ମହାରାଣୀ ପୁଅଙ୍କ ନିକଟରେ ବସିଲି । ସବୁ ଭୂୟାଁ ଏକ ଧ୍ୟାନରେ ମୋ ମୁହଁକୁ ଚାହିଁ ରହିଅଛନ୍ତି । ଧରଣି ମୋତେ ସବୁ କଥା କହି ପଚାରିଲେ—"ତୁମ୍ଭେ କଣ କହୁଛ ? ଏ ବିଷୟରେ କଣ କରାଯିବ ?"

ମୁଁ କେତେକ ମିନିଟ ପର୍ଯ୍ୟନ୍ତ ଆଖିବୁଜି ଗମ୍ଭୀର ଭାବରେ ବସିଲି । ଏଇଟା ହେଲା ଗୋଟାଏ କୌଶଳ-ଅର୍ଥାତ୍ ମୁଁ ସମସ୍ତଙ୍କୁ ଦେଖାଉଥାଏଁ, ଯେମନ୍ତ କେତେ-ଗୁଡ଼ାଏ ବୁଦ୍ଧି ଠିକ କରୁଅଛି । ଶେଷରେ ଖୁବ ତେଜରେ ପାଟିକରି କହିଲି—"ଶୁଣନ୍ତୁ, ରାଜାଙ୍କ ଗନ୍ତାଘରେ ଢେର ଟଙ୍କା ଅଛି । ସେ ସମସ୍ତ ବୋହି ଆଣିବାକୁ ହେବ, କାହ୍ନୁପ୍ରଭୁ ଆଣିବାକୁ ହେବ । ନ ଆଣିଲେ ଏ ଜାଗାରେ କାର୍ଯ୍ୟ କପରି ଚଳିବ ?" ଏତିକ କଥାଶୁଣି ସମସ୍ତେ ଏକାବେଳକେ ପାଟିକରି କହିଲେ—"ସତ କହିଲ, ସତ କହିଲ, ସତ କହିଲ ।" ତହିଁ ଉତ୍ତାରେ ମୁଁ କହିଲି—"ଶୁଣନ୍ତୁ, ବାଘଛୁଆ ଧରି ଆଣିବାକୁ ହେବ, ଆଉ ଯେଉଁମାନେ ଛୁଆ ଧରିବାକୁ ଯିବେ, ତାଙ୍କୁ ଯେମନ୍ତ ବାଘ ନ କାମୁଡ଼େ । ଯଦି ବାଘ ଧରି ବେକ ମୋଡ଼ ଦେବ, ଛୁଆ ତ ଧରି-ପାରିବ ନାହିଁ । ଧରି ଆଣିବା କଣ ହେବ ? ମୁଁ ଏ କଥା କାହିଁକି କହିଲି ଜାଣ ? ଗଡ଼ ଭିତରେ ପାଚେରୀ ମୂଳରେ ଦୁଇ ତିନିଶ ପାଇକ ବନ୍ଧୁକ ଧରି ଛିଡ଼ା ହୋଇ ଅଛନ୍ତି । ସେମାନେ ଯଦି ଥରେ ବନ୍ଧୁକ ଫୁଟାଇ ଦେବେ, ତେବେ ବାହାରୁ ଯାଉଥିବା ତିନିଶ ଲୋକ ଏକାବେଳକେ ଉଡ଼ିପିବେ । ଆଉ ଗଡ଼ ଦୁଆରେ ଯେଉଁ ତୋପ ବସିଅଛି, ସେଇଟା ଥରେ ଫୁଟିଲେ ଏକାବେଳକେ ପାଞ୍ଚଶ ଲୋକ ଉଡ଼ାଇ ଦେବ । ତେବେ କଣ ହେବ ବୋଲ ତ ? ଏହି ଯେ ସରଦାରମାନେ ବସିଅଛନ୍ତି, ଗଡ଼ ଆକ୍ରମଣ କରିବାକୁ ଯିବାବେଳେ ସେମାନେ ସବା ଆଗରେ ରହିବେ ତ ? କାରଣ ସେମାନେ ଆଗରେ ନ ଚାଲିଲେ ଆଉ ଲୋକ ପଛରେ ଚାଲିବେ ନାହିଁ । ଗଡ଼ ଭିତରୁ ବନ୍ଧୁକ ଫୁଟିଲେ ଏମାନେ ତ ଆଗେ ମାରି ପଡ଼ିବେ । ଏହିମାନେ ତ ଦେଶର ମୁଣ୍ଡ, ଏହିମାନେ ତ ଭୂୟାଁ-ପୀଢ଼ିର ରକ୍ଷାକାରୀ । ଏମାନେ ଚାଲିଗଲେ ଆଉ କାହାକୁ ନେଇ ରାଜ୍ୟ କରିବା ? ଏମାନେ ଚାଲିଗଲେ ଗଡ଼ରୁ ତ ଟଙ୍କା ଆଣି ପାରିବା ନାହିଁ । ଆଣିଲେ ବି ସେ ଟଙ୍କାରେ କଣ ହେବ ? ଏମାନେ ବଡ଼, ନା ଟଙ୍କା ବଡ଼ ?" ବୁଦ୍ଧିଆ ମନ୍ତ୍ରୀ ଏହି ଉପଦେଶ ଗୁଡ଼ାକ ଏକାବେଳକେ ଢାଳି ପକାଇଲେ । ଭୂୟାଁ ସରଦାର-ମାନେ ତୁନି ହୋଇ ବସି ଶୁଣୁଥିଲେ । ଶେଷରେ ନିଶ୍ୱାସ ପକାଇ କହିଲେ, "ତେବେ କଣ କରାଯିବ ?" ମନ୍ତ୍ରୀ ଆପଣେ ଦଣ୍ଡେଯାଏ ଗୁମ୍ ହୋଇ ବସି ପେଟରୁ ବୁଦ୍ଧିଟାଏ କାଢ଼ିଲେ । ଗୋଟାଏ ଭଲ ଉପାୟ ଅଛି । ଗଡ଼ ଗନ୍ତାଘରୁ ସବୁ ଟଙ୍କା ବୋହି ଆଣିବା, ଅଥଚ ଆମ ପକ୍ଷର ଗୋଟାଏ ଲୋକ ଉପରେ ଟେକାଟା ବି ବାଜିବ ନାହିଁ । ତେବେ ଚାରି ଛ ଦିନ ମଠ ହେବ ।

ଭୂୟାଁମାନେ—ହେଉ ମଠ—ହେଉ ମଠ—ଉପାୟ କ'ଣ ?

ମନ୍ତ୍ରୀ—ଉପାୟ କଣ କି?—ବୋମା ଡନାମାଇଟ ଆଣିଯିବ।

ଭୂୟାଁମାନେ—ବୋମା ଡନାମାଇଟ କ'ଣ ?

ମନ୍ତ୍ରୀ—"ବୋମା ଡନାମାଇଟ କଣ କି—ଗଡ଼ ପଛପଟ ପର୍ବତ ଉପରେ ଆମ୍ଭେମାନେ ଲୁଚି ବସି ଗଡ଼ ଉପରକୁ ଗୋଟାଏ ଗୋଟାଏ ବୋମା, ଡନାମାଇଟ ଫୋପାଡ଼ ଦେବା, ଗୋଟାଏ ଗୋଟାଏ ବୋମାରେ ଗଡ ପାଚେରିର ପଟେ ପଟେ କାନ୍ଥ ଧୂଳିପରି ଉଡ଼ିଯିବ। ପାଚେରି ମୂଳରେ ଯେଉଁ ପାଇକେ ବନ୍ଧୁକ ଧରି ବସିଥିବେ ଖଣ୍ଡ ଖଣ୍ଡ ହୋଇଯିବେ। ମହାରାଣୀ ପୁତ୍ରଙ୍କୁ ସାହେବଙ୍କ ଘରର ସବୁ କଥା ଜଣା। ସତ କି ମିଛ ତାଙ୍କୁ ପଚାର। ସେ ସବୁ ଜିନିଷ ଏ ଦେଶରେ ନାହିଁ, କଲିକତା ଦୋକାନରେ ମିଳେ। କୋଡ଼ିଏଟା ବୋମା ଆମ୍ଭମାନଙ୍କର ଦରକାର, ଲୋକଯାଇ ଶହେଖଣ୍ଡେ କିଣି ଆଣୁ। ମାଟି ପାଚେରି କଣ, ଶହେ ବୋମା ହେଲେ ଏହି ପର୍ବତଟା ଉଡ଼ିଯିବ। ପଚାର ମହାରାଣୀ ପୁତ୍ରଙ୍କୁ, ସାହେବମାନେ ବୋମାରେ ପାହାଡ଼ ପର୍ବତ ଭାଙ୍ଗନ୍ତି କି ନାହିଁ।" ସ୍ଥିର ହୋଇଗଲା, କଲିକତାକୁ ଲୋକ ଯାଇ ଶହେ ବୋମା କିଣି ଆଣିବ। ହଜାରେ ଟଙ୍କା ଦରକାର। ସାଧ୍ୟାନୁସାରେ ଟଙ୍କା ଦାଖଲ କରିବାକୁ ବଡ଼ ବଡ଼ ପ୍ରଜାଙ୍କ ନାମରେ ପରୁଆନା କର। ଯୋଡ଼ାଏ ଅମଲା ପରୁଆନା ଲେଖିବାକୁ ବସିଗଲେ। ହଜାର ହଜାର ପରୁଆନା ଉପରେ "ମହାରାଣୀ ପୁତ୍ର ଧରଣୀଧର ଭୂୟାଁ" ଦସ୍ତଖତ ହେବ। ଏଇଟା କଣ ସହଜ ଦିନ ଅଧିକର କଥା? ଦିନରାତି ଲାଗିପଡ଼ି ଅମଲାମାନେ ବସି ପରୁଆନା ଲେଖୁଅଛନ୍ତି। ମନ୍ତ୍ରୀଏ ବସି ସେମାନଙ୍କ କାର୍ଯ୍ୟ ତଦାରଖ କରୁଥାନ୍ତି।

କେଉଁଝରର ଗଡ ରକ୍ଷା ନିମନ୍ତେ ସୈନ୍ୟ ଆସିବାର କଥା, ଗବର୍ଣ୍ଣମେଣ୍ଟରୁ ହୁକୁମ ହୋଇ ଯାଇଅଛି। ଏପର୍ଯ୍ୟନ୍ତ ଆସିଲେ ନାହିଁ—କେତେଦିନ ଭୂୟାଁଙ୍କୁ ଅଟକାଇ ରଖିବ? ଦିନେ ଯଦି ଏଗୁଡ଼ାକ ଗଡ଼ ଭିତରେ ପଶିଯିବେ, ତେବେ ରାଜବଂଶର ସମସ୍ତ ସମ୍ପତ୍ତି, ସମସ୍ତ ସମ୍ଭ୍ରମ ଏକାବେଳକେ ନଷ୍ଟ ହୋଇଯିବ। ମହାରାଜାଙ୍କୁ ସ୍ଥାନର ଅବସ୍ଥା ଖବର ଦେବାକୁ ହେବ; ମାତ୍ର ମହାରାଜା କେଉଁଠାରେ କପରି ଜାଣିବ, କପରି ଖବର ଦେବ? ଗୋଟାଏ ବୁଦ୍ଧି ଦିଶିଗଲା। ବାଲେଶ୍ୱର ନିବାସୀ ବାବୁ ଭୋଳାନାଥ ଦେ ଆନନ୍ଦପୁର ଅଫିସରେ ସର୍ବେସ୍ୱର—ତାଙ୍କୁ ଖବର ଦେଲେ ମହାରାଜା ଯେଉଁଠାରେ ଥାଉନ୍ତୁ, ସେ ମହାରାଜାଙ୍କୁ ସମ୍ବାଦ ଦେବେ। ମୁଁ ପୂର୍ବେ ଲେଖିଅଛି, ଧରଣୀ ପାନ ଖାଇବାକୁ ବଡ଼ ଭଲ ପାଏ। ସର୍ବଦା ଆସି ମୋ ବସାରେ ପାନ ଖାଏ। ମୁଁ ଯାଇ ତାକୁ ଜଣାଇଲି—"ଆଜ୍ଞା, ଯେତେ ପାନ ଆଣିଥିଲି, ସବୁ ସରିଗଲାଣି। ଏ ସ୍ଥାନରେ ତ ପାନ ମିଳିବ ନାହିଁ। ଭଦରଖରେ ମୋ ଗୃହର ଖମାରିଆ ଭୋଳାନାଥକୁ ଚିଠି ଲେଖିଲେ ସେ ଶୀଘ୍ର ପାନ ଗୁଆ ପଠାଇ ଦେବ। ଆଜ୍ଞା ହେଲେ ତାକୁ ଚିଠି ଲେଖିବ।" ଆଜ୍ଞା ହେଲା—"ଶୀଘ୍ର ଲେଖ, ଏହିକ୍ଷଣି ଲେଖ।" ଚିଠିରେ ପାନକଥା ଲେଖିସାରି ଜଣାଇଲି—"ଆଜ୍ଞା ଭଦରଖରେ ମୁଁ ଖଣ୍ଡେ ଆଖୁବୃକ୍ଷ କରିଥିଲି। ମୁଁ ତ ଚାଲି ଆସିଲି, ପାଣି ନ ପାଇ ଆଖୁ ଗୁଡ଼ାକ ମରି ଯାଉଥିବ। ଆଜ୍ଞା ହେଲେ ସେଥିରେ ପାଣି ଦେବାସକାଶେ ଖମାରିଆକୁ ଲେଖିବ।" ଆଜ୍ଞା ହେଲା—"ହଁ ଲେଖ, ହଁ ଲେଖ। ଯେଉଁ ଚିଠି ଲେଖିଥିଲି ସେଥିର ଅବିକଳ ନକଲ—

ମଇମାସ ୧୬ ତାରିଖ ସନ୍ ୧୮୯୧।

ମୁକାମ ରାଇସୁଆଁ।

ଭୋଳାନାଥ ଖମାରିଆ ଜାଣିବୁ—

ମହାରାଣୀ ପୁତ୍ରଙ୍କ ସକାଶେ ନିତାନ୍ତ ଦରକାର, ଅତିଶୀଘ୍ର ଶହେ ହେଲେ ମଘି ପାନ, ଦୁଇଶ ଗୁଆ

ପଠାଇବୁ । ପଶ୍ଚିମପଟରୁ * ମାହାରା କରି ଆଖୁବାଡ଼କୁ ଶୀଘ୍ର ପାଣି ବୁହାଇବୁ, ନୋହିଲେ ଆଖୁବାଡ଼ ବିନାଶ ଯିବ ବୋଲି ଜାଣିବୁ । ଇତି ।

ଫକୀରମୋହନ ସେନାପତି ।

ମହାରାଣୀ ପୁଅଙ୍କଠାରେ ଚିଠି ପଢ଼ାଗଲା । ଛାଡ଼ପତ୍ରରେ ମହାରାଣୀ ପୁଅ ଦସ୍ତଖତ କଲେ । କେଉଁଝରର ନିଜଗଡ଼ଠାରୁ ଆନନ୍ଦପୁର ଦାଣ୍ଡରେ ତିନି ଚାରି ଜାଗା ଘାଟି ବସିଅଛି । ମହାରାଣୀ ପୁଅଙ୍କ ଦସ୍ତଖତି ଛାଡ଼ପତ୍ର ନ ନେଲେ କେହି ଲୋକ ଯା-ଆସ କରି ପାରିବ ନାହିଁ । ଘାଟିଠାରେ ପୁଣି ବାଟୋଇମାନଙ୍କ ଲୁଗାପଟା ଝାଡ଼ି ତଦାରଖ କରାଯାଉ-ଥିଲା । ଚାରିଜଣ ବଳବାନ୍ ପାଇକ ହାତରେ ଚିଠି ଦେଲି, ଗୋଟାଏ ଖଣ୍ଡାଏତ ପାଇକ ପଇତାରେ ସୋଡ଼ା ବୋତଲ ଚାରି ସାନ ସାନ ତିନିଖଣ୍ଡ ଗୁଞ୍ଜାଇ ଦେଲି । ଆନନ୍ଦପୁର ମୁକାମରେ ଭୋଳାନାଥବାବୁଙ୍କ ହାତରେ ଚିଠି ଆଉ ସେହି ଚାରି ତିନିଖଣ୍ଡ ଦେବା ସକାଶେ ଉପଦେଶ ଦେଲି । ପାଇକମାନେ ବନ୍ଦୀଥିଲେ, ଘରକୁ ଯିବେ, ଦିନରାତି ନ ମାନି ଆନନ୍ଦପୁର ମୁହାଁ ଧାଇଁଲେ । ମହାରାଜା ଆନନ୍ଦପୁରରେ ଉପସ୍ଥିତ ଥିଲେ, ପାଇକମାନେ ଚାରି ତିନିଖଣ୍ଡ ମହାରାଜାଙ୍କ ହାତରେ ଦେଲେ । ମହାରାଜା ଧନଞ୍ଜୟ ନାରାୟଣ ଭଞ୍ଜ ବଡ଼ ବୁଦ୍ଧିମାନ୍ ଲୋକ, ଚିଠି ପଢ଼ି, ଚାରି ତିନିଖଣ୍ଡ ଦେଖି ତତ୍କ୍ଷଣାତ୍ ସମସ୍ତଙ୍କ ସାକ୍ଷାତରେ ଅର୍ଥକଲେ—ଏହି ଚାରି ତିନିଖଣ୍ଡର ଅର୍ଥ— ଗବର୍ଣ୍ଣମେଣ୍ଟଙ୍କୁ; କଟକ ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କୁ, ଆଉ ଜଣେ କାହାକୁ—ନନ୍ଦକିଶୋର ବାବୁ କି ମଧୁବାବୁଙ୍କୁ ଚାରି ଖବର କରିବା ସକାଶେ ମାନେଜର ସଙ୍କେତ କରିଅଛନ୍ତି । ପାନ ଅର୍ଥ ସିପାହୀ, ଗୁଆ ଅର୍ଥ ବନ୍ଧୁକର ଗୁଳି - ଅର୍ଥାତ୍ ବନ୍ଧୁକଧାରୀ ସିପାହୀ; ଆଖୁବାଡ଼ ଅର୍ଥ ଗଡ଼ । ସମୁଦାୟ କଥାର ଅର୍ଥ — ଶହେଜଣ ହେଲେ ବନ୍ଧୁକଧାରୀ ସିପାହୀ ପଶ୍ଚିମ ଦିଗରୁ ଯାଇ ନ ପହଞ୍ଚିଲେ ଗଡ଼ ଲୁଟପାଟ ଓ ନଷ୍ଟ ହୋଇଯିବ । ମାତ୍ର ସିପାହୀମାନେ ଉତ୍ତରଦିଗ ଚାଇଁବସା ବାଟେ ଯିବାର କଥା, ସେ ପଶ୍ଚିମ ଦିଗ କି ସକାଶେ ଲେଖି-ଅଛନ୍ତି ?

ଏଣେ ମୁଁ ସୈନ୍ୟମାନଙ୍କ ବାଟ ଚାହିଁ ଦିନ କାଟୁଥାଏଁ । ମହାରାଣୀ ପୁଅ ଧରଣୀ ମୋ ହସ୍ତଗତ— ଅନେକ ଭୂୟାଁ ସରଦାର ମଧ୍ୟ ଆୟତ୍ତକୁ ଆସିଗଲେଣି । ସେମାନଙ୍କୁ ପାଖରେ ବସାଇ ହସିହସି ରାଜ୍ୟକଥା, ଘରକରଣା କଥା, ସୁଖ ଦୁଃଖ କଥା କହେଁ, କେବଳ ମହାପାତ୍ରକୁ ପାରୁନାହିଁ । ସେ ସର୍ବଦା ମୋ ଗତିବିଧି କଥାବାର୍ତ୍ତାକୁ ଲକ୍ଷ୍ୟ ରଖିଥାଏ । ମାତ୍ର ମୋହର ତାହାପ୍ରତି ସନ୍ଦେହ, ମୁଁ ଏ ଭାବ ପ୍ରକାଶ କରେନାହିଁ । ମନମଧ୍ୟରେ ଭାବୁଥାଏଁ—ମନ୍ତ୍ରୀ ବୁଦ୍ଧି ଭୂୟାଁ ବୁଦ୍ଧି ବର୍ତ୍ତମାନ କଷାକଷି—ଜିଣାପଟ କାହାର ହେବ, ଦେଖାଯିବ । ଗୋପାଳଆ ମୋତେ ଦେଖିଲେ ରାଗରେ ଦାନ୍ତ କଡ଼ମଡ଼ କରେ । ମୋ ଲମ୍ବା ବେକ ହାଣି ପକାଇବାକୁ ତାହାର ଭାରି ଇଚ୍ଛା ।

ଭୂୟାଁଙ୍କ ଗୁପ୍ତଚର ଚାରିଆଡ଼େ ବୁଲୁଥାନ୍ତି । ମୋ ବନ୍ଦୀର ଅଷ୍ଟମ ଦିନ ସକାଳେ ସରକାରୀ ଫୌଜ ଜୟନ୍ତୀଗଡ଼ଠାରେ ପହଞ୍ଚିବାର ଗୁପ୍ତଚର ଆସି ସମ୍ବାଦ ଦେଲା । ଉପରଓଳି ଫୌଜର ତାତ୍କାଳୀନ କାପ୍ତାନ ଡାଇସ୍ ସାହେବଙ୍କ ଚିଠି ଘେନି ଜଣେ ସିଂହଭୂମି ନିବାସୀ ସମ୍ଭ୍ରାନ୍ତ ଲୋକ ମହାରାଣୀ ପୁଅ ଧରଣୀଧର ଭୂୟାଁଙ୍କ ନିକଟରେ ଉପସ୍ଥିତ ହେଲେ, ଅତି ବୁଦ୍ଧିଆ ମନ୍ତ୍ରୀ ସେହି ଚିଠି ପଢ଼ି ମହାରାଣୀ ପୁଅଙ୍କୁ ଶୁଣାଇଦେଲେ । ଧରଣୀ-ଧର ଭୂୟାଁର ଉତ୍ତର କି, ସେ ସ୍ୱୟଂ ଯାଇ ସାହେବଙ୍କ

* ଉତ୍ତର ପଟରେ ଚାଇଁବସା, ମୁଁ ଭୁଲରେ ପଶ୍ଚିମ ଲେଖିବାରୁ ଅର୍ଥ ବୁଝିବାକୁ ମହାରାଜାଙ୍କୁ କଷ୍ଟ ହୋଇଥିଲା ।

ସହିତ ସାକ୍ଷାତ କରୁ । ମହାରାଣୀ ପୁତ୍ର ସେହି ଚିଠି-ଖଣ୍ଡିକୁ ତରବାରି ଅଗ୍ରଭାଗରେ ଖଣ୍ଡ ଖଣ୍ଡ କରି ଚାଙ୍କଲ ଭାବରେ ପକାଇଦେଲେ । ମନ୍ତ୍ରୀ ଆପଣେ ମଧ୍ୟ ଖୁବ୍ ଗୋଟାଏ ହସିଦେଇ କହିଲେ – "ସାହେବଟା କି ମୂର୍ଖ, ସେ ଯିନା ଆସି ଆପଣଙ୍କୁ ସଲାମ କରିବ; ଲେଖିଛି କଣ ନା, ଆପଣ ଯାଇ ତାହା ସହିତ ସାକ୍ଷାତ୍ କରିବେ ।" ପତ୍ରବାହକ ଭଦ୍ରଲୋକଙ୍କୁ ଟାଖରେ ବସାଇ ସରକାରୀ ଫୌଜସଂଖ୍ୟା, କାପ୍ତାନ ସାହେବଙ୍କ ଅଭିପ୍ରାୟ, ରାଇସୁଆଁ ତରଫକୁ ଆଗମନର ସମସ୍ତ ଇତ୍ୟାଦି ବିଷୟ ବୁଝିନେଲେ ଏବଂ ସଂକ୍ଷେପରେ ରାଇ-ସୁଆଁର ଅବସ୍ଥା ସାହେବଙ୍କୁ ସମ୍ବାଦ ଦେଲି । ଏହି ଘଟଣାର କେତେକ ଘଣ୍ଟା ଉତ୍ତାରେ ଆନନ୍ଦପୁର ରାସ୍ତାଧାରର ଘଟଗାଁ ମୁକାମରୁ ବାଲେଶ୍ୱର ଜିଲ୍ଲାର ଡିଷ୍ଟ୍ରିକ୍ଟ୍ ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କଠାରୁ ମହାରାଣୀ ପୁତ୍ରଙ୍କ ନିକଟରେ ଖଣ୍ଡେ ପତ୍ର ପହଞ୍ଚିଲା; ସେ ପତ୍ରରେ ମଧ୍ୟ ହାଜର ହୋଇଯିବାର କଥା । ସେ ପତ୍ରଖଣ୍ଡ ମଧ୍ୟ ତାଚ୍ଛଲ୍ୟ ଭାବରେ ଚିରାଗଲା । ଡାଇସ୍ ସାହେବଙ୍କ ସଙ୍ଗରେ ଶହେଜଣ ସଶସ୍ତ୍ର ସିପାହୀ ଏବଂ ସ୍ୱୟଂ ମହାରାଜା ଥିଲେ । ମହାରାଜାଙ୍କୁ ସଙ୍ଗରେ ନ ଆଣିବା ପାଇଁ ଗୁପ୍ତଭାବରେ ଡାଇସ୍ ସାହେବଙ୍କୁ ସମ୍ବାଦ ଦେଲି । ବସାଘର ଘାଟୀ ନିକଟରେ ଅନେକଗୁଡ଼ାଏ ଭୂୟାଁ ଅସ୍ତ୍ରଶସ୍ତ୍ର ଧରି ଜଗି ରହିଥିଲେ । ସେହିଟା ଭୂୟାଁମାନଙ୍କର ପ୍ରଧାନ ଘାଟ, ଗୋପାଳଆ ସେ ଜାଗାରେ ସେନାପତି, କାଳେ କେହି ଗୋଟାଏ ଭୂୟାଁ ବଣ ମଧ୍ୟରେ ରହି ମହାରାଜାଙ୍କ ଉପରକୁ କାଣ୍ଡଟାଏ ବିନ୍ଧିଦେବ, ଏ ବିଷୟରେ ମୋହର ଆଶଙ୍କା ଥିଲା ।

ନବମ ଦିନ ପ୍ରାତଃକାଳରେ ଗୋରାଜଣ ସାହେବ ଘୋଡ଼ାରେ ଚଢ଼ି ତିରି ଗୁଡ଼ାଏ ବନ୍ଧୁକଧାରୀ ସିପାହୀ ସହିତ ରାଇସୁଆଁ ତରଫକୁ ଆସୁଥିବାର ଧାଉଡ଼ିଆ ଚର ଆସି ସମ୍ବାଦ ଦେଲା । ମହାରାଣୀଙ୍କ ପୁତ୍ର ତାଙ୍କ ମନ୍ତ୍ରୀଙ୍କୁ ଡକାଇ ପଚାରିଲେ, "କଣ କଥା, କଣ କରାଯିବ ।" ମନ୍ତ୍ରୀ ଆପଣେ କହିଲେ "ଆଜ୍ଞା, ଆଚ୍ଛା ହେଲା, ଭଲ ହେଲା—ଆପଣ ହେଲେ ମହାରାଣୀଙ୍କ ପୁତ୍ର, ଯେଉଁ ସାହେବମାନେ ଆସୁଅଛନ୍ତି, ସେମାନେ ମହାରାଣୀଙ୍କ ଚାକର । ସେମାନେ ଆପଣଙ୍କୁ ସଲାମ ବଜାଇବାକୁ ଆସୁଅଛନ୍ତି । ଆପଣଙ୍କର ଉଚିତ, ମହାରାଣୀଙ୍କ ମର୍ଯ୍ୟାଦା ରକ୍ଷା ନିମନ୍ତେ ନିଜେ ପାଖେଟି ଯାଇ ସେମାନଙ୍କୁ ସଙ୍ଗରେ ଆଣନ୍ତୁ ।"

ବର୍ତ୍ତମାନ ମୋହର ଭୟ, ଧରଣୀ ଆଉ ମହାପାତ୍ର ଦୁଇଜଣ ପଳାଇ ଯାଇ ଯଦି ବଣରେ ଲୁଚନ୍ତି, ସେମାନଙ୍କୁ ଖୋଜି ବାହାର କରାଇବା ବଡ଼ ମୁସ୍କିଲ ହେବ । ଏଥିକୁ ମୁଁ ଜାଗ୍ରତ ଥାଇ ମହାପାତ୍ର କିମ୍ବା ଅନ୍ୟ ଭୂୟାଁଙ୍କୁ ଧରଣୀ ସହିତ ପରାମର୍ଶ କରିବାକୁ ସୁଯୋଗ ଦେଉ ନ ଥାଏଁ ।

ମହାରାଣୀ ପୁତ୍ର ସାହେବମାନଙ୍କୁ ପାଖେଟି ଆଣିବାକୁ ଯିବା ସକାଶେ ପ୍ରସ୍ତୁତ, ଗୋଟାଏ ଲାଲ କସ୍ତା ଧୋତି ପରିଧାନ, ମୁଣ୍ଡରେ ଗୋଟାଏ ମୂଲ୍ୟବାନ ସଚ୍ଚା ଜରିର କାମକରା ଟୋପି । ଏହି ଦାମିକା ଟୋପିଟା ଗୋଟାଏ ପଶ୍ଚିମାଞ୍ଚଳବାସୀ ସୌଦାଗରର ଦ୍ରବ୍ୟ ଲୁଣ୍ଠନରୁ ପ୍ରାପ୍ତ । ହାତରେ ଲମ୍ବା ତରବାରି, ଗହଣରେ ଟାଙ୍ଗିଆ ଆଉ ଧନୁକ ଧରି ଆଠ ଦଶ ଜଣ ଭୂୟାଁ । ବୁଢ଼ିଆ ମନ୍ତ୍ରୀ କହିଲେ, "ହାଁ,ହାଁ, ଏପରି ହେବ କି ? ସାହେବମାନେ ବସିଥିବେ ଘୋଡ଼ା ଉପରେ, ଆପଣ ଥିବେ ତଳେ, ଏଇଟା ଯେ ଅମର୍ଯ୍ୟାଦା କଥା ହେବ ।" ଆଣ ଘୋଡ଼ା—ରାଇସୁଆଁ ଗ୍ରାମ ପଧାନର ଗୋଟାଏ ବୁଢ଼ା, ହାଡ଼ୁଆ, ରୋଗା ଘୋଡ଼ା ପଡ଼ିଆରେ ଚରୁଥିଲା, ଧରା ହୋଇ ଆସିଲା । ଗୋଟାଏ କମ୍ବଳ ଚଉତା ହୋଇ ତାହା ଉପରେ ଖୁବ୍ ତାରିଫ ରୂପେ ପଡ଼ିଲା । ଖଣ୍ଡେ ଛଣି ଦଉଡ଼ିରେ ପେଟି କଷା । ଛଣି ଦଉଡ଼ି ଛୁଣ୍ଡା ଗଣ୍ଠିଲିଆ ଲଗାମ ଘୋଡ଼ା ମୁହଁରେ ଦିଆଗଲା । ମହାରାଣୀ ପୁତ୍ର ଲମ୍ବା

ତରବାରି କାନ୍ଧରେ ପକାଇ ସବାର ହେଲେ । କପରି ତରବାରି ଟେକି ସାହେବମାନଙ୍କୁ ସଲାମ କରିବାକୁ ହୁଏ, ମର୍ଯ୍ୟାଦାସିଦ୍ଧ ବୁଦ୍ଧିମାନ୍ ମନ୍ତ୍ରୀ ଶିଖାଇ ଦେଲେ ।

ହାୟ ହାୟ ! ମହାପାପକୁ ଅଟକାଇ ରଖି-ପାରିଲି ନାହିଁ । ସେଇଟା ଥିଲା କିଛି ବୁଦ୍ଧିମାନ୍ ଏବଂ ଅତ୍ୟାଗ୍ରହୀ । ତାହା ଉପରେ ମୋର ବଡ଼ ରାଗ ଥିଲା । ଧରଣୀ ମୋ ହସ୍ତଗତ ଥିବା ଯୋଗୁଁ ତାକୁ ସଙ୍ଗରେ ନେବାକୁ ସୁଯୋଗ ନ ପାଇ ଏକାକୀ ବଣ ମଧ୍ୟକୁ ପଳାଇଗଲା ।

ମୁଁ ଜୟନ୍ତୀଗଡ଼ ବାଟରେ ଦୂରକୁ ଅନାଇ ଛିଡ଼ା ହୋଇଥାଏଁ । ସେ ପର୍ଯ୍ୟନ୍ତ ଧରଣୀ ମୋ ସହିତ ଦୁଇଶତ ପର୍ଯ୍ୟନ୍ତ ପାଇକ ବନ୍ଦୀ କରି ରଖିଥିଲା । ସେମାନଙ୍କୁ ଗଡ଼କୁ ଯିବା ସକାଶେ ପ୍ରସ୍ତୁତ ହେବାକୁ ଆଦେଶ ଦେଲି । ଘଣ୍ଟାକ ଉତ୍ତାରେ ଧରଣୀକୁ ପାଞ୍ଚ ଛ’ ଜଣ ବନ୍ଧୁକଧାରୀ ସିପାହୀ ବେଢ଼ିଅଛନ୍ତି; ହାତରେ ତରବାରି ନାହିଁ, ଘୋଡ଼ା ନାହିଁ । ଆଗ ପଛରେ ଚାରିଜଣ ଅଶ୍ୱାରୋହୀ ମିଲିଟାରୀ ବେଶଧାରୀ ସାହେବ । ପଶ୍ଚାତ୍ ଭାଗରେ ଶ୍ରେଣୀବଦ୍ଧ ସୈନ୍ୟଶ୍ରେଣୀ ଦୂରରୁ ଆସୁଥିବାର ଦେଖିଲି । ବାଇସୁଆଁ ତୋଟାରେ ଉପସ୍ଥିତ ହୋଇ ସାହେବମାନେ ଧରଣୀର ସମସ୍ତ ଘୁମୁଡ଼ିଆ ଘରେ ନିଆଁ ଲଗାଇ ଦେଲେ । ହାତୀ ପ୍ରସ୍ତୁତ ଥିଲା — ସାହେବମାନେ ବନ୍ଦୀ ଧରି ସୈନ୍ୟଶ୍ରେଣୀ ସହିତ ଗଡ଼କୁ ଚାଲିଆସିଲେ । ଗଡ଼ରେ ଉପସ୍ଥିତ ହେବାର ଘଣ୍ଟାକ ଉତ୍ତାରେ ବସାଘର ଘାଟି ତରଫରୁ ବନ୍ଧୁକର ଆବାଜ ଶୁଭିଲା । ଭୂୟାଁମାନେ ଡାଇସ ସାହେବଙ୍କ ବାଟ ଓଗାଳିବାରୁ ଯୁଦ୍ଧ ହେଲା, କେତେ-ଜଣ ଭୂୟାଁ ମଲେ, ଥୋକେ ଖଣ୍ଡିଆ ହୋଇ ପଳାଇଗଲେ । ଡାଇସ ସାହେବଙ୍କ ସହିତ ମହାରାଜା ଗଡ଼ରେ ଆସି ଉପସ୍ଥିତ ହେଲେ ।

ଧୃତ ଆସାମିମାନଙ୍କ ଅପରାଧ ବିଚାରଣା ସକାଶେ ଗଡ଼ଜାତ ମହାଲର ସୁପରିଣ୍ଟେଣ୍ଡେଣ୍ଟ ଟପୂନବୀ ସାହେବ କଟକରୁ ଇଷ୍ଟିମାର ଯୋଗେ ଚାନ୍ଦବାଲି ବାଟେ କଲିକତା । ସେ ସ୍ଥାନରୁ ରେଲ ଯୋଗେ ଚନ୍ଧରପୁର, ସେ ସ୍ଥାନରୁ ହାତୀରେ କେଉଁଝର ଗଡ଼ରେ ଉପସ୍ଥିତ ହେଲେ, ସଙ୍ଗରେ ଗୋଟିଏ ମାତ୍ର ଖାନସମା ।

ଧରଣୀ ସହିତ ଆଉ ଚାରିଜଣ ସରଦାର ଧୃତ ହୋଇଥିଲେ । ସେମାନଙ୍କ ପ୍ରତି ଦୁଇଗୋଟି ଅଭିଯୋଗ ହେଲା ।

ପ୍ରଥମ — ଗବର୍ଣ୍ଣମେଣ୍ଟଙ୍କ ମିତ୍ରରାଜ୍ୟ ସହିତ ଯୁଦ୍ଧ କରିବାକୁ ଉଦ୍ୟମ ।

ଦ୍ୱିତୀୟ - କେଉଁଝର ରାଜ୍ୟର ସର୍ବ ପ୍ରଧାନ କର୍ମଚାରୀଙ୍କୁ ଅନ୍ୟାୟ ପୂର୍ବକ ଅବରୋଧ ।

ସାହେବଙ୍କ ସହିତ ଅମଲା କର୍ମଚାରୀ କେହି ଆସି ନାହାନ୍ତି । ମୁଁ ହେଲି ସାହେବଙ୍କ ପେସ୍କାର, ପୁଣି ଏଣେ କେଉଁଝର ତରଫରୁ ରାଜକୀୟ ଅଭିଯୋକ୍ତା । ମକଦ୍ଦମାରେ ଜବାବ ସୁଆଲ, ଗୁହାମାନଙ୍କୁ ଜେରା କରିବି, ପୁଣି ଲେଖିବି ।

କି ସକାଶେ କାହାଯୋଗେ ମେଳି ଆରମ୍ଭ ହେଲା, ଏଥିର ଲିଖିତ ଜବାବ ସାହେବ ମହାରାଜାଙ୍କୁ ତଲବ କଲେ । କଚେରିର ସିରସ୍ତାଦାର ଖୁବ ଆଗ୍ରହ ସହିତ ସେହି ଜବାବ ଲେଖିବା ସକାଶେ ପ୍ରାର୍ଥନା କରି ଅନୁମତି ପାଇଲେ । ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି — କାରଣ ସଖାଙ୍କୁ ପେଣ୍ଟଲୁନ୍ ଚୋଗା ଚପକନ୍ ଭିଡ଼-ଦେଇ ସେ ବସାରୁ ବାହାରେ, ରାତି ଦଶ ଘଣ୍ଟା, କେବେ ଏଗାର ବାର ଘଣ୍ଟା ସବକ କଚେରି ପୋଷାକ ଛାଡ଼ିବାକୁ ହୁଏ । ସଖାଙ୍କୁ ଦଶଟା ପର୍ଯ୍ୟନ୍ତ ହାକମ,

ପଲଟନ, ଅନ୍ୟାନ୍ୟ ଆଗନ୍ତୁକ ଲୋକମାନଙ୍କ ରସଦ ବିଷୟ ବୁଝାବୁଝି । ସେ ସମୟରେ ଆଗନ୍ତୁକ ଲୋକମାନଙ୍କ ଯୋଗେ କେଉଁଝରର ଗଡ଼ ଲୋକାରଣ୍ୟ ହୋଇ ପଡ଼ିଥିଲା । ବିପଦ ସମୟରେ ସାହାଯ୍ୟ ଦେବା ନିମନ୍ତେ ମିତ୍ର ରାଜ୍ୟ ଢେଙ୍କାନାଳ, ବାମଣ୍ଡା, ସିଂହଭୂମ ପ୍ରଭୃତି ସ୍ଥାନରୁ ହାତୀ, ପାଇକ, ଅନ୍ୟାନ୍ୟ କର୍ମଚାରୀ ପ୍ରଭୃତି ଆସିଥିଲେ । ଦିବା ଦଶଘଣ୍ଟାଠାରୁ ସନ୍ଧ୍ୟା ପର୍ଯ୍ୟନ୍ତ ମୋର ସାହେବଙ୍କ କଚେରୀରେ ପେସ୍କାରୀ, ସନ୍ଧ୍ୟାଠାରୁ ରାତି ଦଶଟା ପର୍ଯ୍ୟନ୍ତ ମହାରାଜାଙ୍କ ଦରବାରରେ ମାନେଜରୀ—ଏ ଉଭୟରେ ଅଧିକ କାର୍ଯ୍ୟ କରିବା ବୋଝ ଉପରେ ନଳିତାବିଡ଼ା । ବାଜେ କାମ ଯେତେ କମ ପଡ଼େ, ଆନନ୍ଦର କଥା ।

ପରଦିନ ପ୍ରାତଃକାଳରେ ସିରସ୍ତାଦାରବାବୁ ବଡ଼ାଏ ଲେଖା କାଗଜ ମହାରାଜାଙ୍କ ସମ୍ମୁଖରେ ରଖିଦେଇ ମୋ ମୁହଁକୁ ଅନାଇ ଖୁବ୍ ଗର୍ବ ଭାବରେ ହସି ହସି ମୋତେ କହିଲେ, "ମାନେଜର ବାବୁ, କାଲି ରାତିରେ ମୁଁ ଖାଇ ନାହିଁ, କି ଶୋଇନାହିଁ, ରାତିସାରା ବସି ଲେଖିଛି ।" ମୁଁ ଦେଖିଲି, ତାଙ୍କ କଥା ଠିକ୍—ରାତିସାରା ବସି ନ ଲେଖିଲେ ଛ ସାତ ତକ୍ତା କାଗଜ ଚାରି ପିଠି ଲେଖି ହେବ ନାହିଁ । ମହାରାଜାଙ୍କ ଆଜ୍ଞାରେ ମୁଁ ସେହି ଲେଖା ପଢ଼ିବାକୁ ଆରମ୍ଭ କଲି । ଖୁବ୍ ଧୈର୍ଯ୍ୟ ଧରି ଅଧାଅଧି ପଢ଼ିଗଲିଣି ଆଉ ପାରିଲି ନାହିଁ—ହା କପାଳ ! ଏ କ'ଣ ରେ ? ଏଥିରେ ଚାଣକ୍ୟ, ଭାଗବତ, ରାମାୟଣରୁ ଢେର ଢେର ଦାଇକା ଅଛି । ଭୂଗୋଳ ଇତିହାସରୁ ଦୃଷ୍ଟାନ୍ତର ଅଭାବ ନାହିଁ । ମୁଁ ମହାରାଜାଙ୍କ ମୁହଁକୁ ଅନାଇ କହିଲି—"ନାହିଁ, ନାହିଁ, ଏଇଟା ହେବ ନାହିଁ, ମୁଁ ଗୋଟାଏ ଲେଖିଦିଏଁ ।" ମହାରାଜା ଚଞ୍ଚଳଭାବରେ କହିଲେ, "ହଁ ହଁ, ତୁମେ ଗୋଟାଏ ଲେଖିଦିଅ ।" ମୁଁ ଅନାଇ ଦେଖିଲି ସିରସ୍ତାଦାର ବାବୁଙ୍କ ଆଖି ରକ୍ତବର୍ଣ୍ଣ, କ୍ରୋଧରେ ଥରୁ ଅଛନ୍ତି । ଆଉ ସମୟ ନାହିଁ, ୯ଟା ବାଜିଗଲାଣି, ୧୦ଟା ବେଳେ ରିପୋର୍ଟ ଧରି ମୋତେ କଚେରୀରେ ହାଜର ହେବାକୁ ପଡ଼ିବ । ମୁଁ ସେହି ସ୍ଥାନରେ ବସି ଘଣ୍ଟେ ରିପୋର୍ଟ ଲେଖିଦେଲି । ଧରଣୀର ବାତୁଳତା ଓ ଭୂୟାଁମାନଙ୍କ ସ୍ୱଭାବ ବଶରେ ସେମାନେ ଅକାରଣ ମେଳି ଘଟାଇଅଛନ୍ତି, ଏ ସମ୍ବନ୍ଧରେ ଅକାଟ୍ୟ ପ୍ରମାଣ ପ୍ରୟୋଗ କରାଯାଇଥିଲା । ମହାରାଜା ରିପୋର୍ଟ ଶୁଣି ସେଥିରେ ଦସ୍ତଖତ କରି ଦେଲେ । ଲେଖାରେ କିଛି କାଟକୁଟ ଥିଲେ ମଧ୍ୟ ସେଇଟା ନକଲ କରିବାକୁ ସମୟ ନ ଥିଲା । ପୁଣି ରିପୋର୍ଟର ଲେଖକ ମହାରାଜାଙ୍କ ମାନେଜର—କଚେରୀରେ ପଢ଼ିବେ ସାହେବଙ୍କ ପେସ୍କାର; ସୁତରାଂ ନକଲ କରିବାର ଆବଶ୍ୟକ ମଧ୍ୟ ନ ଥିଲା । ଏଣେ ସିରସ୍ତାଦାର ଆପଣେ ମୋହର ଅନିଷ୍ଟ ସାଧନ ବିଷୟରେ ଦୃଢ଼ ପ୍ରତିଜ୍ଞ ହୋଇ ବସିଲେଣି ।

କଚେରୀରେ ଉପସ୍ଥିତି ମାତ୍ରକେ ରିପୋର୍ଟ ତଲବ ହେଲା । ହାକିମଙ୍କ ହୁକୁମ ଅନୁସାରେ ମୁଁ ରିପୋର୍ଟ ପଢ଼ିବାମାତ୍ରକେ ସାହେବ କ୍ରୋଧରେ କମ୍ପିତ ହେବାକୁ ଲାଗିଲେ । ଭୟଙ୍କର ପାଟିକରି ମୋତେ କହିଲେ, "ତୁମ୍ଭେ ନିଶ୍ଚୟ ଏ ରିପୋର୍ଟ ଲେଖିଛ, ଏଇଟା ତୁମ୍ଭର ଫିକର । ମୁଁ ତୁମ୍ଭଙ୍କୁ ନିଶ୍ଚୟ ଜେଲ ଦେବି ।" କଣ କରିବି, ବର୍ତ୍ତମାନ ଅବସ୍ଥାରେ ମୋହର କ୍ରୋଧ କରିବା କିମ୍ବା କାର୍ଯ୍ୟ ତ୍ୟାଗ କରି ଯିବାକୁ ଅପ୍ରବୃତ୍ତ ନାହିଁ; ତୁନି ହୋଇ ସବୁ ସହିଗଲି । [ ମୋତେ ବୋଧହୁଏ ଟେମ୍ପନବୀ ସାହେବଙ୍କର ଅଭିପ୍ରାୟ—ଉପସ୍ଥିତ ମେଳିରେ ମହାରାଜାଙ୍କ ଅଯୋଗ୍ୟତା ସାବ୍ୟସ୍ତ ହେଲେ ତାହାଙ୍କୁ ଶାସନ କାର୍ଯ୍ୟରୁ ଅନ୍ତର କରାଇ ତାଙ୍କର (ସାହେବଙ୍କର ବନ୍ଧୁ ଉଆଲ ସାହେବଙ୍କୁ କେଉଁଝର ଇଲାକାରେ ମେନେଜର ପଦରେ ରଖାଇ ଦେବେ । ] * ମୁଁ ମହାରାଜାଙ୍କ ନିର୍ଦ୍ଦୋଷତା ସାବ୍ୟସ୍ତ କରିବା ସକାଶେ ଯତ୍ନ କରିବାରୁ ସାହେବଙ୍କର ମୋ ପ୍ରତି ରାଗ । ଯାହାହେଉ ଧରଣୀ ପ୍ରଭୃତି ଆସାମିମାନଙ୍କ ମାମଲା ତଦନ୍ତ ସମୟରେ ସମସ୍ତ ସାକ୍ଷୀ ଭୂୟାଁମାନଙ୍କ

* ବନ୍ଧନୀ ମଧ୍ୟସ୍ଥ ଅଂଶ ମୂଳ 'ଉତ୍କଳ ସାହିତ୍ୟ'ରେ ନାହିଁ । କେବଳ ଚନ୍ଦ୍ର ମୁଦ୍ରିତ ଆତ୍ମଜୀବନ ଚରିତ ୧ମ ସଂସ୍କରଣରୁ ଏହା ଉଦ୍ଧୃତ ।

ଅପରାଧରୁ ମୁକ୍ତ ହୋଇଥିବା ବିଷୟ ମଧ୍ୟ ପ୍ରକାଶ କରାଗଲା । ସାହେବ ମହୋଦୟଙ୍କ ଉଦ୍ଦେଶ୍ୟର ସାଫଲ୍ୟ ବିଷୟରେ ଆପାତତଃ କୌଣସି ଉପାୟ ଦେଖାଗଲା ନାହିଁ ।

ସୁପରିଣ୍ଟେଣ୍ଡେଣ୍ଟ ସାହେବ କିଞ୍ଜଗଡ଼ ପରିତ୍ୟାଗ କରି ଆସାମିମାନଙ୍କୁ ସଙ୍ଗରେ ଧରି କଟକ ଅଭିମୁଖରେ ଯାତ୍ରା କଲେ । ଆନନ୍ଦପୁର ମୁକାମରେ ତାଙ୍କ ସକାଶେ ରତ୍ନ ଧରଣୀ ପ୍ରଭୃତି ଆସାମିମାନଙ୍କ ମାମଲା ଶେଷ ବିଚାର କରି ରାଏ ଦେଲେ । ଧରଣୀର କଠିନ ପରିଶ୍ରମ ସହିତ ପାଞ୍ଚ ବର୍ଷ ମିଆଦ ହେଲା; ଆଉ ଅନ୍ୟାନ୍ୟ ଆସାମିମାନଙ୍କୁ ଦୁଇ ତିନି ବର୍ଷ ହିସାବରେ କଠିନ ପରିଶ୍ରମ ସହିତ କାରାଦାଣ୍ଡ ଭୋଗ କରିବାର ଆଦେଶ ହେଲା ।

(ଉ: ସା: ୨୨ଶ ଭାଗ—୫ମ ସଂଖ୍ୟା)

---

## ୩୧

## ବିଦ୍ରୋହ ପର ପରିସ୍ଥିତି

ଟୟନବୀ ସାହେବ ମୋତେ ସଙ୍ଗରେ ନେଇ ଭଦ୍ରକମୁକାମରେ ଉପସ୍ଥିତ ହେଲେ । ଆମ୍ଭମାନଙ୍କ ଆଗମନର ତୃତୀୟ ଦିବସରେ ଦାର୍ଜିଲିଂରୁ ଲାଟ ସାହେବଙ୍କଠାରୁ ହୁକୁମ ପହଞ୍ଚିଲା । ଉଆଲ ସାହେବ ମଧ୍ୟ ମୟୂରଭଞ୍ଜରୁ ଆସି ଭଦ୍ରକରେ ଉପସ୍ଥିତ ହେଲେ । ଉଆଲ ସାହେବଙ୍କ ସାକ୍ଷାତରେ ଟୟନବୀ ସାହେବ ମୋତେ ହୁକୁମ କଲେ,—"ଆମ୍ଭ ପକ୍ଷରୁ ମହାରାଜାଙ୍କୁ ଚିଠି ଲେଖ, ପତ୍ର ପ୍ରାପ୍ତିମାତ୍ରେ ସେ କିଲ୍ଲା ପରିତ୍ୟାଗ କରି ଚାଲି ଆସିବେ, ଯଦି ନ ଆସନ୍ତି ପୋଲିସ ଯାଇ ତାହାଙ୍କୁ ନେଇ ଆସିବ ।" ମୁଁ ଚିଠି ଲେଖିଲି, ଟୟନବୀ ସାହେବ ସେଥିରେ ଦସ୍ତଖତ କରିଦେଲେ । ମୋ ପ୍ରତି ହୁକୁମହେଲା—"ଉଆଲ ସାହେବ ମୟୂରଭଞ୍ଜ ଫେରି ଯାଉଛନ୍ତି । ସେ ସ୍ଥାନରୁ କେଉଁଝରର ମଧ୍ୟ ଦେଖିବାକୁ ବିଳମ୍ବ ହେବ । ତାହାଙ୍କ ଆଗମନ ପର୍ଯ୍ୟନ୍ତ ସମସ୍ତ କିଲ୍ଲାର ଭାର ଆପଣଙ୍କ ହାତରେ ରହିଲା ।" ମୁଁ ସାହେବଙ୍କ ହୁକୁମ ସ୍ୱୀକୃତ ହେଲି । ମହାରାଜା ଶୀଘ୍ର ଗଡ଼ରୁ ବାହାରି ନ ଆସିଲେ ପୋଲିସ ଯାଇ ତାହାଙ୍କୁ ନେଇ ଆସିବ; ଏପରି ଅପମାନସୂଚକ ଚିଠି ମୋ ହାତରେ ଲେଖା ହେବା ଯୋଗୁଁ ମହାରାଜା ମୋ ପ୍ରତି ଅସନ୍ତୁଷ୍ଟ ହୋଇଥିଲେ । ସେ ନନ୍ଦକିଶୋର ବାବୁ ପ୍ରଭୃତି ଅନେକ ଭଦ୍ରଲୋକଙ୍କୁ ଉକ୍ତ ଚିଠି ଦେଖାଇଲେ ଏବଂ ସେ ଚିଠି ବିଷୟ ଚିଫ୍ ସେକ୍ରେଟେରୀ କଟନ ସାହେବଙ୍କୁ ମଧ୍ୟ କହିଥିଲେ । ମହାରାଜାଙ୍କ ଅନୁପସ୍ଥିତି ସମୟରେ ମୋର କିଲ୍ଲାର ଭାର ନେବା ମହାରାଜାଙ୍କର ବଡ଼ ଅପ୍ରୀତିକର ହୋଇଥିଲା । ମୁଁ ସାହେବଙ୍କ ହୁକୁମରେ ସ୍ୱୀକୃତ ହେବା ସମୟରେ ଏ ସବୁ ବିଷୟ ଭାବି ନ ଥିଲି । ପରଦିନ ଟୟନବୀ ସାହେବ କଟକ, ଉଆଲ ସାହେବ ବାରିପଦା ଚାଲିଗଲେ । ମୁଁ କେଉଁଝର ଗଡ଼କୁ ଚାଲିଗଲି ।

ଏହି ସମୟରେ କେଉଁଝରରେ ରଥଯାତ୍ରା ମହାସମାରୋହରେ ସମ୍ପନ୍ନ ହୋଇଥାଏ । ରଥଯାତ୍ରା ଶେଷ ନ ହେବା ପର୍ଯ୍ୟନ୍ତ ମହାରାଜା କେଉଁଝରରେ ରହି ପାରିବେ ଏପରି ଆଦେଶ ମୁଁ ଟୟନବୀ ସାହେବଙ୍କଠାରୁ ସଂଗ୍ରହ କରିଥିଲି । ରଥଯାତ୍ରା ଉପସ୍ଥିତ ହେଲା । ଭୂୟାଁ ଭୂୟାଁଣୀମାନେ, ଆଉ ଆଉ ଗ୍ରାମବାସୀମାନେ ଯାତ୍ରା ଦେଖିବା ସକାଶେ ଉପସ୍ଥିତ ହେଲେ । ଭୂୟାଁଟୋକାମାନେ ରଥଯାତ୍ରା ସମୟରେ ବିଟ୍ଲେଡ଼-ଗୁଡ଼ ଲୁଚା-କାନରେ ପୂରାଇ ଆଣିଥାନ୍ତି; ଟେଣ୍ଡିଆ ଭୂୟାଁମାନଙ୍କ ଉପରକୁ ସେହି ଗୁଡ଼ ସବୁ ଫିଙ୍ଗନ୍ତି । ଭୂୟାଁମାନେ ବିଟ୍ଲେଡ଼ ଯନ୍ତ୍ରଣାରୁ ରକ୍ଷା ପାଇବା ସକାଶେ ଦେହରେ ତେଲ ମାଖି ଆସିଥାନ୍ତି । ଏଟା ହେଲା ସେମାନଙ୍କ ମଧ୍ୟରେ ଭାରି ଗୋଟାଏ ଆମୋଦର ବିଷୟ ।

ରଥଯାତ୍ରା ସମାପ୍ତ ହେଲା, ବାହୁଡ଼ା ଯାତ୍ରା ବି ଗଲା । ମହାରାଜା ବାହାଦୁର ମୋତେ ସମୟୋପଯୋଗୀ କେତେଗୁଡ଼ିଏ ବିଷୟରେ ଉପଦେଶ ଦେଇ କଟକ ଯାତ୍ରା କରିଗଲେ । ମହାରାଜାଙ୍କ କଟକଯାତ୍ରାର ପ୍ରାୟ ପନ୍ଦର ଦିନ ପରେ ଉଆଲ ସାହେବ ବାରିପଦାରୁ ଆସି କେଉଁଝରଗଡ଼ରେ ଉପସ୍ଥିତ ହେଲେ । ମୁଁ ତାହାଙ୍କ ହସ୍ତରେ ଗଡ଼ର କାର୍ଯ୍ୟଭାର ଏବଂ ଖଜଣା-ଖାନା ବୁଝାଇ ଦେଇ ଆନନ୍ଦପୁରକୁ ଚାଲି ଆସିଲି ।

ଉତ୍କଳର ସର୍ବପ୍ରଧାନ ଉକିଲ ବାବୁ ମଧୁସୂଦନ ଦାସ କେଉଁଝରର ମହାରାଜାଙ୍କ ତରଫରୁ କଲିକତାକୁ ଯାଇ ଲେଫ୍‌ଟନେଣ୍ଟ ଗବର୍ଣ୍ଣରଙ୍କ ଦରବାରରେ ମହାରାଜାଙ୍କ ବିପକ୍ଷରେ ଟଏନବୀ ସାହେବଙ୍କ ଦ୍ୱାରା ଆନୀତ ବିଦ୍ରୋହ ସମ୍ବନ୍ଧରେ ଦୋଷମାନ ଖଣ୍ଡନ କରି ମହାରାଜାଙ୍କ ନିର୍ଦ୍ଦୋଷିତା ପ୍ରମାଣ କଲେ । ସ୍ୱୟଂ ଲେଫ୍‌ଟନେଣ୍ଟ ଗବର୍ଣ୍ଣର ସରଜମିନ କେଉଁଝରରେ ଉପସ୍ଥିତ ହୋଇ ସମସ୍ତ ବିଷୟ ତଦନ୍ତ କରିବାର ଆଦେଶ ପ୍ରଚରିତ ହେଲା; କିନ୍ତୁ ସେ କେଉଁଝର ନ ଯାଇ କଟକ ମୁକାମରେ ଉପସ୍ଥିତ ହୋଇ କେଉଁଝର ବିଦ୍ରୋହ ସମ୍ବନ୍ଧୀୟ ମୋକଦ୍ଦମା ନିଷ୍ପତ୍ତି କରି ଆପଣା ରାଜଧାନୀକୁ ଫେରି ଯିବା ସକାଶେ ମହାରାଜାଙ୍କୁ ଅନୁମତି ଦେଲେ । ସେ ସମୟର ଲେଫ୍‌ଟନେଣ୍ଟ ଗବର୍ଣ୍ଣର ଥିଲେ Sir Charles Alfred Elliot K. C. S. I.

ଲେଫ୍‌ଟନେଣ୍ଟ ଗବର୍ଣ୍ଣରଙ୍କ ସହିତ ଭଦ୍ରକ ମୁକାମରେ ସାକ୍ଷାତ କରିବା ସକାଶେ କଟକ ମୁକାମରୁ ସୁପରିଣ୍ଟେଣ୍ଡେଣ୍ଟଙ୍କଠାରୁ ପତ୍ର ପାଇଲି । ଭଦ୍ରକ ଡାକ-ବଙ୍ଗଳାରେ ମୁଁ ଲେଫ୍‌ଟନେଣ୍ଟ ଗବର୍ଣ୍ଣରଙ୍କ ସହିତ ସାକ୍ଷାତ କଲି । ମୁଁ ତାଙ୍କୁ ସଲାମ କରିବା ମାତ୍ରେ "ତୁମ୍ଭେ କେତେବେଳେ ଆସିଲ ? ଭଲ ଅଛ ?" ଏତିକ ମାତ୍ର କହି ମିନିଟିଏ ମାତ୍ର ଛିଡ଼ା ହୋଇ ଜେଲ ଦେଖିବାକୁ ବାହାରିଗଲେ । ତାହାଙ୍କ ପାଶ୍ଚାତ୍‌ଭାଗରେ ଚିଫ୍ ସେକ୍ରେଟେରୀ କଟନ୍ ସାହେବ (Sir Henry Cotton ) ଛିଡ଼ା ହୋଇଥିଲେ । ସେହି କେବଳ କେଉଁଝରର କଥା, ଭୂୟାଁମାନଙ୍କ କଥା, ମୋତେ ବନ୍ଦୀ କରିବା କଥା ଇତ୍ୟାଦି ନାନା ବିଷୟରେ ମୋ ସହିତ ପାଞ୍ଚ ଛ' ମିନିଟ ପର୍ଯ୍ୟନ୍ତ କଥୋପକଥନ କରି ମୋତେ ବିଦାୟ ଦେଲେ ।

ସାହେବମାନେ ଭଦ୍ରକର କାର୍ଯ୍ୟ ସମାପ୍ତ କରି ଆପଣା ଆପଣା କର୍ମକ୍ଷେତ୍ର ଉଦ୍ଦେଶ୍ୟରେ ଚାଲିଗଲେ । ଉଆଲ ସାହେବ ତାହାଙ୍କର ଦ୍ରବ୍ୟାଦି ବହି ନେବା ନିମନ୍ତେ କେଉଁଝରଗଡ଼ଠାରୁ ଊଣେଇଶ ଗୋଟା ହାତୀ ନେଇ ଯାଇଥିଲେ । ସେ ସମସ୍ତ ମୋ ଜିମା କରିଦେଇ ମୟୂରଭଞ୍ଜ ଚାଲିଗଲେ ।

ଭଦ୍ରକରୁ ଆନନ୍ଦପୁରକୁ ବାହୁଡ଼ି ଆସୁଥାଏଁ । ସେ ସମୟରେ ନାନାପ୍ରକାର ଦୁଶ୍ଚିନ୍ତାରେ ମୋ ମନ ଆନ୍ଦୋଳିତ ହେଉଥାଏ । ହଠାତ୍ ମୋ ମନରେ ଉଦୟ ହେଲା, ବର୍ତ୍ତମାନ ଉତ୍କଳରେ ଯେତେ ସାହିତ୍ୟିକ ଏବଂ ପ୍ରଧାନ ଲୋକ ଅଛନ୍ତି, ସେମାନଙ୍କ ନାମ ସାହିତ୍ୟ ମଧ୍ୟରେ ଲିଖିତ ରହିବା ଉଚିତ । ପରେ ମନେକଲି, କେବଳ ନାମମାଳା ଗୁନ୍ଥି ରଖିଲେ ଲୋକେ ପଢ଼ିବାକୁ ସୁଖ ପାଇବେ ନାହିଁ । ନାମ ସହିତ ସେମାନଙ୍କ ଗୁଣାବଳୀ ଲିପିବଦ୍ଧ କରିବା ପାଇଁ ମୋର ଇଚ୍ଛା ହେଲା । ହାତୀ ଉପରେ ବସିଥାଏଁ । ପକେଟରୁ ପକେଟ-ବହି ଓ ପେନ୍‌ସିଲ ବାହାର କରି ପଦ୍ୟ ଲେଖିବାକୁ ଆରମ୍ଭ କଲି । ଆନନ୍ଦପୁରରେ ପହଞ୍ଚିବା ସମୟରେ ଅଧାଅଧି ଲେଖା ହୋଇ ଯାଇଥିଲା । ସେଠାରେ ହାତୀରୁ ଓହ୍ଲାଇବା ମାତ୍ରେ କମ୍ପୋଜିଟରକୁ ଡାକି କମ୍ପୋଜ କରିବାକୁ ଦେଲି । କିଛିକ୍ଷଣ ବିଶ୍ରାମ କରି ପୁଣି ଲେଖିବାକୁ ଆରମ୍ଭ କଲି । ଖଣ୍ଡିଏ ଖଣ୍ଡିଏ କାଗଜରେ ଲେଖା ହୋଇଯିବା ମାତ୍ରେ ଅକ୍ଷର ଯୋଜନା ନିମନ୍ତେ କମ୍ପୋଜିଟର ତାହା ନେଇ

ଯାଉଥାଏ । ରାତି ନଅ ଦଶ ଘଣ୍ଟା ସରକ ଲେଖା ସମାପ୍ତ ହେଲା । ମହାରାଜା ବାହାଦୁରଙ୍କ ଆନନ୍ଦପୁରେ ଉପସ୍ଥିତି କମ୍ବା ମୋହର ଆନନ୍ଦପୁର ପରିତ୍ୟାଗ— ଯୋଡ଼ିଏ ଦିନ ମାତ୍ର ମଧ୍ୟରେ ବ୍ୟବଧାନ । ଏଥିମଧ୍ୟରେ ପୁସ୍ତକ ଛାପା ସମାପ୍ତ କରିବାକୁ ହେବ । କମ୍ପୋଜିଟର ଏହା ଜାଣେ । ମୁଁ ମଧ୍ୟ ସେମାନଙ୍କ ପଛରେ ଲାଗିପଡ଼ିଥାଏଁ । ଦ୍ୱିତୀୟ ଦିନ ସନ୍ଧ୍ୟା ସରିକି ପୁସ୍ତକ ଛାପା ସମାପ୍ତ ହୋଇଗଲା । ଏହାହିଁ ମୋର "ଉତ୍କଳ-ଭ୍ରମଣ"ର ପ୍ରଥମ ସଂସ୍କରଣ ।

ମହାରାଜାଙ୍କ ସହିତ ମୋହର ମନାନ୍ତର ଏବଂ ମୋର ଆନନ୍ଦପୁର ପରିତ୍ୟାଗରେ କାରଣ ଏଠାରେ ସଂକ୍ଷେପରେ ଲିପିବଦ୍ଧ କରିବା ଆବଶ୍ୟକ । ସେ ରାଜ୍ୟଚ୍ୟୁତ ହେବାପରେ ମୁଁ ଯେ ଉଆଲ ସାହେବଙ୍କ ଅଧୀନରେ ରହି କର୍ମ କରୁଥିଲି ଏହା ତାଙ୍କର ବଡ଼ ଅପ୍ରୀତିକର ହୋଇଥିଲା । ଆନନ୍ଦପୁର ବିଭାଗରେ ଦୁଇଜଣ ପ୍ରଧାନ କର୍ମଚାରୀ ଥିଲେ—ମୁଁ ଓ ଜଣେ ଏସିଷ୍ଟେଣ୍ଟ ମେନେଜର । ଏହି ଏସିଷ୍ଟେଣ୍ଟ ମେନେଜର ସ୍ଥାନୀୟ ନିବାସୀ ପୂର୍ବତନ ଦେବାନଙ୍କ ପୁତ୍ର । ପୂର୍ବତନ ଦେବାନ ନନ୍ଦ ଧଳ ମହାରାଜାଙ୍କ ଗଦିନସିନ ହେବା ସମୟରେ ବିଦ୍ରୋହୀ ଭୂୟାଁମାନଙ୍କ ଦ୍ୱାରା ହତ ହୋଇଥିଲେ । ଏଥିପାଇଁ ଏହି ଧଳବଂଶ ପ୍ରତି ମହାରାଜାଙ୍କର ବିଶେଷ ସହାନୁଭୂତି ଥିଲା । ବର୍ତ୍ତମାନ ଏସିଷ୍ଟେଣ୍ଟ ମେନେଜର ମହାରାଜାଙ୍କର ବିଶେଷ ପ୍ରିୟପାତ୍ର ହୋଇଥିଲେ । ଆମ୍ଭେମାନେ ଦୁଇଜଣ କର୍ମଚାରୀ ବର୍ତ୍ତମାନ ମେନେଜର ଉଆଲ ସାହେବଙ୍କ ଅଧୀନରେ ଥାଇ ଆନନ୍ଦପୁରରେ କର୍ମ କରୁଥିଲୁ । ଉଆଲ ସାହେବଙ୍କ ଆଗମନର ଦୁଇମାସ ଉତ୍ତାରେ ସେ ନାନା କାରଣରୁ ଅସନ୍ତୁଷ୍ଟ ହୋଇ ଏସିଷ୍ଟେଣ୍ଟ ମେନେଜରଙ୍କୁ ପଦଚ୍ୟୁତ କରିବାରୁ ସେ ମୋର ନିତାନ୍ତ ବିପକ୍ଷ ହୋଇ ପଡ଼ିଲେ । ଏହି ପଦଚ୍ୟୁତିରେ ମୋର କୌଣସି ଗୁପ୍ତହସ୍ତ ଥିବାର ତାଙ୍କ ମନରେ ଗୋଟିଏ ଭ୍ରାନ୍ତ ଧାରଣା ଜାତ ହେଲା । ମହାରାଜା କଟକରେ ଥାଇ ଏ ପଦଚ୍ୟୁତି-ସମ୍ବାଦ ଶୁଣି ଅତ୍ୟନ୍ତ ବିରକ୍ତ ହେଲେ । ମୁଁ ଯେ ଏହି ପଦଚ୍ୟୁତିର ମୂଳ-କାରଣ, ମୋହର ପରମ ବିପକ୍ଷ ସେରେସ୍ତାଦାର ମହାରାଜାଙ୍କୁ ବୁଝାଇ ଦେଲା । ମୋ ପ୍ରତି ମହାରାଜାଙ୍କର ପୂର୍ବ ସ୍ନେହ ଶିଥିଳ ହୋଇଗଲା । ଗୁରୁତର ରାଜକାର୍ଯ୍ୟ ଉପସ୍ଥିତ ହେଲେ ସେ ମୋହର ପରାମର୍ଶ ଗ୍ରହଣ କରୁଥିଲେ; ମାତ୍ର ବର୍ତ୍ତମାନ 'ତେ ହି ନୋ ଦିବସା ଗତା ।' ବିପଦ୍‌ପାତ ସମୟରେ ମିତ୍ର ଶତ୍ରୁ, ଶତ୍ରୁ ମିତ୍ର ବୋଲି ପ୍ରତୀୟମାନ ହୁଏ । ଏହି ସମୟରେ ମୋହର ପୁନଃ ପୁନଃ ଜ୍ୱର ହେବାକୁ ଲାଗିଲା; ଗୋଟିଏ ଅତି ସୁନ୍ଦର ପ୍ରିୟ କୁକୁର ମରିଗଲା । ମୋହର ଶିଶୁପୁତ୍ର ଏବଂ ସ୍ତ୍ରୀ ବାଲେଶ୍ୱରରେ ଜ୍ଞାତି-ଶତ୍ରୁମାନଙ୍କଦ୍ୱାରା ବେଷ୍ଟିତ ହୋଇ ଅତ୍ୟନ୍ତ କଷ୍ଟଭୋଗ କରୁଥିଲେ । ମୁଁ ଧୃତହୋଇ ବନ୍ଦୀ ଅବସ୍ଥାରେ ଭୂୟାଁମାନଙ୍କ ମଧ୍ୟରେ ଥିବା ସମୟରେ ମୋତେ ଭୂୟାଁମାନେ ହାଣି ପକାଇଥିବା ମିଥ୍ୟା ସମ୍ବାଦ ବାଲେଶ୍ୱରରେ ଏବଂ ଉତ୍କଳର ସର୍ବତ୍ର ପ୍ରଚାରିତ ହୋଇଥିଲା । ମୋହରି କାଳ୍ପନିକ ମୃତ୍ୟୁ ସଂବାଦ ପ୍ରାପ୍ତହୋଇ ମୋହର ସ୍ତ୍ରୀ ପାନାହାର ପରିତ୍ୟାଗ କରିଥିଲେ ।

ମହାରାଜାଙ୍କ ସହିତ ମନାନ୍ତରର ତୃତୀୟ କାରଣ—ଏହି ସମୟରେ ଅନେକଗୁଡ଼ିଏ ପ୍ରଜା ଆନନ୍ଦପୁର ଡାକ ଯୋଗେ ମହାରାଜାଙ୍କ ବିପକ୍ଷରେ ଅନେକଗୁଡ଼ିଏ ଦରଖାସ୍ତ ଲେଫ୍‌ଟେନେଣ୍ଟ୍ ଗବର୍ଣ୍ଣର ଏବଂ ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କ ନିକଟକୁ ପଠାଇବାକୁ ଲାଗିଲେ । ସେହି ସମସ୍ତ ଦରଖାସ୍ତ ସହିତ ମୋହର ଗୁପ୍ତ ସମ୍ପର୍କ ଥିବାର ମହାରାଜା ବିଶ୍ୱାସ କରୁଥିଲେ । ମୁଁ ବର୍ତ୍ତମାନ ଭଲରୂପେ ବୁଝି ପାରିଲିଣି, ଆନନ୍ଦପୁରରେ ଆଉ ଚାକରି ରହିବାର ଆଶା ନାହିଁ । ମହାରାଜା ପଦଚ୍ୟୁତ ନ କଲେ ମଧ୍ୟ ମୋହର ରହିବା ମଙ୍ଗଳକର ବା ନିରାପଦର ବିଷୟ ନୁହେଁ । ସୁତରାଂ,

ମହାରାଜା ଆନନ୍ଦପୁରରେ ଉପସ୍ଥିତ ହେବାମାତ୍ର ଚାକରିରୁ ଇସ୍ତଫା ଦେଇ ବାଲେଶ୍ୱର ଚାଲିଯିବା ସକାଶେ ପ୍ରସ୍ତୁତ ହେଉଥାଏଁ । ପରେ ମୋ କର୍ମରେ ମହାରାଜା ଅନ୍ୟ ଜଣେ ଲୋକକୁ ନିଯୁକ୍ତ କରି କଟକରୁ ଆଣୁଥିବାର ଶୁଣି ପାରିଲି ।

ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ରାୟ ନନ୍ଦକିଶୋର ଦାସ ବାହାଦୁରଙ୍କୁ କେଉଁଝରର ପଲିଟିକେଲ ଏଜେଣ୍ଟ ପଦରେ ନିଯୁକ୍ତ କରିଥିଲେ । ବର୍ତ୍ତମାନ ମହାରାଜା ବାହାଦୁର ମଧୁସୂଦନ ଦାସ ଓ ପଲିଟିକେଲ ଏଜେଣ୍ଟଙ୍କ ସହିତରେ କଟକରୁ ଆସି ଆନନ୍ଦପୁର ମୁକାମରେ ଉପସ୍ଥିତ ହେଲେ । ମହାରାଜାଙ୍କ ଆଗମନ ପରଦିବସ ୧୮୯୨ ଖ୍ରୀଷ୍ଟାବ୍ଦରେ ପଲିଟିକେଲ ଏଜେଣ୍ଟଙ୍କ ସାକ୍ଷାତରେ ଅଫିସ ଏବଂ ଖଜଣାଖାନା ତହବିଲ ଅନ୍ୟ ଲୋକ ହସ୍ତରେ ଭାରାର୍ପଣ କରି ଦେଇ ଆନନ୍ଦପୁରରୁ ଅର୍ଦ୍ଧରାତ୍ର ସମୟରେ ବାହାରି ଆସିଲି । *

ଆନନ୍ଦପୁର ବାସରରେ ସର୍ବଶ୍ରେଣୀ ଲୋକେ ମୋତେ ଅତ୍ୟନ୍ତ ସ୍ନେହ କରୁଥିଲେ । ମହାରାଜାଙ୍କ ଭୟରେ ମୋତେ ମେଲାଣି ଦେବା ସକାଶେ ମୋ ନିକଟକୁ ଆସି ପାରିଲେ ନାହିଁ । ମାତ୍ର ଦୂରବର୍ତ୍ତୀ ଗ୍ରାମମାନଙ୍କରୁ ଦଳକୁ ଦଳ ଲୋକ ରାସ୍ତାଧାରି ବଣ ମଧ୍ୟରେ ସେହି ଅନ୍ଧକାର ନିଶୀଥ ସମୟରେ ମୋ ଅପେକ୍ଷାରେ ଲୁଚି ବସିଥିଲେ । ମୋ ହାଜର ଉପସ୍ଥିତ ମାତ୍ରେ ବଣ ଦୁଇ ପାଖରୁ ଲୋକମାନେ ବଣରୁ ବାହାରି ମୋତେ ନମସ୍କାର କଲେ, କିଛିମାତ୍ର କଥା କହିଲେ ନାହିଁ, ଦୀର୍ଘ ନିଃଶ୍ୱାସ ପକାଇ ଏକଦୃଷ୍ଟିରେ ମୋତେ ଅନାଇ ରହିଥାଆନ୍ତି । ସେହି ସମୟର ଘଟଣାଟି ମୋ ମନ ମଧ୍ୟରେ ଚିତ୍ରିତ ରହିଅଛି । ସେମାନଙ୍କର ସ୍ନେହ ଓ ସହାନୁଭୂତି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଭୁଲି ପାରିବି ନାହିଁ । ଦଶପଲ୍ଲାରୁ ଆସିବା ସମୟରେ ମଧ୍ୟ ଅନେକ ଲୋକ ରାତି ଅନ୍ଧକାରରେ ବଣ ମଧ୍ୟରେ ମୋ ପଛେ ପଛେ ଅନେକଦୂର ଗୋଡ଼ାଇ ଆସିଥିଲେ । ଆନନ୍ଦପୁର ଇଲାକାରେ ଦରିଦ୍ର ବିଧବାମାନଙ୍କ ଉପରେ ଚାକିରିକର ନାମରେ ଗୋଟିଏ ବିରକ୍ତିକର କର ସ୍ଥାପିତ ହୋଇଥିଲା । ଅନେକ ପ୍ରାର୍ଥନା ପରେ ମୁଁ ସେହି କର ରହିତ କରାଇ ଦେଇଥିଲି । ଏଥି ସକାଶେ ସେମାନେ ମୋତେ ପିତା ପରି ସମ୍ମାନ କରୁଥିଲେ, ସମୟ ସମୟରେ ଦଳବଦ୍ଧ ହୋଇ ଆସି ମୋତେ ଜୁହାର ହୋଇ ଯାଉଥିଲେ । ଶେଷରାତିରେ କେଉଁଝର ଶେଷ ସୀମା-ସଂଲଗ୍ନ ବସନ୍ତିଆ ମୌଜାରେ ମୋତେ ଓହ୍ଲାଇ ଦେଇ ମହାରାଜାଙ୍କ ହାତୀ ବାହୁଡ଼ି ଗଲା । ସେହି ପର୍ଯ୍ୟନ୍ତ ପହଞ୍ଚାଇ ଦେବା ସକାଶେ ମହାରାଜାଙ୍କର ଆଦେଶ ଥିଲା । ବସନ୍ତିଆ ମୌଜାର ସର୍ବରାକାର

* In May 1891 there took place an insurrection of the Bhuiyans of Keonjhar against their Maharaja, resulting in his flight to Cuttack and final restoration accompanied by Rai Nanda Kishore Das Bahadur as Government Agent. The Oppressions and exactions of the Maharaja were the immediate cause of the disturbances, which were promptly suppresed by the local officers with the aid of the Government Police. A detachment of troops from Calcutta was also ordered under arms, but it was only held in reserve and not called into action. ( C. E. Buckland—Bengal under the, Lieutenant Governors P. 911 )

ଗୌଷ୍ଟ ମେଟକାଫ ମୋ ପାଇଁ ଡାଲକାର ବନ୍ଦୋବସ୍ତ କରି ରଖିଥିଲେ । ଏହା ମେଟକାଫ ବାବୁଙ୍କ ପକ୍ଷରେ ବଡ଼ ସାହସର କାର୍ଯ୍ୟ ହୋଇଥିଲା । କେଉଁଝରର ଇଲାକାରେ ତାହାଙ୍କର ସର୍ବରାକାରୀ ଏବଂ ଅବକାରୀ ଠିକା ଥିବାରୁ ତାହାଙ୍କ ପକ୍ଷରେ ଅନିଷ୍ଟପାତର ସମ୍ଭାବନା ଥିଲା; ମାତ୍ର ସଦାଶୟ ମହାରାଜା ତାହାଙ୍କର କିଛି ମାତ୍ର ଅନିଷ୍ଟ କଲେ ନାହିଁ ।

ଆନନ୍ଦପୁର ପରିତ୍ୟାଗ ସମୟରେ କେବଳ ଦୁଇ-ଗୋଟି ବିଷୟରେ ମୋ ମନରେ କଷ୍ଟ ଜାତ ହୋଇଥିଲା । ବୈତରଣୀ ନଦୀଠାରୁ ଦୂରବର୍ତ୍ତୀ ଗ୍ରାମମାନଙ୍କରେ ଖରାଦିନେ ଅତ୍ୟନ୍ତ ଜଳକଷ୍ଟ ହୁଏ । ଶୀତକାଳରେ ମୁଁ ମଫସଲରେ ଯାଇ ପ୍ରଜାମାନଙ୍କଦ୍ୱାରା ପୁରୁଣା ପୁଷ୍କରିଣୀମାନଙ୍କରୁ ପଙ୍କ ଉଦ୍ଧାର କରିବାକୁ ଆରମ୍ଭ କରାଇଥିଲି । କ୍ରମେ କ୍ରମେ ସମସ୍ତ ପୁଷ୍କରିଣୀରୁ ପଙ୍କ ଉଦ୍ଧାର କରାଇବାକୁ ଇଚ୍ଛା ଥିଲା । ସେ ବାସନା ସଫଳ ହେଲାନାହିଁ । ଦ୍ୱିତୀୟତଃ, ଆନନ୍ଦପୁର ସହର ମଧ୍ୟରେ ଗୋଟିଏ ପକ୍କା ସ୍କୁଲଗୃହ ନିର୍ମାଣ କରାଇବାକୁ ଇଚ୍ଛା ଥିଲା । କିଛିଟା ଟଙ୍କା ମଧ୍ୟ ସଂଗୃହୀତ ହୋଇଥିଲା । ତାହା ଅସମ୍ପନ୍ନ ଅବସ୍ଥାରେ ରହିଗଲା ।

ମୁଁ ଆନନ୍ଦପୁରରେ ଥିବା ସମୟରେ ମୋର ଜେଠୁତୁପୁଅ ଭାଇ ନିତ୍ୟାନନ୍ଦ ସେନାପତି ସସ୍ତ୍ରୀକ ତୀର୍ଥାଟନକୁ ଯାଇ ଅଯୋଧ୍ୟା ତୀର୍ଥଦ୍ୱାରରେ ଶରୀର ରକ୍ଷା କଲେ । ତାଙ୍କର ବିଧବା ସ୍ତ୍ରୀ ଘରକୁ ଫେରି ଆସିଲେ । ଏକଅନ୍ନରେ ନ ରହି ପୃଥକ୍ ଭାବରେ ରହିବାକୁ ତାହାଙ୍କର ବଡ଼ ଇଚ୍ଛା । ଆମ୍ଭମାନଙ୍କର ଏକାନ୍ନବର୍ତ୍ତୀ ଯୁକ୍ତପରିବାର ବର୍ତ୍ତମାନ ତିନିଗୋଟି ସ୍ୱତନ୍ତ୍ର ପରିବାରରେ ବିଭକ୍ତ ହେଲା । ମୋହର ଜେଠୁତୁପୁଅ ଭାଇ ରାଧାମୋହନ ସେନାପତି ଏବଂ ମୋହର ଭ୍ରାତୃଷ୍ପୁତ୍ର ଲାଲମୋହନ ସେନାପତି ମୋଠାରୁ ସ୍ୱତନ୍ତ୍ର ହୋଇଗଲେ । ଆମ୍ଭମାନଙ୍କ ସମ୍ପତ୍ତି ମଧ୍ୟ ଭାଗ ହୋଇଗଲା । ଆମ୍ଭମାନଙ୍କ ବାସଗୃହ ତିନି ସମାନ ଭାଗରେ ବିଭକ୍ତ ହେଲା ।

---

## ୩୨

# ଡୋମପଡ଼ାରେ ଦ୍ୱିତୀୟଥର ଦେବାନୀ

୧୮୯୪ ମସିହାର ପ୍ରଥମାର୍ଦ୍ଧରେ ଡୋମପଡ଼ାର ରାଜାସାହେବ ବଜେନ୍ଦ୍ର କୁମାର ମାନସିଂହ ଭ୍ରମରବର ରାୟଙ୍କଠାରୁ ଟେଲିଗ୍ରାଫ୍ ପାଇ, ଇଷ୍ଟିମା ଯୋଗେ ବୃନ୍ଦାବାଲ ବାଟେ କଟକ ଚାଲିଗଲି । ରାଜାସାହେବ ତାଙ୍କ କଲିରେ ୧୬୦ ଟଙ୍କା ବେତନରେ ମୋତେ ଦେବାନ-ପଦରେ ନିଯୁକ୍ତ କଲେ । ସେ ଇଂରାଜୀ ଓ ସଂସ୍କୃତ ଭାଷା ଜାଣି ଥିଲେ । ମାତ୍ର ଗାଦିନସୀନ ହେବା ଦିନଠାରୁ ଲେଖାପଢ଼ା ଚର୍ଚ୍ଚା ଛାଡ଼ିଦେଇ କେବଳ ଡାକ୍ତରି-ଚର୍ଚ୍ଚା କରୁଥିଲେ । ପ୍ରକୃତି ଅତ୍ୟନ୍ତ ସରଳ, ଚରିତ୍ର ନିର୍ମଳ, ତାଙ୍କର ସ୍ୱାଧୀନ ମତ ନ ଥିଲା । ସର୍ବଦା ସେ ପର କଥାରେ ଚଳୁଥିଲେ । ସେ ଏତେ ଅଳସ ଯେ କଲି ସମ୍ବନ୍ଧୀୟ କୌଣସି କଥା ବୁଝୁ ନ ଥିଲେ । ନିଜଗଡ଼ରେ ରହିବାକୁ ଅନିଚ୍ଛୁକ, ସେ ସର୍ବଦା କଟକରେ ରହିବାକୁ ସୁଖ ମଣୁଥିଲେ । ସେଥିପାଇଁ ଅନେକ ଅର୍ଥବ୍ୟୟ ହୋଇ ଯାଉଥିଲା । ତାଙ୍କର ସ୍ୱର୍ଗୀୟ ପିତୃଦେବ ନିତାନ୍ତ ଦାୟରେ ପଡ଼ି, ପ୍ରାୟ ଷାଠିଏ ହଜାର ଟଙ୍କା ଋଣ କରିଥିଲେ ସତ୍ୟ; ମାତ୍ର ତାଙ୍କ ଜୀବନ-କାଳରେ ଅଧିକାଂଶ ଋଣ ପରିଶୋଧ କରିଯାଇ ଥିଲେ, ଅଳ୍ପ ମାତ୍ର ଅବଶିଷ୍ଟ ଥିଲା । ମୁଁ ବର୍ତ୍ତମାନ ଡୋମପଡ଼ା ଯାଇଥିଲି, ଦେଖିଲି, ବର୍ତ୍ତମାନ ରାଜା ସାହେବଙ୍କ ଯୋଗେ ପୈତୃକ ସଙ୍କୀର୍ଣ୍ଣ ଋଣ ବୃଦ୍ଧି ହୋଇ ପଚିଶ ହଜାର ଟଙ୍କାରେ ପହଞ୍ଚିଛି ।

ମୋହର ଡୋମପଡ଼ା ଆଗମନର କେତେକ ମାସ ଉତ୍ତାରେ ରାଜାସାହେବଙ୍କ ବିଧବା ମାତା ପରଲୋକ ଗମନ କଲେ । ରାଜା ସାହେବ ଖୁବ୍ ଆଡ଼ମ୍ବର ସହିତ ବିଧବା ମାତାଙ୍କର ଅନ୍ତ୍ୟେଷ୍ଟି-କ୍ରିୟା ସମ୍ପାଦନ କରିଥିଲେ । ମାତୃ ବିୟୋଗର ଅଳ୍ପ ଦିବସ ଉତ୍ତାରେ ରାଣୀସାହେବା ମଧ୍ୟ ପରଲୋକ ପ୍ରାପ୍ତ ହେଲେ । ରାଜମାତାଙ୍କ ବିୟୋଗର କେତେକମାସ ଉତ୍ତାରେ ତାହାଙ୍କର ଜନନୀ ଅର୍ଥାତ୍ ରାଜାସାହେବଙ୍କ ମାତାମହୀ ଟିକ୍କାଲି ଅଧିଶ୍ୱରୀ ରାଧିକା ପାଟମହାଦେଈଙ୍କ ପରଲୋକ ଗମନ-ସମ୍ବାଦ ଡୋମପଡ଼ାରେ ପହୁଞ୍ଚିଲା । ରାଧିକା ପାଟମହାଦେଈ ତାହାଙ୍କ ଅନ୍ୟ ଦୁଇ କନ୍ୟା ସହିତ ପୁରୀଧାମକୁ ଆସି ସେହିଠାରେ ଦେହ ରକ୍ଷା କରିଥିଲେ । ସ୍ୱର୍ଗଗତା ରାଧିକା ପାଟମହାଦେଈଙ୍କ ଅନ୍ତ୍ୟେଷ୍ଟିକ୍ରିୟା ଉପଲକ୍ଷରେ ଡୋମପଡ଼ାପକ୍ଷରୁ ମୁଁ ଟିକ୍କାଲି ଯାଇ, ସେ ସ୍ଥାନରେ ପ୍ରାୟ ଛ ମାସକାଳ ଅବସ୍ଥାନ କରିଥିଲି । ସେହି ଛ ମାସକାଳ ମୋ ହାତରେ ଅନ୍ୟ କୌଣସି କାର୍ଯ୍ୟ ନ ଥିବାରୁ, ମୁଁ ଜଣେ ଶିକ୍ଷକ ନିଯୁକ୍ତ କରି ତେଲଙ୍ଗୀ ଭାଷା ଶିକ୍ଷା କରୁଥିଲି ।

ରାଣୀସାହେବାଙ୍କ ମୃତ୍ୟୁ ସମୟରେ ମୁଁ ହିନ୍ଦୁ ଜ୍ୟୋତିଷଶାସ୍ତ୍ରର ସତ୍ୟତା ସମ୍ବନ୍ଧରେ ଗୋଟିଏ ପ୍ରତ୍ୟକ୍ଷ ଅକାଟ୍ୟ ପ୍ରମାଣ ପାଇଅଛି । ରାଣୀସାହେବା ଅନ୍ତଃସତ୍ତ୍ୱା ଥିଲେ । ଉପର୍ଯ୍ୟୁକ୍ତ ସମୟରେ ଗର୍ଭବେଦନା ଉପସ୍ଥିତ ହେଲା । ଏହି ଗର୍ଭରୁ ପୁତ୍ର କି କନ୍ୟା ଜାତ ହେବ ତାହା ପୂର୍ବରୁ ଜାଣିବା ଏବଂ ସନ୍ତାନ ଜାତ ହେଲେ, ତାହାର କୋଷ୍ଠୀ ପ୍ରସ୍ତୁତ କରିବା ନିମନ୍ତେ ଖୋରଧା ଅଞ୍ଚଳରୁ ଜଣେ ଜ୍ୟୋତିଷଙ୍କୁ ଡକାଇଲି । ଜ୍ୟୋତିଷ ଉକ୍ତ ବିଦ୍ୟାରେ ବିଶେଷ ନିପୁଣ ବୋଲି ଡୋମପଡ଼ା ଏବଂ ପାର୍ଶ୍ୱବର୍ତ୍ତୀ ଗଡ଼ଜାତରେ ଖ୍ୟାତ ଥିଲେ । ଜ୍ୟୋତିଷ ଉପସ୍ଥିତ ହୁଅନ୍ତେ, ରାଣୀସାହେବାଙ୍କର ଏହି ଗର୍ଭରୁ ପୁତ୍ର କି କନ୍ୟା ଜାତ ହେବ, ମୁଁ ତାଙ୍କୁ ପ୍ରଶ୍ନ କଲି । ଜ୍ୟୋତିଷେ ମୋ ସମ୍ମୁଖରେ ବସି, ରାଣୀସାହେବାଙ୍କ କୋଷ୍ଠୀଧରି, ଅନେକ ବେଳ ପର୍ଯ୍ୟନ୍ତ ଭୂମିରେ ଅଙ୍କପାତ କରି, ଗଣାଗଣି କଲେ । ମୁଁ ସମ୍ମୁଖରେ ବସି ଦେଖୁଥାଏଁ । ତୃତୀୟ ବ୍ୟକ୍ତି କେହି ନ ଥିଲେ । ଗଣାଗଣି ସମାପ୍ତ କରି ଖଡ଼ି ଗୋଟାକ ତଳେ ଥୋଇଦେଇ ଜ୍ୟୋତିଷେ ବିରସ ବଦନରେ ମୋତେ ଅନାଇ କହିଲେ, "ଆହା ! ରାଣୀ ତ ମରିଯିବେ ।" ମୁଁ କହିଲି, "ରାଣୀଙ୍କର କୌଣସି ପ୍ରକାର ବେଦନା ନାହିଁ – ସ୍ୱାଭାବିକ ଗର୍ଭବେଦନା ମାତ୍ର ।" ଜ୍ୟୋତିଷେ କହିଲେ— "ହେଲେ, କ'ଣ ହେଲା ? ଆଠ ଗୋଟା ଗ୍ରହ ମାରକରୂପେ ଉପସ୍ଥିତ । ଆଉ ଗୋଟାଏ ଗ୍ରହ କ'ଣ ତାଙ୍କୁ ରକ୍ଷା କରି ପାରିବ ?" ଜ୍ୟୋତିଷେ ମେଲାଣି ଘେନି ବସାକୁ ଗଲେ । ରାତ୍ରି ନଅଟା କି ଦଶଟା ସମୟରେ ମୁଁ ପୁଣି ଜ୍ୟୋତିଷଙ୍କୁ ପଚାରିଲି, "ସମ୍ବାଦ କ'ଣ ?" ସେ କହିଲେ, "ଆଜି ଶେଷରାତ୍ରିପର୍ଯ୍ୟନ୍ତ ମାରକ-ଗ୍ରହର ପ୍ରାବଲ୍ୟ ଅଛି । ରାତି ଯଦି ପାହିଯାଏ, ରାଣୀ ରକ୍ଷା ପାଇଯିବେ, ମାତ୍ର ରାତି ପାହିବ ନାହିଁ ।" ସେଦିନ ଆଉ ଗୋଟାଏ ବିଚିତ୍ରଘଟଣା ଉପସ୍ଥିତ ଦେଖିଲି । ପ୍ରାତଃକାଳଠାରୁ ଗୋଟାଏ ବାଲୁଆ ବଣରୁ ବାହାରି ଆସି ଉଆସ ସିଂହଦ୍ୱାର ଉପରକୁ ଉଠିଯାଇ ଉପରକୁ ମୁହଁକରି ରଡ଼ି ଆରମ୍ଭ କଲା । ସିଂହଦ୍ୱାରଠାରୁ ତଡ଼ିଦେଲେ, କୋଠା ଦୁଆରେ ସେହିପରି କରେ । ସେଠାରୁ ତଡ଼ି ଦେଲେ, ସିଂହଦ୍ୱାରକୁ ଆସେ । "ଉତ୍ପାତ ସାଗର" ନାମକ ପୁସ୍ତକରେ ଏହା ଗୋଟିଏ ଭୟଙ୍କର ଅମଙ୍ଗଳର ସୂଚନା ବୋଲି ଉଲ୍ଲେଖଅଛି । ଶେଷରାତ୍ରି— ବନ୍ୟ କୁକ୍କୁଟ ରଡ଼ିବାକୁ ଆରମ୍ଭ କରିଅଛନ୍ତି ସେହି ସମୟରେ ଗୋଟିଏ ଭୟଙ୍କର କ୍ରନ୍ଦନର କୋଳାହଳ ଶୁଣି, ମୁଁ ଉଆସ ଆଡ଼କୁ ଧାଇଁଗଲି । ଅନ୍ତଃପୁରଶାଳ ଦ୍ୱାରବନ୍ଧ ବାହାରେ ଛିଡ଼ା ହୋଇ, ଭିତରକୁ ଅନାଇ ଦେଖିଲି, ଗମ୍ଭୀର ଭିତରଟା ରକ୍ତମୟ । ରାଣୀଙ୍କର ଶେଷଦଶା ଉପସ୍ଥିତ । ସଦ୍ୟପ୍ରସୂତା କନ୍ୟାଟି ଜୀବିତା ଥିଲା । ଦଶପନ୍ଦର ଦିନ ଉତ୍ତାରେ ସେ ତାହାର ମାତାର

ଶ୍ରୋଦ୍‌ଗାମିନୀ ହେଲା । ଧାତ୍ରୀଟା ନାଭିଚ୍ଛେଦନ କରି ଜାଣିଲା ନାହିଁ । ନାଭି ଫୁଲି ଘା' ହେବାରୁ ମୃତ୍ୟୁ ଘଟିଲା ।

ପୂର୍ବୋକ୍ତ ଘଟଣାର କେତେକ ମାସ ପରେ ମୋ ଜୀବନରେ ଗୋଟିଏ ନିତାନ୍ତ ଶୋଚନୀୟ ଘଟଣା ଘଟିଲା । ଜ୍ୟୋତିଷୀଗଣ ଗଣନା କରି କହିଥିଲେ ଯେ, ମୋ ସହଧର୍ମିଣୀ କୃଷ୍ଣକୁମାରୀ ଦେବୀଙ୍କ କୋଷ୍ଠୀରେ ନିଧନାଧିପତି ବଳବତ୍ତର ଭାବରେ କେନ୍ଦ୍ରୀଭୂତ ହୋଇ-ଥିବାରୁ ତାଙ୍କର ପରମାୟୁ ୩୦ ବର୍ଷ ମାତ୍ର । ପ୍ରକୃତରେ ତାଙ୍କର ୩୨ ବର୍ଷ ଆରମ୍ଭରେ ଅଜୀର୍ଣ୍ଣରୋଗ ଆରମ୍ଭ ହେଲା । କୌଣସି ଉପଚାରରେ ଉପଶମ ହେଲା ନାହିଁ । ଯେତେ ଲଘୁ ଆହାର କଲେ ମଧ୍ୟ ପରିପାକ ହୁଏ ନାହିଁ । ଶେଷରେ ସେ ଶଯ୍ୟାଗତ ହେଲେ । ୧୮୯୪ ମସିହା ଖ୍ରୀଷ୍ଟାବ୍ଦୀ ୧୮୧୬ ଭାଦ୍ର ଶୁକ୍ଳଦଶମୀ ଅପରାହ୍ଣ ୩ ଘଣ୍ଟା ସମୟରେ ସମସ୍ତ ଶେଷ ହୋଇଗଲା ।

ମୋହର ଶୈଶବାବସ୍ଥାରେ ମାତା ପିତା ଚାଲିଯାଇ-ଥିଲେ । ମୋର ଜୀବନଧାରିଣୀ ରକ୍ଷାକାରିଣୀ ଠାକୁରମା ମଧ୍ୟ ମୋତେ ପରିତ୍ୟାଗ କରି ଚାଲିଯାଇଥିଲେ । ଜ୍ଞାତିବନ୍ଧୁମାନଙ୍କର ମୋ ପ୍ରତି କିଛିମାତ୍ର ସହାନୁଭୂତି ନ ଥିଲା । ମୋ'ର ଦ୍ୱିତୀୟ ବିବାହ ସମୟରେ ମୋର ବୟସ ଊନତିଂଶ ଏବଂ କୃଷ୍ଣକୁମାରୀଙ୍କର ବୟସ ବାରବର୍ଷ ମାତ୍ର । ସେହି ଅଳ୍ପ ବୟସରୁ ସେ ମନ ପ୍ରାଣ ଦେଇ, ମୋର ମଙ୍ଗଳକାମନା ଏବଂ ମଙ୍ଗଳ-ସାଧନା କରି ଆସୁଥିଲେ । ତାଙ୍କର ପୁଣ୍ୟସ୍ମୃତି ମୁଁ ଅଦ୍ୟାବଧି ହୃଦୟରେ ପୋଷଣ କରି ରଖିଅଛି । ମୋ'ର ସ୍ତ୍ରୀ ବିୟୋଗ ଆଜିକୁ ପ୍ରାୟ ଚବିଶ ବର୍ଷ ଗତ ହୋଇଅଛି । ବର୍ତ୍ତମାନ ଦେଖୁଛି, ମୋର ହୃଦୟ ଶୂନ୍ୟମୟ । ମୋ' ମନୋବେଦନା ଜଣାଇବାକୁ ଜଗତରେ ଆଉ କେହି ନାହିଁ । ମୋ ହୃଦୟରେ କେବେ ଦାରୁଣ କଷ୍ଟ ଜାତ ହେଲେ, ଉଦ୍ୟାନସ୍ଥ ତାଙ୍କ ସମାଧି ନିକଟରେ ବସି ମୁଁ ସାନ୍ତ୍ୱନା ଲାଭ କରେ ।

ମୁଁ ଯେ କବିତା ଲେଖିବାକୁ ଶିଖିଛି, ସେଥିରେ ଅନ୍ୟତମ କାରଣ ମୋ' ସ୍ତ୍ରୀ । ସେ ମୋ' କବିତା ଶୁଣିବାକୁ ବଡ଼ ଭଲ ପାଉଥିଲେ । ପ୍ରଥମେ ତାଙ୍କ ମନୋରଞ୍ଜନ ସକାଶେ ମୁଁ କବିତା ଲେଖୁଥିଲି । ତାଙ୍କର ମୃତ୍ୟୁପରେ ମୋ ମନର ବ୍ୟାକୁଳତା ନିବାରଣ ନିମନ୍ତେ ମୁଁ କବିତା ଲେଖେଁ । ମୋର ଅଧିକାଂଶ କବିତା ଦାରୁଣ ପୀଡ଼ା, ବିଦେ ଓଁ ମନର ଅସ୍ଥିରତା ସମୟରେ ଲେଖା । ପ୍ରତିଦିନ ସ୍ନାନାନ୍ତେ କୃଷ୍ଣକୁମାରୀ ମୋହର ଗୀତା ମହାଭାରତର ଆଦିପର୍ବ ଓ ରାମାୟଣରୁ କେତେକ ଅଂଶ ପାଠ କରୁଥିଲେ ।

ମୋ' ସ୍ତ୍ରୀର ମୃତ୍ୟୁ ସମୟରେ ମୋ' ପୁତ୍ରର ବୟସ ତେରବର୍ଷ ଓ କନ୍ୟାଟିର ବୟସ ଏଗାର ବର୍ଷ ଥିଲା । ବାଲେଶ୍ୱରରେ ବିପକ୍ଷ ଜ୍ଞାତିମାନଙ୍କ ମଧ୍ୟରେ ସେମାନଙ୍କୁ ଛାଡ଼ିଯିବାକୁ ମୋହର ସାହସ ହେଲା ନାହିଁ । ମୋହର କର୍ମସ୍ଥଳ ଡୋମପଡ଼ାକୁ ନେଇଗଲେ ସେମାନଙ୍କ ଶିକ୍ଷାର ଅସୁବିଧା ହେବ, ସେଥିପାଇଁ ମୁଁ ସେମାନଙ୍କୁ କଟକରେ ରଖିବାକୁ ମନସ୍ଥ କରି, ସେମାନଙ୍କୁ ସଙ୍ଗରେ ନେଇ ଗୃହବାଲି ଷ୍ଟିମର ଯୋଗେ କଟକ ଚାଲିଗଲି । ମୋହର ପରମବନ୍ଧୁ ପରମଧାର୍ମିକ ମଧୁସୂଦନ ରାଓ ପିଲା ଦୁହିଁଙ୍କୁ ଆପଣା ଘରେ ରଖିବାକୁ ଇଚ୍ଛା -ପ୍ରକାଶ କଲେ । ସେ ସମୟରେ ମଧୁବାବୁ କଟକ ନର୍ମାଲ୍ ସ୍କୁଲର ସୁପରେଣ୍ଟେଣ୍ଡେଣ୍ଟ୍ । ସେହି ସ୍କୁଲରେ ତାଙ୍କର ବସା । ପିଲାମାନଙ୍କ ସମସ୍ତ ପ୍ରକାର ଖରଚ ବାବଦ ମାସିକ ଟ ୩୨୲ ହିସାବରେ ତିନିମାସରେ ଖରଚ ସକାଶେ ଏକଶତ ଟଙ୍କା ମଧୁବାବୁଙ୍କ ହାତରେ ଦେଇ, ମୁଁ ଡୋମପଡ଼ା ଚାଲିଗଲି । ପିଲାମାନେ ଏକବର୍ଷ ପର୍ଯ୍ୟନ୍ତ ମଧୁବାବୁଙ୍କ ଘରେ ଥିଲେ । ପରେ ଗୋଟିଏ ସ୍ୱତନ୍ତ୍ର କୋଠା ଭଡ଼ା କରି ସେମାନଙ୍କୁ ସେଠାରେ ରଖାଇଲି ।

ଡୋମପଡ଼ାର ରାଣୀସାହେବାଙ୍କ ଅନ୍ତ୍ୟେଷ୍ଟି କ୍ରିୟାର ଅଳ୍ପଦିନ ଉତ୍ତାରେ ରାଜାସାହେବଙ୍କ ବିବାହ ମଙ୍ଗଳକୃତ୍ୟ-ପ୍ରସ୍ତାବ ନେଇ ନାନା ସ୍ଥାନରୁ ଓକିଲ ଆସିବାକୁ ଲାଗିଲେ । ସ୍ୱର୍ଗଗତା ରାଣୀ ପାରିକୁଦ ରାଜାଙ୍କ କନ୍ୟା । ତାହାଙ୍କର ଗୋଟିଏ ଅନୂଢ଼ା କନିଷ୍ଠା ଭଗିନୀ ଥିଲେ । ତାହାଙ୍କ ସହିତ ବିବାହ ସକାଶେ ରାଜାସାହେବଙ୍କ ନାମରେ ଏବଂ ମୋ ନାମରେ ପାରିକୁଦ ରାଜା ସାହେବଙ୍କ ପତ୍ର ଧରି ଓକିଲ ଆସି ଉପସ୍ଥିତ ହେଲେ । ଅଳ୍ପଦିନ ଉତ୍ତାରେ ଖଲ୍ଲିକୋଟ ରାଜାଙ୍କ ଓକିଲ ମଧ୍ୟ ଉପସ୍ଥିତ ହେଲେ । ଖଲ୍ଲିକୋଟ ରାଜାଙ୍କର ଗୋଟିଏ କନିଷ୍ଠା ଭଗିନୀ ଅବିବାହିତା ଥିଲେ । ଡୋମପଡ଼ା ରାଜାଙ୍କର ସ୍ୱଜାତୀୟ ଅର୍ଥାତ୍ ଭାଇ ପୁଅମାନଙ୍କର ଏଠାରେ ସମ୍ବନ୍ଧ କରାଇବାର ନିତାନ୍ତ ଇଚ୍ଛା । କାରଣ ଜାତ୍ୟାଂଶରେ, କୁଳ-ମର୍ଯ୍ୟାଦାରେ ଖଲ୍ଲିକୋଟ ଶ୍ରେଷ୍ଠ ଅଟନ୍ତି । "ବାନ୍ଧବାଃ କୁଳ ମିଚ୍ଛନ୍ତି ।" ମୁଁ ଖଲ୍ଲିକୋଟ ପାଇ ସମ୍ବନ୍ଧ ଏକପ୍ରକାର ସ୍ଥିର କରି ଆସିଲି । ମୁଁ କଟକ ବସାରେ ଥାଏଁ । ଦିନେ ସକାଳେ କନିକା ମେନେଜର ଭୂତପୂର୍ବ ରାଜାସାହେବ ନୃପେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କୁ ସଙ୍ଗରେ ନେଇ ମୋ' ବସାରେ ଉପସ୍ଥିତ ହେଲେ । ଏହି ଘଟଣାର ଦୁଇଦିନ ଉତ୍ତାରେ ମେନେଜର ବାବୁ ମୋତେ କଟକସ୍ଥ କନିକା ରାଜବାଟିକୁ ଡାକି ନେଇଗଲେ । କନିକାର ପୂଜନୀୟା ବୃଦ୍ଧା ରାଣୀ ମୋତେ କହିଲେ, ତାହାଙ୍କ କନ୍ୟାସହିତ ଡୋମପଡ଼ା ରାଜାଙ୍କ ସମ୍ବନ୍ଧ କରାଇ ଦେଲେ, ସେ ମୋତେ ଖୁସି କରାଇ ଦେବେ । ମୁଁ କହିଲି, "ଏହି କାର୍ଯ୍ୟଟି କରାଇ ପାରିଲେ, ମୁଁ ଖୁସିହେବି ।" ଅନ୍ୟ ସମୟରେ ମେନେଜର ବାବୁ ମୋତେ କହିଲେ; — ରାଜାଙ୍କର ପଚିଶ ହଜାର ଟଙ୍କା ଦେଣା ଅଛି, କନିକା ସହିତ ସମ୍ବନ୍ଧ ହେଲେ, ବୃଦ୍ଧା ରାଣୀସାହେବା ସମସ୍ତ ଦେଣା ପରିଶୋଧ କରି ଦେବେ । କନିକା ଘଟଣା ରାଜାସାହେବଙ୍କୁ ଜଣାଇ ଉତ୍ତର ପାଇଲି, "ଆପଣ ଯେଉଁ ବନ୍ଦୋବସ୍ତ କରିବେ, ମୋହର ସେଥିରେ ଆପତ୍ତି ନାହିଁ ।"

କନିକା-ସମ୍ବନ୍ଧ-ସମାଚାର ଶୁଣି ଡୋମପଡ଼ା ରାଜାଙ୍କର ସ୍ୱଜାତୀୟ ଲୋକେ ଭୟଙ୍କର ଉତ୍ତେଜିତ ହୋଇ ଉଠିଲେ । ସେମାନେ ସମ୍ବାଦ ପାଇଥିଲେ ଯେ କନିକା କନ୍ୟା ରାଜବଂଶଜାତା ନୁହନ୍ତି — ପୁତ୍ରାକାଙ୍କ୍ଷାସ୍ଥିତ କୌଣସି ଅଚିହ୍ନିତ ଖଣ୍ଡାଏତ ବଂଶଜା ଏବଂ ମାନନୀୟା କନିକାରାଣୀଙ୍କ ଦ୍ୱାରା ପ୍ରତିପାଳିତା । ଡୋମପଡ଼ା ରାଜା କ୍ଷତ୍ରିୟ । ବର୍ତ୍ତମାନ ଖଣ୍ଡାୟତ ସହିତ କ୍ଷତ୍ରିୟର ବିବାହ ଦ୍ୱାରା ସେମାନେ ଡୋମପଡ଼ା ରାଜାଙ୍କ ଜାତିପାତ ଆଶଙ୍କା କଲେ । ମୁଁ ସମସ୍ତ ଆପତ୍ତି ଅଗ୍ରାହ୍ୟ କରି କନିକା ସହିତ ସମ୍ବନ୍ଧ ସ୍ଥିର କଲି ।

ବିବାହର ପୂର୍ବଦିନ ସକାଳେ ରାଜାସାହେବ ଡୋମପଡ଼ା ଗଡ଼ରେ ନାନ୍ଦୀମୁଖ ସାରି ଭଗିପୁର ତୋଟାରେ ରହିଲେ । ବିବାହ ଦିନ ଉପରଓଳି କଟକଠାରୁ ଦୁଇ କୋଶ ଦୂର ଗୋଡ଼ିସାହିଠାରେ ଯେପରି ପହଞ୍ଚିଛନ୍ତି, ତୋଫାନ ସହିତ ବର୍ଷା ଆରମ୍ଭ ହେଲା । କାଠଯୋଡ଼ି ବାଲିରେ ପହଞ୍ଚିବାବେଳକୁ ପ୍ରବଳ ବୃଷ୍ଟି ଆରମ୍ଭ ହେଲା । ବାଜା, ରୋଷନାଇ ସମସ୍ତ ଛିନ୍ନଭିନ୍ନ ହୋଇଗଲା । ରାଜା ଯେଉଁ ଚଉଦୋଳରେ ବିଜେ ହୋଇଥିଲେ, ତୋଫାନ ସେ ଚଉଦୋଳକୁ ମୋଡ଼ି ତଳେ ପକାଇ ଦେଲା । ରାଜାସାହେବ ଗୋଟିଏ ସାମାନ୍ୟ ପାଲିଙ୍କିରେ ବିଜେ ହୋଇ ଆସିଲେ । କାଠଯୋଡ଼ି ଉତ୍ତର କୂଳରେ ପହଞ୍ଚିବା ମାତ୍ରେ ତୋଫାନ ବର୍ଷା ଏକାବେଳକେ ବନ୍ଦ ହୋଇଗଲା । ରାଜବର କୌଣସିରୂପେ କନିକା-ନଅରରେ ବିଜେହେଲେ । ମଙ୍ଗଳକୃତ୍ୟ ଆରମ୍ଭ ହେଲା । ବିବାହ କାର୍ଯ୍ୟ ସମାପ୍ତ ହେବାପରେ, କନିକାର ମେନେଜର ରାଜାଙ୍କର ସମସ୍ତ ଦେଣା ପରିଶୋଧ କରିବାକୁ ପ୍ରତିଶ୍ରୁତ ହେଲେ । ମୁଁ ଡୋମପଡ଼ାରୁ

ଚାଲି ଆସିବା ପରେ, ଡୋମପଡ଼ାର କର୍ମଚାରୀମାନଙ୍କଠାରୁ ଶୁଣିଥିଲି ଯେ, ମେନେଜର ବାବୁ ତାଙ୍କର ପ୍ରତିଜ୍ଞା ରକ୍ଷା କରି ନାହାନ୍ତି ଏବଂ ମହାଜନମାନଙ୍କୁ ଅତି ଅଳ୍ପ ମାତ୍ର ଟଙ୍କା ପରିଶୋଧ ଦିଆ ଯାଇଅଛି ।

ଏହି ସମୟରେ ମୋହର ଦକ୍ଷିଣ ବାହୁମୂଳରେ ଗୋଟିଏ ବଥ ବାହାରିଲା । ଗୋଟିଏ ଅନାଡ଼ି ଡାକ୍ତର ତାହା ଅସ୍ତ୍ର କଲା । ଘାଆର ଯନ୍ତ୍ରଣାରେ ଜ୍ୱର ହେଲା । ମୁଁ ଶଯ୍ୟାଗତ ହେଲି । ଅସ୍ତ୍ରାଘାତ ଘା କ୍ରମଶଃ ମାରାତ୍ମକ ରୂପ ଧାରଣ କଲା । ଘା'ର ମୁହଁଟା ଛୋଟ; କିନ୍ତୁ ନାଳଘା ବାହୁ ଭିତରେ ଚଳିଯାଇ କହୁଣୀ ପାଖ ପର୍ଯ୍ୟନ୍ତ ପହୁଞ୍ଚିଲା । ଆୟୁର୍ବେଦୀୟ, ହୋମିଓପାଥି ଏଲୋପାଥି ସବୁପ୍ରକାର ଚିକିତ୍ସା ବ୍ୟର୍ଥ ହୋଇଗଲା । ଡାକ୍ତରସାହେବ ମୋତେ ପରିତ୍ୟାଗ କରିଯିବା ପରଦିନ ଡୋମପଡ଼ାର ରାଜକୁଟୁମ୍ବୀ ଜଣେ ବାବୁ ମୋତେ ଦେଖିବା ସକାଶେ ଡୋମପଡ଼ାରୁ ଆସି ମୋ' ନିକଟରେ ଉପସ୍ଥିତ ହେଲେ । ତାଙ୍କର ପରାମର୍ଶରେ ପଦ୍ମପଲାଶ ପତ୍ରରେ ଟିକିଏ ଘିଅ ମାଖିଦେଇ ତାହା ସେକି ଘା'ଉପରେ ବାନ୍ଧିଦେଲି । ଏହିପରି ଛଅ ଦିନ କଲା ପରେ ଦେଖିଲି ଘାଆ ସମ୍ପୂର୍ଣ୍ଣରୂପେ ଶୁଖି ଯାଇଅଛି । ମୁଁ ଗୋଟିଏ ବିଷମ ବିପଦରୁ ରକ୍ଷା ପାଇଲି ।

ମୋହର ବ୍ୟାଧି ସମୟରେ କନିକା ମେନେଜରଙ୍କ ପରାମର୍ଶ ଅନୁସାରେ ଏବଂ କନିକା କନ୍ୟା ଡୋମପଡ଼ା ରାଣୀସାହେବାଙ୍କ ଅନୁରୋଧମତେ ଡୋମପଡ଼ା ରାଜା ମୋତେ ପଦଚ୍ୟୁତ କଲେ । ମୁଁ ପୂର୍ବେ କହିଅଛି, ରାଜାସାହେବ ଅତ୍ୟନ୍ତ ଦୁର୍ବଳ-ମନା । ଲୋକେ ଯେତେବେଳେ ତାଙ୍କୁ ବୁଝାଇଲେ ଯେ, ମୋ' ଦୋଷରୁ ତାଙ୍କର ସମସ୍ତ ଦେଣା ହୋଇଅଛି, ସେତେବେଳେ ସେ ମୋତେ କର୍ମଚ୍ୟୁତ କଲେ; କିନ୍ତୁ ଦୋଷ ମୋ'ର ନୁହେଁ । ଦୋଷ ରାଜାଙ୍କର । ରାଜାସାହେବଙ୍କ କନିକା ମଙ୍ଗଳକୃତ୍ୟ ବଢ଼ିବା ପୂର୍ବ ତିନିବର୍ଷ ମଧ୍ୟରେ ନିତ୍ୟ ଖରଚ ଛାଡ଼ି ନୈମିତ୍ତିକ ଖରଚ ହୋଇଥିଲା —

| | |
|---|---|
| ରାଜମାତାଙ୍କ ଅନ୍ତ୍ୟେଷ୍ଟି କ୍ରିୟାରେ | ଟ ୯୫୦୦୲ |
| ରାଣୀ ସାହେବାଙ୍କ ,, | ଟ ୩୫୦୦୲ |
| ରାଜାଙ୍କ ନଅର ତିଆରିରେ | ଟ ୫୦୦୦୲. |
| ବନ୍ଦୋବସ୍ତ ଖର୍ଚ୍ଚରେ | ଟ ୩୦୦୦୲ |
| ରାଜମାତାମହୀ ରାଧିକା ପାଟମହାଦେଈଙ୍କ ଅନ୍ତ୍ୟେଷ୍ଟିକ୍ରିୟା ସମୟରେ | ଟ ୫୦୦୲ |
| ମୋଟ | ଟ ୨୧,୫୦୦୲ |

ଏହି ଏକୋଇଶ ହଜାର ପାଞ୍ଚଶ ଟଙ୍କା ଖରଚ ସକାଶେ ଗୋଟିଏ ହେଲେ ଟଙ୍କା କରଜ କରାଯାଇ ନ ଥିଲା । ଯାହାହେଉ, ମୁଁ ଯେ ସମସ୍ତ ବାଧା ଅଗ୍ରାହ୍ୟ କରି, କନିକା-କନ୍ୟା ସହିତ ସମ୍ବନ୍ଧ ସ୍ଥିର କରିଥିଲି, ମୁଁ ତାହାର ଉପଯୁକ୍ତ ପୁରସ୍କାର ପାଇଲି, ମୋତେ ନିଜର କର୍ମଫଳ ଭୋଗ କରିବାକୁ ହେଲା ।

ପୂର୍ବ ରାଜାଙ୍କ ଅମଳରେ ମୁଁ ଡୋମପଡ଼ାର ଯେଉଁ ବନ୍ଦୋବସ୍ତ କରାଇଥିଲି, ସେହି ବନ୍ଦୋବସ୍ତଠାରୁ ଅଦ୍ୟାବଧି କେତେକ ବର୍ଷ ଗତ ହୋଇଥିବା ଯୋଗୁଁ ଅନେକଗୁଡ଼ିଏ ପତିତ ଜମି ଆବାଦ ହୋଇଯାଇଥିଲା; କିନ୍ତୁ ସେହି ହାଲ ଆବାଦି ଜମିପାଇଁ ରାଜସରକାରର କିଛିମାତ୍ର ଆୟ ହେଉ ନ ଥିଲା । ମୁଁ ସେ ସମସ୍ତ ଜମି ଜରିବ ବନ୍ଦୋବସ୍ତ ପାଇଁ କର୍ମଚାରୀ ନିଯୁକ୍ତ କରିଥିଲି । ମୋ'ର ଏହି ଦ୍ୱିତୀୟ ବନ୍ଦୋବସ୍ତ ଦ୍ୱାରା ଡୋମପଡ଼ା ଭୂମିକର ବାର୍ଷିକ ତିନିହଜାର ଟଙ୍କା ପର୍ଯ୍ୟନ୍ତ ବୃଦ୍ଧିପାଇଥିଲା । ଡୋମପଡ଼ାରେ ବିଦେଶୀୟ ଭଦ୍ର ଅଭ୍ୟାଗତ ଉପସ୍ଥିତ ହେଲେ, ସେମାନଙ୍କ ବାସ ନିମନ୍ତେ ଉପଯୁକ୍ତ ଘର କିମ୍ବା ବ୍ୟବହାର ନିମନ୍ତେ ନିକଟରେ ଜଳର ସୁବିଧା ନ ଥିଲା । ଏହି ଅଭାବ ଦୂରୀକରଣ ନିମନ୍ତେ ଗୋଟିଏ ବଙ୍ଗଳା ଏବଂ

ଗୋଟିଏ ପଥର କୂଅ ଉଆସ ସିଂହଦ୍ୱାର ସମ୍ମୁଖରେ ନିର୍ମାଣ କରାଇ ଦେଇଥିଲି । ଲୋକେ ଅଦ୍ୟାବଧି ଏହି ବଙ୍ଗଳାକୁ 'ଫକୀରମୋହନ ବଙ୍ଗଳା' କହନ୍ତି । ଉଆସ ମଧ୍ୟରେ ପୁରୁଣା ଘରସବୁ ଭଙ୍ଗାଇ ଏକପ୍ରସ୍ତ ନୂଆ ପକ୍କାଘର, ଗୋଟାଏ ବଙ୍ଗଳା ନିର୍ମାଣ କରାଇ ଦେଇଥିଲି । ନଜଗଡ଼ ଗ୍ରାମ ମଧ୍ୟରେ କୂପ ବା ପୁଷ୍କରଣୀ ନ ଥିବାରୁ ଗ୍ରୀଷ୍ମକାଳରେ ଲୋକେ ରଣନଦୀକୁ ଜଳ ଆଣିବା ସକାଶେ ଯାଉଥିଲେ । ଦୂରପଥ ଭ୍ରମଣ ହେତୁ ସେମାନଙ୍କର କଷ୍ଟ ହେଉଥିଲା । ମୋହର ପରଲୋକଗତା ସ୍ତ୍ରୀଙ୍କ ସ୍ମୃତିରକ୍ଷା ସକାଶେ ଶାସନ-ମୁଣ୍ଡରେ ଗୋଟିଏ କୂପ ଖୋଳାଇ ଦେଲି । ସେହି କୂପର ଉପର-ପଥର ଖଣ୍ଡକରେ ଲେଖାଅଛି— "ଶ୍ରୀମତୀ କୃଷ୍ଣକୁମାରୀ ଦେବୀ, ବାଲେଶ୍ୱର ।" ଏହି କୂପଟି ନିଜ ବ୍ୟୟରେ ନିର୍ମାଣ କରାଇଅଛି । ନଜଗଡ଼-ଠାରୁ ଉତ୍ତରଦିଗକୁ ପାଥପୁର ନିକଟବର୍ତ୍ତୀ ବାଙ୍କି ସଡ଼କ ପର୍ଯ୍ୟନ୍ତ କୌଣସି ସଡ଼କ ନ ଥିଲା । ଲୋକେ ପାଥପୁରଠାରୁ କୁଶଙ୍ଗୀ ଗ୍ରାମ ପର୍ଯ୍ୟନ୍ତ ନିବିଡ଼ କଣ୍ଟା ବାଉଁଶବଣିଆ ମଧ୍ୟରେ ଏବଂ ସେଠାରୁ ନଜଗଡ଼ ପର୍ଯ୍ୟନ୍ତ ପାଟବଲ ଗହ୍ୱର ମଧ୍ୟରେ ଯା'ଆସ କରୁଥିଲେ । ଆଷାଢ଼ଠାରୁ ପ୍ରାୟ କାର୍ତ୍ତିକ ପର୍ଯ୍ୟନ୍ତ ମହାନଦୀ ବଢ଼ି ଜଳରେ ବଲ ବୁଡ଼ି ବାଟୋଇମାନଙ୍କ ପକ୍ଷରେ ଅଗମ୍ୟ ହୋଇ ପଡ଼େ । ଡୋମପଡ଼ାର ପୂର୍ବାଞ୍ଚଳ-ବାସିଗଣ ଜଙ୍ଗଲ ମଧ୍ୟରେ ବୁଲି ପାହାଡ଼ ଉପରେ ଚଢ଼ି ପାଥପୁର ପର୍ଯ୍ୟନ୍ତ ଯା'ଆସ କରୁଥିଲେ । ସ୍ୱୟଂ ରାଜାସାହେବ କିମ୍ବା ପ୍ରଧାନ କର୍ମଚାରୀମାନେ ହାତୀରେ ଯା'ଆସ କରୁଥିଲେ ସତ୍ୟ; ମାତ୍ର ଗମ୍ଭୀର ବଲରେ ଜଳ ସମୟ ସମୟରେ ହାତୀର ଗଣ୍ଡପର୍ଯ୍ୟନ୍ତ ସ୍ପର୍ଶ କରୁଥିଲା । ବାଟୋଇମାନଙ୍କ ସୁବିଧା ସକାଶେ ମୁଁ ନଜଗଡ଼ଠାରୁ ପାଥପୁର ପର୍ଯ୍ୟନ୍ତ ଗୋଟାଏ ସଡ଼କ ନିର୍ମାଣ କରାଇବାକୁ ଇଚ୍ଛା କରିଥିଲି; କିନ୍ତୁ ସେ ଇଚ୍ଛା କାର୍ଯ୍ୟରେ ପରିଣତ ହୋଇନାହିଁ । ଡୋମପଡ଼ାରେ ଗୋଟିଏ ସ୍କୁଲଗୃହ ନିର୍ମାଣ ଆରମ୍ଭ କରାଇଥିଲି । ୧୮୯୭ ମସିହାରେ ମୋର କର୍ମ ପରିତ୍ୟାଗ ସମୟରେ ସେଥିର କାନ୍ଥ ମାତ୍ର ପ୍ରସ୍ତୁତ ହୋଇଥିଲା ।

ମୋର ବ୍ୟାଧି ସମୟରେ ଯେତେବେଳେ ମୁଁ ଡୋମପଡ଼ା ରାଜାଙ୍କଠାରୁ ପଦେଚ୍ୟୁତି ପତ୍ର ପାଇଲି, ମୁଁ ସେତେବେଳେ ପାଲିକି ଚଢ଼ି ଅତି କଷ୍ଟରେ ଡୋମପଡ଼ା ରାଜାଙ୍କ ନିକଟକୁ ଗଲି; କିନ୍ତୁ ତାଙ୍କ ସହିତ ସାକ୍ଷାତ ହେଲାନାହିଁ । କନିକା ନଅରକୁ ଗଲି । ଯୁବକ ରାଜା ନୃପେନ୍ଦ୍ର ନାରାୟଣ ଭଞ୍ଜଙ୍କ ସହିତ ସାକ୍ଷାତ ହେଲା । ସେ ପୂର୍ବବତ୍ କରମର୍ଦ୍ଦନ (Shake-hand) କରି ପାଖରେ ବସାଇଲେ ।

ପୂର୍ବବତ୍ ପ୍ରେମାଳାପ, ହସି ହସି କଥା । ରାଜକୁମାରଙ୍କ ସେ ସମୟର ମୋହିନୀ ମୂର୍ତ୍ତିଟି ମୋ' ହୃଦୟରେ ଏ ପର୍ଯ୍ୟନ୍ତ ଅଙ୍କିତ ରହିଅଛି । ବିଚାରା ନାବାଳକ—କିଛିମାତ୍ର କ୍ଷମତା ହାତକୁ ଆସି ନାହିଁ । ମୁଁ ଉପସ୍ଥିତ ବିଷୟ ସମ୍ବନ୍ଧରେ ତାଙ୍କୁ କିଛି କଥା ନ କହି, ମେଲାଣି ନେଇ, ବସାକୁ ଆସିଲି । ସେଇଟା ଥିଲା ତାଙ୍କଠାରୁ ଶେଷବିଦାୟ । ଏହି ଘଟଣାର ପଞ୍ଚମ କି ଷଷ୍ଠ ଦିନ ପ୍ରାତଃକାଳ ଦିବା ପ୍ରାୟ ୯ ଘଣ୍ଟା ସମୟରେ ମୁଁ ତନ୍ଦ୍ରାବସ୍ଥାରେ ପଡ଼ିଥିଲି । ହଠାତ୍ ଖୁବ୍ ବଳରେ ଉଠିବସି ଚିତ୍କାର କରି କହିଲି, "ହାୟ ହାୟ ! କନିକାରାଜା ମରିଗଲେ ।" ମୋ'ର ଦ୍ୱାଦଶ ବର୍ଷ ବୟସ୍କା କନିଷ୍ଠା କନ୍ୟାଟି ପାଖରେ ବସିଥିଲା । ସେ ମୋତେ ବ୍ୟାକୁଳ ଭାବରେ ପଚାରିଲା, "ବାବା, ବାବା, କେଉଁ ରାଜା ମରିଗଲେ ?" ମୁଁ ପ୍ରକୃତିସ୍ଥ ହୋଇ କହିଲି, "ନାହିଁ, ନାହିଁ, ଏହିଟା ମୋର ପ୍ରଳାପ ।" ଉକ୍ତ ଘଟଣାର ଦୁଇଘଣ୍ଟା ଉତ୍ତାରେ କନିକା ରାଜାଙ୍କର ପରଲୋକ-ଯାତ୍ରା ସମ୍ବାଦ ଶୁଣିଲି । ହିସାବ କରି ଦେଖିଲି, ମୋ'ର ପ୍ରଳାପ ସମୟରେ କନିକା ରାଜାଙ୍କ ପ୍ରାଣ-ବାୟୁ ନିର୍ଗତ ହୋଇଥିଲା ।

ମୁଁ ଆରୋଗ୍ୟ ଲାଭ କଲି; କିନ୍ତୁ ଅର୍ଥାଭାବ ଉପସ୍ଥିତ । ଡୋମପଡ଼ା ରାଜାସାହେବ ଏଦନେ ମୋତେ ତାଙ୍କ ବକ୍‌ସିବଜାର ବଙ୍ଗଳାକୁ ଡକାଇ ମାସିକ ଶହେ ଟଙ୍କା ସାହାଯ୍ୟ ଦେବା ସକାଶେ ପ୍ରସ୍ତାବ କଲେ; କିନ୍ତୁ କିଛିମାତ୍ର କର୍ମ ନ କରି, ଏତେ ଟଙ୍କା ନେବାକୁ ମୁଁ ଅସ୍ୱୀକାର କରିବାରୁ; ମୋତେ ମାସିକ ତିରିଶ ଟଙ୍କା ଦରମାରେ କଟକରେ ଏଜେଣ୍ଟସ୍ୱରୂପ ନିଯୁକ୍ତ କଲେ । ରାଜାସାହେବଙ୍କ ଗାଡ଼ି ଘୋଡ଼ା ମୋ' କଟକ ଘରେ ଥାଏ ଏବଂ ମୁଁ ସେଥିର ତତ୍ତ୍ୱାବଧାନ କରେଁ । ମୋର ଅନ୍ୟ କାର୍ଯ୍ୟ—ପ୍ରତିଦିନ ସକାଳେ ରାଜାଙ୍କ ନିକଟକୁ ଯାଇ ଗଳ୍ପ କରେଁ । କେତେକ ମାସ ପରେ ମୁଁ କାର୍ଯ୍ୟ ତ୍ୟାଗ କରିଥିଲି ।

ମୋର ଡୋମପଡ଼ା ସହିତ ସମସ୍ତ ସମ୍ପର୍କ ଛିନ୍ନ ହେବାପରେ ଶୁଣିଲି, ରାଜାସାହେବଙ୍କ ଦେଣା ବଢ଼ିବଢ଼ି ସତୁରି ହଜାର ଟଙ୍କାରେ ପହଞ୍ଚି ଅଛି । କନିକା ସହିତ ବା ନଅର ସହିତ ତାଙ୍କର ଆଉ ସମ୍ପର୍କ ନାହିଁ । ସେ କନିକା-ନାମ ଶୁଣିଲେ ବିରକ୍ତ ହୁଅନ୍ତି · ଦେଣା ସକାଶେ ଅଥୟ ହୋଇ ପଡ଼ିଲେଣି । ମହାଜନମାନେ ନାଲିସ୍ କରିବାକୁ ପ୍ରସ୍ତୁତ । କଟକର ପ୍ରସିଦ୍ଧ ଓକିଲ ମଧୁସୂଦନ ଦାସ ରାଜାଙ୍କୁ ମହାଜନ ଜୁଲମରୁ ରକ୍ଷା କରିବା ନିମନ୍ତେ କେଉଁଝରର ମହାରାଜାଙ୍କ ନିକଟରୁ ଅଳ୍ପ ସୁଧରେ ଟଙ୍କା ଆଣାଇ ସମସ୍ତ ଦେଣା ପରିଶୋଧ କରାଇ ଦେଲେ ।

ଦେଣା ଉତ୍ପାତରୁ ମୁକ୍ତ; କିନ୍ତୁ ରାଜାଙ୍କର ବର୍ତ୍ତମାନ ଗୋଟାଏ ମାନସିକ ବିକାର ଉପସ୍ଥିତ ହେଲା । ସର୍ବଦା ଚିନ୍ତାଗ୍ରସ୍ତ ହୋଇ ପଲଙ୍କରେ ପଡ଼ି ରହିଥାନ୍ତି । ଶେଷକୁ ଉଆସ ସହିତ ସମ୍ପର୍କ ତ୍ୟାଗ କରି, ନାନା ସ୍ଥାନରେ ଭ୍ରମଣ କରିବାକୁ ଲାଗିଲେ । ତାଙ୍କର ସେହି ସୁଗଠିତ ସୁନ୍ଦର ଶରୀର ଆସ୍ତେ ଆସ୍ତେ ଶୁଷ୍କ ହୋଇ ପଡ଼ିଲା । ନାନା ସ୍ଥାନରେ ଭ୍ରମଣ କରି ଶେଷକୁ କଲିକତା ଗଲେ । ସେହି ମହାନଗରୀରେ ପତିତପାବନୀ ଜାହ୍ନବୀ କୂଳରେ ସମସ୍ତ ଶେଷ ହୋଇଗଲା ।

———

## ୩୩

## କଟକରେ ଅବସ୍ଥାନ

ମୋର କଟକରେ ବାସ ସକାଶେ ବହୁଦିନରୁ ଅଭିଳାଷ ଥିଲା । ଗୋଟିଏ ଘର ପ୍ରସ୍ତୁତ କରାଇବା ନିମନ୍ତେ ଖଣ୍ଡିଏ ଉପଯୁକ୍ତ ସ୍ଥାନ ଖୋଜି ବୁଲୁଥାଏଁ । ଦୈବାତ୍ ମିଳିଯିବାରୁ ବକ୍‌ସିବଜାର ନିକଟରେ ଗୋଟିଏ ବଙ୍ଗଳା-ଘର କିଣି ପକାଇଥିଲି । ପରେ ଦେଖିଲି ମୋ ପରି ସାମାନ୍ୟ ଆୟବିଶିଷ୍ଟ ଲୋକପକ୍ଷରେ ସେପରି ଘରେ ବାସ କରି ଚଳିବା ଅସମ୍ଭବ । ବୃହତ୍ ବଙ୍ଗଳା ଭିତରେ ଅନେକଗୁଡ଼ାଏ ଘର । ଚତୁର୍ଦ୍ଦିଗରେ ଉଦ୍ୟାନ, ପୁଷ୍କରିଣୀ ସହିତ ପକ୍କା-ପ୍ରାଚୀର ବେଷ୍ଟିତ ବୃହତ୍ ପଡ଼ିଆ ହତା—ସାହେବମାନଙ୍କ ରହିବାର ଉପଯୋଗୀ ।

ଅସୁବିଧା ମଧ୍ୟରେ ଦେଶୀ ଭଦ୍ର ପ୍ରତିବାସୀଙ୍କର ଅଭାବ; ସ୍କୁଲ, କଚେରି, ପରିଚିତ ବନ୍ଧୁବାନ୍ଧବଙ୍କ ଘର ଅନେକ ଦୂରରେ । ବର୍ତ୍ତମାନ ଘରକୁ ନେଇ କିଛି ହରବରରେ ପଡ଼ିଗଲି । ମୁଁ ତ ରହିବି ବିଦେଶରେ, ଘରକୁ ଭଡ଼ା ଲଗାଇବା, ମରାମତି କାର୍ଯ୍ୟ କରୁଛି କିଏ ? ଘରର ଅର୍ଦ୍ଧାଂଶ ବିକ୍ରୟ କରିଦେଇ ଜଣେ ସଙ୍ଗୀ ଯୁଟାଇଲି । ଘରଟାରୁ ମାସିକ ତିରିଶ ଟଙ୍କା ଭଡ଼ା ଉଠୁଥିଲା । କୋଡ଼ିଏ ବାଇଶ ବର୍ଷ ପର୍ଯ୍ୟନ୍ତ ଘରଟାକୁ ହାତରେ ରଖିଥିଲି । ପରେ ମୋର ଟଙ୍କାର ଅଭାବ ହେବାରୁ ମଧୁସୂଦନ ଦାସ ମହୋଦୟଙ୍କୁ ମୋହର ସ୍ୱତ୍ୱ ଅର୍ଦ୍ଧାଂଶ ବିକ୍ରୟ କରିଦେଲି ।

ସ୍କୁଲ, କଚେରି ପାଖରେ ଗୋଟିଏ ଘର ପ୍ରସ୍ତୁତ କରିବା ସକାଶେ ସ୍ଥାନ ଅନ୍ୱେଷଣ କରୁଥାଏଁ । ଦିନେ ସନ୍ଧ୍ୟା ସମୟରେ ବାଖରାବାଦ ଧୂଆଁପଡ଼ିଆ ସାଇରେ ଖଣ୍ଡିଏ ଜାଗା ଦେଖିବାକୁ ପାଇଲି । ପନ୍ଦର ପୋଲ ଗୁଣ୍ଠ ପକ୍କା ପ୍ରାଚୀର ବେଷ୍ଟିତ ଖଣ୍ଡିଏ ଜାଗା ପଡ଼ିଆ ପଡ଼ିଛି । ଶୁଣିଲି ଉତ୍କଳପ୍ରସିଦ୍ଧ ଜମିଦାର ଭଗବାନ ରାଏଟସିଂହଙ୍କର ସେଠାରେ ବସା ଥିଲା । ତାହାଙ୍କର ବର୍ତ୍ତମାନ ପତନାବସ୍ଥା—ବିକି ଦେବେ । ଜାଗାଟି ନିଷ୍କର ବାଜ୍ୟାପ୍ତି । ବନ୍ଦୋବସ୍ତ ଖଜଣା ଥିଲା ବାର୍ଷିକ ଦେଢ଼ଟଙ୍କା । ଜାଗାଖଣ୍ଡିକ ଖୁବ୍ ଶସ୍ତା ମୂଲ୍ୟରେ କିଣି ନେଲି । ସେଠାରେ ଘର ତିଆର କରି, ୧୮୯୭ ମସିହାରେ ବାସ କରିବାକୁ ଆରମ୍ଭ କଲି । ଏହି ସମୟରେ ମୋର ଅର୍ଥାଭାବ ହେବାରୁ, କାଠ କିଣା ବିକା ଓ କପାଟ, ଚଉକାଠ ପ୍ରସ୍ତୁତ କରାଇ, ତାହାର ବିକ୍ରୟଦ୍ୱାରା ଅର୍ଥୋପାର୍ଜନ କରୁଥିଲି ।

ସନ ୧୮୯୮ ମସିହା ଡିସେମ୍ବର ମାସ ବଡ଼ଦିନ ଛୁଟି ସମୟରେ ମାନ୍ଦ୍ରାଜ ସହରରେ ଭାରତବର୍ଷୀୟ କଂଗ୍ରେସ ଏବଂ ଭାରତବର୍ଷୀୟ ଏକେଶ୍ୱରବାଦୀଙ୍କ ମହାସଭା ବସିବାର କଥା ସ୍ଥିର ହେଲା । ସ୍ୱର୍ଗୀୟ ଆନନ୍ଦମୋହନ ବୋଷ କଂଗ୍ରେସର ସଭାପତି କାର୍ଯ୍ୟ କରିଥିଲେ । ବାଲେଶ୍ୱର ନେସନେଲ ସୋସାଇଟି ମୋତେ କଂଗ୍ରେସର ଡେଲିଗେଟ୍ ଏବଂ ବାଲେଶ୍ୱର ବ୍ରାହ୍ମସମାଜ ମୋତେ ଏକେଶ୍ୱରବାଦୀଙ୍କ ସଭାର ଡେଲିଗେଟ୍ ପଦରେ ମନୋନୀତ କରି, ମାନ୍ଦ୍ରାଜସ୍ଥ ସଭ୍ୟମାନଙ୍କୁ ପତ୍ର ଲେଖିଲେ । ମୁଁ ବାରଙ୍ଗଠାରୁ ରେଲଯୋଗେ ମାନ୍ଦ୍ରାଜ ଗଲି । ମାନ୍ଦ୍ରାଜରେ ମୋ'ର ଏହି ପ୍ରଥମ ଏବଂ ଶେଷ କଂଗ୍ରେସ ଦର୍ଶନ । ସଭାରେ ଅଧିକାଂଶ ଆଲୋଚ୍ୟ ବିଷୟ ରାଜନୈତିକ ଥିଲା । ଯଦିଚ ଆମ୍ଭମାନଙ୍କର ରାଜନୈତିକ ଆକାଙ୍କ୍ଷାଗୁଡ଼ିକ ସଫଳ ହେବାର କୌଣସି ନିକଟ ସମ୍ଭାବନା ନାହିଁ, ତଥାପି ଆମ୍ଭମାନଙ୍କ ଅବସ୍ଥା ଅଭିଯୋଗ ପ୍ରକାଶ ନ କରି ତୂନିହୋଇ ରହିବା ଆମ୍ଭମାନଙ୍କ ପକ୍ଷରେ ଉଚିତ ହେବନାହିଁ । କଂଗ୍ରେସ ଭାରତର ଭିନ୍ନ ଭିନ୍ନ ଅଞ୍ଚଳବାସୀ, ସୁଶିକ୍ଷିତ, ସ୍ୱଦେଶବତ୍ସଳ, ମାତୃଭୂମିର ଦୁର୍ଦ୍ଦଶା ମୋଚନକାମୀ ସନ୍ତାନମାନଙ୍କୁ ଏକତାସୂତ୍ରରେ ଗ୍ରଥିତ କରୁଅଛି । ଏକତାର ହୀନତାହିଁ ଭାରତ ପତନର କାରଣ ।

ମୁଁ ଦିନେ ମାନ୍ଦ୍ରାଜ-ଯାଦୁଘର ଦେଖିବାକୁ ଯାଉ ଯାଉ ରାସ୍ତାଧାରରେ ମହାତ୍ମା ବାଳଗଙ୍ଗାଧର ତିଳକଙ୍କୁ କେତେକ ଲୋକଙ୍କ ସହିତ କଥୋପକଥନ କରୁଥିବାର ଦେଖିଲି । ମୁଁ ତାଙ୍କ ସହିତ ଆଳାପ କରିବାକୁ ଲାଗିଲି । ଆଳାପ ପରେ ମୁଁ ସେତେବେଳେ ତାଙ୍କୁ ନମସ୍କାର କରିବାକୁ ଯାଉଛି, ସେ ମୋର ହାତଧରି କହିଲେ, "ହାଁ ହାଁ, ମୋ' ସହିତ ଏପରି ବ୍ୟବହାର କରନ୍ତୁ ନାହିଁ ।" ଦିନେ ମୁଁ ମାନ୍ଦ୍ରାଜ ହାର୍ବର (ପୋତାଶ୍ରୟ) ଦେଖିବାକୁ ଗଲି । ଜାହାଜଗୁଡ଼ିକୁ ଢେଉ ଉତ୍ପାତରୁ ରକ୍ଷା କରିବା ନିମନ୍ତେ ସରକାର ବାହାଦୁର ଏହି ପୋତାଶ୍ରୟ କରାଇ ଅଛନ୍ତି । ଦୁଇଗୋଟି ପଥର ବନ୍ଧ କୂଳରୁ ବାହାରି, କ୍ରମ ସୂକ୍ଷ୍ମ ଭାବରେ ସମୁଦ୍ର ଭିତରକୁ ଚାଲି ଯାଇଅଛି । ଦୁଇ ବନ୍ଧର ଅଗ୍ରଭାଗ ପରସ୍ପର ସଂଯୁକ୍ତ ନ ହୋଇ ପୃଥକ୍ ଅଛି । ସେହି ମୁହାଣ ବା ଫାଙ୍କ ବାଟରେ ଜାହାଜ ସବୁ ସମୁଦ୍ର ଭିତରରୁ ଆସି ପୋତାଶ୍ରୟ ଭିତରେ ପ୍ରବେଶ କରେ । ସମୁଦ୍ରର ଉତ୍ତାଳ-ତରଙ୍ଗମାଳା ବନ୍ଧ ଉପରେ ପଡ଼ି ବିଲୁପ୍ତ ହୋଇଯାଏ; ପୋତାଶ୍ରୟ ଭିତରକୁ ଆସିପାରେ ନାହିଁ । ପୋତାଶ୍ରୟ କୂଳରେ ସୁନ୍ଦର ଜେଟି ନିର୍ମିତ ହୋଇଅଛି । ସେହି ଜେଟି ଉପରେ ତାହାର ପ୍ରାନ୍ତଭାଗ ପର୍ଯ୍ୟନ୍ତ ଲୌହରେଲ ବସ୍ତା ହୋଇଅଛି । ରେଲଗାଡ଼ି ଜେଟି ଶେଷ ପର୍ଯ୍ୟନ୍ତ ଚାଲିଥାଏ । ଉତ୍ତୋଳନ ଯନ୍ତ୍ର ସାହାଯ୍ୟରେ ଜାହାଜ ଭିତରୁ ମାଲ ଉଠାଇଆଣି, ରେଲଗାଡ଼ି

ଉପରେ ଥୋଇ ଦେଲେ, ଗାଡ଼ ସେହି ମାଲ ସବୁ ସହର ଭିତରକୁ ଘେନିଆସେ । ମାନ୍ଦ୍ରାଜର ଆଉ ଗୋଟିଏ ଦର୍ଶନୀୟ ବିଷୟ ଥିଲା 'ପେଚ୍ଚୃପା କଲେଜ' । ମହାତ୍ମା ପେଚ୍ଚୃପା ଜଣେ ସ୍ୱନାମଧନ୍ୟ ପୁରୁଷ । ସନ ୧୭୫୪ ସାଲରେ ସେ କାଞ୍ଚିପୁରରେ ଜନ୍ମଗ୍ରହଣ କରିଥିଲେ । ଜନ୍ମର କେତେକ ମାସ ପୂର୍ବେ ତାଙ୍କର ପିତା ବିଶ୍ୱନାଥ ମୁଦାଲିୟର୍ ପରଲୋକ ଗମନ କରିବାରୁ, ତାହାଙ୍କର ମାତା ଆତ୍ମରକ୍ଷା ନିମନ୍ତେ ମାନ୍ଦ୍ରାଜକୁ ପଳାଇଆସି ନାରାୟଣ ପିଲେ ନାମକ ଜଣେ ଧନୀଲୋକର ଆଶ୍ରୟ ଗ୍ରହଣ କରିଥିଲେ । ଦୟାଳୁହୃଦୟ ପିଲେ ପେଚ୍ଚୃପାଙ୍କୁ ଇଂରେଜୀ ଭାଷାରେ ଶିକ୍ଷିତ କରାଇ ବାଣିଜ୍ୟ ବ୍ୟବସାୟରେ ନିଯୁକ୍ତ କରାଇଦେଲେ । ଅବଶେଷରେ ଇଷ୍ଟ ଇଣ୍ଡିଆ କମ୍ପାନୀଙ୍କ ଅଧୀନରେ ଗୋଟିଏ ଦାୟିତ୍ୱପୂର୍ଣ୍ଣ କର୍ମରେ ନିଯୁକ୍ତ ହୋଇ ସେ ବିପୁଳ ଅର୍ଥ ଉପାର୍ଜ୍ଜନ କରି ପାଇଥିଲେ । ତାହାଙ୍କର ପୁତ୍ର ସନ୍ତାନ ନ ଥିଲା । ସେ ଯେଉଁ ଚରମପତ୍ର କରି ଯାଇଥିଲେ, ତଦନୁସାରେ ବହୁ ଲକ୍ଷ ଟଙ୍କା ସାଧାରଣଙ୍କ ହିତକାର୍ଯ୍ୟରେ ଦିଆ ହୋଇଅଛି । 'ପେଚ୍ଚୃପା କଲେଜ' ତାହାଙ୍କ ପରିତ୍ୟକ୍ତ ସମ୍ପତ୍ତିବଳରେ ସ୍ଥାପିତ ଏବଂ ପରିଚାଳିତ ହୋଇ ଆସୁଅଛି । ସହର ପ୍ରାନ୍ତଭାଗର ପ୍ରାନ୍ତର ମଧ୍ୟରେ ମହାରାଣୀ ଭିକ୍ଟୋରିଆଙ୍କ ମାର୍‌ବଲ୍ ପଥରର ପାଷାଣମୟୀ ମୂର୍ତ୍ତି ଦେଖିଲି ।

ମୁଁ ସେତୁବନ୍ଧ ରାମେଶ୍ୱର ଦେଖିବା ଉଦ୍ଦେଶ୍ୟରେ କାଞ୍ଚିପୁରମ୍ ପର୍ଯ୍ୟନ୍ତ ଯାଇଥିଲି । କାଞ୍ଚିପୁରମ୍ ଷ୍ଟେସନ୍‌ରେ ଓହ୍ଲାଇ ସେଠାରେ ଶିବକାଞ୍ଚି ଏବଂ ବିଷ୍ଣୁ କାଞ୍ଚି ତୀର୍ଥ ଦେଖିଲି । ଏ ସ୍ଥାନର ପ୍ରକୃତ ନାମ କାଞ୍ଚିପୁରମ୍ । ଇଂରାଜମାନେ ଏହାକୁ କାଞ୍ଜିଭରମ୍ କହନ୍ତି । ସେଠାରୁ ସେତୁବନ୍ଧ ରାମେଶ୍ୱର ସାତ ଆଠ ଘଣ୍ଟାର ବାଟ; କିନ୍ତୁ ମୋର ସଙ୍ଗୀ ଗୁରୁକର ଆଉ ଅଧିକ ଦୂର ଯିବାକୁ ମଙ୍ଗିଲା ନାହିଁ, ମୁଁ ଫେରିଲି । କାଞ୍ଚିପୁରମ୍‌ଠାରୁ ବେଜ୍‌ୱାଡ଼ା ଲମ୍ବା ଟିକଟ୍ କଲି । ବେଜ୍‌ୱାଡ଼ା ଷ୍ଟେସନ୍‌ରେ ଓହ୍ଲାଇ କୃଷ୍ଣାନଦୀରେ ସ୍ନାନ କଲି । କୃଷ୍ଣାନଦୀ ଉପରେ ଯେଉଁ ଲୌହମୟ ସେତୁ ଅଛି ତାହାପରି ସୁନ୍ଦର ସେତୁ ଆଉ କେବେ ଦେଖି ନ ଥିଲି । ମାର୍ଗରେ ଇଲୋର ଷ୍ଟେସନରେ ଓହ୍ଲାଇଥିଲି । ତା' ପରେ କଟକ ।

ସନ ୧ ୯୧ ମସିହାରେ କେନ୍ଦ୍ରାପଡ଼ା ଜମିଦାର ଲକ୍ଷ୍ମୀନାରାୟଣ ଜଗଦ୍ଦେବଙ୍କଠାରୁ ଖଣ୍ଡିଏ ଟେଲିଗ୍ରାଫ୍ ପାଇ ଷ୍ଟିମାର୍ ଯୋଗେ କେନ୍ଦ୍ରାପଡ଼ା ଚାଲିଗଲି । ମୁଁ ଅକ୍ଟୋବର ୨୭ ତାରିଖ ଶୁକ୍ରବାର ରାତି ୮ ଘଣ୍ଟାବେଳେ ସେଠାରେ ପହଞ୍ଚିଲି । ରାଧାଶ୍ୟାମ ନରେନ୍ଦ୍ର ଓ ଗୌରଶ୍ୟାମ ନରେନ୍ଦ୍ର ଦୁଇ ସହୋଦର ଭାଇ ଥିଲେ । ଏହି ଦୁଇ ଭାଇଙ୍କଠାରୁ ନିମ୍ନଲିଖିତ ଲତା ଅନୁସାରେ ବର୍ତ୍ତମାନ ଜମିଦାରମାନେ ଜାତ ହୋଇ ଅଛନ୍ତି ।

| | |
|---|---|
| ରାଧାଶ୍ୟାମ ନରେନ୍ଦ୍ର | ଗୌରଶ୍ୟାମ ନରେନ୍ଦ୍ର |
| \| | \| |
| ଜଗନ୍ନାଥ ଭ୍ରମରବର ରାୟ | ରାମଗୋବିନ୍ଦ ଜଗଦ୍ଦେବ |
| \| | \| |
| ବଳରାମ ଭ୍ରମରବର ରାୟ | ଲକ୍ଷ୍ମୀନାରାୟଣ ଜଗଦ୍ଦେବ |

ଶ୍ୟାମସୁନ୍ଦର ନରେନ୍ଦ୍ର
ବ୍ରଜସୁନ୍ଦର ମର୍ଦ୍ଦରାଜ
ବୃନ୍ଦାବନଚନ୍ଦ୍ର ହରିଚନ୍ଦନ
ଗୋକୁଳଚନ୍ଦ୍ର ଶ୍ରୀଚନ୍ଦନ
(ପାଞ୍ଚଭାଇ)

ମୁଁ ଯାଇ ଦେଖିଲି, କେନ୍ଦ୍ରାପଡ଼ାର ଜମିଦାରମାନେ ନାସିକାଗ୍ର ପର୍ଯ୍ୟନ୍ତ ଋଣସାଗରରେ ନିମଗ୍ନ । ଅତ୍ୟଧିକ ଦେବ ଓ ଅତିଥି ସେବା ଯୋଗୁଁ ସେମାନଙ୍କର ଏ ଭାଗ୍ୟ-ବିପର୍ଯ୍ୟୟ ଘଟିଅଛି ।

ଦେବସେବା ବିଷୟରେ ଦୁଇ ଜମିଦାର ବଂଶ ମଧ୍ୟରେ ପ୍ରତିଯୋଗିତା ଚାଲୁଥିଲା । ଦୋଳପୂର୍ଣ୍ଣିମା

ଯାତ୍ରା ଉପସ୍ଥିତ । ଜଣେ ଲୋକ ଆସି ସାଆନ୍ତଙ୍କୁ ସମ୍ବାଦ ଦେଲା, "ବଡ଼ବାବୁ ଆଜ୍ଞା ହୁକୁମ କଲେ, ଦୋଳଯାତ୍ରାକୁ ପାଞ୍ଚପଞ୍ଝା ଗୋଟିପୋ' ଆସିବ । ବୟାନା ଟଙ୍କା ଧରି ଲୋକ ବାହାରିଗଲା ।" ଉତ୍ତର ହେଲା, "ଏ'କଣ ଆମର ସାତପଞ୍ଝା ଗୋଟିପୋ' ଆସିବ ।" ସେ ଲୋକ କହିଲା, ତାଙ୍କ ଲୋକ ଭଲ ଭଲ ପଞ୍ଝା ହାତେଇ ନେବେ । ବୟାନା ହିଆଯାଉ । ମୁଁ ଏହି ବାଟେ ବାଟେ ଆଗେ ଧାଇଁଯାଇ ବୟାନା କରି ଆସିବି । ସେମାନେ ଭଲ ଗୋଟିପୋ' ପାଇବେ ନାହିଁ ।" ଏହା କହି ସେହି ଲୋକ କିଛି ଟଙ୍କା ଧରି ବାହାରିଲା । କ'ଣ ଖର୍ଚ୍ଚ ହେଲା—ବୁଝୁଛି କିଏ ?

ଦିନେ ଗୋଟିଏ ବ୍ରଜବାସୀ ସାଧୁ ହଠାତ୍ ଉପସ୍ଥିତ ହୋଇଗଲା । ସାଧୁ ଦର୍ଶନ ମାତ୍ରେ ଜମିଦାର ସାମନ୍ତ ଭୂମିଷ୍ଠ ହୋଇ ପ୍ରଣତ ହେବାରୁ ଆଉ ସମସ୍ତ ଲୋକେ ଭକ୍ତି ଏବଂ ପ୍ରେମରେ ତାଙ୍କ ପଦତଳେ ଲୁଟିଗଲେ । ସନ୍ଧ୍ୟା ସମୟରେ ଦେବତାଙ୍କ ସମ୍ମୁଖରେ କୀର୍ତ୍ତନ ଆରମ୍ଭ ହେଲା । କୀର୍ତ୍ତନ ଶେଷରେ ସାଧୁ କହିଲେ, "ଦେଖନ୍ତୁ ଦେଖନ୍ତୁ, କୀର୍ତ୍ତନ ଶୁଣି ପ୍ରଭୁଙ୍କ ଶ୍ରୀମୁଖ କେମନ୍ତ ଉଜ୍ଜ୍ୱଳ ଦିଶୁଛି ।" ସମସ୍ତ ଭକ୍ତ କହିଲେ, "ହଁ, ହଁ, ଭାରି ଉଜ୍ଜ୍ୱଳ ଦିଶୁଛି ।" ନିକଟରେ ମୋର ବସା । ମୁଁ ସମ୍ବାଦ ପାଇ ଗଲି; କିନ୍ତୁ କୌଣସି ଜ୍ୟୋତି ଦେଖି ପାରିଲି ନାହିଁ । ସାଧୁ ଆଜ୍ଞା କଲେ, "ବୃନ୍ଦାବନ-ଧାମରେ ଗୋଚାରଣ ସମୟରେ ପ୍ରଭୁଙ୍କ ଶ୍ରୀମୁଖରୁ ଏହି ପ୍ରକାର ଜ୍ୟୋତି ବାହାରୁଥିଲା ।" ସ୍ଥିର ହେଲା, ଆସନ୍ତା କାଲି ପ୍ରଭୁଙ୍କ ଗୋଚାରଣ ଲୀଳା-ଉତ୍ସବ ସମ୍ପନ୍ନ ହେବ । ପରଦିବସ କେତେଗୁଡ଼ିଏ ମାଟିର ଗାଈ, ବାଛୁରି, ଦାମୁଡ଼ି ପ୍ରଭୃତି ଆସିଲେ । ଗୋଟିଏ ମାଟିର କୃଷ୍ଣ ଏବଂ ପାଞ୍ଚଣ ହସ୍ତରେ କେତେଗୁଡ଼ିଏ ଗୋପାଳ ବାଳକ ଅଣାଗଲା । ଏହି ଉତ୍ସବରେ ସାମନ୍ତଙ୍କର ଷାଠିଏ ସତୁରି ଟଙ୍କା ଖରଚ ହେଲା । ତହବିଲ ତ ଶୂନ୍ୟ । ଅତି ଚଢ଼ାକଲନ୍ତର କରାରରେ ଟଙ୍କା କରଜ ଆଣିଲେ । ଏହିପରି ସବୁ ମାମଲା ।

କେନ୍ଦ୍ରାପଡ଼ାର ସୁପ୍ରସିଦ୍ଧ ବଂଶଯୁଗଳର ବିପଦର ପ୍ରଧାନ କାରଣ—ଚତୁର୍ମାସ୍ୟାରେ ସାଧୁପଲ ପାଳନ । ଏ ବିଷୟଟି ସମସ୍ତ ଭାରତରେ ବିଖ୍ୟାତ ଥିବାରୁ ଭାରତର ଯାବନ୍ତ ଭଣ୍ଡ, ଶଠ, ଅଳସୁଆ ଅସାଧୁ—ସାଧୁ ପାଲଟି ଯାଇ କେନ୍ଦ୍ରାପଡ଼ା ମଠରେ ପହଞ୍ଚନ୍ତି । ସାଧୁ ପାଲଟିବା ସେପରି କିଛି କଠିନ ବିଷୟ ନୁହେଁ । ବରଅଠା ବୋଳି ମୁଣ୍ଡ ବାଳଗୁଡ଼ାକ ଜଟା ତିଆରି କରି, ଦେହରେ କାଦୁଅ ପାଉଁଶଗୁଡ଼ାଏ ବୋଳି-ଦେଲେ ହେଲା । ସେଭଳି ଲୋକଙ୍କ ପକ୍ଷରେ କନା ଖଣ୍ଡେ କୌପୀନ ମାରିଦେବା କିଛି କଠିନ କଥା ନୁହେଁ । 'ଆଷାଢ଼ସ୍ୟ ପ୍ରଥମ ଦିବସ'ଠାରୁ ପୁଣ୍ୟ ମାସ କାର୍ତ୍ତିକ ମାସ ପର୍ଯ୍ୟନ୍ତ ସାଧୁଗଣଙ୍କର ବିଶ୍ରାମ ସମୟ । ସେମାନଙ୍କ ସେବା'ର ବନ୍ଦୋବସ୍ତ ପୁଣି କିପରି ? ଭାତ, ଡାଲି, ତରକାରି ଓ ରୁଟି ଆଦେଶ ମାତ୍ରକେ ଉପସ୍ଥିତ । ତାହା ଛଡ଼ା ଦେବତାମାନଙ୍କ ପାଇଁ ପୁରି, ମାଲପୁଆ ଓ ଲଡ଼ୁର ସ୍ୱତନ୍ତ୍ର ବନ୍ଦୋବସ୍ତ । ଆଉ ଗଞ୍ଜେଇ, ଭାଙ୍ଗ, ଗୁଡ଼ାଖୁ, ଧୂଆଁପତ୍ର - ସମସ୍ତ ସାଧୁମାନଙ୍କର ନିତ୍ୟ ସେବ୍ୟ । ପୁଣି କେନ୍ଦ୍ରାପଡ଼ା ଉଠାଣି ସାଧୁ ମହାତ୍ମାମାନେ ତୀର୍ଥ ଦର୍ଶନକୁ ବାହାରି ଯିବେ । ସେଥିପାଇଁ ବାଟ ଖର୍ଚ୍ଚ ଟଙ୍କା ଲୁଗା ଓ କମ୍ବଳ ନିତାନ୍ତ ଆବଶ୍ୟକ ।

ଜମିଦାରଙ୍କ ସାଧୁସେବା ଦ୍ୱାରା କେହି କେହି ସାଧୁ ମହାଜନ ପାଲଟି ଯାଉଥିଲେ । ସାମନ୍ତଙ୍କ ମନ୍ଦିରରୁ ଚାଉଳ, ଡାଲି, ମଇଦା, ଚିନି, ଘିଅ ଖାଇବାକୁ ମିଳେ । ଚାଉଳ, ଡାଲିରେ ପେଟ ପୂରିଯାଏ । ଘିଅ, ମଇଦା, ଚିନିଗୁଡ଼ିକ ବଜାରରେ ବିକି ଟଙ୍କା ମୁଠିସ୍ଥ କରନ୍ତି । ଏହି ଉପାୟଦ୍ୱାରା କେହି ସାଧୁ ଅନେକ ଟଙ୍କା ଜମାଉଥିଲେ । ସେହି ଟଙ୍କାରୁ ପୁଣି ଜମିଦାରଙ୍କୁ କିଛି କରଜ ଦେଉଥିଲେ । ମୁଁ କେନ୍ଦ୍ରାପଡ଼ାରେ ଥିବା ସମୟରେ ଏହିରୂପ ଦୁଇଜଣ ସାଧୁ ମହାଜନ ଉପସ୍ଥିତ ହେଲେ । ସେମାନେ ପ୍ରତ୍ୟେକ ସାମନ୍ତଙ୍କୁ ପାଞ୍ଚଶତ ଟଙ୍କା କରଜ

ଦେଇଥିଲେ । ସେମାନେ କହିଲେ ଯେ ଗୋଟିଏ ସାଧୁଦଳ ସହିତ ସେମାନେ ଆସିଛନ୍ତି । ସେହି ଦଳ ବର୍ତ୍ତମାନ କଟକରେ ଅଛନ୍ତି । ସେମାନଙ୍କର ମୂଳ ଓ କଳନ୍ତର ଦେଇଦେଲେ, ସେମାନେ ଚାଲିଯିବେ । ଯଦି ଦେବାକୁ ଦିନେ ଓଳିଏ ଡେରି ହୁଏ, ସେମାନଙ୍କ କଟକସ୍ଥ ଜମାପୁତ୍ର କେନ୍ଦ୍ରାପଡ଼ା ଚାଲି ଆସିବେ । ଜମାଏତ ଦଳରେ ଷାଠିଏ ମୂର୍ତ୍ତି ସାଧୁ, ତପସ୍ୱୀ ଓ ଓ କେତେକ ହାତୀ, ଓଟ, ଘୋଡ଼ା ପ୍ରଭୃତି ଅଛନ୍ତି । ବର୍ତ୍ତମାନ ମହାବିପଦ ଉପସ୍ଥିତ । ସେହି ସାଧୁଦଳ ଯଦି କେନ୍ଦ୍ରାପଡ଼ା ଆସିଯାନ୍ତି, ସେମାନଙ୍କ ପିଛା ଦୈନିକ ଅନ୍ତତଃ ଏକଶତ ଟଙ୍କା ଖରଚ ହେବ । ତହବିଲ ତ ଶୂନ୍ୟ । ଅନେକ କଷ୍ଟରେ ଧାର କରଜ କରି କଳନ୍ତର ବାଡ଼ଟା ଛାଡ଼ାଇ ଦେଇ, ମୂଳ ଟଙ୍କା ସକାଶେ ଖଣ୍ଡିଏ ନୂତନ ତମସୁକ କରାଇ ଦିଆଗଲା । ଶୁଣିଲା ଏ ମହାଜନ ଯୋଡ଼ାକ ଏଥିପୂର୍ବେ ଲଗ୍ ଲଗ୍ ଦଶ ବାର ବର୍ଷ ପର୍ଯ୍ୟନ୍ତ ଏହି ସାମନ୍ତଙ୍କ ମଠରେ 'ଚାତୁର୍ମାସ୍ୟା ସାଧୁ' ଥିଲେ । ଏହି ମଠରୁ ଉପାର୍ଜିତ ଟଙ୍କାରେ ଏବେ ମହାଜନ ପାଲଟି ଯାଇଛନ୍ତି । ତିନିବର୍ଷ ପୂର୍ବେ ମୁଁ ଗୋଟିଏ ସରକାରୀ ରିପୋର୍ଟରେ ପଢ଼ିଥିଲି; ଭାରତରେ ସାଧୁସଂଖ୍ୟା ଅଣଚାଳିଶ ଲକ୍ଷ ।

ମୁଁ କେନ୍ଦ୍ରାପଡ଼ାରେ ଉପସ୍ଥିତ ହୋଇ ଜମିଦାରୀର ଆୟ ବ୍ୟୟ ଏବଂ ଦେଣା ବିଷୟରେ ତଦନ୍ତ କରି ଦେଖିଲି, ଜମିଦାରୀର ସମସ୍ତ ପ୍ରକାର ଆୟରୁ ମହାଜନମାନଙ୍କ ପ୍ରାପ୍ୟ ମୂଳଟଙ୍କାର କଳନ୍ତର ଆଦାୟ କରି, ଅଳ୍ପମାତ୍ର ଟଙ୍କା ଅବଶିଷ୍ଟ ରହେ । ଜମିଦାରୀ ବିକ୍ରୟ ନ କଲେ ମୂଳଟା ପରିଶୋଧର କୌଣସି ଉପାୟ ନାହିଁ । ଏଣେ ପୁଣି ଲକ୍ଷାବଧି ଟଙ୍କାର ଜମିଜାରି ମାମଲା ଅଦାଲତରେ ଝୁଲୁଥାଏ । ମୁଁ ବିବେଚନା କଲି, ମହାଜନମାନଙ୍କ କଳନ୍ତରବାଦ୍ ଅବଶିଷ୍ଟ ଟଙ୍କାରେ ଜମିଦାର ମନ୍ଦ ମସାର ଚଳାଇବାକୁ ସ୍ୱୀକୃତ ହୁଅନ୍ତି, ଜମିଦାରୀର କେତେକ ଅଂଶ ବିକ୍ରୟ କରିଦେଇ, ଉକ୍ତ ଟଙ୍କା ପରିଶୋଧ କରିଦେବୁଁ; ଆଉ ଅବଶିଷ୍ଟ ଜମିଦାରୀ କଲିକତାର କୌଣସି ମହାଜନ ନିକଟରେ ବନ୍ଧକ ରଖି, ଅଳ୍ପ କଳନ୍ତରରେ ଟଙ୍କା କରଜ ଆଣିବୁଁ । ଅତଃପର ଧୀରେ ଧୀରେ ମହାଜନ ଦେଣା ପରିଶୋଧ କରାଯିବ । ମୁଁ ଭଲରୂପେ ହିସାବ କରି ଦେଖିଥିଲି ଯେ ଏହି ଉପାୟରେ ଅର୍ଦ୍ଧାଂଶ ଜମିଦାରୀ ରକ୍ଷା ପାଇପାରେ; ମାତ୍ର ମୋ' କଳ୍ପିତ ବନ୍ଦୋବସ୍ତ ଅନୁସାରେ କାର୍ଯ୍ୟ ନ କରି, ଜମିଦାର ପୂର୍ବବତ୍ ସମସ୍ତ କାର୍ଯ୍ୟ କରିବାକୁ ଲାଗିଲେ । ମୋତେ ପରିଷ୍କାରରୂପେ ଜବାବ୍ ଦେଲେ ଯେ, ଦେବସେବାର ଖର୍ଚ୍ଚ ସେ କୌଣସି ପ୍ରକାରେ କମାଇ ପାରିବେ ନାହିଁ । ମୁଁ କେନ୍ଦ୍ରାପଡ଼ାରେ ୯ ମାସ ମାତ୍ର ଥିଲି । ଜମିଦାରୀ ରକ୍ଷାର କୌଣସି ଉପାୟ ନ ଦେଖି, କାର୍ଯ୍ୟତ୍ୟାଗ କରି, କଟକ ଚାଲିଆସିଲି ।

କେନ୍ଦ୍ରାପଡ଼ାରୁ ଆସିଲାବେଳେ, ମୋ' ବୟଃକ୍ରମ ୫୭ ବର୍ଷ ହୋଇଥିଲା । ଏହାପରେ ମୁଁ ଆଉ କାହାରି ଅଧୀନରେ କର୍ମ ଗ୍ରହଣ କରି ନାହିଁ । ବର୍ତ୍ତମାନ ମୋ'ର କଟକ ବାଖରାବାଦ ଘରେ ରହିଲି । ବହୁ ଦିବସ ଅନ୍ୱେଷଣ, ବହୁଯତ୍ନରେ ବାଖରାବାଦରେ ସେହି ଘରତଳ ଜମି ଖଣ୍ଡିକ ପାଇଅଛି । ଅନେକ କଷ୍ଟ ସ୍ୱୀକାର କରି ଘର ଖଣ୍ଡିକ ପ୍ରସ୍ତୁତ କରିଅଛି । ଗୃହର ଚତୁର୍ଦ୍ଦିଗରେ ବିବିଧ ପ୍ରକାର ପୁଷ୍ପ ଓ ନାନାପ୍ରକାର ଫଳବନ୍ତ ବୃକ୍ଷ ବେଷ୍ଟିତ ଥିବାରୁ, ସେଗୁଡ଼ିକ କୁଞ୍ଜବନ ତୁଲ୍ୟ ପ୍ରତୀୟମାନ ହେଉଥିଲା । ସେହି କୁଞ୍ଜବନ ଯୋଗେ କ୍ଷୁଦ୍ର ଅଟ୍ଟାଳିକାଟି ମନୋହର ରୂପ ଧାରଣ କରିଥିଲା । ଏହି ଘରେ ମୋ'ର ଶେଷଜୀବନର ଅନେକଗୁଡ଼ିଏ କବିତା ଲେଖା ହୋଇଥିଲା । କେଉଁଦିନ ରଜମଙ୍ଗଳା, କେଉଁଦିନ ବା ଗୋଲାପଗୁଳ୍ମ ପ୍ରତି ଦୃଷ୍ଟି ପଡ଼ିଗଲା । ସେହି ବିଷୟରେ ମୁଁ କବିତା ଲେଖା ଆରମ୍ଭକଲି । ଅନେକ ମାସ ପର୍ଯ୍ୟନ୍ତ ମନ ଦେଇ ଦେଖିଛି, ପ୍ରତିଦିନ ସକାଳ ଠିକ୍ ୯ଟା ସମୟରେ ଯୋଡ଼ାଏ ହଳଦି-ବସନ୍ତ

ଆସି, ପୁଷ୍ପୋଦ୍ୟାନ ମଧ୍ୟରେ କ୍ରୀଡ଼ାରେ ରତ ଥାନ୍ତି । ସେ ସମୟରେ ଗୋଟିଏ କବିତା ଲେଖିଲି । ଯୋଡ଼ିଏ କପୋତ ଆକାଶରେ ପରସ୍ପର ଲଗାଲଗି ଭାବରେ ଉଡ଼ିଗଲେ, ସେ ସମ୍ବନ୍ଧରେ ଗୋଟିଏ କବିତା; ସନ୍ଧ୍ୟା ସମୟରେ କାଠଯୋଡ଼ିକୂଳ ପଥରବନ୍ଧ ଉପରେ ବସିଛି, ମନରେ ଯେଉଁ ଭାବ ଉଦୟ ହେଲା, ତାହା ଗୋଟିଏ କବିତାରେ ଲିପିବଦ୍ଧ କଲି । ମୁଁ ଏହି କବିତାଗୁଡ଼ିକ ସଂଗ୍ରହ କରି, 'ଅବସର ବାସରେ' ପୁସ୍ତକ ଖଣ୍ଡି ପ୍ରକାଶ କଲି ।

ବାଲେଶ୍ୱରରେ ଶିକ୍ଷକତା କାର୍ଯ୍ୟ କରୁଥିବା ସମୟରେ ମୋର କବିତା ଲେଖିବାର ପ୍ରବୃତ୍ତି ଥିଲା । ସେଠାକାର ପ୍ରେସରୁ ଖଣ୍ଡିଏ ମାସିକ ପତ୍ରିକା ବାହାରୁଥିଲା । ମୁଁ ସେଥିରେ ଆମୋଦଜନକ କବିତା ଲେଖୁଥିଲି । ସେହି ବୋଧଦାୟିନୀ ପତ୍ରିକାରେ ମୁଁ ଗୋଟିଏ ଗଳ୍ପ ଲେଖିଥିଲି, ତାହାର ନାମ 'ଲଛମନିଆ' । ବୋଧହୁଏ ଉତ୍କଳରେ ତାହାହିଁ ପ୍ରଥମ ମୁଦ୍ରିତ ଗଳ୍ପ । ଲୋକେ ତାହା ଆଗ୍ରହରେ ସହିତ ପଢ଼ିଥିଲେ । ମାତ୍ର ସେ କେତେଜଣ ? ମୁଁ ବାଲେଶ୍ୱରରୁ ଚାଲିଆସି, ଯେତେବେଳେ ଗଡ଼ଜାତ ମାନଙ୍କରେ କର୍ମ କରିବାକୁ ଗଲି; ସେତେବେଳେ ମୋର ସାହିତ୍ୟ ଲେଖା ବନ୍ଦ ହୋଇଗଲା; ଆଠ ଦଶ ବର୍ଷ କାଳ ମୁଁ ଲେଖା ଛାଡ଼ିଦେଲି । ଢେଙ୍କାନାଳରେ ଥିବା ସମୟରେ ମୋ'ର ଜ୍ୟେଷ୍ଠ ପୁତ୍ରଟି ମରି ଯିବାରୁ, ମୋର ସ୍ତ୍ରୀକୁ ସାନ୍ତ୍ୱନା ଦେବା ପାଇଁ ରାମାୟଣ ମହାଭାରତ ଅନୁବାଦ ଆରମ୍ଭ କଲି । ମୋ'ର ଦ୍ୱିତୀୟ ପୁତ୍ର ଜନ୍ମ ବର୍ଷରେ ଅର୍ଥାତ୍ ୧୮୮୧ ମସିହାରେ ମୁଁ ମହାଭାରତ ଅନୁବାଦ ଆରମ୍ଭ କରେଁ । ୧୯୦୨ ମସିହାରେ ସେ ଯେତେବେଳେ ବି. ଏ. ପାଶ୍ କଲା, ମୋ'ର ସେହି ବର୍ଷ ଅଷ୍ଟାଦଶ ପର୍ବ ମହାଭାରତ ଅନୁବାଦ ଶେଷହେଲା । ମୁଁ ଡୋମପଡ଼ାରେ ଦ୍ୱିତୀୟଥର କର୍ମ କରୁଥିବା ସମୟରେ ମୋର ସ୍ତ୍ରୀ କୃଷ୍ଣକୁମାରୀ ପରଲୋକ ଗମନ କଲେ । ମୋ'ର ସେ ସମୟରେ ଯେଉଁ ଦାରୁଣ କଷ୍ଟ ଉପସ୍ଥିତ ହୋଇଥିଲା, ତାହା ମୁଁ "ପୁଷ୍ପମାଳା" ଏବଂ "ଉପହାର"—ଏହି ଦୁଇଖଣ୍ଡି ପୁସ୍ତକରେ ପ୍ରକାଶ କରିଅଛି । ମୋର କଟକ ବାସ ସମୟରେ ମୁଁ ଉପନିଷଦ ପଢ଼ୁଥିଲି ଏବଂ ତହିଁର ଓଡ଼ିଆ ପଦ୍ୟାନୁବାଦ କରୁଥିଲି । ଗୋଡ଼ ବନ୍ଧା ବେମାର ମୋ' ଜୀବନର ଚିରସହଚର । ବାଲେଶ୍ୱରର ଜଣେ ପ୍ରସିଦ୍ଧ ଜମିଦାରଙ୍କର ପୁତ୍ର ପୂର୍ଣ୍ଣଚନ୍ଦ୍ର ଦାସ ସେ ସମୟରେ ମୋ' ପାଖରେ ରହି କଟକ କଲେଜରେ ଏମ୍. ଏ. ପଢ଼ୁଥିଲା । ମୋ'ର ଗୋଡ଼ବନ୍ଧା ବେମାରି ସମୟରେ ସେ ମୋ'ର ଅନେକ ସେବା କରିଅଛି । ଉପନିଷଦ ଅନୁବାଦ ସମୟରେ ମଧ୍ୟ ସେ ମୋତେ ଅନେକ ସାହାଯ୍ୟ କରିଅଛି । ମୁଁ ରୋଗଶଯ୍ୟାରେ ପଡ଼ି ଅନୁବାଦ କରୁଥାଏ ଏବଂ କବିତାଗୁଡ଼ିକ ତାକୁ ଦେଉଥାଏଁ—ସେ ସେଗୁଡ଼ିକ ଲେଖୁଥାଏ । ସେ ସମୟରେ ପୂର୍ଣ୍ଣଚନ୍ଦ୍ର ସାହାଯ୍ୟ କରି ନ ଥିଲେ, ଉପନିଷଦ ଅନୁବାଦ ବାହାରିବାର କୌଣସି ସମ୍ଭାବନା ନ ଥିଲା ।

କଟକ ବାସ ସମୟରେ ମୋର ଉପନ୍ୟାସ ଲେଖା ଆରମ୍ଭ ହୁଏ । ମୁଁ ପ୍ରଥମେ ରେବତୀ ନାମକ ଗୋଟିଏ ଗଳ୍ପ ଲେଖିଲି । "ଉତ୍କଳ-ସାହିତ୍ୟ"ରେ ପ୍ରକାଶ କରିବା ପାଇଁ ତାହା ସମ୍ପାଦକଙ୍କୁ ଦେଲି । ମୁଁ ଏହି ସମୟରେ ଯେଉଁ ଗଳ୍ପ ଓ ଉପନ୍ୟାସମାନ ଲେଖୁଥିଲି, ତାହା ମୋହ ନାମରେ ପ୍ରକାଶ ନ କରି 'ଧୂର୍ଜ୍ଜଟୀ" ନାମରେ ପ୍ରକାଶ କରୁଥିଲି । ଏ ନାମଟି ବାଛୁଥିଲେ ମୋର ପ୍ରିୟବନ୍ଧୁ ମଧୁସୂଦନ ରାଓ । ତପୂରେ "ଛମାଣ ଆଠଗୁଣ୍ଠ" ନାମରେ ଗୋଟିଏ ଗଳ୍ପ ଆରମ୍ଭ କଲି । ତାହା କ୍ରମଶଃ ବଢ଼ି ବଢ଼ି ଗୋଟିଏ ବଡ଼ ଉପନ୍ୟାସରେ ପରିଣତ ହେଲା । ଏହା ପରେ "ଅପୂର୍ବମିଳନ" ନାମରେ ଗୋଟିଏ ଉପନ୍ୟାସ ଲେଖିବାକୁ ଆରମ୍ଭ କରେ ଏବଂ ଏହି ନାମରେ ତାହା

ଉତ୍କଳ-ସାହିତ୍ୟରେ ପ୍ରକାଶିତ ହୋଇଥିଲା । ତୃତନ୍ତ ପୁସ୍ତକାକାରରେ ଯେତେବେଳେ ଛାପା ହେଲା, ତାହାର ନାମ ଦେଲି 'ଲଛମା' । ମୋର ଏହି ଗଳ୍ପ ଓ ଉପନ୍ୟାସମାନ ପଢ଼ି ପାଠକମାନେ ବିଶେଷ ପ୍ରୀତହୋଇ ଥିଲେ । 'ଛମାଣ ଅଠଗୁଣ୍ଠ'କୁ ସେମାନେ ବିଶେଷ ଆଗ୍ରହର ସହିତ ପଢ଼ୁଥିଲେ । ଏହି ଉପନ୍ୟାସ ଲିଖିତ ରାମଚନ୍ଦ୍ର ମଙ୍ଗରାଜର ମକଦ୍ଦମାର ବିବରଣ ଯେତେବେଳେ ଉତ୍କଳ-ସାହିତ୍ୟରେ ପ୍ରକାଶିତ ହେଉଥିଲା, ସେତେବେଳେ ମଫସଲରୁ କେତେକ ଅଜ୍ଞ ଲୋକ ମକଦ୍ଦମା ବିଚାର ଦେଖିବା ପାଇଁ କଟକ ଆସିଥିଲେ ।

ସନ ୧୯୦୫ ମସିହାରେ ମୋହର ପୁତ୍ର ସବ୍‌ଡେପୁଟି କର୍ମରେ ନିଯୁକ୍ତ ହୋଇ ବାଲେଶ୍ୱର ଚାଲିଗଲା । ମୁଁ ସେହି ସମୟରେ କଟକ ଘର ଛାଡ଼ି ବାଲେଶ୍ୱର ଗଲି ।

---

## ୩୪

## ବାଲେଶ୍ୱର ନିବାସ

ମୁଁ ୧୯୦୫ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱର ଆସିଲି । ଆଜକୁ ୧୩ ବର୍ଷ ହେଲା ଏହିଠାରେ ବାସ କରୁଅଛି । ମୋହର ସ୍ତ୍ରୀ କୃଷ୍ଣକୁମାରୀ ଅନେକ ବର୍ଷ ପୂର୍ବରୁ ମୋତେ ଛାଡ଼ି ଚାଲି ଯାଇଅଛନ୍ତି । ମୋହର ପୁତ୍ର ସରକାରୀ କାର୍ଯ୍ୟୋପଲକ୍ଷରେ ସ୍ଥାନାନ୍ତରରେ ଥାଏ । ମୋହର ପୁତ୍ରବଧୂ ମୋହର ବାଲେଶ୍ୱର ନିବାସର ଅଧିକାଂଶ କାଳ ବିଦେଶରେ ଅଛି । ଜ୍ଞାତି ବନ୍ଧୁମାନଙ୍କଠାରୁ ବିଚ୍ଛିନ୍ନ ହୋଇ ମୁଁ ଏହି ଦୀର୍ଘ ୧୩ ବର୍ଷ କାଳ ପ୍ରାୟ ଏକାକୀ ରହିଅଛି । ଚିରଦିନ ଏକାକୀ ରହିବା ମୋ ଭାଗ୍ୟଲିପିରେ ଲେଖାଅଛି । ବାଲ୍ୟକାଳରେ ପିତୃମାତୃହୀନ ଥିଲି, ଯୌବନରେ ପତ୍ନୀବିରହିତ ହୋଇ ଦୂରଦେଶରେ ଥିଲି । ଏବେ ବାର୍ଦ୍ଧକ୍ୟରେ ସୁଦ୍ଧା ସନ୍ତାନଠାରୁ ବିଚ୍ଛିନ୍ନ ହୋଇ ନିର୍ଜନବାସ କରୁଅଛି । ଏକାକୀ ଥିବାରୁ ଚିନ୍ତା କରିବାକୁ ଯଥେଷ୍ଟ ସମୟ ପାଏ । ମୁଁ ଚିରଦିନ ରୋଗୀ ଥିବାରୁ କର୍ମପଟୁ ନୁହେଁ; ମାତ୍ର ବ୍ୟାଧି, ବିପଦ ସମୟରେ ମୋହର ଲେଖା ଟିକିଏ ଭଲ ହୁଏ । ମୋହର ଉଦ୍ୟାନ ମଧ୍ୟସ୍ଥ କୃଷ୍ଣକୁମାରୀ ସମାଧିମନ୍ଦିର ଏବଂ ଗୃହ ନିକଟସ୍ଥ "ଶାନ୍ତିକାନନ" ନାମକ ଉଦ୍ୟାନ ମୋତେ ଏହି ଦୀର୍ଘ ନିର୍ଜନବାସକାଳରେ ଶାନ୍ତି ଦାନ କରିଅଛନ୍ତି । ଏହି ଶାନ୍ତି ଏବଂ ନିର୍ଜନତାର କୋଡ଼ରେ ବସି ମୁଁ ମୋର ଜୀବନର ଶେଷ ଗ୍ରନ୍ଥମାଳା ରଚନା କରିଅଛି । "ମାମୁଁ", "ପ୍ରାୟଶ୍ଚିତ୍ତ", "ବୌଦ୍ଧାବତାର କାବ୍ୟ" ଏବଂ ମୋହର ଏହି "ଆତ୍ମ-ଜୀବନ ଚରିତ" ଏହିଠାରେ ରଚିତ ହୋଇଅଛି ।

ମୁଁ ଏକାକୀ ଥିବା ସମୟରେ କବି ନନ୍ଦକିଶୋର ବଳ ବାଲେଶ୍ୱର ଜିଲାସ୍କୁଲର ହେଡ଼ମାଷ୍ଟର ନିଯୁକ୍ତ ହୋଇ ଆସିଲେ । ଦୁଇଜଣ ଏକ ସଙ୍ଗରେ ବାସ କରିବାକୁ ଲାଗିଲୁଁ । ଗ୍ରୀଷ୍ମକାଳରେ ଘର ଅଗଣାରେ ଯୋଡ଼ିଏ ଆରାମୀ କୁରୁଚି ପକାଇ ସନ୍ଧ୍ୟାଠାରୁ ରାତ୍ରି ୯-୧୦ ଘଣ୍ଟା ପର୍ଯ୍ୟନ୍ତ ଗଳ୍ପ କରୁଁ । ଗଳ୍ପର ଅଧିକାଂଶ ଉତ୍କଳସାହିତ୍ୟ ବିଷୟରେ । ଆମ୍ଭେମାନେ ଏକସଙ୍ଗରେ ଥିବା ସମୟରେ ଅନେକ ଗଳ୍ପ ଓ କବିତା ରଚନା କରିଅଛୁଁ । କିଛିକାଳ ମୋ ସହିତ ରହି ନନ୍ଦକିଶୋର ବାବୁ ଅନ୍ୟତ୍ର ଚାଲିଗଲେ । ସେ ପ୍ରକାର ପବିତ୍ର ଓ ସୁଖମୟ ନୈଶ-ମିଳନ ମୋ ଅଦୃଷ୍ଟରେ ଆଉ ଘଟିବ ନାହିଁ । ଉଭୟେ ସାହିତ୍ୟ ଚର୍ଚ୍ଚାରେ ଲାଗି ରହିଥାଉଁ । ଉଭୟର କାମନା ମାତୃଭାଷାର ଉନ୍ନତି । ପୁଣି ଉଭୟେ "ମନ୍ଦଃ କବିଯଶଃପ୍ରାର୍ଥୀ" । ମୋ ପକ୍ଷରେ ସେହି ସୌଭାଗ୍ୟର ସମୟ ଏକାବେଳକେ ଅବସାନ ହୋଇଅଛି ।

ସନ ୧୯୦୯ ମସିହା ଜୁଲାଇ ମାସରେ ଦିନେ ମୁଁ ଭେଦ ବେମାରି ଦ୍ୱାରା ଆକ୍ରାନ୍ତ ଥିବା ଯୋଗୁଁ ମୋହର ଗୋମାସ୍ତା ଶ୍ରୀକଣ୍ଠ ପଟ୍ଟନାୟକ ଔଷଧ ବିଶ୍ୱାସରେ ମୋତେ ଜଳ ସହିତ ଅମିଶ୍ରିତ ଗନ୍ଧକ ଦ୍ରାବକ (Undiluted Sulphuric acid) ପାନ କରିବା ପାଇଁ ଆଣି ଦେଲା । ଏହା ଗୋଟିଏ ଜୀବନଘାତୀ ଅଗ୍ନିମୟ ପଦାର୍ଥ । ଜଳ ସହିତ ମିଶାଇ ଦେଲେ ଏହା ଔଷଧର କାର୍ଯ୍ୟ କରେ; କିନ୍ତୁ ଜଳର ରଙ୍ଗ ଓ ଏହି ଦ୍ରାବକର ରଙ୍ଗ ସମାନ ଥିବା ଯୋଗୁଁ ଦ୍ରାବକ ଚେହେରା ଦେଖି କେହି ବୁଝି ପାରିବ ନାହିଁ ଯେ ଏହା ଜଳ ସହିତ ମିଶ୍ରିତ ଅଥବା ବିଶୁଦ୍ଧ ଅବସ୍ଥାରେ ଅଛି । ସେଥିନିମିତ୍ତ ମୁଁ ସେହି ବିଷପାନ କରିବାବେଳେ ତାହାର ପ୍ରକୃତ ଅବସ୍ଥା ବୁଝିପାରି ନ ଥିଲି । ମୁଁ ତାହା ପାନ କରିବା ମାତ୍ରେ ମୋହର ଜିହ୍ୱାଠାରୁ ଉଦର ପର୍ଯ୍ୟନ୍ତ ସବୁ ପୋଡ଼ି ଜଳିଗଲା । ଏସିଷ୍ଟେଣ୍ଟ ସର୍ଜନ ମୋ ଜୀବନର ଆଶା ତ୍ୟାଗକରି ବସିଥିଲେ । ସେ ସମୟରେ ମୋହର ଚେତନା ଥିଲା; କିନ୍ତୁ ଅଙ୍ଗ ସଞ୍ଚାଳନ କରିବାର ଶକ୍ତି ନ ଥିଲା । ମୁଁ ଜୀବନାଶା ତ୍ୟାଗକରି ପଡ଼ି ରହିଥିଲି । ସ୍ଥିର ଭାବରେ ପଡ଼ିରହି ପ୍ରଭୁଙ୍କୁ ଧ୍ୟାନ କରୁଥାଏ । ଯାହାହେଉ ମୋହର ପୁତ୍ରବଧୂର ସେବାଶୁଶ୍ରୂଷା ବଳରେ ଏ ଯାତ୍ରାରୁ ରକ୍ଷା ପାଇଗଲି ।

ଏହି ଘଟଣାର ଠିକ୍ ଦୁଇବର୍ଷ ଉତ୍ତାରେ ମୋହର ପୃଷ୍ଠବ୍ରଣ ପୀଡ଼ା ଜାତ ହେଲା । ପୃଷ୍ଠବ୍ରଣ ଅତି ଭୀଷଣ ବ୍ୟାଧି; କିନ୍ତୁ ପୀଡ଼ାର ପୂର୍ବ ଲକ୍ଷଣ ଜଣାପଡ଼ିବାମାତ୍ରେ ଚିକିତ୍ସା ଆରମ୍ଭ କରିବା ଯୋଗୁଁ ପୀଡ଼ାଟା ଅତ୍ୟନ୍ତ ଯନ୍ତ୍ରଣାଦାୟକ ଓ ମାରାତ୍ମକ ରୂପ ଧାରଣ କରି ପାରିଲା ନାହିଁ । ଚିକିତ୍ସା ଚାଲୁଥାଏ । ସେହି ସମୟରେ ଦିନେ ସକାଳେ ମହାରାଜା ବୈକୁଣ୍ଠନାଥ ଦେ ବାହାଦୁର ହାତରେ ଯୋଡ଼ାଏ ପତ୍ରଧରି ମୋ ନିକଟରେ ଉପସ୍ଥିତ ହୋଇ ମୋତେ କହିଲେ, 'ଫକୀରମୋହନବାବୁ, ଏହା ଗୁହାଳିଆ ପତ୍ର । ମୁଁ କହୁଛି, ଆପଣ ଏହି ପତ୍ର ବ୍ରଣ ଉପରେ ଲଗାନ୍ତୁ, ନିଶ୍ଚୟ ଭଲ ହୋଇଯିବେ ।' ସେହି ପତ୍ର ବ୍ୟବହାର କରିବାକୁ ସ୍ୱୀକୃତ ହେଲି । ମହାରାଜା ମୋ ସହିତ କେତେକ ଦଣ୍ଡ ପର୍ଯ୍ୟନ୍ତ କଥୋପକଥନ କରି ମେଲାଣି ନେବା ସମୟରେ କହିଲେ, "ଫକୀରମୋହନ ବାବୁ, ମୁଁ କାଲି କଲିକତା ଯାଉଛି, ବାହୁଡ଼ି ଆଇଲେ ଦେଖାହେବ ।" ହାୟ ! ବାଲେଶ୍ୱର ପକ୍ଷରେ କି ଦୁର୍ଭାଗ୍ୟର ବିଷୟ ! ମହାରାଜାଙ୍କୁ ଆଉ ବାହୁଡ଼ିବାକୁ ହେଲା ନାହିଁ । ଓଲାଉଠା ରୋଗରେ କଲିକତାରେ ସେ ପ୍ରାଣତ୍ୟାଗ କଲେ । ମୁଁ ରୋଗ ଶଯ୍ୟାରେ ପଡ଼ି ତାଙ୍କର ମୃତ୍ୟୁ ସମ୍ବାଦ ଶୁଣିଲି । ମହାରାଜାଙ୍କ ପରି ପରୋପକାରୀ ଲୋକ ଅତି ଅଳ୍ପ ଦେଖିଛି । ମୋ ପ୍ରତି କୌଣସି ବିପତ୍ପାତ ବା ପୀଡ଼ା ସମ୍ବାଦ ଶୁଣିବାମାତ୍ରେ ସେ ମୋ ପାଖକୁ ଧାଇଁ ଆସୁଥିଲେ । କେବଳ ମୋ କଥା ବୋଲି ନୁହେଁ, ସହର ମଧ୍ୟରେ କୌଣସି ଭଦ୍ରଲୋକର ପୀଡ଼ା ସମ୍ବାଦ ଶୁଣିବା ମାତ୍ରେ, ତାହା ପାଖକୁ ଧାଇଁଯାଇ, ତାହାର ଉପକାର କରିବାକୁ ପ୍ରସ୍ତୁତ ହେଉଥିଲେ । ବାଲେଶ୍ୱରରେ ଶିକ୍ଷାବିସ୍ତାର, ଉତ୍କଳ ଭାଷାର ଉନ୍ନତିସାଧନ ଏବଂ ସାଧାରଣ ହିତଜନକ କାର୍ଯ୍ୟରେ ମହାରାଜା ଅଗ୍ରଣୀ ଥିଲେ ।

ମହାରାଜାଙ୍କ ସହିତ ସାକ୍ଷାତର ପରଦିନ 'ପ୍ରବାସୀ' ନାମକ ବଙ୍ଗଳା ମାସିକ ପତ୍ରରେ ଆୟୁର୍ବେଦୀୟ ଚିକିତ୍ସା ସମ୍ବନ୍ଧରେ ଗୋଟିଏ ସାରଗର୍ଭ ପ୍ରବନ୍ଧ ପ୍ରକାଶିତ ହେବାର ଦେଖିଲି । ସେଥିରେ ଏକସ୍ଥାନରେ ଲେଖାଥିଲା ଯେ, 'ଗୁହାଳିଆ' ନାମକ ଲତାର ପତ୍ରଦ୍ୱାରା ପୃଷ୍ଠବ୍ରଣ ଯେ ଉପଶମ ହୁଏ ତାହା ଆର୍ଯ୍ୟ ମହର୍ଷିମାନଙ୍କୁ ଜଣା ଥିଲା । ମୁଁ ଗୁହାଳିଆ ଲତା ଅନ୍ୱେଷଣ ନିମନ୍ତେ ଲୋକ ନିଯୁକ୍ତ କରିଅଛି, ଏହି ସମୟରେ ମେଦିନୀପୁରନିବାସୀ ଜଣେ ଜମିଦାର, ନାମ ଦ୍ୱାରକାନାଥ ମାଇତି - ମୋତେ ଦେଖିବାକୁ

ଆସିଲେ । ସେ କହିଲେ ଯେ ପାଣିଶିଉଳ ଦ୍ୱାରା ତାଙ୍କର ଜଣେ ଆତ୍ମୀୟଙ୍କର ପୃଷ୍ଠବ୍ରଣ ଭଲ ହୋଇଥିଲା । ମୋ ପୁଷ୍କରିଣୀରେ ପାଣିଶିଉଳ ପଡ଼ ଥିଲା । ତାହା ଅଣାଯାଇ ମୋ ପିଠିରେ ବାଟି ବାନ୍ଧି ଦିଆଗଲା । ଅଳ୍ପଦିନ ପରେ ଦେଖାଗଲା ଯେ କ୍ଷତ ସ୍ଥାନରେ କେତେଗୁଡ଼ିଏ ଛିଦ୍ର ହୋଇଅଛି ଏବଂ ସେହି ଛିଦ୍ରବାଟେ ଦେଇ ପୂଜ ସବୁ ବାହାରି ଆସୁଛି । ଭଗବାନଙ୍କ କୃପାରୁ ମୁଁ କିଛିଦିନ ପରେ ଆରୋଗ୍ୟ ଲାଭ କଲି ।

ନିରବଚ୍ଛିନ୍ନ ସ୍ୱାସ୍ଥ୍ୟ ଓ ସୁଖଭୋଗ କରିବା ମୋ' ଭାଗ୍ୟରେ ନାହିଁ । ପୃଷ୍ଠବ୍ରଣ ରୋଗରୁ ମୁକ୍ତିଲାଭ କରିବାର ଦଶ କି ଏଗାର ମାସ ଉତ୍ତାରେ ଦାରୁଣ ଯନ୍ତ୍ରଣାଦାୟକ ଉରୁସ୍ତମ୍ଭ ରୋଗରେ ଆକ୍ରାନ୍ତ ହେଲି । ମୋର ବାମଜଙ୍ଘର କେତେକ ଅଂଶ ପାଚି ତହିଁରୁ ପୂଜ ବାହାରିବାକୁ ଲାଗିଲା । ଅନେକ ଦିନ ମୁଁ ଶଯ୍ୟାଗତ ଥିଲି । ମୋର ସେହି ବ୍ୟାଧି ସମୟରେ ମୁଁ ଅନେକଙ୍କଠାରୁ ସାହାଯ୍ୟ ଓ ସହାନୁଭୂତି ପାଇଅଛି । ମହାରାଜା ବୈକୁଣ୍ଠନାଥ ଦେ'ଙ୍କ ଉତ୍ତରାଧିକାରୀ କୁମାର ମନ୍ମଥନାଥ ଦେ ମୋହର ତତ୍ତ୍ୱ ନେବା ନିମନ୍ତେ ପ୍ରାୟ ପ୍ରତିଦିନ ସକାଳେ ମୋ' ନିକଟକୁ ଆସୁଥିଲେ ଏବଂ ସମୟ ସମୟରେ ମୋ' ପାଇଁ ଡାକ୍ତରଖାନାରୁ ଔଷଧ ନେଇ ଆସୁଥିଲେ । କିନେ ମୌଲବୀ ଅସରଫ୍ ଅଲି କାବ୍ୟରତ୍ନ ମୋ ପାଇଁ କଲିକତାରୁ ଅନେକ ମେଓ୍ୱା ଆଣି ମୋ ପାଖରେ ଉପସ୍ଥିତ ହେଲେ । ମୁଁ ପୂର୍ବେ ଯେବେ ବିଷପାନ କରି ଶଯ୍ୟାଗତ ହୋଇଥିଲି, ଉତ୍କଳର ଜଣେ ପ୍ରସିଦ୍ଧ ଲେଖକ ଏବଂ ମୋହର ଯୁବକ ବନ୍ଧୁ ମୃତ୍ୟୁଞ୍ଜୟ କାବ୍ୟତୀର୍ଥ ବାଣୀଭୂଷଣ ମୋତେ ଦେଖିବା ପାଇଁ କଟକରୁ ଆସିଥିଲେ । ମୁଁ ଏହି ଭୀଷଣ ବ୍ୟାଧି ହସ୍ତରୁ ରକ୍ଷା ପାଇଲି ।

ସନ ୧୯୧୫ ଖ୍ରୀଷ୍ଟାବ୍ଦର ଶେଷ ଭାଗରେ ନିଃସ୍ୱାର୍ଥ ଉତ୍କଳହିତୈଷୀ ଉତ୍କଳର ଜଣେ ପରମ ସେବକ ବେହାର-ଉତ୍କଳ କାଉନସିଲର ଅନ୍ୟତମ ସଦସ୍ୟ ଗୋପବନ୍ଧୁ ଦାସ ମହୋଦୟ କଲିକତା ଫେରନ୍ତା ମୋ' ଗୃହରେ ଦୁଇଦିନ ଅବସ୍ଥାନ କରିଥିଲେ । ସକାଳେ ମେଲଣି ନେବା ସମୟରେ ଦେଖିଲି, ସେ ସ୍ଥିରଭାବରେ ଛିଡ଼ାହୋଇ, ମୋତେ ଏକ ଧ୍ୟାନରେ ଚାହିଁଥାନ୍ତି, ତାହାଙ୍କ ନେତ୍ରଯୁଗଳରୁ ଅବିଚ୍ଛେଦ ଅଶ୍ରୁଧାରା ବହିର୍ଗତ ହେଉଥାଏ । କିଛିକ୍ଷଣ ପରେ ପ୍ରକୃତିସ୍ଥ ହୋଇ, ଧୀରେ ଧୀରେ ମୋତେ କହିଲେ, "ମୁଁ ଦୁଇଦିନ ଏଠାରେ ରହି, ଆପଣଙ୍କ ଅବସ୍ଥା ବୁଝିଲି; ଆପଣ ନିତାନ୍ତ ଦୁର୍ବଳ, ନିଃସହାୟ ଓ ଏକାକୀ ହୋଇ ପଡ଼ିଛନ୍ତି । ଚାକରମାନଙ୍କ ସେବା ବର୍ତ୍ତମାନ ଆପଣଙ୍କ ପକ୍ଷରେ ଯଥେଷ୍ଟ ନୁହେଁ । ଆପଣଙ୍କ ସେବା ଓ ସାହାଯ୍ୟ ସକାଶେ ଆତ୍ମୀୟ ଲୋକଙ୍କର ପାଖରେ ଥିବା ନିତାନ୍ତ ଆବଶ୍ୟକ ।" ଦେଶବାସୀମାନଙ୍କର ଏହି ପ୍ରକାର ସହାନୁଭୂତି ମୋହର ଶେଷଜୀବନର ସାନ୍ତ୍ୱନା ।

ମୋର ଅନ୍ତିମକାଳରେ ଦେଶବାସୀମାନେ ମୋହର ଅକିଞ୍ଚିତକର ସାହିତ୍ୟ ସେବା ଓ ଦେଶସେବାର ଯଥେଷ୍ଟ ପୁରସ୍କାର ଦାନ କରିଅଛନ୍ତି । ୧୯୧୭ ଖ୍ରୀଷ୍ଟାବ୍ଦରେ ମୁଁ ବାମଣ୍ଡାରୁ 'ସରସ୍ୱତୀ' ଉପାଧି ପାଇଅଛି । ସୁରତରଙ୍ଗିଣୀ ସାରସ୍ୱତ ସମିତି ମୋତେ ଏହି ଉପାଧିରେ ଭୂଷିତ କରିଛନ୍ତି । ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଏହି ସଭାର ସଭାପତି ଥିଲେ । ୧୯୧୭ ମସିହାର ଶେଷଭାଗରେ କଟକରେ ସମଗ୍ର ଉତ୍କଳ ଭାଷାଭାଷୀମାନଙ୍କର ଯେଉଁ ସମ୍ମିଳନୀ ହୋଇଥିଲା, ସେଥିରେ ମୋ' ପରି ଅଧମ ଲୋକକୁ ସଭାପତି ପଦରେ ବରଣ କରି, ଦେଶବାସୀମାନେ ମୋତେ ଯତ୍ପରୋନାସ୍ତି ଅନୁଗୃହୀତ କରିଅଛନ୍ତି । ଭକ୍ତିଭାବରେ ପ୍ରଣତ ହୋଇ ମୁଁ ମୋ'ର ପାଠକପାଠିକାମାନଙ୍କଠାରୁ ଏବଂ ମୋର ହିତୈଷୀ ସମସ୍ତ ଦେଶବାସୀଙ୍କଠାରୁ ବିଦାୟ ଗ୍ରହଣ କଲି ।

---

ଲେଖକଙ୍କର ମୃତ୍ୟୁ—୧୯୧୮ ମସିହା ଜୁନ ମାସ ୧୪ ତାରିଖ ।

---

# ପତ୍ରିକାରେ ପ୍ରକାଶିତ
# 'ସେନାପତିଙ୍କ ଆତ୍ମଚରିତ'ର ସୂଚନା

**ଉତ୍କଳ ସାହିତ୍ୟ**
**ଦ୍ୱାବିଂଶ ଭାଗ**

ଚତୁର୍ଥ ସଂଖ୍ୟା—କେଉଁଝର ପ୍ରଜାବିଦ୍ରୋହ ।
ପଞ୍ଚମ ସଂଖ୍ୟା—କେଉଁଝର ପ୍ରଜାବିଦ୍ରୋହ (ଶେଷାଂଶ) ।
ଷଷ୍ଠ ସଂଖ୍ୟା —ଓଡ଼ିଶା ଦୁର୍ଭିକ୍ଷ ।
ଅଷ୍ଟମ ସଂଖ୍ୟା (୧) କଟେକରେ କାର୍ଯ୍ୟଶିକ୍ଷା ।
(୨) କଟେକରେ ଭ୍ରମଣ ।
ନବମ ସଂଖ୍ୟା—(୧) ବାରବାଟୀ ସ୍କୁଲରେ ଅଧ୍ୟୟନ ।
(୨) ମୋର ଗୃକଣ ।
ଦଶମ ସଂଖ୍ୟା—(୧) ବାରବାଟୀ ସ୍କୁଲର ଉନ୍ନତି ।
(୨) ବାଲେଶ୍ୱର ମିସନରୀ ସ୍କୁଲରେ କର୍ମ ।
(୩) କଟକ ନର୍ମାଲ ସ୍କୁଲର ପଣ୍ଡିତ କର୍ମ ।
ଏକାଦଶ ସଂଖ୍ୟା—ବାଲେଶ୍ୱରରେ ପ୍ରେସ କୋମ୍ପାନି ସ୍ଥାପନ ।
ଦ୍ୱାଦଶ ସଂଖ୍ୟା—(୧) ବାଲେଶ୍ୱରରେ ପ୍ରେସ କୋମ୍ପାନି ସ୍ଥାପନ ।
(୨) ସାଧାରଣ ଶିକ୍ଷା ଓ ଜାତିଶିକ୍ଷା ।

**ତ୍ରୟୋବିଂଶ ଭାଗ**

ପ୍ରଥମ ସଂଖ୍ୟା —ସମାଜର ଗତିମତି ପରିବର୍ତ୍ତନ ।
ଦ୍ୱିତୀୟ ସଂଖ୍ୟା—(୧) ଠାକୁର ମା'ଙ୍କ ପରଲୋକ ଯାତ୍ରା ।
(୨) ମଫସଲରେ ସ୍କୁଲ ସ୍ଥାପନ ଚେଷ୍ଟା ।
ତୃତୀୟ ସଂଖ୍ୟା—ଇଂରାଜୀ ଶିଖିବାର ଇଚ୍ଛା ଏବଂ ଶିକ୍ଷାରମ୍ଭ ।

ଚତୁର୍ଥ ସଂଖ୍ୟା—(୧) ସ୍କୁଲ କମିଟିର ମେମ୍ବର।
(୨) ଦ୍ୱିତୀୟ ବିବାହ।
(୩) ବ୍ରାହ୍ମଧର୍ମ ଅବଲମ୍ବନ।
ପଞ୍ଚମ ସଂଖ୍ୟା - (୧) ମାଲଗିରରେ ଦେବାନ ଗୃକର।
(୨) କଟକ ଯାତ୍ରା।

ଷଷ୍ଠ ସଂଖ୍ୟା
ସପ୍ତମ/ଅଷ୍ଟମ ସଂଖ୍ୟା
ନବମ/ଦଶମ ସଂଖ୍ୟା } —ଡୋମପଡ଼ାର ଦେବାନ।

ଏକାଦଶ ସଂଖ୍ୟା
ଦ୍ୱାଦଶ ସଖ। } —ଢେଙ୍କାନାଲରେ ଆସିଷ୍ଟାଣ୍ଟ ମାନେଜର।

## ଚତୁର୍ବିଂଶ ଭାଗ

ପ୍ରଥମ ସଂଖ୍ୟା
ଦ୍ୱିତୀୟ/ତୃତୀୟ ସଂଖ୍ୟା } —ଢେଙ୍କାନାଲରେ ଆସିଷ୍ଟାଣ୍ଟ ମାନେଜର।

ଚତୁର୍ଥ ସଂଖ୍ୟା
ପଞ୍ଚମ/ଷଷ୍ଠ ସଂଖ୍ୟା
ସପ୍ତମ/ଅଷ୍ଟମ ସଂଖ୍ୟା } —ଦଶପଲ୍ଲାର ଦେବାନ।

ନବମ/ଦଶମ ସଂଖ୍ୟା—ପାଲଲହଡ଼ାରେ ଦେବାନ।
କେଉଁଝରରେ ମାନେଜର।

———

## ସତ୍ୟବାଦୀ

୧୩୨୪—ଦ୍ୱିତୀୟ ଭାଗ 'ବୃଦ୍ଧ ଶ୍ରୀ ଫକୀରମୋହନଙ୍କ ଆତ୍ମଜୀବନୀରୁ
୮ମ—୧୨ଶ ସଂଖ୍ୟା ଏକ ଅଧ୍ୟାୟ'।
'ଓଡ଼ିଆ ଭାଷାର ସଙ୍କଟ' ଏହି
ନୂତନ ନାମରେ ପରିଚ୍ଛେଦଟି ନାମିତ ହୋଇଛି।

———

# ଉତ୍କଳ ଭ୍ରମଣଂ

---

## ଶାରଳା ବନ୍ଦନା

ବନ୍ଦଇ ଶାରଳା ମା ଗୋ ଝଙ୍କଡ଼ବାସିନି,
ବୀଣାବଜାଇନି ଦେବୀ ଅକଳଦାୟିନି ।
ବିଦ୍ୟାର ଭଣ୍ଡାର ଅଟେ ତୁମ୍ଭ ପୀଠ ସ୍ଥାନ,
ବାହାରନ୍ତି ଫଳ ଫଳ ତହୁଁ ଅବଧାନ ।
ଦୟା କରି ବସ ମାତ ମୋ ମୁଣ୍ଡରେ ବେଳେ,
ଲେଖିବି କବିତାମାଳା, ଗାଇବେ ଉତ୍କଳେ ।
ତୁମ୍ଭର ଅଭ୍ୟାସ କବି-କଣ୍ଠେ ବସିବାର,
ମୋ ପ୍ରତି ସେପରି କର ନାହିଁ ଅତ୍ୟାଗ୍ରର ।
କଣ୍ଠରେ ବସିଲେ ହୋଇଯିବ ସେ ହାଉଡ଼ା,
କପରି ଲେଖିବି ଆଉ ଗ୍ରନ୍ଥ ଦୁଇ ପୁଡ଼ା ?
ଉଲ୍ଲାସେ ବସିବ ମାତ ମୋ ମୁଣ୍ଡରେ ଧୀରେ,
ଝିଙ୍କି ନ ଦେବ ମୁଣ୍ଡ ଯେମନ୍ତ ଭାରରେ ।
ମୋ ପେଟରେ ବିଦ୍ୟା କିଛି ନାହିଁ ଗୋ ଶାରଳେ,
ଅଙ୍ଗ ଭାରି ହୋଇ ଚଢ଼ି ଯାଇପାରେ ତଳେ ।
ତେତେବେଳେ ତୁମ ଗୋଡ଼ ହାତ ଗଲେ ଭାଙ୍ଗି,
ମୋର ଦୋଷ ନ ଧରିବ କଜ୍ଜଳ-ଅପାଙ୍ଗି ।
ଏ କଥାରୁ ବୁଝିନିଅ କେତେ ମୋର ଜ୍ଞାନ,
ତେଣୁ ଆଗୁଁ କରି ଦେଉଅଛି ସାବଧାନ ।
ଲେଖେଁ ମୁଁ କବିତା ମାତ ଦୟା କରି ବେଳେ,
ଟଣାଟଣି କରି ବହି ପଢ଼ିବେ ସକଳେ ।
କେ ହସିବ, କେ ରାଗିବ ବହି ପଢ଼ିସାରି,
କେହି ଦେବ ଗାଳି କରି ମନ ଉଣା ଭାରି ।

— —

ଉତ୍କଳ ପବିତ୍ର ଭୂମି ଭାରତ ମଧ୍ୟରେ,
କରନ୍ତି ଏଥିରେ ବାସ ପୁଣ୍ୟବନ୍ତ ନରେ ।
ଅସଂଖ୍ୟ ଅସଂଖ୍ୟ ଯାତ୍ରୀ ଆସୁଛନ୍ତି ଧାଇଁ,
ଏହି ମହା ପୁଣ୍ୟକ୍ଷେତ୍ର ଦେଖିବାର ପାଇଁ ।
ଭାରତର ସର୍ବ ଦେଶେ ଏମନ୍ତ ପ୍ରଚାର,
ପବିତ୍ର ଉତ୍କଳ ଭୂମି ଅଟେ ସ୍ୱର୍ଗଦ୍ୱାର ।
ପ୍ରକୃତି ଯେମନ୍ତ ଶୋଭା ଏଠାରେ ମେଲିଛି,
ଏମନ୍ତ ସୌନ୍ଦର୍ଯ୍ୟରାଶି ଭାରତେ କାହିଁଛି ?
ପର୍ବତସଲିଳା ନଦୀ ବନ ଉପବନ,
ସ୍ଥାନେ ସ୍ଥାନେ ଶୋଭାପାଏ ନନ୍ଦନକାନନ ।
ଯେ ଲୋକ ନ ଜାଣେ ଓଡ଼ିଶାର କାରିଗିରି,
ଦେଖୁ ସେ ଭୁବନେଶ୍ୱର ଦେଖୁ ଖଣ୍ଡଗିରି ।
କେତେ କୀର୍ତ୍ତି ଲୋପ କରିପାରି ନାହିଁ କାଳ,
ଜଣାଯାଏ ପାଣି ମାପ ଦେଖି ପଦ୍ମନାଳ ।
ଅଇଲେ ଶିବାଜ୍ଞା ଥରେ ଦେଖିବେ ଉତ୍କଳ,
ଅଛି କି ନା ଏହା ପୂର୍ବ ପରି ଅବିକଳ । *
ମାତ୍ର ଆହା ଏହି ଦେଶ ହୋଇ ଖଣ୍ଡ ଖଣ୍ଡ,
ସକଳ ସୌନ୍ଦର୍ଯ୍ୟ ହୋଇଅଛି ଲଣ୍ଡଭଣ୍ଡ ।
ଦକ୍ଷିଣଟା କମାମାନେ ବସିଛନ୍ତି ମାଡ଼ି,
ଉତ୍ତରଟା ଗଲାଣି ତ ବଙ୍ଗାଳୀଙ୍କ ବାଡ଼ି ।
ପଶ୍ଚିମଦିଗର କଥା ବୋଇଲେ ନ ସରେ,
ପଡ଼ିଲାଣି ମରହଟ୍ଟା ପଶ୍ଚିମା ଭାଗରେ ।
ଯାହା କରିଗଲେ ଉଡ଼ିବରନ ସାହେବ,
ରକ୍ତ ଅକ୍ଷରରେ ଇତିହାସେ ଲେଖା ହେବ ।

---

* ଶିବାଜ୍ଞା ଭୁବନେଶ୍ୱରଠାରେ କହିଥିଲେ, ଏ ଦେଶ ଦେବତାମାନଙ୍କର ବାସଯୋଗ୍ୟ, ମନୁଷ୍ୟ ସକାଶେ ନୁହେଁ ।

ସେ ଦିନ ସାହେବ କହିଗଲେ କଟକରେ,
କିଛି କାର୍ଯ୍ୟ ହେବ ନାହିଁ ତାହାଙ୍କ ନାମରେ ।
ମାସ ମୁହିଁ ତାଙ୍କ କୀର୍ତ୍ତି ଗାଇବ ନିତାନ୍ତ,
ଓଡ଼ିଆ ଭାଷାର ହାଣି ଦେଇଛନ୍ତି ହାତ ।
ଗରିବ ଓଡ଼ିଆ କିଛି ନ ଜାଣନ୍ତି କଥା,
ତୁନିହୋଇ ରହିଗଲେ ପୋତି ତଳେ ମଥା ।
ସୁରିଆଡ଼େ ତାଙ୍କ ଯଶ ହେଉଛି ବିକାଶ;
ଓଡ଼ିଆମାନଙ୍କୁ କିନ୍ତୁ କଲେ ସର୍ବନାଶ ।
କେତେ କାମ କରିଗଲେ ବଙ୍ଗଳାଦେଶରେ,
ସମସ୍ତେ ଢାଳନ୍ତି ତେଲ ତେଲିଆ ମୁଣ୍ଡରେ ।
Backward ମୁସଲମାନ ପାଇବେ ସୁକର,
ହାଃ ହାଃ । ଓଡ଼ିଆମାନେ forward ଭାରି ।
ବାକି ତିନଗୋଟା ଜିଲ୍ଲା ଓଡ଼ିଶା ଗୌରବ,
ତହିଁ ମଧ୍ୟୁ ସବୁ ସରିଯାଇଛି ବିଭବ ।
ମାରୁଆଡ଼ି କାପୋଡ଼ିଆ ଭୋଜପୁରି ମୁଦି,
ବାଣିଜ୍ୟ ବେପାର ହାରି ରଖିଛନ୍ତି ମୁନ୍ଦି ।
ଓଡ଼ିଆ କାଟିବେ ଧାନ ଚଷି ଚଷି ମାଟି,
ମାହକ ଖାଇବେ ରସ ତହୁଁ ଗୁଜରାଟି ।
ହାକମ ଓକିଲ ସବୁ ଅଟନ୍ତି ବିଦେଶୀ,
ଡାକଘର କିରାଣୀଟି ନୁହେ ମଧ୍ୟ ଦେଶୀ ।
ଜମିଦାରମାନଙ୍କର ଚଳୁଥିଲା ହାତ,
ଆସୁଅଛି ବନ୍ଦୋବସ୍ତ ସରିବିବ ଭାତ ।
ଆସିଅଛି ରେଲଗାଡ଼ି ଚଢ଼ି ଦେଇ ଭଡ଼ା,
ସୁକରବାକର ପାଶେ ହୁଅ ନାହିଁ ଛିଡ଼ା ।
କି କହିବୁଁ କାହାଠାରେ, କିଏ ନେବ ଝୁଙ୍କି,
ତୁନି ହୋଇ ପଡ଼ିଥିବୁଁ କପାଳକୁ ଠୁଙ୍କି ।
ଆଜ ସେ କଥାରେ କିଛି ନାହିଁ ପ୍ରୟୋଜନ,
ଦେଖେଁ ଏଥି ଛନ୍ତି କେଉଁ କେଉଁ ମହାଜନ ।

କୋଟି ତାରା ମଧ୍ୟେ ଯେହ୍ନେ ଶୋଭାପାଏ ଚନ୍ଦ୍ର,
ଓଡ଼ିଶାମଣ୍ଡଳେ ମହାରାଜ ରାମଚନ୍ଦ୍ର ।

ଧନେ ମାନେ ଜାତିକୁଳେ ରୂପେ କ୍ଷମତାରେ,
ଏତେ ଗୁଣ ପୂର୍ଣ୍ଣ କାହିଁ ଅଛି ଏକାଧାରେ ?
ନବୀନ ବୟସ ଏଣେ ଅତୁଳ ସମ୍ପତ୍ତି,
ନାଟ ଖେଳ ଯେନ କାଟୁଥାନ୍ତି ଦିନ ରାତି ।
ସେ ସକଳ କଥା କିଛି ନ ପକାଇ ମନେ;
ଦିନ ରାତି ଲାଗିଅଛି ଶାସ୍ତ୍ର ଅଧ୍ୟୟନେ ।
ଏତେ ପଢ଼ି ନାହିଁ ବାପା ବସି ରାତିସାରା,
କୋମଳ ଅଙ୍ଗକୁ ଆହା ବାଧିଯିବ ପରା ।
ମନ ମଧ୍ୟେ ଦୃଢ଼ରୂପେ ବାନ୍ଧିଥିଲି ଆଶା,
ଘୁଞ୍ଚାଇବ ତୁମେ ମାତୃଭାଷାର ଦୁର୍ଦ୍ଦଶା ।
ଆପଣ ତ ହେଲେ ଏବେ ଇଂରେଜୀ ପଢ଼ୁଆ,
ମାତୃଭାଷା କହିବାକୁ ଲାଗିବ ଅଡ଼ୁଆ ।
ନାହିଁ ନାହିଁ ମହାରାଜ ! ଭଲ ହେଉ ନାହିଁ,
କିଛି ହେଲେ କର ମାତୃଭାଷା ରକ୍ଷାପାଇଁ ।
ଶତ ଶତ ଦେଇଥିଲ ଆଗେ ଟଙ୍କା ଥୋକେ,
ଟପକରି ଗିଳିଦେଲେ ପାଖଥିବା ଲୋକେ ।
ତେର ଦିନୁଁ ଓଡ଼ିଶାରେ ପିଟା ଅଛି ଢୋଲ,
ବାଲେଶ୍ୱରେ ଫିଟାଇଛ ରାମଚନ୍ଦ୍ର ଟୋଲ ।
ଆହୁରି ପୁଞ୍ଜେ କ ଛ'ଟା ଅଛି ଦରକାର,
ଦମେ ଦମେ କରିଯିବ ବାପା ଖବର୍ଦ୍ଦାର ।
ଆଶା ଅଛି ଓଡ଼ିଆକୁ ଅନାଇବ ବାରେ,
ଅବଶ୍ୟ କୀରତିବାନା ଉଡ଼ିବ ସଂସାରେ ।
ରହୁ ତୁମ୍ଭ ଚିତ୍ତ ଭଗବାନଙ୍କ ଚରଣେ,
ପୁସନବିଶେଷେ ପ୍ରତିପାଳ ପ୍ରଜାଗଣେ ।
ଦୀର୍ଘଜୀବୀ ହୁଅ ବାପା କରୁଛି କାମନା,
କରନ୍ତୁ ଈଶ୍ୱର ତୁମ୍ଭ ମଙ୍ଗଳସାଧନା ।

ଆହେ ବୈକୁଣ୍ଠନାଥ ଦେ ରାଜା ବାହାଦୁର ।
ସତେ ସତେ ତୁମ୍ଭେ ଜଣେ ଅଟ ବାହାଦୁର ।
କରିବାକୁ ଦେଶ ଉପକାର ଘରପଣେ,
ନ ଥିଲ ନ ହେବ ନାହିଁ ତୁମ୍ଭ ପରି ଜଣେ ।

ତୁମ୍ଭର ଅକ୍ଷୟ କୀର୍ତ୍ତି ରାଜା ବାହାଦୁର,
ବାଲେଶ୍ୱର ମଧ୍ୟେ ଷୋଳନେଉଳା ପୋଖରୀ ।
ହେବ ଏହା ଉପକାରୀ ସୌନ୍ଦର୍ଯ୍ୟର ଶ୍ରେଣୀ,
ମୋତିଗଞ୍ଜ ହୃଦୟରେ କଉସ୍ତୁଭମଣି ।
ଧନ୍ୟ ଧନ୍ୟ ଧନ୍ୟ ତୁମ୍ଭ ନାମ ପ୍ରତି ସ୍ଥାଣ,
ପ୍ରାର୍ଥନା ହୁଅ ରାଜା କରୁଛୁ କଲ୍ୟାଣ ।
ତୁମର ମହତକାର୍ଯ୍ୟ ସକାଶେ ବୈକୁଣ୍ଠ,
ରଖିବ ଜଗତେ କୀର୍ତ୍ତି, ଲଭିବ ବୈକୁଣ୍ଠ ।

ଧାଡ଼ ଧାଡ଼ ଯାଉଛନ୍ତି ଯାତ୍ରୀଦଳ ବହି,
ସଦାବର୍ତ୍ତ କେତେଦୂରେ କଥା କହି କହି ।
ନୁହେ ତ ଏ ତୀର୍ଥସ୍ଥାନ ସୁନହାଟ ଗ୍ରାମ,
କପାଁ ରୁଣ୍ଡ ହୋଇଛନ୍ତି ଲୋକ ଗୃହଧାମ ?
କେହି କହେ ଦାଲ୍ ଆଜିର ଦ୍ୟୁ ଦେଓ ଭାଇ,
ରାମଜୀକେ ଆଶ୍ରେସେ ବାଲ ଭୋଗ ଖାଇ ।
ଅତିଥିମାନଙ୍କପାଇଁ ଅବାରିତ ଦ୍ୱାର,
ଦିନ ରାତି ଲାଗି ରହିଅଛି କାରବାର ।
ସଦାବର୍ତ୍ତ ମେଲ ବସିଛନ୍ତି ଦୁଇଜଣ,
ଦୁଇଭାଇ ରାଜାରାମ ଗଙ୍ଗାନାରାୟଣ ।
ଧନ୍ୟ ଦୁଇ ଭାଇ ତୁମ୍ଭମାନଙ୍କର ମନ;
ପ୍ରକୃତ ପାଳଛ ହିନ୍ଦୁଧର୍ମ ସନାତନ ।

ଭାଇ ଭଗବାନ ଦାସେ କରେ ନମସ୍କାର,
କର କର ସତ୍ୟଧର୍ମ ମହିମା ପ୍ରଚାର ।
ଲାଗି ପଡ଼ଥାଅ ଭାଇ ନ ହୁଅ ନିରାଶ,
ଦିନେ ହେଲେ ହେବ ସତ୍ୟ ମହିମା ପ୍ରକାଶ ।

ଚୈତନ୍ୟ ଚରଣ ଦେ ପଡ଼ଲା ତ ବଳ,
ଦୁଇ ଖଣ୍ଡ କରୁଥିଲ ଗୋଟାଏ କଦଳୀ ।
ଲୋକେ ବୋଲୁଥିଲେ ତୁମ୍ଭେ ନିତାନ୍ତ କୃପଣ,
ପୋଖରୀ ଖୋଳାଇ କଲୁ ଟଲ ପଣ ପଣ ।

ଦରିଦ୍ର ସର୍କାର ଦେବ ଧନ୍ୟବାଦ ଥରେ,
ଧାଇଁ ବୁଲେ ଦିନ ରାତି ଟେକ୍ କାର୍ଯ୍ୟରେ ।
ହେଉ ବା ନ ହେଉ ଟେଛେ ଭାଇ ତୁମ୍ଭ ନାମ,
ଲାଗି ପଡ଼ କରୁଥାଅ ଦୁନଆର କାମ ।

ଭଗବାନ ଦୀର୍ଘଜୀବି କରନ୍ତୁ ଫକକୁ *
ପାଇବ ଯେ ବାଲେଶ୍ୱର ଗୋଟିଏ ଲୋକକୁ ।
'ପୁତ୍ରେ ଯଶସି ତୋଯେ ଚ' ଯାହା ଶାସ୍ତ୍ରକଥା,
ଜଣାଗଲା ଗଙ୍ଗାନାରାୟଣ ଧାର୍ମିକତା ।
ହେବ ଫକବାବୁ ଜଣେ ଦେଶର ହିତୈଷୀ,
ମହକ ଉଠଇ ଦୁଇ ପତ୍ରରୁ ତୁଳସୀ ।
ଭୁଲ ନାହିଁ ବାପା ତୁମ୍ଭେ କାହା ପୁଅ ନାତି,
ସେମାନଙ୍କଠାରୁ ବଳ ପଡ଼ୁ ତୁମ୍ଭ ଖ୍ୟାତି ।
ବାପ୍‌କା ଲଡ଼୍‌କା ପୁଣି ସିପାହିକା ଘୋଡ଼ା,
ଅବଶ୍ୟ ନିଶାଣି ରହିଥାଏ ଥୋଡ଼ା ଥୋଡ଼ା ।
ମାତ୍ରକ ଏପରି ଅଛି ଚଳାଚଳ କଥା,
ସ୍ୱନାମ-ପୁରୁଷ ଧନ୍ୟ ଅଟେ ସାର୍ଥକତା ।

ହେ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ସାଆନ୍ତେ
କେତେଥର ବସି ମୁହିଁ ଭାଳଇ ଏକାନ୍ତେ ।
ପଚାଶ ବରଷ କାଳ ଲେଖୁଅଛ ବସି,
ଶିଳ ଶିଳପୁଆ ହେଲେ ଯାଆନ୍ତାଣି ଘସି ।
ପାଚଲାଣି ନିଶ ସର ଆସୁଛି ଜୀବିକା,
ଏ ଉତ୍ତରେ କେ ଲେଖିବ ସମ୍ବାଦବାହିକା ?

କପାଁ ଭେଟ ନାହିଁ ଶିବନାରଣ ନାୟକ,
ଥିଲେ ଜଣେ ନାମଜାଦା ଓଡ଼ିଆ ଲେଖକ ।
ତୁମ୍ଭର କଚାପମାନ ସବୁ ଇସ୍କୁଲରେ
ଚଳୁଥିଲା ସବୁ କ୍ଲାସ ସବୁ ବିଭାଗରେ ।
ଛାଡ଼ ବସିଲଣି ଲେଖାଲେଖିର ସମ୍ବନ୍ଧ,
ଗୋଟାଏ ଗୋଟାଏ ତୁଚ୍ଛା ଦେଖୁଛି ପ୍ରବନ୍ଧ ।

---

* ଶ୍ରୀଯୁକ୍ତ ବାବୁ ରାଧାଚରଣ ଦାସଙ୍କର ଡାକନାମ 'ଫକ ବାବୁ' ।

ଏଟା ନୁହେ କିଛି ତୁମ୍ଭ ଉପଯୁକ୍ତ କର୍ମ,
ପୁନଶ୍ଚ ଆରମ୍ଭ କର ମାତୃପୂଜା ଧର୍ମ ।
ତୁମ୍ଭ ଶବ୍ଦନଧି ଅଭିଧାନ ଗଲା କାହିଁ,
ସେକେଣ୍ଡ ଏଡ଼ିସନ ଗୁଡ଼ା ନ ହୁଏ କପାଇଁ ?

ଆହେ ଚନ୍ଦ୍ର ମହାରଣେ ହେଉ ହେଉ ହେଉ,
ମେଲ ଦିଅ ଆଉ ଥରେ କବିତାର ଢେଉ ।
ଛପାଇବେ ରାମଚନ୍ଦ୍ର ଚିନ୍ତା କି ହେ ଆଉ,
ନେବ ମାରି ଟଙ୍କା ମୁଠେ ଠୁଙ୍କି ଦେବ ବାହୁ ।

ହରିଦାସେ ଉପବାସେ ନାହିଁ ତୁମ୍ଭେ କିଛି,
ତେବେ କପାଁ କଥା ନାହିଁ, ମୁହଁଟା ଶୁଖିଛି !
କପାଳରେ ନାହିଁ ତୁମ୍ଭ ସେକେଣ୍ଡ ମାଷ୍ଟରୀ,
କି ହେବ ପାଡ଼ିଲେ ଡକା ମୁଣ୍ଡକୋଡ଼ ମରି ?
ଚିନ୍ତା ନାହିଁ, ବଚନ ପାଇପାର ବଡ଼ ପଦ,
ଓଡ଼ିଆ ଇଂରେଜୀ ମିଶା ଝାଡ଼ ଦୁଇପଦ ।

ଆହେ ମୋର ଗ୍ରାମ କରେଁ ତୁମ୍ଭଙ୍କୁ ସମ୍ମାନ,
ଆର୍ତ୍ତତ୍ରାଣ ସଦାଶିବ ନନ୍ଦ ଜନ୍ମସ୍ଥାନ ।
ଜନ୍ମିଛନ୍ତି ରାଧାନାଥ ଯୋଗ୍ୟ ପୁତ୍ରମଣି,
ଅଟେ କି ଏ ଗ୍ରାମ ଗୋଟା ମରକତଖଣି ?

ପଞ୍ଚୁମିଆଁ କବରକୁ କରୁଛି ସଲାମ,
ଯାଇଛ ମର୍ଯ୍ୟାଦା ରଖି ଧର୍ମ ଇସ୍‌ଲାମ ।
ଆହେ ମିଆଁ ତୁମ୍ଭର ତ ହେଲା ଇନ୍ତିକାଲ,
କେ ବୁଝିବ ମୁସାଫେର ଦରବେଶ ହାଲ ?

ଆହେ ଗଜପତି ମୋତେ ଦେଖାଇଛ ଆଶା,
ଅଗ୍ରାହ୍ୟ କରିବ ନାହିଁ ତୁମ୍ଭେ ମାତୃଭାଷା ।
ପଢ଼ିଅଛ ଇଂରେଜୀରେ ଲଜିକ୍ ସାଏନସ୍,
ତୁମ୍ଭ ଲେଖାଗୁଡ଼ା ତେଣୁ ମୋତେ ଲାଗେ ବେଶ୍ ।

ଥିଲା ଜଣେ ଭୋଳାନାଥ ପାରୁଥିଲା ଲେଖି,
ମନ ଖୁସି ହେଉଥିଲା ତାହା ଲେଖା ଦେଖି ।

ବଙ୍ଗଳାରେ ବୁଲି ବୁଲି ପଡ଼ିଲାଣି ଥକି,
ଭାଇ ଆଉ ଦୁଇ ମୃତ ଧାଡ଼ ଲେଖିବ କି ?

ଯାଏଁ ଯାଜପୁର ବାଟେ, ସେ ତ ପୀଠସ୍ଥାନ,
ଅବଶ୍ୟ କରିବ କେହି ମୋତେ ସନମାନ ।
ରାମ ରାମ ରାମ ରାମ ପଡ଼ିଲଣି ଥକ,
ଯାଜିଆ ବାମ୍ଭଣଗଣ ସଙ୍ଗେ ବକ ବକ !
ଆଉ ଭାଇ ଶୁଣିବାରେ ନାହିଁ ମୋର କାମ,
ଟୌଦପୁରେ ଛପନ୍ନ ପୁରୁଷଙ୍କ ନାମ ଧାମ ।
ଦିଅ ନନା ଟଙ୍କାଟିଏ କର ନାହିଁ ହୁରି,
ଆପଣା ପୋଥିରେ ଦସ୍ତ କରି ଦିଅ ଡୋରି ।
ଦଣ୍ଡବତ ଦଣ୍ଡବତ ଦଶାସନ ଘାଟ,
କେଉଁଆଡ଼େ ପଳାଇବ କହିଦିଅ ବାଟ ।

ମନେ ପଡ଼ିଗଲା ଫେରି ଆସୁଁ ଅଧଦୂରେ,
ପାବତୀ ମା ଥିଲା ପରା ଏହି ଯାଜପୁରେ ।
ପାନ ଗୁଣ୍ଡି କରି ଯାଇଅଛି ଆବିଷ୍କାର,
ଧନ୍ୟ ଧନ୍ୟ ଧନ୍ୟ ଧନ୍ୟ ମହିମା ତାହାର ।
କାହାକୁ ଉପମା ଦେବି ତାକୁ ଜ୍ଞାନପଣେ,
ହେବ ନିଉଟନ, ଗାଲିଲିଓ ପରି ଜଣେ ।
ଜଗତ ଦୁର୍ଲଭ ପାନ, ତହିଁ ଗୁଣ୍ଡି ପୁଣି,
ଅମୃତ ଫୋପାଡ଼ି ଦେବେ ଦେବତାଏ ଶୁଣି ।

କୁହାଉଛି ଆହେ କେନ୍ଦ୍ରାପଡ଼ା ବାରେ ବାରେ,
ରାଧାଶ୍ୟାମ ନରେନ୍ଦ୍ର କି ଥିଲା ଏହିଠାରେ ?
ଧନ୍ୟ ଧର୍ମପରାୟଣ ଅତିଥିବତ୍ସଳ,
ତୁମ୍ଭ କୀର୍ତ୍ତି ପୂରିଅଛି ଓଡ଼ିଶାମଣ୍ଡଳ ।
ତ୍ୟାଗ କରି ଯାଇଅଛ ଅନିତ୍ୟ ଶରୀର,
ମାତ୍ର ତୁମ୍ଭ ଯଶରାଶି ରହିଥିବ ଚିର ।
ତାହାଙ୍କ ଆତିଥ୍ୟ ବିଧି ଥିଲା ଚମତ୍କାର,
ଖୋଜି ଖୋଜି ବାଟୁଆଙ୍କ କରି କି ସତ୍କାର ।

ଓଡ଼ିଶାର ରାଜଧାନୀ ଏହି ତ କଟକ,
ବହୁତ ଅଛନ୍ତି ଏଥି ଧନୀ ମାନୀ ଲୋକ ।
ଦେଖେଁ କାହା କାହା କାର୍ଯ୍ୟକଲାପ ପବିତ,
ସାଧୁ ନାମ ଧରି ହେଉ ଶରୀର ପବିତ ।

ହେ ନନ୍ଦକିଶୋର ସର୍ବ ଗୁଣରେ ନିପୁଣ,
ଗାଇବାକୁ ତୁମ୍ଭ ଯଶ ନାହିଁ ମୋର ଗୁଣ ।
ଗଡ଼ଜାତ ରାଜାଙ୍କର ରଖିବାକୁ ମାନ,
କରିବି ମୁଁ କାହା ସଙ୍ଗେ ତୁମ୍ଭଙ୍କୁ ସମାନ ?
ଅନୁଗତ ଲୋକ ରକ୍ଷା କରିବା କାରଣେ,
ନ ଦେଖିଲି ଆଜଯାଏ ତୁମ୍ଭପରି ଜଣେ ।
ନ ମରିବ ସାପ ପୁଣି ନ ଭାଙ୍ଗିବ ବାଡ଼ି,
ଏପରି କୌଶଳ କେବା ଜାଣେ ତୁମ୍ଭ ଛାଡ଼ି ?
ସିଭିଲ ସରଭେଣ୍ଟ ଏଣ୍ଡ ପଲିଟି ଏଜେଣ୍ଟ,
ଜୟ ଜୟ ଜୟ ଓଡ଼ିଶାର monument !
ଅକାଳରେ ଦେହ ଛାଡ଼ି ଚାଲିଗଲ ଭାଇ,
ଜ୍ଞାତି ବନ୍ଧୁ ଅନୁଗତ ଲୋକଙ୍କୁ କନ୍ଦାଇ !

ଧନ୍ୟ ରାଧାନାଥ ତୁମ୍ଭ ଜନମ ସଫଳ,
ବ୍ୟାପି ରହିଅଛି କୀର୍ତ୍ତି ଓଡ଼ିଶାମଣ୍ଡଳ ।
କେତେ ତ ଅଛନ୍ତି ରଜା କେତେ ଧନବନ୍ତ,
କେଉଁ ଲୋକ ଅଛି ତୁମ୍ଭ ପରି କୀର୍ତ୍ତିମନ୍ତ ?
ବୁଲି ଆସ ଓଡ଼ିଶାର ସବୁ ଗ୍ରାମଯାକ,
କାହିଁ ପଡ଼ି ନାହିଁ ରାଧାନାଥ ନାମ ଡାକ ?
ମାଡ଼ି ବସିଅଛ ତୁମ୍ଭେ ଶିକ୍ଷା ଶୀର୍ଷସ୍ଥାନ,
ଏହା କି ଓଡ଼ିଶା ପକ୍ଷେ ଅଳପ ସମ୍ମାନ ?
ଯେ ଯା କହୁ ମାତ୍ର ମୁହିଁ କହେ ବରାବର,
ଓଡ଼ିଶାର ଭାଗ୍ୟ ଗୁଣେ ହେବ ଇନ୍‌ସ୍‌ପେକ୍ଟର ।
ଜନମର ଯୋଗ୍ୟପୁତ୍ର ଅଟ ତୁମ୍ଭେ ଭାଇ,
ଦେଇଅଛ ଭଲ ମାଳେ ଗଳାରେ ପିନ୍ଧାଇ ।
ଧନ ମାନ ପଦ ସବୁ କାଳର ଅଧୀନ,
'ପାର୍ବତୀ', 'କେଦାରଗୌରୀ' ଥିବ ଚିରଦିନ ।

ଧନ୍ୟ ଧନ୍ୟ ଧନ୍ୟ ଧନ୍ୟ ଧନ୍ୟ ତି ରେଭେନ୍‌ସା !
ଚିରକାଳ ତୁମ୍ଭ କୀର୍ତ୍ତି ଗାଇବ ଓଡ଼ିଶା ।
କେତେ କମିସନ ଆସିଥିଲେ ଓଡ଼ିଶାକୁ,
ମାତ୍ର କେତେଜଣ ଲୋକ ଚିହ୍ନନ୍ତି କାହାକୁ ?
ଯାଉନ୍ତୁ ସାହେବମାନେ ସଲାମ୍ ସଲାମ୍ !
ଲମ୍ବା ଲମ୍ବା ଚିଠି ଲେଖି ନେଇ ଲୋକ୍‌ନାମ ।
ହେ ସାହେବମାନେ କପାଁ ବନ୍ଧାଇବ ମଥା,
ଓଡ଼ିଆପୁଅଙ୍କ ପାଇଁ କହି ଗୃହକଥା ?
ହେ ରେଭେନ୍‌ସା ପୁଣ୍ୟଶ୍ଳୋକ ଧର୍ମପରାୟଣ,
ଧନ୍ୟ ମୁହିଁ ତୁମ୍ଭ ନାମ କଲି ଉଚ୍ଚାରଣ ।
ଓଡ଼ିଶା ମା ବାପ କାହିଁ ତୁମ୍ଭ ପରି ଜଣେ ?
ଓଡ଼ିଶା ସକାଶେ ଲାଗିଥିଲ ପ୍ରାଣପଣେ ?
ପରପାଇଁ କରିବାର ଆତ୍ମବିସର୍ଜନ,
ଦେଖାଇ ଯାଇଛ ତୁମେ ସେଥି ନିଦର୍ଶନ ।
ବାଳିକା ସ୍କୁଲ, ଜେନେରେଲ ହସ୍ପିଟାଲ,
ଫଲ୍ସପଏଣ୍ଟ ବନ୍ଦର, ହାଇ ଲେବେଲ କେନାଲ;
ନର୍ମାଲ ଇସ୍କୁଲ, ସର୍ଭେ ଇସ୍କୁଲ ଇତ୍ୟାଦି
ତୁମ୍ଭର ଏ କାର୍ଯ୍ୟ ସନମତ ସର୍ବବାଦୀ ।
ରେଭେନ୍‌ସା କଲେଜ କୀର୍ତ୍ତି ସବୁଦିନେ ଥିବ,
ଜୟ ଜୟ ଜୟ ଜୟ ରେଭେନ୍‌ସା ସାହେବ ।

ଥିଲେ ଜଣେ ବାମ୍‌ସ ଆଶା ଥିଲା ତାହାଠାରେ,
ମାତ୍ରକ ପାରିଲେ ନାହିଁ ରହି ଓଡ଼ିଶାରେ ।
ଅବଶ୍ୟ ସେ କରିଛନ୍ତି କିଛି କିଛି କାମ,
ଢେର ଢେର ଲୋକେ ଗାଉଥିବେ ତାଙ୍କ ନାମ ।

ହେ ଗୌରୀଶଙ୍କର ଧନ୍ୟ ତୁମ୍ଭର ସାହସ,
ଦୀପିକା ଲେଖୁଛ ବସି ତିରିଶ ବରଷ ।
ନ ମାନି ବିପଦ ବାଧା ନ ଚାହିଁ ଦେହକୁ,
ମନ ପ୍ରାଣ ସମରପି ପାଳୁଛ ବ୍ରତକୁ ।
ଦେଖି ଦେଖି ଢେର ଦିନ ଜାଣିଛୁ ବିଶେଷ,
ଅଟ ତୁମ୍ଭେ ଜଣେ man of business.

ହେ ରାମଶଙ୍କର ମୋର ମାନୁଛି ମନକୁ,
ହୋଇପାର ଭାଇ ତୁମ୍ଭେ ଗଙ୍ଗାଙ୍କ ପଛକୁ ।
ଓଡ଼ିଆ ନାଟକ ଆଉ ନଭେଲର ଲେଖା,
ପ୍ରଥମରେ ତୁମ୍ଭଠାରେ ଗଲା ସିନା ଦେଖା ।
ଏତେ ଯେ ଲେଖିଲ ତାହା କେ ପଢ଼ୁଛି ଦେଖି,
ହେଉ ହେଉ ଆଖି ବୁଜି ଯାଉଥାଅ ଲେଖି ।
ମୁଣ୍ଡ ପିଟିହୁଏ ତଳେ କଥା ଦେଖି ଭାଇ,
ନ ଦେଖିଲା କେହି ଥରେ ଅଣ୍ଟିରି କି ମାଇ !

ହେ ମଧୁସୂଦନ ଋଷିଚରିତ ମନୁଷ୍ୟ,
ବଞ୍ଚିଥାଅ ଭାଇ ନେଇ ମୋହର ଆୟୁଷ ।
ଆଦର୍ଶ ମନୁଷ୍ୟ ଯେବେ ଦେଖିବାକୁ ଚାଓ,
ଧାଇଁଯାଇ ଥରେ ଦେଖି ଆସ ମଧୁ ରାଓ ।
ନିର୍ମଳ ପବିତ୍ର ମନ ନିର୍ମଳ ସ୍ୱଭାବ,
ମୂର୍ତ୍ତିମନ୍ତ ହୋଇଅଛି ଯେସନେ ଧର୍ମଭାବ ।
ସୁଶୀଳତା ପବିତ୍ରତା ଶାନ୍ତି ଏକାଧାରେ,
ଯାଅ ଯାଅ ଦେଖ ମଧୁ ରାଓ ପରିବାରେ ।
ପ୍ରଶାନ୍ତ ବାସନ୍ତୀ ଶାନ୍ତି ପାରଦ ମାଧୁରୀ,
ସମସ୍ତେ ଅଛନ୍ତି ମଧୁ ରାଓ ଘରେ ପୂରି ।
ଜୟନ୍ତ ସମାନେ ପୁତ୍ର ଶୁଦ୍ଧପୂତମନା,
ଦେଖି ଦେଖି ହୁଏ ସିନା ମନକୁ ସାନ୍ତ୍ୱନା ।
ବହେ ରାଓ ଘରେ ବ୍ରହ୍ମସଙ୍ଗୀତ-ଭାରତୀ,
ପବିତ୍ରହୃଦୟା ଯଥା ରେବା ସରସ୍ୱତୀ ।
ମାଙ୍କର କଥାଏ ମନେ ପଡ଼େ ବେଳେ ବେଳେ,
କେତେ ଥର ମନେ କଲ ପରିହରି ବେଳେ ।
ଓଜନରେ ହେବ ମଧୁ ଅଢ଼ାଇ ପସୁରି,
କପର ରଖିଛି ଏତେ ଗୁଣ ପେଟେ ପୂରି ।

ଆସ Mr. M. S. କରେଁ Shake hand,
ଉଜ୍ଜ୍ୱଳ ହୋଇଛି ତୁମ୍ଭ ଯୋଗେ Motherland.
ଭଲ ବେଳେ କରିଅଛ ଓକିଲତି ପାସ୍,
ସାବାସ୍ ସାବାସ୍ ଭାଇ, ସାବାସ୍ ସାବାସ୍ !

କେତେଥର ଭାଇ ଶୁଣିଅଛି ତୁମ୍ଭ plead,
କରି ପାର ବଡ଼ ବଡ଼ Barrister defeat.
ଆହେ ଭାଇ M. S. ରଖି ଯାଅ ଯଶ,
ଦୁଇ ଗୃହ ଓଡ଼ିଆଙ୍କୁ କରି ଯା ମଣିଷ ।
ତୁମ୍ଭେ ତ ଆଲୁଅ ପ୍ରାପ୍ତ ମୁହିଁ ଅନ୍ଧାରୁଆ;
କିନ୍ତୁ ଭାଇ ଦୁଇଜଣ ଜାତିରେ ଓଡ଼ିଆ ।
ଦେଖିଲ ଗୋଟାଏ କଥା, ବିଲାତରେ ବୁଲି,
ଆପଣା ଦେଶର କଥା ଯାଇନାହିଁ ଭୁଲି ।
ସେଦିନ ପିଆଇ ମୋତେ ଏକ କପ୍ ଚା,
ଦେଖାଇଲ କେତେ ଚିଜ ସାବାସ୍ ଭାଇ ବାଃ !
ମନ ମାନିଗଲା ପରି ଦେଖି ସେ ଓସ୍ତାଦି,
କଟକରେ କାରିଗିରି ଦ୍ରବ୍ୟ ନାନା ଜାତି,
ରୂପା ତାରକସି କାମ, ଶିଙ୍ଗର ପାନିଆ,
ଅବଶ୍ୟ କହିବି ଏହା ସବୁ ନୂଆ ନୂଆ ।
ମାତ୍ର Co-operative ଯେବେ ରଖି ଯିବ,
ଯୁଗେ ଯୁଗେ ଓଡ଼ିଶାରେ ତୁମ୍ଭ ନାମ ଥିବ ।

ନିରନ୍ତର ବସି ଭାବୁଥାଅ ମହାମତି,
କି ଉପାୟେ ହେବ ଜନ୍ମଭୂମିର ଉନ୍ନତି ।
ହାତ ଗଣନ୍ତିରେ ଯୁଗେ କାଳ ଗଲା ବହି,
ବୁଝିଲିଣି ତୁମ୍ଭ ସଙ୍ଗେ କଥାବାର୍ତ୍ତା କହି;
ଦେହ-ଧନ-ମନ-ପ୍ରାଣ ତୁମ୍ଭର ସମସ୍ତ
ମାତୃଭୂମି କଲ୍ୟାଣରେ କରିଅଛ ନ୍ୟସ୍ତ ।
ବହୁଲକ୍ଷ ଟଙ୍କା ତୁମ୍ଭେ କଲ ଉପାର୍ଜନ,
ହୋଇ ପାରିଥାନ୍ତ ଗୋଟେ ଭାରି ମହାଜନ ।
ରାଜ୍ୟଟାଏ କିଣିବାର ତୁମ୍ଭଠାରେ ଥିର,
ଏକା ଲକ୍ଷ୍ୟ କାହିଁ ହେବ ଦେଶ ଉପକାର ।
ଉତ୍କଳର ସମ୍ମିଳନୀ ବାଞ୍ଛାକଳ୍ପତରୁ,
ବାହାରିଛି ଏହା ମର୍ଜି ତୁମ୍ଭର ମୁଖରୁ ।
ସବୁବେଳେ ଦେଖେଁ ତୁମ୍ଭେ ଭାବୁଥାଅ ବସି,
ମନେ ଦେଶଚିନ୍ତା ମାତ୍ର ହେ ଯୋଗୀ ତପସ୍ୱୀ !

ବୋଲ ତାଙ୍କୁ କେହୁ ପାଶେ ଗଲେ ଭଲଲୋକ,
ଦେଶ କଥା ଭଲ ପାଅ ମିନିଟ ମାତ୍ରକ ।
ପାଞ୍ଚଜଣ ମଧ୍ୟେ କମ୍ବା ରାଜଦରବାରେ
ଲାଗିଥାଅ ମାତୃଭୂମି ଉନ୍ନତି କଥାରେ ।
ଉନ୍ନତି ବାଟରେ ତୁମ୍ଭେ ଉତ୍କଳ ଦେଶକୁ
ପଚିଶ ବରଷ ପେଲ ଦେଇଛ ଆଗକୁ ।
ପତିତ ଉତ୍କଳ ଦେଶ ଉଦ୍ଧାର କାରଣ
ଅବତାରରୂପେ ଜନ୍ମିଅଛ ନାରାୟଣ ।

ଆହେ ଶଶି ବାବୁ କଲ ଦକ୍ଷିଣ ଭ୍ରମଣ,
ମାତ୍ରକ ପଢ଼ିଲେ ତାଙ୍କୁ ବୋଲ କେତେଜଣ ।
ନ ପଢ଼ନ୍ତୁ କେହି କାନ୍ତୁ ଯାହା ଗଲ ରଚି,
ତାହା ସଙ୍ଗେ ଆଉ କାହିଁ ତୁଳନା ହେବ କି ?

ଢେର ଦିନ ଭାବ ଭାବିଁ ବୁଝିଛୁ ମନରେ,
ଲୋକ ପରି ଲୋକଟାଏ ବିଶ୍ୱନାଥ କରେ ।
ସଭାସମିତିରେ ଯେବେ ଦେବ ତାଙ୍କୁ ଛାଡ଼ି,
ବକ୍ତୃତାଟା ବଢ଼ିପାଣି ପରି ଯିବ ମାଡ଼ି ।
ବାତୁଳ ବାଜିବ ନାହିଁ କଥା ଗଲେ କହି,
ଉବୁଡ଼ା ମାଠିଆ ମୁହୁଁ ପାଣି ପରି ବହି ।
ମାସିକ ପତ୍ରିକା ହେଲା ଦେଶର ଗୌରବ,
ଉତ୍କଳ ଦେଶରେ ଥିଲା ତା ନାମ ନୀରବ ।
ମାସିକ ପତ୍ରିକା ଢେର ସ୍ୱରୂପ ଦେଖାଇ
ପାଣିର ଫୁଟୁକା ଗଲେ ପାଣିରେ ଉଭାଇ ।
କୋଡ଼ିଏ ବରଷ କାଳ ପାଖ ଲାଗି ଲାଗି,
ସାହିତ୍ୟ ପ୍ରଚାର ପାଇଁ ପଡ଼ିଅଛ ଲାଗି ।
ଧନ ନାହିଁ, ସାହା ନାହିଁ, ତୁମ୍ଭ ସାହସରେ
ଦିନ ରାତି ଲାଗି ପଡ଼ିଅଛ ସାହିତ୍ୟରେ ।
ଦେଶେ ଲୁଚି ରହିଥିଲେ କେତେ କବି ଜ୍ଞାନୀ,
ସାହିତ୍ୟ ଆଣିଲା ତାଙ୍କୁ ବାହାରକୁ ଟାଣି ।
ଛାଡ଼ିଲ ପୈତୃକ ବୃତ୍ତି ଧର୍ମରକ୍ଷାପାଇଁ,
ଛାଡ଼ କଥା, ଧର୍ମ ଫର୍ମ ମୁଁ ତ ବୁଝେଁ ନାହିଁ ।

ଦେଶ ଉପକାର ଅର୍ଥେ ସତାଂ ହି ଜୀବନ,
ବିଶ୍ୱନାଥ ଦେଖାଇଲେ ସଫା ନିଦର୍ଶନ ।

ହରି ହରି ହରି ହରି ରାମ ରାମ ରାମ,
ଛି ଛି ମନେ ପଡ଼ିଗଲା ଆଜି କାହା ନାମ ।
ପାଇ ଗଲ ରକ୍ଷା ଭାତ ଖାଇଛି ସକାଳେ,
ନୋହିଲେ ଉପାସ ଥିଲା ନିଶ୍ଚୟ କପାଳେ ।
ରାତିରେ ବିଧାତା ଯେବେ ନ କାଟିବ ପଡ଼ି,
କେଉଁରୂପେ ହେଲେ କାଟି ଦେବ ଶୋଇପଡ଼ି ।
ଜମା କରି ବସିଅଛି ଘର ଘର ଟଙ୍କା,
ଟଇସାଟି ଦେବାବେଳେ ମୁହଁ କରେ ବଙ୍କା ।
ଆତୁର ଶୁଣିଛୁ ପଢ଼େ ଖବରକାଗଜ,
ମାତ୍ର ଦାମ୍ ଦେବା କଥା ବଡ଼ ଅସହଜ ।
ଜଣେ ଏଡ଼ିଟର କହିଅଛି ଗୁପତରେ,
ପଇସାଏ ଦାଇ ନାହିଁ ବାର ବରଷରେ ।

ପଡ଼ିଛି ପୁରୁଷୋତ୍ତମ ରଥ କେଉଁ କୋଣେ,
ପଢ଼େ ସେ ସଂସ୍କୃତ ଶ୍ଳୋକ କିଏ ଅବା ଶୁଣେ ?
ନ ଶୁଣୁ ଚେଲେ କେହି ନାହିଁ କିଛି ଦକା,
ଶୁଣିଲେ ବାମଣ୍ଡା ରଜା ଫିଙ୍ଗିଦେବେ ଟଙ୍କା ।
ଦହି ଚୁଡ଼ା ଖାଇ ପାଅ ପଇସା ଯୋଡ଼ାଏ,
ରାଜା ଦେବେ ଟଙ୍କା ଏକାବେଳକେ ଗୁଡ଼ାଏ ।
ଗାଉଥାଅ ଗାଉଥାଅ ତୁନି ହୁଅ ନାହିଁ,
ଲେଖିଗଲେ ତାଳପତ୍ର ଚୁଡ଼ା ଯିବ କାହିଁ ?

ଧନ୍ୟ ହେ ବିହାରୀଲାଲ କଲ ଭଲ କାମ,
ଗୀତା ସଙ୍ଗେ ସଙ୍ଗେ ଗାଉଥିବ ତୁମ୍ଭ ନାମ ।
ସେ ବିଷଦ ବ୍ୟାଖ୍ୟା ପଢ଼ି ପଚାରେଁ ମନକୁ,
ସରଳ କି ଆଉ କିଛି ରହିଛି ପଛକୁ ?

ଆହେ ରାଓ ଜଗନ୍ନାଥ ତୁମ୍ଭ ଡେକ୍‌ସନାରୀ
ଯେତେବେଳେ ଦେଖେଁ ମନ ଖୁସି ହୁଏ ଭାରି ।
ସାନ ବଡ଼ ଦୁଇ କାପି ଦେଇଛ ଛପାଇ,
ଏତିକ ହେଲା କି ଆଉ ଦେଖାଇବ ଭାଇ ?

ଶୁଣିଥିଲି ଗତ ହେଲା ସାତ ବର୍ଷ ପ୍ରାୟ,
କଟକରେ ଅଛନ୍ତି ଜଣେ ଯୋଗେଶ୍ଚନ୍ଦ୍ର ରାୟ ।
ବୋଟାନି ଓ କେମିଷ୍ଟ୍ରିରେ ଭରି ତାର
Knowledge.

କାମ କରେ ପ୍ରଫେସର କଟକ କଲେଜ ।
ଜ୍ୟୋତିଷ ପାଠରେ ପୁଣି ଭାରି ସେ ପ୍ରବୀଣ,
ହାତରୁ ପକାଏ ନାହିଁ ନିମିଷେ ଦୁର୍ବିଣ ।
ଗୋଟାଏ କଲା ସେ କାମ ଓଡ଼ିଶା ସକାଶେ,
ସେଥିପାଇଁ ତାହା କଥା ମୋ ମନକୁ ଆସେ ।
ବଣର ମାଳତୀ ପରି ପଠାଣି ସାଆନ୍ତେ,
କାହିଁ ପଡ଼ିଥିଲେ ବଣ ଭିତରେ ଏକାନ୍ତେ ।
କେବେ କେହି ଲୋକ ତାଙ୍କୁ ନ ପଚାରେ ଥରେ,
ଯୋଗେଶ ଚିହ୍ନାଇ ଦେଲେ ଭାରତ ମଧ୍ୟରେ ।
ଆମ୍ଭମାନଙ୍କର କଲ ଭାରି ଉପକାର,
ହେ ଯୋଗେଶଚନ୍ଦ୍ର ରାୟ ଜୁହାର ଜୁହାର ।

ହେ ବେଦାନ୍ତମୂରତି ବୈଦ୍ୟନାଥ ବାହାଦୁର,
ତହିଁ ଉପାଧି ନାମଟା ତ ବହୁଦୂର ।
ବେଳେ ବେଳେ ଭାଳି ଭାଳି ହୋଇଯାଏଁ ବଣା,
ନାମ ଅନୁରୂପ କାମ ଗଲା ନାହିଁ ଜଣା ।
କାମ ଯୋଗେ ନାମ ହୀନା ହୁଏ ଚିରସ୍ଥାୟୀ,
ଟଙ୍କା ସୁନା ଯାଏ ନାହିଁ ସାଙ୍ଗରେ ଗୋଡ଼ାଇ ।

ହେ ପ୍ୟାରୀ ଆଚାର୍ଯ୍ୟ ଭାଇ ଫାଟିଯାଏ ଛାତି
ସେ ଟି ଗୋଟି ମନେ କରି ତୁମ୍ଭ ପତି ଖ୍ୟାତି ।
ଝାଡ଼ାକରି ଦେବେ ପାର୍ଶ୍ୱ ହେଉଛି ହତାଶେ,
କେ ଯିବ ଔଷଧ ଘେନି ଆଉ ତାହା ପାଶେ ?
ଓଡ଼ିଶାର ଇତିହାସ ଲେଖିଥିଲ ପ୍ୟାରୀ,
ଏମନ୍ତ ସୁନ୍ଦର ଲେଖା ନ ଦେଖେଁ କାହାରି ।
କେତେଜଣ ଭଲଲୋକ ଖଟ କଥା କହି,
ପଢ଼ିବାକୁ ଦେଲେ ନାହିଁ ଇସ୍କୁଲରେ ବହି ।

ଛି ଛି ଭଲଲୋକ ଯେବେ ବୋଲିବ ତାହାଙ୍କୁ,
କଳିଆ ଖଳୁଆ ଆଉ ବୋଲିବ କାହାକୁ !
ଗରିବର ପୁଅ ପ୍ୟାରୀ ଯାହା ଅଛି କରି,
ଲକ୍ଷପତି ହେଲେ ମଧ୍ୟ ଯିବ ଅପସରି ।
ମରନ୍ତି ତ ଦିନେ, ନୋହେ ମରିଛ ଅକାଳେ,
ପ୍ୟାରୀ 'ଏକାଡେମି' ନାମ ଥିବ କାଳେ କାଳେ ।

ଧନ୍ୟହେ ସୁଦାମଚନ୍ଦ୍ର ବିଖ୍ୟାତ ଉତ୍କଳେ,
ପୁରୁଷସିଂହଟା ବୋଲି ଡାକନ୍ତି ସକଳେ ।
ରାଜ ଦରବାରେ ଭଲ ଅଛି ନାମ ଡାକ,
କରି କିଛି କାମ ବଞ୍ଚିଯାଉ ଦେଶଯାକ ।
ଜଣା ଅଛି ଜଣେ ତୁମ୍ଭେ କବିତା-ରସିକ,
ଗୁହାଁ ଦେଇ ବୋଲ ଏଟା କାଚ, ଏଟା ହୀରା ।
ଦରିଦ୍ର କବିଙ୍କୁ କିଛି କିଛି କର ଦାନ,
ଲୁନ ଲୁନ କେହି ଯେହ୍ନେ ନ ପାଏ ସନ୍ଧାନ ।
କଥାଖୋଜା ଲୋକ ଥୋକେ ଛନ୍ତି ଜଗତରେ,
ସୁଙ୍ଘି ସୁଙ୍ଘି ଲୁଚା କଥା ଶୁଣନ୍ତି କାନରେ ।

ଉତ୍କଳର ଯୋଗ୍ୟ ପୁତ୍ର ଶ୍ରୀ ନନ୍ଦକିଶୋର,
ରୂପେ ଗୁଣେ ଯୋଗ୍ୟତାରେ ଶ୍ରୀନନ୍ଦକିଶୋର ।
ତୁମ୍ଭର କବିତାମାଳା ଦିଏ ଲୋକେ କହି,
ଚିତ୍ରା ବିନା କଲମରୁ ପଡ଼ୁଛି ବା ବହି ।
ଓଜନେ କିତାପ ଲେଖିଅଛ ସାନ ସାନ—
ମୋ ବିଚାରେ ପରିଚୟ କବିତ୍ୱ ମହାନ ।
ସ୍ୱାଭାବିକ କବି ବୋଲି ଥିଲି ଲୋକେ ଜଣା,
ସରକାରୀ କାର୍ଯ୍ୟେ ଚିହ୍ନାଗଲା ଗୁଣପଣା ।
କି ସୁନ୍ଦର ରସ ପଲ୍ଲିବାଳିକା ରଚନ,
ସରଳ ତରଳ ପୂତ ସୁନ୍ଦର ପବନ,
ପଢ଼ିଗଲା ବେଳେ ପଲ୍ଲି ପ୍ରସଙ୍ଗ ବାରତା,
କେହି କବି କହି ନାହିଁ ଏ ପ୍ରକାର କଥା ।
ଉଚ୍ଚ ସ୍ଥାନ ଲଭିଅଛ ଶିକ୍ଷା ବିଭାଗରେ,
ଉଚ୍ଚ କୀର୍ତ୍ତି ରଖିଯାଅ ଉତ୍କଳ ଦେଶରେ ।

କରନ୍ତୁ ତୁମ୍ଭଙ୍କୁ ମହାପ୍ରଭୁ ଚିରଞ୍ଜୀ,
କରିବ କଲ୍ୟାଣ ଯେତେ ଦିନ ବଞ୍ଚିଥିବ ।

ମୃତ୍ୟୁଞ୍ଜୟ କାବ୍ୟତୀର୍ଥ ଶ୍ରୀବାଣୀଭୂଷଣ,
ଧୀର ଶାନ୍ତ ଜ୍ଞାନୀ ମିଷ୍ଟ ବାଣୀରେ ଭୂଷଣ ।
ଜଣାଗଲ ତୁମେ ଏକା ଗୋଟାଏ ପଣ୍ଡିତ,
ଲେଖି ପାର ପ୍ରକୃତରେ ଜୀବନ ଚରିତ ।
ଅମୂଲ୍ୟ ସଂସ୍କୃତ ଭାଷା ରତନଭଣ୍ଡାର,
ଉତ୍କଳରେ ଅନୁବାଦ କରୁଛ ପ୍ରଚୁର ।
ଯେତେକ ନାଟକ କରିଛନ୍ତି ଅନୁବାଦ,
ପାଠ ମାତ୍ର ଦୂର ହୁଏ ମନରୁ ବିଷାଦ ।
ଦୃଢ଼ରୂପେ ବୋଲି ପାରେ, ଉତ୍କଳ ଭାଷାରେ,
ଏଥୁଁ ବଳି ଭଲ କେଭେ ହେବାକୁ ନ ପାରେ ।

ହେ ବ୍ରଜସୁନ୍ଦର ବାବୁ ବି. ଏ. ପାସ କରି
ଆଚ୍ଛା କଥା ତୁମ୍ଭେ ଯାହା ନ କଲ ନୌକରି ।
ଥୁଆ ଅଛି ଜମିଦାରୀ ଖଜଣା ସଲାମି,
କାହିଁ ବା କରିବ ଯାଇଁ ପରର ଗୋଲାମୀ !
କରି ନିତ୍ୟ ମାତୃଭାଷା ଉନ୍ନତି କାମନା,
ମୁକୁର ପ୍ରେସକୁ ଦେଖି ଅଛୁ ଭଲ ଜଣା ।
ଜଣା ମଧ୍ୟ, ଧାଇଁ ବୁଲ ସ୍ୱଦେଶ କଲ୍ୟାଣେ,
ତେରଦିନୁ ଭଲ ଜାଣିଅଛୁଁ ଆମ୍ଭେମାନେ ।
ଅବଶ୍ୟ ଅବଶ୍ୟ ଏହି କାମଟା ଅସଲ,
ଟିକାଏ ଚଞ୍ଚଳ ହେଲେ ହେବ ଭାରି ଭଲ ।
କାମ ପଡ଼ିଗଲ ବେଳେ କର ଯେବେ ମଠ,
ଜାଣିଥିବ ଭଲରୂପେ ଚଳେ ନାହିଁ ମଠ ।

କବି ଭକାରୀଙ୍କ ତେର ପଢ଼ିଛୁ କବିତା,
ହାତବେଲାରେ ବସି ବସି କରେ ମନେ ଚିନ୍ତା ।
ଆଚ୍ଛା ଅଛି ଏହାଙ୍କର ପ୍ରତିଭାର ବଳ,
କରିବେ ନିଶ୍ଚୟ ମାତୃଭାଷାକୁ ଉଜ୍ଜ୍ୱଳ ।
'କରଣ ହାଆନ୍ତଙ୍କର ଜନ୍ମ' ଗୀତ ଗାଇ,
ଆଖିରେ ଆଙ୍ଗୁଳି ଭୁଞ୍ଜି ଦେଇଛ ଦେଖାଇ ।

ଏଥିରେ ତାହାଙ୍କ ଯେବେ ନ ହେବ ଚେତନା,
ହେଉନ୍ତୁ କଙ୍ଗାଳୀ ମୂଢ଼େ, କିଆଁ କର ମନା !

ଝିଙ୍ଗାରପୁର ଏ ସୁଖେ ଥାଅ ଚିରଦିନ,
ସବୁବେଳେ କର ଧିନ୍ ତାକ୍ ତାକ୍ ଧିନ୍ !
ଦକ୍ଷିଣୀ ଚୌପଦୀ ଆଉ ଗୋଟିପୋ' ତାଧିଆ,
ଶୁଣି ଶୁଣି କାନ ହୋଇ ଗଲଣି ବଧିଆ ।
ଗାଅ କିଛି ନୂଆ ଗୀତ ତୁଷ୍ଟି ହେଉ ମନ,
ଓଡ଼ିଶାର ଲୋକେ ବୋଲୁଥିବେ ଧନ୍ୟ ଧନ୍ୟ ।
ଦେଖାଯାଉ କାହିଁ ଏକ ନୂଆ ଯାତ୍ରାଦଳ,
କେ ଶୁଣିବ ତୁଚ୍ଛାଟାରେ ପିଟିଲେ ମାଦଳ ।
ଅଛି କି ଏମନ୍ତ କିଛି ନୂତନ ରାଗିଣୀ,
ମୂଳଠାରୁ ବଢ଼ି କଳନ୍ତର ଯିବ ଜିଣି ?
ବଞ୍ଚାଇ ରଖିଛ ଏକା ଓଡ଼ିଆ ସଙ୍ଗୀତ,
ଇତିହାସେ ସ୍ୱର୍ଣ୍ଣାକ୍ଷରେ ରହିବ ଲିଖିତ ।

ଡେପୋଟି ଇନସିପେକ୍ଟର ପ୍ୟାରୀ ସେନେ,
ଛାପାଖାନାଠାକୁ ଆଉ ଆସୁ ନାହଁ କେନେ ?
ଖଣ୍ଡେ ଚଟି ବହି ଲେଖି ଚଳିଲ କି ଥକି,
ଏତେ ଅଳସୁଆ ହେଲେ କାମ ଚଳିବ କି !
ତୁମ୍ଭ ସରି ଦେଖି ନାହିଁ ଖାଣ୍ଟି ଲୋକ ଜଣେ,
ମିଷ୍ଟଭାଷୀ ସଦାଶୟ ସାଧୁ ଭଦ୍ରଜଣେ ।
ଦୁଇ ଚାରି ଖଣ୍ଡ ପୋଥି ଲେଖିଦିଅ ଭାଇ,
ଯାଅ ଯାଅ My friend, good bye
good bye !

ଆହେ ଦାମୋଦର କାହିଁ ଲୁଚାଇଛ ମଥା,
ଗାଅ ଶୁଣେ କପିଳାସ ପୁଣ୍ୟକ୍ଷେତ୍ର କଥା ।
ଆସ ଲେଖ ଗାଅ ଆଉ ଦୁଇ ଚାରି ଗୀତ,
ମାଟି ହୋଇ ଯାଉଅଛି ଓଡ଼ିଆ ସଙ୍ଗୀତ ।

ସୀତାନାଥ ଭଲ ଅଛ ମନରେ ବିଚାରି,
ଲେଖ ବସି ପୋଥି ଆଉ ଖଣ୍ଡ ଦୁଇ ଚାରି ।

ଶସ୍ତା ଦାମ କରି ଗୃହଆଡ଼େ ଦଅ ବୁଣି,
ଗବାକ୍ଷ ଆପନୁ ଧାଇଁ ଦୂର ଦେଶୁଁ ଶୁଣି ।

ବନ୍ଦଗୀ ବନ୍ଦଗୀ ଭାଇ ଜଗମୋହନ ଲାଲ,
ଆଜ ତ ବୁଝିଲ ନାହିଁ ହରମିଷ୍ଟ ହାଲ ।
ବସିଅଛ ବୁଢ଼ା ହୋଇ ଖାଇ ପେନସନ,
ଦେଶପାଇଁ କର କିଛି, ଏହି ନିବେଦନ ।

ଡୋମପଡ଼ା ପିଲି ରଜା ଶୁଣ ମୋର ବାପ,
ପଢ଼ାଇଅଛନ୍ତି ବାପା ବହୁତ କିତାପ ।
ପାଞ୍ଚଟା ଆଗରେ ଯେବେ ହେବ ନାହିଁ ଖାଡ଼ା,
ତେବେ ତ ବୋଲିବେ ଲୋକେ ଏଟା ଡୋମପଡ଼ା ।

ଭଲ କରିଛନ୍ତି ରଥେ ବାମୁଣପଣିଆ,
ପୁସ୍ତକ ଛପାଇ ଦେଇ ଅଣେ ଦଅଣିଆ ।
ଆଚ୍ଛା ହେଲା, ଭଲ ହେଲା, ପେଟ ଚଳୁଥାଉ,
ଖଣ୍ଡକାଟେ ପୋଥି ମଧ୍ୟ ଛାପା ହୋଇଯାଉ ।

ଆଗେ ଆଗେ ଆସିଥିଲେ ଯେତେ ମିସନାରି,
ସେହି ସବୁ ସାହେବଙ୍କୁ ପୂଜା କରେଁ ଭାରି ।
ପ୍ରଥମରେ ପଢ଼ାଇଲେ ଇସ୍କୁଲିଆ ପାଠ,
ପ୍ରଥମରେ ଦେଖାଇଲେ ଛାପାଖାନା ବାଟ ।
ଛାପାପୋଥି ଆଣି ଦେଖାଇଲେ ପ୍ରଥମରେ,
ଔଷଧ ବାଣ୍ଟିଲେ ପ୍ରଥମରେ ଘରେ ଘରେ ।

ସାଧୁ ସାଧୁ ସାଧୁ ରାୟ କଲ ସାଧୁ କର୍ମ,
ଛାଡ଼ିଅଛ କୁଳ ପାଳିବାକୁ ବ୍ରାହ୍ମ ଧର୍ମ ।
ଛାତି ଫାଟିଯାଏ ଭାଳି ସେ କଥା ସକଳ,
ପ୍ରଭୁ ଆଜ୍ଞା ହେଲ ତୁମ୍ଭ ଜୀବନେ ସଫଳ ।

ଉତ୍କଳ ମଧ୍ୟରେ ଜଣେ ନରେନ୍ଦ୍ର ସର୍କାର,
ଧରିବ ତାହାଙ୍କୁ ଯେବେ ପଡ଼ିବ ଦର୍କାର ।
କେବଳ ନୁହନ୍ତି ସେହି ଉତ୍କଳରେ best,
ଦେଖିଛି ବହୁତ ଥର, ଭାରି ସେ honest,

ଗଦେଇ ଛଡ଼ାଇ ନନା ଓଲଗି ଓଲଗି,
ଡାକୁ ବା ନ ଡାକୁ କେହି ଦେଖି ବୁଲ ରୋଗୀ ।
ପୂଜା ନ ପାଇବେ କଲିକାଳରେ ବ୍ରାହ୍ମଣ,
ସେହିପରି ଘୃତ ତୈଳ ବଟିକା ପାଞ୍ଚଣ ।
ଦେଶୀ ଚିକିତ୍ସାରେ ନାହିଁ ଲୋକଙ୍କ ଆଦର,
କରିବେ ସମସ୍ତେ ପୂଜା ଇଂରାଜୀ ଡାକ୍ତର ।
ଦିନେ ବାବୁମାନଙ୍କର ଫିଟି ପାରେ ଜ୍ଞାନ,
ସେ ଦିନ ପାଇବ ପୂଜା ଚରକ ନିଦାନ ।
ଆପଣା କାମରେ ହେଳା କର ନାହିଁ ଭାଇ,
ବୁଲି ବୁଲୁଥିଅ ମୂଳମୂଳିକା ଗୁଣ୍ଡାଇ ।

Educated ବାବୁମାନଙ୍କର ବ୍ୟବହାର
ଦେଖି ଦେଖି ହେଲିଣି ମୁଁ ନିହାତ ନାଚାର ।
Old fool prejudice ପକାଇଛ କାଟି,
କଥାବେଳେ ମେଲିଯାଏ ଦେଢ଼ଫୁଟ ପାଟି ।
Science, logic ସବୁ ପକାଇଛ ଖଣ୍ଡି,
ବାଟ ଚାଲି ଜାଣୁ ନାହିଁ ପଡ଼ୁଅଛ ଝୁଣ୍ଡି ।
କୋଆଁଟ୍ ସିଦ୍ଧାନ୍ତ ଘୋଷିବାରେ ଦେଇ ମନ,
ଫିଟାଇ ଦେଖିଲ ନାହିଁ ଗୌତମ ଦର୍ଶନ ।
ଇଂରେଜୀ ନାଟକ କାବ୍ୟ ଦେନେ ଅଛ ମାତି,
ଫିଙ୍ଗିଦେଇ ଭଟ୍ଟି କାଳିଦାସ ଭବଭୂତି ।

କହିବ କାହାକୁ ଦୁଃଖ ନ ବୁଝିଲ ବେଳେ,
ସେ ସବୁ ଯେ ଘରଧନ ନୁହେ କେତେବେଳେ
ଆଗେ ଥିଲା ଦେଶେ ଗୋଲସ୍ତାନ ବୋସ୍ତାନ,
ଏତେବେଳେ ଚିହ୍ନ ନାହିଁ ଆଖୁନଜୀ ଅସ୍ଥାନ ।
ଇଂରେଜ ଇଂରେଜୀ ବିଦ୍ୟା ରଖିଯିବେ ନାହିଁ,
ତେତେବେଳେ ରହିଥିବ ଜଳଜଳ ଚାହିଁ ।
ଯେଉଁ ପାଠ ପଢ଼ିବାରେ ଦେଇଅଛ ମନ;
ନ ବରୁର ସେ ତ ନୁହେ ତୁମ୍ଭ ଗଣ୍ଠିଧନ ।
ପଢ଼ ଇଙ୍ଗରେଜୀ କେହି ମନା କରୁ ନାହିଁ,
କିନ୍ତୁ ବାପା କାମ କର ଜାତିକୁଳ ଚାହିଁ ।

ଘୃଣା କରୁଅଛ ମାତୃଭାଷା ପଢ଼ିବାକୁ,
ହାୟ ହାୟ ଲାଜ କଥା କହିବ କାହାକୁ ।
ବୋଲିବ କଙ୍ଗାଳ ତୁମ୍ଭ ଘରେ ପାଠ ନାହିଁ,
ଆପେ ଲେଖ, ଆପେ ପଢ଼, ରଖ ପୁଅ ପାଇଁ ।
ତିନିଶ ବରଷ ଆଗେ କି ଥିଲା ଇଂରେଜୀ,
ଦେଖ ତ ବଙ୍ଗଳା ଭାଷା କି ହେଲାଣି ଆଜି ।
ଯତ୍ନେ ହେଲା ଅବା ଆପେ ହୋଇଛି ଏପରି,
ତୁମ୍ଭ ମାତୃଭାଷା କିପାଁ ନ ହେବ ସେପରି ?
କେତେ ବାବୁମାନଙ୍କର ଦେଖିଛି ଦୁର୍ଦ୍ଦଶା,
ଲାଜ ମାଡ଼େ କହିବାକୁ ନିଜ ମାତୃଭାଷା ।
ନାଗର ହାଲତେ ଯେବେ ହୁଏ କହିବାକୁ,
ବଡ଼ ହସ ମାଡ଼େ କିନ୍ତୁ ତାହା ଶୁଣିବାକୁ ।
ଓଡ଼ିଆ ଏଗାରପଣି ବାକି ଇଙ୍ଗରେଜୀ,
ଅଦ୍ଭୁତ ଖେଚୁଡ଼ି ଏକ ହୁଏ ମିଶି ସାଜି ।

ଭଲ ଗୋଟେ ମାତୃଭାଷା କିସ ହେବ ଭାଇ,
ଚଳି ଯାଉଅଛି କାମ ରୁଣ୍ଡାଇ ପୁଣ୍ଡାଇ ।
କୁକୁର କପାଁଇ ଗୋଟେ ବନାଇବ ଘର,
ଗୃଠିବୁଲେ ବାରମିଶା ଅଇଣ୍ଠାପଚର ।
ସମ୍ଭାଳି ପାଇଲି ନାହିଁ କହିଲି ହ' କଥା,
ବାବୁମାନେ ଭାଙ୍ଗ ନାହିଁ ଠେଙ୍ଗାରେ ମୋ ମଥା ।

Learned ବାବୁ ଦେଖି ବିଚାରେଁ ମନରେ;
ଡାରୁଇନ ଆସିଥିଲେ ଏ ଦେଶକୁ ଥରେ !
ଏମାନଙ୍କୁ ଦେଖି ବୋଲିଛନ୍ତି ଅନୁମାନେ,
ମାଙ୍କଡ଼ ବଂଶରୁ ଜନ୍ମିଛନ୍ତି ଲୋକମାନେ !
ଇଂରେଜୀକୁ ହେଉଥାଅ ଦିନ ରାତି ଘୋଷି,
ନ ଛୁଅଁ ପଛକେ ପାଣି ପଦାଆଡ଼େ ବସି ।
ନିଧୂମ ଖରାରେ ପିନ୍ଧି ବନାତର କୋଟ,
ଫିଙ୍ଗିଦେଇ ଛେନାବଡ଼ା ଖାଅ ବିସ୍କୋଟ ।

ପିନ୍ଧ waist-coat କଥା କୁହ ଇଂରେଜୀର,
ଖାଅ ଦରସିଝା ମାଂସ ଦୁର୍ଗନ୍ଧ ପନିର,
ଠିଆ ହୋଇ ମୁତ, ଅବା ଘଷ ନାହିଁ ଦାନ୍ତ,
ଇଂରେଜ ନ ହେବ, ଥିବ ଓଡ଼ିଆ ନିତାନ୍ତ !
ମୟୂର ଲାଞ୍ଜକୁ ଗୁଞ୍ଜି ବୁଲ ନାହିଁ ଆଉ,
ନ ହେବ ମୟୂର, ଥିବ ଯେ କାଉ ସେ କାଉ ।
Nature ଯାହାକୁ ଯାହା ଦେଇଅଛି ବାଣ୍ଟି,
ନ ପାରିବ change କରି ତାହା ଘୂରି ଘାଣ୍ଟି ।
ଯାହା କିଛି ବିଚାରିଛ ସବୁ କଥା ଭୁଲ,
ହୋଇ ନ ପାରିବ କେତେବେଳେ successful.
କର ନିଜ ଦେଶ ପୁଣି ଭାଷାର ଉନ୍ନତି,
ଲାଗିପଡ଼, ଦୂରିଯାଉ ଜାତିର ଦୁର୍ଗତି ।
ଆହେ ବାବୁମାନେ କରେ request excess,
ମୋ ନାମରେ ନ ଆଣିବ defamation case.
ନିତାନ୍ତ ରାଗରେ ଯେବେ ହେବ ଗରଗର,
Withdraw କରିନେବି ଲେଖାଟା ମୋହର ।

ଇଚ୍ଛା ଥିଲା ଦେଖିଯିବି ଖଣ୍ଡପଡ଼ା ଗଡ଼,
କଣ୍ଟିଲୋ ପାଖରୁ ଆଉ ନ ଚଳିଲା ଗୋଡ଼ ।
ନିଧୂମ ଦେଉଛି ମାଡ଼ କଂସାରୀଟା କଂସା,
ଦେଖି ପ୍ରଜାମାନଙ୍କର ଉଡ଼ିଯାଏ ହଂସା ।
ପଇସା କଉଡ଼ି ସବୁ ଗନ୍ତାଘରେ ଅଣ୍ଟା,
ଦେବା ନେବା ବେଳେ ବାଜେ ଠଂ ଠଂ ଘଣ୍ଟା ।
କିବା ବୁଦ୍ଧି ବାହୁବଳ ଯିବ ହାରି ମାନି,
ଲୋକରେ ଜଣାଏ କିନ୍ତୁ ମୁହିଁ ମହାଜ୍ଞାନୀ ।
ଡରିବ ନାହିଁଟି ବନ୍ଦା କହିବାକୁ ହକ୍,
ମୂଳଠାରୁ ମୁଣ୍ଡଯାଏଁ ସବୁ ଠିକ୍ ଠିକ୍ ।

ବନ୍ଦଇ ପଠାଣି ସାମନ୍ତ ତୁମ୍ଭ ଶ୍ରୀଚରଣ,
ଖଣ୍ଡପଡ଼ା ମଣ୍ଡଳରେ ଅମୂଲ୍ୟ ରତନ ।
ନୁହ ତୁମ୍ଭେ ସିଂହାସନେ ଲଗ୍ନ ଝୁଟା ମୋତି,
ଜ୍ଞାନ-ସିଂହାସନେ ସଦା ସ୍ଥିର ତୁମ୍ଭ ମତି ।

ଯେ କୀର୍ତ୍ତି ଉଡ଼ାଇ ଦେଲ ଭାରତ ମଧ୍ୟରେ,
ରାଜାମାନେ ନ ଦେଖିବେ ସ୍ୱପନରେ ଥରେ ।

ଯାଉଅଛ ପଶ୍ଚିମକୁ ଲେଖେ ସଲଖେ,
ଦଶପଲ୍ଲୀ ରାଜଧାନୀ ରଖିଗଲ ପାଖେ;
ଅବଶୋଷ ରହିଗଲା ମନରେ ମୋହର,
ଦେଖି ନ ପାରିଲି ବୋଲେ ତୁମ୍ଭ 'ଗନ୍ଧାଘର' ।
ବ୍ରହ୍ମପୁରୀ ପାଟ ଯଥା ନ' ହାତ ଚଉଡ଼ା,
ସାଢ଼େ ଷୋଳହାତି ପିନ୍ଧା ନ' ହାତ ପଛୁଡ଼ା,
ଖଣ୍ଡି ସୁନା ଜରିବର୍ଣ୍ଣି ଜଡ଼ାଉ ପଦକ,
ଶୁଣି ନ ପାରିଲି ମଧ୍ୟ ସେ ଆଜ୍ଞା ପଦକ ।

ମନେ କରିଥିଲି ଯିବି ଆଠଗଡ଼ ବାଟେ,
ଡର ମାଡ଼ୁଅଛି ପୁଣି କପାଳ ବା ଫାଟେ ।
କାହିଁକି ଡରିବି ଏତେ ଏଡ଼େ କି ଗରଜ,
ଖାଇ ନାହିଁ ତୁମ୍ଭ ଗନ୍ଧାଘରୁ ମୁଁ କରଜ ।
ଯେବେ କେହି ଲୋକ ମୋତେ ଧରିବ ନଠାଇ,
ଦୁଇ ଗୁରି ଦମ ଟାଣି ପଡ଼ିବ ଜୁଲାଇ ।

ସାର୍ଥକ ମୋହର ଜନ୍ମ ଶୁଣିଲି ସେ ନାମ,
ମହାରାଜ ଭଗୀରଥ ସର୍ବ ଗୁଣଧାମ ।
ତାଙ୍କ ପରି ଆଉ କେହି ରାଜା ହେବ ଜଣେ,
ପାଳିବ ସନ୍ତାନ ପରି ନିଜ ପ୍ରଜାଗଣେ ?
ତାଙ୍କ ଗଲାଦିନୁଁ ମୁହିଁ ଛାଡ଼ିଅଛି ଆଶା,
ନ୍ୟାୟଶାସ୍ତ୍ର ଘଟପଟ ଉତ୍କଟ ମୀମାଂସା ।

ଆହେ ବନମାଳି କେତେ ଅରଜିଲ ବିତ୍ତ,
ସେଥିରୁ କି ଦେଶପାଇଁ ନ ଦେବ କିଞ୍ଚିତ ?
ତୁମ୍ଭ ପରି ଶାନ୍ତଶୀଳ କ୍ଷମାବନ୍ତ ଜଣେ,
ଦେଖିବାର ନାହିଁ ପୁଣି ନ୍ୟାୟବନ୍ତପଣେ ।
ଭଗୀରଥ ବେଳୁ ତୁମ୍ଭେ ଭୁଲ ନାହିଁ ଭଲ,
କରି ଅଛ କାମ ତାଙ୍କ ଗୁଣ ଅନୁଯାୟୀ ।

ତୁମ୍ଭ ସଙ୍ଗେ ଯେଉଁ ଲୋକ କହି ନାହିଁ କଥା,
ନ ଜାଣେ ସେ କି ପଦାର୍ଥ ଅଟେ ସୁଶୀଳତା ।

ହାୟ ରେ ନିଷ୍ଠୁର କାଳ କି କଲୁ କି କଲୁ,
ଦୀନବନ୍ଧୁ ମହେନ୍ଦ୍ରକୁ ଅକାଳେ ହରିଲୁ !
ଉଇଁ ଆସୁଥିଲା ଚନ୍ଦ୍ର ଓଡ଼ିଶା ଗଗନେ,
ନେଇଗଲୁ ତାଙ୍କୁ, ଦୁଃଖ ନ ହେଲା କି ମନେ ।
କିଏ ଅଛି ଦୟାଶୀଳ ଦାତା ତାହା ପରି,
ହାୟ ହାୟ ସବୁ କଥା ଯାଇଅଛି ସରି ।

ମାତଃ ସୁଲକ୍ଷଣା ଦେବି, ଯୋଡ଼ି ବେନି କର,
ଦଣ୍ଡବତ କରୁଅଛି ଚରଣେ ତୁମ୍ଭର ।
ଢେଙ୍କାନାଳେ ଥିଲି ମୁହିଁ ଅଢ଼ାଇ ବରଷ,
ସେତେବେଳେ ମୋତେ ଜଣା ଥିଲା ନାହିଁ ଯଶ ।
ଜଣା ଥିଲେ ଆପଣଙ୍କ ଏତେ ଧାର୍ମିକତା,
ପାଶେ ବସି ଶୁଣିଥାନ୍ତି ଦୁଇ ଗୁରି କଥା ।
କେଉଁ ଗୁଣେ କି ତପସ୍ୟା କରି ବୋଲ ସତି,
ଉତ୍କଳ ଲଳନାକୁଳେ ହେଲ ଗୁଣବତୀ ।

ରାମଚନ୍ଦ୍ର ବୀରବର ତାଳଚେରପତି,
ହାୟ ହାୟ କି କଲୁ ରେ ନିଷ୍ଠୁର ନିୟତି !
ନବୀନ ବୟସେ ତାଙ୍କୁ ନେଇଗଲୁ କାହିଁ,
ବାଳିକା ରାଣୀଙ୍କି ଦୁଃଖସାଗରେ ଭସାଇ ।
ପାସୋରି ତ ଯିବ ନାହିଁ ତାହା କଥା ମନୁ,
ପଢ଼ି ଗ୍ରନ୍ଥ ଭାଗବତ ପରାଶର ମନୁ ।

ଆହେ ମୁନପାଳ ଥିଲ ସାନ ରଜା ଜଣେ;
ମାତ୍ର କେତେ ରଜାଠାରୁ ବଡ଼ ଦାମୀପଣେ ।
ରଖି ଯାଇ ନାହିଁ ସତ ଗନ୍ଧାଘରେ କିଛି,
ସୁନା ରୂପା ଗୁଡ଼ା ତୁମ୍ଭ ସଙ୍ଗରେ ଯାଇଛି ।

ଶ୍ରୀ ମହେନ୍ଦ୍ରଦେବ ମୋର ପଡ଼ୁଛି ମନରେ,
କଟକରେ ଦେଖିଥିଲି ଆପଣଙ୍କୁ ଥରେ ।

ତେର ନେକନାମ ଅଛି ତୁମ୍ଭ ସରକାରେ,
ନ ଜାଣେ କେତେ ଅଛ ପ୍ରଜାଗଣଠାରେ ।

ଦୁର୍ଭିକ୍ଷକାଳରେ କଲ୍ପ ଥିଲ ହାତଫିଟା,
ଏ କଥାଟା ଗୃହଆଡ଼େ ଅଛି ତୋଳପିଟା ।
ଦେଖାଅ ଆମ୍ଭଙ୍କୁ ଦୁଇ ଗୃହଟା ନମୁନା,
ବୁଝିବୁଁ ଗିଲଟି ନହିଁ ଖାଣ୍ଟି ସଇ ସୁନା ।
ଭରି ଖୁସି ହେଲ ପଢ଼ି ପଣ୍ଡିତସର୍ବସ୍ୱ,
ଆଶା ଅଛି ଆଉ କିଛି ପାଇବ ଅବଶ୍ୟ ।

ହେ ସୁଜଳ ମହାରାଜ କରେଁ ନମସ୍କାର,
ହିତୈଷିଣୀ ତୁମ୍ଭ ଯଶ କରୁଛି ପ୍ରଚାର ।
ମୁଗଲ୍‌ବନ୍ଦୀ ଛତିଶ୍‌ଗଡ଼ ବହୁତ ଅନ୍ତର,
ଦୁହିଙ୍କୁ ମିଳାଇ ଦେଇଅଛ ପରସ୍ପର ।
ବାମଣ୍ଡା ରାଜ୍ୟରେ କରୁଅଛ ରାଜପଣ;
ମାତ୍ର ଜ୍ଞାନରାଜ୍ୟେ ଅଟ ନୃପତି ଆପଣ ।
ହେ ରାଜନ୍ ମାତୃଭାଷା ଉନ୍ନତିକାରଣେ,
ଉତ୍ସାହିତ କରୁଅଛ ଗ୍ରନ୍ଥକର୍ତ୍ତାଗଣେ ।
କେତେ ଥିଲେ କେତେ ଅଛନ୍ତି ଗଡ଼ଜାତେ ରଜା,
ଉଡ଼ାଇଛି କିଏ ତୁମ୍ଭ ପରି କୀର୍ତ୍ତିଧ୍ୱଜା ?
ବୁଲେଁ ସବୁଠାରେ ତୁମ୍ଭଗୁଣ ଗାଇ ଗାଇ,
ମହାରାଜ ବାହାଦୁର K. C. S. I.
ଓଡ଼ିଶା ବିକ୍ରମାଦିତ୍ୟ ସୁବର୍ଣ୍ଣ ଅକ୍ଷରେ
ଇତିହାସେ ଲେଖା ରହିଥିବ ଜଗତରେ ।
ସାମାନ୍ୟ ମନୁଷ୍ୟ ମୁହିଁ କି ଗୁଣ ଗାଇବି,
ମହାରାଜ ବାହାଦୁର ହୁଅ ଚିରଜୀବୀ ।

ମୋହର ବିନତି ଶୁଣ ମାଲମତି ନନା,
ହିତୈଷିଣୀ ଲେଖିବାକୁ ନ କରିବ ମନା ।
ଏକକାର୍ଯ୍ୟ କରି ଲାଭ ପାଇବ ସକଳ,
ଯଶ ଅର୍ଥ ବିଦ୍ୟା ନାମ ଚତୁଃବର୍ଗ ଫଳ ।
ତୁମ୍ଭ କଥା ତେର ଥର ପକାଏ ମୁଁ ମନେ,
ଅଟ ଏକା self-made man ତୁମ୍ଭେ ଜଣେ ।

ଜାଗାଶିରେ ଧରି ଏକା ହୋଇଅଛି ନନା,
ପରଶମଣିକୁ ଛୁଇଁ ଲୁହା ହୁଏ ସୁନା ।

ଶ୍ରୀମାନ ସଚ୍ଚିଦାନନ୍ଦ ଆନନ୍ଦ-ପ୍ରତିମା,
ଚହଟି ଆସୁଛି ତୁମ୍ଭ ଗୌରବ ମହିମା ।
ବୋଲିଛନ୍ତି ବିଷ୍ଣୁଶର୍ମା ଶାସ୍ତ୍ରେ ଅଛି ଶୁଣି,
ପଦ୍ମରାଗ ଆକରରୁ ବାହାରଇ ମଣି ।
ପଶ୍ଚିମ ଆକାଶେ ଉଇଁ ଆସୁଅଛି ଚନ୍ଦ୍ର,
ଦୀର୍ଘଜୀବୀ ହୁଅ ବାପା କରେଁ ଆଶୀର୍ବାଦ ।

ପାଇଲି ଯୋଡ଼ିଏ କବି ବାମଣ୍ଡାବଂଶରୁ,
ଅବଶ୍ୟ ମଳୟେ ଜାତ ଚନ୍ଦନର ତରୁ ।
କ୍ଷୁଦ୍ର ସତ୍ୟ ଦୁଇଖଣ୍ଡି କବିତା ପୁସ୍ତିକା,
ନୋହୁ ବଡ଼ ଶିଳପଟା, ହୀରକକଣିକା ।
ଏହି ତ କବିତାଗ୍ରନ୍ଥ ପ୍ରଥମ ନମୁନା,
କାଞ୍ଚନ ଖଣିରୁ ଜାତ କ୍ରମଶରେ ସୁନା ।
ଉତ୍କଳର ଉଜ୍ଜସ୍ୱିନୀ ଜଣା ସର୍ବଲୋକେ,
ବ୍ୟାପ୍ତ ହେବ ନବ ନବ ବିବିଧ ପୁସ୍ତକେ ।

ହୋଇ ହୋଇ, ମନେ ପଡ଼ିଗଲା ଆଉ ଥରେ,
ସେ ଯେ ହରିଦାସ ବାବୁ ଥିଲେ ବାଲେଶ୍ୱରେ ।
ସେକେଣ୍ଡ ମାଷ୍ଟରୀ ଫାଙ୍କିଦେଇ ଗଲେ ପାଇ,
ବୁଲି ଏବେ ବାହୁ ଠୁକି ଛାତିକି ଫୁଲାଇ ।
ଇଚ୍ଛା ଯେବେ ହେବ ତୁମ୍ଭେ ହେଡ଼ ମାଷ୍ଟର,
କହିଦେବି ଅଛି ଏକ ଗୁପତ ମନ୍ତର ।
ଖଣ୍ଡିକାଏ ବହି ଲେଖିଯାଅ ନୂଆ ନୂଆ,
ନ ହେଲେ ମାଷ୍ଟର ମୋତେ ବୋଲିବ ମିଛୁଆ ।

ନମସ୍କାର ଶରଚ୍ଚନ୍ଦ୍ର ବାନର୍ଜୀ ପଦରେ,
ଭଲ ତ ଗାଇଲ ଗୀତ ଶାଳନ୍ଦୀକୂଳରେ ।
ଶୁଣାଗଲା ତୁମ୍ଭ କୃଷ୍ଣଭକ୍ତିତରଙ୍ଗିଣୀ,
ପଢ଼ିଅଛି ଜୟଦେବ ଗୁର୍ଜ୍ଜରୀ ରାଗିଣୀ ।

କଏ ଯାନ କଏ ବଡ଼ ଗଲି ନାହିଁ ଜଣା,
କେତେ ଥର ଭୁଲିବାକୁ ଯାଇ ହୁଏ ବଣା ।
ଚଳିଶି Battle ଦେଖି ହସୁରେ ମନରେ,
Native କି ଲେଖିପାରେ ଇଂରେଜୀ ପଦ୍ୟରେ ।

ହେ କିଶୋରୀ, କରିଅଛୁ ତୁମ୍ଭଙ୍କୁ ଭରସା,
ଗାଅ ଗାଅ ଶୁଣେ ସା ରି ଗା ମା ପା ଧା ନି ସା ।
ବାବୁଏ ବୋଲନ୍ତି ନାହିଁ ଓଡ଼ିଶା ରାଗିଣୀ,
ଦେଖାଅ ତ ବଙ୍ଗଳାକୁ ଯିବ କିନା ଜିଣି !
ସ୍ୱରଲିପି କରିଦିଅ ଯାଉ ବାଟ ଫିଟି,
ଦେଖନ୍ତୁ ସେମାନେ ଅଛି originality.
ସତ କଥା ଓଡ଼ିଆକୁ କେ ଦିବ ଆଦର,
ଗୋଟିପୋମାନେ ଯେ ଦେଇଛନ୍ତି ଶ୍ରାଦ୍ଧ କରି ।
ଜୀବନ ଉତ୍ସର୍ଗ କର କିଶୋରୀମୋହନ,
ଦେଖାଅ ଓଡ଼ିଆ ଘରେ ଅଛି ଗୁପ୍ତଧନ ।

ନୀଳାଚଳେ ନୀଳଚକ୍ର କରିଥାନ୍ତୁ ବିଜେ,
ସେ ଦେଶକୁ ମୁଁ ତ ଡରେ ଗଲି ନାହିଁ ନିଜେ ।
ଝୁମ୍ପି ଖାଇଥାନ୍ତେ ମୋତେ ପଣ୍ଡେ ହୋଇ ଠୁଳ,
ଶେଉଳକୁ ମାଡ଼ି ବସେ ଯେମନ୍ତ ପୋହୁଳ ।
କେ ରଖନ୍ତା ଧାଇଁ ଆସି ଦେଖି ମୋର ଦୁଃଖ,
ଦେଶ ଉପକାରପାଇଁ ଲୋକେ ତ ବିମୁଖ ।
ଜଣେ ବନ୍ଧୁଲୋକ ମୋର ଅଛନ୍ତି ସେଠାରେ,
କେତେ କଥା ମୋତେ ଲେଖି ଅଛନ୍ତି ଭାଷାରେ ।
ଦେଖାଇବି ବିଶ୍ୱାସରେ ପାଠକ ତୁମ୍ଭଙ୍କୁ,
ଦାଣ୍ଡରେ ପକାଅ ନାହିଁ ମାନ ଏ କଥାକୁ ।

ଗୁପ୍ତଭାଷା

ଜଗନ୍ନାଥ ମହାପ୍ରଭୁ ଶ୍ରୀଗୁରୁ ଗୋସାଇଁ,
ପୁରୀ ଜିଲ୍ଲା ପୋଷ୍ଟାଫିସ କୁଣ୍ଡିବେଣ୍ଟ ସାଇ ।
ମକର ସତର ଦିନ ବେଳ ଆଠ ଘଡ଼ି,
ନମସ୍କାର ନିବେଦନ କରେ କର ଯୋଡ଼ି ।

କୁଶଳେ ସମସ୍ତେ ଛନ୍ତି ପିଲପିଲ ଘରେ,
ତୁମ୍ଭ ଘରକଥା ଲେଖି ଫେରନ୍ତା ଡାକରେ ।
ଏ ସ୍ଥାନର କଥା କେତେ ପଚାରିଛ ମୋତେ,
ଯାହା ଅଳ୍ପ ଜଣା ଅଛି ଲେଖୁଛି ଗୁପତେ ।
ଏ ସ୍ଥାନରେ ମିଠାକଥା ଟଟା ଗୁଡ଼ ବଳି,
ପାଚିଲ ସାଲମା କମ୍ବା ଶଙ୍କରା କଦଳୀ ।
ସେବକମାନଙ୍କ ବିଦ୍ୟା କହିଲେ ନ ସରେ,
ସିଦ୍ଧି ରସୁ ଅ ଆ ସବୁ ଆଖଡ଼ା ଘରରେ ।
ବହୁତ କରନ୍ତି ଦୟା ପଣ୍ଡାଏ ଯାତ୍ରୀଙ୍କୁ,
ଗୋଟିଏ ଆଟିକା ଦେଲେ ପଠାନ୍ତି ସ୍ୱର୍ଗକୁ ।
କେତେ ଥର ଶୁଣିଅଛି ପଣ୍ଡିତଙ୍କ କଥା,
ଲମ୍ଫନ୍ତି ଝମ୍ପନ୍ତି ଶୀଘ୍ର ଯଥା ସ୍ୟାତ୍ ତଥା ।
ନ ବୁଝିଲି ନୈୟାୟିକମାନଙ୍କ ମରଜ,
କେବଳ ଦେଖିଛି ମରୁଥାଆନ୍ତି ଗରଜ ।
ଏ ସ୍ଥାନର ବଡ଼ଲୋକ ଅଟନ୍ତି ମହାନ୍ତ,
ଧର୍ମବୀର କର୍ମବୀର ଯେସନ୍ତେ ହନୁମନ୍ତ ।
ପଚାରିଛ ଏ ସ୍ଥାନର କଥା ତପସିଲ,
ସବୁ କଥା ଲେଖିବା ତ ବଡ଼ ମୁସକିଲ ।
ମାତ୍ର ନ ଲେଖିଲେ କରି ପାର ମୁହଁ ଭାରି,
ସେଥିପାଇଁ ଲେଖୁଅଛି କଥା ଦୁଇ ଚାରି ।
ପ୍ରଥମରେ ଶୁଣିଯାଅ ମନ୍ଦିରର ହାଲ,
ସିଂହଦ୍ୱାରଠାରେ ବଡ଼ ଦେଖିଲି ବେତାଳ ।
ବେତ ଧରି ବସିଛନ୍ତି ଦ୍ୱାରୀ ସିଂହଦ୍ୱାରେ,
ତାଙ୍କ ବୀରପଣ ଯେତେ ଦୁଃଖୀ ଯାତ୍ରୀଠାରେ ।
ନ ପାଇଲେ ସେମାନଙ୍କଠାରୁ ଅଣ୍ଟାଝୁସା,
ଚମକିବ ଦେଖି ବୀରମାନଙ୍କର ଘୁଷା ।
ବାଇଶପାବଚ୍ଛ ଗୁଡ଼ ଗଳିଗଲେ ଭୁଣ୍ଡେ,
ଯାତ୍ରୀମାନେ ପଡ଼ିଯାନ୍ତି ସେବକ ହାବୁଡ଼େ ।
କରଣ୍ଡିକୁ ଥଣ୍ଟେ ଆଣ୍ଟେ ଧରେ ଯେସନ୍ତେ ବକ,
ଧରନ୍ତି ଯାତ୍ରୀଙ୍କୁ ଆସି ତେସନେ ସେବକ ।
ପଇତାରେ ବାନ୍ଧି ହାତ ଲଗାନ୍ତି ପେଟରେ,
କାହିଁ ଯିବ ଯାତ୍ରୀ ଧରା ପଡ଼ିଛି ଆଣ୍ଟରେ ।

ପକାନ୍ତି ମୁଣ୍ଡରେ ତାର ଆଶୀର୍ବାଦ ଡାଳ,
ନ ପାଇଲେ କିଛି, ଚୌଦ ପୁରୁଷଙ୍କୁ ଗାଳି ।
ସିଆଣା ଲୋକଟା ମୁହିଁ ଗଲି କାଟି ବାଟ,
ଭିତରକୁ ଯିବାପାଇଁ ପଡ଼ିଛି କବାଟ ।
ଦେଖିଲି ଯୋଡ଼ା କବାଟ ଅଳ୍ପ ଅଛି ମେଲି,
ବେତ ଘେନି ଦ୍ୱାରେ ଛିଡ଼ା କଳିଯୁଗ ଚେଲି ।
ପଇସେ ପାଇଲେ ବାଟ ଦେଉଛନ୍ତି ଛାଡ଼ି,
ନିର୍ଦ୍ଧନ ଯାତ୍ରୀ ଏ ଖାଉଛନ୍ତି ବେତବାଡ଼ି ।
ଭିତରେ ପଶିଲି କେହିରୂପେ ଠେକାଠେକି,
ଧୂଳିଆ ପଣ୍ଡାଏ ତହିଁ ବସିଛନ୍ତି ଟେକି ।
ମାଳ କର, ଭୋଗ କର, ଡାକୁଛନ୍ତି ପଣ୍ଡେ,
ଦେଖିଲି ସେ କାରବାର ଛିଡ଼ା ହୋଇ ଦଣ୍ଡେ ।

ଅଳପରେ ତୁଷ୍ଟ ନୁହେଁ ଏମାନଙ୍କ ମନ,
ଧରନ୍ତି ଆସ୍ତରେ ଚପି ଯାତ୍ରୀଙ୍କ ଜୀବନ ।
କାରବାର ଦେଖି ଏଥି ପଇସା କଉଡ଼ି,
ମୋ ମନରୁ ଭକ୍ତିଭାବ ଗଲା କାହିଁ ଉଡ଼ି ।
ମନେ କଲି ବୃପୁଡ଼ାଏ ଦେବଟି ପଣ୍ଡାକୁ,
କି କହିବି ତୀର୍ଥସ୍ଥାନେ ନହିଁ ରହିବାକୁ ।
ହାୟ ହାୟ ଏତେ ବାଟ ଆସିଥିଲି ଧାଇଁ,
ପ୍ରଭୁଙ୍କୁ ଦର୍ଶନ କରି ମୁକ୍ତିଲାଭପାଇଁ ।
ସେବକ ହାତରେ ହେଉଅଛି ହରବର,
ଆଗରେ ପଇସା, ପଛେ ଦର୍ଶନ ଖବର ।
ପ୍ରଭୁଙ୍କୁ ଦର୍ଶନ କରି ହୁଅନ୍ତି କୃତାର୍ଥ,
ସେବକ ହାତରେ ପଡ଼ି ସବୁ ହେଲା ବ୍ୟର୍ଥ ।
କେବଳ ନୁହନ୍ତି ପଣ୍ଡେ ଅଛନ୍ତି ଆହୁରି
ଲମ୍ପଟତା ଜୁଆଚୋର ଚଣ୍ଡିକଟା ଚୋର !

ଲାଜ ମାଡ଼ୁଅଛି ସବୁ କଥା ଲେଖିବାକୁ,
ନ ବୁଝି ପାରିବ କିଛି ନ ଆସି ଏଠାକୁ ।
ଚୁମ୍ବକରେ ବୁଝ ଏ ସ୍ଥାନର କାରବାର,
ତୀର୍ଥସ୍ଥାନ ହୋଇଅଛି ନରକ ଗୁଲ୍‌ଜାର !

ଦେଖି ଦେଖି କଥା ସବୁ କମ୍ପୁଅଛି କାୟା,
ଧନ୍ୟ ଧନ୍ୟ ଧନ୍ୟ ପ୍ରଭୁ ଧନ୍ୟ ତୁମ୍ଭ ମାୟା !
ଆନ ଆଡ଼େ ଦେଖ ଭକ୍ତମାନଙ୍କର ମେଳ,
ସ୍ୱର୍ଗୀୟ ପବିତ୍ର ଭାବେ କରୁଛନ୍ତି କେଳି ।
ପଢ଼ୁଛନ୍ତି ନେତ୍ର ବୁଜି ଆନ ସ୍ତବରେ,
ବିଷ୍ଣୁଙ୍କ ସହସ୍ର ନାମ ଗଦ୍‌ଗଦ ଚିତ୍ତରେ ।
ଗାଏ କେହି ଜୟଦେବ ମନ କରି ସ୍ଥିର,
ପ୍ରଳୟ-ପୟୋଧି-ଜଳେ ମୀନର ଶରୀର ।
ସର୍ବାଙ୍ଗ ପୁଲକପୂର୍ଣ୍ଣ, ନେତ୍ରୁ ବହେ ଧାର,
ପ୍ରଭୁଙ୍କ ଶ୍ରୀମୁଖ ମଗ୍ନ ହେନ ନେତ୍ରତାର ।

ପ୍ରଭୁଙ୍କ ଶ୍ରୀଅଙ୍ଗ ଦଣ୍ଡେ କରି ନିରୀକ୍ଷଣ,
ବାହାରିଲି କରିବାକୁ ବେଢ଼ା ପ୍ରଦକ୍ଷିଣ ।
ନିହାରିଣ କାକଚତୁର୍ଭୁଜ କଳ୍ପବଟେ,
ଉପସ୍ଥିତ ହେଲି ମୁକ୍ତିମଣ୍ଡପ ନିକଟେ ।
ଦେଖିଲି ସେଠାରେ ଲାଗିଅଛି ଗଣ୍ଡଗୋଳ,
ପାଠ ଛାଡ଼ି ଅର୍ଥାଖୋଷା ହୋଇଅଛି ମୂଳ ।
ପଣ୍ଡିତଙ୍କ ଗାଦି ବୋଲି ଲଗାନ୍ତି ଯେ ମଥା,
ତାଙ୍କ ଚୂଟି ଧରି କହୁଥାନ୍ତି ନାନା କଥା ।
ଅଧଲାଏ ପାହୁଲାଏ ଯାହା କିଛି ଦିଅ,
ଗୁଣିବ ସହସ୍ର ନାମ ପାଦରଜ ନିଅ ।
ହାୟ ରେ ଏହି କି ସେହି ମୁକ୍ତିମଣ୍ଡପ,
କରୁଥିଲେ ବିଦ୍ୟାବନ୍ତେ ଯାହା ନାମ ଜପ !

ଯେଉଁଠାରେ ହେଉଥିଲା ପଣ୍ଡିତଙ୍କ ମେଳା,
ଏବେ ଦେଖ ସେ ସ୍ଥାନରେ ଠକ ଭେଳା ଭେଳା ।
ବିଦେଶୀ ପଣ୍ଡିତ ଯହିଁ ହେଉଥିଲେ ରୁଣ୍ଡ,
ଠକ ଜୁଆଚୋର ତହିଁ ମେଳିଛନ୍ତି ଝୁଣ୍ଡ ।
କାହିଁ ଗଲା ବେଦପାଠ କାହିଁ ଶାସ୍ତ୍ରାଳାପ,
ଏବେ ତହିଁ ବିରାଜିତ ମୂର୍ତ୍ତିମନ୍ତ ପାପ ।
ପଣ୍ଡିତମାନଙ୍କ ଗାଦି ଖାଲି ଅଛି ପଡ଼ି,
ଯାବନ୍ତ ଶାସନଝଡ଼ା ପାଡ଼ୁଛନ୍ତି ରଡ଼ି ।

ଦେଉଥିଲେ ଯାହା ମୁକ୍ତିମଣ୍ଡପ ବ୍ୟବସ୍ଥା,
ଭରତ ମଧ୍ୟରେ ହେଉ ନ ଥିଲା ଅନ୍ୟଥା ।
ହାୟ ହାୟ ! ସେ ପଣ୍ଡିତ ଜଣେ ମଧ୍ୟ ନାହିଁ,
ମୁକ୍ତିମଣ୍ଡପ କୁଳେ ବତି ଦେବାପାଇଁ ।
ଆହା ବୃଦ୍ଧ ରାଜଗୁରୁ, ହା ବାଶୁ ପାଢ଼ୀ,
ପୁନା ସଭା ଜିଣିଥିଲ ଓଡ଼ିଶାନିବାସୀ ।
ହା ହା ଲୋକନାଥ ବ୍ରହ୍ମା ବ୍ରହ୍ମା ଅବତାର,
ତୁମ୍ଭେ ଗଲ କେ କରିବ ଷଟ୍‌ଶାସ୍ତ୍ର ବିଚାର ।
ହା ହା ମୃତ୍ୟୁଞ୍ଜୟ ମିଶ୍ର ପୌରାଣିକବର,
କୁଣ୍ଡଳମଣ୍ଡିତ ସଭାମଣ୍ଡନ ସୁନ୍ଦର ।
ଗୋପୀନାଥ ବାମଦେବ ଯାଇଛନ୍ତି ସ୍ୱର୍ଗ,
ତାଙ୍କ ସ୍ଥାନେ ବସିଛନ୍ତି ଠକ ବିପ୍ରବର୍ଗ ।

ଜଗବନ୍ଧୁ ମାହାପାତ୍ର ହେଲେ ଅନ୍ତର୍ଦ୍ଧାନ,
କେ କହିବ ତୁମ୍ଭ ଭାଗବତ ଟୀକାମାନ ।
ଦୀନବନ୍ଧୁ ମିଶ୍ର କବିଚନ୍ଦ୍ରଶିରୋମଣି,
ହଜି ଯାଇଛନ୍ତି ମୁକ୍ତିମଣ୍ଡପର ମଣି ।
ମୃତ୍ୟୁଞ୍ଜୟ ତର୍କପଞ୍ଚାନନ ଗଲ କାହିଁ,
ନ୍ୟାୟଶାସ୍ତ୍ର ସର୍ବଜ୍ଞ ତ ଆଉ ଜଣେ ନାହିଁ ।
ରଘୁ ମିଶ୍ର ବିନାୟକ ମିଶ୍ର ଜୟ ରଥ,
ଯଶ ରଖି ଚାଲି ଯାଇଅଛ ସ୍ୱର୍ଗପଥ ।
ମୁକ୍ତିମଣ୍ଡପକୁ କହୁଅଛି ହାତ ଯୋଡ଼ି,
କର୍ପୂର ଯାଉଛି କନାଖଣ୍ଡ ଅଛି ପଡ଼ି ।

ସଦାଶିବ କାବ୍ୟକଣ୍ଠ ରଖିବେ ମନରେ,
ଆପଣ ନାହାନ୍ତି ଏହି ପଣ୍ଡିତ ଡାକରେ ।
ଭାଷାତତ୍ତ୍ୱ ବୁଝିବାରେ କାଟୁଛନ୍ତି କାଳ
ତାହାଙ୍କ କହିବେ ମୁକ୍ତିମଣ୍ଡପ ଜଞ୍ଜାଳ ?
ଓଲଟି ଓଲଟି ନନା ଦେଶ ବାଟ ଗୁଡ଼,
ଦେଖନ୍ତୁ ପଚରୁ ପତ୍ର ଆସୁଛନ୍ତି ମାଡ଼ ।

ଦର୍ଶନ ସକାଶେ ଗଲି ବିମଳା ମନ୍ଦିରେ,
ତହିଁ ମଧ୍ୟ ପଡ଼ିଗଲି ସେବକ ଫନ୍ଦରେ ।

ଦେଖିଲି, ବସିଛି ହୃଷ୍ଟପୁଷ୍ଟ ଧାଡ଼ ଧାଡ଼,
ଘିଅରେ ହେଲଣି ପୁଷ୍ଟ ସେବକଙ୍କ ହାଡ଼ ।
ମୋ ଅଣ୍ଟାରେ ଥିଲା ଯେତେ ପଇସା କଉଡ଼ି,
ମହାମାୟା ମାୟାବଳେ ଗଲା ତାହା ଉଡ଼ି !
ହେ ସେବକେ, ଲାଗ ନାହିଁ ଆଉ ମୋ ପଛରେ,
ନ ହେଉ ଦର୍ଶନ ପଛେ ଯାଉଅଛି ଘରେ !

ଅରୁଣ ଖମ୍ବରେ ମୋର ପଡ଼ିଲା ନଜର,
ମୂଳଠାରୁ ମୁଣ୍ଡଯାଏ ଖଣ୍ଡିଏ ପଥର ।
କାହାର ଏ କୀର୍ତ୍ତି ମୁହିଁ ବୁଝିଲି ପଚାରି,
କଣାରକୁଁ ଆଣିଥିଲେ ବାବା ବ୍ରହ୍ମଚାରୀ ।
ବାବୁମାନେ ଦେଖ ଦେଖ ଥରେ ଆଖି ମଳି,
ଆଗକା ଓଡ଼ିଆ ଥିଲେ କେମନ୍ତ କୌଶଳୀ ।

ମଙ୍ଗୁମଠ ଦେଖିଲି ଯେ ଭଙ୍ଗାରୁଜା ଘର,
ଚେଲା ଚେଲା ବିବାଦରେ ହେଲା ଛାରଖାର ।
ଦେଖିଲି ଏମାର ମଠେ ଭାରି ଧୂମଧାମ,
ଟଙ୍କା ସୁନା ଗଦା ଗଦା ଯେହ୍ନେ ଲକ୍ଷ୍ମୀଧାମ ।
ସୁଦର୍ଶନ ଦାସେ ଥିଲେ ଏ ମଠେ ମହନ୍ତ,
ତାଙ୍କ ପରି ଥିଲା ନାହିଁ ଦାତା ଦୟାବନ୍ତ ।
ମହନ୍ତ ମୋହନଦାସ ଉତ୍ତରାଧିକାରୀ,
ବଗିଚା ତୋଟାରେ ଥିଲା ତାଙ୍କ ମନ ଭାରି ।
ପଣସ କଦଳୀ ଅମ୍ବ କଖାରୁ ନଡ଼ିଆ,
ବଗିଚାରେ ଜମି ଗୁଣ୍ଠେ ନ ଥିଲା ପଡ଼ିଆ ।
ବଗିଚାର ଫଳ ହୁଏ ଚଉଆଡ଼େ ବଣ୍ଟା,
ପରଷିବା ଲୋକଙ୍କର ଢୋଲା ହୁଏ ଅଣ୍ଟା ।
ଏବେ ସେ ମଠରେ ରଘୁନନ୍ଦନ ମହନ୍ତ,
ବ୍ୟବହାର ବୁଝିବାକୁ ବଡ଼ ବୁଦ୍ଧିମନ୍ତ ।

ଆପଣା କଥାଟି ବୁଝିବାରେ ବୁଦ୍ଧ ଦେର,
ଲକ୍ଷ୍ମୀର ଭଣ୍ଡାର ପରି ଟଙ୍କା ସୁନା ଢେର ।
ଆପଣା ପେଟଟି ଭଲ ଚହଲାନ୍ତି ମହନ୍ତ,
ଯାବ ମିବ ମଧ୍ୟ ମିଳ ଅଛନ୍ତି ତେମନ୍ତ ।

ମନ୍ଦର ଦକ୍ଷିଣ ପାର୍ଶ୍ୱେ ଅଛୁ ଭଲ ମଠ,
ଗାଲବ ଋଷିଙ୍କ ଗାଦି ସିଦ୍ଧ ମହାପୀଠ ।
ଏ ମଠ ମହନ୍ତ ଥିଲେ ରାମଦାସ ଯତି,
ମରହଟ୍ଟା ତାଙ୍କୁ କରିଥିଲେ ସେନାପତି ।
ଜବରଦସ୍ତ ଲୋକଟା ସେ ଖୁବ୍ ଥିଲା ବଳ,
ଅଧିକାର କରିଥିଲେ ଓଡ଼ିଶା ମଣ୍ଡଳ ।
ଜଗନ୍ନାଥ ସିଂହାସନେ ଭୈରବ ମୂରତି
ପୂଜା କରୁଥିଲେ ମିଳି ଶୈବ ଶାକ୍ତ ଯତି ।
ଶ୍ରୀରାମ ମହନ୍ତ ସେହି ବିଗ୍ରହକୁ ଭାଙ୍ଗି
ଖଣ୍ଡ ଖଣ୍ଡ କରି ସମୁଦ୍ରକୁ ଦେଲେ ଫିଙ୍ଗି ।
ଏ ମଠର ଆୟ ବର୍ଷେକୁ ଲକ୍ଷେ ଟଙ୍କା,
କାହାକୁ ନ ଥାଏ ତେଣୁ ମହନ୍ତଙ୍କ ଶଙ୍କା ।

ଶ୍ରୀରାମ ଉତ୍ତରେ ହେଲେ ଯେ ସବୁ ମହନ୍ତ,
ସମସ୍ତେ ଧାର୍ମିକ ଶୁଦ୍ଧମତି ଗୁଣବନ୍ତ ।
ସେଥି ମଧ୍ୟେ ଥିଲେ ଜଣେ ହୟଗ୍ରୀବ ଦାସ,
ତାର ପାଳ ପୁତ୍ରଚାନ ବଡ଼ ବଦମାସ ।
ଏବେ ସେ ମଠରେ ଲୋକ ଯାଇଛନ୍ତି ପୂରି,
ଜବରଦସ୍ତ ମୋଟା ମୋଟା ଲୋକ ଭୋଜପୁରୀ ।
ଚତୁର୍ଭୁଜ ଏବେ ମାଡ଼ ବସିଛନ୍ତି ଗାଦି,
ଭଗବାନ ଦାସେ ହୋଇଅଛନ୍ତି ବିବାଦି ।
ମହନ୍ତ ଉତ୍ତରପାର୍ଶ୍ୱେ ଛନ୍ତି ଛଳେ ଛଳେ,
ମଠ ସବୁ ଟଙ୍କା ଉଡ଼ି ଯାଉଛି କୌଶଳେ ।
ଚତୁର୍ଭୁଜ ମହନ୍ତ ଯେ ଭୋଜପୁରୀ ଲୋକ,
ତାଙ୍କ ଦିନୁଁ ମଠେ ଭୋଜପୁରିଆଙ୍କ ଠେକ ।
ପୁଷ୍ଟାର କୁଟାର ଥାନପତି ସରଦାରୀ,
ସିପାହୀ ପିଆଦା ଆଦି ସବୁ ଭୋଜପୁରୀ ।
କି କହିବ ଆଉ ଏମାନଙ୍କ ଗୁଣପଣା,
'ଛସଲା ଚୋକର କି ମୋକର' ଅଛୁ ଜଣା !

ରାମକୃଷ୍ଣ ପାଟଜୋଷୀ ନିଯୋଗନାୟକ,
ଛତିଶାନିଯୋଗ ମଧ୍ୟେ ଭାରି ବଡ଼ଲୋକ ।
ଆଛା ବାବୁଗିରି ଚଳୁଅଛି ଖୁବ୍ ଟାଣେ,
ବାପ ଅରଜିଲା ଜମି ବିକି ମାଣେ ମାଣେ !

ନିକଟେ ବଳିଆ ଗୁରୁ କୋଠାଘର ଗୃହଁ
ମନେ କଲି, ଆହା ଦାତାତିଶି ଗଲା କାହିଁ !
ଜୟ ଜୟ ଜୟ ଜୟ ତୋଟା ଗୋପୀନାଥ,
ମହାପ୍ରଭୁ ଓଲଗୁଛି ଯୋଡ଼ି ବେନି ହାତ ।
ଆହେ ଗୋପୀନାଥେ କହି ପାରିବ ସନ୍ଧାନ,
ଶ୍ରୀ ଚୈତନ୍ୟ ଏଥି ପରି ହେଲେ ଅନ୍ତର୍ଦ୍ଧାନ ?
ନିଶାଣ ଉଡ଼ୁଛି ଗୋପୀନାଥଙ୍କ ମନ୍ଦିରେ,
ରାମଚନ୍ଦ୍ର ଅଢ଼୍ୟ ବଂଶ ରହିଛି ପୃଥ୍ୱୀରେ ।

ରାଘବଦାସଙ୍କ ମଠେ ଲାଗିଛି ମାମଲା,
ମଠ କାମେ ମହାଫିଯ ଦେଉଛନ୍ତି ସଲା ।
ଖାଇଲେଣି ଟଙ୍କା ସବୁ ଓକିଲ ମୁକ୍ତାର,
ବଳୁଆ ଶାଗୁଣା ଯେସନ୍ତେ ଖାଆନ୍ତି ମୁର୍ଦାର ।
ନାରାୟଣ ଦାସେ ଥିଲେ ଖୁବ୍ ମଜବୁତ,
ଶେଷକାଳେ କାମ କିଛୁ କଲେ ଅଦଭୁତ ।
ହେଲେ ସଭ୍ୟ ଭବ୍ୟ ଗୁଡ଼ି ମହନ୍ତ ଖବର,
ଅନାହାରୀ ମେଜେଷ୍ଟ୍ରର କମିଟି ମେମ୍ବର ।
କିଛି କରିଗଲେ ନାହିଁ ମଠ ବନ୍ଦୋବସ୍ତ,
ତାଙ୍କ ଅନ୍ତେ କାମ ବିଗିଡ଼ିଲା ଦୁରବସ୍ତ ।
ଶ୍ରୀମଧୁସୂଦନ ଭାଗବତ ଦୁଇ ଚେଲା,
ମାମଲା କରନ୍ତେ ମଠ ଘୁରଖାର ହେଲା ।
ଟଙ୍କାବଳେ ଭାଗବତ ପାଇଲେ ସମ୍ପଦ,
ଭୁନ ହେଲେ ମଧୁ ଆଶ୍ରେ କରି କାଳୀପଦ ।
ମଲେ ଭାଗବତ ରଖି ନାବାଳକ ଚେଲା,
ମଠକାମ ସବୁ ମହାଫିସ ହାତେ ହେଲା ।
ଓଡ଼ିଆ ମଠରେ କାମ ଚଳୁଅଛି ଭଲ,
ଓଡ଼ିଶା ରଜାଙ୍କ ଏଥି ଅଛଇ ଦଖଲ ।
ଆଉ କେହି ଲୋକ ନାହିଁ ମହନ୍ତ ମଠରେ,
ମାମଲା ସେତେକ ଅଛି ରଜାଙ୍କ ହାତରେ ।

ହରକେଶଙ୍କ ମାତା ବସାଇ ଏହାଙ୍କୁ,
ଜମିବାଡ଼ ଖଞ୍ଜିଛନ୍ତି କାମ ଚଳିବାକୁ ।
ବର୍ତ୍ତମାନ ମହାପିସ ବୁଝୁଛନ୍ତି ମଠ,
ଚଳୁଅଛି କାମ, କିଛି ନାହିଁ ଖଟ ଖଟ ।

ଶଙ୍କରାଚାର୍ଯ୍ୟଙ୍କ ମଠ କହାନ୍ତି ପୁରୁଣା,
ବେଶ ଚଳୁଅଛି କାମ କିଛି ନାହିଁ ଊଣା ।
ଶ୍ରୀଶଙ୍କର ଦାମୋଦର ତୀର୍ଥସ୍ୱାମୀ, ଦଣ୍ଡୀ;
ବିଦ୍ୟା ବୁଦ୍ଧି ସରଳତା ଗୁଣେ ଛନ୍ତି ମଣ୍ଡି ।
ନ ବୁଝ ଏହାଙ୍କୁ ଢୋଲପେଟୂଆ ମହନ୍ତ,
ଅଳ୍ପ ଲୋକ ତାଙ୍କ ପରି ଛନ୍ତି ଗୁଣବନ୍ତ ।
କାହିଁଗଲ ହେ ଶଙ୍କରାନନ୍ଦ ଗୁଣମଣି,
କେତେ ଖୋଳି ଯାଇଅଛ କୂପ ପୁଷ୍କରଣୀ ।
ଶିବାନନ୍ଦ ସରସ୍ୱତୀ ଗଲ ଯମାଳୟ,
କୀର୍ତ୍ତି ଗାଉଛନ୍ତି ପୁଷ୍କରଣୀ ଦେବାଳୟ ।

ହେ ମାନ ଖଣ୍ଡିଆ କୀର୍ତ୍ତି ରଖିଅଛ ଢେର,
ଖୋଳାଇ ତଡ଼ାଗ କୂପ ନିର୍ମାଇ ମନ୍ଦର ।
ଶ୍ରୀଗୋପାଳ ପ୍ରତିହାରୀ କଥା କର ଏତେ,
ଖୋଳାଇପକାଅ ଆଉ କୂପ ଗୋଟାକେତେ ।

ସଦାଶିବ ମିଶ୍ରେ ମହା ମହାଉପାଧ୍ୟାୟ,
ସତ ଏକା ଲୋକଟାଏ ସଦାଶିବ ପ୍ରାୟ ।
ଆହେ କାବ୍ୟକଣ୍ଠେ, ଭଲ ବୁଝିଛି, ଅପଣେ
ମୁକ୍ତମଣ୍ଡପକୁ ଏକା ଶୋଭା ପାଅ ଜଣେ !
ଶୁଣାଶୁଣି କଥା—ଲେଖୁଛନ୍ତି ସ୍ମୃତିଶାସ୍ତ୍ର,
ଅବଶ୍ୟ ଅବଶ୍ୟ ଆପଣ ତ ଯୋଗ୍ୟପାତ୍ର ।
'ନଷ୍ଟେ ଗତେ ପ୍ରବ୍ରଜିତେ' ପରାଶର ବାଣୀ—
ସତ୍ୟ ଧର୍ମଶାସ୍ତ୍ର ବାକ୍ୟ ନଷ୍ଟ ଥିବ ଜାଣି ।
ଗଲାଣି ଶଗଡ଼, ଏବେ ଚଢ଼ ରେଲବାଇ,
ଲେଖ ଶାସ୍ତ୍ର ଦେଶ କାଳ ପାତ୍ର ଅନୁଯାୟୀ ।
ବୁଝି ଶୁଝି ନ ଲେଖିଲେ, ରଖିବେ ମନରେ,
ଆପଣଙ୍କ ଶାସ୍ତ୍ର ଗୁଞ୍ଜା ରହିବ ଘରରେ ।

ମାଗୁଣି ମିଶ୍ରଙ୍କୁ କେହି ନ ପଚାରେ ଥରେ,
ଏକୁଟିଆ କାହିଁ ପଡ଼ି ରହିଛି କୋଣରେ ।
ମୂଳ ମୁଣ୍ଡିକା କି ଗଣ୍ଡା ହେବ ଔଷଧରେ,
ଗୋଟାଏ ଲେବଲ ଅଣ୍ଟା ଶିଶି ନାହିଁ ଘରେ !
ମିଶ୍ରେ ଶିଖିଥିଲେ ବାଇକାବୋନ ପଟାସ,
ଆଗେ ମୁଁ ବୋଲନ୍ତି ଆଜ୍ଞା ଡାକ୍ତର ସାବାସ !
ଯେ ରୋଗୀକୁ ଡାକ୍ତର ଦିଅନ୍ତି ଜବାବ,
ସେହିଠାରେ ମିଶ୍ରଙ୍କର ଦେଖିଛି ପ୍ରଭାବ ।
ଯେତେ ହେଉ ସେଟା ହେଲା ନେଟିଭ୍ ଟ୍ରିଟ୍‌ମେଣ୍ଟ୍-
ନ ଡାକ ମିଶ୍ରଙ୍କୁ ହେଉପଛକେ ଅର୍‌ଜେଣ୍ଟ ।
ଆଚ୍ଛା କବିରାଜ ବୋଲି ଅଛି ନାମଡାକ,
କାହିଁ ତ ଦେଖିଲି ନାହିଁ ବୁଲି ଦେଶଯାକ ।

ଶିଖିବାକୁ ଇଚ୍ଛା ଥିଲା ଚଳନ୍ତି ଓଡ଼ିଆ,
ସାହିତ୍ୟରେ ଭେଟିଗଲି ଗୋପାଳପୁରିଆ' !
କିପାଇଁ ମରିବି ବୁଲି ବୁଲି ଗାଏଁ ଗାଏଁ ?
ଭାଗବତଟୁଙ୍ଗୀଠାରୁ ନନା ପାଣ୍ଡି ଯାଏ—
ଘର କଥା ଘର ଭାଷା ଠିକ ଠିକ ଲେଖା,
ଓକିଲଙ୍କ ଠକପଣ ଲେଖା ନାହିଁ ଏକା ।
ସତ—ଦୁଇ ଚାରି ପଦ ଯାଇଛନ୍ତି ଗାଇ,
ତାହା ମଧ୍ୟ ଆପଣାକୁ ବଞ୍ଚାଇ ବଞ୍ଚାଇ ।
ଟାଇଲ ଅସଲ ଚିଜ—ହେଉ ତାହା ଛଡ଼ା
କଚେରି ଓଡ଼ିଆ କଥା ଥିଲା ମୋର ଲୋଡ଼ା ।
ପଢ଼ିଲି ସାହିତ୍ୟ ବସି ପହରେକ—ଆଜ,
ଠିକ୍ ଠିକ୍ ଗାଇ ଯାଇଛନ୍ତି ପଦରାଜ ।

ଉଏଲ ମିଷ୍ଟର୍ ବି. ଏନ୍. ମିଶ୍ରା ଗୁଡ଼ବାଇ ଗୁଡ୍‌ବାଇ,
ଭଲ ଆଦର୍ଶଟା ଏକା ଦେଲ ତ ଦେଖାଇ ।
ଯାକି-ରଣ୍ଡି ଟଗା ପଣ୍ଡା ଯିବ ବିଲାତକୁ,
ସ୍ୱପ୍ନରେ କେ ଆଣିଥିଲା ଏ କଥା ମନକୁ ?
ଶୁଣାଶୁଣି—ତୁମେ କର ପ୍ଲିଡ୍ ହାଇକୋର୍ଟେ,
ହେବ ବାରିଷ୍ଟର ପରା ବାରିଷ୍ଟର ଗୋଟେ ।

ଯେତେକ ମାମଲା ଦେଇଥିଲେ ଆପିଲେଣ୍ଟ,
ଡିସମିସ୍ କରିଦେଲ କେସ୍ ଏଇଟି ଟେଲେଣ୍ଟ ।
ସବୁରି ମୁଁ କରୁଅଛୁ ପ୍ରାର୍ଥନା ଏତେକ,
ହାଇକୋର୍ଟରେ ରଖିଦେବ ଏ ଜାତିର ଟେକ ।
ଆଇସେ ମିଷ୍ଟର ମିଶ୍ରା ଏଟେଇନ୍ ମୁଡ଼ବାଇ,
ଦୁଃଖିନୀ ଜନମଭୂମି ନ ଭୁଲିବ ଭାଇ ।

ଶିହ୍ନେ କେ ଆନନ୍ଦ ମିଶ୍ରେ ଗରିବ ବ୍ରାହ୍ମଣେ,
ଶିନରି କେ ଅଛୁ ବୋଲି ଉତ୍କଳରେ ଜଣେ !
ବଡ଼ଲାଟ ବାହାଦୁର ଥିଲେ ତାଙ୍କୁ ଦେଖି,
ପାର୍ଚମେଣ୍ଟ ସାର୍ଟିଫିକେଟ ଦେଇଛନ୍ତି ଲେଖି ।
ଆସିଥିଲେ କୃପା କରି ଭାରତେ ସମ୍ରାଟ,
ତେତେବେଳେ କରିଥିଲ ତାଙ୍କ ଗୁଣ କାଟ ।
ମିଶ୍ରେ ମନ ଦେଇ ମୂର୍ତ୍ତିଟାଏ ଦେଲେ ଗଢ଼ି,
ବିଲାତର ଟିକେଟେ ମୂର୍ତ୍ତି ଯିବ ଗଡ଼ାଗଡ଼ି ।
ଭୁଚ୍ଛା ହାତେ ମିଶ୍ରେ ମନ ସାହସ ବଳରେ
ଛଅ ବର୍ଷ ପଢ଼ିଥିଲେ ଆର୍ଟ ଷ୍ଟୁଡ଼ିଓରେ ।
ଉତ୍କଳରେ କେହି ତାଙ୍କୁ ନ ବୋଲେ ସାବାସ,
ମିଶ୍ରଙ୍କର ଘରେ ଅଧେଦିନ ଉପବାସ ।

ସଦାଶିବ ନୀଳକଣ୍ଠ ସନ୍ତତ ସନ୍ନ୍ୟାସୀ,
ଜଗତ ମଙ୍ଗଳେ ଗୋପବନ୍ଧୁ ବ୍ରଜବାସୀ,
ଗୋଦାବରୀ ଉପକୂଳ ନିଃସୃତ ନିର୍ଝର,
କୃପାମୟ କୃପାସିନ୍ଧୁ ଜନହିତକର—
କାର୍ଯ୍ୟ ସାଧନରେ ଅବତୀର୍ଣ୍ଣ ଧରାଧାମେ,
ସମବେତ ସେମାନେ ତ ସତ୍ୟବାଦୀ ଗ୍ରାମେ ।
ଜ୍ଞାନରାଶି ପବିତ୍ରତା ଉଦ୍ଭୂତ ତ ମୂଳ,
ଉଦ୍ଧାରିବେ ଭଗୀରଥ ସମାନରେ କୁଳ ।
ବହୁ ଯୁଗଯୁଗାନ୍ତର ତପସ୍ୟାର ଫଳେ,
ଜନ୍ମିଲେ ନିଃସ୍ୱାର୍ଥ ଯୋଗ୍ୟପୁତ୍ର ଏ ଉତ୍କଳେ ।
ସମଚେତ ସମବେତ ଚତୁର୍ଦ୍ଧାମୂରତି
ତଡ଼ିଦେବେ କୁସଂସ୍କାର ଦୁର୍ମତି ଦୁର୍ଗତି ।

ସତ୍ୟବାଦୀ ଗ୍ରାମେ ଦେଖି ବାଣୀର ମନ୍ଦିର,
ଭେଦ ଭାବ ମନ ମଧ୍ୟେ ବୁଝିଲିଣି ସ୍ଥିର ।
ଇତିହାସୁଁ ଶୁଣିଥିଲ ନାଳନ୍ଦା ବିହାରେ,
ସତ୍ୟବାଦୀ ଗ୍ରାମେ ଆସିବ ତ ଦେଖି ବାରେ ।

ପାରିକୁଦ କଥା କିଛି ନ ପାରିଲି ଲେଖି,
ତୁମ୍ଭେ ଆପେ ନିଜେ ଆସି ବେଳେ ଯାଅ ଦେଖି ।
ଡର ନାହିଁ ଭାଇ ବାଟ ଖରଚ ସକାଶେ,
ପାଇଯିବ ସବୁ ପହଞ୍ଚିଲେ ରାଜା ପାଶେ ।
ଅଧିକା ପାଇବ ବ୍ରହ୍ମପୁରୀ ପାଟଯଥା,
ଦେଖିବ ଆଖିରେ ରାଜା ଦାତାପଣ କଥା ।
କାଇଲି ପଡ଼ିବ ଯେବେ ବାଟ ଚାଲିବାରୁ,
ଔଷଧ ପାଇବ ତତକ୍ଷଣେ ରାଜାଠାରୁ ।
ରାଜା ଆପେ ଜଣେ ବୈଦ୍ୟ, ଗରିବ ସକାଶେ
ବିବିଧ ଔଷଧ ଆଣି ରଖିଥାନ୍ତି ପାଶେ ।
ବାଣ୍ଟନ୍ତି ଔଷଧ ନେଇ ଦୁଆରେ ଦୁଆରେ,
ଏଡ଼େ ମଜା କଥା ଦେଖିଛ କି କେଉଁଠାରେ ?
ଦାତା ପରଉପକାରୀ ସୁଶୀଳ ପଣ୍ଡିତ,
ମିଷ୍ଟଭାଷୀ ଧୀର ନାନା ଗୁଣରେ ମଣ୍ଡିତ ।
ଓଡ଼ିଶା ଉନ୍ନତି କରିବାକୁ ଥୋଡ଼ା ଥୋଡ଼ା
ଏହିପରି ରାଜା ଅଛି ପୁଞ୍ଜା ଦୁଇ ଜୋଡ଼ା ।
ଅଳମତି ବିସ୍ତରେଣ ନିତାନ୍ତ ଅଧୀନ,
ଶ୍ରୀ ଗୋପାଳଚୂଡ଼ାମଣି ତର୍କପଞ୍ଚାନନ ।

ଧନ୍ୟ ଧନ୍ୟ ମହାଦେବୀ କାଞ୍ଚନମଞ୍ଜରୀ,
ଖଲିକୋଟ ଆଠଗଡ଼ ରାଜରାଜେଶ୍ୱରୀ ।
ଉତ୍କଳ ଲଳନାକୁଳେ ରଖିଲ କୀରତି,
ଦେଉନ୍ତୁ ତୁମ୍ଭଙ୍କୁ ବର ଲକ୍ଷ୍ମୀ ସରସ୍ୱତୀ ।
ବାଜୁଥିବ ଖଲ୍ଲିକୋଟ ନାମରେ ନାଗରା,
କଲେଜ ସକାଶେ ଲକ୍ଷେ ଟଙ୍କା ଦେଲେ ପରା ।
ମାତୃଭାଷାପାଇଁ ପୁଣି ଅଛି ତୁମ୍ଭ ଟାଣ,
ଚିରକାଳ ଏହି କୀର୍ତ୍ତି ରହିଗଲା ଜାଣ ।

ବିପ୍ର ଭଗବତୀ ଚଟ୍ଟୋପାଧ୍ୟା ଦୁଇ ଭାଇ
ବସିଛନ୍ତି ଗଞ୍ଜାମରେ ଆସନ ଜମାଇ ।
ଆଚ୍ଛା ନାମ କରିଗଲେ ତେଲଙ୍ଗା ଦେଶରେ,
ବେଙ୍ଗାଲି ବାବୁଙ୍କ ନାମ ଶୁଣି ଘରେ ଘରେ ।

ଓଡ଼ିଆ ବଙ୍ଗାଳି ଆଉ ତେଲଙ୍ଗା ମରହଟ୍ଟି,
ସବୁ ଜାତି ଏହିଠାରେ କରିଛନ୍ତି ଖଟି ।
କେତେ ଆସୁଛନ୍ତି ବାବୁ କେତେ ପାଁଚ୍ଚୁ ଚାରୁ,
କେହି ପିଇଯାଏ କାଫି, କେହି ପିଏ ଗୁରୁ ।
ସବୁଦିନେ ଅତିଥିଙ୍କ ଲାଗିଥାଏ ଠେଲ,
ଜଣାଯାଏ ଏଟା ହେବ ପବ୍ଲିକ ହୋଟେଲ ।
Chattarjee brorthers ଅଛି କିଛି
ଦରକାର,
କରିବ କି ଏହି ଦେଶପାଇଁ ଉପକାର ?
ଓଡ଼ିଆମାନଙ୍କ ଯୋଗେ ନାହିଁ କିଛି ଗୁଣ,
ଓଡ଼ିଆ ଦେଶକୁ କେବେ ନ କରିବ ଘୃଣା ।

ବିଦ୍ୟାଭୂଷଣେ ତ କଲେ ଏକପତ୍ନୀବ୍ରତ,
ଜଣାଗଲା ବାହାରିବ କିଛି ଭାଷାତତ୍ତ୍ୱ ।
ଆନ୍ଧ୍ରଭାଷା ଯେବେ ହୋଇଥିବ ଚିରକାଳ,
କେ ବୁଝିବ ବୋଲି ଭଲ ଉତ୍କଳ ଜଞ୍ଜାଳ ?
ଆହେ ନନା, ନ ଲେଖିବ କିଛି କିଛି ଯଦି,
କପରି ହେବଟି ବୋଲ ଓଡ଼ିଆ ମାଷ୍ଟ୍ରି ?

ଲୌରିଖଣ୍ଡି ନଦୀକୂଳେ ମାଧବଡ଼ାଗ୍ରାମ,
ସେଠାରେ ଶୁଣିଲି ମିନା ସମର ଇଦ୍ ନାମ ।
କେମନ୍ତେ ଇସ୍କୁଲଟାଏ ଦେଇଛ ବସାଇ,
କେତେ ଦେଶୀ ଲୋକ ଯିବେ ଦାନପାଣି ଖାଇ ।
ଦେଖ ଦେଖ ଆସି ଗଞ୍ଜାମର ଜମିଦାର,
କାହିଁ ଲୋକ ଆସି କଲା କାହିଁ ଉପକାର ।

ଧରାକୋଟ ରଜା ଜଣେ ଭାରି Learned,
କରନ୍ତି ସେ ବରଷକୁ ତିନିଶ ଟଙ୍କା Paid.

ଦିଅନ୍ତି ସ୍କୁଲପିଲା କଲେଜ ଦରମା,
ସେଥିରୁ ଯାଆନ୍ତି ଖାଇ ଅଧେ ପୁଣି କମା ।
ଏତିକ ହେଲା କି ରଜା ଡୋନେଶନଯାକ,
ଏ ତ ତୁମ୍ଭ ବଡ଼ ଗୋଟେ ରାତିର ଖୋରାକ ।

ମଞ୍ଜୁଷା ରଜାଙ୍କ ନାମ ଶ୍ରବଣ ପରମ୍ପରେ,
ଜାତିଟାଣ ଅଛି କିଛି ତାହାଙ୍କ ଦେହରେ ।
ମାତ୍ର ଦେଖାଗଲା ନାହିଁ କିଛି ତ କାମରେ
ହେଉ ହେଉ ରହିଛି ତ ତୁମ୍ଭଙ୍କ ଚିତ୍ତରେ ।

ଗଞ୍ଜାମଜିଲାରେ ଢେରଛନ୍ତି ଜମିଦାର,
ଗୁରୁପାଣିଖିଆ ହାତେ ସବୁ କାରବାର ।
ବେଳେହେଲେ ନ କରନ୍ତି ବିଚାର ମନରେ,
ଜନ୍ମିଛନ୍ତି ରହିଛନ୍ତି ଓଡ଼ିଆ କୁଳରେ ।

ହେ ଚକ୍ରବର୍ତ୍ତୀ ଅଧୀଶ୍ୱର କରେଁ ନମସ୍କାର,
ନାଟକରେ ତୁମ୍ଭ ବୁଦ୍ଧି ଖେଳେ ଚମତ୍କାର ।
ସୁରଙ୍ଗରୁ ଶୁଣାଗଲା ତାଳ ମାନ ମୂର୍ଚ୍ଛା,
ଆପଣ ରାଗିଣୀ କେତେ କରିଦେଲେ ଠୋଲ ।
ଲେଖିଯାନ୍ତୁ କେତେଖଣ୍ଡି ନୂତନ ନାଟକ,
ମୋହିତ ହେବେଟି ଶୁଣି ଉତ୍କଳର ଲୋକ ।
ତୁମ୍ଭଙ୍କ ନାଟକମ ନ ଯିବ ଦେଶେ ମାଡ଼ି,
ଦୁର୍ଗନ୍ଧି ଯାତରା ଦଳ ପଳାଇବେ ଛାଡ଼ି ।
ସତ କଥା ଉତ୍କଳରେ କବିଛନ୍ତି ଢେର,
ଆଗେ ଲେଖ ନାମ ଚନ୍ଦ୍ରାମଣି ଓ ମେହେର ।
ଖୁବ୍ ଆଚ୍ଛା କରି ଯେବେ କରିବ କଳଣା—
କେ ଅଧିକ କିଏ ଊଣା ଯିବ ନାହିଁ ଜଣା ।
କପା ବସ୍ତୁବସ୍ତି ଏତେ କେ ଊଣା ଅଧିକ,
ପଢ଼ି ଦେଖ କାବ୍ୟ ହେଲେ ସାହିତ୍ୟ-ରସିକ ।
ଖାଇବ ଚିତଉ କପାଁ ବନ୍ଧ ଗଣାଗଣି,
ମୁଁ ତ ବାପା ଏହି କଥା ସାର ଅଛି ମଣି ।

ଓଡ଼ିଆ ଦକ୍ଷିଣ ସୀମା ପାରଳାଖେମଣ୍ଡି,
ଧନେ ମାନେ କଏ ଅଉ ଅଛୁ ତୁଙ୍କୁ ବଡ଼ି ?
କବିଭ୍ଭ ଗୌରବ ସ୍ଥାନ ନ ଦେଖେଁ ସେପରି,
ଗାଉଥିଲେ ବସି ଗୀତ ଯହିଁ ଚୌରହରି ।
ଧନ୍ୟ ହେ ସେକେଣ୍ଡ୍ପ୍ରିନ୍ସ ଧନ୍ୟ ତୁମ୍ଭ ନାମ,
ବଂଶ ଅନୁରୂପ ଏକା କରିଅଛ କାମ ।
କେତେ ଲୋକଙ୍କର ଅଛି ଇଂରେଜୀ knowledge,
ନ ଛୁଇଁବେ very dirty ଓଡ଼ିଆ language.
ସତ କଥା ହେଲେ ଏବେ English—
educated
Consequently ଓଡ଼ିଆ study sadly
neglected.
ମୁଁ ତ କହୁ ନାହିଁ dirty Oriya ପଢ଼ିବାକୁ,
କପାଁ ଯିବେ ଏତେ ମହାପାପ କରିବାକୁ ।
ମାତ୍ର ରାଜଧର୍ମ ଛୁଟ୍ ନ ଯାଅ ପାସୋରି,
ଦେଶୀ ଲୋକ ଦେଶୀ ଭାଷା ଶିଖିବେ କପରି ?
ଭରସି ବୋଲିବି ଯେବେ ତାଙ୍କୁ ଦୁଇ କଥା,
ଖପା ହୋଇ ପିଟିଦେବେ ଠେଙ୍ଗାରେ ମୋ ମଥା ।
କାହିଁପାଇଁ ମିଛଟାରେ ହେବି ହରବର,
ଅଦାର ବେପାର କରି ଜାହାଜ ଖବର ।
ଆପଣ ବୁଝନ୍ତ କଥା, ସିନା ସେଥିପାଇଁ,
ବୋଇଲି ଗୁରୁତା କଥା ଶୁଣ ଅବା ନାହିଁ ।
ଦକ୍ଷିଣ ରାଜ୍ୟରେ ମାତୃଭାଷା ରଖାପାଇଁ,
ସମସ୍ତେ ଅଛନ୍ତି ଏକା ତୁମ୍ଭଙ୍କୁ ଅନାଇ ।
ଆମ୍ଭେମାନେ ଖୋଲପଣି କରିଅଛୁ ଆଶା,
ଉନ୍ନତି ଲଭିବ ତୁମ୍ଭ ଯୋଗେ ମାତୃଭାଷା ।
କେତେ ହାତୀ କେତେ ଘୋଡ଼ା ଯାଉଅଛି କଣା,
ବାନ୍ଧି ନେଉଅଛି ଥଳ କେ ବଜାଇ ବାଣା ।
ଦେଶ ଭାଷା ଉନ୍ନତିରେ ଯାହା କରିଯିବ,
ଯୁଗ ଯୁଗାନ୍ତରେ କୀର୍ତ୍ତି ବାନା ଉଡ଼ୁଥିବ ।
ଟେଲର ତ ଦେଇଥିଲ ଉଡ଼ିଆ ଉଡ଼ାଇ,
ଗୌରଚନ୍ଦ୍ର ଗଜପତି ଦେଲେ ଯେ ରଖାଇ ।

ମହାରାଜ ଆପଣଙ୍କ ଏ କଥା ଚଦକ,
କରିଥିବ ସବୁଦିନେ ହୃଦରେ ପଦକ ।
ପଶ୍ଚିମରେ ପେଟି ସୂଟ, ଦକ୍ଷିଣେ ନାଉସ,
ଉତ୍ତରେ ଏ ସବୁ କଥା ମୂଳରୁ ଶପୂ୍ୟସ ।
ଏହିପରି ଜଣେ ଯେବେ ଥାଆନ୍ତେ ଉତ୍ତରେ,
ବୁଲୁଥାନ୍ତି ମୁହିଁ ହାତ ପକାଇ ନଗରେ ।

ମେକ୍‌ଡୋନାଲ୍ ସାହେବ ଆଉ ଲର୍ଡ଼ କନମର,
ତୁମ୍ଭ ଦୁଇଜଣ ତୁମ୍ଭ ଦୁଇଜଣ ପର ।
ଉଡ଼ାଇଛ ଯେଉଁ ବାନା ଗଞ୍ଜାମ ଜିଲ୍ଲାରେ,
ଇତିହାସେ ଲେଖା ହେବ ସୁବର୍ଣ୍ଣ ଅକ୍ଷରେ ।
ଓଡ଼ିଆ ମା ବାପା ଥିଲେ ସେ ଦୁଇ ସାହେବ,
ଚାଲି ଯାଇଛନ୍ତି ଛାଡ଼ି ଭାଳିଲେ କ ହେବ ।
ଗଞ୍ଜାମକୁ ଆସିଥିଲେ ଦେବଦୂତ ପ୍ରାୟ,
ଚାଲି ଯାଇଛନ୍ତି ଛାଡ଼ି ହାୟ ହାୟ ହାୟ ।

ଧନ୍ୟ ହେ ବଜ୍ରମ ଦେଓ ପଣ୍ଡିତରତନ,
ମହାରାଜ ଜୟପୁର ଉତ୍କଳ ଭୂଷଣ ।
ତୁମ୍ଭର କବିତ୍ୱ ରାଧାମାଧବ ନାଟକ,
ପଢ଼ି ଜ୍ଞାନ କରେଁ ମୋର ଜୀବନ ସାର୍ଥକ ।
ବିଶାଖାପଟ୍ଟନ ମଧ୍ୟେ ତେଲଙ୍ଗ ଦେଶରେ,
ଛନ୍ତି ଦେଶୀ ଲୋକ କେହି ନାହାନ୍ତି ପାଶରେ ।
ଓଡ଼ିଆ ପଢ଼ିବା ପାଇଁ ସମର୍ପିଛ ପ୍ରାଣ,
ଧନ୍ୟ ଧନ୍ୟ ତୁମ୍ଭ ମାତୃଭାଷା ପ୍ରତି ଟାଣ ।
ସଂସ୍କୃତ ଉତ୍କଳ ଆନ୍ଧ୍ର କରଣ ଆସ୍ୱ ସ
ହିନ ଭାଷା ଭଲରୂପେ କରିଛ ଅଭ୍ୟାସ ।
ଆପଣ ବୋଲନ୍ତି ଶୁଣି ଅଛି ପରମ୍ପର,
ଆନ୍ଧ୍ରରୁ ଉତ୍କଳ କାବ୍ୟ ଅଟେ ଶ୍ରେଷ୍ଠତର ।

ତେଣୁ ଥର ବସି ବସି ବିଚାରେଁ ମନରେ,
ସମ୍ବଲପୁରକୁ ଧାଇଁ ଯିବି ଆଉ ଥରେ ।

ମିତ୍ରଙ୍କ କୋଠାରେ ଯାଇ ପକାଇବ ଡେରା,
ଅତିଥି ସତ୍କାରେ ଅଧାଅଧି ଦର ଯେରା ।
ଖୁବ୍ ଭୋର ଶୀତ—ଶୀତ କଟେନ ଟିସ୍,
ନାନାଜାତି ମିଠା ଲଡ଼ୁ ଚୁରପୂରି ଡସ୍,
ଲୁଚେଇବା ବାମ୍ଭଣ ସବୁଦେଲେ ପାଖେ ଠିଆ,
ଅଧରାତି ଯାଏଁ ଲାଗିଅଛି ଖିଆପିଆ ।
ପଡ଼ିଗଲେ ମନେ ହୁଏ ପ୍ରାଣଟା ଆକୁଳ,
ଅକର୍ମା ବୁଢ଼ାଙ୍କ ପେଟଚର୍ଚ୍ଚା ଏକା ମୂଳ ।
ମିଶ୍ର ଘରେ ପିଲାଗୁଡ଼ି ଆନନ୍ଦ-ପ୍ରତିମା,
ମୁହଁ ଝରେ ଦୟା, ପ୍ରୀତି, ସ୍ନେହ ମଧୁରିମା ।
ଶୁଣୁଁ ସ୍ୱର୍ଗେଛନ୍ତି ଦେବକୁମାର କୁମାରୀ
ଯାଏ ଜଣା ଏ ଗୁଡ଼ିକ ନକଲ ତାହାରି ।

ଦେଖିଲି ଧରଣୀଧର ବାନପ୍ରସ୍ଥାଶ୍ରମ,
ଧନ୍ୟ ଅଧ୍ୟୟନ ଜ୍ଞାନ ଇନ୍ଦ୍ରିୟସଂଯମ ।
ଲାଗି ପଡ଼ିଛନ୍ତି ଧର୍ମପୁସ୍ତକ ପ୍ରଚାରେ,
ପରବ୍ରହ୍ମେ ଚିତ୍ତ, ଦେହ ରହିଛି ସଂସାରେ ।

ବରପାଲି ଦେଶେ ଅଛି ଗଙ୍ଗାଧର ମେହେର,
ତାହାର କବିତା ପଢ଼ିଲଣି ଢେର ଢେର ।
କବିତାଗୁଡ଼ିକ ପଢ଼ି ମନ ମାନ ଯାଏ,
ଆଉ ସେ ଲେଖିବ କିଛି ବାଟ ଚାହିଁଥାଏ ।

ବିଜୟ ମଜୁମଦାର ଶୁଣ ମୋର ବାପା,
ଓଡ଼ିଆରେ କିଛି କିଛି କରି ଯାଅ ଛାପା !
କେତେବେଳେ ତୁମ୍ଭେ ଯେବେ ବଙ୍ଗଳାକୁ ଫେରୁ,
ପୁଅ ଝିଅମାନେ କିନ୍ତୁ ହୋଇଥିବେ କେରୁ ।

ଲକ୍ଷ୍ମୀନାରାୟଣ ଦେଓ କେରା ଅଧୀଶ୍ୱର,
ମନ ମାନ ଗଲା ଦେଖି କାର୍ଯ୍ୟଟା ତୁମ୍ଭର ।
ପ୍ରବୀଣ ବୟସେ ଯାହା ଲାଗିପଡ଼ିଛନ୍ତି,
କଦ୍ରକାରେ ହେବ ମାତୃଭାଷାର ଉନ୍ନତି ।
କବି ଟାଏ ବୋଲି ଲୋକେ କରନ୍ତି ସମ୍ମାନ,
ସମ୍ମିଳନୀ ମଣ୍ଡପରେ ପାଇଲି ପ୍ରମାଣ ।
କଥାଭାଷା ଚଳିଚଳଣରୁ ଗଲି ଜାଣି,
ସରଳପ୍ରକୃତି ମିଷ୍ଟଭାଷୀ ଭଲ ଜ୍ଞାନୀ ।

ବାଲିଆବେଡ଼ାରେ ଢେର ପଣ୍ଡିତଙ୍କ ବସା,
ମିଳିଯିବ ଅଣ୍ଟାଖୋଷା ବହୁତ ଭରସା ।
ବଙ୍ଗଳୀ କଙ୍ଗାଳୀ କେତେ ଫକୀର ଫୁକୁରା,
ଚଳିଗଲେ ଖାଇବାକୁ ପାନ୍ତି ପେଟପୂରା ।
କେହିରୂପେ ମିଳିଗଲେ କିଛି ବାଟଖର୍ଚ୍ଚା,
ଆସନ୍ତି ମୁଁ ଦେଖି ତାଙ୍କ ସଭା ଶାସ୍ତ୍ରଚର୍ଚ୍ଚା ।
ବର୍ତ୍ତମାନ ରାୟ ବାହାଦୁରଙ୍କ ଯୋଗରେ
ଉତ୍କଳ ଜାତିର ଟେକ ରହିଛି ଉତ୍ତରେ ।

ଆହୁରି ବହୁତ ଲୋକେ ଥିବେ ଓଡ଼ିଶାରେ
ସେମାନଙ୍କ ନାମ ଲେଖା ନ ଗଲା ଏଠାରେ ।
ଖପା ହୁଅ ନାହିଁ, ନାମ ହେଲା ନାହିଁ ଛପା,
ଘରୁ ଖାଇ ପର କାମ କିଏ କରେ ବାପା ।
ହରି ହରି ହରି ବୋଲି ସରିଲା ମୋ ଗୀତ,
ଭଲ କୁହ ମନ୍ଦ କୁହ ଯାହା ତୁମ୍ଭ ଚିତ୍ତ ।

# ଉତ୍ସର୍ଗ ପତ୍ର

ମୋ କୁଟୀରରାଣୀ କୃଷ୍ଣକୁମାରୀ ସୁନ୍ଦରୀ,
ଜୀବନବଲ୍ଲଭା ପ୍ରାଣପ୍ରିୟା ସହଚରୀ,
ଛାଡ଼ି ଯାଇଅଛ ମୋର ନୟନପ୍ରତିମା,
ମିଶାଇ ହୃଦୟରକ୍ତେ ସେ ଗୁଣଗରିମା ।
ତୁମ୍ଭ ସମାନରେ ଦେଖି ନାହିଁ ପୁଣ୍ୟବତୀ,
ତୁମ୍ଭପରି ଦେଖି ନାହିଁ ପତିବ୍ରତା ସତୀ ।
ଉପାସନାବେଳେ ହୋଇ ଭକ୍ତିରେ ବିହ୍ୱଳ,
ବେନି ନେତ୍ରୁଁ ବହି ଯାଉଥାଏ ଅଶ୍ରୁଜଳ ।
ଦେଖିଛି ସର୍ବଦା ନୀଳ ଆକାଶରେ ଇନ୍ଦୁ,
ଫୁଟିଲା ଗୋଲାପ ପତ୍ରେ ଶିଶିରର ବିନ୍ଦୁ;
କମନୀୟ ଏ ସମସ୍ତ ନୁହେ ସେ ପ୍ରକାର,
ଯେମନ୍ତ ସୁନ୍ଦର ତୁମ୍ଭ ନେତ୍ର ଅଶ୍ରୁଧାର ।
ସେ ପ୍ରଶାନ୍ତମୂର୍ତ୍ତି ସେହି ମୁଦ୍ରିତ ନୟନ,
ଜଣାଯାଏ ମୋତେ ବ୍ୟାପି ରହିଛି ଗଗନ ।
ହୃଦୟବେଦନା କହି ପ୍ରଭୁ ନାମ ଧରି,
ମାତାଠାରେ ପିଲାମାନେ ଅଳି କଲା ପରି ।
ବହୁତ ଦେଖିଛି ସାଧୁ ଧର୍ମପରାୟଣେ,
ତୁମ୍ଭପରି ଭକ୍ତିମତୀ ଦେଖି ନାହିଁ ଜଣେ ।
ରାତିବେଳେ ବସିଥାଉଁ ଦୁହେଁ ନିର୍ଜନରେ,
ଛାତର ଉପରେ କିମ୍ବା ଉଦ୍ୟାନ ମଧ୍ୟରେ;
ଆକାଶରେ ଚନ୍ଦ୍ର ତାରା ଯାଉଥାନ୍ତି ଭାସି,
ପୃଥିବୀ ଉପରେ ଢାଳି ଦେଇ ସୁଧାରାଶି ।
ମଣୁଥିଲି ଆକାଶରେ ଚନ୍ଦ୍ର ତାରାଗଣ,
ପୃଥିବୀ ମଧ୍ୟରେ ଅଛୁଁ ଆମ୍ଭେ ଦୁଇଜଣ ।
ମହାପ୍ରଭୁ ବସିଛନ୍ତି ମହାସିଂହାସନେ,
ଆଉ କିଛି କଥା ଦିଶୁ ନ ଥିଲା ନୟନେ ।
ଦୁହେଁ କରୁଥିଲୁଁ ପ୍ରଭୁ ମହିମା କୀର୍ତ୍ତନ,
ଏବେ ମଣୁଅଛି ସବୁ ନିଶିର ସ୍ୱପନ ।
ସେହି ଚନ୍ଦ୍ର ସେହି ତାରା ଅଛନ୍ତି ଆକାଶେ,
ତୁମ୍ଭେ ଯାଇ ରହିଅଛ ଏବେ କେଉଁ ବାସେ ?
ସେହି ଭକ୍ତି ନିଷ୍ଠା ଐକାନ୍ତିକ ଉପାସନା,
ମୋ ଜୀବନେ ସବୁ ଏବେ ହେଲା ବିଡ଼ମ୍ବନା ।
ଗଲଣି ତ ସେହି ମୂର୍ତ୍ତି ଚିରକାଳ ଯାଉ,
ରକ୍ତ ପ୍ରତିବିନ୍ଦୁ ମଧ୍ୟେ ଛାୟା ଭାସୁଥାଉ ।
ଭୋଳିବାର ପାଠ ନୁହେ ଯିବ ଯେ ପାସୋରି,
ଜୀବନେ ଜୀବନ ଥିଲୁଁ ପରସ୍ପର ଧରି ।
ଗାଉଥିବି ବସି ତୁମ୍ଭ ନାମ ଚିରକାଳ,
ଗୁନ୍ଥୁଥିବି ନିଷ୍କଳଙ୍କ ପ୍ରୀତି ପୁଷ୍ପମାଳ ।
ଫୁଲମାଳ ରଖିଥାଅ କେତେ ଯତନରେ,
ବାନ୍ଧି ନେଉଥିଲୁଁ ଦୁହେଁ ଉପାସନା ଘରେ ।
କେତେ ଲାଜ ପାଇ ଯାଅ ଦେଲେ ଫୁଲ ହାତରେ;
'ନାହିଁ ନାହିଁ' କରି ବାନ୍ଧିଦିଅ ମୋ ଗଳାରେ ।
ମନେ ପଡ଼େ ଲାଜମିଶା ସେ ହାସ୍ୟମାଧୁରୀ,
ଏତେ ଜାଣିଥିଲେ ଦେଖିଥାନ୍ତି ନେତ୍ର ପୂରି ।
ମଲ୍ଲିକା ଗୋଲାପ ବୃକ୍ଷ କେତେ ଯତନରେ,
ରୋଆଇଲ ବଗିଚାର ସଡ଼କ ପାଶରେ ।
ବସୋରା ଗୋଲାପ ଯଦି ଫୁଟେ ସେ ଗଛରେ,
ଡାକି ନେଇ ଦେଖାଅ ଯେ କେତେ ଯତନରେ ।
ସେହି ବୃକ୍ଷ ପାଶେ ହେଲା ତୁମ୍ଭର ସମାଧି,
ସେହି ଫୁଲ ତୋଳି ଦେଇଥିବି କାନ୍ଦି କାନ୍ଦି ।
ମୋତେ ଛାଡ଼ି ଯାଇଅଛ ମାନୁ ନାହିଁ ମନ,
ପୃଥ୍ୱୀ ପୂର୍ଣ୍ଣ ତୁମ୍ଭ ଛାୟା ଦେଖୁଛି ନୟନ ।
ତୁମ୍ଭ ଗୁଣ ଗାଉଥିବି ପ୍ରିୟେ ଚିରକାଳ,
ଗୁନ୍ଥୁଥିବି ନିତି ନିତି ପ୍ରୀତି ପୁଷ୍ପମାଳ ।
ଏହା କି ଗୋ ତୁମ୍ଭ କୀର୍ତ୍ତି ଗାଉଅଛି ଯାହା,
ତୁଚ୍ଛ ତୁଚ୍ଛ କେବେଁ ନୁହେ କେବେଁ ନୁହେ ତାହା ।
କୁମୁଦ ଗୋଲାପ ଜାଈ ମଲ୍ଲୀ ନିରୁପମା,
ତା ସଙ୍ଗେ ବାସଙ୍ଗ ଫୁଲ ହେବ କି ଉପମା ।
ବଡ଼ ଶ୍ରଦ୍ଧା କରି ଶୁଣୁଥିଲ ମୋ କବିତା,
ବାଲମୀକି ରାମାୟଣ ଭଗବତଗୀତା ।
ଶୁଣନ୍ତ ଗୋ ଦେବି ବସି ମନର ଉଲ୍ଲାସେ,
ପଢ଼ନ୍ତି କବିତାଗୁଡ଼ି ବସି ତୁମ୍ଭ ପାଶେ ।
ମଧ୍ୟେ ବ୍ୟବଧାନ କୋଟି କୋଟି ପାରାବାର,
କିପରି ମୁଁ ଦେବି "ପୁଷ୍ପମାଳା" ଉପହାର ।

# ସୂଚୀ



———

# ପୁଷ୍ପମାଳା

## ପ୍ରାର୍ଥନା

ଦିନ ପ୍ରତି ଦୟା କର, ଆହେ ଦୟାମୟ,
ତୁମ୍ଭ ଶ୍ରୀଚରଣେ ଯେହ୍ନେ ଥାଏ ମୋର ଲୟ ।
ଆହେ ପ୍ରଭୋ, ଥିଲେ ମୁହିଁ ଯେଉଁ ଅବସ୍ଥାରେ,
ସ୍ଥିର ହୋଇ ରହିଥିବ ଚିତ୍ତ ତୁମ୍ଭଠାରେ ।
ଉପସ୍ଥିତ ହେଉ ପଛେ କ୍ଲେଶ ପୀଡ଼ା ସବୁ,
ସେହି ଅବସ୍ଥାରେ ମୋତେ ରଖ ମହାପ୍ରଭୁ !
ସଙ୍କଟ ବା ବିପଦରୁ ଉଦ୍ଧାର କାରଣେ,
ପିତଃ ପିତଃ ଡାକି ଯେହ୍ନେ ପଡ଼ିବ ଚରଣେ ।
ଯାଉ ପଛେ ମୋର ଖ୍ୟାତି ସମ୍ପତ୍ତି ସକଳ,
ହେଉ ମୋ ଜୀବନେ ତୁମ୍ଭ ଆଦେଶ ସଫଳ ।
ସତ୍ୟର ମହିମା କେବେ ନ ଯିବ ପାସୋରି,
ଥିବି ଦିବାନିଶି ତୁମ୍ଭ ପଦ ଲକ୍ଷ୍ୟ କରି ।
ଏହି ଆଜ୍ଞା କର ଆହେ ପ୍ରଭୁ ଭଗବାନ,
ମନେ ନ ରହିବ ଶତ୍ରୁକୃତ ଅପମାନ ।
ନ ଭୁଲିବି କେଭେଁ ଉପକାରୀ ଉପକାର,
ନ କରିବି ଶତ୍ରୁଗଣ ପ୍ରତି ଅତ୍ୟାଚାର ।
ନ କରିବି ଘୃଣା ଯେହ୍ନେ ରୋଗୀ ରୋଗ ଦେଖି,
ହିତ କଥା ରଖିଥିବ ହୃଦୟରେ ଲେଖି ।
ନିରାଶ କରିବି ନାହିଁ ଭିକ୍ଷାକାରିଗଣେ,
ଅତିଥିଙ୍କ ପଦଧୂଳି ପଡ଼ୁ ମୋ ପ୍ରାଙ୍ଗଣେ ।
ତେଜି ନିଜ ଯିବ ପର କାର୍ଯ୍ୟ କରିବାକୁ,
ନ କହିବି କେଭେ କଟୁବଚନ କାହାକୁ ।
କରିବି ଯେମନ୍ତ ଗୁରୁଜନଙ୍କୁ ସମ୍ମାନ,
ଭିକ୍ଷୁକଗଣକୁ ସାଧ୍ୟ ଅନୁସାରେ ଦାନ ।
ଅଶ୍ରଦ୍ଧା କରିବି ନାହିଁ ଦାସ ଦାସୀଗଣେ,
ହିଂସା ନ କରିବି ଅନ୍ୟ ମନ୍ଦ ଆଚରଣେ ।
ନ ଦେଖି ପାରିବି ପ୍ରତିବେଶୀ ଉପବାସ,
ନ କରିବି ତୁଚ୍ଛ ଲୋକଗଣେ ଉପହାସ ।
ନୋହୁ ଜାତ ଯେହ୍ନେ ମନ ମଧ୍ୟେ ଅହଙ୍କାର,
କରିବି ସମସ୍ତ ପ୍ରତି ସରଳ ବେଭାର ।
ନ କରୁ ପରଶ ମୋର ଅସତ୍ୟ ରସନା,
ପରଧନେ କେତେବେଳେ ନ ବଳୁ ବାସନା ।
ପାହିଯାଉ ରାତି ରୋଗୀ ରୋଗଶଯ୍ୟା ପାଶେ,
ପରପ୍ରାଣ ପାଇଁ ପ୍ରାଣ ଦେବି ଅନାୟାସେ ।
କେତେବେଳେ ପାପଧନ ନ ପଶୁ ମୋ ଘରେ,
ଋଣୀ କରି ନ ରହିବି ଯେହ୍ନେ ନିଶ୍ଚିନ୍ତରେ ।
ପରେ ପ୍ରାପ୍ୟ ଦେବାପାଇଁ ନ ହେବି କୁଣ୍ଠିତ,
ନ କରିବି ଦାସ ଦାସୀମାନଙ୍କୁ ବଞ୍ଚିତ ।
ଏହି ବର ଦିଅ ଆହେ ବାଞ୍ଛାକଳ୍ପତରୁ,
ଅଶାନ୍ତି ପିଶାଚୀ ଦୂର ହେଉ ମୋହ ଘରୁ ।
ଘୋଡ଼ାଅ ମୋହର ଘର କରୁଣା ଛାୟାରେ,
ଦଗ୍ଧ ନୋହୁ ମନ ପାପ ବିଦ୍ୱେଷ ଶିଖାରେ ।
ଶିଶୁ ପୁତ୍ର କନ୍ୟାଗଣେ କର ଆଶୀର୍ବାଦ,
ଶିଖନ୍ତୁ ପ୍ରଣୟ ପ୍ରୀତି ତେଜନ୍ତୁ ବିବାଦ ।
ନ ପରଶୁ ପାପକୀଟ କୋମଳ ମନରେ,
ରହୁ ସେମାନଙ୍କ ମନ ତୁମ୍ଭ ଚରଣରେ ।
ତୁମ୍ଭର ମହିମା ଗୀତ କରନ୍ତୁ ଗାୟନ,
ସାଧୁ ଶିଷ୍ଟାଚାର ଭକ୍ତିଗ୍ରନ୍ଥ ଅଧ୍ୟୟନ ।
ଆକାଶ କରନ୍ତି ଯେହ୍ନେ ଚନ୍ଦ୍ରମା ଉଜ୍ଜ୍ୱଳ,
ମୋ ହୃଦୟ କରୁ ତୁମ୍ଭ ମହିମା ନିର୍ମଳ ।
ଯେଉଁ ଦୟା ଯେଉଁ କ୍ଷମା ମାଗଇ ତୁମ୍ଭକୁ,
କାତର ନ ହେବି ତାହା ଦେବାକୁ ଅନ୍ୟକୁ ।
ତୁମ୍ଭ ବାୟୁ ଅନ୍ନ ଜଳେ ଅଛି ଦେହ ଧରି,
ଏହା ଯେହ୍ନେ କେତେବେଳେ ନ ଯିବ ପାସୋରି ।

ଯେଉଁ ଦୋଷ ଦେଖି ଆନେ ଜାତ ହୁଏ ରୋଷ,
ସେହି ଦୋଷ ମୋତେ ଯେହ୍ନେ ନ କରୁ ପରଶ ।
ଅଥବା ନ ଦିଅ କିଛି ପ୍ରଭୁ ଦୟାବାନ,
ତୁମ୍ଭ ଇଚ୍ଛା ଯାହା ତାହା କର ମୋତେ ଦାନ ।

—— —

## କାହିଁ ଛନ୍ତି ବନ୍ଧୁ ମୋର କିଏ ଦେବ କହି ?

ନ ଦେଖି ବନ୍ଧୁଙ୍କୁ ମୋର ମନର ଆକୁଳେ,
ଏଣେ ତେଣେ ଖୋଜି ଖୋଜି ଗଲି ନଦୀକୂଳେ ।
ବରଷିଲ ବହି ଆସୁଅଛି ବହୁଦୂରୁ,
ବୋଲି ପାରେ ତତ୍ତ୍ୱକଥା, ହୋଇପାରେ ଗୁରୁ ।
ବୁଲୁଛି ବହୁତ ଦେଶ,
ଧରିଛି ବହୁତ ବେଶ,
ନ କହିଲ କିଛି ଧୀରେ ଧୀରେ ଗଲା ବହି,
କାହିଁ ଛନ୍ତି ବନ୍ଧୁ ମୋର କିଏ ଦେବ କହି ? ୧ ।
ଯାଉଥିଲେ ବହି ନଦୀ ନ ଧରିବ ନାମ,
ମାତଲୋକ ସେବ କାହୁଁ ପୂର୍ଣ୍ଣ ମନସ୍କାମ ?
ନଦୀମାନେ ଯାଇ ଯହିଁ ହୋଇଛନ୍ତି ଠୁଳ—
ମହାମନ୍ତ ଯାଦଃପତି ଅସୀମ ଅକୂଳ,
ରତ୍ନପୂର୍ଣ୍ଣ ବାରନିଧି,
ଜଗତ ଜୀବନ ବିଧି*—
ଅନନ୍ତ ଅନନ୍ତ ପ୍ରାଣିଗଣେ ଅଛି ବହି,
କାହିଁ ଛନ୍ତି ବନ୍ଧୁ ମୋର ସେହି ପାରେ କହି ।୨।
ତପନ କି ଥିଲେ ବୁଡ଼ି ସାଗର ଜୀବନେ ?
କେମନ୍ତ କେମନ୍ତ ତେଜିଁ ଚଢ଼ିଲେ ଗଗନେ ।
ତେବେ ତ ସେ ଲୋକ ନୁହେ ସାମାନ୍ୟ ନିତାନ୍ତ,
ନବୀନ ତପନ ଯହୁଁ ହେଉଛନ୍ତି ଜାତ ।
ଜଗତ ଜୀବନ ପୁଣି ରତନଆକର,
ଭୀଷଣ ଗର୍ଜନ କରୁଛନ୍ତି ନିରନ୍ତର
ଏକ ଶବ୍ଦ ଏକତାନେ;
ନ କଲା ମୋ କଥା କାନେ,
ନ ଦେଲା ଉତ୍ତର ବେଳେ ମାତ୍ର ମୋ କଥାରେ,
କିଏ ଦେବ କହି ମୋର ବନ୍ଧୁ କେଉଁଠାରେ ? ୩ ।
ମୋ ପାଶକୁ ଊର୍ମି ଧାଇଁ ଆସେ ଥର ଥର;
ମନେକଲି ଏଥର ସେ ଦେବ ବା ଉତ୍ତର;
ମାତ୍ର ସେ ପାଶକୁ ଆସି ପଡ଼ୁଛି ହାବୁଡ଼ି,
ନ କହିପାରିଲେ ଯେହ୍ନେ ତୁଣ୍ଡ ଯାଏ ବୁଡ଼ି ।
ନ କହୁ ପଛକେ କିଛି ବୁଝିଛି ଇଙ୍ଗିତ,
ପାଇ ନାହିଁ ମୋ ବନ୍ଧୁର ଉଦ୍ଦେଶ୍ୟ କିଞ୍ଚିତ;
କେବଳ ତାହାଙ୍କ କୀର୍ତ୍ତି,
ଘୋଷୁଅଛି ନିତି ନିତି,
ଘୋ-ଘୋ-ଘୋ-ଘୋ-ଘୋ-ଘୋ ହୋଇ,
କାହିଁ ଛନ୍ତି ବନ୍ଧୁ ମୋର କିଏ ଦେବ କହି ? ୪ ।
ଅହେ ଗିରି ହିମାଳୟ ପର୍ବତ ରାଜନ,
ପରଶ କରିଛି ତୁମ୍ଭ ମସ୍ତକ ଗଗନ,
ତୁମ୍ଭର ସମସ୍ତ ଦେହ ହିମ ଆଚ୍ଛାଦିତ,
ଦେହଯାକ ଇନ୍ଦ୍ରଧନୁ ବରଣେ ଶୋଭିତ,
କେଉଁଠାରେ ଛନ୍ତି ବନ୍ଧୁ କହିଦିଅ ମୋତେ,—
ମହତଲୋକକୁ ସିନା ଚିହ୍ନନ୍ତି ମହତେ ।
ନ ଶୁଣ କି ଦୁଃଖୀ କଥା,
ନ ଫେଡ଼ କି ମନବ୍ୟଥା,
ତୁଚ୍ଛାଟାରେ ଏଡ଼େ ଦେହ ଅଛ କପାଁ ବହି ?
କାହିଁଛନ୍ତି ବନ୍ଧୁ ମୋର କିଏ ଦେବ କହି ? ୫ ।
ଅହେ ସୂର୍ଯ୍ୟ ଅହେ ଚନ୍ଦ୍ର ଜଗତ-ଲୋଚନ,
ଦିବାନିଶି ଆକାଶରେ କରୁଛ ଗମନ;
ବ୍ରହ୍ମାଣ୍ଡରେ କିଛି କଥା ନାହିଁ ଅଗୋଚର,
ଦୃଷ୍ଟି ରଖିଅଛ ସର୍ବସ୍ଥାନେ ନିରନ୍ତର;
ଜଗତ ପ୍ରାଣୀର ଅଟ ପାପ ପୁଣ୍ୟ ସାକ୍ଷୀ,
କି କଥା ଅଜଣା ତୁମ୍ଭଠାରେ ଅଛି ବାକି
ନ ଦେଇ ଉତ୍ତର କାହିଁ
ଯାଉଅଛ ନ ଅନାଇ ?
ନ ଜାଣିଲ ଲୋକ ପର ଯାଅ ତୁନ ହୋଇ ।
କାହିଁ ଛନ୍ତି ବନ୍ଧୁ ମୋର କିଏ ଦେବ କହି ? ୬ ।
ହେ ନକ୍ଷତ୍ରମାଳ ଆହେ ଗଗନଭୂଷଣ,
ତୁମ୍ଭେମାନେ ସର୍ବ କରୁଅଛ ନିରୀକ୍ଷଣ,—

* ଜଗତ ଜୀବନର ବିଧାତା ।

ଜଣେ ନ ଜାଣିଲେ ପାଞ୍ଚଜଣଙ୍କୁ ପଚାର,—
ଅସଂଖ୍ୟ ଅସଂଖ୍ୟ ତୁମ୍ଭେମାନେ ବ୍ୟୋମଗୃହୀ ।
ଏଥିପାଇଁ ପଚାରୁଛି ଜଣ ଜଣ କରି,
କେହି ଜଣେ ଦେଖିଛ କି ବନ୍ଧୁକୁ ମୋହରି ?
ମିଞ୍ଜି ମିଞ୍ଜି ଆଲୋ ଦେଇ
ରହିଲ ଯେ କାଳ ହୋଇ,
କମ୍ବା ନ ଜାଣ କି ତୁମ୍ଭେମାନେ ଜଣେ କେହି ?
କାହିଁଛନ୍ତି ବନ୍ଧୁ ମୋର କିଏ ଦେବ କହି ? । ୭ ।
ଏଥର ପାଚାରୁଛି ଭେଟି ମହତ ଜଣକୁ,
ମହତଜନରେ ଭିକ୍ଷା ନ ଭଜେ ବ୍ୟର୍ଥକୁ ।
ବୋଲ ହେ ଆକାଶ ତୁମ୍ଭେ ବୋଲ ହେ ସ୍ୱରୂପ
କାହିଁ ଛନ୍ତି ବନ୍ଧୁ ମୋର ଅଛନ୍ତି କିରୂପ ?
ବ୍ରହ୍ମାଣ୍ଡ ମଧ୍ୟରେ ନାହିଁ ତୁମ୍ଭ ଛଡ଼ା ସ୍ଥାନ,
କାହିଁ ଛନ୍ତି ବନ୍ଧୁ କରିପାର ଅନୁମାନ ।
ଧିକ ଧିକ ମିଛ କଥା,—
ପରେ କି ବୁଝିବ ବଥା,
ଏଣେ ତେଣେ ଲୋଡ଼ି ଲୋଡ଼ି ଦିନ ଗଲା ବହି ।
କାହିଁ ଛନ୍ତି ବନ୍ଧୁ ମୋର କିଏ ଦେବ କହି ? ୮ ।

———

## ଜହ୍ନମାମୁ

ଆ—ଆ—ଜହ୍ନମାମୁ ଆ—ଆ—ଆସୁ,
ବଡ଼ ଭଲ ପାଏଁ ତୋତେ ପ୍ରାଣଧନ ପ୍ରାୟୁ ।
ମୋ ବାପର ଥିଲୁ ମାମୁ ପୁଣି ମାମୁ ମୋର,
କେତେ ଲେଖାଯୋଖା ଅଛି ତୋହର ମୋହର ।
ଆ—ଆ—ଜହ୍ନମାମୁ ମୋ ପାଖକୁ ଥରେ,
ଦୁଇ ଚାରି କଥା ପଚାରିବି ଗୁପତରେ ।
ବହୁତ ଉପରେ ମାମୁ ବୁଲୁଛୁ ଗଗନେ,
ପୃଥିବୀର ଭଲମନ୍ଦ ଦେଖୁଛୁ ନୟନେ,
ଜଗତର କିଛି ନାହିଁ ତୋତେ ଅଗୋଚର,
ଫେଡ଼ିପାରୁ ସହଜରେ ସନ୍ଦେହ ମୋହର ।
ଏ କି କଥା ମାମୁଁ ଡାକୁଅଛି ବାରେ ବାରେ,
ବେଳେ କାନ ଡେରୁ ନାହୁଁ କିପାଁ ମୋ କଥାରେ ।
ବୁଝିଲି ବୁଝିଲି ମାମୁ ତୋହ ମନ କଥା,
ବଡ଼ଲୋକେ ନ ବୁଝନ୍ତି ଦୁଃଖିଲୋକ ବଥା ।
ନ ଆ—ପଚାରକେ ଦେବୁ କଥାରେ ଉତ୍ତର,
କିପାଁ ତୋର ହେଉଅଛି ଏତେ ରୂପାନ୍ତର ?
ଦୁଖିୟାରେ ଅଧଖଣ୍ଡେ ମଲ୍ଲି ଫୁଲ ମାଳ
ବଢ଼ି ବଢ଼ି ପୂର୍ଣ୍ଣିମାରେ ହେଲୁ ରୂପଆଳ;
ପଛୁଁ ଅସି ପହଞ୍ଚିଲା କୃଷ୍ଣ ପ୍ରତିପଦ,
ଭୁଟିଲା ସମ୍ପଦ ତୋର ଘଟିଲା ବିପଦ !
ତିଥି ତିଥି ଯାଇ ଅମାବାସ୍ୟା ହେଲା ଆସି,
କାହିଁ ତୋ ଗୌରବ କାହିଁ ଗଲା ରୂପରାଶି ?
ତେବେ ମାମୁ ତୁଛାଟାରେ କିପାଁ ଗର୍ବ ଏଡ଼େ ?
ବୁଝିଲେ ମୋଠାରୁ ଆଉ ତୁହି ବଡ଼ କେଡ଼େ ?
ତାରାପତି ବୋଲି ଲୋକେ କହୁଥାନ୍ତି ତୋତେ,
ତୁ ନ ଥିଲେ ତାରାମାନେ କାନ୍ଦୁଥାନ୍ତି କେତେ ?
କୁମୁଦ ବାନ୍ଧବ ପରା ? ଉଆଁସ ଦିନରେ
କେତୋଟା କୁମୁଦ ବୁଡ଼ି ମରନ୍ତି ଜଳରେ ?
ସବୁ ମିଛକଥା ମାମୁ ସମ୍ପଦର ସାଥି;
ବିପଦ କାଳରେ କେହି ପାଶରେ ନ ଥାନ୍ତି ।
କହିପାରେଁ ମାମୁ ମୁହିଁ ପକାଇ ତୋ ଗୁଣ
ବହୁତ ବଡ଼ୁଛି ବନ୍ଧୁ ବାନ୍ଧବଙ୍କ ଠାଣ ।
ମୋହର ଦୁଖିଆ ଥିଲା ପୂର୍ଣ୍ଣିମା ହୋଇଛି,
କୃଷ୍ଣପକ୍ଷ ହେଲା, ଅମାବାସ୍ୟା ବାକି ଅଛି ।
ଆସିଲେ ସେଦିନ ମୋର ତାରା କଇଁମାନେ
କେ କେ ଯିବେ ସଙ୍ଗେ ବୁଝିଅଛି ଅନୁମାନେ ।
ତୁ ଅଟୁ କଳଙ୍କୀ ମାମୁ ମୁଁ କଳଙ୍କମୟ,
ତୋହପରି ମୋର ପୁଣି ଅଛି ବୃଦ୍ଧି କ୍ଷୟ ।
ରାହୁ ଗରାସିଲେ ହୁଏ ତୋହ ତେଜ ହ୍ରାସ;
କେତେ ଥର କରିଅଛି ମୋତେ ରାହୁ ଗ୍ରାସ ।
କେବଳ ଗୋଟିଏ କଥା ମନରେ ସଂଶୟ;
ମୋହରଣ ତୋତେ ମାମୁ ସତ କରି କହ;—
ଶୁକ୍ଳପକ୍ଷ ହୁଏ ତୋର ଅମାବାସ୍ୟା ପରେ;
ମଲେ କି ମୁଁ ବାହୁଡ଼ିବି ପୁଣି ଆଉ ଥରେ ?

———

## ନିଦାଘ ନିଶୀଥ ସ୍ୱପ୍ନ

ବହୁତ ଗ୍ରୀଷମ ବନ୍ଦ ଝୋଟି ଝୋଟି ଝାଳ
ସହି ହେଉ ନାହିଁ ପୁଣି ମଶାଙ୍କ ଜଞ୍ଜାଳ;
ଆଖି ଦୁଇ ମାଡ଼ିପଡ଼ି ଆସୁଛି ନିଦରେ,
ବଡ଼କଷ୍ଟ ହେଲ ରହି ନ ପାରିଲି ଘରେ ।
ନିଦ ଅଳସରେ ପୁଣି ଉଠୁଅଛି ହାଇ,
ବସିଲି ଯେ ଅଗଣାରେ ବିଛଣା ବିଛାଇ ।
ଜଣାଯାଏ ଅଧରାତି ଯାଉଅଛି ଗଡ଼ି,
ଶୁଭିଲା ବାଲୁଆ ଘଣ୍ଟା ତୁକେ ତୁକେ ରଡ଼ି ।
ଆକାଶ ମଣ୍ଡିରେ ଚନ୍ଦ୍ର ହୋଇଲେଣି ଯେ ଆସି,
ତୁନି ହୋଇ ଢାଳି ଦେଉଛନ୍ତି ସୁଧାରାଶି ।
ମଲ୍ଲିଫୁଲ ପରି ପୁଣି ପଡ଼ିଛନ୍ତି ତାରା,
ଆକାଶରେ ସଭା କରି ବସିଛନ୍ତି ପରା ।
ମେଘମାନେ ଯାଉଛନ୍ତି ଉତ୍ତରକୁ ଧାଇଁ,
ଖଣ୍ଡକ ପଛରେ ଖଣ୍ଡେ ସରିବାକୁ ନାହିଁ,
ଏକଧାନେ ଅନାଇଲେ ଶଶଧରେ ଦଣ୍ଡେ,
ଦିଶେ ଭାସି ଯାଉଅଛି ରୂପାଥାଳ ଖଣ୍ଡେ,
ବେଳେ ବେଳେ କଳାମେଘ ଯାଉଅଛି ଲୁଚି,
ତାରାଗଣ ସଙ୍ଗେ ଖେଳୁଛି କି ଲୁଚ ପୁଚ ?
ଝିର ଝିର ବହୁଅଛି ଦକ୍ଷିଣା ପବନ,
ଅଜାଣତେ ବୁଜିଗଲା ମୋ ବେନି ନୟନ ।
ଭାବିଥିବ ଦେଖିଥିବ ଯାହାକୁ ମନରେ
ପ୍ରାୟ ସେହିକଥା ଦେଖାଯାଏ ସ୍ୱପନରେ ।
ଏହିପରି ଜଣା ମୋତେ ଗଲା ସ୍ୱପନରେ
ବସିଅଛି ବଡ଼ ଏକ ପର୍ବତ ଶିଖରେ;
ଯେଉଁଆଡ଼େ ଦେଖୁଅଛି ଫେରାଇ ନୟନ
ଅନନ୍ତ ଅନନ୍ତ ପୁଣି ଅନନ୍ତ ଗଗନ ।
କେତେ କ୍ଷଣ ଭଲ ଭଲ ଜାଣିଲି ଆଭାସେ,
କେବଳ ଦୁଇଟା ଦିଗ ଅଛି ଏ ଆକାଶେ ।
ତହିଁ ପୁଣି ମୋତେ ହୋଇଗଲା ଦିଗ ବଣା,
ଉତ୍ତର ପଛକୁ ପୂର୍ବରେ ଗଲା ଜଣା ।
ଉତ୍ତର ଦିଗରେ ପୁଣି କି କି ଦ୍ରବ୍ୟ ଅଛି
ଏକାବେଳେ ମୋତେ ଜଣାଗଲା ନାହିଁ କିଛି ।
ଦେଖିଲି ଅନାଇ ପୂର୍ବ ଦିଗେ ଏକ ଧାନେ—
ଅସଂଖ୍ୟ ଅସଂଖ୍ୟ ଧାଉଁଛନ୍ତି ତାରାମାନେ;
କେହି ଉଇଁଅଛି, କେହି ଆକାଶ ମଧ୍ୟରେ,
ଥୋକେ ବୁଡ଼ି ଯାଉଛନ୍ତି ଦିଗ୍‌ବଳୟରେ ।
ସମାନ ଗତିରେ ସର୍ବତାରା ଛନ୍ତି ଧାଇଁ,
ବିଶ୍ରାମ ମୁହୂର୍ତ୍ତମାତ୍ର କାହାର ଯେ ନାହିଁ ।
ଉଇଁବା ସ୍ଥାନରେ କେତେ ତାରା ବୁଡ଼ିଯାଏ
ମୁହୂର୍ତ୍ତ ମାତ୍ରକ ରହି ଜଳବିମ୍ବ ପ୍ରାଏ ।
ଖଣ୍ଡେ ଖଣ୍ଡେ କଳାମେଘ ଆସୁଅଛି ଉଡ଼ି;
ତହିଁ ମଧ୍ୟେ କେତେ ତାରା ଯାଉଛନ୍ତି ବୁଡ଼ି ।
ବହୁତ ଆକାଶେ ବୁଡୁଛନ୍ତି ଏହିପ୍ରାୟେ;
ସବୁ ନ ଆସନ୍ତି କିଛି ଦିଗ୍‌ବଳୟ ଯାଏଁ ।
କେତେ ତାରା ବୁଡ଼ିଗଲେ ଉଇଁବା ମାତ୍ରକେ;
ଆକାଶ ମଧ୍ୟକୁ ଆସି ବୁଡ଼ିଗଲେ ଥୋକେ ।
ଧାଇଁ ଏକ ଏକ ଲମ୍ପଟ ତାରା ମହାବଳୀ
ପକାଉଅଛନ୍ତି ପାଶ ତାରାଗଣେ ଦଳି ।
ମାତ୍ର ମୁହିଁ ଭଲରୂପେ ଦେଖିଲି ଅନାଇଁ
କେହି ତାରା ଆକାଶରେ ରହିପାରୁ ନାହିଁ;
ଉଇଁ ଥିବା ତାରାମାନେ ଯାଉଛନ୍ତି ଅସ୍ତ,
ଯେତେକ ଉଇଁବେ ପୁଣି ବୁଡ଼ିବେ ସମସ୍ତ ।
ଗୋଟାଏ ଗୋଟାଏ ତାରା ଯାଉଛନ୍ତି ବୁଡ଼ି
ତାହାଙ୍କ ପ୍ରତିଭା ଅଛି ଆକାଶରେ ପଡ଼ି ।
ଆରେକ ଅଦ୍ଭୁତ କଥା ଦେଖିଲି ଆକାଶେ
ସର୍ବସ୍ଥାନେ ଦିନନାଥ କିରଣ ପ୍ରକାଶେ;
ମାତ୍ର କେଉଁଠାରେ ବିରାଜିତ ଦିବାକର
ହେଲେ ନାହିଁ ଭଲରୂପେ ନୟନ ଗୋଚର ।
ନିସ୍ତେଜ ଅଟନ୍ତି ଆକାଶର ତାରାମାନ;
ଦିନନାଥ ତେଜେ ହୋଇଛନ୍ତି ଦୀପ୍ତିମାନ ।
ଏକପ୍ରାନ୍ତୁ ଆନପ୍ରାନ୍ତେ ଯାଉଅଛି ଦେଖା
ମହାରକା ପରି ଶଏ କୋଡ଼ିଏଟା ରେଖା ।

ନ ବୁଝି ପାରିଲି କିଛି ଆକାଶର କଥା
ଭାଳି ଭାଳି ଫାଟି ଯେହ୍ନେ ଗଲା ମୋର ମଥା ।
ତହିଁରୁ ପୁରୁଷ ଏକ ଅଇଲେ ବାହାରି;
ମଣିଲି ଶୁଣିବେ ଏହି ମୋହର ଗୁହାରି;
ପଚାରିବି ତାଙ୍କୁ କିଛି ଭାଳିଛି ମନରେ,
ବୋଇଲେ ପୁରୁଷ ମୋତେ କୋମଳ ବାକ୍ୟରେ,
"ଶୁଣ ରେ ମନୁଷ୍ୟ ! ଅଟେ ମୋ ନାମ ବିବେକ,
ଫେଡ଼ିପାରେଁ ତୋ ମନର ସନ୍ଦେହ ଯେତେକ ।
ଶୂନ୍ୟ ବୋଲି ଯାହା ତୁହି କରିଛୁ ବିଶ୍ୱାସ
ଅଟେ ଏହା ନାମ କାଳ ନୁହଇ ଆକାଶ ।
ଅନନ୍ତ ଏହାର ପୂର୍ବ ଅନନ୍ତ ଉତ୍ତର
ସବୁ ନୁହେ କିଛି ଲୋକମାନଙ୍କ ଗୋଚର ।
ଯେତେ ଅଂଶ ଆସିଅଛି ମାନବ ଗୋଚରେ
ବଣ୍ଟା ହୋଇଅଛି ଶଏ କୋଡ଼ିଏ ଭାଗରେ ।
ବୁଝିଯାଅ ଭଲରୂପେ ଗୃହିଁ ଅନୁମାନେ,
ଉଦୟାସ୍ତ ହେଉଛନ୍ତି ତହିଁ ତାରାମାନେ ।
ଏକ ଏକ ଭାଗ ନାମ ବର୍ଷ ଏକ ଏକ,
ଏଥି କରୁଛନ୍ତି ଗତ ମାନବ ଯେତେକ ।
ନ ବଞ୍ଚନ୍ତି ସବୁଲୋକ କିଛି ବିଶାଶଏ,
ଦୁଇ ପାଞ୍ଚ ଆଠ କେହି ଅଶୀ ନବେ ଶଏ ।
କଳାମେଘ ଯାହା କରୁଅଛ ନିରୀକ୍ଷଣ,
ଅଟଇ ଯେ ଏହା ନାମ ଅକାଳମରଣ ।"
ପୁଚ୍ଛାକଲି ବିବେକଙ୍କୁ ବିନୟ ବଚନେ,
"ବହୁତ ଧୂଳିଆ ମେଘ ଦିଶୁଛି ଗଗନେ,
ବେଳେ ବେଳେ ତାରାଗଣେ ବସୁଛନ୍ତି ମାଡ଼ି,
ନ ବୁଡ଼ାଇ କିଛିକ୍ଷଣେ ଯାଉଛନ୍ତି ଛାଡ଼ି ।"
ବୋଇଲେ ବିବେକ ତହୁଁ ହସି ଗଦଗଦ,
"ଏହି ସବୁ ମେଘ ନାମ ଆପଦ ବିପଦ ।
ପୁଣି କେତେ ଖଣ୍ଡ ପୀଡ଼ାରୂପୀ ମେଘଗଣ
କରନ୍ତି ଯେ ବେଳେ ବେଳେ ଲୋକେ ଆକ୍ରମଣ ।
ଦେଖୁଛ ତ କେତେ ତାରା ନାହାନ୍ତି ଆକାଶେ,
ମାତ୍ର ସେମାନଙ୍କ ଜ୍ୟୋତି ପ୍ରତିଭା ବିକାଶେ ।
ଏମାନେ ଧାର୍ମିକ ଧୀର ଥିଲେ ଜୀବନରେ;
ମଲେଣି ମାତ୍ରକ ଯଶ ରହିଛି ମର୍ତ୍ତ୍ୟରେ ।
ଧନ୍ୟ ସେମାନଙ୍କ ଜନ୍ମ ସାର୍ଥକ ଜୀବନ;
ମରି ଯାଇଛନ୍ତି କରି ଉଜ୍ଜ୍ୱଳ ଭୁବନ ।
ମର୍ତ୍ତ୍ୟରେ ଯାହାର ନାହିଁ ସୁଯଶ ପ୍ରଚାର
ମରିବା ନିମନ୍ତେ ପୃଥିବୀକୁ ଆସିବାର ।
ଧୂମକେତୁ ବୁଝିଅଛ ଯାହା ଅନୁମାନେ
ଦାମ୍ଭିକ ପାଷଣ୍ଡ ଦୁଷ୍ଟ ସେହି ଲୋକମାନେ,
ଆନ ସୁଖ ଦୁଃଖେ ଦୃଷ୍ଟି ନ ରଖନ୍ତି ବାରେ
ଲାଞ୍ଜକୁ ମେଲାଇ ବୁଲୁଥାନ୍ତି ଅହଙ୍କାରେ ।
ଯେଉଁ ପ୍ରଭାକର ଜ୍ୟୋତି ଦେଖିଲ ଆକାଶେ
ପୂର୍ଣ୍ଣବ୍ରହ୍ମ ମହାଜ୍ୟୋତି ଜଗତେ ବିକାଶେ ।
ଯେ ନୁହନ୍ତି ପୂତମନା ସୁଶୀଳ ବିବେକୀ
କେତେବେଳେ ସେହି ଜ୍ୟୋତି ନ ପାରନ୍ତି ଦେଖି ।
ତାହାଙ୍କ ଜ୍ୟୋତିରେ ଲୋକମାନେ ଜ୍ୟୋତିଷ୍ମାନ,
ମାତ୍ର ନ ପାରନ୍ତି କରି ତାଙ୍କୁ ଅନୁମାନ ।
ସର୍ବଘଟେ ବିରାଜିତ ତାହାଙ୍କ କିରଣ,
ଖୋଜି ନ ପାଆନ୍ତି କିନ୍ତୁ ତାଙ୍କୁ ଲୋକଗଣ ।
ଯେଉଁ ଜ୍ଞାନୀ ନିଜ ଆତ୍ମା ଦେଖେ ଜ୍ଞାନବଳେ
ସେହି ଭାଗ୍ୟବାନ ତାଙ୍କୁ ଦେଖେ ସର୍ବସ୍ଥଳେ ।"
ଗାଇଲେଣି ଆକାଶରେ ପକ୍ଷୀଏ ପ୍ରଭାତୀ,
ଭାଙ୍ଗିଗଲା ନିଦ ମୋର, ପାହିଗଲା ରାତି ।
କାହିଁ ମୁହିଁ କାହିଁ ମୋର ପ୍ରିୟ ପରିଜନ ?
କରୁଛି ଆନନ୍ଦପୁରେ ଜୀବନ ଯାପନ ।

———

## ସନ୍ଧ୍ୟାବେଳେ ବିଦେଶୀର ଚିନ୍ତା

ଦିନ ନାହିଁ ଆଉ, ସୂର୍ଯ୍ୟ ଯାଏ ବୁଡ଼ିବୁଡ଼ି,
କା—କା କରି କାଉ ଯାଉଛନ୍ତି ଉଡ଼ି,
ତାଳଗଛେ ବରଗଛେ ପଡ଼ିଅଛି ଖରା,
ପୃଥିବୀର ମାୟା ଛାଡ଼ି ପାରୁନାହିଁ ପରା !

ପାଣି ଢେଙ୍କ ବୋହୂମାନେ ଯାଉଛନ୍ତି ଘରେ,
କଣେଇଁ କଣେଇଁ ଗୃହ୍ୟ ଚହୁଁଛନ୍ତି ଥରେ ଥରେ ।
ବିଲରୁ ବାହୁଡ଼ ଘରେ ଯାଏ ଚଷା ପୁଅ,
ଅଳପ ଅଳପ ଅଛି ଆକାଶେ ଆଲୁଅ ।
ଅନ୍ଧକାର ମାଡ଼ ଆସୁଅଛି ଧୀରେ ଧୀରେ,
ବାପୁ ବୋବାଉଛି ବସି ତାଳଗଛ ଶିରେ ।
ଡେଣା ଝାଡ଼ିଅଛି ପେଚ୍ଚ ମନର ଉଲ୍ଲାସେ,
ଚଲ ପଲ ଉଡ଼ଯାନ୍ତି ବାଦୁଡ଼ ଆକାଶେ ।
ଏଣେ ତେଣେ ଗୋଟି ଗୋଟି ଯାଉଛନ୍ତି ଉଡ଼ି,
ବଣା ହୋଇ ଯାଉଛନ୍ତି କବା ବାଠ ହୁଡ଼ି ।

ଆହା! ଆହା କବା ଶୋଭା ଗୋବ୍ରା ହୁଡ଼ * ମୁଣ୍ଡେ !
ଲୁଚି ଯାଉଅଛି କବା ସୁନାଥାଳି ଖଣ୍ଡେ !
ପଶ୍ଚିମ ଆକାଶ ଦିଶେ କେମନ୍ତ ସୁନ୍ଦର !
ଭୁଲ ଢେଲ ଶନିଅଛି ପେଦ୍ଧେ ଚକଚକର ।
ନାଲ, କଳା, ନୀଳ, ଧଳା, ହରିତ, ପାଟଳ,
ସ୍ତରେ ସ୍ତରେ ଶୋଭୁଛନ୍ତି ବାଦଲ ପଟଳ ।
ଧଳାଗଛ, କଳାହାଣ୍ଡି, ଲତା ନାନା ଜାତି,
ନାନା ରଙ୍ଗ ମିଶାମିଶି ଇନ୍ଦ୍ରଧନୁ ଭାତି ।
ତାହା ମଧ୍ୟ ଦେଖୁଁ ଦେଖୁଁ ଗଲ କାହିଁ ଚାଲି,
ଗ୍ରାସିଆସେ ଅନ୍ଧକାର ଅନ୍ଧକାର ଖାଲି ।
ଏକାଳେ ବିଦେଶୀ ଜଣେ ବୈତରଣୀ କୂଳେ
ତୁନି ହୋଇ ବସିଅଛି ମନର ଆକୁଳେ,
ଦିନଯାକ କାମ କରି ପଡ଼ିଅଛି ଥକି;
କି କି କଥା ମନେ ଭାଳି ପଡ଼ୁଛି ଚମକି;

ଅନାଇ ଦେଖିଲା ଥରେ ପଶ୍ଚିମ ଆକାଶ;
ଆପେ ଆପେ କଥା କହେ ପକାଇ ନିଃଶ୍ୱାସ ।—
ଏହି ତ ପୃଥିବୀ ଗତି ମନୁଷ୍ୟଙ୍କ ଦଶା;
ଧିକ ଧିକ କାହାକୁ ମୁଁ କରିଛି ଭରସା !

ଉଇଁଲେ ଆକାଶେ ରବି ବିଶ୍ୱ ଆଲୋକିତ,
ମୋ ଜନମକାଳେ ଜ୍ଞାତିଜନେ ପୁଲକିତ ।
ମିଠା ମିଠା ଖିଆ, ନାହିଁ ଗ୍ରୀଷମ ଜଞ୍ଜାଳ,
ନାଚ କୁଦ ଆନନ୍ଦରେ ଗଲା ପିଲାକାଳ;
ପ୍ରଚଣ୍ଡ ମାର୍ତ୍ତଣ୍ଡ ତେଜ ମଧ୍ୟାହ୍ନ କାଳରେ,
କେତେ ଅତ୍ୟାଚାର କଲି ଯୁବା ବୟସରେ ।
ଅସ୍ତ ପ୍ରାପ୍ତ ଦିବାକର ତେଜ ନାହିଁ କିଛି,
ବୁଢ଼ା ହେଲି ବଳ ବୀର୍ଯ୍ୟ ସାମର୍ଥ୍ୟ ଯାଉଛି ।
ଅସ୍ତ ଦିବାକର ଚିହ୍ନ ଅଛି ଆକାଶରେ;
ମଲେ ଭଲ ମନ୍ଦ କଥା ରହିବ ଲୋକରେ ।
ଆଉ କିଛି ମାତ୍ର ନାହିଁ ଅନ୍ଧକାର ଭିନ୍ନ;
ଯିବି ମୁହିଁ ଯିବ ନାମ ନ ରହିବ ଚିହ୍ନ ।

ବୁଡ଼ିଗଲେ ସୂର୍ଯ୍ୟ ଉଦେ ହେବେ ପୁନର୍ବାର;
କିଏ ବା ଦେଖିଛି ମଲା ଲୋକ ଫେରିବାର ।
ଥିଲି ନାହିଁ ପୂର୍ବେ ପରେ ନ ରହିବ କିଛି;
କେବଳ କେତେଟା ଦିନ ପୃଥିବୀରେ ରହିଛି ।
ଏହି କଥା ମନେ ବେଳେ ନ କରି ବିଚାର,
ସ୍ୱାର୍ଥପାଇଁ କେତେ କରିଅଛି ଅତ୍ୟାଚାର ।
ସୁଖ ଲୋଡ଼ି ଲୋଡ଼ି ସାରା ଜୀବନଟା ଗଲା,
ସୁଖ ପାଇ ବେଳେ ତୃପ୍ତି ଲଭିଥାନ୍ତି ଭଲା ।
କେବଳ କଳ୍ପିତ ସୁଖ ଜ୍ଞାତି ପରିବାରେ,
ଥାଏ ଯେବେ ପବିତ୍ରତା ସେମାନଙ୍କଠାରେ ।
ଜନ୍ମଭୂମି ଅଟେ ସ୍ୱର୍ଗଠାରୁ ଗରୀୟସୀ,
ତହୁଁ ବଳି ପୂତ, ଭାର୍ଯ୍ୟା ପରାଣପ୍ରେୟସୀ ।
ସାରା ଜୀବନଟା ଗଲା ବିଦେଶରେ ବୁଲି,
ଆଖି ବୁଜି ପଡ଼ିଅଛି ସେମାନଙ୍କୁ ଭୁଲି ।
ନୟନ-ପ୍ରତିମା ମୋର ରହିଛନ୍ତି ଘରେ;
ସୁଖ ପାଇଁ ଦୁଃଖ ପାଉଅଛି ବିଦେଶରେ ।

———

* ଅନନ୍ଦପୁର ପଟ୍ଟ ବଦଗଛ ପର୍ବତ । ଲେଖକ ଆନନ୍ଦପୁରରେ ଥିବା ସମୟରେ ଏହି କବିତା ରଚିତ ହୋଇଅଛି ।

## କୋଇଲୀନାନୀ

ଡାକ ଡାକ ଆଉଥରେ ଡାକ ଲୋ କୋଇଲି;
କହଏ ବୋଲନ୍ତି ତୋତେ ବସନ୍ତ ପୋଇଲି ।
ନିର୍ବୋଧ ସେ ଲୋକମାନେ ବୋଲନ୍ତି ନ ଜାଣି;
ମୁହିଁ ଜାଣେ ଅଟୁ ବସନ୍ତର ପାଟରାଣୀ ।
ଡାକ ଡାକ ଆଉଥରେ କୁହୁ କୁହୁ କୁହୁ,
ପରାଣ ଉଦାସ ହେଉଅଛି ଉହୁ ଉହୁ ।
କପାଁ ଲୁଚିଅଛୁ ଆମ୍ବପତ୍ରର ଭିତରେ ?
ଆ-ମୋ ଆଗକୁ ତୋତେ ଦେଖିବି ମୁଁ ଥରେ ।
ଅସୁନ୍ଦର ବୋଲି ତୋତେ ମାଡୁଛି କି ଲାଜ ?
ଯାହା ଯେବେ ଗୁଣ ଅଛି ରୂପରେ କି କାର୍ଯ୍ୟ ?
ଗୁଣର ଗାରିମା ଗଣିଥାନ୍ତି ଜ୍ଞାନୀନର;
ନାରୀଏ କରନ୍ତି ସିନା ରୂପର ଆଦର ।
ଶ୍ରୀମନ୍ତ ବସନ୍ତକାଳ, ଫୁଟିଛି ବଉଳ,
ଗୁଣ୍ଠୁ ଗୁଣ୍ଠୁ ଭୃଙ୍ଗ ରବ, ବିରହୀ ଆକୁଳ ।
ହସୁଛି ପଙ୍କଜ ଜଳେ, ସ୍ଥଳପଦ୍ମ ବନେ,
ପୁଲକିତ ପ୍ରାଣିଗଣ ଶୀତଳ ପବନେ ।
ଫୁଟିଲା ଫୁଲରୁ ମଧୁ ପଡୁଅଛି ଝରି,
ତାଳ ଦେବୁ ଆଉଥରେ ପଞ୍ଚମ ଲହରୀ ।
ନ ଶୁଣନ୍ତୁ ଲୋକ ପଛେ, ନାହିଁ କିଛି ହାନି,
ଡାକ ଡାକ ଆଉଥରେ ଶୁଣିବି ମୁଁ ନାନି !
ମୋ କଥାରେ ଦେବୁ, ନାନି, ଉତ୍ତର ତୁ ବାରେ ।
ବରଷାକାଳରେ ତୁହି ଥାଉ କେଉଁଠାରେ ?
ଜଣାଗଲା ସୁଖବେଳେ ସବୁ ନାନି, ଭାଇ,
ଆଇଲେ ସଙ୍କଟକାଳ କାହା ଭେଟ ପାଇ ?

---

## ବେଙ୍ଗଭାଇ

ତୁନି ହ—ତୁନି ହ—ଆରେ ମୋର ବେଙ୍ଗଭାଇ,
କେତେ ଫୁଲି ଯାଉ ନୂଆପାଣି ମନ୍ଦେ ପାଇ ?
ସାରୁପତ୍ରମୂଳେ ବସିଅଛୁ ରାଜା ପରି;
ଧରିଛି ବେଙ୍ଗୁଲିରାଣୀ ତୋ ଗୀତ ଦୁହାରି,
କେଁ—କେଁ—କେଁ କେଁ କୁଆଁ କୁଆଁ କୁଆଁ,
ଧୈବତ, ନିଷାଦ ବାରିବାକୁ ଲାଗେ ଧୁଆଁ ।
ପ୍ରେମିକ ଉତ୍ସୁକ ତୋହ ଡାକ ଶୁଣିବାରେ,
ଶୃଣିଆଡ଼େ ଝିମ ଝିମ ବରଷା ଅନ୍ଧାରେ ।
କହନ୍ତି ପ୍ରେମିକ ଲୋକ କିଛି ପୃଥ୍ୱୀଯାକ,
ସାରା ରାତି ବସି ଶୁଣୁଥିବେ ତୋହ ଡାକ ।
ହେଉ ପଛେ ଯେତେ ସୁମଧୁର ଡାକ ତୋର,
ଭଲ ଲାଗେ ନାହିଁ କିନ୍ତୁ ଏକଭଳି ସ୍ୱର ।
ତୁନି ହ—ତୁନି ହ—ତୁହି ଏବେ ବେଙ୍ଗଭାଇ !
ରାତି ଗୋଟା ତୁ କି ଶୋଇବାକୁ ଦେବୁ ନାହିଁ ?
କାହୁଁ ତୁ ଶିଖିଲୁ କହ ଏପରି ବେଭାର —
ଆତ୍ମସୁଖେ ରତ ପରକଥା ଭୁଲିବାର ?
ଜଣାଗଲା କହିବାକୁ ହେବ ନାହିଁ ତୋତେ,
ବଡ଼ ଲୋକ ଆଚରଣ ଶିଖନ୍ତି ସମସ୍ତେ;—
ଘରେ ଭୋଜବାଜି, ଗୀତ, ନାଚ ରାତିଯାକ,
ବେଳେ ନ ଶୁଣନ୍ତି କାନେ ପଡ଼ିଶାଙ୍କ ଡାକ ।
କାଟୁଛନ୍ତି ରାତି ବନ୍ଧୁ ସଙ୍ଗେ ପଶା-ତାସେ,
କେ ଦେଖୁଛି ପଡ଼ିଶା ଯେ ଶୋଇଛି ଉପାସେ ?
ସଜାସଜି ଅଟ୍ଟାଳିକା ଆଲୁଅ-ମାଳାରେ,
ଶୋଇଛି ପଡ଼ିଶା ଭଙ୍ଗା ଦଦରା ଚାଳରେ ।
କାଙ୍କର ଆରିସା କେତେ ଦେଉଛନ୍ତି ଫିଙ୍ଗି,
ପଡ଼ିଶାର ଘରେ ଧାନ ଦେଖୁ ନାହିଁ ଢିଙ୍କି ।
ତୁନି ହ—ତୁନି ହ—ଆରେ ଶୁଣ ମୋର ବାଣୀ,
ନ ରହିବ ସବୁ ଦିନେ କିଛି ନୂଆ ପାଣି ।
ଆସିବ ହେମନ୍ତ କାଳ, ପାଣି ଯିବ ଶୁଖି,
ତେତେବେଳେ କାହିଁ ଯିବ ତୋର ମକମକି ?
ଗରବରେ ଭୁଲି ସ୍ତୁତି କରୁଅଛୁ କୁଣ୍ଡି,
ନ ଜାଣୁ କି ପାଣି ମଧ୍ୟେ ଅଛି ସନ୍ତା ଧଣ୍ଡି ?

---

## ଡାଆଣୀ ଆଲୁଅ

ବହୁତ ଦିନର କଥା ପଡ଼ୁଛି ମନରେ,—
ଖେଦ କି ଅଶିଣ ମାସ ବରଷାକାଳରେ ।
ରାତି ତେତେବେଳେ ଦୁଇ ଅବା ତିନ ଘଡ଼ି,
ଆକାଶରେ ନାହିଁ ମେଘ ନାହିଁ ଘଡ଼ଘଡ଼ି ।
ମାତ୍ରକ ମୁହିଁକୁ ମୁହିଁ ଦିଶୁନାହିଁ କିଛି,
ଝୁମ୍ପୁଝୁକା ଅନ୍ଧାରରେ ଆକାଶ ଢାଙ୍କିଛି ।
ସଞ୍ଜବେଳେ ମେଘ ଥିଲା, ଯାଇଅଛି ଛାଡ଼ି,
କେବଳ ଅନ୍ଧାରଗୋଟା ଆସିଅଛି ମାଡ଼ି ।
ଉଆଁସ ବା ପ୍ରତିପଦ ହେବ ଆଜି ପରି,
ଆକାଶରେ ନାହିଁ ଚନ୍ଦ ନାହିଁ କିଛି ତରା ।
ମୁହିଁ ଆଉ ମୋର ବଡ଼ ଭାଇ ଦୁଇ ଜଣ,
ବସିଅଛୁଁ ଯାଇ ଭାତ ଖାଇବା କାରଣ ।
ମାତ୍ର ଭାତ ହୋଇନାହିଁ, ଅଛି କିଛି ଡେରି,
ଭୁକାଇ ଚଢ଼ିଲା ଯାଇ ମୁହିଁ କାନ୍ଥ ଡେରି ।
ଜେଜିମା କହିଲେ ମୋତେ, "ଶୁଅ ନା ରେ ନାଥ,
ଶୋଇଲେ ତ ନ ଉଠିବୁ ଖାଇବାକୁ ଭାତ ।"
ଧାଇଁ ଆସି ପଣ୍ଡା ପିସୀ କହିଲା ମୋଠାରେ,
"ଡାଆଣୀ ଜାଳୁଛି ଆଲୋ ବାଙ୍ଗିଳ *ପଦାରେ ।"
ଉଠି ପଡ଼ି ଧାଇଁ ଗଲି ଜେଜିମା ପାଶକୁ;
ଡରରେ ଧରିଲି ଟାଣି ତାର ପଣତକୁ ।
କାମୋଡ଼େ କି ଗିଳି ଦିଏ କିଛି ଜାଣେ ନାହିଁ,
ନ ଜାଣି ନ ଶୁଣି ଏଡ଼େ ଡରୁଛି କପାଇଁ ?
ଡରୁଛି, ତଥାପି ମନ ଦେଖିବାକୁ ଅଛି,
ଡାଆଣୀ କେମନ୍ତ ଆଲୋ ପଦାରେ ଜାଳୁଛି ।
ମାତ୍ରକ ଆମ୍ଭରେ ଧରି ଅଛି ପଣତକୁ;
କେ ଜାଣେ ଡାଆଣୀ ଧାଇଁ ଆସିବ ପାଖକୁ !
ବଡ଼ ହେଲି, ଜ୍ଞାନ ହେଲା, ଡର ଗଲା ଛାଡ଼ି;
ଅଇଲେ ଡାଆଣୀ ଏବେ ଉଡ଼ାଇବି ବାଡ଼ି ।

ଗାଆଁ ର ପଶ୍ଚିମ ଦିଗେ ବାଙ୍ଗିରଆପଦା,
ଗାଆଁ ଗୋରୁମାନେ ତହିଁ ବୁଲୁଥାନ୍ତି ସଦା ।
ପଦା ମୁଣ୍ଡେ କିଆବାଡ଼ ପାଶେ ହଡ଼ାପଦା,
ଗାଆଁ ମଲାଗୋରୁ ଯାକ ତହିଁ ହୁଏ ଗଦା ।
ପଦା ତିନି ପାଶ ଘେରି ଅଛି କିଆବାଡ଼,
କେତେ ବୁଣି ଚଢ଼ିଅଛି ତହିଁ ଗୋରୁହାଡ଼ ।
ଦେଖିଅଛି ପଦାଟାକୁ ଦିନବେଳେ ଭଲ,—
ବିଲୁଆ ଶାଗୁଣା ବୁଲୁଥାନ୍ତି ଦଳେଦଳ ।
ଗୋରୁମୁଣ୍ଡ ଗୋରୁହାଡ଼ ପଡ଼ିଅଛି ବୁଣି,
ଗୋଟାଏ ପଡ଼ୁଛି ଗୋରୁ, ମରୁଛି ଉଚ୍ଛୁଣି ।

* * *

ଦେଖିଲି ଡାଆଣୀ ଆଲୋ ଜ୍ୱଳେ ଧକ ଧକ,
ଜଳୁଛି କି ବଡ଼ ଗୋଟେ ଜୁଳୁଜୁଳୁ ପୋକ ।
ଧପ କରି ଜଳି ଉଠେ, ପୁଣି ନିଭିଯାଏ,
ଏଣେ ତେଣେ ବୁଲି ବୁଲେ ବାଟବଣା ପ୍ରାୟେ ।
ଦିହାତ ଆଗକୁ ଯାଏ, ଦିହାତ ପଛକୁ;
କେଭେ ଉଠି ପଡ଼େ ଗୃହଦାତ ଉପରକୁ ।
ପିଲାକାଳ କେତେ କଥା ଯାଇଛି ପାସୋରି,
ମାତ୍ର ପଦା ଛବି ମନେ ରହିଛି କପରି ?
କଳ୍ପନା ନେତ୍ରରେ ମୁହିଁ ଦେଖୁଛି ଅନାଇ,—
ଚରୁଥିଲେ ସରଳତା, ଶାନ୍ତି, ପ୍ରୀତି ଗାଈ ।
ମରିଛନ୍ତି ଗାଈ ହିଂସା, କ୍ରୋଧ ବସନ୍ତରେ;
ଡାହାଣୀ ଜାଳୁଛି ଆଲୋ ହୃଦୟ ପ୍ରାନ୍ତରେ ।
ସୁଖ-ଆଶା, ସ୍ୱାର୍ଥ-ଚିନ୍ତା ଆଲୋ ଧପ ଧପ
ହୃଦ ପଦା ମାଡ଼ି ବୁଲୁଅଛି ଚପ ଚପ ।
ଲାଳସା — ଡାଆଣୀପଦା ବସିଅଛି ମାଡ଼ି;
ଅଇଲା ବୟସ-ବୁଦ୍ଧି, ଗଲା ଡର ଛାଡ଼ି ।
ପୁଣି କି ସରଳ ବୁଦ୍ଧି ହେବ ପିଲା ପରି ?
ଡାଆଣୀ ଆଲୁଅ ଦେଖୁଥିବ ଡରି ଡରି ।

———

*ବାଲେଶ୍ୱର ଥାନା ଅନ୍ତର୍ଗତ ମଲ୍ଲିକାଶପୁର ଗ୍ରାମର ପଶ୍ଚିମ ଦିଗସ୍ଥ ପଦିଆ ।

## ମରୁଭୂମି

ଦେଖିନାହିଁ ମରୁଭୂମି, ଶୁଣିଅଛୁ ନାମ
ଉତପ୍ତ ବାଲୁକାରାଶି ଅଗ୍ନିମୟ ଧାମ !
ବିସ୍ତାର ବସିଛି ତହିଁ ଜାଲ ବିଶ୍ୱଷିକା—
ଜୀବନଘାତିନୀ ମାୟାବିନୀ ମରୀଚିକା ।
ପିପାସାରେ ଛଟପଟ ହେଉଥାନ୍ତି ପ୍ରାଣୀ;
ମାତ୍ର ପିଇବାକୁ ମିଳେନାହିଁ ଟୋପେ ପାଣି ।
ସନ ସନ ବହି ଆସେ ଚଞ୍ଚଳ ପବନ
ଉଡ଼ାଇ ନେବାକୁ ଯେହ୍ନେ ପ୍ରାଣୀଙ୍କ ଜୀବନ ।
ବୃକ୍ଷ ନାହିଁ, ଗୁଳ୍ମ ନାହିଁ, ଗୃହଆଦି ପଦା;
ସ୍ଥାନେ ସ୍ଥାନେ ଜମା ଅଛୁ ବାଲି ଗଦା ଗଦା ।
ବେଳେ ବେଳେ ବାଲିରାଶି ଆସୁଥାଏ ଉଡ଼,
ଧାଇଁ ଆସୁଅଛୁ କିବା ଗୋଟା ଗୋଟା ହୁଡ଼ ।
ସେ ଦେଶ ବଣିକମାନେ ଅର୍ଥଲୋଭେ ପଡ଼,
ବେପାର କରିବାପାଇଁ ଯାନ୍ତି ଉଟ ଚଢ଼ି ।
କଷ୍ଟରେ ଯେଉଁ ଦେଶେ ନାହିଁ ଶୁଦ୍ଧା ବାର,
ଉଟବିନା ସେ ସ୍ଥାନକୁ ହେବ କିଏ ପାର ?
ନ ଖାଇ ନ ପିଇ ପଶୁ ଦିନ ସାତ ଆଠ,
ନ ମଣି କଷ୍ଟତ କ୍ଳେଶ ଚାଲିଯାଏ ବାଟ ।
ଦଶ ଚାରିକୋଶ ଦୂରେ ଥାଏ ଯେବେ ପାଣି,
କିପରି ଯେ ସେହି ପଶୁ ପାରେ ତାହା ଜାଣି !
ଉଟବିନା କେଉଁ ଲୋକ ଚାଲିବ ସେ ବାଟେ,
ଚାଲିବାର ଥାଉ ଅନାଇଲେ ଛାତି ଫାଟେ ।
ଦେଖିବାକୁ ଯେବେ କେହି ଲୋଡ଼େ ସେହି ମରୁ,
ମୁଁ ତାକୁ ବୋଲୁଛି ଦେଖୁ କଠିନ ମନରୁ ।
ନୀରସ ହୃଦୟ ଅଟେ ମରୁମୟ ଦେଶ,
ତୁଳନାରେ ନାହିଁ କିଛି ଇତର ବିଶେଷ ।
କାମ କ୍ରୋଧ ତପ୍ତବାଲି, ଗର୍ବ ରବିକର,
ଲୋଭ ତପ୍ତବାୟୁ ବହୁଅଛୁ ନିରନ୍ତର ।
ମାତ୍ସର୍ଯ୍ୟ ବିଦ୍ୟମାନ ଦ୍ୱେଷ ହିଂସା ବିଶ୍ୱଷିକା;
ଭୁଲାଏ ବିବେକୀ ମନ ଆଶା ମରୀଚିକା;
ନାହିଁ ପ୍ରେମ ବୃକ୍ଷ ପୁଣି ନାହିଁ ଶାନ୍ତି ଜଳ;
ମୋହ ବାଲିଗଦା ଧାଉଁଅଛୁ ଅବିରଳ ।
ପରମାର୍ଥ ଧନ ପାଇଁ ହେ ଜ୍ଞାନ-ବେପାରି,
ଧୈର୍ଯ୍ୟ ଉଟେ ଚଢ଼ି ମରୁଭୂମି ହୁଅ ପାରି ।

---

## ପିଞ୍ଜରା ପକ୍ଷୀ

ପୋଷିଛୁ ଗୋଟିଏ ପକ୍ଷୀ ବଡ଼ ଯତନରେ,
ଡିମ୍ବଟି କାଳରୁ ଧରି ଆଣିଅଛୁ ଘରେ ।
ଖାଇବାକୁ ଦେଲି ପୋକଯୋକ ଦୁଧ ଚୁଡ଼ା,
ଉଠିଲା ଯେ ଗଜାପର ଦେଲା ଖଣ୍ଡି ଉଡ଼ା ।
ପର ହେଲା ବଡ଼, ଏବେ ପାରେ ଉଡ଼ିବାକୁ
ଖୁବ ମଜବୁତ ପେଟେ ପେଟେ ଖାଇବାକୁ ।
ଦେଖିଲେ ପାଚିଲା ଫଳ ଆସେ ଧାଇଁ ଧାଇଁ;
ଟପକରି ନେଇଯାଏ ହାତରୁ ଛଡ଼ାଇ ।
ମାତ୍ର ଶିଖାଇଲି "ପଢ଼ ବାବା ଆତ୍ମାରାମ !"
ନ ଶୁଣେ ମଣୁଆ ଦୁଷ୍ଟ ନିମକହାରାମ ।
ବୁଝିପାରୁ ନାହିଁ ତାହା ମନରେ କି ଅଛି,
ଛଟପଟ ସବୁବେଳେ କପାଇ ହେଉଛି ?
କେଉଁଠାରୁ ଆସିଅଛି ସେ ତ ଜାଣେ ନାହିଁ,
ତେବେ ସ୍ଥିର ହୋଇ ରହୁ ନାହିଁ ସେ କିମ୍ପାଇ ?
ମଣୁଛି ସେ ରହିବାକୁ ଯେମନ୍ତ ସଙ୍କଟ,
ଥରେ ଥରେ ବାହାରକୁ ଗଳାଉଛି ଥଣ୍ଟ ।
ଦେଲେ ହାତ ବାହାରକୁ ଆଣିବାର ପାଇଁ,
ଫଡ଼ ଫଡ଼ ଉଡ଼ ବୁଲେ ଧରିଦିଏ ନାହିଁ ।
ଆସିବାକୁ ଲୋଡ଼ୁଅଛି, ନ ଆସେ ବାହାରେ,
ଜାଣିବି ତା ମନକଥା ମୁହିଁ କି ପ୍ରକାରେ ।
ସାବଧାନ, ଆରେ ପକ୍ଷୀ, ଜଗିଛି ବିରାଡ଼;
କଷ୍ଟତ ପାଇଲେ ତିଳ ବସିବଟି ମାଡ଼ !
ଜୁ କୁ ଜୁ କୁ ଚାହିଁ ଅଛି ବାଡ଼ମୂଳେ ଛପି;
ସେଠାରୁ ପଡ଼ିବ ଝାମ୍ପି ବେକ ଦେବ ଚପି !

ଥରେ ଥରେ ପଡ଼ୁଅଛି ବରାଡ଼ର ଘାଇ,
ତେଣିକି ନ ଚାହେଁ ଏଏ ମନକୁ ଭୁଲାଇ ।
ବାଉଁଶ ପଞ୍ଜୁରୀ ମଧ୍ୟେ ରଖିଛି ପକ୍ଷୀକୁ
ବନାଇଛି ଭଲ କାରିଗର ପଞ୍ଜୁରୀକୁ ।
ନ ଲାଗିବ ଖରା ଶୀତ, ନ ଲାଗିବ ପାଣି;
ଏଥିପାଇଁ ଟାଙ୍ଗି ରଖେ ଭଲ ସ୍ଥାନ ଜାଣି ।
ଢାଙ୍କି ରଖେଁ ଦେଇ ଭଲ ଭଲ ଲୁଗାପଟା,
ଧୂଳି ନ ଲାଗିବ ଯେହ୍ନେ, ନ ବସିବ ଘଟା ।
ଏ କି କଥା ଏ କେମନ୍ତ ଦିଶିଲା ପିଞ୍ଜରା !
ଘୁଣ ଲାଗି ହୋଇ ଯାଉଅଛି ଯେ ଦଦରା ।
ଭଲ ସ୍ଥାନ ଦେଖି ସିନା ରଖିଅଛି ଟାଙ୍ଗି,
ଆହା ଆହା ପିଞ୍ଜରାଟା ଯିବପରା ଭାଙ୍ଗି ।
କେତେବେଳେ ଉଡ଼ି ଯିବ ମୋର ପ୍ରିୟ ପକ୍ଷୀ,
କି କି କରି ଆଉ ତାକୁ ନ ପାରିବି ରଖି ।
ଭାଙ୍ଗି ଯିବ କେଉଁ ଦିନ ଏ ଦେହ ପଞ୍ଜୁରୀ,
ଉଡ଼ିଯିବ ପ୍ରାଣପକ୍ଷୀ ନ ରହିବ ଧରି ।
ରଖିଛି ପଞ୍ଜୁରୀ ଗୋଟି ବଡ଼ ସାବଧାନେ;
ମାତ୍ର ନ ରହିବ ବୁଝିଅଛି ଅନୁମାନେ ।
ଖାଉଅଛି ମିଠା ମିଠା ରସୁଆ ସୁଫଳ;
ତଥାପି ତାହାର ମନ ସର୍ବଦା ବିକଳ ।
ଦେଖୁଛି ସନ୍ତୋଷ ନାହିଁ କାହିଁ ପକ୍ଷୀ ମନ,
ସର୍ବଦା ତାହାର ମନ ଯେହ୍ନେ ଉଚ୍ଚାଟନ !
ଆସିଛି ସେ କାହୁଁ ପୁଣି ଯିବ କେଉଁଠାକୁ,
ନ ଜାଣେ, ତଥାପି ଯେହ୍ନେ ଖୋଜୁଛି କାହାକୁ ।
ମନ କରୁଅଛି କେଉଁଠାକୁ ଯିବାପାଇଁ;
ମାତ୍ରକି ପଞ୍ଜୁରୀ ମାୟା ଛାଡ଼ିପାରୁ ନାହିଁ ।
ଏମନ୍ତ ତାହାର ବୁଦ୍ଧି ହୋଇଅଛି ବାମ;
ମୋହେ ପଡ଼ି ଭୁଲି ଯାଉଅଛି ଆତ୍ମାରାମ ।
ନ ରହ ରେ ପକ୍ଷୀ କ୍ଷଣେ ନାମଧନ ଛାଡ଼ି,
ଜଗିଅଛି ତୋତେ କାଳ ସ୍ୱରୂପ ବରାଡ଼ ।

---

## ବିଭାଷ ରାଗିଣୀ

କେ ଗାଇଲା ଆହା ! ଆହା ! ବିଭାଷ ରାଗିଣୀ ?
ନିଶାଅବସାନ କାଳେ, ଅନ୍ତରୀକ୍ଷ ଅନ୍ତରାଳେ,
ସ୍ୱର୍ଗୀୟ ମଧୁର ଦେବଭୋଗ୍ୟେ ସୁଧା ଜିଣି
କେ ଗାଇଲା ଆହା ଆହା ବିଭାଷ ରାଗିଣୀ ?

ଶୀତଳପବନ ବହୁଅଛି ବାରମ୍ବାର,
ଗଛରୁ କାକର ପଡ଼ୁଅଛି ଝରଝର;
ଉଦେ ହେଲେ ଶୁକତାରା, ସଙ୍ଗକରି ଗତସାରା
ଧୀରେ ଧୀରେ ଅସ୍ତ ଯାଉଛନ୍ତି ନିଶାମଣି ।
କେ ଗାଇଲା ଆହା ଆହା ବିଭାଷ ରାଗିଣୀ ?

ଅଛି ତନ୍ଦ୍ରା, ନିଦ ଭାଙ୍ଗି ନାହିଁ ଭଲକରି,
ଉଠିବାକୁ ମନ ଦେହ ହେଉଅଛି ଭାରି ।
ମନେ ପଡ଼େ କେତେକଥା, ଅନ୍ଧକାରେ ଉଲ୍କା ଯଥା,
ସ୍ୱପନ କି ସତ କଥା ପାରୁ ନାହିଁ ଜାଣି ।
କେ ଗାଇଲା ଆହା ଆହା ବିଭାଷ ରାଗିଣୀ ?

ଅନ୍ଧାର ଆଲୁଅ ଦୁହେଁ ଛନ୍ତି ମିଶାମିଶି;
ଆସୁଅଛି ଦିନ, ପାହି ଯାଉଅଛି ନିଶି ।
ତନ୍ଦ୍ରା ଓ ଚେତନା ପୁଣି ସଂଶୟ ମୀମାଂସା ଘେନି,
ବୁଜିଛି ନୟନ ବେନି, ଅଛି ରାତ୍ରି ମଣି ।
କେ ଗାଇଲା ଆହା ଆହା ବିଭାଷ ରାଗିଣୀ ?

ପଞ୍ଚମ ମଧ୍ୟମ ମିଶାମିଶି ଦୁଇ ସ୍ୱର,
ସହଜେ ଆସୁଛି ବହି ନିର୍ମଳ ନିର୍ଝର,
ନିଶବଦ ଆକାଶରେ ଢେଉ ଆସେ ଥରଥରେ;
ପଡ଼ୁଛି ଉଛୁଳି ଫାଟି ପୀୟୂଷର ଖଣି ।
କେ ଗାଇଲା ଆହା ଆହା ବିଭାଷ ରାଗିଣୀ ?

ଶୀତ ଗ୍ରୀଷ୍ମ ଅନ୍ତରାଳେ ମଧୁ ମଧୁମୟ,
ନବୀନ ବୟସକାଳ ପ୍ରୀତିର ସମୟ;
ଉଦାସ ଉଚାଟ ମନେ, ପ୍ରୀତି ପ୍ରେମ ଆଲିଙ୍ଗନେ,
ପ୍ରେମରସେ ଢଳଢଳ ସୁହାଗି ରମଣୀ ।
କେ ଗାଇଲା ଆହା ଆହା ବିଭାଷ ରାଗିଣୀ ?

ନିଶିଶେଷ ମାନାକାଶେ ଉନ୍ମତ୍ତା ଅପ୍‌ସରୀ,
ଅଳସ ଅବଶ ଅଙ୍ଗ, ଉନ୍ମୁକ୍ତ କବରୀ;
ନିଶିର ଶିଶିରେ ଦେହ ଭିଜିଛି; ବାହୁଡ଼େ ଗେହ,
ଫାଟିପଡ଼େ ଦେହକାନ୍ତି ଶୁକତାରା ଜିଣି ।
କେ ଗାଇଲା ଆହା ଆହା ବିଭାଷ ରାଗିଣୀ ?

ଜୀବନ ଯାମିନୀ ଆସୁଅଛି ପାହି ପାହି,
ଚେତନା ବସିଛି ମୋହନିଦ୍ରା ଭାଙ୍ଗିଯାଇ;
ଆହା କେ ଏମନ୍ତ କାଳେ, ବ୍ରହ୍ମନାମ ସୁଧା ଢାଳେ
ଅକ୍ଷୟ ଅବ୍ୟୟ ସୁଖ ନେବାପାଇଁ କିଣି ।
କେ ଗାଇଲା ଆହା ଆହା ବିଭାଷ ରାଗିଣୀ ?

———

## ପାପୀ ଏବଂ ଧାର୍ମିକ

ଦ୍ୱିତୀୟ ପ୍ରହର ଗତ ହୋଇଛି ଯାମିନୀ;
ସୂଚୀଭେଦ୍ୟ ଅନ୍ଧକାରେ ଢାଙ୍କିଛି ମେଦିନୀ;
ଜଳେ ସ୍ଥଳେ ଶୂନ୍ୟଦେଶେ ସର୍ବେ ଅଚେତନ;
ସାମାନ୍ୟ ପତଙ୍ଗ ମଧ୍ୟ କରିଛି ଶୟନ;
ଦୁଇ ଜଣ ଗୃହେଁ ବସି ଅଛନ୍ତି କେବଳ—
ପରମ ଧାର୍ମିକ, ପାପୀ ଦୁରାଚାରୀ ଖଳ ।
ପର୍ବତ ସମାନ ସ୍ଥିର ଦୁହିଙ୍କର ତନୁ,
ଅଶ୍ରୁଧାରା ବହୁଅଛି ଦୁହିଙ୍କ ନୟନ୍ ।
ପାପିଲୋକ ଗତ ପାପ ଚିନ୍ତା କରି କରି—
ଅଶ୍ରୁଧାରା ବହୁଅଛି ହୃଦୟ ବିଦାରି ।
ଗୋଟିଏ ଗୋଟିଏ ପାପ ପଡ଼ୁଅଛି ମନେ,
ବାଜୁଛି ହିଆରେ ତୀକ୍ଷ୍ଣ ବରଚ୍ଛି ଯେସନେ ।
ଆଉ କି ମାଡ଼ିବ ନିଦ ଗଲେ ଶୋଇବାକୁ ?
ଅନୁତାପାନଳ ପୋଡ଼ି ଦେଉଛି ହୃଦକୁ ।
ଧାର୍ମିକ ପାଇଛି ବେଳ କରିବାକୁ ଧ୍ୟାନ;
ନାହିଁ କୋଳାହଳ ସର୍ବ ପ୍ରାଣୀ ନିଦ୍ରିମାନ,

ବିଶ୍ୱପତି କୃପାକୀର୍ତ୍ତି ପଡ଼ୁଛି ମନରେ,
ଭୂମିରେ ପଡ଼ୁଛି ପ୍ରେମଅଶ୍ରୁ ଦରଦରେ ।
ନିସ୍ତବ୍ଧ ହୁଅଇ ଯେବେ ପୃଥ୍ୱୀ-କୋଳାହଳ
ସ୍ୱର୍ଗୀୟ ନାରକ ଭାବ ଦିଶଇ ଉଜ୍ଜ୍ୱଳ ।

———

## କବି

କଳ୍ପନା ରାଜ୍ୟରେ କବି ତୁମ୍ଭେ ଅଧୀଶ୍ୱର,
ବସିଛ ବିସ୍ତାରିକରି ଅସୀମ ରାଜତ୍ୱ;
ସଜୀବ ନିର୍ଜୀବ ସବୁ ତୁମ୍ଭର ଆୟତ୍ତ,
ଯାହା ଇଚ୍ଛା କରିବାର ତୁମ୍ଭେ ଏକେଶ୍ୱର ।

ଆହେ କବି, ତୁମ୍ଭେ ଗୁରୁଜନ ସମାଜରେ,—
ଶିକ୍ଷା ଦିଅ ରାଜନୀତି ଧର୍ମ ଉପଦେଶ ।
ପବିତ୍ର ସମାଜ ନୀତି ସୁନୀତି ବିଶେଷ;
ଅଥଚ ଆପଣେ ଥାଅ ବହୁତ ଅନ୍ତରେ ।

ମନୁଷ୍ୟ ସମାଜେ ଏକମାତ୍ର ବିଚାରକ,
ସମସ୍ତଙ୍କ ଭଲ ମନ୍ଦ କରୁଛ ବିଚାର;
ଦୋଷ ଗୁଣ ଜାଣି ଦିଅ ଦଣ୍ଡ ପୁରସ୍କାର ।
କାହା ସାଧ୍ୟ ତୁମ୍ଭ ଆଜ୍ଞା ଅତିକ୍ରମ କରେ ?

ଆଶ୍ଚର୍ଯ୍ୟ ତୁମ୍ଭର ଚିତ୍ର ଆହେ ଚିତ୍ରକର !
ବିନ୍ଦୁମାତ୍ର କାଳୀ ଯେନ ଚିତ୍ର କେତେ ରଙ୍ଗ,
ପଟେ ଢାଳିଦିଅ କିବା ଶୋଭାର ତରଙ୍ଗ;
ଏକରୂପ କରିପାର କେତେ ରୂପାନ୍ତର ।

ଦେଖାଉଛ କେତେ ରଙ୍ଗ ଆହେ ନଟକବି !
ନଚାଉଛ ବାଳ, ବୃଦ୍ଧ, ଯୁବକ, ଯୁବତୀ;
ନାଟ୍ୟଶାଳା କାର୍ଯ୍ୟସବୁ ତୁମ୍ଭର ତ କୀର୍ତ୍ତି;
ତୁମ୍ଭରି ତୁଳୀରୁ ଜାତ ରଙ୍ଗଭୂମି ଛବି ।

ଆହେ କବି, ଅଟ ତୁମ୍ଭେ ପ୍ରେମିକ ପ୍ରଧାନ;
ଆପେ ପ୍ରେମେ ଢଳଢଳ, ଢଳାଅ ଆନକୁ,
ତୁମ୍ଭେ ତ ଶିଖାଇଦିଅ ପ୍ରକୃତ ପ୍ରେମକୁ ।
ଆଉ କେ ପ୍ରେମିକ ଅଛି ତୁମ୍ଭର ସମାନ ?

ଶାନ୍ତିଦାତା ତୁମ୍ଭେ କବି ଅଶାନ୍ତ ଜଗତେ ।
ବିଦଗ୍ଧ ହେଉଛି ପ୍ରାଣ ଜଗତ ଜଞ୍ଜାଳେ,
ରୋଗ ଶୋକ ଦୁଃଖ କିମ୍ବା ବିଚ୍ଛେଦର କାଳେ;
ଦୂର ହେବ ଚିନ୍ତା, କର କବିକୁ ସ୍ମରତେ ।

———

## ସତୀର ପ୍ରେମ

ଜଗତ ସୃଜନ କରି କମଳଆସନ,
ବସିଛନ୍ତି ସ୍ୱର୍ଗପୁରେ ସାରି ଆଚମନ ।
ଏହି କାଳେ ଦୟାବତୀ ଏକ ଦେବକନ୍ୟା
ଆସି କଲେ ଚତୁର୍ମୁଖ ଚରଣ-ବନ୍ଦନା;
ପୁଚ୍ଛାକଲେ, "ଆହେ ଦେବ ଥିଲ ଆଜି କାହିଁ ?
ଦିନଯାକ ବୈକୁଣ୍ଠରେ କପାଁ ଭେଟ ନାହିଁ ?"
ବୋଇଲେ ବିଧାତା ଶୁଣି, "ଆଗୋ ଦୟାବତି,
ଯାଇଥିଲୁଁ କରିବାକୁ ମାନବ ବସତି,
ନରକର ଅତି ଊର୍ଦ୍ଧ୍ୱ ସ୍ୱର୍ଗରାଜ୍ୟ-ତଳେ;
କରିବେ ଏଥିରେ ବାସ ମାନବ ସକଳେ ।
ପୃଥିବୀ ତାହାର ନାମ, ସ୍ଥାନ ମାହାତ୍ମ୍ୟରେ
ସ୍ୱର୍ଗୀୟ ନାରକଗୁଣ-ଧାରୀ ହେବେ ନରେ ।"
ପୁଚ୍ଛା କଲେ ଦେବକନ୍ୟା, "ବୋଲନ୍ତୁ ଗୋସାଇଁ,
କି କି ବିଧି କରିଛନ୍ତି ମନୁଷ୍ୟଙ୍କ ପାଇଁ ?"
ବୋଇଲେ କମଳାସନ କରି ଏକ ଏକ,
କହିଥିଲେ ପୃଥିବୀରେ ବିଧାନ ଯେତେକ ।
ବୋଇଲେ ଯେ ଦେବକନ୍ୟା ବିଧି ମୁଖ ଚାହିଁ,
"ନିର୍ମଳ ସ୍ୱର୍ଗୀୟ ସୁଖ ଏଥିରେ ତ ନାହିଁ !
ଦେଖୁଛି ତ ଆପଣଙ୍କ ବିଧି ଯେତେ କିଛି
ସ୍ୱର୍ଗୀୟ ନାରକ ବେନି ଜଡ଼ିତ ହୋଇଛି ।
ନିବେଦନ କରୁଅଛୁଁ, ଅହେ ଚତୁର୍ମୁଖ,
ମନୁଷ୍ୟ ଭାଗ୍ୟରେ ଲେଖ ଏକ ସ୍ୱର୍ଗସୁଖ,—
ସତୀର ପବିତ୍ର ପ୍ରେମ-ଜାତ ଅନାବିଳ
ସ୍ୱର୍ଗ-ସୁଖ ଭୁଞ୍ଜୁଥିବେ ମାନବ ସକଳ ।"
ବୋଇଲେ ବିଧାତା ଶୁଣି ଦେବୀଙ୍କ ବଚନ,
"ମନୁଷ୍ୟ ଜାତିର ନୁହେ ଏହା ପ୍ରାପ୍ୟ ଧନ;
ତଥାପି ଦେଉଛୁଁ ଲେଖି ମନୁଷ୍ୟ ଭାଗ୍ୟରେ,
ପବିତ୍ର ନ ହେବେ କିନ୍ତୁ ଯେଉଁ ସବୁ ନରେ,
ସତୀର ପବିତ୍ର ପ୍ରେମ ନ ପାରିବେ ଜାଣି;
ପୃଥିବୀରେ ହେବେ ସେହି ଲୋକେ ଦୁଃଖୀ ପ୍ରାଣୀ ।"

———

## ଚାତକ ପକ୍ଷୀ

ତୃଷିତ ଚାତକ ପକ୍ଷୀ କ୍ଷୁଦ୍ରକଳେବର,
ମି—ଇ—ଠ ମି—ଇ—ଠ ଡାକୁଅଛି ନିରନ୍ତର ।
ଦିନ ନାହିଁ, ରାତି ନାହିଁ, ନାହିଁ ଖରା ଶୀତ,
ଅବିରାମ ଡାକୁଅଛି ମି—ଇ—ଠ ମି—ଇ—ଠ
ଆକାଶକୁ ଚାହିଁ ରାବ କରେ ଘନ ଘନ,
କାହିଁକି ରଡ଼ୁଛି କେ ଜାଣିବ ତାହା ମନ ?
ଶୁଣିଛି ସେ ରାବ କରେ ଆକାଶକୁ ଚାହିଁ,
ବାରିଦରୁ ଜଳବିନ୍ଦୁ ପାଇବାର ପାଇଁ ।
ଅନନ୍ତ ଆକାଶବ୍ୟାପୀ କାହିଁ ଜଳଧର,
କାହିଁ ବା ଚାତକ କ୍ଷୁଦ୍ରାଦପି କ୍ଷୁଦ୍ରତର !
ଚାତକ କି ବାରିଦକୁ ଡାକେ ମିଠ ମିଠ ?
ଏ କଥା ମନରେ ଭଲ ହେଉଛି ଚକିତ ।
ଚାତକ ସହିତ ଜଳଧର ବନ୍ଧୁଭାବ
ଅସମ୍ଭବ, ଅସମ୍ଭବ, ଅତି ଅସମ୍ଭବ !
ଅସମ୍ଭବ ସତ ମାତ୍ର ଦେଖାରେ ଆସୁଛି,
ମିଠ ମିଠ କରି ପକ୍ଷୀ ଜୀବନ ଧରିଛି ।
ଅଧିକ କି ଜଳ ଦିଏ ବାରିଦ ତାହାକୁ,
ଦେଖିବାରେ ଜାଣିବାରେ ନାହିଁ ତ କାହାକୁ !

ଗୋଡ଼ାଏ ସେ ପାଏ ନାହିଁ ବାରିଦରୁ ବାରି;
ବହୁତ ଡାକିଲେ ପାଏ ଟୋପା ଦୁଇଟିର ।
ତଥାପି ସର୍ବଦା ଥାଏ ଜଳଦକୁ ଚାହିଁ,
ତାହାବିନା ଆନଠାରେ ମନ ତୃପ୍ତ ନାହିଁ ।
ସାଗର ତଡ଼ାଗ କୂପ ଅଛନ୍ତି ବହୁତ;
ଚାତକ ଜୀବନ କିନ୍ତୁ କାହିଁ ନୁହେ ତୃପ୍ତ ।
ବାରିଦର ବାରି ବିନା ନ ରହେ ଜୀବନ,
ସେଥିପାଇଁ ମିତ ମିତ ଡାକେ ଘନ ଘନ ।
ମୋ ପ୍ରାଣଚାତକ ଦେଖୁଅଛି ସେହିପରି,
ଆକାଶକୁ ଚାହିଁ ଡାକେ ଦିବସ ଶର୍ବରୀ ।
ନ ଜାଣେ ସନ୍ଧାନ କିଛି, ଡାକୁଛି କାହାକୁ;
ତଥାପି ନିବୃତ୍ତି ନାହିଁ ତାଙ୍କୁ ଡାକିବାକୁ ।
ପୃଥିବୀମଧ୍ୟରେ ସୁଖ ନାହିଁ କିଛି ଊଣା;
ରୂପେ ରସେ ଗନ୍ଧେ ଚାରିଆଡ଼େ ଅଛି ବୁଣା ।
ମୋ ପ୍ରାଣ-ଚାତକ ନୁହେ କାହିଁରେ ତୃପତ;
ପ୍ରାଣମିତ ପ୍ରାଣବନ୍ଧୁ ଡାକେ ଅବିରତ ।
କେବେ ତାଙ୍କୁ ଭୁଲି ଆନେ ଧରେ ସୁଖଲାଗି,
ଦୁଇ ଚାରିଦିନେ କିନ୍ତୁ ଯାଏ ମନ ଭାଙ୍ଗି ।
ଅକ୍ଷୟ ନିର୍ମଳ ସୁଖ ପାଏ ନାହିଁ କାହିଁ,
ମହାମନ୍ତ୍ର ପ୍ରାଣେଶ୍ୱରେ ଡାକେ ସେଥିପାଇଁ ।
ନିତାନ୍ତ ଅଧମ କ୍ଷୁଦ୍ର ଅଟେ ମୋ ଜୀବନ,
ଅନନ୍ତ ଅଦୃଶ୍ୟ ପ୍ରଭୁ ଜଗତଜୀବନ ।
ତାଙ୍କ କୀର୍ତ୍ତି କରୁଣାର ନାହିଁ କିଛି ସୀମା,
ଚନ୍ଦ୍ର ସୂର୍ଯ୍ୟ ପ୍ରକାଶନ୍ତି ତାହାଙ୍କ ମହିମା ।
ତାହାଙ୍କ ସହିତ ମୋର କି ସମ୍ବନ୍ଧ ଅଛି ?
ତାଙ୍କବିନା ଆଉ କିଛି ଭଲ ନ ଲାଗୁଛି ।
ଜଗତ ଜଞ୍ଜାଳେ ହେଲେ ଅସ୍ଥିର ଜୀବନ,
ମହାପ୍ରଭୁ ନାମ ମନେ ପଡ଼େ ଘନଘନ ।
ଅହେ ଶାନ୍ତିନିକେତନ କୃପାର ସାଗର,
ଶାନ୍ତି-ଜଳେ ଶାନ୍ତ କର ଜୀବନ ମୋହର ।

———

## ଜୀବନ-ନଦୀ

ଆସିଅଛି କାହୁଁ ପୁଣି ଯିବ କାହିଁ ସରି,
ନିଜେ ଜାଣେ ନାହିଁ ଆନ ଜାଣିବ କପରି ?
ଜନମିବା ଦିନୁ ନାହିଁ ତିଳେକ ବିରାମ;
କାଳ-ସାଗରକୁ ଧାଉଁଅଛି ଅବିରାମ ।

କେମନ୍ତ କୁଟିଳ ଗତି, କେମନ୍ତ ଆକାର,
ବେଳେ ଭଲ ଦେଖିଥାନ୍ତି ସରଳ ବେଭାର !
ମନର ଗରବେ ବୁଲୁଅଛି ଦିଶି ଦିଶି;
ଅନନ୍ତ ସାଗରେ କିନ୍ତୁ ଯିବ ଦିନେ ମିଶି ।

ଆପଣା ସୌନ୍ଦର୍ଯ୍ୟେ ଆପେ ହେଉଅଛି ମୋହିତ;
ପଡ଼ିଲେ ସାଗରେ ଚିହ୍ନ ନ ଥିବ କିଞ୍ଚିତ ।
ଉତପତ୍ତି ସ୍ଥାନେ ଥିଲା ସ୍ଫଟିକ ନିର୍ମଳ,
ସହଜେ ବାଳକମତି ସ୍ୱଭାବ ସରଳ,—

ଡେଇଁ ପଡ଼ୁଥାଏ ଏହାକୋଳେ ତାହାକୋଳୁଁ
ମଧୁର ଅସ୍ଫୁଟ କଥା କହି କୁଳୁକୁଳୁ ।
କ୍ରମେ ସେ ଗୁଳିଆ ହେଲା; ସଂସର୍ଗ ଯୋଗରେ,
ଦୋଷ ଗୁଣ ଲଭି ଥାନ୍ତି ଯାବତୀୟ ନରେ ।

ଜନ୍ମସ୍ଥାନୁ ବହି ଆସି ଅଛି କିଛି ଦୂର,—
ବାସ କଲେ ତହିଁ ସାପ କୁମ୍ଭୀର ପ୍ରଚୁର ।
ଗଲା ପିଲାକାଳ, ହେଲା ବୟସ ତରୁଣ,
ଛୁଇଁଲା ମନକୁ ହିଂସା ବିଦ୍ୱେଷ ଦାରୁଣ ।

କିଞ୍ଚିତ ଦୂରକୁ ବହି ଆସିବା-ମାତ୍ରକେ
ଭୟେ ତା ପାଖରେ ପଶି ନ ପାରିଲେ ଲୋକେ ।
ଆଷାଢ଼େ ଯୌବନ-ଭରା ଉଚ୍ଛଳ ତରଙ୍ଗ
ଗରବେ ଗମନ କରେ କରି କେତେ ରଙ୍ଗ ।

ଅନୁରୂପ ସଙ୍ଗୀ କେତେ ଭେଟିଲେ ବାଟରେ,
ସମସ୍ତେ ଉନ୍ମତ୍ତ ଯଉବନ-ଗରବରେ ।

ଯେତେକ ମନୁଷ୍ୟ ବାସ କରୁଥିଲେ କୂଳେ
ଅସ୍ଥିର, ଚଞ୍ଚଳ, ଶ୍ରାନ୍ତ ଜୀବନ-ଆକୁଳେ ।
କେତେଠାରେ କେତେରୂପେ ଭାସିଯାଏ କୂଳ,
ବିଟପୀ ହୋଇଲେ କେତେ ପତିତ ନିର୍ମୂଳ !
ମାତ୍ରକ ଯୌବନ କାହା ହୋଇ ନାହିଁ ଚିର,
ଛାଡ଼ିଗଲା ବଢ଼ି ପାଣି, ସ୍ରୋତ ହେଲା ସ୍ଥିର ।

ଯେଉଁ ବୃଦ୍ଧ ତରୁବରମାନେ ଥିଲେ ତୀରେ
ବର୍ତ୍ତମାନ ପାଦଧୌତ କଲେକ ଭକ୍ତିରେ ।
ଯୌବନକାଳରେ କୂଳ ଭାଙ୍ଗିବାରେ ପଟୁ;
ମାତ୍ର କେହି କେହି ଢାଳିଦେଇଯାଏ ପଟୁ;

କେହି ବା ଅନିଷ୍ଟ କରେ ଢାଳିଦେଇ ବାରି;
ନ କରି କେ ଭଲ-ମନ୍ଦ ଗଳିଯାଏ ଖାଲି ।
କୂଳକୁ ସମ୍ଭାଳି ଧୀରେ କରେ କେ ଗମନ;
ପାଶେ ଥିବା ଲୋକଙ୍କର ଆନନ୍ଦିତ ମନ ।

ଯେମାନେ ପାଶକୁ ଯାଇ ନ ଥିଲେ ଭୟରେ
ଜୀବନ ଶୀତଳ କରୁଛନ୍ତି ପରଶରେ ।
ମନୁଷ୍ୟ ଜୀବନ ଆଜି ନଦୀସ୍ରୋତ ଭେନି,
ଧାଉଁଛନ୍ତି ଅବିରତ ତୁଲ୍ୟଗୁଣ ଘେନି ।

---

## ବେଣୀସଂହାର

( ରାଗିଣୀ - କେଦାର କାମୋଦ )

କୌରବ ବୀରଗଣ ସଭାମଧ୍ୟରେ,
ବସିଅଛନ୍ତି ପୂର୍ଣ୍ଣ ଦମ୍ଭ କୁମରେ ।
ଏମନ୍ତ କାଳେ ଦୁଃଶାସନ ପାମର
ଦ୍ରୌପଦୀ କେଶ ଧରି ପ୍ରତବଶ ଖର ।

ଶିଖଣ୍ଡି-ସୁକୁମାରୀ ପଞ୍ଚାଳ-ଜେମା
ନାରୀ-ଲଲାମ-ଠାଣି ସୁନା-ସୁଷମା,-
ଚହଟି ଦିଶୁଅଛି ସେ ଅଙ୍ଗ ପ୍ରଭା;
ଚମକି ଯାଉଅଛି ଚଞ୍ଚଳା ଅବା !

ଦିଶଇ ମୁଖ, ଫିଟିବାରୁ କବରୀ,
ନୀଳ ଜଳରେ ପଦ୍ମ ଭାସିଲା ପରି ।
ଧରିଛି ଆଣ୍ଠେ ବେଣୀ ସେ ଦୁଃଶାସନ,
କରୀ-କରରେ ପଦ୍ମନାଳ ଯେସନ ।

କଳା ମେଘରେ ମ୍ଲାନ ପ୍ରଭାତି ତାରା ।
ବିଧୁ-କୌମୁଦୀ ରାହୁ ଗ୍ରାସିଲା ପରା !
କୃଷ୍ଣା ଲାବଣ୍ୟ ତେଜେ ଦିଶେ ମଳିନ;
ଶିଶିରେ ଶୀର୍ଣ୍ଣକାନ୍ତି ସତେ ନଳିନ !

ବିକଳେ ଉଚ୍ଚେ କାନ୍ଦି କାନ୍ଦି ପାଞ୍ଚାଳୀ
ଡାକନ୍ତି, "କାହିଁଅଛ ହେ ବନମାଳୀ ?
ଦେଖା ଦିଅ ହେ ପ୍ରଭୋ, ଦୁଃଖର କାଳେ,
ପଡ଼ିଛି ମୁଁ କି ଘୋର ବିପଦ-ଜାଲେ ।

ଅଗତିଗତି ଆହେ ଗୋଲୋକପତି,
ଡାକିଲେ ପରା ତୁମ୍ଭେ ହର ଦୁର୍ଗତି ?
ତେବେ କପାଇଁ ହରୁ ନାହିଁ ମୋ ଦୁଃଖ ?
କି ଦୋଷ ଦେଖି ହେଉଅଛ ବିମୁଖ ?

ପାଣ୍ଡବେ ଚିରକାଳ ତୁମ୍ଭ ଆଶ୍ରିତ,
କପାଇଁ ଏବେ କରୁଅଛ ବଞ୍ଚିତ ?
ଲଲାଟ ଲେଖା ବୋଲି ବୋଲିବ ଅବା !
ତେବେ କପାଇଁ କଲେ ତୁମ୍ଭକୁ ସେବା ?

ଭକ୍ତବତ୍ସଳ ପ୍ରଭୁ ହେ ଭବତ୍ରାହି,
ଭାସି ଯାଉଛି ଦୁଃଖେ, କରନ୍ତୁ ତ୍ରାହି,
ଭରସା ତୁମ୍ଭ ବିନା ନାହିଁ କିଞ୍ଚିତ,
ହେଠ ନ ଦିଅ ପଛେ ରଖ ମହତ ।"

ନୟନୁ ଅଶ୍ରୁ ପୋଛି ଚାହୁଁ ପାଞ୍ଚାଳୀ
ଦେଖିଲେ ସଭା ମଧ୍ୟେ ନୟନ ମେଳି;

ବସି ଅଛନ୍ତି ତହିଁ ପଣ୍ଡୁନନ୍ଦନେ
ମସ୍ତକ ପୋତି ଅଶ୍ରୁପୂର୍ଣ୍ଣ ନୟନେ ।

ଭୀଷ୍ମ, ବିଦୁର, ଦ୍ରୋଣ, କୌରବବୀରେ
ବସି ଅଛନ୍ତି ତହିଁ ନୀରବେ ଧୀରେ ।
ଶତ ଭାଇ ସହିତେ ସେ ଦୁର୍ଯ୍ୟୋଧନ,
ରାଧେୟ, ଅଶ୍ୱତ୍ଥାମା ହରଷ ମନ ।

ଓଲଗି ହୋଇ ଗୁରୁଜନ ପୟରେ,
ପଚାରିଲେ ଦ୍ରୌପଦୀ କରୁଣସ୍ୱରେ,
"ହେ କୁରୁ ଗୁରୁମାନେ, ବୋଲନ୍ତୁ ମୋତେ
ଧର୍ମ୍ମ ବୋଲି ପଦ କି ଅଛି ଜଗତେ ?

ନିର୍ମଳ ଚନ୍ଦ୍ର-ବଂଶ ଜଗତେ ଖ୍ୟାତ;
ସେ ବଂଶୁ ତୁମ୍ଭେମାନେ ହୋଇଛ ଜାତ;
ବୟସେ ଜ୍ୟେଷ୍ଠ ପୁଣି ଗୁଣେ ଗରିଷ୍ଠ
ଲୋକରେ ବୋଲାଉଛ ପୁଣି ଧର୍ମ୍ମିଷ୍ଠ ।

ଧାର୍ମ୍ମିକ ଜଣେ ଜଣେ ଖ୍ୟାତ ସର୍ବତ୍ର;
ପୁଣି ସମସ୍ତେ ହୋଇଅଛ ଏକତ୍ର ।
କହିବି କି ଅଧିକ ମୁଁ ଅବଳା ନାରୀ ?
କହନ୍ତୁ ଭଲ ମୋତେ ହୃଦେ ବିଚାରି ।

ପୂର୍ବେ ଏ କଥା ମୋର ଥିଲା ବିଶ୍ୱାସ—
ଅନ୍ୟାୟେ କାହା ପ୍ରତି ବଳ-ପ୍ରକାଶ
କରନ୍ତି ନାହିଁ କେବେ କ୍ଷତ୍ରିୟଗଣ;
ଏବେ ଦେଖୁଛି ବିପରୀତ ଘଟଣ ।

ନୁହଇ ମୁହିଁ କିଛି ସାମାନ୍ୟା ନାରୀ !
ନୃପତି କୁଳବଧୂ, ନୃପକୁମାରୀ,
ବୀର ଜନନୀ, ବିଧୂ-ବଂଶର ରାଣୀ,—
ଏ କଥା ତୁମ୍ଭେମାନେ ନାହିଁ କି ଜାଣି ?

ତୁମ୍ଭେମାନେ ଶ୍ୱଶୁର ପିତା ସମାନ !
କରନ୍ତ ରକ୍ଷା ସିନା ମୋ ସନମାନ !
ରକ୍ଷକ ହୋଇ ଯେବେ ହେଲ ଭକ୍ଷକ,
ରକ୍ଷା କରିବ ଆଉ କେବଣ ଲୋକ ?

କଲି ହୋଇଛି ସିନା ଭାଇ ଭାଇରେ !
ମୋହର କି ସମ୍ପର୍କ ଅଛି ତହିଁରେ ?
ତେବେ ହେଉଛି କିପାଁ ମର୍ଯ୍ୟାଦା-ହୀନ ?
ନୁହେଁ କି ମୁହିଁ କୁରୁ-ବଧୂ ସମାନ ?

ବିପଦୁଁ ତ୍ରାଣକାରୀ କ୍ଷତ୍ରିୟ ନାମ
ବ୍ୟର୍ଥ ହେଲା ମୋଠାରେ, କପାଳ ବାମ !
ରକ୍ଷା କରିବା ଥାଉ ପଛେ ପରକୁ
ରଖି ତ ନ ପାରିଲ ନିଜ ଘରକୁ !

ଥାଉ କ୍ଷତ୍ରିୟ କଥା, ନୀଚ ଜନରେ
କରନ୍ତି ରକ୍ଷା ନାରୀ ପ୍ରାଣପଣରେ ।
ପଶୁ ପକ୍ଷୀରେ ମଧ୍ୟ ଏହି ଆଚାର,
ତହୁଁ ଅଧିକ ହୀନ ଦେଖେଁ ବେଭାର !

ଛି ଛି ବୋଲୁଛି ଏତେ କାହା ପାଶରେ ?
କେ ଅଛି ଏମନ୍ତ ଯେ ଶୁଣିବ ଥରେ ?
ଦୁର୍ଯ୍ୟୋଧନ ଅନ୍ନରେ ସର୍ବେ ପାଳିତ;
ବୋଇଲେ ସତ୍ୟ ଅନ୍ନୁ ହେବେ ବଞ୍ଚିତ ।

ଅଥବା ଯାଉ ପଛେ ମୋର ଜୀବନ,—
ମାନ ଗଲେ ସେଥିରେ କି ପ୍ରୟୋଜନ ?
ବଞ୍ଚି ଥାଉନ୍ତୁ ଗୁରୁଜନେ ମୋହର,
ଭର ଯାହାଙ୍କ ପୋଷିବାକୁ ଉଦର ।

ବୋଲିବ ଅବା ଦୁର୍ଯ୍ୟୋଧନ ପଣରେ
ଜିଣି ଆଣିଛି ମୋତେ ଦାସୀପଣରେ;
ତେଣୁ କରିବ ଯଥା ଇଚ୍ଛା ବେଭାର,
ମାତ୍ର ବୋଲନ୍ତୁ ମନେ କରି ବିଚାର ।

କପଟପାଶା ଖେଳେ ଧର୍ମଙ୍କ ସୁତେ,
ଆଗେ ହାରିଲେ ଅବା ହାରିଲେ ମୋତେ ?
ଆଗେ ଆପଣେ ଯେବେ ଥାଆନ୍ତି ହାରି,
ତେବେ ହାରିଲେ ମୋତେ ଆଉ କପରି ?

ସେ ହାର ଜଣା ନୁହେ ଯୁକ୍ତିସଙ୍ଗତ,
ଏଥକୁ ହୋଇପାରେ ମୁହିଁ ମୁକତ ।
ନ ହୁଏ ହେଲ ଦାସୀ କୁରୁକୁଳରେ,
ବଧୂ କ ଅପମାନ ସଭା ମଧ୍ୟରେ ?

ଶ୍ୱଶୁର ଧୃତରାଷ୍ଟ୍ର ଆପେ ବଇରି !
ସରିଗଲଣି ସ୍ୱାମୀମାନଙ୍କ ଶିରି !
ଆନେ ଖାଆନ୍ତି ଦୁର୍ଯ୍ୟୋଧନର ଅନ୍ନ,
କାହାଗେ ବୃଥା କରୁଅଛୁ ରୋଦନ ?

ହେ ଯୁଧିଷ୍ଠିର, ତବ ପାଳୁଛ ଧର୍ମ ?
ଜଣା ଗଲାଣି ତୁମ୍ଭ ଧର୍ମର କର୍ମ ।
କରୁଥାଉନ୍ତୁ ସତ୍ୟ ଧର୍ମ-ବେଭାର;
ତୁମ୍ଭ ଧର୍ମକୁ ମୋର ଶତେ ଜୁହାର ।”

ବୋଇଲେ କୃଷ୍ଣା ପୁଣି ମହାକ୍ରୋଧରେ,
ମୁକୁଳା କେଶ-ଗୁଚ୍ଛ ଧରି ହସ୍ତରେ,
“ଶୁଣନ୍ତୁ ସ୍ୱର୍ଗସ୍ଥିତ ଦେବତାଗଣ,
କ୍ଷତ୍ରିୟ ସମାଜରେ କରୁଛୁ ପଣ—

ଦୁଃଶାସନକୁ ବଧି ମୋ ଭୀମବୀର
ଯେବେ ଆସିବ ପେବେ ତାର ରୁଧିର,
ସେ ରକ୍ତେ କରିବ ମୁଁ ବେଣୀ ସଯତ ।
ନହୁବା ରହିବ ମୋ ବେଣୀ ମୁକତ ।”

———

## ନୀରବ ପ୍ରେମ

(କେଦାର କାମୋଦୀ)

ଫୁଟିଛୁ ବନେ ବନ-ମାଳତୀ ଯେତେ,
ମାଧବୀ, କୁରୁବେଳୀ, ମଲ୍ଲିକା କେତେ,
ଗଙ୍ଗଶିଉଳୀ, ଗନ୍ଧରାଜ, ପାଟଳ,
ଜଳେ ଜଳଜ, କୁମୁଦିନୀ, ଶିଉଳ ।

କାହା ମୁଖକୁ ଚାହିଁ କାହା ପ୍ରେମରେ
ମୋହିତ କରି ବନ ସୌରଭ ଭରେ,
ଗରବେ ଫୁଟି ଦୋଳୁଛନ୍ତି ପବନେ
ନୀରବେ ପ୍ରେମଭରେ ଆପଣା ମନେ ।

ନୀରବେ ଅସ୍ତ ଯାଏ ମରୀଚିମାଳୀ;
ନୀରବେ ନୀଡ଼େ ଲୀନ ବିହଗ ଆଳି;
ନୀରବେ ମାଡ଼ି ଆସୁଅଛି ଅନ୍ଧାର;
ନିଶି ନୀରବେ ଆଜ୍ଞା ପାଳେ କାହାର ?

କରନ୍ତି ଝଲମଲ ତାରକା ନଭେ ;
ବଧୂକିରଣେ ରାକା ରଜନୀ ଶୋଭେ ;
ବିସ୍ତାରି ସୌନ୍ଦର୍ଯ୍ୟକୁ ନୀଳ ଆକାଶ
ନୀରବ ପ୍ରେମେ କରେ ଜ୍ୟୋତି ପ୍ରକାଶ ।

ଟେକିଛି ଅଭ୍ରଭେଦୀ ମସ୍ତକ ଗିରି,
ମଣ୍ଡିତ ଲତା ବୃକ୍ଷେ ଅପୂର୍ବ ଶିରୀ,
ଲମ୍ବିଛି ଶରୀରରେ ନିର୍ଝର-ହାର
ନୀରବେ ପ୍ରେମ ଆଜ୍ଞା ପାଳି କାହାର !

ବୋଲ ଗୋ ଉଷେ ମୋତେ ବୋଲ ସ୍ୱରୂପ,
କାହିଁ ପାଇଲ ଏହି ଅରୂପ ରୂପ ଗୋ ?
ମଣ୍ଡିଛ ସ୍ୱର୍ଣ୍ଣବର୍ଣ୍ଣେ ପୂର୍ବ ଦିଗକୁ
ନୀରବେ ପ୍ରେମେ ଚାହିଁ କାହା ମୁଖକୁ ଗୋ ?

ଅଦୃଶ୍ୟ ପ୍ରାଣଦାୟୀ ଯଥା ସମୀର
ନୀରବେ ବଢ଼େ ପ୍ରେମ ସାଗର-ନୀର ଯେ ।
ନୀରବେ ଶୂନ୍ୟେ ଗ୍ରହଗଣ-ପ୍ରକାଶ !
ନୀରବେ ସୃଷ୍ଟି ସ୍ଥିତି ନୀରବେ ନାଶ ଯେ ।

---

## ଯୋଷେଫାଇନ

ନେପୋଲିୟନ୍ ବୋନାପାର୍ଟ ବୀରେନ୍ଦ୍ର କେଶରୀ,
ରୁଷିଆ, ଇଟାଲି, ସ୍ପେନ,
ପର୍ଟଗାଲ, ଜର୍ମେନ—
ଇୟୁରୋପ ସର୍ବ ଦେଶ ଛନ୍ତି ଜୟ କରି ।
ନେପୋଲିୟନ୍ ବୋନାପାର୍ଟ ବୀରେନ୍ଦ୍ର କେଶରୀ ।

ଇୟୁରୋପେ ବୀର କେହି ନାହିଁ ତାଙ୍କ ବଳି;
କର ଯୋଡ଼ି ରହିଛନ୍ତି ରାଜନ୍ୟମଣ୍ଡଳୀ;
ଧନ, ମାନ, ଆଧିପତ୍ୟ
ମାନବ ବାଞ୍ଛିତ ନିତ୍ୟ
ଆପଣାର ବାହୁବଳେ ଛନ୍ତି ଠୁଳକରି
ନେପୋଲିୟନ ବୋନାପାର୍ଟ ବୀରେନ୍ଦ୍ର କେଶରୀ ।

କି ଥିଲେ କି ହୋଇଛନ୍ତି ନିଜ ବାହୁବଳେ
ସାମାନ୍ୟ ସୈନିକ, ମାନ୍ୟ ଅବନୀମଣ୍ଡଳେ !
କର୍ସିକା ସାମାନ୍ୟ ପ୍ରଜା,—
ଆଜି ସେହି ମହାରାଜା
ବସିଛନ୍ତି ସିଂହାସନେ ରାଜଛତ୍ର ଧରି;
ନେପୋଲିୟନ ବୋନାପାର୍ଟ ବୀରେନ୍ଦ୍ର କେଶରୀ ।

ମାନବ ଲାଳସା କାହିଁ ହୋଇଛି ତୃପତ ?
ଲାଭ ସଙ୍ଗେ ଅଭିଲାଷ ବୃଦ୍ଧି ଅବିରତ ।
ସୈନ୍ୟବଳ, ସିଂହାସନ
କାହିଁ ତୃପ୍ତ ନାହିଁ ମନ;
ଭାଳୁଛନ୍ତି ମନମଧ୍ୟେ ଦିବସ ଶର୍ବରୀ
ନେପୋଲିୟନ ବୋନାପାର୍ଟ ବୀରେନ୍ଦ୍ର କେଶରୀ ।

'ନାହିଁ ମୋର ରାଜବଂଶ ସଙ୍ଗେ ବନ୍ଧୁପଣ,
କିପରି ଗଣିବେ ମୋତେ ରାଜବଂଶୀଗଣ ?'
ଉପାୟ ଇଚ୍ଛାର ଦାସ,
ହେବ ସେ କାହିଁ ନିରାଶ
ଉଦ୍ୟୋଗକୁ ସଫଳତା ଥାଏ ଅନୁସରି ।
ମହୋଦ୍ୟୋଗୀ ନେପୋଲିୟନ ବୀରେନ୍ଦ୍ର କେଶରୀ ।

ସହଜେ ମାନବ ଜାତି ଆତ୍ମସୁଖେ ରତ
ଲୋଡ଼ନ୍ତି ଗୌରବ ଧନ ମାନ ଅବିରତ;
ଅଭିଲାଷୀ ସ୍ୱାର୍ଥପର—
ନ ବୁଝେ ସେ ଆତ୍ମପର
ପ୍ରଣୟ ମିତ୍ରତା ତ୍ୟଜେ ତୁଚ୍ଛ ବସ୍ତୁପରି;
ସାକ୍ଷୀ ଯଥା ନେପୋଲିୟନ ବୀରେନ୍ଦ୍ର କେଶରୀ ।

ପତିବ୍ରତା ଯୋଷେଫିନା ପରମା ସୁନ୍ଦରୀ,
ନେପୋଲିୟନ ଅଙ୍କଲକ୍ଷ୍ମୀ ରାଜରାଜେଶ୍ୱରୀ,—
ପତି ଗତି, ପତି ମୁକ୍ତି,
ସର୍ବସ୍ୱ ଦେବତା ପତି,—
ସେବୁଥାନ୍ତି ପତିପଦ ଯେସନେ କିଙ୍କରୀ ।
ପତିବ୍ରତା ଯୋଷେଫିନା ରାଜରାଜେଶ୍ୱରୀ ।

ଧନରତ୍ନ ପରିପୂର୍ଣ୍ଣ ରହିଛି ଭଣ୍ଡାରେ;
ମାନନୀୟା ବରଣୀୟା ସମସ୍ତଙ୍କ ଠାରେ;
ଫରାସୀର ପାଟରାଣୀ
ପୂଜନୀୟା ଠାକୁରାଣୀ,
ଧରଣୀରେ କେ ରମଣୀ ଅଛି ତାଙ୍କସରି ?
ପତିବ୍ରତା ଯୋଷେଫିନା ରାଜରାଜେଶ୍ୱରୀ ।

ଚିରକାଳ ସମାନରେ ଯାଇଛି କାହାର ?
ଆଜି ମହାରାଜା, କାଲି ଦାଣ୍ଡର ଭିଖାରୀ ।
ସାକ୍ଷୀ ତହିଁ ଯୋଷେଫିନା,
କାହିଁ ରାଣୀ କାହିଁ ଦୀନା;
କେବା ସୁଖୀ କେବା ଦୁଃଖୀ ଅଛି ତାଙ୍କ ସରି ?
ପତିବ୍ରତା ଯୋଷେଫିନା ରାଜରାଜେଶ୍ୱରୀ ।

ଏକ ସୂର୍ଯ୍ୟ ଜଗତର ହରେ ଅନ୍ଧକାର,
ପତି ରମଣୀର ସର୍ବସୁଖ-ମୂଳାଧାର
ସେହି ପତି ପ୍ରେମହିନା
ନାରୀ-ପ୍ରାଣ ବିଡ଼ମ୍ବନା,
ଦେଖୁଛନ୍ତି ଚତୁର୍ଦ୍ଦିଗ ଅନ୍ଧକାର ପରି
ପତିବ୍ରତା ଯୋଷେଫିନା ରାଜରାଜେଶ୍ୱରୀ ।

ବୋଇଲା ବାରତା ଆସି ଦୂତ ଗୁପତରେ,—
ସମ୍ରାଟଙ୍କ ପ୍ରୀତି ଆଉ ନାହିଁ ତାଙ୍କଠାରେ,
ଅଷ୍ଟ୍ରିୟା ରାଜନକନ୍ୟା,
ହେବେ ଫରାସୀରେ ଧନ୍ୟା ।
ଶୁଣିଲେ ଦାରୁଣବାର୍ତ୍ତା ବଜ୍ରନାଦ ପରି
ପତିବ୍ରତା ଯୋଷେଫିନା ରାଜରାଜେଶ୍ୱରୀ ।

ଆଗଷ୍ଟା ମେରିଆ ହେବେ ଫରାସୀରେ ରାଣୀ
ସମସ୍ତଙ୍କ ମୁଖୁଁ ଶୁଣାଯାଏ ଏହି ବାଣୀ;
ଆପଣାର ସର୍ବନାଶ
ଲୋକ ନ କରେ ବିଶ୍ୱାସ;
କେଜାଣି କେଜାଣି ଏଟା ହେବ ଉଡ଼ା କଥା,—
ଭାବୁଛନ୍ତି ଯୋଷେଫିନା ବସି ପୋତି ମଥା ।

ନିଶ୍ଚୟ ନିଶ୍ଚୟ ଏଟା ଅସତ୍ୟ ବଚନ,
ଜୀବନସର୍ବସ୍ୱ ମୋତେ କରିବେ ବର୍ଜନ !
ସଲିଳୁଁ ଅନଳ ଜାତ;
ବିନା ମେଘେ ବଜ୍ରାଘାତ,
ଦିବସରେ ଦିବାକର ଅସ୍ତଯିବ ସତେ,
ନ କରନ୍ତି ଯୋଷେଫିନା ମନରେ ପରତେ ।

ନେପୋଲିୟନ୍ ମୁଖ ଦେଖି ଭୁଲନ୍ତି ଜଗତ,
ମଣନ୍ତି ସ୍ୱର୍ଗୀୟସୁଖ କିବା ହସ୍ତଗତ ।
ମଧୁର ମଧୁର ହସ
ପତିମୁଖ ତାମରସ
ସତେ କି ସେ ମୁଖଚନ୍ଦ୍ର ହେବ ସ୍ୱପ୍ନପରି—
ଭାବୁଛନ୍ତି ପତିବ୍ରତା ରାଜରାଜେଶ୍ୱରୀ ।

କଳ୍ପନା ପଟରେ ସୁଖ ଚିତ୍ର ଥାନ୍ତି ନରେ,
ନ ଭାଳନ୍ତି ଭବିଷ୍ୟତ ଅବସ୍ଥାକୁ ଥରେ;
ତୁମ୍ଭେ ଭାଳ ବା ନ ଭାଳ,
ଯିବ ନାହିଁ ଚିରକାଳ
ସମାନରେ ନିଶ୍ଚେ ନିଶ୍ଚେ ଜାଣିବ ନିକର;
ଅବଶ୍ୟ ଘଟିବ ଯାହା ଥିବ ଘଟିବାର ।

ମନରୁ ହୋଇଛି ଦୂର ସକଳ ସନ୍ଦେହ,
ଆଗଷ୍ଟା ମେରିକୁ ସ୍ୱାମୀ କରିବେ ବିବାହ ।
ଶୋକରେ ବ୍ୟାକୁଳ ମନ,
ଅଶ୍ରୁପୂର୍ଣ୍ଣ ଦ୍ୱିନୟନ;
କେତେବେଳେ ଭାଳ ଭାଳ ଗାଲେ ହାତ ଦେଇ
ପଡ଼ିଗଲେ ଭୂମିତଳେ ପାଟ ମହାଦେଈ ।

ପୁସ୍ତକ ଖଣ୍ଡିଏ ଆଣି ଆଲ୍‌ମାରିରୁ କାଢ଼ି
ମନ ଭୁଲାଇବାପାଇଁ ପଢ଼ିଲେ ଦ୍ୱିଧାଡ଼ି ।
ସୁଖବେଳେ ସବୁ ସୁଖ,
ଘୋର ଦୁଃଖେ କି ପୁସ୍ତକ ?
ନ ଘୁଞ୍ଚିଲା ମନୁ ତଳେ ଘୋର ଅନ୍ଧକାର,
ପୁସ୍ତକ ଖଣ୍ଡିକ ରଖିଦେଲେ ପୁନର୍ବାର ।

ଆଠ, ନଅ, ଦଶ, ଏଗାରଟା ଗଲା ବାଜି,
କିପାଇଁ ବିଳମ୍ବ ପ୍ରାଣକାନ୍ତ କଲେ ଆଜି ?
ବସିଛନ୍ତି ବାଟ ଚାହିଁ
ସ୍ୱାମୀକୁ ଦେଖିବା ପାଇଁ,
କିଞ୍ଚିତ ଶବଦ ମାତ୍ର ହେଲେ କାନ୍ଥେ ବାଡ଼େ,
ଚକିତ ନୟନେ ଦେବୀ ଚାହାନ୍ତି ସେ ଆଡ଼େ ।

ଦେଖିଲେ ଅନାଇ ପାଶେ ଉଭା ପ୍ରାଣେଶ୍ୱର,
ହୃଦୟରୁ ହେଲା ସର୍ବ ସନ୍ତାପ ଅନ୍ତର ।
ସେହି ହସ ସେହି କଥା,
କିଛି ନାହିଁ ମନେ ବ୍ୟଥା;

ବସାଇଲେ ପଲଙ୍କରେ ସ୍ୱାମୀ ହାତ ଧରି
ପତିବ୍ରତା ଯୋଷେଫିନା ରାଜରାଜେଶ୍ୱରୀ ।

ନୁହନ୍ତି ସେ ପତିବ୍ରତା ସ୍ୱାର୍ଥପରାୟଣା,
କପାଇଁ ମଣିବେ ସ୍ୱାମୀସୁଖରେ ଯନ୍ତ୍ରଣା ?
ପଡ଼େଁ ପଡ଼େ ମୁହିଁ ଦୁଃଖେ,
ସ୍ୱାମୀ ତ ରହିବେ ସୁଖେ,
ସ୍ୱାମୀ ପାଇଁ କରିପାରେଁ ପ୍ରାଣ ବିସର୍ଜନ,
କପାଁ ହେବ ସ୍ୱାମୀସୁଖେ ବ୍ୟାକୁଳିତ ମନ ।

ମାତ୍ର ନେପୋଲିୟନ୍ ଏହା ନ ପାରିଲେ ସହି;
ଜ୍ୱଳନ୍ତ ଅନଳ ହୃଦ ପକାଉଛି ଦହି ।
ଶତ ଶତ ତୋପ ନାଦେ
ବୁଲୁଥାନ୍ତି ଅପ୍ରମାଦେ,
ଆଜ ସନ୍ତାପରେ ଧାଣ୍ଡି ହେଉଅଛି ମନ;
ପିଲି ପରି ଡକାପାଡ଼ି କଲେ ସେ ରୋଦନ ।

ମୁଖ ପୋଛିଦେଇ ରାଣୀ ବୋଇଲେ କୋମଳେ,
"କପାଁ କପାଁ ପ୍ରାଣକାନ୍ତ କାନ୍ଦୁଛ ବିକଳେ ?
କାନ୍ଦ ନାହିଁ ମୋହ ପାଇଁ,
ମୋର ମନେ ଦୁଃଖ ନାହିଁ,
ତୁମ୍ଭ ସୁଖେ ମୁହିଁ ସୁଖୀ ଜାଣିବ ନିକର;
ମୋହ ପାଇଁ ପ୍ରାଣକାନ୍ତ ନ ହୁଅ କାତର ।"

ବୋଇଲେ ସେ ନେପୋଲିୟନ୍ ପାଇଣ ସାହସ,
"ପ୍ରିୟେ ! ଦେବି ! ଯୋଷି ! ମୁହିଁ ଅଧମ ରାକ୍ଷସ,
ନୀଚ, ମୂଢ଼, ସ୍ୱାର୍ଥପର,
ଦସ୍ୟୁ, ପାଷଣ୍ଡ, ବର୍ବର;
ତୁମ୍ଭ ପ୍ରୀତି ପ୍ରେମ ଭକ୍ତି କଲି ନାହିଁ ଚିନ୍ତା;
ଏଥୁଁ ବଳି ଅଧିକ କି ଅଛି ଟି ନୀଚତା ?"

ବୋଇଲେ ସେ ଯୋଷେଫିନା, "ମୁଁ ତ କାନ୍ଦୁନାହିଁ,
ପ୍ରାଣକାନ୍ତ ତୁମ୍ଭେ କପାଁ କାନ୍ଦ ମୋହ ପାଇଁ
ଆସନ୍ତୁ ଆରଷ୍ଟ୍ରୀୟାମେରୀ
କପାଁ କରୁଛନ୍ତ ଦେରି ?
ସଁପି ଦେବ ତାଙ୍କ ହାତେ ରାଜ୍ୟ ପ୍ରାଣପତି,
କରନ୍ତୁ ସୁଖରେ ଘର ସେହି ଭାଗ୍ୟବତୀ ।"

"ନା ନା ସତି, ତୁମ୍ଭେ ଦେବୀ, ମୁଁ ଅଟେ ବର୍ବର,
ନ କାନ୍ଦିବ ତୁମ୍ଭେ, କାନ୍ଦିବି, ମୁଁ ନିରନ୍ତର;
ଭକ୍ତିପୂର୍ଣ୍ଣ ଯାହା ମନ,
ସେ କି କରିବ ରୋଦନ ?
ହରାଇ ଅନନ୍ତ ସୁଖ, ହେବ କି ଦୁଃଖିତ ?
ହୁଅନ୍ତି ସେ ସ୍ୱାର୍ଥପରେ ସଦା ବ୍ୟାକୁଳିତ ।"

ପାହିଗଲି ରାତି, ଉଦେ ମାର୍ତ୍ତଣ୍ଡ ଗଗନେ;
ବଢ଼ିଲି ଅନ୍ଧାର କିନ୍ତୁ ନେପୋଲିୟନ୍ ମନେ ।
ନୟନ ପିତୁଳୀ ଛାଡ଼ି
ଯାଉଛନ୍ତି ନାବେ ଚଢ଼ି;
ସମ୍ପଦେ ବିପଦେ ପ୍ରାଣାଧିକା ସହଚରୀ
ଯାଉଛନ୍ତି ଚିରକାଳ ପାଇଁ ଛାଡ଼ିକରି ।

ସ୍ୱାମୀ ପାଇଁ ସ୍ୱାମୀ ତ୍ୟାଗ କଲେ ଯୋଷେଫିନା,
ତେଜିଲେ ସମ୍ପତ୍ତି ସର୍ବ ବିଳାସ ବାସନା ।
ବୋଇତ ସାଗରେ ଭାସି
ଗଲି ଯେଜ ରୂପ ରାଶି;
ଫରାସୀ ଗଗନ ତାରା ହେଲି ଅସ୍ତମିତ;
ଇତିହାସେ ସତୀ କଥା ରହିଲି ଚିରନ୍ତ ।



## ତାରା ବାଈ

ବିଖ୍ୟାତ କମଲମୀର ଦୁର୍ଗ ସମୀପରେ
ପ୍ରାଚୀନ ମନ୍ଦିର ଏକ ଶୋଭେ ମନୋହରେ ।
କେତେବେଳେ ଚିର ନୁହେ ମନୁଷ୍ୟର ପ୍ରାଣ
ବାଟୋଇମାନଙ୍କୁ ଏହା ଦେଉଛି ପ୍ରମାଣ ।
ଶୁଭୁଅଛି ମନ୍ଦିରରୁ ଯେହ୍ନେ ଭୂତବାଣୀ,
ସତୀତ୍ୱ-ବୀରତ୍ୱ-କୀର୍ତ୍ତି ଅପୂର୍ବ କାହାଣୀ ।
ପ୍ରେମିକ ଦମ୍ପତି କୀର୍ତ୍ତି-କଳାପ ବିଶେଷ,
ପୃଥ୍ୱୀରାଜ-ତାରାବାଈ-ଭସ୍ମ-ଅବଶେଷ ।
ହେଲାଣି ତିନିଶ ବର୍ଷ ଆଜକୁ ଅତୀତ,
ତଥାପି ପଥିକ ଗଣେ କରୁଛି ଚକିତ ।
ଦେହ ତେଜ ଯାନ୍ତି ସତ୍ୟ କୀର୍ତ୍ତିମନ୍ତ ନରେ,
ମାତ୍ର ନାମ ଲେଖାଥାଏ ଉଜ୍ଜ୍ୱଳ ଅକ୍ଷରେ ।
ଶୋଲଙ୍କିବଂଶରୁ ଜାତ ରାଓ ସୁରତନ,
ଧର୍ମବୀର କର୍ମବୀର ବେଦୋର ରାଜନ ।
ତୋଡ଼ାଟଙ୍କ ସ୍ଥାନେ ତ୍ରୟୋଦଶ ଶତାବ୍ଦୀରେ
ରାଜତ୍ୱ ସଂସ୍ଥାପି ଥିଲେ ପୂର୍ବ ବଂଶ ଧାରେ;
ଅସୀମ ସମ୍ଭ୍ରମ ପୁଣି ପ୍ରକାଶି ବୀରତ୍ୱ,
ତ୍ରିଶ ବରଷ କଲେ ସେଠାରେ ରାଜତ୍ୱ ।
ଚିରକାଲ ଯାଏ ନାହିଁ ସମାନେ କାହାର;
ଯିବେ କି ଶୋଲଙ୍କି ବଂଶ ତହିଁରୁ ବାହାର ?
ଜିଗୀଷୁ ଆଫ୍‌ଗାନେ ଆସି ତୋଡ଼ାଟଙ୍କେ ପଡ଼ି,
ସୁରତନ ନୃପତିଙ୍କୁ ତହୁଁ ଦେଲେ ତଡ଼ି ।
ନ ଥିଲେ ଅକ୍ଷମ ତୋଡାଟଙ୍କ ବୀରବର,
ଦୁଇ ପକ୍ଷୁଁ ଘଟିଥିଲା ବିଷମ ସମର ।
ମିଛ କଥା ପୌରୁଷର କାହିଁ ଅଛି ଫଳ ?
ଜୟୀ ହେଲେ ଆଫଗାନ ପାଇ ଦୈବ ବଳ ।
ପଳାଇଲେ ପ୍ରାଣ ଘେନି ରାଓ ସୁରତନ,
ତ୍ୟାଗକରି ପିତୃରାଜ୍ୟ ପିତୃସିଂହାସନ ।
ଆରାବଳ୍ଲି ଗିରି ପଦପ୍ରାନ୍ତେ ନରପତି
ବେଦୋର ନାମକ ସ୍ଥାନେ କଲେ ଯେ ବସତି ।
ରାଜବଂଶ ସରୋବରେ କମଳକଳିକା—
ଜନମିଲେ ତାରାବାଈ ନୃପତିବାଳିକା ।
ଶୈଶବରେ ଦେହ ତ୍ୟାଗ କରନ୍ତେ ଜନନୀ,
ଜନକ କୋଳରେ ଥାଇ ବଢ଼ିଲେ ନନ୍ଦିନୀ ।
ସ୍ୱଭାବରେ ପିଲାମନ ବଡ଼ କୁତୂହଳୀ;
ଏହା ତାହା ଜାଣିବାକୁ କରୁଥାନ୍ତି ଅଳି ।
ପିତାମୁଖୁ ଶୁଣି ତା'ର କଥା ସମୁଦାୟ,
କ୍ରମେ ଚିନ୍ତାଶୀଳ ହେଲା ତାହାଙ୍କ ହୃଦୟ ।
ଶୁଣି ବଂଶ-ପୂର୍ବ ଗତ-ଐଶ୍ୱର୍ଯ୍ୟ-ମହିମା
ତାରା ମୁଖେ ଶୋଭାପାଏ ସୌନ୍ଦର୍ଯ୍ୟ ରକ୍ତିମା ।
ପଚାରନ୍ତି ପୁଣ ପୁଣ କନ୍ୟା ଅଭିମାନେ
ପରାସ୍ତ ନ ହେଲେ କେଉଁ ଯୋଗେ ଆଫଗାନେ ?
ଶୁଣି ପିତା ମୁଖୁ ସବୁ କଥା ପୂର୍ବାପର
ତାରାବାଈ ହେଲେ ମନ ମଧ୍ୟରେ କାତର;
ବିଚାରିଲେ, "ହୋଇଥାନ୍ତି ଯଦି ମୁଁ କୁମର
ପରୀକ୍ଷା କରନ୍ତି ବେଳେ ଶକ୍ତି ପଠାଣର ।
ନ ହେଲେ ସକ୍ଷମ ବଂଶଗୌରବ ରକ୍ଷଣେ;
ଧିକ ମୋ ଅବଳା କନ୍ୟା ଜନମ ଗହଣେ ।"
ବଢ଼ିଲା ବୟସ ତାଙ୍କ, ଭାଳିଲେ କୁମାରୀ,
ଉଦ୍ଧାରିବେ ବଂଶକୀର୍ତ୍ତି ବଧି ପିତୃବୈରୀ ।
କରନ୍ତି ସର୍ବଦା ଗୃହ ମଧ୍ୟେ ବିଚରଣ
ପୁରୁଷ ବେଶକୁ ତାରା କରିଣ ଧାରଣ ।
ପିତାଙ୍କର ହୁଏ ଦେଖି ସନ୍ତୋଷ ବିଶେଷ
କାଞ୍ଚନପ୍ରତିମା-କନ୍ୟା ବାଳକର ବେଶ ।
କେବଳ କରନ୍ତି ନାହିଁ ବେଶକୁ ଧାରଣ,
କରନ୍ତି ବ୍ୟାୟାମ ପୁଣି ଅଶ୍ୱ ଆରୋହଣ ।
ବଢ଼ିଲେ ଦିନକୁ ଦିନ ଯେହ୍ନେ କମଳିନୀ
ଅଲୌକିକ ଦେହ-କାନ୍ତି ସୌନ୍ଦର୍ଯ୍ୟଶାଳିନୀ ।
ଅସ୍ତ୍ର ଚାଳନାରେ ଅଶ୍ୱାରୋହଣେ ନିପୁଣ,—
ତାରାଠାରେ ପ୍ରକାଶିତ ହେଲା ସର୍ବଗୁଣ ।
ବ୍ୟାୟାମଚର୍ଚ୍ଚାରେ ହେଲା ଅଙ୍ଗ ସୁଗଠିତ;
କୌଶଳେ ଯେସନେ ଚିତ୍ରପଟରେ ଚିତ୍ରିତ ।

କଟି ତରବାରି, ପୃଷ୍ଠ ତୂଣୀରେ ଶୋଭିତ ।
ସମସ୍ତ ଉଷ୍ଣୀଷେ ମୁକ୍ତା-ହୀରକ-ଖଚିତ ।
ଚଉଦ ବର୍ଷୀୟା ବାଳା ସୈନିକ ବେଶରେ
ଅଶ୍ୱ ଆରୋହଣ କରି ଭ୍ରମନ୍ତି ମାର୍ଗରେ ।
ତାହାଙ୍କ ଉତ୍ସାହ ଦେଖି ସମସ୍ତେ ଭାଳନ୍ତି,
ବିଶାଳ ବାହିନୀ ମଧ୍ୟେ ହେବେ ସେନାପତି ।
ରାଜା ରାୟସୁରତନ ବେଦୋର ପ୍ରାସାଦେ ।
ବାସ କରୁଥିଲେ ନିଶ୍ଚିନ୍ତରେ ଅପ୍ରମାଦେ ।
ତଥାପି କ୍ଷଣକପାଇଁ ନ ଥିଲେ ପାସୋରି
ଜନ୍ମଭୂମି ତୋଡ଼ାଟଙ୍କ ସ୍ୱର୍ଗଭୂମି ସରି ।
ମନ ମଧ୍ୟେ କରୁଥାନ୍ତି ଚିନ୍ତା ଅନୁକ୍ଷଣ
ଶତ୍ରୁରକ୍ତେ କରିବାକୁ ପିତୃ-ତରପଣ ।
ବିଚାରିଲେ ଦିନେ ମନେ ରାୟ ସୁରତନ
କରିବାକୁ ପ୍ରତିଶୋଧ ବୈରି ନିର୍ଯ୍ୟାତନ ।
ତେତେବେଳେ ତାରାବାଈ ଷୋଡ଼ଶୀ ନବୀନା,
ଅସି ଚାଳନରେ ରଣକାର୍ଯ୍ୟେ ସୁପ୍ରବୀଣା ।
ସାଜିଲେ ବାହିନୀ, ହେଲା ଯୁଦ୍ଧ ଆୟୋଜନ,
ହେଲେ ଆପେ ସେନାପତି ରାୟସୁରତନ;
କଟିତଟେ ବାନ୍ଧି ପୁଣ୍ୟମୟ ତରବାରି,
ବାହାରିଲେ ଇଷ୍ଟଦେବ ଚରଣେ ଜୁହାରି;
ଶତ୍ରୁ ସୈନ୍ୟଠାରୁ ନିଜ ସୈନ୍ୟ ଅଳ୍ପତର,
ମାତ୍ର ଯାତ୍ରା କଲେ କରି ସାହସେ ନିର୍ଭର;
ବଜ୍ରମୁଷ୍ଟି କରି ହାତେ ଧରି ତରବାରି,
ବୋଇଲେ ସୈନ୍ୟଙ୍କୁ ଚାହିଁ ଗମ୍ଭୀରେ ହୁଙ୍କାରି,
"ଶୁଣ ବେଦୋରର ରାଜାଶ୍ରିତ ସୈନ୍ୟଗଣ,
ଶୁଣନ୍ତୁ ବିଶ୍ୱାସୀ ତୋଡ଼ାଟଙ୍କ ବୀରଗଣ;
ଆସନ୍ତୁ ପ୍ରତିଜ୍ଞା କରି ଆମ୍ଭ ସାକ୍ଷାତକୁ
ସାକ୍ଷୀ କରି ଆରାବଳ୍ଲି ଗିରି ଶିଖରକୁ ।
ପ୍ରତିଜ୍ଞା କରନ୍ତୁ ଚାହିଁ ସୁନୀଳ ଗଗନ
ଉଦ୍ଧାରିବୁଁ ଦେଶ କିମ୍ବା ତେଜିବୁଁ ଜୀବନ ।"
ମହାଭୟଙ୍କର ଶବ୍ଦେ କମ୍ପିଲା ମେଦିନୀ
"ପାଳିବୁଁ ରାଜାଜ୍ଞା ସର୍ବେ" ବୋଇଲେ ବାହିନୀ ।

ଏହିକାଳେ ଦେଖି ସର୍ବେ ହେଲେ ଆଚମ୍ବିତ,—
ଯୁବା ଏକ ହୋଇ ରଣସଜ୍ଜାରେ ସଜ୍ଜିତ,
ଚଢ଼ିଛନ୍ତି ନୃତ୍ୟକାରୀ ରଣ ଅଶ୍ୱପରେ,
ସୈନ୍ୟ ଅଭିମୁଖେ ଆସୁଛନ୍ତି ଧୀରେ ଧୀରେ ।
ଲାବଣ୍ୟ ଦିଶୁଛି ଯେହ୍ନେ କାଞ୍ଚନ ପ୍ରତିମା,
ବଦନେ ପ୍ରକାଶ ପାଏ ସ୍ୱର୍ଗୀୟ ସୁଷମା,
ଅସାମାନ୍ୟ ତେଜସ୍ୱିତା ଯେହ୍ନେ ବିରାଜିତ,
ନୟନ ଯୁଗଳୁ ଅଗ୍ନି ସ୍ଫୁଲିଙ୍ଗ ସ୍ଫୁରିତ ।
ସହସା ବୋଇଲେ ଉଚ୍ଚେ ସକଳ ବାହିନୀ,
"ଜୟ ଜୟ ତାରାବାଈ ନୃପତିନନ୍ଦିନୀ ।"
ସୁରତନ ନ ଜାଣନ୍ତି ତାରା ଅଭିପ୍ରାୟ,
ସହସା ତାହାଙ୍କୁ ଦେଖି ହେଲେ ଜଡ଼ ପ୍ରାୟ;
ଚିତ୍ରାର୍ପିତ ପୁତ୍ତଳିକା ପ୍ରାୟ ହୋଇ ଉଭା
ନିର୍ନିମେଷ ନେତ୍ରେ ଦେଖୁଛନ୍ତି ତାରା ଶୋଭା ।
ଜଣାଇଲେ ତାରାବାଈ ପିତାଙ୍କ ପୟରେ
ଉଚ୍ଚରେ ଅଥର ବୀଣା ବିନିନ୍ଦିତ ସ୍ୱରେ ।
"ହେ ପିତଃ, ଶୁଣିବା ହେଉ ମୋର ନିବେଦନ,
ଦିନେମାତ୍ର ଯେ ଖାଇଛି ବେଦୋର ରାଜାନ୍ନ,
ଆଜ ସେ ବାହାରିଅଛି କର୍ତ୍ତବ୍ୟସାଧନେ;
ତୋଡ଼ାଟଙ୍କ ସ୍ୱାଧୀନତା ଲଭିବା କାରଣେ ।
ଚିରକାଳ ଯାହା ବୀରମାନଙ୍କ ବାଞ୍ଛିତ
ରାଜାର କୁମାରୀ ତହୁଁ ହେବ କି ବଞ୍ଚିତ ?
କେଉଁ ଦୋଷେ କେଉଁ ପାପେ ରାଜାର କୁମାରୀ
ରଣେ ହେବ ନାହିଁ ପିତୃ-ଦେବ-ସହକାରୀ ?
ସାମାନ୍ୟ ସୈନିକ ମଧ୍ୟ ହୋଇଛି ସଜ୍ଜିତ
ସେଥିରୁ କି ହେବ ରାଜତନୟା ବଞ୍ଚିତ ?
ହେ ପିତଃ, କରନ୍ତୁ ଆଜ୍ଞା ଥିବି ପାଶେ ପାଶେ
ଜନ୍ମଭୂମି କୂଳମାନ ରଖିବା ସକାଶେ ।
କେତେ ଯତ୍ନ କରି ମୋତେ ଦେଇଛନ୍ତି ଶିକ୍ଷା !
ତୋଡ଼ାଟଙ୍କ ରଣେ ଦେବି ସେଥିର ପରୀକ୍ଷା ।"
ବିସ୍ମୟରେ ଶୁଣୁଥିଲେ ରାୟ ସୁରତନ
ନୟନପିଛୁଳୀ ତାରା ଅମୃତ ବଚନ ।

ବିପଦ ଆଶଙ୍କା କରି ବିଚାରିଲେ ମନେ
ଭୟଙ୍କର ଯୁଦ୍ଧେ ଯିବ ବାଳିକା କେସନେ ?
କପରେ ସଙ୍କଟ ଶତ୍ରୁ ସହିତ ସଂଗ୍ରାମ —
ନ ଜାଣେ କୁମାରୀ କିଛୁ ସେଥି ପରିଣାମ ।
ମାତକ ଦେଖିଲେ ତାଙ୍କ-ରୂପ ନରମଣି;
ଉଭାଛନ୍ତି ସେହ୍ନେ ରଣଭୈରବୀରୂପିଣୀ !
ଉତ୍ସାହ ଆନନ୍ଦ ଯେହ୍ନେ ଅଛି ମୂର୍ତ୍ତିମନ୍ତ;
ଅପରୂପ ଶୋଭାପାଏ ନୟନର ଜ୍ୟୋତି ।
ତାଙ୍କ ମୁଖ ଚାହିଁ ରାୟ କଲେ ଅଙ୍ଗୀକାର;
ସୈନ୍ୟମଧ୍ୟେ ଶବ୍ଦ ହେଲା ଜୟ ଜୟକାର ।
ବାହାରିଲେ ରଣବାଜା ବଜାଇ ବାହିନୀ;
ପର୍ବତରୁ ବହିଯାଏ ଯଥା ନିର୍ଝରିଣୀ ।

*　　*　　*　　*

ଏଥର ନ ହେଲେ କିନ୍ତୁ ରାୟ କୃତକାର୍ଯ୍ୟ;
ପ୍ରାକ୍ତନ ଲେଖନ କଥା ଅଟେ ଅନିବାର୍ଯ୍ୟ ।
ବେଦୋରବାହିନୀ ଥିଲେ ନାହିଁ ଅନିପୁଣ;
ମାତକ ସଂଖ୍ୟାରେ ଆଫଗାନ ଦଶଗୁଣ ।
ପାରନ୍ତି ଦଶଟା ଜନ୍ଦା ସାପ ଏକ ମାରି
ପଛଘୁଞ୍ଚା ଦେଲେ ସୁରତନ ଯୁଦ୍ଧ ହାରି ।
ରଣଜୟୀ ହୋଇ ମଧ୍ୟ ଆଫଗାନମାନେ
ସ୍ଥିର ରହି ନ ପାରିଲେ ତୋଡ଼ାଟଙ୍କ ସ୍ଥାନେ ।
ବିକ୍ରମ ସାହସୀ ଯୋଦ୍ଧା ହିନ୍ଦୁ ସୈନ୍ୟଗଣ;
ଜଣେ ଜଣେ ମାରିଗଲେ ପାଞ୍ଚ ଚାଞ୍ଚଜଣ ।
ଆସିବେ ହଜାରେ ସେନା ଯେବେ କେହି ଦିନ,
ତୋଡ଼ାଟଙ୍କେ ନ ରଖିବେ ଆଫଗାନ ଚିହ୍ନ ।
ବୋଲେ ସେନାପତି, "ଆଲ୍ଲା କ୍ୟା ହୁଆ ହାମାରା ?
ଏକଠୋ ଛୋକରୀ ବଡ଼ା ଲଗାୟା ଧବରା ।"
ରାୟ ସୁରତନ ଯୁଦ୍ଧଯାତ୍ରା ସମୟରେ
ଦୃଢ଼ରୂପେ କରିଥିଲେ ପ୍ରତିଜ୍ଞା ମନରେ,
ଉଦ୍ଧାରିବେ ମାତୃଭୂମି ସଂହାରି ଯବନ
ଅଥବା ସମରକ୍ଷେତ୍ରେ ତେଜିବେ ଜୀବନ;
ମାତ୍ର ଦେଖି ତାଙ୍କବାଳି ସମରକୌଶଳ,
ବିଚାରିଲେ ଦିନେ ହେବ ବାସନା ସଫଳ;
ତେଣୁ ଅବଶିଷ୍ଟ ସୈନ୍ୟ ଘେନି ସହିତରେ,
ବାହୁଡ଼ିଲେ ଧୀରେ ଧୀରେ ବେଦୋରନଗରେ ।
ଲଳନା-ଲଲାମ ତାଙ୍କବାଳି ସୌକୁମାର୍ଯ୍ୟ,
ଅଲୌକିକ ବୀର୍ଯ୍ୟବନ୍ତ, ସ୍ୱର୍ଗୀୟ ସୌନ୍ଦର୍ଯ୍ୟ
ସହସା ବିସ୍ତାର ହେଲା ମୀବାର ମଧ୍ୟରେ;
ଫୁଟିଲା ମାଳତୀଗନ୍ଧ ଯଥା ଅରଣ୍ୟରେ ।
ଆଇଲେ ବହୁତ ରାଜପୁତ୍ର ବେଦୋରକୁ
ଗୁଣବତୀ ତାଙ୍କବାଳି ଲାଭ କରିବାକୁ ।
ମାତ୍ର ରାଜପୁତ୍ରୀଙ୍କର ଥିଲା ଏହି ପଣ,
ଯେଉଁ ରାଜପୁତ୍ର ତୋଡ଼ାଟଙ୍କେ କରି ରଣ,
ଦୁରାଚାରୀ ଆଫଗାନେ କରିବେ ସଂହାର,
ଆନନ୍ଦରେ ଦେବେ ତାହା କଣ୍ଠେ ପୁଷ୍ପହାର ।
ଏ କି କଥା ? ଏହା ପୁଣି କେଉଁ ରୂପ ପଣ ?
କନ୍ୟା ଏକପାଇଁ କରିବାକୁ ହେବ ରଣ ?
କେ ଜାଣେ ସଂଗ୍ରାମରେ ପ୍ରାଣ ହୋଇପାରେ ହତ,
କେଉଁ ବୁଦ୍ଧିମାନ ଏଥି ହେବ ସନମତ ?
ଏପରି ଯେ ବୁଦ୍ଧିମନ୍ତ ରାଜପୁତ୍ରଗଣ,
ବାହୁଡ଼ିଲେ ତାଙ୍କ ଆଶା ଛାଡ଼ି ଜଣଜଣ ।
ମାତକ ସାହସପୂର୍ଣ୍ଣ ଯାହାର ହୃଦୟ,
ସେ ଲୋକ କି କରିପାରେ ସଂଗ୍ରାମକୁ ଭୟ ?
କନ୍ୟା ଲାଭ ହେବ, ହେବ ସମରେ ବିଜୟୀ,
ଲଭିବ ଅକ୍ଷୟକୀର୍ତ୍ତି ଯଶଃ ପୁଣ୍ୟମୟୀ;
ବଢ଼ିବ କ୍ଷତ୍ରିୟକୁଳ ମର୍ଯ୍ୟାଦା ସମ୍ମାନ,
ଏଥିକି ବିମୁଖ ହେବ କ୍ଷତ୍ରିୟସନ୍ତାନ ?
ଭୁବନ-ବିଖ୍ୟାତ ପୃଥ୍ୱୀରାଜ ବୀରବର,
ରାଣା ରାୟମଲ୍ଲଙ୍କର ମଧ୍ୟମ କୁମାର,
ଉତ୍ସାହୀ, ଦୟାଳୁ, ବୀର, ପର-ଉପକାରୀ;
ନ ଥିଲା ତାହାଙ୍କ ତୁଲେ କେହି ଧନୁର୍ଦ୍ଧାରୀ ।
ଗଲେ ଲାଭ କରିବାକୁ ଲାବଣ୍ୟପ୍ରତିମା,
ସମରେ ପ୍ରକାଶ କରି କ୍ଷତ୍ରିୟମହିମା ।

ବୀରବେଶେ ଉପସ୍ଥିତ ହୋଇଣ ବେଦୋରେ,
ଅଭିପ୍ରାୟ ଜଣାଇଲେ ରାୟ ସମୀପରେ ।
ତାରାବାଈ ଶୁଣି ପୃଥ୍ୱୀରାଜ ସମାଚାର,
ଉଚ୍ଛୁଳି ଉଠିଲା ତାଙ୍କ ହୃଦ ପାରାବାର ।
ବୀର୍ଯ୍ୟବନ୍ତ ଗୁଣ ବୁଝିପାରେ ବୀର୍ଯ୍ୟବତୀ,
ପ୍ରଣୟେ ଆବଦ୍ଧ ହେଲେ ଯୁବକ ଯୁବତୀ ।
ରାୟ ସୁରତନ ସେଥି ଆନନ୍ଦମନରେ,
ସମର୍ପିଲେ କୁମାରୀକୁ ପୃଥ୍ୱୀରାଜ କରେ ।
ମନରେ ପ୍ରତିଜ୍ଞା କଲେ ରାୟ ସୁରତନ,
ସ୍ୱକାର୍ଯ୍ୟ ସାଧନ କିମ୍ବା ଶରୀର ପତନ ।
ତତକ୍ଷଣେ ପ୍ରଚାର ହେଲା ନୃପତି ଆଦେଶ;
ବାହାରିଲେ ସୈନ୍ୟଗଣ ଧରି ଯୁଦ୍ଧବେଶ ।
ସୈନ୍ୟ ପୁରୋଭାଗେ ପୃଥ୍ୱୀରାଜ ସେନାପତି,
ମତ୍ତହସ୍ତୀ ଦଳମଧ୍ୟେ ଯଥା ଯୂଥପତି ।
ନିଷେଧ ନ ମାନି ତାରା ବାହାରିଲେ ରଣେ,
ସ୍ୱର୍ଗସମ ମାତୃ-ଭୂମି ଉଦ୍ଧାର କାରଣେ ।
ଲୌହବର୍ମେ ଆଚ୍ଛାଦନ୍ତେ କୋମଳ ଶରୀର,
କଳାମେଘେ ବିଦ୍ୟୁତପରି ଦିଶିଲେ ସୁନ୍ଦର ।
ଉପସ୍ଥିତ ତୋଡ଼ାଟଙ୍କ ନଗର ପ୍ରାନ୍ତରେ;
ଅଛନ୍ତି ପନ୍ଦର ଶତ ସେନା ସହିତରେ ।
ଏଣେ ତୋଡ଼ାଟଙ୍କେ ଶତ୍ରୁସେନା ଅଗଣନ;
ଦୁର୍ବଳ ନୁହନ୍ତି ସର୍ବେ ମହା ବଳବାନ,
ନୁହନ୍ତି ମାତ୍ରକ ହିନ୍ଦୁସେନା ସଙ୍ଗେ ସରି;
ବାଜପକ୍ଷୀ ସମ୍ମୁଖରେ ପାରାବତ ପରି ।
ଆଜି ମହରମ ପର୍ବ, ଆନନ୍ଦମନରେ
ମାତିଛନ୍ତି ଆଫଗାନେ ତାଜିଆ ପୂଜାରେ ।
ସହସା ନଗର ମଧ୍ୟେ ପଡ଼ିଲା ଚମକ,
ହିନ୍ଦୁ ସେନାମାନେ ବେଢ଼ିଛନ୍ତି ତୋଡ଼ାଟଙ୍କ ।
ବାହାରିଲେ ଆଫଗାନେ ଅସ୍ତ୍ର ଶସ୍ତ୍ର ଧରି,
ଉଇହୁଙ୍କା ବିଲ ମଧ୍ୟୁଁ ଝଡ଼ପୋକ ପରି ।
ଏଣେ ପୃଥ୍ୱୀରାଜ ଧରି ସଂହାର ମୂରତି,
ଯୁଦ୍ଧପାଇଁ ସୈନ୍ୟଗଣେ ଦେଲେ ଅନୁମତି ।

ଘଟିଲା ତୁମୁଳ ରଣ ଉଭୟ ମଧ୍ୟରେ,
ହଣାହଣି କଟାକଟି ହେଲେ ପରସ୍ପରେ ।
ଚମକୁ ଅଛନ୍ତି ତାରା ହାତେ ଧରି ଖଣ୍ଡା,
ଦୈତ୍ୟ ଯୁଦ୍ଧେ ଭୟଙ୍କରୀ ଯେସନେ ଚାମୁଣ୍ଡା ।
ଏକ ଏକ କରି ହେଲେ ଆଫଗାନେ ହତ
ମୁରାଡ଼ି ସହିତ ଯୁଝି ଯେହ୍ନେ ପାରାବତ ।
ଜୟ ଜୟ ନାଦ କଲେ ବେଦୋରବାହିନୀ
ବୀର୍ଯ୍ୟବତୀ ବୀରନାରୀ ବୀରତ୍ୱ କାହାଣୀ,
ହୋଇଲା ବେଗରେ ରାଜସ୍ଥାନରେ ପ୍ରଚାର;
ହେଲା ତୋଡ଼ାଟଙ୍କ ଲୁପ୍ତ ଗୌରବ ଉଦ୍ଧାର ।
'ଜୟ ମାତାଜୀକି ଜୟ' ବୋଲି ହୃଷ୍ଟମନେ
ବସିଲେ ସେ ସୁରତନ ପିତୃସିଂହାସନେ ।

* * *

ଏ ଉତ୍ତାରେ ପୃଥ୍ୱୀରାଜ ଶ୍ୱଶୁର ଆଦେଶେ
ଯାତ୍ରା କଲେ ତାରାବାଈ ସହିତ ସ୍ୱଦେଶେ ।
ଜଗତ ନିୟମ ଏହି, ମହତ ଜୀବନ
ବିପଦରେ ନିପତିତ ହୁଏ ଘନ ଘନ ।
ତାରାବାଈ ସୁଖ-ସୂର୍ଯ୍ୟ ନୋହୁଣୁ ଉଦିତ
ବିପଦକାଳିମା-ମେଘେ ହେଲା ଆଚ୍ଛାଦିତ ।
ଫୁଟି ଆସୁଥିବା ଯଶ ଅତି ଅକାଳରେ
ପଡ଼ିଲା ଭୂତଳେ ଖସି କାଳ କବଳରେ ।
ପୃଥ୍ୱୀରାଜଙ୍କର ପ୍ରିୟତମା ସହୋଦରା
ସ୍ୱାମୀ ଅତ୍ୟାଚାରେ ହୋଇ ଦୁଃଖରେ କାତରା,
ଜଣାଇଲେ ସହୋଦରେ ଆତ୍ମ ନିବେଦନ,—
"ପ୍ରତିଦିନ ସ୍ୱାମୀ କରି ମାଦକ ସେବନ;
କରନ୍ତି ତାହାଙ୍କପ୍ରତି ନାନା ଅତ୍ୟାଚାର,
କେବେ କେବେ ଅକାରଣ କରନ୍ତି ପ୍ରହାର ।
ଇଚ୍ଛା ଯେବେ ହୁଏ ମୋର ପ୍ରାଣ ରଖିବାକୁ
ପତ୍ର ପାଠମାତ୍ର ବେଳେ ଆସିବ ଏଠାକୁ ।"

ଚଡି ପଡ଼ି ପୃଥ୍ୱୀରାଜ ମହା କ୍ରୋଧଭରେ
ଉପସ୍ଥିତ ହେଲେ ପ୍ରଭୁ ରାୟ * ଭବନରେ ।
କ୍ରୋଧଭରେ ଭଉଣୀଙ୍କୁ ବୋଇଲେ ବଚନ,
"ତୋହର ଜୀବନେ ଯେବେ ଥାଏ ପ୍ରୟୋଜନ,
ପାପ ପ୍ରାୟଶ୍ଚିତ୍ତ କର ମୋହ ସାକ୍ଷାତରେ,
ନୋହିଲେ ତୋହର ମୁଣ୍ଡ କାଟିବି ଖଡ୍‌ଗରେ ।
ମୋ ଭଗ୍ନୀ ପାଦୁକା କର ମସ୍ତକେ ଧାରଣ ।"
ପ୍ରଭୁ ରାୟ ଆତ୍ମରକ୍ଷା କରିବା କାରଣ
ନିରୁପାୟ ହୋଇ କଲେ ପାପ ପ୍ରାୟଶ୍ଚିତ୍ତ;
ମାତ୍ର ଅପମାନେ ଦଗ୍‌ଧ ହେଲା ତାଙ୍କ ଚିତ୍ତ ।
ମନ କଥା ମନେ ରଖି କପଟ ପ୍ରେମରେ
ରଖାଇଲେ ପୃଥ୍ୱୀରାଜେ ନିଜ ଭବନରେ ।
କପଟ ପ୍ରେମରେ ହସି ହସି କଥା କହି,
ଭୁଲାଇଲେ ମନ ସଦା ପାଶେ ପାଶେ ରହି ।
ବିନକରେ ପ୍ରଭୁରାୟ କରିଣ କୌଶଳ
ମିଶାଇଣ ଦେଲେ ଖାଦ୍ୟସହିତ ଗରଳ ।
ପୃଥ୍ୱୀରାଜ ନ ଜାଣନ୍ତି ଏତେ ଛନ୍ଦ କିଛି,
ଖାଦ୍ୟ ଦ୍ରବ୍ୟ ସହିତରେ ଗରଳ ମିଶିଛି ।
ବିଷ-ପାନ କରିଥିଲେ ମେଲାଣି କାଳରେ,
ଘୋଡ଼ା ଚଢ଼ି ଯାଉଁ ଯାଉଁ ଘାରିଲା ମାର୍ଗରେ;
ହୃଦୟର ଗ୍ରନ୍ଥି କ୍ରମେ ହେଲା ଅବସନ୍ନ;
ଟଳିଗଲେ ଅଶ୍ୱପୃଷ୍ଠୁଁ ହୋଇ ଅଚେତନ ।
ଇଷ୍ଟ ଦେବୀ ମାତା ଦେବୀ ମନ୍ଦିର ପ୍ରାଙ୍ଗଣେ,
ଶୁଆଇଲେ ନେଇଯାଇ ସଙ୍ଗୀ ଭୃତ୍ୟମାନେ ।
ମୃତ୍ୟୁକାଳେ କ୍ଷୀଣସ୍ୱରେ ବୋଇଲେ ସାମନ୍ତେ,
ପ୍ରିୟତମା ତାରାମୁଖ ଦେଖିବା ନିମନ୍ତେ ।
ମାତ୍ର ଭେଟ ହେଲା ନାହିଁ ସତୀ ସହିତରେ;
ପ୍ରାଣତ୍ୟାଗ କଲେ ତାରା ଆସିବା ପୂର୍ବରେ ।
ଦେଖିଲେ ଯେ ଆସି ପତିପରାୟଣା ସତୀ,
ଜୀବନବଲ୍ଲଭ ପ୍ରାଣ ତେଜ ଯାଇଛନ୍ତି ।

ଏହା ଦେଖି ମଧ୍ୟ ଦେବୀ ନ ହେଲେ କାତର;
ସତୀ ଶେଷ-କାର୍ଯ୍ୟ ପାଇଁ ହେଲେ ତତପର ।
ଭୃତ୍ୟମାନେ ତତକ୍ଷଣେ ସଜାଇଲେ ଚିତା;
ପ୍ରିୟପ୍ରାଣୀ ପତିପାଶେ ହେଲେ ଯେ ଶାୟିତା ।
ପ୍ରଜ୍ୱଳିତ ହୋଇ ଚିତା ଭୀଷଣ ରବରେ;
ମିଶାଇଲା ଧୂମରାଶି ନୀଳ ଆକାଶରେ ।
ପବିତ୍ର ଯୁଗଳ ଦେହ ହେଲା ଭସ୍ମ ସାର;
ମହିମା ହୋଇଛି କିନ୍ତୁ ଜଗତେ ପ୍ରଚାର ।

———

## ଜୟ ଜଗଦୀଶ ହରେ

ନିଖିଳ ବ୍ରହ୍ମାଣ୍ଡପତି ସର୍ବମୂଳାଧାର,
ପତିତପାବନ ପ୍ରଭୁ ସାରାତ୍‌ସାର;
ଅକିଞ୍ଚନ ନିବେଦନ କରେ ଚରଣରେ,
ଜୟ ଜୟ ଦେବ ଜୟ ଜଗଦୀଶ ହରେ । ୧ ।

ଅସୀମ ଜଗତ ତବ ମହିମା ପ୍ରକାଶେ,
ରବି ଶଶୀ ତାରାରାଜି ସୁନୀଳ ଆକାଶେ ।
ହିଲ୍ଲୋଳ ଊର୍ମିରାଶି ଅକୂଳସାଗରେ,
ଜୟ ଜୟ ଦେବ ଜୟ ଜଗଦୀଶ ହରେ । ୨ ।

ନିରାକାର ସାରାତ୍‌ସାର ପୁଣ୍ୟର ଆଧାର,
ପାପକଳଙ୍କିତ ଜନେ କୃପାରେ ଉଦ୍ଧାର;
ତୁମ୍ଭ ବିନା ଭରସା କେ ଅଛି ଜଗତରେ,
ଜୟ ଜୟ ଦେବ ଜୟ ଜଗଦୀଶ ହରେ । ୩ ।

ନ ହେଲା ହୃଦୟେ ମୋର ପୁଣ୍ୟର ସଞ୍ଚାର,
ଦଗ୍‌ଧ ସନ୍ତାପିତ ପାପାନଳେ ବାରମ୍ବାର;
ଶୀତଳ କରନ୍ତୁ ପ୍ରଭୁ କରୁଣା-ଜଳରେ,
ଜୟ ଜୟ ଦେବ ଜୟ ଜଗଦୀଶ ହରେ । ୪ ।

* ପୃଥ୍ୱୀରାଜଙ୍କ ଭଗ୍ନୀପତି ।

ଭବାର୍ଣ୍ଣବ ପାର ହେତୁ ତୁମ୍ଭେ ହିଁ କାଣ୍ଡାରି,
ଦୁର୍ଗମ-ଯନ୍ତ୍ରଣା-ପାପ-ତାପ-ଭୟ-ହାରି;
ଯାହା ଇଚ୍ଛା କର ପ୍ରାଣ ସମର୍ପିଲି କରେ;
ଜୟ ଜୟ ଦେବ ଜୟ ଜଗଦୀଶ ହରେ । ୫ ।

ଜୟ ଜୟ ବିଶ୍ୱପତି ମହିମା ମହାନ,
ଅଚିନ୍ତ୍ୟ ଅନନ୍ତ ବିଭୁ କରୁଣାନିଧାନ;
ଦେଖନ୍ତୁ ତୁମ୍ଭଙ୍କୁ ସର୍ବେ ଚକିତ ନୟନେ,
ଜୟ ଜୟ ଦେବ ଜୟ ନମେଁ ଶ୍ରୀଚରଣେ । ୬ ।

———

## ପୁଣି କି ଦେଖିବି ସେହି ସହାସ୍ୟବଦନ ?

ଅମାନିଶି ଦୁଃଖ-ରଜନି ଘୋର ଅନ୍ଧକାର
ନୈରାଶ୍ୟ ତୋଫାନ ବହୁଅଛି ବାରମ୍ବାର;
ଦିଶୁନାହିଁ ସ୍ଥାନ ଲେଶ
ବିଶ୍ରାମର କୂଳଦେଶ
ନାବିକର ଧ୍ରୁବତାରା ହେଲା ଅନ୍ତର୍ଦ୍ଧାନ
ପୁଣି କି ଦେଖିବି ସେହି ସହାସ୍ୟବଦନ ? । ୧ ।

କେତେ ଯତ୍ନେ କେତେ ସ୍ନେହେ ରଖିଥିଲି ଧରି,
ଜୀବନ-ନିଭୃତ ସ୍ଥାନେ ଜପମାଳା କରି;
କାଟି ଦେଇ ସବୁ ମାୟା
ଲୁଚିଗଲା କାହିଁ କାୟା,
ନେତ୍ର ଅନ୍ତରାଳେ କାହିଁ ହେଲା ଅଦର୍ଶନ,
ପୁଣି କି ଦେଖିବି ସେହି ସହାସ୍ୟବଦନ ? । ୨ ।

କର୍ମବଶେ ଦୂରଦେଶେ ଥାଏଁ ଯେ ସମୟେ,
ସେ ଲାବଣ୍ୟମୂର୍ତ୍ତି ଥାଏ ଚିତ୍ରିତ ହୃଦୟେ,
ଦୂରଦର୍ଶନଯନ୍ତ୍ର ପରି
ଥିଲି ତାକୁ ଲକ୍ଷ୍ୟ କରି;
ଉଦାସୀ ହତାଶ ଏବେ ବିଚଳିତ ମନ,
ନ ଦେଖି ଅମୃତମୟ ସେ ହାସ୍ୟ-ବଦନ ! ୩ ।

ନ-ବନ୍ଧୁ ବାନ୍ଧବସ୍ଥାନ ଦେଶ ଦେଶାନ୍ତରେ,
କେତେକାଳ ଭ୍ରମୁଥିଲି ନିରାଶ ଅନ୍ତରେ
ଥାଏଁ ସଦା ମନେ ଧ୍ୟାୟୀ
ଦେଖିବି ମୁଁ ଗୃହେ ଯାଇ;
ସାହାରା ପ୍ରାନ୍ତର-କୂପ ପଥିକ-ଜୀବନ,
କାହିଁ ଲୁଚିଗଲା ସେହି ସହାସ୍ୟବଦନ ? । ୪ ।

ଛାୟା ପରି ପାଶେ ପାଶେ ଥିଲା ଅନୁସରି,
ନିମେଷ ବିଚ୍ଛେଦ ମଣୁଥିଲା ଯୁଗସରି;
କର୍ମବଶେ ବିଦେଶକୁ
ଗଲେ ବୁଝାଏଁ ମନକୁ
ବାହୁଡ଼ିବି ଦେଶେ ପୁଣି ହେବ ସମ୍ମିଳନ,
ଘରେ ଯାଇ ଦେଖିବି ଯେ ସେ ହାସ୍ୟବଦନ । ୫ ।

କେତେ ସୁଖ ମଣୁଥିଲି ତାହା ମୁଖ ଦେଖି
ଅନୁଭବେ କେତେ ସୁଖ ତାକୁ ଭାଷା ଲେଖି;
ଡାକ ସୁମଧୁର ନାମ
ଭାଳି ତାହା ଗୁଣଗ୍ରାମ
ଶୁଣି ତା ମଧୁର ବାକ୍ୟ ଚିତ୍ତ ବିମୋହନ,
ଏବେ ଧ୍ୟାନ-ଦୃଶ୍ୟ ସେହି ସହାସ୍ୟବଦନ । ୬ ।

କେତେ ବା ସୌନ୍ଦର୍ଯ୍ୟମୟୀ ନାହାନ୍ତି ଜଗତେ,
ତାହା ସଙ୍ଗେ ତୁଳିବାକୁ ଦିଶୁନାହିଁ ମୋତେ;
ସେହି ମୋ ଲାବଣ୍ୟନିଧି
ତପସ୍ୟାର ଫଳସିଦ୍ଧି
ହୃଦୟ-ଆଲୋକେ ମୋର ନୟନ ରଞ୍ଜନ,
ଅନନ୍ତ ତିମିରେ ଲୀନ ସେ ହାସ୍ୟବଦନ । ୭ ।

ଅଶାନ୍ତକାଳର ଶାନ୍ତି ଦୁଃଖରେ ଦୁଃଖିନୀ,
ବିପଦରେ ମନ୍ତ୍ରୀ ସୁଖେ ଚିତ୍ତବିନୋଦିନୀ
ପ୍ରିୟଶିଷ୍ୟା ଲୀଳାବତୀ
ପବିତ୍ରା ଧାର୍ମିକା ସତୀ,
ନୟନ ଅଞ୍ଜନ ନିଧି ଦରିଦ୍ର ରତନ,
ପୁଣି କି ଦେଖିବି ସେହି ସହାସ୍ୟବଦନ ? ୮ ।

ନିତି ନିତି ଦେଖୁଥିଲି ସେ ଚନ୍ଦ୍ର ବଦନ,
ନିତି ଦିଶୁଥିଲା ମୋତେ ନୂତନ ନୂତନ ।
ନୋହୁଣୁ ବାସନା ପୂର୍ତ୍ତି,
ଆହା ହୋଇଗଲା ଚୂର୍ତ୍ତି
ହୃଦୟର ମର୍ମ ଗ୍ରନ୍ଥି ଜୀବନ-ବଦନ,
ଆଜି କି ଦେଖିବି ସେ ସହାସ୍ୟବଦନ ? ୯ ।

ଚକୁଆ ଚକୋରୀ ପରି ଥିଲୁଁ ଦୁଇ ଜଣ,
ଏକକୁ ଆରେକ କରି ଆତ୍ମସମର୍ପଣ,
ସୁଖେ ଦୁଃଖେ ହୋଇ ସାହା
ସ୍ୱର୍ଗ ସୁଖ ମଣି ଆହା
କୋଡ଼ିଏ ବରଷ କାଳ ଗଲା କାଲି ପରି,
ଦିନକ ବିଚ୍ଛେଦ ମଣେଁ ଯୁଗ ଯୁଗ ସରି । ୧୦ ।

ନିଷ୍କଳଙ୍କ ଚନ୍ଦ୍ର ମୋର ହୃଦେ ଥିଲା ଉଇଁ,
କଳୁଷ-କାଳିମା ତାକୁ ଥିଲା ନାହିଁ ଛୁଇଁ ।
ପାହିଗଲା ସୁଖ ନିଶି
ଅନ୍ତରାଳେ ଗଲା ମିଶି
ଯାଆ ଯାଆ ହୃଦବୃନ୍ଦ ନେଇ ଉପହାର,
ନୈରାଶ୍ୟ-କ୍ରନ୍ଦନଧ୍ୱନି ନେତ୍ର-ଅଶ୍ରୁଧାର । ୧୧ ।

କେତେ ଥର ଛାଡ଼ି ଯାଇଥିଲି ବିଦେଶକୁ,
ସେ ଜାଣି ଏଥର ଛାଡ଼ି ଯାଇଛି ଦୂରକୁ;
ତେବେ କିପାଁ ବ୍ୟାକୁଳିତ
ଧୈର୍ଯ୍ୟ ଧରୁ ନାହିଁ ଚିତ୍ତ,
ବୁଝିଲି ହୋଇଛି ଆଶା-ବନ୍ଧନ ଛେଦନ,
ଯେଣୁ ଆଜି ନ ଦେଖିବି ସେ ହାସ୍ୟବଦନ । ୧୨ ।

ସଞ୍ଜୀବନୀ ମନ୍ତ୍ର ଯିବ କିପରି ପାସୋରି ?
ସହଜେ କି ଛିଡ଼େ ସ୍ନେହ-ବନ୍ଧନର ଡୋରି ?
ନ ଥିଲା ସେ ଜଳଛାୟା
ଦର୍ପଣର ପ୍ରତିକାୟା,
ମାତ୍ର ଛାୟାଚିତ୍ର-ଯନ୍ତ୍ର ସ୍ୱରୂପ ଅଙ୍କନ;
ହୃଦୟେ ଅଙ୍କିତ ଅଛି ସେ ହାସ୍ୟବଦନ । ୧୩ ।

ପଡ଼ିଛି କୁସୁମ ଝଡ଼ି ରହିଛି ସୌରଭ,
ଅସ୍ତମିତ ଚନ୍ଦ୍ର, ରହିଯାଇଛି ଗୌରବ;
ନିଶବଦ ସେ ସଙ୍ଗୀତ
ତାନ ଲୟ ମଧୁରିତ,
ପଡ଼ିଛି ହୃଦୟେ ଛାୟା, ମୂର୍ତ୍ତି ବିସର୍ଜ୍ଜନ,
ଧ୍ୟାନେ ଅନୁଭବ ଏବେ ସେ ହାସ୍ୟବଦନ । ୧୪ ।

ହରି ହରି ସବୁ କଥା ଯାଇଅଛି ସରି,
ସ୍ୱହସ୍ତରେ ଦେଇଅଛି ଭସ୍ମସାତ୍ କରି;
ପ୍ରାଣର ଅଧିକ ଧନ
କରିଛି ତ ବିସର୍ଜନ
କାହା ପାଇଁ କି ଆଶାରେ ଧରିବି ଜୀବନ,
ଆଉ ନ ଦେଖିବି ଯେବେ ସେ ହାସ୍ୟବଦନ ? ୧୫ ।

ଧୂମାକାର ହୋଇ ଉଡ଼ି ଯାଇ ଦିଶି ଦିଶି,
ପଞ୍ଚଭୂତେ ପଞ୍ଚଭୂତ ଯାଇଛି ତ ମିଶି;
ମୋ ଦେହ ତ ଭୂତମୟ
ପରିଣାମେ ତହିଁ ଲୟ,
ପଞ୍ଚଭୂତେ ପଞ୍ଚଭୂତ ଅବଶ୍ୟ ମିଳନ,
ତେବେ ବୃଥା ଏତେ କିପାଁ କରୁଛି ରୋଦନ ? ୧୬ ।

ନୟନପ୍ରତିମା ମୋର ଅଛି ଯେଉଁ ଦେଶେ,
ସେ ଦେଶକୁ ଅବଶ୍ୟ ତ ଯିବି ଅବଶେଷେ;
ଯେବେ ଯିବି ସେ ଦେଶକୁ
ଲୋଡ଼ି ପାଇବି ତାହାକୁ;
ମାତ୍ର ଯେତେବେଳେ ହେବ ପୁନଶ୍ଚ ମିଳନ,
ଚିହ୍ନି କି ପାରିବି ସେହି ମୂର୍ତ୍ତି ବିମୋହନ ? ୧୭ ।

ହେଉ ପଛେ ମୃତ୍ୟୁ ଅନ୍ୟପକ୍ଷେ ଭୟଙ୍କର,
ମାତ୍ରକ ମୋହର ଜ୍ଞାତି କୁଟୁମ୍ବ ସୋଦର
ଦେନଯିବେ ତାହା ପାଶେ
ରହିଅଛି ଯାହା ଆଶେ,
ଲୋଡ଼ୁଛି ସତତ ଯାକୁ ମୋହ ପ୍ରାଣ ମନ,
ଦେଖାଇବ ମନୋହର ସେ ହାସ୍ୟବଦନ । ୧୮ ।

ମୋଠାରେ ଯାଇଛନ୍ତି ରଖି ଦୁଇଟି ସମ୍ପତ୍ତି,
ପୌଗଣ୍ଡ କିଶୋର ଦୁଇ ସନ୍ତାନ ସନ୍ତତି;
ରଖିବି ତାହାଙ୍କୁ ପାଳି
ରହିବି ତାହାକୁ ଭାଳି,
ଗଚ୍ଛିତ ସମ୍ପତ୍ତି ପ୍ରତି କରିବି ଯତନ,
ଦେଖିବି ତ ଆଶା ଅଛି ସେ ହାସ୍ୟବଦନ । ୧୯ ।

ଆହା ବୋଲିବାକୁ ମୋତେ ସାହା କେହି ନାହିଁ
ଆଉ ମୁଁ ରହିବି ବଞ୍ଚି କାହା ମୁଖ ଚାହିଁ ?
ଆହେ ପ୍ରଭୁ ଏ ଜଗତେ
କାହିଁକି ରଖିଛ ମୋତେ ?
ନିର୍ବୋଧ ସାମାନ୍ୟ ନର ମୁହିଁ କ୍ଷୁଦ୍ର ପ୍ରାଣୀ,
ଅପାର ମହିମା ଲୀଳା କି ପାରିବି ଜାଣି ? ୨୦ ।

ଆହେ ପ୍ରଭୁ ବସି ତୁମ୍ଭେ ମହାସିଂହାସନେ,
କେତେ ଲୀଳା ଲଗାଇଛ ବ୍ରହ୍ମାଣ୍ଡଭୁବନେ,
ମୋ ଜୀବନେ ଘଟୁ ତାହା
ତୁମ୍ଭର ବିଧାନ ଯାହା,
ହେଉ ତାପ ହେଉ କଷ୍ଟ ନ ହେବି ବିକଳ,
ତୁମ୍ଭର ମହିମା ହେଉ ଜୀବନେ ସଫଳ । ୨୧ ।

---

## ଚକୁଆ ଚକୋଇ କଥା

ପ୍ରଶସ୍ତ ଜଳାଶୟ ପାଠବିଲରେ
ଥିଲା ଚକୁଆ ଏକ ପୂର୍ବକାଳରେ;
ଆନ ଚକୁଆ ଦଳ ମଧ୍ୟରେ ଥାଇ,
କାଠଇ ଦିନ ଚରି ବୁଲିଣ ଖାଇ । ୧ ।

କେ ତାର ପିତା ମାତା ସେ ଜାଣେ ନାହିଁ,
ପିଲାକାଳରୁ ଯାଇଅଛନ୍ତି କାହିଁ;
ଥିଲା ଏକ ଚକୋଇ ବୁଢ଼ୀ ସେଠାରେ,
ବଞ୍ଚାଇ ରଖିଥିଲା ତାଙ୍କି ଡେଣାରେ । ୨ ।

କେତେ ଦିନରେ ବୁଢ଼ୀ ଚକୋଇ ମଲା,
ପିଲା ଚକୁଆ ଆଶା ଭରସା ଗଲା;
ଏକାକୀ ଉଡ଼ି ବୁଲେ ଏକାକୀ ଚରେ,
ନ ଥିଲା ଦୁଃଖୀ କେହି ତାହା ଦୁଃଖରେ । ୩ ।

କେତେ କାଳରେ ଦିନେ ଦଇବବଶେ,
କାହୁଁ ଚକୋଇ ଏକ ମିଳିଲା ପାଶେ;
ମହା-ଆନନ୍ଦ ଦୁହେଁ ଦୁହିଙ୍କୁ ପାଇ,
କ୍ଷୀର ନୀର ପରାୟେ ଅଭେଦ ଥାଇ । ୪ ।

ବାନ୍ଧିଲେ ବସା ଦୁହେଁ ଯତନ କରି,
ମଣି ତାହାକୁ ସ୍ୱର୍ଗଭୁବନ ସରି,
ଦୁହେଁ ଆନନ୍ଦେ ତହିଁ କରନ୍ତି ବାସ,
ନ ଥାଏ ମନେ ଚିନ୍ତା ସଦା ଉଲ୍ଲାସ । ୫ ।

ପ୍ରଭାତେ ବିଭୁ ନାମ କରି ଗାୟନ,
ନିତ୍ୟ ନିଜ କାର୍ଯ୍ୟରେ ଦିଅନ୍ତି ମନ;
ସାବଧାନରେ ଦୁହେଁ ଥାଆନ୍ତି ଜଗି,
ଦୁହେଁ ଦୁହିଙ୍କୁ ସୁଖୀ କରିବା ଲାଗି । ୬ ।

କେବେ କେବେ ସେମାନେ ବସାକୁ ଛାଡ଼ି,
ଦୂର ପାଠବିଲକୁ ଯାଆନ୍ତି ଉଡ଼ି;
ବିଦେଶେ ଥାନ୍ତି ଦୁହେଁ ମନ ଉଲ୍ଲାସେ,
ଜ୍ଞାତି ଚକୁଆ କେହି ନ ଥାଏ ପାଶେ । ୭ ।

ଦୁହେଁ ସାଙ୍ଗରେ ଉଡ଼ି ଯାଆନ୍ତି ଆକାଶେ,
ଦୁହେଁ ସାଙ୍ଗରେ ଶୋଇ ରହନ୍ତି ବାସେ;
ଚରି ବୁଲନ୍ତି ଦୁହେଁ ଏକ ସାଙ୍ଗରେ,
ବସିବା କାଳେ ଏକ, ଆନ ପାଶରେ । ୮ ।

ଗ୍ରୀଷ୍ମକାଳେ କେତେ ଜହ୍ନରାତିରେ,
ନ ଶୋଇ ବସିଥାନ୍ତି ଏକସାଥିରେ;
ରାତିଯାକ କେଁ-କଟ୍ରୁ ଶବଦ କରି,
ବୀଣାତାନ ତ ନୁହେ ତହିଁକି ସରି । ୯ ।

କେଁ କଣ୍ଠ ଶବ୍ଦେ ଅର୍ଥ ଥିବ ବା କେତେ,
ମାତ୍ର ତହିଁରୁ ସୁଖ ଲଭନ୍ତି ଯେତେ;
ନୋହିଲେ ତହିଁ କପାଁ ଏତେ ଉଲ୍ଲାସ,
ଦିନେ ଦି'ଦିନ ନୁହେ, ମାସକୁ ମାସ । ୧୦ ।

ଏରୂପେ ତହିଁ କିଛି କାଳ କଟିଲା,
ନିଷ୍ଠୁର ବ୍ୟାଧ ଏକ କାହୁଁ ଅଇଲା;
କଲା ସେ ଚକୋରୀର ନାଶ ଜୀବନ,
ଚକୁଆ ବ୍ୟାକୁଳରେ କରେ ରୋଦନ । ୧୧ ।

ଶୂନ୍ୟଜୀବନେ ହୋଇ କାତର ପ୍ରାଣ,
ଉଡ଼ି ବୁଲିଲା ଦଶ ପନ୍ଦର ଦିନ;
ନିଜ ମନକୁ ଆପେ ଆପେ ବୁଝାଇ,
ରହିଲା ତୁନିହୋଇ ସାନ୍ତ୍ୱନା ପାଇ । ୧୨ ।

ଦେଖିଲା ଯାଇ ଗୃହିଁ ବସା କୋଣରେ,
ଶାବକ ଦୁଇଗୋଟି ଶୁଷ୍କମୁଖରେ
ବସିଅଛନ୍ତି ତହିଁ ହୋଇଣ ତୁନି,
ଜନନୀ ପାଇଁ କେତେ ଦିନ ବାହୁନି । ୧୩ ।

ପିଲାଏ ହେଉଥିଲେ ଯେ ଖର୍ଗିଉଡ଼ା,
ଡେଣାରେ ଘେନି ତାଙ୍କୁ ଚକୁଆ ବୁଢ଼ା;
ନିରାଶ ମନେ ତେଜି ନିଜ ବାସକୁ,
ଆକାଶେ ଉଡ଼ିଗଲା ପରଦେଶକୁ । ୧୪ ।

ଆଉ ବସାରେ ନାହିଁ ଶବଦ କିଛି,
ନିର୍ଜନ ବନ ପ୍ରାୟ ପଡ଼ି ରହିଛି;
ବାଟୋଇ ଦେଖାଇବେ ହାତକୁ ଟେକି,
ଏଠାରେ ଥିଲେ ଦୁଇ ଚକୁଆପକ୍ଷୀ । ୧୫ ।

———

## ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ

କୁସୁମକଳିକା ଥିଲା ସୌରଭର ଖଣି,
ମଧୁମୟୀ ହାସ୍ୟମୁଖୀ ପ୍ରେମଲତାମଣି;
ଦୁଇଦିନ ପାଇଁ ମାୟା ମମତା ଲଗାଇ,
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ । ୧ ।

ଲୀଳା କରୁଥିଲା ନୀଳବାରିଦେ ଚପଳା,
ଦେଖି ତୃପ୍ତ ହେଉଥିଲା ମୋହ ନେତ୍ରଡୋଳା;
ଅନନ୍ତ ଆକାଶେ ଗଲା ସହସା ଉଭାଇ;
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ । ୨ ।

ଢାଳି ଦେଉଥିଲା ସୁଧା ପୂର୍ଣ୍ଣ ଶଶଧର,
ଦେଖି ତୃପ୍ତ ହେଉଥିଲା ମୋ ଚିତ୍ତ-ଚକୋର,
ଅସ୍ତାଚଳ ଶିରେ ନିଜ ଦେହକୁ ଲୁଚାଇ,
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ । ୩ ।

ସନ୍ତାପରେ କରୁଥିଲା ସ୍ନେହ-ବାରି ଦାନ,
ମୋ ଚିତ୍ତ-ଚାତକ ତାହା କରୁଥିଲା ପାନ;
ଘୋଟିଗଲା ବାୟୁ ସେହି ବାରିଦେ ଉଡ଼ାଇ,
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ । ୪ ।

ପୋଷିଥିଲା ଶାରୀ କରି ବହୁତ ଯତନ,
ରବ ଶୁଣି ହେଉଥିଲା ଆନନ୍ଦିତ ମନ;
ଉଡ଼ିଗଲା କାହିଁ ପ୍ରେମ-ଶିକୁଳି ଛିଣ୍ଡାଇ,
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ । ୫ ।

ଅନ୍ଧାର ଆଲୁଅ ମୋର ଶରଦ-ଚନ୍ଦ୍ରିକା,
ନନ୍ଦନର ପାରିଜାତ ବାସନ୍ତୀ ମଲ୍ଲିକା;
ମୋ ବାଜେଣୀ ବୀଣାତାନ ପବନେ ମିଶାଇ,
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ । ୬ ।

ମୋ ଘର ପ୍ରାଙ୍ଗଣେ ଥିଲା ଲବଙ୍ଗର ଲତା,
ଫାଟି ପଡ଼ୁଥିଲା ରୂପ କାନ୍ତି କୋମଳତା;
ଆହା ଆହା କିଏ ନେଲା ତାହାକୁ ଶୁଖାଇ,
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ । ୭ ।

ହୃଦୟ-ସାଗରେ ଭାସୁଥିଲା ପ୍ରେମ-ତରୀ,
ନୃତ୍ୟ କରୁଥିଲା ମେଲି ଆନନ୍ଦ-ଲହରୀ;
କାହିଁ ନେଇଗଲା ବାୟୁ ତରଙ୍ଗେ ଭସାଇ,
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ ।। ।

ଜୀବନ-ପ୍ରଭାତେ ମୋର ବିଭାସ ରାଗିଣୀ,
ଦାରୁଣ ନିଦାଘେ ପୂଣ୍ୟ-ତୋୟା ତରଙ୍ଗିଣୀ,
ଦରିଦ୍ର-ପରଶମଣି କେ ନେଲା ଛଡ଼ାଇ,
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ । ୯ ।

ହୃଦୟ-କଷଟିଶିଳେ କାଞ୍ଚନର ରେଖା,
ନୀଳାକାଶେ ଇନ୍ଦ୍ରଧନୁ ଚିତ୍ରମୟ ଲେଖା;
ବେଦରୁ ଗାୟତ୍ରୀମନ୍ତ୍ର କେ ନେଲା ନିଭାଇ,
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ । ୧୦ ।

---

## ଭାଇଭଉଣୀ

ପାହିଲାଣି ନିଶି ସୂର୍ଯ୍ୟ ଉଦୟ ଗଗନେ,
ନିଦ୍ରା ତେଜି ପ୍ରାଣିଗଣ ଆନନ୍ଦିତ ମନେ
ନିଜ ନିଜ କାର୍ଯ୍ୟେ ସର୍ବେ ଦେଇଛନ୍ତି ମନ,
ଧୀରେ ଧୀରେ ବହୁଅଛି ଶୀତଳ ପବନ । ୧ ।

ଭାଇ ଭଗ୍ନୀ ଦୁଇଗୋଟି ଏମନ୍ତ କାଳରେ,
କ୍ରୀଡ଼ା କରୁଥିଲେ ଯାଇ ସରିତଜଳରେ;
ଡଙ୍ଗାଟିରେ ବସି ନଦୀସ୍ରୋତରେ ଭସାଇ,
ଆନନ୍ଦରେ ଯାଉଥିଲେ ଧୀରେ ଧୀରେ ବାହି । ୨ ।

ଦିନଯାକ କ୍ରୀଡ଼ା କରି କାଟୁଥିଲେ କାଳ,
ନ ଥିଲା ତ କିଛି ଚିନ୍ତା କିଛି ହିଁ ଜଞ୍ଜାଳ;
ମରାଳ ଶାବକ ପରି ଭାସୁଥିଲେ ଜଳେ,
ନାନାରୂପ କଥାବାର୍ତ୍ତା କହି କୁତୂହଳେ । ୩ ।

ସହସା ଆସିଲା ଉଭେଁ ମେଘ ଆଚମ୍ବିତେ
ପିଲାମାନେ ଆକାଶକୁ ଦେଖିଲେ ଚକିତେ;
ଚତୁର୍ଦ୍ଦିଗ ଢାଙ୍କି ହେଲା ଘୋର ଅନ୍ଧକାର,
ଚମକେ ବିଜୁଳି ଚକମକ ବାରମ୍ବାର । ୪ ।

ମହାଭୟଙ୍କର ଶବ୍ଦ, କରିଣ ଗର୍ଜ୍ଜନ
ଘଡ଼ ଘଡ଼ ଶବ୍ଦେ ବଜ୍ର ପଡ଼େ ଘନ ଘନ,
ବୁକ ହୁଏ ଆଗି ପ୍ରାଣ ଉଠଇ ଚମକି,
ଜଣାଯାଏ ମସ୍ତକରେ ଅବା ପଡ଼ିଲା କି ? ୫ ।

ବହିଲା ପ୍ରବଳେ ବାୟୁ ମହାଭୟଙ୍କରେ,
ଉଡ଼ି ନ ପାରିଲେ ପକ୍ଷିଗଣ ଆକାଶରେ,
ଭୁହାଇ ଭୁହାଇ ପଡ଼ୁଅଛି ଜଳଧାର,
ଭାଙ୍ଗିପକାଇଲା ବୃକ୍ଷ ଡାଳ ଘର ଦ୍ୱାର । ୬ ।

ପ୍ରବଳ ପବନ ବହେ ଭୁହାଇ ଭୁହାଇ,
ଡଙ୍ଗା ନେଇ ଗଲା ସ୍ରୋତ ଜଳରେ ଭସାଇ,
ଆହା କି ହେଲା ରେ ଡଙ୍ଗା ଯାଉଅଛି ଉଡ଼ି,
ଭାଇ ଭଗ୍ନୀ ଦୁଇଗୋଟି ଯିବେ ଅବା ବୁଡ଼ି । ୭ ।

ଦୁଇଗୋଟି ପିଲା ପଡ଼ି ଘୋର ବିପଦରେ,
ହତାଶ ଆକୁଳ ମନେ କାନ୍ଦିଲେ ଉଚ୍ଚରେ,
ଆନନ୍ଦରେ ନାଚି କୁଦି କାଟୁଥିଲେ କାଳ,
ଜଣା ନ ଥିଲା ତ କିଛି ବିପଦ ଜଞ୍ଜାଳ । ୮ ।

ବୟସରେ ଭାଇ ବଡ଼ ଭଉଣୀଟି ସାନ,
ଭଗ୍ନୀଠାରୁ ଭାଇ ମଧ୍ୟ ଅଟେ ବୁଦ୍ଧିମାନ,
କାନ୍ଦ ନା କାନ୍ଦ ନା ସର ବୋଇଲା ସେ ଭାଇ,
ଆଣ୍ଠ କର ଧର ମଙ୍ଗ ଡଙ୍ଗା ଯିବା ବାହି । ୯ ।

ପ୍ରବଳ ବେଗରେ ବାୟୁ ମାରୁଛି ମଙ୍ଗରେ,
ଚଳେ ଚଳେ ହୋଇ ପାଣି ପଶୁଛି ନାବରେ,
ବୁଡ଼ିବା ବୁଡ଼ିବା ପରି ଡଙ୍ଗା ଯାଏ ଜଣା,
ଅନ୍ଧକାରେ ପୁଣି ହେଉଅଛି ବାଟବଣା । ୧୦ ।

ଦେଲାକ୍ଷଣି ମାରି ଭାଇ ଆଉଲାକୁ ଧରି,
ବାହି ଯାଉଅଛି ଆଣ୍ଡେ କୂଳ ଲକ୍ଷ୍ୟ କରି;
ଭଉଣୀ ଧରିଛି ମଙ୍ଗ ଆଉଲାଟି ଭାଇ,
ହରି ହରି ବୋଲି ଡଙ୍ଗା ଯାଉଛନ୍ତି ବାହି । ୧୧ ।

ବାହି ଯା ବାହି ଯା ଭାଇ ଡାକିଲା ଭଉଣୀ,
ଆଉ ଦୂର ନାହିଁ କୂଳ ପାଇବା ଉଳୁଣି;
ମଙ୍ଗ ଆଣ୍ଟେ ଧରି ସରି ବୋଇଲା ଯେ ଭାଇ
ଡର ନାହିଁ ଡର ନାହିଁ ଯାଉଅଛି ବାହି । ୧୨ ।

କୂଳରେ ଲାଗିଲା ଡଙ୍ଗା ଆଉ ଡର କ'ଣ,
ଉଦ୍ଧାର ପାଇଲେ ଭାଇ ଭଉଣୀ ଦି'ଜଣ;
ସାହସ ଆଉଲା ଧର୍ମ ମଙ୍ଗ ଥିଲେ ଧରି,
ବିପଦ-ତରଙ୍ଗ ଯିବ ସହଜରେ ତରି । ୧୩ ।

———

## ଶାକ୍ୟସିଂହ-ବୈରାଗ୍ୟ

ନିବିଡ଼ ନିଶୀଥ ଘୋର ଆଚ୍ଛନ୍ନ ତମିରେ,
କିଛିମାତ୍ର କୋଳାହଳ ନାହିଁ ପୃଥିବୀରେ ।
କଦାଚିତ ଉଠେ ରବ କପିଳବାସ୍ତୁରେ,
ପ୍ରହରୀମାନଙ୍କ ଡାକ ହୋଇ ହୋଇ ଦୂରେ ।
ଉଜ୍ଜ୍ୱଳ ଜ୍ୟୋତିଷ୍କପୁଞ୍ଜ ନୀଳିମା ଆକାଶେ,
ନବଫେନପୁଞ୍ଜ କିବା ସିନ୍ଧୁଜଳେ ଭାସେ !
ନିଦ୍ରିତ ମନୁଷ୍ୟଗଣ ନାହିଁ କୋଳାହଳ
ଝିଁ ଝିଁ ଝିଁ ଝିଁ ଝିଲ୍ଲିରବ ଶୁଭୁଛି କେବଳ ।
ରାଜଅନ୍ତଃପୁରେ ସର୍ବେ ନିଦ୍ରା-ଅଚେତନ,
କେବଳ ସିଦ୍ଧାର୍ଥ ଛନ୍ତି ଧ୍ୟାନରେ ମଗନ ।
ଦିନଯାକ ଆଜି ତାଙ୍କ ମନେ ଶାନ୍ତି ନାହିଁ
ଶୟନ ନ କରି ତେଣୁ ବସିଛନ୍ତି ଗୃହିଁ ।
କୁହୁଳିବା ଅଗ୍ନିଶିଖା ଉଠିଅଛି ଜଳି,
ସହଜରେ ଆଉ ତାହା ହେବ କି ସମ୍ଭାଳି ?
ସର୍ବଦା କରନ୍ତି ଯତ୍ନ ରାଜା ଶୁଦ୍ଧୋଦନ,
ଭୋଗରେ ଆସକ୍ତ ଯେହ୍ନେ ଥାଏ ପୁତ୍ର ମନ ।
ଜ୍ୟୋତିଷେ ଗଣନା କରି କହି ଯାଇଛନ୍ତି,
ହେବ ପୁତ୍ର ବ୍ରହ୍ମଚାରୀ ଅବା ଚକ୍ରବର୍ତ୍ତୀ ।
ତେଣୁ ରାଜା ଶୁଦ୍ଧୋଦନ ହୋଇ ଯତ୍ନବାନ,
ଜଗତରେ ଯେତେ ଅଛି ସୁଖ ଉପାଦାନ,
ଆଣି ରଖିଥିଲେ ଲୋଡ଼ି ଲୋଡ଼ି ସ୍ୱଭବନେ,
ଭୁଲାଇ ରଖିବାପାଇଁ ପୁତ୍ରକୁ ଯତନେ ।
ବଳବାନ ଜଳସ୍ରୋତ ବନ୍ଧେ ରୁଦ୍ଧ ଥାଇ,
ସହଜେ ପକାଏ ଭାଙ୍ଗି ଅଳ୍ପ ଛିଦ୍ର ପାଇ ।
ଶୁଦ୍ଧୋଦନ ଯତ୍ନ କରିବାକୁ ବିଡ଼ମ୍ବନା,
ସହସା ଘଟିଲା ଏକ ବିଶେଷ ଘଟନା ।
ଦିନେବେଳେ କେତେ ଜଣ ବୟସ୍ୟ ସଙ୍ଗରେ,
ଶାକ୍ୟସିଂହ ଭ୍ରମୁଥିଲେ ଉଦ୍ୟାନ ମଧ୍ୟରେ ।
ଆକାଶରେ ଉଡ଼ି ଯାଉଥିଲେ ହଂସମାଳା,
ଗଗନନିତମ୍ବେ ଯଥା ରଜତମେଖଳା ।
ନିର୍ଦ୍ଦୋଷ ପକ୍ଷୀଏ ମନେ ନାହିଁ ହିଂସାଭାବ,
ଶରୀର ଯେମନ୍ତ ଶୁକ୍ଳ ତେମନ୍ତ ସ୍ୱଭାବ ।
ପଡ଼ିଲା ହଂସେକ ଖସି ଗୌତମ ଆଗରେ,
କେଉଁ ଦୁଷ୍ଟଲୋକ ତାକୁ ବିନ୍ଧିଅଛି ଶରେ,
ଡେଣାମୂଳ ଯାଇଅଛି ଶରବିଦ୍ଧ ହୋଇ,
ଅବିରଳ ରକ୍ତଧାର ପଡ଼ୁଅଛି ବହି ।
ଶରଘାତେ ହେଉଅଛି ପକ୍ଷୀଟି ବିକଳ,
ଧାଇଁଯାଇ ଶାକ୍ୟସିଂହ କଲେ ତାକୁ କୋଳ ।
ବହୁତ ଯତନେ ସେହି ପକ୍ଷୀକୁ ବଞ୍ଚାଇ,
ବୋଇଲେ ବିଳାପ କରି ନିଃଶ୍ୱାସ ପକାଇ ।
"ଆହା ଆହା, ଏ କି ଲୋକମାନଙ୍କ ବେଭାର,
ହୃଦୟେ କି ହୁଏ ନାହିଁ ଦୟାର ସଞ୍ଚାର ?

ସବୁ ରକ୍ତ ମାଂସେ ଅଛି କଷ୍ଟ ଅନୁଭବ,
କିପରି ଭାଳନ୍ତି ନାହିଁ ଏ କଥା ମାନବ ।
ପାଉଛି କିପରି କଷ୍ଟ ଏହି କ୍ଷୁଦ୍ରପ୍ରାଣୀ,
ବିନ୍ଧିବା ଲୋକ କି ଏହା ନ ପାରିଲା ଜାଣି ?
ଗନ୍ତାଘରେ ଅଛି କେତେ ଖଡ୍‌ଗ ତରବାରି,
ରାଜା ହେଲେ ମୁଁ ତ ହେବି ତହିଁ ଅଧିକାରୀ ।
ଆମୋଦରେ ଅବା ରଖିବାକୁ ରାଜ୍ୟଭାର,
କରିବି ତ ସେହି ଅସ୍ତ୍ରମାନ ବ୍ୟବହାର ।
ଏତେକ ଯନ୍ତ୍ରଣା ଦେଖୁଅଛି କ୍ଷୁଦ୍ରଶରେ,
ନ ଜାଣେ କି କଷ୍ଟ ଅଛି ଭଲ ଖଡ଼ଗରେ ।
ଧିକ ସେ ରାଜତ୍ୱେ ମୋର ପ୍ରୟୋଜନ ନାହିଁ,
ଏଡ଼େ ମହାପାପ କିପାଁ ଦୁଇଦିନ ପାଇଁ ?
ଅହିଂସା ପରମଧର୍ମ ସର୍ବ ଧର୍ମସାର,
ଏ କଥା ଜଗତ ମଧ୍ୟେ କରିବି ପ୍ରଚାର ।
ପ୍ରଚାର କରିବି ଯାଇ ଦେଶଦେଶାନ୍ତରେ,
ଯେପରି ନିର୍ବାଣମୁକ୍ତି ଲଭିବେ ଏ ନରେ ।
ଦିନ ଦିନ ହୋଇ ସରି ଯାଉଛି ଜୀବନ,
କେଉଁଦିନ ହେବ ଆଉ ଅଭୀଷ୍ଟ ସାଧନ ?
ବୃଥା ଦିନ କାଟି ଦେଇଅଛି ଘରେ ରହି,
ବୋଇଲେ କି ହେବ ଯାହା ଯାଇଅଛି ବହି ?
ଏତେବେଳେ ଯେବେ ମୁହିଁ ନ ହେବି ଜାଗ୍ରତ,
କିପରି ପାଳିବି କେଉଁ ଦିନ ସତ୍ୟବ୍ରତ ?
ଅସାର ସୁଖରେ ପଡ଼ି କାଟିଦେଲେ ଦିନ,
ମାୟା-ମୋହ-ପାଶ କେବେଁ ନ ହେବ ବିଚ୍ଛିନ୍ନ ।
କି ସୁଖରେ କେଉଁ ଆଶେ ରହିବି ମୁଁ ଘରେ,
ଯାହା ସବୁ ଲୋପ ହେବ କିଛି ଦିନାନ୍ତରେ ?
କରାଳ କାଳର ଚକ୍ର ଘୂରୁଛି ସତତ,
ଜଗତର ପ୍ରାଣୀଗଣ ଏହାର ଆୟତ୍ତ ।
କଳା କଳା ହୋଇ କ୍ଷୟ ହେଉଅଛି ଆୟୁ,
କେଉଁଦିନ ଦେହୁଁ ଉଡ଼ିଯିବ ପ୍ରାଣ ବାୟୁ ।
ସୁବାସିତ ପ୍ରସ୍ଫୁଟିତ କୁସୁମର କଳି,
କାଲି ସେ ମଳିନ ହୋଇ ପଡ଼ିବ ଯେ ଝଡ଼ି ।

ନ ରହିବ ରୂପ କାନ୍ତି ଦେହର ସାମର୍ଥ୍ୟ,
କାଳ ଚକ୍ର ପେଷି ସବୁ କରିଦେବ ବ୍ୟର୍ଥ ।
ନାହିଁ ତ ଦେହରେ ସୁଖ, ଦୁଃଖର ଆଳୟ,
ଯାହାର ବାର୍ଦ୍ଧକ୍ୟ ପୀଡ଼ା ମରଣ ନିଶ୍ଚୟ ।
ଦେହର ସାମର୍ଥ୍ୟ କାଳ ନେଉଅଛି ହରି,
ଚାଲିବାକୁ ହେବ ଠୁକୁଠୁକୁ ବାଡ଼ି ଧରି ।
କ୍ରମେ କ୍ରମେ ପଡ଼ିଯିବ ଦଶନ ସକଳ,
ହେବ ମସ୍ତକର କେଶ ତୁଷାର ଧବଳ ।
ଗଳିତ ପଳିତ ମାଂସ, ଇନ୍ଦ୍ରିୟ ବିକଳ,
ଏହି ଦେହ ହେବ ଦୁଃଖ-ଆଧାର କେବଳ ।
ଏହି ଯେ ଶୋଇଛି ମୋର ଜୀବନ ସ୍ୱରୂପା,
ଶ୍ୱେତପଦ୍ମ କାନ୍ତିମୟୀ ଲକ୍ଷ୍ମୀରୂପା ଗୋପା,
ଏହି କାନ୍ତି ନ ରହିବ କିଛି ଚିରଦିନ,
ବାର୍ଦ୍ଧକ୍ୟ ଯୋଗରେ ହେବ ଅବଶ୍ୟ ମଳିନ ।
ତେବେ କିପାଁ ଆକର୍ଷଣ କରୁଅଛି ମନ ?
ସହଜରେ ଛିନ୍ନ ନୁହେ ପ୍ରେମର ବନ୍ଧନ ।
ପ୍ରଣୟ ମମତା ସ୍ନେହ ସୁଖ-ଆଶା ମାୟା,
ଏହି ସବୁ ଜୀବନର ଚିରସ୍ଥାୟୀ ଛାୟା ।
ଶୋଇଥାଅ ଶୋଇଥାଅ ପ୍ରିୟେ ଯଶୋଧରେ,
କାଲିଠାରୁ ମୋତେ ଆଉ ନ ଦେଖିବ ଘରେ ।
ଅବଶ୍ୟ ତ ଦିନେ ଦୁହେଁ ହୁଅନ୍ତୁ ବିଚ୍ଛିନ୍ନ,
ମନେ ଭାଳ ଆଜି ଆସି ଘଟିଲା ସେ ଦିନ ।
ମନରେ ବହିବ ନାହିଁ ରୋଷ ଠାକୁରାଣୀ,
ପ୍ରିୟତମେ ତୁମ୍ଭଠାରୁ ହେଲି ମେଲାଣି ।"
ପାଶେ ଶୋଇଥିବା ନାରୀ ଏକ ଟେକି ମଥା,
ବୋଇଲା ପ୍ରଳାପ କରି କେତେ ଗୁଡ଼ା କଥା ।
ଏହା ଶୁଣି ଶାକ୍ୟସିଂହ ପଡ଼ିଲେ ଚମକି,
ତାଙ୍କ ମନୋଗତ କଥା କିଏ ଜାଣିଲା କି ?
ଦେଖିଲେ ଅନାଇ ଘରେ ଶତ ଶତ ନାରୀ,
ନିଦେ ଶୋଇଛନ୍ତି ନାହିଁ ଚେତନା କାହାରି ।
କାହାର ମୁଖରୁ ବହି ଯାଉଛି ଗରଳ,
କାହାର ବା ଫିଟି ବିଞ୍ଚି ପଡ଼ିଛି କୁନ୍ତଳ ।

ସ୍ୱପ୍ନ ଦେଖି କେହି ଦାନ୍ତ କରେ କଡ଼ମିଡ଼,
କାହା କଣ୍ଠ ପୁଷ୍ପମାଳ ଯାଇଅଛି ଛିଡ଼ି ।
ବସ୍ତ୍ର ନାହିଁ କାହା କାହା ମସ୍ତକ ବକ୍ଷରେ,
କାହା ମାଳ ଫିଟିଅଛି ବୀଭତ୍ସ ଭାବରେ ।
ଏ ସମସ୍ତ ଦଶା ଦେଖି ଭାଳିଲେ ଗୌତମ,
ଏହି ତ ଅଟଇ ଜୀବନର ପରିଣାମ ।
କି ପ୍ରଭେଦ ନିଦ୍ରା ଆଉ ମରଣ ମଧ୍ୟରେ,
ପ୍ରଭେଦ ଏତିକି ମଲେ ନ ଫେରିବ ଥରେ ।
ଏହି ନାରୀଗଣ ଯଶୋଧାରା ସହଚରୀ,
ରୂପ ଗୁଣବତୀ ଯେହ୍ନେ ଅପ୍ସରୀ କିନ୍ନରୀ,
ସଙ୍ଗୀତ ସାହିତ୍ୟେ ସର୍ବେ ଅଟନ୍ତି ପ୍ରବୀଣା,
ସମସ୍ତଙ୍କ କଣ୍ଠସ୍ୱର କିବା ବୀଣାଜିଣା ।
କରୁଥିଲେ କେତେ ଅଙ୍ଗଭଙ୍ଗି କରି ନୃତ୍ୟ,
ଏବେ ପଡ଼ି ଯାଇଛନ୍ତି ହୋଇ ପ୍ରାୟ ମୃତ ।
ବର୍ତ୍ତମାନ ସର୍ବେ ପଡ଼ିଅଛନ୍ତି ନିଦ୍ରାରେ,
ଅଇଲେ ସେ ମହାନିଦ୍ରା ନ ଉଠିବେ ଥରେ ।
ଆଉ ଏ କ୍ଷଣିକ ସୁଖେ ନାହିଁ ପ୍ରୟୋଜନ,
କରିବି ସେ କାର୍ଯ୍ୟ ଯହିଁ ସାର୍ଥକ ଜୀବନ ।
ଏହି ସବୁ କଥା ମନ ମଧ୍ୟେ କରି ସ୍ଥିର,
ବାହାରିଲେ ଗୃହତ୍ୟାଗ କରି ଧର୍ମବୀର ।
ଅଚେତନ ସର୍ବେ କେଉଁ ନିଦ୍ରା ଆକର୍ଷଣେ,
ଯିବାବେଳେ କେହି ତାଙ୍କୁ ନ ଦେଖିଲା ଜଣେ ।
କରିବାକୁ ଜ୍ଞାନାଲୋକ ଜଗତେ ପ୍ରଚୁର,
ଗଲେ ଶାକ୍ୟସିଂହ ତ୍ୟାଗ କରି ଘର ଦ୍ୱାର ।

---

## ନଦୀ ସ୍ରୋତ ଏବଂ କାଳ ସ୍ରୋତ *

କାଳ ପୁଣି ନଦୀସ୍ରୋତ ସମାନ ଭାବରେ,
ନିଶିଦିନେ ବହି ଯାଉଅଛି ନିରନ୍ତରେ ।
ଯେତେ କରି ଧନ ଦାନ ଅଥବା ବିନତି,
ରହିତ ନ ହେବ ତିଳେ ସେମାନଙ୍କ ଗତି ।
ଡାକିଲେ ଫେରିବେ ନାହିଁ ବହିଗଲେ ଥରେ,
ମିଶିଯିବେ ଦୁହେଁ ପୁଣି ଅନନ୍ତ ସାଗରେ ।
ସବୁ ବିଷୟରେ ଦୁହେଁ ଥିଲେହେଁ ଅଭେଦ,
ମାତ୍ରକ ଭାବୁକ ଲୋକେ ଦେଖନ୍ତି ପ୍ରଭେଦ ।
ଯେ ସ୍ଥାନରେ ନଦୀସ୍ରୋତ ହୁଏ ପ୍ରବାହିତ,
ତୀରଭୂମି କରେ ଫଳପୁଷ୍ପେ ସୁଶୋଭିତ ।
ଯତ୍ନ କଲେ ଜ୍ଞାନୀ ମନ କାଳ କରେ ଉଚ୍ଚ,
ଅଯତ୍ନରେ ସେହି ପୁଣି କରିଦିଏ ତୁଚ୍ଛ ।

---

## ଜଗତ ନୁହେଁ ପୂର୍ଣ୍ଣ ସୁଖର ସ୍ଥାନ

ମାନବଗଣ କିପାଁ ଆଶାର ଦାସ ?
ପୂର୍ଣ୍ଣ ହେବାର ନୁହେଁ ଯେ ଅଭିଳାଷ ।
କିପାଇଁ ପ୍ରେମ କରୁ ପ୍ରିୟଜନଙ୍କୁ;
ଯାହା ବିଚ୍ଛେଦ କଷ୍ଟ ଦିଏ ମନକୁ ?
ମିଳନ କିପାଁ ହେଲା ତାହା ସଙ୍ଗରେ,
ବିଚ୍ଛେଦ ହେବ ଯେବେ ଅବଶ୍ୟ ଥରେ ?
କିପାଁଇ ସୁଖ ଆଶା ଜନ୍ମଇ ମନେ ?
ତୃପ୍ତ ତ ହେଲାନାହିଁ କେବେ ଜୀବନେ ।
ନ ଥିଲା ନାହିଁ ମରୁଭୂମିରେ ଜଳ,
କିପାଁଇ ମରୀଚିକା କରଇ ଛଳ ।
ଫୁଟି ଚହଟେ କିପାଁ କୁସୁମ କଢ଼ି,
ଦୁଇ ଦିନରେ ଯେବେ ପଡ଼ିବ ଝଡ଼ି ?
ଯାହାକୁ କରିଥିଲି ଜୀବନ ଆଶ,
ଛାଡ଼ିଯିବାରୁ ମୋତେ କରି ନିରାଶ ।
ଏତେଦିନେ ମୋହର ଜନ୍ମିଲା ଜ୍ଞାନ,
ଜଗତ ନୁହେଁ ପୂର୍ଣ୍ଣ ସୁଖର ସ୍ଥାନ ।

---

* କୌଣସି ଇଂରାଜୀ କବିତାରୁ ଅନୁବାଦ ।

## ୭ ନନ୍ଦକିଶୋର ଦାସ

[ ଜନ୍ମ ସନ ୧୨୫୨ ସାଲ ଜ୍ୟେଷ୍ଠ,
ସ୍ୱର୍ଗପ୍ରାପ୍ତି ସନ ୧୩୦୧ ସାଲ ଚୈତ୍ର ]

ଜନମି କେବା ଚିରକାଳ ବଞ୍ଚିଛି ?
ମରି ବାହୁଡ଼ି କେଉଁ ଲୋକ ଆସିଛି ?
ତେବେ ବିଚ୍ଛେଦ ହେଲେ କ୍ଷାନ୍ତ ସୁଜନ,
କାହିଁକି ଏତେ କପାଁ କରୁ ରୋଦନ ? ୧ ।

ପାଣିଫୋଟକା ଯିବ ମିଶି ପାଣିରେ,
କିଛି ତ ଧ୍ୟାନ ଲାଭ ନାହିଁ ଏଥିରେ;
ହୁଅନ୍ତି ଏଥି ଲୋକେ କପାଁ କାତର,
କେ ଲୋକ ଦେବ ମୋହ ପ୍ରଶ୍ନ ଉତ୍ତର ? ୨ ।

ବୁଝିଛି ଅଛି ଏଥି ବିଶେଷ କଥା,
ଜଗତେ ଏତେ କପାଁ ମାୟା ମମତା;
ଲୋଡ଼ନ୍ତି ନିଜ ସ୍ୱାର୍ଥ ଲୋକ ସକଳ,
ସ୍ୱଜନ ବିଚ୍ଛେଦରେ ତେଣୁ ବିକଳ । ୩ ।

ସ୍ୱଦେଶବନ୍ଧୁ ଥିଲେ ନନ୍ଦକିଶୋର,
ତାହା ବିଚ୍ଛେଦେ ଲୋକେ ତେଣୁ କାତର;
ଭରସା ରଖିଥିଲେ ଲୋକେ ତା'ଠାରେ;
ଆଶା ଭରସା କରି ନାନା ପ୍ରକାରେ । ୪ ।

ପର୍ବତ ବନ ମଧ୍ୟେ ଶୀତ କାଳରେ,
ବୁଲିଛି କେତେଥର ତାହା ସଙ୍ଗରେ,
ନିର୍ଜନ ଅଳାପରେ ବଢ଼ିଛି ମନ;
ଥିଲେ ସେ ଓଡ଼ିଶାର କୁଳନନ୍ଦନ । ୫ ।

ଆତ୍ମମାନଙ୍କ ସେ ଯେ ଥିଲେ ସମ୍ବଳ,
ନଦୀଏ ଶୁଖିଗଲା ସହସା ଜଳ;
ସୁଜାତିମନ୍ତ ଥିଲ ହେ ନନ୍ଦ ଭାଇ,
ଯାଇଛ ହସି ହସି ଲୋକେ କନ୍ଦାଇ । ୬ ।

———

## ବାସୀଫୁଲ

ପାଦପମୁକୁଟମଣି ବଲ୍ଲରୀ ଶୋଭନ,
କାମିନୀ କାମନାପୂର୍ଣ୍ଣକାରୀ ହେ ସୁମନ ।
ତୁମ୍ଭର ମର୍ଯ୍ୟାଦା ସ୍ୱର୍ଗ ନନ୍ଦନ-କାନନେ,
ସୁନ୍ଦର ତୁମ୍ଭଠୁଁ ବଳି କେ ଭବ-ଭବନେ ?
ରୂପେ ରସେ ଗନ୍ଧେ ସର୍ବଗୁଣେ ଗୁଣାକର,
ପ୍ରକୃତିର ଶ୍ରେଷ୍ଠ କୀର୍ତ୍ତି ଶ୍ରେଷ୍ଠୁଁ ଶ୍ରେଷ୍ଠତର ।
ସୁଧାର ଆଧାର ତୁମ୍ଭେ ନୟନ ରଞ୍ଜନ,
ହୃଦୟବିନୋଦକାରୀ ଚିତ୍ତବିମୋହନ ।
କବିଙ୍କ ସର୍ବସ୍ୱଧନ ଉଦ୍ୟାନବିଭୂତି,
ଦାସ ପରି ଖଟି ଭୃଙ୍ଗେ କରୁଥାନ୍ତି ସ୍ତୁତି ।
ଆହା ଆହା ଏ କି ଦଶା ଘଟିଲା ତୁମ୍ଭର,
କପାଁ ହେଉଅଛ ପଡ଼ି ଧୂଳିରେ ଧୂସର ?
ଶୋଭା ପାଉଥିଲ କାଲି ଦେବମସ୍ତକରେ,
ଦଳି ହେଉଅଛ ଆଜି ମନୁଷ୍ୟପଦରେ ।
ତୁମ୍ଭ ଦଶା ଦେଖି ଜାତ ଆତଙ୍କ ହୃଦୟେ,
ସମସ୍ତଙ୍କ ଏହି ଦଶା ଅନ୍ତିମ ସମୟେ ।

———

## ସମାଧିକ୍ଷେତ୍ର

ଜଗତର ସୁଖ ଦୁଃଖ ଆନନ୍ଦ ଉତ୍ସବ,
ପ୍ରେମାଳାପ ହିଂସା ଦ୍ୱେଷ ଐଶ୍ୱର୍ଯ୍ୟ ବିଭବ ।
ଉତ୍ସାହ କୌତୁକ ମାୟା ମାନ ଅପମାନ,
ଏହିଠାରେ ସର୍ବ ଶେଷ ଏହି ଶାନ୍ତି-ସ୍ଥାନ ।
ଅନନ୍ତ ଜୀବନକାଳ ସୀମା ନାହିଁ ଶେଷ,
ଶରୀରର ପରମାଣୁ ଭସ୍ମ ଅବଶେଷ ।
ଭୂତର ସମଷ୍ଟି ଦେହ ଭୂତରେ ବିଲୟ,
ଅବିନାଶୀ ଜୀବନର ସ୍ୱତନ୍ତ୍ର ଆଳୟ ।
ଜୀବନ ବିହଙ୍ଗ ଉଡ଼ି ବୁଲେ ବୃରିଆଡ଼େ,
କିଛି କିଛି ଦିନ ବାସ କରିଯାଏ ନୀଡ଼େ ।

ଯାଇଛୁ ବହଙ୍ଗ ଉଡ଼ି ପଡ଼ିଅଛି ବସା,
ଜୀର୍ଣ୍ଣ ଶୀର୍ଣ୍ଣ ଭସ୍ମୀଭୂତ ଶେଷ ଏହି ଦଶା ।
କିଛିକାଳ ଜ୍ଞାତିଗଣ ଆସି ଏ ସ୍ଥାନକୁ,
ନେତ୍ରଜଳେ ଲେପୁଥିଲେ ମୃତ୍ତିକାସ୍ତୂପକୁ ।
ଚାଲି ଯାଇଛନ୍ତି ଜ୍ଞାତି କୁଟୁମ୍ବ ସକଳେ,
ଏତେବେଳେ ଭିଜୁଛି ତ ବରଷାର ଜଳେ ।
ଅଥବା ଆତ୍ମୀୟ କେହି ଦୂରରୁ ଅନାଇ,
ବାଟ ଭାଙ୍ଗି ଚାଲିଗଲେ ନିଃଶ୍ୱାସ ପକାଇ ।

———

## ପାସୋରିବା

ପାସୋରିବା ପାଇଁ ଯେତେ କଲେହେଁ ଯତନ,
ଦିବାନିଶି ମନେପଡ଼େ ସେ ହାସ୍ୟବଦନ ।
ଏକ ଆତ୍ମା ଭିନ୍ନ ଦେହ ଥିଲୁଁ ଦୁଇଜଣ,
ଛିନ୍ନ ହୋଇ ନ ଥିଲା ତ ପ୍ରୀତିର ବନ୍ଧନ ।
ଭିନ୍ନ ଦେହ ଭିନ୍ନ ହେଲା ମାତ୍ର ଦୁଇ ମନ
ଭିନ୍ନ ତ ହେବାର ନୁହେ ଯାବତ ଜୀବନ ।
ଭିନ୍ନ ହୁଏ ଯାହା ଯାଉଥାଏ ଭାସି ଭାସି,
ଛାଡ଼ି କି ପାରିବ ଯାହା ଯାଇଅଛି ମିଶି ?
ଯଦି କେତେବେଳେ ଯିବି ତାହାକୁ ପାସୋରି,
ଅଧଘଣ୍ଟେ ଜୀବନ ମୋ ରହିବ କିପରି ?

———

## ଲାବଣ୍ୟମୟୀ

ସେ ଲାବଣ୍ୟମୟୀ ପ୍ରତିମା
ଆଉ ନାହିଁ ପୃଥ୍ୱୀରେ,
ଅବଶେଷ ଭସ୍ମ ମୁଠାଏ
ମିଶିଅଛି ମାଟିରେ ।

ଜ୍ଞାତି ବନ୍ଧୁଗଣ କାନ୍ଦିବେ
ତାହା ଗୁଣ ସୁମରି,
ଅଶ୍ରୁସିକ୍ତ ନେତ୍ର ଶୁଖିବ
ଯିବେ ତାକୁ ପାସୋରି ।

ଥୋକେ ଦିନ ଯାଏ ତା ନାମ
ପକାଇବେ କଥାରେ,
ତେଣିକି ସେ ନାମ ଲୁଚିବ
ବିସ୍ମୃତିର ଅନ୍ଧାରେ ।

ସେ ରୂପମାଧୁରୀ ଆଉ ତ
ନ ଦିଶିବ କାହାକୁ,
ମୃତ୍ୟୁ ଅନ୍ଧକାର ପଛରେ
ଭେଟିବ କି ତାହାକୁ ?

ଚିରକାଳ ପାଇଁ ପୃଥ୍ୱୀରୁ
ହୋଇଅଛି ଅନ୍ତର,
ଆଉ ତ ନ ହେବ ତା ଶୋଭା
କେବେଁ ନେତ୍ରଗୋଚର ।

ମାତ୍ରକ ଏ କଥା ମୋହର
ହେଉ ନାହିଁ ବିଶ୍ୱାସ,
ସେ ଦେବଦୁର୍ଲ୍ଲଭ ଗୁଣ କି
ହୋଇଗଲା ବିନାଶ ।

ଛାଡ଼ି ପାରୁ ନାହିଁ କମ୍ପାଇ
ତେବେ ତାହାର ମାୟା,
ନେତ୍ର ଅନ୍ତରାଳେ ସତତ
ଭାସି ବୁଲେ ତା ଛାୟା ।

ବୁଝିଛି ବୁଝିଛି ବିକାଶେ
ସେହି ପବିତ୍ରଧାମେ,
ହେଉଥିଲା ସେହି ଜୀବନେ
ପୁଲକିତ ଯେ ନାମେ ।

———

## ମହାଧାମରେ

ହେ ଅନନ୍ତ ବିଶ୍ୱପତି ତୁମ୍ଭ ଆଦେଶରେ,
ଭ୍ରମିଲି ଜୀବନକାଳ ପୃଥିବୀ ମଧ୍ୟରେ ।
ସଂସାର ଭ୍ରମଣମାର୍ଗ ନୁହଇ ସରଳ,
ଜଟିଳ ପଙ୍କିଳ ଦୁଃଖସଙ୍କୁଳ କେବଳ ।

ଭୁଲିଲି ତୁମ୍ଭଙ୍କୁ ମାର୍ଗେ ଭେଟି ସଙ୍ଗିଗଣେ,
ଅତୃପ୍ତ ଲାଳସାସୁଖ ବିଷୟ ଭକ୍ଷଣେ ।
କେତେ ମରୁ ମରୀଚିକା ଭେଟିଲି ମାର୍ଗରେ,
ତଥାପି ସ୍ମରିଲି ନାହିଁ ତୁମ୍ଭ ନାମ ଥରେ ।

ଅମୃତ ଭ୍ରମରେ କେତେ ଭକ୍ଷିଛି ଗରଳ,
ଦଗ୍‌ଧ କରୁଅଛି ଏବେ ସେହି ହଳାହଳ ।
ବେଳେ ବେଳେ ହୋଇଥିଲ ଉଦୟ ହୃଦୟେ,
ତାହା ମଧ୍ୟ ଦୁଃଖ କିମ୍ବା ଦାରିଦ୍ର୍ୟ ସମୟେ ।

କି ବୋଲିବି ତୁମ୍ଭଠାରେ କିବା ଅଗୋଚର,
ଜାଣି ଶୁଣି ମହାପାପ କଲି କେତେଥର ।
ମୋର ମହାପାପ ନୁହେ ନିତାନ୍ତ ସାମାନ୍ୟ,
ବହୁତ କରିଛି ତୁମ୍ଭ ନିୟମ ଅମାନ୍ୟ ।

ତୁମ୍ଭ ପୁତ୍ର କନ୍ୟାଗଣେ ଦେଇଛି ଯନ୍ତ୍ରଣା,
କେତେକର ଷଡ଼ଯନ୍ତ୍ର କେତେ କୁମନ୍ତ୍ରଣା ।
ଧନ ମାନ ବିଦ୍ୟା ସେବା କଲି ପ୍ରାଣପଣେ,
ରଖି ତ ପାରିଲେ ନାହିଁ କେହି ମୋତେ କ୍ଷଣେ ।

ନିଜ ଦେହ ତେଜ ଅଛି ଆନ କଥା ଥାଉ,
ତୁମ୍ଭ ବିନା କାହାକୁ ତ ଦେଖୁନାହିଁ ଆଉ ?
ତୁମ୍ଭଠାରୁ ଯିବାବେଳେ ଥିଲି ମୁଁ ପବିତ୍ର,
ବାହୁଡ଼ି ଆସିଛି ହୋଇ କଳଙ୍କ ଚରିତ୍ର ।

ତୁମ୍ଭ ବିନା ଏଠାରେ ତ ଆଉ କେହି ନାହିଁ,
ଯାହା ଇଚ୍ଛା କର ତାହା ବ୍ରହ୍ମାଣ୍ଡଗୋସାଇଁ ।
ତୁମ୍ଭ ପଦେ ସମର୍ପିଲି କଳଙ୍କିତ ପ୍ରାଣ,
ଇଚ୍ଛାରୂପ ଦିଅ ଦଣ୍ଡ ଅବା ପରିତ୍ରାଣ ।

———

## ଦୀପନିର୍ବାଣ

ନିଷ୍ଠୁର ଚଞ୍ଚଳ ପବନେ
ଶେଷ ଦୀପନିର୍ବାଣ,
ଧାଇଁ ହେଉଅଛି ଏଣିକି
ଅନ୍ଧକାରେ ପରାଣ ।
ପଦେ ପଦେ ଝୁଣ୍ଟି ପଡ଼ିବ
ଅନ୍ଧ ଗୁଳଲା ପରି,
ସାବଧାନ ହୋଇ ନ ଗଲେ
ଧୈର୍ଯ୍ୟ ତିତିକ୍ଷା ଧରି ।
ଦୁର୍ନିବାର କାଳସ୍ରୋତରେ
ସବୁ ଯାଇଛି ଭାସି,
ଜୀବନର ମୋର ସର୍ବସ୍ୱ
ସୁଖ ସମ୍ପତ୍ତିରାଶି ।
କେବେ ଭାସି ଭାସି ମୁଁ ଯିବି
ବନ୍ଧୁ ଅଛି ସେଠାରେ,
ଜୀବନ ଚରମସ୍ଥାନକୁ
ଶେଷ ଘୋର ଅନ୍ଧାରେ ?

———

## ପୃଥିବୀ ତ ନୁହେ ସୁଖ ସ୍ଥାନ

ପୃଥିବୀ ତ ନୁହେ ସୁଖ ସ୍ଥାନ,
ଏ କେବଳ ସୁଖର ଶ୍ମଶାନ ।
ଇନ୍ଦ୍ରଧନୁ ସୁନ୍ଦର ଆକାଶେ,
ଦୁଇ ଘୁରି ମୁହୂର୍ତ୍ତ ସକାଶେ ।

ଶିଶୁ କବା ଆନନ୍ଦପ୍ରତିମା;
କେତେଦିନ ରହେ ମାଧୁରିମା ?
ଊଷାର ମାଧୁରୀ ମନୋହର,
ଆହା ଆହା କ୍ଷଣିକ ମାତର ।
କମଳେ ଶିଶିର-ମୁକ୍ତାବଳୀ,
ଗୃହୁଁ ଗୃହୁଁ ଢଳେ ପଡ଼େ ଢଳି ।
ହୃଦୟଉଲ୍ଲାସୀ ରକାନଶି,
ଉଆଁସ ଅନ୍ଧାରେ ଯାଏ ମିଶି ।
ପୁଷ୍ପ ଶୋଭା ବୃକ୍ଷ ଲତା ଶିରେ,
ଶୁଖି ସଡ଼ ଝଡ଼େ ପୃଥିବୀରେ ।
ପ୍ରୀତିଠାରୁ ବଳି ସୁଖ ନାହିଁ,
ଅବଶେଷେ କନ୍ଦାଇବାଠାଇଁ ।
ସୁଧାମୟ ଦମ୍ପତି ମିଳନ,
ପରିଣାମ ବିଚ୍ଛେଦ କ୍ରନ୍ଦନ ।
ପ୍ରଭାତେ ସୁନ୍ଦର ସ୍ୱର୍ଣ୍ଣରବି,
କେବଳ ସେ ମୁହୂର୍ତ୍ତିକ ଛବି ।
ସୁନ୍ଦର ସୁରଭି ପଦ୍ମବନ,
ହେମନ୍ତର ପୂର୍ବ ଆଗମନ ।
ନବବତି ଯୌବନ ଉଚ୍ଛ୍ୱାସ,
କେବଳ ତ ଦୁଇ ଗୃରମାସ ।
ସୁଖମୟ ବାସନ୍ତୀ ସମୀର,
ଗ୍ରାସେ ତାକୁ ନିଦାଘ ମିହିର ।
ଆକାଶରୁ ବାରିବିନ୍ଦୁ ପଡ଼ି,
ଦୁଇ ଟୋପା ସୁଖ ପଡ଼େ ଝରି;
ସ୍ୱର୍ଗସୁଖ ଗନ୍ତାଘରୁ ବଳି,
ପୃଥିବୀକୁ ପଡ଼ଇ ଉଛୁଳି;
ଶୁଖିଯାଏ ତଡ଼ବା ମାତ୍ରକେ,
ହତାଶ ଯନ୍ତ୍ରଣା ଦୁଃଖ ଶୋକେ ।
ଲୋଡ଼ ଯେବେ ସୁଖ ଚିରସ୍ଥାୟୀ,
କର ଭାଇ କର୍ମ ଅନୁଯାୟୀ ।

---

## ମୋ କ୍ଷୁଦ୍ରତାରା

ଗୋଟିଏ ମୋ ତାରା ଥିଲା ବିଶାଳଗଗନେ,
ଆହା ପୁଣି ଦେଖିବି କି ତାହାକୁ ନୟନେ ?
କେଉଁ କଳାମେଘ ଦେଲା କାହିଁରେ ଘୋଡ଼ାଇ ?
ହୃଦ ଫାଟି ଯାଉଅଛି ତାହାକୁ ନ ପାଇ ।
ନ ଥିଲା ତ ଜ୍ୟୋତିର୍ମୟୀ ଅପୂର୍ବସୁନ୍ଦରୀ,
ମାତ୍ର ପ୍ରାଣ ଧରିଥିଲି ତାକୁ ଲକ୍ଷ୍ୟ କରି ।
ଗଗନ-ପ୍ରାଙ୍ଗଣକୋଣେ ନିଭୃତ ସ୍ଥାନରେ,
ସେ କ୍ଷୁଦ୍ର ତାରାଟି ଥିଲା ଲୋକ ଅଗୋଚରେ ।
ନ ଥିଲା ପ୍ରଖର ଜ୍ୟୋତି ବିସ୍ତାରି ଗଗନେ,
କେ କହାଁ ଦେଖନ୍ତା ତାକୁ ଚକିତ ନୟନେ ?
ମାତ୍ରକ ସେ କ୍ଷୁଦ୍ରତାରା ଜ୍ୟୋତି ଲକ୍ଷ୍ୟ କରି,
ଦୁଃଖେ ସୁଖେ ସବୁବେଳେ ଥିଲି ପ୍ରାଣ ଧରି ।
ହୃଦୟ ଉଲ୍ଲାସକାରୀ ତାହାର କିରଣ,
ଗୃହିଁ କରୁଥିଲି ଗୃରିଆଡ଼େ ବିଚରଣ ।
ଭରସା ସମ୍ବଳ ଥିଲା ଅନ୍ଧାର ସଂସାରେ;
ବାଟ ଗୃଲୁଥିଲି ଲକ୍ଷ୍ୟ ରଖି ତାହାଠାରେ ।
ବାଟ ହେଲି ବଣା ଯେଣୁ ହଜିଗଲା ତାରା,
ଅନ୍ଧ ପରି ଘୂରି ହେବି ଜୀବନଟା ସାରା ।
କୁଟୀର ପ୍ରାଙ୍ଗଣେ ବସିଥିଲି ତାକୁ ଗୃହିଁ,
ତୃପ୍ତ ନୋହୁଥିଲା ପ୍ରାଣ ଅନାଇଁ ଅନାଇଁ ।
ତାରହାଟ ତାରାନାଟ ବସିଛି ଗଗନେ,
ସେପରି ତାରା ତ ଆଉ ନ ଦେଖେଁ ନୟନେ ।
ଥାଉନ୍ତୁ ପଛକେ ତାରା କୋଟିଏ କୋଟିଏ
ମାତ୍ର ମୋର ବୋଲିବାକୁ ନାହିଁ ତ ଗୋଟିଏ ।
ଦିଗନ୍ତର ଅନ୍ତେ ଗଲେ ପାଇବି କି ତାକୁ ?
ଅଣ୍ଟା ବାନ୍ଧି ସଜ ହେଲି ଯିବାକୁ ସେଠାକୁ ।

---

## ଜୀବନ ମରଣ

ଅନ୍ଧାରେ ବାଜୁଛି ମଧୁର ମୁରଲୀ
ଶୁଣାଇ ମଧୁର ଭାଷା,
ଏଣେ ହାତ ଧରି ଟାଣି ରଖିଅଛି
ଦେଖାଇ ମଧୁର ଆଶା ।
ଯିବି ଯିବି ବୋଲି କରୁଅଛି ମନ
ପଦ ନ ଚଳଇ ଆଉ,
ପଛରୁ ମୋ କାନେ କାନେ କେ କହୁଛି
ଛାଡ଼ ଦେ ସେ କଥା ଯାଉ ।
ପ୍ରଚଣ୍ଡ ମାର୍ତ୍ତଣ୍ଡ ତେଜରେ ଯେ ଏଣେ
ଝାଉଁ ଯାଉଛି ନୟନ,
ତେଣେ ଅନ୍ଧକାର ବିଶ୍ରାମ-ଆଗାର
ଶାନ୍ତ ସୁଖ ନିକେତନ ।
ଏଣେ ଶନ୍ତାନଳେ ଦଗ୍ଧ ହୋଇ ହୋଇ
ପ୍ରାଣ ହେଉଛି ଅସ୍ଥିର,
ଆଗରେ ତ ବାଟ ଓଗାଳ ବସିଛି
ମୃତ୍ୟୁସ୍ୱରୂପ ପ୍ରାଚୀର ।
ଦୀନ ପ୍ରଭୁ ଦାସ ଦଶା ଘଟିଅଛି
କେଣିକି ନ ପାରେ ଯାଇ,
ଏଣେ କ୍ଷଣେ ସୁଖ ଲଭି ପାରୁ ନାହିଁ
ଆପଣା ସ୍ଥାନରେ ଥାଇ ।
ମଧ୍ୟ କେନ୍ଦ୍ରେ ରହି ଘୂରି ବୁଲୁଅଛି
ଦୁଇଦିଗ ଆକର୍ଷଣ,
କେ ବୁଝାଇ ଦେବ ମୋପକ୍ଷେ କେ ଭଲ ?
ଜୀବନ ଅବା ମରଣ ?

---

## ନିଶୀଥ ସଙ୍ଗୀତ

ନିଶୀଥ ଗଗନ ବାୟୁ କମ୍ପାଇ କମ୍ପାଇ,
କେ ଯାଇଛି ଧୀରେ ଧୀରେ ଗୀତ ଗାଇ ଗାଇ ?
ଶୁଣି ରହିଯାଅ ଥରେ
ପଥୁରିବ କି ଗାଉଛି ବିଷାଦ ଅନ୍ତରେ ।୧।

କି ଗୀତ ଗାଉଛି ଅର୍ଥ ପଡ଼ୁ ନାହିଁ ଜଣା,
ଭେଦୁଛି ହୃଦୟ ଶୋଣିତରେ ପ୍ରତିକଣା;
ବାଜି ପବନ ଲହରୀ,
ଶିରା ଉପଶିରା ତନ୍ତ୍ର ଉଠୁଛି ଝଙ୍କାର ।୨।

ଏ କି ଗୀତ ଏ କି ସ୍ୱର ବିଚିତ୍ର ମହିମା,
ସ୍ପର୍ଶ କରୁଅଛି ହୃଦୟର ଶେଷସୀମା,
ଯଥା ଭୁଜଙ୍ଗ ନିଦ୍ରିତ,
ତଥା ବିଗତ ଯନ୍ତ୍ରଣା ହୁଏ ଜାଗରିତ ।୩।

ପରଶ କରିବା ମାତ୍ର ସଙ୍ଗୀତ ଲହରୀ,
ବିଷାଦଲହରୀ ଉଠେ ହୃଦୟ ବିଦାରି
ଦୁଇ ଘାତ ପ୍ରତିଘାତେ,
ଭାଙ୍ଗି ପଡ଼େ ମନ ପ୍ରାଣ ଯନ୍ତ୍ରଣାସଂଘାତେ ।୪।

କି ଥିଲି କି ଯାଉଅଛି କି ଲୋଡ଼ୁଛି ମନ;
ବାରି ପାରୁ ନାହିଁ ଜାଗରଣ ବା ସ୍ୱପନ;
ଏତେ କପାଳ ଲିଖିତ ?
ଉଦାସୀ ହେଲାଣ ମନ ଆତ୍ମପ୍ରତାରିତ ।୫।

---

## ଜୀବନ-ନଦୀ

ନଦୀରୂପେ ମୋ ଜୀବନ ଯାଉଅଛି ବହି,
ହସି କାନ୍ଦି କୁଳୁ କୁଳୁ କଥା କହି କହି ।
କେତେରୂପେ ବସିଅଛି ହୃଦରେ ତରଙ୍ଗ,
ପ୍ରଲୋଭନ ଉଦ୍ଦୀପନ ବିବିଧ ପ୍ରସଙ୍ଗ ।
ସୁଖ ଶାନ୍ତି ପ୍ରେମ ମୋହ ଲାଳସା ନିଚୟ,
ଫେନପୁଞ୍ଜ ଉଠି ଭାସି ପାଉଛନ୍ତି ଲୟ ।
କାମ କ୍ରୋଧ ଲୋଭ ମୋହ କୁମ୍ଭୀର ଭୁଜଙ୍ଗ,
ଯତନେ ଲୁଚାଇଛନ୍ତି ନିଜ ନିଜ ଅଙ୍ଗ ।
ବେଳେ ବେଳେ ଘୂରେ ସ୍ରୋତ ଜଞ୍ଜାଳ-ଘୂରୁଣି,
ଥୋକେ ଦୂର ଯାଇ ଛୁଡ଼ ଯାଉଛନ୍ତି ପୁଣି ।

ଚାଲୁଛୁ କସୃତ ସ୍ରୋତ ପାରୁ ନାହିଁ ଜାଣି,
କେଉଁ ଆକର୍ଷଣୀ ଶକ୍ତି ନେଉଅଛୁ ଟାଣି ।
ମିଶିଯିବ ଦିନେ ଯାଇ ଅନନ୍ତସାଗରେ,
ହେ ମାନବ, ତନ୍ତ୍ର କମ୍ପା ନ ଚିନ୍ତ ମନରେ ।

———

## କବିତା

ବୀଣାପାଣି ବୀଣାନାଦିନୀ
ସୁର-ନର ବାଞ୍ଛିତ,
ବୀଣାପାଣି ବରପୁତ୍ରରେ
ତୁମ୍ଭ ପଦ ସେବିତ ।
ଦେଖାଅ ଚଉଦ ଭୁବନ
ସ୍ଥାନ ବିଚିତ୍ର କରି,
ଅତୀତ କାଳର ଘଟନା
ନଖଦର୍ପଣ ପରି ।
ଲଭନ୍ତି ଅମରପଦବୀ
ଭକ୍ତ ସେବକଜନେ,
କି ଗୁଣ ଦେଖି ମୁଁ ଧାଇଁଛି
ତୁମ୍ଭ ପଦ ସେବନେ ।
ଜଗତ ଦୁର୍ଲ୍ଲଭ ପଦାର୍ଥ
ତୁମ୍ଭ ପୂଜାସମ୍ଭାର,
ଯୋଗ୍ୟ ତୁମ୍ଭ ସିଂହାସନକୁ
ସିନା ଜ୍ଞାନଭଣ୍ଡାର ।
ଶୂନ୍ୟ ହୃଦସ୍ଥରେ ଜନନୀ
କରୁଛି ମୁଁ ଆହ୍ୱାନ,
କି ଅଛି କରିବି ଚରଣେ
ଉପହାର ପ୍ରଦାନ ।
ଖେଦାନଳେ ଦଗଧ ହେଉଛି
ମୋର ହୃଦୟ-ବନ,
ନିରାଶ ଦୁଶ୍ଚିନ୍ତା ଉଦ୍‌ବେଗ
ବହେ ଝଞ୍ଜାପବନ ।
ବିଚ୍ଛେଦଯନ୍ତ୍ରଣା ଗରଳେ
ହୋଇ ପ୍ରାଣେ କାତର,
ଦୁଃଖପାରାବାରେ ଦେଖୁଛି
ତୁମ୍ଭେ ସାହା ମାତର ।
ଆସ ଆସ ମାତା ମୋଠାକୁ
ଆର୍ତ୍ତଜନ ଶରଣ,
ନେତ୍ର-ଅଶ୍ରୁଜଳେ ଧୋଇବି
ତୁମ୍ଭ ପଦ୍ମଚରଣ ।
କରିବି ଭକ୍ତିରେ ବ୍ୟଜନ
ଦୀର୍ଘ ଉଷ୍ମ ନିଃଶ୍ୱାସେ,
ଅତୃପ୍ତ ବାସନା ସୁମନ
ଦୁଃଖ ଧୂପ ସୁବାସେ ।
ନିରାଶ ନୁହନ୍ତି ଚରଣ—
ସେବି ଭକତଲୋକ,
ଥାଉ ବା ନ ଥାଉ ସମ୍ପତ୍ତି
ମୁଁ ତ ତୁମ୍ଭ ସେବକ ।

———

## ସାହାଡ଼ା ଗଛର କ୍ରନ୍ଦନ

ନାହିଁ କିଛି ରୂପ କାନ୍ତି ନାହିଁ ପୁଷ୍ପ ଫଳ,
ଉଦ୍ୟାନ ମଧ୍ୟରେ ମୁହିଁ ବୃକ୍ଷଟି କେବଳ ।
ନ ରହିଣ ଫଳବନ୍ତ ବୃକ୍ଷ ସମାଜରେ
ପଡ଼ିଥାଏଁ ବନମଧ୍ୟେ ଉଦ୍ୟାନ କୋଣରେ ।
ଲାଜକୁଳୀ ଲତାଟିଏ ଥିଲା ମୋର ପାଶେ,
କାଟୁଥାଉଁ ଦୁହେଁ ଦିନ ମନର ଉଲ୍ଲାସେ ।
ମଧୁର ମାଧବୀ ଲତା କାନନ କୁମାରୀ,
ରସିକା ଝିମ୍ପୁକା କୁଞ୍ଜ ନିକୁଞ୍ଜସୁନ୍ଦରୀ,
ବିଦେଶୀ ଆଇଭି ରାଣୀ, ବସନ୍ତମାଳତୀ,
"ଲଳିତ ଲବଙ୍ଗ ଲତା", ଯୁକ୍ତ ଗନ୍ଧବତୀ,
ପୁଷ୍ପବତୀ ଲତାମାନେ ଯୌବନଗର୍ବରେ,
ଲଦି ପଡ଼ିଥାନ୍ତି ବୃକ୍ଷମାନଙ୍କ ଉପରେ,

ଫୁଟାଇ କୁସୁମକଳୀ ଗନ୍ଧ ଚହଟାଇ,
ପବନେ ଦୋହଲୁଥାନ୍ତି ସୌନ୍ଦର୍ଯ୍ୟ ଦେଖାଇ ।
ଲାଜକୁଳୀ ପଡ଼ିଥାଏ ମୋର ଗୋଡ଼ ତଳେ,
ଗୋଲ ଗୋଲ ଦୁଇଗୋଟି ଫୁଲ ଧରି କୋଳେ;
ସବୁବେଳେ ମୋତେ ଚାହିଁଥାଏ ଶିର ଟେକି,
ପାଶକୁ ଅଇଲେ କେହି ପଡ଼ଇ ଝାଉଁଳି;
ସାନ ସାନ ଦୁଇ ଗୋଟି ଫୁଲ ଧରି କୋଳେ,
ସଧୀରେ ଦୋହଲୁଥାଏ ପବନହିଲ୍ଲୋଳେ ।
ଚିତ୍ତଉନ୍ମାଦକ ଗୁଣ ନ ଥିଲା ତାହାର,
ସରଳ ତାହାର ରୂପ ସରଳ ବେଭାର ।
ତାହାର ମୋହର କେବେଁ ନ ଥିଲା ତ ଭେଦ,
ମୋହ ମୁଖ ଚାହିଁ ପଡ଼ିଥାଏ ଅବିଚ୍ଛେଦ ।
ନ କରି ସେ ଆଶା ସ୍ନେହ ପ୍ରୀତି ବିନିମୟ,
ନିସ୍ୱାର୍ଥେ ସମର୍ପିଲା ମୋତେ ତା ହୃଦୟ
ପଡ଼ିଲେ ଟୋପାଏ ମୋହ ଡାଳରୁ ଶିଶିର,
ଆନନ୍ଦେ ଗ୍ରହଣ କରେ ବଢ଼ାଇ ତା ଶିର ।
ନ ଲୋଡ଼େଁ ମାଳତୀ, ଯୂଥୀ, ମାଧବୀ ଟଗର,
ସେହି ମୋର ଥିଲା ପ୍ରୀତି-ପ୍ରସ୍ରବଣ-ଝର ।
ରାତି ବେଳେ ଜନଶୂନ୍ୟ ହେଲେ ଉପବନ,
କେତେ ରୂପ ସୋହାଗ ସେ କରେ ଫେଡ଼ି ମନ ।
ପ୍ରବଳ ପବନ ବେଗେ ଗଲା କାହିଁ ଉଡ଼ି,
ସାନ ସାନ ଫୁଲ ଦୁଇ ଛନ୍ତି ତଳେ ପଡ଼ି ।
ଚାଲିଗଲା ନ କହିଲା ମୋତେ ପଦେ କଥା,
ଆହା ମୋର କାହିଁ ଗଲା ଲାଜକୁଳୀଲତା ।

———

## ସ୍ମୃତି

ଯାଅ ଦେବ ମନମଧ୍ୟୁଁ ଦେଲି ବିସର୍ଜନ,
ତୁମ୍ଭଠାରେ ଆଜି ମୋର ନାହିଁ ପ୍ରୟୋଜନ ।
ଇଚ୍ଛା କରେଁ ତେଜିବାକୁ ଜଗତ ଭାବନା,
ନିର୍ଜ୍ଜନରେ କରେଁ ପ୍ରଭୁ ଚରଣ ବନ୍ଦନା

ଗଲଣି ତ ଗଲା କଥା ଚିରକାଳ ଯାଉ,
ଭଲ ହେଉ ମନ୍ଦ ହେଉ ଲୋଡ଼ା ନାହିଁ ଆଉ ।
ତୁମ୍ଭର କି କିଛି କାର୍ଯ୍ୟ ନାହିଁ ଠାକୁରାଣି ?
ଦେଖାଉଛ ସେହି ସବୁ ଗୋଟି ଗୋଟି ଆଣି ।

ଯାଅ ଯାଅ ମୋ ପାଖରୁ ନ ଦେଖାଅ ରଙ୍ଗ,
କଳଙ୍କଜଡ଼ିତ ମୋ ଜୀବନତରଙ୍ଗ ।
କେତେ କେତେ ମହାପାପ କରିଛି ନିର୍ଜ୍ଜନେ,
ଗୁପତରେ ଧୂଳିଦେଇ ମାନବ ନୟନେ ।

କେହି ନ ଜାଣନ୍ତି ବୋଲି ବିଶ୍ୱାସ ମନରେ,
ମାଧୁପୁଚ୍ଛ ସେହିଟି ପରି ଥିଲି ନିଶ୍ଚିନ୍ତରେ ।
ଆଗେ କପାଁ ସବୁ କଥା ନ ଦେଲ ଚେତାଇ ?
ଆଜି ଧରିଅଛ ପରା ଏବେ ବେଳ ପାଇ ।

ଆଗେ ଥିଲା ମନେ ଆଶା, ଯାଉଥିଲି ଫୁଲି,
ଭଲକଥାଗୁଡ଼ା କହୁଥିଲ ତାହି ବୋଲି ।
ଅହଙ୍କାରୀ ପାଶେ ଥିବା ଲୋକମାନେ ଯଥା,
ସବୁବେଳେ କହୁଥାନ୍ତି ମନରଖା କଥା ।

ଉଲଟି ପଡ଼ନ୍ତି ପୁଣି ସେହି ଲୋକମାନେ,
ଗୌରବ ସମ୍ପତ୍ତି ଦେହବଳ ଅବସାନେ ।
ଭାଙ୍ଗିଛି ଶରୀର ମନ ହୃଦୟ ଦୁର୍ବଳ,
ଦେଖାଉଛ ସେଥିପାଇଁ ପରା ଏତେ ବଳ ?

କନ୍ଦାଇବା ହସାଇବା ଅଟେ ତୁମ୍ଭ ରୀତି,
ଏବେ କପାଁ ଇଚ୍ଛା ଦେଖାଉଛ ମହାଭୀତି ?
ବେଳେ ବେଳେ ଦେଖାଉଛ ସୁଖର ଆଲୋକ,
ଅନ୍ଧାରରାତିରେ ଯଥା ଜକ୍ମଜୁଳାପୋକ ।

ଯାଅ ଯାଅ ଛାଡ଼ ଦେବ କରେଁ ନିବେଦନ,
ଦିନାକେତେ ଭଲ ହୋଇ ରହେଁ ଶୂନ୍ୟମନ ।
ପୃଥିବୀରେ କିଛି କର୍ମ ଅବଶିଷ୍ଟ ଅଛି,
ନ ଛାଡ଼ିଲେ ତୁମ୍ଭେ ମୋତେ ନ ପାରିବି ବଞ୍ଚି ।

ବନ୍ଧୁବନ୍ଧୁ ଯେଉଁ ସବୁ କଥା ଅଛୁ ଯାଇ,
ଆଖିରେ ଆଙ୍ଗୁଳି ଦେଇ ନ ଦିଅ ଦେଖାଇ ।
ଯାଅ ଯାଅ ଦେବ ପଦେ କରୁଛୁ ଜୁହାର,
ବଳପଣ ହୋଇ ଆସ ନା ଗୋ ବାରମ୍ବାର ।

ତୁମ୍ଭଙ୍କୁ କି ଡାକୁଅଛୁ ଗୋଡ଼ହାତ ଧରି ?
ତେବେ କିପାଁ ଗୋଡ଼ାଇଛ ଦିବସ ଶର୍ବରୀ ?
ନାହିଁ କି ଗୋ ସ୍ଥାନ ଦେବ ବିଶାଳ ଭୁବନେ ?
ଗୋଡ଼ ହାତ ମେଲି ବସି ରହିଛ ମୋ ମନେ ।

ଆହା ଆହା ତୁମ୍ଭର କି କାଳଜ୍ଞାନ ନାହିଁ ?
ଦିନ ନାହିଁ ରାତି ନାହିଁ ଆସୁଅଛ ଧାଇଁ ।
ଆସ ନା ମୋଠାକୁ ପୁଣି କରୁଛୁ ଜୁହାର,
ଫିଟାଇ ଦେବାକୁ ଦୁଃଖଭଣ୍ଡାରର ଦ୍ୱାର ।

ଆଦର ଯେ କରେ ଦେବ ଯାଅ ତାହାଠାକୁ
ନ ଆସ ଦେବାକୁ କଷ୍ଟ ଦଗ୍‌ଧପ୍ରାଣଠାକୁ ।
ନା ନା ଦେବ ଦିଅ ଆଣି ଯେ ଯାହା ଅର୍ଜିଛି,
ଦେଉ ନାହିଁ ଆଣି ଆଉ କେଉଁଠାରୁ କିଛି ।

ମାନବଜାତିର ଦେବ ତୁମ୍ଭେ ହିଁ ସମ୍ପତ୍ତି,
ତୁମ୍ଭ ଯୋଗେ ଜଗତର ସକଳ ଉନ୍ନତି ।
କରନ୍ତି ପ୍ରଶଂସା ହାତଯୋଡ଼ି ସର୍ବ ଜ୍ଞାନୀ,
ମୁହିଁ ନିନ୍ଦା କଲେ ହେବ ତୁମ୍ଭର କି ହାନି ?

---

## "ମୋ ମାଆ ଗଲେ କାହିଁ ?"

— ୧ —

ବାବା, ମୋ ମାଆ ଗଲେ କାହିଁ ?
ଖୋଜିଲିଣି ସବୁଠାରେ
ଘର ମଧ୍ୟେ ବଟିଗୁରେ
ଯାହାକୁ ପଚାରେଁ କେହି କିଛି କହୁ ନାହିଁ,
ବାବା, ମୋ ମାଆ ଗଲେ କାହିଁ ?

— ୨ —

ବାବା, ମୋ ମାଆ ଗଲେ କାହିଁ ?
ଆସିଲେ ମୁଁ ପାଠ ପଢି
ଦେଇ ଦେନ୍ତି ଧୂଳି ଝାଡ଼ି
ପଚାରନ୍ତି କେତେ କଥା ମୋର ମୁଖ ଚାହିଁ
ବାବା, ମୋ ମାଆ ଗଲେ କାହିଁ ?

— ୩ —

ବାବା, ମୋ ମାଆ ଗଲେ କାହିଁ ?
ନିଦ ମାଡ଼ିଲାଣି ବାବା,
ଡାକ ମା ଆସିବେ ଅବା
ଶୋଇବି ମୁଁ ଦେବେ କାନ ପଣନ୍ତ ବିଛାଇ
ବାବା, ମୋ ମାଆ ଗଲେ କାହିଁ ?

— ୪ —

ବାବା ମୋ ମାଆ ଗଲେ କାହିଁ ?
କୋଳେ ରଖିଣ ମୋ ମଥା
କହିବେ କାହାଣୀ କଥା
ମୋ ମୁଣ୍ଡ ମୁହଁରେ ହାତ ବୁଲାଇ ବୁଲାଇ
ବାବା, ମୋ ମାଆ ଗଲେ କାହିଁ ?

— ୫ —

ବାବା, ମୋ ମାଆ ଗଲେ କାହିଁ ?
ବସି ଭାତ ଖିଆଠାରେ
ବିଞ୍ଚୁଥିଲେ ବିଞ୍ଚଣାରେ
କାହିଁ କାଳଠାରୁ ଆଉ ବସିଲେ ତ ନାହିଁ ?
ବାବା, ମୋ ମାଆ ଗଲେ କାହିଁ ?

— ୬ —

ବାବା ମୋ ମାଆ ଗଲେ କାହିଁ ?
କାହିଁ ତ ଯାଆନ୍ତି ନାହିଁ
ଘରୁ ଦିନକର ପାଇଁ
ଦୁଇଦିନ ହେଲା କିପାଁ ତାଙ୍କ ଦେଖା ନାହିଁ ?
ବାବା, ମୋ ମାଆ ଗଲେ କାହିଁ ?

—୭—

ବାବା, ମୋ ମାଆ ଗଲେ କାହିଁ ?
ଯାଇ ଥାଏ ଖେଳିବାକୁ
ଯାଏ ଲୋକ ଡାକିବାକୁ
ଦାଣ୍ଡଦ୍ୱାରଠାରେ ମୋତେ ଥାନ୍ତି ବାଟ ଚାହିଁ,
ବାବା, ମୋ ମାଆ ଗଲେ କାହିଁ ?

—୮—

ବାବା, ମୋ ମାଆ ଗଲେ କାହିଁ ?
ତାଙ୍କୁ ହୋଇଥିଲା ଜ୍ୱର
ଆସୁଥିଲା ଡାକତର
ଆଜ କାହିଁ ଡାକତର ଆସିଲା ତ ନାହିଁ ?

—୯—

ବାବା, ମୋ ମାଆ ଗଲେ କାହିଁ ?
କଲେ ମୁଁ ଅନ୍ୟାୟ ଅଳି
ହେଉ ଥାନ୍ତି ମିଛି ଚଳି
ଆଜ ମୁଁ କାନ୍ଦୁଛି ସେ ତ ଶୁଣି କଲେ ନାହିଁ,
ବାବା, ମୋ ମାଆ ଗଲେ କାହିଁ ?

—୧୦—

ବାବା, ମୋ ମାଆ ଗଲେ କାହିଁ ?
ପ୍ରତିଦିନ ସଞ୍ଜ ବେଳେ
ବସି ଆସନେ ନିରୋଳେ
କରୁଥିଲେ ଉପାସନା ହରିଗୁଣ ଗାଇ,
ବାବା, ମୋ ମାଆ ଗଲେ କାହିଁ ?

— ୧୧ —

ବାବା, ମୋ ମାଆ ଗଲେ କାହିଁ ?
ନ ଲାଗୁଣୁ ଭୋକ, ହାତ-
ଧରି ସେ ଖୁଆନ୍ତି ଭାତ
ଆଜତ ଲାଗୁଛି ଭୋକ କେହି ଡାକୁ ନାହିଁ ?
ବାବା, ମୋ ମାଆ ଗଲେ କାହିଁ ?

—୧୨—

ବାବା, ମୋ ମାଆ ଗଲେ କାହିଁ ?
ରୋଜ ତୁମ୍ଭେ ଆନନ୍ଦରେ
ବସି ଲେଖୁଥିଲ ଘରେ
ଆଜ କପାଳ ବସିଅଛ ଜଳ ଜଳ ଚାହିଁ ?
ବାବା, ମୋ ମାଆ ଗଲେ କାହିଁ ?

— ୧୩ —

ବାବା, ମୋ ମାଆ ଗଲେ କାହିଁ ?
ସେ ଦିନ ପଡ଼ିଲି ଜ୍ୱରେ
ମୋହ ବିଛଣା ପାଖରେ
ରାତ୍ରଯାକ ବସିଥିଲେ ମୁହଁକୁ ଅନାଇ,
ବାବା, ମୋ ମାଆ ଗଲେ କାହିଁ ?

—୧୪—

ବାବା, ମୋ ମାଆ ଗଲେ କାହିଁ ?
କାନ୍ଦିଲେ କରୁଛ ତୁନି
ଆପେ କାନ୍ଦୁଛ ବାହୁନି
କହୁ ନାହିଁ ଫେଡ଼ି, ମାଆ ଆସିବେ କି ନାହିଁ ?
ବାବା, ମୋ ମାଆ ଗଲେ କାହିଁ ?

—୧୫—

ବାବା, ମୋ ମାଆ ଗଲେ କାହିଁ ?
ମୋ ମା କି ଆସିବେ ନାହିଁ ?
ନା ନା ଏହା କହ ନାହିଁ
କାନ୍ଦୁଥିଲେ ମୋ ପାଖକୁ କେ ଆସିବ ଧାଇଁ ?
ବାବା, ମୋ ମାଆ ଗଲେ କାହିଁ ?

———

## ଭଗ୍ନୀ ଆନନ୍ଦମୟୀ ଦେବୀ

ଛାଡ଼ିଅଛୁ ଘର ଦ୍ୱାର ଜ୍ଞାତି ପରିଜନ,
ବିଦେଶରେ ବୁଲି ବୁଲି କାଟିବି ଜୀବନ ।
ବାହୁଡ଼ି ଯିବାକୁ ଇଚ୍ଛା ବଳୁ ନାହିଁ ଥରେ,
ତୁହି ବାରମ୍ବାର କପା ଉଙ୍କୁଛୁ ମନରେ ?

ନ ଜାଣେ କପାଁଇ କଏ କରେ ଆକର୍ଷଣ,
ଥରେ ଯାଇ ଦେଖି ଆସେଁ ତୋର ଶ୍ରୀଚରଣ ।
କେବେ ତୁ କି ଥାଉ ନାମି ମୋର ନାମ ଧରି ?
ନାହିଁ ନାହିଁ ସବୁ କଥା ପକା ତୁ ପାସୋରି ।
ବିଧାତା ଯାହାକୁ ବାମ ସେ ଲୋକଟା ଯାଉ;
ତାହାପାଇଁ ମନେ କଷ୍ଟ କପାଁ ଦେବୁ ଆଉ ?
ଦେଖି ନାହିଁ ସ୍ନେହମୟୀ ଜନନୀ ଚରଣ,
ତୋତେ ଦେଖି କପାଁ କରେ ତାହାକୁ ସ୍ମରଣ ?
ବିଚାର କରଇଁ ମନେ ତୋହ ଦୟା ସ୍ମରି,
ମାଆ ଥିଲେ କରଥାନ୍ତେ ସ୍ନେହ ଏହିପରି ।
ଦେଖି ନାହିଁ କାହିଁ ତୋହପରି ଦୟାବତୀ,
ଦେଖି ନାହିଁ ତୋହପରି ପୁଣ୍ୟବତୀ ସତୀ ।
କ୍ରୋଧ ହିଂସା ଛାଡ଼ି ଯାଇଅଛି ତୋହ ମନୁ,
ଦୁଃଖୀ ଦୁଃଖ ଦେଖି ବହେ ଅଶ୍ରୁ ତୋ ନୟନୁ ।
ଏତେ କି ଦେଇଛି ବିଧି ତୋ ଆଖିରେ ଜଳ ?
ସରିଲା ତ ନାହିଁ ବହି ବହି ଅବିରଳ ।
ଦୟାପୂର୍ଣ୍ଣ ତୋ ହୃଦୟ ସମୁଦ୍ରରୁ ବଳି,
ପର ଦୁଃଖ ଦେଖି ନେତ୍ରୁ ପଡ଼ଇ ଉଚ୍ଛୁଳି ।

*  *  *  *

ସେତେବେଳ କଥା ତୋର ଅଛି କି ମନରେ ?
କେତେ କ୍ଷମା ମାଗିଗଲି ସେ ତ ବନପୁରେ ।
କାନ୍ଦୁଥିଲି ବସି ତୋତେ ଦିଶିଛି କି ନାହିଁ,
ନ ହୁଏ ମାଗୁଛି କ୍ଷମା ମୁହିଁ ତାହା ପାଇଁ ।
ଯଦି କରିଥାଏ ଦୋଷ ନ ଧର ମନରେ,
ଆଶୀର୍ବାଦ କର ସୁଖେ ରହୁ ସେ ସ୍ୱର୍ଗରେ ।
ଦେଖିଛୁ ତ ବସି ମୃତ୍ୟୁଶଯ୍ୟା ସନ୍ନିଧାନେ,
କପଟ ତେଜନ୍ତି ଦେହ ସତୀ ନାରୀମାନେ ।
ବର୍ତ୍ତମାନ ଅଛି ଦେହ ଦେଖା ଯେଉଁ ବାସେ
ଅନ୍ତର୍ଯାମୀ ହୋଇ ନାମି ଯାଅ ତାହା ପାଶେ ।
କରିଛୁ ତ ଯେତେରୂପ ପରଉପକାର,
ପାଇବୁ ସେ ସ୍ଥାନେ ଉପଯୁକ୍ତ ପୁରସ୍କାର ।
ଦେଖିବି କି ନାହିଁ ତୋ ଚରଣ ପୁନର୍ବାର,
ହାତ ଯୋଡ଼ି ତେଣୁ କରୁଅଛି ନମସ୍କାର ।

———

## ମାତୃହୀନ ଦୁଇଗୋଟି କ୍ଷୁଦ୍ର ଶିଶୁ

— ୧ —

ଭାଇ ବୟସେଟି ବଡ଼ ଭଉଣୀଟି ସାନ,
ଭଉଣୀଟିଠାରୁ ଭାଇ କିଛି ବୁଦ୍ଧିମାନ ।
କାଲିଠାରୁ ମାଆ କାହିଁ ଯାଇଛନ୍ତି ଛାଡ଼ି,
ଥକିଲେଣି ଦୁଇ ପିଲା ଡାକି ପାଡ଼ି ପାଡ଼ି ।
ହିନବୃତ୍ତ ଦୁଇ ଜଣ ବାହୁନି ବାହୁନି,
ମନକୁ ସାନ୍ତ୍ୱନା ଦେଇ ଭାଇ ହୋଇ ତୁନି ।
ଧୀରେ ଧୀରେ ଯାଇ ଭଉଣୀକୁ କଲା ମନା,
କାନ୍ଦନା ସରିଆ, ଆଉ କାନ୍ଦନା କାନ୍ଦନା ।
କାନ୍ଦିବାକୁ ବାବା ପରା କରିଛନ୍ତି ମନା,
କାନ୍ଦନା ସରିଆ, ଆଉ କାନ୍ଦନା କାନ୍ଦନା ।

— ୨ —

ଆଗେ କାନ୍ଦୁଥିଲେ ମାଆ ଆସୁଥିଲେ ଧାଇଁ,
ଏବେ ତ କାନ୍ଦିଲେ କେହି ପଚାରିବେ ନାହିଁ ।
କିଏ ଦେବ ଆସି ଆମ୍ଭମାନଙ୍କୁ ସାନ୍ତ୍ୱନା,
କାନ୍ଦନା ସରିଆ, ଆଉ କାନ୍ଦନା କାନ୍ଦନା,
କାନ୍ଦିବାକୁ ବାବା ପରା କରିଛନ୍ତି ମନା
କାନ୍ଦନା ସରିଆ, ଆଉ କାନ୍ଦନା କାନ୍ଦନା ।

— ୩ —

ଯାଇଛି ତ ସରି ସବୁ, ଗଲା କଥା ଯାଉ,
ମୁଣ୍ଡ କୋଡ଼ି ହେଲେ ମାଆ ଆସିବେ କି ଆଉ ?
ବାବା ତ ଅଛନ୍ତି ଘରେ ଆଉ କି ଭାବନା,
କାନ୍ଦନା ସରିଆ, ଆଉ କାନ୍ଦନା କାନ୍ଦନା,
କାନ୍ଦିବାକୁ ବାବା ପରା କରିଛନ୍ତି ମନା,
କାନ୍ଦନା ସରିଆ, ଆଉ କାନ୍ଦନା କାନ୍ଦନା ।

—୪—

ମାଆ ଆଉ କେତେବେଳେ ନ ଆସିବେ ଫେର
ହାତ ମୁହଁ ଧୋଇ ଆଁସା କର ନାହିଁ, ଦେର ।
ସଞ୍ଜ ହେଲେ ଯିବା କରିବାକୁ ଉପାସନା,
କାନ୍ଦନା ସରିଆ, ଆଉ କାନ୍ଦନା କାନ୍ଦନା,
କାନ୍ଦିବାକୁ ବାବା ପରା କରିଛନ୍ତି ମନା
କାନ୍ଦନା ସରିଆ, ଆଉ କାନ୍ଦନା କାନ୍ଦନା ।

—୫—

ଦେଖ ବାବା କେତେ କାନ୍ଦୁଛନ୍ତି ମାଆ ପାଇଁ,
ତାହାଙ୍କ ମନରେ ଆଉ ଦୁଃଖ ଦେବା ନାହିଁ ।
ତୁ କାନ୍ଦିଲେ ହେବ ତାଙ୍କ ମନରେ ବେଦନା,
କାନ୍ଦନା ସରିଆ, ଆଉ କାନ୍ଦନା କାନ୍ଦନା ।
କାନ୍ଦିବାକୁ ବାବା ପରା କରିଛନ୍ତି ମନା
କାନ୍ଦନା ସରିଆ, ଆଉ କାନ୍ଦନା କାନ୍ଦନା ।

———

## ଦାମ୍ଭିକ

ଅନନ୍ତ ସମୟ—ଜୀବନର ଅବସାନ,
ଅନନ୍ତ ବିଶ୍ୱରେ କ୍ଷୁଦ୍ରତମ ବାସସ୍ଥାନ !
ଅନନ୍ତ ସୌନ୍ଦର୍ଯ୍ୟ ପାଶେ ତବ ଦେହ-କାନ୍ତି,
ଅନନ୍ତ ଐଶ୍ୱର୍ଯ୍ୟ ସହ ସଞ୍ଚିତ ସମ୍ପତ୍ତି !
ସମ୍ମୁଖେ ବିସ୍ତୃତ ଜ୍ଞାନ ରତ୍ନାକର ମେଲା—
ପାରିଛ କି, ପାରିବ କି, ଅନ୍ତହୀନ ବେଳା ?
ଅନନ୍ତ ବ୍ରହ୍ମାଣ୍ଡେ ଯାହା ଦେଖୁଛ ପ୍ରତ୍ୟକ୍ଷ—
ତାହାସଙ୍ଗେ ବୋଲ ହୋଇପାର ସମକକ୍ଷ ?,
କ୍ଷୁଦ୍ରାଦପି କ୍ଷୁଦ୍ର ଦେହ କ୍ଷଣକାଳ-ସ୍ଥିତ,
ବୃଥା ଅହଙ୍କାରେ କପାଁ ହରାଇଛ ମତି ?
କରିଛ ବ୍ୟବସା ହିଂସା ଗର୍ବ କୋଳାହଳ,
ପ୍ରେମ ପ୍ରୀତି ସୁଧା ତେଜ ଭକ୍ଷିଛ ଗରଳ ।
ହେ ଦାମ୍ଭିକ, ଶନ୍ତ ବେଳେ ପ୍ରାଣପରିଣତ,
ଲୋଡ଼ ଯେବେ ମୋକ୍ଷମାର୍ଗ ଛାଡ଼ ବିଶ୍ୱପଥ ।

———

## ଅନନ୍ତ ବ୍ରହ୍ମାଣ୍ଡେ ବୁଲିବି

ଅନନ୍ତ ସମୟସ୍ରୋତରେ
ସବୁ ଯାଉଛି ଭାସି,
ଦିବସ ଶର୍ବରୀ ସହିତ
ଆଲୋ ଅନ୍ଧାରରାଶି ।
କେଉଁ ବିଧି କେଉଁ ସ୍ଥାନରେ
ବସି କେଉଁ ପ୍ରକାର,
ଗଢ଼ୁଛି ଅନନ୍ତ ଦିବସ
ନିଶି ଆଲୋ ଅନ୍ଧାର ?
ନ ଜାଣୁଁ କେବଳ ଶୂନ୍ୟରେ
ଏହି ଦିବସ ନିଶି
ଜୀବର ଅନନ୍ତ ବାସନା
ସଙ୍ଗେ ଯାଇଛି ମିଶି ।
ସେ ବିଶ୍ରାମ ସୁଖ ସ୍ଥାନଟି
କେଉଁ ସ୍ଥାନରେ ଅଛି,
ଯେଉଁଠାରେ ଜୀବର ଯନ୍ତ୍ରଣା
ଅବସାନ ହେଉଛି ?
ଅସୀମ ଅସୀମ ହେବ ସେ
ଅନନ୍ତରୁ ଅନନ୍ତ,
ନୋହିଲେ ଅସୀମ ପଦାର୍ଥ
ତହିଁ ଧରେ କେମନ୍ତ ?
ଅନନ୍ତ ଶଯ୍ୟାରେ ଅସୀମ
ଶୋଇ ରହେ କପରି ?
ଜାଗ୍ରତେ ସ୍ୱପନେ ନ ପାରେଁ
ତାହା କଳ୍ପନା କରି ।
ସେ ଅସୀମ ମହାରାଜ୍ୟରେ
ମୁହିଁ କରେ ସଞ୍ଚାର,
କ୍ଷୁଦ୍ରୁ କ୍ଷୁଦ୍ରତର ଅଟଇ
ପରମାଣୁ ପ୍ରକାର ।
ନ ଜାଣେ କପରି କପାଇଁ
କରେ ମହାବାସନା,
ଜାଗ୍ରତେ ସ୍ୱପନେ ନିୟତ
ପ୍ରାଣେ ଉଚ୍ଚକାମନା ।

କାହିଁ ପରମାଣୁ କ୍ଷୁଦ୍ର ମୁଁ
କାହିଁ ବିଶ୍ୱବ୍ରହ୍ମାଣ୍ଡ,
ମୋହର ଅନନ୍ତ କାମନା
ତହୁଁ ବଳ ପ୍ରକାଣ୍ଡ ।
ପ୍ରତି ପରମାଣୁ ପାଶରେ
କେଉଁ ଭିକ୍ଷା ମୋହର ?
ପ୍ରତିଦିନ ପ୍ରତିକ୍ଷଣରେ
ତହିଁପାଇଁ କାତର ।
କେଉଁ ବିଧାତା ସେ କପାଁଇ
ମୋତେ କେଉଁ ରୂପରେ,
ଅଚ୍ଛେଦ୍ୟ ବନ୍ଧନେ ବାନ୍ଧିଛି
ପ୍ରତି ଅଣୁ ସଙ୍ଗରେ ?
ନ ଜାଣେ ତହିଁରେ ଅଛି କି
ମୋର ଜୀବନମୂଳ,
ପ୍ରତି ପରମାଣୁ ନିମନ୍ତେ
ଯେମନ୍ତ ପ୍ରାଣ ବ୍ୟାକୁଳ ।
କି ପରମ ଦ୍ରବ୍ୟ ପାଇଁ ସେ
ଭ୍ରମି ଭ୍ରମି ଅସୀମେ,
ଲୋଡ଼ି ଲୋଡ଼ି ତାହା ନ ପାଇ
ପଡ଼ି ରହେ ଅନ୍ତିମେ ?
ଯେଣିକି ଚାହୁଁଛି ଅନନ୍ତ
ଅନନ୍ତରୁ ଅନନ୍ତ,
ଯାଇ ନ ପାରଇଁ ତେଣିକି
ଭେଦ କରି ଦିଗନ୍ତ ।
ସ୍ଥିର ହୋଇ ରହି ନ ପାରେଁ
ସ୍ୱସ୍ଥାନରେ ନିଶ୍ଚିନ୍ତେ,
ଅନନ୍ତ ଉଚ୍ଛ୍ୱାସ-ଊର୍ମିରେ
ବିଚଳିତ ସତତେ ।
ଅନନ୍ତକୁ ଚାହିଁ ଚାହିଁ ଯେ
ଦୃଷ୍ଟି ତହିଁରେ ଲୀନ,
ଉଦ୍‌ଭ୍ରାନ୍ତ ଶ୍ରବଣ ହେଲଣି
ଶବ୍ଦଜ୍ଞାନ ବିହୀନ ।

ସ୍ପର୍ଶ ଅନୁଭବ ବିଗତ
ଘାତ ପ୍ରତିଘାତରେ,
ନିଜକୁ ହରାଇ ବସିଛି
ଅନ୍ଧକାର ସଂଗରେ ।
ଆଲୁଅ ପଛରେ ଅନ୍ଧାର
ତହିଁ ପଛେ କି ଅଛି,
ଅନୁଭବେ ତାହା ନ ଜାଣି
ଶୂନ ହୋଇ ବସିଛି ।
କିଛି ନାହିଁ ଆଉ ମନରେ
ସେହି କଥା କେବଳ,
କାହିଁରେ ଅଛନ୍ତି ମୋହର
ଜୀବନର ସମ୍ବଳ ।
ଅଜାଣରେ ରବି ଉଦୟ
ଶଶୀ ତାରାନିଚୟ,
ପ୍ରଭାତ କୁସୁମ ପରାୟେ
ସେହି ଭାବ ଉଦୟ ।
ଆଲୁଅ ପଛରେ ଅନ୍ଧାର
ମାଡ଼ି ଆସଇ କାହୁଁ ?
ଅନନ୍ତରେ ମିଶି ଯାଉଛି
ଆଖି ମେଲି ନ ଚାହୁଁ ।
ଏହିପରି ଆସି ଯାଇ ସେ
ମୋତେ କଲାଣି କ୍ଳାନ୍ତ
ଛାଡ଼ି ନ ପାରଇଁ ତଥାପି
ଧରିଅଛି ନିତାନ୍ତ ।
ଅନନ୍ତ ପିପାସା ଯନ୍ତ୍ରଣା
ଆଉ ନ ପାରେଁ ସହି,
ଅତୃପ୍ତବାସନା ଯେଣୁ ଯେ
ଅଛି ହୃଦୟେ ବହି ।
ପ୍ରତି ଦ୍ୱାରେ ଦ୍ୱାରେ ବୁଲୁଛି
କରି ମହାକାମନା
କେଉଁ ଅନ୍ତରରେ ନ ଜାଣେ
ପୂର୍ଣ୍ଣ ହେବ ବାସନା ।

ଯୁଗ ଯୁଗାନ୍ତର ଅଥବା
ଧାଉଁଥିବ ଏପରି
ଯେତେକାଳ ଯାଏ ନ ପାରେଁ
ଲକ୍ଷ୍ୟ ସ୍ଥାନକୁ ଧରି ।
ବିଶ୍ରାମ ନ କରି ମୂହୂର୍ତ୍ତେ
ଯିବି ସେଠାକୁ ଧାଇଁ,
ଅନନ୍ତ ବ୍ରହ୍ମାଣ୍ଡେ ବୁଲିବି
ତାଙ୍କୁ ପାଇବା ପାଇଁ ।

———

## ଏ କି ଲୀଳା

ଏ କି ଲୀଳା ମହାପ୍ରଭୁ ବୁଝିପାରୁ ନାହିଁ,
ମନୁଷ୍ୟକୁ ସତାଉଛ ଏତେ କାହିଁ ପାଇଁ ?
ତୁମ୍ଭେ ତ ବ୍ରହ୍ମାଣ୍ଡପତି ଜଗତ ଈଶ୍ୱର,
ମାନବଜୀବନ ପରମାଣୁ କ୍ଷୁଦ୍ରତର ।
ତୁମ୍ଭ ସୃଷ୍ଟ ଦ୍ରବ୍ୟ ତୁମ୍ଭ ଜଗତ ନିବାସୀ,
ଆଉ କେଉଁ ବ୍ରହ୍ମାଣ୍ଡରୁ ନାହାନ୍ତି ତ ଆସି ।
ଦେବାକୁ ମାନବେ କଷ୍ଟ କରୁଛ କୌଶଳ,
ବୋଲ ବୋଲ ପ୍ରଭୁ ଏଥୁଁ ପାଅ କେଉଁ ଫଳ ?
ନିର୍ଦ୍ଦୟ ହୁଅନ୍ତ ଯେବେ ନ ଥିଲି ତ କଥା,
ସବୁ ସହିଯାନ୍ତି ତୁନି ହୋଇ ପୋତି ମଥା ।
ଏ ବ୍ରହ୍ମାଣ୍ଡ ପରିପୂର୍ଣ୍ଣ କରୁଣାସାଗରେ,
ତେବେ କିପାଁ ପକ୍ଷପାତ ମନୁଷ୍ୟ ପକ୍ଷରେ ?
କରୁଣାସାଗର ପରା ଯିବ ବୋଲି ସରି,
ସାବଧାନେ ବାଣ୍ଟୁଅଛ ଅଳ୍ପ ଅଳ୍ପ କରି ?
ନିଅଣ୍ଟ ସେ ହେବ ଏହା ପୂର୍ବୁ ଥିଲ ଜାଣି,
ତେବେ କିପାଁ ପୋଷି ରଖିଅଛ ଏତେ ପ୍ରାଣୀ ?
ବଣ୍ଟାବଣ୍ଟି ବେଳେ ମଧ୍ୟ ଦେଖେଁ ପକ୍ଷପାତ,
କେହି ପାଏ ଇଚ୍ଛା ବଳି କେହି ତୁଚ୍ଛାହାତ ।
କାହାକୁ କରୁଛ ଆଜ ଦଣ୍ଡଛତ୍ରଧାରୀ,
କାହାକୁ କରୁଛ କାଲି ଦାଣ୍ଡର ଭିକାରୀ ।

ବୋଲିବ ବା ବାଣ୍ଟି ଦେଇଅଛ କର୍ମଫଳ,
ମାତ୍ର ଏହି କଥା ପିଲା ଭଣ୍ଡାଣ କେବଳ ।
ନ ଦେଇଥାଆନ୍ତ ମନ୍ଦବୁଦ୍ଧି ମୋତେ ଯେବେ,
ଅନ୍ୟାୟ କାର୍ଯ୍ୟ କି ମୁହିଁ କରିଥାନ୍ତି କେବେଁ ?
ଜଣା ନାହିଁ ମୋତେ କର୍ମଫଳ ଭବିଷ୍ୟତ,
ତୁମ୍ଭଙ୍କୁ ସକଳ ଜଣାଅଛି ଅବଶ୍ୟ ତ ।
ପ୍ରଥମରେ ଦେଖି ମୋର ମନ୍ଦ ଆଚରଣ,
ବୋଲ ବୋଲ କଲ ନାହିଁ କିପାଁ ନିବାରଣ ?
କିମ୍ବା ଅଜ୍ଞାନରେ ଯାହା କରିଅଛି ଯାଇ,
କେଉଁ ଯୁକ୍ତିବଳେ ହେବି ସେଥିପାଇଁ ଦାୟୀ ?
କେଉଁ କର୍ମଦୋଷେ ଦେଉଅଛ କେଉଁ ଦଣ୍ଡ—
ଜଣାଇ ନ ଦେଇ କରୁଅଛ ଲଣ୍ଡଭଣ୍ଡ ।
ବାନ୍ଧି ତ ଦେଉଛ ଅନ୍ଧପଟଳୀ ନୟନେ,
ଭଲ ବାଟ ଚିହ୍ନି ଗୃଲି ଜାଣିବି କେମନେ ?
ଅଥବା କଳୁଷେ ହେଲେ ଆତ୍ମ କଳୁଷିତ,
ବିପଦ-ଅନଳଦାହେ କର ସଂଶୋଧିତ ?
ସୁନାକୁ ସୁନାରି ପୋଡ଼ି ବାଡ଼େଇ ବାଡ଼େଇ,
ରଣାଣି ଉଜ୍ଜ୍ୱଳ ଯଥା କରେ ସୁନ୍ଦ ଦେଇ ।
ତୁମ୍ଭେ କି ସୁନାରି ହେବ ପୋଡ଼ୁଛ ଆତ୍ମାକୁ,
କଳଙ୍କଜଡ଼ିତ ପାପଶୂନ୍ୟ କରିବାକୁ ?
ଅନ୍ତର୍ଯ୍ୟାମୀ ଦେବଦେବ କି କଥା ନ ଜାଣ,
ସହି କି ପାରିବ ଏତେ ପୋଡ଼ା କ୍ଷୁଦ୍ର ପ୍ରାଣ ?
ତେଣୁ ତ କହୁଛି ଏତେ କଥା କିପାଁ ହେଲା,
ନ ଦେଇ ଚେତାଇ ଆଗେ ପୋଡ଼ାଯାଏ ଗଲା ?
ପୁରସ୍କାର ମଧ୍ୟ ଦିଅ ଭଲକାର୍ଯ୍ୟ ଜାଣି,
ଦେଇ କିପାଁ ପଛେ ପଛେ ନିଅ ହାତୁଁ ଟାଣି ?
ଅଳି କଲି ସତ ଏହା ଦିଅ ତାହା ଦିଅ,
ଦେଇ ସାରି କିପାଁ ପୁଣି ବାହୁଡ଼ାଇ ନିଅ ?
ସତ ଅଟେ ଜାତ ମନେ ଅନନ୍ତ ବାସନା,
କାହିଁ ପୂର୍ଣ୍ଣ କଲ ନାହିଁ ହିନେ ତ କାମନା ?
ନ କରିବ ପୂର୍ଣ୍ଣ ଯେବେ ଇଚ୍ଛା ଥିଲା ମନେ,
କିପାଁ ପୋଡ଼ୁଅଛ ପ୍ରାଣ କାମନା-ଦହନେ ?

ଆନ କଥା ଛାଡ଼ ଆଗେ ମୋହ କଥା କହ,
ଭାଙ୍ଗି ତ ଦେଇଛ ମୋର ଅପୂର୍ଣ୍ଣ ହୃଦୟ ।
ଅମୂଲ୍ୟ ମାଣିକଟିଏ ଦେଇଥିଲ ମୋତେ,
ଯେନ ବସିଥିଲ କର ମନରେ ପରତେ ।
ଏହି ମୋ ଜୀବନସଙ୍ଗୀ ବୁଦ୍ଧି ଜ୍ଞାନ ବଳ,
ସମ୍ପଦେ ବିପଦେ ହେବ ଜୀବନସମ୍ବଳ ।
ଆହା ଆହା ବୋଲେ ନେଲ ହାତରୁ ଛଡ଼ାଇ,
ଭଣ୍ଡାର କି ପୂର୍ଣ୍ଣ କଲ ତାକୁ ଘେନ ଯାଇ ?
ସ୍ୱର୍ଗେ କି ଅପୂର୍ଣ୍ଣ ଥିଲା ଲାବଣ୍ୟମାଧୁରୀ ?
ମୋ ତଣ୍ଟିରେ ଛୁରି ଦେଇ ନେଲ କରି ଚୋରି ।
ତୁମ୍ଭଙ୍କୁ କି ତାହା ପାଇଁ କରିଥିଲ ଅଳି ?
ହାତେ ଗୁଞ୍ଜି ଦେଇଥିଲ ସିନା ବଳି ବଳି ।
ଆଜ ମୁଁ ପାରିବି ନାହିଁ ଏତେ କଥା ଭାଳି,
ଆଜ ମୁଁ ପାରିବି ନାହିଁ ଏତେ ଦେଇ ଗାଳି ।
ଯେଣିକି ଅନାଇଁ ଦେଖେଁ ସମସ୍ତ ଅନନ୍ତ,
ଥକି ପଡ଼େ ମନ ଝପି ନ ପାରି ଦିଗନ୍ତ ।
ବ୍ରହ୍ମାଣ୍ଡର ନାଟ୍ୟଶାଳା ନେପଥ୍ୟ ଅନ୍ଧାରେ,
ବୁଦ୍ଧିର କି ସାଧ୍ୟ ସେ ସ୍ଥାନକୁ ଯାଇପାରେ ?
ନ ଭାଳିବି କିଛି କଥା ଯାହା ଇଚ୍ଛା କର,
ଏତିକି ମୁଁ ଜାଣେ ତୁମ୍ଭେ ଜୀବନଈଶ୍ୱର ।
ତୁମ୍ଭଙ୍କୁ ଯଦ୍ୟପି କରେ କେବେହେଁ ଅପ୍ରତ୍ୟୟ,
ନିଖିଳ ବ୍ରହ୍ମାଣ୍ଡ ମୋତେ ଦିଶେ ଶୂନ୍ୟମୟ ।
ଜଡ଼ ବୁଲେଁ ଶୂନ୍ୟେ ତୁମ୍ଭେ ନ ଥିଲେ ମୋ ମନେ,
ଲକ୍ଷ୍ୟହୀନ ଆଶାହୀନ ବ୍ୟାକୁଳଜୀବନେ ।

———

## ନାରୀ

ବିଧାତା ବିଚିତ୍ର ଚିତ୍ର ରମଣୀ-ଶରୀର,
ତହୁଁ ବଳି କିବା ଅଛି ଜଗତେ ରୁଚିର ।
ସଂସାର କଣ୍ଟକବନେ କୁସୁମିତା ଲତା,
ମୂର୍ତ୍ତିମନ୍ତ କିବା ପ୍ରଭାରାଶି ପବିତ୍ରତା ।
ତୃଷ୍ଣା ଦୂର କରେ ପୂତ ମନ୍ଦାକିନୀ ଜଳ,
ଦୃଷ୍ଟିମାତ୍ରେ ନାରୀରୂପ ଜୀବନ ଶୀତଳ ।
ସ୍ୱର୍ଗ ପାରିଜାତ ଜିଣି ବଦନ କମଳ,
ଅମୃତଲହରୀ ଗଣ୍ଡଦେଶେ ଟଳଟଳ ।
ନୀଳ ନୀରଦର ତଳେ ଲୁଚିଯାଏ ଇନ୍ଦୁ,
ପ୍ରେମରସ ଘନୀଭୂତ କିବା ସୁଧାସିନ୍ଧୁ ।
ଚପଳ ଚାହାଣି ଚଳେ ନୟନର ପ୍ରାନ୍ତେ,
ବିକଚ କମଳ ଯେହ୍ନେ ତରଙ୍ଗ ଆଘାତେ ।
ରମଣୀ ହୃଦୟ ପଦ୍ମ କଳିକା ଆକାର,
ଦୟା ମାୟା ସ୍ନେହ ଭକ୍ତି କିବା ସ୍ତୂପାକାର ।
ନିର୍ମଳ ଚରିତ୍ର ପୂତମନା ଯେ ମାନବ,
ସ୍ୱର୍ଗୀୟ ସୁଷମା ସେଥି କରେ ଅନୁଭବ ।
ବାଳକ-ଜୀବନଦାୟୀ ଅମୃତଭଣ୍ଡାର,
କନ୍ଦର୍ପ ନେତ୍ରରେ ତାହା ଦେଖେ ଦୁରାଚାର ।
ଆଦ୍ୟାଶକ୍ତିଠାରୁ ଏହି ଜଗତ ଉତ୍ପତ୍ତି,
ଜଗତର ସାରଭୂତା ରମଣୀସମ୍ପତ୍ତି ।
ନଳିନୀ ନୟନା ନାରୀ ଆନନ୍ଦ ପ୍ରତିମା,
ଗୃହିଣୀ ଗୃହର ଲକ୍ଷ୍ମୀ, ସୁଧାମଧୁରିମା ।
ପ୍ରତ୍ୟକ୍ଷ—ଦେବତା—ଶିଶୁ ପାଳନ୍ତି ଜନନୀ,
ନାରୀ ଯୋଗେ ପରିପୂର୍ଣ୍ଣ ଜୀବରେ ଅବନୀ ।
ଯହିଁ ନାରୀ ତହିଁ ଲକ୍ଷ୍ମୀ ତହିଁ ସ୍ୱର୍ଗଧାମ,
ଶ୍ମଶାନ ସେ ଗୃହ ଯହିଁ ନାହିଁ ନାରୀ ନାମ ।
ଏପରି ନାରୀକୁ ଯେବା କରେ ଅନାଦର,
ନିର୍ବୋଧ ରାକ୍ଷସ ସେହି ପାଷଣ୍ଡ ପାମର ।

———

## ଦିନ ଯାଉଅଛି ବହି

କାମନା ଯାତନା ହୃଦେ ଚିନ୍ତା-ବୋଝ ଶିରେ,
ପଦ ପଦ କରି ଚାଲୁଅଛି ଧୀରେ ଧୀରେ,
ମୁହୂର୍ତ୍ତ ମାତ୍ରକ କାହିଁ ପାରୁ ନାହିଁ ରହି,
ଅବିରାମେ ଚାଲିଯାଏ ବିଦେଶୀ ବାଟୋଇ;
ଆଜ ଦିନ ଯାଉଅଛି ବହି । ୧ ।

ଅଇଲା ସେ କାହିଁ ପୁଣି ଯିବ କେଉଁଠାକୁ,
ନ ଜାଣି ଚାଲୁଛୁ ପାରୁ ନାହିଁ ରହିବାକୁ,
ସନ୍ତାପ ଯନ୍ତ୍ରଣା ବୋଝ ପାରୁ ନାହିଁ ଥୋଇ;
ଅବିରାମେ ଚାଲିଯାଏ ଜୀବନ ବାହୋଇ;
ଆଉ ଦିନ ଯାଉଅଛୁ ବହି । ୨ ।
ପ୍ରାଣାଧିକ ପ୍ରିୟତମ ଜ୍ଞାତି ବନ୍ଧୁଗଣ;
ସାଙ୍ଗ ଛାଡ଼ି ଚାଲି ଯାଉଛନ୍ତି ଜଣ ଜଣ;
ବିଳାପ କ୍ରନ୍ଦନ କରି ଶୂନ୍ୟମନା ହୋଇ,
ଅବିରାମେ ଚାଲିଯାଏ ଜୀବନ ବାହୋଇ;
ଆଉ ଦିନ ଯାଉଅଛୁ ବହି । ୩ ।
ନିବିଡ଼ ଅନ୍ଧାରମାର୍ଗେ କରୁଛୁ ଗମନ,
ପଛକୁ ଯାଉଛୁ ଜଣା ନିଶାର ସ୍ୱପନ;
ଆଶାର ଆଲୋକ ଦେଖି ବିମୋହିତ ହୋଇ,
ଅବିରାମେ ଚାଲିଯାଏ ଜୀବନ ବାହୋଇ;
ଆଉ ଦିନ ଯାଉଅଛୁ ବହି । ୪ ।
ବିପଦ-କଣ୍ଟକ କେତେ ଭୁକୁଛୁ ପଦରେ,
କଳ୍ପନା ଉଜ୍ଜ୍ୱଳ ସୁଖ ଦେଖେ ସମ୍ମୁଖରେ;
କେବେ ହାସ୍ୟ କେବେ ଅଶ୍ରୁ ନେତ୍ରୁ ଯାଏ ବହି,
ଅବିରାମେ ଚାଲିଯାଏ ଜୀବନ ବାହୋଇ;
ଆଉ ଦିନ ଯାଉଅଛୁ ବହି । ୫ ।

———

## ଆଶା

ଚାଲିଯାଆ ଚାଲିଯାଆ, କିଛୁ ଲୋଡ଼ାନାହିଁ,
ଯାଆ ତାହା ପାଶେ ଯେବା କାନ୍ଦେ ତୋହପାଇଁ ।
ସେ ଦିନ ଯାଇଛି ମୋର ତୋ କଥାରେ ଭୁଲି,
କରୁଥିଲି ଗୀତ କୁଞ୍ଜେ ଯାଉଥିଲି ଫୁଲି ।
ଦେଖ ଦେଖ ଚାହିଁ ଏତେବେଳେ ମୋ ହୃଦୟ,
ନାହିଁ ମାୟା ନାହିଁ ସ୍ନେହ ଶୂନ୍ୟ ମରୁମୟ ।
ଜାଳି ଦେ ଅନଳ କମ୍ପା ଫୁଟା ପଦ୍ମଫୁଲ,
ନ ହେବ କାତର ଅବା ନ ହେବ ପ୍ରଫୁଲ୍ଲ ।
ସଠାବଠା କଥା ଶୁଣି ଶୁଣି ଚିରକାଳ,
ପଡ଼ିଲାଣି ଦାନ୍ତ ପାଚିଲାଣି ମୁଣ୍ଡବାଳ ।
ଆଉ ଯେବେ ଥରେ ଯିବି ଭୁଲି ତୋ କଥାରେ,
ଧିକ ମୋତେ ଶତ ଧିକ ହଜାରେ ହଜାରେ ।
ତୋତେ ପୋଷିବାକୁ ନାହିଁ ହୃଦୟରେ ସ୍ଥାନ,
ଦେଖ ଦେଖ ପୋଡ଼ି ଜଳି ହୋଇଛି ଶ୍ମଶାନ ।
ଶାନ୍ତି ମହାଦେବୀ ଆସି ଦ୍ୱାରେ ଛନ୍ତି ବସି,
ଦେବୀଙ୍କୁ ଚୋଡ଼ରେ ପେଲି ପ୍ରଜବ ରାକ୍ଷସୀ ?
ଦେଖା ଯା ସ୍ୱପନ ତାକୁ ଯେବା ତୋତେ ଲୋଡ଼େ ।
ବଢ଼ା ନା ବଢ଼ା ନା ଗୋଡ଼ ମୋ ଆଗକୁ ଭୁଡ଼େ ।
କାଟିଛି ଜୀବନ ତୋରପାଇଁ କାନ୍ଦି କାନ୍ଦି,
ପିଲା ଭଣ୍ଡାଣିଆ କଥା ରଖିଦେ ତୁ ବାନ୍ଧି ।
ଶାନ୍ତିଜଳେ ଡୁବିବାର ଯେ କଲା ଝବକା,
କି କରିବ ଆଶା-ମାୟାବିନୀ-ମରୀଚିକା ?
ତୋ ମୋହିନୀମନ୍ତ୍ରେ ଭୁଲି ଯାଇ କେତେଥର,
ପଡ଼ିଛୁ ଅନଳେ ଡେଇଁ ଗିଳିଛୁ ପଥର ।
ତୋହପରି ଦଗାଦାର ନାହିଁ ତ୍ରିଭୁବନେ,
କେତେ କଷ୍ଟ ଦେଇପାରୁ ମନୁଷ୍ୟଜୀବନେ ।
ଆଉ ତୁ ମଣ ନା'ମୋତେ ଲୋକ ପିଲାଭଳି,
ତୋ ନାମ ଶୁଣିଲେ ଦେହ ଉଠୁଅଛି ଜଳି ।
ଭୁଲି ଯା ତାହାକୁ ଯେ ନ ଜାଣେ ତୋ କୌଶଳ,
ଭାଙ୍ଗି ଖାଇଅଛି ତେର ମହାକାଳଫଳ ।
ଆଚ୍ଛା ! ତୋହ କଥା ଶୁଣିପାରେ କାନ ଡେରି,
ଯାଇଅଛି ଚାଲି ଯାହା ଆସିବ କି ଫେରି ?
ଭାଙ୍ଗି ଭସ୍ମ ହୋଇ ଯାଇଅଛି କୋହିନୂର,
କୋଟିଏ ମାଣିକ୍ୟ ନୁହେ ତହିଁକ ପ୍ରଚୁର ।
ଆଉ ଭୁଲାଇବୁ ମୋତେ କି ଦ୍ରବ୍ୟ ଦେଖାଇ ?
ତେବେ କି କରିବୁ ଆଉ ପାଶେ ବସିଥାଇଁ ?
ଯାଆ ଯାଆ ମୋ ପାଶରୁ, ଜୁହାର, ଜୁହାର,
ଅଉ ତୁ ଆସିବୁ ନାହିଁ ବୁଝି ଖବର୍‌ଦାର ।

———

## ନିଦ ଗଲା ଭାଙ୍ଗି

ଆହା ଆହା ଆହା ମୋର ନିଦ ଗଲା ଭାଙ୍ଗି ।
ନୀରବେ ଅନ୍ଧାର ଘରେ
ଶୋଇଥିଲି ନିଶ୍ଚିନ୍ତରେ
କୋମଳ ସୁପାଡ଼ ସୁଖବସ୍ତ୍ର ହୋଇ ଲାଗି,
ଆହା ଆହା ଆହା ମୋର ନିଦ ଗଲା ଭାଙ୍ଗି । ୧ ।

ଆହା ଆହା ଆହା ମୋର ନିଦ ଗଲା ଭାଙ୍ଗି ।
ନ ଥିଲା ତ କୋଳାହଳ
ଝଞ୍ଜାବାୟୁ ବୃଷ୍ଟିଜଳ,
ସହସା ଆସିଲା ମେଘ ବଜ୍ର ଶବ୍ଦ ଲାଗି,
ଆହା ଆହା ଆହା ମୋର ନିଦ ଗଲା ଭାଙ୍ଗି । ୨ ।

ଆହା ଆହା ଆହା ମୋର ନିଦ ଗଲା ଭାଙ୍ଗି ।
ବହୁଥିଲା ସୁପବନ,
ଦେଖୁଥିଲି ସୁସ୍ୱପନ;
ଅଳସ ଅବଶ ଅଙ୍ଗ ହେଉଅଛି ଭାଙ୍ଗି,
ଆହା ଆହା ଆହା ମୋର ନିଦ ଗଲା ଭାଙ୍ଗି । ୩ ।

ଆହା ଆହା ଆହା ମୋର ନିଦ ଗଲା ଭାଙ୍ଗି ।
ଭାଙ୍ଗି ଗଲା ସେ ସ୍ୱପନ,
ଭାଙ୍ଗି ଯାଉ ଏ ଜୀବନ;
ଆଉ କପାଁ ବଞ୍ଚିଥିବ ଆଉ କାହା ଲାଗି ?
ଆହା ଆହା ଆହା ମୋର ନିଦ ଗଲା ଭାଙ୍ଗି । ୪ ।

---

## ମାତଃ ପୃଥିବୀ

ସରିଲାଣି ସବୁ କାର୍ଯ୍ୟ ଏବେ ହାତ ଧୋଇ,
ଜୀବନର ପାଞ୍ଜି ବନ୍ଦ କରିଅଛି ଥୋଇ;
ବୃଥା ଧରିବା ଜୀବନ,
ଜଗତେ ଜଞ୍ଜାଳ ମାତ୍ର ଅନାଗଳସ୍ତନ । ୧ ।

ତୋ ଉପରେ କରିଅଛି କେତେ ଅତ୍ୟାଚାର,
ଗଣି ହେବ ନାହିଁ ଗୋଟି ଗୋଟି ଦେଲେ ଗାର;
କେଉଁ କାର୍ଯ୍ୟ ସାଧିବାକୁ,
ଧରି ରଖିଅଛୁ ଆଉ ଏହି ଦେହଟାକୁ ? ୨ ।

କାଢ଼ି ନେ ମା ତୋହ ଅଂଶ ଯା ଅଛି ଶରୀରେ,
ସଲିଳ ସଲିଳେ ମିଶୁ ସମୀର ସମୀରେ,
ତେଜେ ତେଜ ମିଶିଯାଉ,
ନିଜ ନିଜ ଅଂଶ କପାଁ ରଖିଅଛ ଆଉ ? ୩ ।

ଆପଣା ଆପଣା ପ୍ରାପ୍ୟ ଅଂଶ ନେଇ କାଢ଼ି,
ଉଡ଼ିଯାଏଁ ସେ ଦେଶକୁ ଦିଅ ମୋତେ ଛାଡ଼ି;
ଯେଉଁଠାକୁ ଧାଏଁ ମନ,
ଏଠାରେ ତ ଆଉ କିଛି ନାହିଁ ପ୍ରୟୋଜନ । ୪ ।

ଦେହ ଜଡ଼ ମନ ଜଡ଼; ଥିଲେ ମଧ୍ୟ ପ୍ରାଣ
ହସ୍ତ ପଦ ବର୍ତ୍ତମାନ ଅହଲ୍ୟା ପାଷାଣ;
ବିସ୍ତାରିତ ମୂଳ ଡାଳ
ପୁଷ୍ପହୀନ ଶୁଷ୍କତରୁ ଉଦ୍ୟାନ ଜଞ୍ଜାଳ । ୫ ।

ଯେମାନଙ୍କ ପାଇଁ ଇଚ୍ଛା ଥିଲା ରହିବାକୁ;
ଦୟାମୟ ଛନ୍ତି ସେମାନଙ୍କୁ ରଖିବାକୁ;
କିବା ଅଛି ମୋହଠାରେ ?
ଜଗତ ଚଳୁଛି ତାଙ୍କ ମହିମା କୃପାରେ । ୬ ।

---

## ମାତୃସ୍ତୋତ୍ର

ଜୟ ଦେବ ପରବ୍ରହ୍ମ କୈବଲ୍ୟଦ ଯୁଗ୍ମା,
ଜଗତଜନନୀ ଗତମୁକ୍ତିବିଧାୟିନୀ;
ତୋତେ ଆଶ୍ରେ କରି ଦେବ ଅଛନ୍ତି ସମସ୍ତେ,
ନମସ୍ତେ ନମସ୍ତେ ମାତ ନମସ୍ତେ ନମସ୍ତେ । ୧ ।

ପ୍ରାଣରୂପେ ଦେବୀ ସର୍ବଭୂତେ ବିରାଜିତା,
ସିଦ୍ଧେଶ୍ୱରୀରୂପେ ଭକ୍ତଜନରେ ପୂଜିତା;
ଚରାଚରନୟନେ ତୋତେ ଦେଖନ୍ତି ସମସ୍ତେ,
ନମସ୍ତେ ନମସ୍ତେ ମାତ ନମସ୍ତେ ନମସ୍ତେ । ୨ ।

ଚେତନାରୂପରେ ଭୂତେ କର ବିଚରଣ,
ତୁମ୍ଭେ ସିଦ୍ଧି ବୁଦ୍ଧି ବିଦ୍ୟା ନିଦ୍ରା ଜାଗରଣ;
କ୍ଷୁଧାରୂପେ ବିରାଜିତ ଅଛ ସର୍ବଭୂତେ,
ନମସ୍ତେ ନମସ୍ତେ ମାତ ନମସ୍ତେ ନମସ୍ତେ । ୩ ।

ମହାଦେବୀ ତୁମ୍ଭେ ଭୂତମଣ୍ଡଳର ଛାୟା,
ତୁମ୍ଭେ ତୃଷ୍ଣା, ତୁମ୍ଭେ ଶାନ୍ତି, ତୁମ୍ଭେ କ୍ଷାନ୍ତି ମାୟା;
ଶ୍ରଦ୍ଧା ମେଧା ଲଜ୍ଜାରୂପେ ବ୍ୟାପିଛ ଜଗତେ,
ନମସ୍ତେ ନମସ୍ତେ ମାତ ନମସ୍ତେ ନମସ୍ତେ । ୪ ।

ମହାଲକ୍ଷ୍ମୀରୂପେ ତୁମ୍ଭେ ଭୂତେ ଅବସ୍ଥିତ,
ତୁମ୍ଭେ ତୁଷ୍ଟି ତୁମ୍ଭେ ପୁଷ୍ଟି ତୁମ୍ଭେ ସ୍ମୃତି ଧୃତ;
ଦୟାରୂପେ ଅବସ୍ଥିତ ଅଛ ପ୍ରତି ଭୂତେ,
ନମସ୍ତେ ନମସ୍ତେ ମାତ ନମସ୍ତେ ନମସ୍ତେ । ୫ ।

ଇନ୍ଦ୍ରିୟଗଣର ତୁମ୍ଭେ ଦେବୀ ଅଧିଷ୍ଠାତ୍ରୀ,
ନିଖିଳଜନନୀ ଜୀବ ଅନ୍ନପାନଦାତ୍ରୀ;
ଅନନ୍ତ ବ୍ରହ୍ମାଣ୍ଡ ଆଶ୍ରେ କରିଛନ୍ତି ତୋତେ,
ନମସ୍ତେ ନମସ୍ତେ ମାତ ନମସ୍ତେ ନମସ୍ତେ । ୬ ।

କଳା କାଷ୍ଠା ଆଦି ରୂପେ ତୁମ୍ଭେ ଗୋ ଜନନୀ,
ଅନନ୍ତକାଳର ପରିଣାମ ପ୍ରଦାୟିନୀ;
ଅତିକ୍ରମ କରି ନ ପାରଇ କାଳ ତୋତେ,
ନମସ୍ତେ ନମସ୍ତେ ମାତ ନମସ୍ତେ ନମସ୍ତେ । ୭ ।

ସୃଷ୍ଟି ସ୍ଥିତି ବିନାଶିନୀ ତୁମ୍ଭେ ମୂଳାଧାର,
ବ୍ରହ୍ମମୟୀ ସନାତନୀ ଦେବୀ ପରାତ୍ପର;
ଗୁଣାଶ୍ରୟେ ଗୁଣମୟେ ଭକତ ଆଶ୍ରିତେ,
ନମସ୍ତେ ନମସ୍ତେ ମାତ ନମସ୍ତେ ନମସ୍ତେ । ୮ ।

———

# ଉପନିଷତ୍‌ସଂଗ୍ରହ

## ଶୁକ୍ଳ ଯଜୁର୍ବେଦୀୟ ଈଶୋପନିଷଦ୍

ମନରେ ଭାବିବ ଏମନ୍ତ, ଜଗତ ପଦାର୍ଥ ସମସ୍ତ ।
ପରମ ଆତ୍ମା ଆଚ୍ଛାଦନ, କରି ରଖିଛି ଅନୁକ୍ଷଣ ।
ତେଜିବ ବିଷୟ ଆସକ୍ତ, ନ ଲୋଭେ ପରର ସମ୍ପତ୍ତି ।
ସାଧୁ କର୍ମରେ ଦେଇ ମନ, ଧାରଣ କରିବ ଜୀବନ ।
ବଞ୍ଚିବା ପାଇଁ ଶତ ବର୍ଷ, ଯତନ କରିବ ଅବଶ୍ୟ ।
ଆହେ ମାନବ କର ଜ୍ଞାନ, ଅନ୍ୟଥା ନାହିଁ ପରିତ୍ରାଣ ।
ଯେ ଆତ୍ମଘାତୀ ଦୁରାଚାର, କରଇ ଆତ୍ମା ଅସ୍ୱୀକାର ।
ସର୍ବଦା ଅବିଦ୍ୟା ବଶରେ, ଭ୍ରମନ୍ତି ଅଜ୍ଞାନ ମାର୍ଗରେ ।
ତାହାଙ୍କ ହେଲେକ ଦେହାନ୍ତ, ଅସୁର ଦେହ ହେବେ ପ୍ରାପ୍ତ
ହେଲେହେଁ ବ୍ରହ୍ମ ଯେ ଅଚଳ, ବ୍ୟାପିଅଛନ୍ତି ସର୍ବସ୍ଥଳ ।
ସେହି ଯେ ପରଂବ୍ରହ୍ମ ଜାଣ, ମନରୁ ମଧ୍ୟ ବେଗବାନ ।
ଇନ୍ଦ୍ରିୟମାନେ ସହଜରେ, ପ୍ରାପ୍ତ ନୁହନ୍ତି ସେ ଈଶ୍ୱରେ ।
ଇନ୍ଦ୍ରିୟେ ନ ପାରନ୍ତି ଜାଣି, ଯେଣୁ ସେ ବ୍ରହ୍ମ ଅଗ୍ରଗାମୀ ।
ସ୍ଥିର ହେଲେହେଁ ପରଂବ୍ରହ୍ମ, କରନ୍ତି ସର୍ବ ଅତିକ୍ରମ ।
ବ୍ରହ୍ମରେ ଥାଇ ଅଧିଷ୍ଠିତ, ବାୟୁ ହେଉଛି ପ୍ରବାହିତ ।
ବ୍ରହ୍ମଙ୍କ ଆଜ୍ଞାରେ ପବନ, ଦିଅଇ ପ୍ରାଣୀଙ୍କୁ ଜୀବନ ।
ସେ ପରଂବ୍ରହ୍ମ ନିରନ୍ତରେ, ଅଛନ୍ତି ଦୂରେ ସମୀପରେ ।
ବାହାରେ ପୁଣି ଅଭ୍ୟନ୍ତରେ, ଅଛନ୍ତି ସକଳ ସ୍ଥାନରେ ।
ଆତ୍ମାରେ ଯେ ଜ୍ଞାନୀ ସକଳ, ଦେଖନ୍ତି ବ୍ରହ୍ମାଣ୍ଡମଣ୍ଡଳ ।
ବ୍ରହ୍ମାଣ୍ଡ ମଧ୍ୟେ ପରଂବ୍ରହ୍ମ, କରି ପାରନ୍ତି ହୃଦଗମ ।
ତାହାଙ୍କୁ ସେହି ଜ୍ଞାନବାନ, କରନ୍ତି ନାହିଁ ତୁଚ୍ଛଜ୍ଞାନ,
ଆତ୍ମା ଯେ ସର୍ବ ବସ୍ତୁରୂପୀ, ଏ ଜ୍ଞାନ ଜନ୍ମିବ ଯଦ୍ୟପି ।
ଏକତ୍ୱଦର୍ଶୀ ଜ୍ଞାନୀଗଣ, ନୁହନ୍ତି ମୋହେ ଅଚେତନ ।
ସେ ପରମାତ୍ମା ସର୍ବବ୍ୟାପୀ, ପାପ ନ ସ୍ପର୍ଶଇ କଦାପି ।
ସେ ଜ୍ୟୋତିର୍ମୟ ଅଶରୀରୀ, ତାହାଙ୍କଠାରେ ସର୍ବଶିରୀ ।
ସ୍ୱୟମ୍ଭୂ ମନର ନିୟନ୍ତା, ସକଳଦର୍ଶୀ ସର୍ବ କର୍ତ୍ତା ।
ପ୍ରଜାଙ୍କ ହିତେ ଭଗବାନ, କରନ୍ତି କଲ୍ୟାଣ ବିଧାନ ।
କେବଳ କର୍ମେ ଅନୁରତ, ଥାଆନ୍ତି ଲୋକ ଯେ ସମସ୍ତ ।
ଅଥବା ଯେଉଁ ଲୋକମାନେ, ମଗ୍ନ ଥାଆନ୍ତି ଦେବ ଜ୍ଞାନେ ।
ଏପରି ଦୁଇ ଶ୍ରେଣୀ ଲୋକ, ନ ପାନ୍ତି ଜ୍ଞାନର ଆଲୋକ ।
ଦେବତା ଜ୍ଞାନ କର୍ମଫଳ, ପୃଥକ ଜାଣିବ କେବଳ ।
ଦେଖିଛନ୍ତି ପ୍ରତ୍ୟକ୍ଷ ଦର୍ଶନେ, ବୋଲନ୍ତି ମଧ୍ୟ ଜ୍ଞାନୀଗଣେ ।
ଦେବତା ଜ୍ଞାନ କର୍ମ ଦୁଇ, ପୁରୁଷ କର୍ତ୍ତବ୍ୟ ଅଟଇ ।
କର୍ମେ ମୃତ୍ୟୁରୁ ହୁଏ ମୁକ୍ତ, ଜ୍ଞାନରେ ଲଭନ୍ତି ଦେବତ୍ୱ ।
ଅବିଦ୍ୟାରୂପିଣୀ ପ୍ରକୃତି, ସେବା କରଇ ଯେ କୁମତି ।
ସେ ଲୋକ ମିଳେ ଦେହାନ୍ତରେ, ଅଜ୍ଞାନରୂପ ଅନ୍ଧକାରେ ।
ହିରଣ୍ୟଗର୍ଭ କାର୍ଯ୍ୟ ବ୍ରହ୍ମେ, ଆସକ୍ତ ଥାନ୍ତି ଯେ ଅଧମେ ।
ସେମାନେ ମଧ୍ୟ ଅବଶେଷେ, ମିଳନ୍ତି ଅନ୍ଧକାର ଦେଶେ ।
ଜ୍ଞାନୀଏ ଏହା ବୋଲିଛନ୍ତି, କାର୍ଯ୍ୟ ଦେବତା ଯେ ପ୍ରକୃତି,
ପୃଥକ ଉପାସନା ଫଳ, ଲଭନ୍ତି ବାଞ୍ଛାମୀ ସକଳ ।
ହିରଣ୍ୟଗର୍ଭ ଯେ ପ୍ରକୃତି, ଉଭୟେ ପୂଜେ ଯେ ସୁମତି ।
ପୂଜି ସେ ହିରଣ୍ୟଗର୍ଭଙ୍କୁ, ଜିଣିପାରଇ ମରଣକୁ ।
କରି ପ୍ରକୃତି ଉପାସନା, ଅମୃତ ଲଭେ ମହାମନା ।
ଜଗତପୋଷକ ହେ ସୂର୍ଯ୍ୟ ! ଅନନ୍ତ ତୁମ୍ଭର ଐଶ୍ୱର୍ଯ୍ୟ ।
ତୁମ୍ଭର ଜ୍ୟୋତିର୍ମୟ ପାତ୍ରେ, ବ୍ୟାପି ରହିଛି ବିଶ୍ୱଗାତ୍ରେ ।
ଆତ୍ମକୁ ଦେବାକୁ ଦର୍ଶନ, ମୋଚନ କର ଆବରଣ ।

ହେ ସୂର୍ଯ୍ୟ ଜଗତ ପୋଷକ ! ତୁମ୍ଭେ ହିଁ ଲୋକଙ୍କ ପାଳକ ।
ଏକାକୀ କରଣ ଗମନ, ସଂଯମ କର ପ୍ରାଣୀଗଣ ।
ହେ ପ୍ରଜାପତିଙ୍କ ତନୟ ! ଅଟ ଆପଣ ଜ୍ୟୋତିର୍ମୟ ।
ରଶ୍ମିକୁ କରନ୍ତୁ ସଂଯତ, ତେଜକୁ କରନ୍ତୁ ଆବୃତ ।
ତୁମ୍ଭର ଆକୃତି ଶୋଭନ, କରିବି ବେଳେ ଦରଶନ ।
ସୂର୍ଯ୍ୟମଣ୍ଡଳେ ଯେ ପୁରୁଷ, ତାହାଙ୍କୁ କରୁଛୁ ଗୃଷ୍ୟ ।
ହେ ସୂର୍ଯ୍ୟ କୃପା କର ଆଜ, ମୋହର ଏହି ପ୍ରାଣବାୟୁ ।
ବାୟୁ ସ୍ୱରୂପ ଅମୃତରେ, ମିଳିତ ହେଉ ସହଜରେ ।
ଶରୀର ହେଉ ଭସ୍ମସାତ, ଆଦେଶ କର ଦୀନନାଥ ।
ଆପଣା କୃତକାର୍ଯ୍ୟମାନ, ବାରେକ କରନ୍ତୁ ସ୍ମରଣ ।
ହେ ଅଗ୍ନିଦେବ ହେ ଅନଳ, ଭୁଞ୍ଜିବା ପାଇଁ କର୍ମଫଳ ।
ରହିଣ ତୁମ୍ଭେ ପୁରୋଭାଗେ, ନେଉନ୍ତୁ ଆମ୍ଭକୁ ସୁମାର୍ଗେ ।
ମୋ ମନ୍ଦୁ ଆହେ ବୈଶ୍ୱାନର, କୁଟିଳ ପାପ ଦୂର କର ।
ତୁମ୍ଭ ଚରଣେ ବାରମ୍ବାର, କରୁଛି ଦେବ ନମସ୍କାର ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ହରିଃ ଓଁ
ଇତି ଶୁକ୍ଳଯଜୁର୍ବେଦୀୟା
ବାଜସେନେୟ ସଂହିତୋପନିଷତ୍
ବା
ଈଶୋପନିଷତ୍

---

## ଅଥର୍ବବେଦୀୟା ପ୍ରଶ୍ନୋପନିଷତ୍
## ପ୍ରଥମ ପ୍ରଶ୍ନ

ସୁକେଶା ଭରଦ୍ୱାଜ * ନାମ, ଶିବଙ୍କ ପୁତ୍ର ସତ୍ୟକାମ ।
ସୂର୍ଯ୍ୟଙ୍କ ପୁତ୍ର ନାମ ଗାର୍ଗ୍ୟ, କବନ୍ଧୀ କାତ୍ୟ †ମହାଭାଗ ।
ଅଶ୍ୱଳ ପୁତ୍ର ହେ କୌଶଲ୍ୟ, ସମସ୍ତେ ଜ୍ଞାନରେ କୁଶଳ ।
ଏ ବିପ୍ରେ ବ୍ରହ୍ମପରାୟଣ, କରନ୍ତି ସତ୍ୟ ଆଚରଣ ।
ପରମ ବ୍ରହ୍ମ ଅନ୍ୱେଷଣେ, ଚଳିଲେ ଏ ସର୍ବ ବ୍ରାହ୍ମଣେ ।
ବ୍ରହ୍ମବିଦ୍ୟାରେ ବିଶାରଦ, ଥିଲେ ମହର୍ଷି ପିପଳାଦ୍ୟ ।
ସମିଧ ହସ୍ତେ ବିପ୍ରଗଣେ, ମିଳିଲେ ଋଷିଙ୍କ ଚରଣେ ।
ସମସ୍ତେ ହୋଇ ଏକମତି, ପୁଚ୍ଛିଲେ ବ୍ରହ୍ମବିଦ୍ୟା କଥା ।
ସେ ମହାଋଷି ପିପଳାଦ୍ୟ, ବୋଇଲେ କରଣ ଆହ୍ଲାଦ ।
ଯାଅ ହେ ତୁମ୍ଭେ ଋଷିଗଣେ, ବସିବ ଶାନ୍ତିରେ ନିର୍ଜ୍ଜନେ ।
ତପସ୍ୟା, ଶ୍ରଦ୍ଧା, ବ୍ରହ୍ମଚର୍ଯ୍ୟ; କରିବ ବର୍ଷେ ଏହି କାର୍ଯ୍ୟ ।
ତଦନ୍ତେ ଆସି ପୁନର୍ବାର, ପୁଚ୍ଛିବ ଏହି ସମାଚାର ।
ଆମ୍ଭଙ୍କୁ ତାହା ଥିଲେ ଜଣା, ବୋଲିବୁଁ କରିବିବେଚନା ।
ଏ ଅନ୍ତେ କରି ଚିତ୍ତ ଶୁଦ୍ଧି, କାତ୍ୟଙ୍କ ନନ୍ଦନ କବନ୍ଧୀ ।
ପୁଚ୍ଛିଲେ ମହର୍ଷିଙ୍କୁ ଯାଇ, "ବୋଲିବା ହେଉନ୍ତୁ ଗୋସାଇଁ ।
କିପରି ଜନମ ଗ୍ରହଣ, କଲେ ଜଗତ ପ୍ରାଣୀଗଣ ?
କାହିଁରୁ ପୁଣି ହେଲେ ଜାତ ? ବୋଲନ୍ତୁ ଏ ସର୍ବବୃତ୍ତାନ୍ତ ।"
ବୋଇଲେ ଋଷି ମହାମତି, ପ୍ରଥମେ ଦେବ ପ୍ରଜାପତି ।
"ପ୍ରଜାଙ୍କ ଉତ୍ପତ୍ତି ବିଷୟେ, ଇଚ୍ଛୁକ ହୋଇଣ ହୃଦୟେ ।
ତେଜିଣ ସକଳ ଭରସା, ବହୁତ କଲେକ ତପସ୍ୟା ।
ପ୍ରଥମେ ରୟି ପୁଣି ପ୍ରାଣ, ଏ ଦୁଇ କଲେକ ନିର୍ମାଣ ।
ରୟି ଯେ ସର୍ବ ଆଧିଭୂତ, ପ୍ରାଣ ଯେ ଚୈତନ୍ୟ ଉଦ୍‌ଭୂତ ।
ଏହି ମିଥୁନ ଉତ୍ପାଦନ, କଲେକ କମଳ ଆସନ ।
ପ୍ରାଣ ଯେ ଅଟନ୍ତି ଚନ୍ଦ୍ରମା, ରୟି ଯେ ଅଟନ୍ତି ଅର୍ଯ୍ୟମା ।
ମୂର୍ତ୍ତ ଅମୂର୍ତ୍ତ ଯାହା ଅଛି, ସମସ୍ତ ରୟିରୁ ଜନ୍ମିଛି ।
ପୂର୍ବ ଦିଗରେ ଯେ ଆଦିତ୍ୟ, ପ୍ରଭାତେ ହୁଅନ୍ତି ଉଦିତ ।
ସମସ୍ତ ପ୍ରାଣକୁ ଗ୍ରହଣ, କରନ୍ତି ପ୍ରକାଶି କିରଣ ।
ଦକ୍ଷିଣ ପଶ୍ଚିମ ଉତ୍ତରେ, ଊର୍ଦ୍ଧ୍ୱ ବା ଅଧୋ ବା ମଧ୍ୟରେ ।
ପ୍ରକାଶି ସର୍ବତ୍ର କିରଣ, ପ୍ରାଣକୁ କରନ୍ତି ଗ୍ରହଣ ।
ଅଗ୍ନି ସ୍ୱରୂପ ବିଶ୍ୱ ଜାଣ, ଅଟନ୍ତି ବିଶ୍ୱରୂପ ପ୍ରାଣ ।
ଋକ୍ ମନ୍ତ୍ରେ ଯେ ରୂପ କଥିତ, ପଶ୍ଚାତେ ହେବ ପ୍ରକାଶିତ ।
ସେ ବିଶ୍ୱରୂପ ବୈଶ୍ୱାନର, ଅଟନ୍ତି ପ୍ରାଣ ପ୍ରାଣୀଙ୍କର ।
ବିଶ୍ୱ ସ୍ୱରୂପ ରଶ୍ମି ମନ, ପରମ ଆଶ୍ରୟର ସ୍ଥାନ ।
ଜ୍ୟୋତିଷ୍କ ତାପହିଁୟାକାଶ, ସହସ୍ର ରଶ୍ମି ରୂପଧାରୀ ।
ଜାଣନ୍ତି ବ୍ରହ୍ମବାଦୀଗଣ, ସେ ସୂର୍ଯ୍ୟ ପ୍ରାଣୀଙ୍କ ଜୀବନ ।
ସେ ସୂର୍ଯ୍ୟ ବ୍ରହ୍ମାଣ୍ଡେ ଅଟନ୍ତି, ସମ୍ବତ୍ସରର ପ୍ରଜାପତି ।

---

* ଭରଦ୍ୱାଜଙ୍କ ପୁତ୍ର, † କତ୍ୟଙ୍କ ପୁତ୍ର

ତାହାଙ୍କ ଉତ୍ତର ଦକ୍ଷିଣ, ଅଟଇ ଦୁଇଟି ଅୟନ ।
ସେ କରେ ପ୍ରିୟ କାର୍ଯ୍ୟମାନ, ଲଭେ ସେ ଚନ୍ଦ୍ରଲୋକେସ୍ଥାନ
ସନ୍ତ ନକାମୀ ଋଷିଗଣ, କରନ୍ତି ଏହି ଆଚରଣ ।
ରୟି ଅଟଇ ପିତୃ ଯାନ, ପିତୃଲୋକଙ୍କ ମାର୍ଗ ଜାଣ ।
ମାନବ ଜ୍ଞାନୀ ଵିଜ୍ଞବରେ, ଗମନ୍ତି ଉତ୍ତର ମାର୍ଗରେ ।
ବ୍ରହ୍ମଚର୍ଯ୍ୟ ବା ଶ୍ରଦ୍ଧା ଜ୍ଞାନେ, ଥାଆନ୍ତି ଆତ୍ମାର ସନ୍ଧାନେ ।
ଆଚରି ଏ ମହାଭାବ, କରନ୍ତି ଆଦିତ୍ୟଙ୍କୁ ଲାଭ ।
ଏ ସୂର୍ଯ୍ୟଲୋକ ବ୍ରହ୍ମମୟ, ସକଳ ପ୍ରାଣର ଆଶ୍ରୟ ।
ଋଗ୍‌ବେଦ ମନ୍ତ୍ରେ ବୋଲିଛନ୍ତି, ଏହା ହିଁ ପ୍ରାଣ ଶେଷ ଗତି ।
ଏପରି କାଳବିଦଗଣ, ବୋଲି ଅଛନ୍ତି ବିବରଣ ।
ଆଦିତ୍ୟ ସମ୍ବନ୍ଧେ ସମ୍ବାଦ, ଦ୍ୱାଦଶାକୃତି ପଞ୍ଚ ପାଦ,
ଅନନ୍ତମୟ ତେଜୋଧାରୀ ଦ୍ୟୁଲୋକେ ଜଳବୃଷ୍ଟିକାରୀ ।
ବୋଲନ୍ତି ଅନ୍ୟ ଜ୍ଞାନବନ୍ତ, ଆଦିତ୍ୟ ସମ୍ବନ୍ଧେ ଏମନ୍ତ;
ସପତ ଚକ୍ର ଷଟ୍ ଅରରେ, ସ୍ଥାପିଛି ଆଦ୍ୟ ସେ ରଥରେ ।
ହେମନ୍ତ, ଶିଶିର, ଗ୍ରୀଷ୍ମାଦି; ଏ ପଞ୍ଚ ଋତୁ ପଞ୍ଚପଦୀ ।
ଦ୍ୱାଦଶାକୃତି ଯେ ଆଖ୍ୟାନ, ଦ୍ୱାଦଶାକୃତି ତାକୁ ଜାଣ ।
ଶୁଣିବା ହେଉ ମହାମତି, ମାସ ଅଟନ୍ତି ପ୍ରଜାପତି ।
କୃଷ୍ଣ ପକ୍ଷକୁ ରୟି ଜାଣ, ଶୁକ୍ଳ ପକ୍ଷ ଯେ ତହିଁ ପ୍ରାଣ ।
ଥୋକାଏ ଋଷି ମହାଭାଗ, କରନ୍ତି ଶୁକ୍ଳପକ୍ଷେ ଯାଗ ।
ଅନ୍ୟେ ବା ଅପର ପକ୍ଷରେ, ଯାଗ କରନ୍ତି ସମାନରେ ।
ଅହୋରାତ୍ର ଯେ ପ୍ରଜାପତି, ଦିବସ ପ୍ରାଣ, ରୟି ରାତି ।
ଦିବସେ କଲେକ ରମଣ, ପ୍ରାଣକୁ କରଇ ଶୋଷଣ ।
ରାତିରେ ରତିକ୍ରିୟା କଲେ, ବ୍ରହ୍ମଚର୍ଯ୍ୟକୁ ଲଭେ ଭଲେ ।
ଜାଣିବ ପ୍ରଜାପତି ଅନ୍ନ, ତହିଁରୁ ରେତ ଯେ ଉତ୍ପନ୍ନ ।
ସେ ରେତୁଁ ଜନ୍ମ ସର୍ବ ପ୍ରାଣୀ, ଏ କଥା ଅଛ ତୁମ୍ଭେ ଜାଣି
ଯେମାନେ ପ୍ରଜାପତି ବ୍ରତ, କରୁଣ ଅଛନ୍ତି ସତତ ।
ଋତୁକାଳରେ ଯେଉଁ ଜନ, ଭାର୍ଯ୍ୟାରେ କରନ୍ତି ଗମନ ।
ତହିଁରୁ ଜନ୍ମିଲେ ସନ୍ତାନ, କରନ୍ତି ବ୍ରତ ଅନୁଷ୍ଠାନ ।
ସେହି ସାଧୁଙ୍କ ଏହି କାର୍ଯ୍ୟ, ଅଟେ ତପସ୍ୟା ବ୍ରହ୍ମଚର୍ଯ୍ୟ ।
ସେମାନେ ସତ୍ୟେ ପ୍ରତିଷ୍ଠିତ, ଲଭିବେ ସଦ୍‌ଗତି ନିଶ୍ଚିତ ।
ନୁହେ ଯେ କପଟ ଆଚାରୀ, ବ୍ରହ୍ମଲୋକେ ସେ ଅଧିକାରୀ ।
ମାୟା ବା କୌଟିଲ୍ୟ ଅସତ୍ୟ, ତେଜିବ ଏ ସର୍ବ ନିତ୍ୟ ।”

ଇତି ପ୍ରଥମ ପ୍ରଶ୍ନ ।

---

## ଦ୍ୱିତୀୟ ପ୍ରଶ୍ନ

ଭୃଗୁଙ୍କ ନନ୍ଦନ ବୈଦର୍ଭୀ, ପୁଚ୍ଛିଲେ ପିପ୍‌ପଳାଦେ୍ୟ ସେବ ?
“ବୋଲନ୍ତୁ କେତେ ସଂଖ୍ୟା ଶକ୍ତି ? ଦେହକୁ ଧରଣ ଅଛନ୍ତି ।
କେଉଁ ଶକ୍ତି ଶ୍ରେଷ୍ଠତମ ? ବୋଲନ୍ତୁ ସେଥି ଅନୁକ୍ରମ ।”
ଭୃଗୁନନ୍ଦନ ବାକ୍ୟ ଶୁଣି, ବୋଇଲେ ପିପ୍‌ପଳାଦ୍ୟ ମୁନି ।
“ଶୁଣନ୍ତୁ ଶକ୍ତି ବିବରଣ; ଆକାଶ, ଅନଳ, ପବନ ।
ପୃଥିବୀ, ଜଳ, ବାକ୍ୟ, ମନ; ବେନି ନୟନ, ବେନି କର୍ଣ୍ଣ ।
ଏମାନେ ଏକସ୍ଥାନେ ଆସି, ବୋଇଲେ ମହିମା ପ୍ରକାଶି ।
ସମସ୍ତେ ବୋଇଲେ ଏମନ୍ତ, ଆମ୍ଭେ ଯେ ସର୍ବେ ବଳବନ୍ତ ।
ଆମ୍ଭ ପ୍ରତ୍ୟେକେ ମହାବୀର, ରକ୍ଷା କରୁଁ ଏ ଶରୀର ।
ତାହାଙ୍କୁ ବୋଇଲେ ଯେ ପ୍ରାଣ, ନ କର ମିଥ୍ୟା ଅଭିମାନ
ନିଜକୁ ପଞ୍ଚଧା ବିଭକ୍ତ, କରିଣ ଧରିଛୁଁ ସମସ୍ତ ।
ଆମ୍ଭର ଯେ ପଞ୍ଚପବନ, ଶରୀର କରନ୍ତି ଧାରଣ ।
ଶୁଣିଣ ଏମନ୍ତ ବିଷୟ, ସେମାନେ ନ କଲେ ପ୍ରତ୍ୟୟ ।
ଏଥକୁ ଅଭିମାନେ ପ୍ରାଣ, ଉଠିଲେ ତେଜି ଦେହ ସ୍ଥାନ ।
ପ୍ରାଣ ଯେ ତେଜନ୍ତେ ଶରୀର, ସକଳେ ହେଲେକ ଅସ୍ଥିର ।
ମଧୁପ ଶ୍ରେଣୀ ମଧ୍ୟେ ଜାଣ, ଗୋଟିଏ ଥାଏ ଯେ ପ୍ରଧାନ ।
ଆନ ମକ୍ଷିକା ଚରଦନ, ହୋଇଣ ଥାନ୍ତି ତା ଅଧୀନ ।
ଇନ୍ଦ୍ରିୟ ମଧ୍ୟରେ ପ୍ରଧାନ, ସେପରି ସର୍ବଶ୍ରେଷ୍ଠ ପ୍ରାଣ ।
ତ ଜାଣି ଇନ୍ଦ୍ରିୟ ଯେ ସର୍ବ, ଭକ୍ତିରେ ପ୍ରାଣେ କଲେ ସ୍ତବ ।
ପ୍ରାଣକୁ ସୂର୍ଯ୍ୟରୂପେ ଜାଣ, କରନ୍ତି ଉତ୍ତାପ ପ୍ରଦାନ ।
ପ୍ରାଣ ଯେ ଅଟନ୍ତି ଅନଳ; ପ୍ରାଣ, ପବନ, ଇନ୍ଦ୍ର, ଜଳ ।
ସତ, ଅସତ ସର୍ବ ପ୍ରାଣ; ଅମୃତରୂପେ ପ୍ରାଣେ ଜାଣ ।
ରଥ ଚକ୍ରର ନାଭିଦେଶେ, ଅର ଯେ ସଂଯୁକ୍ତ ବିଶେଷେ ।
ନାଭିଦେଶର ଅର ପରି; ଇନ୍ଦ୍ରିୟେ ଛନ୍ତି ପ୍ରାଣେ ଧରି ।
ଋକ୍, ଯଜୁ, ସାମ ସମନ୍ୱିତ; ସମସ୍ତେ ପ୍ରାଣେ ପ୍ରତିଷ୍ଠିତ ।
କରିଣ ଶରୀର ଧାରଣ, କରୁଛ ଗର୍ଭେ ସଞ୍ଚରଣ ।
ପିତା ମାତାର ପ୍ରତିରୂପ, ଜନ୍ମୁଛ ସନ୍ତାନ ସ୍ୱରୂପ ।
ହେ ପ୍ରାଣ ଇନ୍ଦ୍ରିୟ ସକଳେ; ଚଳାଉ ଅଛ ତୁମ୍ଭେ ବଳେ ।
ହେ ପ୍ରାଣ ତୁମ୍ଭ ହେତୁ କନ୍ତୁ ! ଶରୀର ଭୁଞ୍ଜେ ଭୋଗ୍ୟବସ୍ତୁ ।
ହେ ପ୍ରାଣ ତୁମ୍ଭେ ହିଁ ଉତ୍ତମ , ଦେବତା ମଧ୍ୟେ ଶ୍ରେଷ୍ଠତମ ।

ସତ୍ୟ ସ୍ୱରୂପ ଆଚରଣ, କରନ୍ତି ମହାଋଷିଗଣ ।
ଯେତେକ ଅଙ୍ଗିରସ ଋଷି, ଥାଆନ୍ତି ତୁମ୍ଭ ମନ ତୋଷି ।
ଇନ୍ଦ୍ର ସ୍ୱରୂପ ତୁମ୍ଭେ ପ୍ରାଣ , ଅଟ ଯେ ବଳରେ ପ୍ରଧାନ ।
ହେ ପ୍ରାଣ ତୁମ୍ଭେ ନୁହ କ୍ଷୁଦ୍ର, ରକ୍ଷକରୂପେ ତୁମ୍ଭେ ରୁଦ୍ର ।
ଜ୍ୟୋତିଷ୍କମଣ୍ଡଳେ ପ୍ରଧାନ, ସୂର୍ଯ୍ୟ ସ୍ୱରୂପ ତୁମ୍ଭେ ପ୍ରାଣ ।
ପର୍ଯ୍ୟନ୍ୟରୂପେ ତୁମ୍ଭେ ପ୍ରାଣ, କରଣ ଥାଅ ଜଳଦାନ ।
ପ୍ରଜାଙ୍କୁ ଦେବାପାଇଁ ଅନ୍ନ, କର ଯେ ବାରି ବରଷଣ ।
ହେ ପ୍ରାଣ ତୁମ୍ଭେ ହିଁ ସଂସ୍କୃତ, ସକଳ ଦେବ ନମସ୍କୃତ ।
ସକଳ ଦ୍ରବ୍ୟର ରକ୍ଷକ, ସକଳ କାର୍ଯ୍ୟ ପ୍ରବର୍ତ୍ତକ ।
ହେ ପ୍ରାଣ ତୁମ୍ଭେ ସାରାତ୍‌ସାର ! ସକଳ ଶରୀର ଆଧାର ।
ହେ ପ୍ରାଣ ନ ହୁଅ ଉତ୍‌କ୍ରାନ୍ତ ! ଏହି ତନୁକୁ କର ଶାନ୍ତ ।
ଯେ ଦ୍ରବ୍ୟ ସ୍ୱର୍ଗେ ପ୍ରତିଷ୍ଠିତ, ସମସ୍ତ ପ୍ରାଣର ଜଡ଼ିତ ।
ଜନନୀ ଯେମନ୍ତ ସନ୍ତାନେ, ରକ୍ଷା କରନ୍ତି ସାବଧାନେ ।
ହେ ପ୍ରାଣ ଆମ୍ଭଙ୍କୁ ତେସନେ, ରଖିବା ହେଉନ୍ତୁ ଯତନେ ।
କରୁଣା କରି ଆହେ ପ୍ରାଣ, ଶ୍ରୀ ପ୍ରଜ୍ଞା କରନ୍ତୁ ପ୍ରଦାନ ।"

ଇତି ଦ୍ୱିତୀୟ ପ୍ରଶ୍ନ ।

———

## ତୃତୀୟ ପ୍ରଶ୍ନ

କୌଶଲ ଅଶ୍ୱଲ ନନ୍ଦନ, ପୁନଶ୍ଚ ପୁଚ୍ଛିଲେ ପ୍ରଶନ ।
"ବୋଲିବା ହେଉ ଭଗବାନ ! କାହିଁରୁ ଜାତ ହେଲ ପ୍ରାଣ ?
କିପରି ଜନ୍ମିଲ ଶରୀର ? କିପରି ରହିଅଛୁ ସ୍ଥିର ?
ଆଧିଦୈବିକ ଆଧିଭୂତ ? ଆଧ୍ୟାତ୍ମିକ ଯେ ଏ ସମସ୍ତ ?
କିପରି କରିଛ ଧାରଣ ? ବୋଲିବା ହେଉ ବିବରଣ ।"
ଶୁଣିଣ ଏତେକ ସମ୍ବାଦ, ବୋଇଲେ ତାଙ୍କୁ ପିପ୍‌ପଲାଦ୍ୟ ।
"ଶୁଣନ୍ତୁ ଅଶ୍ୱର ନନ୍ଦନ, ତୁମ୍ଭେ ଯେ ବ୍ରହ୍ମ ପରାୟଣ,
ପୁଚ୍ଛିଛ କଠିଣ ପ୍ରଶନ, ବୋଲିବୁଁ ଏହି ବିବରଣ ।
ପରମାତ୍ମାରୁ ଜାତ ପ୍ରାଣ, ମାନବ ଛାୟାର ସମାନ ।
ସେ ପ୍ରାଣ ଆତ୍ମାର ଆଶ୍ରିତ; ତହିଁରୁ ହୁଏଟି ବର୍ଦ୍ଧିତ ।
ମନର ସଙ୍କଳ୍ପ ବଶରେ, ବାସ କରଇ ସେ ଦେହରେ ।
ଦାସକୁ ଯେମନ୍ତ ନରେଶ, ଏମନ୍ତ କରନ୍ତି ଆଦେଶ ।
ଏ ଗ୍ରାମ କରିବ ଶାସନ, ଆତ୍ମାର ଆଦେଶ ତେସନ ।
ପ୍ରାଣ ଯେ ଆନ ଆନ ପ୍ରାଣେ, ଥାପିଅଛନ୍ତି ଦେହ ସ୍ଥାନେ
ଜନନେନ୍ଦ୍ରିୟ ମଳଦ୍ୱାରେ; ଅପାନ ବାୟୁ ବାସ କରେ ।
ମୁଖ ନାସିକା ନେତ୍ର କର୍ଣ୍ଣେ, ପ୍ରାଣ ରହିଛି ଅନୁକ୍ଷଣେ ।
ସମାନ ଥିଲେ ମଧ୍ୟସ୍ଥଳେ, ଉଦୟ ଜଠର ଅନଳେ ।
ଏ ବାୟୁରୁ କ୍ତ ପୀତ ଅନ୍ନ, ଶରୀରେ କରନ୍ତି ବହନ ।
ବ୍ୟାପିଣ ହୃଦୟର ସ୍ଥାନ, ବାସ କରନ୍ତି ପ୍ରାଣ ବ୍ୟାନ ।
ହୃଦୟେ ଏକୋତ୍ତରଶତ, ନାଡ଼ି ବିରାଜେ ଅବିରତ ।
ପ୍ରତି ନାଡ଼ିରେ ଶାଖାନାଡ଼ି, ଶତେକ ରହିଅଛି ମାଡ଼ି ।
ଶାଖାନାଡ଼ି ଯେ ପୁନର୍ବାର, ରହିଛି ବାସ୍ତରି ହଜାର ।
ପ୍ରତି ନାଡ଼ିରେ ପ୍ରାଣ ବ୍ୟାନ, କରୁଅଛନ୍ତି ବିଚରଣ ।
ସେ ନାଡ଼ି ମଧ୍ୟରେ ପ୍ରଧାନା, ଊର୍ଦ୍ଧ୍ୱଗାମିନୀ ଯେ ସୁଷୁମ୍ନା,
ସେ ନାଡ଼ି ଯୋଗେ ଜୀବଗଣ, କରନ୍ତି କାର୍ଯ୍ୟ ଆଚରଣ ।
ପୁଣ୍ୟ କର୍ମରେ ପୁଣ୍ୟଲୋକ, ପ୍ରାପ୍ତ ହୁଅନ୍ତି ସର୍ବଲୋକ ।
ପାପ କାର୍ଯ୍ୟରେ ପାପ ସ୍ଥାନେ, ଯାତ୍ରା କରନ୍ତି ଲୋକମାନେ ।
କଲେକ ପାପ ପୁଣ୍ୟ କର୍ମ, ନରଲୋକରେ ଲଭେ ଜନ୍ମ ।
ସୂର୍ଯ୍ୟ ଅଟନ୍ତି ବାହ୍ୟ ପ୍ରାଣ, ନେତ୍ରରେ ଆଲୋକ ପ୍ରଦାନ
କରଣ ଏ ଦେବ ଆଦିତ୍ୟ, ପୂର୍ବରେ ହୁଅନ୍ତି ଉଦିତ ।
ଯେଉଁ ଦେବତା ପୃଥିବୀରେ, ଅଛନ୍ତି ମାନବ ଶରୀରେ ।
ଦିଅନ୍ତି ଲୋକେ ଅଧୋଯାନ, ତାହାଙ୍କ ନାମ ଯେ ଅପାନ ।
ଯେବଣ ଦେବତା ଆକାଶ, ସମାନ ନାମରେ ପ୍ରକାଶ ।
ବ୍ୟାପ୍ତି ବିଷୟେ ଯେ ପ୍ରଧାନ; ସେହି ଦେବତା ନାମ ବ୍ୟାନ
ତେଜ ବିଷୟେ ଯେ ପ୍ରଧାନ, ତାହାଙ୍କ ନାମ ଯେ ଉଦାନ ।
ଏ ଜୀବ ମରଣ କାଳରେ, ଚିତ୍ତ ଥାଏ ଯେ ରୂପରେ,
ସେ ରୂପ ଚିତ୍ତର ସହିତ, ପ୍ରାଣରେ ହୁଅନ୍ତି ମିଳିତ ।
ସେ ଜୀବ ପାପ ପୁଣ୍ୟ ଫଳେ; ଗମନ କରେ ଯଥାସ୍ଥଳେ ।
ଅଜ୍ଞାନୀଲୋକ ଅନୁମାନେ, ପ୍ରାଣକୁ ଏପ୍ରକାର ଜାଣେ ।
ସେ ଲୋକ ପାଏ ନାହିଁ କଷ୍ଟ, ସନ୍ତାନ ହୁଏ ନାହିଁ ନଷ୍ଟ ।
ନିଜ ସୁକୃତେ ସେହି ନର, ନିଶ୍ଚୟ ହୁଏଟି ଅମର !
ପ୍ରାଣ ଉତ୍ପତ୍ତି ଆଗମନ; ସ୍ଥିତି, କର୍ତ୍ତୃତ୍ୱ ଯେ ଗମନ,
ଏ ପଞ୍ଚ ହେଲେ ଅବଗତ, ନିଶ୍ଚେ ସେ ଲଭେ ଅମରତ୍ୱ ।"

ଇତି ତୃତୀୟ ପ୍ରଶ୍ନ ।

## ଚତୁର୍ଥ ପ୍ରଶ୍ନ

ସୂର୍ଯ୍ୟଙ୍କ ପୁତ୍ର ମହାଭାଗ, ତାହାଙ୍କ ନାମ ଅଟଇ ଗାର୍ଗ୍ୟ ।
"ପୁଚ୍ଛିଲେ ଆହେ ଭଗବାନ ! ବୋଲନ୍ତୁ ଏହି କଥାମାନ ।
କେବଣ ଇନ୍ଦ୍ରିୟ ନିଦ୍ରାରେ, ଥାଏ ଯେ ମାନବ ଦେହରେ ?
କେବଣ ଦେବତା ସତତ, ଥାଆନ୍ତି ଦେହରେ ଜାଗ୍ରତ ?
କେ ଶକ୍ତ ଦେଖେ ସ୍ୱପ୍ନ ସବୁ ? କେ ସୁଖ କରେ ଅନୁଭବ ?
ହୋଇଣ ଇନ୍ଦ୍ରିୟେ ମିଳିତ, କାହିଁରେ ଥାନ୍ତି ପ୍ରତିଷ୍ଠିତ ?
ଶୁଣିଣ ଏତେକ ସମ୍ବାଦ, ବୋଇଲେ ଋଷି ପିପ୍‌ପଳାଦ୍ୟ ।
"ଶୁଣନ୍ତୁ ହେ ଗାର୍ଗ୍ୟ ! ଚଳିତ; ହେଲେକ ସୂର୍ଯ୍ୟ ଅସ୍ତମିତ ।
ସୂର୍ଯ୍ୟର ସମସ୍ତ କିରଣ, ତା ସଙ୍ଗେ କରଇ ଗମନ ।
ପୁନଶ୍ଚ ହେଲେକ ଉଦିତ, ହୁଏ କିରଣ ପ୍ରକାଶିତ ।
ତେସନେ ଇନ୍ଦ୍ରିୟ ବିଷୟ, ମନରେ ଥାଆନ୍ତି ବିଲୟ ।
ଆଘ୍ରାଣ, ଦର୍ଶନ, ଶ୍ରବଣ; ସ୍ପର୍ଶ, ଗ୍ରହଣ, ଆସ୍ୱାଦନ ।
ଗମନ, ଧାବନ, ମନନ; ଏ ସବୁ କରିଥାନ୍ତି ମନ ।
ନ ଥିଲେ ଏହି ସବୁ କଥା, ତାହାକୁ ବୋଲି ନିଦ୍ରାବସ୍ଥା ।
ଶରୀରସ୍ୱରୂପ ଗୃହରେ, ପ୍ରାଣାଗ୍ନି ମାତ୍ର ସେ କାଳରେ ।
କେବଳ ଥାଆନ୍ତି ଜାଗ୍ରତ; ଗୃହରକ୍ଷିତ ଅଗ୍ନିବତ ।
ପ୍ରାଣାଦି ଯେ ପଞ୍ଚ ପବନ, କରନ୍ତି ଦେହେ ବିଚରଣ ।
ଅପାନ ଅଗ୍ନି ଗାର୍ହ୍ୟପତ୍ୟ, ବ୍ୟାନ ଯେ ଦକ୍ଷିଣାଗ୍ନି ବତ ।
ଆହବନୀୟ ଅଗ୍ନି ପ୍ରାଣ, ହୋତାଗ୍ନି ଅଟନ୍ତି ସମାନ ।
ଶ୍ରୋତ୍ରାଦି ହେଲେ ଅଚେତନ, ମନ ଯେ ଦେଖଇ ସ୍ୱପନ-
ଦୃଷ୍ଟ ଅଦୃଷ୍ଟ ଶ୍ରୁତା ଶ୍ରୁତ-ଅନନୁ ଭୂତ ଅନୁଭୂତ,
ପୁଣି ବିବିଧ ବିବରଣ, ସ୍ୱପ୍ନରେ ଦେଖୁଥାଇ ମନ ।
ନ ହେଲେ ସ୍ୱପ୍ନ ଅନୁଭୂତ, ତାହାଙ୍କୁ ବୋଲନ୍ତି ସୁଷୁପ୍ତି ।
ହେ ସୌମ୍ୟ ଏଥିର ବୃତ୍ତାନ୍ତ, ଦେବ ମୁଁ ଗୋଟିଏ ଦୃଷ୍ଟାନ୍ତ ।
ଯେପରି ପକ୍ଷୀ ନାନା ଜାତି, ବୃକ୍ଷ ଆଶ୍ରୟ କରିଥାନ୍ତି ।
ତେସନେ ବିଷୟ ମିଳିତ, ପରମାତ୍ମାରେ ପ୍ରତିଷ୍ଠିତ ।
ଦର୍ଶନ, ସ୍ପର୍ଶନ, ମନନ; ଭୋଜନ, ଗମନ, ଧାବନ ।
ଯେ ଏହା କରନ୍ତି ସନ୍ତୋଷେ, ସେ ଥାନ୍ତି ଅକ୍ଷୟ ପୁରୁଷେ ।
ତମୋବର୍ଜିତ ଦେହାତୀତ, ସକଳ ଗୁଣରୁ ରହିତ,
ଏହା ଯେ ଜାଣଇ ଗୋଚରେ, ପାଏ ସେ ପୁରୁଷ ଅକ୍ଷରେ ।
ଅକ୍ଷର ପୁରୁଷେ ଯେ ଜାଣେ, ଚରମେ ଯାଏ ସେହି ସ୍ଥାନେ ।

ଇତି ଚତୁର୍ଥ ପ୍ରଶ୍ନ ।

---

## ପଞ୍ଚମ ପ୍ରଶ୍ନ

ଶିବିଙ୍କ ପୁତ୍ର ସତ୍ୟକାମ, ଶୈବ୍ୟ ଯେ ତାଙ୍କ ଅନ୍ୟ ନାମ ।
ପୁଚ୍ଛିଲେ ଏହି କଥାମାନ, ବୋଲିବା ହେଉ ଭଗବାନ !
"ଯେ ସବୁ ଲୋକ ଜ୍ଞାନବନ୍ତ, ମରଣ ସମୟ ପର୍ଯ୍ୟନ୍ତ ।
ଓଁ କାର କରୁଥାନ୍ତି ଧ୍ୟାନ, ସେ ସବେ ପାନ୍ତି କେଉଁ ସ୍ଥାନ ?"
ସତ୍ୟକାମର ବାକ୍ୟଶୁଣି, ବୋଇଲେ ପିପ୍‌ପଳାଦ୍ୟ ମୁନି ।
ଶୁଣିବା ହେଉ ସତ୍ୟକାମ ! ଓଁ କାର ପରାପର ବ୍ରହ୍ମ,
ଉପାୟ ଯୋଗେ ଏହା ଜାଣି, ଉଭୟୁ ଏକ ପ୍ରାପ୍ତେ ପ୍ରାଣୀ,
ଅକାର ମାତ୍ର ଏକ ବର୍ଣ୍ଣ, ତାହାକୁ କେହି କଲେ ଧ୍ୟାନ,
ପୃଥ୍ୱୀରେ ଜନମ ଗ୍ରହଣ, ପୁନଶ୍ଚ କରେ ସେହି ଜନ ।
ଋକ୍ ମନ୍ତ୍ରେ ହୋଇ ଆକର୍ଷିତ, ହୁଏ ଲୋକରେ ଉପସ୍ଥିତ ।
ତପସ୍ୟା ବ୍ରହ୍ମଚର୍ଯ୍ୟ ଭକ୍ତି, ତହିଁରେ ଥାଏ ତାହା ମତି ।
ଦ୍ୱିତୀୟ ବର୍ଣ୍ଣ ଯେ ଉକାର, ଯେ ଧ୍ୟାନ କରେ ବାରମ୍ବାର
ପ୍ରାଣାନ୍ତ ହେଲେ ସେହି ଜନ, ଆକାଶେ କରଇ ଗମନ ।
ଯଜୁ ମନ୍ତ୍ରରେ ସେହି ଲୋକ, ପ୍ରାପ୍ତ ହୁଅନ୍ତି ସୋମଲୋକ ।
ମହିମା ପ୍ରକାଶି ସେଥିରେ, ପୁନଶ୍ଚ ମିଳେ ପୃଥିବୀରେ ।
ତ୍ରିମାତ୍ରାଯୁକ୍ତ ଯେ ଓଁ କାର, ଯେ ଧ୍ୟାନ କରେ ବାରମ୍ବାର,
ସୂର୍ଯ୍ୟଲୋକରେ ଉପନୀତ, ସେ ଲୋକ ହୁଅନ୍ତି ନିଶ୍ଚିତ ।
ପାପରୁ ମୁକ୍ତ ସେହି ଲୋକ, ସର୍ପ ଯେମନ୍ତେ ତେଜେ ତ୍ୱକ ।
ସାମ ମନ୍ତ୍ରରେ ବ୍ରହ୍ମଲୋକେ, ମିଳନ୍ତି ଯାଇ ସେହି ଲୋକେ ।
ବ୍ରହ୍ମାଣ୍ଡ ସବୁ ଜୀବାଧାର, ହିରଣ୍ୟଗର୍ଭ ଜାଣ ସାର ।
ଆପଣା ପୁଣ୍ୟବଳେ ଜନ, ତାହାଙ୍କୁ କରନ୍ତି ଦର୍ଶନ ।
ଓଁ କାର ତ୍ରିବର୍ଣ୍ଣ ସଂଯୁକ୍ତ, ସୁଷୁପ୍ତି ସ୍ୱପ୍ନ ବା ଜାଗ୍ରତ ।
ଏ ତିନି ଅବସ୍ଥାରେ ଦେବ, ଅଛନ୍ତି ତାଙ୍କୁ ଜ୍ଞାତ ହେବ ।
ବ୍ରହ୍ମ ପଦାର୍ଥେ ଯେ ନ ଜାଣେ, କିପରି ଯିବ ବ୍ରହ୍ମସ୍ଥାନେ ।

ଓଁକାର ବର୍ଣ୍ଣ ଅବଦାତ, ନୁହେ ସେ କେବେ ବିରଳାତ,
ଋକ୍ ମନ୍ତ୍ରେ ପ୍ରାପ୍ତ ସେହି ଲୋକ, ଯଜ୍ ମନ୍ତ୍ରରେ ଅନ୍ତରୀକ୍ଷ ।
ସାମ ମନ୍ତ୍ରରେ ସେହି ସ୍ଥାନ, ଯାହା ଲଭନ୍ତି ଜ୍ଞାନଗଣ ।
ଓଁକାର ସାଧନ ବଳରେ, ଲଭନ୍ତି ମୁକ୍ତି ଜ୍ଞାନୀ ନରେ ।"

ଇତି ପଞ୍ଚମ ପ୍ରଶ୍ନ ।

———

## ଷଷ୍ଠ ପ୍ରଶ୍ନ

ସୁକେଶା ଭରଦ୍ୱାଜ ସୁତ, ପୁଚ୍ଛିଲେ ହୋଇ ଶ୍ରଦ୍ଧାଯୁତ ।
ଏକଦା, ଆହେ ମହାଭାବ ! କୋଶଳବାସୀ ହିରଣାଭ-
ନାମରେ ରାଜାଙ୍କ ନନ୍ଦନ, ଆସିଣ କଲେକ ପ୍ରଶନ—
"ହେ ଭରଦ୍ୱାଜଙ୍କ କୁମର, ଦେଉନ୍ତୁ କଥାରେ ଉତ୍ତର—
ଷୋଡ଼ଶ କଳା ପୁରୁଷଙ୍କୁ, ଜାଣ କି ବୋଲିବା ଆମ୍ଭକୁ ।
ବୋଇଲି ସେ ରାଜନନ୍ଦନେ, ଏପରି ପୁରୁଷେ ନ ଜାଣେ ।
ଜାଣିଲେ ସେହି ପୁରୁଷଙ୍କୁ, ଅବଶ୍ୟ ବୋଲନ୍ତୁ ତୁମ୍ଭଙ୍କୁ
ହେ ରାଜପୁତ୍ର ସେଥିପାଇଁ, ଜାଣ ମୁଁ ମିଥ୍ୟା ବୋଲ ନାହିଁ ।
ମିଥ୍ୟାବାଦୀ ଯେ ପାଏ ଦୁଃଖ, ସମୂଳେ ପୁଣି ହୁଏ ଶୁଷ୍କ ।
ତା ଶୁଣି ସେ ରାଜନନ୍ଦନ, ଗୃହକୁ କଲେକ ଗମନ ।
ବୋଲିବା ହେଉନ୍ତୁ ଗୋସାଇଁ,ସେହି ପୁରୁଷ ଛନ୍ତି କାହିଁ ।"
ଶୁଣିଣ ଏତେକ ସମ୍ବାଦ, ବୋଇଲେ ତହୁଁ ପିପ୍‌ପଲାଦ୍ୟ,
"ହେ ସୌମ ଜାଣିବ ନିତାନ୍ତ,ଷୋଡ଼ଶ କଳା ଯହୁଁ ଜାତ ।
ସେ ମହାପୁରୁଷଙ୍କୁ ଜାଣ, ହୃଦୟେ ଛନ୍ତି ବର୍ତ୍ତମାନ ।
ସେହି ପୁରୁଷ କଲେ ଚିନ୍ତା, କେ ହେବ ଦେହର ନିୟନ୍ତା
ମନରେ ଭାବିଣ ଏସନ, ପ୍ରାଣକୁ କଲେକ ସୃଜନ ।
ପ୍ରାଣରୁ ଜନ୍ମିଲା ଗଗନ, ପୃଥିବୀ ସଲିଳ ପବନ;
ଇନ୍ଦ୍ରିୟ, ଜ୍ୟୋତି,ଅନ୍ନ, ମନ; ଏ ସବୁ ହେଲେ ଉତ୍ପନ୍ନ ।
ଅନ୍ନରୁ ବୀର୍ଯ୍ୟ ହେଲା ଜାତ,ତପସ୍ୟା ମନ୍ତ୍ରାଦି ସମସ୍ତ ।
ଯେପରି ହୁଏ ଆତ ଯାତ, ସେଥିର ଦେଖନ୍ତୁ ଦୃଷ୍ଟାନ୍ତ ।
ଯେସନେ ନଦୀ ପ୍ରବାହିତ, ସାଗରେ ହେଲେକ ମିଳିତ ।
ହେଲେହେଁ ନଦୀ ଭିନ୍ନଭିନ୍ନ, ନ ଥାଏ ସେମାନଙ୍କ ଚିହ୍ନ ।
ସାଗରରୂପେ ପରିଣତ, ହୁଅନ୍ତି ସେ ନଦୀ ସମସ୍ତ ।
ସେପରି ପ୍ରାଣ ଭିନ୍ନ ଭିନ୍ନ, ପରମବ୍ରହ୍ମେ ହୁଏ ଲୀନ ।
ପୁରୁଷ ଚିହ୍ନ ଥାଏ ନାହିଁ, ବ୍ରହ୍ମରୂପରେ ମିଳେ ଯାଇ ।
ପୁରୁଷ କଳା ଛନ୍ତି ଧରି, ଚକ୍ର ନାଭିରେ ଅର ପରି ।
ସେହି ପୁରୁଷେ ଅବଗତ, ହେଲେକ ଜାଣିବ ସମସ୍ତ ।
ଜାଣିଲେ ଏହି ସବୁ କଥା, ମୃତ୍ୟୁ ନ ଦେଇପାରେ ବ୍ୟଥା
ପିପ୍‌ପଲାଦ୍ୟଙ୍କ ଶ୍ରୀଚରଣେ, ଓଳଗି ହୋଇ ଋଷିଗଣେ—
ବୋଇଲେ ତାଙ୍କୁ ବାରେ ବାରେ,ନେଇଅବିଦ୍ୟାପରପାରେ
ଋଷିମାନଙ୍କୁ ନମସ୍କାର, ଋଷିମାନଙ୍କୁ ନମସ୍କାର ।"

ଇତି ଷଷ୍ଠ ପ୍ରଶ୍ନ
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ହରିଃ ଓଁ ।

———

## କୃଷ୍ଣ ଯଜୁର୍ବେଦୀୟା କଠୋପନିଷତ୍
## ପ୍ରଥମା ବଲ୍ଲୀ

ବାଜଶ୍ରବା ଯେ ଯଜ୍ଞଫଳ-ପ୍ରାପ୍ତିରେ ହୋଇ କୌତୂହଳ ।
କରି ଯଜ୍ଞେକ ଅନୁଷ୍ଠାନ, ସର୍ବସ୍ୱ କରିଥିଲେ ଦାନ ।
ତାହାଙ୍କ ପୁତ୍ର ନାଚିକେତା, ଅତ୍ୟନ୍ତ ସର୍ବ ଗୁଣବେତ୍ତା ।
ହେଲେହେଁ ବୟସେ ବାଳକ, ପ୍ରବୀଣ ବିବେକୀ ମାନିକ
ପିତା ଗୋଦାନ ସମୟରେ, ଦେଖିଲେ ବସିଣ ପାଶରେ ।
ଦେଖିଣ ଦାନର ବେଭାର,ମନରେ କଲେ ସେ ବିଚାର ।
ଯେ ଗାଈ ହୋଇଅଛି ବୃଦ୍ଧା,ଭକ୍ଷି ନ ପାରେ ତୃଣ ସୁଦ୍ଧା
କରି ନ ପାରେ ଜଳପାନ, ଅଥବାକେବେ ଦୁଗ୍‌ଧଦାନ ।
ପ୍ରସବ କରିବାର ଶକ୍ତି, ହୋଇଛି ଗତ ଯେ ଦୁର୍ମତି ।
ଏମନ୍ତ ଗାଈ କରେ ଦାନ,ପାଏ ସେ ଅନନ୍ଦାରେ*ସ୍ଥାନ

* ଅନନ୍ଦା—ନିରାନନ୍ଦମୟ ସ୍ଥାନ ।

ସେ ପୁତ୍ର ପୁଚ୍ଛିଲେ ପିତାଙ୍କୁ, ମୋତେ ସେ ଦେବେଟି କାହାକୁ
ପୁଚ୍ଛନ୍ତେ ମଧ୍ୟ ଥର ଥର, ପିତା ସେ ନ ଦେଲେ ଉତ୍ତର ।
ତୃତୀୟ ଥର ନାଚିକେତା, ପୁଚ୍ଛନ୍ତେ ରୁଷ୍ଟ ହୋଇ ପିତା ।
ବୋଇଲେ ଉଚ୍ଚରେ ପୁତ୍ରକୁ, "ତୁମ୍ଭଙ୍କୁ ଦେବୁ ସେ ଯମକୁ"
ସେ ନାଚିକେତା ଏହା ଶୁଣି; ବିଚାର କଲେ ମନେ ଗୁଣି
ମୁଁ ନୁହେ ଅଧମ ସନ୍ତାନ, ମଧ୍ୟ ମୁଁ ଅଟେ ଗୁଣବାନ ।
ନୁହେ ମୁଁ ଦୁର୍ମତି ନିର୍ବୋଧ,କିପାଇଁ ପିତା କଲେ କ୍ରୋଧ ?
କିପାଇଁ ଯମର ଭବନେ, ପେଷିଲେ ମୋତେ କ୍ରୋଧମନେ ?
ଅବା କି କାର୍ଯ୍ୟ ସାଧିବାକୁ, ପେଷିଲେ ମୋତେ ଯମଠାକୁ ?
ଏଥି ଉତ୍ତରେ ନାଚିକେତା, ଭାଳିଲେ ଧରି ମନେଚେତା ।
ଯମଙ୍କ ଅଛି କିବା କାର୍ଯ୍ୟ,ସାଧିବେ ମୋହ ଯୋଗେ ଆଜ ।
ଏଥକୁ ପିତା ବର୍ତ୍ତମାନ, ପଠାଉଛନ୍ତି ତାଙ୍କ ସ୍ଥାନ ।
ସେ ନାଚିକେତା ଅନନ୍ତରେ,ବୋଇଲେ ଯାଇ ଜନକରେ
"ହେ ପିତଃ ପୂର୍ବ ମହାଜନ, କରିଅଛନ୍ତି ଆଚରଣ ।
ସମ୍ପ୍ରତି ବିଜ୍ଞ ଲୋକମାନେ, ନିଯୁକ୍ତ ସାଧୁ ଅନୁଷ୍ଠାନେ ।
ସେ ସବୁ କରି ଆଲୋଚନା, ନ ହୁଅ ଆପଣ ବିମନା ।
ବିଚାର ଏହି ସବୁ ତତ୍ତ୍ୱ, ପାଳନ୍ତୁ ଆପଣାର ସତ୍ୟ !
ମରୁ ଅଛନ୍ତି ଲୋକମାନେ, ନିଶ୍ଚିତ ଶସ୍ୟର ସମାନେ ।
ମରି ଜନ୍ମନ୍ତି ପୁନର୍ବାର, ଏହି ପ୍ରାଣୀଙ୍କ ବ୍ୟବହାର;
କରିଣ ମିଥ୍ୟା ଆଚରଣ, ଜିଣି କି ପାରିବ ମରଣ ?
ଏଥକୁ ତୁମ୍ଭେ କି କାରଣ, କରିବ ମିଥ୍ୟା ଆଚରଣ ?
ମୋତେ ପଠାଇ ଯମାଳୟେ, ସତ୍ୟପାଳନ୍ତୁ ଏ ସମୟେ ।"
ପିତା ଶୁଣିଣ ଏ ବିଷୟ, ପୁତ୍ରେ ପେଷିଲେ ଯମାଳୟ ।
ସେ ନାଚିକେତା ସେ କାଳରେ,ମିଳିଲେ ଯମଙ୍କ ନଗରେ
ଯମ ଯେ ସେହି ସମୟରେ, ନ ଥିଲେ ଆପଣା ଗୃହରେ ।
ତିନି ଦିବସ ତିନି ରାତି, ସେ ନାଚିକେତା ତହିଁ ଥାନ୍ତି ।
ଏଥି ଉତ୍ତରେ ଯମରାଜ, ଆଇଲେ ଗୃହେ ସାରି କାର୍ଯ୍ୟ ।
ଯମ ଆତ୍ମୀୟଗଣେ ଯାଇ, ବୋଇଲେ ଯମକୁ ବୁଝାଇ—
"ଜଣେକ ଅତିଥି ବ୍ରାହ୍ମଣ, କରିଅଛନ୍ତି ଆଗମନ ।
ସେ ବିପ୍ର ଅନଳ ସମାନେ, ଦେଖନ୍ତୁ ଯାଇ ବିଦ୍ୟମାନେ ।
ପାଦାର୍ଘ୍ୟ ଦେଇ ସେ ବ୍ରାହ୍ମଣେ, ପୂଜନ୍ତୁ ଯାଇ ଏହିକ୍ଷଣେ
ଅତିଥି ବିପ୍ର ଯାହା ବାସେ, ଆସି ରହନ୍ତି ଉପବାସେ ।
ସେ ଲୋକ ଆକାଂକ୍ଷା ପ୍ରତ୍ୟାଶା, ଐଶ୍ୱର୍ଯ୍ୟ ସକଳଭରସା ।
ସାଧୁସଙ୍ଗମ ପ୍ରିୟବାକ୍ୟ, ଯାଗଯଜ୍ଞର ଫଳପାକ ।
ବାପୀ, କୂପାଦି ସାଧାରଣ; ହିତକାରକ କାର୍ଯ୍ୟମାନ ।
ଏଥିରୁ ଜାତ ଯେଉଁ ପୁଣ୍ୟ, ବଂଶ ମର୍ଯ୍ୟାଦା ସବୁ ଗୁଣ,
ପଶୁ ସମ୍ପତ୍ତି ସଙ୍ଗେ ବଂଶ, ଏ ସବୁ ହୋଇଯାଏ ଧ୍ୱଂସ ।"
ସେ ନାଚିକେତା ବିପ୍ରେ ବୁଝି,ବୋଇଲେ ତହୁଁ ଜନ୍ତୁସାଇଁ ।
"ହେ ବିପ୍ରବର ବାରମ୍ବାର, କରେ ତୁମ୍ଭଙ୍କୁ ନମସ୍କାର ।
ଦେବତା ସମାନେ ଅତିଥି, ମୋହ ଗୃହକୁ ଆସିଛନ୍ତି ।
ଏଥକୁ ଅଟନ୍ତି ନମସ୍ୟ, ପୂଜିବି ତୁମ୍ଭଙ୍କୁ ଅବଶ୍ୟ ।
ତିନି ରଜନୀ ଅନାହାରେ, ଥିଲେ ଆପଣ ମୋହ ଘରେ ।
ଏଥି ସକାଶେ ବିପ୍ରବର, ଦେବି ମୁଁ ତିନି ଗୋଟି ବର ।
କରୁଣା କରି ମହାମନା, କରନ୍ତୁ ଏ ବର ପ୍ରାର୍ଥନା ।"
ସେ ନାଚିକେତା ଶୁଣି ଏତେ,"ବୋଇଲେ ଆହେ ଜନ୍ତୁପତେ
ଦେଉନ୍ତୁ ଏ ବର ପ୍ରଥମ, ମୋର ଏ ଜନକ ଗୌତମ ।
ମୋ ପାଇଁ ନ ହୋଇ ବ୍ୟାକୁଳ, ଭୁଞ୍ଜନ୍ତୁ ଗୃହର କୁଶଳ ।
ସୁସ୍ଥିର ହେଉ ତାଙ୍କ ମନ, ମୋ ପ୍ରତି ହେଉନ୍ତୁ ପ୍ରସନ୍ନ ।
ବାହୁଡ଼ି ଯାଇ ଗୃହଠାକୁ, କୁଶଳେ ଦେଖିବି ପିତାଙ୍କୁ ।
ସ୍ନେହରେ ଯେମନ୍ତ ପିଯୁର,କରିବେ ମୋତେ ସମାଦର ।"
ବୋଇଲେ ଯମ ଏହା ଶୁଣି, "ତୁମ୍ଭର ଜନକ ଆରୁଣି—
ତୁମ୍ଭଙ୍କୁ ଯେରୂପ ପୂର୍ବରେ, ଦେଖୁଣ ଥିଲେ ସେ ସ୍ନେହରେ ।
ସମ୍ପ୍ରତି ଆମ୍ଭର ଆଜ୍ଞାରେ, ସ୍ନେହ ରଖିବେ ତୁମ୍ଭଠାରେ ।
ବର ପ୍ରଭାବେ ମହାତ୍ମନ, ତୁମ୍ଭଙ୍କୁ ପାରିବେ ସେ ଚହ୍ନି ।
ନିର୍ମଳ ହେବ ତାଙ୍କ ମନ, ସୁଖରେ କରିବେ ଶୟନ ।
କ୍ରୋଧ ନ ଥିବ ତୁମ୍ଭ ପ୍ରତି; ନିଶ୍ଚିନ୍ତ ହୁଅ ମହାମତି ।"
ବୋଇଲେ ଆରୁଣି ତନୟ *, ସ୍ୱର୍ଗରେ ନାହିଁ କିଛି ଭୟ ।
ତୁମ୍ଭେ ଯେ ମୃତ୍ୟୁ ସେ ସ୍ଥାନରେ,ପ୍ରବେଶି ନ ପାର ଭୟରେ
କ୍ଷୁଧା ବା ତୃଷ୍ଣା ଏ ଉଭୟ, ଜରା ବା ବ୍ୟାଧି ହେତୁ ଭୟ
କିଛି ହିଁ ନାହିଁ ସେ ସ୍ଥାନରେ, ସମସ୍ତେ ଥାନ୍ତି ଆନନ୍ଦରେ ।

* ଆରୁଣିତନୟ—ନାଚିକେତ ।

ଶୁଣିବା ହେଉନ୍ତୁ ଶମନ, ସେ ସ୍ୱର୍ଗ ପ୍ରାପ୍ତିର ସାଧନ ।
ଅଗ୍ନି କେବଳ ପ୍ରବର୍ତ୍ତିକ, ତାହାଙ୍କୁ ଅର୍ଚ୍ଚନା କଲେକ ।
ଲଭନ୍ତି ସ୍ୱର୍ଗ ଅମୃତତ୍ତ୍ୱ, ତୁମ୍ଭେ ତ ଥିବ ଅବଗତ ।
କର ଦ୍ୱିତୀୟ ବର ଦାନ, ମୁଁ ଯେହ୍ନେ ହୋଇ ଶ୍ରଦ୍ଧାବାନ ।
ଅର୍ଚ୍ଚିବି ଅଗ୍ନି ଉପାସନା, କରିବି ଏତିକ ପ୍ରାର୍ଥନା ।"
ବୋଇଲେ ଯମ ଏହା ଶୁଣି, "ଶୁଣନ୍ତୁ ନାଚକେତା ମୁନି ।
ଅଗ୍ନିର ସ୍ୱରୂପ ମହାତ୍ମ୍ୟ, ବିଶେଷ ଅଛୁଁ ଅବଗତ ।
ସେହି ଅଗ୍ନିର ବିବରଣ, ବୋଲିବୁଁ କରନ୍ତୁ ଶ୍ରବଣ ।
ଅନନ୍ତ ଲୋକ ପ୍ରାପ୍ତି ହେତୁ, ଅଟନ୍ତି ସେହି ଅଗ୍ନି ସେତୁ ।
ଜଗତ ଲୋକର ଆଶ୍ରୟ, ଅଟନ୍ତି ଅଗ୍ନି ତେଜୋମୟ ।
କର୍ମଠ ବୁଦ୍ଧିର ସହିତ, ଅଛନ୍ତି ସେ ଅଗ୍ନି ନିହିତ ।
ଏ ରୂପ ଅଗ୍ନିର ବିଷୟ, ବୋଇଲେ ସୂର୍ଯ୍ୟଙ୍କ ତନୟ ।
ଯେରୂପେ ଅଗ୍ନିଙ୍କୁ ଚୟନ, ବୋଇଲେ ସେହି ବିବରଣ ।
ନାଚକେତାଙ୍କ ବ୍ୟବହାର, ଦେଖିଣ ଯମ ପୁନର୍ବାର ।
ବୋଇଲେ ଆହେ ବିପ୍ରବର, ଦେଉଛୁ ଆଉ ଏକ ବର ।
ତୁମ୍ଭ ନାମରେ ଅଗ୍ନି ଦେବେ, ଜଗତେ ପ୍ରକାଶିତ ହେବେ
ଏ ରତ୍ନମାଳା ଶବ୍ଦବତୀ, ଦେଉଛୁଁ ପାଶେ ରଖ ସତି ।
ଜନକ ଜନନୀ ଆଚାର୍ଯ୍ୟ—ଆଜ୍ଞାକୁ କରି ଶିରୋଧାର୍ଯ୍ୟ ।
ସୁଶୀଳ ଧୀର ସାଧୁଜନ, କରିବେ ଅଗ୍ନିକୁ ଚୟନ ।
ଚୟନ କରି ତିନି ବାର, କରିବେ ଯଜ୍ଞରେ ବେଭାର ।
ଯଜ୍ଞ ଯେ ଅଧ୍ୟୟନ ଦାନ, ଏ ତିନି କରି ସମାଧାନ ।
ପ୍ରାପ୍ତ ହୋଇଣ ସର୍ବ କର୍ମ, କରନ୍ତି ମୃତ୍ୟୁ ଅତିକ୍ରମ ।
ଯେତେକ ବସ୍ତୁ ଜଗତରେ, ବ୍ୟାପ୍ତ ରହିଛି ଚରାଚରେ ।
ସକଳ ବ୍ରହ୍ମରୁ ଉତ୍ପନ୍ନ, ଏହା ଯେ ଜାଣେ ବିଜ୍ଞଜନ,
ବ୍ରହ୍ମକୁ ଦେଖି ବ୍ରହ୍ମାଣ୍ଡରେ, ପରମ ଶାନ୍ତି ଲାଭ କରେ ।
ସାଧୁ ସୁଶୀଳ ଶୁଦ୍ଧାଚାରୀ, ତିନିଟି ଅଗ୍ନି ଚୟକାରୀ ।
ଜାଣି ଚୟନ ବିବରଣ, କଲେକ ଅଗ୍ନିକୁ ଚୟନ ।
ହୋଇ ସେ ସର୍ବ ଗୁଣଯୁତ, ମୃତ୍ୟୁ ବନ୍ଧନୁ ହୁଏ ମୁକ୍ତ ।
ଅଧର୍ମ ବିଚ୍ଛେଦ ଅଜ୍ଞାନ, ନ ଥାଏ ତାର ଏହିମାନ ।
ହୋଇଣ ସେହି ଶୋକାତୀତ, ହୁଅନ୍ତି ସ୍ୱର୍ଗେ ଆନନ୍ଦିତ ।
ହେ ବାଜଶ୍ରବାଙ୍କ କୁମର, ପାଇଲ ଦୁଇ ଗୋଟି ବର ।
ପୁଣି ଯେ ଆମ୍ଭେ ଆନନ୍ଦରେ, ବରେକ ଦେଲୁଁ ଅଧିକରେ ।
ତୃତୀୟ ବର ବର୍ତ୍ତମାନ, ପ୍ରାର୍ଥନା କର ଜ୍ଞାନବାନ ।"
ବୋଇଲେ ପୁଣି ନାଚକେତା, "ବୋଲନ୍ତୁ ଆହେ ସର୍ବବେତ୍ତା ।
ମୃତ ମାନବ ସମ୍ବନ୍ଧରେ, କଥିତ ବିବିଧ ରୂପରେ ।
କେବୋଲେ ପରକାଳ ନାହିଁ, କେବୋଲେ ଅଛି ସେଥିପାଇଁ
କିଛିହିଁ ନ ପାଇ ନିଶ୍ଚୟ, ଅନେକେ କରନ୍ତି ସଂଶୟ ।
ଏ କଥା ବିସ୍ତାରି ବିଶେଷ, ଦେଉନ୍ତୁ ମୋତେ ଉପଦେଶ ।
ତୃତୀୟ ବର ଜନୁସରଣ, କରିବାହେଉ ମୋତେ ଦାନ ।"
ବୋଇଲେ ଏତେ ଶୁଣି ଯମ, "ତୁମ୍ଭର ପ୍ରାର୍ଥନା ବିଷମ ।
ଦେବତାମାନେ ଏ ବିଷୟେ, ଅଛନ୍ତି ବିଷମ ସଂଶୟେ ।
ଏ ପରକାଳର ଘଟଣା, ଲୋକମାନଙ୍କୁ ନାହିଁ ଜଣା ।
ମୁଁ କରି ନ ପାରେଁ ପ୍ରକାଶ, ତେଜନ୍ତୁ ଏହି ଅଭିଳାଷ ।
ହେ ବାଜଶ୍ରବାଙ୍କ କୁମର, ମାଗିବା ହେଉ ଆନ ବର ।"
ବୋଇଲେ ପୁଣି ନାଚକେତା, "ହେ ମୃତ୍ୟୁ ଆହେ ଧର୍ମବେତ୍ତା
ବୋଲୁଛ ତୁମ୍ଭେ ଏ ବିଷୟ, ଦେବତାମାନଙ୍କ ସଂଶୟ ।
ଆଉ କେ ତୁମ୍ଭର ସମାନେ, ଏ ଗୂଢ଼ ତତ୍ତ୍ୱ କଥା ଜାଣେ ?
ବୋଲନ୍ତୁ ଏହି ବିବରଣ, ଆନ ବରରେ ପ୍ରୟୋଜନ ।
ନାହିଁ ମୋ ଜାଣିବ ନିଶ୍ଚୟ, ବୋଲନ୍ତୁ ଏ ତତ୍ତ୍ୱ ବିଷୟ ।"
ବୋଇଲେ ଏତେ ଶୁଣି ଯମ, "ହେ ବିପ୍ର ଆହେ ବିଜ୍ଞତମ ।
ଶତେକ ବର୍ଷ ହେବ ଆୟୁ, ଏପରି ପୁତ୍ରଗଣ ଆଉ ।
ଅଶ୍ୱ ମାତଙ୍ଗ ପଶୁ ସ୍ୱର୍ଣ୍ଣ, ଐଶ୍ୱର୍ଯ୍ୟ ଦାସ ଦାସୀଗଣ ।
ପୁଣି ପୃଥିବୀ ମଧ୍ୟେ ରାଜ, ମାଗନ୍ତୁ ବର ଦେବି ଆଜ ।
ତୁମ୍ଭର ଯେତେ ବର୍ଷ ଆୟୁ, ମାଗିଲେ ବର ଦେବା ଆଉ ।
ଯା କିଛି କରିବ କାମନା, ଦେବି ମୁଁ ବର ନାହିଁ ମନା ।
ହେ ବିପ୍ର କାମ୍ୟ ବସ୍ତୁ ସର୍ବ, ମର୍ତ୍ତ୍ୟରେ ଯା କିଛି ଦୁର୍ଲଭ
ସେ ସର୍ବ କଲେକ କାମନା, ଦେବି ମୁଁ ବର ମହାମନା ।
ସଙ୍ଗୀତନିପୁଣା କାମିନୀ, ଦୋଳା ବାରଣେ ବିହାରିଣୀ ।
ଲାବଣ୍ୟମୟୀ ନାରୀ ସର୍ବେ, କଦାଚ ନ ପାନ୍ତି ମାନବେ ।
ଦେବି ମୁଁ ବର ଏହି ନାରୀ, ନିବୃତ୍ତି ହୁଅ ବ୍ରହ୍ମଚାରୀ ।
ମରଣ ବିଷୟେ ପ୍ରଶନ, ନ କର ହେ ବିପ୍ରନନ୍ଦନ ।"
ମୁହୂର୍ତ୍ତି କାଳ ହୋଇ ତୁନି, ବୋଇଲେ ନାଚକେତା ଶୁଣି
"ହେ ମୃତ୍ୟୁ ନାନାବସ୍ତୁ ଭୋଗ୍ୟ, ଦେବାକୁ କରୁଛ ଉଦ୍ୟୋଗ
ତହିଁରେ ପ୍ରୟୋଜନ ନାହିଁ, ତାହା ତ ଦୁଇ ଦିନ ପାଇଁ ।

କି ହେବ ଭୋଗ୍ୟ ବସ୍ତୁ ପାଇ, ଜୀବନ ଅଳ୍ପକାଳସ୍ଥାୟୀ ।
ମାନବମାନଙ୍କ ଇନ୍ଦ୍ରିୟ, କ୍ରମଶ ହେଉଥାଏ କ୍ଷୟ ।
ବଳନଥିଲେ ଇନ୍ଦ୍ରିୟରେ, କି ହେବ ସେ ଭୋଗ୍ୟ ଦ୍ରବ୍ୟରେ
ଯାଉନ୍ତୁ ତୁମ୍ଭ ଅଶ୍ୱ ହସ୍ତୀ, ତହିଁ କି ଆମ୍ଭ ନାହିଁ ମତି ।
ପାଇଲେ ମଧ୍ୟ ବହୁ ବିତ୍ତ, ତୁଷ୍ଟ ନ ହୁଏ ନର ଚିତ୍ତ ।
ଯେ ବର ପ୍ରାର୍ଥନା ମୋହର, ଦେଉନ୍ତୁ ମୃତ୍ୟୋ ସେହିବର
ସ୍ୱର୍ଗ ଯେ ଅଟେ ଉଚ୍ଚସ୍ଥାନ, ପୃଥିବୀ ନୁହେ ତା ସମାନ ।
ହୋଇଣ ଜରା ମୃତ୍ୟୁ ଦାସ, ପୃଥ୍ୱୀରେ ଲୋକ କରେ ବାସ
ପୃଥିବୀବାସୀ ସର୍ବ ନର, ନୁହନ୍ତି ଅଜର ଅମର ।
ଆତ୍ମାର ଯାହା ପ୍ରୟୋଜନ, ଲଭନ୍ତି ତାହା ସ୍ୱର୍ଗେ ଜନ ।
କି ଫଳ ବଞ୍ଚି ପୃଥିବୀରେ ? କି କାର୍ଯ୍ୟ ଅବା ସମ୍ପତ୍ତିରେ ?
ଅସ୍ଥିର ସମ୍ପତ୍ତି ଜୀବନେ, କପାଁଇ ଲୋଡ଼ୁଥାନ୍ତି ଜନେ ।
ଏଥି ଆନନ୍ଦ ଅନୁଭବ, ବୃଥା କରନ୍ତି ଲୋକ ସର୍ବ ।
ଯେ ପରଲୋକର ବିଷୟ, କରନ୍ତି ମାନବ ସଂଶୟ ।
ମହାନ ପରଲୋକ ତତ୍ତ୍ୱ, ଇଚ୍ଛେ ମୁଁ ହେବ ଅବଗତ ।
ଏତିକ ମୋତେ କୃପାକର, ନଲୋଡ଼େ ମୁହିଁ ଅନ୍ୟ ବର ।"

ଇତି ପ୍ରଥମା ବଲ୍ଲୀ ସମାପ୍ତ ।

—.—

## ଦ୍ୱିତୀୟା ବଲ୍ଲୀ

ମଙ୍ଗଳକର ଅଟେ ଶ୍ରେୟ, ସୁଖକୁ ଦାନ କରେ ପ୍ରେୟ ।
ବିଭିନ୍ନ ଭାବେ ଲୋକଗଣ, ଆବଦ୍ଧ ଛନ୍ତି ଅନୁକ୍ଷଣ ।
ଶ୍ରେୟ ଲୋଡ଼ନ୍ତି ଯେ ସକଳ, ତାହାଙ୍କ ହୁଏଟି ମଙ୍ଗଳ ।
ପ୍ରେୟ ଲୋଭରେ ଯେ ପ୍ରବୃତ୍ତ, ପରମାର୍ଥରୁ ହୁଏ ଚ୍ୟୁତ ।
ଶ୍ରେୟ ଓ ପ୍ରେୟ ଏ ଉଭୟ, କରନ୍ତି ମାନବେ ଆଶ୍ରୟ ।
ଯେ ସର୍ବ ଲୋକ ଶୁଦ୍ଧମନା, କରନ୍ତି ଏହା ବିବେଚନା ।
ବିଶେଷ ବୁଝି ଜ୍ଞାନଗଣ, ଶ୍ରେୟକୁ କରନ୍ତି ଗ୍ରହଣ ।
ହୀନବୁଦ୍ଧିଏ ସହଜରେ, ପ୍ରେୟକୁ ଲୋଡ଼ନ୍ତି ଆଦରେ ।
ଅପ୍ରାପ୍ତ ବସ୍ତୁ ଲାଭ ପାଇଁ, ପ୍ରାପ୍ତ ବସ୍ତୁର ରକ୍ଷା ପାଇଁ ।
ଅଜ୍ଞାନୀ କରି ଅଭିଲାଷ, ସର୍ବଦା କରନ୍ତି ପ୍ରୟାସ ।
ହେ ନାଚିକେତା ! ସାବଧାନେ, ବୁଝିବ ଏହା ଅନୁମାନେ
ଯେ କାମ୍ୟ ବସ୍ତୁ ଲୋଭନୀୟ, ଆପାତ ପୁଣି ରମଣୀୟ ।
ତାହା ଅନର୍ଥ୍ୟ ଅସାରତ୍ୱ, ଚିହ୍ନିଣ ତେଜିବ ସମସ୍ତ ।
ଏହି ଯେ ବିତ୍ତମୟ ପଥ, ନ ବୁଝି ଏହା ଅସାରତ୍ୱ ।
ମଗ୍ନ ଅଛନ୍ତି ଲୋକମାନେ, ତୁମ୍ଭେ ଯେ ଅଛ ସାବଧାନେ ।
ଏହି ଯେ ବିଦ୍ୟା ଓ ଅବିଦ୍ୟା, ଉଭୟେ ଲୋକରେ ପ୍ରସିଦ୍ଧା
ଅବିଦ୍ୟା ପ୍ରେୟପ୍ରଦାୟିନୀ, ବିଦ୍ୟା ଯେ ଶ୍ରେୟସମ୍ପାଦିନୀ ।
ହେ ନାଚିକେତା ତୁମ୍ଭେ ଜାଣ, ଶ୍ରେୟ ପ୍ରେୟର ଗୁଣମାନ
ତୁମ୍ଭର ମନ ସଦା ଶୁଚି, ପ୍ରେୟରେ ତେଣୁ ନାହିଁ ରୁଚି ।
ଯେତେକେହିଁ ଦେଲେ ଭୋଗ୍ୟ ବସ୍ତୁ, ଲୋଡ଼ିଲ ନାହିଁ ତୁମ୍ଭେ କିନ୍ତୁ ।
ଜ୍ଞାନ ଥିବାରୁ ତୁମ୍ଭ ସାଥି, ନ ହେଲେ ଅବିଦ୍ୟାର ପ୍ରାର୍ଥୀ ।
ବହୁତ ଅଛନ୍ତି ଅଜ୍ଞାନ, ମଣନ୍ତି ଆପେ ବୁଦ୍ଧିମାନ ।
ସର୍ବଦା କୁଟିଳ ମାର୍ଗରେ, ଗମନ୍ତି ସୁଖ ଲାଳସାରେ ।
ଅନ୍ଧକୁ ଅନ୍ଧ ନେଲା ପରି, ଯାନ୍ତି କୁମାର୍ଗ ଅନୁସରି ।
ସୁଚିନ୍ତାହୀନ ଯେଉଁ ଜନ, ଧନ ମୋହରେ ସଦାଛନ୍ନ ।
ଏପରି ଯେଉଁ ଅବିବେକୀ, ନ ପାରେ ସୁମାର୍ଗକୁ ଦେଖି ।
ପରଲୋକରେ ପ୍ରୟୋଜନ, ଉପାୟ ନ ଜାଣେ ସେ ଜନ ।
ବ୍ୟସ୍ତ ସେ ଇହଲୋକ ପାଇଁ, ତା ଜ୍ଞାନେ ପରଲୋକ ନାହିଁ ।
ଏପରି ଚିନ୍ତି ସେହି ଦିନ, ହୁଏ ସେ ମୃତ୍ୟୁର ଅଧୀନ ।
ବହୁତ ଅଛନ୍ତି ଅଜ୍ଞାନୀ, ତାହାଙ୍କୁ ନ ପାରନ୍ତି ଜାଣି ।
କେହି ବା କରିଣ ଶ୍ରବଣ, ତହିଁରେ ନ ଦିଅନ୍ତି ମନ ।
କେହି ବା ପାଇ ଉପଦେଶ, ନ ବୁଝେ ସେ ତତ୍ତ୍ୱ ବିଶେଷ ।
ନିତାନ୍ତ ମୂର୍ଖ ଶିଷ୍ୟ ସର୍ବ, ନିପୁଣ ଆଚାର୍ଯ୍ୟ ଦୁର୍ଲ୍ଲଭ ।
କେହି ବା ପାଇ ସୁଆଚାର୍ଯ୍ୟ, ଜାଣି ନ ପାରେ ତାଙ୍କ କାର୍ଯ୍ୟ
ନିଗୂଢ଼ ଅଟେ ଆତ୍ମତତ୍ତ୍ୱ, ଜଗତ ମାନବ ସମସ୍ତ ।
ତାହାଙ୍କୁ ବିବିଧ ରୂପରେ, ଭାଳନ୍ତି ଆପଣା ମନରେ ।
ଆତ୍ମସ୍ୱରୂପ ତାର ଜ୍ଞାନ, ଅଣୁରୁ ସୂକ୍ଷ୍ମ ପରିମାଣ ।
ନୁହନ୍ତି ପ୍ରାପ୍ୟ ସେ ତର୍କରେ, କେବଳ ବୁଝିବ ଜ୍ଞାନରେ ।
ଯେ ଜ୍ଞାନୀ ପବିତ୍ର ବିଶେଷ, ତାଠାରୁ ନେବ ଉପଦେଶ ।
ଯେ ଲୋକ ମୂର୍ଖ ଅଭିମାନୀ, ପାରିବ ତତ୍ତ୍ୱ କାହୁଁ ଜାଣି ?
ନ ଯିବ ମୂର୍ଖ ଗୁରୁଠାକୁ, ନ ପୁଚ୍ଛ ତତ୍ତ୍ୱକଥା ତାକୁ ।

ହେବାରୁ ଆତ୍ମତତ୍ତ୍ୱ ଜ୍ଞାନୀ, ପାରିଛ ତତ୍ତ୍ୱ କଥା ଜାଣି ।
ହେଲେହେଁ ତୁମ୍ଭ ବୟସ ଅଳ୍ପ, ମାନସିକ ସ୍ଥିର ଯେ ସଂକଳ୍ପ ।
ତତ୍ତ୍ୱଜିଜ୍ଞାସୁ ତୁମ୍ଭ ପରି, ପାଇବୁଁ ଯେତ୍ନେ ଖୋଜ କରି ।
ହେ ବିପ୍ର ଏହା ଜାଣ ସତ୍ୟ, ତଶ୍ୱାଦି ସମ୍ପତ୍ତି ଅନିତ୍ୟ ।
ହେ ବିପ୍ର ଆତ୍ମତତ୍ତ୍ୱ ଜ୍ଞାନେ, ଏହା ମୁଁ ଭଲରୂପେ ଜାଣେ ।
ଅଧ୍ରୁବ ପଦାର୍ଥରେ କିନ୍ତୁ, ଲଭ ନ ହୁଏ ଧ୍ରୁବ ବସ୍ତୁ ।
କେବା ଅନିତ୍ୟ ପଦାର୍ଥରେ, ପରମାତ୍ମାକୁ ଲଭ କରେ ?
ଜାଣି ଥିବାରୁ ଆତ୍ମତତ୍ତ୍ୱ, ଲଭ ମୁଁ କରିଛି ନିତ୍ୟତ୍ୱ ।
ହେ ନାଚିକେତା ତୁମ୍ଭେ ଧନ୍ୟ, ଜାଣିଛ ତତ୍ତ୍ୱ ବିବରଣ ।
ଦୂର କରନ୍ତେ ସର୍ବ ଭ୍ରାନ୍ତି, ହୋଇଛି କାମନା ସମାପ୍ତି ।
ଅଭୟପ୍ରଦ ସ୍ଥାନ ଜାଣି, ପାରିଛ ହେବା ଯୋଗୁଁ ଜ୍ଞାନୀ ।
ଆତ୍ମାର ବିଶ୍ରାମ ଯେ ସ୍ଥଳ, ଜାଣି ପାରିଛ ସେ ସକଳ ।
ହେବାରୁ ତୁମ୍ଭେ ବୁଦ୍ଧିମାନ, ଲଭ କରିଛ ତତ୍ତ୍ୱଜ୍ଞାନ ।
ଅନିତ୍ୟ ସଂସାରର ସୁଖ, ତହିଁରୁ ହୋଇଛ ବିମୁଖ ।
ନୁହନ୍ତି ପ୍ରାପ୍ୟ ସହଜରେ, ନିହିତ ହୃଦୟ ଗହ୍ୱରେ ।
ନୁହନ୍ତି ଯେ ବା ପରିମିତ, ଦୁର୍ଗମ ଇନ୍ଦ୍ରିୟ ଅତୀତ ।
ସେହି ଦେବତା ପୁରତନ, ଜାଣନ୍ତି ତାଙ୍କୁ ଜ୍ଞାନୀ ଜନ ।
ଅଧ୍ୟାତ୍ମ ଯୋଗେ ମହାଜ୍ଞାନୀ, ପାରନ୍ତି ସେ ଦେବଙ୍କୁ ଜାଣି ।
ଯେ ପାଏ ଜ୍ଞାନର ଆଲୋକ, ନ ଥାଏ ତାର ହର୍ଷ ଶୋକ ।
ଈଶ୍ୱର ବିଷୟ ଶ୍ରବଣ, କରନ୍ତି ମହାଜ୍ଞାନଗଣ ।
ଦେହରୁ କରନ୍ତି ପୃଥକ, ବୁଝନ୍ତି ଶେଷେ ଜ୍ଞାନାଲୋକ ।
ବିଶେଷରୂପେ ହୋଇ ଜ୍ଞାତ, ହୁଅନ୍ତି ସୂକ୍ଷ୍ମ ବସ୍ତୁ ପ୍ରାପ୍ତ ।
ଏପରି କରେଁ ଅନୁମାନ, ଲଭିଛ ତୁମ୍ଭେ ଦିବ୍ୟଜ୍ଞାନ ।
ବ୍ରହ୍ମଭବନ ଦ୍ୱାର ତୁମ୍ଭେ, ପ୍ରାପ୍ତ ହୋଇଛ ଅନୁଭବେ ।”
ଯମରାଜାଙ୍କ ବାକ୍ୟ ଶୁଣି, ପୁଚ୍ଛିଲେ ନାଚିକେତା ପୁଣି—
“ବୋଲିବା ହେଉ ଜନ୍ମପତି, ଧର୍ମୁ ଯେ ପୃଥକ ଅଟନ୍ତି ।
ଅଧର୍ମୁ ପୁଣି ଅପୃଥକ, ବୋଲି ତା କଥା ବିଷୟକ ।
କାର୍ଯ୍ୟ କାରଣ ଶୃଙ୍ଖଳାରେ, ଜଗତ ବନ୍ଧ ନିରନ୍ତରେ ।
ଏଥୁଁ ପୃଥକ ଯେଉଁ ଦେବ, ତା କଥା ବୋଲିବାକୁ ହେବ
ଭୂତ ଭବିଷ୍ୟ ଯେ ପୃଥକ, ବୋଲନ୍ତୁ ତାଙ୍କ କଥାଯାକ ।”
“କୋଇଲେ ଯମ ଶୁଣ ଏବେ,ବେଦଯେ ପୂଜନୀୟ ଦେବେ
ସର୍ବଦା କରନ୍ତି କୀର୍ତ୍ତନ, ସେ ପରଂବ୍ରହ୍ମ ସନାତନ ।
ସମସ୍ତ ତପସ୍ୟା ଯାହାଙ୍କୁ, ଯତ୍ନ କରଇ ଲଭିବାକୁ ।
ବ୍ରହ୍ମଗୃହୀଏ ନିରନ୍ତରେ, ଯାହାଙ୍କୁ ଚିନ୍ତନ୍ତି ଅନ୍ତରେ ।
ସଂକ୍ଷେପେ ବୋଲୁଁ ତା ଆକାର, ଅଟନ୍ତି ସେ ପ୍ରଭୁ ଓଁକାର
ଓଁକାର ଅକ୍ଷରହିଁ ବ୍ରହ୍ମ, ଅଟନ୍ତି ସେହି ଶ୍ରେଷ୍ଠତମ ।
ଏହି ଅକ୍ଷର ହୋଇ ଜ୍ଞାତ, ହୁଅନ୍ତି ପରଂବ୍ରହ୍ମ ପ୍ରାପ୍ତ ।
ସେ ପରବ୍ରହ୍ମ ପ୍ରାପ୍ତ ପାଇଁ ଏଥିରୁ ବଳି ମାର୍ଗ ନାହିଁ ।
ବିଶେଷ ଜାଣନ୍ତି ସାଧକ, ନାହିଁଟି ସୁମାର୍ଗ ପୃଥକ ।
ସୁଜ୍ଞାନୀ ଆତ୍ମା ଯେଉଁ ଜନ, ନାହିଁ ତା ଜନମ ମରଣ ।
ନୁହନ୍ତି କାହିଁରୁ ଉତ୍ପନ୍ନ ସ୍ୱୟମ୍ଭୁ ପ୍ରଭୁ ସନାତନ ।
ଶାଶ୍ୱତ ଅଜ ପୁଣି ନିତ୍ୟ, ଅଟନ୍ତି ଜ୍ଞାନର ଅତୀତ ।
ଦେହ ଯେ କାଳେ ହୁଏ ଭ୍ରଷ୍ଟ, ନୁହନ୍ତି ତା ସଙ୍ଗେ ବିନଷ୍ଟ ।
ହନ୍ତା ଯଦ୍ୟପି କରେ ମନ, ଆତ୍ମାକୁ କରିବ ହନନ ।
ହତ ଯେ ବିଚାରେ ଏମନ୍ତ, ଅନ୍ୟରେ ହୋଇଅଛି ହତ ।
ନ ଜାଣି ଆତ୍ମାର ଲକ୍ଷଣ, ଉଭୟେ ବୋଲନ୍ତି ଏସନ ।
ଆତ୍ମା ଯେ ନ କରେ ହନନ; ହତ ନୁହଇ କଦାଚନ ।
ଅଟନ୍ତି ସୂକ୍ଷ୍ମରୁ ସେ ସୂକ୍ଷ୍ମ, ମହତୁଁ ପୁଣି ମହତ୍ତମ ।
ସେ ଆତ୍ମା ସକଳ ସମୟେ, ଥାଆନ୍ତି ପ୍ରାଣୀଙ୍କ ହୃଦୟେ ।
ନିଷ୍କାମ ଅଟେ ଯେଉଁ ଲୋକ, ଗତ ହୋଇଛି ଦୁଃଖଶୋକ ।
ଆତ୍ମାର ମହିମା ଦର୍ଶନ, କରିଣ ପାରେ ସେହି ଜନ ।
ସେ ଆତ୍ମା ହେଲେହେଁ ଅଚଳ, ଗମନ ତାଙ୍କ ସର୍ବ ସ୍ଥଳ ।
ସୁଖ ଦୁଃଖରୁ ଯେ ଅତୀତ, କେ ତାଙ୍କୁ ହେବଟି ବିଦିତ ।
ମୋ ବିନା ଅଛି କେଉଁ ପ୍ରାଣୀ, ତାହାଙ୍କୁ ପାରିବଟି ଜାଣି ।
ପାଇଲେ ଆତ୍ମାର ଆଲୋକ, ଜ୍ଞାନୀଏ ନ କରନ୍ତି ଶୋକ ।
କରନ୍ତୁ ବେଦ ଅଧ୍ୟୟନ, ଅଥବା ଶାସ୍ତ୍ର ଆଳାପନ ।
ନ ଜାଣିଥିଲେ ଆତ୍ମଭାବ, କେ କରିପାରେ ତାଙ୍କୁ ଲଭ ?
ଏ ପରମାତ୍ମା ଯାହା ପ୍ରତି, ବିଶେଷ କୃପା କରିଛନ୍ତି ।
ହେ ନାଚିକେତା ସେହିଲୋକ; ପାଏ ଯେ ଆତ୍ମାର ଆଲୋକ
ଯେ ଲୋକ ଅଟେ ଦୁଷ୍ଚରିତ, ଅଶାନ୍ତ ବା ଅସମାହିତ ।
ହେଲେହେଁ ସେହି ମହାଜ୍ଞାନୀ, ନ ପାରେ ବ୍ରହ୍ମ ରୂପ ଜାଣି
ବ୍ରାହ୍ମଣ କ୍ଷତ୍ରିୟ ଯା ଅନ୍ନ, ମରଣ ଯା ଉପକରଣ ।
ସେ ଆତ୍ମା ଥାନ୍ତି କେଉଁ ସ୍ଥାନେ, କେ ଅନୁଭବିବ ତା ମନେ ।

ଇତି ଦ୍ୱିତୀୟା ବଲ୍ଲୀ ।

## ତୃତୀୟା ବଲ୍ଲୀ

ଯା ଅଟେ ବ୍ରହ୍ମଙ୍କ ନିବାସ, ତା ନାମ ହୃଦୟ ଆକାଶ ।
ସେ ଗୁପ୍ତ ହୃଦୟ ଗହ୍ୱରେ, ଦୁଇ ପଦାର୍ଥ ବାସ କରେ ।
ଜୀବ ଓ ବ୍ରହ୍ମ ଏହି ବେନି, ବାସ କରନ୍ତି ସଙ୍ଗ ଘେନି ।
ଅବଶ୍ୟମ୍ଭାବୀ କର୍ମଫଳ, ଭୁଞ୍ଜନ୍ତି ରହିଣ କେବଳ ।
ତାହାଙ୍କୁ ବ୍ରହ୍ମବାଦୀମାନେ, ଦେଖନ୍ତି ଛାୟାତପ ଜ୍ଞାନେ ।
ଅଗ୍ନିଚୟନ ତିନଥର, କରନ୍ତି ଯେଉଁ ସର୍ବ ନର ।
ପଞ୍ଚାଗ୍ନି ଗୃହବାସୀ ନରେ, ବୋଲନ୍ତି ପୁଣି ଏ ରୂପରେ ।
ସେହି ଯେ ଅଗ୍ନି ନାଚିକେତ, ଅଟନ୍ତି ଯଜମାନ ସେତୁ
ତ୍ରାଣାର୍ଥୀମାନଙ୍କ ପରମ, ମାର୍ଗ ହିଁ ଯେ ଅକ୍ଷର ବ୍ରହ୍ମ ।
ଏ ଦୁଇ ପଦାର୍ଥର ଜ୍ଞାନେ, ସକ୍ଷମ ହେବୁଁ ଆମ୍ଭେମାନେ ।
ଏ ଆତ୍ମା ଅଟନ୍ତି ସାରଥି, ଶରୀର ରଥେ ବସିଛନ୍ତି ।
ଲଗାମ ସ୍ୱରୂପ ଯେ ମନ, ବୋଲନ୍ତି ଏହା ଜ୍ଞାନିଗଣ ।
ଇନ୍ଦ୍ରିୟଗଣେ ବୃଷ ଅଶ୍ୱ, ମାର୍ଗ ଗୃହୀତ ରୂପ ରସ ।
ମନ ସେଥିରେ ହୋଇ ରଥୀ, ଶରୀର ମଧ୍ୟେ ବସିଛନ୍ତି ।
ଅସମାହିତମନାଗଣେ, ପୁଣି ଯେ ଅବିବେକୀ ଜନେ ।
ଇନ୍ଦ୍ରିୟ ତାହାଙ୍କ ଯେ ବଶ, ଯେମନ୍ତ ଜାଣ ଦୁଷ୍ଟ ଅଶ୍ୱ ।
ଯେ ଲୋକ ସମାହିତମନ, ବିବେକୀ ଧର୍ମପରାୟଣ ।
ଇନ୍ଦ୍ରିୟେ ବଶ ତା ପାଶରେ, ସୁଶୀଳ ଅଶ୍ୱ ସମାନରେ ।
ଅଶୁଚି ଯେବା ଅବିବେକୀ, ନ ପାରେ ବ୍ରହ୍ମପଦ ଦେଖି ।
ଯାହାର ନାହିଁ ଶୁଦ୍ଧଭାବ, ସଂସାରଗତି କରେ ଲାଭ ।
ନିରତ ଶୁଚି ଯାହା ମନ, କରଇ ଧର୍ମ ଆଚରଣ ।
ଅକ୍ଷର ବ୍ରହ୍ମପଦ ପ୍ରାପ୍ତ, ହୁଏ ସେ ଜାଣିବ ନିତାନ୍ତ ।
ଜଗତେ ପୁନଃ ସେହି ଜନ, ନ କରେ ଜନମ ଗ୍ରହଣ ।
ବିଜ୍ଞାନ ଯାହାର ସାରଥି, ଇନ୍ଦ୍ରିୟ ଅଶ୍ୱେ ମନ ରଥୀ ।
ସେ ଯାଇ ସଂସାର ମାର୍ଗରେ, ପରଂବ୍ରହ୍ମଙ୍କୁ ଲାଭ କରେ ।
ଯେତେକ ଅଛନ୍ତି ଇନ୍ଦ୍ରିୟ, ଶ୍ରେଷ୍ଠ ଯେ ଇନ୍ଦ୍ରିୟ ବିଷୟ ।
ବିଷୟୁ ଅଟେ ମନ ଶ୍ରେଷ୍ଠ, ବୁଦ୍ଧି ଅଟଇ ତାହା ଜ୍ୟେଷ୍ଠ ।
ଅଛନ୍ତି ଯେ ଆତ୍ମା ମହାନ, ସଭଙ୍କୁଁ ଶ୍ରେଷ୍ଠ ତାଙ୍କୁ ଜାଣ ।
ଜଗତ ବୀଜ ଯେ ମହତ, ତହିଁରୁ ଶ୍ରେଷ୍ଠ ଯେ ଅବ୍ୟକ୍ତ ।
ପୁରୁଷ ଶ୍ରେଷ୍ଠ ତହୁଁ ଜାଣ, ତା ତହୁଁ ନାହିଁଟି ପ୍ରଧାନ ।
ସକଳ ଭୂତରେ ପ୍ରଚ୍ଛନ୍ନ, ଅଛନ୍ତି ଆତ୍ମା ଅନୁକ୍ଷଣ ।
ସୂକ୍ଷ୍ମଦର୍ଶୀ ଏ ବିଜ୍ଞନରେ, ଦେଖନ୍ତି ତାଙ୍କୁ ପ୍ରତ୍ୟକ୍ଷରେ ।
କରନ୍ତି ଜ୍ଞାନବନ୍ତ ନରେ, ବାକ୍ୟକୁ ସଂଯତ ମନରେ ।
ମନକୁ ଆତ୍ମାରେ ସଂଯତ, କରନ୍ତି ବିଜ୍ଞାତା ସମସ୍ତ ।
ସର୍ବ ବିକାରଶୂନ୍ୟ ଜାଣ, ପରମ ଆତ୍ମା ଯେ ମହାନ ।
ସେ ପରମାତ୍ମାରେ ସତତ, କରିବ ମନକୁ ସଂଯତ ।
ଅଜ୍ଞାନ ନିଦ୍ରା ପରିହରି, ହେ ଜୀବେ ଉଠ ଚେତା ଧରି ।
ଆଚାର୍ଯ୍ୟେ ନୁଆଇଣ ମଥା, ଜାଣିବ ପରମାତ୍ମା କଥା ।
ଯେମନ୍ତ କ୍ଷୁରଧାର ଭାଗ, ତେସନେ ତତ୍ତ୍ୱଜ୍ଞାନମାର୍ଗ ।
ଅରୂପ ଅଶବ୍ଦ ଅସ୍ପର୍ଶ, ଅବ୍ୟୟ ଅନାଦି ଅରସ ।
ଅସୀମ ନିତ୍ୟ ଯେ ଅନନ୍ତ, ଯା ସୃଷ୍ଟ ପଦାର୍ଥ ଯାବନ୍ତ ।
ଏ ପରବ୍ରହ୍ମେ କରି ଜ୍ଞାନ, ମୃତ୍ୟୁରୁ ପାଅ ପରିତ୍ରାଣ ।
ନାଚିକେତାଙ୍କୁ ଏରୂପରେ, ମୃତ୍ୟୁ ବୋଇଲେ ବିଶେଷରେ ।
ଏ ସନାତନ ଉପାଖ୍ୟାନ, ଶୁଣିଲେ ଜୀବ ପାଏ ତ୍ରାଣ ।
ବ୍ରହ୍ମଲୋକରେ ମହୀୟାନ, ହୁଏଟି ଯାଇ ଜ୍ଞାନବାନ ।
ଯେ ଶୁଦ୍ଧ ଚିତ୍ତ ଜ୍ଞାନବାନ, ଶୁଣେ ଏ ଗୁହ୍ୟ ଉପାଖ୍ୟାନ ।
ଏ କଥା କୈବଲ୍ୟଦାୟକ, ଅନନ୍ତ ଫଳ ଉତ୍ପାଦକ ।

ଇତି ତୃତୀୟା ବଲ୍ଲୀ

---

## ଚତୁର୍ଥୀ ବଲ୍ଲୀ

ଏହି ଇନ୍ଦ୍ରିୟ ଦ୍ୱାରମାନ, ସ୍ୱୟମ୍ଭୂ କଲେକ ନିର୍ମାଣ ।
ସମ୍ମୁଖ ସକଳ ପଦାର୍ଥ, ଦେଖିଣ ପାରୁଛନ୍ତି ମାତ୍ର ।
ଅନ୍ତର ଆତ୍ମାଙ୍କୁ ଦର୍ଶନ, କରି ନ ପାରେ କଦାଚନ ।
ଅନ୍ତର ଆତ୍ମାଙ୍କୁ ଜ୍ଞାନରେ, ଦେଖନ୍ତି ଯେତେ ଜ୍ଞାନୀ ନରେ
ବାହାର ଯେତେ କାମ୍ୟବସ୍ତୁ, ନିର୍ବୋଧେ ଲୋଡ଼ିଥାନ୍ତିକନ୍ତୁ ।
ଏଥିକୁ ସେ ସର୍ବ ନିର୍ବୋଧ, ହୁଅନ୍ତି ମୃତ୍ୟୁ ପାଶେ ବଦ୍ଧ ।
ମାତ୍ରକ ଛନ୍ତି ଯେତେ ଜ୍ଞାନୀ, ବିଶେଷେ ଅମୃତତ୍ୱ ଜାଣି ।
ଅନିତ୍ୟ ବସ୍ତୁର କାମନା, ତେଜନ୍ତି ଥାନ୍ତି ମହାମନା ।
ଇନ୍ଦ୍ରିୟ ଯୋଗେ କର ବୋଧ, ମୈଥୁନ ରୂପ ରସ ଗନ୍ଧ ।
ଯାହାଙ୍କୁ କର ଅନ୍ୱେଷଣ, କରିବା ନିମନ୍ତେ ଦର୍ଶନ ।

ତା ନାମ ଆତ୍ମ ଯେ ପୁରୁଷ, ଜୁହନ୍ତ ଲୋକରେ ଶୁଷ୍କ ।
ଦେଖନ୍ତ ବସ୍ତୁ ଲୋକଗଣେ, ସ୍ୱପ୍ନ ଅଥବା ଜାଗରଣେ ।
ସେ ସର୍ବବ୍ୟାପୀ ଆତ୍ମା ଜାଣି, କରନ୍ତେ ନାହିଁ ଶୋକ ଜ୍ଞାନୀ
ସେ ସର୍ବ କର୍ମଫଳ ଭୋକ୍ତା, ଭୂତ ଭବିଷ୍ୟ ଯେ ନିୟନ୍ତା
ଦେହେ କରନ୍ତ ଅବସ୍ଥାନ, ଜୀବାତ୍ମା ବୋଲି ତାଙ୍କୁ ଜାଣ
ପ୍ରଥମେ ତପସ୍ୟାରୁ ଜାତ, ଅଛନ୍ତ ସର୍ବ ବସ୍ତୁ ଜ୍ଞାତ ।
ପ୍ରାଣୀଙ୍କ ହୃଦୟ ଆକାଶେ, ପଞ୍ଚଭୂତରେ ଯା ପ୍ରକାଶେ ।
ଜଳରୁ ପୂର୍ବ ହୋଇଲେ ଜନ୍ମ, ତାହାଙ୍କୁ ଜାଣ ଆତ୍ମବ୍ରହ୍ମ ।
ଯେ ଦେବ ସର୍ବ ଦେବାତ୍ମିକା, ଅଦିତ ପ୍ରାଣପ୍ରକାଶିକା ।
ହିରଣ୍ୟଗର୍ଭ ସ୍ୱରୂପରେ, ପଞ୍ଚଭୂତଙ୍କ ସହିତରେ ।
ହୃଦୟାକାଶେ ଅବସ୍ଥିତ, ଆତ୍ମା ସେ ହୋଇନ୍ତୁ ବିଦିତ ।
ଯେ ଗୁପ୍ତ ଅରଣି କାଷ୍ଠରେ, ଗର୍ଭିଣୀ ଗର୍ଭ ସ୍ୱରୂପରେ ।
ଯାଜ୍ଞିକେ କରନ୍ତ ସମ୍ମାନ, ସେ ଅଗ୍ନି ଆତ୍ମା ବୋଲି ଜାଣ ।
ଯହିଁରୁ ତପନ ଉଦିତ, ହୁଅନ୍ତ ଯହିଁ ଅସ୍ତମିତ ।
ସର୍ବ ଦେବତା ଯହିଁ ସ୍ଥିତ, ସେ ଆତ୍ମା—ହୋଇନ୍ତୁ ବିଦିତ
ଯେ ଦେବ ଅଛନ୍ତ ଏସ୍ଥାନେ, ସେ ଦେବ ଅଛନ୍ତ ସେସ୍ଥାନେ ।
ଯେ ତାଙ୍କୁ ବିବିଧ ରୂପରେ, ଦେଖଇ ଅଜ୍ଞାନପଣରେ ।
ଜାଣ ସେ ଲୋକ ଚିରଦିନ, ହେବ ଯେ ମୃତ୍ୟୁର ଅଧୀନ ।
ମନର ଯୋଗେ ସେ ପ୍ରାପ୍ତବ୍ୟ, ତାହାଙ୍କ ନାହିଁ ଅନ୍ୟ ଭାବ ।
ଯେ ତାଙ୍କୁ ଦେଖେ ନାନାରୂପେ, ପଡ଼େମୃତ୍ୟୁରେମୃତ୍ୟୁରୂପେ
ଜାଣ ଅଙ୍ଗୁଷ୍ଠ ପରିମାଣ, ଶରୀରେ ଛନ୍ତ ଅବସ୍ଥାନ ।
ଭୂତ ଭବିଷ୍ୟ ଯେ ନିୟନ୍ତା, ଜାଣନ୍ତ ତାଙ୍କୁ ବ୍ରହ୍ମବେତ୍ତା ।
ସେ ଆତ୍ମତତ୍ତ୍ୱେ ଜ୍ଞାନଗଣ, ଜାଣି ନ କରନ୍ତ ଗୋପନ ।
ଅଙ୍ଗୁଷ୍ଠ ପ୍ରମାଣ ପୁରୁଷ, ହୁଅନ୍ତ ଜ୍ୟୋତିରୂପେ ଦୃଶ୍ୟ ।
ଅଦ୍ୟ ଅଛନ୍ତ ଥିବେ କାଲି, ତାହାଙ୍କୁ ଜାଣିବ କେବଳ ।
ନୁହନ୍ତ ଚର୍ମନେତ୍ରେ ଦୃଶ୍ୟ, ଜାଣିବ ସେ ଆତ୍ମାପୁରୁଷ ।
ନିର୍ମଳ ଜଳ ଦେନି ପାତ୍ରେ, ଥାଇଣ ମିଶିଲେ ଏକତ୍ରେ ।
ସେ ଦୁଇ ଜଳ ଏକତ୍ରରେ, ମିଳି ଯାଆନ୍ତ ସମ୍ପୂର୍ଣ୍ଣରେ ।
ପବିତ୍ର ଜୀବ ସେହିରୂପେ, ମିଳେ ପବିତ୍ର ବ୍ରହ୍ମରୂପେ ।

ଇତି ଚତୁର୍ଥୀ ବଲ୍ଲୀ ।

———

## ପଞ୍ଚମୀ ବଲ୍ଲୀ

ନଗର ଗୋଟିଏ ପ୍ରକାଶ, ତାହାର ଦ୍ୱାର ଏକାଦଶ ।
ସେହି ନଗରେ ଯେବା ସ୍ୱାମୀ, ଜନ୍ମରହିତ ଅନ୍ତର୍ଯ୍ୟାମୀ ।
ଆତ୍ମାପୁରୁଷ ତାଙ୍କୁ ଜାଣ, ସାଧକ କରେ ତାଙ୍କୁ ଧ୍ୟାନ ।
ଜନ୍ମିଲେ ପରମାତ୍ମା ଭାବ, ସଂସାରୁ କରେ ମୁକ୍ତି ଲାଭ ।
ସୂର୍ଯ୍ୟ ସ୍ୱରୂପେ ସେ ପ୍ରକାଶ, କରନ୍ତ ଅନ୍ତରୀକ୍ଷେ ବାସ ।
ପବନ ରୂପେ ଆକାଶରେ, ଭ୍ରମୁଅଛନ୍ତ ନିରନ୍ତରେ ।
କଳସବାସୀ ସୋମ ରସ, ସମାନେ ତାହାଙ୍କ ପ୍ରକାଶ ।
ବେଦିନବାସୀ ଅଗ୍ନି ପରି, ଜଗତେ ଥାଆନ୍ତ ସଞ୍ଚରି ।
ମନୁଷ୍ୟ ଦେବତା ଆକାଶେ, ତାହାଙ୍କ ମହିମା ପ୍ରକାଶେ ।
ଶୁକ୍ତି ମକର ରୂପ ଧରି, ଥାଆନ୍ତ ଜଳରେ ସଞ୍ଚରି ।
ବ୍ରୀହି ଯବାଦି ଶସ୍ୟାକାରେ, ଉଦ୍‌ଭିଦ ହୁଅନ୍ତ ସଂସାରେ
ନଦ୍ୟାଦି ରୂପେ ପର୍ବତରେ, ଜାତ ହୁଅନ୍ତ ନିରନ୍ତରେ ।
ଆତ୍ମାପୁରୁଷ ତାଙ୍କୁ ଜାଣ, ଅଟନ୍ତ ସେ ସତ୍ୟ ମହାନ ।
ପ୍ରାଣବାୟୁକୁ ଊର୍ଦ୍ଧ୍ୱଗାମୀ, କରନ୍ତ ଆତ୍ମା ଅନ୍ତର୍ଯ୍ୟାମୀ ।
ଅପାନ ବାୟୁ ନିମ୍ନ ଦେଶେ, ଯାଏ ଯେ ତାହାଙ୍କ ଆଦେଶେ
ଯେତେ ଦେବତା ମହାମନା, କରନ୍ତ ତାଙ୍କୁ ଉପାସନା ।
ଶରୀରେ ଆତ୍ମା କରି ବାସ, କରନ୍ତ ଇନ୍ଦ୍ରିୟ ପ୍ରକାଶ ।
ଦେହରୁ ଆତ୍ମା ହୋଇଲେ ଭ୍ରଷ୍ଟ, ନ ଥାଏ କିଛି ଅବଶିଷ୍ଟ ।
ଶରୀରେ ଯେ ଦ୍ରବ୍ୟ ପ୍ରଧାନ, ତାହାଙ୍କୁ ଆତ୍ମା ବୋଲି ଜାଣ
ପ୍ରାଣ, ଅପାନ, ପବନରେ; ଜୀବ କି ପ୍ରାଣ ଧରିପାରେ ?
ପବନ ଯାହାର ଆଶ୍ରିତ; ଆତ୍ମା ନାମରେ ସେ ବିଦିତ ।
ସେ ଆତ୍ମା ମୃତ୍ୟୁର ଉତ୍ତରେ, ଥାଏ ଯେ କପରି ଆକାରେ
ଶୁଣନ୍ତୁ ହେ ବିପ୍ରନନ୍ଦନ, ବୋଲିବି ସେହି ବିବରଣ ।
ଆପଣା କୃତକର୍ମ ଫଳେ, ଅବା ଅର୍ଜିତ ଜ୍ଞାନବଳେ ।
ଯୋନିରେ କରଇ ପ୍ରବେଶ, ଧରେ ସ୍ଥାବର କେବା ବେଶ
ଯେ କାଳେ ଜଗତର ପ୍ରାଣୀ, ନିଦ୍ରିତ ଥାନ୍ତ ଥିବ ଜାଣି ।
ସେକାଳେ ଥାଇ ଯେ ଜାଗ୍ରତ, ବିଧାନ କରନ୍ତ ସମସ୍ତ ।
କାମ୍ୟ ବସ୍ତୁର ପରମ୍ପରା, ପୂର୍ତ୍ତି କରନ୍ତ ବିଶ୍ୱ ଧରା ।
ସେହି ବ୍ରହ୍ମ ଉଜ୍ଜ୍ୱଳ ଅମୃତ, ସକଳ ତାହାଙ୍କ ଆଶ୍ରିତ ।
କେହି ତାହାଙ୍କୁ ଅତିକ୍ରମ, କରି ନ ପାରେ ସେହି ବ୍ରହ୍ମ ।

ଯେମନ୍ତ ଏକ ଅଗ୍ନି ମାତ୍ର, ଯେତେକ ଅଛି ଦାହ୍ୟପାତ୍ର ।
ସେ ସର୍ବ ଦହନ କାଳରେ, ଦେଖନ୍ତି ବିବିଧ ରୂପରେ ।
ଅନ୍ତରାତ୍ମା ଯେ ବସ୍ତୁ ଭେଦେ, ଦିଶନ୍ତି ନାନା ରୂପ ମଧ୍ୟେ ।
ସକଳ ପଦାର୍ଥ ବାହାରେ, ଆତ୍ମା ଆସନ୍ତି ଦେଖିବାରେ ।
ଯେମନ୍ତ ଏକହିଁ ପବନ, ବ୍ୟାପିଣ ସକଳ ଭୁବନ ।
ଦିଶନ୍ତି ବିବିଧ ରୂପରେ, ଆତ୍ମାପୁରୁଷ ସେ ରୂପରେ ।
ସର୍ବ ଭୂତରେ ବାସ କରି, ଦିଶନ୍ତି ସେ ପଦାର୍ଥ ପରି ।
ବିଶ୍ୱମଣ୍ଡଳ ସର୍ବ ସ୍ଥାନ, ବ୍ୟାପି ଅଛନ୍ତି ଆତ୍ମା ଜାଣ ।
ସୂର୍ଯ୍ୟ କିରଣ ଯେ ରୂପରେ,ପଡ଼ି ଅଶୁଚି ପଦାର୍ଥରେ ।
ଅଶୁଚି ନ ହୁଅନ୍ତି ଆପେ, ବ୍ରହ୍ମ ପଦାର୍ଥ ସେହିରୂପେ ।
ସର୍ବ ଦୁଃଖରେ ଥାଇଁ ଯୋଗ, ଆତ୍ମା ନ କରେ ସୁଖ ଭୋଗ
ଯେ ସର୍ବ ଭୂତର ନିୟନ୍ତା, ସକଳ ଭୂତ ଅନ୍ତରାତ୍ମା ।
ହେଲେହେଁ ସେହି ନିରାକାର, ହୁଅନ୍ତି ବିବିଧ ପ୍ରକାର ।
ଜଗତେ ଯେଉଁ ଜ୍ଞାନଗଣ, ତାହାଙ୍କୁ କରନ୍ତି ଦର୍ଶନ ।
ପାନ୍ତି ସେମାନେ ନିତ୍ୟ ଶାନ୍ତି, ଅଜ୍ଞାନିଲୋକେ କଷ୍ଟ ପାନ୍ତି ।
ନିତ୍ୟ ଯେ ଅନିତ୍ୟ ଦ୍ରବ୍ୟରେ, ଚେତନାଚେତନ ମଧ୍ୟରେ ।
ସମସ୍ତ କାମ୍ୟବସ୍ତୁ ଜାଣ, ଏକାକୀ କରନ୍ତି ବିଧାନ ।
ହୃଦୟେ ଯେଉଁ ଜ୍ଞାନଗଣ, କରନ୍ତି ତାହାଙ୍କୁ ଦର୍ଶନ ।
ଲଭନ୍ତି ସେହି ଶାନ୍ତି ସୁଖ, ଅନ୍ୟର ନ ହୁଅଇ ଦୁଃଖ ।
ଏରୂପେ ଯେଉଁ ଜ୍ଞାନଗଣ, ପ୍ରତ୍ୟକ୍ଷେ କରନ୍ତି ଦର୍ଶନ ।
ପରମ ସୁଖ ଅନୁଭବ, କରନ୍ତି ସେହି ଜ୍ଞାନୀ ସର୍ବ ।
ତାହାଙ୍କ ସେହି ବିଶ୍ୱରୂପ, ବୋଲ ମୁଁ ଜାଣିବି କି ରୂପ ?
ପ୍ରକାଶ ଆପଣା ଜ୍ୟୋତିରେ, ପ୍ରତ୍ୟୟ କରନ୍ତି ଯେ ଧୀରେ
ଯାହାଙ୍କ ସ୍ୱରୂପ ତପନ, ଚନ୍ଦ୍ର ତାରକା ଗ୍ରହଗଣ ।
ବିଦ୍ୟୁତ ଜ୍ୟୋତି ସହଜରେ ଅକ୍ଷମ ଅଟେ ପ୍ରକାଶରେ ।
ଅନଳ କିରୂପେ ତାହାଙ୍କୁ, ପାରେ ପ୍ରକାଶ କରିବାକୁ ?
ଜଗତେ ଯେତେ ବସ୍ତୁ ଛନ୍ତି,ପ୍ରକାଶେ ତାହାଙ୍କର ଜ୍ୟୋତି

ଇତି ପଞ୍ଚମୀ ବଲ୍ଲୀ ସମାପ୍ତ

---

## ଷଷ୍ଠୀ ବଲ୍ଲୀ

ସଂସାର ବୃକ୍ଷ ଊର୍ଦ୍ଧ୍ୱ ମୂଳ, ନିମ୍ନକୁ ଅଟେ ତାହା ଡାଳ ।
ସଂସାର ବୃକ୍ଷର ଯେ ମୂଳ, ଅଟନ୍ତି ସେ ବ୍ରହ୍ମ ଉଜ୍ଜ୍ୱଳ ।
ସକଳେ ଯାହାଙ୍କ ଆଶ୍ରିତ, ଅମୃତ ରୂପେ ସେ କଥିତ ।
ଅଟନ୍ତି ସେହି ପରଂବ୍ରହ୍ମ କେହି ନ କରେ ଅତିକ୍ରମ ।
ବ୍ରହ୍ମରୁ ଉତ୍ପତ୍ତି ଜଗତ, ବ୍ରହ୍ମରେ ପୁଣି ପ୍ରତିଷ୍ଠିତ ।
ଉଦ୍ୟତ ବଜ୍ର ସମାନରେ, ବ୍ୟାପି ଅଛନ୍ତି ଭୟଙ୍କରେ ।
ତାଙ୍କୁ ଯେ ଜାଣେ ବିଜ୍ଞବର, ନିଶ୍ଚେ ସେ ହୁଏଟି ଅମର ।

ଏହାଙ୍କ ଭୟରେ ଅଗ୍ନି ହୁଏ ପ୍ରଜ୍ୱଳିତ,
ଏହାଙ୍କ ଭୟରେ ସୂର୍ଯ୍ୟ ହେଉଛି ଉଦିତ ।
ପ୍ରବାହିତ ହୁଏ ବାୟୁ ଏହାଙ୍କ ଭୟରେ,
ଏହାଙ୍କ ଭୟରେ ଇନ୍ଦ୍ର ଜଳ ବୃଷ୍ଟି କରେ ।
ଏହାଙ୍କ ଭୟରେ ମୃତ୍ୟୁ ନିଜ କାର୍ଯ୍ୟ କରେ,
ଏହାଙ୍କର ଆଜ୍ଞା ବ୍ୟାପ୍ତ ବିଶ୍ୱ ଚରାଚରେ ।

ମୃତ୍ୟୁ ପୂର୍ବରେ ଯେଉଁ ପ୍ରାଣୀ, ନ ପାରେ ପରଂବ୍ରହ୍ମେ ଜାଣି
ମରଣ ସେହି ଜୀବଗଣ, କରନ୍ତି ଜୀବନ ଧାରଣ ।
ଦର୍ପଣେ ଯେହ୍ନେ ଜୀବଗଣ, କରନ୍ତି ସ୍ୱୟଂକୁ ଦର୍ଶନ ।
ଆପଣା ହୃଦୟେ ତେସନ, କରନ୍ତି ବ୍ରହ୍ମାକୁ ଦର୍ଶନ ।
ସ୍ୱପ୍ନ ସମାନେ ପିତୃଲୋକ, ବ୍ରହ୍ମକୁ ଦେଖିଥାନ୍ତି ଲୋକେ
ସ୍ୱୟଂ ଯେମନ୍ତ ସଲଳରେ, ଦେଖନ୍ତି ଗନ୍ଧର୍ବ ଲୋକରେ ।
ବ୍ରହ୍ମଲୋକରେ ଲୋକଗଣ, କରନ୍ତି ପ୍ରତ୍ୟକ୍ଷ ଦର୍ଶନ ।
ପ୍ରାଣୀମାନଙ୍କ ଭାବ କଥା, ଜାଗ୍ରତ ପୁଣି ନିଦ୍ରାବସ୍ଥା ।
ବିଶେଷେ ଜ୍ଞାତ ହୋଇଲୋକ, କେବେହେଁ ନକରନ୍ତି ଶୋକ
ଇନ୍ଦ୍ରିୟଠାରୁ ଶ୍ରେଷ୍ଠ ମନ, ମନରୁ ଶ୍ରେଷ୍ଠ ଅଟେ ଜ୍ଞାନ ।
ଜ୍ଞାନରୁ ଶ୍ରେଷ୍ଠ ଆତ୍ମତତ୍ତ୍ୱ, ଆତ୍ମାରୁ ଶ୍ରେଷ୍ଠ ଯେ ଅବ୍ୟକ୍ତ ।
ଯେଉଁ ପୁରୁଷ ଅଶରୀର, ଅବ୍ୟକ୍ତୁଁ ଶ୍ରେଷ୍ଠ କରି ସ୍ଥିର ।
ଜ୍ଞାନୀଏ ଜାଣି ତାଙ୍କ ତତ୍ତ୍ୱ, ଲଭ କରନ୍ତି ଅମୃତତ୍ତ୍ୱ ।
ଯାହାଙ୍କୁ ଇନ୍ଦ୍ରିୟ ନୟନ, କଦାପି ନ ପାରେ ଦର୍ଶନ ।
ସଂଶୟରହିତ ଯେ ମନ, ତାହାଙ୍କୁ କରଇ ଦର୍ଶନ ।
ଯେ ଜାଣିଅଛି ଆତ୍ମତତ୍ତ୍ୱ, ଲାଭ ସେ କରେ ଅମୃତତ୍ତ୍ୱ ।

ଯେ କାଳେ ପଞ୍ଚ ଜ୍ଞାନେନ୍ଦ୍ରିୟ, ମନରେ ହୋଇ ମନନ୍ମୟ
ଭାବଇ ଆତ୍ମତତ୍ତ୍ୱ କଥା, ପରମ ଗତି ସେ ଅବସ୍ଥା ।
ଇନ୍ଦ୍ରିୟ ମନରେସଂଯୋଗ,ହେଲେକ ତାକୁ ବୋଲି ଯୋଗ
ନ ହେଲେ ବିଷୟରତ୍ୟାଗୀ,ଲୋକେବୋଲନ୍ତିତାକୁ ଯୋଗୀ
ଯୋଗିଏ ହେଲେ ଅପ୍ରମତ୍ତ, ଲଭ କରନ୍ତି ଅମୃତତ୍ୱ ।
ଇନ୍ଦ୍ରିୟ ଯୋଗେ ଅବା ମନେ, ଦେଖନ୍ତି ନାହିଁ ଜ୍ଞାନଚକ୍ଷେ
କେବଳ ବିଶ୍ୱାସ ବଳରେ, ଦେଖନ୍ତି ତାଙ୍କୁ ହୃଦୟରେ ।
ନାସ୍ତିକ ତାଙ୍କୁ କି ପ୍ରକାରେ, ହୃଦୟ ମଧ୍ୟେ ଦେଖି ପାରେ ?
ଈଶ୍ୱରେ ଚିନ୍ମୟ ଭାବରେ, ଭାବିବ ହୃଦୟ ମଧ୍ୟରେ ।
ଅଟନ୍ତି ବ୍ରହ୍ମ ବିଶ୍ୱାଧାର, ଭାବିବ ହୃଦେ ବାରମ୍ବାର ।
ଯେଉଁ କାମନା ମନେ ମନେ, ଭାଳନ୍ତି ମର୍ତ୍ତ୍ୟଜୀବଗଣେ ।
ହେଲେ ସେ କାମନା ସମାପ୍ତ, ଲୋକେ ହୁଅନ୍ତି ବ୍ରହ୍ମପ୍ରାପ୍ତ
ମର୍ତ୍ତ୍ୟଲୋକରୁ ହୋଇ ଭିନ୍ନ, ହୃଦୟଗ୍ରନ୍ଥି ହେଲେ ଛିନ୍ନ ।
ଲଭ କରନ୍ତି ପରମେଶ, ଏହାହିଁ ଜାଣ ଉପଦେଶ ।
ହୃଦୟନାଡ଼ି ଏକଶତ ସୁଷୁମ୍ନା ହୋଇଛି ନିର୍ଗତ ।
ସେ ନାଡ଼ି ଧରି ଜୀବଗଣ, ଶେଷରେ କରନ୍ତି ଗମନ ।
ସଂସାର ପ୍ରାପ୍ତିର କାରଣ, ହୁଅନ୍ତି ଆନ ନାଡ଼ିଗଣ ।
ସେ ଅନ୍ତରାତ୍ମା ଯେ ହୃଦୟେ, ଅଛନ୍ତି ସକଳ ସମୟେ ।
ନିତାନ୍ତ ସୂକ୍ଷ୍ମ ଅନ୍ତରାତ୍ମା, କେ ଜାଣେ ତାହାଙ୍କ ମହିମା ?
ତାହାଙ୍କୁ ନ ଜାଣେ ଯେ ଲୋକ, ତାହାଙ୍କୁ ଜାଣିବ ନାସ୍ତିକ
ସଗୁଣ ନିର୍ଗୁଣ ଭାବରେ, ସେ ଆତ୍ମା ଛନ୍ତି ହୃଦୟରେ ।
ଯେ ଜାଣେ ତାଙ୍କ ତତ୍ତ୍ୱଭାବ, ସେ କରିପାରେ ତାଙ୍କ ଲଭ
ମୃତ୍ୟୁ କଥିତ ବ୍ରହ୍ମବିଦ୍ୟା, ସକଳ ବିଦ୍ୟାରେ ପ୍ରସିଦ୍ଧା
ନାଚିକେତା ଯେ ହୋଇ ତୃପ୍ତ, ଲଭ କଲେକ ଅମରତ୍ୱ ।

ଇତି ଷଷ୍ଠୀ ବଲ୍ଲୀ
ଇତି କଠୋପନିଷଦ୍ ସମାପ୍ତ
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ହରିଃ ଓଁ

## କୃଷ୍ଣଯଜୁର୍ବେଦୀୟା ଶ୍ୱେତାଶ୍ୱତରୋପନିଷଦ୍

ବୋଲନ୍ତି ବ୍ରହ୍ମବାଦୀଗଣ, ବ୍ରହ୍ମ ଅଟନ୍ତି କି କାରଣ ?
କାହୁଁ ଆସିଛୁଁ ଆମ୍ଭେମାନେ, ପ୍ରଳୟେ ଯାଉଁ କେଉଁ ସ୍ଥାନେ ?
କିପରି ଜୀବନ ଧାରଣ, କରୁଅଛନ୍ତି ପ୍ରାଣିଗଣ ?
ସୁଖ ଓ ଦୁଃଖ ଏ ଉଭୟେ,ବ୍ୟବସ୍ଥା କରୁ ଏ ବିଷୟେ ?
ନିୟତି ସ୍ୱଭାବ କାଳକି, ଯେତେ ଘଟନା ଆକସ୍ମିକ ?
ଭୂତ ସମ୍ବନ୍ଧେ ବା ପୁରୁଷେ, କିପାଁଇ ଚିନ୍ତନ୍ତି ମନୁଷ୍ୟେ ?
ଜୀବ ଯେ ସୁଖଦୁଃଖାଧୀନ, ହୋଇଅଛନ୍ତି ଚିରଦିନ ।
ଜୀବ ଭୁଞ୍ଜନ୍ତେ ଏ ସମସ୍ତ, ସୃଷ୍ଟି କାର୍ଯ୍ୟରେ ଅସମର୍ଥ ।
କାଳ ଓ ଆତ୍ମା ସମ୍ବଳିତ, ସ୍ଥାନେ ଯେ ଦେବ ଅବସ୍ଥିତ ।
ସେ ଦେବ ସକଳ ପ୍ରଧାନ, କର ତାହାଙ୍କୁ ହୃଦେ ଧ୍ୟାନ ।
ଧ୍ୟାନ ତପସ୍ୟା ପରାୟଣ, ବିବେକୀ ମହାଋଷିଗଣ,
ପ୍ରଚ୍ଛନ୍ନ ଯେଉଁ ବ୍ରହ୍ମଶକ୍ତି, ବିଜ୍ଞାନ-ନେତ୍ରରେ ଦେଖନ୍ତି ।
କାଳ ଓ ଆତ୍ମା ସମ୍ବଳିତ, କାରଣଦ୍ୱୟେ ନିୟମିତ ।
ଦେଇଣ ଚକ୍ରର ଉପମା, ବୋଲିବି ବ୍ରହ୍ମଙ୍କ ମହିମା ।
ସେ ଚକ୍ର ଏକନେମିଯୁକ୍ତ, ବେଷ୍ଟିତ ଗୁଣତ୍ରୟ ବୃତ୍ତ ।
ଅର ତହିଁରେ ପଞ୍ଚାଶତ, ଷୋଡ଼ଶ ଅଟେ ତହିଁ ଅନ୍ତ ।
ବିଂଶତି ଅଟେ ପ୍ରତି ଅର, ଅଷ୍ଟକ ଷଡ଼ ଯେ ତହିଁର ।
ବିବିଧ ଏକ ପାଶାନ୍ୱିତ, ତ୍ରିମାର୍ଗେ ହୁଏ ସେ ଚାଳିତ ।
ନିମିତ୍ତଦ୍ୱୟ ତହୁଁ ଜାତ, ଏକହିଁ ମୋହର ସଂଘାତ ।
ଏପରି ଯୁକ୍ତ ଗୁଣମାନ, ସେ ବ୍ରହ୍ମଚକ୍ରେ କରେଁ ଧ୍ୟାନ ।*
ନଦୀସ୍ୱରୂପ କାର୍ଯ୍ୟ ବ୍ରହ୍ମେ, ବର୍ଣ୍ଣନା କରୁଛି ପ୍ରଥମେ ।
ଏ ନଦୀ ବହୁଛି ଏମନ୍ତ, ପାଞ୍ଚଟି ଉତ୍ସ ପାଞ୍ଚ ସ୍ରୋତ ।
ପାଞ୍ଚଟି ଊର୍ମିରେ ମଣ୍ଡିତ, ପଞ୍ଚ ଆବର୍ତ୍ତ ସମନ୍ୱିତ ।
ଶାଖା ଏହାର ପଞ୍ଚାଶତ, ସୋପାନ ପଞ୍ଚଧା ବିଭକ୍ତ ।

*ବ୍ରହ୍ମଚକ୍ର—ଏକନେମି = କାରଣ ଅବସ୍ଥାରୂପ ଏକଚକ୍ରନାଭି । ବୃତ୍ତିତ୍ରୟ = ସତ୍ତ୍ୱ, ରଜଃ, ତମଃ ଏହି ତିନି ବୃତ୍ତି । ପଞ୍ଚାଶତ୍ ଅର = ସାଂଖ୍ୟ ଶାସ୍ତ୍ରୋକ୍ତ ପଞ୍ଚାଶତ୍ ପ୍ରତ୍ୟୟ ବା ବିପର୍ଯ୍ୟୟ ବା ଭ୍ରମ । ଷୋଡ଼ଶ ଅନ୍ତ—କ୍ଷିତି, ଅପ୍, ମରୁତ, ତେଜ, ବ୍ୟୋମ ଏହି ପଞ୍ଚ ମହାଭୂତ ଏବଂ ଏକାଦଶ ଇନ୍ଦ୍ରିୟ ଏପରି ଷୋଡ଼ଶ । ବିଂଶତି ପ୍ରତିଅର—ଦଶ ଇନ୍ଦ୍ରିୟ ଏବଂ ସେମାନଙ୍କ ବିଷୟ ଏପରି ବିଂଶତି । ଷଡ଼ ଅଷ୍ଟକ = ଭୂମ୍ୟାଦି ପ୍ରକୃତି ଅଷ୍ଟକ; ୨—ତ୍ୱଗାଦି ଧାତୁ ଅଷ୍ଟକ; ୩—ଅଣିମାଦି ଐଶ୍ୱର୍ଯ୍ୟ ଅଷ୍ଟକ; ୪—ଧର୍ମାଦି ଭାବାଷ୍ଟକ; ୫—ବ୍ରହ୍ମାଦି ଦେବାଷ୍ଟକ; ୬—ଦୟାଦି ଗୁଣାଷ୍ଟକ । ଏକପାଶ = କାମନା । ତ୍ରିମାର୍ଗ = ଧର୍ମ, ଅଧର୍ମ, ଜ୍ଞାନ । ନିମିତ୍ତ ଦ୍ୱୟ—ପାପପୁଣ୍ୟ ।

ପଞ୍ଚ ପୁଳାନ ବିଦ୍ୟମାନ, ଏହି ନଦୀକୁ କରେଁ ଧ୍ୟାନ ।*
ଆପଣା ନିୟନ୍ତାକୁ ଲୋକ, ମନରେ ଭାଳନ୍ତି ପୃଥକ ।
ବ୍ରହ୍ମଚକ୍ରରେ ଭ୍ରାମ୍ୟମାନ, ଏଥିକୁ ହେଉଥାନ୍ତି ଜାଣ ।
ଶେଷେ ଈଶ୍ୱରେ ହୋଇ ଜ୍ଞାତ, ଜୀବ ତାହାଙ୍କୁ ହୁଏ ପ୍ରାପ୍ତ ।
ସେ ପରଂବ୍ରହ୍ମଙ୍କ ଚରିତ, ବେଦାନ୍ତେ ହୋଇଛି କଥିତ ।
ନିୟନ୍ତା, ଭୋକ୍ତା, ଭୋଗ୍ୟ ତିନ; ଭାବିକୁ ଯେବା ଛନ୍ତି ଚିହ୍ନି
ଜଗତ ପ୍ରପଞ୍ଚ ଅତୀତ, ତାହାଙ୍କୁ ହୁଏ ସେ ବିଦିତ ।
ଜନ୍ମାନ୍ତରରୁ ହୋଇ ମୁକ୍ତ, ପରମବ୍ରହ୍ମେ ହୁଏ ଯୁକ୍ତ ।
ବ୍ୟକ୍ତ ଅବ୍ୟକ୍ତ କ୍ଷରାକ୍ଷର, ବ୍ରହ୍ମାଣ୍ଡଧାରକ ଈଶ୍ୱର ।
ହୋଇଣ ସୁଖଦୁଃଖାଧୀନ, ଜୀବ ସେ ଥାଏ ଚିରଦିନ ।
ଥାଇଣ ଅବିଦ୍ୟାବନ୍ଧନେ, ଈଶ୍ୱରେ ନ ଦେଖେ ନୟନେ ।
ଈଶ୍ୱର ନାମେ ହେଲେ ଯୁକ୍ତ;ବନ୍ଧନୁଁ ହୁଏ ସେ ବିମୁକ୍ତ ।
ଈଶ୍ୱର, ଜୀବ, ଅଜ୍ଞ, ଜ୍ଞାନୀ; ଏ ଗୁରୁ ଛନ୍ତି ଥିବ ଜାଣି ।
ଜୀବ ସେ ସ୍ୱରୂପ ଅଂଶରେ, ସମାନ ଈଶ୍ୱର ସଙ୍ଗରେ ।
ଜୀବର ନାହିଁ ଜନ୍ମ ନାଶ, ଏ କଥା କରିବ ବିଶ୍ୱାସ ।
ଭୋଗ୍ୟ ବିଷୟପ୍ରଦାୟିନୀ, ବ୍ରହ୍ମାଣ୍ଡେ ପ୍ରକୃତିନାମିନୀ ।
ଈଶ୍ୱରଙ୍କର ଏକ ଶକ୍ତି, ଅଛଇ ଜାଣ ହେ ସୁମତି ।
ଈଶ୍ୱର ସଙ୍ଗେ କରେ ବାସ, ନାହିଁ ତା ଜନମ ବିନାଶ ।
ବିଶ୍ୱସ୍ୱରୂପ ପରମାତ୍ମା, ପ୍ରକାଶ ତାହାଙ୍କ ମହିମା ।
କର୍ତ୍ତୃତ୍ୱ ଆଦି ଜୀବପାଇଁ, ସଂସାରଭାବ ତାଙ୍କ ନାହିଁ ।
ସେ ଆତ୍ମା ସ୍ୱତନ୍ତ୍ର ସ୍ୱାଧୀନ, ଅଟନ୍ତି ବାସନାରୁ ଭିନ୍ନ ।
ଜୀବ ପ୍ରକୃତି ପରମାତ୍ମା, ଜାଣେ ଯେ ଏଥିର ମହିମା ।
ସେହି ସାଧକ ହୋଇ ମୁକ୍ତ, ପରମ ବ୍ରହ୍ମେ ହୁଏ ଯୁକ୍ତ ।
ପରମ ବ୍ରହ୍ମ ସନାତନ, ଅବିଦ୍ୟା କରନ୍ତି ହରଣ ।
ନୁହନ୍ତି ବ୍ରହ୍ମ ପରିମିତ, କରନ୍ତି ଜୀବେ ନିୟମିତ ।
ସେ ବ୍ରହ୍ମଜ୍ଞାନ ଯେବା ପାଏ, ତାହାର ମୋହ ନାଶ ଯାଏ ।
ହେଲେ ସେ ଈଶ୍ୱର ଅଧୀନ, ସର୍ବ ବନ୍ଧନ ହୁଏ ଛିନ୍ନ ।
ସେ ପରଂବ୍ରହ୍ମ ଜ୍ଞାନହେତୁ, ନିବୃତ୍ତ ହୁଏ ଜନ୍ମ ମୃତ୍ୟୁ ।
ଚିନ୍ତା ରଖିଲେ ତାଙ୍କଠାରେ, ଶରୀର ପତନ ଉତ୍ତାରେ ।
ମିଳି ଈଶ୍ୱର ସମୀପରେ, ସର୍ବ ଐଶ୍ୱର୍ଯ୍ୟ ଲାଭ କରେ ।
ପ୍ରେରକ, ଭୋଗ୍ୟ, ପୁଣି ଭୋକ୍ତା;ଯେ ଜାଣେ ଏ ତିନି ଏକତା
ଭବବନ୍ଧନୁଁ ହୋଇ ମୁକ୍ତ, ପରମେଶ୍ୱରେ ହୁଏ ଯୁକ୍ତ ।
ଜ୍ୱଳନ କାଷ୍ଠରେ ଅନଳ, ପ୍ରଚ୍ଛନ୍ନ ଥାଏ ସେ କେବଳ ।
ସେ କାଷ୍ଠ କଲେକ ଘର୍ଷଣ, ଅନଳ ହୁଏ ଉତପନ୍ନ ।
କାଷ୍ଠକୁ କରଣ ବିନାଶ, ଅନଳ ହୁଏ ଅପ୍ରକାଶ ।
ବିନାଶ ନୁହେଁ ସେ ଅନଳ, ଅଦୃଶ୍ୟ ହୁଅଇ କେବଳ ।
ଅନ୍ୟ କାଷ୍ଠରେ ସେ ମିଳିତ, ପୁନଶ୍ଚ ହୁଏ ପ୍ରକାଶିତ ।
ତେସନେ ଆତ୍ମା ଏ ଦେହରେ, ଦେହାନ୍ତ ଧରଣ ସଞ୍ଚରେ ।
କାଷ୍ଠକୁ କଲେକ ଘର୍ଷଣ, ଅନଳ ହୁଏ ଉତପନ୍ନ ।
ଓଁକାର ଶବ୍ଦ କଲେ ଧ୍ୟାନ, ଜନ୍ମଇ ଚିତ୍ତେ ବ୍ରହ୍ମଜ୍ଞାନ ।
ଏ ଦେହ ଅଟଇ ଅରଣି, ଓଁକାର ଉତ୍ତର ଅରଣି ।
ଧ୍ୟାନ ସ୍ୱରୂପ ସେ ଘର୍ଷଣ, ବ୍ରହ୍ମାଗ୍ନି ହୁଏ ଉତପନ୍ନ ।
ନଦୀଗର୍ଭରେ ଥାଏ ଜଳ, ତିଳମଧ୍ୟରେ ଥାଏ ତୈଳ ।
ଦଧି ମଧ୍ୟରେ ଥାଏ ଘୃତ, ଅରଣି ମଧ୍ୟୁଁ ଅଗ୍ନି ଜାତ ।
ତେସନେ ସତ୍ୟ ତପରେ, ସନ୍ଧାନ କରିବ ଈଶ୍ୱରେ ।
ଏ ଆତ୍ମା ଆତ୍ମାରେ ଗୃହୀତ, ହେବଟି ଜାଣିବ ନିଶ୍ଚିତ ।
ସର୍ବ ଅଂଶରେ ହୋଇ ପ୍ଲୁତ, ଦଧି ମଧ୍ୟରେ ଥାଏ ଘୃତ ।
ତେସନେ ସତ୍ୟ ତପରେ, ବ୍ରହ୍ମ ସେ ଥାନ୍ତି ନିରନ୍ତରେ ।
ଏ ବିଦ୍ୟା ତତ୍ତ୍ୱ ଯେବା ଜାଣେ, ସେ ଅଧିକାରୀ ବ୍ରହ୍ମଜ୍ଞାନେ ।

ଇତି ପ୍ରଥମ ଅଧ୍ୟାୟ ।

---

* ପଞ୍ଚ ଉତ୍ସ = ପଞ୍ଚଭୂତ । ପଞ୍ଚସ୍ରୋତ = ଚକ୍ଷୁରାଦି ପଞ୍ଚେନ୍ଦ୍ରିୟ । ପଞ୍ଚଊର୍ମି = ପ୍ରାଣ, ଅପାନ, ସମାନ, ଉଦାନ, ବ୍ୟାନ, ପଞ୍ଚଆବର୍ତ୍ତ—ରୂପାଦି ପଞ୍ଚ ବିଷୟ । ପଞ୍ଚାଶତ୍ ଶାଖା = ଲଜ୍ଜା, ଘୃଣା, ପ୍ରଭୃତି । ସୋପାନ ପଞ୍ଚବିଧ = ଅବିଦ୍ୟା, ଅହଂଭାବ, ରାଗ, ଦ୍ୱେଷ, ଅଭିନିବେଶ । ପଞ୍ଚପୁଳାନ = ଗର୍ଭ, ଜନ୍ମ, ଜରା, ବ୍ୟାଧି, ମରଣ ।

## ଦ୍ୱିତୀୟ ଅଧ୍ୟାୟ

ଆହେ ସବିତା କୃପା କର, ଜନମୁ ତତ୍ତ୍ୱଜ୍ଞାନ ମୋର ।
ପରମାତ୍ମାରେ ନେଇ ମୋତେ, ସଂଯୁକ୍ତ କରନ୍ତୁ ସତତେ ।
ଅଗ୍ନିର ଜ୍ୟୋତି ମୋ ଉପରେ, ସ୍ଥାପନ କର କୃପାଭରେ ।
ଅଗ୍ନି ପ୍ରଭୃତି ଦେବଗଣେ, ମୋ ପ୍ରତି କରୁଣାନୟନେ,
ସକଳ ବସ୍ତୁ ପ୍ରକାଶକ, ହେଉନ୍ତୁ ସାମର୍ଥ୍ୟଦାୟକ ।
ପୁଣି ସକଳ ବଳ ସାର, କରନ୍ତୁ ସବିତା ସଞ୍ଚାର ।
ସୂର୍ଯ୍ୟଦେବଙ୍କ ଆଜ୍ଞାଧୀନ, ହୋଇ ରହିବୁଁ ନିରନ୍ତର ।
ହେବ ମୋ ପରମାର୍ଥ ଗତି, ଯତ୍ନ କରିବୁ ଯଥାଶକ୍ତି ।
ପରଂବ୍ରହ୍ମଙ୍କ ଅଭିମୁଖେ, ଆହେ ସବିତା ଯିବୁଁ ସୁଖେ ।
ପରମବ୍ରହ୍ମ ଜ୍ୟୋତିର୍ମୟ, ଏହା ମୋ ହେଉ ଜ୍ଞାନୋଦୟ ।
ସବିତା କରନ୍ତୁ ଆଦେଶ, କରେଁ ମୁଁ ଆତ୍ମାରେ ପ୍ରବେଶ ।
ଯେ ବିପ୍ରେ ମନ ଓ ଇନ୍ଦ୍ରିୟ, କରି ପାରନ୍ତି ଆତ୍ମମୟ ।
ସବିତାଦେବେ ସେହିମାନେ, ସ୍ତୁତି କରନ୍ତି ସାବଧାନେ ।
ସମସ୍ତ କ୍ରିୟାର ବିଧାନ, କରନ୍ତି ସେ ସବିତା ଜାଣ ।
ଇନ୍ଦ୍ରିୟ ପୁଣି ଦେବଗଣ, ଅଟନ୍ତି ତାଙ୍କ ଯେ କାରଣ ।
ସେ ବ୍ରହ୍ମ ଅତ୍ୟନ୍ତ ମହାନ, ଆମ୍ଭେ ତାହାଙ୍କୁ କରୁଁ ଧ୍ୟାନ ।
ସେ ଦେବ ପବିତ୍ର ମାର୍ଗରେ, ଆସନ୍ତୁ ମୋହ ହୃଦୟରେ ।
ଆହେ ଅମୃତପୁତ୍ରଗଣ, ଏ କଥା କରନ୍ତୁ ଶ୍ରବଣ ।
ଯେତେକ ଦିବ୍ୟଧାମବାସୀ, ଶୁଣନ୍ତୁ ହୋଇ ଅଭିଳାଷୀ ।
ଯେଠାରେ କୁଣ୍ଡେ ଅଗ୍ନି ଜଳେ, ଯେସ୍ଥାନେ ପ୍ରାଣାୟାମବଳେ
ଶରୀର ମଧ୍ୟସ୍ଥଳେ ଆଉ, ଆବଦ୍ଧ ରହେ ପ୍ରାଣବାୟୁ ।
ଯେଠାରେ କୁମ୍ଭେ ସୋମରସ, ଉଛୁଳି ଉଠେ କ୍ରମଶ ।
ସେଠାରେ ଯଜ୍ଞ ବିଷୟରେ, ପ୍ରବୃତ୍ତି ଜନ୍ମେ ସହଜରେ ।
ସବିତା ପ୍ରସାଦେ ସାଧକ, ହେଉନ୍ତୁ ବ୍ରହ୍ମଉପାସକ ।
କଲେକ ବ୍ରହ୍ମଙ୍କୁ ଆଶ୍ରୟ, ତୁମ୍ଭର ଚିତ୍ତ ହେବ ଥୟ ।
ତୁମ୍ଭ ଇନ୍ଦ୍ରିୟ ପୁଣି ମନ, ନ ହେବ ବନ୍ଧନକାରଣ ।
ଗ୍ରୀବା ମସ୍ତକ ବକ୍ଷସ୍ଥଳ, ଉନ୍ନତ ରଖିଣ କେବଳ ।
ଆପଣା ମନରେ ଇନ୍ଦ୍ରିୟେ, ସ୍ଥାପନ କରିବ ହୃଦୟେ ।
ପରମବ୍ରହ୍ମ ଚିତ୍ତେ ସ୍ମରି, ପ୍ରଣବରୂପ ଭେଳା ଧରି ।
ବିଷମ ସଂସାରସାଗର, ଉତ୍ତୀର୍ଣ୍ଣ ହେବେ ଜ୍ଞାନୀ ନର ।
ଏଥିରେ ଏହାହିଁ କର୍ତ୍ତବ୍ୟ, ସୁଧୀର ସାଧକ ମାନବ ।
ପ୍ରାଣବାୟୁକୁ କୌଶଳରେ, ସଂଯତ କରିବେ ଯତ୍ନରେ ।
ନାସିକା ଯୋଗରେ କ୍ରମଶ, ତେଜିବେ ନିଶ୍ୱାସ ପ୍ରଶ୍ୱାସ ।
ଜ୍ଞାନୀ ଏ ହୋଇ ଅପ୍ରମତ୍ତ, ଯେହ୍ନେ ଦୁଷ୍ଟାଶ୍ୱଯୁକ୍ତ ରଥ ।
ଏସନେ କରିଣ ଯତନ, ମନକୁ କରିବେ ଧାରଣ ।
ଯେ ସ୍ଥାନ ଅଟଇ ପବିତ୍ର, ଅଗ୍ନି ବାଲୁକା ବିବର୍ଜିତ ।
କ୍ଷୁଦ୍ର ପ୍ରସ୍ତର ଯହିଁ ନାହିଁ, ସେ ସ୍ଥାନ ଯୋଗ୍ୟ ଧ୍ୟାନ ପାଇଁ ।
ପବିତ୍ର ଯାହା ନିରନ୍ତର, ନୁହଇ ନେତ୍ରପୀଡ଼ାକର ।
ନୁହଇ ବାୟୁ ବଳବାନ, ଏମନ୍ତ ଗିରିଗୁହା ସ୍ଥାନ ।
ନିର୍ମାଣ କରିଣ କୁଟୀର, ମନ ଇନ୍ଦ୍ରିୟ କରି ସ୍ଥିର ।
ଚିତ୍ତକୁ କରି ସମାଧାନ, କରିବ ବସି ବ୍ରହ୍ମଧ୍ୟାନ ।
ଯୋଗ କରିବା ସମୟରେ, ଦେଖିବ ଯଦ୍ୟପି ନେତ୍ରରେ ।
ନୀହାର, ଧୂମ, ସୂର୍ଯ୍ୟ, ବାୟୁ; ଖଦ୍ୟୋତ, ଅଗ୍ନି, ଚନ୍ଦ୍ର ଆଉ
ବ୍ରହ୍ମଙ୍କ ପ୍ରକାଶ ନିମିତ୍ତ, ପ୍ରଥମେ ହୁଏ ଅନୁମିତ ।
ମୃତ୍ତିକା, ଅଗ୍ନି, ଜଳ, ବାୟୁ; ଉଠିଲେ ଆକାଶରୁ ଆଉ ।
ଯୋଗାଗ୍ନିଯୁକ୍ତ ଏ ଦେହରେ, ରୋଗାଦି ପ୍ରବେଶ ନକରେ ।
ଆରୋଗ୍ୟ ବର୍ଣ୍ଣ ଉଜ୍ଜ୍ୱଳତା, ମଳ ମୂତ୍ରର ଯେ ଅଳ୍ପତା ।
ସୁଗନ୍ଧ ସ୍ୱରର ମାଧୁର୍ଯ୍ୟ, ଲୋଭଶୂନ୍ୟତା ଚିତ୍ତ ଧୈର୍ଯ୍ୟ ।
ଲଘୁତ୍ୱ ଆଦି ଏ ସକଳ, ଅଟେ ପ୍ରଥମ ଯୋଗଫଳ ।
ମଳିନ ଧାତୁ ନେଇ ବାରେ, ଘର୍ଷଣ କଲେ ମୃତ୍ତିକାରେ ।
ଉଜ୍ଜ୍ୱଳ ଦିଶଇ ଯେମନ୍ତ, ତେସନେ ଜାଣି ଆତ୍ମତତ୍ତ୍ୱ ।
ଦେହୀ କୃତାର୍ଥ ହୋଇଥାଏ, ଦେହାନ୍ତେ ସ୍ୱର୍ଗପଦ ପାଏ ।
ଯୋଗୀନ୍ଦ୍ର ସାଧକ ସମସ୍ତ, ଦୀପ ସ୍ଥାନୀୟ ଆତ୍ମତତ୍ତ୍ୱ ।
ତହିଁରେ ଦେଖି ବ୍ରହ୍ମତତ୍ତ୍ୱ, ହୁଅନ୍ତି ମୃତ୍ୟୁଶୋକାତୀତ ।
ଈଶ୍ୱରେ ଜାଣି ଯୋଗୀଜନ, ବନ୍ଧନ କରନ୍ତି ଛେଦନ ।
ଏହି ଦେବ ଯେ ସର୍ବ ଦିଗ, ଅଗ୍ନି ଯେ ଅବାନ୍ତର ଦିଗ ।
ହିରଣ୍ୟଗର୍ଭ ସ୍ୱରୂପରେ, ଜନ୍ମ ହୁଅନ୍ତି ପ୍ରଥମରେ ।
ଜଗତୁ ମଧ୍ୟେ ବର୍ତ୍ତମାନ. ଥାଆନ୍ତି ସେହି ଦେବ ଜାଣ ।
ଜନ୍ମିବେ ଜନ୍ମିଛନ୍ତି ପୁଣି, ସର୍ବତ୍ର ଥାନ୍ତି ଅଛୁଁ ଶୁଣି ।
ଯେଉଁ ଦେବତା ଅନଳରେ, ଯେ ଦେବ ଅଛନ୍ତି ଜଳରେ
ବ୍ୟାପି ଅଛନ୍ତି ସର୍ବସ୍ଥାନ, ଔଷଧି ମଧ୍ୟେ ବର୍ତ୍ତମାନ ।
ବନସ୍ପତିରେ ଯେ ଦେବତା, ପ୍ରକାଶିଛନ୍ତି ନିଜ ସତ୍ତା,
ସେହି ଦେବଙ୍କୁ ବାରମ୍ବାର, କରୁଅଛି ମୁଁ ନମସ୍କାର ।

ଇତି ଦ୍ୱିତୀୟ ଅଧ୍ୟାୟ ।

## ତୃତୀୟ ଅଧ୍ୟାୟ

ବିଶ୍ୱବ୍ରହ୍ମାଣ୍ଡ ବରଣୀୟ, ଯେଉଁ ମାୟାରେ ଅଧିଷ୍ଠିୟ ।
ନିଜ ଶକ୍ତିରେ ନିୟମିତ, କରନ୍ତି ଲୋକଙ୍କ ସହିତ ।
ଜଗତ ସ୍ଥିତି ଉଦ୍ଭବ, ବିନାଶ ତାଙ୍କ କାର୍ଯ୍ୟ ସବ ।
ତାହାଙ୍କୁ ଜାଣେ ଯେଉଁ ନର, ନିଶ୍ଚେ ସେ ହୁଅଇ ଅମର ।
ରୁଦ୍ର ଅଟନ୍ତି ଏକମାତ୍ର, ବିରାଜି ଅଛନ୍ତି ସର୍ବତ୍ର ।
ନିଜ ଶକ୍ତିରେ ଲୋକଗଣେ, ରଖନ୍ତି ନିୟମ ପାଳନେ ।
ଏଥିକୁ ବ୍ରହ୍ମବାଦୀଗଣ, କରନ୍ତି ତାହାଙ୍କୁ ସ୍ମରଣ ।
ଦ୍ୱିତୀୟ ରୁଦ୍ର ଅସ୍ୱୀକାର, କରନ୍ତି ସର୍ବେ ବାରମ୍ବାର ।
ସର୍ବ ପଶ୍ଚାତେ ଭଗବାନ, ରହିଅଛନ୍ତି ବର୍ତ୍ତମାନ ।
ଜଗତ କରିଣ ସୃଜନ, ପୁଣି ସେ କରନ୍ତି ପାଳନ ।
ଅନ୍ତକାଳରେ ପୁନର୍ବାର, କରନ୍ତି ସକଳ ସଂହାର ।
ସର୍ବତ୍ର ତାହାଙ୍କ ନୟନ, ସର୍ବତ୍ର ତାହାଙ୍କ ବଦନ ।
ସର୍ବତ୍ର ତାହାଙ୍କର ବାହୁ, ସର୍ବତ୍ର ପଦ ଅଛି ଆଉ ।
ସେହି ଯେ ଏକମାତ୍ରଦେବ, ତାଠାରୁ ସର୍ବ ଜାତ ହେବ ।
ଆକାଶ ପୃଥିବୀ ସୃଜନ, କଲେ ସେ ବ୍ରହ୍ମ ସନାତନ ।
ମାନବ ସୃଜିଲେ ପ୍ରତ୍ୟକ୍ଷ, ପକ୍ଷୀଗଣକୁ ଦେଲେ ପକ୍ଷ ।
ସୃଜିଣ ଦେବତାମଣ୍ଡଳେ, ମଣ୍ଡିଲେ ତାଙ୍କୁ ଶକ୍ତିବଳେ ।
ହିରଣ୍ୟଗର୍ଭ ଉତ୍ପାଦନ, କଲେ ସେ ବ୍ରହ୍ମ ସନାତନ ।
ଆମ୍ଭଙ୍କୁ ବ୍ରହ୍ମ ଭଗବାନ, କରନ୍ତୁ ସୁବୁଦ୍ଧି ପ୍ରଦାନ ।
ହେ ରୁଦ୍ର ଆହେ ବିଶ୍ୱମ୍ଭର, ଆମ୍ଭମାନଙ୍କୁ କୃପା କର ।
ତୁମ୍ଭର ଅଭୟା ବରଦା, ଯେ ତନୁ ଅଟେ ବରପ୍ରଦା,
ସେ ସୁଖତମା ତନୁ ଯୋଗେ, ଆମ୍ଭଙ୍କୁ ରଖନ୍ତୁ ମୁଦୋଗେ ।
ହେ ଦେବ ହେ ଗିରିରକ୍ଷକ, ହେଉନ୍ତୁ କଲ୍ୟାଣଦାୟକ ।
ଯେ ବଜ୍ର ବିନାଶ କାରଣ, ହସ୍ତରେ କରିଛ ଧାରଣ ।
ତାହାକୁ କର ସମ୍ବରଣ, ତହିଁ ନ ନାଶ ଲୋକଗଣ ।
ଏହି ଜଗତଠାରୁ ଶ୍ରେଷ୍ଠ, ହିରଣ୍ୟଗର୍ଭରୁ ଗରିଷ୍ଠ ।
ସେହି ଯେ ପରମାତ୍ମା ଜାଣ, ଶରୀରେ ଛନ୍ତି ବର୍ତ୍ତମାନ ।
ସକଳ ଭୂତର ପାଳକ, ଏ ବିଶ୍ୱବ୍ରହ୍ମାଣ୍ଡବ୍ୟାପକ,
ତାହାଙ୍କୁ ଜାଣେ ଯେଉଁ ନର, ଅବଶ୍ୟ ହୁଏ ସେ ଅମର ।
ଆଦିତ୍ୟ ବର୍ଣ୍ଣ ସ୍ୱପ୍ରକାଶ, କରନ୍ତି ଅଜ୍ଞାନତା ନାଶ ।
ବ୍ୟାପ୍ତ ବ୍ରହ୍ମାଣ୍ଡେ ସର୍ବଭାବେ, ବିଶେଷ ଜାଣୁ ତାଙ୍କୁ ଆତ୍ମେ
ତାହାଙ୍କୁ ଜାଣିଣ ସାଧକ, କରନ୍ତି ଜୀବନ ସାର୍ଥକ ।
ପାଇବା ପାଇଁ ଅମୃତତ୍ୱ, ନାହିଁଟି ଜାଣ ଅନ୍ୟ ପଥ ।
ତାହାଙ୍କୁ ବଳି କିଛି ନାହିଁ, ଶ୍ରେଷ୍ଠ ଅଶ୍ରେଷ୍ଠ ଦ୍ରବ୍ୟ ପାଇଁ
ଯା କିଛି କ୍ଷୁଦ୍ର ବା ବୃହତ, ସକଳ ତାହାଙ୍କ ଆୟତ୍ତ ।
ସେହି ଦେବତା ନିରନ୍ତରେ, ବ୍ୟାପ୍ତ ଅଛନ୍ତି ଆକାଶରେ ।
ସେ ମହାପୁରୁଷେ ଜଗତ, ସମ୍ପୂର୍ଣ୍ଣ ରହିଛି ସମସ୍ତ ।
ସେହି ଦେବତା ଅଦ୍ୱିତୀୟ, ପୁଣି ଅଟନ୍ତି ଅପ୍ରମେୟ ।
ସେ ଦେବ ଜଗତ ଅତୀତ, ଅରୂପ ପୁଣି ଦୁଃଖାତୀତ ।
ଯେ ଜାଣେ ତାଙ୍କୁ ଲଭେ ଶାନ୍ତି, ଅନ୍ୟେ ହୁଅନ୍ତି ଦୁଃଖପ୍ରାପ୍ତି
ସମସ୍ତ ମୁଖ, ଗ୍ରୀବା, କର; ଅଟେ ଯେ ସେହିପ୍ରଭୁଙ୍କର ।
ସକଳ ଭୂତର ହୃଦୟେ, ଆଛନ୍ନ ସକଳ ସମୟେ ।
ତାଙ୍କ ଆଶ୍ରିତ ସର୍ବ ଜୀବ, ସେ ବ୍ରହ୍ମ ସର୍ବଗତ ଶିବ ।
ସକଳ ଭୂତର ଚାଳକ, ଅନ୍ତଃକରଣ ପ୍ରବର୍ତ୍ତକ ।
ପରମ ପଦ ସୁନିର୍ମଳ, ପ୍ରାପ୍ତିର ହେତୁ ସେ କେବଳ ।
ସେ ପରଂବ୍ରହ୍ମ ଜ୍ୟୋତିର୍ମୟ, ନିୟନ୍ତା ଅଚଳ ଅବ୍ୟୟ ।
ହୃଦୟ ଛିଦ୍ର ପରିମାଣେ, ବ୍ୟାପ୍ତ ଅଛନ୍ତି ସର୍ବ ସ୍ଥାନେ ।
ହୃଦୟ ମନେ ପ୍ରକାଶିତ, ହୁଅନ୍ତି ଜଗତ ଅତୀତ ।
ଏପରି କରେ ଯେ ବିଶ୍ୱାସ, ମୃତ୍ୟୁ ନ ଯାଏ ତାହା ପାଶ ।
ତାହାଙ୍କ ସହସ୍ର ବଦନ, ସହସ୍ର ନୟନ ଚରଣ ।
ପୃଥିବୀ କରିଣ ବେଷ୍ଟନ, ରହିଅଛନ୍ତି ଅନୁକ୍ଷଣ ।
ଦଶ ଅଙ୍ଗୁଳ ପରିମାଣ, ଉପରେ ଥାନ୍ତି ବିଦ୍ୟମାନ ।
ଦଶ ଅଙ୍ଗୁଳ ଯେ ଆକାର, ଅଟଇ ଅନନ୍ତ ଅପାର ।
ନାଭି ଉପରେ ଯେ ହୃଦୟ, ଦଶ ଅଙ୍ଗୁଳ ଅନୁମେୟ ।
ପରମବ୍ରହ୍ମ ସେହି ସ୍ଥାନେ, ଅଛନ୍ତି ଜାଣ ଅନୁମାନେ ।
ଯାହା ହୋଇଛି ଯାହା ହେବ, ସକଳ ମୂଳ ସେହି ଦେବ
ଦିଅନ୍ତି ସେହି ଅମରତ୍ୱ, ଏ କଥା ହେବ ଅବଗତ ।
ଅନ୍ନରେ ଯା ହୁଏ ବର୍ଦ୍ଧିତ, ସେ ମଧ୍ୟ ତାହାଙ୍କ ଆଶ୍ରିତ ।
ସର୍ବତ୍ର ଯାହାଙ୍କ ବଦନ, ସର୍ବତ୍ର ଯାହାଙ୍କ ନୟନ ।
କର ଚରଣ କର୍ଣ୍ଣ ଆଦି, ସର୍ବତ୍ର ରହିଛି ଆଚ୍ଛାଦି ।
ଅଟନ୍ତି ସକଳ ବ୍ୟାପକ, ଏ ବିଶ୍ୱବ୍ରହ୍ମାଣ୍ଡଚାଳକ ।
ଇନ୍ଦ୍ରିୟ ଶକ୍ତି ପ୍ରକାଶକ, ସକଳ ଆଲୋକ ଆଲୋକ ।

ସକଳ ଇନ୍ଦ୍ରିୟବର୍ଜିତ, ସକଳ ତାହାଙ୍କ ଆଶ୍ରିତ ।
ଜଗତେ ବ୍ରହ୍ମବାଦିଗଣ, କରନ୍ତି ତାହାଙ୍କୁ ଦର୍ଶନ ।
ସ୍ଥାବର ଜଙ୍ଗମ ସମସ୍ତ, ଅଟନ୍ତି ତାହାଙ୍କ ଆବୃତ୍ତ ।
କରନ୍ତି ଅବିଦ୍ୟାକୁ ଧ୍ୱଂସ, ଏଥିକୁ ତାଙ୍କ ନାମ ହଂସ ।
ଏହି ଯେ ନବ ଦ୍ୱାର ପୁରୀ. ତହିଁ ମଧ୍ୟରେ ଛନ୍ତି ପୂରି ।
ପୁରୀ ଅଟଇ ଏହି ଦେହ, ଯୁଗଳ ନେତ୍ର କର୍ଣ୍ଣ ଦ୍ୱୟ ।
ନାସା ଚରଣ ହସ୍ତ ପାୟୁ, ଉପସ୍ଥ, ମୁଖ ଅଟେ ଆଉ ।
ଏହି ଅଟଇ ନବ ଦ୍ୱାର, ଶରୀର ରୂପ ଅଟେ ଘର ।
ଏହି ଦେହରେ ହୋଇ ଦେହୀ, କରନ୍ତି ନାନା ଭୋଗ ରହି
ସେ ପରମାତ୍ମା ବେଗବାନ, ନାହିଁଟି ହସ୍ତ ପାଦମାନ ।
ନାହିଁଟି ତାହାଙ୍କ ନୟନ, ସମସ୍ତ କରନ୍ତି ଦର୍ଶନ ।
ନୋହି ସେ ମଧ୍ୟ କର୍ଣ୍ଣବନ୍ତ, ଶ୍ରବଣ କରନ୍ତି ସମସ୍ତ ।
ଜ୍ଞେୟ ବିଷୟ ଜଣା ତାଙ୍କୁ. ମାତ୍ର ନ ଜାଣେ କେହି ତାଙ୍କୁ
ସକଳ ଘଟେ ବିଦ୍ୟମାନ, ଏ କଥା ଜାଣେ ଜ୍ଞାନବାନ ।
ଏପରି ବ୍ରହ୍ମବିଦଗଣେ, ଭାଳନ୍ତି ତାଙ୍କୁ ମନେ ମନେ ।
ସେ ଆତ୍ମା ସୂକ୍ଷ୍ମ ସୂକ୍ଷ୍ମତର, ମହତଠାରୁ ମହତ୍ତର ।
ବ୍ରହ୍ମାଣ୍ଡ ପ୍ରାଣୀଙ୍କ ହୃଦୟେ, ଅଛନ୍ତି ସକଳ ସମୟେ ।
ସାଧକେ ଈଶ୍ୱର ପ୍ରସାଦେ, ଜାଣନ୍ତି ତାଙ୍କୁ ଅପ୍ରମାଦେ ।
ତାହାଙ୍କ ମହିମା ଦର୍ଶନ, କରନ୍ତି ବ୍ରହ୍ମବିଦଗଣ ।
ଅଜର, ପୁରାଣ, ଅନନ୍ତ; ସର୍ବାତ୍ମ ପୁଣି ସର୍ବଗତ ।
ବ୍ୟାପି ଅଛନ୍ତି ସର୍ବ ସ୍ଥାନେ, ଅନନ୍ତ ଆକାଶ ସମାନେ ।
ଜ୍ଞାନକୁ ବ୍ରହ୍ମବାଦିଗଣ, ବୋଲନ୍ତି ସକଳ କାରଣ ।
ଏଥିକୁ ଜ୍ଞାନକୁ ସେମାନେ, ଭକ୍ତି କରନ୍ତି ସାବଧାନେ ।

ଇତି ତୃତୀୟ ଅଧ୍ୟାୟ ।

---

## ଚତୁର୍ଥ ଅଧ୍ୟାୟ

ଆତ୍ମଶକ୍ତିରେ ଇଚ୍ଛାମୟ, ସୃଜିଲେ ସକଳ ବିଷୟ ।
ଅନ୍ତ କାଳରେ ଏ ସମସ୍ତ, ହେବ ତା'ଠାରେ ଉପଗତ ।
ହୋଇ ସେ ଦେବ କୃପାବାନ, କରନ୍ତୁ ଶୁଭ ବୁଦ୍ଧିଦାନ ।
ସେ ଦେବ ଅଗ୍ନି, ସେ ଆଦିତ୍ୟ; ବାୟୁ, ଚନ୍ଦ୍ରମା ଦୀପ୍ତିମନ୍ତ
ନକ୍ଷତ୍ରାବଳୀ ସେହି ବ୍ରହ୍ମ, ସେ ପ୍ରଜାପତି ପରମାତ୍ମ ।
ତୁମ୍ଭେ ପୁରୁଷ, ତୁମ୍ଭେ ନାରୀ, ତୁମ୍ଭେହିଁ କୁମାର କୁମାରୀ ।
ତୁମ୍ଭେହିଁ ହୋଇ ଜରାଗ୍ରସ୍ତ, ଚଳ ଯେ ହୋଇ ଦଣ୍ଡହସ୍ତ ।
ବିଶ୍ୱତମୁଖ ସନାତନ, କର ଯେ ଜନମ ଗ୍ରହଣ ।
ନୀଳ ପତଙ୍ଗ ଅଟ ତୁମ୍ଭେ, ବ୍ୟାପୀ ରହିଛ ବିଶ୍ୱଭବେ ।
ତୁମ୍ଭେହିଁ ମେଘ, ଋତୁ, ସିନ୍ଧୁ; ବିଶ୍ୱଜନଙ୍କ ଅଟ ବନ୍ଧୁ ।
ଅନାଦି ସ୍ୱରୂପରେ ତୁମ୍ଭେ, ବ୍ୟାପୀ ରହିଛ ବିଶ୍ୱଭବେ ।
ବ୍ରହ୍ମଙ୍କ ଆଜ୍ଞାରେ ଭୁବନ, ସମସ୍ତ ହୋଇଛି ଉତ୍ପନ୍ନ ।
ଲୋହିତ ଶୁକ୍ଳ କୃଷ୍ଣ ବର୍ଣ୍ଣ, ଅନଳ ଜଳ ଅବା ଅନ୍ନ ।
ତ୍ରିଗୁଣ ରଜ ତମ ସତ୍ତ୍ୱ; ଯହିଁ ଅଛଇ ଏ ସମସ୍ତ ।
ବହୁ ପ୍ରଜାର ଉତ୍ପାଦିକା, ଅଜା ନାମରେ ପ୍ରକାଶିକା ।
ତାହାର ନାମ ଯେ ପ୍ରକୃତି, ଅଜ ଯେ ଆତ୍ମାର ଆକୃତି ।
ଅଜ ଯେ ସେବକଭାବରେ; ଅଜାକୁ ନିତ୍ୟ ସେବାକରେ ।
ଆରେକ ଆତ୍ମା ମହାଭାଗ, ଅଜାକୁ ନିତ୍ୟ କରେ ତ୍ୟାଗ ।
ଦୁଇଟି ପକ୍ଷୀ ଏକ ବୃକ୍ଷେ, ବସିଣ ଅଛନ୍ତି ପ୍ରତ୍ୟକ୍ଷେ ।
ଗୋଟିଏ ପକ୍ଷୀ ଭୁଞ୍ଜେ ଫଳ, ଆରେକ ଦେଖଇ କେବଳ ।
ପୁରୁଷ ଜୀବ ଏ ଦେହରେ, ନିମଗ୍ନ ଥାଏ ଯେ ଶୋକରେ ।
ସାଧକମାନଙ୍କ ଈଶ୍ୱରେ, ଦେଖିଲେ ରହେ ଆନନ୍ଦରେ ।
ଆକାଶକଳ୍ପ ଶ୍ରେଷ୍ଠତମ, ଅଟନ୍ତି ପୁରୁଷ ପରମ ।
ବ୍ରହ୍ମାଣ୍ଡ ଦେବତାନିକରେ, ଅଛନ୍ତି ତାଙ୍କ ଆଶ୍ରୟରେ ।
ତାହାଙ୍କୁ ଯେ ଲୋକ ନ ଜାଣେ, କି କାର୍ଯ୍ୟ ଋକମନ୍ତ୍ର ଜ୍ଞାନେ ।
ଜାଣେ ଯେ ତାହାଙ୍କ ବୃତ୍ତାନ୍ତ,ସେ ଲୋକ ହେବ ଯେ କୃତାର୍ଥ
ଘୃତାଦିଯୋଗରେ ସମ୍ପାଦ୍ୟ, ହୁଏଟି ବେଦଯଜ୍ଞ ଆଦ୍ୟ ।
ବୃହତ ଯାଗ ସୋମରସେ,ହୁଏ ଏକଥା ବେଦେ ଘୋଷେ ।
ଯାହା ହେଉଛି ଯାହା ହେବ, ତାହାର ନାମ ବ୍ରତଦେବ ।
ଆବଦ୍ଧ ଜୀବ ଯେ ମାୟାରେ, ଏ ସର୍ବ କାର୍ଯ୍ୟ କରିବାରେ ।
ମାୟାକୁ ଜାଣିବ ପ୍ରକୃତି, ମାୟୀ ଅଟନ୍ତି ବିଶ୍ୱପତି ।
ସେହି ଯେ ମାୟୀଙ୍କ ଆବୃତ୍ତ, ହୋଇଛି ସମସ୍ତ ଜଗତ ।
ଯେଉଁ ଦେବତା ଅଧିଷ୍ଠାୟୀ, ବିଶ୍ୱ ବ୍ରହ୍ମାଣ୍ଡ ବରଣୀୟ ।
ତା ତହୁଁ ଜନ୍ମିଛି ଭୁବନ, ପ୍ରଳୟେ କରିବ ଗମନ ।
ନିୟନ୍ତା ସେହି ବରପ୍ରଦ, ସାଧକ ଜାଣି ଲଭ ମୋଦ ।

ବିଶ୍ୱ ସଂସାର ପାରସେତୁ, ଦେବତା ଜନ୍ମଶକ୍ତି ହେତୁ ।
ହିରଣ୍ୟଗର୍ଭ ରୁଦ୍ରମୂର୍ତ୍ତି, ଜାଣି ତାହାଙ୍କୁ ଲଭ ମୁକ୍ତି ।
ଆତ୍ମା ନାମରେ ଦେବ ଉକ୍ତ, କରନ୍ତୁ ଶୁଦ୍ଧ ବୁଦ୍ଧି ମୁକ୍ତ ।
ଦେବତାଗଣ ଅଧିପତି, ଯାହାଙ୍କ ଆଶ୍ରିତ ନିୟତି ।
ସକଳେ ଯାହାଙ୍କ ଆଶ୍ରିତ, ଏ ବିଶ୍ୱ ବ୍ରହ୍ମାଣ୍ଡବିଦିତ ।
ପ୍ରାଣୀ ଦ୍ୱିପଦ ଚତୁଷ୍ପଦ; ଅଟନ୍ତି ସମସ୍ତ ପ୍ରାଣଦ ।
'କ' ନାମେ ଦେବତା ପ୍ରଧାନ, ସକଳେ କର ତାଙ୍କୁ ଧ୍ୟାନ ।
ସୂକ୍ଷ୍ମରୁ ସେହି ସୂକ୍ଷ୍ମତର, ଅବିଦ୍ୟା ବିଦ୍ୟାର ଆକର ।
ଅନେକ ରୂପ ବିଶ୍ୱସ୍ରଷ୍ଟା, ବିଶ୍ୱର ପ୍ରତି ସ୍ଥାନ ଦ୍ରଷ୍ଟା ।
ତାହାଙ୍କୁ ଜାଣିଣ ଗୋଚରେ, ସାଧକ ଶାନ୍ତି ଲଭ କରେ ।
ସେ ପ୍ରଭୁ ଭୁବନରକ୍ଷକ, ସମସ୍ତ ବିଶ୍ୱର ପାଳକ ।
ଅଟନ୍ତି ସର୍ବଭୂତ ପ୍ରାଣ, ଗୂଢ ରୂପରେ ବର୍ତ୍ତମାନ ।
ବ୍ରହ୍ମର୍ଷି ଦେବତା ସକଳେ, ଅଛନ୍ତି ତାଙ୍କ କୃପାବଳେ ।
ତାହାଙ୍କୁ ଜାଣି ଜ୍ଞାନୀ ଜନ, ଛେଦନ୍ତି ମରଣବନ୍ଧନ ।
ଘୃତ ଉପରେ ମଣ୍ଡ ପରି, ଅଛନ୍ତି ସୂକ୍ଷ୍ମରୂପ ଧରି ।
ସର୍ବ ଭୂତରେ ବିଦ୍ୟମାନ, ଅଛନ୍ତି ପରବ୍ରହ୍ମ ଜାଣ ।
ମଙ୍ଗଳସ୍ୱରୂପ ଈଶ୍ୱର, ବ୍ୟାପିଅଛନ୍ତି ଚରାଚର ।
ତାହାଙ୍କୁ ଜାଣେ ଯେଉଁ ଭକ୍ତ, ମୃତ୍ୟୁ ବନ୍ଧନୁ ହୁଏ ମୁକ୍ତ ।
ସେ ବିଶ୍ୱକର୍ମା ଦେବ ଦେବ, ହେବେ ହୃଦୟେ ଆବିର୍ଭାବ ।
ହୃଦୟ ସଂଶୟରହିତ, ହେଲେ ସେ ହେବେ ପ୍ରକାଶିତ ।
ତାହାଙ୍କୁ ଜାଣେ ଯେଉଁ ନର, ନିଶ୍ଚୟ ହେବ ସେ ଅମର ।
ହେଲେ ଯେ ଜ୍ଞାନର ପ୍ରକାଶ, ଦିବା ରଜନୀ ଯାଏ ନାଶ ।
ନ ଥାଏ ସତ ବା ଅସତ, କେବଳ ଥାନ୍ତି ସେ ଜାଗ୍ରତ ।
ବ୍ରହ୍ମରୁ ପ୍ରଜ୍ଞା ପୁରାତନୀ, ପ୍ରକାଶ ଏହା ଥିବ ମଣି ।
ଊର୍ଦ୍ଧ୍ୱ ବା ନିମ୍ନ ବା ମଧ୍ୟରେ, ନ ପାନ୍ତି ତାଙ୍କୁ ସହଜରେ ।
ଅସୀମ ତାହାଙ୍କ ମହିମା, ତାହାଙ୍କ ନାହିଁଟି ପ୍ରତିମା ।
ଦର୍ଶନ ଯୋଗ୍ୟ ପ୍ରଦେଶରେ,ଦେଖନ୍ତି ନାହିଁ ତାଙ୍କୁ ନରେ ।
ନ ଥାଏ ଆକାର ସାଦୃଶ୍ୟ, ନେତ୍ରରେ ନ ହୁଅନ୍ତି ଦୃଶ୍ୟ ।
କେବଳ ହୃଦୟ ମନରେ, ଦେଖିବ ତାଙ୍କୁ ପ୍ରତ୍ୟକ୍ଷରେ ।
ହେ ପରବ୍ରହ୍ମ ବିଶ୍ୱତାତ, ତୁମ୍ଭେହିଁ ଅଟ ଯେ ଅଜାତ ।
ସଂସାର ଭୀତ ଲୋକଗଣ, ନିଅନ୍ତି ତୁମ୍ଭରେ ଶରଣ ।
ଆନନ୍ଦଜନକ ଚିନ୍ମୟ; ତୁମ୍ଭ ସ୍ୱରୂପ ଦୟାମୟ ।
ସେରୂପେ ଆହେ ବିଶ୍ୱମ୍ଭର, ସର୍ବଦା ମୋତେ ରକ୍ଷା କର ।
ମୋର ଜୀବନ, ପୁତ୍ର ନାତି; ଅଶ୍ୱାଦି ଗୋଧନ ସମ୍ପତ୍ତି ।
ଆବର ଯେତେ ଦାସୀ ଦାସ, ତାହାଙ୍କୁ ନ କର ବିନାଶ ।
ହୋମର ଯୋଗ୍ୟ ଦ୍ରବ୍ୟମାନ, ଦେନିଣ କରୁଛି ଆହ୍ୱାନ ।

ଇତି ଚତୁର୍ଥ ଅଧ୍ୟାୟ ।

---

## ପଞ୍ଚମ ଅଧ୍ୟାୟ

ସେ ବ୍ରହ୍ମ ଅକ୍ଷୟ ଅନନ୍ତ, ବିଦ୍ୟା ଅବିଦ୍ୟାଦି ଯାବନ୍ତ ।
ତହିଁରେ ରହିଛି ନିହିତ, ଏ କଥା ହେବ ଯେ ବିଦିତ ।
ଅବିଦ୍ୟା ସ୍ୱରୂପକୁ ମଣ, ସଂସାର ଗତିର କାରଣ ।
ବିଦ୍ୟା ଅଟଇ ମୋକ୍ଷ ହେତୁ, ସଂସାରସିନ୍ଧୁ ପାରିସେତୁ ।
ଯେ ପରମାତ୍ମା ସନାତନ, ପ୍ରତ୍ୟେକ ଭୂତର କାରଣ ।
ସମସ୍ତ ବୀଜ ଅଧିଷ୍ଠାତା,ଅଗ୍ରେ ପ୍ରସୂତ ସର୍ବଜ୍ଞାତା ।
ସେ ଦେବ ଜାଲକୁ ବିସ୍ତାର, କରନ୍ତି ପୁଣି ପ୍ରତ୍ୟାହାର ।
ମରୀଚି ଆଦି ଲୋକପାଳେ, ସୃଜନ କଲେ ପୂର୍ବକାଳେ ।
ଯେମନ୍ତ ସୂର୍ଯ୍ୟର କିରଣ, ବ୍ୟାପଇ ସମସ୍ତ ଭୁବନ ।
ଊର୍ଦ୍ଧ୍ୱ ବା ଅଧ ବା ମଧ୍ୟରେ, ପ୍ରକାଶ ପାଏ କିରଣରେ;
ତେସନେ ସେ ପରମାତ୍ମାନ, ସର୍ବତ୍ର ଥାନ୍ତି ବିଦ୍ୟମାନ ।
କାରଣ ସ୍ୱଭାବ ସହିତ, କରନ୍ତି ସର୍ବ ନିୟମିତ ।
ସେ ଦେବ ବିଶ୍ୱର କାରଣ, ସର୍ବ କରନ୍ତି ନିଷ୍ପାଦନ ।
ପକ୍ୱତାପ୍ରାପ୍ତି ଯୋଗ୍ୟ ଦ୍ରବ୍ୟ, କରନ୍ତି ପରିପାକ ସର୍ବ ।
ଏକାକୀ ସମସ୍ତ ଭୁବନ, କରନ୍ତି ନିୟତ ପାଳନ ।
ସତ୍ତ୍ୱ ରଜାଦି ଗୁଣଗ୍ରାମେ, କରନ୍ତି ଯୁକ୍ତ ନିଜ କର୍ମେ ।
ଯେ ବିଦ୍ୟା ବେଦର ଅଣିତ, ଉପନିଷଦରେ କଥିତ ।
ସେ ବିଦ୍ୟା ବେଦର ଆକାର, ବ୍ରହ୍ମା ଜାଣନ୍ତି ସମାଗ୍ରର ।
ରୁଦ୍ର ପ୍ରଭୃତି ଦେବଗଣ, କାମଦେବାଦି ତପୋଧନ ।
ଜାଣି ସେ ପରମାତ୍ମା ତତ୍ତ୍ୱ, ଲଭିଅଛନ୍ତି ଅମରତ୍ୱ ।
ସତ୍ତ୍ୱ ରଜାଦି ଗୁଣତ୍ରୟ, ସମ୍ପଦ ବିପଦ ନିଚୟ ।
କରିଣ ସର୍ବ ନିୟମିତ, କଲେ ଜଗତେ ସଞ୍ଚାରିତ ।

ଧର୍ମ, ଅଧର୍ମ, ଜ୍ଞାନ ତିନି; ତ୍ରିମାର୍ଗ ମନେ ଥିବ ଚିନି ।
ନିଜ କର୍ମରେ ଜୀବଗଣ, କରୁଅଛନ୍ତି ସଞ୍ଚରଣ ।
ସୁଗୁଣ ଆତ୍ମା ଜ୍ୟୋତିମନ୍ତ, ହୃଦର କରଣେ ଯେମନ୍ତ ।
ସଙ୍କଳ୍ପ ବୁଦ୍ଧି ଅହଙ୍କାର, ତା ତହୁଁ ସକଳ ପ୍ରଚାର ।
ଯେତେକ ଶାରୀରକ ଗୁଣ, ତା ତହିଁ ଜନ୍ମିଅଛି ପୁଣ,
କେଶାଗ୍ର ଶତତମ ଭାଗ, ସମାନେ ସୂକ୍ଷ୍ମ ଜୀବବର୍ଗ ।
ଅଥଚ ପ୍ରକାଶେ ମହିମା, ତା ଅଭିଳାଷ ନାହିଁ ସୀମା ।
ଜୀବାତ୍ମା ନୁହନ୍ତି ଯେ ନାରୀ, ପୁରୁଷ, ନପୁଂସକଧାରୀ,
କରଇ ଯେ ଦେହ ଧାରଣ, କରଇ ସେ ନାମ ଗ୍ରହଣ ।
ଜୀବାତ୍ମା ବାସ କରି ଦେହେ, ସଂକଳ୍ପ ସ୍ପର୍ଶ ଦୃଷ୍ଟିମୟେ ।
କ୍ରମଶଃ ଯତ୍ନେ ପାଏ ବୃଦ୍ଧି, ଜଗତେ ଲଭଇ ପ୍ରସିଦ୍ଧି ।
ଆପଣା କର୍ମ ଅନୁସାରେ, ଭ୍ରମଣ କରେ ଏ ସଂସାରେ ।
ଅନ୍ନ ଜଳରେ ବିଦ୍ୟମାନ, ହୁଏ ବିଶେଷେ କରି ଜ୍ଞାନ ।
ଦେହୀ ଯେ ଗୁଣ ଅନୁସାରେ, ପ୍ରାକ୍ତନ ଜନମ ସଂସ୍କାରେ ।
ସ୍ଥୂଳ ଓ ସୂକ୍ଷ୍ମ ନାନାରୂପେ, ଜଗତେ ବ୍ୟାପିଛି ସ୍ୱରୂପେ ।
ଯାହାଙ୍କ ନାମ ଅଶରୀର, ବ୍ରହ୍ମାଣ୍ଡେ ରହିଅଛି ସ୍ଥିର,
ଏ ସୃଷ୍ଟି ଲୟର କାରଣ ମଙ୍ଗଳରୂପ ସନାତନ ।
ପ୍ରାଣାଦି ଦେହର ସମତା, ଅଟନ୍ତି ସର୍ବ ସୃଷ୍ଟିକର୍ତ୍ତା ।
ତାହାଙ୍କୁ ଜାଣେ ଯେଉଁ ଲୋକ, ବିଗତ ହୁଏ ତାର ଶୋକ ।

ଇତି ପଞ୍ଚମ ଅଧ୍ୟାୟ ।

———

## ଷଷ୍ଠ ଅଧ୍ୟାୟ

ଥୋକେ ବିଦ୍ୱାନ ହୋଇ ଭ୍ରାନ୍ତ, ବୋଲନ୍ତି ସ୍ୱଭାବ ଯାବନ୍ତ
ଅଥବା କାଳ ସନାତନ, ଅଟଇ ବିଶ୍ୱର କାରଣ ।
ମାତ୍ରକ ପରମ ଈଶ୍ୱର, ଅଟନ୍ତି ସକଳ ଆକର ।
ତାଙ୍କ ମହିମା ବିଦ୍ୟମାନ, ଅଛଇ ସର୍ବସ୍ଥାନେ ଜାଣ ।
ସେହି ମହିମା ବଳେ ବିଶ୍ୱ, ଭ୍ରମଣ କରୁଛି କ୍ରମଶ ।
କାଳର କର୍ତ୍ତା ସେ ଈଶ୍ୱର, ସକଳ ତାହାଙ୍କୁ ଗୋଚର ।
ସେ ପ୍ରଭୁ ପୁଣି ସର୍ବବିଦ, ବିଶ୍ୱ ମଧ୍ୟରେ ସ୍ୱୟଂସିଦ୍ଧ ।
ପୃଥିବୀ, ଜଳ, ତେଜ, ବାୟୁ; ଆକାଶ ପଞ୍ଚଭୂତ ଆଉ ।
ସମସ୍ତେ ତାଙ୍କ ନିୟମରେ, ନିଯୁକ୍ତଛନ୍ତି ସ୍ୱକାର୍ଯ୍ୟରେ ।
ପୃଥିବୀ, ଜଳ, ଅଗ୍ନି, ବାୟୁ; ଆକାଶ,ମନ, ବୁଦ୍ଧି ଆଉ,
ଏ ସପ୍ତ ପୁଣି ଅହଙ୍କାର, ଏ ଅଷ୍ଟ ପ୍ରକୃତି ଆକାର ।
ପ୍ରକୃତିଗଣେ ବିଶ୍ୱକାର୍ଯ୍ୟେ, ନିଯୁକ୍ତ କଲେ ବିଶ୍ୱରାଜ୍ୟେ ।
ସୃଜନ କରି ପ୍ରାଣିଗଣେ, ସ୍ୱତନ୍ତ୍ର ଥାଆନ୍ତି ଆପଣେ ।
ହେଲେ ପ୍ରକୃତି କର୍ମ କ୍ଷୟ, ସମସ୍ତ ହୁଏଟି ବିଲୟ ।
ସମସ୍ତ ଆଦି ସନାତନ, ସମସ୍ତ କାରଣକାରଣ ।
ପୁଣି ସେ ତ୍ରିକାଳଅତୀତ, ସମସ୍ତ କଳାବିରହିତ ।
ତାହାଙ୍କୁ କରି ଉପାସନା, ମୁକ୍ତି ଲଭନ୍ତି ମହାମନା ।
ଯେ ପ୍ରଭୁ ଦେଶକାଳାତୀତ, ସମସ୍ତ ବିଷୟରହିତ ।
ତାଙ୍କ ଆଜ୍ଞାରେ ବିଶ୍ୱମାନ, ନିତ୍ୟ ହେଉଛି ଭ୍ରାମ୍ୟମାନ ।
ସେହି ଧର୍ମର ଅଧିପତି, ଦିଅନ୍ତି ଐଶ୍ୱର୍ଯ୍ୟ ସମ୍ପତ୍ତି ।
ଅମୃତସ୍ୱରୂପ ଈଶ୍ୱରେ, ତାହାଙ୍କୁ ଭଜ ହୃଦୟରେ ।
ଯେତେ ବିଜ୍ଞାନଉପାସକ, ହୋଇଣ ଥାନ୍ତି ଗତଶୋକ ।
ଯେତେକ ଅଛନ୍ତି ଈଶ୍ୱର, ସେହି ପରମ ମହେଶ୍ୱର ।
ଯେତେକ ଅଛନ୍ତି ଦେବତା, ତହିଁରେ ପରମଦେବତା ।
ପ୍ରଭୁମାନଙ୍କ ମଧ୍ୟେ ପ୍ରଭୁ, ହିରଣ୍ୟଗର୍ଭ ଶ୍ରେଷ୍ଠ ବିଭୁ ।
ଭୁବନେଶ୍ୱର ପୂର୍ଣ୍ଣ ଜ୍ଞାନେ, ତାହାଙ୍କୁ ଜାଣୁ ଆମ୍ଭେମାନେ ।
ବିରାଜିଛନ୍ତି ସର୍ବଠାଇଁ, ଦେହ ଇନ୍ଦ୍ରିୟ ତାଙ୍କ ନାହିଁ ।
ସମାନ କେହି ତାହାଙ୍କର, ଅବା ତାଠାରୁ ଶ୍ରେଷ୍ଠତର,
ଏ ବିଶ୍ୱ ବ୍ରହ୍ମାଣ୍ଡ ମଧ୍ୟରେ, ନାହିଁଟି ଜାଣିବ ମନରେ ।
ତାଙ୍କ ବିଚଜ ପରାଶକ୍ତି, ବେଦରୁ ହେବ ଅବଗତି ।
ଜଗତେ ପତି ବା ନିୟନ୍ତା, ତାହାଙ୍କ ନାହିଁଟି ଈଣନ୍ତା ।
ପ୍ରତିମା ତାଙ୍କ ସମାନରେ, କିଛିହିଁ ନାହିଁ ଜଗତରେ ।
ତାହାଙ୍କ ନାହିଁ ଜନୟିତା, ସ୍ୱାମୀ ବା ଅନ୍ୟରୂପ ପିତା ।
ଇନ୍ଦ୍ରିୟେ ଯେ ଦେବେ ଅଛନ୍ତି, ସମସ୍ତ ସେହି ଅଧିପତି ।
ଊର୍ଣ୍ଣନାଭିର ସୂତ୍ର ପ୍ରାୟେ, ବିଶ୍ୱ ବ୍ରହ୍ମାଣ୍ଡ ସମୁଦାୟେ ।
କରିଅଛନ୍ତି ଆଚ୍ଛାଦିତ, ତାହାଙ୍କୁ ହେଉନ୍ତୁ ବିଦିତ ।
ବ୍ରହ୍ମରେ ପ୍ରବେଶ ବିଧାନ, କରନ୍ତୁ ସେହି ଭଗବାନ ।
ସର୍ବ ଭୂତରେ ଗୂଢ଼ରୂପେ, ଅଛନ୍ତି ଆତ୍ମାର ସ୍ୱରୂପେ ।
ଅଟନ୍ତି ସର୍ବକର୍ମାଧ୍ୟକ୍ଷ, ତାହାଙ୍କୁ ଜାଣିବ ପ୍ରତ୍ୟକ୍ଷ ।

ସେ ଦେବ ସର୍ବଭୂତସ୍ଥିତ, ସତ୍ତ୍ୱାଦି ଗୁଣର ଅଶ୍ରିତ ।
ସକଳ ସାକ୍ଷୀ ଚେତୟିତା, ସକଳ ଭୂତଜନୟିତା ।
ସେ ପ୍ରଭୁ ଏକ ବିଜ ସାର, କରନ୍ତି ବିବିଧ ପ୍ରକାର ।
ତାହାଙ୍କୁ ଜାଣେ ଯେଉଁ ଜ୍ଞାନୀ, ପାରେ ସେ ଆତ୍ମସୁଖ ଜାଣି ।
ନିତ୍ୟ ମଧ୍ୟରେ ଯେବା ନିତ୍ୟ, ସତ୍ୟ ମଧ୍ୟରେ ଯେବା ସତ୍ୟ ।
ଚେତନ ମଧ୍ୟେ ସେ ଚେତନ, ଜୀବ ମଧ୍ୟରେ ସେ ଜୀବନ ।
ଏକାକୀ ସେହି ଭଗବାନ, କରନ୍ତି ସକଳ ବିଧାନ ।
କାରଣରୂପୀ ସେ ଦେବତା, ଜାଣନ୍ତି ତାଙ୍କୁ ଶୁଦ୍ଧଚେତା ।
ସାଂଖ୍ୟଯୋଗରେ ପ୍ରାପ୍ୟ ଦେବ, ଏରୂପ ତାଙ୍କୁ ଜ୍ଞାତ ହେବ ।
ତାହାଙ୍କୁ ଜାଣି ଜ୍ଞାନିଗଣ, କରନ୍ତି ବନ୍ଧନ ଛେଦନ ।
ବସ୍ତୁତତ୍ତ୍ୱର ଯେ ବିଚାର, ଜାଣିବ ତାହା ସାଂଖ୍ୟ ସାର,
ସାଧନ ଚିତ୍ତ ସମାଧାନ, ତାହାକୁ କହ ଯୋଗ ଜ୍ଞାନ ।
ସୂର୍ଯ୍ୟ ଆପଣା କିରଣରେ, ସେ ବ୍ରହ୍ମେ ପ୍ରକାଶ ନ କରେ ।
ଚନ୍ଦ୍ର ବା ତାରକା ସମସ୍ତ, ପ୍ରକାଶେ ତାଙ୍କ ଅସମର୍ଥ ।
ଏପରି ଅଗ୍ନି ଅଛି କାହିଁ, ତାହାଙ୍କୁ ପ୍ରକାଶିବା ପାଇଁ ?
ଯେତେକ ଦୀପ୍ତିମନ୍ତ ଦ୍ରବ୍ୟ, ତାଠାରୁ ପ୍ରକାଶିତ ସର୍ବ ।
କରନ୍ତେ ଅବିଦ୍ୟାକୁ ଧ୍ୱଂସ, ତାହାଙ୍କ ନାମ ଅଟେ ହଂସ ।
ସାଧକ ଜାଣି ପରଂବ୍ରହ୍ମ, କରନ୍ତି ମୃତ୍ୟୁ ଅତିକ୍ରମ ।
ଲଭିବା ପାଇଁ ଅମୃତତ୍ୱ, ନାହିଁଟି ଜାଣ ଅନ୍ୟପଥ ।
ସେ ପରଂବ୍ରହ୍ମ ବିଶ୍ୱକୃତ, ସ୍ୱୟମ୍ଭୂ ପୁଣି ବିଶ୍ୱଭୂତ,
ସକଳ ଗୁଣର ନିୟନ୍ତା, ଶରୀରଜ୍ଞାତା କାଳକର୍ତ୍ତା,
କାଳର କର୍ତ୍ତା ସର୍ବବିତ, କ୍ଷେତ୍ରଜ୍ଞ ପୁଣି ସର୍ବଜିତ ।
ସକଳ ଗୁଣର ନିଦ୍ଧୃତା, ଶରୀରଜ୍ଞାତା କାଳକର୍ତ୍ତା ।
ସମସ୍ତ ସ୍ଥିତ ସେ ବନ୍ଧନ, ସମସ୍ତ ମୋକ୍ଷର କାରଣ,
ବିଶ୍ୱସ୍ୱରୂପ ବିଶ୍ୱମୟ, ଅମୃତମୟ ଜ୍ୟୋତିର୍ମୟ,
ସର୍ବଭୁବନ-ପାଳୟିତା, ବିଶ୍ୱରେ ଏକମାତ୍ର ପିତା,
ଜଗତ କରନ୍ତି ଶାସନ, ତା ବିନା ନାହିଁଟି କାରଣ ।
ସେ ବିଶ୍ୱକର୍ତ୍ତା ପରଂବ୍ରହ୍ମ, ବ୍ରହ୍ମାକୁ ସୃଜିଲେ ପ୍ରଥମ ।
ବେଦସମୂହ ତାଙ୍କୁ ଦାନ, କଲେ ସେ ହୋଇ କୃପାବାନ
ସେ ଆତ୍ମଜ୍ଞାନ ପ୍ରକାଶକେ, ଶରଣ ନେଉନ୍ତୁ ସେବକେ ।
ନିଷ୍କଳ ଶାନ୍ତ ସନାତନ, ନିର୍ଦୋଷ ବ୍ରହ୍ମ ନିରଞ୍ଜନ,
ସେ ପ୍ରଭୁ ଅମୃତର ସେତୁ, ଶରଣ ନିଅ ପାର ହେତୁ ।

ନ ହେଲେ ପରି ବ୍ରହ୍ମଜ୍ଞାନ, ନ ହେବ ଦୁଃଖ ଅବସାନ ।
ଶ୍ୱେତାଶ୍ୱତର ମହାଜ୍ଞାନୀ, ତପସ୍ୟା ବଳେ ଥିଲେ ଜାଣି ।
ସେ ପରଂବ୍ରହ୍ମଙ୍କର ତତ୍ତ୍ୱ, ହେବାକୁ ଲୋକେ ଅବଗତ;
ତେଣୁ ଆଶ୍ରମବାସିଗଣେ, ବୋଇଲେ ଏକଥା କୀର୍ତ୍ତନେ ।
ପୂର୍ବ କଳ୍ପରେ ପ୍ରକାଶିତ, ବେଦାନ୍ତେ ଯେ ପ୍ରତିପାଦିତ,
ସେ ଗୁହ୍ୟ ବିଦ୍ୟା କଦାଚନେ, ଶିକ୍ଷା ନ ଦେବ ମୂଢ଼ଜନେ
ଅଯୋଗ୍ୟ ପୁତ୍ର, ମୂର୍ଖଶିଷ୍ୟ; ତାକୁ ନ ଦେବ ଉପଦେଶ ।
ଈଶ୍ୱରେ ଯାର ପରାଭକ୍ତି, ସେ ଲଭି ପାରିବ ମୁକତି ।
ଏ ବ୍ରହ୍ମବିଦ୍ୟା ତତ୍ତ୍ୱ ସାର, ଶ୍ରବଣ କର ବାରମ୍ବାର ।

ଇତି ଷଷ୍ଠ ଅଧ୍ୟାୟ

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ

---

## ଋଗ୍‌ବେଦୀୟ ଐତରେୟୋପନିଷତ୍

## ପ୍ରଥମ ଅଧ୍ୟାୟ

ପୂର୍ବରେ ଆତ୍ମା ଏକମାତ୍ର, ଥିଲେ ଯେ ଜଗତେ ସର୍ବତ୍ର ।
ନିମେଷଯୁକ୍ତ କିମ୍ବା କିଛି, ନ ଥିଲା ଏହା ଜଣା ଅଛି ।
ସେ ଆତ୍ମା ଭାଳିଲେ ମନରେ, ସୃଜିବି ଲୋକ ଜଗତରେ ।
ଏ ରୂପ କରି ଆଲୋଚନା, କଲେ ସେ ଲୋକର ସୃଜନା
ମରୀଚ, ମର, ଅପ, ଅମ୍ଭ; ସୃଜନ କଲେ ଏହି ସର୍ବ ।
ମରୀଚ ଅର୍ଥ ଅନ୍ତରୀକ୍ଷ, ଅମ୍ଭ ଯେ ଦ୍ୟୁଲୋକେ ପ୍ରତ୍ୟକ୍ଷ ।
ଅପର ଅର୍ଥ ରସାତଳ, ମର ଯେ ପୃଥିବୀ ମଣ୍ଡଳ ।
ଭାବିଲେ ଆତ୍ମା ପୁଣି ମନେ, ଲୋକଙ୍କ ରକ୍ଷାର କାରଣେ ।
ସୃଷ୍ଟି କରିବି ଲୋକପାଳ, ଏମନ୍ତେ କରିଣ କୌଶଳ ।
ଜଳରୁ ନେଇ ଉପାଦାନ, ପୁରୁଷେ କଲେକ ନିର୍ମାଣ ।
ସେଥିରେ କରନ୍ତେ ବିଚାର, ମୁଖରୁ ହେଲା ଯେ ବାହାର
ମୁଖରୁ ଜାତ ହେଲା ବାକ୍ୟ, ଯେମନ୍ତ ଡିମ୍ବରୁ ଶାବକ ।
ବାକ୍ୟରୁ ଜାତ ହେଲା ଅଗ୍ନି, ପୁଣି ଯେ ନାସା ରନ୍ଧ୍ରବେନି
ନାସା ରନ୍ଧ୍ରରୁ ଜାତ ପ୍ରାଣ, ପ୍ରାଣରୁ ଜାତ ବାୟୁ ଜାଣ ।

ପୁଣି ଜନ୍ମିଲା ନେତ୍ରଦ୍ୱୟ, ତହିଁରୁ ଆଦିତ୍ୟ ଉଦୟ ।
ପୁଣି ଜନ୍ମିଲା କର୍ଣ୍ଣଦ୍ୱୟ, ଯା ଅଟେ ଶ୍ରବଣ ଇନ୍ଦ୍ରିୟ ।
କର୍ଣ୍ଣରୁ ଜାତ ହେଲା ଦିକ, ତଦନ୍ତେ ଜନମିଲା ତ୍ୱକ ।
ତ୍ୱକରୁ ଲୋମ ଜନ୍ମିଛନ୍ତି, ତହୁଁ ଔଷଧି ବନସ୍ପତି ।
ତଦନ୍ତେ ଜନ୍ମିଲା ହୃଦୟ, ହୃଦରୁ ମନର ଉଦୟ ।
ହୃଦରୁ ଜାତ ହେଲା ମନ, ତହିଁରୁ ଚନ୍ଦ୍ରମା ଉତ୍ପନ୍ନ ।
ତଦନ୍ତେ ନାଭି ଯେ ସଂଜାତ, ଅପାନ ବାୟୁ ତହୁଁ ଜାତ ।
ନାଭିରେ ଅଛି ଯେ ଅପାନ, ତହିଁରୁ ମୃତ୍ୟୁ ଜାତ ଜାଣ ।
ଜନନେନ୍ଦ୍ରିୟ ହେଲା ଜାତ, ତହିଁରୁ ଜନମିଲା ରେତ ।
ରେତରୁ ଜନମିଲା ଜଳ, ଏ ରୂପେ ଜନ୍ମିଲେ ସକଳ ।

ଇତି ପ୍ରଥମ ଖଣ୍ଡ

---

## ଦ୍ୱିତୀୟ ଖଣ୍ଡ

ଦେବେ ଜନ୍ମିଣ ଏରୂପରେ, ପଡ଼ିଲେ ସଂସାର ସାଗରେ ।
କ୍ଷୁଧା, ପିପାସା ହୋଇ ଜାତ, ପୁରୁଷେ ପୀଡ଼ିଲେ ନିତାନ୍ତ
ଏ ଅନ୍ତେ ଆସି ଦେବତାଏ, ଓଳଗି ସ୍ରଷ୍ଟାଙ୍କର ପାୟେ ।
ବୋଇଲେ ଆଶ୍ରୟର ସ୍ଥାନ, ଦେବା ହେଉନ୍ତୁ ଭଗବାନ ।
ଲଭିଲେ ଆଶ୍ରୟର ସ୍ଥାନ; କରିବୁଁ ଅନ୍ନ ଜଳ ପାନ ।
ସ୍ରଷ୍ଟା ଶୁଣିଣ ସମାଚାର, ଆଣିଲେ ପିଣ୍ଡ ଗବାକାର,
ଦେବେ ଯେ ଦେଖି ମଣି କଷ୍ଟ, ବୋଇଲେ ଏନୁହେଁ ଯଥେଷ୍ଟ ।
ଏ ଅନ୍ତେ ପିଣ୍ଡ ଅଶ୍ୱାକୃତି, ଆଣିଲେ ସ୍ରଷ୍ଟା ବିଶ୍ୱପତି,
ବୋଇଲେ ଦେବତା ସମସ୍ତ, ଏ ରୂପ ନୁହେ ଉପଯୁକ୍ତ ।
ଏଅନ୍ତେ ସ୍ରଷ୍ଟା ଲଭି ତୋଷ, ଆଣିଲେ ଗୋଟିଏ ପୁରୁଷ ।
ପୁରୁଷ ନରାକୃତି ପ୍ରାୟେ, ତାହାକୁ ଦେଖି ଦେବତାଏ ।
ବୋଇଲେ ଏରୂପ ମୂଳର, ଯୋଗ୍ୟଟି ଆମ୍ଭମାନଙ୍କର ।
ବୋଇଲେ ସ୍ରଷ୍ଟା ଦେବମାନେ, ରହ ସକଳେ ଯଥାସ୍ଥାନେ ।
ଖୋଜିଣ ନିଜ ନିଜ ଦେଶ ସକଳେ କରନ୍ତୁ ପ୍ରବେଶ ।
ତହୁଁ ଯେ ଅଗ୍ନି ହୋଇ ବାକ୍ୟ, ଆଶ୍ରୟ କଲେ ଯାଇ ମୁଖ
ସୂର୍ଯ୍ୟ ଯେ ଚକ୍ଷୁରୂପ ହେନ ଆଶ୍ରୟ କଲେ ନେତ୍ରବେନି ।
ଯେତେକ ଥିଲେ ଦିଗ ଦେଶ, କର୍ଣ୍ଣରେ କଲେକ ପ୍ରବେଶ
ଔଷଧି ବନସ୍ପତିମାନେ, ରହିଲେ ଯାଇ ତ୍ୱକସ୍ଥାନେ ।
ଚନ୍ଦ୍ର ଯେ ମନ ସ୍ୱରୂପରେ, ରହିଲେ ହୃଦୟେ ମଧ୍ୟରେ ।
ମୃତ୍ୟୁ ଯେ ହୋଇଣ ଅପାନ, ଆଶ୍ରୟ କଲେ ନାଭିସ୍ଥାନ ।
ଜନନେନ୍ଦ୍ରିୟ ମଧ୍ୟେ ବାରି, ରହିଲେ ରେତରୂପ ଧରି ।
ତଦନ୍ତେ ଆସି କ୍ଷୁଧା ତୃଷା, ସ୍ରଷ୍ଟାଙ୍କୁ କରିଣ ଭରସା ।
ବୋଇଲେ ଆହେ ଭଗବାନ, ଆମ୍ଭମାନଙ୍କୁ ଦିଅ ସ୍ଥାନ ।
ସ୍ରଷ୍ଟା ତା ଶୁଣି ହୃଷ୍ଟମନେ, ବୋଇଲେ କ୍ଷୁଧାତୃଷାଗଣେ ।
ଏ ସବୁ ଦେବତାଙ୍କ ସ୍ଥାନେ, ରହିବ ଯାଇ ତୁମ୍ଭେମାନେ ।
ଯେ ହବି ଦେବତାଙ୍କ ଲାଗି,ହେବ ଯେ ତୁମ୍ଭେମାନେ ଭାଗୀ

ଇତି ଦ୍ୱିତୀୟ ଖଣ୍ଡ

---

## ତୃତୀୟ ଖଣ୍ଡ

ଭାଳିଲେ ସ୍ରଷ୍ଟା ମନେ ମନେ,ଏ ଲୋକପାଳଙ୍କ କାରଣେ ।
କରିବୁଁ ଆମ୍ଭେ ଅନ୍ନ ସୃଷ୍ଟି, ତହିଁରୁ ଲଭିବେ ଯେ ପୁଷ୍ଟି ।
କରନ୍ତେ ଏହା ଆଲୋଚନା, ଜଳରୁ ହେଲା ସମ୍ଭାବନା ।
ମୂର୍ତ୍ତିଏ ତହିଁରୁ ଉତ୍ପନ୍ନ, ତାହାର ନାମ ଆଦିଅନ୍ନ ।
ସୃଷ୍ଟ ହୋଇଣ ସେହି ଅନ୍ନ, ଉଭୟେ କଲେ ପଳାୟନ,
ପ୍ରଥମ ଜାତ ଯେ ପୁରୁଷ, ଅନ୍ନକୁ କରିଣ ଗୃହ୍ନୁଷ;
ଭାଳିଲେ ମନେ ସେହି ଅନ୍ନ, ବାକ୍ୟରେ କରିବେ ଗ୍ରହଣ ।
ମାତ୍ରକ ବାକ୍ୟରେ ଗ୍ରହଣ, କରିଣ ନ ହେଲା ସେ ଅନ୍ନ;
ପ୍ରଥମ ପୁରୁଷ ଆଦ୍ୟରେ, ଅନ୍ନକୁ ଯଦ୍ୟପି ବାକ୍ୟରେ ।
କରିଣ ଥାଆନ୍ତେ ଗ୍ରହଣ, ତେବେ ଜଗତବାସୀଜନ ।
ସର୍ବଦା ଅନ୍ନକୁ ବାକ୍ୟରେ, ଗ୍ରହଣ କରନ୍ତେ ସୁଖରେ ।
ନାସାରେ ପୁଣି ସେହି ଅନ୍ନ, ଲୋଡ଼ିଲେ କରିବେ ଗ୍ରହଣ ।
ମାତ୍ରକ ନାସାରେ ସେ ଅନ୍ନ, କରିଣ ନ ହେଲା ଗ୍ରହଣ ।
ପ୍ରଥମ ପୁରୁଷ ନାସାରେ, ଅନ୍ନ ଭକ୍ଷିଲେ ପ୍ରଥମରେ,
ତେବେ ତ ଜଗତର ଜନ, କରନ୍ତେ ନାସାରେ ଭୋଜନ
ସେହି ପୁରୁଷ ଅନନ୍ତରେ, ଭାଳିଲେ ଆପଣା ମନରେ ।

ସେହି ଯେ ଆଦି ଜାତ ଅନ୍ନ, ନେତ୍ରରେ କରିବେ ଗ୍ରହଣ ।
ମାତ୍ରକ ନେତ୍ରରେ ସେ ଅନ୍ନ, କରିଣ ନ ହେଲା ଗ୍ରହଣ ।
ଏଥିକୁ ଏ ଲୋକ ସମସ୍ତ, ନୁହନ୍ତି ଅନ୍ନ ଦେଖି ତୃପ୍ତ ।
ସେହି ଅନ୍ନକୁ ଅନନ୍ତରେ, ଗ୍ରହଣ କରିବେ କର୍ଣ୍ଣରେ ।
ଏମନ୍ତ ଭାଳ ସେ ପୁରୁଷ, ଏମନ୍ତ କଲେକ ଆୟାସ,
ମାତ୍ରକ ନ ହେଲେ ସମର୍ଥ, ସେ ଅନ୍ନ ଗ୍ରହଣ ନିମିତ୍ତ ।
ତା ହେଲେ ସର୍ବ ଲୋକ ଅନ୍ନ, କରନ୍ତେ କର୍ଣ୍ଣରେ ଗ୍ରହଣ ।
ତ୍ୱକରେ କରିବେ ଗ୍ରହଣ, ଏପରି ବିଚାରିଲେ ମନ ।
ମାତ୍ରକ ତ୍ୱକରେ ସେ ଅନ୍ନ, କରିଣ ନ ହେଲା ଗ୍ରହଣ ।
ପ୍ରଥମ ପୁରୁଷ ସେ ଅନ୍ନ, ତ୍ୱକରେ କଲେକ ଗ୍ରହଣ ।
ସମସ୍ତ ଲୋକ ସେରୂପରେ, ଗ୍ରହଣ କରନ୍ତେ ତ୍ୱକରେ ।
ଭାଳିଲେ ପୁରୁଷ ହୃଦୟେ, ସେ ଅନ୍ନ ଜନନଇନ୍ଦ୍ରିୟେ ।
ଗ୍ରହଣ କରିବେ ସୁଖରେ, ସମର୍ଥ ନ ହେଲେ ସେଥିରେ ।
ତେବେ ତ ପୁରୁଷ ସମସ୍ତ, କରୁଣ ଥାଆନ୍ତେ ତେମନ୍ତ ।
ବିଫଳ ହୁଅନ୍ତେ ଆୟାସ, ତଦନ୍ତେ ପ୍ରଥମ ପୁରୁଷ ।
ମୁଖ ଛିଦ୍ରରେ ସେହି ଅନ୍ନ, ସୁଖରେ କଲେକ ଗ୍ରହଣ;
ମୁଖ ଛିଦ୍ରରୁ ନିମ୍ନ ଦେଶେ, ଯେବଣ ପବନ ପ୍ରବେଶେ,
ସେ ବାୟୁ ନାମ ଯେ ଅପାନ, ଅନ୍ନଗ୍ରାହକ ତାକୁ ଜାଣ ।
ଅନ୍ନାୟୁ ଅନ୍ନର ଜୀବନ, ଅଟଇ ତା ନାମ ପବନ ।
ସେ ସ୍ରଷ୍ଟା ଏଥୁଅନନ୍ତରେ, ବିଚାରି କଲେକ ମନରେ ।
ମୋହର ବିନା ଏ ଶରୀର, କପରି ହୋଇବଟି ସ୍ଥିର ?
ଏତେକ ଭାଳି ସେ ପୁରୁଷ, ଶରୀରେ କଲେକ ପ୍ରବେଶ ।
ପୁରୁଷ ଶରୀରେ ପ୍ରବେଶି, ଦେଖିଲେ ଗୃହେଁ ସେ ବିଶେଷି,
ସମସ୍ତ ଭୂତଙ୍କୁ ଦର୍ଶନ, ବ୍ୟାପିଛି ଯେମନ୍ତ ପବନ ।
ପୁରୁଷ ବୋଇଲେ ଏରୂପ, ଦେଖିଲି ମୁଁ ଆତ୍ମସ୍ୱରୂପ ।
ଇତି ପ୍ରଥମୋଽଧ୍ୟାୟ ।

---

## ଦ୍ୱିତୀୟୋଽଧ୍ୟାୟ

ମନରେ ଥିବଟି ବିଚାରି, ଯେ ଆତ୍ମା ଅଟନ୍ତି ସଂସାରୀ,
ପ୍ରଥମେ ପୁରୁଷ ଦେହରେ, ଥିଲେ ଯେ ବୀଜ ସ୍ୱରୂପରେ ।
ଅଙ୍ଗର ତେଜ ସଂଗୃହୀତ, ଏହି ଯେ ଦେଖୁଅଛ ରେତ ।
ଆପଣା ଶରୀର ଧାରଣ, କରିଣଥାନ୍ତି ଅନୁକ୍ଷଣ ।
ଆପଣା ଭାର୍ଯ୍ୟାରେ ସିଞ୍ଚନ, କଲେକ ଜନ୍ମଇ ସନ୍ତାନ ।
ସେ ରେତ ପଡ଼ି ନାରୀଦେହେ;ପ୍ରଥମେ ରହେ ଗର୍ଭାଶୟେ ।
ଜନ୍ମାଏ ଦେହର ଏକତା, ନାରୀକୁ ନ ହୁଅଇ ବ୍ୟଥା ।
ଆପଣା ଦେହର ସମାନ, ନାରୀ ରେତକୁ କରେ ଜ୍ଞାନ ।
ଦେହରେ ଥାଇ ସେଥିପାଇଁ, ନାରୀକୁ ବ୍ୟଥା ହୁଏ ନାହିଁ ।
ସେ ନାରୀ ଗର୍ଭରେ ଧାରଣ, ସ୍ୱାମୀର ଆତ୍ମାକୁ ପୋଷଣ ।
ପୋଷଣକର୍ତ୍ତ୍ରୀ ସେହି ଜାୟା, ଅଟନ୍ତି ସ୍ୱାମୀ ପୋଷଣୀୟା ।
ଗର୍ଭରେ କରିଣ ଧାରଣ, ସନ୍ତାନେ କରନ୍ତି ପୋଷଣ ।
ଭୂମିଷ୍ଠ ହେଲେକ ନନ୍ଦନ, ପିତା ଯେ କରନ୍ତି ପୋଷଣ ।
ଜନ୍ମର ପୂର୍ବେ ପୁଣି ପରେ, ପିତା ଯେ ପୋଷନ୍ତି କ୍ରମରେ ।
ବିଧାତା ନିୟମକୁ ଧରି, ପିତା ଏରୂପ ଥାନ୍ତି କରି ।
ଏରୂପ ମାନବ ପ୍ରବାହ, କରନ୍ତି ସ୍ୱକାର୍ଯ୍ୟ ନିର୍ବାହ ।
ପିତାଙ୍କ ଆତ୍ମା ସ୍ୱରୂପରେ, ଜନମ ଲଭନ୍ତି କ୍ରମରେ ।
ପିତାଙ୍କ ପୁଣ୍ୟ ସମ୍ପାଦନ, କରିଣ ଥାଆନ୍ତି ନନ୍ଦନ ।
ପିତାଙ୍କ ପ୍ରତିନିଧିରୂପେ, ଜନମ ହୁଏ ପୁତ୍ରରୂପେ ।
ଜନମ କରିଣ ସାର୍ଥକ, ପିତା ଗମନ୍ତି ପରଲୋକ ।
ଜନ୍ମ ଲଭନ୍ତି ପୁନର୍ବାର, ତୃତୀୟ ଜନମ ତାଙ୍କର ।
ପୂର୍ବରେ ଏକ ତପୋଧନ, ବୋଇଲେ ଏରୂପ ବଚନ ।
ପୂର୍ବରେ ଥାଇ ମୁହିଁ ଗର୍ଭେ,ଜାଣିଛି ସେ ଦେବତା ସର୍ବେ ।
ଦେବତା ରୂପ ମନୋବୃତ୍ତି, ଜାଣେ ମୁଁ ତାହାଙ୍କ ଆକୃତି ।
ଦୁର୍ଭେଦ୍ୟ ଶରୀର ମଧ୍ୟରେ, ରହି ମୁଁ ଥିଲି ଏକାନ୍ତରେ ।
ମାତ୍ର ମୁଁ ଶ୍ୟେନ ପକ୍ଷୀ ପରି, ବଳରେ ଅଇଲି ବାହାରି ।
ମହର୍ଷି ବାମଦେବ ପୂର୍ବେ, ବୋଇଲେ ଏହା ଥାଇଗର୍ଭେ ।
ଜାଣନ୍ତେ ଏହା ସେ ମହର୍ଷି, ସ୍ୱର୍ଗରେ ଏବେ ଛନ୍ତି ବସି ।
ଇତି ଦ୍ୱିତୀୟ ଅଧ୍ୟାୟ ।

---

## ତୃତୀୟ ଅଧ୍ୟାୟ

ଯାହାଙ୍କୁ ଆତ୍ମା ବୋଲି କହି, କାହିଁଅଛନ୍ତି କିଏ ସେହି ?
ଇନ୍ଦ୍ରିୟ ଯୋଗେ ଲୋକଗଣ, କରନ୍ତି ସ୍ୱରୂପ ଦର୍ଶନ;
ଶ୍ରବଣ ଘ୍ରାଣ ଆସ୍ୱାଦନ, ପୁଣି ଯେ ବାକ୍ୟ ଉଚ୍ଚାରଣ,

ଆମ୍ଭଦି ଇନ୍ଦ୍ରିୟ ଏ ସର୍ବ, କରି ନ ହୁଏ ଅନୁଭବ ।
ବିଜ୍ଞାନ, ମେଧା, ଦୃଷ୍ଟି, ଧୃତି; ପ୍ରଜ୍ଞାନ, ମତି, ଜୂତି, ସ୍ମୃତି,
ଅଧ୍ୟବସାୟ, ଅଭିଳାଷ; ଏ ସର୍ବ ହୃଦୟେ ପ୍ରକାଶ ।
ଏ ସର୍ବ ପ୍ରଜ୍ଞାନ ବିକାର, ସଙ୍କଳ୍ପ ବିବିଧ ଏହାର ।
ଏହି ଯେ ବ୍ରହ୍ମ ବିଶ୍ୱପତି, ହିରଣ୍ୟଗର୍ଭ ପ୍ରଜାପତି ।
ଆକାଶ ଜ୍ୟୋତି ବାୟୁ ଜଳ, ସମସ୍ତ ପୃଥିବୀ ମଣ୍ଡଳ ।
ସମସ୍ତ ପ୍ରାଣୀଙ୍କର ପ୍ରାଣୀ, ଅଟନ୍ତି ବ୍ରହ୍ମ ଥିବ ଜାଣି ।
ସକଳ ବୀଜ ଜରାୟୁଜ; ଜଙ୍ଗମ, ଉଦ୍ଭିଦ, ଅଣ୍ଡଜ,
ଅଶ୍ୱ, ଗୋ, ମାନବ, ଖେଚର;ଜଙ୍ଗମ, ମାତଙ୍ଗ, ସ୍ଥାବର ।
ସକଳ ବ୍ରହ୍ମରୁ ଉଦିତ, ପୁଣି ସେ ବ୍ରହ୍ମରେ ଆଶ୍ରିତ ।
ସେ ବାମଦେବ ଯେ ମହର୍ଷି, ବ୍ରହ୍ମଙ୍କ ନାମ ଥିଲେ ଘୋଷି
ବ୍ରହ୍ମ କୃପାରେ ସ୍ୱର୍ଗସ୍ଥଳେ, ରହିଲେ ଦେବତାମଣ୍ଡଳେ ।

ଇତି ତୃତୀୟ ଅଧ୍ୟାୟ

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ହରିଃ ଓଁ ।

---

## ମୁକ୍ତିକୋପନିଷତ୍

### ପ୍ରଥମ ଅଧ୍ୟାୟ

ଏକଦା ଅଯୋଧ୍ୟା ନଗରେ, ଜାନକୀଦେବୀ ସହିତରେ,
ରତନ ମଣ୍ଡପେ ଶ୍ରୀରାମ, ସୁଖରେ କରନ୍ତି ବିଶ୍ରାମ ।
ଭରତ ଶତ୍ରୁଘ୍ନ ଲକ୍ଷ୍ମଣ, ବଶିଷ୍ଠ ଆଦି ମୁନିଗଣ ।
ବସିଅଛନ୍ତି କରଯୋଡ଼ି, ହନୁ ଏ କାଳେ ପଦେ ପଡ଼ି ।
"ବୋଇଲେ ଆହେ ମହାପ୍ରଭୁ, ତୁମ୍ଭର ଲୀଳା ବିଶ୍ୱ ସବୁ ।
ତୁମ୍ଭେହିଁ ଅଟ ଭବସେତୁ, ପୁଚ୍ଛା କରଇଁ ମୁକ୍ତି ହେତୁ ।
କିରୂପ ତୁମ୍ଭ ତତ୍ତ୍ୱଜ୍ଞାନ, ଲଭିବି ବୋଲ ଭଗବାନ ।
ଯେ ତତ୍ତ୍ୱ ହେଲେ ଅବଗତ, ହେବି ମୁଁ ସଂସାରୁ ମୁକତ
ଘୁଞ୍ଚିବ ଏ ଭବବନ୍ଧନ, ବୋଲନ୍ତୁ ରାଜୀବଲୋଚନ ।"
ପୁଚ୍ଛନ୍ତେ ଏତେ ହନୁମାନ, ବୋଇଲେ ପ୍ରଭୁ ଭଗବାନ ।
"ଧନ୍ୟ ହେ ପବନନନ୍ଦନ, ଉତ୍ତମ କରିଛ ପ୍ରଶନ ।
ବେଦାନ୍ତ ଶାସ୍ତ୍ରରୁ ଏ ତତ୍ତ୍ୱ, ହୁଅନ୍ତି ଲୋକେ ଅବଗତ ।
ନିଶ୍ଚୟ ଜାଣ ମହାଭାଗ, ଅଟଇ ଏହା ମୁକ୍ତିମାର୍ଗ ।
ବେଦାନ୍ତଶାସ୍ତ୍ରର ଆଶ୍ରୟ, କର ହେ ଅଞ୍ଜନାତନୟ ।"
ବୋଲନ୍ତେ ଶ୍ରୀରାମ ଏମନ୍ତ, ପୁଚ୍ଛିଲେ ପୁଣି ହନୁମନ୍ତ—
"ବୋଲନ୍ତୁ ଆହେ ସୀତାକାନ୍ତ,କିବସ୍ତୁ ଅଟଇ ବେଦାନ୍ତ ।"

ଶ୍ରୀ ଭଗବାନୁବାଚ

ଶୁଣନ୍ତୁ ଅଞ୍ଜନାନନ୍ଦନ, ବେଦାନ୍ତ ଶାସ୍ତ୍ର ବିବରଣ ।
ବିଷ୍ଣୁଙ୍କ ନିଶ୍ୱାସରୁ ଜାତ, ହୋଇଛନ୍ତି ଜାଣିବ ବେଦାନ୍ତ ।
କାଳ ଆଦିରେ ବେଦ ସର୍ବ, ସ୍ୱତେଜେ ହେଲେକ ଉଦ୍ଭବ ।
ବେଦରେ ବେଦାନ୍ତର କଥା, ତିଳ ମଧ୍ୟରେ ତୈଳ ଯଥା ।
ପୁଚ୍ଛିଲେ ପୁଣି ହନୁମାନ, ବୋଲିବା ହେଉ ଭଗବାନ ।
"ବିଖ୍ୟାତ ଅଟେ ଚାରି ବେଦ,ବହୁତ ଶାଖା ତହିଁ ଭେଦ ।
ଆକାଶ, ବସୁ, ବିଧୁ, ଜାଣ; ଶାଖ ର ଅଟେ ପରିମାଣ ।
ବେଦର ପ୍ରତ୍ୟେକ ଶାଖାରେ, ଉପନିଷଦ ଯେ ସଞ୍ଚାରେ ।
ସେଥିରୁ ଏକ ରିକ ଭକ୍ତ, ହୁଏଟି ଯେବେ ଅବଗତ ।
ଜାଣିବ ସେହି ସହଜରେ, ଆତ୍ମ ସାଯୁଜ୍ୟ ଲଭ କରେ ।
ପୁଷ୍ପରେ ଯେମନ୍ତ ଭ୍ରମର, ଭ୍ରମଣ କରେ ନିରନ୍ତର ।
କେବଳ ମଧୁ ଲଭ ପାଇଁ, ଏକାନ୍ତ ମନେ ଭ୍ରମୁଥାଇ ।
ତେସନେ ବେଦ ଅଧ୍ୟୟନ, କରନ୍ତି ମୋର ଭକ୍ତଗଣ ।
ହେବାର ପାଇଁ ଅବଗତ, ବେଦ ଶାସ୍ତ୍ରରେ ଆତ୍ମ ତତ୍ତ୍ୱ ।
ପୁଚ୍ଛିଲେ ପୁଣି ହନୁମନ୍ତ, ବୋଲିବା ହେଉ ପ୍ରଭୁ ତତ୍ତ୍ୱ ।"
ବୋଲନ୍ତି ନାନା କଥା ମୁନି,"କେତେ ପ୍ରକାର ଅଛି ଶୁଣି ।
ଦେଖାଇ ନାନାରୂପ ଯୁକ୍ତି, କେ ବୋଲେ ଏକମାତ୍ର ମୁକ୍ତି ।
କେ ବୋଲେ ଭଜି ତୁମ୍ଭ ନାମ, ଲୋକେ ଲଭନ୍ତି ସ୍ୱର୍ଗ ଧାମ ।
କେହି ବା ବୋଲେ ସାଂଖ୍ୟଯୋଗେ, କେହି ବା ବୋଲେ ଭକ୍ତିଯୋଗେ ।
କେହି ବା ବେଦାନ୍ତ ବିଚାରେ, ମାନବ ମୁକ୍ତି ଲଭିପାରେ ।
ମାନବ କେଉଁଣ ପ୍ରକାର, ମୁକତି ଲଭିବ ସଂସାର ?
ବୋଲିବା ହେଉ ରଘୁପତି, କରୁଣା କରି ଦାସପ୍ରତି ।"
ଶୁଣିଣ ଏତେକ ବଚନ, ଶ୍ରୀରାମ ରାଜୀବଲୋଚନ ।
"ବୋଇଲେ ଆହେ ହନୁମାନ, ଏ ସର୍ବ ସତ୍ୟ ଅନୁମାନ ।
ସାଲୋକ୍ୟ, ସାଯୁଜ୍ୟ, ସାରୂପ୍ୟ;ସାମୀପ୍ୟ ଏହି ଚାରି ରୂପ ।

ଏହି ଯେ ଗୁରୁ ମୁକ୍ତିପଥ, ବେଦୁଁ ଜାଣିବ ଏହି ତତ୍ତ୍ୱ ।
ମାନବ କରିବ ବିଚାର, କୈବଲ୍ୟ ମୁକ୍ତି ଅଟେ ସାର ।
ପାଳିଲେ ଆମ୍ଭ ଉପଦେଶ, ଖଣ୍ଡିବ ସର୍ବରୂପ କ୍ଲେଶ ।
ନାସ୍ତିକ, ଦୁଷ୍ଟ, ଦୁରାଚାରୀ; ଶାସ୍ତ୍ରାର୍ଥ କହୁ ନ ବିଚାରି ।
କରୁଣଥାନ୍ତି କୁଟ ତର୍କ, ନ ରଖି ଭକ୍ତିର ସମ୍ପର୍କ ।
ତେଜନ୍ତେ ସୁମାର୍ଗ ଉଚିତ, ଘଟଇ ହିତେ ବିପରୀତ ।
ସୁଶୀଳ, ଧାର୍ମିକ, କୁଳୀନ; ମେଧାବୀ, କୁସଂସର୍ଗହୀନ ।
ଏମନ୍ତ ଶିଷ୍ୟକୁ ନିର୍ଜନେ, ବୋଲିବ ମଧୁର ବଚନେ ।
ଶିଷ୍ୟର ମୁକ୍ତି ଅଭିଳାଷ, ଯେ କାଳେ ପାଇବ ପ୍ରକାଶ ।
ଏକାନ୍ତେ ସ୍ଥିର କରି ମନ, କଲେକ ସୁକାର୍ଯ୍ୟ ସାଧନ ।
ସେକାଳେ ହେଲେ ଚିତ୍ତ ଶୁଦ୍ଧି, ନିତ୍ୟ ଅନିତ୍ୟ ଭେଦ ବୁଦ୍ଧି ।
ହେଲେକ ସେହି ମହାମନା, ତେଜିବେ ସକଳ କାମନା ।
ଏ ଅନ୍ତେ ସଦ୍‌ବଂଶରୁ ଜାତ, ସକଳ ଶାସ୍ତ୍ର ଥିବ ଜ୍ଞାତ ।
ଏମନ୍ତ ଜ୍ଞାନବନ୍ତ ଗୁରୁ, ସଂଗ୍ରହ କରିଣ ଶାସ୍ତ୍ରରୁ, ।
ଶତ ସଂଖ୍ୟକ ଅଷ୍ଟାଧିକ, ଯେ ଉପଦେଶ ପ୍ରାମାଣିକ ।
ଉପନିଷଦ ଶାସ୍ତ୍ର ସାର, ସମସ୍ତ କରିବ ପ୍ରଚାର ।
ଗୁରୁଙ୍କ ମୁଖରୁ ଶ୍ରବଣ, କରିବ ଶାସ୍ତ୍ରାର୍ଥ ବଚନ ।
ସାଙ୍ଖ୍ୟାଦି ଦର୍ଶନ ବୃତ୍ତାନ୍ତ, ଚିନ୍ତିବେ ବସିଣ ଏକାନ୍ତ ।
ଏମନ୍ତ ହୋଇ ଏକନିଷ୍ଠ, ଚିତ୍ତକୁ କରିବେ ପ୍ରବିଷ୍ଟ ।
ଏ ସ୍ଥୂଳ ସୂକ୍ଷ୍ମ ଅଧିଷ୍ଠାନ, ସର୍ବ ଇନ୍ଦ୍ରିୟ ମନ ପ୍ରାଣ,
ସମସ୍ତ କରିଣ ବିନାଶ, ଲଭିବେ ମୋକ୍ଷସ୍ଥାନେ ବାସ ।
ଏ ଦେହ ନାଶ ଅନନ୍ତରେ, ମୁକ୍ତି ଲଭଇ ସହଜରେ ।
ଏପରି ଲୋକ ଶୁଦ୍ଧମତି, ଲଭନ୍ତି କୈବଲ୍ୟ ମୁକତି ।
ଯେମନ୍ତ ଘଟ ଗଲେ ନାଶ, ମିଳଇ ଅନନ୍ତ ଆକାଶ ।
ଘଟସ୍ଥ ଆକାଶ ସାମାନ୍ୟ, ହୁଅନ୍ତି ଅନନ୍ତ ସମାନ ।
ଜ୍ଞାନର ଉଦୟେ ସୁମତି, ଲଭନ୍ତି କୈବଲ୍ୟ ମୁକତି ।
ସାଂଖ୍ୟଯୋଗ ଯେ ସାର ଧର୍ମ, କେବଳ ପନ୍ଥା ଅଟେ କର୍ମ
ନିଷ୍କଳ କର୍ମ ସାଂଖ୍ୟଯୋଗ, କେବଳ ଜାଣ କର୍ମଭୋଗ ।
ଭକ୍ତ ଭାବରେ ମହାରଥୀ, ବୁଝିବ ଏହି ସାର କଥା ।

ଇତି ପ୍ରଥମ ଅଧ୍ୟାୟ ।

---

## ଦ୍ୱିତୀୟ ଅଧ୍ୟାୟ

ଏଅନ୍ତେ ଅଞ୍ଜନାନନ୍ଦନ, ପୁନଶ୍ଚ କଲେକ ପ୍ରଶ୍ନ ।
ବୋଲିବା ହେଉ ରଘୁନାଥ, ମୁକ୍ତି ଅଟଇ କି ପଦାର୍ଥ ।
କି ଅବା ସେଥିରେ ଲକ୍ଷଣ ? ସେଥିକି କିବା ପ୍ରୟୋଜନ ।
କି ଅବା ସେଥିର ପ୍ରମାଣ ? ବୋଲିବା ହେଉ ଭଗବାନ ।

ଶ୍ରୀ ଭଗବାନୁବାଚ

ମୁଁ ଅଟେ କର୍ତ୍ତା ମୁହିଁ ସୁଖୀ; ମୁଁ ପୁଣି ଭୋକ୍ତା, ମୁହିଁ ଦୁଃଖୀ ।
ଦାର ନନ୍ଦନ ଧନ କ୍ଷେତ୍ର, ମୁଁ ଅଟେ ସ୍ୱାମୀ ଯେ ସର୍ବତ୍ର ।
ଏ ମହା ଭ୍ରମ ଅଟେ କ୍ଲେଶ, ଏଥିରେ ନାହିଁ ଭ୍ରାନ୍ତି ଲେଶ ।
ଘୁଞ୍ଚିଲେ ଏହି ମହା ଭ୍ରମ, ଜୀବ ଲଭଇ ଶ୍ରେଷ୍ଠ ଧର୍ମ ।
ସେକାଳେ ଜୀବ ହୋଇ ମୁକ୍ତ, ପରମବ୍ରହ୍ମେ ହୁଏ ଯୁକ୍ତ ।
ସ୍ଥୂଳାଦି ତ୍ରିଦେହ ବିନାଶେ, କର୍ମ ଯେ କ୍ଷୟ ଅନାୟାସେ ।
ଯେ କାଳେ ହୁଏ କର୍ମ କ୍ଷୟ, ଲଭ ହୁଅନ୍ତି ନିତ୍ୟ ଲୟ ।
ବିଦେହ ମୁକ୍ତି ହୁଏ ଜାଣ, ବେଦାନ୍ତ ଏଥିର ପ୍ରମାଣ ।
କର୍ମ କ୍ଷୟରେ ଦୁଃଖ ନାଶ, ତା ମଧ୍ୟ ଦେହାନ୍ତେ ପ୍ରକାଶ ।
ଆନନ୍ଦ ହେବା ଉତ୍ପନ୍ନ, ଜୀବର ତାହା ପ୍ରୟୋଜନ ।
ପୁଚ୍ଛିଲେ ହନୁ ପୁନର୍ବାର, ବୋଲନ୍ତୁ ପ୍ରଭୁ ମୋତେ ସାର ।
ତ୍ରିବିଧ କର୍ମ ଏ ଦେହରେ, ବାସ କି କରେ ନିରନ୍ତରେ ?

ଶ୍ରୀ ଭଗବାନୁବାଚ

ଏ ଦେହ କର୍ମର ସଞ୍ଚିତ, ସୂତ୍ରରେ ରହିଛି ଗ୍ରଥିତ ।
ହେ ହନୁ ଜାଣ ସର୍ବ କର୍ମ, ଦେହର ସ୍ୱାଭାବିକ ଧର୍ମ ।

ହନୁ—

କାହିଁରେ ହୁଏ କର୍ମ ନାଶ ? ଏକଥା କରନ୍ତୁ ପ୍ରକାଶ ।

ଶ୍ରୀ ଭଗବାନୁବାଚ

ବାସନା କର୍ମର ନିଳୟ, ବାସନା କ୍ଷୟେ କର୍ମ କ୍ଷୟ ।

ହନୁ—

ବାସନା ଅଟେ କାହା ନାମ ? କିବା ତାହାର ପରିଣାମ ?
କିରୂପେ ତାହା ହୁଏ ନାଶ ? ଏକଥା କରନ୍ତୁ ପ୍ରକାଶ ।

ଶ୍ରୀ ଭଗବାନୁବାଚ

ନ ବୁଝି କଥା ପୂର୍ବାପର, ଏକାନ୍ତ ମନେ ନିରନ୍ତର ।
ନିମଗ୍ନ ବିଷୟ ଚିନ୍ତାରେ, ନ ବୁଝି ପରିଣାମ ବାରେ ।
ଅଳୀକ ସୁଖରେ ଆକାଙ୍‌କ୍ଷା,ବାସନାଅଟେ ତାହା ଆଖ୍ୟା ।
ବିଷୟେ ଲିପ୍ତ ଥାଏ ମନ, ଏହାହିଁ ବାସନା ଲକ୍ଷଣ ।
ଯତ୍ନରେ କଲେକ ପ୍ରୟାସ, ସେହି ବାସନା ଯାଏ ନାଶ ।
ସେ ଯତ୍ନ ଯେ ପୁରୁଷକାର, ତା ପୁଣି ଅଟେ ଦ୍ୱିପ୍ରକାର ।
ସଂଯତ ପୁଣି ଉଚ୍ଛୃଙ୍ଖଳ, ପୁରୁଷକାରର ସମ୍ବଳ ।
ଉଚ୍ଛୃଙ୍ଖଳ ଯେ ଯେଉଁ ଯତ୍ନ, ବିନାଶ କରେ ଜ୍ଞାନରତ୍ନ ।
ଗଲେକ ବାସନାର ଭାବ, ଜୀବ ଯେ କରେ ମୁକ୍ତି ଲାଭ ।
ହେ ବୀର ବାସନା ଆକାର, ଶୁଭ ଅଶୁଭ ଦ୍ୱିପ୍ରକାର ।
ଶୁଭକୁ କରିବ ପାଳନ, ଅଶୁଭ କରିବ ବର୍ଜନ ।
ଅଶୁଭ ହେଲେକ ପ୍ରବଳ, ଦମନ କରିବ କେବଳ ।
ଯତ୍ନରେ ଅଶୁଭ ବାସନା, ବିନଷ୍ଟ ହୁଏ ଅଛି ଜଣା ।
ପୌରୁଷବଳେ ଜୀବ ଶେଷେ, ଅଶୁଭ ବାସନା ବିନାଶେ ।
ଶୁଭ ଅଶୁଭ ଦ୍ୱିପ୍ରକାର, ବାସନା ମନୁ ହେଲେ ଦୂର ।
ସେ କାଳେ ଜୀବ ହୋଇ ମୁକ୍ତ,ପରଂବ୍ରହ୍ମରେ ହୁଏ ଯୁକ୍ତ ।
ବିଶେଷେ କରିବ ଯତନ, ବାସନା ବିଜ୍ଞାନ ଯେ ମନ ।
ଏ ତିନ କଲେକ ଆୟତ୍ତ, ସହଜେ ହେବ ବିମୁକତ ।
କଲେହେଁ ବହୁତ ଆୟାସ, ବାସନା ନ ହେଲେ ବିନାଶ;
ଜୀବର ନାହିଁ କେବେ ମୁକ୍ତି, ହେ ବୀର ଜାଣ ସାର ଯୁକ୍ତି
ବାସନା ମନ ଯେ ବିଜ୍ଞାନ, ଏ ତିନି ଜୀବ ଗ୍ରନ୍ଥି ଜାଣ ।
ଜୀବର ଏହି ପରିପନ୍ଥୀ, ଛିନ୍ନ କରିବ ଏହି ଗ୍ରନ୍ଥି ।
ଏ ତିନ ହେଲେକ ବିନଷ୍ଟ, ଜୀବର ଥାଏ ନାହିଁ କଷ୍ଟ ।
ଅଳୀକ ସଂସାର ବାସନା, ସତ୍ୟରେ କରିଛ ଧାରଣା ।
ଏପରି ଜନ୍ମ ଜନ୍ମାନ୍ତରେ, ନିମଗ୍ନ ରହିଛ ମୋହରେ ।
ସୁଦୃଢ଼ ଅଭ୍ୟାସ ବ୍ୟତୀତ, ବାସନା ନ ହେବ ଅତୀତ ।
ଅଭ୍ୟାସ କଲେକ ସତତ, ହୃଦରେ ପ୍ରକାଶିବ ସତ୍ୟ ।
ଏଥିଲୁ ହେ ବାୟୁତନୟ, କରିବ ବିବେକ ଆଶ୍ରୟ ।
ଭୋଗ ବାସନା ଆମ୍ଭ ମନେ, ଆଶ୍ରୟ ନ ଦେବ ଯତନେ ।
ଖଣ୍ଡିଲେ ବାସନା ଦୁର୍ଯୋଗ, କରିବ ମୋକ୍ଷପଦ ଭୋଗ ।
ବିଷୟ ବାସନା ଜାଲରେ, ଜୀବ ଯେ ବଦ୍ଧ ନିରନ୍ତରେ ।
ବାସନା କଲେକ ବର୍ଜନ, ଲଭିବ ପଦ ସନାତନ ।

ହନୁ—

କାହିଁରେହେବସିଦ୍ଧକାର୍ଯ୍ୟ ? ବୋଲିବାହେଉ ମୋତେ ଆର୍ଯ୍ୟ

ଶ୍ରୀ ଭଗବାନୁବାଚ

ଶୁଣିବା ହେଉ ମହାଭାଗ, ସେଥିର ଏକମାତ୍ର ମାର୍ଗ ।
ବସ୍ତୁର ସ୍ୱରୂପ ଚିନ୍ତନ; କରୁଣ ଥିବ ଅନୁକ୍ଷଣ ।
ଲାଳସା ପାର୍ଥିବ ବସ୍ତୁରେ, ଜନ୍ମିବ ଯେ କାଳେ ପ୍ରଚୁରେ ।
ସେ କାଳେ ତୁମ୍ଭେ ବାରମ୍ବାର, ମନରେ କରିବ ବିଚାର
ଯେ ବସ୍ତୁ ଲାଭ ପାଇଁ ଚିତ୍ତ, ନିୟତ ହେଉଛି ଧାବିତ ।
ଭଲ ଦେଖିବ ପୁଣ ପୁଣି, କି ଅବା ଅଟେ ବସ୍ତୁଗୁଣ ।
କାହିଁରେ ଏ ବସ୍ତୁ ଗଠିତ, ଜୀବର ହିତ କି ଅହିତ ।
ଏହା କି ଅଟେ ଚିରସ୍ଥାୟୀ, ଅଥବା କ୍ଷଣକାଳପାଇଁ,
କିବା ଏହାର ପରିଣାମ, ଏହା କି ଅଟେ ସୁଖଧାମ ।
ଏ ଭାବ କରି ବିଶ୍ଳେଷଣ, ଭଲିବ ସ୍ଥିର କରି ମନ ।
ପଦାର୍ଥ, ଶକ୍ତି, ରୂପ, ଭାବ; ଏ ସବୁ କଲେ ଅନୁଭବ ।
ବାସନା ବେଗ କ୍ରମଶରେ, ହ୍ରାସ ହେବଟି ସହଜରେ ।
ସେ କାଳେ ଜାଣ ଆହେ ବୀର,ଚଞ୍ଚଳ ମନ ହେବ ସ୍ଥିର ।
ନ ହେଲେ ଉଦେ ଦିବ୍ୟ ଜ୍ଞାନ, ବୃଥା ସେ କାର୍ଯ୍ୟଅନୁଷ୍ଠାନ ।
ସମାଧି ଭଜନ ସାଧନ, ସମସ୍ତ ଜାଣ ଅକାରଣ ।
ପରମବ୍ରହ୍ମ ଯେବା ଭଜେ, ସୁଜ୍ଞାନ ଲଭଇ ସହଜେ ।
ଜନ୍ମିଲେ ଚିତ୍ତର ସମାଧି, ନ ଥାଏ ଜୀବର ଉପାଧି ।
ସକାମ ଅଥବା ନିଷ୍କାମ, ସମସ୍ତ କାର୍ଯ୍ୟ ପରିଣାମ ।
ଏକଦା ପାଏଟି ବିନାଶ, ଏକଥା କରିବ ବିଶ୍ୱାସ ।

ହନୁ—

କିରୂପେ ସ୍ୱରୂପର ଚିନ୍ତା, ହୁଏଟି ବୋଲ ଜଗନ୍ନିୟନ୍ତା ।

ଶ୍ରୀ ଭଗବାନୁବାଚ

ହେ ବୀର ସକଳ ଇନ୍ଦ୍ରିୟ, କଲେକ ମୌନକୁ ଆଶ୍ରୟ ।
ପଦାର୍ଥ ସ୍ୱରୂପର ତତ୍ତ୍ୱ, ହେବ ସେ କାଳେ ଅବଗତ ।
ଇନ୍ଦ୍ରିୟ ବାହ୍ୟ ପଦାର୍ଥରେ, ଭ୍ରମଣ କରେ ନିରନ୍ତରେ ।

ଇନ୍ଦ୍ରିୟ ବାସନା ଆଦେଶ, ପାଳନ କରେ ଅହର୍ନିଶ ।
ଅଟେ ଯା ପ୍ରାଣର ସ୍ପନ୍ଦନ, ତା ଅଟେ ବାସନା କାରଣ ।
କଲେକ ସ୍ପନ୍ଦନ ନିରୋଧ, ଉଦୟ ହୁଏ ଆତ୍ମବୋଧ ।
ବାସନା ଇନ୍ଦ୍ରିୟ କିଙ୍କର, ବାସନା ବାସ ଇନ୍ଦ୍ରିୟର ।
ବୃକ୍ଷରୁ ବୀଜ ହୁଏ ଜାତ, ବୀଜରୁ ପୁଣି ବୃକ୍ଷଜାତ ।
ଏପରି ଉଭ ପରସ୍ପର, ଅଟନ୍ତି ଉତ୍ପତ୍ତି ଆକର ।
ବାସନାଇନ୍ଦ୍ରିୟ ସେପରି, ଜନ୍ମ ହୁଅନ୍ତି ହେତୁ ଧରି ।
ପଦ୍ମପତ୍ରରେ ଯଥା ଜଳ, ନିରନ୍ତେ ଥାଏ ସେ ଚଞ୍ଚଳ ।
ତେସନ ସମ୍ବନ୍ଧ ବିଷୟ, ନ କରେ ନିତାନ୍ତ ଆଶ୍ରୟ ।
ଅଭ୍ୟାସ କରିଣ ଆଶ୍ରୟ, ଜୀବ ବନ୍ଧନ କରି କ୍ଷୟ ।
ହେ ବୀର ଶୁଦ୍ଧ ଭକ୍ତିଭରେ, ମୁକତି ଲଭିଥାନ୍ତି ନରେ ।
ସଂସାର ବୃକ୍ଷ ମୂଳ ମନ, ସଙ୍କଳ୍ପ ସେଥିର ବନ୍ଧନ ।
ସଂକଳ୍ପ କଲେକ ଛେଦନ, ବନ୍ଧନ ହୁଏ ବିମୋଚନ ।
ମୂଳ ଛେଦନେ ସୁଖ ଶାନ୍ତି, ଲଭିବ ଏଥି ନାହିଁ ଭ୍ରାନ୍ତି ।
ଅଙ୍ଗର ଶୃଙ୍ଖଳ ଯେସନ, ଯା ଅଟେ ଭବର ବନ୍ଧନ ।
ମନ ବନ୍ଧନ ହେଲେ କ୍ଷୟ, ସହଜେ ଲଭି ହୁଏ ଜୟ ।
ସେ ମନ ନ ହେଲେ ଆୟତ୍ତ, ଚିନ୍ତା କରିବ ସାର ତତ୍ତ୍ୱ
ଏଥିକୁ ଶତ୍ରୁ ଅହଙ୍କାର, କରିଣ ପାରିବ ସଂହାର ।
ମତ୍ତହସ୍ତୀକୁ ଯେ ପ୍ରକାର, ଅଙ୍କୁଶ କରଇ ପ୍ରହାର ।
ତେସନେ ଅନାୟତ୍ତ ମନେ, ସାଧିବ ବେଦାନ୍ତ ବଚନେ ।
ସାଧୁ ସଙ୍ଗମେ କରି ବାସ, କରିବ କୁପ୍ରବୃତ୍ତି ନାଶ ।
ଇନ୍ଦ୍ରିୟନିଗ୍ରହ, ବେଦାଙ୍ଗ; ବାସନାତ୍ୟାଗ, ସାଧୁସଙ୍ଗ ।
ଏ ଚାରି ଉପାୟରେ ଜାଣ, ପ୍ରାଣୀ ଲଭନ୍ତି ପରିତ୍ରାଣ ।
ଏ ମନ ନ ହେଲେ ଆୟତ୍ତ, ଚିନ୍ତା କରିବ ସାରତତ୍ତ୍ୱ ।
ମୃଣାଳସୂତ୍ରରେ ଯେସନ, ନ ହୁଏ ମାତଙ୍ଗ ବନ୍ଧନ ।
ତେସନେ ସାଧନା କ୍ରମଶଃ, ବିନାରେ ମନ ନୁହେ ବଶ ।
ହେଲେକ ଉପାଧିବିହୀନ, ହୁଅନ୍ତି ବ୍ରହ୍ମପଦେ ଲୀନ ।
ଊର୍ଦ୍ଧ୍ୱ ବା ଅଧ ମଧ୍ୟସ୍ଥାନେ, ପୂର୍ଣ୍ଣ ରହିଛନ୍ତି ଭଗବାନେ ।
ବିଶ୍ୱମଣ୍ଡଳ ବ୍ରହ୍ମମୟ, ଏ କଥା ଜାଣିବ ନିଶ୍ଚୟ ।
ସମାଧି ହେଲେ ପରିଣତ, ଲଭି ହୁଅନ୍ତି ବିଶ୍ୱପତି ।

ହନୁ—

ଶାସ୍ତ୍ରର ନାହିଁଟି ଅବଧି, ନୁହେ କି ଏ ସର୍ବ ବିରୋଧୀ ?

ଶ୍ରୀ ଭଗବାନୁବାଚ

ଶାସ୍ତ୍ର ଯେ ବିବିଧ ପ୍ରକାର, ବେଦାନ୍ତ ଶାସ୍ତ୍ର ସେଥି ସାର ।
ବେଦାନ୍ତ କଲେ ଅଧ୍ୟୟନ, ଅନ୍ୟରେ ନାହିଁ ପ୍ରୟୋଜନ ।
ନାନା ବ୍ୟଞ୍ଜନ କରି ପାକ, ତା ରସ ନ ଜାଣେ ପାଚକ ।
ବିବିଧ ଶାସ୍ତ୍ର ସେ ପ୍ରକାର, ପଢ଼ିବ ପଛେ ବାରମ୍ବାର ।
ନ ଲଭି ଯେବେ ବ୍ରହ୍ମଜ୍ଞାନ, ସେ ଶାସ୍ତ୍ର ପାଠ ବୃଥା ଜାଣ ।
ଜୀବ ଆବଦ୍ଧ ବାସନାରେ,ତା ନାଶେ ମୁକ୍ତି ଲଭି ପାରେ ।
ଯଦ୍ୟପି ମୁକ୍ତି ଅଭିଳାଷ, କରିବ ବାସନା ବିନାଶ ।
ଇଚ୍ଛା ଯେ ବହୁ ପଲ୍ଲବିତ, ସର୍ବାଗ୍ରେ କରିବ ବର୍ଜିତ ।
ଏପରି ତେଜିଣ ବାସନା, ମୁକତି କରିବ କାମନା ।
ବାସନା ହୃଦୟେ ବିନାଶେ, ଜଳଦ ଯେମନ୍ତ ଆକାଶେ ।
ନିର୍ମଳ ଆକାଶେ ଯେମନ୍ତ, ଦିଶେ ଚନ୍ଦ୍ରମା ପ୍ରଭାବନ୍ତ ।
ବାସନାଶୂନ୍ୟ ହୃଦୟରେ, ତତ୍ତ୍ୱ ଉଦୟ ସେରୂପରେ ।
ସୁଖ ବା ଦୁଃଖ ତ୍ୟାଗ ଭୋଗ, ଯେତେକ ହୃଦୟ ଦୁର୍ଯୋଗ
ହୃଦୟ କଲେ ଜ୍ଞାନସନ, ହୁଏଟି ନିର୍ମଳ ନିର୍ମମ ।
ହେ ବୀର ଚିନ୍ତାସ କେବଳ, କରିବ ଜୀବନ ସମ୍ବଳ ।
ବାସନା ହେଲେ ତିରୋହିତ, ହେବ ଯେ ବ୍ରହ୍ମରେ ମିଳିତ
ଶବ୍ଦ ବିହୀନ ସ୍ପର୍ଶହୀନ, ରୂପ ରସ ଯେ ଗନ୍ଧହୀନ ।
ଅରୂପ ଗୋତ୍ର ଯେ ଅନାମ, କୂଟସ୍ଥ ପ୍ରାଚୀନ ଅଧାମ ।
ଅନାଦି ଅନନ୍ତ ଅଚିନ୍ତ୍ୟ, କାର୍ଯ୍ୟକାରଣ ଯେ ଅତୀତ ।
ସତତ ବ୍ୟକ୍ତ ଯେ ଅବ୍ୟକ୍ତ, ସକଳ ସତ୍ତ୍ୱ ସର୍ବଗତ ।
ଯେ ଭାବେ ବ୍ରହ୍ମ ଏ ପ୍ରକାର, ସେ ପାଏ ମୁକ୍ତି ଅଧିକାର ।
ପରିବ୍ୟାପ୍ତ ଯେ ଇତସ୍ତତଃ, ଅମୂର୍ତ୍ତି ମୂର୍ତ୍ତି ସେ ଅନନ୍ତ ।
ଏପରି କଲେକ ବିଶ୍ୱାସ, କରିବ ପରଂବ୍ରହ୍ମେ ବାସ ।
ହେ ମହାପ୍ରଭୁ ହେ ହରୀଶ, ଅନନ୍ତ ଜୟ ଜଗଦୀଶ ।
ତଦ୍‌ବିଷ୍ଣୋ ପ୍ରଭୁ ନାରାୟଣେ, ସଦା ପଶ୍ୟନ୍ତି ସୁଧୀଗଣେ ।
ବିନୟେ କରେଁ ବାରମ୍ବାର, ଋଷିମାନଙ୍କୁ ନମସ୍କାର ।

ଇତି ମୁକ୍ତିକୋପନିଷଦ୍ ସମାପ୍ତ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ହରିଃ ଓଁ

———

## ସାମବେଦୀୟା ତଲବକାରୋପନିଷତ୍
## ବା
## କେନୋପନିଷତ୍

କେବଣ ପୁରୁଷ ଆଜ୍ଞା ଅନୁସାରେ ମନ,
ଆପଣା ବିଷୟେ ପ୍ରବୃତ୍ତ କରଇ ଗମନ ?
ଶରୀର ମଧ୍ୟରେ ଯେବା ଅଟନ୍ତି ପ୍ରଧାନ,
କାହା ଆଜ୍ଞାବଶ ହୋଇଥାନ୍ତି ସେହି ପ୍ରାଣ ?
କାହାର ଆଜ୍ଞାରେ ଜଗତର ଲୋକଗଣ
କରି ଥାଆନ୍ତି ନିଜ ବାକ୍ୟ ଉଚ୍ଚାରଣ ?
କେବଣ ଦେବତା ବୋଲି ଏହି ନେତ୍ର କର୍ଣ୍ଣେ,
ନିଯୁକ୍ତ କରିଛନ୍ତି ସ୍ୱକାର୍ଯ୍ୟ ସାଧନେ ?
ଯେ ଦେବ କର୍ଣ୍ଣର କର୍ଣ୍ଣ; ମନର ଯେ ମନ,
ବାକ୍ୟର ଯେ ବାକ୍ୟ ସର୍ବ ଶକ୍ତିର କାରଣ ।
ଅଟନ୍ତି ସେ ଦେବ ମନ ଆଦି ପ୍ରବର୍ତ୍ତକ,
ପ୍ରାଣର ସେ ପ୍ରାଣ ପୁଣି ନେତ୍ରର ଆଲୋକ ।
ମୁହିଁ କର୍ତ୍ତା, ଏହି ଜ୍ଞାନ ତେଜି ଜ୍ଞାନୀ ନର,
ଇହଲୋକ ତ୍ୟାଗ କରି ହୁଅନ୍ତି ଅମର ।
ନେତ୍ରର ନୁହନ୍ତି ଗମ୍ୟ ସେ ପରଂବ୍ରହ୍ମ,
ବାକ୍ୟ ପୁଣି ମନର ଯେ ଅଟନ୍ତି ଅଗମ୍ୟ ।
ଆମ୍ଭେମାନେ ତାଙ୍କ କଥା ନ ଜାଣୁ ବିଶେଷ,
କିରୂପ ବା ସେ ବିଷୟେ ଦେବୁଁ ଉପଦେଶ ।
ଯେତେକ ପଦାର୍ଥ ଅଛି ଜ୍ଞାତ ବା ଅଜ୍ଞାତ,
ସମସ୍ତଙ୍କଠାରୁ ସେହି ବିଭିନ୍ନ ନିତାନ୍ତ ।
ଶୁଣିଅଛୁଁ ପୂର୍ବ ପୂର୍ବ ଆଚାର୍ଯ୍ୟ ସମସ୍ତ,
ବ୍ୟାଖ୍ୟା କରିଛନ୍ତି ଏହିପରି ବ୍ରହ୍ମତତ୍ତ୍ୱ ।
ନ ହୁଅନ୍ତି ବାକ୍ୟଦ୍ୱାରା ଯେବା ପ୍ରକାଶିତ,
ଯାହାଙ୍କ ଆଜ୍ଞାରେ ହୁଏ ବାକ୍ୟ ଉଚ୍ଚାରିତ ।
ତାହାଙ୍କୁ ଜାଣିବ ତୁମ୍ଭେ ପରଂବ୍ରହ୍ମ; କିନ୍ତୁ
ଜାଣିବ ନୁହନ୍ତି ବ୍ରହ୍ମ ଉପାସିତ ବସ୍ତୁ ।
ମନ କରି ନ ପାରଇ ଯାହାଙ୍କୁ ମନନ,
ପୁଣି ତାଙ୍କଠାରୁ ଜାତ ହୋଇଅଛି ମନ ।
ବ୍ରହ୍ମବିଦେ ବୋଲିଛନ୍ତି ସେହି ବ୍ରହ୍ମ କିନ୍ତୁ,
ନୁହନ୍ତି ଯେ ବ୍ରହ୍ମ, ଏହି ଉପାସିତ ବସ୍ତୁ ।
ଅଜ୍ଞାନୀଏ ଜଡ଼ବସ୍ତୁ କରିଣ କଳ୍ପନା,
କରିଥାନ୍ତି ପରଂବ୍ରହ୍ମରୂପେ ଉପାସନା ।
ମାତ୍ରକ ନୁହନ୍ତି ବ୍ରହ୍ମ ଜଡ଼ବସ୍ତୁ ଜାଣ,
ସେହି ବ୍ରହ୍ମ ଜ୍ଞାନକୁ ଯେ ଦେଉଛନ୍ତି ଜ୍ଞାନ ।
ଯାହାଙ୍କ ଆଜ୍ଞାରେ ବସ୍ତୁ ଦେଖଇ ନୟନ,
ନୟନ ନ କରିପାରେ ଯାହାଙ୍କୁ ଦର୍ଶନ ।
ସେହି ପରଂବ୍ରହ୍ମ ବୋଲି କର ହୃଦଙ୍ଗମ,
ଉପାସିତ ବସ୍ତୁ କେବେ ନୁହଇ ଯେ ବ୍ରହ୍ମ ।
ଯାହାଙ୍କ ସ୍ୱରୂପ ଶୁଣି ନ ପାରଇ କର୍ଣ୍ଣ,
ଯାହାଙ୍କ ଆଜ୍ଞାରେ କର୍ଣ୍ଣ କରଇ ଶ୍ରବଣ ।
ତାହାଙ୍କୁ ଜାଣିବ ତୁମ୍ଭେ ପରଂବ୍ରହ୍ମ, କିନ୍ତୁ
ନୁହଇ ସେ ପରିମିତ ଉପାସିତ ବସ୍ତୁ ।
ନାସିକା ଯାହାଙ୍କୁ କରି ନ ପାରଇ ଘ୍ରାଣ,
ନାସା ତାଙ୍କଠାରୁ ଘ୍ରାଣଶକ୍ତି ପାଏ ଜାଣ ।
ଆହେ ବିଜ୍ଞ ! ତାହାଙ୍କୁ ଯେ ବ୍ରହ୍ମ ବୋଲି ଜାଣ,
ନୁହନ୍ତି ଯେ ବ୍ରହ୍ମ ଉପାସିତ ବସ୍ତୁମାନ ।
ଏ ପ୍ରକାର ତୁମ୍ଭେ ଯେବେ ମନରେ ବିଚାର,
ଆତ୍ମାରେ ପ୍ରତ୍ୟକ୍ଷ କର ବ୍ରହ୍ମଙ୍କ ଆକାର ।
ତେବେ ତ ତୁମ୍ଭର ହୋଇଅଛି ଜ୍ଞାନୋଦୟ,
ବ୍ରହ୍ମର ସ୍ୱରୂପ ଅଳ୍ପ ଜାଣିଛ ନିଶ୍ଚୟ ।
ଦେବତା ମଧ୍ୟରେ ଦେଖି ବ୍ରହ୍ମଙ୍କର କାର୍ଯ୍ୟ,
ଏଥିକୁ ତୁମ୍ଭର ବ୍ରହ୍ମ ବିଷୟ ବିଚାର୍ଯ୍ୟ ।
ଶିଷ୍ୟ ଆସି ବୋଇଲେ ଯେ ଗୁରୁ ସମୀପକୁ,
ମୁହିଁ କିଛି ଜାଣିଅଛି ବ୍ରହ୍ମ ସ୍ୱରୂପକୁ ।
ମାତ୍ରକ ମୋହର ନାହିଁ ଏରୂପ ବିଶ୍ୱାସ,
ପରଂବ୍ରହ୍ମ ସ୍ୱରୂପକୁ ଜାଣିଛି ବିଶେଷ,
ଏ କଥା ନ ବୋଲିପାରେଁ ପରଂବ୍ରହ୍ମ ଜାଣେ,
କିପରି ବୋଲିବି ତାଙ୍କୁ ବୁଝି ନାହିଁ ଜ୍ଞାନେ ?
ନ ଜାଣେ ବ୍ରହ୍ମଙ୍କୁ ଏହା ବୋଲିବି କିପରି ?
ନ ବୋଲେ ବ୍ରହ୍ମଙ୍କୁ ଅଛି ଆତ୍ମଜ୍ଞାନେ ଧରି ।

ବିଶେଷେ ଏ ବାକ୍ୟ ଅର୍ଥ ଯେଉଁ ଲୋକ ଜାଣେ,
ସେହି ଲୋକ ବୁଝିଅଛି ପରଂବ୍ରହ୍ମେ ଜ୍ଞାନେ ।
ଯେଉଁ ଲୋକ ବୋଲେ ମୁହିଁ ଜାଣେ ନାହିଁ ବ୍ରହ୍ମ,
ସେହି ଲୋକ କରିଅଛି କିଛି ହୃଦଙ୍ଗମ ।
ଯେ ଲୋକ ବୋଲଇ ମୁହିଁ ପରଂବ୍ରହ୍ମେ ଜାଣେ,
ନିଶ୍ଚେ ସେହି ବୁଝି ନାହିଁ ପରଂବ୍ରହ୍ମ ଜ୍ଞାନେ ।
ବିଶେଷ ଜ୍ଞାନୀଏ ବୋଲିଥାଆନ୍ତି ଏରୂପ,
ଆମ୍ଭେମାନେ ଜାଣୁନାହିଁ ବ୍ରହ୍ମଙ୍କ ସ୍ୱରୂପ ।
ମାତ୍ରକ ଏପରି ବୋଲି ଥାଆନ୍ତି ଅଧମେ ?
ଆମ୍ଭେମାନେ ବିଶେଷରେ ଜାଣୁ ପରଂବ୍ରହ୍ମେ ।
ବ୍ରହ୍ମ ପରିବ୍ୟାପ୍ତ ରହିଛନ୍ତି ସର୍ବସ୍ଥାନେ,
ଏ ପ୍ରତ୍ୟୟ ଯାର ସେହି ପରଂବ୍ରହ୍ମେ ଜାଣେ ।
ଯେଉଁ ଲୋକ ବୁଝିଅଛି ହୃଦେ ଏହି ତତ୍ତ୍ୱ,
ନିଶ୍ଚୟ ସେ ଲଭି କରିପାରେ ଅମୃତତ୍ୱ ।
ଆତ୍ମସ୍ୱରୂପର ଜ୍ଞାନେ ଲଭି ହୁଏ ଶାନ୍ତ,
ଆତ୍ମବିଷୟକ ଜ୍ଞାନେ ଅମରତ୍ୱ ଗତ ।
ପରଂବ୍ରହ୍ମେ ଜାଣିଛନ୍ତି ଯେ ଲୋକ ସକଳ,
ସେମାନଙ୍କ ହୋଇଅଛି ଜନମ ସଫଳ,
ପରଂବ୍ରହ୍ମେ ନାହିଁ ଯେଉଁମାନଙ୍କ ବିଶ୍ୱାସ,
ପ୍ରାପ୍ତ ହେବେ ସେହି ଲୋକ ମହାନ ବିନାଶ ।
ଜନ୍ମ, ଜରା, ବ୍ୟାଧି, ମୃତ୍ୟୁ ପୁନଃ ପୁନଃ ଭୋଗ,
ଲଭିବେ ସେ ଅଜ୍ଞଲୋକେ ମହାନ ଦୁର୍ଯୋଗ ।
ଅତଏବ ଜ୍ଞାନିଗଣ ସର୍ବ ପଦାର୍ଥରେ,
ଅବସ୍ଥାନ କରୁଛନ୍ତି ବ୍ରହ୍ମ ନିରନ୍ତରେ ।
ଇହଲୋକେ ଏ ସମ୍ବାଦ ହୋଇ ଅବଗତ,
କରନ୍ତି ଯେ ଦେହ ତେଜି ଲଭି ଅମୃତତ୍ୱ ।
ବ୍ରହ୍ମ ଦେବତାଙ୍କ ପ୍ରତି ହୋଇଣ ସଦୟ,
ଦାନବଗଣଙ୍କୁ ରଣେ କଲେ ପରାଜୟ ।
ମାତ୍ରକ ଦେବତାଗଣେ କଲେକ ବିଗ୍ଭର,
ଆମ୍ଭେମାନେ ଦାନବଙ୍କୁ କରିଛୁଁ ସଂହାର ।
ପରଂବ୍ରହ୍ମ ବିଜୟ ଦେବତା ସକଳେ ,
ମହିମା ପ୍ରକାଶ କଲେ ଜଗତମଣ୍ଡଳେ ।

ଦେବତାଙ୍କ ଅଭିପ୍ରାୟ ହୋଇଣ ବିଦିତ,
ପରଂବ୍ରହ୍ମ ଆତ୍ମକଥା କଲେ ପ୍ରକାଶିତ ।
ଏପରି ସେ ଦେବଗଣେ ଅଟନ୍ତି ଅଜ୍ଞାନୀ,
ପରଂବ୍ରହ୍ମ ତତ୍ତ୍ୱ କିଛି ନ ପାରିଲେ ଜାଣି ।
କେଉଁ ଲୋକ ପୂଜ୍ୟତମ ଜଗତମଣ୍ଡଳେ,
ନ ଜାଣିଲେ ଏହି ତତ୍ତ୍ୱ ଦେବତା ସକଳେ ।
ଦେବଗଣେ ପୃଚ୍ଛା କଲେ ଯାଇଁ ଅଗ୍ନି ପାଶେ,
କେ ଅଟନ୍ତି ପୂଜନୀୟ ଜାଣିବା ସକାଶେ ।
ଆହେ ଜାତବେଦ ! ତୁମ୍ଭେ ଅଟ ଯେ ସର୍ବଜ୍ଞ,
ତୁମ୍ଭେ ଯାଇଁ ଜ୍ଞାତ ହୁଅ କେବା ପରଂବ୍ରହ୍ମ ।
ବୋଲନ୍ତେ ଅନଳେ ଏତେ କଥା ଦେବଗଣ,
ଅନଳ ବ୍ରହ୍ମଙ୍କ ପାଶେ କଲେକ ଗମନ ।
ପୃଚ୍ଛା କଲେ ପରଂବ୍ରହ୍ମ, କେ ତୁମ୍ଭେ ହେ ଜ୍ଞାନୀ ?
ବୋଇଲେ ଅନଳ ଆମ୍ଭେ ଜାତବେଦ ଅଗ୍ନି ।
ଏହା ଶୁଣି ପରଂବ୍ରହ୍ମ ପୃଚ୍ଛା କଲେ ପୁଣ ,
ବୋଲେ ଆହେ ଅଗ୍ନି ! ଅଛି ତୁମ୍ଭର କି ଗୁଣ ?
ବୋଇଲେ ଅନଳ ଶୁଣ ହୋଇ ସାବଧାନ,
ପୃଥିବୀ ମଧ୍ୟରେ ଅଛି ଯେ ପଦାର୍ଥମାନ ।
ଇଚ୍ଛା ମାତ୍ର ତାହା ସବୁ ଦେବୁଁ ଦଗ୍‌ଧ କରି,
ଆହେ ଦେବ ! ଆମ୍ଭେ ଅଛୁ ଏହି ଗୁଣ ଧରି ।
ବୋଇଲେ ଏତେକ ଶୁଣି ପରଂବ୍ରହ୍ମ ପୁଣ,
ଅନଳ ହସ୍ତରେ ଦେଇ କେବଳ ଏକ ତୃଣ ।
ଆହେ ଅଗ୍ନି ! ଏ ତୃଣକୁ ତୁମ୍ଭେ ଦଗ୍‌ଧ କର,
ବଳ ପ୍ରକାଶିଲେ ଏହା ଶୁଣି ବୈଶ୍ୱାନର ।
ଯେତେରୂପ ଯତ୍ନ ସେହି କଲେ ପୁଣ ପୁଣ,
ଦଗ୍‌ଧ କରି ନ ପାରିଲେ ସେହି ଗୁଚ୍ଛ ତୃଣ ।
ସେ କାଳରେ ଉଦେ ହେଲା ତାଙ୍କ ହବ୍ୟଜ୍ଞାନ,
ନ ଜାଣେ ମୁଁ କାହା ବଳେ ଅଟେ ବଳୀୟାନ ।
ଏଥିଅନନ୍ତରେ ଏକସଙ୍ଗେ ଦେବଗଣେ,
ବୋଇଲେ ବିନୟ କରି ଯାଇଣ ପବନେ ।
ଆହେ ବାୟୋ ! ତୁମ୍ଭେ ଯାଇ ଜାଣି ଆସ ଥରେ,
କେ ଅଟନ୍ତି ପୂଜନୀୟ ବ୍ରହ୍ମାଣ୍ଡ ମଧ୍ୟରେ ।

ହେବ ବୋଲି ଅଙ୍ଗୀକାର କରିଣ ପବନ,
ପରମବ୍ରହ୍ମଙ୍କ ପାଶେ କଲେକ ଗମନ ।
ପୃଚ୍ଛା କଲେ ବ୍ରହ୍ମ, ତୁମ୍ଭେ କେ ଅଇଲ ଆଜ ?
ବୋଇଲେ ପବନ, ଆମ୍ଭ ନାମ ଅଟେ ବାୟୁ ।
ଆହେ ଦେବ ! ଆମ୍ଭ ନାମ ଅଟେ ମାତରିଶ,
ଆକାଶ ମଧ୍ୟରେ ତେଜୁଁ ନିଶ୍ୱାସ ପ୍ରକାଶ ।
ବାୟୁକୁ ପୁଚ୍ଛିଲେ ବ୍ରହ୍ମ, ଆହେ ମହାମତି !
ବୋଲନ୍ତୁ ଆମ୍ଭଙ୍କୁ ଅଛି ତୁମ୍ଭର କି ଶକ୍ତି ?
ପରଂବ୍ରହ୍ମ ବାକ୍ୟ ଶୁଣି ବୋଇଲେ ପବନ,
ଜଗତ ସମସ୍ତ ଦ୍ରବ୍ୟ କରୁଁ ଯେ ଗ୍ରହଣ ।
ପବନକୁ ପରଂବ୍ରହ୍ମ ବୋଇଲେ ଯେ ଶୁଣ,
ତାହାଙ୍କ ହସ୍ତରେ ଦେଇ ଏକ ଶୁଷ୍କ ତୃଣ ।
ହେ ପବନ ! ଏହି ତୃଣ କରନ୍ତୁ ଗ୍ରହଣ,
ଏହା ଶୁଣି ତୃଣ ପାଶେ ଯାଇଣ ପବନ ।
ବହୁତ ପ୍ରକାରେ ସେହି କଲେହେଁ ଯତନ,
ମାତ୍ର କରି ନ ପାରିଲେ ତୃଣକୁ ଗ୍ରହଣ ।
ବିଚାରିଲେ କିଏ ଏହି ତୃଣ ଦେଲା ଆଣି,
ଅଟନ୍ତି କେ ପୂଜନୀୟ ନ ପାରିଲ ଜାଣି ।
ଏଥୁଅନ୍ତେ ଏକତ୍ରିତ ହୋଇ ଦେବଗଣ,
ବୋଇଲେ ଇନ୍ଦ୍ରଙ୍କୁ ଯାଇ, ଅହେ ମଘବାନ ।
କେ ଅଟନ୍ତି ପୂଜନୀୟ ସେ ମହାପୁରୁଷ,
ତୁମ୍ଭେ ଯାଇ ତାଙ୍କଠାରୁ ତତ୍ତ୍ୱ ଜାଣି ଆସ ।
ସମ୍ମତ ହୋଇ ଇନ୍ଦ୍ର ଗଲେ ତାଙ୍କ ପାଶେ,
ତାହାଙ୍କ ମହିମା ତତ୍ତ୍ୱ ଜାଣିବା ସକାଶେ ।
କଲେହେଁ ବାସବ ବହୁ ଯତ୍ନ ଯଥୋଚିତ;
ମାତ୍ର ବ୍ରହ୍ମ ତାଙ୍କ ପାଶୁଁ ହେଲେ ତିରୋହିତ ।
ଆକାଶେ ଦେଖିଲେ ଇନ୍ଦ୍ର ନାରୀ ସ୍ୱରୂପିଣୀ,
ହୈମବତୀ ଉମାଦେବୀ ସୌନ୍ଦର୍ଯ୍ୟଶାଳିନୀ ।
ଇନ୍ଦ୍ର ଯାଇ ପୃଚ୍ଛା କଲେ ହୈମବତୀ ପାଶେ,
ପୂଜନୀୟ ବ୍ରହ୍ମତତ୍ତ୍ୱ ଜାଣିବା ସକାଶେ ।

ବୋଇଲେ ଇନ୍ଦ୍ରଙ୍କ ମୁଖ ଚାହିଁ ହୈମବତୀ,
ଏହି ପରଂବ୍ରହ୍ମ ବିଶ୍ୱବ୍ୟାପ୍ତ ହୋଇଛନ୍ତି ।
ସେ ବ୍ରହ୍ମପ୍ରଦତ୍ତ ବିଜୟରେ ଦେବଗଣେ—
ମହିମାଭୂଷିତ ହୋଇଛନ୍ତି ତ୍ରିଭୁବନେ ।
ଉମାଙ୍କ ବାକ୍ୟରେ ଇନ୍ଦ୍ର ଜାଣିଲେ ବୃତ୍ତାନ୍ତ,
ବିଶ୍ୱ ବ୍ରହ୍ମାଣ୍ଡର ବୀଜ ସେ ବ୍ରହ୍ମପଦାର୍ଥ ।
ପୂର୍ବକାଳେ ଅଗ୍ନି, ବାୟୁ, ଇନ୍ଦ୍ର ତିନିଜଣ,
କିଞ୍ଚିତରେ ଜାଣିଥିଲେ ବ୍ରହ୍ମ ବିବରଣ;
ଏମାନଙ୍କ ଥିବା ଯୋଗୁଁ ପରଂବ୍ରହ୍ମ ଜ୍ଞାନ,
ଅନ୍ୟାନ୍ୟ ଦେବତାଠାରୁ ଅଟନ୍ତି ପ୍ରଧାନ ।
ସେହି ବ୍ରହ୍ମ ଏହିରୂପେ ହୁଅନ୍ତି ପ୍ରକାଶ,
ତାହାଙ୍କ ଆଜ୍ଞାରେ ହୁଏ ବିଦ୍ୟୁତ୍ ବିକାଶ ।
ନୟନ ନିମିଷପରି ଦେବତାଙ୍କଠାରେ
ବିକସିତ ହୋଇଥାନ୍ତି ବ୍ରହ୍ମ ବାରେ ବାରେ ।
ଏହା ଅଟେ ଆତ୍ମବିଷୟକ ଉପଦେଶ,
ମନ ଯେତେହେଁ ତାଙ୍କ କଥା ଜାଣିବ ବିଶେଷ ।
ଲଭିବାକୁ ବ୍ରହ୍ମଜ୍ଞାନ ଅଧିକ ବା ଅଳ୍ପ,
ନିରନ୍ତର କରୁଥିବ ସାଧକ ସଙ୍କଳ୍ପ ।
ସମ୍ଭବରେ ପରଂବ୍ରହ୍ମ କରିବ କଳ୍ପନା,
ସମ୍ଭବରେ କରିବ ଯେ ତାଙ୍କ ଉପାସନା ।
ପରଂବ୍ରହ୍ମେ ଏହିରୂପେ ଜାଣଇ ଯେ ଜ୍ଞାନୀ,
ତାହାଙ୍କୁ କରନ୍ତି ପୂଜା ଜଗତର ପ୍ରାଣୀ ।
ବୋଇଲେ ଆଚାର୍ଯ୍ୟ ତହୁଁ ଶିଷ୍ୟମୁଖ ଚାହିଁ,
ଲୋଡ଼ିଥିଲ ବ୍ରହ୍ମତତ୍ତ୍ୱ ଜ୍ଞାନଲଭ ପାଇଁ ।
ଏ ଉପନିଷଦ ଅଟେ ବ୍ରହ୍ମବିଷୟିଣୀ,
ଏକମାତ୍ର ପ୍ରାଣୀଙ୍କର କୈବଲ୍ୟଦାୟିନୀ ।
ତପସ୍ୟା ଚିତ୍ତର ସ୍ଥୈର୍ଯ୍ୟ କର୍ମ ବା ବେଦାଙ୍ଗ,
ଉପନିଷଦ୍ ପ୍ରତିପାଦ୍ୟ ବ୍ରହ୍ମବିଦ୍ୟା ଅଙ୍ଗ ।
ସତ୍ୟ ଅଟେ ଏହି ଉପନିଷଦ ଆଶ୍ରୟ,
ପ୍ରତିଷ୍ଠା ବା ବ୍ରହ୍ମପାଦ ଲଭିବା ଉପାୟ ।

ଏହି ବ୍ରହ୍ମବିଦ୍ୟା ଯେବା ହୁଏ ଅବଗତ,
ନିଶ୍ଚୟ ସେ ସର୍ବ ପାପୁଁ ହୁଏ ବିମୁକତ ।
ଅନନ୍ତ ବ୍ରହ୍ମାଣ୍ଡେ ହୋଇ ସେ ଲୋକ ପୂଜିତ,
ସର୍ବଶ୍ରେଷ୍ଠ ସ୍ୱର୍ଗଲୋକେ ହୁଏ ପ୍ରତିଷ୍ଠିତ ।
ଇତି କେନୋପନିଷତ୍ ସମାପ୍ତ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ହରିଃ ଓଁ ।

———

କୃଷ୍ଣ ଯଜୁର୍ବେଦୀୟ

# ତୈତ୍ତିରୀୟୋପନିଷତ୍

## ପ୍ରଥମାବଲ୍ଲୀ

**ମିତ୍ର** — ପ୍ରାଣବୃତ୍ତି ବିଦ୍ୟାଅଭିମାନୀ ଦେବ !
ହେଉନ୍ତୁ କଲ୍ୟାଣକାରୀ ଆମ୍ଭମାନଙ୍କର ।
ବରୁଣ—ଅପାନବୃତ୍ତି ରହିଅଭିମାନୀ-
ଦେବତା ! କଲ୍ୟାଣଦାୟୀ ଆମ୍ଭମାନଙ୍କର ।
ନେତ୍ର ବା ଆଦିତ୍ୟ ଅଭିମାନୀ ଯେ ଦେବତା,
ହେ ଅର୍ଯ୍ୟମା - ଆମ୍ଭପ୍ରତି କରନ୍ତୁ କଲ୍ୟାଣ ।
ଇନ୍ଦ୍ର—ବଳ ଅଭିମାନୀ ଦେବତା ପ୍ରଧାନ,
ହେଉନ୍ତୁ କଲ୍ୟାଣକାରୀ ଆମ୍ଭମାନଙ୍କର ।
ଦେବ ବୃହସ୍ପତି   ବାକ୍ୟ ବୁଦ୍ଧି ଅଭିମାନୀ,
ହେଉନ୍ତୁ କଲ୍ୟାଣକାରୀ ଆମ୍ଭମାନଙ୍କର ।
ବିଷ୍ଣୁ ଦେବ—ସୁବିସ୍ତୀର୍ଣ୍ଣ ପାଦକ୍ଷେପକାରୀ,
ହେଉନ୍ତୁ କଲ୍ୟାଣକାରୀ ଆମ୍ଭମାନଙ୍କର ।
ହେ ବାୟୋ ! ତୁମ୍ଭର ପଦେ କରୁଁ ନମସ୍କାର ।
ପରଂବ୍ରହ୍ମ ଦେବେ—ଆମ୍ଭେ କରୁଁ ନମସ୍କାର ।
ଇନ୍ଦ୍ରିୟଗୋଚର ବ୍ରହ୍ମ ତୁମ୍ଭେ ହିଁ ପବନ ।
ବାୟୁବ୍ୟ ବିଷୟରତ କରିବି ଘୋଷଣା ।
କରିବି ଘୋଷଣା ସତ୍ୟ ଜଗତ ମଣ୍ଡଳେ ।
ହେ ବ୍ରହ୍ମ କରୁଣା କରି ରକ୍ଷାକର ମୋତେ ।
କରନ୍ତୁ ଆଚାର୍ଯ୍ୟେ ରକ୍ଷା ସେହି ପରଂବ୍ରହ୍ମ ।
ବକ୍ତାଙ୍କୁ ଆମ୍ଭଙ୍କୁ ରକ୍ଷା କର ପରଂବ୍ରହ୍ମ ।
ଆଧ୍ୟାତ୍ମିକ—ଆତ୍ମ ସମ୍ବନ୍ଧୀୟ ଯେଉଁ ବିଘ୍ନ,
ଆଧିଭୌତିକ ଯେ—ଭୂତ ସମ୍ବନ୍ଧୀ ବିପତ୍ତି ।
ଆଧିଦୈବିକ ଯେ—ଦୈବକୃତ ବିଘ୍ନମାନ,
ତିନରୂପ ବିଘ୍ନ ଶାନ୍ତ ସକାଶେ ସମ୍ପ୍ରତି ।
ବୋଲୁଅଛୁଁ ତିନି ଥର ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।
ଇତି ପ୍ରଥମ ବେଦାଂଶ ।

———

ଓଁ ଶିକ୍ଷା ବର୍ଣ୍ଣାଦି ବିଧି ଉଚ୍ଚାରଣ ବ୍ୟାଖ୍ୟା
କରିବି ସମ୍ପ୍ରତି ପ୍ରଭୋ ! କରନ୍ତୁ କରୁଣା ।
ବର୍ଣ୍ଣ ଅର୍ଥ—ଅକାରାଦି ସମସ୍ତ ଅକ୍ଷର,
ଉଦାତ୍ତ ପ୍ରଭୃତି କଣ୍ଠଧ୍ୱନି ନାମ ସ୍ୱର ।
ହ୍ରସ୍ୱ, ଦୀର୍ଘ, ପ୍ଲୁତ, ଏହି ତିନିନାମ ମାତ୍ରା ।
ଶବ୍ଦ ରଚନାର ଯତ୍ନ ତାହା ନାମ ବଳ ।
ମଧ୍ୟମବୃତ୍ତିର ବର୍ଣ୍ଣ, ଉଚ୍ଚାରଣ ସାମ ।
ସନ୍ତାନ ଶବ୍ଦର ଅର୍ଥ ବର୍ଣ୍ଣର ସଂଯୋଗ ।
ଶିକ୍ଷା ଶବ୍ଦ ଅର୍ଥ ପୂର୍ବୋକ୍ତକାର ଯେ ଛନ୍ଦ,
ତାହାର ଯେ ଅନୁରୋଧ ଶିକ୍ଷାଧ୍ୟାୟ ଇତି ।
ଇତି ଦ୍ୱିତୀୟ ବେଦାଂଶ ।

———

ଶିଷ୍ୟ, ଆଚାର୍ଯ୍ୟଙ୍କ ଯଶ ପ୍ରକାଶୁ ଜଗତେ,
ଉଭୟଙ୍କ ଦେହେ ଜାତ ହେଉ ବ୍ରହ୍ମତେଜ ।
ଏଥୁଅନ୍ତେ ସଂହିତାର ସଂଯୋଗର ଜ୍ଞାନ,
କରିବି ମୁଁ ବ୍ୟାଖ୍ୟା ପଞ୍ଚବିଷୟୁଦିଷ୍ଟିତ ।
ଲୋକଗଣ ଅଭିମାନୀ ଦେବତା ଧ୍ୟେୟତ୍ତ୍ୱ
ଜ୍ୟୋତିଷ୍କମଣ୍ଡଳୀ ଦେବମାନଙ୍କ ଦର୍ଶନ ।
ସମସ୍ତ ଦେବତା ଧ୍ୟାନ କରିବୁଁ ବର୍ତ୍ତନ ।
ପ୍ରଥମରେ ଜାଣ ବିଦ୍ୟା ବିଷୟ ଦର୍ଶନ ।
ସମ୍ବନ୍ଧ ବିଦ୍ୟାର ସଙ୍ଗେ ଆଚାର୍ଯ୍ୟଙ୍କ ଧ୍ୟାନ ।
ସନ୍ତାନ ସମ୍ବନ୍ଧୀ ଅଟେ ଦ୍ୱିତୀୟ ଦର୍ଶନ ।

ସନ୍ତାନ କରିବେ ପିତୃପୁରୁଷଙ୍କ ଧ୍ୟାନ ।
ଦେହ ସମ୍ବନ୍ଧୀୟ ଅଟେ ତୃତୀୟ ଦର୍ଶନ ।
ଦେହସ୍ଥ ପ୍ରଧାନେନ୍ଦ୍ରିୟ ଜିହ୍ୱାଦିର ଧ୍ୟାନ,
ବୋଲନ୍ତି ଜ୍ଞାନୀଏ ମହା ସଂହିତା ନାମରେ ।
ଶୁଣିବା ହେଉନ୍ତୁ ଲୋକ ସମ୍ବନ୍ଧୀ ଦର୍ଶନ,
ପୃଥିବୀର ପୂର୍ବରୂପ କରିବ ଦର୍ଶନ,
ଆକାଶ ଅଟଇ ଜାଣ ସଂଯୋଗର ସ୍ଥାନ,
ତହିଁରେ ସଂଯୋଗ କର୍ତ୍ତା ଅଟନ୍ତି ପବନ,
ହେ ସୁଧୀର ! ଏହା ଲୋକ ସମ୍ବନ୍ଧୀୟ ଧ୍ୟାନ ।
ଜ୍ୟୋତିଷ୍କମଣ୍ଡଳୀ ଧ୍ୟାନ ଶୁଣ ଦେଇ ମନ,
ଅଗ୍ନିଦେବ ପୂର୍ବରୂପ ଆଦିତ୍ୟ ଉତ୍ତର;
ବିଦ୍ୟୁତ ସଂଯୋଗ କର୍ତ୍ତା, ଜଳ ଯୋଗସ୍ଥାନ,
ଜ୍ୟୋତିଷ୍କ ସମ୍ବନ୍ଧୀ ଧ୍ୟାନ ବେଦରେ ବର୍ଣ୍ଣିତ ।
ବିଦ୍ୟା ସମ୍ବନ୍ଧୀୟ ଧ୍ୟାନ ଶୁଣ ବୋଲୁଁ ଏବେ—
ଆଚାର୍ଯ୍ୟ ଯେ ପୂର୍ବରୂପ ଶିଷ୍ୟ ଯେ ଉତ୍ତର,
ବିଦ୍ୟା ଜାଣ ତହିଁ ଅଟେ ସଂଯୋଗର ସ୍ଥାନ ।
ସଂଯୋଗ କାରଣ ଅଟେ ବେଦ ଅଧ୍ୟୟନ ।
ସନ୍ତାନସମ୍ବନ୍ଧୀ ଧ୍ୟାନ—ମାତା ପୂର୍ବରୂପ,
ଜନକ ଉତ୍ତରସ୍ଥାନ, ସନ୍ତାନ ସଂଯୋଗ ।
ସନ୍ତାନ କରିଣ ଜାତ, ସଂଯୋଗର ସ୍ଥାନ;
ସନ୍ତାନ ସମ୍ବନ୍ଧୀ ଧ୍ୟାନ, ହେଲାକ କଥିତ ।
ଦେହ ସମ୍ବନ୍ଧୀୟ ଧ୍ୟାନ—ଶୁଣ ବୋଲୁ ଏବେ,
ନିମ୍ନ ହନୁ ପୂର୍ବରୂପେ, ଉପର ଉତ୍ତର,
ବାକ୍ୟ ସଂଯୋଗର ସ୍ଥାନ, ଜିହ୍ୱା ଯେ କାରଣ,
ଦେହସମ୍ବନ୍ଧୀୟ ଧ୍ୟାନ ହେଲାକ କଥିତ ।
ବିଖ୍ୟାତ ଏ ବିଦ୍ୟା ମହାସଂହିତା ନାମରେ ।
ଏ ମହାସଂହିତା କଥା, ଭକ୍ତିରେ ଯେ ଲୋକ,
ଅବଗତ ହୋଇ କରେ ନିରନ୍ତରେ ଧ୍ୟାନ,
ବହୁତ ସନ୍ତାନ, ପଶୁ, ବ୍ରହ୍ମ ତେଜୋ ଆଦି ।
ପୁଣି ସ୍ୱର୍ଗଲୋକେ ଯାଇ ହୁଏ ସେ ସଂଯୁକ୍ତ ।
ଇତି ତୃତୀୟ ବେଦାଂଶ ।

---

ବିଶ୍ୱରୂପୀ ବେଦ ବାକ୍ୟ ପ୍ରଧାନା ଓଁକାର,
ଶ୍ରେଷ୍ଠରୂପେ ନିରନ୍ତର ବ୍ୟାପ୍ତ ଚରାଚର,
ଅମୃତଭିତ୍ତି ହେତୁ ଭୂତ, ବେଦରୁ ଉତ୍ପନ୍ନ,
କରନ୍ତୁ ହୃଦୟଙ୍ଗମ, ଅହେ ସୁଧୀଜନ,
ହେ ଐଶ୍ୱର୍ଯ୍ୟଶାଳୀ ଇନ୍ଦ୍ର ! ହୋଇ କୃପାବାନ,
ପ୍ରଜ୍ଞାରୂପେ ଦେବ ମୋତେ କର ବଳ ଦାନ;
ଆହେ ଦେବ, ଏ କରୁଣା କର ମୋର ପ୍ରତି,
ଅମୃତର ହେତୁଭୂତ ଜନ୍ମୁ ବ୍ରହ୍ମଜ୍ଞାନ;
ହେଉ ମୋ ଶରୀର ଦେବ, ଯୋଗ୍ୟ ସର୍ବ କାର୍ଯ୍ୟେ;
ହେବ ଯେହ୍ନେ ଜିହ୍ୱା ମୋର ମଧୁରଭାଷିଣୀ ।
ବ୍ରହ୍ମକୋଷ, ଯାହା ଅଟେ ବ୍ରହ୍ମର ଉପମା,
ଲୁଚିନ୍ତି ସେ ପ୍ରକାଶିତ ସାମାନ୍ୟ ପ୍ରଜ୍ଞାରେ,
ସର୍ବ ସୁଖପ୍ରଦାୟିନୀ ଶ୍ରୀଦେବୀ ଯେ ପ୍ରଜ୍ଞା;
ରକ୍ଷା କର ମୋର ଯେଉଁ ଉପାର୍ଜିତ ଜ୍ଞାନ ।
ମୋର ସର୍ବ ଅନ୍ନ ବସ୍ତ୍ର କରନ୍ତୁ ପ୍ରଦାନ ।
ଅନ୍ନବସ୍ତ୍ରପ୍ରଦା ଦେବୀ, କର ଦୟା—ସ୍ୱାହା ।
ବ୍ରହ୍ମଚର୍ଯ୍ୟବ୍ରତଧାରୀ, ବ୍ରହ୍ମଚାରୀଗଣ,
ଆସନ୍ତୁ ମୋ ପାଶେ ଦେବ, କର ଦୟା—ସ୍ୱାହା ।
ଆସନ୍ତୁ ମୋ ପାଶେ ଶୀଘ୍ର ବ୍ରହ୍ମଗୃହୀଗଣ,
କର ଦେବ, ମୋହପ୍ରତି କୃପା ଏତେ— ସ୍ୱାହା ।
ସକଳ ଦିଗରୁ ଶୁଦ୍ଧ ବ୍ରହ୍ମଗୃହୀଗଣ,
ଆସନ୍ତୁ ମୋ ପାଶେ ଦେବ, କୃପାକର—ସ୍ୱାହା ।
କରନ୍ତୁ ସେ ବ୍ରହ୍ମ ମୋର ଇନ୍ଦ୍ରିୟନିଗ୍ରହ,
କୃପା କର ମୋହପ୍ରତି ଦେବ ଏତେ— ସ୍ୱାହା ।
ମନ ମୋର ହେଉ ସ୍ଥିର; ହୁଏ ମୁଁ ଯଶସ୍ୱୀ,
ହେଉନ୍ତୁ ଏରୂପ ସର୍ବ ବ୍ରହ୍ମଗୃହୀ—ସ୍ୱାହା ।
ଧନବନ୍ତଠାରୁ ଯେହ୍ନେ ହେବ ମୁଁ ଯଶସ୍ୱୀ,
ହେ ବ୍ରହ୍ମ କରନ୍ତୁ ମୋହପ୍ରତି କୃପା—ସ୍ୱାହା ।
ବ୍ରହ୍ମକୋଷ ମଧ୍ୟେ ମୁହିଁ କରିବ ପ୍ରବେଶ,
ହେ ଐଶ୍ୱର୍ଯ୍ୟ କୃପା କରି ଆସ ପାଶେ—ସ୍ୱାହା ।
ଐଶ୍ୱର୍ଯ୍ୟ ସହସ୍ର—ସହୀ ତହିଁରେ ପବିତ୍ର,
ହେବ ମୁଁ ସର୍ବଦା ଦେବ, କୃପାକର—ସ୍ୱାହା ।

ଜଳ ନିମ୍ନ ସ୍ଥାନେ ଯାଏ, ମାସ ସମ୍ବତ୍ସରେ,
ଆସନ୍ତୁ ସକଳ ବ୍ରହ୍ମଚାରୀ ମୋହ ପାଶେ
ହେ ଦେବ କରିବା ହେତୁ ମୋତେ ଅଧିକାରୀ,
ତୁମ୍ଭେ ମୋ ଆଶ୍ରୟ—କର ମୋତେ ଆଲୋକିତ ।

ସ୍ୱାହା ।

ଇତି ଚତୁର୍ଥ ବେଦାଂଶ ।

ଓଁ, ଭୂଃ, ଭୂବଃ, ସୁବଃ, ତିନି, ଯେ ସଂକ୍ଷିପ୍ତ ମନ୍ତ୍ର,
ମହାଚମସ୍ୟଙ୍କ ପୁତ୍ର ବୋଲିଛନ୍ତି ମହଃ ।
ଅଟନ୍ତି ଏ ମହଃ ମନ୍ତ୍ର, ବ୍ରହ୍ମ ଅବା ଆତ୍ମା;
ଅପର ସକଳ ଦେବ ତାହାଙ୍କର ଅଙ୍ଗ ।
ଭୂଃ ମନ୍ତ୍ରାର୍ଥ ଇହଲୋକ ଭୂବଃ ଅନ୍ତରୀକ୍ଷ ।
ସୁବଃ ଯେ ଦ୍ୟୁଲୋକ ମହଃ ଅଟନ୍ତି ଆଦିତ୍ୟ;
କରନ୍ତି ଆଦିତ୍ୟ ଦେବ ଲୋକଙ୍କୁ ବର୍ଦ୍ଧିତ ।
ଭୂବଃ—ଅର୍ଥବାୟୁ,ସୁବଃ—ଆଦିତ୍ୟ, ଭୂଃ - ଅଗ୍ନି,
ମହଃ ଯେ ଚନ୍ଦ୍ରମା ( ପ୍ରଭୁ ଜ୍ୟୋତିଷ୍କମଣ୍ଡଳୀ ) ।
ଭୂଃ—ଋକ୍‌ମନ୍ତ୍ର, ଭୂବଃ—ସାମ, ସୁବଃ—ଯଜୁ,
ମହଃ—ବ୍ରହ୍ମ ( ସର୍ବ ବେଦ ଯହିଁରେ ବର୍ଦ୍ଧିତ )
ସୁବଃ— ବ୍ୟାନ, ପୁଣି ଭୂବଃ ଅପାନ, ଭୂଃ ପ୍ରାଣ;
ମହଃ ଅନ୍ନ ( ଯହିଁ ପ୍ରାଣୀ ହୁଅନ୍ତି ବର୍ଦ୍ଧିତ ) ।
ଏହି ଚାରି ଚାରି ମନ୍ତ୍ର ହେଲା ଯେ କଥିତ ।
ଏହାକୁ ଯେ ଜାଣେ ସେହି ଜାଣେ ପରଂବ୍ରହ୍ମ ।
ଦିଅନ୍ତି ସକଳ ଦେବେ ତାକୁ ଉପହାର ।

ଇତି ପଞ୍ଚମ ବେଦାଂଶ ।

ହୃଦୟସ୍ଥ ଆକାଶରେ ଛନ୍ତି ଯେ ପୁରୁଷ,
ଅଟନ୍ତି ଅମୃତ ମନୋମୟ, ଜ୍ୟୋତିର୍ମୟ ।
ତାଳୁଦ୍ୱୟ ମଧ୍ୟେ, ସ୍ତନ ତୁଲ୍ୟ ଲମ୍ବମାନ,
ଆହେ ସୁଧୀବର ! ତାହା ଅଟେ ଇନ୍ଦ୍ରଯୋନି ।
ଯେ ସ୍ଥାନେ କେଶାନ୍ତ ଭାଗ ହୋଇଛି ଖଣ୍ଡିତ,
ମନୋମୟ, ଆତ୍ମଦର୍ଶୀ, ବିଦ୍ୱାନ ପୁରୁଷ,
ସେ ସ୍ଥାନ ବିଦୀର୍ଣ୍ଣ କରି ହୁଅନ୍ତି ନିର୍ଗତ,
କରନ୍ତି ସେ ଭୂଃ ସ୍ୱରୂପ ଅଗ୍ନିରେ ପ୍ରବେଶ,
ଭୂବଃ ରୂପ ପବନରେ କରନ୍ତି ପ୍ରବେଶ ।
ମହଃ ରୂପ ପରଂବ୍ରହ୍ମେ କରନ୍ତି ପ୍ରବେଶ ।
ଏହିରୂପେ ସେ ପୁରୁଷ ହୋଇ ବ୍ରହ୍ମଭୂତ,
ଲଭନ୍ତି ସେ ଆଧିପତ୍ୟ ଦେବତାମଣ୍ଡଳେ ।
ମନର ସ୍ୱାମୀକୁ ପୁଣି କରନ୍ତି ସେ ଲାଭ,
ହୁଅନ୍ତି ବାକ୍‌ପତି ନେତ୍ରପତି ଶ୍ରୋତ୍ରପତି,
ତହିଁରୁ ଅଧିକତର ହୁଅନ୍ତି ସେ ପୁଣି;
ସୂକ୍ଷ୍ମ ରୂପ ଧରି ସେହି ଆକାଶ ଶରୀର ।
ପ୍ରାଣାରାମ ପରବ୍ରହ୍ମେ ହୁଅନ୍ତି ସେ ପ୍ରାପ୍ତ,
ହେ ପ୍ରାଚୀନ ତୁଲ୍ୟ ଜ୍ଞାନୀ ! ଏହି ଉପାୟରେ
ସତ୍ୟ ରୂପ ପରଂବ୍ରହ୍ମେ କର ଉପାସନା ।

ଇତି ଷଷ୍ଠ ବେଦାଂଶ ।

ପୃଥିବ୍ୟାଦି ପଞ୍ଚ ରୂପବ୍ରହ୍ମ ଉପାସନା,
ବିଷୟ ବୋଲିବୁଁ—ସୁଧୀ ! ଶୁଣ ଦେଇ ମନ ।
ଅନ୍ତରୀକ୍ଷ, ସ୍ୱର୍ଗଲୋକ, ପୃଥିବୀ, ଦିକ୍ ସର୍ବ,
ଅବାନ୍ତରଦିଗ, ଏହି ପଞ୍ଚଲୋକ ଜାଣ ।
ଆଦିତ୍ୟ, ଚନ୍ଦ୍ରମା, ଅଗ୍ନି, ବାୟୁ, ନକ୍ଷତ୍ରାଳି,
ଏ ପଞ୍ଚ ଦେବତା ପୂଜ୍ୟ ବ୍ରହ୍ମାଣ୍ଡମଣ୍ଡଳେ ।
ଆକାଶ, ଓଷଧି, ଆତ୍ମା, ଜଳ, ବନସ୍ପତି,
ଏହି ପଞ୍ଚଭୂତ ଜାଣ ଆହେ ସୁଧୀବର ।
ଭୂତସମ୍ବନ୍ଧୀୟ କଥା ବୋଇଲୁ ବିସ୍ତାରି,
ଆତ୍ମାସମ୍ବନ୍ଧୀୟ କଥା ଶୁଣ ଦେଇ ମନ ।
ପ୍ରାଣ, ଅପାନ, ବ୍ୟାନ, ଉଦାନ, ସମାନ ।
ଆହେ ସୁଧୀବର ଏହି ପଞ୍ଚ ବାୟୁ ଜାଣ ।

ବାକ୍, ତ୍ୱକ୍, ଶ୍ରୋତ୍ର, ନେତ୍ର, ମନ ଏ ପଞ୍ଚ ଇନ୍ଦ୍ରିୟ ।
ଚର୍ମ, ମାଂସ, ସ୍ନାୟୁ, ଅସ୍ଥି; ମଜ୍ଜା, ପଞ୍ଚଧାତୁ ।
ବୋଲିଛନ୍ତି କେହି କେହି ପୁରାଣ ମହର୍ଷି ।
ଉପାସକେ ଏ ସମସ୍ତ ଜାଣିବେ ଧ୍ୟାନରେ ।
ଇତି ସପ୍ତମ ବେଦାଂଶ ।

———

ସର୍ବ ଉପାସନା ଅଙ୍ଗଭୂତ ଯେ ଓଁକାର ।
ହେ ବ୍ରହ୍ମ ଶୁଣନ୍ତୁ ବୋଲୁଁ ସେଥିର ବିଧାନ ।
ଓଁକାର ପରମବ୍ରହ୍ମ, ଓଁକାର ସକଳ ।
ଓଁକାର ଆଦେଶ, ପୁଣି ଓଁକାର ଯେ ବଳ ।
ଓଁକାର ଉଚ୍ଚାରି ବେଦବିଦ ବିପ୍ରଗଣ,
କରିଥାନ୍ତି ଭକ୍ତିପୂର୍ବ ସାମବେଦ ଗାନ ।
ଓଁ, ଶ୍ରୋଂ ପଦ ଉଚ୍ଚାରଣ କରି ବିପ୍ରଗଣେ
ଗୀତଶୂନ୍ୟ ଋକମନ୍ତ୍ର ପଢ଼ନ୍ତି ସର୍ବଦା ।
ଓଁକାର ଭକ୍ତିରେ ପଢ଼ି ଋତ୍ୱିକ ସକଳେ ।
କରିଥାନ୍ତି ଯଜ୍ଞସ୍ଥଳେ ଅନୁଜ୍ଞା ପ୍ରଦାନ ।
ଯଜମାନ ପ୍ରଥମରେ ଓଁକାର ଉଚ୍ଚାରି,
ଅଗ୍ନିହୋତ୍ର ସମ୍ପାଦନେ କରନ୍ତି ଆଦେଶ ।
ବ୍ରାହ୍ମଣ ସକଳେ ବେଦପାଠ ପ୍ରଥମରେ,
ବୋଲନ୍ତି ଓଁକାର ଶବ୍ଦ କରି ଉଚ୍ଚାରଣ,
ଆମ୍ଭେ ଯେମନ୍ତେ ହେବୁଁ ପରବ୍ରହ୍ମ ପଦ ପ୍ରାପ୍ତ ।
ଇତି ଅଷ୍ଟମ ବେଦାଂଶ ।

———

ମାନବ କର୍ତ୍ତବ୍ୟକାର୍ଯ୍ୟ କରିବୁଁ ବ୍ୟାଖ୍ୟାନ ।
ନ୍ୟାୟ ଅନୁଗତ କାର୍ଯ୍ୟ, ସତ୍ୟ ବ୍ୟବହାର ।
ଅଧ୍ୟୟନ, ଅଧ୍ୟାପନ, କରିବ ଯତ୍ନରେ ।
ମାନବ ପ୍ରଧାନ କର୍ମ ଅଟଇ ତପସ୍ୟା ।
ଦମ ଶବ୍ଦ ଅର୍ଥ—ବାହ୍ୟେନ୍ଦ୍ରିୟ ଉପଶମ,
ଅନ୍ତର ଇନ୍ଦ୍ରିୟ ଉପଶମ ଅର୍ଥ-ଶମ ।
ପଞ୍ଚାଗ୍ନିରେ କରୁଥିବ ଆହୁତି ପ୍ରଦାନ ।
ପ୍ରତ୍ୟେକ କାର୍ଯ୍ୟରେ ଆହେ ଧୀର ! ଦେଇ ମନ,
କରୁଥିବ ନିତ୍ୟ ଅଧ୍ୟୟନ, ଅଧ୍ୟାପନ ।
କରୁଥିବ ଅଗ୍ନିହୋତ୍ର ଯଜ୍ଞ ଅନୁଷ୍ଠାନ ।
ଅବହେଳା ନ କରିବ ଅତିଥି ସେବାରେ ।
ପାଳୁଥିବ ଯତନରେ ଲୌକିକ ବେଭାରେ ।
ବିଶେଷ କର୍ତ୍ତବ୍ୟ ଅଟେ ପୁତ୍ର ଉତ୍ପାଦନ ।
ଭାର୍ଯ୍ୟା ସଙ୍ଗେ ସମ୍ମିଳନ ମାବନସ୍ୱଭାବ ।
ପୁତ୍ରେ ନିଯୋଜିବ ପୁଣି ପୌତ୍ର ଉତ୍ପାଦନେ ।
କରିବ ସର୍ବଦା ଅଧ୍ୟୟନ ଅଧ୍ୟାପନ ।
ବିନା ଅଧ୍ୟୟନେ ହୁଏ ନାହିଁ ଅର୍ଥଜ୍ଞାନ ।
ଧର୍ମ ବୃଦ୍ଧି ପାଇଁ ଅଧ୍ୟୟନ ପ୍ରୟୋଜନ,
ବୋଲିଛନ୍ତି ସତ୍ୟବାଦୀ ରଥିତର ଋଷି,
କେବଳ କରିବ ନିତ୍ୟ ସତ୍ୟ ଅନୁଷ୍ଠାନ ।
ମହାଋଷି ପୌରୁଶିଷ୍ଟି କରନ୍ତି ବିଧାନ,
କେବଳ ତପସ୍ୟା ଅଟେ ଲୋକର କର୍ତ୍ତବ୍ୟ ।
ମହର୍ଷି ମୌଦ୍‌ଗଲ୍ୟ ବିଧି ଦିଅନ୍ତି ଏପରି—
ଅଧ୍ୟୟନ ଅଧ୍ୟାପନ ନିତ୍ୟ ଅନୁଷ୍ଠେୟ ।
ଅଧ୍ୟୟନ ଅଧ୍ୟାପନ କେବଳ ତପସ୍ୟା ।
ଇତି ନବମ ବେଦାଂଶ ।

———

ବ୍ରହ୍ମ, ଆତ୍ମା ଏ ଉଭୟ ଅଟନ୍ତି ଯେ ଏକ,
ବିଶେଷ ଜାଣନ୍ତି ଏହା ତ୍ରିଶଙ୍କୁ ମହର୍ଷି ।
ବ୍ରହ୍ମଯୋଗ ଯୋଗେ ଆତ୍ମ କର୍ତ୍ତବ୍ୟ ସାଧନ
ସକାଶେ, ଏସନ କରିଥିଲେ ଉଚ୍ଚାରଣ ।
ସଂସାର ସ୍ୱରୂପ ବୃକ୍ଷ ଆମ୍ଭେ ପ୍ରେରୟିତା;
ଗିରିଶୃଙ୍ଗ ସମ ଆମ୍ଭ କୀର୍ତ୍ତି ଉଚ୍ଚତମ,
ଉନ୍ନତ ପବିତ୍ର ଜ୍ଞାନ ଜ୍ୟୋତିଯୁକ୍ତ ଆମ୍ଭେ ।
ସୂର୍ଯ୍ୟାବର୍ତ୍ତୀ ମାନ ପୁଣି ଅମୃତ ସମାନ,
ଆମ୍ଭେ ଦୀପ୍ତିମନ୍ତ, ଧନ, ଶୋଭନ, ମେଧାବୀ,
ଅମୃତ, ଅବ୍ୟୟ, ଆମ୍ଭେ ଜଗତ ଶୋଭନ;
ତ୍ରିଶଙ୍କୁ ମହର୍ଷିଙ୍କର ବେଦାନ୍ତ କଥନ ।
ଇତି ଦଶମ ବେଦାଂଶ ।

———

ବେଦ ଅଧ୍ୟୟନ ଯେବେ ହେଲା ସମାପତ,
ଆଚାର୍ଯ୍ୟ ଶିଷ୍ୟଙ୍କୁ ଦେଲେ ଏହି ଉପଦେଶ—
ଆହେ ଶିଷ୍ୟ ହେବ ତୁମ୍ଭେ ସଦା ସତ୍ୟଭାଷୀ,
ସର୍ବଦା କରିବ ସୌମ୍ୟ, ଧର୍ମ ଆଚରଣ;
ଅବହେଳା ନ କରିବ ବେଦ ଅଧ୍ୟୟନେ ।
ଆଚାର୍ଯ୍ୟଙ୍କୁ କରିବ ଯେ ଦକ୍ଷିଣା ପ୍ରଦାନ ।
ଗୃହସ୍ଥାଶ୍ରମରେ ଯେବେ କରିବ ପ୍ରବେଶ
ସନ୍ତାନ ଜାତରେ ତୁମ୍ଭେ କରିବ ଯତନ ।
କେତେବେଳେ ହେବ ନାହିଁ ସତ୍ୟୁଁ ବିଚଳିତ ।
ଉଦାସୀନ ହେବ ନାହିଁ ମହତ୍ତ୍ୱ ଲଭରେ ।
ବେଦ ଅଧ୍ୟୟନ କିମ୍ବା ଅଧ୍ୟାପନା କାର୍ଯ୍ୟେ,
ଉଦାସୀ ହେବାର ଜାଣ ଅଧର୍ମ ବିଷୟ ।
ଉଦାସୀ ନ ହେବ ଦେବ ଅବା ପିତୃ କାର୍ଯ୍ୟେ ।
ମାତାଙ୍କୁ କରିବ ପୂଜା ଦେବତା ସମାନ ।
ପିତାଙ୍କୁ କରିବ ସେବା ଦେବତା ରୂପରେ ।
ପୂଜିବ ଦେବତା ତୁଲ୍ୟ ଆଚାର୍ଯ୍ୟ ଦେବଙ୍କୁ ।
ଅତିଥିଙ୍କୁ ଦେବ ତୁଲ୍ୟ କରିବ ଅର୍ଚ୍ଚନା ।
ନିନ୍ଦନୀୟ କାର୍ଯ୍ୟେ କେଭେ ଦେବ ନାହିଁ ମନ ।
କେବଳ ସତ୍କାର୍ଯ୍ୟମାନ ଅବଶ୍ୟ କର୍ତ୍ତବ୍ୟ ।
ଯେ ବ୍ରାହ୍ମଣ ତୁମ୍ଭଠାରୁ ଜ୍ୟେଷ୍ଠରୂପେ ଗଣ୍ୟ,
କରିବ ତାହାଙ୍କୁ ତୁମ୍ଭେ ଆସନ ପ୍ରଦାନ ।
ଶ୍ରଦ୍ଧାର ସହିତ ଦାନ କରିବା କର୍ତ୍ତବ୍ୟ ।
ଅଶ୍ରଦ୍ଧା ସହିତ ଦାନ ଅଟେ ନିନ୍ଦନୀୟ ।
ସୁବୁଦ୍ଧି ସହିତ ଦାନ କରିବେ ଗୃହସ୍ଥ ।
ଲଜ୍ଜା ବା ବିନୟେ ଦାନ କରିବା ଉଚିତ ।
ମିତ୍ରତା ସହିତ ଦାନ ପ୍ରଶଂସା ବିଷୟ ।
ଧର୍ମ ଭୟ ସହିତରେ କରିବ ଯେ ଦାନ ।
ସଂଶୟ ହେଲେକ ଜାତ କର୍ମ ବା ଆଚାରେ—
କରିବ ଯେ ଜ୍ଞାନୀ ଲୋକ ତୁଲ୍ୟ ଆଚରଣ ।
ଜ୍ଞାନୀଏ କରନ୍ତି ଯେଉଁ କାର୍ଯ୍ୟ ଯେ ପ୍ରକାର,
କରିବ ତାହାଙ୍କୁ ଅନୁକରଣ ଯତନେ ।
ଏହାହିଁ ଆଦେଶ ଜାଣ ଏହା ଉପଦେଶ ।
ବେଦର ରହସ୍ୟ ଏହା ଘେନିବ ମନରେ ।
ଏହାହିଁ ଅଟଇ ଅନୁଶାସନ ହେ ସୌମ୍ୟ ।
ଏହିପରି ଆଚରଣ କରିବା କର୍ତ୍ତବ୍ୟ ।
ପାଳନ କରିବ ଏହି ଆଦେଶ ସକଳ ।
ଇତି ଏକାଦଶ ବେଦାଂଶ ।

———

ହେ ମିତ୍ର ! ବରୁଣ ଦେବ ! ଇନ୍ଦ୍ର ! ବୃହସ୍ପତି !
ହୋଇନ୍ତୁ କଲ୍ୟାଣକାରୀ ଆମ୍ଭମାନଙ୍କର !
ଆମ୍ଭେମାନେ ବ୍ରହ୍ମ ଦେବେ କରୁଁ ନମସ୍କାର
ତୁମ୍ଭେହିଁ ପ୍ରତ୍ୟକ୍ଷ ଦେବ ହେ ବାୟୋ ଦେବତା !
ତୁମ୍ଭଙ୍କୁ ପ୍ରତ୍ୟକ୍ଷ ଦେବ ବୋଲୁଁ ଆମ୍ଭେମାନେ !
ଋତ, ସତ୍ୟ ଆମ୍ଭେମାନେ କରୁଛୁଁ ଘୋଷଣା ।

———

## ବ୍ରହ୍ମାନନ୍ଦ ବଲ୍ଲୀ ନାମ ଦ୍ୱିତୀୟାବଲ୍ଲୀ

ଆଚାର୍ଯ୍ୟ ଶିଷ୍ୟଙ୍କୁ ରକ୍ଷା କର ପରଂବ୍ରହ୍ମ !
ଆମ୍ଭ ଉଭୟଙ୍କୁ ଦେବ କରନ୍ତୁ ସମ୍ଭୋଗ ।
କରିବୁଁ ସାମର୍ଥ୍ୟ ଲାଭ ଯେମନ୍ତ ଉଭୟେ ।
ଆମ୍ଭମାନଙ୍କର ଜ୍ଞାନ କରନ୍ତୁ ବର୍ଦ୍ଧନ ।
କଳହ କରିବୁଁ ନାହିଁ ଯେମନ୍ତ ଉଭୟେ ।
ହେ ବ୍ରହ୍ମ ! କରନ୍ତୁ କୃପା, ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।
ବ୍ରହ୍ମଙ୍କୁ କରନ୍ତି ଲାଭ ବ୍ରହ୍ମବିଦଗଣେ ।
ଏ ଋକ କଥିତ ହୁଏ ସେଥି ସମ୍ବନ୍ଧରେ ।
ସତ୍ୟରୂପ, ଜ୍ଞାନରୂପ, ଅନନ୍ତ ସ୍ୱରୂପ,
ହୃଦୟ ଆକାଶ, ବୁଦ୍ଧି ସ୍ୱରୂପ ଗୁହାରେ ।
ବିରାଜିତ ଥାନ୍ତି ବୋଲି ଜାଣନ୍ତି ସୁଜ୍ଞାନୀ ।
ଭୁଞ୍ଜନ୍ତି ସେ କାମ୍ୟବସ୍ତୁ ବ୍ରହ୍ମ ସହିତରେ,
ଆତ୍ମା ରୁ ହୋଇଛି ଜାତ ଆକାଶ ସମ୍ଭୂତ;
ଆକାଶରୁ ବାୟୁ, ପୁଣି ବାୟୁରୁ ଅନଳ,
ଅଗ୍ନିରୁ ଜନ୍ମିଛି ଜଳ, ଜଳରୁ ପୃଥିବୀ;

ପୃଥିବୀରୁ ଜନ୍ମିଅଛି ସକଳ ଔଷଧି ।
ଔଷଧିରୁ ଅନ୍ନ ଜାତ, ଅନ୍ନରୁ ଯେ ରେତ,
ସେ ରେତରୁ ଜାତ ହେଲେ ମାନବ ସକଳ,
ମାନବେ ଅଟନ୍ତି ଅନ୍ନ ରସର ବିକାର,
ଏ ବିକାର ଅଟଇ ଯେ ତାହାର ମସ୍ତକ,
ଅଟଇ ଦକ୍ଷିଣ ବାହୁ, ପୁଣି ବାମ ବାହୁ,
ନାଭି, ଅଧିଷ୍ଠିତ ଅଙ୍ଗ, ଦେହ ମଧ୍ୟ ସ୍ଥିତ,
ପ୍ରକାଶିତ ପୁଣି ପୁଚ୍ଛ—ପଶ୍ଚାତଭାଗରେ ।
ଏହାହିଁ ପ୍ରତିଷ୍ଠା ସ୍ଥିତ ହେତୁ ବୋଲି ଜାଣ ।
ଏହି ଶ୍ଳୋକ ଉକ୍ତ ହେଲା ଏଥି ସମ୍ବନ୍ଧରେ
ହେ ସୌମ୍ୟ ଜାଣିବ ଏହା ବିଶେଷଭାବରେ ।

ଇତି ପ୍ରଥମ ବେଦାଂଶ ।

———

ସକଳ ପ୍ରାଣୀର ଜ୍ୟେଷ୍ଠ ଅଟନ୍ତି ଯେ ଅନ୍ନ,
ସେ ଅନ୍ନରୁ ହୋଇଛନ୍ତି ସବୁପ୍ରାଣୀ ଜାତ,
ସକଳେ ହୁଅନ୍ତି ପୁଣି ଅନ୍ନରେ ବର୍ଦ୍ଧିତ,
ଅନ୍ନକୁ ଭୋଜନ କରିଥାନ୍ତି ପ୍ରାଣିଗଣ,
ସେ ଅନ୍ନ କରନ୍ତି ପୁଣି ପ୍ରାଣୀଙ୍କୁ ଭକ୍ଷଣ,
ଏଥି ପାଇଁ ତାଙ୍କ ନାମ ଅଟଇ ଯେ ଅନ୍ନ,
ଏ ଅନ୍ନ କୋଷରୁ ଭିନ୍ନ ଅଛି କୋଷାନ୍ତର,
ପ୍ରାଣମୟ କୋଷ ନାମେ ହୁଏଟି କଥିତ ।
ପ୍ରାଣମୟ କୋଷ—ଅନ୍ନମୟ କୋଷେ ପୂର୍ଣ୍ଣ,
ପ୍ରାଣହିଁ ଅଟଇ ଏହି କୋଷର ମସ୍ତକ,
ବ୍ୟାନ ଯେ ଦକ୍ଷିଣବାହୁ—ଅପାନ ଯେ ବାମ,
ଏହା ମଧ୍ୟଭାଗ ଅଟେ ଆକାଶ ବା ଆତ୍ମା ,
ପୃଥିବୀ ଅଟଇ ଏହା ପୁଚ୍ଛ ବା ପ୍ରତିଷ୍ଠା,
ଏ ସମ୍ବନ୍ଧେ ଏହି ଶ୍ଳୋକ ହୋଇଛି କଥିତ ।

ଇତି ଦ୍ୱିତୀୟ ବେଦାଂଶ ।

———

ପ୍ରାଣ ଶକ୍ତି ସହାୟରେ ଦେବତା ସକଳେ
କରନ୍ତି ପ୍ରାଣନ କର୍ମ—କଥିତ ବେଦରେ ।
ମାନବ, ପଶୁଏ ମଧ୍ୟ ସେ ପ୍ରାଣ ଶକ୍ତିରେ
କରନ୍ତି ପ୍ରାଣନ କାର୍ଯ୍ୟ—ଜାଣିବ ନିଶ୍ଚୟ ।
ପ୍ରାଣହିଁ ଅଟଇ ପ୍ରାଣୀମାନଙ୍କର ଆୟୁ ।
ଏଥିକୁ ପ୍ରାଣକୁ ଆୟୁ ବୋଲନ୍ତି ସକଳେ ।
ଯେମାନେ ପ୍ରାଣକୁ ବ୍ରହ୍ମ ବୋଲି ଉପାସନା
କରନ୍ତି, ସେମାନେ ପ୍ରାପ୍ତ ହେବେ ପୂର୍ଣ୍ଣ ଆୟୁ ।
ଅନ୍ନମୟ, ପ୍ରାଣମୟ, ଏ ଯେ ବେନି କୋଷ,
ଆତ୍ମାରୂପେ ଶରୀରରେ ଛନ୍ତି ବିଦ୍ୟମାନ ।
ପ୍ରାଣମୟ ଆତ୍ମା ଭିନ୍ନ ଛନ୍ତି ଅନ୍ୟ ଏକ,
ମନୋମୟ କୋଷ ନାମେ ହୁଅନ୍ତି କଥିତ ।
ମନୋମୟ କୋଷେ, ପ୍ରାଣମୟ କୋଷ ପୂର୍ଣ୍ଣ ।
ମନୋମୟ କୋଷ ମଧ୍ୟ, ମାନବ ଆକାର;
ମସ୍ତକ ଏହାର ଯଜୁ, ଋକ୍ ଦକ୍ଷିଣ ବାହୁ,
ସାମ—ବାମ ବାହୁ ପୁଣ, ଆଜ୍ଞା ମଧ୍ୟଭାଗ ।
ଅର୍ଥର୍ବାଙ୍ଗିରସ ଅଟେ ଏହା ପୁଚ୍ଛ ଦେଶ ।
ଏ ସମ୍ବନ୍ଧେ ଏହି ଶ୍ଳୋକ ହୋଇଛି କଥିତ ।

ଇତି ତୃତୀୟ ବେଦାଂଶ ।

———

ମନର ସହିତ ବାକ୍ୟ ଯାହାଙ୍କୁ ନ ପାଇ,
ବାହୁଡ଼ଇ—ସେ ଆନନ୍ଦ ବ୍ରହ୍ମେ ଯେବା ଜାଣେ
କାହାଠାରୁ ସେହି ଲୋକ ପାଏ ନାହିଁ ଭୟ ।
ଶରୀରସ୍ଥ ଆତ୍ମା ଜାଣ ମନ ପ୍ରାଣମୟ,
ମନୋମୟ, ପ୍ରାଣମୟ, ବେନି କୋଷ ବିନା
ଅଛନ୍ତି ବିଜ୍ଞାନମୟ ନାମେ ଏକ କୋଷ ।
ଏ ବିଜ୍ଞାନମୟ କୋଷେ ପୂର୍ଣ୍ଣ ମନୋମୟ ।
ଏ ବିଜ୍ଞାନ କୋଷ ମଧ୍ୟ, ମାନବ ଆକାର ।
ଶ୍ରଦ୍ଧାହିଁ ଅଟଇ ଏହି କୋଷର ମସ୍ତକ ।
କର୍ତ୍ତବ୍ୟ ଦକ୍ଷିଣ ବାହୁ, ସତ୍ୟ ବାମ ବାହୁ,
ଯୋଗ ଯେ ଅଟଇ ଆତ୍ମା, ମହ, ପୁଚ୍ଛଦେଶ ।
ଏ ସମ୍ବନ୍ଧେ ଏହି ଶ୍ଳୋକ ହୋଇଛି କଥିତ ।

ଇତି ଚତୁର୍ଥ ବେଦାଂଶ ।

———

ବିଜ୍ଞାନ କରଇ ଯଜ୍ଞ—କର୍ମ ମଧ୍ଯ କରେ,
ବ୍ରହ୍ମରୂପେ ପୂଜଥାନ୍ତି ବିଜ୍ଞାନେ—ଦେବତା,
ଯେବେ କେହି ବିଜ୍ଞାନକୁ ବ୍ରହ୍ମ ବୋଲି ଜାଣେ,
ସେ ବିଜ୍ଞାନ ବ୍ରହ୍ମ—ଯେବେ ନ ହୁଏ ବିଚ୍ୟୁତ
ସମୁଦାୟ କାମ୍ୟବସ୍ତୁ ହୁଏ ସେହି ପ୍ରାପ୍ତ ।
ଶରୀରସ୍ଥ ଆତ୍ମା ଅଟେ ମନୋମୟ କୋଷ,
ଅଟନ୍ତି ବିଜ୍ଞାନମୟ କୋଷ ମଧ୍ଯ ଆତ୍ମା ।
ଏ ବିଜ୍ଞାନ, ଆତ୍ମା ଭିନ୍ନ ଛନ୍ତି ଅନ୍ୟ ଏକ—
ଅଟଇ ତାହାର ନାମ ଯେ ଆନନ୍ଦମୟ,
ଏ ବିଜ୍ଞାନମୟ କୋଷ ମାନବ ଆକାର—
ପ୍ରୀତି, ହର୍ଷ ଅଟେ ଏହି କୋଷର ମସ୍ତକ ।
ସୁଖ ଯେ ଦକ୍ଷିଣ ବାହୁ, ପ୍ରମୋଦ ଯେ ବାମ,
ଆନନ୍ଦ ଏହାର ଆତ୍ମା, ବ୍ରହ୍ମ ପୁଚ୍ଛ ଦେଶ,
ଏ ସମ୍ବନ୍ଧେ ଏହି ଶ୍ଳୋକ ହୋଇଅଛି କଥିତ ।

ଇତି ପଞ୍ଚମ ବେଦାଂଶ ।

---

ପରଂବ୍ରହ୍ମେ ଯେବେ କେହି ମଣଇ ଅସତ;
ସେ ଲୋକ ଅସତ ଜାଣ ହୋଇବଟି ନିଶ୍ଚୟ ।
ଯେଉଁ ଜ୍ଞାନୀ ବୋଲେ ବ୍ରହ୍ମ ଅଛନ୍ତି ବିଦ୍ୟମାନ,
ଅବଶ୍ୟ ଜାଣନ୍ତି ସେହି ସତ୍ୟ ପରଂବ୍ରହ୍ମ ।
ବିଜ୍ଞାନ, ଆନନ୍ଦମୟ ଯେଉଁ ବେନି କୋଷ
ଶରୀରସ୍ଥ ଆତ୍ମା ତହିଁ ଥାନ୍ତି ବିଦ୍ୟମାନ ।
ପୁଚ୍ଛା କଲେ ଶିଷ୍ୟ ଯାଇ ଆଚାର୍ଯ୍ୟଙ୍କ ପାଶେ—
ଅଜ୍ଞାନୀ କି ଦେହ ତେଜି ପାଏ ସତ୍ୟଲୋକ ?
ଜ୍ଞାନୀ କି ଲଭନ୍ତି ସତ ଲୋକ ବେଦାନ୍ତରେ ?
ଶିଷ୍ୟ ବାକ୍ୟେ ଦେଉଛନ୍ତି ଆଚାର୍ଯ୍ୟ ଉତ୍ତର;
ସେହି ପରମାତ୍ମା ପୂର୍ବେ କଲେ ଅଭିଳାଷ,
କରିବୁଁ ଯେ ଆମ୍ଭେ ବ୍ରହ୍ମ ବ୍ରହ୍ମାଣ୍ଡ ସୃଜନ,
ଏଥିଅନ୍ତେ କରି ସେହି ମନରେ କଳ୍ପନା
ସୃଷ୍ଟି କଲେ ଏହି ବିଶ୍ୱ ସଂସାର ସମସ୍ତ

ମୂର୍ତ୍ତ ବା ଅମୂର୍ତ୍ତ ଯାହା ଚେତନାଚେତନ
ସତ୍ୟ ବା ଅସତ୍ୟ ଯାହା ଅଛି ଜଗତରେ;
ସର୍ବ ରୂପେ ବ୍ରହ୍ମ ସତ୍ୟ ରୂପେ ବିଦ୍ୟମାନ ।
ଏଥିକୁ ବ୍ରହ୍ମଙ୍କୁ ସତ୍ୟ ବୋଲନ୍ତି ସକଳେ ।

ଇତି ଷଷ୍ଠ ବେଦାଂଶ ।

---

ପୂର୍ବକାଳେ ଥିଲା ଏହି ଜଗତ ଅସତ;
ସେହି ଅସତରୁ ପୁଣି ଜାତ ହୋଇଲା ସତ ।
ନିଜେ ପରଂବ୍ରହ୍ମ ସୃଷ୍ଟି କଲେ ଆପଣାକୁ,
ସ୍ୱୟମ୍ଭୂ ନାମରେ ତେଣୁ ଖ୍ୟାତ ଜଗତରେ ।
ଅଟନ୍ତି ସେ ବ୍ରହ୍ମ, ରସ ସ୍ୱରୂପ ସୁକୃତ,
ସେ ରସକୁ ଲଭି କରି ସୁଖୀ ହୁଏ ଜୀବ;
ନ ଥିଲେ ହୃଦୟାକାଶେ ଆନନ୍ଦ ସ୍ୱରୂପେ
କରନ୍ତା ପ୍ରାଣନ କାର୍ଯ୍ୟ କେବା ଜଗତରେ ?
ନିଶ୍ୱାସ ପ୍ରଶ୍ୱାସ ଯୋଗେ ଜୀବନ ଧାରଣ,
କରୁଛନ୍ତି ଜୀବେ ସେହି ଆନନ୍ଦ ପ୍ରଦାନ ।
ନିର୍ବିଶେଷେ ଅନାଧାର ଅଦୃଶ୍ୟ ସେ ବ୍ରହ୍ମେ,
ଯେ ବିଶ୍ୱାସ କରେ ସେହି ଥାଏ ନିର୍ଭୟରେ ।
ଯେ ଲୋକର ଭେଦ ବୁଦ୍ଧି ଥାଏ କିଛି ମାତ୍ର,
ଅବଶ୍ୟ ତାହାର ମନେ ଜାତ ହୁଏ ଭୟ ।
ବ୍ରହ୍ମ ସହିତରେ ଅଛି ଆତ୍ମାର ଏକତ୍ୱ
ଏ କଥା ଯେ ଜାଣେ ତାକୁ ମଣିବ ବିଦ୍ୱାନ ।

ଇତି ସପ୍ତମ ବେଦାଂଶ ।

---

ଏହାଙ୍କ ଭୟରେ ବାୟୁ ହୁଏ ପ୍ରବାହିତ,
ଉଦିତ ହୁଅଇ ସୂର୍ଯ୍ୟ ଏହାଙ୍କ ଭୟରେ,
ଅଗ୍ନି, ଚନ୍ଦ୍ର, ମୃତ୍ୟୁ ନିଜ କାର୍ଯ୍ୟ ସମ୍ପାଦନ
କରୁଛନ୍ତି, ସର୍ବେ ଜାଣ ଏହାଙ୍କ ଭୟରେ ।
ସେ ବ୍ରହ୍ମ ଆନନ୍ଦ କଥା କରନ୍ତି ବିଚାର,

ଭାଳନ୍ତୁ ମନରେ ଛନ୍ତି ଏତେ ଜନେକ ।
ଷିପ୍ରକର୍ମା ବେଦବିଦ ବଳିଷ୍ଠ ଯୁବକ
ତାହାଙ୍କର ବିତ୍ତ ପୃଥ୍ୱୀ ସମସ୍ତ ପୂରିବ,
କରନ୍ତି ଯୁବକ ପୃଥ୍ୱୀ ଆନନ୍ଦ ସମ୍ଭୋଗ,
ଯୁବକ ଆନନ୍ଦ, ଶତ ଗୁଣ ଅଧିକରେ,
ମନୁଷ୍ୟ ଗନ୍ଧର୍ବଗଣ କରନ୍ତି ସମ୍ଭୋଗ ।
ମାନବ ବିଶେଷ ଗୁଣ ହେତୁ ଗନ୍ଧର୍ବତ୍ୱ
ପ୍ରାପ୍ତ ହେଲେ ବୋଲି ତାକୁ ମାନବ ଗନ୍ଧର୍ବ
କାମନାରୁ ମୁକ୍ତ ହୋଇ ବେଦଜ୍ଞ ପୁରୁଷ
ଗନ୍ଧର୍ବ ଆନନ୍ଦ ଶତ ଗୁଣେ କରେ ଭୋଗ;
କଥିତ ସେ ଲୋକ ଦେବ ଗନ୍ଧର୍ବ ନାମରେ ।
ଦେବ ଗନ୍ଧର୍ବର ଆନନ୍ଦର ଶତ ଗୁଣେ
ଚିରଲୋକବାସୀ ପିତୃ କରନ୍ତି ସମ୍ଭୋଗ,
ସେମାନଙ୍କ ବାସସ୍ଥାନ ଚିରକାଳ ସ୍ଥାୟୀ ।
ଚିରଲୋକବାସୀମାନଙ୍କର ଯେ ଆନନ୍ଦ,
ତହିଁ ଶତ ଗୁଣେ ଅଜାନଜ ଦେବତାଏ
ଭୋଗ କରି ଥାନ୍ତି ଏହା ଜାଣିବ ନିଶ୍ଚୟ ।
ଅଜାନଜ ଦେବତାଙ୍କ ଠାରୁ ଶତ ଗୁଣେ,
ଆନନ୍ଦ କରନ୍ତି ଭୋଗ କର୍ମଦେବତାଏ ।
କର୍ମଦେବତାଙ୍କ ଆନନ୍ଦରୁ ଶତ ଗୁଣେ,
କରନ୍ତି ସମ୍ଭୋଗ ଦେବତାଏ ସ୍ୱର୍ଗପୁରେ ।
ଅଷ୍ଟବସୁ, ପ୍ରଜାପତି, ରୁଦ୍ର ଏକାଦଶ,
ତେତିଶ ଦେବତା ପୁଣି ଦ୍ୱାଦଶ ଆଦିତ୍ୟ ।
କାମନାରୁ ମୁକ୍ତ ହୋଇ ଶ୍ରୋତ୍ରିୟ ପୁରୁଷେ,
ସମସ୍ତେ କରନ୍ତି ଭୋଗ ସମାନ ଆନନ୍ଦ ।
ଦେବତାମାନଙ୍କ ଆନନ୍ଦର ଶତ ଗୁଣେ ।
ଅଧିକରେ ଭୁଞ୍ଜିଥାନ୍ତି ଏ ସର୍ବ ଦେବତା
ଏଥୁ ଶତ ଗୁଣ ଅଧିକରେ ଯେ ଆନନ୍ଦ ।
ଇନ୍ଦ୍ର ଭୋଗ କରି ଥାନ୍ତି ଦେବତାମଣ୍ଡଳେ ।
ଇନ୍ଦ୍ରଠାରୁ ଶତ ଗୁଣେ ଦେବ ବୃହସ୍ପତି,
ବୃହସ୍ପତିଠାରୁ ଶତ ଗୁଣେ ପ୍ରଜାପତି ।
କରନ୍ତି ଆନନ୍ଦ ଭୋଗ ଏ କଥା ନିଶ୍ଚୟ,
କାମନାରୁ ମୁକ୍ତ ହୋଇ ଛନ୍ତି ଯେ ପୁରୁଷେ ।
କରନ୍ତି ଆନନ୍ଦ ଭୋଗ ସର୍ବସମାନରେ,
ଜଗତକୁ ତ୍ୟାଗ କରି ସେ ସର୍ବ ପୁରୁଷେ ।
ଅନ୍ନମୟ, ପ୍ରାଣମୟ, ପୁଣି ମନୋମୟ,
ଆନନ୍ଦମୟ ଆତ୍ମାକୁ ଲଭନ୍ତି ସହଜେ ।
ବିଜ୍ଞାନମୟ ଆତ୍ମାକୁ ହୁଅନ୍ତି ପ୍ରାପତ ।

ଇତି ଅଷ୍ଟମ ବେଦାଂଶ ।

---

ମନ ସଙ୍ଗତରେ ବାକ୍ୟ ଯାହାଙ୍କୁ ନ ପାଇ
ବାହୁଡ଼ଇ ସେହି ବ୍ରହ୍ମ ଆନନ୍ଦ ଯେ ଜାଣେ
କାହାଠାରୁ ହୁଏ ନାହିଁ ସେହି ଭୟ ପ୍ରାପ୍ତ ।
ପୁଣ୍ୟ କାର୍ଯ୍ୟ, ପାପ କାର୍ଯ୍ୟ କିଛି କରିନାହିଁ
ଏହା ଯେବା ଜାଣେ ସେହି କରେ ମୁକ୍ତି ଲାଭ ।

ଇତି ନବମ ବେଦାଂଶ ।

---

## ଭୃଗୁବଲ୍ଲୀ ନାମ ତୃତୀୟବଲ୍ଲୀ

ବରୁଣଙ୍କ ପୁତ୍ର ଭୃଗୁ ଯାଇ ପିତା ପାଶେ
ବୋଇଲେ, 'ହେ ପିତଃ, ଦିଅ ବ୍ରହ୍ମବିଦ୍ୟା ଶିକ୍ଷା';
ବୋଇଲେ ବରୁଣ ତହୁଁ; ଶୁଣ ଆରେ ପୁତ୍ର
ଅନ୍ନ, ପ୍ରାଣ, ନେତ୍ର, ଶ୍ରୋତ୍ର, ମନ, ବାକ୍ୟ, ତ୍ୱକ,
ଏ ସମସ୍ତ ଅଟେ ବ୍ରହ୍ମ ଉପଲବ୍ଧି ଦ୍ୱାର;
ବୋଇଲେ ବରୁଣ ପୁଣ ଶୁଣରେ ନନ୍ଦନ,
ଜଗତର ପ୍ରାଣୀ ସର୍ବ ଜନ୍ମି ଯାହାଠାରୁ,
କରନ୍ତି ଯାହାଙ୍କ ବଳେ ଜୀବନ ଧାରଣ,
ପ୍ରଳୟ କାଳରେ ପୁଣି ସେହି ସର୍ବ ପ୍ରାଣୀ;
ପ୍ରବେଶ କରିବେ ଯାହିଁ, ଯାହାଙ୍କ ପାଶରେ,
ତାହାଙ୍କୁ ଜାଣିବା ପାଇଁ କରିବ ଯତନ;
ଏହା ଶୁଣି ଭୃଗୁ ଯାଇ କଲେକ ତପସ୍ୟା ।

ଇତି ପ୍ରଥମ ବେଦାଂଶ ।

---

ଜାଣିଲେ ସେ ଭୃଗୁ ଅନ୍ନ ଅଟନ୍ତି ସେ ବ୍ରହ୍ମ,
ଯେଣୁକି ଅନ୍ନରୁ ଜାତ ହେଲେ ସର୍ବ ପ୍ରାଣୀ,
ଅନ୍ନରେ କରନ୍ତି ପୁଣି ଜୀବନ ଧାରଣ
ଶେଷରେ କରନ୍ତି ପୁଣି ଅନ୍ନରେ ପ୍ରବେଶ ।
ଏହା ଜାଣି ଭୃଗୁ ପିତା ବରୁଣଙ୍କ ପାଶେ,
ଭକ୍ତିପୂର୍ବ ବିନୟରେ କଲେ ନିବେଦନ ।
ହେ ପିତଃ ଦେଉନ୍ତୁ ଶିକ୍ଷା ବ୍ରହ୍ମ ବିଷୟରେ ।
ବରୁଣ ଏ କଥା ଶୁଣି ବୋଇଲେ ପୁତ୍ରକୁ,
କର ଯା ତପସ୍ୟା ପୁତ୍ର ଜାଣିବୁ ବ୍ରହ୍ମକୁ ।
କେବଳ ତପସ୍ୟା ବ୍ରହ୍ମଜ୍ଞାନର ସାଧନ
ଏତେ ଶୁଣି କଲେ ଭୃଗୁ ତପସ୍ୟା ଆରମ୍ଭ
ତପସ୍ୟା ବଳରେ ତାଙ୍କ ଜନମିଲା ଜ୍ଞାନ ।
ଇତି ଦ୍ୱିତୀୟ ବେଦାଂଶ ।

---

ଜାଣିଲେ ସେ ଭୃଗୁ, ପ୍ରାଣ ଅଟନ୍ତି ସେ ବ୍ରହ୍ମ
ଯେଣୁକି ପ୍ରାଣରୁ ହେଲେ ପ୍ରାଣୀ ସର୍ବ ଜାତ,
ପ୍ରାଣରେ କରନ୍ତି ପୁଣି ଜୀବନ ଧାରଣ
ପ୍ରବେଶନ୍ତି ପ୍ରାଣିଗଣ ପ୍ରାଣେ ଅବଶେଷେ ।
ଏ ବୃତ୍ତାନ୍ତ ଶୁଣି ଭୃଗୁ ଯାଇ ପୁନର୍ବାର
ଜନକ ବରୁଣ ପାଶେ, କଲେ ନିବେଦନ !
ହେ ପିତଃ କରୁଣା କରି ଦିଅ ବ୍ରହ୍ମଜ୍ଞାନ ।
ବୋଇଲେ ବରୁଣ ଶୁଣି ରେ ମୋର ନନ୍ଦନ !
ତପସ୍ୟା ବଳରେ କର ବ୍ରହ୍ମଜ୍ଞାନ ଲଭ !
ଯେଣୁକି ତପସ୍ୟା ଅଟେ ବ୍ରହ୍ମର ସାଧନ ।
ଇତି ତୃତୀୟ ବେଦାଂଶ ।

---

ଅବଗତ ହେଲେ ଭୃଗୁ ତପସ୍ୟା ବଳରେ,
ମନହିଁ ଅଟଇ ପରଂବ୍ରହ୍ମର ସ୍ୱରୂପ,
ଯେଣୁକି ମନରୁ ଜାତ ଏ ପ୍ରାଣିସମୂହ ।
ମନରେ କରନ୍ତି ପୁଣି ଜୀବନ ଧାରଣ ।
ଅବଶେଷେ କରନ୍ତି ସେ ମନରେ ପ୍ରବେଶ,
ଏ ବୃତ୍ତାନ୍ତ ଶୁଣି ଭୃଗୁ ଯାଇ ପିତା ପାଶେ ।
ବୋଇଲେ ହେ ପିତଃ ମୋତେ ଦିଅ ବ୍ରହ୍ମଜ୍ଞାନ ।
ବୋଇଲେ ବରୁଣ ତହୁଁ ଶୁଣ ରେ ନନ୍ଦନ ।
ତପସ୍ୟାବଳରେ ଲଭ କର ବ୍ରହ୍ମଜ୍ଞାନ,
ଏହା ଶୁଣି ଭୃଗୁ କଲେ ଆରମ୍ଭ ତପସ୍ୟା ।
ଇତି ଚତୁର୍ଥ ବେଦାଂଶ ।

---

ତପସ୍ୟାବଳରେ ଭୃଗୁ ହେଲେ ଅବଗତ—
ବିଜ୍ଞାନ ଅଟନ୍ତି ବ୍ରହ୍ମ, ତେଣୁ ବିଜ୍ଞାନରୁ
ଜଗତର ପ୍ରାଣୀ ସର୍ବ ହୋଇଛନ୍ତି ଜାତ ।
କରନ୍ତି ବିଜ୍ଞାନେ ପୁଣି ଜୀବନ ଧାରଣ ।
ଅବଶେଷେ ପ୍ରବେଶନ୍ତି ଯାଇ ବିଜ୍ଞାନରେ ।
ଏତେ କଥା ଜାଣି ଭୃଗୁ ଯାଇ ପିତା ପାଶେ—
ବୋଇଲେ ହେ ପିତଃ ଦିଅ ମୋତେ ବ୍ରହ୍ମଜ୍ଞାନ !
ବୋଇଲେ ବରୁଣ ତହୁଁ ଶୁଣ ରେ ନନ୍ଦନ !
କର ତୁ ତପସ୍ୟା ବ୍ରହ୍ମେ ହେବୁ ଅବଗତ ।
ତପସ୍ୟା ଅଟଇ ବ୍ରହ୍ମଜ୍ଞାନର ସାଧନ ।
ଇତି ପଞ୍ଚମ ବେଦାଂଶ ।

---

ପିତାଙ୍କ ଆଦେଶେ ଭୃଗୁ ଯାଇ ପୁନର୍ବାର
ଜାଣିଲେ ଆନନ୍ଦ ବ୍ରହ୍ମ—ତପସ୍ୟା ବଳରେ
ଜନ୍ମନ୍ତି ସକଳ ପ୍ରାଣୀ ଯେଣୁ ଆନନ୍ଦରେ ।
କରନ୍ତି ଆନନ୍ଦେ ପୁଣି ଜୀବନ ଧାରଣ ।
ଅବଶେଷେ ପ୍ରବେଶନ୍ତି ଯାଇ ଆନନ୍ଦରେ;
ବରୁଣଙ୍କ ପୁତ୍ର ଭୃଗୁ ତପସ୍ୟାବଳରେ ।
ଏହି ମହା ତତ୍ତ୍ୱ ହୋଇଥିଲେ ଅବଗତ ।
ଏହି ଉତ୍ତମ ବିଦ୍ୟା ଯେଉଁ ଲୋକ ଜାଣେ,
ଅଧିକାରୀ ଜନ୍ମେ ତାର ବ୍ରହ୍ମତତ୍ତ୍ୱ ଜ୍ଞାନେ,

ଅନ୍ନଦାନ ଅନ୍ନଭୁକ୍ତା ହୁଏ ସେହି ଲୋକ,
ହୁଏ ସୁସ୍ଥକାୟ ତାର ଥାଏ ନାହିଁ ଶୋକ ।
ପ୍ରହାଦ, ସୁକୀର୍ତ୍ତି, ବ୍ରହ୍ମତେଜ, ପଶୁମାନ,
ଜଗତରେ ଲଭ କରେ ସେହି ଭାଗ୍ୟବାନ ।
ଇତି ଷଷ୍ଠ ବେଦାଂଶ ।

---

ଅନ୍ନକୁ ନ କର ନିନ୍ଦା ଅନ୍ନ ଅଟେ ବ୍ରତ,
ପ୍ରାଣ ଅନ୍ନ, ଏ ଶରୀର ଅଟେ ଅନ୍ନଭୁକ୍ତ ।
ଏ ଶରୀର ରହିଅଛି ପ୍ରାଣେ ପ୍ରତିଷ୍ଠିତ,
ପ୍ରାଣ ମଧ୍ୟ ପ୍ରତିଷ୍ଠିତ ଅଛି ଶରୀରରେ ।
ଏହି ଅନ୍ନ ରହିଅଛି ଅନ୍ନେ ପ୍ରତିଷ୍ଠିତ,
ଅନ୍ନ ପ୍ରତିଷ୍ଠିତ ଅନ୍ନେ, ଏକଥା ଯେ ଜାଣେ ।
ସେହି ଲୋକ ହୋଇ ପାରେ ବ୍ରହ୍ମେ ପ୍ରତିଷ୍ଠିତ,
ଅନ୍ନବାନ ଅନ୍ନଭୋକ୍ତା ହୁଏ ସେ ନିଶ୍ଚୟ ।
ବ୍ରହ୍ମତେଜ କୀର୍ତ୍ତି ପଶୁ ପୁତ୍ର ଲଭ କରେ ।
ସକଳ ବିଷୟେ ସେହି ହୁଏଟି ମହାନ ।
ଇତି ସପ୍ତମ ବେଦାଂଶ ।

---

ଅନ୍ନକୁ ନ କର ତ୍ୟାଗ ଅନ୍ନ ଅଟେ ବ୍ରତ,
ଜଳ ଅନ୍ନ, ଜ୍ୟୋତି ଅନ୍ନ ଭୋକ୍ତା ବୋଲି ଜାଣ;
ହେ ବନ୍ଧୁ ଜଳରେ ଅଛି ଜ୍ୟୋତି ପ୍ରତିଷ୍ଠିତ,
ସେହିପରି ଜ୍ୟୋତି ମଧ୍ୟ ଜଳେ ପ୍ରତିଷ୍ଠିତ ।
ଅନ୍ନ ମଧ୍ୟେ ଅନ୍ନ ଅଛି ପ୍ରତିଷ୍ଠିତ ଜାଣ,
ଏକଥା ଯେ ଜାଣେ ତାର ଅଛି ବ୍ରହ୍ମଜ୍ଞାନ ।
ଅନ୍ନବାନ ଅନ୍ନଭୋକ୍ତା ଅଟେ ଯେଉଁ ଜନ
ଲଭେ ବ୍ରହ୍ମତେଜ ପ୍ରୀତି ପଶୁ, ପୁତ୍ର, ଧନ ।
ଇତି ଅଷ୍ଟମ ବେଦାଂଶ ।

---

ଅର୍ଜନ କରିବ ଅନ୍ନ, ଅଟେ ଏହା ବ୍ରତ,
ଆକାଶ ଯେ ଅନ୍ନଭୋକ୍ତା, ପୃଥ୍ୱୀ ଅଟେ ଅନ୍ନ ।
ଆକାଶ ମଧ୍ୟରେ ଅଛି ପୃଥ୍ୱୀ ପ୍ରତିଷ୍ଠିତ,
ସେହିପରି ଅନ୍ନ ଜାଣ ଅନ୍ନେ ପ୍ରତିଷ୍ଠିତ ।
ଅନ୍ନେ ପ୍ରତିଷ୍ଠିତ ଅନ୍ନ ଏ କଥା ଯେ ଜାଣେ,
ସେହି ଲୋକ ଅଧିକାରୀ ହେବ ବ୍ରହ୍ମଜ୍ଞାନେ ।
ଅନ୍ନବାନ ଅନ୍ନଭୋକ୍ତା ଅଟେ ଯେଉଁ ଜନ,
ଲଭେ ବ୍ରହ୍ମତେଜ, ବଳ, ପଶୁ, ପୁତ୍ର, ଧନ ।
ଇତି ନବମ ବେଦାଂଶ ।

---

ଗୃହରୁ ଅତିଥି ଦେବ ନାହିଁ ବାହୁଡ଼ାଇ,
ଅତିଥିକୁ ଦେବା ଅନ୍ନ ଅଟେ ମହାବ୍ରତ,
ଧାର୍ମିକ ଗୃହସ୍ଥେ ପୂଜଥାନ୍ତି ଅଭ୍ୟାଗତେ;
ସମ୍ପୂର୍ଣ୍ଣରୂପରେ ତାଙ୍କୁ କରି ଅନ୍ନଦାନ,
ଶ୍ରେଷ୍ଠ ଉପଚାରେ କଲେ ଅନ୍ନ ନିବେଦନ,
ଶ୍ରେଷ୍ଠରୂପେ ହୁଏ ଅନ୍ନ ଆସି ଉପଗତ ।
ମଧ୍ୟମରୂପରେ ଅନ୍ନ ଯେବା ଦାନ କରେ,
ତାହାକୁ ମିଳଇ ଅନ୍ନ ମଧ୍ୟମ ରୂପରେ ।
ଅବଜ୍ଞା ସହିତ ଅନ୍ନ କଲେ ନିବେଦନ,
ତାହାକୁ ପ୍ରାପତ ହୁଏ ଅନ୍ନ ନୀଚଭାବେ ।
ଯେଉଁ ଜ୍ଞାନୀ ଲୋକ ଏହା ଅଛି ଅବଗତ,
ଏହିରୂପେ କରେ ସେହି ବ୍ରହ୍ମ ଉପାସନା;
ଉପାସ୍ୟ ଅଟନ୍ତି ବ୍ରହ୍ମ ବାକ୍ୟ କ୍ଷେମ ରୂପେ ।
ପ୍ରାଣ ଅପାନରେ ଯୋଗ କ୍ଷେମେ ଉପାସିତ
ହସ୍ତଦ୍ୱୟ କର୍ମରୂପେ, ପଦେ ଗତିରୂପେ,
ଉପାସ୍ୟ ଅଟନ୍ତି ବ୍ରହ୍ମ ବିବିଧ ରୂପରେ ।
ବେଦସମ୍ବନ୍ଧୀୟ ଜ୍ଞାନ ହେଉଛି କଥିତ,
ତୃପ୍ତି ରୂପେ ଜଳେ, ବଳରୂପେ ଆକାଶରେ,
ପଶୁଗଣ ମଧ୍ୟେ, ଯଶ ରୂପେ ପ୍ରକାଶିତ;
ଜ୍ୟୋତି ରୂପେ ପ୍ରକାଶିତ ନକ୍ଷତ୍ରମଣ୍ଡଳେ ।
ସନ୍ତାନ ଉତ୍ପତ୍ତି ସ୍ଥାନ ଜନନ-ଇନ୍ଦ୍ରିୟ,

ପ୍ରକାଶିତ ଚନ୍ଦ୍ର ତହିଁ ଆନନ୍ଦ ରୂପରେ ।
ସେ ଲୋକ ପ୍ରତିଷ୍ଠାବନ୍ତ ହୁଅନ୍ତି ନିଶ୍ଚିତ ।
ମହତ୍ତ୍ୱ ରୂପରେ ଯେବା କରେ ଉପାସନା,
ଅବଶ୍ୟ ସେ ଲୋକ ହୁଏ ଶେଷରେ ମହାନ ।
ଏଥିଅନ୍ତେ ବୋଲୁଁ ଶୁଣ ଉପାସନାବିଧି ।
ମନନ ରୂପରେ ଯେବା କରେ ଉପାସନା,
ମନନ କରଣେ ସେହି ହୁଏ ସମରଥ ।
ଦମନ ରୂପରେ କରେ ଯେବା ଉପାସନା,
ଭୋଜ୍ୟ ବସ୍ତୁ ସର୍ବ ତାହାଠାରେ ହୁଏ ନତ ।
ବ୍ରହ୍ମ ରୂପେ ତାହାଙ୍କୁ ଯେ କରେ ଉପାସନା,
ଅବଶ୍ୟ ସେ ଲୋକ ହୋଇପାରେ ବ୍ରହ୍ମବାନ ।
ଆକାଶ ରୂପରେ ଉପାସନାକାରିଗଣେ,
ଦ୍ୱେଷକାରୀ ଶତ୍ରୁଠାରୁ ଲଭନ୍ତି ମୁକତି ।
ମାନବ ସକଳ ପୁଣି ଯେ ଆତ୍ମା ଆଦିତ୍ୟ,
ଉଭୟ ଅଟନ୍ତି ଏକ – ଯେ ଜାଣେ ଏକତ୍ୱ,
ନିଶ୍ଚୟ ସେ ପ୍ରାପ୍ତ ହୁଏ, ଆତ୍ମା ଅନ୍ନମୟ ।
ପ୍ରାଣମୟ, ମନୋମୟ ଆତ୍ମାକୁ ସେ ପାଏ,
ଆନନ୍ଦ, ବିଜ୍ଞାନମୟ ଆତ୍ମା ହୁଏ ପ୍ରାପ୍ତ ।
ଇଚ୍ଛାରୂପ ସେହି ଲୋକ ହୁଏ ଅନ୍ନବାନ ।
ସମସ୍ତ ପଦାର୍ଥ ଲୋକ କରି ଭାଗ ଭୋଗ,
ଏହିରୂପ କରିଥାନ୍ତି ସାମବେଦ ଗାନ ।
ଅହୋ ! ଅହୋ ! ଆମ୍ଭେ ଅନ୍ନ, ଆମ୍ଭେ ଅନ୍ନ ଅନ୍ନ,
ଆମ୍ଭେ ଅନ୍ନଭୋକ୍ତ ପୁଣି ଆମ୍ଭେ ଅନ୍ନଭୋକ୍ତା ।
ଆମ୍ଭେ ଶ୍ଲୋକରଚୟିତା, ଶ୍ଲୋକରଚୟିତା !
ଆମ୍ଭେହିଁ ହିରଣ୍ୟଗର୍ଭ ଅଟୁଁ ପ୍ରଥମଜ !
ଦେବତାମାନଙ୍କ ପୂର୍ବେ ହୋଇଅଛୁଁ ଜାତ !
ନ ଦେଇ ଭିକ୍ଷୁକେ ଅନ୍ନ ଯେ କରେ ଭୋଜନ
ନିଶ୍ଚୟ ତାହାଙ୍କୁ ଆମ୍ଭେ କରୁଁ ଯେ ଭୋଜନ ।
ଆଦିତ୍ୟ ସମାନ ଅଟୁଁ ଆମ୍ଭେ ଜ୍ୟୋତିର୍ମୟ,
ସକଳ ଭୁବନ ଆମ୍ଭେ କରୁଁ ଯେ ବିନାଶ,
ଏ କଥା ଯେ ପାରେ ଜାଣି ପାଏ ପୁଣ୍ୟଫଳ ।

ଇତି ଦଶମ ବେଦାଂଶ ।

ଇତି ଭୃଗୁବଲ୍ଲୀ ନାମ ତୃତୀୟ ବଲ୍ଲୀ ।

ତୈତ୍ତିରୀୟୋପନିଷତ୍ ସମାପ୍ତ

———

## ଅଥର୍ବବେଦୀୟା ମାଣ୍ଡୁକ୍ୟୋପନିଷତ୍

ପବିତ୍ର ଓଁକାର ଅକ୍ଷର, ବ୍ୟାପିଛି ବିଶ୍ୱ ଚରାଚର ।
ଭୂତ, ଭବିଷ୍ୟ, ବର୍ତ୍ତମାନ, ସମସ୍ତ ଓଁକାରରୁ ଜାଣ ।
ଯେ କିଛି ତ୍ରିକାଳ ଅତୀତ, ସମସ୍ତ ଓଁକାର ଜଡ଼ିତ ।
ଏ ବିଶ୍ୱ ବ୍ରହ୍ମାଣ୍ଡ ଯେ ବ୍ରହ୍ମ, ଅଟନ୍ତି ମାନବାତ୍ମା ବ୍ରହ୍ମ ।
ସେହି ଯେ ଆତ୍ମା ଚତୁଷ୍ପଦ, ଶୁଣନ୍ତୁ ସେଥିର ସମ୍ବାଦ ।
ଜାଗ୍ରତ ଅବସ୍ଥା ପ୍ରଥମ, ହୁଅନ୍ତି ଯାହା ବହିପ୍ରର୍ଜ୍ଞ ।
ଅଟଇ ତାହାଙ୍କ ସପ୍ତାଙ୍ଗ, ଶୁଣନ୍ତୁ ସେଥିର ପ୍ରସଙ୍ଗ ।
ତାହାଙ୍କ ଜୀବନ ପବନ, ଯୁଗଳ ନୟନ ତପନ ।
ମସ୍ତକ ଅଟଇ ଯେ ସ୍ୱର୍ଗ, ଆକାଶ ତାଙ୍କ ମଧ୍ୟଭାଗ ।
ଉଦର ତାଙ୍କ ଅନ୍ନ ଜଳ, ଚରଣ ମେଦିନୀମଣ୍ଡଳ ।
ଏକୋନବିଂଶତି ବଦନ, ଜିହ୍ୱାହଙ୍କାର, ବୁଦ୍ଧି, ମନ ।
ଜ୍ଞାନ ଇନ୍ଦ୍ରିୟ, କର୍ମେନ୍ଦ୍ରିୟ, ଦଶ ସଂଖ୍ୟାରେ ଗଣନୀୟ ।
ପ୍ରାଣ, ଅପାନ, ଦାନ ବ୍ୟାନ; ସମାନ, ପାଞ୍ଚ ବାୟୁ ଜାଣ ।
ଏରୂପ ଯେଉଁ ଊଣାଇଶ, ଅଟଇ ତାହାଙ୍କର ଶୀର୍ଷ ।
ଶୁଣ ଦ୍ୱିତୀୟ ପାଦ କଥା, ଅଟଇ ତାହା ସ୍ୱପ୍ନାବସ୍ଥା ।
ଇନ୍ଦ୍ରିୟମାନେ ଏକାଳରେ, ଥାନ୍ତି ଯେ ନିଶ୍ଚେଷ୍ଟଭାବରେ ।
ବାସନାମୟୀ ପ୍ରଜ୍ଞା ବଳେ, ସଞ୍ଚାର କରେ ଦେହସ୍ଥଳେ ।
ତୃତୀୟ ପାଦ ଯେ ସୁଷୁପ୍ତି, ନ ଥାଏ କିଛି ଅନୁଭୂତି ।
ପ୍ରାଣ ପବନ ସେ କାଳରେ, କେବଳ ଦେହରେ ସଞ୍ଚରେ
ସେହି ଯେ ପ୍ରାଣ ସର୍ବେଶ୍ୱର, ସକଳ ତାହାଙ୍କୁ ଗୋଚର ।
ସମସ୍ତ ଭୂତର ଜୀବନ, ଉତ୍ପତ୍ତି ପ୍ରଳୟ କାରଣ ।
ଅଚିନ୍ତ୍ୟ ଅନିର୍ବଚନୀୟ, ଦେହ ମଧ୍ୟରେ ପୂଜନୀୟ ।
ଅଦ୍ୱୈତ ମଙ୍ଗଳସ୍ୱରୂପ, ଅବର୍ଣ୍ଣନୀୟ ତାଙ୍କ ରୂପ ।

ଇନ୍ଦ୍ରିୟ ବିଷୟ ଅଜ୍ଞାତ, ଅଗମ୍ୟ ଅସୀମ ଅଚିନ୍ତ୍ୟ ।
ଅଜ୍ଞାତ ଯାହାଙ୍କ ସମ୍ବାଦ, ଅଟନ୍ତି ସେ ଚତୁର୍ଥ ପାଦ ।
ଅକାର ଉକାର ମକାର; ଏଥିରୁ ଉତ୍ପତ୍ତି ଓଁକାର ।
ଓଁକାର ଏହି ମହାକ୍ଷର, ଅଟନ୍ତି ଆତ୍ମାର ଆକାର ।
ବିଶ୍ୱ ସ୍ୱରୂପ ଯା ଆକାର, ତାହାଙ୍କୁ ଜାଣ ବୈଶ୍ୱାନର ।
ଜାଗ୍ରତାବସ୍ଥା ବୈଶ୍ୱାନର, ପ୍ରଥମ ମାତ୍ରା ସେ ଆକାର ।
ଅକାର ସକଳ ବାକ୍ୟରେ, ବ୍ୟାପ୍ତ ଥାଆନ୍ତି ଯେ ରୂପରେ ।
ସେ ବୈଶ୍ୱାନର ଯେ ତେମନ୍ତ, ବ୍ୟାପିଣ ଅଛନ୍ତି ଜଗତ ।
ଅକାର ସର୍ବ ବର୍ଣ୍ଣ ଆଦ୍ୟ, ବୈଶ୍ୱାନର ଯେ ପାଦ ଆଦ୍ୟ ।
ଅକାର ବୈଶ୍ୱାନର ତତ୍ତ୍ୱ, ଯେ ଜ୍ଞାନୀ ହୁଏ ଅବଗତ ।
ମହତ ମଧ୍ୟରେ ଉତ୍ତମ, ଅଟନ୍ତି ସେହି ବିଜ୍ଞତମ ।
ସ୍ୱପ୍ନର ଅଧିଷ୍ଠାତୃ ଦେବ, ଉକାରେ କର ଅନୁଭବ ।
ନ ଥାଏ ଇନ୍ଦ୍ରିୟ ବିକାର, ଅଥବା ଦେହର ସଞ୍ଚାର,
କେବଳ ବାସନା ମାର୍ଗରେ, ମନ ମାତ୍ରକ ଗତି କରେ ।
ଯେ ଏହା ଅନୁଭବେ ଜ୍ଞାନେ, ସେ ଲୋକ ପରବ୍ରହ୍ମ ଜାଣେ ।
ସୁଷୁପ୍ତି ଅଧିଷ୍ଠାତୃ ଦେବ, ମକାରେ କରେ ଅନୁଭବ ।
ଅକାର, ଉକାର, ମକାର; ମିଳନେ ଉତ୍ପତ୍ତି ଓଁକାର ।
ଜାଗ୍ରତ ସ୍ୱପ୍ନ ଯେ ସୁଷୁପ୍ତି, ଏ ତିନି ଜୀବନର ଗତି ।
ଓଁକାରମୟ ଅଟେ ପ୍ରାଣ, ସଂଶୟ ତେଜି କର ଜ୍ଞାନ ।
ଓଁକାରମୟ ପରଂବ୍ରହ୍ମ, କର ବିଶେଷେ ହୃଦଙ୍ଗମ ।
ଜଗତେ ଯେତେ ବ୍ରହ୍ମବାଦୀ, ରଖନ୍ତି ଏ ଜ୍ଞାନ ସମ୍ବାଦ ।
ତାହାଙ୍କ ବଂଶେ କେହି ଲୋକ, ନୁହନ୍ତି ମୂର୍ଖ ଅବିବେକ ।
ଉଦ୍ଧାର ପାନ୍ତି ବ୍ରହ୍ମଜ୍ଞାନେ, ନାବରେ ଅର୍ଣ୍ଣବ ସମାନେ ।
ଇତି ମାଣ୍ଡୂକ୍ୟୋପନିଷଦ୍ ସମାପ୍ତ ।

---

## ଅର୍ଥର୍ବବେଦୀୟା ମୁଣ୍ଡକୋପନିଷଦ୍

### ପ୍ରଥମ ମୁଣ୍ଡକ

ପ୍ରଥମେ ବ୍ରହ୍ମା ପ୍ରଜାପତି, ଯା ଠାରୁଁ ଜଗତ ଉତ୍ପତ୍ତି ।
ଅଥର୍ବ ତାଙ୍କ ଜ୍ୟେଷ୍ଠ ସୁତ, ଅଟନ୍ତି ସର୍ବ ଗୁଣଯୁତ ।
ବ୍ରହ୍ମା ଯେ ବ୍ରହ୍ମବିଦ୍ୟାମାନ, ପୁତ୍ରକୁ ଦେଲେ ଶିକ୍ଷା ଦାନ
ଅଥର୍ବ ସେ ବ୍ରହ୍ମବିଦ୍ୟାକୁ, ଶିକ୍ଷା ଯେ ଦେଲେ ଅଙ୍ଗିରାକୁ ।
ଅଙ୍ଗିରା ପୁଣି ଭରଦ୍ୱାଜେ, ନିଯୁକ୍ତ କଲେ ଶିକ୍ଷାକାର୍ଯ୍ୟେ ।
ଏରୂପେ ବ୍ରହ୍ମବିଦ୍ୟା ସାର, ବ୍ରହ୍ମାଣ୍ଡେ ହେଲାକ ପ୍ରଚାର ।
ଶୌନକ ମହର୍ଷି ପ୍ରଧାନ, ଶିଖିଲେ ବ୍ରହ୍ମବିଦ୍ୟାମାନ ।
ଅଙ୍ଗିରାଠାରୁ ସେ ଶୌନକ, ଶିଖିଲେ ବ୍ରହ୍ମବିଦ୍ୟାଯାକ ।
ଯେରୂପେ ଏ ବିଦ୍ୟା ପ୍ରଚାର, ଶୁଣନ୍ତୁ ସେହି ସମାଚାର ।

---

ଏକଦା ଶୌନକ ମହର୍ଷି, ଅଙ୍ଗିରା ମୁନି ପାଶେ ବସି ।
ବିନୟେ ନୁଆଇଣ ମଥା, ପୁଚ୍ଛିଲେ ବ୍ରହ୍ମବିଦ୍ୟା କଥା ।
ହେ ମୁନିବର ବୋଲ ମୋତେ, ବିଜ୍ଞେୟ କିବା ଏ ଜଗତେ
ଯେବଣ କଥା ହେଲେ ଜ୍ଞାତ, ଜାଣିବି ସକଳ ବୃତ୍ତାନ୍ତ !
ଅଙ୍ଗିରା ଏତେ କଥା ଶୁଣି, ବୋଇଲେ ଆହେ ମହାମୁନି ?
ଦୁଇଟି ବିଦ୍ୟା ଅଟେ ସାର, ଯହିଁରେ ଚଳୁଛି ସଂସାର ।
ପରା, ଅପରା ଦୁଇ ବିଦ୍ୟା; ବ୍ରହ୍ମାଣ୍ଡ ମଧ୍ୟରେ ପ୍ରସିଦ୍ଧା ।
ନିରୁକ୍ତ,ଶିକ୍ଷା, ଚତୁର୍ବେଦ; ଜ୍ୟୋତିଷ, କଳ୍ପ, ଛନ୍ଦଭେଦ ।
ଶବ୍ଦନିୟମ ବ୍ୟାକରଣ, ଅପରା ବିଦ୍ୟାରେ କଥନ ।
ପରା ବିଦ୍ୟାକୁ ଶ୍ରେଷ୍ଠ ଜାଣ, ତହିଁରୁ ଜାତ ବ୍ରହ୍ମଜ୍ଞାନ ।
ଜ୍ଞାନ ଇନ୍ଦ୍ରିୟ, କର୍ମେନ୍ଦ୍ରିୟ; ନ ଜାଣେ ବ୍ରହ୍ମଙ୍କ ବିଷୟ ।
ନୁହନ୍ତି ବ୍ରହ୍ମ ସୂକ୍ଷ୍ମ ସ୍ଥୂଳ; ପୁଣି ଅଟନ୍ତି ସର୍ବ ମୂଳ ।
ରୂପବିହୀନ ଜ୍ଞାନମୟ, ସକଳ ବିଶ୍ୱର ଆଶ୍ରୟ ।
ଯହିଁରୁ ଜାତ ଏହି ଜ୍ଞାନ, ପରା ବିଦ୍ୟା ଯେ ତାକୁ ଜାଣ ।
ଦେହରୁ ଜାତ ଯେସନେ ଲୋମ, ପୃଥ୍ୱୀରେ ବୃକ୍ଷ ଲତା ଗୁଳ୍ମ
ସୃଜେ ଯେସନେ ଊର୍ଣ୍ଣନାଭି, ସହଜେ ଥାଏଟି ପ୍ରସବି ।
ଅକ୍ଷରୁ ଏହି ବିଶ୍ୱ ସର୍ବ, ତେସନେ ହୋଇଛି ଉଦ୍ଭବ ।
ଅକ୍ଷରୁ ବୀଜ ହେଲା ଜାତ, ବୀଜରୁ ଜନ୍ମିଲେ ସମସ୍ତ ।
ବୀଜରୁ ହେଲା ପ୍ରାଣ ମନ, ତହିଁରୁ ଜାତ ଲୋକଗଣ ।
ଶେଷରେ କର୍ମ, କର୍ମଫଳ; କ୍ରମଶ ଜନ୍ମିଲେ ସକଳ ।
ଯେ ବ୍ରହ୍ମ ସର୍ବଜ୍ଞାନମୟ, ତାହାଙ୍କ ଜ୍ଞାନରୁ ଉଦୟ ।
ପ୍ରପଞ୍ଚ ହୋଇଅଛି ଜାତ, ଏକଥା ତୁମ୍ଭେ ହେଲେ ଜ୍ଞାତ ।
ଜାଣି ପାରିବ ସର୍ବ ତତ୍ତ୍ୱ, ନ ଭ୍ରମ ଏଥି ଅନ୍ୟ ମତ ।
ଆହେ ଶୌନକ ଏହା ଜାଣି, ପାଇବେ ମୁକ୍ତି ସର୍ବ ପ୍ରାଣୀ ।

---

## ଦ୍ୱିତୀୟ ମୁଣ୍ଡକ

ତ୍ରେତା ଯୁଗରେ ଯଜ୍ଞ ଯାଗ, କଲେକ କେତେ ମହାଭାଗ ।
ଲଭିବା ପାଇଁ କର୍ମଫଳ, କରିଣ ଥିଲେ ଏ ସକଳ ।
କର୍ମଫଳର ଏ ବିଧାନ, କରନ୍ତି ଲୋକେ ଅନୁଷ୍ଠାନ ।
ଅଗ୍ନିହୋତ୍ରାଦି କ୍ରିୟାମାନ, ସ୍ୱର୍ଗଲାଭର ମାର୍ଗ ଜାଣ ।
ଅନଳେ ଆହୁତି ପ୍ରଦାନ, କରିଣ ଥାନ୍ତି ଯଜମାନ ।
ଯିବାକୁ ପାଇଁ ଇନ୍ଦ୍ରଲୋକେ, ଏମନ୍ତ କରିଥାନ୍ତି ଥୋକେ ।
ଜାଣିବ ଏ କାର୍ଯ୍ୟ ସକଳ, ଅଟଇ କ୍ଷଣିକ କେବଳ ।
ଭୋଗାନ୍ତେ ମାନବ ସକଳେ, ଆସନ୍ତି ପୁଣି ଧରାତଳେ ।
ନରଯୋନି ବା ନୀଚଯୋନି, ଲଭଇ ଲୋକ ଆସି ପୁଣି
ହେ ମୁନିବର ତେଣୁ ସ୍ୱର୍ଗ, ବୃଥା ଲୋଡ଼ନ୍ତି ଲୋକବର୍ଗ ।
ଉଦୟ ବିନା ଜ୍ଞାନ ଭାବ, କେ କରିଅଛି ମୁକ୍ତିଲାଭ ।
ଅଗ୍ନିହୋତ୍ରାଦି କ୍ରିୟାମାନ, ସମ୍ପର୍କ ନାହିଁ ତତ୍ତ୍ୱଜ୍ଞାନ ।
ବସ୍ତୁ ନ ଚିହ୍ନି ମୂଢ଼ ଜନ, କରନ୍ତି ମନ୍ତ୍ରର ସାଧନ ।
ହେଲେକ ଜ୍ଞାନର ସଞ୍ଚାର, ବିରାଗ ଜନ୍ମିବ ସଂସାର ।
ସନ୍ନ୍ୟାସ ଅବା ବାନପ୍ରସ୍ଥ, ଭିକ୍ଷୁକ ଅଥବା ଗୃହସ୍ଥ ।
ଯେଉଁ ଆଶ୍ରମେ ଥାଉ ଲୋକ, ଲଭଇ ଯେବେ ଜ୍ଞାନାଲୋକ ।
କରିଣ ଇନ୍ଦ୍ରିୟ ଦମନ, ହିରଣ୍ୟଗର୍ଭ ଧ୍ୟାନେ ମଗ୍ନ ।
ହୋଇ ଲଭନ୍ତି ଜ୍ଞାନୀଗଣେ, ପରମ ବ୍ରହ୍ମ ସନାତନେ ।
ହେଲେକ ବ୍ରହ୍ମବିଦ୍ୟା ଲାଭ, ନ ଥାଏ ପାପ ପୁଣ୍ୟ ଭାବ ।
ଅବ୍ୟକ୍ତ ଅକ୍ଷର ଅବ୍ୟୟ, ତହିଁରେ ଚିତ୍ତ କର ଲୟ ।
ନିଖିଳ ସଂସାର କର୍ମରେ, ବିରାଗୀ ଥିବ ନିରନ୍ତରେ ।
କର୍ମରୁ ବିନୟ ଉତ୍ପତ୍ତି, ଏହାହିଁ ଜାଣିବ ନିୟତ ।
ବିନାଶ ଜନ୍ମ ଲାଭ କରି, ଜଗତେ ବୀଜାଙ୍କୁର ପରି ।
ନ ବୁଝି ଯେବେ ସାର ତତ୍ତ୍ୱ, ବହୁତ ଉପୁଜେ ଅନର୍ଥ ।
ନିଖିଳ ବିଶ୍ୱ କ୍ଷଣସ୍ଥାୟୀ, ହୃଦରେ ଏହା ଥିବ ଧ୍ୟାୟୀ ।
କ୍ଷଣଭଙ୍ଗୁର ବିଶ୍ୱ ସର୍ବ, କରିବ ଏହା ଅନୁଭବ ।
ବୁଝିଲେ କର୍ମର ବିକୃତି, ଲଭିବ ଆପଣା ପ୍ରକୃତି ।
ତ୍ୟାଗ କରିଣ ସର୍ବ କର୍ମ, ଲଭିବ ବଇରାଗ୍ୟ ଧର୍ମ ।
ସୁଖ ଦୁଃଖର ଏ ସଂସାର, ଜାଣିବ ଅନିତ୍ୟ ଅସାର ।
ବୃଥାରେ କର୍ମ ଅନୁଷ୍ଠାନ, ନ କର ସ୍ଥିର କରି ଜ୍ଞାନ ।
କର୍ମଫଳ ଯେ ଚିରସ୍ଥାୟୀ, ନୁହେଁଟି ଏହା ଥିବ ଧ୍ୟାୟୀ ।
ଆୟୁସବହୁଳ କର୍ମରେ, କପାଁ ନିଯୁକ୍ତ ନିରନ୍ତରେ ।
ଯେ କର୍ମେ ଉତ୍‌ଥାନ ପତନ, ତହିଁରେ କିବା ପ୍ରୟୋଜନ ।
ଯେ କର୍ମ ଅଟେ ଶିବମୟ, ନେବଟି ସେଥିର ଆଶ୍ରୟ ।
ସର୍ବଦା ହୋଇ ଶାନ୍ତ ଶିଷ୍ଟ, ସୁଜ୍ଞାନେ ହେବ ବ୍ରହ୍ମନିଷ୍ଠ ।
ସୁଜ୍ଞାନ ଲଭିବା ସକାଶେ, ଯିବ ବିଜ୍ଞାନୀ ଗୁରୁପାଶେ ।
ସୁଗୁରୁ ହୋଇ ଯତ୍ନବାନ୍, ଶିଷ୍ୟଙ୍କୁ ଦେବେ ବ୍ରହ୍ମଜ୍ଞାନ ।
ଶିଷ୍ୟ ସେ ଜ୍ଞାନ କରି ଲବ୍ଧ, ଜାଣିବେ ପରଂବ୍ରହ୍ମ ଭାବ ।

---

## ତୃତୀୟ ମୁଣ୍ଡକ

ଅନିତ୍ୟ ଜଗତ ସଂସାର, କେବଳ ବ୍ରହ୍ମ ବସ୍ତୁ ସାର ।
ଏହି ଯେ କର୍ମ, କର୍ମଫଳ; ଅନିତ୍ୟ ଜାଣିବ ସକଳ ।
ହେଲେ ଅନିତ୍ୟ ସର୍ବ କର୍ମ, ସତ୍ୟ ବୋଲିଣ ହୁଏ ଭ୍ରମ ।
ଅଗ୍ନିରୁ ଅଗ୍ନି କଣା ଜାତ, ଅଗ୍ନିସ୍ୱରୂପେ ପ୍ରତିଭାତ ।
ଅକ୍ଷର ପୁରୁଷରୁ ବିଶ୍ୱ, ବାହାର ହୋଇଛି କ୍ରମଶ ।
ଏ ବିଶ୍ୱମଣ୍ଡଳ ଶେଷରେ, ମିଳଇ ବ୍ରହ୍ମ ପୁରୁଷରେ ।
ବ୍ରହ୍ମରୁ ଜାତ ଏ ସଂସାର, ଦେହରୁ ଲୋମ ଯେ ପ୍ରକାର ।
ଯେ ବ୍ରହ୍ମ ଦେବ ଜ୍ୟୋତିର୍ମୟ, ଅକ୍ଷର ଅମୂର୍ତ୍ତି ଅବ୍ୟୟ ।
ନିଷ୍କ୍ରିୟ ପୁଣି ନିରୁପାଧି, ନାହିଁ ତାହାଙ୍କ ଅନ୍ତ ଆଦି ।
ବ୍ରହ୍ମରୁ ଜାତ ପ୍ରାଣ ମନ, ଇନ୍ଦ୍ରିୟ ଆକାଶ ପବନ ।
ପୃଥିବୀ ସଲିଳ ଯେ ଜ୍ୟୋତି, ପ୍ରକାଶ ତହୁଁ ହୋଇଛନ୍ତି ।
ବିରାଟପୁରୁଷ ପ୍ରକାଶି—, ଛନ୍ତି ଅନନ୍ତ ରୂପରାଶି ।
ଦ୍ୟୁଲୋକ ତାହାଙ୍କର ଛବି, ନୟନ ବେନି ଶଶୀ ରବି ।
ଦଶଦିଗ ଯେ ତାଙ୍କ କର୍ଣ୍ଣ, ଜୀବନସ୍ୱରୂପ ପବନ ।
ତାହାଙ୍କ ବାକ୍ୟ ବେଦମୟ, ଅନନ୍ତ ତାହାଙ୍କ ହୃଦୟ ।
ଚରଣୁ ପୃଥ୍ୱୀ ହେଲା ଜାତ, ଶରୀର ତାଙ୍କ ସର୍ବଭୂତ ।
ଅନଳ ସୂର୍ଯ୍ୟ ସୋମ ଜଳ, ଓଷଧି ପୃଥିବୀମଣ୍ଡଳ ।
ନାରୀ ପୁରୁଷ ଜୀବମାନ, ତାହାଙ୍କଠାରେ ବର୍ତ୍ତମାନ ।
ଋକ୍ ଯଜୁ ସାମ ବେଦ ତିନି, ଉଦ୍‌ଭବ ତାଙ୍କ ତେଜ ଘେନି
ଯଜ୍ଞ ଦକ୍ଷିଣା କର୍ମମାନ, ଏ ସର୍ବ ତାହାଙ୍କ ଭିଆଣ ।

ମାସ ବତ୍ସର କର୍ମଫଳ, ପ୍ରକାଶେ ମହିମା କେବଳ ।
ମନୁଷ୍ୟ ପଶୁ ପକ୍ଷୀ କୀଟ, ଗ୍ରୀଷମ ଶରଦ ପ୍ରାବୃଟ ।
ସାଗର ଗିରି ଜଳାଶୟ, ଓଷଧି ଧାନ୍ୟ ଶସ୍ୟଚୟ ।
ପ୍ରାଣ ଅପାନ ଦାନ ବ୍ୟାନ, ଏ ସବ ବ୍ରହ୍ମଙ୍କ ଭିଆଣ ।
ଏସବୁ ଜାତ ସ୍ଥୂଳ ଦେହ, ସେ ପୁଣି ଲିଙ୍ଗଦେହଗେହ ।
ଅଟନ୍ତି ପରଂବ୍ରହ୍ମ ସାର, ସକଳ ଜ୍ଞାନର ଆଧାର ।
ହେଲେକ ଅବିଦ୍ୟା ବିନାଶ, ହୁଏଟି ସୁଜ୍ଞାନ ପ୍ରକାଶ ।
ଆତ୍ମବୋଧରୁ ବ୍ରହ୍ମବୋଧ,ହେଲେକ ପାଇବ ପ୍ରବୋଧ ।
ଚିନ୍ତି ଏ ସବ ବିବରଣ, ଶୌନକ ସ୍ଥିର କର ମନ ।

———

## ଚତୁର୍ଥ ମୁଣ୍ଡକ

ପ୍ରଶ୍ନ

କରୁଣା କରି ଭଗବାନ, ଅରୂପ ପରଂବ୍ରହ୍ମଜ୍ଞାନ ।
ହେବ ମୁଁ ପ୍ରାପ୍ତ କି ପ୍ରକାର, ବୋଲନ୍ତୁ ସେହି କଥା ସାର

ଉତ୍ତର

ବ୍ରହ୍ମ ବ୍ୟାପକ ଚରାଚରେ, ଧାରଣା କରିବ ମନରେ ।
ବାହ୍ୟ ଇନ୍ଦ୍ରିୟ କଦାଚନ, ନ ପାନ୍ତି ତାହାଙ୍କ ଦର୍ଶନ ।
ସେ ବ୍ରହ୍ମ ହୃଦୟକନ୍ଦରେ, ଅଛନ୍ତି ଜାଣିବ ମନରେ ।
ଶବ୍ଦ ସକଳ ଶୁଣେ କର୍ଣ୍ଣ, ବର୍ଣ୍ଣ ଯେ ଦେଖଇ ନୟନ ।
ଜିହ୍ୱା ଗ୍ରହଣ କରେ ରସ, ଜାଣଇ ତ୍ୱକ ଯେ ପରଶ ।
ସେପରି ପରଂବ୍ରହ୍ମ ଭାବ, ମନେ କରିବ ଅନୁଭବ ।
ସେ ପରଂବ୍ରହ୍ମ ପରାତ୍ପର, ଅଣୁରୁ ମଧ୍ୟ ସୂକ୍ଷ୍ମତର ।
ମନକୁ କରି ସୂକ୍ଷ୍ମତମ, ଅନୁଭବିବ ପରଂବ୍ରହ୍ମ ।
ଉପନିଷଦ ଧନୁ ଜାଣ, ଧ୍ୟାନନିମଗ୍ନ ମନ ବାଣ ।
ଇନ୍ଦ୍ରିୟମାନ ନିବର୍ତ୍ତନ, ତାହାକୁ ଜାଣ ଆକର୍ଷଣ ।
ପରଂବ୍ରହ୍ମକୁ ଲକ୍ଷ୍ୟ କରି, ଯେ ଖିବ ମନ ବାଣ ପରି ।
ହେଲେକ ଏକାଗ୍ର ଚିନ୍ମୟ, ବିନ୍ଧିବ ଲକ୍ଷ୍ୟକୁ ନିଶ୍ଚୟ ।
ଅଥବା ଧନୁ ଯେ ଓଁକାର, ବିଶୁଦ୍ଧ ଆତ୍ମା ଅଟେ ଶର ।
ପରଂବ୍ରହ୍ମକୁ କରି ଲକ୍ଷ୍ୟ, ବିନ୍ଧିଲେ ଭେଟିବ ପ୍ରତ୍ୟକ୍ଷ ।
ଶର ଯେମନ୍ତ ଲକ୍ଷ୍ୟେ ବାଜେ, ସାଧକ ପରଂବ୍ରହ୍ମେ ବିଜେ
ପ୍ରତ୍ୟକ୍ଷ ଉଭୟ ପରୋକ୍ଷ, ଇହଲୋକ ଯେ ପରଲୋକ ।
ଇନ୍ଦ୍ରିୟବର୍ଗ ପ୍ରାଣ ମନ, ଭାଳିବ ବସି ଅନୁକ୍ଷଣ ।
ପ୍ରଶସ୍ତ ଆତ୍ମରୂପ ଜାଣି, ମୁକ୍ତସ୍ୱରୂପ ଆତ୍ମଜ୍ଞାନ ।
ସଂସାରସିନ୍ଧୁ ପାର ହେତୁ, ଏକହିଁ ବ୍ରହ୍ମନାମ ସେତୁ ।
ସେ ପରଂବ୍ରହ୍ମ ମନୋମୟ, ବ୍ୟାପିଣ ଅଛନ୍ତି ହୃଦୟ ।
ବ୍ରହ୍ମ ଜୀବନସାରଭୂତ, ଜାଣିଲେ ହେବ ଯେ ଅମୃତ ।
ଜୀବ ଚୈତନ୍ୟ ଅହଙ୍କାର, ବ୍ରହ୍ମରେ ହେବଟି ପ୍ରହାର ।
ଜନ୍ମିବ ତେବେ ତୁମ୍ଭ ଜ୍ଞାନ,କାହିଁ ବା ବ୍ରହ୍ମ କାହିଁ ପ୍ରାଣ ।
କାହିଁ ବା ତୁମ୍ଭେ କାହିଁ ବ୍ରହ୍ମ, ଏହି ଉଭୟ ଏକ ଆତ୍ମ ।
କାହିଁ ବା ଜ୍ଞାତା କାହିଁ ଜ୍ଞେୟ,କିଅବା ଧ୍ୟାନ କିବାଧ୍ୟେୟ ।
କରମ ବାସନା ବିବେକ, ସକଳ ପଦାର୍ଥ ଯେ ଏକ ।
କାହିଁ ବା ରୂପ କାହିଁ ଗୁଣ, ମାୟା ମୋହାଦି ବସ୍ତୁ ପୁଣ ।
ସୂର୍ଯ୍ୟ ବା ଚନ୍ଦ୍ର ତାରା ଗ୍ରହ, ଆକାଶ ବ୍ରହ୍ମାଣ୍ଡନିବହ ।
ବ୍ରହ୍ମଙ୍କ ମହିମା ପ୍ରକାଶ, ବିଶ୍ୱେ ଅଟନ୍ତି ଉଦାସ ।
ହେ ବିପ୍ର ତୁମ୍ଭେ ଜ୍ଞାନନେତ୍ରେ,ଦେଖିବ ତାହାଙ୍କୁ ସର୍ବତ୍ରେ ।
କାଳରେ ଏ ବିଶ୍ୱ ସମସ୍ତ, ନିଶ୍ଚୟ ହେବ ବିଲୁପତ ।
ମାତ୍ରକ ଶୌନକ ସୁଧୀର, ଅଟନ୍ତି ବ୍ରହ୍ମ ବସ୍ତୁ ସ୍ଥିର ।

———

## ପଞ୍ଚମ ମୁଣ୍ଡକ

ଦୁଇଟି ପକ୍ଷୀ ଏକ ବୃକ୍ଷ, ବସିଣ ଅଛନ୍ତି ପ୍ରତ୍ୟକ୍ଷେ ।
ଗୋଟିଏ ପକ୍ଷୀ ଭୁଞ୍ଜେ ଫଳ, ଆନଟି ଦେଖଇ କେବଳ ।
ଲିଙ୍ଗଦେହ ଯେ ଶରୀରରେ, ବସିଣ ଫଳ ଭୋଗ କରେ ।
ମୁକ୍ତାତ୍ମାସ୍ୱରୂପ ଯେ ପକ୍ଷୀ, ଦେହରେ ବସିଥାନ୍ତି ସାକ୍ଷୀ
ଜୀବାତ୍ମା କରନ୍ତି ଭୋଜନ, ମୁକ୍ତାତ୍ମା କରନ୍ତି ଦର୍ଶନ ।
କାମନା କର୍ମ କର୍ମଫଳ, ଜୀବାତ୍ମା ଭୁଞ୍ଜନ୍ତି କେବଳ ।
ସୁଖ ଦୁଃଖ ବା ସ୍ୱାସ୍ଥ୍ୟ ରୋଗ,ଜୀବାତ୍ମା କରେ ଏହା ଭୋଗ ।
ପରମାତ୍ମା ଯେ ଏ ଦେହରେ, ଥାଆନ୍ତି ସତ୍ତ୍ୱ ସ୍ୱରୂପରେ ।
ଜୀବାତ୍ମା ଯେଉଁ କାର୍ଯ୍ୟ କରେ, ଦେଖନ୍ତି ସାକ୍ଷୀସ୍ୱରୂପରେ ।
ନାନା ଯୋନିରେ ଜୀବଗଣ, ଭ୍ରମନ୍ତି ଭୋଗର କାରଣ ।
ଜୀବାତ୍ମା ଭୋଗ ଅବସାନେ, ଗମଇ ପୁଣି ନିଜ ସ୍ଥାନେ ।

ବହୁତ ଜନ୍ମ ଜନ୍ମାନ୍ତରେ, ସୁଖ ଯନ୍ତ୍ରଣା ଭୋଗ କରେ ।
ଗୁରୁ ଯେବେ ଦେଲେ ଶିକ୍ଷାଦାନ, ଉଦୟ ହୁଏ ଦିବ୍ୟ ଜ୍ଞାନ ।
ଅହିଂସା ସତ୍ୟ ତ୍ୟାଗ ଶମ, ଏ ସର୍ବ କର ହୃଦଙ୍ଗମ ।
ହୋଇଣ ବ୍ରହ୍ମଜ୍ଞାନଯୁକ୍ତ, ଜୀବାତ୍ମା ହୋଇପାରେ ମୁକ୍ତ ।
ସେକାଳେ ଦେହ ମୃତ୍ୟୁ ଜରା, ଦୁଃଖ ସମ୍ପଦ ପରମ୍ପରା ।
ଏ ସର୍ବ ଘୁଞ୍ଚି ଯିବ ଶୂନ୍ୟେ, ଦେଖିବ ବ୍ରହ୍ମଙ୍କୁ ବ୍ରହ୍ମାଣ୍ଡେ ।
ସେ କାଳେ ହୋଇ ଅଚଞ୍ଚଳ, ଜୀବାତ୍ମା ଭୁଞ୍ଜିବେ ନିଷ୍କଳ
ସାମାନ୍ୟ ଜୀବ ସେ କାଳରେ, ମିଳଇ ଅନନ୍ତ ଦେହରେ ।
ହେବ ସେକାଳେ ଜ୍ଞାନୋଦୟ, ପ୍ରପଞ୍ଚ ଅଟେ ବ୍ରହ୍ମମୟ ।
ମୁଁ ବ୍ରହ୍ମ ବ୍ରହ୍ମ ମୋ ଆଧାର, ଜନ୍ମିବ ଜ୍ଞାନ ଏପ୍ରକାର ।
କେବଳ ବ୍ରହ୍ମେ ସମାଧାନ, ନ ଥିବ ଅନ୍ୟରୂପ ଜ୍ଞାନ ।

ପ୍ରଶ୍ନ

ସେହି ଯେ ନିରଞ୍ଜନ ଭାବ, କାହିଁ ମୁଁ କରିପାରେଁ ଲାଭ ।

ଉତ୍ତର

ନେଲେକ ସତ୍ୟର ଆଶ୍ରୟ, ହେବ ଏରୂପ ଜ୍ଞାନୋଦୟ ।
ନ ଥିବ ସୁଖ ଦୁଃଖ ଆଦି, ଜନ୍ମିବ ନିଷ୍କଳ ଉପାଧି ।
ଆତୁରାଇବା ରିପୁଚୟ, ସହଜେ ହୋଇଯିବେ କ୍ଷୟ ।
କାମନା, କର୍ମ, କର୍ମଫଳ; ଅନ୍ତର ହେବ ଏ ସକଳ ।
ନିର୍ମଳ ଭାବ ଧରି ମନ, ଅନୁଭବିବେ ନିରଞ୍ଜନ ।
ଯେ ଲୋକ ଅଟେ ଅବିବେକୀ, ନପାରେ ପରଂବ୍ରହ୍ମେ ଦେଖି
ବିବେକୀ ବୈରାଗୀ ଅନ୍ତରେ, ବ୍ରହ୍ମ ବିରାଜେ ନିରନ୍ତରେ ।
ଜୀବ ଦେହରେ ବ୍ରହ୍ମବସ୍ତୁ, ବାସ କରନ୍ତି ନିତ୍ୟ କିନ୍ତୁ ।
ସେ ବ୍ରହ୍ମ ଇନ୍ଦ୍ରିୟ ଅତୀତ, ବିଶ୍ୱାସେ ଲଭିବ ନିଶ୍ଚିତ ।
ନିର୍ମଳ ଅଟେ ଯାହା ମନ, ସେ କରେ ତାହାଙ୍କୁ ଦର୍ଶନ ।
ସାଧକ ନିତ୍ୟେ ସାଧନରେ, ବ୍ରହ୍ମ ଦର୍ଶନ କରିପାରେ ।
ଜୀବମାନଙ୍କ ସର୍ବ ଚିତ୍ତ, ଇନ୍ଦ୍ରିୟେ ଅଛି ଆଚ୍ଛାଦିତ ।
ସଦା ସେ ଜୀବ ମାୟାମୋହେ, ଆଚ୍ଛନ୍ନ ରହିଛି ବିଷୟେ ।
ଯେ ଜ୍ଞାନବନ୍ତ ମହାଭାଗ, ମୋହକୁ କରିପାରେ ତ୍ୟାଗ ।
ସେ କରିପାରେ ହୃଦଙ୍ଗମ, ବ୍ରହ୍ମାଣ୍ଡପତି ପରଂବ୍ରହ୍ମ ।
ଯେ ଆତ୍ମଚିନ୍ତା କରିପାରେ, ସେ ଜାଣିପାରେ ସାରତ୍‌ସାରେ

---

## ଷଷ୍ଠ ମୁଣ୍ଡକ

ସର୍ବ ଭୂତରେ ଛନ୍ତି ବ୍ରହ୍ମ, ଏ କଥା କର ହୃଦଙ୍ଗମ ।
ଜାଣେ ଯେ ଏ ବୃତ୍ତାନ୍ତ ସାର, ଜନ୍ମ ନ ଲଭେ ପୁନର୍ବାର ।
ମାନବ କାମନାର ଫଳେ, ଜନ୍ମ ଲଭଇ ଧରାତଳେ ।
ସେହି କାମନା ହେଲେ ନଷ୍ଟ, ମାନବ ପାଏ ନାହିଁ କଷ୍ଟ ।
କାରଣ ନାଶେ କାର୍ଯ୍ୟ ନାଶ, ଏ କଥା କରିବ ବିଶ୍ୱାସ ।
କଲେକ ବେଦ ଅଧ୍ୟୟନ, ଅଥବା ଶାସ୍ତ୍ରାର୍ଥ ସ୍ମରଣ ।
ବହୁତ ଗ୍ରନ୍ଥ ପଢ଼ି କିନ୍ତୁ, ଲବ୍ଧ ନ ହେବ ବ୍ରହ୍ମବସ୍ତୁ ।
ଯେ ବୁଝିପାରେ ଆତ୍ମଭାବ, ସେ କରେ ପରଂବ୍ରହ୍ମ ଲାଭ ।
ବ୍ରହ୍ମ ମହିମା ଗରୀୟସୀ, ବୁଝଇ ଆତ୍ମତତ୍ତ୍ୱଦର୍ଶୀ ।
ଭୋଗ ବାସନା ଇଚ୍ଛା ତେଜି,ଥିବ ଯେ ଆତ୍ମତତ୍ତ୍ୱ ହେଜି ।
ଏ ବସ୍ତୁ ଅଟଇ ମୋହର, ଏ ଭାବ ନ ହେଲେ ଅନ୍ତର ।
ମାୟାରେ ମଗ୍ନ ଥିବ କିନ୍ତୁ, ଲଭ ନ ହେବେ ବ୍ରହ୍ମବସ୍ତୁ ।
ଭୋଗେଚ୍ଛାତେଜେଯେକୌଶଳେ,ବଳୀସେଅଟେଆତ୍ମାବଳେ
ଯେ ଜିଣିପାରେ ଇନ୍ଦ୍ରିୟକୁ, ମହର୍ଷି ଜାଣିବ ତାହାକୁ ।
ଯେ ରଖେ ପରଂବ୍ରହ୍ମେ ଭକ୍ତି, ଲଭେ ସେ ନିରୁପାଧି ମୁକ୍ତି
ଏ ଦେହ ଇନ୍ଦ୍ରିୟନିଚୟ, ସମସ୍ତ ଅଟେ ବ୍ରହ୍ମମୟ ।
କଳାଦି ଆତ୍ମା ଜ୍ଞାନ କର୍ମ, ସମସ୍ତ ଜାଣ ପରଂବ୍ରହ୍ମ ।
ଯେତେ ବିଭିନ୍ନ ନଦ ନଦୀ, ସମସ୍ତେ ମିଳନ୍ତି ଜଳଧି ।
ହେଲେହେଁ ନଦୀ ଭିନ୍ନଭିନ୍ନ, ନ ଥାଏ ସେକାଳରେ ଚିହ୍ନ
ସ୍ୱଧର୍ମ ତେଜନ୍ତି ସକଳେ, ମିଶିଲେ ଯାଇ ସିନ୍ଧୁଜଳେ ।
ତେସନେ ତେଜି ରୂପନାମେ, ମିଳନ୍ତି ସର୍ବେ ବ୍ରହ୍ମଧାମେ ।
ଜୀବ ସେକାଳେ ହୁଏ ବ୍ରହ୍ମ, ସକଳ ବ୍ରହ୍ମବସ୍ତୁ ସମ ।
ଯେ ବ୍ରହ୍ମନିଷ୍ଠ ଶ୍ରଦ୍ଧାବାନ, ସେ ଲବ୍ଧ କରେ ବ୍ରହ୍ମଜ୍ଞାନ ।
ଅଙ୍ଗିରା ଏ କଥା ପୂର୍ବରେ, ବୋଇଲେ ଶୌନକ ପାଶରେ
ସେହିଠୁ ଗୁରୁ ପରମ୍ପରା, ବ୍ୟାପିଲା ବ୍ରହ୍ମବିଦ୍ୟା ଧରା ।
ବିଧି ପୂର୍ବକ ଯେଉଁ ଲୋକ, ନ ଲଭେ ବ୍ରହ୍ମଜ୍ଞାନାଲୋକ ।
ଏ ଶାସ୍ତ୍ରକଥା ଆଲୋଚନା, ତା ପକ୍ଷେ ଅଟେ ବିଡ଼ମ୍ବନା ।
ଭକ୍ତିପୂର୍ବକ ବାରମ୍ବାର, ଋଷିଙ୍କୁ କରେଁ ନମସ୍କାର ।

ଇତି ମୁଣ୍ଡକୋପନିଷଦ୍ ସମାପ୍ତ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

## କୈବଲ୍ୟୋପନିଷତ୍

ଆଶ୍ୱଲାୟନ ପିତାମହେ, ପୁଚ୍ଛିଲେ ଯାଇ ସବିନୟେ ।
ଶୁଣିବି ପ୍ରଭୋ ବ୍ରହ୍ମବିଦ୍ୟା, ଯାହାକି ଜଗତେ ପ୍ରସିଦ୍ଧା ।
ଯେ ବିଦ୍ୟା ପ୍ରଭାବରେ ଲୋକ, ତେଜନ୍ତି ସର୍ବପାପ ଶୋକ ।
ସେ ପରଂବ୍ରହ୍ମେ ଅକ୍ରମରେ, ଲୀନ ହେବି ମୁଁ ସହଜରେ ।
ଏ କଥା ଶୁଣି ପିତାମହ, ବୋଇଲେ ହୋଇଣ ସଦୟ ।
ହେ ଆଶ୍ୱଲାୟନ ଯେ କଥା, ପୁଚ୍ଛିଲ ଶୁଣ ସେ ବାରତା ।
ଯେ ବିଦ୍ୟା କଲେକ ଶ୍ରବଣ, ହୁଏଟି ବନ୍ଧନ ମୋଚନ ।
ପ୍ରକୃତ ସେ ବ୍ରହ୍ମ ପଦାର୍ଥ, ଅନନ୍ତ ଅଚିନ୍ତ୍ୟ ନିତାନ୍ତ ।
ସେ ବ୍ରହ୍ମ ମୂର୍ତ୍ତିବିରହିତ, ନିଶ୍ଚୟ ବାଙ୍‌ମନ-ଅତୀତ ।
ସମସ୍ତ ବିଶ୍ୱର କାରଣ; ପ୍ରାଚୀନ, ନିତ୍ୟ ସନାତନ ।
ବିଶ୍ୱବ୍ୟାପକ ବିଶ୍ୱମୟ, ପୁଣି ସେ ଚିଦାନନ୍ଦମୟ ।
ଜାଣିଲେ ହୃଦ କେନ୍ଦ୍ରସ୍ଥଳେ, ଅବିଦ୍ୟା ନାଶ ଯାଏ ବଳେ ।
ସର୍ବଭୂତରେ ଆତ୍ମବୋଧ, କରିବ ଥାଇ ନିର୍ବିରୋଧ ।
ଏ ଜ୍ଞାନ ଲବ୍ଧ ହେଲେ ତବ, କରିବ ବ୍ରହ୍ମ ଅନୁଭବ ।
ଏ ଜ୍ଞାନ ବିନା ଆତ୍ମମୁକ୍ତ, ନାହିଁ ଜାଣିବ ସାରଯୁକ୍ତ ।
ଘର୍ଷଣେ ସମିଧଯୁଗଳ, ତହିଁରୁ ଜନମେ ଅନଳ ।
ଆତ୍ମା ପ୍ରଣବ ଘର୍ଷଣରେ, ଜ୍ଞାନାଗ୍ନି ଜନ୍ମ ସହଜରେ ।
ଜ୍ଞାନାଗ୍ନି କରଇ ଦହନ, ମନର ପାପ ଆବର୍ଜନ ।
ଦେହୀ ଯେସନେ ସ୍ୱପ୍ନଯୋଗେ, ବିବିଧ ସୁଖ ଦୁଃଖଭୋଗେ
ତେସନେ ଆତ୍ମମାୟାବିଯୋଗେ,ଭ୍ରମିଣ ସଂସାରେ ବିଶେଷେ ।
ଅନିତ୍ୟ କଥା ନିତ୍ୟ ଜାଣି, ଭୁଞ୍ଜଇ କର୍ମଫଳ ପ୍ରାଣୀ ।
ନିଦ୍ରା ବସ୍ଥାରେ ଦେହୀଗଣ, ଥାଆନ୍ତି ଯେହ୍ନେ ଅଚେତନ ।
ତେସନେ ଭୋଗ ଅବସାନେ, ନିଶ୍ଚିନ୍ତ ଥାନ୍ତି ପ୍ରାଣୀମାନେ
ଧରଣ ସ୍ଥୂଳ ସୂକ୍ଷ୍ମ ଜ୍ଞାନ, ବାହାରେ ବିଶ୍ୱ ମଧ୍ୟେ ପ୍ରାଣ ।
ରଜ୍ଜୁରେ ସର୍ପ ଭ୍ରମ ପରି, ଏ ଜୀବ ସଂସାରେ ସଞ୍ଚରି ।
ଯେ ମହାପ୍ରଭୁ ଆତ୍ମମୟ, ମଣେ ତା ସଂସାର ବିଷୟ ।
ବ୍ରହ୍ମରୁ ଜାତ ଯାବତୀୟ, ଜୀବନ ମନସ ଇନ୍ଦ୍ରିୟ ।
ବିଶ୍ୱର ଆଧାର ମହାନ, ସୂକ୍ଷ୍ମରୁ ସୂକ୍ଷ୍ମ ସର୍ବ ପ୍ରାଣ ।
ସେ ନିତ୍ୟ ସତ୍ୟ ସର୍ବଭୂତ, ତହିଁରୁ ସକଳ ଉଦ୍‌ଭୂତ ।
ସ୍ୱପ୍ନ ବା ସୁଷୁପ୍ତି ଜାଗ୍ରତ, ନାହିଁ ତହିଁରେ ଏ ସମସ୍ତ ।
ସେହି ଯେ ନିତ୍ୟ ଭଗବାନ, ଆତ୍ମସ୍ୱରୂପେ କର ଜ୍ଞାନ ।
ବ୍ରହ୍ମଙ୍କୁ ଆତ୍ମରୂପ ଜାଣି, ବନ୍ଧନୁ ମୁକ୍ତ ହୁଏ ପ୍ରାଣୀ ।
ତ୍ରିଭବ ଭୋକ୍ତା ଭୋଗ୍ୟ ଭୋଗ, କେବଳ ଜୀବର ସଂଯୋଗ
ସେ ବ୍ରହ୍ମ ଏ ସର୍ବ ପ୍ରେରକ; କେବଳ ଶିବମାର୍ଗ ଦର୍ଶକ ।
ବ୍ରହ୍ମରୁ ସକଳ ଉଦିତ, ବ୍ରହ୍ମରେ ସର୍ବ ନିପତିତ ।
ବ୍ରହ୍ମରେ ସର୍ବ ହେବ ଲୟ, ଏ କଥା ଜାଣିବ ନିଶ୍ଚୟ ।
ଅଣୁରୁ ସୂକ୍ଷ୍ମ ସେହି ବ୍ରହ୍ମ, ବୃହତ୍ତୁଁ ପୁଣି ବୃହତ୍ତମ ।
ମଙ୍ଗଳସ୍ୱରୂପ ଈଶ୍ୱର, ବ୍ରହ୍ମହିଁ ବିଶ୍ୱ ଚରାଚର ।
ସେ ପରଂବ୍ରହ୍ମ ନିରାକାର, ସକଳ ଜୀବର ଆଧାର ।
ସେ ବ୍ରହ୍ମ ଅଚିନ୍ତ୍ୟଶକତି, ତା ଠାରୁ ସକଳ ଉତ୍ପତ୍ତି ।
ମୁହିଁ ସେ ବ୍ରହ୍ମ ଏହା ଜାଣି, ବନ୍ଧନୁ ମୁକ୍ତ ହୁଏ ପ୍ରାଣୀ ।
ନ ଯିବ ତେବେ ପାପ ମତି, ଲଭିବ କୈବଲ୍ୟ ମୁକତି ।

ଇତି କୈବଲ୍ୟୋପନିଷତ୍ ସମାପ୍ତ ।

ଓ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

———

# ଭୂମିକା

( "ଅବସରବାସରେ" ୧ମ ସଂସ୍କରଣ )

ଗତ ପାଞ୍ଚବର୍ଷ ପୂର୍ବେ ଥରେ ପ୍ରାୟ ଆଠ ଦଶ ମାସ ପର୍ଯ୍ୟନ୍ତ ମୁଁ ନିତାନ୍ତ ପୀଡ଼ିତ ଓ ଶଯ୍ୟାଗତ ହୋଇ ପଡ଼ିଥିଲି। ଉତ୍‌ଥାନ ଶକ୍ତି ପ୍ରାୟ ନ ଥିଲି, ଅନ୍ୟାନ୍ୟ ପ୍ରକାର ବିପଦଜାଲ ମଧ୍ୟ ମୋତେ ଅବସନ୍ନ କରି ପକାଇଥିଲା । ସେହି ଦାରୁଣ ଦୁର୍ଯୋଗ ସମୟରେ ଦୟାମୟ ପ୍ରଭୁ ମୋ କ୍ଷୀଣ ଜୀବନ ରକ୍ଷା ନିମନ୍ତେ କୃପା କରି ଦୁଇଗୋଟି ଉପାୟ ବିଧାନ କରି ଦେଇଥିଲେ । ଗୋଟିଏ—ବାଲେଶ୍ୱରର ଅନ୍ୟତମ ପ୍ରସିଦ୍ଧ ଜମିଦାର ବାବୁ ଭଗବାନ ଚନ୍ଦ୍ର ଦାସଙ୍କ ଯୁବକ ପୁତ୍ର ଶ୍ରୀମାନ୍ ପୂର୍ଣ୍ଣଚନ୍ଦ୍ର ଦାସର ସେବା ଶୁଶ୍ରୂଷା; ଦ୍ୱିତୀୟ—କବିତା ଲେଖିବାର ପ୍ରବୃତ୍ତି ।

ପୀଡ଼ାଜନିତ ଯନ୍ତ୍ରଣା ବା ଅନ୍ୟ ପ୍ରକାର ବିପତ୍ତିପାତ ହେତୁରୁ ଚିତ୍ତ ଅବସନ୍ନ ହୋଇ ପଡ଼ିଲେ ଶାନ୍ତି ଓ ଧୈର୍ଯ୍ୟ ଲାଭ ନିମନ୍ତେ କବିତା ରଚନା ବା ଗ୍ରନ୍ଥପାଠରେ ମନୋନିବେଶ କରେଁ । ଯାହା କିଛି ଦୃଷ୍ଟିଗୋଚରରେ ଆସେ ବା ଯେଉଁ ଭାବ ମନରେ ଉଦୟ ହୁଏ, କବିତାକାରରେ ରଚି କରି ପକାଏଁ । ତାଦୃଶ ଦୁର୍ଯୋଗ ବା ବିଶ୍ରାମକାଳୀନ କବିତା ଆଲୋଚନା ଚିତ୍ତରେ ପ୍ରସନ୍ନତା ଲାଭର ଗୋଟିଏ ସୁମଙ୍ଗଳ ଉପାୟ ବୋଲି ସମ୍ପୂର୍ଣ୍ଣରୂପେ ଅନୁଭବ କରିଥିଲି । ପୁସ୍ତକଗତ ଅଧିକାଂଶ କବିତା ସେହି ଦୁର୍ଯୋଗ ସମୟରେ ଲିଖିତ । ଏଥି ମଧ୍ୟରୁ କେତେଗୁଡ଼ିଏ କବିତା ନାନା ସାମୟିକ ପତ୍ରିକାରେ ଏଥିପୂର୍ବେ ପ୍ରକାଶିତ ହୋଇଥିଲା ।

ଏଥିରେ ଦାର୍ଶନିକ, ଐତିହାସିକ, ପୌରାଣିକ, ଜୀବନଚରିତ, ମନସ୍ତତ୍ତ୍ୱ ସମ୍ବନ୍ଧୀୟ ଏବଂ ସାମାଜିକ ପ୍ରସଙ୍ଗର କେତେଗୁଡ଼ିଏ କବିତା ସଙ୍ଗୃହୀତ ଅଛି । ଅଳ୍ପବୟସ୍କ ବାଳକବାଳିକାମାନଙ୍କ ଚିତ୍ତବିନୋଦନ ଅଥଚ ଉପଦେଶପୂର୍ଣ୍ଣ କେତେଗୁଡ଼ିଏ କବିତା ମଧ୍ୟ ସନ୍ନିବେଶ କରିବାକୁ ତ୍ରୁଟି କରି ନାହିଁ । ଏଣିକି କି ଧର୍ମପିପାସୁ ପରିଣତବୟସ୍କ ଲୋକ, କି କାବ୍ୟାମୋଦି ଶିକ୍ଷିତ ଯୁବକ, କି ଚପଳମତି ଆମୋଦପ୍ରିୟ ବାଳକ ବାଳିକା, ସର୍ବଶ୍ରେଣୀ ଲୋକ ସ୍ୱୀୟ ସ୍ୱୀୟ ପାଠୋପଯୋଗୀ କିଛି କିଛି କବିତା ଏଥିରୁ ପ୍ରାପ୍ତ ହେବେ ବୋଲି ମୁଁ ଆଶାକରେଁ । ଏଥିରେ ଧର୍ମନୀତିସମ୍ବନ୍ଧୀୟ କେତେଗୁଡ଼ିଏ କବିତା ଥିଲେ ମଧ୍ୟ ସେ ସମସ୍ତ ସର୍ବବାଦି-ସମ୍ମତ ଅଟେ; ଏଣିକି କି ହିନ୍ଦୁ, କି ମୁସଲମାନ, କି ଖ୍ରୀଷ୍ଟାନ୍ କାହାରି ପକ୍ଷରେ ପାଠ ବିଷୟରେ ଆପତ୍ତି ଥିବାର କାରଣାଭାବ ।

ଶରୀର ଓ ମନ ଦୌର୍ବଲ୍ୟ ସମୟରେ ପ୍ରସିଦ୍ଧ ଗ୍ରନ୍ଥପାଠ ସକାଶେ ସାଧାରଣଲୋକର ବିଶେଷ ପ୍ରବୃତ୍ତି ଜାତହୁଏ ନାହିଁ; ସୁତରାଂ ସମୟୋପଯୋଗୀ ସୁକୁମାର ସାହିତ୍ୟ ପ୍ରୟୋଜନ । ଉନ୍ନତ ଭାଷାମାନ-ଙ୍କରେ ତାଦୃଶ ଗ୍ରନ୍ଥ ବହୁଳ ପରିମାଣରେ ପ୍ରଚଳିତ ଥିବାର ଦେଖାଯାଏ । ମାତ୍ର ଉତ୍କଳଭାଷାରେ ନିତାନ୍ତ

ବିରଳ । ମାନବ ଆଶାର ଦାସ । ମୋହର ସହୃଦୟ ସ୍ୱଜାତୀୟ ଭ୍ରାତା ଭଗ୍ନୀଗଣ ଏହି ସାମାନ୍ୟ ପୁସ୍ତକ ଖଣ୍ଡିକୁ ଉକ୍ତ ଶ୍ରେଣୀ ପୁସ୍ତକ ମଧ୍ୟରେ ଗଣନା କରିବେ, ମାଦୃଶ ଦୁର୍ବଳମନା ଲୋକ ପକ୍ଷରେ ଏପରି ଆଶା କରିବା ସ୍ୱାଭାବିକ ।

ଧର୍ମକୋଟ ଅଧୀଶ୍ୱର ଶ୍ରୀଯୁକ୍ତ ମଦନମୋହନ ସିଂହ ମହୋଦୟ ସ୍ୱେଚ୍ଛାପ୍ରବୃତ୍ତ ହୋଇ ଏହି ପୁସ୍ତକ ମୁଦ୍ରଣ ସକାଶେ ଏକଶତ ଟଙ୍କା ଦାନ କରିଥିବାରୁ ଚିରଜୀବନ କୃତଜ୍ଞତାପାଶରେ ତାହାଙ୍କ ନିକଟରେ ଆବଦ୍ଧ ରହିଲି ।

ଦୂରବର୍ତ୍ତୀ ସ୍ଥାନରେ ମୁଦ୍ରଣନିବନ୍ଧ ପୁନଃ ପୁନଃ ପ୍ରୁଫ ଦେଖିବା ସୁଯୋଗାଭାବହେତୁ ପୁସ୍ତକ ମଧ୍ୟରେ କେତେଗୁଡ଼ିଏ ବର୍ଣ୍ଣାଶୁଦ୍ଧି ରହି ଯାଇଅଛି । ଆଶା ଓ ପ୍ରାର୍ଥନା ପାଠକଗଣ କ୍ଷମା ପ୍ରଦାନ କରିବେ ।

ତା ୧ । ୨ । ୧୯୦୮ ଫେବୃୟାରି<br>ମଲ୍ଲିକାଶପୁର,<br>ବାଲେଶ୍ୱର ।

ଶ୍ରୀ ଫକୀରମୋହନ ସେନାପତି

---

# ଭୂମିକା

( **"ଅବସରବାସରେ"** ଦ୍ୱିତୀୟ ସଂସ୍କରଣ )

ଠିକ ୬ ବର୍ଷ ପରେ **'ଅବସରବାସରେ'**ର ଦ୍ୱିତୀୟ ସଂସ୍କରଣ ହେଲା । ଏହି ସଂସ୍କରଣରେ କେତୋଟି ନୂତନ କବିତା ସନ୍ନିବେଶିତ ହୋଇଅଛି ଏବଂ ଅନ୍ୟାନ୍ୟ କେତେକ ପରିବର୍ତ୍ତନ ମଧ୍ୟ କରାଯାଇଅଛି ।

୧୫।୩।୧୯୧୪

ଶ୍ରୀ ଫକୀରମୋହନ ସେନାପତି

---

# ସୂଚୀ

ବିଷୟ — ପୃଷ୍ଠା



## ତୃତୀୟ ଅଧ୍ୟାୟ—ସ୍ଥାନ ବିଶେଷ



## ଚତୁର୍ଥ ଅଧ୍ୟାୟ - ପ୍ରାକୃତିକ ବସ୍ତୁ



ବିଷୟ — ପୃଷ୍ଠା

## ପଞ୍ଚମ ଅଧ୍ୟାୟ—ମାନବ ଜୀବନ

## ଷଷ୍ଠ ଅଧ୍ୟାୟ—ଜରା ଓ ମୃତ୍ୟୁ





## ସପ୍ତମ ଅଧ୍ୟାୟ—ବିବିଧ

# ଅବସର ବାସରେ

## ପ୍ରଥମ ଅଧ୍ୟାୟ

### ଭଗବାନ

#### ମାତୃସ୍ତବ

( ମଙ୍ଗଳ )

କୈବଲ୍ୟଦାୟିନି ମାତଃ ! ତ୍ରିଭୁବନେଶ୍ୱରି !
ମୋ ହୃଦୟେ ବିରାଜିତା ହୁଅ କୃପା କରି ।
ସୁଖଦେ ! ବରଦେ ! ସର୍ବେଶ୍ୱରି ! ଭଗବତି !
ରଚିବି କବିତା, କୃପା କରି ମୋହ ପ୍ରତି ।
ତବ କୃପା ବିନା ମାତଃ ! କେ ଅଛି ଏମନ୍ତ,
ମାନବଦୁର୍ଲ୍ଲଭ ଲଭ୍ୟ କରିବ କବିତ୍ୱ ?
ତସ୍କର ବାଲ୍ମୀକି କବି ମାତଃ ! ତବ ବରେ ।
ଆଦି ଶ୍ରେଷ୍ଠ କବି ନାମେ ଖ୍ୟାତ ଭୁବନରେ ।
ଦେଉନ୍ତୁ ପ୍ରତିଭା ମାତଃ ! କଳୁଷିତ ଜ୍ଞାନେ,
ରଚିବି କବିତାମାଳା, ବଡ଼ ଇଚ୍ଛା ପ୍ରାଣେ ।
ମହାଶକ୍ତି ମହାପ୍ରାଣ କର ମା ! ଏ ଦାସେ,
ସରଳ ଭାଷାରେ ଗୀତ ଗାଏ ଅନାୟାସେ ।
ସତ୍ୟ ମାତଃ ! ନାହିଁ ବିଦ୍ୟା ତପସ୍ୟା ସଞ୍ଚୟ,
ସ୍ପୃହା ବଳେ ଦେବି କବିନାମେ ପରିଚୟ ।
ଦେଇଛ ତ ମାତଃ ! ମୋର ହୃଦେ ଉତ୍ତେଜନା,
ତେଣୁ ଇଚ୍ଛା କରିବାକୁ କବିତା ରଚନା ।
ଜ୍ଞାନାବଧି ନିରବଧି କରୁଛି ସାଧନା,
କୃପାମୟି ! କର କୃପା, ନ କର ବଞ୍ଚନା ।
ବିଶ୍ୱମ୍ଭରି ! ବିଶ୍ୱେଶ୍ୱରି ! ତୁମ୍ଭରି ଆଜ୍ଞାରେ,
ଅକିଞ୍ଚନ ଅଙ୍କ ଦେଲି ଏତ ରଚନାରେ ।

ବସି ମୋ ହୃଦୟେ ଦେଉଅଛ ଜ୍ଞାନେ ବଳ,
ରଚନା ସକାଶେ ଚିତ୍ତ ନିୟତ ଚଞ୍ଚଳ ।
ଭୟ ବା ଉତ୍ସାହ ନାହିଁ ନିନ୍ଦା ସ୍ତୁତି ପ୍ରତି,
ରଚିବି କବିତା, ମାତଃ ! ଦିଅ ଅନୁମତି ।
ନବ ନବ ଭାବରାଶି କରିଦ ପ୍ରକାଶ !
ଏତେ ଉଚ୍ଚ ଆଶା ମଧ୍ୟ କରେ ନାହିଁ ଦାସ ।
ଗାଇବି ମହିମା ତବ, ନିତାନ୍ତ ପ୍ରତ୍ୟାଶା,
କୃପାମୟି ! କୃପା କର, ପୂର୍ଣ୍ଣ ହେଉ ଆଶା ।
ଗାଇବି ପାଇବି ଶାନ୍ତି ଆକୁଳ ଜୀବନେ,
ଦୁରାଶା ମନରେ ପୋଷି ଭରସା ଚରଣେ ।
ଯେ କବିତା ରଚିବି ମୁଁ ତବ ପ୍ରସାଦରେ,
ଗାଇବେ ଉତ୍କଳବାସୀ ସର୍ବେ ନାଚି ନରେ ।
କଣା ମାତ୍ର କରୁଣାରେ ସନ୍ତୋଷ ମୋ ମନ,
ମଣ୍ଡୂକ ଗଣ୍ଡୂଷଜଳେ କରେ ବିଚରଣ ।
କାହା କରୁଣାରେ ମୋର ଏତେ ଅହଙ୍କାର ?
ସର୍ବ ବିଷୟରେ ସର୍ବମୟୀ ମୂଳାଧାର ।
ନାହିଁ ମା, ଯିବାର ଆଶା କୀର୍ତ୍ତିର ମନ୍ଦିର,
ସେବିବି ମୋ ମାତୃଭାଷା କରିଅଛି ସ୍ଥିର ।
ଜନନି ଗୋ ! ତୁମ୍ଭ ପଦେ କରୁଛି ମୁଁ ଅଳି
କୁପୁତ୍ର ଜଞ୍ଜାଳ ଶୁଣି ହୁଅ ନାହିଁ ଟଳି !
କ୍ଷୁଦ୍ର ତାଳ କ୍ଷୁଦ୍ର ରସ ମୋର ସାଧାଗୀତ,
ଗାଇବି ପବିତ୍ର ଶାନ୍ତ କରୁଣ ସଙ୍ଗୀତ ।
ଦାରିଦ୍ର୍ୟଭଞ୍ଜନି ! ସର୍ବ ଦୁଃଖ ନିବାରିଣି !
ଜ୍ଞାନାଧାରେ ବିଶ୍ୱାଧାରେ କାରଣକାରିଣି !

କ୍ଷୀଣ ପ୍ରାଣେ ଦିଅ ମାତଃ ! ମନ୍ତ୍ର ସଞ୍ଜୀବନୀ,
କଳୁଷକଣ୍ଠରେ କରେଁ ବେଦବ୍ୟାଖ୍ୟା ଧ୍ୱନି ।
ଆଦି କବି ମହାଦେବି ! ତୁମ୍ଭର ରଚନା
ଏ ବିଶ୍ୱ ବ୍ରହ୍ମାଣ୍ଡ ନିତ୍ୟ କରୁଛି ଘୋଷଣା ।
ପଙ୍ଗୁ ପାରେ ଲଙ୍ଘି ଗିରି, ମୂକ ଗାଏ ଗୀତ,
ପାଏ ଯେବେ ମାତଃ ! ତବ କରୁଣା କଣିକ ।
ପୃଥିବୀ, ଆକାଶେ କମ୍ବା ଶୟନେ, ସ୍ୱପନେ,
ପ୍ରାଣମୟି ! ପ୍ରାଣରୂପେ ଦେଖୁଛି ନୟନେ ।
ତୁମ୍ଭ ବିନା ତିଳମାତ୍ର ଦେଖି ନାହିଁ ସ୍ଥାନ,
ତୁମ୍ଭେ, ତୁମ୍ଭେ ସବୁ ସ୍ଥାନେ ତୁମ୍ଭେ ବିଦ୍ୟମାନ ।
କଳା କାଷ୍ଠା ରୂପେ ପରିଣାମ ପ୍ରଦାୟିନୀ,
ଶାନ୍ତ ପ୍ରୀତ ଭକ୍ତ ମୁକ୍ତ ଗତି ବିଧାୟିନୀ ।
ଜନନୀ ସ୍ୱରୂପେ କର ସନ୍ତାନ ପାଳନ,
କନ୍ୟାରୂପେ କର ଲୋକ ଆନନ୍ଦ ବର୍ଦ୍ଧନ ।
ଶିକ୍ଷୟିତ୍ରୀରୂପେ ଲୋକେ ଦିଅ ବିଦ୍ୟାଶିକ୍ଷା,
ଗୁରୁ ସ୍ୱରୂପିଣୀ ମାତଃ ! ଦିଅ ଧର୍ମ ଦୀକ୍ଷା ।
ବିଦ୍ୟାରୂପା ! ବିରାଜିତା ମାନବ ହୃଦୟେ,
ନମସ୍ତେ ନମସ୍ତେ ସର୍ବେଶ୍ୱରି ସର୍ବମୟେ !
ସର୍ବଭୂତେ ବିରାଜିତା ଛାୟା ସ୍ୱରୂପରେ,
ଜ୍ଞାନରୂପେ ବିରାଜିତା ମାନବ ଅନ୍ତରେ ।
ଚୈତନ୍ୟରୂପିଣୀ ମାତଃ ! ଚେତନାଦାୟିନି !
ପ୍ରାଣରୂପେ ଅବସ୍ଥିତା, ପ୍ରାଣସ୍ୱରୂପିଣୀ !
ପ୍ରତି ଅଣୁ ପରମାଣୁ ମଧ୍ୟେ ଅବସ୍ଥିତେ !
ସର୍ବମୟି ସର୍ବେଶ୍ୱରି ଜଗତ ପୂଜିତେ !
ପ୍ରାଣ, ମନ ସମର୍ପଣ କରୁଅଛି ତୋତେ,
ନମସ୍ତେ ନମସ୍ତେ ମାତଃ ! ନମସ୍ତେ ନମସ୍ତେ ।

— —

## ଶରଣ

( ଆହାରୀ )

ପଠାଇଛ ମୋତେ ହେ ପ୍ରଭୁ ଜଗତେ,
ଏ କଥା ଥାଉ ମୋ ମନରେ,
ତୁମ୍ଭର ଆଦେଶ ପାଳିବି ବିଶେଷ,
ତୁମ୍ଭ ଦତ୍ତ ବୁଦ୍ଧି ବଳରେ ।
ପ୍ରଭୁ ହେ !
ଏତିକ ମୋହର ପ୍ରାର୍ଥନା
ଘଟୁ ବା ଅନିଷ୍ଟ, ପାଏ ନାନା କଷ୍ଟ,
କର୍ତ୍ତବ୍ୟେ ନ ହେବି ବିମନା ।

ମାୟା ଆକର୍ଷଣ ନିତାନ୍ତ ଭୀଷଣ,
ଧନ ମାନେ ଚିତ୍ତ ଚଞ୍ଚଳ,
ଜଗତ ସଂସାର ସକଳ ଅସାର,
ମୂଳାଧାର ତୁମ୍ଭେ କେବଳ
ପ୍ରଭୁ ହେ !
କୃପା କର ଦିଅ ସୁମତି,
ନ ଲଭୁ ମୋ ମନ, ଜୀବର ଜୀବନ !
ଲୋଭ ଜଗତର ସମ୍ପତ୍ତି ।

ଗତ ଧନ ମାନେ ବୃଥା ଅଭିମାନେ
ଚିତ୍ତ ମୋ ସତତ ଚଞ୍ଚଳ,
ନ ଜାଣିଲି ପ୍ରଭୋ ! ଏ ପଦାର୍ଥ ସବୁ
କ୍ଷଣିକ ମାତ୍ରକ କେବଳ ।
ପ୍ରଭୁ ହେ !
ଏତିକ ମୋହର ପ୍ରାର୍ଥନା,
ଯାଇଛି ଯା ଯାଉ, ତାହା ପାଇଁ ଆଉ
ନ କରେଁ ଯେମନ୍ତ ଶୋଚନା ।

ରୋଗେ, ଭୋଗେ, ଯୋଗେ, ରାଗେ ବା ସୋହାଗେ
ସାଗରେ, ପ୍ରାନ୍ତରେ, କାନ୍ତାରେ;
ପ୍ରଣୟ ଆସରେ, ଦଣ୍ଡ କାରାଗାରେ,
ସକଳ ସମୟେ ସରାଗେ ।
ପ୍ରଭୁ ହେ !
ତୁମ୍ଭଙ୍କୁ କରିବି ସ୍ମରଣ,
ରଖିବି ମନରେ ସର୍ବ ସମୟରେ,
ତୁମ୍ଭେ ଏକ ମାତ୍ର ଶରଣ ।

ଥାଉଁ ମୋ ଚେତନା ଏତିକି ପ୍ରାର୍ଥନା
ପ୍ରଭୁ ହେ ତୁମ୍ଭ ଶ୍ରୀଚରଣେ,
ଯେବେ ନାଡ଼ି କ୍ଷୀଣ ଜ୍ଞାନ ଶକ୍ତି ହୀନ
ହେବ ସେ କାଳରେ ଆପଣେ
ପ୍ରଭୁ ହେ !
ଦେବ କୃପା କରି ଦର୍ଶନ ।
ତୁମ୍ଭ କୃପା ଦେଖି ଶରୀର ଉପେକ୍ଷି
ପ୍ରୟାଣ କରିବ ଜୀବନ ।

ସୁଖେ, ଦୁଃଖେ, ଶୋକେ, ଅନ୍ଧାରେ, ଆଲୋକେ,
ଉତ୍ସବେ ଅଥବା ବିପଦେ,
ସ୍ୱଦେଶେ, ବିଦେଶେ, ନିରାଶେ, ଉଲ୍ଲାସେ,
ବିଷାଦେ ଅଥବା ସମ୍ପଦେ ।
ପ୍ରଭୁ ହେ !
ଏତିକି ମୋର ନିବେଦନ,
ଜୀବନ ବିକଳେ ତୁମ୍ଭ ପଦତଳେ
ପଶିବ ଯେମନ୍ତ ଶରଣ ।

———

## ଗୋଟିଏ ପ୍ରାର୍ଥନା

( ମଙ୍ଗଳ )

ମହାପ୍ରଭୋ ! ବେଳେ ମାତ୍ର ଦେଉନ୍ତୁ ଦର୍ଶନ,
ଅନ୍ଧକାରେ ହେଉଛି ତ ବ୍ୟାକୁଳ ମୋ ମନ ।
ଯେ ରୂପ ଦେଖିଲେ ପ୍ରଭୋ ! ଲଭିବି ସାନ୍ତ୍ୱନା,
ଦେଖାଅ ସେ ରୂପ ମୋତେ, ନ କର ବଞ୍ଚନା ।
ନ ପାଇ ତୁମ୍ଭଙ୍କୁ ଚିତ୍ତ ହେଉଛି ଚଞ୍ଚଳ,
ଜାଣ ତ ହେ ପ୍ରଭୋ ! ମନ ନିତାନ୍ତ ଦୁର୍ବଳ ।
ତୁମ୍ଭର ମହିମା ଗୁପ୍ତ ପଡ଼ୁ ମୋ ହୃଦୟେ,
ସୁଖେ ଦୁଃଖେ ନିରେଖିବି ସକଳ ସମୟେ ।
ଦର୍ଶନ କରିବି ବେଳେ ହେ ଜଗତସାଇଁ !
ଦ୍ୱିତୀୟ ପ୍ରାର୍ଥନା ମୋର ଆଉ କିଛି ନାହିଁ ।
ଲଭେଁ ସ୍ୱର୍ଗବାସ ଅବା ଭୀଷଣ ଦୁର୍ଗତି,
ଯାହା ଇଚ୍ଛା ଦିଅ ପ୍ରଭୋ ! ନାହିଁ ମୋ ଆପତ୍ତି ।
ଏତିକି ପ୍ରାର୍ଥନା ମୋର ଅହେ ଭଗବାନ !
ଆପଣା ସାକ୍ଷାତେ ତାହା କରିବେ ବିଧାନ ।

———

## ଶାନ୍ତିଃ ଶାନ୍ତିଃ ଶାନ୍ତିଃ

(ଆଶାବରୀ)

ପ୍ରାଣେଶ୍ୱର ! ଜଗଦୀଶ ! ପ୍ରଭୁ ! ଭଗବାନ !
ହୋଇଛି ମୋ ଜୀବନର ଦିବା ଅବସାନ ।
ମୋ ଜୀବନ ସୁଖ-ସୂର୍ଯ୍ୟ ଯାଉଛି ତ ବୁଡ଼ି,
ଚତୁର୍ଦ୍ଦିଗୁଁ ଘୋଟି ଆସେ ତିମିର-କୁହୁଡ଼ି ।
ନିଭିଅଛି, ନିଭିଯାଉ, ସୁଖର ଆଲୋକ,
ଜଳି ଉଠୁ ହୃଦେ ଜ୍ଞାନ-ଚୈତନ୍ୟ-ପାବକ ।
ସଂସାର ସୌଭାଗ୍ୟ ସୁଖ ହୋଇଛି ଅତୀତ,
ଗାଏଁ କେତେ ଦିନ ବସି ବିଷାଦର ଗୀତ ।
ମହାପ୍ରଭୁ ! ମହାପ୍ରଭୁ ! ଆସ ମୋ ହୃଦୟେ,
ଆସକ୍ତ ନ ହେଉ ମନ ସଂସାର ବିଷୟେ ।
ଛିଡ଼ିଯାଉ ହୃଦୟରୁ ମାୟାର ବନ୍ଧନ,
ରହନ୍ତୁ ଦୂରରେ ଜ୍ଞାତି ବନ୍ଧୁ ପରିଜନ ।
ପ୍ରଭୋ ! ମୋର ଭକ୍ତି ଥିଲେ ତୁମ୍ଭ ଶ୍ରୀଚରଣେ,
ରଖନ୍ତୁ କୁଶଳେ ସେହି ପ୍ରିୟ ପରିଜନେ ।

ମହାପ୍ରଭୋ ! ତୁମ୍ଭ ପାଦେ ଥାଉ ତାଙ୍କ ମତି,
ହେଉନ୍ତୁ ଧାର୍ମିକ ସାଧୁ, ଭୁଞ୍ଜନ୍ତୁ ସମ୍ପତ୍ତି ।
ଅକୃତଜ୍ଞ, ହୀନବୁଦ୍ଧି ମୁହିଁ ନିଶ୍ଚୟ,
କେବେ କେବେ କରେଁ ତୁମ୍ଭ ସତ୍ତ୍ୱରେ ସଂଶୟ ।
ଦେଖିଛି ଜୀବନେ ବହୁ ଥର ତୁମ୍ଭ ହସ୍ତ,
ନିର୍ବୋଧ ! ନିର୍ବୋଧ ! ଭୁଲିଯାଏଁ ସେ ସମସ୍ତ ।
ରଖିଛ ଜୀବନ, ରକ୍ଷା କରିବ ନିଶ୍ଚୟ,
ବିଶ୍ୱପତି ରକ୍ଷାକାରୀ, କାହାକୁ ମୋ ଭୟ ?
ରଖିଛନ୍ତି ପିତା ମୋତେ ଜଗତ ସଂସାରେ ।
ପରକାଳେ ମିଳିବି ମୁଁ ଯାଇ ତାଙ୍କଠାରେ ।
ଅଛି ଦୂରେ, ଯିବି ପାଶେ, ସୌଭାଗ୍ୟ ମହାନ,
ଯିବି ଯେତେବେଳେ ପିତା କରିବେ ଆହ୍ୱାନ ।
ରହିବାକୁ କ୍ଷଣେ ମୋର ନ ଥିବ ଆପତ୍ତି,
ରହିବାକୁ ବା ଯିବାକୁ କପାଁ ହେବ ବ୍ୟସ୍ତ ?
ପାପ ପଙ୍କେ କଳଙ୍କିତ ମୋହର ଜୀବନ,
ଅନୁତାପାନଳେ ହେଉ ତାହା ସଂଶୋଧନ ।
ଦାରିଦ୍ର୍ୟ ଯନ୍ତ୍ରଣା ଦୁଃଖ ଆସୁ, ଚିନ୍ତା ନାହିଁ,
ପ୍ରସ୍ତୁତ ରହିଛି ସବୁ ସହିବାର ପାଇଁ ।
ସୁଖ ଆଶେ ବା ଉଲ୍ଲାସେ ଭୁଲୁ ନାହିଁ ମନ,
ନିରନ୍ତରେ ଦେଖୁଛି ତ ସ୍ୱର୍ଗର ସ୍ୱପନ ।
ସେହି ସ୍ୱର୍ଗରାଜ୍ୟ ମୋର ଶାନ୍ତ ନିକେତନ,
ଯାଇଛନ୍ତି, ତହିଁ ଛନ୍ତି, ମୋର ପ୍ରିୟଜନ ।
ସ୍ୱର୍ଗ ! ସ୍ୱର୍ଗ ! ସେ ଯେ ଅଟେ ଦେବତା ନିବାସ,
କି ସାହସେ ଲୋଡ଼େ ତହିଁ କରିବାକୁ ବାସ ?
ସତ୍ୟ, କରି ନାହିଁ ପୁଣ୍ୟ ଅର୍ଜନ ସେପରି,
ଅବଶ୍ୟ ଅବଶ୍ୟ ଯିବି ପ୍ରଭୁ ନାମ ଧରି ।
ଯେତେ ଦିନୁଁ କରିଅଛି ପ୍ରଭୁଙ୍କ ଭରସା,
ଦୂରି ଯେ ଯାଉଛି ମୋର ସମସ୍ତ ଦୁର୍ଦ୍ଦଶା ।
ହତାଶ ଯନ୍ତ୍ରଣା ଜ୍ୱାଳା ସହି ନିରନ୍ତରେ,
ଶରଣ ନେଇଛି ମହାପ୍ରଭୁଙ୍କ ପୟରେ ।
ସ୍ୱର୍ଗର ସ୍ୱପନେ ଅଛି ସଦା ଉନମତ୍ତ,
ପରକାଳ ପରିଣାମ ଜାଣୁଛି ସତତ ।
ହେ ପ୍ରଭୋ ! ମୋହର କେହି ନାହିଁ ଜଗତରେ,
ତୁମ୍ଭେ ମୋର ମୁଁ ତୁମ୍ଭର ସମ୍ପୂର୍ଣ୍ଣ ରୂପରେ ।
ଆସୁ ଯେତେ ଦୁଃଖ କଷ୍ଟ ବିଷାଦ ବିଷୟ,
ବିଚଳିତ ହେବି ନାହିଁ ନିଶ୍ଚୟ ନିଶ୍ଚୟ ।
ଦୂର ହେଉ ମନୁ ମାୟା ମୋହ ଚିତ୍ତଭ୍ରାନ୍ତି,
ମହାପ୍ରଭୋ ! ମହାପ୍ରଭୋ ! ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

---

## ପ୍ରାଣେଶ

( ରାଗ—ଚନ୍ଦ୍ରାକେଦାର )

ଭାସି ଯାଉଅଛି ମୁଁ ନିତାନ୍ତ,
ଆସ ଆସ ଆହେ ପ୍ରାଣନାଥ !
ନ ଆଇଲେ ପ୍ରଭୁ, ସରିଲା ତ ସବୁ
ନିଶ୍ଚେ ହେଲି ନିରେଖ ନିତାନ୍ତ ହେ
ପ୍ରାଣେଶ !

ଦିଅ ଦିଅ ପ୍ରଭୋ ! ପ୍ରେମସୁଧା,
ମେଣ୍ଟୁ ମୋ ହୃଦୟ ଦଗ୍ଧ କ୍ଷୁଧା,
ଅରୂପ ମାଧୁରୀ ଦେଖାଅ ହେ ହରି !
ଆଶା ପୂର୍ଣ୍ଣ ହେଉ ପ୍ରାଣଲୁବ୍ଧା ହେ
ପ୍ରାଣେଶ !

ମଣି ହରି ଗଲା ଫଣୀ ପରି
ପ୍ରାଣ ଆକୁଳରେ ଭ୍ରମେ ହରି !
ଜୀବ ମୃତବତ ମରୁଛି ସତତ,
ତୁମ୍ଭ ବିନା ବଞ୍ଚିବ କପରି ହେ
ପ୍ରାଣେଶ !

ପ୍ରାଣନାଥ ଦିଅ ଦରଶନ,
ତୁମ୍ଭପାଇଁ ଝୁରୁଛି ନୟନ,
ହେ ଜୀବଙ୍କ ଜୀବନ ଚାରଣକାରଣ
ଦିଅ ଦିଅ ତୁମ୍ଭ ଶ୍ରୀଚରଣ ହେ
ପ୍ରାଣେଶ !

———

## ସର୍ବବାଦୀସମ୍ମତ ନାମ

( ମଙ୍ଗଳ )

ଆହେ ମହାପ୍ରଭୋ ! ବୋଲ ତୁମ୍ଭର କି ନାମ ?
ସେହି ନାମେ ଡାକି ପୂର୍ଣ୍ଣ କରେଁ ମନସ୍କାମ ।
କେହି ବା ଜିହୋବା ବୋଲେ, କେହି ବୋଲେ
ଯୋବ,
ଶୈବ ବୋଲେ ଶିବ—ବିଷ୍ଣୁ, ବୋଲନ୍ତି ବୈଷ୍ଣବ ।
ଆଲ୍ଲାତାଲ୍ଲା କେହି ବୋଲେ— ଶାକ୍ତ ବୋଲେ ଶକ୍ତି,
ବ୍ରାହ୍ମ ବୋଲେ ବ୍ରହ୍ମ—ଗାଣପତ୍ୟ ଗଣପତି ।
କେହି ବା ବୋଲନ୍ତି ତୁମ୍ଭ ନାମ ଲର୍ଡ ଗଡ୍,
ଅସଭ୍ୟ ଭାଷାରେ ତୁମ୍ଭ ନାମ ବୋଙ୍ଗା ବଡ଼ ।
ପ୍ରକୃତ ବୋଲିବା ହେଉ ମୋତେ ଆହେ ହରି ?
ତୁମ୍ଭଙ୍କୁ ଡାକିବି ମୁହିଁ କେଉଁ ନାମ ଧରି ?
ମାନିକ ବୋଲନ୍ତି ଏହିପରି ସର୍ବବାଦୀ,
ଆଦ୍ୟନ୍ତରହିତ ତୁମ୍ଭେ ଅନନ୍ତ ଅନାଦି ।
ଅନ୍ତର୍ଯ୍ୟାମୀ ସର୍ବମୟ ତୁମ୍ଭେ ସର୍ବେଶ୍ୱର,
ରହିଛ ତ ନିରନ୍ତର ବ୍ୟାପି ଚରାଚର ।
ଗୁଣାତୀତ, କାଳାତୀତ, ତୁମ୍ଭେ ସର୍ବାତୀତ,
ସତ୍ୟ, ନିତ୍ୟ, ଶିବ, ସର୍ବଭୂତ ଆଚ୍ଛାଦିତ ।
ପ୍ରଜାମୟ, ଅଦ୍ୱିତୀୟ, ସକଳ ଜନକ,
ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ସ୍ଥିତି-ସଂହାରକ ।
ସଂଖ୍ୟାତୀତ ସଂଖ୍ୟାତୀତ ତୁମ୍ଭ ନାମମାନ,
କେ କରି ପାରିବ ସ୍ଥିର କରି ପରିମାଣ ?
କି ନାମେ ଭଜିବି ପାରୁ ନାହିଁ ସ୍ଥିର କରି,
ଏତିକି ଜାଣୁଛି ମୋର ସର୍ବମୟ ହରି ।
ସକଳ ନାମର ମହାପ୍ରଭୋ ସୃଷ୍ଟିକାରୀ,
ଆପଣେ ସେ ହେବେ ବୋଲି କେଉଁ ନାମଧାରୀ ?

———

## ଭସ୍ମମୁଷ୍ଟି

(ରାଗ—ରେଖ୍ତା)

ହେ ପ୍ରଭୋ ! ନ ବୁଝି ତତ୍ତ୍ୱ ହେଲିଣି ମୁଁ ବୁଦ୍ଧିହତ
କାହୁଁ ଆସି କାହିଁ ଯାନ୍ତି ଲୋକ ସମସ୍ତ,
ଅଛେ ସେହି କେମନ୍ତ ସ୍ଥଳ,
ଯାଇ ଯହିଁ ସମବେତ ପ୍ରାଣୀ ସକଳ । ୧ ।

ସେ କାର୍ଯ୍ୟ ସାଧନ୍ତି ଜନ, କାହାର ବା ପ୍ରୟୋଜନ
ତଥାପି ନିରତ କାର୍ଯ୍ୟେ ତତ୍ତ୍ୱ ନ ଜାଣି,
ନ ଦେଖେଁ ଏପରି ଜଗତେ,
କାର୍ଯ୍ୟ ବିନା ରହିପାରେ ଲୋକ ନିଶ୍ଚିନ୍ତେ । ୨ ।

ଅଚେତନ ଗ୍ରହଗଣେ ନକ୍ଷତ୍ରପୁଞ୍ଜ ଗଗନେ
ଉଦୟାସ୍ତ ହେଉଛନ୍ତି କାହା ଆଦେଶେ ?
ମାସ ବର୍ଷ ଦିବସ ନିଶି
କାହୁଁ ଆସି କାହିଁ ଅବା ଯାଆନ୍ତି ମିଶି ? ୩ ।

ପ୍ରାଣିପ୍ରାଣ ସମୀରଣ ପ୍ରବାହିତ ଅନୁକ୍ଷଣ
ନ ଜାଣିଲି କାହା ଆଜ୍ଞା କରେ ପାଳନ,
ନିୟମରେ ଆକାଶୁଁ ବୃଷ୍ଟି
ହୋଇ ପାଳନ କରଇ କାହାର ସୃଷ୍ଟି ? ୪ ।

ଏହି ଯେ ମୋର ଶରୀର ଦିଶେ କେମନ୍ତ ରୁଚିର,
କି କୌଶଳେ କେ କୌଶଳୀ କଲେକି ସ୍ଥିର ?
ଏହି ପଞ୍ଚଭୂତ ସମଷ୍ଟି
ପରିଣତ ହେବ ଭସ୍ମମାତ୍ରକ ମୁଷ୍ଟି । ୫ ।

———

## ମୋ କ୍ଷୁଦ୍ରଶକ୍ତି

( ଭଗବତ ବୃତ୍ତ )

ହେ ବ୍ରହ୍ମ ମଙ୍ଗଳ-ଆକର ! ଏତିକେ ପ୍ରାର୍ଥନା ମୋହର ।
ତୁମ୍ଭ ଚରଣେ ଥାଉ ଭକ୍ତି, ଏହି ମୋହର କ୍ଷୁଦ୍ରଶକ୍ତି ।
ତୋ ବରେ ହେଉ ବଳଶାଳୀ, ଭାଷା ସେବାରେ ଦେବ ଡାଳି ।
ମୃତ୍ତିକଣା ଯେହ୍ନ ଉଇମାନେ, ନିଯୁକ୍ତ ବଲ୍ମୀକ ନିର୍ମାଣେ ।
ଦେଖି ମୁଁ ଏହି ନିଦର୍ଶନ, ମାତୃଭାଷାରେ ଦେଲି ମନ ।
କାହିଁ ମୋ ସମ୍ପତ୍ତି ସମ୍ବଳ, ତୁମ୍ଭର କୃପାରେ କେବଳ ।
ପୋଡିଛି ହୃଦୟରେ ଆଶା, ସେବା କରିବି ମାତୃଭାଷା ।
କାହିଁ ମୋ ଶକ୍ତି କ୍ଷୁଦ୍ରାକାର, କାହିଁ ବା ଦେଶ ଉପକାର ।
ହେ ପ୍ରଭୋ ! ତୁମ୍ଭ କରୁଣାରୁ, ହେବାକୁ ପାରେ ଦୂବ ଦାରୁ ।
ତୁମ୍ଭ କରୁଣା ପୋଷି ମନେ, ଧାଇଁଛି ଅସାଧ ସାଧନେ ।
ତୁମ୍ଭର ନାମକୁ ସମ୍ବଳ, ହେ ପ୍ରଭୋ, କରିଛି କେବଳ ।
ସମ୍ପିଛି ତୁମ୍ଭ ପଦେ ପ୍ରାଣ, କରନ୍ତୁ ମୋତେ ପରିତ୍ରାଣ ।
ଦେଇ ମୁଁ ସମସ୍ତ ଜୀବନ, କରିବି ଆଦେଶ ପାଳନ ।
ପଡ଼ିଲେ ଦୁଃଖେ ଅନ୍ଧକାରେ, ଆଶା ଭରସା ତୁମ୍ଭଠାରେ ।
ରଖି ମୁଁ ଲଭଇ ସାନ୍ତ୍ୱନା, ଯାତନା ଯାଏ ନାହିଁ ଜଣା ।
ତୁମ୍ଭଙ୍କୁ ଛାଡ଼ ମୋର ପ୍ରାଣ, ହୋଇ ପଡ଼ଇ ମ୍ରିୟମାଣ ।
ହେ ମହାପ୍ରଭୁ ଭଗବାନ ! ତୁମ୍ଭ ଚରଣେ ଦିଅ ସ୍ଥାନ ।

———

## ମାନବ ଅବସ୍ଥା

( ମଙ୍ଗଳ )

ଆହେ ସୂତ୍ରଧର କାହିଁ ଅଛ ଅନ୍ତରାଳେ ?
ଲଗାଇଛ କେତେ ଲୀଳା ପୃଥ୍ୱୀ-ନାଟ୍ୟଶାଳେ ।
ଯେଉଁ ବେଶେ ଦେଉଅଛ ଯାହାକୁ ସଜାଇ,
ସେ ତ ସେହି ବେଶେ ଅଭିନୟ କରେ ଯାଇ ।
ଯାହା ବେଶ ଥିଲା କାଲି ଶ୍ରୀରାମ ସମାନ,
ଆଜି ସେ ନାଚୁଛି ବେଶ ଧରି ହନୁମାନ ।
ଆହେ ସୂତ୍ରଧର ! ମୋତେ ଦେବ ଯେଉଁ ବେଶ,
ସେହି ବେଶେ ନାଚିବି ମୁଁ ନାହିଁ କିଛି କ୍ଲେଶ ।
ସମସ୍ତଙ୍କ ଇଚ୍ଛା ସେନାପତି ହେବେ ରଣେ,
କିଏ ହେବ ସେନା ଏହା ନ ଭାଳନ୍ତି ମନେ ।
କରିଥିଲ ବଡ଼ଲୋକ ଦେଇଥିଲ ମାନ,
ସକଳ ଛଡ଼ାଇ ଯେବେ ନେବ ବର୍ତ୍ତମାନ,
କର ପ୍ରଭୋ ! ଯାହା ଇଚ୍ଛା କିଛି ଚିନ୍ତା ନାହିଁ,
ପାଳିବି ତୁମ୍ଭର ଆଜ୍ଞା ମସ୍ତକ ନୁଆଇଁ ।

———

## ହରି ସର୍ବସ୍ୱ

(ରାଗ—ମଙ୍ଗଳ)

ଆହେ ମହାପ୍ରଭୋ ! ତୁମ୍ଭେ ମୋର ପିତା, ମାତା,
ତୁମ୍ଭେ ଜ୍ଞାତି, ପରିଜନ, ସର୍ବସୁଖଦାତା ।
ଜୀବନ, ମରଣ ତୁମ୍ଭେ ଶାନ୍ତିର ସଦନ,
ସାଧନାର ଧନ ପ୍ରଭୋ ! ତୁମ୍ଭେ ମୋ ଶରଣ ।
ତ୍ରିଭୁବନ ସର୍ବ ସ୍ଥାନେ ଅଛ ତୁମ୍ଭେ ହରି ।
ପାଳନ କରୁଛ ପ୍ରାଣୀ ସର୍ବ ସୃଷ୍ଟି କରି ।
ଆଜ୍ଞା କର ମହାପ୍ରଭୋ ! ମୋହର ରସନା,
ନିରନ୍ତର କରୁ ତବ ମହିମା ଘୋଷଣା ।
ମୋହର ପ୍ରାର୍ଥନା ନାହିଁ—ବିନାଶ, ମଙ୍ଗଳ,
ପ୍ରାର୍ଥନା କରୁଛି ତୁମ୍ଭ କରୁଣା କେବଳ ।
ଆହେ ମହାପ୍ରଭୋ ! ଧ୍ୟାୟି ତବ ଶ୍ରୀଚରଣ,
ତନୁ, ମନ, ପ୍ରାଣ ସର୍ବ କଲି ସମର୍ପଣ ।
ରକ୍ଷା କର ପ୍ରଭୋ ! ତବ ବିନା ଗତି ନାହିଁ,
ଅନୁକ୍ଷଣେ ରହିଛି ତ ତବ ମୁଖ ଚାହିଁ ।

———

## କାହିଁ ଯିବ ?

( ରାଗ ଚକ୍ରକେଳି )

ଦିବସ ରଜନୀ ପ୍ରାତଃ ସନ୍ଧ୍ୟାରେ,
ସଜନେ ବିଜନେ, ଘରେ ବାହାରେ;
ଜାଗ୍ରତେ ସ୍ୱପନେ, କ୍ରୀଡ଼ା କୌତୁକେ,
ଆମୋଦ ପ୍ରମୋଦେ, ଦୁର୍ଯୋଗ ଶୋକେ,
ଜୀବନେ ମରଣେ ସର୍ବକାଳରେ,
ରହିଛୁ ତ ପ୍ରଭୋ ! ତୁମ୍ଭ ପାଶରେ ।
ଦିଗ ଦିଗନ୍ତରେ ଅନନ୍ତାକାଶେ,
ମହାପ୍ରଭୋ ! ତୁମ୍ଭ ଜ୍ୟୋତି ବିକାଶେ ।
ଲୋକ ଲୋକାନ୍ତରେ ଅଛି ନିଯୁତ,
ତୁମ୍ଭ ଅଧିକାର ବିଶ୍ୱ ଅନନ୍ତ ।
ଜରାୟୁ ଶଯ୍ୟାରେ, ଅବା ଶ୍ମଶାନେ,
ରହିଥିବ ପ୍ରଭୋ ! ତବ ନିଧାନେ ।
ଭୂତ, ଭବିଷ୍ୟତ ବା ବର୍ତ୍ତମାନ,
ତୁମ୍ଭ ନିକଟରେ ସର୍ବ ସମାନ ।
ଥାଅ ସାଧୁଗଣ ହୃଦୟ-ପୁରେ,
ଅସାଧୁ ଦେଖନ୍ତି ତୁମ୍ଭଙ୍କୁ ଦୂରେ ।
ରହିଛ ତ ବିଶ୍ୱ ବ୍ରହ୍ମାଣ୍ଡ ମାଡ଼ି,
ଯିବ କାହିଁ ଆଉ ତୁମ୍ଭଙ୍କୁ ଛାଡ଼ି ?

---

## ସାଧୁ ସୁନ୍ଦର ଦାସଙ୍କ ଅଦ୍ୱୈତବାଦ
## ଚୌପଦୀ ଛାନ୍ଦ

( ହିନ୍ଦୀ ଭାଷାରୁ ଅନୁବାଦ; ପାଠକ ଯତି ଚିହ୍ନ ପ୍ରତି ଦୃଷ୍ଟି ରଖି ପାଠ କରିବେ । )

ଶୁଣ ହୋ ଅଦ୍ୱୈତ ବିଷୟ ପ୍ରକାଶ,
ନାହଂ ନତ୍ୱଂ ନା ଜନ୍ତୁ ବାସ ।
ନାହିଁ ତ ପ୍ରପଞ୍ଚ ନାହିଁ ତ ପ୍ରସାର,
ନାହିଁ ତହିଁ ସୃଷ୍ଟି ସୃଜନସଂହାର ।

ନାହିଁ ତ ପ୍ରକୃତି ପୁରୁଷ ନ ଇଚ୍ଛା
ନାହିଁ ତହିଁ କାଳ କର୍ମ ନାହିଁ ବାଞ୍ଛା ।

ନାହିଁ ତହିଁ ଶ୍ରୁତି ଶ୍ରବଣ ନା ମୂଳ
ନାହିଁ ତହିଁ ସୂକ୍ଷ୍ମ ନାହିଁ ତହିଁ ସ୍ଥୂଳ ।
ନାହିଁ ତହିଁ ତନ୍ତ୍ର ଅତନ୍ତ୍ର ବିଭେଦ
ନାହିଁ ତହିଁ ବସ୍ତୁ ପୁରାଣ ବା ବେଦ ।

ନାହିଁ ତହିଁ ବର୍ଣ୍ଣ ବିବର୍ଣ୍ଣ ବିଧାନ
ନାହିଁ ତହିଁ ରୂପ ଅରୂପର ସ୍ଥାନ ।
ନାହିଁ ତହିଁ ଯାପକ ବ୍ୟାପକ ଦେଖା
ନାହିଁ ତହିଁ ରୂପ ଅରୂପ ବା ରେଖା ।

ନାହିଁ ତହିଁ ଜ୍ୟୋତି ଅଜ୍ୟୋତି ବିଷୟୀ
ନାହିଁ ତହିଁ ଏକ ନାହିଁ ତହିଁ ଦୁଇ ।
ନାହିଁ ତହିଁ ଆଦି ନ ମଧ୍ୟ ନ ଅନ୍ତ
ନାହିଁ ତହିଁ ଚାଳକ ନାହିଁ ହନ୍ତା ହନ୍ତ ।

ନାହିଁ ତହିଁ ଶକ୍ତି ନାହିଁ ତହିଁ ଶିବ
ନାହିଁ ତହିଁ ଜନ୍ତୁ ନାହିଁ ତହିଁ ଜୀବ ।
ନାହିଁ ତହିଁ ଲେଖ ନାହିଁ ତ ଲେଖକ
ନାହିଁ ତହିଁ କର୍ତ୍ତା ନାହିଁ ତ କାରକ ।

ନାହିଁ ତହିଁ ସ୍ୱର୍ଗ ନରକ ନିବାସ
ନାହିଁ ତ ଆସକ୍ତି ନାହିଁ ତହିଁ ଆଶ ।
ନାହିଁ ତହିଁ ପାପ ନ ପୁଣ୍ୟ ଧରିତା
ନାହିଁ ତହିଁ ଧର୍ମ ଅଧର୍ମ କରିତା ।

ନାହିଁ ତହିଁ ଜ୍ଞାନୀ ଅଜ୍ଞାନୀ ବା ମୂର୍ଖ
ନାହିଁ ତହିଁ ବାଦ ବିବାଦ ବା ତର୍କ ।
ନାହିଁ ତହିଁ ହୋମ ନ ଯଜ୍ଞ ବିଧାନ
ନାହିଁ ତହିଁ ଭେଦ ନାହିଁ ତ ସମାନ ।

ନାହିଁ ତହିଁ ଶାଖା ଛେଦ ସର୍ଗ ସର୍ବ
ନାହିଁ ତହିଁ ଦେବ ମାନବ ଗନ୍ଧର୍ବ ।
ନାହିଁ ତହିଁ ଇଷ୍ଟ ଅନିଷ୍ଟ ବା ଶାନ୍ତ
ନାହିଁ ତ ସଗୁଣ ନିର୍ଗୁଣ ବୃତ୍ତାନ୍ତ ।

ନାହିଁ ତ ସେବକ ସେବ୍ୟ ନ ସେବା
ନାହିଁ ତହିଁ ପ୍ରେମ ନାହିଁ ଛିନ ଲେବା * ।
ନାହିଁ ତହିଁ ଭବ ନାହିଁ ତହିଁ ଭକ୍ତ
ନାହିଁ ତହିଁ ମୋକ୍ଷ ନାହିଁ ତହିଁ ମୁକ୍ତ ।

ନାହିଁ ତହିଁ ପାପ୍ୟ ନାହିଁ ତହିଁ ପାପୀ
ନାହିଁ ତହିଁ ମନ୍ତ୍ର ନାହିଁ ଜପ୍ୟ ଥାପି ।
ନାହିଁ ତ ସାଧନ ସିଦ୍ଧି ନ ସମାଧି
ନାହିଁ ତହିଁ ଯୋଗ ନାହିଁ ରୋଗବ୍ୟାଧି ।

ନାହିଁ ତହିଁ ମୁଦ୍ରା ବନ୍ଧନ ବିଧି
ନାହିଁ ତହିଁ କୁଣ୍ଡ- ଳିନା ନାହିଁ ସିଦ୍ଧି ।
ନାହିଁ ତହିଁ ଚକ୍ର ନା ନାଡ଼ି ପ୍ରସାର
ନାହିଁ ତହିଁ ବେଧ ବେଧ ନ ଦ୍ୱାର ।

ନାହିଁ ତହିଁ ଲିଙ୍ଗ ଅଲିଙ୍ଗ ପ୍ରଧାନ
ନାହିଁ ତହିଁ ମନ ବୁଦ୍ଧି ଚିତ୍ତଧ୍ୟାନ ।
ନାହିଁ ତହିଁ ସତ୍ତ୍ୱ ରଜ ତମ ଗୁଣ
ନାହିଁ ତ ଇନ୍ଦ୍ରିୟ ଦ୍ୱାରମାନ ପୁଣ ।

ନାହିଁ ତହିଁ ସ୍ୱପ୍ନ ଜାଗ୍ରତ ସୁଷୁପ୍ତି
ନାହିଁ ତହିଁ ତୁରୀୟ ମନନା ନ ଯୁକ୍ତି ।

———

## ପ୍ରେମ

(ରାଗ—କେଦାର ଚକ୍ରକେଳି)

ତୁମ୍ଭ ପ୍ରେମ ପ୍ରକାଶେ ତ୍ରିଭୁବନ
ପ୍ରେମେ ଧାଉଁଛି ଚନ୍ଦ୍ରମା, ତପନ ।
ତୁମ୍ଭ ପ୍ରେମଭରେ ହୋଇ ଉନ୍ମତ୍ତ,
ବାୟୁ ପ୍ରବାହିତ ହୁଏ ସତତ ।
ପ୍ରେମେ ବୃକ୍ଷଲତା ପୁଷ୍ପ ପ୍ରକାଶେ,
ପ୍ରେମେ ଧାଉଁଛି ଭ୍ରମର ତା ପାଶେ ।
ପ୍ରେମେ ପାଳନ୍ତି ଶିଶୁକୁ ଜନନୀ,
ପ୍ରେମଡୋରେ ବନ୍ଧା ଭାଇ ଭଗିନୀ ।
ସତୀ ପତିପ୍ରେମେ ଥାଏ ବିହ୍ୱଳା,
ପ୍ରେମେ ଖେଳେ ମେଘକୋଳେ ଚପଳା ।
ସିନ୍ଧୁ ପୂର୍ଣ୍ଣେନ୍ଦୁ ପ୍ରେମର ଆଧାର,
ପ୍ରେମେ ବ୍ୟାପିଛି ଏ ବିଶ୍ୱସଂସାର ।
ବିଶ୍ୱପ୍ରେମରେ ଜନମିଛି ଆଶା,
ପ୍ରାଣେ ବଢ଼ୁଛି ପ୍ରେମର ପିପାସା ।
ମୋର ଜୀବନ ସମସ୍ତ ଘଟଣା,
ତୁମ୍ଭ ପ୍ରେମ ତ କରୁଛି ଘୋଷଣା ।
ତୁଚ୍ଛ କୀଟ ସଙ୍ଗେ ମୁହିଁ ସମାନ,
କର ମୋହ ପ୍ରତି ପ୍ରେମ ବିଧାନ ।
କେତେ ପ୍ରେମ ଦେଇଛ ମୋ ଅନ୍ତରେ,
ଜ୍ଞାନ, ଭଜିବି ତୁମ୍ଭଙ୍କୁ ମନରେ ।
ଜୀବନରେ ଯେଉଁ କାର୍ଯ୍ୟ ସମସ୍ତ,
ରହିଛି ତ ତହିଁ ପ୍ରେମ ଅନନ୍ତ ।
ଧାଏଁ ସାଗରକୁ ନଦୀ ଯେସନେ,
ଧାଏଁ ପ୍ରାଣ ମୋର ତୁମ୍ଭ ସଦନେ ।
ବଡ଼ ଆଶା ପୋଷିଛି ତ ମନରେ,
ଡୁବିବି ମୁଁ ଦିନେ ପ୍ରେମ-ସାଗରେ ।

* ଅନୁବାଦକ ଲେବା ଅର୍ଥ ନ ବୁଝି ମୂଳ ଯେପରି ଥିଲା ଅବିକଳ ତାହି ରଖିଅଛି ।

ପ୍ରେମସାଗର ହେ ବିଶ୍ୱପାଳକ,
ଦେଖିବି କି ମୁଁ ସେ ପ୍ରେମ ଅଲୋକ ?
ପ୍ରାଣନାଥ ପ୍ରାଣାରାମ ହେ ପ୍ରାଣ,
କରନ୍ତୁ କୃପା ହେ ପ୍ରାଣନିଧାନ !
ହେଉ ପ୍ରେମ ନାମ କଣ୍ଠଭୂଷଣ,
ପ୍ରେମେ ହେଉ ପୂର୍ଣ୍ଣ ପାପଜୀବନ ।
କରେଁ ବସି ପ୍ରେମ ନାମ ମୁଁ ଗାନ,
ପ୍ରେମଭରେ କରୁ ପ୍ରାଣ ପ୍ରୟାଣ ।

———

## ଦିଅ ଦରଶନ

(ରାଗ ପରଜ ଝୁଲା)

ଦିଅ ଥରେ ଦରଶନ—ହେ (ମହାପ୍ରଭୋ)
ଜଗତ ସଂସାର ଦିଶେ ଅନ୍ଧକାର
ତୁମ୍ଭ ବିନା ମୋ ଜୀବନ । ଘୋଷା ।

ଦିଶେ କ୍ଷଣେ କ୍ଷଣେ ହୃଦୟ-ଗଗନେ
ତୁମ୍ଭ ରୂପ ବିମୋହନ,
ନିବିଡ଼ ତିମିରେ ଜ୍ୟୋତି ସ୍ୱରୂପରେ
ଘନେ ଚପଳା ଯେସନ ।
ଆହେ ବିଶ୍ୱପତି, କିପାଁ ସେହି ଜ୍ୟୋତି
ସ୍ଥିର ନୁହେଁ ମୋର ମନେ ?
ହୁଅନ୍ତା ପବିତ୍ର ସାର୍ଥକ ମୋ ନେତ୍ର
ସେହି ଜ୍ୟୋତି ଦରଶନେ ।
ଦୁର୍ବଳ ଚଞ୍ଚଳ ହୃଦୟ କେବଳ,
କଳୁଷଭରରେ ମଳିନ,
ବୋଲିବି କିପରି ଦୟାମୟ ହରି,
ଏହା ତୁମ୍ଭ ସିଂହାସନ ?
ନାହିଁ ମୋ ଭରସା, ତୁମ୍ଭେ ମାତ୍ର ଆଶା,
ଭାସି ଯାଉଛି ସାଗରେ,
କରନ୍ତୁ ଉଦ୍ଧାର, ଆହେ କର୍ଣ୍ଣଧାର,
ଦେଇ ତରଣୀ ଚରଣ ।

———

## କରନ୍ତୁ କଲ୍ୟାଣ

(ରାଗ—ପରଜ ଝୁଲା)

କରନ୍ତୁ ମୋତେ କଲ୍ୟାଣ,
ହେ ମହାପ୍ରଭୋ ।
ବସି ଦିବାନିଶି ତୁମ୍ଭ ନାମ ଘୋଷି
ଶେଷ ହେଉ ମୋର ପ୍ରାଣ । ଘୋଷା ।

ଆହେ ବିଶ୍ୱସାଇଁ ଭୁଲିବି କିପାଇଁ
ଜୀବନ ରକ୍ଷା କାରଣ,
ତୁମ୍ଭଙ୍କୁ ଉପେକ୍ଷି ପାରିବି କି ରକ୍ଷି
ଥାଇ ମଧ୍ୟ ସାବଧାନ ।
ଜନନୀ-ଜଠରେ ତିମିର ଆଗାରେ
କରିଛ ମୋତେ ପାଳନ,
ମୋର ଅନ୍ନ ଜଳ ସୃଜିଛ ସକଳ,
ଯାହା ଯାହା ପ୍ରୟୋଜନ ।
ସବୁ ଜାଣି ଶୁଣି ଭ୍ରମେ ପଡ଼େଁ ପୁଣି
ହୋଇ ମୋହେ ଅଚେତନ,
କରେ ଆକର୍ଷଣ ଜଗତ-ବନ୍ଧନ
ଦେଖୁଛ ତ ଅନୁକ୍ଷଣ ।
ଭୁଲେଁ ଯାହା ଲାଗି, ଦିଅ ସବୁ ଭାଙ୍ଗି
ହେଉ ମୋ ହୃଦୟ ଶୂନ୍ୟ,
ଯାଉ ଛୁଡ଼ି ଆଶା, ଜଗତ ଭରସା,
କରେ ମୁଁ ତୁମ୍ଭଙ୍କୁ ଧ୍ୟାନ ।

———

## କୃପା ନିଧାନ

(ଆଶାବରୀ—ତାଳ ଯତି)

କୃପାନିଧାନ ହେ ! କର କରୁଣା ମୋ ପ୍ରତି,
ଦେଇ ମନ ପ୍ରାଣ କରେଁ ତୁମ୍ଭ ଧ୍ୟାନ
ସ୍ଥିର ହେଉ ମୋର ମତି ।
ତୁମ୍ଭେ କି ଜନନୀ ଭ୍ରାତା କି ଭଗିନୀ,
ବନ୍ଧୁ, ସୋଦର, ପିଅର,
ସକଳ ଭାବରେ ଅଛ ମୋ ପାଶରେ,
ବିଶ୍ୱ ବ୍ରହ୍ମାଣ୍ଡର ପତି ।
ଭୁଲିବି ଜଗତ, ଭୁଲିବି ସମସ୍ତ
ପାରେଁ କି ତୁମ୍ଭଙ୍କୁ ଭୁଲି ?
ମୋ ଆତ୍ମା ସତତ ଅଛି ଆଲୋକିତ
ବିକାଶି ତୁମ୍ଭର ଜ୍ୟୋତି ।
ହୃଦୟର କଥା, ମରମର ବ୍ୟଥା
ଜାଣୁଛ ତ ତୁମ୍ଭେ ନାଥ !
ପାପଭାରାକ୍ରାନ୍ତ ହୋଇଛି ନିତାନ୍ତ
ଫେଡ଼ନ୍ତୁ ମୋର ଦୁର୍ଗତି ।
ଗ୍ରହ, ଶଶି, ଭାନୁ, ଅଣୁ, ପରମାଣୁ
ତୁମ୍ଭ ନୟନଗୋଚର,
ଆହେ ଦୟାମୟ ! ନାହିଁ ତ ଉପାୟ
ଲଭିବାକୁ ଆନ ଗତି ।

———

## ମାଭୈଃ ବୋଲନ୍ତୁ

(ଆଶାବରୀ—ଯତି)

ମାଭୈଃ ବୋଲନ୍ତୁ ଗୋ ! କିପାଁ ଅବସାଦ ମନେ !
ଅନନ୍ତ ବିଶ୍ରାମ ମୋ ଇନ୍ଦ୍ରଦ୍ୟୁମ୍ନଗ୍ରାମ
ଲୋଡ଼େ ଦେଖେଁ ଅନୁକ୍ଷଣେ ।
କାର୍ଯ୍ୟ ସମାପତ କରି ଦେ ହସ୍ତ
ଧୋଇ ବସିଲେ ନିର୍ଜନେ,
ଭାବିଲେଁ ମୁଁ ମନରେ କାହା ଆଦେଶରେ
କଲି ଏହା କି କାରଣେ ।
ଧନ ଉପାର୍ଜନେ ନ ଭାବିଲେଁ ମୁଁ ମନେ
ତୁମ୍ଭେ ମୋ ପରମ ଧନ,
ପରମ ରତନେ ହରାଇ ଯତନେ
ଥିଲି ବ୍ୟର୍ଥ ଉପାର୍ଜନେ ।
ଦେଖୁଛି ତ ଗୃହିଁ, ଜୀବନ ଯା ପାଇଁ
କାଟିଛି ବହୁ କଷ୍ଟରେ,
ଥିବ ସବୁ ପଡ଼ି, ଯାଉଛି ତ ଛାଡ଼ି
ଏକା ଅନନ୍ତ ଗଗନେ ।
ସଂକଟ ସମୟେ ଆସ ମୋ ହୃଦୟେ,
ଦେଖାଅ ସେ ଦିବ୍ୟ ଜ୍ୟୋତି,
ଜନ୍ମୁ ଦିବ୍ୟ ଜ୍ଞାନ, ପାଏ ମୁଁ ସନ୍ଧାନ
ତବ ଶାନ୍ତି-ନିକେତନେ ।

———

## ସଞ୍ଜୀବନୀ ସୁଧା

(ଆଲେୟା ଜୟଜୟନ୍ତୀ—ଝମ୍ପତାଳ)

ସଞ୍ଜୀବନୀ ସୁଧାଧାରା ଦିଅ ଢାଳି ଦୟାମୟ !
ପାନ କରି ମତ୍ତ ହେଉ ମୋର ନୀରସ ହୃଦୟ । (ଘୋ)
ଲାଗି ସେ ପରଶମଣି ହେଉ ପାଷାଣ କାଞ୍ଚନ,
ପରଶ ହୃଦୟ ମୋର, ଲଭେଁ ନୂତନ ଜୀବନ ।
ନ ଲୋଡ଼େଁ ମୁଁ ଧନ, ମାନ, ଦିଅ ପ୍ରଭୋ, ଏହି ବର,
ତୁମ୍ଭର ନିର୍ଦ୍ଦିଷ୍ଟ ମାର୍ଗେ ଗମିବି ମୁଁ ନିରନ୍ତର ।
ଦେବ ଯାହା ସୁଖ, ଦୁଃଖ, ନେବି ମସ୍ତକେ ମୁଣ୍ଡାଇ,
ସହିବି ସକଳ କଷ୍ଟ, ପ୍ରଭୋ ! ତୁମ୍ଭ ମୁଖ ଗୃହିଁ ।
ତୁମ୍ଭେ ତ ବିଧାତା ମୋର, କରି ଏ କଥା ପରତେ,
ତେବେ ଆପଣାର ପାଇଁ, କିପାଁ ବ୍ୟାକୁଳ ସତତେ !

———

## ଜ୍ୟୋତିଃ ସ୍ୱରୂପ

( ଆଶାବରୀ-ଯତି )

ଜ୍ୟୋତିଃସ୍ୱରୂପ ହେ ! ବିଭୁ ବିଶ୍ୱବନ୍ଦନୀୟ ।
ଧ୍ରୁବ, ଶିବ, ସତ୍ୟ, ନିତ୍ୟ, ନିରଞ୍ଜନ,
ଏକମେବ, ଅଦ୍ୱିତୀୟ । ଘୋଷା ।
କୋଟି କୋଟି ବିଶ୍ୱ ବ୍ରହ୍ମାଣ୍ଡ ବିରାଜେ
ତବ ପ୍ରତି ଲୋମକୂପେ,
ବ୍ୟାପ୍ତ ଚରାଚର ଅଛ ନିରନ୍ତର
ପଞ୍ଚଭୂତେ ଆତ୍ମାରୂପେ ।
ଦେଲ ନେତ୍ରେ ଜ୍ୟୋତି ଦରଶନ ଶକ୍ତି,
ନ ଦେଖେ ତୋତେ ନୟନ,
ଶୋଣିତ ଆଧାରେ ତୋ ଶକ୍ତି ସଞ୍ଚାରେ
ଅଚେତନେ ସଚେତନ ।
ଜୀବନବଲ୍ଲଭ ସାଧନଦୁର୍ଲଭ
ପାତା, ଧାତା, ପ୍ରାଣାରାମ,
ଅରୂପ ନିବାସେ ସ୍ୱରୂପ ବିକାଶେ
ପ୍ରତିରୂପ ଅବିରାମ ।
ଜଗତ ଜୀବନ ମଣ୍ଡନ ଶୋଭନ
ଚରାଚର ମୂଳାଧାର,
ପ୍ରଭୋ ଜଗନ୍ନାଥ, ଯୋଡ଼ି କରି ହାତ
ତବ ପଦେ ନମସ୍କାର ।

---

## ତୁମ୍ଭଙ୍କୁ ଅନାଇ

ଦେଖି ନାହିଁ ଶୁଣି ନାହିଁ ତୁମ୍ଭେ ଅଛ କାହିଁ,
ନୟନ ମୋ ଚିତ୍ତ ତୁମ୍ଭ ପାଶେ ଅଛି ଧାଇଁ ।
ଭାବେଁ ଯେବେ ଏକାନ୍ତରେ ତୁମ୍ଭେ କି ପ୍ରକାର ?
ଅନନ୍ତ ଅନ୍ଧାରେ ଦେଖେଁ ଅନନ୍ତ ଆକାର ।
ଆଉ ନ ଦେଖିବା କଥା, ନ ଶୁଣେ ଶ୍ରବଣେ,
କେବେଁ ତ ପାରିଲି ନାହିଁ ଧରି ବାକ୍ୟେ ମନେ ।
କି ସମ୍ବନ୍ଧ ତୁମ୍ଭ ସଙ୍ଗେ ନ ପାରିଲି ଜାଣି,
ଜନକ, ଜନନୀ, ବନ୍ଧୁ, ଜଡ଼ କିମ୍ବା ପ୍ରାଣୀ ?

ପଡ଼ି ଯନ୍ତ୍ରଣାରେ ଯେବେ ପ୍ରାଣେ ଆସେ କ୍ଲାନ୍ତି,
ତୁମ୍ଭଙ୍କୁ ସ୍ମରଣ କରି ଲଭେ ସୁଖ ଶାନ୍ତି ।
ତୁମ୍ଭଙ୍କୁ ପାସୋରି ଯେବେ ଥାଏଁ ଦୂରେ ଦୂରେ,
ଅସ୍ଥିର ଜୀବନ ହୁଏ ଆକୁଳେ ଆତୁରେ ।
ଯେ ହୁଅ, ଯେ ସ୍ଥାନେ ଥାଅ, କିଛି ଚିନ୍ତା ନାହିଁ,
କାଟିବି ଜୀବନକାଳ ତୁମ୍ଭଙ୍କୁ ଅନାଇ ।

---

## ଦ୍ୱିତୀୟ ଅଧ୍ୟାୟ—ବ୍ୟକ୍ତିବିଶେଷ

## ଯୁଗ୍ମ କୁସୁମ

( ମଙ୍ଗଳ )

ଏ ସଂସାର ମହାରଣ୍ୟେ ନିକୁଞ୍ଜେ ନିଭୃତେ,
ଫୁଟିଥିଲେ ଦୁଇଗୋଟି ପୁଷ୍ପ ଏକ ବୃନ୍ତେ ।
ବିଧି ବିଡ଼ମ୍ବନା କିମ୍ବା ଦୁର୍ଭାଗ୍ୟର ଫଳେ,
ଗୋଟିଏ କୁସୁମ ଖସି ପଡ଼ିଗଲା ତଳେ ।
ରହିଛି ଗୋଟିଏ ପୁଷ୍ପ ବିଶୀର୍ଣ୍ଣ ମଳିନ,
ହେଉଛି ସେ ଦିନୁଁ ଦିନୁଁ ଶୁଷ୍କ ଶୋଭାହୀନ ।
ଦୁଇଟି କୁସୁମ ଯେବେ ଝୁଲୁଥିଲେ ଡାଳେ,
କେତେ ବା ସୌଭାଗ୍ୟ ଥିଲା ତାହାଙ୍କ କପାଳେ ।
ନ ଥିଲା କଦାଚ ହୃଦେ କାଳିମା ବିଷାଦ,
ସଦା ପ୍ରଫୁଲ୍ଲିତ ମନ ସର୍ବଦା ଆହ୍ଲାଦ ।
ଧୀରେ ଧୀରେ ବହେ ଯେବେ ଶୀତଳ ପବନ,
ଦୋହଲି ଦୋହଲି ନାଚୁଥାନ୍ତି ବେନି ଜନ ।
ପବନ ପ୍ରତାପ କେତେ ନିଦାଘ ଉତ୍ତାପ,
ଜନମାଇ ପାରେ ନାହିଁ ମନରେ ସନ୍ତାପ ।

ସୁଖେ ଦୁଃଖେ ସାହା ଦୁହେଁ ହୋଇ ପରସ୍ପରେ,
ଜୀବନ ଯାପନ କରୁଥିଲେ ଆନନ୍ଦରେ ।
ସ୍ୱର୍ଣ୍ଣୋଜ୍ଜ୍ୱଳ ପ୍ରାତଃକାଳ ମଳୟ ସମୀରେ,
ଦୁହେଁ ଡାଳେ ଡାଳେ ନାଚୁଥିଲେ ଧୀରେ ଧୀରେ
ଅଇଲା ଦୁରନ୍ତ କାଳଙ୍କଠ ବୃନ୍ତ ଭେଦ୍ଦ,
ଗୋଟିଏ କୁସୁମ ତହୁଁ ପକାଇଲା ଛେଦ୍ଦ ।
ଗୋଟିଏ ପଡ଼ିଲା ତଳେ ଆନଗୋଟି ଡାଳେ,
କଲେ କ ବିଧାତା ତାଙ୍କ ବିଧାନ କପାଳେ !
ପୃଥିବୀ ତ ନୁହେ ସ୍ୱର୍ଗ, ସୁଖମୟ ସ୍ଥାନ !
ସୁଖ ଦୁଃଖ ବିମିଶ୍ରିତ ବିଧିର ବିଧାନ !
ରହିଲା ଯେ ପୁଷ୍ପଗୋଟି—ଯାବତ ଜୀବନ,
ଭୂ-ପତିତ ପୁଷ୍ପପାଇଁ କରିବ ରୋଦନ !
ଯେ କାଳେ ସେ ପୁଷ୍ପ ହେବ ଭୂତଳେ ପତିତ,
ଦୁଇଟି କୁସୁମ ପୁଣି ହେବେ ସମ୍ମିଳିତ ।

———

## ମେଲାଣି

( ମଙ୍ଗଳ )

ଦେବି ! ପ୍ରିୟେ ! ଯାଅ ଯାଅ ଦେଉଛି ମେଲାଣି ।
ମନ୍ତ୍ରର ସାଧନା ମୋର ଗୃହଠାକୁରାଣୀ ।
ଅନିତ୍ୟ ଭଙ୍ଗୁର ଦେହ ଅଟେ ଦୁହିଙ୍କର,
ମାତ୍ର ଦୁହିଙ୍କର ଆତ୍ମା ଅକ୍ଷୟ, ଅମର,
ଅନିତ୍ୟ ପାର୍ଥିବ ମାୟା କରିଛ ମୋଚନ,
ଶିଥିଳ ହେବାର ନୁହେ ଆତ୍ମାର ବନ୍ଧନ ।
ତେଜିଛ ପାର୍ଥିବ ଦେହ, ଅଛି ମୁଁ ପୃଥ୍ୱୀରେ,
ପୁନଶ୍ଚ ମିଳନ ହେବ ଚିରେ ବା ଅଚିରେ ।
ଇହ, ପର ଦୁଇ କାଳେ ଅଛୁଁ ବେନି ଜନେ,
ମାତ୍ର ତୁମ୍ଭ ପ୍ରତିରୂପ ଭାସୁଛି ନୟନେ ।
ତୁମ୍ଭେ ନିତ୍ୟ, ମୁହିଁ ନିତ୍ୟ, ସତ୍ୟ, ଅବିନାଶୀ,
ଅନନ୍ତ ସ୍ରୋତରେ ଯାଉଅଛୁଁ ଭାସି ଭାସି ।
ଜ୍ୟୋତିର୍ମୟସ୍ୱରୂପୀ ଆତ୍ମା ମହାନ ମିଳନ,
କେ ଭାଙ୍ଗିବ କେ କରିବ ଅଚ୍ଛେଦ୍ୟ ଛେଦନ ?
କଳ୍ପନା ଅଜ୍ଞାତ କାଳ ଗଗନ ପ୍ରାଙ୍ଗଣେ,
ଉଜ୍ଜ୍ୱଳ ନକ୍ଷତ୍ରରୂପେ ଥିବୁ ଦୁଇଜଣେ ।
କେବେ ଦୂରେ, କେବେ ପାଖେ, ଵିଚ୍ଛିନ୍ନ ମିଳିତ,
ବେନି କକ୍ଷେ ବେନି ଗ୍ରହ ଯଥା ବିସ୍ମୃତ ।
ଅନନ୍ତ ଅନନ୍ତ କାଳ ଯାଇଅଛି ବହି,
କାଳାତୀତ କାଳଯାଏଁ ଥିବୁଁ ପୁଣି ରହି ।
ଆତ୍ମାରେ ଜଡ଼ିତ ଆତ୍ମା, ମନେ ଲଗ୍ନ ମନ,
ହୃଦୟେ ହୃଦୟ ମେଳ ଦୁଶ୍ଛେଦ୍ୟ ବନ୍ଧନ ।
ବିନଷ୍ଟ ତ ହୋଇ ନାହିଁ, ଯାଇଛ ଆଗରେ,
ମହାକାଳସ୍ରୋତ ଭେଦି ତିମିର ମାର୍ଗରେ ।
ଯାଉଛି ପଛରେ ପ୍ରିୟେ ! କରନ୍ତୁ ଅପେକ୍ଷା,
ସେ ଅମୃତମୟ ଧାମେ ପୁଣି ହେବ ଦେଖା ।
ଦିବା ନିଶି ବ୍ୟାକୁଳିତ ହୁଏଁ ତୁମ୍ଭ ପାଇଁ,
ତୁମ୍ଭେ କ ରହିଛ ପ୍ରିୟେ, ମତେ ବାଟ ଚାହିଁ ?

———

## କବିର ସାନ୍ତ୍ୱନା

( ଆଶାବରୀ )

ସତ୍ୟକଥା, ଘରେ ମୋର ଧନ ପୂର୍ଣ୍ଣ ନାହିଁ,
ଆଶକ୍ତ ମୁଁ ପ୍ରୟୋଜନ ସାଧିବାର ପାଇଁ ।
ଲୋକେ ମଧ୍ୟ ନ କରନ୍ତି ସେପରି ସମ୍ମାନ
କେ କରେ ବିଦ୍ରୂପ କେ ବା କରେ ଅପମାନ ।
ନ ଥାଉ ମୋହର କିଛି ପାର୍ଥିବ ସମ୍ପତ୍ତି,
ସ୍ୱର୍ଗୀୟ ପଦାର୍ଥ ଦେଇଛନ୍ତି ବିଶ୍ୱପତି ।
କଳ୍ପନା ରାଜ୍ୟରେ କରେଁ ଯେବେ ମୁଁ ଭ୍ରମଣ,
ଅନୁଭବେଁ ଜଗତର ସବୁ ତୁଚ୍ଛଧନ ।
ଯେତେକ ପ୍ରକାର ଅଛି ଜଗତ ଯନ୍ତ୍ରଣା,
ତୁଚ୍ଛ ବସ୍ତୁ ପରି ସବୁ ଯାଏ ମୋତେ ଜଣା ।

ଭାସି ଭାସି ଯାଉଥାଏଁ ଆନନ୍ଦ-ସ୍ରୋତରେ,
ଚାହିଁବି ସମ୍ପତ୍ତି ସୁଖ ଗୃହେଁ ନାହିଁ ଥରେ ।
ସେବା କରୁଅଛି ବସି ମୁହିଁ ମାତୃଭାଷା,
ସାନ୍ତ୍ୱନା ଲଭଇ ମନେ ପୋଷି ଏହି ଆଶା ।
ନ ହେବ କୃତଘ୍ନ ମୁହିଁ ଆହେ ବିଶ୍ୱପତି,
ଦେଇଛ ତ ଯାଚି ମୋତେ ଅତୁଳ ସମ୍ପତ୍ତି ।
ଜନ୍ମି କେ ବା ଛନ୍ତି କୋଟି ଭ୍ରାତା ମଧ୍ୟେ ଜଣେ,
କେବେହେଲେ କେହି ମୋତେ ପକାଇବେ ମନେ ।
ରଚିତ କବିତାଗୁଡ଼ି କନ୍ୟାସ୍ୱରୂପିଣୀ,
ଅନୁସରିଥାନ୍ତି ପଛେ ଚିତ୍ତବିନୋଦିନୀ ।
ଉତ୍କଳ ଜଗତେ ମୁହିଁ ତେଜିବି ଜୀବନ,
କରିବେ ଏ କନ୍ୟାଗୁଡ଼ି ପିତୃତରପଣ ।

———

## ଗଲା

ଛିଡ଼ିଗଲା ବୀଣା ତାର,
କେତେ ମନୋହରେ, କେତେ ଆବେଗରେ,
ଦେଉଥିଲା ସେ ଝଙ୍କାର,
ଛିଡ଼ିଗଲା ବୀଣା-ତାର । ୧ ।

କୁସୁମ ପଡ଼ିଛି ଝଡ଼ି,
କେତେ ସୌରଭରେ, କେତେ ସୌନ୍ଦର୍ଯ୍ୟରେ,
ଝୁଲୁଥିଲା ତାହା କଢ଼ି,
କୁସୁମ ପଡ଼ିଛି ଝଡ଼ି । ୨ ।

ପାହିଯାଇଛି ତ ରାତି,
ନୀଳ ଆକାଶରେ, କେତେ ବିମଳରେ,
ଲିଭାଇ ଚନ୍ଦ୍ରମା ଭାତି,
ପାହିଯାଇଛି ତ ରାତି । ୩ ।

ନୀରବ ମୋହନ ବଂଶୀ,
କେମନ୍ତ ସୁସ୍ୱନ, ମନ ଉଚ୍ଚାଟନ,
ଶୁଣୁଥିଲି ମୁହିଁ ବସି,
ନୀରବ ମୋହନ ବଂଶୀ । ୪ ।

ଲିଭିଗଲା ଦୀପାବଳୀ,
ପଳାଇ ଅନ୍ଧାରେ ସ୍ୱପନ ଆଶାରେ
ଥିଲା ଜୀବନସଞ୍ଚାଳି,
ଲିଭିଗଲା ଦୀପାବଳୀ । ୫ ।

ଯାଇଛି ବସନ୍ତ ବାୟୁ,
ଶୀତଳ ହିଲ୍ଲୋଳ ଜୀବନ ଶୀତଳ
କରିବ କି ଆସି ଆଉ ?
ଯାଇଛି ବସନ୍ତ ବାୟୁ । ୬ ।

———

## କ୍ଲିଓପେଟ୍ରା

ଆଫ୍ରିକା ପୂର୍ବ ପ୍ରାନ୍ତେ ବିଖ୍ୟାତ ନଗର,
ଲୋହିତସାଗର କୂଳେ ବିରାଜେ ମିଶର ।
ଐଶ୍ୱର୍ଯ୍ୟ, ସୌନ୍ଦର୍ଯ୍ୟ, ବୀର୍ଯ୍ୟ, ଜ୍ଞାନଗୌରବରେ
ସମସ୍ତ ଜଗତେ ଖ୍ୟାତ ଯୁଗ ଯୁଗାନ୍ତରେ ।
ନୀଳାର ସଲିଳ ନୀଳ* ବକ୍ଷେ ପ୍ରବାହିତ.
ଦିଏ ତାକୁ ଦେଶେ ଶସ୍ୟ ସମ୍ପତ୍ତି ଅମିତ ।
ପ୍ରଚଣ୍ଡ ଅନଳକ୍ଷେତ୍ର ବିଖ୍ୟାତ ସାହାରା,
ତହିଁ ପୂର୍ବପ୍ରାନ୍ତେ ପ୍ରବାହିତ ନୀଳଧାରା ।
ଚନ୍ଦ୍ରଗିରି ଚନ୍ଦ୍ରମାର୍ଗେ ଅଛି କିବା ଉଭା !
ନୀଳକାନ୍ତ ମୁକୁଟ କି ଶିରେ ପାଏ ଶୋଭା !
ବିଚିତ୍ର ପ୍ରକୃତି ଲୀଳା ଆଫ୍ରିକା ଖଣ୍ଡେ,
ଅଗ୍ନିକ୍ଷେତ୍ର ଶସ୍ୟକ୍ଷେତ୍ର ଶୋଭେ ବେନି ଗଣ୍ଡେ ।

* ନୀଳ ନାମକ ନଦୀ ( The Nile)

ଏକ ପାଶେ ଲତା ବୃକ୍ଷ ସମ୍ପତ୍ତି ମହାନ,
ଅନ୍ୟ ପାଶେ ଶୁଷ୍କ-ତପ୍ତ-ପ୍ରକୃତ ଶ୍ମଶାନ ।
ଅନନ୍ତ ପ୍ରକୃତି ଲୀଳା ଦେଖି ନିଦର୍ଶନ,
ସାହାରା ମିଶର ଏକ ଶିଳ୍ପୀର ସୃଜନ ।
ପୁଣ୍ୟକ୍ଷେତ୍ର ଇଉରୋପ ବିରାଜେ ଉତ୍ତରେ,
ଅବତାର ଲୀଳାଭୂମି ପ୍ରାଚୀ ବିଭାଗରେ ।
ଇଉରୋପ ପଦତଳେ ଦୁଃଖିନୀ ଆଫ୍ରିକା,
ହୃଦୟେ ବହୁଛି ମରୁଭୂମି ବାଳୁକା ।
ଜ୍ଞାନଗୌରବରେ ନ୍ୟୂନ ପଡ଼ିଛି ପଦରେ,
ଈର୍ଷାନଳେ ଦଗ୍ଧୀଭୂତା ମରୁହୃଦୟରେ ।
ଦୁଃଖିନୀ କଷ୍ଟରେ ଦୟାମୟ ଭଗବାନ,
ସାନ୍ତ୍ୱନା ସକାଶେ କଲେ ମିଶରକୁ ଦାନ ।
ଅପୂର୍ବ ମିଶର ସୃଷ୍ଟି ନୟନରଞ୍ଜନ,
ଐଶ୍ୱର୍ଯ୍ୟ, ମହିମା ଖ୍ୟାତ ସମସ୍ତ ଭୁବନ ।
ଟଲେମି ଅକ୍ଷୟ କୀର୍ତ୍ତି ପିରାମିଡ଼୍ ସ୍ତମ୍ଭ
ଆକାଶ ପ୍ରଦୀପ, ଦୁଇ ଆଫ୍ରିକା ଗୌରବ ।
ଆଭିଜାତ୍ୟେ, ଆଧିପତ୍ୟେ,ଶୌର୍ଯ୍ୟେ,ବୀର୍ଯ୍ୟେ,ବଳେ,
ମିଶର-ଅଧିପ ଖ୍ୟାତ ଜଗତ-ମଣ୍ଡଳେ ।
ଅତ୍ୟାଶ୍ଚର୍ଯ୍ୟ ପରିବର୍ତ୍ତି କାଳଚକ୍ରନେମି,
ମିଶରର ଅଧିପତି ଅଯୋଗ୍ୟ ଟଲେମି ।
କାହିଁ ରାଜଦଣ୍ଡ, ଛତ୍ର, କାହିଁ ଖଡ୍‌ଗ କରେ ?
ଖଡ୍‌ଗଧାରୀ ବଂଶୀଧାରୀ ପ୍ରମୋଦ ବନରେ । (୧)
ନିଷ୍ଠୁରସ୍ୱଭାବା ଜ୍ୟେଷ୍ଠା ରାଜାର ନନ୍ଦିନୀ,
ବିଳାସିନୀ, ରାଜ୍ୟପ୍ରିୟା, ପତିବଧାତିନୀ । (୨)
ଟଲେମିଙ୍କୁ ରାଜ୍ୟଚ୍ୟୁତ କରି ପ୍ରଜାଗଣ,
ଜ୍ୟେଷ୍ଠା କନ୍ୟା ହସ୍ତେ କଲେ ରାଜ୍ୟ ସମର୍ପଣ ।

ଟଲେମି ରୋମର ସୈନ୍ୟବଳେ ଘୋର ରଣେ, (୩)
ରାଜ୍ୟଲୋଭେ ବଧ କଲେ କନ୍ୟାକୁ ଜୀବନେ ।
ବସିଥିଲା ସିଂହାସନେ ପତିହନ୍ତ୍ରୀ ନାରୀ,
ଏବେ ରାଜ୍ୟେ ଅଧୀଶ୍ୱର କନ୍ୟାହତ୍ୟାକାରୀ ।
ଘଟିଲା ଟଲେମି ଭାଗ୍ୟେ,—ଘଟେ ଅନିବାର୍ଯ୍ୟ,
ଗଲେ ଲୋକାନ୍ତରେ କନ୍ୟାହସ୍ତେ ଦେଇ ରାଜ୍ୟ ।
ଯେ ଅଭିଭାବକ ଥିଲା ମନ୍ତ୍ରୀ ନପୁଂସକ,
ଆମିଷ ଭଣ୍ଡାରେ ଯଥା ମାର୍ଜାର ରକ୍ଷକ ।
ମନ୍ତ୍ରୀ ରାଜ୍ୟେଶ୍ୱର କଲା ଆପୁତ୍ର ସଇନୀ,
ହେଲେ ତେଣୁ କ୍ଳିଓପେଟ୍ରା ଅରଣ୍ୟବାସିନୀ । (୪)
ରୋମର ସହାୟେ ପିତୃଦେବ ନିଦର୍ଶନେ
ବସିଲେ ରାଜାର ପୁତ୍ରୀ ରାଜସିଂହାସନେ ।
ପଳାଇଲା ଦୁରାଚାରୀ ମନ୍ତ୍ରୀ ନପୁଂସକ,
ପାପାର୍ଜିତ ଧନ ସୁଖେ ଭୁଞ୍ଜେ କେଉଁ ଲୋକ ?
ରାଜ୍ୟେଶ୍ୱରୀ କ୍ଳିଓପେଟ୍ରା ଟଲେମି-ନନ୍ଦିନୀ,
ଲଳନା-ଲଲାମଭୂତା, ବିଶ୍ୱବିମୋହିନୀ;
ଯୁବତୀ, ଲାବଣ୍ୟମୟୀ, ରାଜରାଜେଶ୍ୱରୀ,
ସର୍ବାନର୍ଥମୂଳୀଭୂତା ମହାଭୟଙ୍କରୀ ।
ଶୌର୍ଯ୍ୟେ, ବୀର୍ଯ୍ୟେ ଖ୍ୟାତ ରୋମ ଅବନୀମଣ୍ଡଳେ,
ଜୁଲିଅସ ଭସ୍ମସାର ନାରୀରୂପାନଳେ ।
ଇତିହାସ ଗାଏ ଯେଉଁ ବୀରଙ୍କ ମହିମା,
ରମଣୀ ସୌନ୍ଦର୍ଯ୍ୟେ ନଷ୍ଟ ସମସ୍ତ ଗରିମା ।
ରୂପାନଳେ ଭସ୍ମସାର ଟାର୍କୁଇନ ବଂଶ,
ସବଂଶରେ ଧ୍ୱଂସପ୍ରାପ୍ତ ରାବଣ ରାକ୍ଷସ ।
ସୁନ୍ଦ ଉପସୁନ୍ଦ କଥା ପୁରାଣେ କଥିତ,
ହେଉଛି ଜଗତେ ପ୍ରତିଦିନ ଅଭିନୀତ ।

---

(୧) ମିଶର ( Egypt ) ର ଶେଷ ଅଧିପତି ଟଲେମି ରାଜକାର୍ଯ୍ୟରେ ମନଯୋଗ ନ କରି ବଂଶୀବାଦନ ପୂର୍ବକ ଆମୋଦ ପ୍ରମୋଦ କରିବାରେ ନିଯୁକ୍ତ ହେବାରୁ ପ୍ରଜାମାନେ ତାଙ୍କୁ ତଡ଼ି ଦେଇଥିଲେ ।

(୨) ଟଲେମିଙ୍କର ଜ୍ୟେଷ୍ଠା କନ୍ୟା ନିତାନ୍ତ ଦୁଷ୍ଟା ଓ ପତିଘାତିନୀ ଥିଲେ ।

(୩) ରୋମୀୟ ସୈନ୍ୟ ସାହାଯ୍ୟରେ କନ୍ୟାକୁ ବଧ କରି ସିଂହାସନ ଆରୋହଣ କରିଥିଲେ ।

(୪) ଟଲେମିଙ୍କ ମୃତ୍ୟୁ ସମୟରେ ତାହାଙ୍କ କନ୍ୟା କ୍ଳିଓପେଟ୍ରା ଯୁବତୀ, ମାତ୍ର—ଜଣେ ନପୁଂସକ ମନ୍ତ୍ରୀକୁ ଅଭିଭାବକ ନିଯୁକ୍ତ କରିଥିଲେ ।

ରାଜକନ୍ୟା କଲ୍ପିପେଟ୍ରା କରୂପ ସୁନ୍ଦରୀ ?
ଉତ୍ତର —"ବିଶାଳ ପ୍ରେମ ଦେଲା ଧ୍ୱଂସ କରି ।"
ଇତିହାସ ଗାଏ ଯେଉଁ ବୀରଙ୍କ ପ୍ରସଙ୍ଗ,
ହେଲେ ଶେଷେ ନାରୀ-ରୂପାନଳରେ ପତଙ୍ଗ ।
ବିଖ୍ୟାତ ଯୁଚଲ ବୀର ଏଣ୍ଟନି ସିଜାର,
ବୀରତ୍ୱ ମହିମା ବ୍ୟାପ୍ତ ସମସ୍ତ ସଂସାର ।
ରଣକ୍ଷେତ୍ରେ ପ୍ରକାଶିତ ମହିମା ଅଦ୍ଭୁତ,
ସାମାନ୍ୟ ପତଙ୍ଗ ସମ ହେଲେ ଭସ୍ମୀଭୂତ ।
ରଣକ୍ଷେତ୍ରେ କମାଣର ଆଗ୍ନେୟ ଗୋଲକ
ତୁଚ୍ଛ ମଣି ସ୍ଥିର ଭାବେ ଉଭା ସେ ଯୁବକ ।
ରମଣୀ-ଅପାଙ୍ଗଲୀଳା-ବିଲୋଳ ଦୃଷ୍ଟିରେ
ତୁଚ୍ଛ ତୂଳା ପରି ଉଡ଼ିଗଲେ ମହାବୀରେ ।
ବିନାଶର ହେତୁଭୂତ ରମଣୀ ଲାବଣ୍ୟ,
ଦୟାମୟ ବିଧି, କଲ କପାଇଁ ସୃଜନ ?
ଯେଉଁ ଦୀପଶିଖା ପୃଥ୍ୱୀ-ଅନ୍ଧକାର ହରେ,
ଲୋଲୁପ ନିର୍ବୋଧ କୀଟବଂଶ ଦଗ୍ଧ କରେ ।

———

## ମୃତ ଶିଶୁପୁତ୍ର ମନୋମୋହନ

( ମଙ୍ଗଳ )

ଆସିଥିଲା ଦେବଦୂତ ସ୍ୱର୍ଗରୁ ଓହ୍ଲାଇ,
ପଳାଇଲା ଗୁଡ଼ ପୃଥିବୀର ଗନ୍ଧ ପାଇ ।
ଅନ୍ଧାର ମାଣିକ ଆରେ ନୟନର ଜ୍ୟୋତି !
ଜନମର ସାର ଧନ ହୃଦୟ ସମ୍ପତ୍ତି !
କେତେ ଆଶା କରିଥିଲି ଆରେ ବାପଧନ,
ହୋଇଥାନ୍ତୁ ସ୍ଥବିର କାଳେ ଶେଷାବଲମ୍ବନ ।
ଫୁଟିଥିଲୁ ହୃଦୟରେ ସ୍ୱର୍ଗୀୟ ସୁମନ,
ଅକାଳରେ କାଳକୀଟ କରିଛି ଦଂଶନ ।
ଅନ୍ଧର ଲଉଡ଼ି ମୋର ଜୀବନସମ୍ବଳ,
ଜୀବନଟା ସାରି ଦିବ ତୋର ନାମ ଗାଳି ।

ଚବିଶ ବରଷ କାଳ ଅଛି ବଞ୍ଚି ଯାଇ,
ନିରନ୍ତରେ କାନ୍ଦୁଥିବି ତୋର ନାମ ଗାଇ ।
ଆଶା ସ୍ନେହ ପ୍ରୀତି ଯହିଁ ସଂସାର ବନ୍ଧନ,
ଦେଇ ଯାଇଛୁ ତ ସବୁ ରେ ମନୋମୋହନ !
ଯାଇଥିଲେ ବାପ ଆରେ, ତେଜି ମୁଁ ଜୀବନ,
କରନ୍ତୁ ପବିତ୍ରଭାବେ ମୋ ନାମେ ତର୍ପଣ ।
ଚାଲିଗଲୁ ବାପଧନ, ମୋ-ହୃଦୟ ଇନ୍ଦୁ,
ଶୁଖି ତ ଯାଇଛି ମୋ ଦେହ ରକ୍ତବିନ୍ଦୁ ।
ଜ୍ୟେଷ୍ଠ ପୁତ୍ର ଥିଲୁ ମୋର ପିଣ୍ଡ ଅଧିକାରୀ,
ଆଶା ଥିଲା ତୋ ହସ୍ତରୁ ତର୍ପଣର ବାରି ।
ନାହାନ୍ତି ତୋ ସତୀ ସାଧ୍ୱୀ ମାତା ଧରାତଳେ,
ବର୍ତ୍ତମାନ ଅଛୁ କି ରେ ସ୍ୱର୍ଗେ ତାଙ୍କ କୋଳେ ?
ବିକଳରେ ତୋହ ପାଇଁ ରେ ମନୋମୋହନ,
ଛାରଖାର ହୋଇଯାଇଥିଲା ତାଙ୍କ ମନ ।
କଷ୍ଟ ପାଇ ଦେବେ ଧାତ୍ରୀ ପାଇଥିଲେ କୋଳେ,
ଭସାଇ ତାହାଙ୍କୁ ଚାଲିଗଲୁ ନେତ୍ରଜଳେ ।
ତପସ୍ୟା ତ କରି ନାହିଁ ପାଇବାକୁ ତୋତେ,
ପୁନର୍ବାର ଭେଟିବି କି ମର୍ତ୍ତ୍ୟଧାମେ ସତେ ?
କେତେ ପ୍ରେମେ ଡାକୁଥିଲି, ରେ ମନୋମୋହନ !
ଥିଲୁ ରେ ଲାବଣ୍ୟନିଧି ହୃଦୟରଞ୍ଜନ !
ବାପଧନ ତୁହି ଯେବେ ଥାନ୍ତୁ ମୋର ପାଶେ,
ସ୍ଥବିର ବୟସେ ମୁଁ କି ମରନ୍ତି ହତାଶେ !
ବ୍ୟାଧିଗ୍ରସ୍ତ କ୍ଷୀଣ ହସ୍ତ ଶରୀର ଦୁର୍ବଳ,
କାହାକୁ କହିବି ବାପ ଜୀବନ ସମ୍ବଳ ?
ଅନାୟତ୍ତେ ପଡ଼ିଥିଲେ ମୁଁ ରୋଗଶଯ୍ୟାରେ,
ସାନ୍ତ୍ୱନା ଦିଅନ୍ତି ବାପ ବସି ମୋହଠାରେ !
ବୁଲାଇଲେ ମୋହ ଦେହେ ହସ୍ତ ବାରବାର
ଶରୀରରେ ହୋଇଥାନ୍ତା ଅମିୟ ସଞ୍ଚାର ।
ଆତ୍ମାରୂପେ ଜାତ ହୋଇଥିଲୁ ରେ ନନ୍ଦନ !
ଚାଲି ଯାଇଛୁ ତ କରି ଆତ୍ମାକୁ ଛେଦନ ।
ସ୍ଥବିର ଶରୀର ଭୁଞ୍ଜେ ବିଷମ ଯନ୍ତ୍ରଣା,
ପର କି ପାରିବ ବୁଝି ପରର ବେଦନା ?

ନିଦାନେ ନିର୍ଦ୍ଦୟ ଲୋକେ ସମୟକୁ କଳି
ଦିଅନ୍ତି ନିଷ୍ଠୁର ଭାବେ ଫଟେ ହୃଦ ଦଳି ।
କି ତପସ୍ୟା କରିଅଛି, କେଉଁ ପୁଣ୍ୟ ଫଳେ
ଚିରଦିନ ବାପ ତୁହି ରହିଥିବୁ କୋଳେ ?
ଛିଡ଼ି ଯାଇଛି ତ ମୋର ହୃଦୟର ଗ୍ରନ୍ଥି,
ଆସନ୍ତୁ ଦେଉନ୍ତୁ କଷ୍ଟ ମୋତେ ପରିପନ୍ଥୀ ।
ବ୍ୟାଧିଗ୍ରସ୍ତ ହୋଇ ପଡ଼ିଥିଲେ ନିର୍ଜନରେ,
ସେବା କରୁଥାନ୍ତୁ ବସି ମୋ ଶଯ୍ୟାପାଶରେ ।
ଯାଇଛି ସର୍ବସ୍ୱ ମୋର ଜୀବନସମ୍ବଳ,
ଝୁରୁଥିବି, ଝରୁଥିବ ନୟନରୁ ଜଳ ।
ଆସିଥିଲୁ ପୁତ୍ର ମୋର ଅତିଥି ବେଶରେ,
ଯାଇଛୁ ତ ଚାଲି ଜଗନ୍ମାତା ଆହ୍ୱାନରେ ।
ବିଧାତାଙ୍କ ଗନ୍ତାଘରେ କିବା ରତ୍ନ ନାହିଁ,
ମୋ କ୍ଷୁଦ୍ର ରତ୍ନଟି ନେଲେ ଛଡ଼ାଇ କିପାଇଁ ?
ଗୋଟିଏ ନକ୍ଷତ୍ର ଊଣା ଥିଲା କି ଆକାଶେ,
ମୋ ଜୀବନତାରା ନେଇ ଗଲେ ସେ ସକାଶେ ?
ଅବା କେଉଁ ଦେଶେ ଥିଲା ଅଭାବ ସୁମନ,
ନେଇଗଲେ ସେ ସ୍ଥାନକୁ ମୋ ମନୋମୋହନ !
ଯାଆ ବାପା, ରହ ଯାଇ ସୁଖେ ମାତା ପାଶେ,
ପଡ଼ିଥାଏଁ ପଛେ ମୁହିଁ ପୃଥ୍ୱୀରେ ନିରାଶେ ।
ଏବେ ମୁଁ ଦେଖୁଛି ବିଶ୍ୱ ସର୍ବ ଅନ୍ଧକାର,
ଯିବ ମୋ ଜୀବନ ଚାଲି କରି ହାହାକାର ।
ଶୂନ୍ୟମୟ ବର୍ତ୍ତମାନ ମୋହର ହୃଦୟ ।
ଶୂନ୍ୟମୟ ! ଶୂନ୍ୟମୟ ! ସର୍ବ ଶୂନ୍ୟମୟ ।

---

## ଅବସାଦ

(ରାଗ—ବଙ୍ଗଳାଶ୍ରୀ)

ନ ଲୋଡ଼େ ତାହାକୁ ପୁଣି ଦେଖିବାକୁ
ସେ କି ଥିବ ଚିରଦିନ ?
ଦେଖୁଛି ନିତାନ୍ତ ସକଳ ପଦାର୍ଥ
ହେଉଅଛନ୍ତି ଛିନ୍ନ ଭିନ୍ନ ।

ଜନ୍ମିଲେ ମରଣ ବିଧିର ବିଧାନ
କାହାକୁ ନ ଅଛି ଜଣା ?
ଯାଇଛି ଯା ଛାଡ଼ି ନ ଆସେ ବାହୁଡ଼ି
ବୃଥା କିପାଇଁ ଶୋଚନା ?

କେଉଁ ଆକର୍ଷଣ ନ ମାନି ବାରଣ
ମନେ ପଡ଼େ ନିରନ୍ତରେ ?
ଚୁମ୍ବକ ଶଲାକା ଉଭୟ ଦିଗକୁ
ଧାଏଁ ପ୍ରକୃତି ବଶରେ ।

ଦେଲେ ମୁଁ ଜୀବନ ଆଉ ସେହି ଧନ
କେବେ ବାହୁଡ଼ିବ ନାହିଁ,
ଏହା ଜାଣି ଶୁଣି ଅଜ୍ଞାନରେ ପୁଣି
ଶୋକ କରିବି କିପାଇଁ ?

ମୋହଠାରୁ ତାର ଅନନ୍ତ ଅନନ୍ତ
ଦୂର ଅଛି ବ୍ୟବଧାନ;
ସେ କି ଜାଣୁଅଛି ? ନ ପାରି ମୁରୁଛି
ବସି କରୁଅଛି ଧ୍ୟାନ ।

କି ହେବ ଚିନ୍ତାରେ ଶ୍ମଶାନ ଚିତାରେ
ଆକାଶେ ଯାଇଛି ଉଡ଼ି,
ପ୍ରକୃତିର ଲୀଳା କରି ଅବହେଳା
ଆସିବ କି ସେ ବାହୁଡ଼ି ?

କ୍ଷଣିକ ଭଙ୍ଗୁର ପ୍ରଣୟ-ଅଙ୍କୁର
ଭାଙ୍ଗିଗଲେ ତଳେ ପଡ଼ି,
କାହାର ବଳରେ ଆଉ ସେ ମୂଳରେ
ହୋଇ କି ପାରିବ ଯୋଡ଼ି ?

ସୌନ୍ଦର୍ଯ୍ୟର ତୃଷା ପ୍ରଣୟ-ପିପାସା
ତୃପ୍ତ ହୋଇଅଛି କାହିଁ ?
ସଫଳ କାମନା ସନ୍ତୃପ୍ତ ବାସନା
ଜଗତେ ମିଳଇ ନାହିଁ ।

ଜାଣିଲି ଜଗତ          ମାନବ ସମସ୍ତ
ମୋହ-ମଦିରାରେ ମତ୍ତ,
ଯେ ନ ଗୁହେଁ ଥରେ     ତାଙ୍କୁ ତ ପ୍ରେମରେ
ଭକ୍ତ ଥାଆନ୍ତି ସନ୍ତତ ।

ପବିତ୍ର ଭାବରେ      ଆପଣା ମନରେ
ବସି ତୁମ୍ଭେ ପ୍ରାଣାୟାମେ,
ଚିନ୍ତା କଲେ ଥରେ     ପ୍ରଭୁଙ୍କ ପାଶରେ
ଭେଟିବ ଅନନ୍ତ ଧାମେ ।

— ——

## ସ୍ମୃତିର ଛାୟା

(ରାଗ—ଆଶାବରୀ)

ଦିବା ନିଶି ପ୍ରାତଃ ସନ୍ଧ୍ୟା ସକଳ ସମୟେ—
ସେହି ସ୍ମୃତି ଛାୟା ଅଛି ଚିହ୍ନିତ ହୃଦୟେ ଯେ ।
ନିରେଖି ନିରେଖି ମୂର୍ତ୍ତି ମାନସନୟନେ,
ପ୍ରବୋଧ ସାନ୍ତ୍ୱନା କେତେ ଲଭି କରେ ମନେ ଯେ ।
କେତେ ଥର ଭାବିଲି ମନେ ମରୀଚିକା ଆଶା,
ବଢ଼ାଇବ ସିନା ବଳବତ୍ତର ପିପାସା ସେ ।
ବିସ୍ମୃତିର ଆବରଣ ଢାଙ୍କିଲେ ଯତନେ,
ଛିନ୍ନ ଭିନ୍ନ ହୋଇ ପ୍ରତିବିମ୍ବ ପଡ଼େ ମ ନ ସେ ।
ସ୍ଥିର ଜଳେ ଚନ୍ଦ୍ରବିମ୍ବ ଥାଏ ସମୁଜ୍ଜ୍ୱଳ,
ଲହରୀ ଆଘାତେ ହୁଏ ଯଥା ସେ ଚଞ୍ଚଳ ଯେ ।
ଭୁଲିବା ସକାଶେ ଯତ୍ନ ସାଧନ କେବଳ,
ସର୍ବ ଚେଷ୍ଟା ସର୍ବ ଯତ୍ନ ହୋଇଛି ବିଫଳ ସେ ।
ଛିନ୍ନ ଭିନ୍ନ ହୋଇ ଯାଇଅଛି ମୋ ହୃଦୟ,
ତଥାପି ଦେଖୁଛି ସେହି ମୂର୍ତ୍ତି ଛାୟାମୟ ସେ ।

— ——

## ହତାଶ ପାନ୍ଥ ଓ ଋଷିପୁତ୍ରୀ

( ମଙ୍ଗଳ )

କିଏ ତୁ ମା ! ତୋହର ଘର ବୋଲ କେଉଁ ଦେଶେ ?
ମୋ ପାଶେ କପାଇଁ ଆସିଅଛୁ ଦେବୀବେଶେ ?
ହାତ ଧୋଇ ବସିଥିଲି ସର୍ବ କାର୍ଯ୍ୟ ସାରି,
ଶୁଭଯାତ୍ରା ଅନୁକୂଳେ ପାନ୍ଥ ବେଶଧାରୀ ।
ଏତେ ପୃଥ୍ୱୀତଳେ ସ୍ଥାନ ହେଲା ନାହିଁ ବୋଲି,
ଏପରି ତ ଲୋକ ଛନ୍ଦି ଦେଉଥିଲେ ପେଲି ।
ବ୍ୟାଧିର ଜଞ୍ଜାଳେ ପ୍ରାଣେ ଆଶା ଥିଲା ନାହିଁ,
ସଜ ହେଉଥିଲି ନିଜ ଧାମେ ଯିବାପାଇଁ ।
କି ମୁହୂର୍ତ୍ତେ ଆଇଲୁ ମା ଋଷିର ନନ୍ଦନ !
ତୁ କି ରେ ପଢ଼ିଛୁ ମନ୍ତ୍ର ମୃତ-ସଞ୍ଜୀବନୀ ?
ତୋହର କର ପରଶରେ ଦେହୁଁ ବ୍ୟାଧିଗଣେ,
ଛାଡ଼ି ପଳାଇଲେ ରହି ନ ପାରିଲେ କ୍ଷଣେ ।
କିବା ସ୍ୱାର୍ଥ ଅଛି ତୋର ବୋଲ ମା ମା ରାଣୀ ।
କପାଇଁ ପଚରୁ ମୋତେ ଚିହ୍ନୁ ତୁ ଜାଣି ?

— ——

## ଦମୟନ୍ତୀ

( ମଙ୍ଗଳ )

ନ ବୋଲ ନ ବୋଲ, ଥିଲା ନାହିଁ ତା କରୁଣା,
ଦିନେ ମୁଁ ତ ଦେଖି ନାହିଁ ସ୍ନେହ, ପ୍ରୀତି ଊଣା ।
କଣ୍ଟକରୁ ରକ୍ଷାପାଇଁ ମୋର ପଦତଳ,
ସହଜେ ବିସ୍ତାରି କରି ଦିଏ ବକ୍ଷସ୍ଥଳ ।
କୁଶଳେ ରଖିବାପାଇଁ ମୋ ଶରୀର ମନ,
ଏକାବେଳେ ଥିଲା କରି ଆତ୍ମବିସର୍ଜନ ।
ଥିଲା ନାହିଁ ତାର ଲୋକଦେଖାଣି ପ୍ରକୃତି,
ଆତ୍ମସୁଖେ ଥିଲା ନାହିଁ ତାହାର ପ୍ରବୃତ୍ତି ।

ଜଣା ଥିଲା ନାହିଁ ତାକୁ ମିତ୍ର ସାର ମର୍ମ,
ମୋ କୁଶଳେ ପ୍ରାଣ ଦେବା ମଣିଥିଲା ଧର୍ମ ।
କରିଥିଲା ସେବା ବ୍ରତ ଶାସ୍ତ୍ର ଅଧ୍ୟୟନ,
ସରଳତା ପବିତ୍ରତା ହୃଦୟଭୂଷଣ ।
ତେବେ କପାଁ ଗଲା ଦେଇ ଦୁଃଖରେ ଭସାଇ ?
ବିଧିର ବିଧାନ ଯାହା କେ ପାରେ ଖଣ୍ଡାଇ ?

———

## ଚାଲିଗଲା

ସତେ ସତେ ଯାଇଛୁ କି ଚାଲି
ହୃଦୟ ଭଣ୍ଡାର କରି ଖାଲି ?
ତାହାର ମୁଁ କଲି କେଉଁ ଦୋଷ ?
ବୋଲ ବୋଲ କପାଁ ଏତେ ରୋଷ ?
ତା ପାଶେ ତ ଥାଇ ନିତି ନିତି
ମୁଁ କି ଗାଇ ନାହିଁ ପ୍ରେମଗୀତି ?
ବୋଲ ବୋଲ ବେନି ସେ ହୃଦୟ
କରି କି ନ ଥିଲୁଁ ଏକମୟ ?
କଥା କି ନ ବୋଲୁ ପାଶେ ବସି ?
ନ ଯାଏଁ କି ପାଶେ ହସି ହସି ?
କପାଁ ତାର ଏଡ଼େ ମନ ଊଣା ?
କପାଁ ତାର ଏଡ଼େ ଅକରୁଣା ?
ମୁଁ କି ତାକୁ କହି କଟୁ କଥା
ହୃଦୟେ କି ଦେଇଅଛି ବ୍ୟଥା ?
ମଣି କି ନ ଥିଲି ତାକୁ ଧନ
କରି ସଦା ଆତ୍ମବିସର୍ଜନ ?
ମୁଁ କି ଯାଇଥିଲି ତାକୁ ଆଣି ?
ବଳେ ଆସିଥିଲା ଠାକୁରାଣୀ ।
ତାହାର ସମସ୍ତ ରୂପରାଶି
ସଙ୍ଗେ ସବୁ ନେଇ ଗଲା ଭାସି ।
ନ କହି କି ଦୂରେ ଚାଲି ଯାଇ
ତାକୁ କି ରେ ଥିଲି ମୁଁ କହାଇ ?
ନାହିଁ ନାହିଁ ଥିଲା ଦୟାବତୀ,
ଛାୟା ପରି ଛାଡ଼େ ନାହିଁ ସଙ୍ଗ ।
ମୋ ପାଶରେ ଥାଏ ମୁଖ ଚାହିଁ,
ଡାକିବା ମାତ୍ରକେ ଆସେ ଧାଇଁ ।
ନ ପାରେ ସେ ମୋର କଷ୍ଟ ଦେଖି,
ଆଜି କପାଁ ଗଲା ସେ ଉପେକ୍ଷି ?
ଭକ୍ତିରେ ସେ ନେଇ ପଦଧୂଳି,
ଦେହେ ହେଉଥିଲା ସୁଖେ ବୋଳି ।
ମୋ ନେତ୍ରରେ ଦେଖେ ଯେବେ ଜଳ,
ନୟନ ତା କରେ ଛଳ ଛଳ ।
ନିରତେ ଯେ କରୁଥିଲା ଧ୍ୟାନ,
ଏବେ ହେଲା ପାଷାଣୀ ସମାନ ।
କେବେ କରି ନାହିଁ ଅବହେଳା,
ବୁଡ଼ାଇଣ ଗଲା ମୋର ଭେଳା ।
କହି ବୋଲି ଅଛି ଚାଲି ଯାଇ,
କପରି ଆଣିବି ବାହୁଡ଼ାଇ ?
ଯାଇ ସେ ରହିଛି ଯେଉଁ ଦେଶେ,
ଅବଶ୍ୟ ମୁଁ ଯିବି ତା ଉଦ୍ଦେଶ୍ୟେ ।

———

## କପୋତ ସଙ୍ଗୀତ

(ରାଗ—କଳହଂସ କେଦାର)

ମାଡ଼ ନିର୍ମାଇ ଏକ ବୃକ୍ଷ-କୋଟରେ
କପୋତ ଦମ୍ପତି ଯେ ଥାନ୍ତି ସୁଖରେ,
ଏମନ୍ତେ କଟିଗଲା ବହୁତ କାଳ
ନ ଥିଲା ଯୁଗଳରେ କିଛି ଜଞ୍ଜାଳ । ୧ ।
କପୋତ ଉଡ଼ିଯାଏ ଖାଦ୍ୟ ସକାଶେ
କପୋତୀ ଜଗି ବସିଥାଏ ଆବାସେ
ଶାବକ ଦୁଇଗୋଟି ଜନନୀ ସଙ୍ଗେ
କରନ୍ତି କ୍ରୀଡ଼ା ମାଡ଼ ମଧ୍ୟରେ ରଙ୍ଗେ । ୨ ।

ନୀଳ ଆକାଶେ ଦୂରଦେଶରୁ ଉଡ଼ି
ଖାଦ୍ୟ ଘେନି କପୋତ ଆସେ ବାହୁଡ଼ି,
କପୋତ ପରିବାର ହୋଇ ଉଲ୍ଲାସ
ସଙ୍ଗ କରନ୍ତି ସୁଖେ ସେ ଖାଦ୍ୟ ଗ୍ରାସ । ୩ ।
ଦୁଃଖ ସୁଖରେ ପୂର୍ଣ୍ଣ ବିଶ୍ୱ ସଂସାର
ଚିରକାଳ ସମାନ ଗଲା କାହାର ?
କାଳ ଭୁଜଙ୍ଗ କାହୁଁ ଆସି ସେ ସ୍ଥାନ,
ସଂହାର କଲା ସେହି କପୋତୀ ପ୍ରାଣ । ୪ ।
ବୃଦ୍ଧ କପୋତ ତହୁଁ ବିକଳ ମନେ
ପାଳେ ଶାବକ ଦୁଇ ପ୍ରାଣେ ଯତନେ,
ଥୋକେ ଦିନାନ୍ତେ ଦୁଇ ଶାବକ ବଢ଼ି
ନ ରଖି ମାୟା ଗଲେ ଦୂରକୁ ଉଡ଼ି । ୫ ।
ଥାଏ କପୋତ ଏକା ପଡ଼ି ନୀଡ଼ରେ
ବିକଳେ କାଟେ ଦିନ ଶୂନ୍ୟ ମନରେ,
କାହାକୁ ଭାଳୁଥାଏ ଜାଣେ ତା ମନ
ନିରତେ ଡାଳେ ବସି କରେ କ୍ରନ୍ଦନ । ୬ ।
ରଡ଼ି ଛାଡ଼ଇ ସେହି ହୋଇ ଦୁଃଖିତ
ଏହାକୁ ଯେବେ ତୁମ୍ଭେ ବୋଲ ସଂଗୀତ,
ନିରାଶଭାବେ ପାଇ ମନରେ ବ୍ୟଥା
ଜଣାଏ ତୁଣ୍ଡଠାରେ ମନର କଥା । ୭ ।
ନାହିଁ ସଂଗୀତ ଆଦି ନାହିଁ ତା ଅନ୍ତ
ଗାଇବ ବସି ସେ ଜୀବନ ଯାବନ୍ତ,
କି ସୁଖ ପାଏ ସେହି ସଂଗୀତ ଗାନେ
ତା ବିନା ମନକଥା ଆଉ କେ ଜାଣେ ? ୮ ।
ଏ ତ ସଙ୍ଗୀତ ନୁହେ, ତା ମର୍ମବ୍ୟଥା
ପ୍ରକାଶ କରୁଥାଏ ମନର କଥା,
ଅଥବା ମରୀଚିକା ପ୍ରତି ସେ ଧାଏଁ,
ଜୀବନ ପିପାସା କି ମେଣ୍ଟିବା ପାଏଁ । ୯ ।
କ୍ରନ୍ଦନ କରିଅଛି ପ୍ରାଣେ ସମ୍ବଳ
ଢାଳିବ ନିତ୍ୟ ବସି ନୟନଜଳ,
ବଳପଡ଼ଇ ଯେବେ ମର୍ମ-ବେଦନା
ସଙ୍ଗୀତ କରି କି ସେ ପାଏ ସାନ୍ତ୍ୱନା । ୧୦ ।

ଗାଇବ ଗୀତ ଯେତେ ବସି ସେ ଗାଉ
ନିବାରଣ କେ କିମ୍ପାଁ କରିବ ଆଉ,
ପବନେ ମିଶିଯାଉ ତା ଗୀତସ୍ୱର
ନାହିଁ ତ କ୍ଷତି ବୃଦ୍ଧି କିଛି ମାତର । ୧୧ ।
ଦେଖୁଛୁଁ ଯେ ପ୍ରକାର କପୋତ ଶାନ୍ତି
ଗାଇବ ବସି ତେଜି ମନରୁ ଭ୍ରାନ୍ତି,
ଗୀତ ଗାଇ ସେ ଯେବେ ପାଏ ସାନ୍ତ୍ୱନା
କେ ଲୋକ କିମ୍ପାଁ ତାକୁ କରିବ ମନା ? ୧୨ ।
ନାହିଁ ରାଗ ରାଗିଣୀ ନାହିଁ ତା ତାନ
କିମ୍ପାଁ ବୋଲିବେ ଲୋକେ ଏହାକୁ ଗାନ ?
ଚିତ୍କାର କରେ ନିତ୍ୟ ଏକସ୍ୱରରେ
ଜଣାଏ ମନୋଭାବ ତୁଣ୍ଡ ପାଣିରେ । ୧୩
ବସନ୍ତ ସମୀରଣ ଗ୍ରୀଷ୍ମ ନିଶିରେ
ପ୍ରାବୃଟ ଘନାଗମେ ଶୀତ ଶିଶିରେ,
ନାହିଁ ତା କାଳାକାଳ କିଛି ହିଁ ଜ୍ଞାନ
ଦିବା ରଜନୀ ବସି କରୁଛି ଗାନ । ୧୪ ।
କି ଅବା ଆଶା ସେହି ପୋଷିଛି ମନେ
କେବେ ବା ଆସି କେହି ଦୟାଳୁ ଜନେ,
ଦେଖାଇବେ ତା ପ୍ରତି ସହାନୁଭୂତି
ଏଥିପାଇଁ କି କରେ ସର୍ବଦା ସ୍ତୁତି ? ୧୫ ।

---

## ପ୍ରଣତା ବଧୂ

( ମଙ୍ଗଳ )

ଉଠ ରେ ଉଠ ରେ ମୋର ଆନନ୍ଦପୁତ୍ତଳି !
ତୁ କି ରେ ନନ୍ଦନ ବନ ପାରିଜାତ କଳି ?
କାହାର ନନ୍ଦିନୀ ତୁ ରେ କୁଞ୍ଚିତକୁନ୍ତଳା ?
ଶୂନ୍ୟମୟ ଗୃହେ ମୋର ଶୋଭନା କମଳା ?
ଅନ୍ଧକାର ଗୃହେ ମୋର ମାଣିକ ଦୀପ ରେ,
ଆମୋଦିତ କରୁ ପାରିଜାତ ସୌରଭରେ ।

ଆସ ରେ ଆନନ୍ଦମୟି ! ଆସ ରେ କଲ୍ୟାଣି !
ମୂର୍ତ୍ତିମୟୀ ଦୟା, ମାୟା ଆଶୀର୍ବାଦ ବାଣୀ ।
ଭକ୍ତିରେ ନେଉଛୁ ପୋଛୁ ମୋର ପଦଧୂଳି,
କଲ୍ୟାଣର କଣ୍ଠା ପରି ହେଉଛୁ ତୁ ବୋଲି ।
କାହୁଁ ତୁ ଶିଖିଲୁ ଗୁରୁଭକ୍ତି ରେ କଲ୍ୟାଣି ?
ଅହ୍ୟ ସୁଲକ୍ଷଣୀ ହୋଇ ରହ ରେ ମୋ ରାଣି !
ଆଶୀର୍ବାଦ କରେ ବତ୍ସେ, ହେବୁ ସାଧ୍ୱୀ ସତୀ,
ଗାର୍ଗୀ ଅନସୂୟା ପରି ହେବୁ ପୁଣ୍ୟବତୀ,
ସାବିତ୍ରୀ ସମାନେ ହେବୁ ପତିପରାୟଣା,
ମୈଥିଳୀ ସମାନେ ହେବୁ ରମଣୀଭୂଷଣା ।
ଭକ୍ତି ଦୟା ପ୍ରୀତି ହେଉ ତୋ ଅଙ୍ଗଭୂଷଣ,
ଅକାତରେ ପରଜନ କରିବୁ ପାଳନ,
ମଣିବୁ ତୁ ପିତା ପୁତ୍ର ପରି ସର୍ବ ଲୋକେ,
ଈଶ୍ୱର କରୁଣାଧାରା ପଡ଼ୁ ତୋ ମସ୍ତକେ ।
ସଦ୍ୟ ମୃଗମଦ ପରି ବିକାଶୁ ତୋ ଯଶ,
କଳଙ୍କ କାଳିମା ତୋତେ ନ କରୁ ପରଶ ।
ତୋହ ଯୋଗେ ହେଉ ବତ୍ସେ, ମୋ କୁଳ ଉଜ୍ଜ୍ୱଳ,
ବୃଦ୍ଧକାଳେ ପୁତ୍ରି ! ତୋତେ କରିବ ସମ୍ବଳ ।
ମଣ୍ଡିତା ହେବୁ ରେ ମାତା ଧର୍ମ-ଅଳଙ୍କାରେ,
ମନ ଦେବୁ ଜ୍ଞାତି ବନ୍ଧୁ ଅତିଥି ସେବାରେ ।
ଧନେ ପୁତ୍ରେ, ଦୁଧେ ଭାତେ, ଦେହର କୁଶଳେ
କର ବାସ ରଖି ଚିତ୍ତ ପ୍ରଭୁ ପଦତଳେ ।

———

## ଅଭାବ

( ରାଗ—ବଙ୍ଗଳାଶ୍ରୀ )

କେତେ ଯତନରେ କେତେ ପ୍ରେମଭରେ
ଗୁନ୍ଥି ରଖେ ଫୁଲମାଳ,
କେବେ ଚଉଁରୀଳେ ଲମ୍ବାଏ ତା ଗଳେ
କେବେ ଦିଏ ପ୍ରୀତି-ଗାଳ ।

ଗଲେ ମୁଁ ବାହାରେ ଉଭା ଥାଏ ଦ୍ୱାରେ
ଆସିବା ବାଟକୁ ଚାହିଁ,
ବାହୁଡ଼ି ମୁଁ ଆସି କଥା କହେଁ ହସି,
କେବେ ଯାଏଁ ନ ଅନାଇ ।

କେବେ ହସି ହସି ମୋ ପାଖରେ ବସି
କହେ କେତେ ମିଷ୍ଟକଥା,
ଉତ୍ତର କଥାରେ ଦିଏଁ ପ୍ରେମଭରେ,
କେବେ ବସେଁ ପୋତି ମଥା ।

କେତେ ଗୃହବ୍ରତ ବରିଷ ସୁପାତ୍ର
ବସିଥାଏ ଅଗଣାରେ,
କେବେ ପ୍ରେମଭରେ ବସେଁ ତା ପାଖରେ,
କେବେ ବସେଁ ଅନ୍ୟଠାରେ ।

ଥିଲେ ମୁଁ ବିଦେଶେ ମୋହର ଉଦ୍ଦେଶ୍ୟେ
କେତେ ପ୍ରେମଲିପି ଲେଖେ,
ଦିଏଁ ବା ଯତ୍ନରେ ଉତ୍ତର ପତ୍ରରେ
କେତେ ଲିପି ବା ନ ଦେଖେଁ ।

ଏବେ ଦେଖେଁ ମନେ ଏସ୍ୱପ୍ନ ଦିନେ
ଥିଲପରି ଯାଏ ଜଣା,
ସ୍ମୃତି ଅନୁଭବ ଅବା ମତିଭ୍ରମ
ଅବା ଅଳସ କଳ୍ପନା ?

ଗୃହ ଶୂନ୍ୟମୟ ଭଗନ ହୃଦୟ,
ଏବେ ନିରାଶ ମନରେ,
ଜୀବନ ଯାପନ କରିବା କାରଣ
ଯିବି ଦେଶ ଦେଶାନ୍ତରେ ।

———

## ପିତାମହୀ

ଦୟାବତୀ ! ସତୀ ! ସାଧ୍ୱି ! ଆଗୋ ପିତାମହି !
ନରାଧମ, ପାରିବି କି ତୁମ୍ଭ କଥା କହି ?
ମୋ ଜୀବନ ରକ୍ଷାପାଇଁ ଠାକୁମା ଜୁଟିଲା !
ସ୍ୱର୍ଗୁଁ କି ଗୋ ଆସିଥିଲ, ଦେବି ! ପୁଣ୍ୟଶୀଳା !
ହରାଇଛି ପିତା, ମାତା ନିତାନ୍ତ ଶୈଶବେ,
ଦେଖନ୍ତି ବିଦ୍ୱେଷନେତ୍ରେ ପରିଜନ ସର୍ବେ ।
କେତେ କଷ୍ଟେ, କେତେ ଯତ୍ନେ କରିଛ ପାଳନ,
ତୁମ୍ଭ କରୁଣାରୁ ରକ୍ଷା ପାଇଛି ଜୀବନ ।
ହୃଦୟର ରକ୍ତ ଦେଇ ପାଳିଛ ଶୈଶବେ,
ଏ ନିଃସ୍ୱାର୍ଥ ଉପକାର କାହିଁଛି ବା ଭବେ ?
ଅନୁପମ ସ୍ନେହ ତବ ଅନନ୍ତ ଅପାର,
ଶୁଝି ପାରି ନାହିଁ ଦେବି ! କଣିକମାତର ।
କାଟିଛି ମୁଁ ବାଲ୍ୟକାଳ ରୋଗ ଭୋଗି ଭୋଗି,
ଅନାହାରେ ଅନିଦ୍ରାରେ ବସିଥାଅ ଜଗି ।
ରୋଗଯନ୍ତ୍ରଣାରେ ଯେବେ ହୁଏ ମୁଁ ଅସ୍ଥିର,
ବହି ଯାଉଥାଏ ତୁମ୍ଭ ନେତ୍ରୁଁ ଅଶ୍ରୁନୀର ।
ହିଂସା, କ୍ରୋଧ, ପାପଚିନ୍ତା, ବାଦ, ବିସମ୍ବାଦ,
ତୁମ୍ଭଙ୍କୁ ନ ଥିଲା ଜଣା ଏଥିର ସମ୍ବାଦ ।
ଶିଶୁଚିକିତ୍ସାରେ ପୁଣି ଉଦ୍ୟାନପାଳନେ,
ଦେଖି ନାହିଁ କାହିଁ ତୁମ୍ଭ ପରି ନାରୀ ଜଣେ ।
ଦିବାନିଶି ଥାଅ ତୁମ୍ଭେ ଗୃହକାର୍ଯ୍ୟେ ବ୍ୟସ୍ତ,
ନିୟମରେ ସାଧୁଥିଲ କର୍ତ୍ତବ୍ୟ ସମସ୍ତ ।
କରୁଥିଲ ଦଶ ଦଣ୍ଡ ମାତ୍ରକ ଶୟନ,
ସେହିକାଳେ ମଧ୍ୟ ରହିଥାଅ ସଚେତନ ।
ଡାକିବା ମାତ୍ରକେ ଦିଅ କଥାର ଉତ୍ତର,
ଏପରି ନିଦ୍ରା ତ ହୁଏ ନାହିଁ ଲୋକଙ୍କର !
ତୁମ୍ଭର ରୋପିତ ଫଳବନ୍ତ ବୃକ୍ଷରାଜି,
କାର୍ଯ୍ୟକୁଶଳତା ସାକ୍ଷ୍ୟ ଦେଉଅଛି ଆଜି ।
କାର୍ଯ୍ୟବଶେ, ଧନଆଶେ ଗଲେ ପରବାସେ,
ଠାକୁରମା, ଗୃହେଁ ବସିଥାଅ ମୋହ ଆଶେ ।
ଦ୍ୱିସପ୍ତତି ବର୍ଷ ଥିଲା ତୁମ୍ଭର ଜୀବନ,
ଦିନେ ମଧ୍ୟ ନାହିଁ କରି ଔଷଧ ସେବନ ।
ପାଳନ କରିଛ ନିୟମିତ ବାରବ୍ରତ,
କେବେ ହୋଇ ନାହିଁ ଧର୍ମମାର୍ଗୁଁ ବିଚଳିତ ।
ଜୀବନଟାଯାକ ଭୁଞ୍ଜିଥିଲ ନାନା ଦୁଃଖ,
ବିଶେଷରେ ଭୋଗିଥିଲ କଷ୍ଟ ପୁତ୍ରଶୋକ !
ଦିନେ ହେଲେ ମୁଁ ତୁମ୍ଭର ସେବା କରି ନାହିଁ,
କରିବି ବିଳାପ ଆଜୀବନ ସେଥିପାଇଁ ।
ମୋତେ ବଞ୍ଚାଇବାପାଇଁ ଆହେ ବିଶ୍ୱପତି !
ଆପଣ କି ଠାକୁମାକୁ ପଠାଇ ଅଛନ୍ତି ?
କ୍ଷୁଦ୍ର ମୁହିଁ, ତୁଚ୍ଛ ମୁହିଁ, କି କାର୍ଯ୍ୟ ଜଗତେ
ସାଧିବି, ହେ ବିଶ୍ୱପତି ! ଆଜ୍ଞା କର ମୋତେ ।
ଠାକୁମାର ଦୟା ଦେଖି ଭାଳିଛି ତ ମନେ,
ତୁମ୍ଭେ ଏହିପରି ଦୟା କର ପ୍ରାଣୀଗଣେ ।
ଆତ୍ମରକ୍ଷା ପାଇଁ ଯେବେ ହେଲି ମୁଁ ସମର୍ଥ,
ନ ରହି ପୃଥ୍ୱୀରେ ଦେବି ! ହେଲ ସ୍ୱର୍ଗଗତ ।
ତୁମ୍ଭ ଶେଷ ଦିନ କଥା ପଡୁଛି ମନରେ,
ଶ୍ମଶାନଚିତାର ଚିତ୍ର ଲାଗିଛି ନେତ୍ରରେ ।
କାର୍ଯ୍ୟ ସାରି ସେ ସ୍ଥାନକୁ ଯେଉଁ ଦିନ ଯିବି,
ଏହି ଚିତ୍ର ଏହି ନେତ୍ର ଯିବ ତହିଁ ନିଭି ।
ଆହେ ମହାପ୍ରଭୋ ! ତୁମ୍ଭେ ଏପରି କୌଶଳେ,
ପ୍ରତି ଜଣେ ପାଳୁଛ ତ ଜଗତମଣ୍ଡଳେ ।
କାହିଁ ଅଛ ଆଗୋ ଦେବି ! ପୁଣ୍ୟମୟୀ ଦେଶେ ?
ଜୁହାର କରୁଛି ତୁମ୍ଭ ଆତ୍ମାର ଉଦ୍ଦେଶ୍ୟେ ।

---

## କଳାପାହାଡ଼

( କାଳୀ )

ଦୁର୍ଜନ ବଡ଼ କଳାପାହାଡ଼
ଅଇଲା ସୈନ୍ୟ ସାଜି,
ପଶି ଉତ୍କଳେ ଭୀଷଣ ବଳେ
ଦେଲା ଦେଶଟା ଭାଙ୍ଗି ।

ଯବନ ବୀର ଦେବମନ୍ଦିର
କଲକ ଲଣ୍ଡଭଣ୍ଡ,
ଦେବତାଗଣେ ମିଳି ଯବନେ
କଲେକ ଖଣ୍ଡ ଖଣ୍ଡ ।

ଥିଲ ବ୍ରାହ୍ମଣ, ହେଲ ଯବନ
କଳାପାହାଡ଼ ଦୁଷ୍ଟ,
ଦେବତା ମୂର୍ତ୍ତି କଲ ଦୁର୍ଗତି
ହୋଇ ସେ ମହାରୁଷ୍ଟ ।

କେ ମୂର୍ତ୍ତି ନାକ, କାହା ମସ୍ତକ,
ଭାଙ୍ଗିଲ କାହା ପାଦ,
କାହାର କର୍ଣ୍ଣ ଚୂର୍ଣ୍ଣ ବିଚୂର୍ଣ୍ଣ
କଲକ ସାଧି ବାଦ ।

ଦେବତାଗଣେ ନାଶ କାରଣେ
ଭ୍ରମି ସେ ଗ୍ରାମେ ଗ୍ରାମେ,
କ୍ରୋଧେ ନିତାନ୍ତ କଲ ଉତ୍ପାତ
ମିଳି ଶ୍ରୀକ୍ଷେତ୍ରଧାମେ ।

ସେବକବୃନ୍ଦ ପୂର୍ବୁଁ ସମ୍ବାଦ
ପାଇଣ ସାବଧାନେ,
କରିଣ ଯୁକ୍ତି ଘେନି ଶ୍ରୀମୂର୍ତ୍ତି
ଚଳିକା ସନ୍ନିଧାନେ ।

ଜୀବନ ପଣେ ରଖି ଗୋପନେ
ରହିଲେ ସାବଧାନି,
ପାପିଷ୍ଠ ମୂଢ଼ କଳାପାହାଡ଼
ପାରିଲ ନାହିଁ ଜାଣି ।

———

## ତୁମ୍ଭେ ଆମ୍ଭେ

(ରାଗ—ଚକ୍ରକେଳି)

ତୁମ୍ଭଙ୍କୁ ନିଯୁତ କରେଁ ମୁଁ ଧ୍ୟାନ,
ତୁମ୍ଭପାଇଁ ସଦା ଝୁରଇ ପ୍ରାଣ ।
ମୋହର ତ ନେତ୍ରୁ ବହେ ଲୋତକ,
ହୃଦୟ ବିଦାରି ଉଠେ ତ ଶୋକ ।
ଆଶାମାର୍ଗେ ଥାଏଁ ତୁମ୍ଭଙ୍କୁ ଚାହିଁ,
କରେଁ କେତେ ଚିନ୍ତା ତୁମ୍ଭରପାଇଁ ।
ତୁମ୍ଭପାଇଁ ଥାଏଁ ସଦା ସଙ୍କୁଚିତ,
ତୁମ୍ଭ ନାମେ ଗାଏଁ ପ୍ରେମସଙ୍ଗୀତ ।
ତୁମ୍ଭେ କି ଗୋ ଥରେ ଭାଳ ମନରେ ?
ଆସି କି ଗୋ ଦେବ ବୁଝାଇ ଥରେ
ଉଭୟ ମଧ୍ୟରେ କିବା ସମ୍ବନ୍ଧ ?
ଅଥବା ଏହା କି ବିଧିନିର୍ବନ୍ଧ ?
ଅବଶ୍ୟ ରହିଛି କିଛି ସମ୍ପର୍କ,
ନାହିଁଟି ଏଥିରେ ତର୍କ ବିତର୍କ ।

———

## ଯିଶୁକ୍ରୁଶ

( ରାଗ—ଚକ୍ରକେଳି )

ରାଜଅନୁଚରେ ଯିଶୁଙ୍କୁ ଧରି
ଘେନି ଯାଉଛନ୍ତି ତସ୍କର ପରି ।
କେ ପକାଏ ଛେପ ତାଙ୍କ ମୁଖରେ,
କଣ୍ଟାଗୁଚ୍ଛ କେହି ମାରେ ପୃଷ୍ଠରେ ।
ଗାଳି ଦେଉଥାନ୍ତି ଫାରୁଶୀ ଥୋକେ,
କଣ୍ଟାର ମୁକୁଟ ବାନ୍ଧି ମସ୍ତକେ ।
ରାଜପୁତ୍ର ବୋଲି କେ ଉପହାସ,
କେ ପକାଏ ଧୂଳି ଆସିଣ ପାଶ ।

ଚଢ଼ାଇଲେ କ୍ରୂଶେ କଷ୍ଟୂର ରୂପେ,
ହାତ ଗୋଡ଼ ବାନ୍ଧ ଲୋହାର ସ୍କ୍ରୁପେ ।
ଅନର୍ଗଳ ଦେହୁଁ ବହେ ଶୋଣିତ,
ବୋଲୁଛନ୍ତି ଯିଶୁ "ହେ ପ୍ରଭୁ ପିତଃ !
ଜୟ ! ଜୟ ! ତୁମ୍ଭ ମହିମା ଜୟ !
ହେ ପିତଃ ! ହେ ପିତଃ ! ହୁଅ ସଦୟ !
ହେଉ ପଛେ ମୋର କଷ୍ଟ ପ୍ରବଳ,
ତୁମ୍ଭର ଆଦେଶ ହେଉ ସଫଳ ।
ଯେମାନେ ବଧନ୍ତି ମୋହର ପ୍ରାଣ,
ସେମାନେ ତ ମଧ ତୁମ୍ଭ ସନ୍ତାନ ।
ପାପେ ଡୁବିଛନ୍ତି ଏ ସର୍ବ ପ୍ରାଣୀ,
ନିଜ କାର୍ଯ୍ୟ ପାରୁ ନାହାନ୍ତି ଜାଣି ।
କପରି ପାଇବେ ଏମାନେ ତ୍ରାଣ,
ଏହା ଭାଳି ମୋର କାନ୍ଦୁଛି ପ୍ରାଣ ।
ହେ ପ୍ରଭୋ ! ହେ ପ୍ରଭୋ ! ଦୋଷ ତାଙ୍କର
କ୍ଷମା କର, ଏହି ପ୍ରାର୍ଥନା ମୋର ।
ନିଜ ରକ୍ତ ଦେଇ ଏ ପାପୀଗଣେ
ଉଦ୍ଧାର କରିବି ବାସନା ମନେ ।
କରିବାକୁ ତୁମ୍ଭ ପ୍ରେମ ପ୍ରଚାର
କରିଛି ତ ଯତ୍ନ କେତେ ପ୍ରକାର ।
ବଧିଲେ ଯେମାନେ ମୋହର ପ୍ରାଣ,
ହେ ପ୍ରଭୋ ! କରନ୍ତୁ ତାହାଙ୍କୁ ତ୍ରାଣ ।
ହେ ପିତଃ ! ହେ ପିତଃ ! ଦୋଷ ତାଙ୍କର
କର କ୍ଷମା, ଏହି ପ୍ରାର୍ଥନା ମୋର ।
କରନ୍ତେ ପ୍ରଚାର ତୁମ୍ଭ ମହିମା,
ହେ ପ୍ରଭୋ ! ନାହିଁ ମୋ କଷ୍ଟର ସୀମା ।
ହେଉ କଷ୍ଟ ପଛେ ନାହିଁ ଆପତ୍ତି,
ବୁଝାଉନ୍ତୁ ଲୋକଗଣ ଦୁର୍ଗତି ।
ରାଜରାଜେଶ୍ୱର ହେ ବିଶ୍ୱପତି !
ନର ନାରୀ ସର୍ବେ ତୁମ୍ଭ ସନ୍ତତି ।
ହୁଅ ପିତଃ ! ମୋର ଶିଷ୍ୟଙ୍କ ସଖା,
ଉଡ଼ୁ ଜଗତରେ ପ୍ରେମ ପତାକା ।
ପୁଣ୍ୟ ତୀର୍ଥ ହେଉ ଏ ଧରାତଳ,
ହେଉନ୍ତୁ ପବିତ୍ର ଲୋକସକଳ ।
ମୋହ ରକ୍ତସ୍ରୋତେ ହେ ବିଶ୍ୱପତି !
ଧୋଇଯାଉ ଯାଉ ଲୋକ ଦୁର୍ଗତି ।
ହେଉନ୍ତୁ ଧାର୍ମିକ ଲୋକ ସମସ୍ତେ,
ହେଉ ତୁମ୍ଭ ଇଚ୍ଛା ପୂର୍ଣ୍ଣ ଜଗତେ ।
ତୁମ୍ଭ ପ୍ରେମପଦଙ୍କ ପ୍ରାଣ ଆହୁତି
ଦେଲି, ଲୋକଗଣେ ପାଉନ୍ତୁ ମୁକ୍ତି ।
ଦାରୁଣ ଯନ୍ତ୍ରଣା ବାଧୁଛି ପ୍ରାଣେ,
କର ରକ୍ଷା ପିତଃ ! ତୁମ୍ଭ ସନ୍ତାନେ ।
ତୁମ୍ଭ ଇଚ୍ଛା ଯେବେ ପାଇବି କଷ୍ଟ,
ହେଉ ଯନ୍ତ୍ରଣାରେ ମୋ ପ୍ରାଣ ନଷ୍ଟ ।"
ନିବେଦନ କରି ଏ କଥା ସର୍ବ,
ଅନାଇ ସ୍ୱର୍ଗକୁ ହେଲେ ନୀରବ ।

---

## ଜଗାଇ ମାଧାଇ

( ରାଗ—କଳସା )

ଜଗାଇ ମାଧାଇ ଦୁଇ ବ୍ରାହ୍ମଣ ସନ୍ତାନ,
ନଦୀୟା-ନିବାସୀ ଦୁଷ୍ଟ, ପାଷଣ୍ଡ ଅଜ୍ଞାନ ।
ମଦ୍ୟପ, ଦୁର୍ବୃତ୍ତ, ନଷ୍ଟ, ଭ୍ରଷ୍ଟ, ଦୁରାଚାର,
କରନ୍ତି ଲୋକଙ୍କ ପ୍ରତି ନାନା ଅତ୍ୟାଚାର ।
ନଦୀୟା-ନିବାସିଗଣ ସେମାନଙ୍କ ଭୟେ
ଗୃହେ ବାସ କରଥାନ୍ତି ସକଳ ସମୟେ ।
ସାଧୁ ପ୍ରଭୁ ନିତ୍ୟାନନ୍ଦ ପ୍ରେମିକ ବୈରାଗୀ,
ଉଦ୍ଧାରିବାପାଇଁ ପାପୀ ସଦା ଅନୁରାଗୀ ।
ଦିନକରେ ପ୍ରାତଃକାଳେ ସାରି ଗଙ୍ଗାସ୍ନାନ
ଆସୁଛନ୍ତି କରି ମହାପ୍ରଭୁ ନାମ ଗାନ ।
ଦେଖିଲେ ସେ ଚାହିଁ—ଦୂରେ ଲୋକ ଦୁଇ ଜଣ
କରୁଛନ୍ତି କ୍ରୋଧଭରେ ତର୍ଜନ ଗର୍ଜନ ।

ସୁରାପାନ ହେତୁ ହୋଇ ନିଶାରେ ଉନ୍ମତ୍ତ,
କରନ୍ତି ଚିତ୍କାର ଧାଉଁଛନ୍ତି ଇତସ୍ତତ ।
ମାରାମାରି ଧରାଧରି ହେଉଛନ୍ତି ବଳେ,
ମତୁଆଲ ହୋଇ ପଡ଼ି ଯାଉଛନ୍ତି ତଳେ ।
ଅକାରଣେ ଲୋକଗଣେ କରନ୍ତି ପ୍ରହାର,
କରୁଛନ୍ତି କଦାଚିତ ବିକଟ ଚିତ୍କାର ।
ଗଙ୍ଗାକୂଳେ ଥିଲେ ଯେତେ ଲୋକ ଭୟ ପାଇ ।
ସେମାନଙ୍କୁ ଦେଖି ଗଲେ ଦୂରକୁ ପଳାଇ ।
ଶାର୍ଦ୍ଦୂଳେ ଦେଖିଣ ଯେହ୍ନେ ପଳାନ୍ତି କୁରଙ୍ଗ,
ପଳାଇଲେ ତେହ୍ନେ ମଣି ମନରେ ଆତଙ୍ଗ ।
ପୃଚ୍ଛା କଲେ ସାଧୁ ନିତ୍ୟାନନ୍ଦ ଲୋକଗଣେ,
ବୋଲ ବୋଲ କେ ଅଟନ୍ତି ଏହି ବେନିଜନେ ?
ପଶୁରୁ ଅଧମ ବେନି—ମାନବ ସନ୍ତାନ,
ଏମାନଙ୍କୁ ଦେଖି ମୋର ବାଧୁଅଛି ପ୍ରାଣ ।
ବୋଇଲେ ସକଳେ ଏହି ଜଗାଇ ମାଧାଇ,
ଅଟନ୍ତି ବ୍ରାହ୍ମଣପୁତ୍ର ଦୁଷ୍ଟ ଦୁଇ ଭାଇ ।
ପାଷଣ୍ଡ, ଦୁର୍ଜନ ଏହି ଦୁଷ୍ଟ ଦୁରାଚାରେ,
ତାଙ୍କ ତୁଲ୍ୟ ପାପୀ ନାହିଁ ଜଗତ ସଂସାରେ !
ଅସାଧ୍ୟ ତାହାଙ୍କ ପାପ ଜଗତରେ ନାହିଁ,
ସଶଙ୍କିତ ନବଦ୍ୱୀପବାସୀ ତାଙ୍କ ପାଇଁ ।
ଦୁହିଙ୍କ ବେବସା ଅଟେ ଚୋର ଡକାଇତି,
ଏହିପରି କାର୍ଯ୍ୟ କରିଥାନ୍ତି ନିତି ନିତି ।
ବାଟୋଇ ବାଡ଼େଇ—କରି ସର୍ବସ୍ୱ ହରଣ,
ମଦ୍ୟ ମାଂସ ଖାଇ ନିତ୍ୟ କାଟନ୍ତି ଜୀବନ ।
ଏମାନଙ୍କ ଅତ୍ୟାଚାରେ କୁଳନାରୀମାନେ
ନିର୍ଭୟରେ ନ ପାରନ୍ତି ଆସି ଗଙ୍ଗାସ୍ନାନେ ।
ଏହିପରି ଶୁଣି ପାପୀମାନଙ୍କ ବୃତ୍ତାନ୍ତ,
ନିତ୍ୟାନନ୍ଦ ମନେ କଷ୍ଟ ପାଇଲେ ନିତାନ୍ତ ।
ବିଚାରିଲେ କୃପାପାତ୍ର ଏହି ବେନି ଜଣ,
ଦୟାମୟ ହରିନାମ କରନ୍ତୁ ଶ୍ରବଣ ।
ଚଳିଲେ ଏତେକ ଭାଳି ସେମାନଙ୍କ ପାଶ,
ହରିନାମ ମହାମନ୍ତ୍ର ବୋଲିବା ସକାଶ ।

ବୋଇଲେ ସମସ୍ତେ ଡାକି, "ବାହୁଡ଼ ଗୋସାଇଁ,
ଯମଦୂତ ଦୁହିଙ୍କର ପାଶେ ଯାଅ ନାହିଁ ।"
ପାପୀ ଉଦ୍ଧାରିବା ଅଟେ ଯାହାଙ୍କର ବ୍ରତ,
ଲକ୍ଷ୍ୟ ଦେଖି ସେ କି ହୋଇ ପାରିବେ ନିଶ୍ଚିନ୍ତ ?
"ବୋଲ ହରି ବୋଲ" ବୋଲି ମନର ଆନନ୍ଦେ
ଗଲେ ପାପୀଗଣ ପାଶେ ସାଧୁ ନିତ୍ୟାନନ୍ଦେ ।
ଦୁଇ ବାହୁ ଟେକି ହରିଗୁଣ ଗାଇ ଗାଇ,
ବୋଇଲେ ରେ ମୋର ପାଶେ ଆସ ଦୁଇ ଭାଇ ।
କି କଥା ମନରେ ଭାଳି ମନେ ଦୁଇ ଭାଇ,
ସାଧୁ ନିତ୍ୟାନନ୍ଦ ପାଶୁଁ ଗଲେକ ପଳାଇ ।
ମହିଷ ସମାନେ କରି ଆରକ୍ତ ଲୋଚନ,
ମହାବେଗେ ଧାଇଁଛନ୍ତି ଦୁଇଟା ଦୁର୍ଜନ ।
ମାତ୍ର ନିତ୍ୟାନନ୍ଦ ପଣ କରିଛନ୍ତି ମନେ,
ଉଦ୍ଧାର କରିବେ ସେହି ପାପୀ ବେନି ଜନେ ।
ଯାଉଛନ୍ତି ଯହିଁ ସେହି ଜଗାଇ ମାଧାଇ,
ପଛେ ପଛେ ନିତ୍ୟାନନ୍ଦ ଅଛନ୍ତି ଗୋଡ଼ାଇ ।
ନିତାନ୍ତ ବିରକ୍ତ ହୋଇ ପାପୀ ଦୁଇ ଜଣ,
ଆଇଲେ ବାହୁଡ଼ି କରି ତର୍ଜନ ଗର୍ଜନ ।
ମାଠିଆ ଖପରା ଖଣ୍ଡେ ଧରି ଦୁହେଁ କରେ,
ପ୍ରହାର କଲେକ ନିତ୍ୟାନନ୍ଦ ମସ୍ତକରେ ।
ନିତାଇ ମୁଣ୍ଡରେ ପଶି କଳସୀ ଖପରା,
ସର୍ବାଙ୍ଗରେ ବହି ଯାଉଅଛି ରକ୍ତଧାରା ।
ନ ରଖି ସେ ରକ୍ତ ପ୍ରତି ଦୃଷ୍ଟି ନିତ୍ୟାନନ୍ଦ,
ଧରିଲେ ଦୁହିଙ୍କୁ କୋଳେ ହୋଇ ପ୍ରେମାନନ୍ଦ ।
ବୋଇଲେ, "ଆସ ରେ ମୋର ଜଗାଇ ମାଧାଇ !
ନାଚିବୁଁ ତିନିହେଁ ମିଳି ହରିଗୁଣ ଗାଇ ।
ମାରିଲ ମାରିଲ ପଛେ ଖପରା ମୋ ମୁଣ୍ଡେ,
ସୁଧାମୟ ହରି ନାମ ଧର ଭାଇ ତୁଣ୍ଡେ ।"
ଏତେ ବୋଲି ନିତ୍ୟାନନ୍ଦ ଧରି ତାଙ୍କୁ କୋଳେ,
ନାଚିଲେ ସେ ହରି ହରି ବୋଲି ପ୍ରେମଭୋଳେ ।
ସାଧୁ ଅଙ୍ଗ ପରଶରେ ପାପିଷ୍ଠ ଦୁର୍ଜନେ,
ସ୍ଥିର ହୋଇ ମୁହୂର୍ତ୍ତେକ କି ଭାଳିଲେ ମନେ ।

ସାଧୁ ପରଶରେ ଅଙ୍ଗୁ ଗଲା ପାପ ଛାଡ଼ି,
ଅନୁତାପେ କାନ୍ଦିଲେ ସେ ଦୁହେଁ ଡକା ପାଡ଼ି ।
ନିତ୍ୟାନନ୍ଦ ପାଦପଦ୍ମୁ ନେଇ ଦୁହେଁ ଧୂଳି,
ଭକ୍ତିପ୍ରେମଭରେ ହେଲେ ସର୍ବାଙ୍ଗରେ ବୋଳି ।
ତ୍ୟାଗ କଲେ ଆପଣାର ମନ୍ଦ କାର୍ଯ୍ୟ ସର୍ବ,
ସେହି ଦିନୁ ହେଲେ ଦୁହେଁ ମହାତ୍ମା ବୈଷ୍ଣବ ।

———

## ଦୂରେ

( ରାଗ—ଚକ୍ରକେଳି )

ଦୂରକୁ ପର୍ବତ କେଡ଼େ ସୁନ୍ଦର,
ଗଲେ ତ ପାଶକୁ ବନ ପଥର ।
ବସନ୍ତର ଯେତେ ମଧୁ ମାଧୁରୀ,
ଛାଡ଼ିଗଲେ ହେଉଁ ତା ପାଇଁ ଝୁରି ।
ଦୂରର ରାଗିଣୀ ମନୋହାରିଣୀ,
ଦିଗନ୍ତ ବିଦ୍ୟୁତ ମନୋମୋହିନୀ ।
ଦୂରୁଁ ମନୋହର ଦିଶେ ସାଗର,
ପାଶେ ଲବଣାକ୍ତ ଜଳ ମାତର ।
ସମ୍ମୁଖେ ଘଟୁଛି କେତେ ଘଟଣା,
ଦୂର କଥାପାଇଁ କରୁଁ ଭାବନା ।
ଯେତେବେଳେ ବନ୍ଧୁ ଥିଲା ମୋ ପାଶେ,
କଥା କହି ନାହିଁ ମନ ଉଲ୍ଲାସେ ।
ବର୍ତ୍ତମାନ ବନ୍ଧୁ ଯାଇଛି ଛାଡ଼ି,
ତା ପାଇଁ କାନ୍ଦୁଛି ମୁଁ ଡକା ପାଡ଼ି ।

———

## ଶେଷ ମିଳନ

ଯୁଗ ଯୁଗାନ୍ତର କାଳ ଯାଇଛି ତ ଭାସି
କି ମାୟା ବନ୍ଧନେ ଛାୟା ଦେଖାଦିଏ ଆସି ?
ଏକମନ ଏକଆତ୍ମା ଦେହ ରୂପାନ୍ତର,
ଭିନ୍ନ କି ଉଭୟ ହୋଇପାରେ ପରସ୍ପର ?
ଅଲକ୍ଷ୍ୟର ଅନ୍ତରାଳେ ଗୃହେଁ ବାରେ ବାରେ,
ତୁମ୍ଭେ କି ଆସୁଛ ଛାୟାରୂପେ ସେ ପ୍ରକାରେ ?
ଥାପିଥିଲ ଯେ ସଂସାର ଶାନ୍ତିନିକେତନ,
ଦେଖିଯାଅ ଘଟିଅଛି କି ପରିବର୍ତ୍ତନ !
ସ୍ନେହ ପ୍ରୀତି ଆଳାପନ ରୂପ ରସ ଗନ୍ଧ—
ଛିନ୍ନ ଭିନ୍ନ ରୂପାନ୍ତର ସକଳ ସମ୍ବନ୍ଧ ।
ଅଛି ମାତ୍ର ଧୈର୍ଯ୍ୟ ଧରି ବିଧିବିଧାନରେ,
ହେବୁଁ ଏକୀଭୂତ ଅବଶେଷେ ପରସ୍ପରେ ।
ଦୂର ଦୂରାନ୍ତରେ ଅଛୁଁ ବିଧିର ବିଧାନେ,
ଯିବ ତୁମ୍ଭ ପାଶେ କର୍ମଫଳ ଅବସାନେ ।

———

## ଦୃଢ଼ ବିଶ୍ୱାସ *

'କି ନିର୍ବୋଧ ଅର୍ବାଚୀନ          ଭାଳ ବସି ପ୍ରତିଦିନ—
ଯାହାକୁ ଦେଇଛନ୍ତି ଜାଳି ଶ୍ମଶାନ ଚିତାରେ,
ଝୁରି ଝୁରି କାନ୍ଦୁ କାଳ କିପାଁ ତା ଚିନ୍ତାରେ ? ୧ ।

ଦେଖୁଛୁ ତ ପ୍ରତ୍ୟକ୍ଷରେ          ଲୋକ ପ୍ରତିଦିନ ମରେ,
କାହିଁ କେବେ ମୃତ ଲୋକ ଆସେ କି ବାହୁଡ଼ି ?
ବ୍ୟର୍ଥ କିପାଁ ଚିନ୍ତା କର ଦୃଷ୍ଟି ମାର୍ଗ ଛାଡ଼ି ?' ୨ ।

ପ୍ରଥମରେ ବନ୍ଧୁଗଣେ          ମମ ସାନ୍ତ୍ୱନା କାରଣେ
ବୋଲୁଥିଲେ, "ଏ ତୁମ୍ଭର ବେଭାର କପଟ,
ନ ପାସୋରି କଷ୍ଟ ଭୋଗ ତାହା ନାମ ସ୍ମରି ।" ୩ ।

ପାଇଛି ମୁଁ ନିଦର୍ଶନ,          ଭୁଲିବାକୁ କଲେ ମନ
ଘାଣ୍ଟି ହୁଏ ମନପ୍ରାଣ ଆତଙ୍କେ ଆକୁଳେ,
ମନଟା ଯେମନ୍ତ ବୋଲ ମାନେ ନାହିଁ ଠୁଳେ । ୪ ।

* କବିତାଟି 'ଧ୍ରୁବ ବିଶ୍ୱାସ' ନାମରେ ଅବସରବାସରେ ପୁସ୍ତକରେ ଓ ତନ୍ତୁ ଦଳୀର ପ୍ରଥମ ମୁଦ୍ରଣରେ ପ୍ରକାଶିତ ହୋଇଥିଲା; ମାତ୍ର ମୂଳ କବିତାର କେତେକ ଅଂଶର ପରିବର୍ତ୍ତନ କରାଯାଇଥିବା ହେତୁରୁ ମୂଳ କବିତାର ଉଦ୍ଧାର ହେଲା ।

ଥିଲେ ଯେ ନୟନତାରା    ବ୍ୟାପ୍ତ ମନପ୍ରାଣ ସାରା
ଚିତ୍ରିତ ରହିଛି ଗୁପ୍ତ ହୃଦୟ-ପଟରେ,
ପାରିବି କି ରହି ଚିନ୍ତା ବିନା ନିଶ୍ଚିନ୍ତରେ । ୫ ।

ବ୍ୟର୍ଥ କି ଚିନ୍ତା ମୋହର ?  ହୋଇ କି ଯାଇଛି ପର ?
ନାହିଁ—ପ୍ରାଣେ ପ୍ରାଣେ ଯାହା ଅଚ୍ଛେଦ୍ୟ ବନ୍ଧନ
କେ କରିବ ନିବାରଣ ପୁନଶ୍ଚ ମିଳନ ? ୬ ।

ଚିତାଗ୍ନିରେ କାୟା ପର    ସବୁ ତ ଯାଇଛି ସରି
କେ ବୋଲେ ନିର୍ବୋଧ ସ୍ଥାନାନ୍ତରେ ସେ ତ ନାହିଁ,
ମିଳନର ପାଇଁ ବୃଥା ଅଛି ବାଟ ଚାହିଁ ? ୭ ।

ବିଶ୍ୱ ଅଣୁ ପରମାଣୁ    ଅବିନାଶ୍ୟ ଧ୍ରୁବ ଜାଣୁ
କାଳଚକ୍ରେ ହୋଇଥାନ୍ତି ରୂପାନ୍ତରଧାରୀ,
ପରିବର୍ତ୍ତି ମାତ୍ର, ନାହିଁ ବିନାଶ କାହାରି । ୮ ।

ରସାୟନ ପ୍ରକ୍ରିୟାରେ    ଜଡ଼ୁଁ ପ୍ରାଣ ଜନ୍ମିବାରେ
ଜଡ଼ନାଶେ ପ୍ରାଣ ନାଶ କରିବା ଧାରଣା ।
ପରକାଳ ବୋଲି ଯାହା ମାନବ କଳ୍ପନା । ୯ ।

ପ୍ରେମ ପ୍ରୀତି ଭକ୍ତି ଜ୍ଞାନ    ଜୀବନର ଧର୍ମ ଜାଣ
ନ ବୁଝି ପାରି କି କିଛି ଏଥିର ପ୍ରମାଣ
ଜଡ଼ ଚେତନର ଭାବ ଭିନ୍ନ ଭିନ୍ନ ଜାଣ । ୧୦ ।

ଅମୃତ ସନ୍ତାନ ସେ ତ    ସର୍ବଗୁଣେସମୋପେତ,
ହେବାକୁ କି ପାରେ କେବେ ତାହାର ଅଭାବ,
ବିଶ୍ୱଜନନୀର କୋଡ଼େ ସନ୍ତାନର ଠାବ ? ୧୧ ।

ବର୍ବର ବଣୁଆ ଜାତି    ମହା ଜ୍ଞାନୀଗଣ ଜ୍ଞାତି
ଦେଖନ୍ତି ସମସ୍ତେ ପରକାଳେ ପରିଜନେ,
ସ୍ୱଭାବେ ହୃଦୟେ ଭାବ ଉଦେ କି କାରଣେ ? ୧୨ ।

"ନାହିଁ ପର ବିଦ୍ୟମାନ,    ଇହି ସର୍ବ ଯଦି ଜ୍ଞାନ
ଜଗତର ସର୍ବ ଧର୍ମଶାସ୍ତ୍ର ଦିଅ ପୋଡ଼ି,
କିବା ପ୍ରୟୋଜନ ହେବ ଗ୍ରନ୍ଥମାନ ପଢ଼ି ।" ୧୩ ।

କ୍ଷୁଧା ତୃଷ୍ଣା ମନୋଭବ    ସ୍ୱଭାବରେ ଆବିର୍ଭାବ,
ସେହିପରି ପରକାଳ ଚିନ୍ତା ହୃଦେ ଜାଣ;
ଏହାହିଁ ଯେ ପରକାଳ ଅକାଟ୍ୟ ପ୍ରମାଣ । ୧୪ ।

ଧାବିତ ଜଗତ ନିତ୍ୟ    ଗୁଣଧାରୀ ବିପରୀତ
ବିଶ୍ୱ ବିବର୍ତ୍ତନଶୀଳ ବିଧିର ନିୟମ,
ତଥା ଜାଣ ମାନବର ମରଣ ଜନମ । ୧୫ ।

ନୁହେଁ ଭିନ୍ନ ଭବ ତନୁ    ଅବିନାଶୀ ଆତ୍ମା କିନ୍ତୁ
ପ୍ରେମ ପ୍ରୀତି ଭକ୍ତି ଜ୍ଞାନ ହୃଦ ଉଦ୍ଭବ
ହେବାକୁ ନ ପାରେ କେବେ ସମସ୍ତ ଅଭାବ । ୧୬ ।

ଜଡ଼ ଭିନ୍ନ ପ୍ରାଣ ଭିନ୍ନ    ଦେଖୁଛି ପ୍ରତ୍ୟକ୍ଷ ଚିହ୍ନ
ପର୍ଯ୍ୟାୟରେ ଜଗତରେ ଘଟେ ରୂପାନ୍ତର
ପରିଣାମେ ସ୍ୱସ୍ୱଧର୍ମେ ମେଳ ପରସ୍ପର । ୧୭ ।

ଯାଇଛି ସେ ଚାଲି ଆଗେ    ନବଭାବ ଅନୁରାଗେ
ନିଶ୍ଚୟ ମିଳିବି ଯାଇ ମୁହିଁ ତାହା ପାଶେ,
ରହିଛି ଧଇର୍ଯ୍ୟ ଧରି ଏ ଦୃଢ଼ ବିଶ୍ୱାସ । ୧୮ ।

—— –

## ମହାରାଜ କୃଷ୍ଣସିଂହ

ମହାରାଜ କୃଷ୍ଣସିଂହ ଧରାକୋଟପତି,
ବୀଣାପାଣି ବରପୁତ୍ର ଯଶସ୍ୱୀ ସୁମତି ।
ଅବହେଳେ ତ୍ୟାଗ କରି ରାଜସିଂହାସନ
ସାହିତ୍ୟ ଚର୍ଚ୍ଚାରେ ମତ୍ତ ଥିଲି ଆଜୀବନ ।
ବୀଣାପାଣି ସେବା ଅଟେ ଯାହାଙ୍କର କାର୍ଯ୍ୟ,
ତାଙ୍କ ଚିତ୍ତ ଆପ୍ଲୁତ କି କରିପାରେ ରାଜ୍ୟ ?

ମନୋରାଜ୍ୟ ଅଧିପତି ନଖିଲ ଉତ୍କଳେ,
ଧରିବ କି ଧରାକୋଷ୍ଠ ତାଙ୍କ ମନ ବଳେ ?
ଶୁଣାଇଲ ଉତ୍କଳକୁ ଭାରତୀ ସଙ୍ଗୀତ,
ଯୁଗ ଯୁଗାନ୍ତରେ ନାମ ଥିବ ବିରାଜିତ ।
ଉତ୍କଳ ମାତାକୁ ପିନ୍ଧାଇଛ ରତ୍ନହାର,
ଯାଇଛ ତ ପୂର୍ଣ୍ଣ କରି ସାହିତ୍ୟ-ଭଣ୍ଡାର ।
ଭକ୍ତିଭରେ ଗ୍ରାମେ ଗ୍ରାମେ ଦେଶବାସିଗଣ
ଚିରକାଳ ତୁମ୍ଭ ନାମ କରିବେ ଗାୟନ ।

—————

## ଯୁବକ ଶରଚ୍ଚନ୍ଦ୍ର

ଦେବତାର ପୁତ୍ର ତୁ କି ଆସି ଧରାତଳେ
ଥିଲୁ ଛଦ୍ମବେଶ ଧରି ଗୃହତେ ବିରଳେ ?
ଲଗିବ ହୃଦୟେ ତୋର ପାର୍ଥିବ କଳଙ୍କ,
ଜାତ କି ରେ ହୋଇଲା ତୋର ହୃଦୟେ ଆତଙ୍କ ?
ପିତା ମାତା ପରିଜନ କୁଟୁମ୍ବେ କନ୍ଦାଇ
ଧରାତଳ ତ୍ୟାଗ କରି ଗଲୁ କି ପଳାଇ ?
ପ୍ରଭୁଙ୍କର ଧ୍ୟାନେ ମଗ୍ନ ଥାଉ ତୁ ସତତ,
ପିତା ମାତା ପରସେବା ଥିଲା ତୋର ବ୍ରତ ।
ଫୁଟିବ ସ୍ୱର୍ଗୀୟ ପୁଷ୍ପ ଗୃହର ପ୍ରାଙ୍ଗଣେ,
ଆଶା ଭରସାରେ ଥିଲେ ଜ୍ଞାତି ପରିଜନେ ।
ସହଜେ ମାନବ ଆଶା ହୁଏ ବିଡ଼ମ୍ବନା,
ତୋହ ଜୀବନରେ ଏ ତ ପ୍ରତ୍ୟକ୍ଷ ଘଟଣା ।
ଅସମୟେ ତ୍ୟାଗ କରି ଗଲୁ ଧରାତଳ,
ବିଧାତାର ଇଚ୍ଛା ହୋଇଲା ଜୀବନେ ସଫଳ ।

—————

## ମଧୁସୂଦନ ରାଓ

( ରାଗିଣୀ—କଳସା )

ହେ ମଧୁସୂଦନ; ତୁମ୍ଭ ଜୀବନ ସାର୍ଥକ
ତୁମ୍ଭପରି କେତେ ଜଣ ଛନ୍ତି ସାଧୁ ଲୋକ ?
ସ୍ନେହ, ପ୍ରୀତି, ପିତୃଭକ୍ତି, ସନ୍ତାନବାତ୍ସଲ୍ୟ,
ଏକାଧାରେ ତୁମ୍ଭ ଗୃହେ ପୂରିଛି ସକଳ ।
ପବିତ୍ରତା ସରଳତା ପର ଉପକାର,
ଦୟା ମାୟା ଧର୍ମ ନୀତି ତୁମ୍ଭେହିଁ ଆଧାର ।
ଅନାଥ ବାଳକ ବିଦ୍ୟାଶିକ୍ଷା ପାଇଁ ଋଣୀ
ଲୋକ ହୋଇପାରେ କିଏ ଅଛି କାହିଁ ଶୁଣି ?
ତୁମ୍ଭର ଯେ କେତେ ଶ୍ରଦ୍ଧା ଅତିଥିସେବାରେ,
ସେ ଜାଣେ ଯେ ତୁମ୍ଭଠାକୁ ଯାଇଅଛି ବାରେ ।
ପର ଉପକାରେ ଦିବାନିଶି ଥାଅ ବ୍ୟସ୍ତ,
ତେଜି ପାର ସେଥିପାଇଁ ସମ୍ପତ୍ତି ସମସ୍ତ ।
ଆଦର୍ଶ ପୁରୁଷ ଜଣେ ବ୍ରାହ୍ମଣଶ୍ରେଣୀରେ,
ଉତ୍କଳମଣ୍ଡଳେ ଖ୍ୟାତ କବିତ୍ୱ ବୁଦ୍ଧିରେ ।

—————

## ମୃତ୍ୟୁର କରାଳ ମୂର୍ତ୍ତି

( ପିଲୁ ଯତି )

ମୃତ୍ୟୁର କରାଳ ମୂର୍ତ୍ତି ମାନସ-ନୟନେ
ବାରମ୍ବାର ଦେଖି ମଧ୍ୟ ଅଛି ଅଚେତନେ ।
ଗଗନେ ଅନନ୍ତ ତାରା ଦେଖୁଛି ତ ଗୁହିଁ,
ଲୋଡ଼ୁଛି ଯାହାକୁ ନିତ୍ୟ ସେ ନକ୍ଷତ୍ର କାହିଁ ?
କେତେ ପକ୍ଷୀ ଭ୍ରମୁଛନ୍ତି ଗଗନବିହାରୀ,
କାହିଁ ଗଲା ଉଡ଼ିଗଲା ମୋର ପୋଷା ଶାରୀ ?
ଫୁଟିଛି ବହୁତ ପୁଷ୍ପ ଏ କି ଅସମ୍ଭବ,
କାହିଁ ତ ପାଇଲି ନାହିଁ ସେ ପୁଷ୍ପ-ସୌରଭ !
ମାଣିକ୍ୟ ବୈଦୂର୍ଯ୍ୟ କେତେ କରେ ଝକମକ,
କାହିଁ ମୁଁ ତ ଦେଖୁ ନାହିଁ ସେ ରତ୍ନ ଝଟକ !
ବାଜୁଛି ବହୁତ ବୀଣା ନାନା ତାନମାନେ,
ସେ ସ୍ୱର ଝଙ୍କାର ମାତ୍ର ନ ଶୁଣିଲି କାନେ ।
ଜାଣିଲି ଚପଳା ଲୁଚିଗଲା ବାରିଦରେ,
ତା ଝଟକ ଜ୍ୟୋତି ଲଗିଅଛି ମୋ ନେତ୍ରରେ ।

—————

## ପଦ୍ମନାଭ ନାରାୟଣ

(ରାଗ—ମଙ୍ଗଳ)

ପଦ୍ମନାଭ ନାରାୟଣ ଦେବ ମହାମତି !
ତୁମ୍ଭ ଆତ୍ମା ଉଦ୍ଦେଶ୍ୟରେ କରୁଛୁ ପ୍ରଣତି ।
ଗଜପତି ଉଚ୍ଚବଂଶେ ଜନମ ତୁମ୍ଭର,
ସୁଶୀଳ ବିଦ୍ୱାନ ସାଧୁ ସର୍ବଗୁଣଧର ।
କରି ଯାଇଅଛ ଯେଉଁ ନାଟକ ରଚନା,
କବିତ୍ୱ, ପାଣ୍ଡିତ୍ୟ, ଯଶ କରିବ ଘୋଷଣା ।
ଯୌବନ, ପ୍ରଭୁତ୍ୱ, ଧନ ଅନର୍ଥ-ଆଧାର,
ଜନ୍ମାଇ ନ ଥିଲା ତୁମ୍ଭ ଚିତ୍ତରେ ବିକାର ।
ଆପ୍ୟାୟିତ ହୋଇଥାନ୍ତି ଅଭ୍ୟାଗତଗଣ
ଶୁଣି ତୁମ୍ଭ ସବିନୟ ମିଷ୍ଟ ସମ୍ଭାଷଣ ।
ଥିଲ କବି, କରୁଥିଲ, କବିଙ୍କୁ ସମ୍ମାନ,
ଅପୂର୍ବ ସୁଦୃଶ୍ୟ ତୁମ୍ଭ ନାଟକ ଆଖ୍ୟାନ ।
କାହାକୁ ମୁଁ ଦେବି ତୁମ୍ଭ ସହିତ ଉପମା ?
ଉତ୍କଳ-ଆକାଶୁଁ ଖସି ପଡ଼ିଛି ଚନ୍ଦ୍ରମା ।

—·—

## ମଧୁସୂଦନ ଦାସ, ସି. ଆଇ. ଇ.

( ରାଗ—ଚକ୍ରକେଳି )

ଧନ୍ୟ ଧନ୍ୟ ଧନ୍ୟ ମଧୁସୂଦନ
ଉତ୍କଳ ମାତାର ଯୋଗ୍ୟ ନନ୍ଦନ !
ଦେଲ ଉତ୍କଳକୁ ନବ ଜୀବନ,
ଶିଖାଇଲ ଲୋକେ ଜାତି-ବନ୍ଧନ ।
ଜାତୀୟ ଜୀବନ ବୋଲେ କାହାକୁ,
ଶିଖାଇଲ ଦେଶ— ବାସୀ ଭ୍ରାତାଙ୍କୁ ।
କଥା ନୁହେ ଏହା ଦେଖେଁ ପ୍ରମାଣ,
ଦେଶହିତ ବ୍ରତେ ସଁପିଛ ପ୍ରାଣ ।
କୋଟି ପରିମାଣ ଉତ୍କଳ ଲୋକ,
ସମସ୍ତଙ୍କ କାହିଁ ଘୁଞ୍ଚିବ ଦୁଃଖ ?

ଗୋଟା ଦେଶପାଇଁ ଖଟୁଛୁ ଜଣେ,
ଏ କଥା ଯେକାଳେ ପଡ଼େ ମୋ ମନେ,

ହୃଦୟରେ ମୋର ହୁଏ ପ୍ରତ୍ୟୟ,
ଦୈବ ଶକ୍ତି ଏହା ଅଟେ ନିଶ୍ଚୟ ।

କେତେ କଷ୍ଟେ ପଡ଼ି ଅର୍ଜିଲ ଧନ,
ଫୋପାଡ଼ି ଦେଇଛ ଦେଶ କାରଣ ।

ଶିଳ୍ପକାର୍ଯ୍ୟେ ବିଂଶ ସହସ୍ର ଟଙ୍କା,
ଦେଲ ଢାଳି ଦେଖି ଲାଗେ ଚାଟକା ।

ଆହାର ନିଦ୍ରାରେ ନ ଥାଏ ଜ୍ଞାନ,
କରୁଥାଅ ବସି ନିର୍ଜନେ ଧ୍ୟାନ ।

କି ଉପାୟେ ହେବ ଦେଶ ମଙ୍ଗଳ,
ଜପୁଅଛ ବୀଜ— ମନ୍ତ୍ର କେବଳ ।

ଜାତିର ଗୌରବ ଜାତିର ଧନ
ବୃଦ୍ଧିରେ ଦେଇଛ ଧନ ଜୀବନ ।

ମଦ୍ୟ ପାନ କରି କି ସୋମରସ,
ଅକାତରେ ଫିଙ୍ଗି ଦେଲ ସର୍ବସ୍ୱ ?

ଧନ୍ୟ ଧନ୍ୟ ତୁମ୍ଭ ଜୀବନ ବ୍ରତ !
ଦେଖା ଥାଉ, ଶୁଣା ନାହିଁ ଏମନ୍ତ !

ତୁମ୍ଭ କାର୍ଯ୍ୟାବଳୀ ତୁମ୍ଭ କଳ୍ପନା,
ପୃଥ୍ୱୀ ଇତିହାସେ ନାହିଁ ତୁଳନା,
ଦେଖାଯାଏ ଦେଶ— ହିତ କାରଣ
କେ କରେ ବକ୍ତୃତା, କେ ଦିଏ ଧନ ।
ମାତ୍ର ତୁମ୍ଭେ ସର୍ବ ଧନ ଜୀବନ,
ଶକ୍ତି, ସାମରଥ, କଳ୍ପନା ମନ,
ସବୁ ଢାଳି ଦେଇ ନ ହୋଇ ତୁନ,
ହିବା ନିଶି ବସି ଖଟୁଛ ପୁଣି ।
ମୋ ଜାତିର ହେଉ ସମ୍ମାନ ବୃଦ୍ଧି,
କେ ଲୋକର ହେବ ଏପରି ବୁଦ୍ଧି ?
ତୁମ୍ଭର ଚରିତ୍ର ଓ ଇତିହାସ,
ପାଉ ନାହିଁ ଭାଷା କରେଁ ପ୍ରକାଶ ।

ଯେତେକାଳ ଥିବେ ଉତ୍କଳୀ ନାରୀ,
ଯାବତ ଚନ୍ଦ୍ରାର୍କେ ରହିବ ଖ୍ୟାତି ।
ଉପମା ଦେବାକୁ ତୁମ ସଙ୍ଗରେ
ଖୋଜିଲି ତ ସର୍ବ ଇତିହାସରେ ।
ଜଗତରେ ଲୋକ ନ ଯାଏ ଦେଖା,
ତୁମ୍ଭର ଉପମା ତୁମ୍ଭେ ହିଁ ଏକା ।
କେତେ କୋଟିପତି କେତେ ଭୂପତି
ଗଲେ, ଧନ ରଖି ଯାଇଅଛନ୍ତି ।
ତୁମ୍ଭେ ଚାଲିଗଲେ ତୁମ୍ଭର ଧନ
ବାଣ୍ଟିବୁଣ୍ଟି ନେବେ କୋଟିଏ ଜନ ।
ତୁମ୍ଭ ଧନବାଣ୍ଟେ ସ୍ୱାର୍ଥ ଦେଖିଛୁ,
ପ୍ରତି ଜଣ ଭାଗେ ପଡ଼ିବ କିଛୁ ।
ଯାଉଥିଲୁ ଗୋଷ୍ଠୀ ଜାତିଟା ଭାସି,
ରକ୍ଷା କରିଅଛ ସ୍ୱର୍ଗରୁ ଆସି ।
ଉତ୍କଳ ଜାତିର ଆଗୁଆ ହୋଇ,
ପଞ୍ଚାଶ ବରଷ ଦେଲ ଆଗେଇ ।

———

## ସ୍ନେହମୟୀ ମାତା

( ରାଗ ମୁଖାରୀ—ତାଳ ଆଦି )

ସ୍ନେହମୟୀ ମାତା ମୋର କରୁଣାରୂପିଣି !
କି ମଧୁର ତବ ନାମ ଆରାମଦାୟିନି !
ଥାଏଁ ଯେବେ ପରବାସେ, ରୋଗେ କଷ୍ଟେ ହା ହୁତାଶେ
ପାଏଁ ମୁଁ ସାନ୍ତ୍ୱନା, ଡାକି ତୋ ନାମ ଜନନି !
ଦେଇ ତୋ ଦେହ ରୁଧିର ବଢ଼ାଇଛୁ ମୋ ଶରୀର,
ତୁଳନା ନ ପାଏ ଖୋଜି ସମସ୍ତ ମେଦିନୀ ।
ଅନିଦ୍ରାରେ ଅନାହାରେ ଥାଅ ଗୋ ମା ମୋ ସେବାରେ,
ଥାଅ ବସି ମୋ ପାଶରେ ଦିବସ ରଜନୀ ।
ମୋ ପାଇଁ ଦେବ ଜୀବନ, କେ ଅଛୁ ମା ଗୋ ଏସନ
ମୋର ଆୟୁ-ବିତ୍ତ-ଯଶ-କଲ୍ୟାଣ-କାମିନୀ ।

———

## ତୁକାରାମ

ମହାରାଷ୍ଟ୍ର ଦେଶର ସୁପ୍ରସିଦ୍ଧ କବି ଏବଂ ସାଧୁ ତୁକାରାମଙ୍କୁ ଦର୍ଶନ କରିବା ସକାଶେ ଛତ୍ରପତି ଶିବାଜି ନିମନ୍ତ୍ରଣ କରିବାରୁ ଭକ୍ତପ୍ରଧାନ ତୁକାରାମ ଗୋଟିଏ ଅଭଙ୍ଗ ଅର୍ଥାତ୍ କବିତାଦ୍ୱାରା ଯେଉଁ ଉତ୍ତର ଦେଇଥିଲେ, ସେଥିର ସାରମର୍ମ ଏହି —

ଶୁଣିବାକୁ ଆଜ୍ଞା ହେଉ ଆହେ ଛତ୍ରପତି !
ତୁମ୍ଭ ମତି ଭକ୍ତି ଥାଉ ବିଠୋବାଙ୍କ ପ୍ରତି । *
ଲେଖିଅଛ ମୋତେ ତୁମ୍ଭ ପାଶେ ଯିବାପାଇଁ,
ମାତ୍ରକ ଯିବାର କିଛୁ ହେତୁ ଦେଖୁ ନାହିଁ ।
କାନନନିବାସୀ ମୁହିଁ ଉଦାସୀନ ବେଶେ,
ବାସନାବିହୀନ ଚିତ୍ତେ ଭ୍ରମେଁ ଦେଶେ ଦେଶେ ।
କଦାକାର ଧୂଳିମୟ ବସନବିହୀନ,
ଫଳମୂଳହାରୀ ତନୁ ଅଟେ ଜୀର୍ଣ୍ଣ ଶୀର୍ଣ୍ଣ ।
ଆହାର ବିହାର ମୋର ଯେ ପ୍ରକାର ସ୍ଥିତି,
ଦେଖି ମୋତେ କେଭେ ଜାତ ହେବ ନାହିଁ ପ୍ରୀତି ।
ବିନ୍ଧୁଭାବେ ଏହି କଥା କରେଁ ନିବେଦନ,
ମୋତେ ଦେଖିବାର କଥା ଭୁଲନ୍ତୁ ରାଜନ !
ଆଉ ଏକ କଥା ଜାଣ, ବିଠୋବାସେବକେ
ଉପାସନା ନ କରନ୍ତି ଯାଇ ଆନ ଲୋକେ ।
ରକ୍ଷକ ପୋଷକ ମୋର ପ୍ରଭୁ ଭଗବାନ,
ଏକମାତ୍ର ତାଙ୍କୁ ସଦା କରିଥାଏଁ ଧ୍ୟାନ ।

* ତୁକାରାମଙ୍କର ଉପାସ୍ୟ ଏବଂ ମହାରାଷ୍ଟ୍ର ଦେଶର ସର୍ବଜନ ପୂଜନୀୟ ବିଠୋବା ଦେବଙ୍କ ମନ୍ଦିର ପଣ୍ଢରପୁରରେ ବିଦ୍ୟମାନ ।

ଜଗତରେ ନାହିଁ ମୋର କିଛି ଅଭିଳାଷ,
କାହିଁପାଇଁ ଯିବି ବୋଲି ଆଜ୍ଞା ତୁମ୍ଭ ପାଶ ?
ତେଜିଛି ବିଷୟ ତୃଷା ଜଗତର କାର୍ଯ୍ୟ,
ବିଠୋବାଙ୍କ ଆଜ୍ଞା ମାତ୍ର ମୋର ଶିରୋଧାର୍ଯ୍ୟ ।
ପାଷାଣଶଯ୍ୟାରେ କରିଥାଏଁ ମୁଁ ଶୟନ,
ଗଗନମଣ୍ଡଳ ମୋର ଅଙ୍ଗ ଆବରଣ ।
ଆହାର ସକାଶେ ଅଛି ଅରଣ୍ୟରେ ଫଳ,
ପାନପାଇଁ ନଦୀ ତଡ଼ାଗରେ ପୂର୍ଣ୍ଣ ଜଳ ।
ମାଗିବି ଅନ୍ୟର ଅନୁଗ୍ରହ କି ସକାଶେ ?
ଆୟୁ ମାତ୍ର ହୁଏ କ୍ଷୟ ବାସନାଭିଳାଷେ ।
ଯେଉଁମାନଙ୍କର ଥାଏ ଅର୍ଥ ଅଭିଳାଷ
ସେହି ଲୋକମାନେ ସିନା ଯାନ୍ତି ରାଜା ପାଶ ।
ସେଥିରେ କି ହୁଏ ତାଙ୍କ ବାସନା ସଫଳ ?
ହୀନତା ଲାଞ୍ଛନା ଲାଭ ହୁଏଟି କେବଳ ।
ମର୍ଯ୍ୟାଦା ଲଭନ୍ତି ରାଜା ପାଶେ ଧନବାନ,
ଅର୍ଥ ହୀନ ଲୋକ ତହିଁ ପାଏ ଅପମାନ ।
ଆପଣଙ୍କ ଦରଶନେ ନାହିଁ ଫଳୋଦୟ,
କିପାଇଁ କରିବି ବୋଲି ବୃଥା କାଳ କ୍ଷୟ ?
ଗତାୟୁତ ପରିଶ୍ରମ ହୋଇବ ମୋହର,
ଏଥିରେ ମୋହର ନାହିଁ କିଛି ଉପକାର ।
ପ୍ରଭୁଙ୍କ କାର୍ଯ୍ୟରେ ଦେଇଛି ତ ପ୍ରାଣ ମନ,
ଭ୍ରମ ହେଉ ପଛେ ତାହା କରିବି ପାଳନ ।
ମହାପ୍ରଭୁ ତୁମ୍ଭ ହାତେ ଦେଇଛନ୍ତି ରାଜ୍ୟ,
ପ୍ରଜାଙ୍କୁ ପାଳିବା ଅଟେ ତୁମ୍ଭ ନିତ୍ୟକାର୍ଯ୍ୟ ।
କରିବ କର୍ତ୍ତବ୍ୟ କାର୍ଯ୍ୟ ରଖି ଧର୍ମେ ମତି,
ନିରନ୍ତରେ ପାଉଥିବ ପ୍ରଜାଙ୍କ ଉନ୍ନତି ।

———

## କକ୍ଷଭ୍ରଷ୍ଟ ତାରକା

( ରାଗ—ଚକ୍ରକେଳି )

ଲେଖିବାକୁ ହୃଦେ ଉପୁଜେ ଭୀତି.
ଶୁକ୍ଳା ଭାଦ୍ରପଦ ଦଶମୀ ତିଥି ।
ଢାଙ୍କିଛି ଚନ୍ଦ୍ରମା ଜଳଦ ଛାୟା,
ବିଷାଦ ଯେସନେ ସୁନ୍ଦର କାୟା ।
ଗଗନ-ପ୍ରାଙ୍ଗଣେ ଦୀପ ସଦୃଶ
ଥିଲା ତାରାଟିଏ ହେଲା ଅଦୃଶ୍ୟ ।
ଆତଙ୍କେ ଆଶାରେ ରହିଛି ଚାହିଁ,
କକ୍ଷଭ୍ରଷ୍ଟ ହୋଇ ଗଲା ସେ କାହିଁ ?
ଅନନ୍ତ ବ୍ରହ୍ମାଣ୍ଡ ବିଶାଳ ବକ୍ଷେ
ଉଭି ଲୁଚିଗଲା କାହିଁ ଅଲକ୍ଷ୍ୟେ ?
ମାନବ ହୃଦୟେ ଆଶା ସମାନ,
ଚାହୁଁ ଚାହୁଁ ହେଲା ସେ ଅନ୍ତର୍ଦ୍ଧାନ ।
ସୁଖ ଶାନ୍ତି ଆଶା ଭରସା ସବୁ
ଏପରି ହରାଇଥାନ୍ତି ମାନବ ।

———

## ପୁନର୍ମିଳନ

ସେ କି ବାସ କରେ ଅନ୍ଧକାରମୟ ଦେଶେ ?
ଅବା ଯହିଁ କୋଟି ସୂର୍ଯ୍ୟ କିରଣ ପ୍ରକାଶେ ?
ଅଥବା ପାର୍ଥିବ ଏହି ଅନ୍ଧାର, ଆଲୋକ,
ସେ ଅଜ୍ଞାତ ଦେଶେ ନାହିଁ କିଛିହିଁ ସମ୍ପର୍କ !
ନିଶ୍ଚୟ ସେ ଦେଶେ ଥିବ ଭିନ୍ନ ରୀତି ନୀତି,
ସ୍ୱତନ୍ତ୍ର ପ୍ରକାର ତହିଁ ଉଲ୍ଲାସ ବା ଭୀତି ।
ପଞ୍ଚଭୂତାତୀତ ଆତ୍ମା ଥାଏ ଯେଉଁ ଦେଶେ,
ତସ୍ୟ ଅନୁରୂପ ବସ୍ତୁ ଥିବ ତ ବିଶେଷେ ।
ଆଧେୟ-ଆଧାର ରୂପ ଆତ୍ମା ଓ ଶରୀର,
ଶରୀର-ବିନାଶେ ସେ କି ଛନ୍ତି ନିରାକାର ?
ଦେହ ବିନା ବର୍ତ୍ତମାନ ଛନ୍ତି ସେ ଯେମନ୍ତ,
ସେହିରୂପେ ଦିନେ ମୁଁ ତ ହେବି ପରିଣତ !
ଛାଡ଼ି ରହିଛନ୍ତି ସେହି ଅଜ୍ଞାତ ବାସରେ,
ଆତ୍ମା ସିନା ତାଙ୍କୁ ଲୋଡ଼ୁଅଛି ନିରନ୍ତରେ !
ଯେ ରୂପରେ ଯେ ସ୍ଥାନରେ ଥାନ୍ତୁ ସେ ଯେସନେ,
ଭେଟାଭେଟି ହେବ ଆତ୍ମା ଆତ୍ମା ଆକର୍ଷଣେ ।

———

## ଜୀବନେ ବିଡ଼ମ୍ବନା

ବାରମ୍ବାର ସେହି ଏକ କଥା କହି କହି
ଯୁଗ ଯୁଗାନ୍ତର କେତେ କାଳ ଗଲା ବହି ।
ଅବସାଦ, ବିଷଣ୍ଣତା ଦୁଃଖ ଆଣେ ମନେ
ତଥାପି ସେ କଥା ବାରମ୍ବାର ପଡ଼େ ମନେ ।
ଜଳେ ସ୍ଥଳେ, ଶୂନ୍ୟମାର୍ଗେ, ଜାଗ୍ରତେ, ସ୍ୱପନେ,
ସେହି ଏକମାତ୍ର ଚିତ୍ର ଭାସୁଛି ନୟନେ !
ମନେ ପ୍ରାଣେ ପରିପୂର୍ଣ୍ଣ, ପୁଷ୍ପେ ଗନ୍ଧ ଯଥା
ନେହିବାକୁ କି ପାରେ ସେହି ପାସୋରିବା କଥା ?
ପଟରେ ଆଲେଖ୍ୟ ଚିତ୍ର ଯାଏ ଦେଲେ ପୋଛି,
ଶଶାଙ୍କ-ଲାଞ୍ଛିତ ଚିହ୍ନ, ଯିବ କି ସେ ଲୁଚି !
ଯେଉଁ ଦୁଃଖ ଭାବନାରେ ହୁଏ ସୁଖୋଦୟ,
ବରଞ୍ଚ ସେ ଶାନ୍ତିମୟ ଚିନ୍ତାର ବିଷୟ ।
ଯେ ଦିନ ମନରୁ ଦୂର ହେବ ସେ ଭାବନା,
ଜାଣିବି ଘଟିଲା ଜୀବନରେ ବିଡ଼ମ୍ବନା ।

———

## ଶ୍ରୀ ଦାମୋଦର ପଟ୍ଟନାୟକ

ସାହିତ୍ୟ ସଂସାରେ ତବ ବିକାଶେ ଗୌରବ,
କାଞ୍ଚନ ଆକାରେ କାଚ ଜାତ ଅସମ୍ଭବ ।
ଲଭିଲେ କବିତ୍ୱ କୀର୍ତ୍ତି ଉତ୍କଳ ରମଣୀ,
ବନ୍ଦନୀୟା ସୁଲୋଚନା ତୁମ୍ଭର ଜନନୀ ।
ଲୁପ୍ତ ପ୍ରାୟ ହେଉଥିଲା ଉତ୍କଳ ସଙ୍ଗୀତ
ବାଛି ବାଛି ସାଧାରଣେ କଲ ପ୍ରକାଶିତ ।
କବି କରେ କବିତ୍ୱର ଗୁଣ ଅନୁଭବ,
ଗୁଣୀ ବୁଝିପାରେ ଗୁଣ ମର୍ଯ୍ୟାଦା ଗୌରବ ।
ଜନନୀର ଯୋଗ୍ୟପୁତ୍ର ଆହେ ଦାମୋଦର,
ପ୍ରାଣପଣେ କର ମାତୃଭାଷାର ଆଦର ।
ତୁମ୍ଭର କବିତା ମାତ୍ର ପ୍ରକୃତି-ଗଠିତ,
ପାଠକାଳେ ହୁଏ କିବା ପ୍ରତ୍ୟକ୍ଷ ଚିତ୍ରିତ ।
କାଳସ୍ରୋତେ ଦିନେ ତୁମ୍ଭେ ଯାଇପାର ଭାସି,
ଥିବ ସେ କବିତାମାଳା ଜଗତେ ବିକାଶି ।

———

## ହଜିଲା ଧନ

କି ଧନ ସେ ଥିଲା    ଯାଇଛି ହଜି,
ଦିବାନିଶି ହୁଏଁ    ଯା ନାମ ଭଜି ।
ଶୟନେ ସ୍ୱପନେ    ପଡ଼େ ମନରେ,
ଭୁଲି ନ ପାରିଲି    ତାହାକୁ ଥରେ ।
କେତେ ପଢ଼ା ପାଠ    ଗଲି ପାସୋରି,
ଗାଉଥିବି ଗୀତ    ତା ନାମ ଧରି ।
ବସନ୍ତ ପବନ,    ଶାରଦ ରାତି,
ଫୁଲ୍ଲ କମଳିନୀ,    କୌମୁଦୀ ଭାତି,—
ଆନନ୍ଦ ଉତ୍ସବେ,    ସଙ୍ଗୀତ ତାନେ,
ନ ଦେଖେ ମାଧୁରୀ    ତାହା ସମାନେ ।
ସବୁ ତ ଯାଇଛି    ଆଶା ଭରସା,
ନ ବୁଝିଲି ମନ    କି ହେବ ଦଶା ?
ହୃଦୟେ ବିନ୍ଧୁଛି    ବେଦନା ଯେତେ,
ଲୋକଦେଖା ହସ    ହସିବି କେତେ !
କାହାକୁ କହିବି    ହୃଦୟ କଥା !
କେ ବୁଝିବ ମୋର    ମରମ ବ୍ୟଥା !
ଦଗ୍ଧ ପ୍ରାଣୁଁ ସୁଖ    ଶାନ୍ତି ସକଳ
ଯାଇଛି ତ ସରି,    କଷ୍ଟ କେବଳ !
କି ଧନ ପାଇଲେ    ତାକୁ ଭୁଲିବି
ଖୋଜି ନ ପାଇଲି    ଗୋଟା ପୃଥିବୀ ।
ଯେତେଦିନ ଥିବ    ପିଣ୍ଡରେ ପ୍ରାଣ,
ଧରିଥିବି ଦୁଃଖ    ସଙ୍ଗୀତ ତାନ !

———

## ଶ୍ରୀଚୈତନ୍ୟ ଦେବଙ୍କ ସଂକୀର୍ତ୍ତନ

ଶ୍ରୀ ଚୈତନ୍ୟଦେବ ନାଚ ନାଚ ଗୀତ ଗାଇ,
ନବଦ୍ୱୀପାଙ୍ଗଣରେ ଡାକୁଛନ୍ତି—ଆସ ଭାଇ !
ମିଳି ମିଶି କରୁ ପ୍ରଭୁନାମ ସଂକୀର୍ତ୍ତନ,
ଆସ ଆସ ଅଛ ଯହିଁ ସାଧୁ ଭକ୍ତଗଣ !
ତେଜି ମନୁ ଅହଙ୍କାର—ଭେଦାଭେଦ ଜ୍ଞାନ,
ସମସ୍ତଙ୍କ ଏକମାତ୍ର ପିତା ଭଗବାନ ।
ଚଣ୍ଡାଳ, ଯବନ, ବିପ୍ର ସର୍ବେ ମୋର ଭାଇ,
ଆସ ମିଳି ମିଶି ନାଚୁଁ ହରିଗୁଣ ଗାଇ ।
ଜାତିଭେଦ, ଧର୍ମଭେଦ, କପାଁ ଗଣ୍ଡଗୋଳ ?
ଭାଇ ଭାଇ ମିଳି ନାଚୁଁ, ହରି ହରି ବୋଲ !
ଦେଖିଲୁ କୋରାନ ଫେଇ, ବାଇବେଲ, ବେଦ,
ସମସ୍ତଙ୍କ ଲକ୍ଷ୍ୟ ବ୍ରହ୍ମ—ନାହିଁ ଭେଦାଭେଦ ।
ରଚିତ ସକଳ ଶାସ୍ତ୍ର ଏକ ଉପାଦାନେ,
ପଡ଼ିତ ସାଗରଗର୍ଭେ ଯଥା ନଦୀମାନେ ।
ଭେଦବୁଦ୍ଧି, ଦ୍ୱେଷ, ହିଂସା ନରକନିଦାନ,
ଭ୍ରାତୃପ୍ରେମ, ସମଜ୍ଞାନ ସ୍ୱର୍ଗର ସୋପାନ ।
ସର୍ବଘଟେ ସ୍ଥିତ ଚିଦାନନ୍ଦ ଭଗବାନ,
ଗୀତା, ଭାଗବତ ଶାସ୍ତ୍ର ସେଥିର ପ୍ରମାଣ ।
ଧର୍ମ ମାର୍ଗ ମାତ୍ର ଜୀବେ ଦୟା, ନାମେ ଭକ୍ତି,
ଦେହ ମନ ଶୁଦ୍ଧ ଯୋଗସିଦ୍ଧି ଅନାସକ୍ତି ।
ବାହ୍ୟ ଆଡ଼ମ୍ବର ଜାଣ ସର୍ବ ମିଥ୍ୟାଚାର,
ଅଭ୍ୟନ୍ତରଗତ ସର୍ପ ବଲ୍ମୀକେ ପ୍ରହାର ।
ବିକାଶେ ମାନବ ମଧ୍ୟେ ଶ୍ରୀହରି ମହିମା,
ମାନବ ମଧ୍ୟରେ ଦେଖ ପ୍ରଭୁଙ୍କ ଗରିମା ।
ଅଣୁ ପରମାଣୁ କିମ୍ବା ଅନନ୍ତ ଆକାଶେ
ଏକମାତ୍ର ମହାପ୍ରଭୁ ମହିମା ବିକାଶେ ।
ବିଶ୍ୱାସେ ପାଇବ ହରି—ତର୍କେ ବିଡ଼ମ୍ବନା,
ପ୍ରହ୍ଲାଦ ଲଭିଲେ ହରି ସ୍ତମ୍ଭେ ଅଛି ଜଣା ।
ବୃଥା କୋଳାହଳେ ଭାଇ, ବଢ଼ିବ ଅଶାନ୍ତି,
ଆମ୍ଭ ଧର୍ମ ସତ୍ୟ, ତୁମ୍ଭ ମିଥ୍ୟା—ମନେ ଭ୍ରାନ୍ତି ।
ହରି ହରି ବୋଲ ଭାଇ ନାମ ମାତ୍ର ସାର,
ଭବସିନ୍ଧୁ ଲଙ୍ଘିବାକୁ ନାମ କର୍ଣ୍ଣଧାର ।

---

## କାହିଁ ସେ ?

କାହିଁ ଅଛି—କାହିଁ ଗଲେ ଦେଖିବି ସେ ମୁଖ ?
ଶାରଦ ଶର୍ବରୀ ସେ କି ଶଶାଙ୍କ ମୟୂଖ ?
ପ୍ରଚଣ୍ଡ ସାହାରା ମରୁ ସିକତା ପ୍ରାନ୍ତରେ
ଅଛି କି ଗମ୍ଭୀର କୂପେ ସୁଧା ସ୍ୱରୂପରେ ?
ସାଧନାର ସିଦ୍ଧି କିବା ତପସ୍ୟାର ଫଳେ
ଅଛି କି ଲହରୀ ଲୀଳା ମାଳାମ୍ବୁ ହିଲ୍ଲୋଳେ ?
ତୁଷାର ଧବଳ ଶୀତପ୍ରଧାନ ଦେଶରେ,
ମନ୍ଦାରଲୋହିତ ପ୍ରାତ ରବିକିରଣରେ,
ନିଦାଘ ନିଶୀଥ, ସିକ୍ତ କୁସୁମ ସୌରଭେ,
କିମ୍ବା ସାନ୍ଧ୍ୟ ଧୂସରତାର ରୂପେ ମିଳନଭେ,
କ୍ଳାନ୍ତ ଶ୍ରାନ୍ତ ଦେହେ ଘୋର ନିଦ୍ରା ସମୟରେ
ସଙ୍ଗରେ କି ପ୍ରେମମୟ ସୁଖଦ ସ୍ୱପ୍ନରେ
ନାହିଁ ନାହିଁ, ନୁହେ ସେ ତ ଉପଯୁକ୍ତ ସ୍ଥାନ,—
ଅକଳଙ୍କ ପୁଣ୍ୟମୟ ପବିତ୍ର ମହାନ ।
ପବିତ୍ରତା ପୁଣ୍ୟପ୍ରଭା ଯହିଁ ସମବେତ,
ବୁଝେଁ ଅନୁମାନେ ତହିଁ ରହିଥିବ ସେ ତ ।

---

## "ମନ୍ଦଃ କବି ଯଶଃପ୍ରାର୍ଥୀ"

( ରାଗ - ମଙ୍ଗଳ )

'ମନ୍ଦଃ କବିଯଶଃପ୍ରାର୍ଥୀ' ଏହି ପରିଚୟ
ମୋ କବିତା ପାଠ କରି ପାଇବ ନିଶ୍ଚୟ ।
ନାହିଁ ମୋ ପ୍ରତିଭା ନାହିଁ ଗ୍ରନ୍ଥ ଅଧ୍ୟୟନ,
କି ଗୁଣେ କରିବି କବିଯଶଃ ଉପାର୍ଜନ ?
ତଥାପି ଚଞ୍ଚଳ ମନ ସଦା ଅଛି ଧାଇଁ,
ସାଧାରଣେ କବିଯଶ ଲଭିବାର ପାଇଁ ।

ଜନ-ସମାଜରେ-କବି ଜୀବନ ଦୁର୍ଲଭ
ଲଭିବାକୁ ସେ ଐଶ୍ୱର୍ଯ୍ୟ ବ୍ୟାକୁଳ ମାନବ ।
ଥାଉ ବା ନ ଥାଉ ଜ୍ଞାନ ପ୍ରତିଭାର ଶକ୍ତି,
ହେବି କବି ଅକିଞ୍ଚନ, ତହିଁ ମତି ଗତି ।
କେ କାହିଁ ହୋଇଛି କବି ଆପଣା ଯତ୍ନରେ ?
ଏ କଥା ତ ମୁହିଁ ବେଳେ ନ ଭାବିଲି ଥରେ ।
ମାତ୍ର ଦୃଢ଼ରୂପେ ମନ ମଧ୍ୟେ ଅଛି ଜାଣି,
କାଳିଦାସ ମହାକବି ସେବି ବୀଣାପାଣି ।
ପାଏ କି ସେ ମହାବର ଲୋକ ସହଜରେ ?
ହେବି ବା ସାରଳାଦାସ ସାରଳାଙ୍କ ବରେ ।
ଲଭୁଛି ସାନ୍ତ୍ୱନା ମନେ ପୋଷି ଏହି ଆଶା,
କରୁଛି ସାର୍ଥକ ପ୍ରାଣ ସେବି ମାତୃଭାଷା ।

———

## କବି ଅନ୍ନପୂର୍ଣ୍ଣା

(ରାଗ—ମଙ୍ଗଳ)

ଅନ୍ନଶୂନ୍ୟା ଅନ୍ନପୂର୍ଣ୍ଣା ମହିଳାମଣ୍ଡନା,
କବି ନାମେ ମୁହିଁ ତୋତେ କରୁଛି ଗଣନା ।
ସାମାନ୍ୟ ଗୃହିଣୀ ତୁହି ନୋହୁ ଧନବତୀ,
ମାତ୍ର ମୋ ବିଶ୍ୱାସ ତୁହି ମହାଭାଗ୍ୟବତୀ ।
ଧର୍ମନିଷ୍ଠା, ପତିଭକ୍ତି କରୁଛୁ ସମ୍ବଳ,
କୁଳବତୀ ଲକ୍ଷେ ଯାହା ସମ୍ପତ୍ତି କେବଳ ।
ଦାରିଦ୍ର୍ୟର ବେଦନାରେ ନୋହି ବିଚଳିତ,
ସୁଖେ ଦୁଃଖେ ରଖିଅଛୁ ପ୍ରଭୁପଦେ ଚିତ୍ତ ।
ରୋଗେ ଦୁଃଖେ ପଡ଼ି ମଧ୍ୟ ସ୍ଥିର କରି ମନ,
ସାହିତ୍ୟ ସେବାରେ କଲୁ ଚିତ୍ତ ସମର୍ପଣ ।
ଜଗତର ସୁଖ ଦୁଃଖ ନୁହେ ଚିରସ୍ଥାୟୀ,
ଭୁଞ୍ଜନ୍ତି ମାନବଗଣ ଭାଗ୍ୟ ଅନୁଯାୟୀ ।
ଆସୁ ବା ଐଶ୍ୱର୍ଯ୍ୟ କିମ୍ବା ବିପଦ ଭୀଷଣ,
ଧୈର୍ଯ୍ୟ ଧରି କରିବୁ ତା ମସ୍ତକେ ଧାରଣ ।
ବିଚଳିତ ହେବୁ ନାହିଁ ସମ୍ପଦେ ବିପଦେ,
ଦୃଢ଼ରୂପେ ରଖିଥିବୁ ଚିତ୍ତ ପ୍ରଭୁପଦେ ।
ଯେ କୀର୍ତ୍ତି ରଖିଲୁ, ମା, ତୁ ଉତ୍କଳ-ମଣ୍ଡଳେ,
ଗାଇବେ ତା ଭବିଷ୍ୟତ ମାନବ ସକଳେ ।
ଆଶୀର୍ବାଦ କରୁଅଛି ଆଗୋ ସାଧ୍ୱି ସତି !
ମହାପ୍ରଭୁ ପାଦପଦ୍ମେ ଥାଉ ତୋର ମତି ।
ମୋର ଏହି ଅଭିଳାଷ, ଶୁଣ ରେ ନନ୍ଦନ,—
ପାଳିବୁ ଜୀବନ ବ୍ରତ ହୋଇ ତପସ୍ୱିନୀ,
ମଣିବୁ ତୋ ଜଗତରେ ଶତ୍ରୁ ମିତ୍ର ନାହିଁ,
ନିରନ୍ତରେ ରହିଥିବୁ ପ୍ରଭୁପଦ ଚାହିଁ ।

———

## ଶ୍ରୀମତୀ ମାଧବୀ ଦେବୀ

( ରାଗ—ମଙ୍ଗଳ )

ପରମବୈଷ୍ଣବୀ ନୀଳାଚଳ-ନିବାସିନୀ,
ଶ୍ରୀମତୀ ମାଧବୀ ଦେବୀ ବୃଦ୍ଧା ତପସ୍ୱିନୀ ।
ଶିଖୀ ମହାନ୍ତିର ଭଗ୍ନୀ କରଣ ଅଙ୍ଗନା,
ଉତ୍କଳର ଏକମାତ୍ର ରମଣୀମଣ୍ଡନା ।
ତୁମ୍ଭର କବିତା ଶୁଣି ବୈଷ୍ଣବମଣ୍ଡଳୀ,
ହରାଇ ଚେତନା ପଡ଼ିଯାନ୍ତି ପ୍ରେମେ ଢଳି ।
ତୁମ୍ଭର ପ୍ରତିଭା ବହୁ ଦୂରପ୍ରସାରିଣୀ,
ବୈଷ୍ଣବମଣ୍ଡଳେ ପୂଜନୀୟା ତପସ୍ୱିନୀ ।
ଆଗେ ମହାଦେବି ! ଥିଲା ତୁମ୍ଭ ହସ୍ତାକ୍ଷର,
ମୁକ୍ତାମାଳା ସମାନରେ ପରମ ସୁନ୍ଦର ।
ଶ୍ରୀଚୈତନ୍ୟଦେବ ହୋଇ ପ୍ରେମେ ବିମୋହିତ,
ଶୁଣନ୍ତି ଆନନ୍ଦମନେ ତୁମ୍ଭର ସଙ୍ଗୀତ ।
ଶ୍ରୀ ପ୍ରତାପରୁଦ୍ର ଉତ୍କଳର ମହାରାଜ,
ଆଶ୍ଚର୍ଯ୍ୟ ମଣନ୍ତି ଦେବି ! ଦେଖି ତୁମ୍ଭ କାର୍ଯ୍ୟ ।
ମହାତ୍ମା ପ୍ରତାପରୁଦ୍ର ରାଜରାଜେଶ୍ୱର,
ତପସ୍ୱିନି ! ତୁମ୍ଭଠାରେ ଯୋଡ଼ିଥିଲେ କର ।

ପ୍ରଭୁ ଶ୍ରୀଚୈତନ୍ୟ କର ପ୍ରତିଜ୍ଞା ଲଙ୍ଘନ,
କରିଥିଲେ ମାଧବୀଙ୍କ ଶ୍ରୀମୁଖ ଦର୍ଶନ ।
ଶତାବ୍ଦୀ ଶତାବ୍ଦୀ ଗତ ହେଲା ଉତ୍କଳରେ,
ନ ଜନ୍ମିଲେ ନାରୀ ଦେବ ! ତୁମ୍ଭ ସମାନରେ ।
ଶ୍ରୀ ପ୍ରତାପରୁଦ୍ର କନ୍ୟା ମହାତ୍ମା ଚୈତନ୍ୟ,
କରୁଥିଲେ ମାଧବୀଙ୍କୁ ଦେବୀ ତୁଲ୍ୟ ମାନ୍ୟ ।
ପାଣ୍ଡିତ୍ୟେ, କବିତ୍ୱେ, ବ୍ରତେ, ତପ ଆଚରଣେ,
ମାଧବୀ ସମାନେ ଜନ୍ମି ନାହିଁ ନାରୀଜଣେ ।
ପୁରାଣେ ଶୁଣିଛୁ କେତେ ତପସ୍ୱିନୀ କଥା,
ତୁମ୍ଭେ ଥିଲ ତପସ୍ୱିନ ! ପରମ ଦେବତା ।
ଗୋସ୍ୱାମୀ ଗୋବିନ୍ଦ ଦାସ, ଜଗନ୍ନାଥ ଦାସ,
ବୈଷ୍ଣବୀୟ ଗ୍ରନ୍ଥ କରିଅଛନ୍ତି ପ୍ରକାଶ ।
କରିଣ ମହିଳା ତୁମ୍ଭେ, ଓଡ଼ିଆଣୀ ଜାତି,
ଲଭି ଯାଇଅଛ ବଳେ କବିକୁଳ ଖ୍ୟାତି ।
ଭାଷା, ଭାବ, ଭଙ୍ଗୀ, ପୁଣି ରଚନା ପ୍ରଣାଳୀ—
ସରଳତା ମଧୁରତା ଦେଇଅଛ ଢାଳି ।
ପଦର ବିନ୍ୟାସ ଦେଖି ରଚନାର ଠାଣି
କେ ବୋଲିବ ଲେଖିଅଛୁ ଜଣେ ଓଡ଼ିଆଣୀ ?
ଯେତେକ ଗୋସ୍ୱାମୀ ପଦାବଳୀ ରଚୟିତା,
ସେମାନଙ୍କ ମଧ୍ୟେ ଥିଲ ପରମ ପୂଜିତା ।
ଯେ ପ୍ରକାର ଲେଖିଅଛ ଚୈତନ୍ୟଚରିତ,
ପାଠ କରି ହୋଇଯାଏଁ ମୋହିତ ଚକିତ ।
ଜଗନ୍ନାଥ, ଚଣ୍ଡୀଦାସ ଗୀତ ଅଛୁ ଶୁଣା,
ତୁମ୍ଭ ଗୀତ ତାଙ୍କଠାରୁ ନୁହେ କିଛି ଊଣା ।
ତୁମ୍ଭ ଗୀତ ଯେତେବେଳେ ଗାଏଁ ଠାକୁରାଣୀ,
କାହା ଗୀତ ଗାଉଅଛୁ ନ ପାରଇ ଜାଣି ।
ଏମନ୍ତ ଯେ ଦେବୀ ଜନ୍ମିଥିଲ ଉତ୍କଳରେ,
ଦେଶବାସୀ ଲୋକେ ମୁଖେ ନ ଧରନ୍ତି ଥରେ ।
ଅଯତ୍ନ କରିବା ଯୋଗୁଁ ସ୍ୱଦେଶନିବାସୀ
ତୁମ୍ଭର କବିତା କେତେ ଯାଇଅଛୁ ଭାସି ।
ବିଲୁପ୍ତ ସଙ୍ଗୀତ କେତେ ରାଷ୍ଟ୍ର ବିପ୍ଳବରେ,
ବହୁତ ବିଲୁପ୍ତ ଦେଶବାସୀ ଅଯତ୍ନରେ ।
ତିଷ୍ଠନ୍ତି ଅମୂଲ୍ୟ ଧନ ଗୁଣଗ୍ରାହୀ ଜନେ,
କେତେକ ସଙ୍ଗୀତ ରଖିଅଛନ୍ତି ଯତନେ ।
ତୁମ୍ଭର କବିତା ଭକ୍ତ ସାଧୁ ହୃଦୟରେ
ଚିହ୍ନିତ ରହିଛି, ଥିବ ଯୁଗ ଯୁଗାନ୍ତରେ ।
ସାହସରେ ଦୃଢ଼ରୂପେ ବୋଲିପାରେଁ ମୁହିଁ,
ଯଶ ଧ୍ୱଂସକାରୀ କାଳ ନ ପାରିବ ଛୁଇଁ ।
ନରାଧମ, ଅକିଞ୍ଚନ ଫକୀରମୋହନ,
ମହାଦେବୀ ! ଭକ୍ତିଭାବେ ବନ୍ଦେ ଶ୍ରୀଚରଣ ।

———

## ସେହି ନାମ

( ରାଗ—ଚକ୍ରକେଳି )

କେତେ ଥର ବସି ବସି ନିର୍ଜନେ
ବିଚାର କରିଛି, ଆପଣା ମନେ,
ସ୍ୱପନ ସମାନ ସଂସାର ରାଜ୍ୟ,
ଆସିବା ଯିବା ତ ଏହାର କାର୍ଯ୍ୟ ।
ଭସାଇ ଯାଇଛି ମୋତେ ଯେ ଦୁଃଖେ,
ନ ଧରିବି ଆଉ ସେ ନାମ ମୁଖେ ।
ପାସୋରି ପାରିବି କାହିଁ ମୁଁ ତାକୁ,
ଧରିଛି ଆଣ୍ଠରେ ପ୍ରାଣ ଆତ୍ମାକୁ ।
ଛାୟା କାୟା ପରି ଯାହା ସମ୍ବନ୍ଧ,—
କୁସୁମରେ ଥିବ କୁସୁମ ଗନ୍ଧ,—
ମୁଁ ତାକୁ ଛାଡ଼ିଛି, ସେ କାହିଁ ଛାଡ଼େ ?
ଜୀବନ ଥିଲେ କି ନିଦ ନ ମାଡ଼େ ?
ଆପଣେ ଆସିଲେ ଆସୁ ମନକୁ,
ଭଜ ହେବି କପାଁ ସେହି ନାମକୁ ?

———

## ଅନୁଭୂତ

ରାଗ – ଭୂପାଳ

ଦେଖୁଛୁ କି ଆଜ ଜାଗ୍ରତ ସ୍ୱପନ ?
କି ଦେଖି କପାଇଁ ବିମୋହିତ ମନ ?
ଗୁପତ ମରମେ ସୁପତ ବାସନା
ସଫଳ ସମାନେ କପାଁ ଯାଏ ଜଣା ?
ସହସା କପାଁଇ ଅଗୀତ ରାଗିଣୀ ।
ଅନୁଭବ କରେଁ ଶତ୍ରୁ ବିମୋହିନୀ ?
ତମିର ଆକରୁ ଅମୂଲ୍ୟ ରତନ,
ନବ ଯଉବନ ବିଳାସ ଜୀବନ,
ଅତୀତ ବସନ୍ତ କୋକିଳକାକଳୀ,—
ନିର୍ବାଣ ପ୍ରଦୀପ ଉଠିଲା କି ଜଳି ?
ଶତ ସ୍ୱର୍ଗବାସ ସ୍ୱରଗର ଜ୍ୟୋତି,
ହୃଦୟ ମନ୍ଦିର ମଣ୍ଡନ ଆରତି,
କପାଁ ଦେଖେ ଆଜ ମାନସ-ନେତ୍ରରେ ?
ଆଶାର ଛଳନା ଭେଟିବି ସ୍ୱର୍ଗରେ ?

———

## ନବବଧୂ ଆହ୍ୱାନ

( ରାଗ —ବଙ୍ଗଳାଶ୍ରୀ )

ଆସ ରେ ଆସ ରେ ନୟନପ୍ରତିମା !
ନେବି ମୁଁ ତୋତେ ବନ୍ଦାଇ,
ଆହା ! ଆହା ! ଆହା ! ଦୁଃଖିନୀ ମାତାକୁ
ଆସିଅଛୁ ତୁ କନ୍ଦାଇ ।
କେଉଁ ଦେବତାର କନ୍ୟା ତୁ ଝିଅ ରେ,
କେଉଁ ତାରକାର ଜ୍ୟୋତି,
କେଉଁ ଚନ୍ଦ୍ରମାର ବିମଳ କୌମୁଦୀ
ହୋଇଅଛୁ ମୂର୍ତ୍ତିମତୀ ?
ଦୟା ମାୟା, ସ୍ନେହ, ଲାବଣ୍ୟ ମାଧୁରୀ,
ତୁହି କି ରେ ରୂପାନ୍ତର ?
ଅଭିଶାପଗ୍ରସ୍ତା ଆରେ ମୋ ସଙ୍ଗାଳି,
ତୁ କି ନିନ୍ଦିବ ଅପ୍‌ସରା ?
ତୁ କି ରେ ମୋହର ପ୍ରଦୋଷ-ଗଗନ-
ପ୍ରାଙ୍ଗଣରେ ସୁଖ-ତାରା ?
ହେବୁ କି ମୋହର ଅନ୍ଧର ଲଉଡ଼ି,
ସମସ୍ତ ସନ୍ତାପହରା ?
ହିରଣ୍ୟର ପ୍ରଭା, ସୁମନର ଶୋଭା
ତୁ କି ମାଣିକ୍ୟର ଦ୍ୟୁତି ?
ତୁ କି ପଦ୍ମାସନା ଗୋଲୋକବାସିନୀ
କ୍ଷୀରାବ୍ଧି ତନୟା ମୂର୍ତ୍ତି ?
ବସନ୍ତ ମାଳତୀ, ଫୁଲ୍ଲ କୁମୁଦିନୀ,
ତୁ କି ଶାରଦ ମଲ୍ଲିକା ?
କେଉଁ ତପୋବଳେ ପାଇଛୁ ରେ ତୋତେ ?
କୁଳବଧୂ ପ୍ରାଣାଧିକା !
ଆଶୀର୍ବାଦ କରେଁ, ଆରେ ମୋ କଲ୍ୟାଣି !
ସୁଖେ ରହ ମୋହ ଘରେ,
କରୁଛୁ କାମନା, ତୋହପରି ବଧୂ
ପାଏଁ ଜନ୍ମ ଜନ୍ମାନ୍ତରେ ।

———

## ନୀଳମଣି ବିଦ୍ୟାରତ୍ନ

( ରାଗ —ମଙ୍ଗଳ )

ସାମାନ୍ୟ ବ୍ରାହ୍ମଣ ପୁତ୍ର ଆହେ ନୀଳମଣି,
ଉତ୍କଳର ପ୍ରିୟ ଶ୍ରେଷ୍ଠ ପୁତ୍ରରୂପେ ମଣି ।
ଭାଷା ରାଜ୍ୟେ ଛିନ୍ନ ଭିନ୍ନ ଥିଲା ଏ ଉତ୍କଳ,
ବାନ୍ଧିଲ ଏକତା ସୂତ୍ରେ ତୁମ୍ଭେ ହିଁ କେବଳ ।
ଉତ୍କଳ ବିଧବାପାଇଁ ଆକୁଳ ଜୀବନେ,
କାନ୍ଦିଅଛ, କନ୍ଦାଇଣ ଦେଶବାସିଗଣେ ।

କଲ୍ପଲତା ସମ୍ମିଳନୀ ଉତ୍କଳ ଦେଶରେ—
ପ୍ରଥମରେ ଉପ୍ତ ବୀଜ ତୁମ୍ଭ ହୃଦୟରେ ।
ଦେଶହିତ ବ୍ରତେ ସମର୍ପଣ କରି ଚିତ୍ତ
ଶୁଣାଇଲ ଉତ୍କଳକୁ ଜାତୀୟ ସଙ୍ଗୀତ ।
ତୁମ୍ଭର ପତ୍ରିକା ଲଭିଅଛି ଉଚ୍ଚ ସ୍ଥାନ,
ତୁମ୍ଭେ ଏକା କରି ଜାଣ କବିଙ୍କ ସମ୍ମାନ ।
ମାତୃଭାଷା ଉନ୍ନତିରେ ହବା ନିଶି ଯତ୍ନ,
ଚିରଜୀବୀ ହୁଅ ମାଳମଣି ବିଦ୍ୟାରତ୍ନ ।

— ——

## ସତୀ ଲୁକ୍ରେସିୟା

[ ସମ୍ଭ୍ରାନ୍ତକୁଳଜାତା ସତୀ ଲୁକ୍ରେସିୟା ଇଟାଲିର ସୁପ୍ରସିଦ୍ଧ ରଣବୀର କୋଲେଟିନଙ୍କ ଧର୍ମପତ୍ନୀ । ପିତାଙ୍କ ନାମ ଲ୍ଲୁକ୍ରେଟିୟସ । ସେ ମଧ୍ୟ ଜଣେ ସୁପ୍ରସିଦ୍ଧ ଯୋଦ୍ଧା ଥିଲେ ।

ସତୀ ଲୁକ୍ରେସିୟା ସର୍ବଗୁଣାଭୂଷିତା ପରମା ସୁନ୍ଦରୀ ବୋଲି ଇଟାଲୀରେ ସୁବିଖ୍ୟାତା । ଲୁକ୍ରେସିୟାଙ୍କ ସ୍ୱାମୀ ଏବଂ ପିତା ଦୁଇଜଣ ଯୁଦ୍ଧ ବିଶେଷରେ ବ୍ୟାପୃତ ଥିବା ସମୟରେ ଶୂନ୍ୟଗୃହ ଦେଖି ଇଟାଲି ଦେଶର ନୃପତି ଟାର୍କୁଇନବଂଶଜ ଯୁବରାଜ ସେକ୍‌ସଟସ୍ ବଳପୂର୍ବକ ଲୁକ୍ରେସିୟାଙ୍କ ସତୀତ୍ୱ ହରଣ କରିବାରୁ, ସତୀ ପତ୍ର ଦ୍ୱାରା ସ୍ୱାମୀଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇ ଆତ୍ମଘାତିନୀ ହୋଇଥିଲେ । ସେକ୍‌ସଟସ୍ ସହିତ କୋଲେଟିନଙ୍କର ବିଶେଷ ବନ୍ଧୁତ୍ୱ ଥିଲେ ମଧ୍ୟ ସେ ବିଶ୍ୱାସଘାତୀ ହୋଇ ନିଦାରୁଣ ମହାପାପରେ ଲିପ୍ତ ହେବାରୁ ରାଜବଂଶକୁ କପର ପ୍ରତିଫଳ ଭୋଗ କରିବାକୁ ହୋଇଥିଲା, ବର୍ଣ୍ଣନା କରିବା ବାହୁଲ୍ୟ ମାତ୍ର । କେବଳ ସେ ରାଜବଂଶ ଯେ ଚିରକାଳ ପାଇଁ ଉତ୍ସନ୍ନ ହୋଇଥିଲା ଏତିକି ନୁହେଁ, ଅସଂଖ୍ୟ ନରଶୋଣିତରେ ରୋମହ୍ରଦୟବାହିନୀ ଟାଇବର ନଦୀର ସ୍ରୋତ ରକ୍ତବର୍ଣ୍ଣ ଧାରଣ କରିଥିଲା । ଏହି ଘଟଣା ଉପଲକ୍ଷରେ ନିମ୍ନଲିଖିତ କ୍ଷୁଦ୍ର ପଦ୍ୟଟି ଲିଖିତ ହେଲା । ଏହାକୁ ଇଟାଲି ଦେଶର ସଂକ୍ଷିପ୍ତ ରାମାୟଣ ବୋଲିବାକୁ ହେବ ] ।

ସମରବିଜୟୀ ସ୍ୱାମୀ, ନିଜର ଯଶସ୍ୱୀ,—
ସତୀ ସାଧ୍ୱୀ ଲୁକ୍ରେସିୟା ଅତୁଳ ରୂପସୀ ।
ଧନେ ମାନେ କୁଳେ ଶୀଳେ ପଦ ମର୍ଯ୍ୟାଦାରେ
ପରାସ୍ତ ଇଟାଲିବାସୀ କୋଲେଟିନଠାରେ ।
ଜଗତ ସୁନ୍ଦରୀ ନାରୀ ଇଟାଲିବାସିନୀ,
ଲୁକ୍ରେସିୟା ଗୁଣବତୀ ନାରୀ ସୀମନ୍ତିନୀ ।
ଛନ୍ତି ପିତା ସ୍ୱାମୀ ଦୁହେଁ ସମରକ୍ଷେତ୍ରରେ,
ଚିନ୍ତା କରୁଛନ୍ତି ସତୀ ବସି ଅଳିନ୍ଦରେ ।
ସଂଶୟ ଉଦ୍‌ବେଗ ଭୟ ଆଶା ଯୁଗପତ
କରୁଅଛି ଲୁକ୍ରେସିୟା ହୃଦ ଇତସ୍ତତଃ ।
ଭକ୍ତିଭାବେ ପ୍ରଭୁପଦେ ପତିବ୍ରତା ଲଳନା,
ସ୍ୱାମୀଙ୍କ ମଙ୍ଗଳ କରୁଅଛନ୍ତି କାମନା,—
ଦେବଦେବ ଜୁପିଟର* ତବ କୃପାବଳେ
ଆସନ୍ତୁ ବାହୁଡ଼ି ସ୍ୱାମୀ ପିଅର କୁଶଳେ ।
ହବା ନିଶି ଲୁକ୍ରେସିୟା ଛନ୍ତି ବାଟ ଚାହିଁ,
ସମର କୁଶଳ ବାର୍ତ୍ତା ପାଇବାର ପାଇଁ ।
ଚମକି ପଡ଼ିଲେ ଅପରୂପ ଦେଖି ସତୀ,
ସମ୍ମୁଖରେ ଉଭା ଆସି ଇଟାଲି ନୃପତି ।
ନ ଜାଣନ୍ତି ସତୀ ଦୁଷ୍ଟ ମନ୍ଦ ଅଭିଳାଷ,
ବହୁତ ସମ୍ମାନ କରି ବସାଇଲେ ପାଶ ।
ପୁଛିଲେ ବିନୟେ, "ଆଜ୍ଞା କରନ୍ତୁ ରାଜନ !
କପାଁଇ ଅଧୀନା ଗୃହେ ହେଲା ଆଗମନ ?"
କାମୁକ ପାଷଣ୍ଡ ଯାହା ଆତ୍ମା କଳୁଷିତ,
ଧର୍ମାଧର୍ମ ଲଜ ଭୟ ନ ଥାଏ କିଞ୍ଚିତ ।
ବହୁତ ବିନୟେ ଦୁଷ୍ଟ ଧୃଷ୍ଟବାକ୍ୟେ ସେହି,
ଆପଣାର ଅଭିପ୍ରାୟ ବୋଇଲା ବୁଝାଇ—

* ଇଟାଲି ଦେଶର ବଜ୍ରଧାରୀ ଇନ୍ଦ୍ରଦେବତା

"ତୁମ୍ଭର ପ୍ରଣୟପ୍ରାର୍ଥୀ ଅଟେଗୋ ସୁଲୋଚନା !
ମୋହ ପ୍ରତି ବେଳେ ମାତ୍ର କରନ୍ତୁ କରୁଣା ।
ଦେବ ଅର୍ଦ୍ଧ ରାଜ୍ୟ ଛଡ଼ି ଅତୁଳ ସମ୍ପତ୍ତି,
ବେଳେ ମାତ୍ର ପାଏଁ ଯେବେ ତୁମ୍ଭର ସମ୍ମତି ।
ଜାଣ ତ ମୁଁ ଚକ୍ରବର୍ତ୍ତୀ ଇଟାଲୀ ରାଜ୍ୟରେ,
କିଣା ଦାସ ପରି ଥିବ ତୁମ୍ଭ ଶ୍ରୀପଦରେ ।"
ଲୁକ୍ରେସିୟା ଶୁଣି ସେକ୍ସଟସ କଥାମାନ
ରହିଲେ ସ୍ତମ୍ଭିତ ହୋଇ ପ୍ରତିମା ସମାନ ।
ଘୃଣା ଲଜ୍ଜା ଭୟେ କିଛି ନ ଦେଲେ ଉତ୍ତର,
ନ ଦିଶିଲା ବୁଦ୍ଧି ତାଙ୍କୁ କିଞ୍ଚିତ ମାତର ।
ଧୈର୍ଯ୍ୟ ଧରି କ୍ଷଣ ପରେ ବୋଇଲେ କ୍ରୋଧରେ—
"କିପରି ଆଣିଲ ରାଜା ଏ କଥା ମୁଖରେ ?
ଆସିଅଛ କେଉଁ କୁଳେ ଦେବାପାଇଁ କାଳି,
ବିଚାରି ନ କଲ ମନେ ଥରେ ମାତ୍ର ଭାଳି ?
ଟାର୍କୁଇନ ବଂଶେ ଜନ୍ମିଅଛୁ କୁଳାଙ୍ଗାର !
ଲମ୍ପଟ ବର୍ବର ଲଜ୍ଜାହୀନ ଦୁରାଚାର !
ଅଛୁ ପର ସ୍ଵାମୀ ସଙ୍ଗେ ତୋର ମିତ୍ରପଣ ?
ରେ ପାପିଷ୍ଠ ! ଏହି କିରେ ସେଥି ନିଦର୍ଶନ ?
ରୋମର ପବିତ୍ର କୁଳେ ମୋହର ଜନମ,
ଭୁଲିଗଲୁ ଏକାବେଳେ ଆରେ ନରାଧମ !
ରୋମଦେଶ କନ୍ୟା ମୁହିଁ ରୋମୀୟ ମୋ ସ୍ଵାମୀ,
କରିବେ ଅବଶ୍ୟ ରକ୍ଷା ମୋତେ ଅନ୍ତର୍ଯ୍ୟାମୀ ।
ସ୍ଵାମୀ ଦୂରଦେଶେ, କିବା ବୋଲିବି ଅଧିକ,
ଦେଖାଇ ଦିଅନ୍ତି ଥରେ କେଡ଼େ ତୁ ରସିକ !
କାପୁରୁଷ ଦୁରାଚାର ଆରେ ଅର୍ବାଚୀନ,
ହୋଇ କି ପାରନ୍ତି ଲୋକ ଏଡ଼େ ଲଜ୍ଜାହୀନ !
ଧିକ ଧିକ ହୋଇଅଛୁ ଶୃଗାଳ ପ୍ରୟାସୀ
ଲଭିବାକୁ ପତିବ୍ରତା କେଶରୀ-ପ୍ରେୟସୀ ।
ବୋଲୁଅଛୁ, ଦେବୁ ରାଜ୍ୟ ଅର୍ଦ୍ଧେକ ସମ୍ପତ୍ତି,
ସତୀତ୍ଵର ମୂଲ୍ୟ କାହୁଁ ଜାଣିବୁ ଦୁର୍ମତି ?
ସତୀତ୍ଵ ସ୍ଵର୍ଗୀୟ ବସ୍ତୁ, ହେବ କିରେ ତୁଲ
କରୁ ଯେବେ ପୃଥିବୀର ସର୍ବ ଧନ ଠୁଳ ?"

କର୍କଶରେ ଏତେ କଥା ବୋଲି ସେକ୍ସଟସ୍‌କୁ
କ୍ରୋଧଭରେ ଚାଲିଗଲେ ଗମ୍ଭୀରୀ ମଧ୍ୟକୁ ।
ଦ୍ଵାର କିଳି ଦେଇ ସତୀ ବସି ନିର୍ଜନରେ
ସମସ୍ତ ବୃତ୍ତାନ୍ତ ଫେଡ଼ି ଲେଖିଲେ ପତ୍ରରେ ।
ଜଣାଇବେ ସ୍ଵାମୀଙ୍କୁ ସେ ସବୁ ସମାଚାର,
ଏହି କଥା ସତୀ କରି ମନରେ ବିଚାର,
ଧୀରେ ଧୀରେ ଯାଇ କଲେ ଶଯ୍ୟାରେ ଶୟନ ।
ମାତ୍ରକ କଲେହେଁ ଯେତେ ପ୍ରକାରେ ଯତନ,
ଦୁଶ୍ଚିନ୍ତାରେ ରାତି ଗୋଟା ନିଦ ହେଲା ନାହିଁ,
ବିଛଣାରେ ପଡ଼ି ପଡ଼ି ରାତି ଗଲା ପାହି ।
ଏଣେ ଦୁଷ୍ଟ ସେକ୍ସଟସ ପାଇ ଅପମାନ,
ବାହୁଡ଼ି ଆଇଲା ଧୀରେ ଧୀରେ ନିଜ ସ୍ଥାନ ।
ନିର୍ଜନରେ ବସି କଲା ମନରେ ବିଚାର,
ଦେଖିବ ସେ ରମଣୀର କେଡ଼େ ଅହଙ୍କାର ।
ବାରେକ ନିରାଶ ହୋଇ ପାଇବାର ଲାଜ,
ନିଶ୍ଚୟ ନିଶ୍ଚୟ ଏହା କାପୁରୁଷ କାର୍ଯ୍ୟ ।
କେତେ ଥର କେତେ ସ୍ଥାନେ ପାଇଛି ପ୍ରମାଣ,
ପ୍ରଥମେ କରନ୍ତି ନାରୀମାନେ ମୁହଁଟାଣ ।
ଥରେ ଯେବେ ତାଙ୍କୁ କରି ପାରିବି ଆୟତ୍ତ,
ଚିରକାଳ ପଦେ ଖଟିଥିବ ଦାସୀବତ ।
ଯୁବରାଜ ବୋଲି ଆପେ ଏହି କଥାମାନ,
କ୍ଷଣେ ମାତ୍ର ତୁନି ହୋଇ ବସି କଲା ଧ୍ୟାନ ।
ଆନନ୍ଦ ମନରେ ପୁଣି ବୋଇଲା ଉଚ୍ଚରେ,
ଭଲ କଥାଟାଏ ପଡ଼ିଗଲା ତ ମନରେ ।
ତାହାର ସତୀତ୍ଵ ନାଶ କରିବି ବଳରେ,
ଭାଙ୍ଗିଯିବ ତାହା ଗର୍ବ ତେବେ ସହଜରେ ।
ନ ପାରିବ କାହାକୁ ସେ କହି ଲୋକଲାଜେ,
ମୋହର ଆୟତ୍ତ ହୋଇ ରହିବ ସହଜେ ।
ଏତେ କଥା ଭାଳି ସେହି ଦୁରାତ୍ମା ମନରେ,
ବିଚରଣ କଲା ପୁରୀ ମଧ୍ୟେ ଆନନ୍ଦରେ ।
ଏଣେ ଲୁକ୍ରେସିୟା ବସିଅଛନ୍ତି ଆଶାରେ,
ଅସ୍ଥିର ସନ୍ତତ ମନ ନାନା ଦୁଶ୍ଚିନ୍ତାରେ ।

ଏହିକାଳେ ଦୂତ ଏକ ଆସି ଗଲା କହି,
ବାହୁଡ଼ିବେ ସ୍ୱାମୀ ହୋଇ ସମରବିଜୟୀ ।
ଏପ୍ରକାର ଦୂତ ମୁଖୁଁ ପାଇ ସମାଚାର,
ହୃଦେ ତାଙ୍କ ଜାତ ହେଲା ଆନନ୍ଦ ଅପାର ।
ବହୁତ ଆନନ୍ଦ ଆଶା ପଡ଼ୁଛି ଉଛୁଳି,
ବାଟ ଚାହିଁ ବସିଛନ୍ତି କାଞ୍ଚନପିତୁଳୀ ।
ପିତା ସ୍ୱାମୀ ଦୁଇ ଜଣ କାଲି ପ୍ରଭାତରେ
ଉଡ଼ାଇ ବିଜୟବାନା ମିଳିବେ ରୋମରେ ।
ଆହେ ଦେବ ଜୁପିଟର, ହୋଇଲୁ ସଦୟ,
ଆସନ୍ତୁ ବାହୁଡ଼ି ସ୍ୱାମୀ କରି ରଣଜୟ ।
ଘଣ୍ଟାଯନ୍ତ୍ର ବାରମ୍ବାର ଦେଖନ୍ତି ଲଳନା,
ଆଜି ରାତି ଅତି ଦୀର୍ଘ ପରି ଗଲା ଜଣା ।
କପରି କରିବେ ପିତା ଚରଣ ବନ୍ଦନ,
ସ୍ୱାମୀଙ୍କୁ କରିବେ କେତେ ପ୍ରେମେ ଆଲିଙ୍ଗନ ।
କେଉଁ ବସ୍ତ୍ର ପିନ୍ଧିବେ ସେ କାଲି ପ୍ରଭାତରେ,
ସଜାଡ଼ି ରଖିଲେ ଆଜି ରାତିରେ ଯତନରେ ।
ନିତ୍ୟ କର୍ମ ସାରି ରାତି ପ୍ରହରେକ ଅନ୍ତେ,
ଶୟନ କଲେକ ଯାଇ ଶେଯରେ ନିଶ୍ଚିନ୍ତେ ।
ଶୟନ ପୂର୍ବରେ ସତୀ ହୋଇ ସାବଧାନ
କିଳି ଦେଇଛନ୍ତି ଶଯ୍ୟାଗୃହ ଦ୍ୱାରମାନ ।
କେତେରୂପ ଆଶା କରି ମନରେ ପୋଷଣ
କରିଛନ୍ତି ଲୁକ୍ରେସିୟା ସୁଖରେ ଶୟନ ।
କେତେ କଥା ହୃଦେ କରୁଛନ୍ତି ଆନ୍ଦୋଳନ,
କେତେ ରୂପ ଦେଖୁଛନ୍ତି ସୁଖର ସ୍ୱପନ ।
ସବୁ ଦୁଃଖ ହେବ ଦୂର ପାହିଲେ ରଜନୀ,
ବାହୁଡ଼ି ଆସିବେ ରଣଜୟୀ ଗୁଣମଣି ।
ଅନ୍ଧ ଜୀବ ଭବିଷ୍ୟତ ଜାଣି ସେ ନ ପାରେ,
କି ଦଶା ଘଟିବ ଆସି ମୁହୂର୍ତ୍ତ ଉତ୍ତରେ ।
ଯେ ଲୋକ ବସିଛି ହୋଇ ରାଜ୍ୟ-ଅଧିକାରୀ,
ମୁହୂର୍ତ୍ତକେ ହୋଇପାରେ ଦାଣ୍ଡର ଭିଖାରୀ ।
କାଳାନ୍ତକ ଯମ ଆସି ରହିଛି ଆକ୍ରୋଶି,
ନ ଜାଣନ୍ତି ଘୂଣାକରେ ଏ କଥା ରୂପସୀ ।

ଅର୍ଦ୍ଧରାତି ଗତ ପ୍ରାୟ ନିସ୍ତବ୍ଧ ରଜନୀ,
କ୍ଷଣେ କ୍ଷଣେ ଶୁଭୁଅଛି ପେଚକର ଧ୍ୱନି ।
ମଦ୍ୟପ, ତସ୍କର, ରାଜପ୍ରହରୀନିକରେ
ଅନ୍ଧାରେ ଭ୍ରମନ୍ତି ରୋମନଗରୀ ମାର୍ଗରେ ।
ନଗରବାସୀଙ୍କ ଆଉ ଗତିବିଧି ନାହିଁ,
ଅନ୍ଧକାର ହିଂସ୍ର ପ୍ରାଣୀ ତସ୍କରଙ୍କ ପାଇଁ ।
ବାହାରିଲା ଟେକ୍‌ସଟସ ଅର୍ଦ୍ଧ ରଜନୀରେ
ଲୁକ୍ରେସିୟା ଶଯ୍ୟା ଗୃହୁ ଧୀରେ ଅତି ଧୀରେ ।
ସାବଧାନେ ଦେଖିଲା ସେ ଗୃହଆଡ଼େ ଚାହିଁ,
ଏଡ଼େ ବଡ଼ ଭବନରେ ଶବ୍ଦ ମାତ୍ର ନାହିଁ ।
ଦେଖିଲା ସେ ଏକଧ୍ୟାନେ ଚାହିଁ ଦୁଷ୍ଟମତି,
ସ୍ଥିରଭାବେ ଶୋଇଛନ୍ତି ଲୁକ୍ରେସିୟା ସତୀ ।
ଶୋଇଛନ୍ତି ସତୀ ସାଧ୍ୱୀ କୋମଳ ଶେଯରେ,
ଶ୍ୱେତପଦ୍ମାସନା ଲକ୍ଷ୍ମୀ କ୍ଷୀରୋଦ-ସାଗରେ !
ଧୀରେ ଧୀରେ ହୋଇ ଚାଲିଯାଏ ସତୀ ପାଶେ,
ପୁଣି କି ବାହୁର ପଛଘୁଞ୍ଚା ଦେଇ ଆସେ ।
ପୁଣି ଧୀରେ ଅତି ଧୀରେ ଅତି ସାବଧାନେ
ମିଳିଲା ପାମର ସତୀ ଶଯ୍ୟା ସନ୍ନିଧାନେ ।
ଧୀରେ ଧୀରେ କଲା ସତୀ ହସ୍ତକୁ ଧାରଣ,
ଶାର୍ଦ୍ଦୂଳ କି କଲା ସୁପ୍ତ ମୃଗୀ ଆକ୍ରମଣ !
ସେହି ପାମରର କଳୁଷିତ ହାତ ବାଜି
ଚମକି ପଡ଼ିଲେ ସତୀ, ନିଦ ଗଲା ଭାଙ୍ଗି ।
ଭୟଙ୍କର କାଣ୍ଡ ଦେଖି ମଣିଲେ ବିସ୍ମୟ,
ସ୍ୱପନ କି ସତ କରି ନ ପାରିଲେ ଥୟ ।
ନିମେଷମାତ୍ରକେ ସବୁ କଥା ଗଲା ଜଣା,
ସଂଶୟ କି ଥାଏ ଯାହା ପ୍ରତ୍ୟକ୍ଷ ଘଟଣା ?
ଘୃଣା ଲଜ୍ଜା ଭୟ ଅପମାନ କ୍ରୋଧଭରେ
ରହିଗଲେ କିଛିକାଳ ମୃତ ସମାନରେ ।
ହୃଦୟ ଯାଉଛି ଫାଟି, ନେତ୍ରୁ ବହେ ଜଳ,
ଛଡ଼ାଇ ନେବାକୁ ହାତ ଦେହେ ନାହିଁ ବଳ ।
ବୋଇଲେ କ୍ରୋଧରେ କରି ଭୀଷଣ ଗର୍ଜନ,
"ଛାଡ଼ ଛାଡ଼ ହାତ, ଛାଡ଼ ପାପିଷ୍ଠ ଦୁର୍ଜନ !

କି ସାହସେ ଆସି ତୁହି ଧଇଲୁ ମୋ ହାତ,
ନ ଜାଣୁ ଏ ପାପେ ହେବୁ ସବଂଶେ ନିପାତ ।
ହେ ରାଜନ ! ତୁମ୍ଭେ ପର ଧର୍ମ ରକ୍ଷାକାରୀ ?
କେତେ କାର୍ଯ୍ୟ କରୁଅଛ କିଛି ନ ବିଚାରି ?
ଛାଡ଼ିଦିଅ ଯୁବରାଜ, ଧରୁଛି ଚରଣ,
ଆପଣାର ରାଜକାର୍ଯ୍ୟେ ଯାଇ ଦିଅ ମନ ।
ଧର୍ମଭ୍ରଷ୍ଟ ହୁଅ ନାହିଁ, ବୋଲେ ବାରମ୍ବାର,
ଏହି ପାପେ କେତେ ଜଣ ହେବ ଛାରଖାର ।
ଭାଳିଛ ମନରେ ପର କେହି ଦେଖୁ ନାହିଁ,
ଆକାଶରେ ରହିଛନ୍ତି ଜୁପିଟର ଚାହିଁ ।
ପୁନର୍ବାର, ହେ ରାଜନ, ଧରୁଛି ଚରଣ,
ନାଶ କର ନାହିଁ ମୋର ପତିବ୍ରତା ଧନ ।
ସ୍ୱର୍ଗୀୟ ସତୀତ୍ୱ ଧନ ପୃଥିବୀଲୋକରେ,
ବାହୁଡ଼ି ନ ଆସେ ଯେବେ ହଜିଯାଏ ଥରେ ।
ଆହେ ଦେବ ଜୁପିଟର ଜଗତର ନାଥ !
ସଙ୍କଟକାଳରେ କେବେ ହେଲ ନାହିଁ ସାଥ ?"
ଏହି କଥା ବୋଲୁ ବୋଲୁ ଚେତା ଗଲା ହଜି,
ଶରୀର ଅବଶ, ଆଖି ପକାଇଲେ ବୁଜି ।
ଯେ ପାଷଣ୍ଡ ଦୁରାଚାର କାମରେ ମୋହିତ,
ତାର କାହିଁ ଜ୍ଞାନ ଧର୍ମାଧର୍ମ ହିତାହିତ !
ଲଲନାକୁ ଦୁରାଚାର ଦେଲା ଯେଉଁ ବ୍ୟଥା,
କହି ଅବା ଲେଖି ହେବ ନାହିଁ ସେହି କଥା ।
କେତେକ୍ଷଣ ପରେ ସତୀ ପାଇଲେ ଚେତନା,
ଜଗତ ସଂସାର ଶୂନ୍ୟ ପରି ଗଲା ଜଣା ।
କଳଙ୍କିତ ଦେହ ମନ, ଗୃହ କଳଙ୍କିତ,
ବ୍ରହ୍ମାଣ୍ଡ ହୋଇଛି କଳଙ୍କରେ ଆଚ୍ଛାଦିତ ।
କିପରି ଛୁଇଁବେ ସ୍ୱାମୀ ପବିତ୍ର ଶରୀର,
ଆତ୍ମଘାତୀ ହେବାପାଇଁ ମନେ କଲେ ସ୍ଥିର ।
ଲେଖିଲେ ସମସ୍ତ କଥା ପତ୍ରେ ସବିସ୍ତାର,
ଯାହା ଯାହା କରି ଯାଇଅଛି ଦୁରାଚାର ।

ଅବଶେଷେ କରି ସ୍ୱାମୀ ଚରଣ ଦର୍ଶନ,
ସ୍ୱାମୀ ସାକ୍ଷାତରେ ତ୍ୟାଗ କରିବେ ଜୀବନ ।
ପଶ୍ଚିମ ଆକାଶେ ଅସ୍ତ ଗଲେ ନିଶାକର,
ପାହିଲା ରଜନୀ ଉଦେ ହେଲେ ଦିବାକର ।
ହେବାପାଇଁ ଲୋକଙ୍କର ଧର୍ମାଧର୍ମସାକ୍ଷୀ
ଦେଖୁଛନ୍ତି ଦିବାକର ଅବା ମେଲି ଆଖି ।
ସ୍ପୁରିୟସ କୋଲେଟିନ ପ୍ରଭାତ କାଳରେ
ବଜାଇ ବିଜୟ ବାଜା ମିଳିଲେ ରୋମରେ ।
ଆଶ୍ଚର୍ଯ୍ୟ ମଣିଲେ ଦେଖି, ସତୀ ଲୁକ୍ରେସିୟା
ନାହାନ୍ତି ଯେ ଆନନ୍ଦରେ ଦ୍ୱାରଦେଶେ ଠିଆ ।
ଦେଖିଲେ ପ୍ରବେଶି ଗୃହେ ଲୁକ୍ରେସିୟା କାର୍ଯ୍ୟ,
ବୀରମାନେ ହେଲେ ପୁଣି ଆହୁରି ଆଶ୍ଚର୍ଯ୍ୟ ।
ବିକଳ ମନରେ ବସିଛନ୍ତି ମହାଦେଈ,
ସ୍ଥିରଭାବେ ଜଡ଼ପ୍ରାୟେ ଗାଲେ ହାତ ଦେଇ ।
ନ ଚାହିଁ ସ୍ୱାମୀଙ୍କ ପ୍ରତି ବିମଳ ମନରେ,
ଦେଲେ ପୂର୍ବଲେଖା ଲିପି ସ୍ୱାମୀଙ୍କ ହସ୍ତରେ ।
ଫେଡ଼ନ୍ତେ ସେ ଲିପିଖଣ୍ଡ ପଢ଼ିବା ସଙ୍କାଶେ,
ସତୀ ସାଧ୍ୱୀ ଲୁକ୍ରେସିୟା ଏହି ଅବକାଶେ
ତୀକ୍ଷ୍ଣଧାର ଛୁରୀ ଖଣ୍ଡେ ହସ୍ତେ ଧରି ବଳେ
ବିଦ୍ଧ କରିଦେଲେ ଆପଣାର ବକ୍ଷସ୍ଥଳେ ।
ଆହା ଆହା ! ଏ କି, ଏ କି ! ବୋଲି ବାରମ୍ବାର
କୋଲେଟିନ କଲେ ମହାଭୀଷଣ ଚିତ୍କାର ।
ଆଉ କିବା ହେବ ଯାଇ ସତୀ ହାତ ଧରି,
ତେତେବେଳେ ଯାଇଥିଲା ସବୁ କଥା ସରି !
ସେହି ଭୟାନକ ଦୃଶ୍ୟ ନୁହେ ବର୍ଣ୍ଣିବାର,
କେବଳ ସମସ୍ତେ କରୁଛନ୍ତି ହାହାକାର !
ତାଙ୍କ ପାଇଁ ଯତ୍ନ କଲେ କିବା ହେବ ଆଉ,
ତେତେବେଳେ ଉଡ଼ି ଯାଇଥିଲା ପ୍ରାଣବାୟୁ ।
ପଡ଼ି ଲୋଟୁଅଛି ତଳେ ସୁବର୍ଣ୍ଣ ଶରୀର,
ଦେହୁଁ ଅନର୍ଗଳ ବହି ଯାଉଛି ରୁଧିର ।
ବିକଳ ମନରେ କାନ୍ଦୁଛନ୍ତି ଟ୍ରିସିୟସେ, *
ଆହା ବିଧି, କଷ୍ଟ ଦେଲୁ ଏ ବୃଦ୍ଧ ବୟସେ !

* ଲୁକ୍ରେସିୟାଙ୍କ ପିତା

ବିକଳମନରେ କାନ୍ଦୁଛନ୍ତି କୋଲେଟିନ,
କ୍ଷଣେ କ୍ଷଣେ ହୋଇ ଯାଉଛନ୍ତି ସଂଜ୍ଞାହୀନ ।
ଅବଶେଷେ ପତ୍ରଖଣ୍ଡି ଦେଲ ବେନି ଜନେ
ପଢ଼ିଲେ ସମସ୍ତ କଥା ବିଷାଦିତ ମନେ ।
କାନ୍ଦିଲ ଉଚ୍ଚରେ ପୁଣି ଷ୍ଟ୍ରିସ୍ପୁସ ବୀର,
ହୃଦୟ ତାଙ୍କର ହେଲ ଅତ୍ୟନ୍ତ ଅସ୍ଥିର ।
ବୃଦ୍ଧବୟସରେ କନ୍ୟା-ବିରହ-ଯନ୍ତ୍ରଣା
ବଜ୍ରାଘାତଠାରୁ ଅଧିକରେ ଯାଏ ଜଣା ।
ମହାତ୍ମା ବ୍ରୁଟସ † ପାଇ ଏହି ସମାଚାର
ପହଞ୍ଚିଲେ ଯାଇ ତହିଁ କରି ହାହାକାର ।
କୋଲେଟିନ ଷ୍ଟ୍ରିସ୍ପୁସେ ଦେଇ ଆଶ୍ୱାସନା
ବୋଇଲେ ବିଳାପ କରିବାର ବିଡ଼ମ୍ବନା ।
ଆସ ଉଠ ବର୍ତ୍ତମାନ ଲୋଡ଼ୁଁ ପ୍ରତିକାର,
ପ୍ରତିହିଂସା ପ୍ରତିହିଂସା ପ୍ରତିହିଂସା ସାର ।
ସେ ବ୍ରୁଟସ ସତୀ ଶବ ଧରିଣ କୋଳରେ
ପ୍ରବେଶିଲେ ସାଧାରଣ ବକ୍ତୃତାଗୃହରେ ।
ଇଟାଲୀ ମଧ୍ୟରେ ପଡ଼ିଗଲା ଗଣ୍ଡଗୋଳ,
ନଗରବାସୀଏ ଆସି ତହିଁ ହେଲେ ଠୁଳ ।
ଉଗ୍ର ହୋଇ ସେ ବ୍ରୁଟସ ବୋଇଲେ ଉଚ୍ଚରେ,
"ଶୁଣ ଭାଇ ଭଗ୍ନୀ ରୋମବାସୀ ନାରୀ ନରେ—
ଆହେ ଭାଇମାନେ ! ସର୍ବେ ଦେଖନ୍ତୁ ଅନାଇ,
ସତୀ ସାଧ୍ୱୀ ଲୁକ୍ରେସିୟା ପୃଥିବୀରେ ନାହିଁ ।
ନରପତି ରକ୍ଷାକାରୀ, ପ୍ରଜାଙ୍କ ଭରସା,
ତାହା ଯୋଗେ ଘଟିଅଛି ଏପରି ଦୁର୍ଦ୍ଦଶା ।
ଶୁଣିଛ କି କେବେ ଏପ୍ରକାର ଅତ୍ୟାଚାର ?
କରିବ କି ନାହିଁ ତୁମ୍ଭେମାନେ ପ୍ରତିକାର
ପବିତ୍ରଚରିତ୍ରା ସତୀ ଇଟାଲିଲଳନା,
ସହି ନ ପାରନ୍ତି କେବେ କଳଙ୍କଗଞ୍ଜନା,
ତେଜନ୍ତି କଳଙ୍କଭୟେ ଆପଣା ଜୀବନ,
ସତୀ ସାଧ୍ୱୀ ଲୁକ୍ରେସିୟା ତହିଁ ନିଦର୍ଶନ ।
ସ୍ୱାଧୀନତା ପରାକ୍ରମ ନ୍ୟାୟ ବୁଦ୍ଧିବଳେ
ପବିତ୍ର ଇଟାଲୀ ଖ୍ୟାତ ଜଗତମଣ୍ଡଳେ ।
ଦୁରାଚାର ସେକ୍‌ସଟସ କଳଙ୍କର କାଳି
ଦେଇଅଛି ସେ ଇଟାଲୀ ଦେଶମୁଖେ ଢାଳି ।
ବୋଲିବେ କି ନାହିଁ ଇଉରୋପ ନୃପକୁଳ,
ଇଟାଲୀରାଜ୍ୟରେ ନାହିଁ ସତୀତ୍ୱର ମୂଲ୍ୟ ?
ତୁମ୍ଭର ତ ଛନ୍ତି ମାତା ଭଗ୍ନୀ କନ୍ୟାମାନେ,
କି କରନ୍ତି ଆଜି ସେମାନଙ୍କ ଅପମାନେ ?
ଆଜି ଅତ୍ୟାଚାର ହେଲା କୋଲେଟିନ ପରେ,
ରହିବେ କି ତୁମ୍ଭ ମାତା ଭଗ୍ନୀ ନିଶ୍ଚିନ୍ତରେ ?
ଆପଣା ମନରେ ଭାଳିଅଛି ପାପମନା,
ତାହା ଭୋଗପାଇଁ ସର୍ବ ଇଟାଲିଲଳନା !
ପାପିଷ୍ଠା ଟୁଲିୟା * କଥା ଜାଣ ଭାଇ ସର୍ବେ,
କି ଦାରୁଣ କାର୍ଯ୍ୟ କଲା ପତି ଧନ ଲୋଭେ !
ପିତା ରକ୍ତେ ପାଦ ଧୋଇ ଆନନ୍ଦିତ ମନେ
ବସିଅଛି ସ୍ୱାମୀ ସଙ୍ଗେ ରାଜସିଂହାସନେ ।
ସ୍ୱହସ୍ତରେ ବଧ କଲା ପ୍ରଥମ ପତିକୁ,
ରାଜରାଣୀ ବୋଲୁଅଛ ସେହି ଅସତୀକୁ !
ଅସତୀ ରାକ୍ଷସୀ ଭ୍ରଷ୍ଟା ଯାହାର ଜନନୀ,
ତୁମ୍ଭମାନଙ୍କର ସେ କି ହେବ ଶିରୋମଣି ?
କି ବୋଲିବ ଆଉ ଆହେ ରୋମବାସୀଗଣ !
ଜାଣ ସେକ୍‌ସଟସ ପିତାମାତା ବିବରଣ !
ଦୁରାଚାର ଟାର୍କୁଇନ ତାହାର ଜନକ,
ପାପର ସେ ପ୍ରତିମୂର୍ତ୍ତି ସାକ୍ଷାତ ନରକ ।
ପାପିଷ୍ଠା ଟୁଲିୟା ଭ୍ରଷ୍ଟା ତାହାର ଜନନୀ
ନରକୁଳେ ଜନ୍ମିଅଛି କାଳ ଭୁଜଙ୍ଗିନୀ ।

---

† ଏହି ମହାତ୍ମା ମାର୍କସ ଜୁନିୟସଙ୍କ ପୁତ୍ର, ଜୁନିୟସଙ୍କୁ ଟାର୍କୁଇନ ହତ୍ୟା କରନ୍ତେ ବ୍ରୁଟସ ବାତୁଳ ପ୍ରାୟ ହୋଇଥିଲେ । ବ୍ରୁଟସଙ୍କ ଓଜସ୍ୱିନୀ ବକ୍ତୃତାରେ ଉତ୍ତେଜିତ ହୋଇ ରୋମୀୟମାନେ ଟାର୍କୁଇନ ବଂଶକୁ ଦୂର କରି ଦେଇଥିଲେ ।

* ରୋମଦେଶର ନୃପତି ସର୍ଭିୟସ ଟୁଲିୟସ ଏହାର ପିତା । ଏହି ପାପିୟସୀ ରାଜ୍ୟଲୋଭରେ ଆପଣାର ପ୍ରଥମ ସ୍ୱାମୀ ଏବଂ ପିତାଙ୍କୁ ବଧ କରି ସିଂହାସନରେ ବସିଥିଲା ।

ଜନ୍ମିଛି ପାପେଷ୍ଠା ଗର୍ଭୁଁ ପାପିଷ୍ଠ ସନ୍ତାନ,
ରାଜା ବୋଲି ତାକୁ କି ହେ କରିବ ସମ୍ମାନ ?
ଧାର୍ମିକ ବିବେକୀ ଜ୍ଞାନୀ ରୋମବାସୀଗଣେ,
ନୁଆଁଇବ ଶିର କି ହେ ପାପିଷ୍ଠ ଚରଣେ ?
ଏ ବଂଶରେ ଜନ୍ମିଅଛି ଯେଉଁ କୁଳାଙ୍ଗାର,
କି ବିଚାର କରିବ ସେ ମହା ଅତ୍ୟାଚାର !
ରୋମବାସୀ-ଭାଗ୍ୟଚକ୍ର ହେବ ସେ ଚାଳକ,
ସେହି ହେବ ପରା ପ୍ରଜାମାନଙ୍କ ପାଳକ ?
ବୁଝି ନାହିଁ ସରିଗଲା ସବୁ ଏତିକିରେ
ଆଉ କି ଘଟିବ ତାହା ନ ଆସେ ବୁଦ୍ଧିରେ ।
ଯାହା ଦେହେ ଅଛି କିଛିମାତ୍ର ପୁରୁଷତ୍ୱ,
ଯେବେ କିଛି ଜଣା ଥାଏ ସତୀତ୍ୱ ମହତ୍ତ୍ୱ,
ଲେଶମାତ୍ର ଯାହାଠାରେ ଅଛି ଧର୍ମଜ୍ଞାନ,
ଯେବେ କିଛି ବୋଧ ଥାଏ ମାନ ଅପମାନ,
ଦେଉଅଛି ମାତା ଭଗ୍ନୀ କନ୍ୟାଙ୍କ ଦୋହାଇ,
ଆସ ଉଠ ଧର ଖଡ୍‌ଗ ମିଳି ସର୍ବ ଭାଇ ।
ଶୁଣ ଶୁଣ ଶୁଣ ଭାଇ ରାଜସେନାଗଣ,
ଜାଣ କି ହେ ଖାଉଅଛ କାହାର ବର୍ତ୍ତନ ?
ରାଜା ଯେ ବର୍ତ୍ତନ ଟଙ୍କା ଦେଉଛନ୍ତି ଆଣି,
ଅରଜିଛନ୍ତି କି ତାହା ହାତେ କୋଡ଼ି ହାଣି ?
ପ୍ରଜାମାନଙ୍କର ଦିଆ ଅର୍ଥ କରି ଠୁଳ,
ରାଜାମାନେ ଗନ୍ତାଘରେ ପୂରନ୍ତି କେବଳ ।
ଦେଖ ଏତେ ଦିନ ଖାଇଅଛ ଯାହା ଲୁଣ,
ଘାଟିବେଳ ପଡ଼ିଅଛି ଗାଅ ତାଙ୍କ ଗୁଣ ।
ଭାଇମାନେ ! ମିଳି ଅସ୍ତ୍ର ଶସ୍ତ୍ର ଧରି ଆସି
ପବିତ୍ର ରୋମରୁ ଛିଡ଼ି ଦିଅ ପାପରାଶି ।
ବୋଲ "ଜୟ ଜୟ ଜୟ ରୋମାନର ଜୟ !
ଜୟ ରୋମାନର, ଯତୋଧର୍ମସ୍ତତୋଜୟ !"
ଓଲିର ଖାପରୁ ଖଣ୍ଡା ବଜ୍ରମୁଷ୍ଟି ଧରି,
ବୋଇଲେ ସେ ସର୍ବସଦେ ସମ୍ବୋଧନ କରି,
"ଏହି ଖଡ୍‌ଗେ ବିନାଶିବ କେ.ଲେଟିନ ବଂଶ,
ଇଟାଲୀର ରାଜପୁରୀ କରିଦେବ ଧ୍ୱଂସ ।
ଶୁଣ ଭାଇମାନେ, ବୋଲୁଅଛୁଁ ବାରମ୍ବାର—
ପ୍ରତିହିଂସା ପ୍ରତିହିଂସା ପ୍ରତିହିଂସା ସାର ।
ମାରିବି ସେ ପାପିଷ୍ଠଙ୍କୁ ଶୁଣ ଭ୍ରାତାଗଣ,
ନ ରଖିବି ଟାର୍କୁଇନ ବଂଶେ ଏକଜଣ ।
ମାରିବି ତାହାର ବନ୍ଧୁ ଭାଇ ପୁଅ ନାତି,
ନ ରହିବ କୁଳେ ଜଣେ ଦେବାପାଇଁ ବତି ।
ସାଧାରଣ ପ୍ରଜାତନ୍ତ୍ର କରିବି ସ୍ଥାପନ,
ପ୍ରଭୁ ଜୁପିଟର ସାକ୍ଷୀ, ମୋର ଏହି ପଣ ।"
ବ୍ରୁଟସଙ୍କ ବାକ୍ୟ ଶୁଣି ରୋମବାସିଗଣ
ଉଠିଲେ ସକଳେ କରି ଭୀଷଣ ଗର୍ଜନ ।
ବିଦ୍ୟୁତ ବେଗରେ ହେଲା ସମ୍ବାଦ ପ୍ରଚାର,
କେବଳ ଶୁଭୁଛି ଶବ୍ଦ ମାର ମାର ମାର !
'ମାର ମାର' ଶବ୍ଦ ଛାଡ଼ି ଆନ କଥା ନାହିଁ,
ରାଜପୁରୀ ଲକ୍ଷ୍ୟ କରି ସର୍ବେ ଛୁଟନ୍ତି ଧାଇଁ ।
ମଧୁଚକ୍ର ଭାଙ୍ଗିଦେଲେ ମଧୁମକ୍ଷିଗଣ,
ଶତ୍ରୁକୁ କରନ୍ତି ଯେହ୍ନେ ଧାଇଁ ଆକ୍ରମଣ,
ତେସନେ ସକଳେ ମିଳି ଖଡ୍‌ଗ ଧରି କରେ,
ପ୍ରବେଶିଲେ ସର୍ବେ ଯାଇ ରାଜାଙ୍କ ନଅରେ ।
ଧାଇଁ ଯାଇ ଜଣେ ପୁରାତନ ବୃଦ୍ଧ ଦାସ
ଜଣାଇଲା ସବୁ କଥା ନୃପତିଙ୍କ ପାଶ ।
ଜଲାବାଟ ଦେଇ ଟାର୍କୁଇନ ଦେଲେ ଚମ୍ପି,
ପଙ୍ଗପାଳ ପରି ଲୋକମାନେ ଛୁଟନ୍ତି ଧାଇଁ ।
'ଧର ଧର ମାର ମାର' ବୋଲି ବାରମ୍ବାର,
କରୁଛନ୍ତି ଲୋକମାନେ ଭୀଷଣ ହୁଙ୍କାର ।
ଶାଣିତ ଭୀଷଣ ଖଡ୍‌ଗ ହସ୍ତେ ଭୟାନକ,
ସୂର୍ଯ୍ୟତେଜ ଲାଗି ଦିଶୁଅଛି ଜକ ଜକ ।
'ଜୟ ରୋମାନର ଜୟ ବିଜୟୀ ରୋମାନ,'
ଏହି ଶବ୍ଦେ ହେଉଅଛି ପୃଥ୍ୱୀ କମ୍ପମାନ
ସେକ୍‌ସଟସ ଦେଖି ଏହି ସର୍ବକଥା,
ହଜିଗଲା ଜ୍ଞାନ ଘୂରିଗଲା ମଥା ।
ଭାଳିଲା ନିର୍ବୋଧ ଆପଣା ମନରେ,
'ମାରିବି ଶତ୍ରୁଙ୍କୁ ଅସି ଧରି କରେ ।

ସମ୍ମୁଖ ସଂଗ୍ରାମେ ବଧି ଶତ୍ରୁଗଣ
କଳଙ୍କିତ ପ୍ରାଣ ଦେବ ବିସର୍ଜନ ।’
ମାତ୍ରକ ଯାହାର କୁକର୍ମରେ ମତ୍ତ,
ସେ ଲୋକର କାହିଁ ସାହସ ବା ଶକ୍ତି ?
ଯେମାନଙ୍କ ଆତ୍ମା ପାପରେ ମଳିନ,
ସହଜେ ସେ ସର୍ବ ଲୋକ ଶକ୍ତିହୀନ ।
ପୁଣି ସେ ବର୍ବର କଲା ମନେ ମନେ,
“ସହସ୍ର ମଧ୍ୟରେ ମୁହିଁ ସିନା ଜଣେ ।
ଦେଖୁଛି ବିଶ୍ୱାସୀ ପ୍ରହରୀ ଯେତେକ,
ମଲେଣି ତ ଶତ୍ରୁ ହସ୍ତେ ଏକ ଏକ ।
ଯୁଦ୍ଧ କରିବାରେ ନାହିଁ କିଛି କାର୍ଯ୍ୟ,
ପ୍ରାଣ ଥିଲେ ପୁଣି ମିଳିପାରେ ରାଜ୍ୟ ।”
ଏତେକ ବିଚାରି ଅସି ଧରି କରେ
ପଳାଇଲା ପ୍ରାଣଭୟେ ଗୁପତରେ ।
ପବନହୁଁ ବେଗେ ଯାଉଅଛି ଧାଇଁ,
ନିଶ୍ୱାସ ନ ନେଇ ପଛକୁ ନ ଚାହିଁ ।
ଇଟ୍ରୁରିଯ୍ୟା* ଅଞ୍ଚଳକୁ ଯାଉଛି ପଳାଇ,
ବିଦ୍ରୁରୁଛି ଶତ୍ରୁମାନେ ଅଛନ୍ତି ଗୋଡ଼ାଇ ।
ମାର୍ଜାର ଭୟରେ ଯଥା ପଳାଏ ମୂଷିକ,
ପଳାଉଛି ସେହିପରି ଦୁଷ୍ଟ ଅଧାର୍ମିକ ।
ନଗରନିବାସୀ ଲୋକେ ହୋଇ ଜନମତ୍ତ,
ଖୋଜିଲେ ସେ ରାଜପୁରେ ହୋଇ ଇତସ୍ତତଃ ।
ଗୃହ ପ୍ରତି ଗୁପ୍ତ ସ୍ଥାନେ ଦେଖିଲେ ଅନାଇ,
ଦୁରାତ୍ମାର ସେକ୍‌ସଟସ କେଉଁଠାରେ ନାହିଁ ।
‘ଜୟ ରୋମାନର ଜୟ’ ବୋଲି ବାରମ୍ବାର,
ବୀରମାନେ କଲେ ପୁଣି ଆନନ୍ଦେ ଚିତ୍କାର ।
କମ୍ପିଲା ଇଟାଲୀ ଦେଶ କମ୍ପିଲା ଗଗନ,
ପଡ଼ିଲା ଭୀଷଣ ରବେ ନୃପତିଭବନ ।
ଇଟାଲିର ବୀରମାନେ ଦେଇ କରତାଳି,
ନୃପତିଭବନ ଆନନ୍ଦରେ ଦେଲେ ଜାଳି ।
ଛିନ୍ନ ଦନ ଭିନ ରାଜି ଜଳିଲା ପାବକ,
ଭସ୍ମ ହେଲା ଏକାବେଳେ ରୋମର କଳଙ୍କ ।
ସନ୍ଧ୍ୟାବେଳେ ଆସି ଏକ ପୁରାତନ ଦାସ,
ଦେଖିଲା ସେ ରାଜଗୃହ ପକାଇ ନିଶ୍ୱାସ ।
ଜଳୁଅଛି ରାଜାଙ୍କର ଶୟନଭବନ,
କୁସୁମିତଲତାବୃକ୍ଷଯୁକ୍ତ ଉପବନ ।
ପୋଡ଼ୁଅଛି ଗନ୍ଧାଗାର ସମସ୍ତ ନଅର,
ଖଦାଶାଳ ଦେହପାଣିଘର ସରଦର ।
ଉଠୁଛି ଭୀଷଣ କୃଷ୍ଣବର୍ଣ୍ଣ ଧୂମରାଶି,
ସର୍ବ ସ୍ଥାନ ବୈଶ୍ୱାନର ପକାଉଛି ଗ୍ରାସି ।
ଫାଟୁଛି କେ ଘର ଭୟଙ୍କର ଶବ୍ଦ କରି,
ପ୍ରତିହିଂସା ଶବ୍ଦେ ଯେହ୍ନେ ପୂରୁଛି ନଗରୀ ।
ଜଳୁଅଛି ସ୍ଥାନେ ସ୍ଥାନେ ଭୀଷଣ ଅନଳ;
ସତୀଙ୍କର ଅପମାନେ ଏହି ପ୍ରତିଫଳ ।
ପୋଡ଼ୁଅଛି ରାଜମଞ୍ଚ ରାଜସିଂହାସନ,
ଉଡ଼ାଉଛି ଧୂମରାଶି ପ୍ରବଳ ପବନ ।
ଏହିପରି ରାଜପୁରୀ ହୋଇଗଲା ଧ୍ୱଂସ,
ଚିରକାଳପାଇଁ ଗଲେ ଟାର୍କୁଇନ ବଂଶ ।
* ନେମିସିସ ଅଥବା ଦେବାପାଇଁ ପ୍ରତିଫଳ,
ଜାଳି ଦେଇଛନ୍ତି ରାଜଗୃହରେ ଅନଳ ।
ଭାଳିଲା ସେ ବୃଦ୍ଧ ଦାସ ହୋଇଣ ଦୁଃଖିତ,
ଏହିପରି ହୁଏ ମହାପାପେ ପ୍ରାୟଶ୍ଚିତ୍ତ ।
ଭାଳନ୍ତି ଅଜ୍ଞାନ ମୂର୍ଖ ମାନବ ସକଳ,
ପୃଥିବୀରେ ନାହିଁ ଧର୍ମାଧର୍ମ ପ୍ରତିଫଳ ।
ଟାର୍କୁଇନ ଅପକୀର୍ତ୍ତି ରହିଲା ମହୀରେ,
ସାଧାରଣ ପ୍ରଜାତନ୍ତ୍ର ହେଲା ଇଟାଲିରେ ।
ସୀତାକୁ ହରାଇ ମଲା ଲଙ୍କାର ରାବଣ,
ସତୀଙ୍କୁ ବିନାଶି ମଲେ ଟାର୍କୁଇନଗଣ ।
ସତୀଙ୍କୁ ଯେ ଅପମାନ କରେ ଦୁରାଶୟ,
ତାହାର ଏପରି ଦଶା ଘଟଇ ନିଶ୍ଚୟ ।

* ଇଟାଲୀର ଗୋଟିଏ ପ୍ରଦେଶ ।
* ନେମିସିସ—ଇଟାଲିର ପ୍ରତିହିଂସା ଦେବତା

## ଉପେନ୍ଦ୍ରଭଞ୍ଜଙ୍କ ସ୍ୱପ୍ନ ଦର୍ଶନ

( ରାଗ—ମଙ୍ଗଳ )

ନିଶୀଥ ସମୟେ ସ୍ୱପ୍ନ ଯୋଗେ ବୀଣାପାଣି
ବୋଇଲେ ଉପେନ୍ଦ୍ରଭଞ୍ଜେ "ଶୁଣ ବତ୍ସ ! ବାଣୀ ।
ଦେନ ବାପା, କୃପା କରି ଦେଉଛୁଁ ଏ ବର
ଉତ୍କଳମଣ୍ଡଳେ ହେବୁ ଯଶସ୍ୱୀ ଅମର ।
ତ୍ୟାଗ କର ଆରେ ବତ୍ସ ! ରାଜସିଂହାସନ,
ସେହି ତୁଚ୍ଛ ଧନେ ତୋର କିବା ପ୍ରୟୋଜନ ?
ପରିତ୍ୟାଗ କର କ୍ଷଣଭଙ୍ଗୁର ବିଷୟ,
ଦେଉଛୁ, ଗ୍ରହଣ କର ଫଳ ସୁଧାମୟ ।
ଏ ରାଜତ୍ୱ, ଏ ବିଭବ ଯିବ କାହିଁ ଭାସି,
ଅକ୍ଷୟ ସୁଖ୍ୟାତି ଥିବ ଜଗତେ ବିକାଶି ।
ଅସଂଖ୍ୟ ଅସଂଖ୍ୟ ଥିଲେ ଛନ୍ତି ନରମଣି,
କରୁଥିଲେ କରୁଛନ୍ତି ଶାସନ ଅବନୀ ।
ନାହିଁ ତ ନ ଥିବ ଜଗତରେ କାହା ନାମ,
ମାନବ ବିକାଶୁଥିବ ତୋହର ଗୁଣଗ୍ରାମ ।
ନ ବୁଝ ରାଜତ୍ୱ-ସୁଖ ସୌଭାଗ୍ୟର ହେତୁ,
ନ ହେଲେ ସତର୍କ ହେବ ଯମଦ୍ୱାର-ସେତୁ ।
ସନାତନ ରାଜଧର୍ମ ପ୍ରଜାଙ୍କୁ ପାଳନ,
ଏବେ ତାହା ଗନ୍ୟାଢରେ ଅର୍ଥ ସଙ୍କଳନ ।
କିପାଇଁ ହେବୁ ରେ ବାପା, ଅଧର୍ମର ଭାଗୀ ?
କର ଯତ୍ନ ଧର୍ମ ଯଶ ଉପାର୍ଜନ ଲାଗି ।
ଜଳାଞ୍ଜଳି ଦେଇ ସେହି ରାଜସିଂହାସନେ,
ଧ୍ୟାନମଗ୍ନ ହୋଇ ବସ ବିରଳେ ବିଜନେ ।
କର ଦେଶେ ରାମଚନ୍ଦ୍ର ମହିମା ପ୍ରଚାର,
ଉଦ୍ଧର ଆପଣେ, କର ଦେଶକୁ ଉଦ୍ଧାର ।
ଗ୍ରାମେ ଗ୍ରାମେ ଲୋକମାନେ ତୋ ପ୍ରେମସଙ୍ଗୀତ
ଗାଉନ୍ତୁ ଆନନ୍ଦମନେ ହୋଇ ବିମୋହିତ ।
ଚାହିଁ ଦେଖ କି ହୋଇଛି ତୋର ମାତୃଭାଷା
କେବଳ କରିଛି, ପୁତ୍ର, ତୋତେ ମୁହିଁ ଆଶା ।
ନାନା ଛନ୍ଦୋବନ୍ଧେ ଗୀତ କରିବୁ ରଚନା,
ତୋହର ଯେବେ ହେଉ ମାତୃଭାଷା ବିଭୂଷଣା ।
ଘୋଷିବ ଅକ୍ଷୟ କୀର୍ତ୍ତି ଯୁଗଯୁଗାନ୍ତର,
ଗାଇବେ ଉତ୍କଳଦେଶବାସୀ ନାରୀ ନର ।"
ଏତେ ବୋଲି ଭଗବତୀ ହେଲେ ଅନ୍ତର୍ଦ୍ଧାନ;
ଚେତା ପାଇ ଭକ୍ତ କବି ଆରମ୍ଭିଲେ ଗାନ ।

———

## ବୈକୁଣ୍ଠ ନାଥ ଦେ ବାହାଦୁର

ଜନ୍ମ ମୃତ୍ୟୁ ଧର୍ମାଧୀନ ମାନବ ସକଳେ,
ଜନମି କେ ଚିରଦିନ ଥିବ ଧରା ତଳେ ।
ପଶୁ, ପକ୍ଷୀ, ବୃକ୍ଷ, ଲତା, ମାନବ ସମସ୍ତେ,
ଅବିରତେ ଭାସି ଯାଉଛନ୍ତି କାଳସ୍ରୋତେ ।
ଧନ୍ୟ ସେ ମାନବକୁଳେ ଯାହା ଯଶରାଜି;
ଲୋକହିତ ବ୍ରତେ ଥାଏ ଜଗତେ ବିରାଜି ।
ମଲେ ଯାହା ନାମ ଥାଏ ଜଗତ ମଧ୍ୟରେ,
ଅମର ଦେବତା ସେହି ମାନବ କୁଳରେ ।
ଲୋଡ଼ନ୍ତି ନିୟତ ଲୋକେ ଉଦର ପୋଷଣ,
ପରହିତେ ସାଧୁ କରେ ଆତ୍ମ ସମର୍ପଣ ।
ହେ ରାଜା ବୈକୁଣ୍ଠନାଥ ତୁମ୍ଭେ ହିଁ କେବଳ,
ଜନ୍ମିଛ ଉତ୍କଳେ ସାଧୁ ଦୃଷ୍ଟାନ୍ତର ସ୍ଥଳ ।
ଦେଶବାସୀ ନରନାରୀ ମଙ୍ଗଳ କାରଣ,
ଧନ ମାନ ପ୍ରାଣ ସର୍ବ କରିଛ ଅର୍ପଣ ।
ଉତ୍କଳ ଦେଶର ହେବ ଯେପରି ଉନ୍ନତି,
ଆଜୀବନ ସେଥିପାଇଁ ହୋଇଅଛ ବ୍ରତୀ ।
ବିଚ୍ଛିନ୍ନ ଉତ୍କଳ ଖଣ୍ଡ ହେବା ସମ୍ମିଳନ,
ନିଶ୍ଚୟ ଏଥିର ତୁମ୍ଭେ ଆଦିମ କାରଣ ।
କରିବାକୁ ଉତ୍କଳର ଭାଷାର ଉନ୍ନତି,
ଅକାତରେ ଦେଇଅଛ ବହୁତ ସମ୍ପତ୍ତି ।

( ଅବସରବାସରେ ପୁସ୍ତକର ୧ମ ସଂସ୍କରଣ ପୃଷ୍ଠା ୬୭ )

ଯେ ନାମ ଅଙ୍କିତ କଲ ପୁରାଣ ଗ୍ରନ୍ଥରେ,
ଗାଇବେ ଉତ୍କଳବାସୀ ଯୁଗ ଯୁଗାନ୍ତରେ ।
ଆତ୍ମ ପର କିଛି ମାତ୍ର ନ କରି ବିଚାର ।
ଅବିଶ୍ରାନ୍ତ କରୁଅଛ ପର ଉପକାର ।
କାଳସ୍ରୋତେ ଭାସିଗଲେ କେତେ ନରପତି,
ଥିଲ ତ ତାହାଙ୍କ ଦିନେ ବିପୁଳ ସମ୍ପତ୍ତି !
କାହାନ୍ତି ସେମାନେ ଅବା ସେ ସମ୍ପତ୍ତି କାହିଁ ?
ଉତ୍କଳରେ ଥିବ ତୁମ୍ଭେ ଚିରଦିନ ପାଇଁ ।

---

## ତୃତୀୟ ଅଧ୍ୟାୟ—ସ୍ଥାନବିଶେଷ

### କଟକ

( ମଙ୍ଗଳ )

ଉତ୍କଳର ରାଜଧାନୀ କଟକ ସହର;
ବିରାଜିତ, ପ୍ରକାଶିତ ଯୁଗ ଯୁଗାନ୍ତର ।
ମହାନଦୀ କାଠଯୋଡ଼ି ଛନ୍ତି ଦୁଇପାଶେ,
କଟକନିବାସିଗଣେ ଜଳ ଦେବା ଆଶେ ।
ସ୍ଫଟିକନିର୍ମଳ ଜଳ ରୋଗନିବାରକ,
ସ୍ନାନ ପାନେ ସୁସ୍ଥଦେହେ ରହିଛନ୍ତି ଲୋକ ।
ମର୍କଟକେଶରୀ ଧନ୍ୟ ! କୌଶଳ ପ୍ରକାଶି
ବାନ୍ଧିଛି ପଥରବନ୍ଧ କୀର୍ତ୍ତି ଅବିନାଶୀ ।
ପ୍ରାବୃଟ କାଳରେ ନଦୀ ହୋଇ ଭୟଙ୍କରୀ
ନ ପାରନ୍ତି ନଗରୀକୁ ଅତିକ୍ରମ କରି ।
ମହାତ୍ମ ପୁରୁଷୋତ୍ତମ ଦୃଢ଼ମନା ଜ୍ଞାନୀ,
କଟକ ସହର ଥିଲା ତାଙ୍କ ରାଜଧାନୀ ।
ଧନ ଆଶେ, ବିଦ୍ୟାଭ୍ୟାସେ, କୀର୍ତ୍ତି କାମନାରେ
କେତେ ଦେଶୁଁ ଜୁଟନ୍ତି ଲୋକ ଏ କଟକଠାରେ ।
ନଦୀକୂଳ ଅଟ୍ଟାଳିକା ବିଚିତ୍ର ଗଠନ,
ରାଜକର୍ମଚାରୀଙ୍କର ବିଚିତ୍ରଭବନ ।
ସର୍ବରୂପ ବିଦ୍ୟା ଉପାର୍ଜନର ଏ ସ୍ଥଳ,
ନାନା ଦେଶୁଁ ସମାଗତ ବିଦ୍ୟାର୍ଥୀ ସକଳ ।
ଧନ, ବିଦ୍ୟା ଉପାର୍ଜନେ ପ୍ରଶସ୍ତ ଏ କ୍ଷେତ୍ର,
ସଜ୍ଜିତ ବିପଣୀମାଳା ତୃପ୍ତ କରେ ନେତ୍ର ।
ପୂର୍ବକାଳେ ଥିଲେ ଏଥି କେତେ ବିଦ୍ୟାବନ୍ତ,
କେତେ ଧନୀ, କେତେ ମାନୀ, ସନ୍ନ୍ୟାସୀ ମହନ୍ତ ।
କେତେ ରାଜା, ମହାରାଜା, ମଧ୍ୟବିତ୍ତ ଲୋକ,
କେତେ ରାଜ-କର୍ମଚାରୀ, ଧର୍ମପ୍ରଚାରକ !
ଚାଲି ଯାଇଛନ୍ତି ସର୍ବେ ତେଜି ଭବଲୀଳା,
ତଥାପି ରହିଛି ପୂର୍ତ୍ତ ଏହି ପାନ୍ଥଶାଳା ।
ଗତାୟୁତ ପ୍ରାଣିସ୍ରୋତ ଜଗତର ରୀତି,
କେବଳ ତ ଯାଏ ରହି କୀର୍ତ୍ତି ଅପକୀର୍ତ୍ତି ।
ଦୁରାଚାରୀ ମରହଟ୍ଟା ଯାଇଛନ୍ତି କାହିଁ,
ଅଛି ବାରବାଟୀ କିଲ୍ଲା ସାକ୍ଷ୍ୟ ଦେବାପାଇଁ ।
ଏତିକ ବିଚିତ୍ର ମୁହିଁ ଦେଖେଁ ଜଗତରେ,
ନ ବିଚାରେ କେହି ନିଜ ପରିଣାମ ଥରେ ।

---

## ନିଦାଘ ସନ୍ଧ୍ୟାରେ
## କାଠଯୋଡ଼ିକୂଳ ପଥରବନ୍ଧ

( ମଙ୍ଗଳ )

ନିଭିଛି ଆଲୋକରାଶି ଦିବାକର ଅସ୍ତ,
କର୍ତ୍ତବ୍ୟ ସାଧନ କରି ଦିବସ ସମସ୍ତ ।
ନିର୍ଜନରେ ବସି ବସି ମନର ଆକୁଳେ,
ଯନ୍ତ୍ରରେ ଚାଳିତ ପରି ଗଲି ନଦୀକୂଳେ ।
ପଶ୍ଚିମ ଆକାଶ ଦିଶେ ଲୋହିତ ବରଣ,
ବିଶ୍ରାମ ନିମନ୍ତେ ଧାଇଁଛନ୍ତି ପକ୍ଷୀଗଣ ।
ଯେ ଭାବ ଉଦୟ ଦେଖି ପଶ୍ଚିମ ଆକାଶ,
ମନର ସେ କଥା କରି ନ ପାରେଁ ପ୍ରକାଶ ।
ଏତିକ ଜାଣିଲି ଏହା ଥିବ ଚିରଦିନ,
ନ ରହିବ କିଛି ଦିନ ଅନ୍ତେ ମୋର ଚିହ୍ନ ।
ସଙ୍ଗେ ସାଥୀ ଥିଲେ ମୋର ଯେଉଁ ବନ୍ଧୁଗଣେ,
ସେମାନଙ୍କ ମଧ୍ୟୁ କେହି ନାହାନ୍ତି ତ ଜଣେ ।

କେଶରୀ ଅଷସ୍ତ କୀର୍ତ୍ତି ଏ ପ୍ରସ୍ତରବନ୍ଧ,
କଟକ ସହିତ ଅଛି କେମନ୍ତ ସମ୍ବନ୍ଧ ।
ଉତ୍କଳର ରାଜଧାନୀ କଟକ ନଗରୀ,
ଯୁଗ ଯୁଗାନ୍ତର ବନ୍ଧ ଅଛି ରକ୍ଷା କରି ।
ଅସଂଖ୍ୟ କଟକବାସୀ ମନର ଉଲ୍ଲାସେ,
ଆସୁଛନ୍ତି ବନ୍ଧେ ବାୟୁସେବନ ସକାଶେ ।
ଶିକ୍ଷିତ ସମ୍ଭ୍ରାନ୍ତ ଧନୀ ତହିଁ ଅଧିକାଂଶ,
ଦରିଦ୍ରେ ଆସିବେ କାହିଁ ମନରେ ଉଲ୍ଲାସ ?
ସଂଗ୍ରହ କରଇ ଯେବା ବହୁ କଷ୍ଟେ ଅନ୍ନ,
ଆସିବ କି କରିବାକୁ ପବନ ଭକ୍ଷଣ ?
କେତେ ଲୋକ ଭ୍ରମୁଛନ୍ତି ହୋଇ ଦଳ ଦଳ,
ଭ୍ରମୁଛି ମଝିରେ କେହି ଏକାକୀ କେବଳ ।
ନଦୀକୂଳେ ପ୍ରବାହିତ ସଜଳ ପବନ,
ସେ ପବନ ଲୋଭେ ଧାଇଁଛନ୍ତି ଲୋକଗଣ ।
ବନ୍ଧର ଉପରେ ବସି ବିଦ୍ୟାଳୟଛାତ୍ରେ,
ଗାଆନ୍ତି ଉଲ୍ଲାସେ ବ୍ରହ୍ମସଂଗୀତ ଯେ ରାତ୍ରେ ।
ଧୀରେ ଧୀରେ ଯାଇ ଚାଲି ମୁହିଁ ଶୂନ୍ୟମନେ,
ସେ ବନ୍ଧର ଏକ ସ୍ଥାନେ ବସିଲି ନିର୍ଜନେ ।
ପାଶ ଦେଇ ଗଲେ ଚାଲି ଲୋକ ଅଗଣିତ,
ବହୁତ ଅଜଣା, କେତେ ଅବା ପରିଚିତ ।
କେତେ ହସି ହସି ମୋହ ସଙ୍ଗେ କହି କଥା,
କେତେ ଗଲେ ଚାଲି ଭିନ୍ନ ହୋଇ ପୋତି ମଥା ।
ବହୁତ କାଳରୁ ଦେଖୁଛି ତ ଏ ରୂପରେ,
କେତେ ତ ଗଲେଣି ଚାଲି ଅନନ୍ତ ମାର୍ଗରେ ।
ଦେଖି ଆକାଶରେ ଦିଶେ, ତାରକା ଆଲୋକ,
ନୀଳ ଜଳେ ପ୍ରତିବିମ୍ବ ଦିଶେ ଝିକ ଝିକ ।
ବନ୍ଧରୁ ଓହ୍ଲାଇ କେତେ ଲୋକ ଦଳେ ଦଳେ,
ପ୍ରବେଶୁଅଛନ୍ତି କାଠଯୋଡ଼ି ନଦୀଜଳେ ।
ଘର ଘର ଜଳ ନେଉଛନ୍ତି ନାରୀମାନେ,
ସନ୍ଧ୍ୟା ହେଲେ ମଧ୍ୟ ଥୋକେ ଯାଉଛନ୍ତି ସ୍ନାନେ ।
କାଠଯୋଡ଼ି ଦେଖି କଲି ମନରେ ବିଚାର,
ମାନବ ଜାତିର ଭାଗ୍ୟ ସିନା ଏ ପ୍ରକାର ।

ଦିନେ ଏହି ନଦୀ ବେଗେ ଆସୁଥିଲା ଧାଇଁ,
କଟକ ସହର ଗୋଟା ନେବାକୁ ଭସାଇ,
ଏବେ କ୍ଷୀଣ ବଳହୀନ ସୁନିର୍ମଳ ଜଳେ,
ପଡ଼ି ରହିଅଛି କଟକର ପଦତଳେ ।
ବୃଦ୍ଧା ପରି ଶୋଇଅଛି ବାଲୁକା-ଶଯ୍ୟାରେ,
ମାତି ଉଠୁଥିଲା ଦିନେ ଅହଙ୍କାରେ ।
ଏହାର ଅବସ୍ଥା ଦେଖି କଲି ଅନୁମାନ,
ଦେଇ ଯାଉଛି ତ ଲୋକଗଣେ ତତ୍ତ୍ୱଜ୍ଞାନ ।
ସାଗରକୁ ଲକ୍ଷ୍ୟ କରି ଯାଉଅଛି ବହି,
ଯିବେ ସର୍ବେ ଏହିପରି କଥା କହି କହି ।
କାହିଁ ମୋର ଜନ୍ମସ୍ଥାନ, କେଉଁ ଶୁଭଦିନେ
ମିଳିଥିଲି କାଠଯୋଡ଼ି ପବିତ୍ର ପୁଳିନେ ।
କୃପାମୟି ! କୃପା ରଖିଥିବ ମୋ ଉପରେ,
ମୋହ ଦେହ ଭସ୍ମରାଶି ଧରିବ କୋଳରେ,
ସାକ୍ଷୀ ଥାଆନ୍ତୁ ସନ୍ଧ୍ୟା ତାରା ଦିଗପାଳଗଣ,
ତୁମ୍ଭଠାରେ ଏହି କଥା କଲି ନିବେଦନ ।
ତୋହ କୂଳେ ଆନନ୍ଦରେ କରୁଥିଲି ଗାନ,
ସେ ଉତ୍ସବବନ୍ଦନ ହୋଇଅଛି ଅବସାନ ।
ଏବେ ତୋହ କୂଳେ ଆସୁଛି ତ ବାରେ ବାରେ,
ଚିରନିଦ୍ରା ହେବ ଦିନେ ବାଲୁକା-ଶଯ୍ୟାରେ ।
ନିର୍ଜନେ, ଶରତେ, ଶୀତେ, ଗ୍ରୀଷ୍ମାନ୍ତେ, ବସନ୍ତେ,
ତୋ ଉତ୍ତରକୂଳେ ପଡ଼ି ରହିବି ନିଶ୍ଚିନ୍ତେ ।
କାଠଯୋଡ଼ି, ତୋହ ପ୍ରତି ଜନମିଛି ମାୟା,
ଜନ୍ମଜନ୍ମାନ୍ତରେ ଦେବୁ ପଦତଳେ ଛାୟା ।
ଆସୁଥିବେ ଯାଉଥିବେ ନିତି ଭିନ୍ନ ଭିନ୍ନ,
ଅବଶେଷେ ଥିବ ତୋହ କୂଳେ ହୋଇ ମୌନୀ ।
ଶେଷେ ବନ୍ଧୁଗଣେ ଯିବେ ତୋହ କୂଳେ ଛାଡ଼ି,
ଭସ୍ମ ଅବଶେଷେ ବାଲୁକାରେ ଥିବ ପଡ଼ି ।
କରିବୁ କି କୃପାମୟି ! କୃପା ମୋ ଉପରେ ?
ସେହି ଭସ୍ମରାଶି ନେବୁ ଭସାଇ ସାଗରେ,
ଯିବ ଚାଲି ଆତ୍ମା ମୋର ଅନନ୍ତ ମାର୍ଗରେ,
ପଡ଼ିବ ଦେହର ଭସ୍ମ ଅନନ୍ତ ସାଗରେ ।

ଆକାଶ ପୃଥିବୀ ଘୋଟିଗଲଣି ତିମିର,
ଝିମି ଝିମି ହୋଇ ପଡ଼ି ଆସୁଛି ଶିଶିର ।
ଲୋକେ ଯାଉଛନ୍ତି ଗୃହେ ଚଞ୍ଚଳେ ବାହୁଡ଼ି,
ବରଡାଳେ ଝୁଲି ପଡ଼ିଅଛନ୍ତି ବାଦୁଡ଼ି ।
ଆକାଶଯାକରେ ମେଲିଗଲେଣି ତାରକା,
ଶୁଭିଲଣି ଆର କୂଳେ ବିଲୁଆଙ୍କ ଡକା ।
ସହି ହେଉ ନାହିଁ ଏବେ ଶୀତଳ ପବନ,
କ୍ରମେ କ୍ରମେ ନଦୀକୂଳ ହେଉଛି ନିର୍ଜନ ।
ନିଶ୍ୱାସ ପକାଇ ମନେ ଚିନ୍ତି ଈଶ୍ୱରଙ୍କୁ
ଅଇଲି ବାହୁଡ଼ି ଶୂନ୍ୟମନରେ ଗୃହକୁ ।

———

## ମୋ ଗ୍ରାମ-ମଲ୍ଲୀକାଶପୁର

( ରାଗ—ମଙ୍ଗଳ )

ଅଟ୍ଟାଳିକାମାଳାପୂର୍ଣ୍ଣ ସୁନ୍ଦର ନଗର,
ଉଜ୍ଜ୍ୱଳ ତରଙ୍ଗମାଳା ନୀଳିମା ସାଗର ।
କେତେ ନଦ କେତେ ନଦୀ ଗିରି ଅରଣ୍ୟାନୀ,
ହାଟ ଗ୍ରାମ ଲୋକ ପରିପୂର୍ଣ୍ଣ ରାଜଧାନୀ ।
ସ୍ଥାନେ ସ୍ଥାନେ ଭ୍ରମି ଭ୍ରମି ଦେଖିଲି ଜୀବନେ,
ସେ ଗ୍ରାମ ଚିତ୍ରଟି ମାତ୍ର ଭାସୁଛି ନୟନେ ।
ଯାଏଁ ଯହିଁ ଥାଏଁ ଯହିଁ ପଡ଼େ ସେ ମନରେ
ବଲେ ମନ, ଧାଇଁ ଯାଇ ଦେଖିଆସେଁ ଥରେ ।
ସତକଥା ନାହିଁ ତହିଁ ବିଶେଷ ସମ୍ପତ୍ତି,
ମାତ୍ର ଅଛି ତହିଁ ଚିତ୍ତବିମୋହିନୀ ଶକ୍ତି ।
ଧନହୀନ ଶୋଭାହୀନ ସୌନ୍ଦର୍ଯ୍ୟବିହୀନ,
ତଥାପି ସେ ଗ୍ରାମ ମନେ ପଡ଼େ ପ୍ରତିଦିନ ।
ସନ୍ଧ୍ୟାରେ ବଜାନ୍ତି ଶଙ୍ଖ ଗ୍ରାମନାରୀମାନେ,
ଦେବାଳୟେ ଘଣ୍ଟା ବାଜୁଥାଏ ଠାନେ ଠାନେ ।
କାହିଁ ତ ଦେଖିଲି ନାହିଁ ସେ ମାଧୁରୀ ସନ୍ଧ୍ୟା,
ନ ଫୁଟେ ସେପରି ଚମ୍ପା ମଲ୍ଲୀ ରଜନୀଗନ୍ଧା ।
ଗ୍ରାମ ପୋଖରୀରେ ଫୁଟେ ଯେଉଁ କଇଁଫୁଲ,
ନ ଦେଖିଲି କାହିଁ ସେହି ଫୁଲ ସମତୁଲ ।
ନଈମୁଖେ ପଲପଲ ଉଡ଼ନ୍ତି ବାଦୁଡ଼ି,
ମାଳମାଳ ଗେଣ୍ଡାଳିଆ ଯାଉଥାନ୍ତି ଉଡ଼ି ।
ଧୀରେ ଧୀରେ ବହୁଥାଏ ଶୀତଳପବନ,
ବାହାର ମେଲରେ କରିଥାଏଁ ମୁଁ ଶୟନ ।
ସେ ଚନ୍ଦ୍ରମା ନଈ ପୁଣି ସେ ଶୀତଳ ବାୟୁ,
ଦେଶେ ଦେଶେ ବୁଲି କାହିଁ ନ ଦେଖିଲି ଆଉ ।
ସେ ଗ୍ରାମର ଦାଣ୍ଡେ ଅଛି ଯେଉଁ ବାଲିଧୂଳି,
ପିଲଖେଳବେଳେ ହେଉଥିଲି ଦେହେ ବୋଳି ।
ସେହି ଧୂଳି ସେହି ବାଲି ପଡ଼ୁ ମୋ ଦେହରେ,
ଏହିପରି କେତେଥର ଭାଳେଁ ମୁଁ ମନରେ ।
ସେହି ସେ ବାସଙ୍ଗ, ଗେଣ୍ଡୁ ଫୁଟେ ଶୀତକାଳେ,
ପେନ୍ଥା ପେନ୍ଥା କସି ଆମ୍ବ ଝୁଲୁଥାଏ ଡାଳେ ।
ସେ ଫୁଲ ସୌରଭ କସି ଆମ୍ବର ମାଧୁରୀ,
ନ ପାଇଲି କାହିଁ ସାରା ଭାରତଟା ଘୂରି ।
ସେ ଗ୍ରାମର ପଶୁ ପକ୍ଷୀ ରହିଛନ୍ତି ଯେତେ,
ବିରହେଁ ମନରେ ଅବା ଖୋଜୁଛନ୍ତି ମୋତେ ।
ସେ ଗ୍ରାମ ବରଷା, ଗ୍ରୀଷ୍ମ, ସେ ଗ୍ରାମର ଶୀତ,
ନ ପାଇଲି କାହିଁ ତାହା ମାଧୁରୀ କଳ୍ପିତ ।
କରନ୍ତୁ ପଛକେ ସେହି ଗ୍ରାମଲୋକେ କଳି,
ନ ପାଇଲି ସଙ୍ଗ ସୁଖ ତାହାଠାରୁ ବଳି ।
ଯାଇଛି ସେ ଗ୍ରାମେ ଭାସି ମୋ ହୃଦୟଧନ,
ତଥାପି ସେ ସ୍ଥାନେ ଯିବାପାଇଁ ଧାଏଁ ମନ ।
ମୋ କାନକୁ ଶୁଭେ ତାହା ନାମ ସୁମଧୁର,
ସେ କ୍ଷୁଦ୍ର ଗ୍ରାମର ନାମ ମଲ୍ଲିକାଶପୁର ।
ବିଧିବଶେ ମୁଁ ବିଦେଶେ କରୁଛି ଭ୍ରମଣ
ନିଭିବ କି ସେ ଗ୍ରାମରେ ଅନ୍ତିମ ଜୀବନ ?
ଅଭିଳାଷ ଯହିଁ ତହିଁ ଯାଏଁ ନିତ୍ୟଧାମେ,
ଶେଷ ଅସ୍ଥି ଖଣ୍ଡ ହେବ ସମାଧି ସେ ଗ୍ରାମେ !

———

## ଭୁବନେଶ୍ୱର

( ରାଗ—ମଙ୍ଗଳ )

ହେ ଭୁବନେଶ୍ୱର ! ତୁମ୍ଭ କୀର୍ତ୍ତି ଭୁବନରେ,
ପ୍ରକାଶିତ ଅଛୁ, ଥିବ ଯୁଗଯୁଗାନ୍ତରେ ।
ଶିଳ୍ପକାର୍ଯ୍ୟ ପରାକାଷ୍ଠା ତୁମ୍ଭର ଦେଉଳ,
ନ ଦେଖେଁ ମନ୍ଦିର କାହିଁ ତାହା ସମତୁଲ ।
କେତେ କାଳ କେତେ କୋଟି ପ୍ରାଣୀ ଗଲେ ଭାସି,
ଯିବେ କେତେ, ଥିବ ତୁମ୍ଭ ଦେଉଳ ବିକାଶି ।
ଅଶୋକା ମହତ୍ତ୍ୱ କୀର୍ତ୍ତି ବିକାଶ କାରଣେ,
ତୁମ୍ଭେ କି ବିରାଜଅଛ ଏକାମ୍ରକାନନେ ?
ଅସଂଖ୍ୟ ଦେଉଳ ବିସ୍ତାରିଛ ଇତସ୍ତତଃ,
ରହିଛୁ ତ ଖଣ୍ଡଗିରି ଗୌରବ ସମସ୍ତ ।
ହେଉ ପଛେ ବୌଦ୍ଧଧର୍ମ ଅଧିକାର ଲୋପ,
ମାତ୍ର ଗୁହା କାରୁକାର୍ଯ୍ୟ ଥିବ ସମରୂପ ।
ପ୍ରତିଯୋଗୀ ଦୁଇ ଶିଳ୍ପ ସମାନ ସମାନ,
କାହାକୁ ବୋଲିବୁଁ ବଡ଼, କାହାକୁ ବା ସାନ ?
ଶୈବ ବୌଦ୍ଧ ଉଭ କୀର୍ତ୍ତି ପାଷାଣ-ଅଙ୍କିତ,
କରି ପାରି ନାହିଁ କାଳ ବ୍ୟତ୍ୟସ୍ତ କଳ୍ପିତ ।
ସହସ୍ର ସହସ୍ର ବର୍ଷ କାଳ ଯିବ ବହି,
ଦୁଇ ମହାପୁଣ୍ୟ ଧାମ ଥିବ ଶିର ରହି ।
ଲକ୍ଷ ଲକ୍ଷ ଧର୍ମପ୍ରାଣ ଲୋକ ତୁମ୍ଭ ପାଶେ,
ଧାଇଁଛନ୍ତି ଦୁଇ କାଳ ସୁଖଲାଭ ଆଶେ ।
ମୋହ ପିତା ଶ୍ରୀଲକ୍ଷ୍ମଣନାଥ ତୁମ୍ଭଠାକୁ
ଭକ୍ତିଭରେ ଆସିଥିଲେ ପୁଣ୍ୟ ଲଭିବାକୁ ।
ମହାପ୍ରଭୋ ! ଦେଖି ତାଙ୍କ କିବା ଅପରାଧ,
ଅସମୟେ କଲ କିଆଁ ତାଙ୍କ ପ୍ରାଣ ବଧ ?
ପୁଣ୍ୟମୟ ତୀର୍ଥ ବିନ୍ଦୁସାଗରର କୂଳେ
ବିସୂଚିକା ରୋଗେ ପିତା ପ୍ରାଣତ୍ୟାଗ କଲେ ।
ଥିଲେ ସେ କାଳରେ ତାଙ୍କ ଜନନୀ, ସଙ୍ଗିନୀ,
ବିକଳେ ବାହୁଡ଼ି ଗୃହେ ଗଲେ ଅଭାଗିନୀ ।
ମୋ ମାତା ତୁଳସୀଦେବୀ ବିକଳେ ହତାଶେ
କାନ୍ଦି କାନ୍ଦି ପ୍ରାଣତ୍ୟାଗ କଲେ ତିନି ମାସେ ।
ମୋହ ପିତା ପ୍ରତି କରିଅଛ ଅତ୍ୟାଚାର,
ତୁମ୍ଭ କୃପା ପାଇବାକୁ ମୋର ଅଧିକାର ।

---

## ଉତ୍କଳଭୂମି

( ରାଗ – ବଙ୍ଗଳାଶ୍ରୀ )

ହେ ଉତ୍କଳ ମାତା ! ହେଉଛୁ ପ୍ରଣତ
ମୋ ପ୍ରତି କରୁଣା,
ମୋର ଏ ଜୀବନେ ନ ହେବ ଯେସନେ
ତୋର ପ୍ରତି କର ଭକ୍ତି ଊଣା ।
ହୁଏ ପଛେ ମାତ ! ଅଭାଗୀ ନିତାନ୍ତ,
ତୁମ୍ଭେ ତ ମୋର ଜନନୀ ।
ତୋହ ଅପମାନେ ଶ୍ରୀଷଣ ପରାଣେ
ପଡ଼ଯାଏ କି ଅଶନି !
କୃପା-ଅକୂପାର ଶୋଭାର ଆଧାର
କରି ନିରମିଲେ ତୋତେ,
ଅଯୋଗ୍ୟ ସନ୍ତାନେ କଲେ ହୀନମାନେ
ଶ୍ମଶାନ ତୁଲ୍ୟ ପରତେ ।
ତୋ ଠାରେ କି ନାହିଁ, କେଉଁ ଦ୍ରବ୍ୟ ପାଇଁ
ହୀନମାନ ତୋ ନନ୍ଦନେ ?
ଦେଉଛୁ ବଡ଼ାଇ, ନ ଜାଣନ୍ତି ଖାଇ
ତୋହର ସନ୍ତାନ ଜଣେ ।
ପର ପାଠ ପଢ଼ି, କି ଲାଭରେ ପଡ଼ି,
ଲେଖିଦେଇ ଦସ୍ତଖତ,
ଅନ୍ନ ବସ୍ତ୍ରେ ପୁଣି ହୋଇ ଟାଣିଟୁଣି,
ବୋଲନ୍ତି ସେ ଭାଗ୍ୟବନ୍ତ ।
ପୋଷି କେତେ ଆଶା ପଢ଼ି ରାଜଭାଷା
କାଟିଲେ ଜୀବନ ଅଧେ
ଶେଷରେ ସମ୍ବଳ ଗୋଲାମି କେବଳ
ସ୍ୱଳ୍ପ ଟଙ୍କାର ମଧ୍ୟେ !

କେତେ ଉଦ୍ୟମର   କରନ୍ତୁ ଗୃହର
ପେଟ ପୂରିବାକୁ ନାହିଁ,
ରାଜଭୟେ ବ୍ୟସ୍ତ,   ଲୋକଙ୍କର ହିତ
କରିବାକୁ ବେଳ କାହିଁ ?
ସ୍ୱଭାବେ ତୁ ହୀନା   ନ ଥିଲୁ ପ୍ରବୀଣା
ସକଳ ବିଦ୍ୟା କଳାରେ,
ଧିକ ଧିକ ଧିକ !   ବୋଲିବି ଅଧିକ
କିବା କଥା କାହାଠାରେ ।
ତୋହ ଦେହଧୂଳି   ହୋଇ ଅଙ୍ଗେ ବୋଳି
ଧନ୍ୟ ଭାରତର ଲୋକେ,
ଧନହୀନ ବେଶେ   ଭ୍ରମନ୍ତି ବିଦେଶେ
ତୋହର ସନ୍ତାନ ଥୋକେ ।
ଉତ୍କଳ ବସନେ   ଆବୃତ ଯତନେ
ଥିଲେ ୟୁରୋପ ଲଳନା,
ଏବେ ତୋ ସନ୍ତାନେ   ରହିଛନ୍ତି ଧ୍ୟାନେ
ମାଞ୍ଚେଷ୍ଟରରୁ ଝଣ୍ଡେ କନା ।
ତୋହର କୁମରେ   ନର୍ମଦା କୂଳରେ
କରୁଥିଲେ ଯାଇ ରଣ,
ଏବେ ତୋ ନନ୍ଦନ   ସମରପ୍ରାଙ୍ଗଣ
ଦେଖିଛନ୍ତି କେତେ ଜଣ ?
ପ୍ରଭୁ ଜଗନ୍ନାଥ   ଧରି ଲକ୍ଷ୍ମୀ ହାତ
ବସିଛନ୍ତି ତୋ ପୃଷ୍ଠରେ,
ତୁ ଶସ୍ୟଶ୍ୟାମଳା,   ଅଛନ୍ତି କମଳା,
ଅନ୍ନ ନାହିଁ ଅଦୃଷ୍ଟରେ ।
କରି ରାଜସୂୟ   ଧର୍ମଙ୍କ ତନୟ
ମହାରାଜ ଯୁଧିଷ୍ଠିର
ବସି ରାଜମଞ୍ଚେ   ବୋଲିଥିଲେ ଉଚେ—
ଉତ୍କଳୀୟ ମହାବୀର;
ସେହି ଜାତିମାନେ   ଦେଖ ବର୍ତ୍ତମାନେ
କେଡ଼େ ହୀନ ହତଭାଗ୍ୟ,
କେଡ଼େ ଭୟ ପାଇ   ଯାଆନ୍ତି ପଳାଇ
ଦେଖି ଖଣ୍ଡେ ରଙ୍ଗ ପାଗ ।

ବାଣିଜ୍ୟ ବ୍ୟବସା,   ଗୃହର ଭରସା,
କିଛି ତ ଉପାୟ ନାହିଁ,
ବିଦେଶୀୟ ଭାଇ   ନେଲେଣି ଛଡ଼ାଇ,
ଆସ ଲାଗୁଁ ସେଥିପାଇଁ ।
ସାଧନାରେ ସିଦ୍ଧି,   ଅଛି ତ ପ୍ରସିଦ୍ଧି,
କଥା ଜାଣ ପରମ୍ପରା,
ଅଳସ ପଣରେ   ବସି ରହି ଘରେ
ପେଟଟି ପୋଷିବ ପରା ?
ଆହେ ଜମିଦାରେ   ପୂର ଗନ୍ତାଘରେ
ରୁଣ୍ଡାଇ ପୁଣ୍ଡାଇ ଟଙ୍କା,
ଦେଶ ଭାସି ଯାଉ   ସେଥିପାଇଁ ଆଉ
ତୁମ୍ଭର କି ଅଛି ଶଙ୍କା ?
ଆସ ଭାଇମାନେ !   ବସି ଏକ ସ୍ଥାନେ
କରିବା ମିଳି ବିଚାର,
ଅନ୍ନ ବସ୍ତ୍ର ପାଇଁ   କଷ୍ଟ ହେବ ନାହିଁ,
ପାଇବୁଁ ଦୁଃଖୁଁ ଉଦ୍ଧାର ।
ଅଳପ କଥାରେ   ଅଳପ ଟଙ୍କାରେ
ଚଳି ଯାଉଥିଲା ଆଗ,
ଅଛି ସବୁ ତହିଁ,   ଖାଇଲାଣି ଭାଇ
ପୁରୁଣା କଥାକୁ ବାଘ ।
ଓଳଡଲେ ଲୁଣ   କୋଟିଏ ମହଣ
ଆଉଁ ମୋହ କଥା ଶୁଣ,
ବୋଇଲେ କି ହେବ   ଖାଇବାକୁ ହେବ
ଲିଭରପୁଲରୁ ଲୁଣ ।
ମାଞ୍ଚେଷ୍ଟର ତନ୍ତୀ   ଲୁଗା ବୁଣୁଛନ୍ତି
ତୁମ୍ଭମାନଙ୍କ ସକାଶେ,
ବୁଡ଼ୁ ତନ୍ତୀ ବଂଶ,   ହେଉ ସର୍ବନାଶ
ଯାଉନ୍ତୁ ସେ ବନବାସେ ।
ସ୍ୱଦେଶର ଶିଳ୍ପ   ସବୁ ଅଳ୍ପ ଅଳ୍ପ
ଦେଖୁଛ ଯାଉଛି ବୁଡ଼ି,
ଦେଖୁ ନାହିଁ ଭଲ,   ସରୁଛି ସମ୍ବଳ,
ଶୋଇଛ ମାଠଟି ଯୋଡ଼ି ।

ଉଠ ଉଠ ଭାଇ ବେଳ ବହିଯାଇ
ନାହିଁଟି ଭଲ ମନରେ,
କରିବୁଁ ଉପାୟ, ସହିଁ କଷ୍ଟ କ୍ଷୟ
ହୋଇପାରେ ସହଜରେ ।
ଜାଣ ଏ ଉତ୍ତରେ ହେବ ପୁନର୍ବାରେ
ଜମି ଜମା ବନ୍ଦୋବସ୍ତ,
ବଢ଼ିବ ଖଜଣା କେତେ ନାହିଁ ଜଣା,
କରି ରଖ ବନ୍ଦୋବସ୍ତ ।
ଖାଇ ପିଇ ଭାଇ, ସଞ୍ଚି ଟଙ୍କା ଦୁଇ
ହାତେ ଯିନା ରଖିଥିଲେ,
ଜମିଦାର ହକ ଖଜଣା ଗଣ୍ଡାକ
ଦେଇ ତୁ ରହିବୁ ଭଲେ ।

---

## ଜନ୍ମଭୂମି

ଗିରିକଣ୍ଟିନି ! କାନନଶୋଭନ !
ଜନନି ଉତ୍କଳ ଭୂମି !
ପୂଜନୀୟେ ଅମ୍ବ ! ମହାସିନ୍ଧୁ ତବ
ଚରଣ ଯାଉଛି ଚୁମି ।
ଶସ୍ୟଶ୍ୟାମାଙ୍ଗିନି ! ସଉଧମାଳିନି !
ସ୍ରୋତସ୍ୱତୀହାର ଦେବି !
କେତେ ମହାକବି ଅମର ପଦବୀ
ଲଭିଲେ ଚରଣ ସେବି ।
ବିଶାଳ ଅବନୀ ମଧ୍ୟେ ଜୟଧ୍ୱନି
କରି କେତେ ଜାତି ସୁଖେ
ଧାଇଁଛନ୍ତି, ମାତ ! କେବଳ ନିତାନ୍ତ
ତୁମ୍ଭ ପୁତ୍ରେ ଛନ୍ତି ଦୁଃଖେ ।
ତୁମ୍ଭେ ତ ପ୍ରବୀଣା, ସୌଷ୍ଠବେ ବିଶେଷା,
କୃପଣା ନୁହ ତ ଦାନେ !
ଶସ୍ୟ, ଶଷ୍ପ, ଜଳ ବିପୁଳ ନିର୍ମଳ
ଭୁଞ୍ଜୁଛନ୍ତି ପୁତ୍ରମାନେ ।

ତେବେ କପାଁ ମାତ ! ତୋ ପୁତ୍ରେ ନିତାନ୍ତ
ହେଉଛନ୍ତି ହୀନମାନ ?
ଜାଣିଲି ନିକର କେବଳ ତାଙ୍କର
ନାହିଁ ଜାତି ଅଭିମାନ ।
ମାତାକୁ ସମ୍ମାନ ନ କରେ ଯେ ଜାଣ,
ସେହି ତ ଅଧମ ସୁତ,
ସେହି ସର୍ବ ସ୍ଥାନେ ଥାଏ ଅପମାନେ
ସମାଜରେ ଅନାଦୃତ ।
ଯେ କରେ ଜନନୀ ସେବା, ସେହି ଧନୀ
ହୁଏ ସକଳ ଧନରେ,
ତାହାର ଗୌରବ ଦେଶବାସୀ ସର୍ବ
ରଟନ୍ତି ସଦା ମୁଖରେ ।
ପଶୁ ପକ୍ଷୀ ଯେତେ ଅଛନ୍ତି ଜଗତେ
ପୋଷନ୍ତି ସର୍ବେ ଉଦର,
ତୁମ୍ଭେ ସେ ପ୍ରକାର ହେଲେ ସ୍ୱାର୍ଥପର
କି ଭେଦ ହେଲା ତୁମ୍ଭର ?
ଗୃହିଁ ଦେଶପ୍ରତି, ଭାଷାର ଉନ୍ନତି
ଲୋଡ଼ି ଜାତୀୟ ଗୌରବ,
ଦେଶବାସିଗଣ ଜାଣନ୍ତୁ ଆପଣ
ଯଥାର୍ଥ ଜଣେ ମାନବ ।

---

## ଭଗ୍ନ ଶିବମନ୍ଦିର

( ରାଗିଣୀ— ରସକୁଲ୍ୟା )

ବୋଲ ଶିବାଳୟ ବୋଲ ସ୍ୱରୂପ,
କେ କଲା ଏପରି କୁତ୍ସିତ ରୂପ ?
ବିଜନେ ବିରଲେ ରହିଛ ଉଭା,
ନାହିଁ ତ ଗୌରବ ବିଭବ ଶୋଭା !
ପୂଜାପାଇଁ ଶଙ୍କରଙ୍କୁ ଯେ
କେବେ କେହି ଭକ୍ତ ସେବା-ଅନୁରକ୍ତ
ଆସୁଥିଲେ ଏ ସ୍ଥାନକୁ ହେ !

ତୋ ଦେହରୁ ଚୂନ ଗଲାଣି ଗୁଡ଼ି
ବଟବୃକ୍ଷ ଚେର ଯାଉଛି ମାଡ଼ି,
ବାଜୁଥିଲା ଯହିଁ ଘଣ୍ଟ କଂସାଳ,
ତହିଁ ରବୁଛନ୍ତି ପେଚୁ ଶୃଗାଳ,
ଥିଲେ ଯହିଁ ଭକ୍ତମାନେ ହେ,
ଭୀଷଣ ଭୁଜଙ୍ଗେ      ଫେଣ ଟେକ ରଙ୍ଗେ
ଖେଳୁଛନ୍ତି ସେହି ସ୍ଥାନେ ହେ ।

ଶିବଚତୁର୍ଦ୍ଦଶୀ ନିଶିରେ ବସି
ଦୀପାବଳୀ ଜାଳି ଗ୍ରାମରୂପସୀ
ହୁଳହୁଳି ଦେଇ ଶଙ୍ଖ ବଜାଇ
ବସିଥାନ୍ତି ଉଜାଗରରେ ଥାଇ ।
କରୁଥିଲେ କିଣା ବିକା ହେ
ଚଣା ଭଜା ଚୂଡ଼ା      ମିଠାଇ ଉଖୁଡ଼ା
ଦୋକାନୀ କରି ଜୀବିକା ହେ ।

ପ୍ରତିଦିନ ଆସୁଥିଲା ତ ମାଳୀ
ଶମ୍ଭୁଶିରେ ଜଳ ଦେବାକୁ ଢାଳି
ଚମ୍ପାଫୁଲ ବିଲ୍ୱପତ୍ର ଚଢ଼ାଇ
ଭକ୍ତ ମନୋବାଞ୍ଛା ପୂରଣ ପାଇଁ ।
ଏବେ କି ସେ ଆସେ ଥରେ ହେ ?
ସମ୍ପଦ ବେଳରେ      ଲୋକ ସମାଦରେ
ପଚୃରେ କେ ବିପଦରେ ହେ ?

ଘାଟ ନାଉରିଏ ତୋତେ ଅନାଇ
ଆସନ୍ତି ପଖାର ନାଆକୁ ବାହି,
ଏବେ ସେମାନଙ୍କୁ ମାଡ଼ୁଛି ଡର,
ନାଏ ବାଜିବ ବା ଭଙ୍ଗା ପଥର ।
ଜଗତରେ ଏହି ରୀତି ହେ,
ଭରସା ଆଲୋକ      ଥିଲା ଯେଉଁ ଲୋକ,
ମଲେ ହୁଏ ଭୂତ ଖ୍ୟାତି ହେ !

ମାଂସ ଶୋଣିତରେ ମୁହିଁ ଗଠିତ,
ମାଙ୍କଡ଼ା ପଥରେ ତୁହି ନିର୍ମିତ,
ତୋହର ଦଶା ଦେଖି ମାଡ଼ୁଛି ଡର,
କାଳମୁଖେ ମୁହିଁ କେତେ ମାତର !
ଥିଲୁ ମୃତ୍ୟୁଞ୍ଜୟ ସ୍ଥାନ ହେ,
ସେହି ମୃତ୍ୟୁସାଇଁ      ଗ୍ରାସିଗଲେ କାହିଁ
କେ ରଖିବ ତୋ'ର ମାନ ରେ ?

ଆଗେ ଥିଲା ଶୋଭା ପବିତ୍ର ସ୍ଥାନ,
ଏବେ ଜନଶୂନ୍ୟ କୀର୍ତ୍ତିଶ୍ମଶାନ ।
ଆହେ କୀର୍ତ୍ତିମନ୍ତ ଦେଖ ତ ଆସି,
କି କଲାଣି କାଳ କୀର୍ତ୍ତି ବିନାଶି ।
ପବିତ୍ର ଶୋଭାଭଣ୍ଡାର ହେ
ସେ କାଳ କରାଳ      ଭାଙ୍ଗି ବେନି ଫାଳ
କଲାଣି ଯେ ଛାରଖାର ହେ ।

ପଡ଼ୁଛି ଦେଉଳ ପଥର ବୁଣି,
ପକାଇଛି କାଳ ଦାନ୍ତରେ ଝୁଣି ।
"ମହିମ୍ନଃ ପାରନ୍ତେ" ସ୍ତବ ବ୍ରାହ୍ମଣେ,
ପଢ଼ି ତୋଷୁଥିବେ ଭକତଗଣେ ।
କାହାନ୍ତି ସେ ବିପ୍ରବରେ ହେ
ଦେଉଳ ଫାଟରେ      ବାୟୁ ପଶି ଖରେ
ଶୁଣାଉଛି ମନ୍ତ୍ର ସ୍ୱରେ ରେ ।

"ଅଷ୍ଟ କୁଳାଚଳ ସପ୍ତ ସମୁଦ୍ର
ବ୍ରହ୍ମ ପୁରନ୍ଦର ମାର୍ତ୍ତଣ୍ଡ ରୁଦ୍ର"
ତୁମ୍ଭେ ଆମ୍ଭେ କେହି ରହିବା ନାହିଁ,
ଏତେ ହିଂସା ଦ୍ୱେଷ ତେବେ କିପାଇଁ ?
ଦେଖ ତହିଁ ନିଦର୍ଶନ ହେ,
କାହିଁ ଶିବାଳୟ      ପବିତ୍ର ଆଳୟ
କାହିଁ ଗଲେ ଲଛମନ ହେ * ।

*କଟକ ସମୀପସ୍ଥ କାଠଯୋଡ଼ି ନଦୀ ଫତେମୁଖା ଘାଟ ବିପରୀତ କୂଳରେ ଲଛମନ ହାଜରା ମୁକାମଶ୍ୱରଠାରେ ଗୋଟିଏ ଶିବମନ୍ଦିର ନିର୍ମାଣ କରିଥିଲେ, ନଦୀବଢ଼ିରେ ତାହା ଭାଙ୍ଗି ବୁଡ଼ି ଯାଇଅଛି ।

## ଚତୁର୍ଥ ଅଧ୍ୟାୟ—ପ୍ରାକୃତିକ ବସ୍ତୁ
## କପୋତ କପୋତୀ

( ମଙ୍ଗଳ )

ନବଡ଼ ପଲ୍ଲବଯୁକ୍ତ ଚୂତବୃକ୍ଷ ଡାଳେ,
କପୋତ କପୋତୀ ବସିଛନ୍ତି ଅନୁରାଗେ ।
କୁହୁଉ-କୁହୁଉ ରବୁଛନ୍ତି ବାରେ ବାରେ,
ପାଳି କରି ଦୁହେଁ ଗୋଟି ଗୋଟିକ ଉତ୍ତରେ ।
ନଶ୍ୱର ଯୁଗଳ କ୍ଷୁଦ୍ର ପ୍ରାଣୀ ପରସ୍ପରେ
ସାହା ହୋଇ ଦିନ କାଟୁଛନ୍ତି ଆନନ୍ଦରେ ।
ନାହିଁ ଦ୍ୱେଷ ହିଂସା କ୍ରୋଧ ଭାବ ଆନ ପ୍ରତି,
ଆତ୍ମକାର୍ଯ୍ୟେ ରତ ସଦା ନଶ୍ୱର ଦମ୍ପତି ।
କ୍ଷଣେ କାହାଠାରୁ କେହି ନୁହନ୍ତି ଅନ୍ତର,
ଆହାର ବିହାରେ ସହା ସାହା ପରସ୍ପର ।
ପ୍ରକୃତି ପୁରୁଷ ଦୁହିଙ୍କର ଏହି ରୀତି,
ଦେଖାଉଛି ନିଦର୍ଶନ ବିହଙ୍ଗ ଦମ୍ପତି ।
ଦିବା ଅବସାନ ପ୍ରାପ୍ତ ସୂର୍ଯ୍ୟ ଯାନ୍ତି ବୁଡ଼ି,
ବିଶ୍ରାମ ନିମନ୍ତେ ନୀଡ଼େ ଯାଉଛନ୍ତି ଉଡ଼ି ।
ଅସ୍ତଗତ ଦିନମଣି ସୁବର୍ଣ୍ଣ କିରଣେ,
ବିଚିତ୍ର ବିବିଧ ବର୍ଣ୍ଣ ବାରିଦ ଗଗନେ ।
ତରଳ ଆଲୋକ ବିସ୍ତାରୁଛି ଶୋଭାରାଶି,
ଦୁଇଗୋଟି ପ୍ରାଣୀ ଯାଉଛନ୍ତି ଭାସିଭାସି ।
ନାହିଁ ଚିନ୍ତା, ନାହିଁ ଦୁଃଖ, ବିଷାଦ ଭାବନା,
କି ସୁଖରେ ଛନ୍ତି, କରି ନ ପାରେଁ କଳ୍ପନା ।
ସାୟାହ୍ନ ସଜଳାନିଳ ଶୈତ୍ୟ ଗୁଣ ଢାଳେ,
ଉଡୁଛନ୍ତି ପକ୍ଷୀ ଡେଣା ବିଞ୍ଚି ତାଳେ ତାଳେ ।
ଭିଡ଼ାଭିଡ଼ି ଦୁହେଁ ପକ୍ଷ କରି ଲଗାଲଗି,
ଗ୍ରହୁଁଛନ୍ତି ପରସ୍ପରେ କରି ଗ୍ରୀବାଭଙ୍ଗୀ ।

---

## ବୃକ୍ଷବାଟିକା

( ନଳିମାଗୌଡ଼ା )

ଅଟ୍ଟାଳିକା ପାଶେ ବୃକ୍ଷବାଟିକା ସୁନ୍ଦର,
ନବଡ଼ ନିକୁଞ୍ଜବନ ନେତ୍ରତୃପ୍ତିକର ।
ନାନାଜାତି ବୃକ୍ଷଲତା ଶାଖା ଛନ୍ଦାଛନ୍ଦି,
ପଡ଼େ ସୂର୍ଯ୍ୟତେଜ ସ୍ଥାନେ ସ୍ଥାନେ ଭେଦି ସନ୍ଧି ।
କେ ବୃକ୍ଷ ବିସ୍ତୃତଶାଖା କେହି ବା ଉନ୍ନତ,
ଫଳଶୂନ୍ୟ କେହି ଫଳଭରେ ଅବନତ ।
ପବନରେ ଆନ୍ଦୋଳିତ ହୋଇ ବାରେ ବାରେ,
ନାନା ଜାତି ପୁଷ୍ପବୃକ୍ଷ ସୁଗନ୍ଧ ବିସ୍ତାରେ ।
ବୃକ୍ଷ ମୂଳେ ପଡ଼ି ନାହିଁ ସୂର୍ଯ୍ୟଙ୍କ କିରଣ,
ଧୀରେ ଧୀରେ ବହୁଅଛି ଶୀତଳ ପବନ ।
ସୁମଧୁର ପୁଷ୍ଟିକର ଫଳ ନାନା ଜାତି,
ସ୍ୱଦେଶୀୟ ବିଦେଶୀୟ ନାନାବର୍ଣ୍ଣେ ଭାତି ।
ଆହେ ବୃକ୍ଷ, ତୁମ୍ଭ ପରି ଦାତା କେବା ଜଣେ ?
ଯାଚି ଦେଉଅଛ ଫଳ ପୁଷ୍ପ ଅନୁକ୍ଷଣେ ।
ଆପଣାର କିଛିମାତ୍ର ନାହିଁ ପ୍ରୟୋଜନ,
ପର ଉପକାରେ ଭାର କରୁଛ ବହନ ।
ଶିଖାଉଛ ନିତ ମୋତେ ଆହେ ବୃକ୍ଷଗଣ,
ପର ଉପକାର ପାଇଁ ସାଧୁଙ୍କ ଜୀବନ ।
ଯେତେବେଳେ ଆଣେ ପକ୍ୱଫଳ ବୃକ୍ଷୁଁ ତୋଳି,
କି ଆନନ୍ଦ ହୁଏ ଜାତ ପାରେ ନାହିଁ କଳି ।
ବନ୍ଧୁ ବାନ୍ଧବଙ୍କୁ ତାହା ଦେଲେ ଉପହାର,
ତହୁଁ ଜାତ ହୁଏ ପୁଣି ଆନନ୍ଦ ଅପାର ।
ତୁମ୍ଭ ଫଳ ପୁଷ୍ପମାନ ନାନା ଗୁଣଧାରୀ,
ସୁନ୍ଦର, ସୁଗନ୍ଧ, ତୃପ୍ତିକର, ପୁଷ୍ଟିକାରୀ ।
ପ୍ରଭୁଙ୍କର ଆଜ୍ଞା ପାଳିବାକୁ ତୁମ୍ଭେ ଅବା
ଶୀତାତପ ବୃଷ୍ଟି ସହି ହୋଇଅଛ ଉଭା ।
ଉଡ଼ି ଆସି ବସୁଛନ୍ତି ବିହଙ୍ଗ ସକଳ
ଭକ୍ଷଣ କରିବାପାଇଁ ତୁମ୍ଭ ମିଷ୍ଟ ଫଳ ।

କରୁଅଛୁ କଳରବ ବସି କେହ୍ବ ଡାଳେ,
କେହ୍ବ ବା କରୁଛୁ ଜଳପାନ ଆଳବାଳେ ।
ସନ୍ଧକାଳେ ଆକାଶରୁ ଆସି ଉଡ଼ ଉଡ଼
ବୃକ୍ଷ ଡାଳେ ଡାଳେ ଝୁଲପଡ଼ନ୍ତ ବାଦୁଡ଼ ।
ଶିଖାଇ କ ଦେବ ମୋତେ ହେ ବୃକ୍ଷ ସମସ୍ତ,
କାହୁଁ ଶିକ୍ଷା କଲ ପରଉପକାର ବ୍ରତ ?
ପ୍ରାତଃକାଳେ ଦୁଇଗୋଟି ହଳଦିବସନ୍ତ
ଆସନ୍ତ ପ୍ରତ୍ୟହ କଣ୍ଠି ସମସ୍ତ ଯେମନ୍ତ ।
ଡାଳେ ଡାଳେ ଭ୍ରମୁଥାନ୍ତ କର କଳରବ,
ଲଗାଇ ଦଅନ୍ତ କ୍ଷଣେ ଆନନ୍ଦ-ଉତ୍ସବ ।
କବା ମନୋହର ଦୁଇଗୋଟି କ୍ଷଦ୍ରପ୍ରାଣୀ,
କ୍ଷୁଦ୍ର ପକ୍ଷୀମଣ୍ଡଳୀରେ କ ବା ରଜା ରଣୀ ?
ରୋପିଥିଲ ବୃକ୍ଷବାଟୀ କେତେ ଯତନେ,
ଆଜ ତା ଆନନ୍ଦ ଭୋଗ କରୁଛୁ ତ ମନେ ।
କଦାଚତ ବଚଳତ ହେଲେ ମୋର ମନ,
କରେଁ ଆସି ଏହ୍ବ ବୃକ୍ଷବାଟୀରେ ଭ୍ରମଣ ।
ଆହେ ବୃକ୍ଷ ! ତୁମ୍ଭ ମୂଳେ ଦଅ ମୋତେ ସ୍ଥାନ,
ସ୍ଥିରଚତ୍ତେ ବସି କରେଁ ପ୍ରଭୁପଦ ଧ୍ୟାନ ।

---

## ଗୋଲପ ସୁନ୍ଦରୀ

( ରଗ—ରମକେଶୀ )

ଫୁଟିଛୁ ଗୋଲପ ସୁନ୍ଦରୀ
ଶୋଭା ମେଲ ଉଦ୍ୟାନେ,
ପ୍ରଫୁଲ୍ଲ କୁସୁମମଣ୍ଡଳେ
ପାଟରଣୀ ସମାନେ ।
ଛୁଅଁ ନା ଛୁଅଁ ନା ତାହାକୁ
ବଡ଼ କୋମଳଦେହୀ;
ତା ଅଙ୍ଗେ କଳଙ୍କ ଲଗିବ
ଯେବେ ଛୁଇଁବ କେହ୍ବ ।
ହରତ ପଲ୍ଲବ ବସ୍ତ୍ରଇ
ଶୋଇଛୁ ତ ସୁନ୍ଦରୀ,
ସୁତୀକ୍ଷ୍ଣ କଣ୍ଟକମଣ୍ଡଳୀ
ରହିଛନ୍ତ ପ୍ରହରୀ ।
ସେ ତ ବଡ଼ ଅଭିମାନିନୀ
ଥାଏ ଲଜ ସରମେ,
ପରଶ କଲେକ ତାହାକୁ
ମଉଳାଏ ମରମେ ।
ଗୁଣବତୀ ତାହା ସମାନେ
କେ ବା ଅଛୁ ସୁମନା,
ନ ଦେଖେଁ ତା ସଙ୍ଗେ କାହାକୁ
ଦେବାପାଇଁ ତୁଳନା ।
ତାହାର ସୁଯଶ ପ୍ରଚୁର
କରବାରୁ ପବନ,
ଧାଇଁଛନ୍ତ ତାହା ପାଶକୁ
ଲୋଭେ ମଧୁପଗଣ ।
ବଡ଼ ଦୟାବତୀ ଗୋଲପ
ମନେ ନାହିଁ ତା ଲୋଭ,
ଭିକ୍ଷୁକ ମଧୁପଗଣକୁ
ବାଣ୍ଟିଦଏ ସୌରଭ ।
ଢଳ ଢଳ ନାଚୁଥାଏ ସେ
ଧୀର ମନ୍ଦ ପବନେ,
କଞ୍ଚିତ କଳୁଷ କାମନା
ଜାତ ନାହିଁ ତା ମନେ ।
ବଧିରେ ବଧାତା ବଧାନ
କଲେ ପଦାର୍ଥଦ୍ୱୟ,
ସୁନ୍ଦର ଗୋଲପ ସୁମନ
ସାଧୁଜନ ହୃଦୟ ।
ପର ଉପକାର କାମନା
ଦୁହିଙ୍କର ହୃଦୟେ,
ଉଦାସ ପ୍ରୟାସ ସାଧନା
ସଦା ସ୍ୱାର୍ଥ ବଷୟେ ।

ଛି ଛି ! ସ୍ୱାର୍ଥପର ମାନବେ
ବୋଲ କେଉଁ ପ୍ରାଣରେ
ସ୍ୱର୍ଗର ସୁଷମା ପ୍ରାଣଟି
ଦଳଦେଲ ହସ୍ତରେ ?
ତୋହର କଳୁଷ ହସ୍ତଟା
ଦେଲୁ ତାହା ଅଙ୍ଗରେ,
ସଙ୍କୋଚ ଜାତ କି ନ ହେଲା
କେଭେ ତୋହ ମନରେ ?
ମାନବ କଳୁଷ-ନିଶ୍ୱାସ
ସହେ ବୋଲ କିପରି,
ଅତୀବ ପବିତ୍ର ତା ଅଙ୍ଗ
ଅଟେ ସୁରସୁନ୍ଦରୀ ।
ମାଜଣା ବଢ଼ାଏ ନିୟମେ
ସ୍ୱର୍ଗୁ ପଡ଼ି ଶିଶିର,
ତାଳେ ତାଳେ ତାକୁ ନଚାଏ
ବହି ଧୀର ସମୀର ।
ଧିକ ରେ ନିର୍ଦ୍ଦୟ ମାନବ
ତୋର ଅନ୍ୟାୟ କାର୍ଯ୍ୟ !
ନଷ୍ଟ କଲୁ ବୋଲ କିପାଇଁ
ଉଦ୍ୟାନର ସୌନ୍ଦର୍ଯ୍ୟ !
ବୋଲୁ ତୁ ଦେବତା ସେବାରେ
ଦେବୁ ଏହି କୁସୁମ ?
ନିର୍ବୋଧ ବୁଝିଲୁ ନାହିଁ ରେ
ତୁହି ଆପଣା ଭ୍ରମ !
ଯେ ମହାଦେବତା ପୁଷ୍ପଟି
ରଖିଥିଲେ ଏ ସ୍ଥାନେ,
ତାଙ୍କ ମହିମା କି ବୁଝନ୍ତି
ତୋହ ପରି ଅଜ୍ଞାନେ ?
ଯାହାଙ୍କ ଆଜ୍ଞାରେ ବିସ୍ତାରେ
ସର୍ବ ପୁଷ୍ପ ସୌରଭ,
ତାହାଙ୍କୁ ପୂଜିବୁ କୁସୁମେ
ଆରେ ଅନ୍ଧ ମାନବ !

ପବିତ୍ରତା-ଜଳେ ଧଉତ
କର ଭକ୍ତି-ସୁମନ,
ନିର୍ମଳ ହୃଦୟେ ପୂଜ ରେ
ମହାପ୍ରଭୁ ଚରଣ ।

— —

## ଗଙ୍ଗଶିଉଳୀ

( ରାଗ—ରାମକେରୀ )

ଶୋଭାମୟୀ ଗଙ୍ଗଶିଉଳୀ
ନିଶିଥିନୀ-ଶୋଭନା,
ଆହା ! ଆହା ! କେଡ଼େ ସୌରଭ
ପାରିଜାତ ତୁଳନା ।
ଶଶାଙ୍କ ସୌନ୍ଦର୍ଯ୍ୟ ସମସ୍ତ
ପଡ଼ୁଛି କି ବୃକ୍ଷରେ ?
ଠିକ ଠିକ ଲାଗି ଯାଇଛି
ସୁନାକାଠି ବୃନ୍ତରେ ।
ରଜନୀରେ ଉପବନରେ
ମେଲ ସୌନ୍ଦର୍ଯ୍ୟ-ହାଟ
ଅଙ୍ଗ ଢାଳି ଢାଳି କରୁଛି
ବୃକ୍ଷ ଶିଖରେ ନାଟ ।
ଆହା ! ଆହା ! ନିଶୀ ଶେଷରେ
ବୃକ୍ଷୁଁ ପଡ଼ିବ ଝଡ଼ି,
ଧୂଳି ଧୂସରିତ ହେବ ସେ
ଭୂମି ଉପରେ ପଡ଼ି ।
ଏ ଗଙ୍ଗଶିଉଳୀ ସମାନେ
କେତେ ରାଜକୁମାରୀ,
ରୂପ ଲାବଣ୍ୟରେ ଗୁଣରେ
ଥିଲେ ଯଶ ବିସ୍ତାରି ।

ନାହାନ୍ତି ସେ ରାଜକୁମାରୀ
ନାହିଁ ରଙ୍ଗିଣିମଲୀ,
ସର୍ବଗ୍ରାସୀ କାଳ ହସ୍ତରେ
ଯାଇଛନ୍ତି ତ ଦଳି ।
ପୁଣି କେତେ ରାଜନନ୍ଦିନୀ
କେତେ ରଙ୍ଗିଣିମଲୀ,
ଆସି ଭାସି ଭାସି ଯିବେ ସେ
କାଳ-ସିନ୍ଧୁକୁ ଚଳି ।

---

## ଗିରିନଦୀ

( ମଙ୍ଗଳ )

ପ୍ରବାହିତ ସ୍ରୋତ ଗିରିବକ୍ଷୁଁ ନିର୍ଝରିଣୀ,
କଳ କଳ କଳ ନାଦେ ଦିବସ ଯାମିନୀ ।
ଦର୍ଶକ ନୟନେ ଯେବେ ଦିଅ ଆସି ଦେଖା,
କଠିନ ହୃଦୟେ କିବା କରୁଣାର ରେଖା ।
ବାଟ ଓଗାଳିଲେ ତୋତେ କ୍ଷୀଣ ବନ୍ଧୁଗଣେ,
ଏଡ଼ି ଉପରୋଧ ଚାଲି ଥାଅ କ୍ଷଣେ କ୍ଷଣେ ।
ଗିରିରାଜ କୋଳେ ଧରିଥିଲେ ସାବଧାନେ,
ଛାଡ଼ି ଅସିଅଛ ବୋଲି କିବା ଅଭିମାନେ ?
କଳ କଳ ନାଦ କର ଦିବସ ରଜନୀ,
ଆନନ୍ଦ ସଙ୍ଗୀତ ଅବା କ୍ରନ୍ଦନର ଧ୍ୱନି ?
ଚାଲିଛ ଉଲ୍ଲାସ କମ୍ପା ଆକୁଳ ପରାଣେ,
କରୁଡ଼ି ପଡୁଛ ଦେଖୁଛି ତ ସ୍ଥାନେ ସ୍ଥାନେ ।
କାହିଁ କଳୁଷିତା, କାହିଁ ଶରୀର ପବିତ୍ର,
ତୁମ୍ଭେ କି ଗୋ ଦେବି ! କବିକଳ୍ପନାର ଚିତ୍ର ।

---

## ବିରହୀ ହଳଦୀବସନ୍ତ

କଳହଂସକେଦାର

( ସତ୍ୟ ଘଟନା )

ମହାନଦୀ ସୈକତେ ନିର୍ଜନ ସ୍ଥଳ,
ଅତି ପ୍ରାଚୀନ ବଟବୃକ୍ଷ ଯୁଗଳ,
ଉଭା ଅଛନ୍ତି ସହୋଦର ସମରେ,
ଲଗାଲଗି ନ ହୋଇ କିଛି ଅନ୍ତରେ । ୧ ।
ହଳଦୀବସନ୍ତଟି ବସିଛି ଡାଳେ,
ନୀରବେ ବସି କିବା ମନକୁ ଢାଳେ ।
ବେଳେ ବେଳେ ଆସଇ ଡାଳରୁ ଖସି,
ବୃକ୍ଷ ମଧ୍ୟ ଭୂମିରେ ରବେ ସେ ବସି । ୨ ।
ମୁହୂର୍ତ୍ତେ ତହିଁ ରବ ବିକଳ ସ୍ୱନେ,
ଆନ ବୃକ୍ଷକୁ ଉଡ଼ିଯାଏ ବହନେ,
ପୁଣି ବାହୁଡ଼ି ଆସି ମୁହୂର୍ତ୍ତପରେ
ଭୂମି ପରଶି ବସେ ପୂର୍ବ ବୃକ୍ଷରେ । ୩ ।
ଅଦୂରେ ନଦୀସ୍ରୋତେ ନାନା ବିହଙ୍ଗ
ମନ ଉଲ୍ଲାସେ କେତେ କରନ୍ତି ରଙ୍ଗ !
ପହିଁରେ କେବା ବୁଡ଼େ କେ ଲୋଡ଼େ ଭକ୍ଷ୍ୟ,
ହଳଦୀବସନ୍ତଟି ନ କରେ ଲକ୍ଷ୍ୟ । ୪ ।
ବୃକ୍ଷର ତଳେ, ତହୁଁ ଅନ୍ୟ ବୃକ୍ଷରେ,
ତହୁଁ ବାହୁଡ଼େ ପୂର୍ବବୃକ୍ଷକୁ ଥରେ,
କି କହେ ତଳେ ବସି ସେହି ତା ଜାଣେ,
ମାତ୍ର ତା ଗୀତ ପ୍ରାଣେ ବିଷାଦ ଆଣେ । ୫
ଲୋଡ଼ିବାକୁ ନ ଯାଇ ନିଜ ଆହାର,
ଦିନଯାକ କରେ ସେ ଏହି ବେଭାର,
ତିନିଦିନ ବିହଗ ଝୁରି ଏପରି,
ଉପବାସେ ସେଠାରେ ଗଲା ସେ ମରି । ୬
ଦେଖିଲେ ବନ୍ଧୁ ମୋର ଯାଇ ପ୍ରତ୍ୟକ୍ଷ, *
ହଳଦୀବସନ୍ତୀର କେତୋଟି ପକ୍ଷ ।
ଅଛି ସେ ଦେନି ବୃକ୍ଷ ମଧ୍ୟରେ ପଡ଼ି,
ଗୋଟିଏ ପକ୍ଷୀ ମରି ଯାଇଛି ସଡ଼ି । ୭

*ଲେଖକର ବାଲ୍ୟବନ୍ଧୁ କବିବର ରାୟ ରାଧାନାଥ ରାୟ ବାହାଦୁର ଏହି ଘଟନାଟି ପ୍ରତ୍ୟକ୍ଷ କରିଅଛନ୍ତି ।

ସେ ସଡ଼ା ପକ୍ଷୀ ପଡ଼ି ଥିଲାକ ଯହିଁ,
ଝୁରି ଝୁରି ହଳଦୀବସନ୍ତ ତ, ହିଁ
ଦୁଃସହ କାନ୍ତାଶୋକେ ତେଜିଲା ପ୍ରାଣ,
ମାନବେ ଦେଇଗଲା କି ଦିବ୍ୟଜ୍ଞାନ । ୮
କ୍ଷୁଦ୍ର ସେ ବିହଙ୍ଗମ ତିର୍ଯ୍ୟଗ ଜାତି,
କାହୁଁ ଶିଖିଲା ଜାୟାପ୍ରେମ ଏ ନୀତି ?
ପତ୍ନୀ ସକାଶେ ଦେଲା ନିଜ ଜୀବନ,
ଦାମ୍ପତ୍ୟ ପ୍ରଣୟୀକୁ ବୋଲଇ ଧନ୍ୟ । ୯

———

## ରଜନୀଗନ୍ଧା

( ଚମ୍ପକେଳି )

ଗୋ ରଜନୀଗନ୍ଧେ ! ବୋଲ କିପାଇଁ
ଦିବସେ ତୋ ଗୁଣ ବିକାଶେ ନାହିଁ ?
ନ ବୋଲ ପଛକେ ବୁଝିଛୁ କଥା,
କୁଳ ଭୂଆସୁଣୀ ଏହି ବ୍ୟବସ୍ଥା ।
ତାଙ୍କିତ୍ଙ୍କ ହୋଇଥାନ୍ତି କେବଳ,
ଗୁଣରେ କରନ୍ତି କୁଳ ଉଜ୍ଜ୍ୱଳ ।
ଯାଏ ଯାଏ ଘରେ ଥାଆନ୍ତି ଗୁଞ୍ଜି,
ତୁମ୍ଭେ ଫୁଟି ଥାଅ ପୁଞ୍ଜି କି ପୁଞ୍ଜି ।
ଭଅଁରି ନୋ ପାଶେ ନ ଆସେ ତୋଷେ,
ସଖୀକୁ କି ତୁଏଁ ପରପୁରୁଷେ ?
ରାତିରେ ବିସ୍ତାର କରି ସୌରଭ
ଆମୋଦିତ କର ଉଦ୍ୟାନ ସବୁ ।
ନ କରନ୍ତି କିବା ତୋତେ ଆଦର
ଆଶ୍ଚର୍ଯ୍ୟ ନ ମଣେ କିଛି ମାତର ।
ଏପରି ଅଛନ୍ତି ବହୁତ ଲୋକ,
ଭୁଲିଯାନ୍ତି ଦେଖି ବାହ୍ୟ ଚକ୍‌ଚକ ।
ତୋହର ତ ବାହ୍ୟ ସୌନ୍ଦର୍ଯ୍ୟ ନାହିଁ,
ଭୁଲିବେ କିବା ଏ ବୋଲ କିପାଇଁ ?
ନ ଥାଇ ତୋହର ରୂପ ଲାବଣ୍ୟ,
ମାନିକ ତୁ ମୋର ହୃଦୟଧନ ।
ମନରେ ରଖିବୁ ରଜନୀଗନ୍ଧା,
ତୋହ ପୀରତିରେ ମୋ ମନ ବନ୍ଧା ।
କୁସୁମକଳପେ ଆଗୋ ସଜନି !
ତୁହି ସିନା ଏକା ମୋ ପ୍ରଣୟିନୀ ।
ସନ୍ଧ୍ୟାକାଳେ ବସି ମୁହିଁ ନିର୍ଜନେ,
ଚିନ୍ତା କରୁଥାଏଁ ପ୍ରଭୁଙ୍କୁ ମନେ ।
ସୌରଭ ବିସ୍ତାରୁ ହୋଇ ଫୁଟିତ,
ଦେଉ କରି ମୋର ମନ ମୋହିତ ।
ପ୍ରଭୁଙ୍କର ତୁହି ଗୋଟିଏ କୀର୍ତ୍ତି,
ବଗିଚ ମନରେ ଲଭଇ ପ୍ରୀତି
ଆଜୀ କହି ବୋଲି ଯାଉଛି ତୋତେ,
ଶ୍ମଶାନକୁ ଯିବୁ ମୋହ ସହିତେ ।

———

## ଗର୍ଦ୍ଦଭର ସୂକ୍ଷ୍ମ ବୁଦ୍ଧି

ଗୋଟାଏ ଗର୍ଦ୍ଦଭ ଗୋଟାଏ କୁକୁର
ଥିଲେ ଏକ ଧୋବା ଘରେ,
ପ୍ରତିଦିନ ଗଧ ଗାଆଁ ଲୁଗାପାଳ
ଛେଳି ବହି ବହି ମରେ ।
ତୁଠରୁ ବାହୁଡ଼ି ଧୋବା ଗଧଟାକୁ
ଖୁଣ୍ଟରେ ପକାଏ ବାନ୍ଧି,
ଏଣେ ଥକାମକା ତେଣେ ପେଟେ ଭୋକ
ଶୋଇପଡ଼େ କାନ୍ଦି କାନ୍ଦି ।
ତା'ଠାକୁ ଫୋପାଡ଼ି ଦିଏ ଦିନେ ଦିନେ
ଧୋବଣୀ ମୁଠାଏ ଘାସ,
ହେଲେ ତାହା କିଛି ସବୁ ଦିନ ନୁହେ,
ଅଧିଦିନେ ଉପବାସ ।

ପଡ଼ିଆରେ ଚର　　　ବୁଲିଲେ ଅଥବା
　　ଛନ୍ଦିଁରେ ପୂରନ୍ତା ପେଟ,
ସବୁବେଳେ ଧନ୍ଦା　　　ଲାଗି ରହିଅଛି
　　ଘାସ ସଙ୍ଗେ କାହୁଁ ଭେଟ ?
କୁକୁରର କଛି　　　କାମଦାମ ନାହିଁ
　　ସବୁବେଳେ ବୁଲୁଥାଏ,
ମଜା କରି ବସି　　　ଦୁଇ ଓଳି ମାଂସ
　　ଭାତ ପେଟେ ପେଟେ ଖାଏ ।
ବିଚାରିଲା ଗଧ,　　　ଲୁଚି ବସି ବସି
　　କୁକୁର ଚୋବାଏ ହାଡ଼,
କାମରେ ଅଳପ　　　ଢିଲା ହୋଇଗଲେ
　　ମୋ ପିଠିରେ ପଡ଼େ ମାଡ଼ ।
କପାଁଇ ସାଆନ୍ତ　　　କୁକୁରକୁ ଏଡ଼େ
　　ସ୍ନେହରେ ଖୁଆନ୍ତି ଭାତ,
ଦିନଯାକ କାମ　　　କରି କରି ମରେଁ
　　ମୋ ବେଳକୁ ଠେଙ୍ଗା ବେତ ।
ବିଚାରି ବିଚାରି　　　ସ୍ଥିର କଲା ଗଧ
　　ଆପଣା ସୂକ୍ଷ୍ମ ବୁଦ୍ଧିରେ,
ଜଣାଗଲା କଥା,　　　ସାଆନ୍ତେ ଶୋଇଲେ
　　କୁକୁର ଭୁକେ ରାତିରେ ।
ଲଙ୍ଗୁଳ ହଲାଇ　　　ଆଗ ଦୁଇଗୋଡ଼
　　ସାଆନ୍ତ ଉପରେ ମାରେ,
ସାଆନ୍ତଙ୍କ ତେଣୁ　　　ଏତେଦୂର ସ୍ନେହ
　　ଅଛି ସେ କୁକୁରଠାରେ ।
ସେହିପରି କଲେ　　　ମୋ ଉପରେ ହେବେ
　　ସାଆନ୍ତ ନିଶ୍ଚୟ ଖୁସି,
ଲୁଗାଛେଲ ବୋହିବାକୁ　　　ହେବ ନାହିଁ
　　ମଜାରେ ଖାଇବ ବସି ।
ଦିନକରେ ଧୋବା　　　ଲୁଗା କାଚି କାଚି
　　ଥକି ଥିଲା ଶୋଇ ପଡ଼ି,
ଅଧରାତି ବେଳେ　　　ଗଧ ଉଠି ପଡ଼ି
　　ଉଚ୍ଚରେ ଛାଡ଼ିଲା ରଡ଼ି ।

ରଡ଼ି ପରେ ରଡ଼ି　　　ପ୍ରହରେକ ଯାଏଁ
　　କଲା ଚିତ୍କାର ଉତ୍କଟ,
କି କରିବ ଧୋବା,　　　ନିଦ ଭାଙ୍ଗିଗଲା
　　ଦଣ୍ଡେ ଦେଲା ଛଟପଟ ।
ଭାଳିଲା ମନରେ　　　ନିଶ୍ଚୟ ଗଧକୁ
　　ହେଲାଣି ଉତ୍କଟ ପୀଡ଼ା,
ଆଖି ମଳି ମଳି　　　ଧୀରେ ଧୀରେ ଆସି
　　ଗଧ ପାଖେ ହେଲା ଛିଡ଼ା ।
କୁକୁର ସମାନେ　　　ଆଗ ଦୁଇ ଗୋଡ଼
　　ଟେକି ଗଧ ଆନନ୍ଦରେ,
ଲାଞ୍ଜକୁ ହଲାଇ　　　ହଲାଇ ପିଟିଲା
　　ଧୋବା ଛାତିରେ ମୁଣ୍ଡରେ ।
ବୋପା ଲୋ ! ମଲି ଲୋ !　　　ରଡ଼ି ଛାଡ଼ି ଧୋବା
　　ବାଉଁଶ ଠେଙ୍ଗାଟା ଆଣି,
ଦୁମ୍ ଦୁମାଦୁମ୍　　　ଗର୍ଦ୍ଦଭ ପିଠିରେ
　　ମୁଣ୍ଡରେ ପିଟିଲା ଟାଣି ।
ପଡ଼ିଗଲା ଗଧ　　　ଜିଭଟାକୁ କାଢ଼ି
　　ଭାଙ୍ଗିଲା ପଞ୍ଜରା ହାଡ଼,
ଅକର୍ତ୍ତବ୍ୟ କାମ　　　କଲେ ପିଲାମାନେ
　　ଖାଇବ ଏପରି ମାଡ଼ ।
ଯାହାର ଯେ କାମ　　　ନିରୂପିତ ଅଛି,
　　ତାହାକୁ ସେ କାମ ସାଜେ,
ନ ଜାଣିଲା ଲୋକ　　　ଛନ୍ଦିଁ ହାତ ଦେଲେ
　　ପିଠିରେ ପାହାଣ ବାଜେ ।

---

## ଚନ୍ଦ୍ରମଣିର ଅଙ୍ଗା

ଚନ୍ଦ୍ରମଣି ଦିନେ　　　ଅଙ୍ଗାଟିଏ ପାଇଁ
　　ମାତା ପାଶେ କଲେ ଅଳି,
ଶୁଣି ଶୁଣି ମାତା　　　ବୋଇଲେ ପୁତ୍ରକୁ
　　ବହୁତ ହୋଇ ସେ ଚଳି—

ଆରେ ଦୁଷ୍ଟ ପିଲା ତୋ ଦେହ ମାପରେ
ଅଙ୍ଗା ଆଣିବି କିପରି ?
ନିତି ନିତି ତୁମ୍ଭେ ପଦାକୁ ବାହାରୁ
ନାନାବିଧ ରୂପ ଧରି ।
ଦ୍ୱିତୀୟା ଦିନର ତୋହର ଆକାର
ନ ଥାଏ ତୃତୀୟା ଦିନେ
ଚତୁର୍ଥୀ ପଞ୍ଚମୀ ଷଷ୍ଠୀରେ ତୋ ରୂପ
ହୋଇଯାଏ ଭିନେ ଭିନେ ।
ଉଆଁସ ଦିନରେ ଏକାବେଳକେ ତୁ
ପଦାକୁ ବାହାରୁ ନାହିଁ,
ତୁଚ୍ଛାରେ ପଇସା ଖରଚ କରି ମୁଁ
ଅଙ୍ଗା କିଣିବି କିପାଇଁ ?
ଶଶୀର ସମାନେ ଆହେ ପିଲାମାନେ !
ନ ଥିଲେ ମନ-ସ୍ଥିରତା—
ତୁମ୍ଭପାଇଁ ଦ୍ରବ୍ୟ କିଣିବା ବେଳକୁ
ହେବ ଚନ୍ଦ୍ରମଣି କଥା ।

———

## ନଭ

ହେ ଅନନ୍ତ ମହାଦେବ ! କରେଁ ନମସ୍କାର,
ନ ଜାଣେ କେ ତୁମ୍ଭେ ! ତୁମ୍ଭ କିରୂପ ଆକାର !
ଅନନ୍ତ ନକ୍ଷତ୍ର ଗ୍ରହ ତୁମ୍ଭ ଅଭ୍ୟନ୍ତରେ
ବିରାଜିତ କ୍ଷୁଦ୍ରତମ ବିନ୍ଦୁ ସ୍ୱରୂପରେ ।
ମମ ଅଧିଷ୍ଠାନଭୂତା ବିଶାଳ ମେଦିନୀ
ଅନନ୍ତ ଜୀବନ-ବନ-ପର୍ବତ-ଧାରିଣୀ,
କଳ୍ପନାରେ କରି ଏହା ସୀମା ନିରୂପଣ,
ସ୍ତମ୍ଭିତ ବିସ୍ମିତ ହୁଏ ଚିତ୍ତ ଅବସନ୍ନ ।
ଅନନ୍ତ ବିଶାଳ ଗ୍ରହେ ବ୍ୟାପ୍ତ ତୁମ୍ଭ ଗାତ୍ର,
ତୁଳନାରେ ଏ ମେଦିନୀ ଅଟେ କଣା ମାତ୍ର ।
ଆଜନ୍ମରୁ ଦେଖୁଛି ତବ ରୂପ ନୟନରେ,
ବିଭିନ୍ନ ବିଚିତ୍ର ବର୍ଣ୍ଣ ପ୍ରତି ନିମିଷରେ ।
ଅନନ୍ତ ବିଶାଳ ଗ୍ରହ ନକ୍ଷତ୍ର ଆଧାର—
ହେ ନଭ ! ବୋଲନ୍ତୁ—ତୁମ୍ଭେ ଆଧେୟ କାହାର ?

———

## ଶିଙ୍ଘୀ ବିରାଡ଼ି ଓ ବଣି ପକ୍ଷିଣୀ

ଗଛ ଡାଳ ଛାଡ଼ି ବଣି ପକ୍ଷିଣୀଟି
ଚିଲ ଛଞ୍ଚାଣ ଜ୍ୱାଳାରେ
ପକ୍ଷୀଘର ବାନ୍ଧି ଡିମ୍ବ ପାଡ଼ିଥିଲା
କୋଠା କାନିଶ ନଳାରେ ।

ଶିଙ୍ଘୀ ବିରାଡ଼ିଟା ଦିନେ କାହୁଁ ଆସି
ଚଉଠି ଗୃହାନ୍ତେ ବସା,
ବିରାଡ଼ିକୁ ଦେଖି ଚମକି ପଡ଼ିଲା
ବଣିର ଉଡ଼ିଲା ହଂସା ।

ଦଶଦିଗ ଚାକୁ ଅନ୍ଧାର ଦିଶିଲା—
ଭାବିଲା ଭାଗ୍ୟେ ଯା' ଥିବ,
ଭରସି ବୋଇଲା, "ସଲାମ ସଲାମ,
ଆସନ୍ତୁ ମେମ୍ ସାହେବ ।

ଶୁଣିଛୁ ବିରାଡ଼ି ରାଜ୍ୟରେ ଆପଣ
ଲାଟ ସାହେବଙ୍କ ବିବି,
ନ ହେବ କିପାଁଇ ସୁନ୍ଦରୀ, ଏପରି
ଆଉ କାହିଁ ନ ଦେଖିବି ।

ଚନ୍ଦ୍ରମା ସମାନେ ଆପଣଙ୍କ ମୁଖ,
ସୁନ୍ଦର କୋମଳ ନାଶ
ନାକଟି ସୁନ୍ଦର, କାନଟି ସୁନ୍ଦର,
ଲାଞ୍ଜଟି ସୁନ୍ଦର ଦିଶେ ।

ନେତ୍ରରେ କଜ୍ଜଳ ସାଦୃଶ୍ୟ ଥିବାରୁ
ଦିଶଏ ଏଡ଼େ ସୁନ୍ଦରୀ,
ହେଲେ, ଆପଣଙ୍କ ଚାଲିଆଖି ସଙ୍ଗେ
ହେବେ କେଉଁଗୁଣେ ସରି !

ଧଳା ମଖମଲ ପରିଏ ଚିକ୍କଣ
ଦେହଟି କେଡ଼େ ସୁନ୍ଦର,

ଦାନ୍ତଗୁଡ଼ କେଡ଼େ ନିର୍ମଳ ଦିଶୁଛି
ଗଜମୋତି ପଟାନ୍ତର ।

ଆପଣଙ୍କ ପରି ଅପୂର୍ବ ସୁନ୍ଦରୀ
ଦେଖି ନାହିଁ ବ୍ରହ୍ମାଣ୍ଡରେ,
କି ଯୋଗରେ ଆଜି ଭେଟି ପାଇଥିଲି,
ଦେଖିଲି ଯାହା ନେତ୍ରରେ ।

କେତେଦିନୁ ମନେ- ମନେ ଭାବୁଥାଏଁ
ଚରଣ ଦର୍ଶନ ପାଇଁ,
ହୀନ କପାଳକୁ ଠାକୁରାଣୀ ଭେଟ
ସହଜେ ମିଳିବ କାହିଁ ?

କାଙ୍ଗାଳୁଣୀ ବୁଢ଼ୀ ଭାଗ୍ୟରେ ମିଳିଲେ
ଦାଣ୍ଡଦୁଆରରେ କାଶି,
ଅଳସୀ କପାଳେ ଗଙ୍ଗା ନିଜେ କଲେ
ବାଡ଼ିଦୁଆରକୁ ଆସି ।

ପକ୍ଷୀଙ୍କ ମୁଖରୁ ନିତି ଆପଣଙ୍କ
ଶୁଣୁଛି କେତେ ପ୍ରଶଂସା,
କେବଳ ଦେବୀଙ୍କ ଚରଣ ପ୍ରସାଦୁ
ବାନ୍ଧିଛି ଏଠାରେ ବସା ।

ଆପଣଙ୍କ ପାଦ କଲ୍ୟାଣରୁ ମୁହିଁ
ପାଇଛି ପିଲା ଦୁଇଟି,
ଦେବୀଙ୍କ ଦର୍ଶନ କରିବା ସକାଶେ
ବାହୁଁଛନ୍ତି ମିଟି ମିଟି ।

କଲ୍ୟାଣ କରନ୍ତୁ ଅଜର ଅମର,
ହୋଇଥାନ୍ତୁ ପିଲାମାନେ,
ବଡ଼ ହେଲେ ପଦେ ଖଟି ରହିଥିବେ
କଣା କଙ୍କର ସମାନେ ।"

ଏହିପରି ବର୍ଣ୍ଣି ପ୍ରଶଂସାଗୁଡ଼ାକ
ଦିଅନ୍ତେ ମୁଣ୍ଡରେ ଢାଳି,
ବଡ଼ ଖୁସି ହୋଇ ବିରାଡ଼ି ଆପଣେ
ବିଚାରିଲା ମନେ ଭଲ—

ହେଉ ହେଉ, ବଣି ଏଠାରେ ଅଛୁ ତ,
ଏହି ପିଲା ଦୁଇ ଗୋଟା,
ଚାରି ଛଅ ଦିନ ଗଲେ ବଡ଼ ହେବେ,
ଲାଗିବ ମାଉଁସ ମିଠା ।

ମନକଥା ମନ ମଧ୍ୟରେ ରଖିଲା,
ବୋଇଲା ବଣିକୁ ହସି,
"ଆଲୋ ବଣି ତୋର କିଛି ଚିନ୍ତା ନାହିଁ,
ମଜା କରି ଥାଅ ବସି ।"

ଭେଟି ନ ପାଉଣୁ ନିତି ନିତି ଆସି
ବଣିକୁ ବୋଲେ ବିରାଡ଼ି,
"ଆଲୋ ଆଲୋ ବଣି ! ଦେଖିବି ବେଳେ ମୁଁ
ପିଲାକୁ ଆଣ ତୁ କାଢ଼ି ।"

ବଣି ବୋଲେ—"ଆଜ୍ଞା ଆଜ୍ଞା ସେହି କଥା
ମୁହିଁ ତ ଥିଲି ବିଚାରି,
ପିଲା ଦୁଇଟିକୁ ଘେନି ଆପଣଙ୍କ
ପଦରେ ଦେବି ଜୁହାରି ।

ମାସ ହାଡ଼ ଗିଜି- ଗିଜି ପିଲା ଦୁଇ
ବଳ ନାହିଁ ଉଠିବାକୁ,
ଆଉ ଚାରିଦିନେ ମୋଟାମୋଟି ହେବେ,
ଧାଇଁବେ ଶ୍ରୀମୁଙ୍କ ଠାକୁ ।"

ପିଲା ମୋଟା କଥା ଶୁଣି ବିରାଡ଼ିର
ମୁହଁ ସଡ଼ସଡ଼ ଲାଳେ,
ଭାବିଲା ମନରେ, ଯେ ରୂପରେ ହେଉ
ଖାଇବି କାଲି ସକାଳେ ।

ଏତେ ଭାଳି ଧୀରେ ଧୀରେ ଚାଲିଗଲା
ହଲାଇ ହଲାଇ ମଥା,
ଚରକିଲା ବଣି ଭାବ ଭଙ୍ଗୀ ଦେଖି
ବଗଡ଼ ମନର କଥା ।

ଭାଳିଲା ବସାରେ ପିଲା ଦୁଇଟିକୁ
ଆଉ ରଖିଦେବ ନାହିଁ,
ବଗଡ଼ଟା ଦଣ୍ଡେ ଯାଏଁ ମୋ ପିଲାକୁ
କଟ ମଟ ଥିଲା ଚାହିଁ ।

ଝିଣ୍ଟିଉଡ଼ା ଦେଇ- ଥିଲେ ବଣିପିଲା
ଉଠିଥିଲା ଗଜାପରୁ;
ବଣି ତାଙ୍କୁ ଧରି ଉଡ଼ ବସିଥିଲା
ଡାଳେ ବଡ଼ ସକାଳରୁ ।

ବଡ଼ ଉଷତରେ ଅଇଲା ବଗଡ଼
ଦୁଇ କଲ ଚୁଟି ଚୁଟି,
ବେଳେ ବେଳେ ହାଇ ମାରି ହେଉଥାଏ,
ମେଲିଯାଉଥାଏ ପାଟି ।

ବସା ପାଶେ ଆସି ବୋଇଲା ଉଚ୍ଚରେ,
"ଆଲୋ ବଣି, ଗଲୁ କାହିଁ ?
ଯେନ ଆସ ଚୋର ପିଲା ଦୁଇଟାକୁ
ଆସିଛୁ ଦେଖିବାପାଇଁ ।"

ବଣି ପିଲା ଦୁଇ ଡେଣାରେ ଘୋଡ଼ାଇ
ବୋଇଲା ଉଚ୍ଚରେ ରାଗେ,
"ଡାଆଣି, ପିଶାଚ, ରାକ୍ଷସି, ପୋଇଲି,
ପାଶକୁ ଆସ ତ ଆଗେ !

ପୋଡ଼ାମୁହିଁ, ଲକ୍ଷ୍ମୀଛାଡ଼, ହାଣ୍ଡିଖାଇ, ଦୂର
ଦୂର ମର ରାଣ୍ଡି,
ବୋପା ଲୋ ମୋ ମନ ଛୁଞ୍ଚୁଣି ମୁଣ୍ଡିରେ
ମୁଣ୍ଡଟା ହଅନ୍ତା କାଣ୍ଡି ।

ଚୂଲିପଶି ! ବାରବୁଲି ! ଖାଇ ବୁଲୁ
ସାତ ଦୁଆରୁ ଅଇଣ୍ଠା,
ପଳା ପଳା ନ'ନେ ଧା'ଲିଁ ଯାଇଁ କଷି
ଦେବଟି ଦୁଇ ଗୋଇଠା ।

ପୋଡ଼ା ଝୁଣ୍ଟା ପରି ମୁହଁଟା ଦିଶୁଛି
ଚିକଡ଼ ହୋଇଛି ଦାନ୍ତ,
ଦୁର୍ଗନ୍ଧ ! ଦୁର୍ଗନ୍ଧ ! ଛି ଛି ଛି ! ପେଟରୁ
ବାହାର ପଡ଼ୁଛି ଭାତ ।

ଡାଆଣି ! ଚରାଟି ମରାଟି ଚାହୁଁଛୁ
ମୋ ପିଲା ଦୁହିଁଙ୍କୁ ତୁ ତ !
ଯାଆ ଯାଆ, ଖାଆ, ବସାରେ ପଡ଼ୁଛି
ମୋ ପିଲାଙ୍କ ଗୁହ ମୂତ ।"

ଦେଖିଲା ବଗଡ଼ ଏଡ଼େ ଶିକାରଟା
ହାତରୁ ଗଲାଣି ଖସି,
ଅପମାନ କରି ଗାଳି ଦେଉଅଛି
ବଣିଟା ଡାଳରେ ବସି ।

ଏକେ ତ ନିରାଶ ପୁଣି କଟୁକଥା;
କି କରିବ ରାଗି ମାଗି,
ଲାଙ୍ଗୁଡ଼ ଫୁଲାଇ ଆମ୍ଫୁଡ଼ ଧାମ୍ଫୁଡ଼
ବସା ପକାଇଲା ଭାଙ୍ଗି ।

ବଣି ବଗଡ଼ର ଯାବନ୍ତ ପ୍ରସଙ୍ଗ
ଶୁଣିଲ ପିଲା ସକଳେ,
ବଳବନ୍ତ ଶତ୍ରୁ ହାତରୁ ଉଦ୍ଧାର
ପାଆନ୍ତି ଲୋକ କୌଶଳେ ।

———

## ଭୁଆ ବରାଡ଼ ଓ କାଳିଆ କୁକୁର

ବାଡ଼ ଦୁଆରରେ କାଳିଆ କୁକୁର
ପାଉଁଶ ଗଦା ପାଶରେ,
ଚମ ଧୁଡ଼ୁ ଧୁଡ଼ୁ ଲାଞ୍ଜ ଲୁଡ଼ୁ ଲୁଡ଼ୁ
ପଡ଼ିଛି ଏକ ଧ୍ୟାନରେ ।

ଦୁଆରକୁ ଚାହିଁ ଅନାଇ ବସିଛି
ଓଦା କଭାଟାକୁ କାଢ଼ି,
କେତେବେଳେ କେହି ଅଇଁଠା ପତର
ଦେବ ତା ପାଶେ ଫୋପାଡ଼ି ।

ଏହି ସମୟରେ ଭୁଆ ବରାଡ଼ଟା
ଅଇଲା ଘରୁ ବାହାର,
ମନ ଫୂର୍ତ୍ତିରେ ମିଆଉଁ ମିଆଉଁ
ଡାକ ଥର ଦୁଇ ଚାର ।

ଖାଇ ପିଇ ଆଛା ଥାକୁଲୁ ଥୁକୁଲୁ
ଦେହଟି ନର୍ମଳ ଦିଶେ,
ଚକ୍‌କଣ ଚୁକଣ ମୁହଁଟି ସୁନ୍ଦର
ଦିଶୁଛି ଜାଉଁଳା ନଶେ ।

କୁକୁର ଉପରେ ନଜର ପଡ଼ନ୍ତେ
ବୋଇଲା ତାକୁ ଅନାଇ,
'କାଳିଆ କୁକୁର ପଡ଼ିଛୁ ପରା ତୁ
ଅଇଁଠା ମୁଠାକ ପାଇଁ ?

ରାତିଯାକ ଭୁକ ଭୁକ ମରୁଥାଉ,
ଶୋଇବାକୁ କାହିଁ ତର,
ସାଆନ୍ତଙ୍କ ଘରେ କାଳେ ପଶିଯିବ
ଆସି ଉକାଇତ ଚୋର !

କେମନ୍ତ ସୁନ୍ଦର ଦିଶୁ ଛି ମୋ ଦେହ
ଅନାଇ ଦେଖ ତୁ ଥରେ,
କାମ ଧନ୍ଦା ନାହିଁ ବାବୁପରି ମୁହିଁ
ବୁଲୁଥାଏଁ ଆନନ୍ଦରେ ।

ଦୁଧ ଭାତ ମାଛ ପେଟେ ପେଟେ ଖାଇ
ଚୁଲିମୁଣ୍ଡେ ଥାଏଁ ଶୋଇ,
ଜାତିରେ କୁକୁର, ମୋ ସଙ୍ଗେ ସମାନ
ହୋଇପାରିବୁ କି ତୁହି ?"

ଶୁଣି ନ ଶୁଣିଲା ପରି ସେ କୁକୁର
ରହିଲା ହୋଇଣ ତୁନି,
ଅବଶ୍ୟ ମନକୁ ବାଧିଥିବ ପରା
କଠିଣ ବଚନ ଶୁଣି ।

ଦିନେ ସାଆନ୍ତାଣୀ ଚାକରକୁ ଡାକ
ବୋଇଲେ, "ଆରେ ଗୋପାଳ !
ନିତି ନିତି ଆସି ଭୁଆ ବରାଡ଼ଟା
କଲା ତ ଭାରି ଜଞ୍ଜାଳ !

ତାହା ଡରେ ଘରେ ମାଛ ଶୁଖୁଆ ତ
ଆଉ ରଖି ହେଲା ନାହିଁ !
ହାଣ୍ଡି କୁଣ୍ଢାଇ ତ ଗଡ଼ାଇ ଖାଇଲା
ଥାଏ ଗୋଡ଼କୁ ଅନାଇ ।

ଆଠିକାରେ ପୂରି ଶିକାରେ ଥୋଇଲେ
ଦୁଧ ଦହି ଖଜା ମିଠା,
ଚଳା ମାରି ହାଣ୍ଡି ଗଡ଼ାଇ ଖାଇଲା
ନିଆଁ ଲଗା ବରାଡ଼ଟା ।

ସେଦିନ ତାହାକୁ ଅଖାରେ ପୂରାଇ
ହାଟେ ଆସିଥିଲୁ ଛାଡ଼ି,
ତହିଁ ଆରଦିନ ପଳାଇ ଆସିଲା
ବାଟ ଉଣ୍ଡି ସେ ବରାଡ଼ି ।

ଆଙ୍କରେ ଭୁ ନେଇ          ଯେ ରୂପରେ ହେଉ,
ଦେବ ତାହାକୁ ଘଉଡ଼, ।"
ଗୋପାଳଆ ଶୁଣି          ଭାରି ଖଟା ହେଲା,
ଆଣି ପନାଶି ଦଉଡ଼,

ବାନ୍ଧିଲା ଭୂଆଁକୁ          ଅଣ୍ଟାରେ ବେକରେ,
ଘୋଷାଡ଼ି ନେଲା ଦାଣ୍ଡରେ,
ଗାଆଁ ପିଲପାକ          ଧାଇଁଆସି ପୁଣି
ପିଟୁଥାନ୍ତି ପାଞ୍ଚଣରେ ।

ଦାଣ୍ଡେ ଦାଣ୍ଡେ ତାକୁ          ଘୋଷାଡି ଘୋଷାଡ଼ି
କରୁଥାନ୍ତି କୁଆବୁଆ,
ଦାନ୍ତକୁ ନଫିଡ଼ି          ଦରମଲା ହୋଇ
ପଡ଼ି ରହୁଥାଏ ଭୂଆ ।

କୁକୁରଟି ଆସି          ବୋଲେ ହସି ହସି,
"କଏ ରେ ବଗଡ଼ି ଭାଇ !
ସାଆନ୍ତଙ୍କ ଘରେ          ମଜା ଲୁଟୁଥିଲୁ
ଦୁଧ ଭାତ ମାଛ ଖାଇ ।

ସ୍ୱେଷ ଚପାଟିରେ          ଆଛା ସୁଖ ଅଛି,
ଭାଡକେ ହୁଅନ୍ତି ରଜା,
ସ୍ୱେର ଘରେ ନିତି          ଆଲୁଅ ନ ଥାଏ,
ଶେଷକୁ ବାହାରେ ମଜା ।

ସ୍ୱେର ମାଲ ଖାଇ          ଦୁଇଦିନ ପାଇଁ,
ପଛକୁ ହୁଏ ସେ ଶଲ,
ଗତର ଖଟାଇ          ଅଇଁଠା ପତର
ସହସ୍ର ଗୁଣରେ ଭଲ ।"

———

## ଚନ୍ଦ୍ର ବର୍ଣ୍ଣନା

କବି ବୋଲେ—ମୋ ଚନ୍ଦ୍ରମା ଶୀତଳ କିରଣ ।
ଜ୍ୟୋତିର୍ବିଦ—ଚନ୍ଦ୍ରେ ଜ୍ୟୋତି ଦିଏ ତ ତପନ ।
କବି ବୋଲେ—ନାରୀ ମୁଖ ଉପମାର ସ୍ଥଳ ।
ଜ୍ୟୋତିର୍ବିଦ—ଶୁଷ୍କ ଭୂମି ନୀରସ କେବଳ ।
କବି ବୋଲେ—ଜହ୍ନମାମୁଁ, ମୋ ମାଆ କମଳା ।
ଜ୍ୟୋତିର୍ବିଦ—ମାମୁଁର କି ହ୍ରାସ ବୃଦ୍ଧି କଳା ?
କବି ବୋଲେ—ମୋ ଚନ୍ଦ୍ରମା ଶଶାଙ୍କ-ଲାଞ୍ଛିତ ।
ଜ୍ୟୋତିର୍ବିଦ—ଚନ୍ଦ୍ରଟା ତ ପର୍ବତ ବେଷ୍ଟିତ ।
କବି ବୋଲେ—ମୋ ଚନ୍ଦ୍ରମା ସୁଧା ସିନ୍ଧୁ ଜାତ ।
ଜ୍ୟୋତିର୍ବିଦ—ଚନ୍ଦ୍ରଟା ତ ଉପଗ୍ରହ ମାତ୍ର ।
କବି ବୋଲେ—ଚନ୍ଦ୍ରେ ପିତୃଲୋକର ବସତି ।
ଜ୍ୟୋତିର୍ବିଦ – ଜଳବାୟୁ ନାହିଁ ଏକ ରତି ।
କବି ବୋଲେ—ଚନ୍ଦ୍ର ରୂପ କେଡ଼େ ମନୋହର ।
ଜ୍ୟୋତିର୍ବିଦ—ଚନ୍ଦ୍ରଟା ତ ଖାଣ୍ଡଣି ବନ୍ଧୁର ।
କବି ବୋଲେ—ଚନ୍ଦ୍ର ଗ୍ରାସ କରିଥାଏ ରାହୁ ।
ଜ୍ୟୋତିର୍ବିଦ—ଗ୍ରହଣଟା ପୃଥ୍ୱୀଛାୟା ଆଉ ।
କବି ବୋଲେ—ଚନ୍ଦ୍ର ଥାଏ ଶିବ ମସ୍ତକରେ ।
ଜ୍ୟୋତିର୍ବିଦ – ଚନ୍ଦ୍ର ଭ୍ରମୁଥାଏ ଆକାଶରେ ।
କବି ବୋଲେ—ତାରାଗଣେ ବନ୍ଦିବଲେ ଇନ୍ଦୁ ।
ଜ୍ୟୋତିର୍ବିଦ – ସେଟା ଜଡ଼, ଜ୍ଞାନ ନାହିଁ ବିନ୍ଦୁ ।
କବି ଜ୍ୟୋତିର୍ବିଦ କଳି କରନ୍ତେ ଏମନ୍ତ,
ଭାଙ୍ଗି ଦେଲି କଳି, ଦୁହିଙ୍କର କଥା ସତ୍ୟ ।

———

## ପଞ୍ଚମ ଅଧ୍ୟାୟ—ମାନବ ଜୀବନ

## ଜାପାନ ରୁଷ

ଅହିଂସା ପରମ ଧର୍ମ ସର୍ବ ଧର୍ମସାର,
ଏହି ତତ୍ତ୍ୱ କରିଥିଲେ ଗୌତମ ପ୍ରଚାର ।

ବିଶେଷ କରିବ ଦୟା ସର୍ବ ପ୍ରାଣୀ ପ୍ରତି,
ପ୍ରଭୁ ଶାକ୍ୟସିଂହଙ୍କର ଏହି ଅନୁମତି ।

ଆତ୍ମପ୍ରାଣ ଦେଇ ରକ୍ଷା କର ପରପ୍ରାଣ,
ବୌଦ୍ଧ ଧର୍ମଶାସ୍ତ୍ର ଦୟାରତ୍ନର ବିଧାନ ।
ମେଷପୁତ୍ର ଯିଶୁଖ୍ରୀଷ୍ଟ ବୋଇଲେ ଶିଷ୍ୟଙ୍କୁ,
ପ୍ରେମ କର, ପ୍ରେମ କର ମନୁଷ୍ୟ ପୁତ୍ରଙ୍କୁ ।

ବାମ ଗଣ୍ଡେ କେହି ଯେବେ ଚପୁଡ଼ାଏ ମାରେ,
ଦେଖାଅ ଦକ୍ଷିଣ ଗଣ୍ଡ ତାକୁ ପୁନର୍ବାରେ ।
ଖ୍ରୀଷ୍ଟ ପୁଣି ବୁଦ୍ଧ-ଶିଷ୍ୟ ରୁଷ ଓ ଜାପାନ,
ଭଲ ଦେଖାଇଲ ଧର୍ମଶାସ୍ତ୍ରର ପ୍ରମାଣ !

ଦୁଇ ଦେଶ ନରପତି ସାମାନ୍ୟ କାରଣେ
ମତ୍ତଭାବେ ମାତିଛନ୍ତି ଦମ୍ଭଙ୍କର ରଣେ ।
ନିର୍ଦ୍ଦୟ ଭାବରେ ସେନା କସାକ ଜାପାନୀ,
ଏକକୁ ଆରେକ ବଧୁଛନ୍ତି ମହାପ୍ରାଣୀ ।

ହେ ରୁଷ ! ଜାପାନ ! ଭୁଲିଯାଇ ଧର୍ମଶାସ୍ତ୍ର
ଧାବିତ କ୍ରୋଧରେ ହସ୍ତେ ଧରି ଅସ୍ତ୍ର ଶସ୍ତ୍ର ।
ଅର୍ଜନ କରିବା ପାଇଁ ତୁଚ୍ଛ ଧନ ମାନ
ଭୁଲିଗଲ ଏକାବେଳେ ସ୍ୱର୍ଗୀୟ ବିଧାନ ?
ଦେଉଛ ପ୍ରମାଣ ଦୁହେଁ—ପାର୍ଥିବ ବିଷୟ
ସହଜରେ କରେ ଧର୍ମବିଧି ପରାଜୟ ।

ରୁଷ ତୁମେ ସମ୍ପୂର୍ଣ୍ଣରେ ଏଥିପାଇଁ ଦାୟୀ !
ସମର ସୂଚନା କଲ କୋରିୟାକୁ ଯାଇ ।
କେତେ ଯେ ରମଣୀ ହେଉଅଛନ୍ତି ଅନାଥା !
ହରାଉଅଛନ୍ତି କେତେ ପୁତ୍ର ପିତା ମାତା !
କେତେ ପୁତ୍ର କନ୍ୟା ହେଉଅଛନ୍ତି ଛେଉଣ୍ଡ !
ବିକଳ ମନରେ କାନ୍ଦୁଛନ୍ତି ମେଲି ତୁଣ୍ଡ !
ବୋଇଲେ କି ହେବ ଏହି ବୃତ୍ତାନ୍ତ ସକଳ,
ମହାପ୍ରଭୁ ଇଚ୍ଛା ହେବ ଅବଶ୍ୟ ସଫଳ ।

———

## ମୁଁ

( ବଙ୍ଗଳାଶ୍ରୀ )

ପଦ୍ମପତ୍ର ଜଳ    ସମ ଟଳ ଟଳ
ମୋ ଜୀବନ ନିରନ୍ତରେ,
ଅମର ଭୁବନ    ମୋର ନିକେତନ
ଜାଣିଛି ତ ମୁଁ ମନରେ ।

ତେବେହେଁ ସତତ    ଅସ୍ଥିର ଜଗତ-
ମାୟାରେ ମୋହିତ ମତି,
ସକଳ ଅନର୍ଥ    ମୂଳୀଭୂତ ଅର୍ଥ
ଲୋଡ଼େ ଜଗତ ସମ୍ପତ୍ତି ।

କଲେହେଁ ଯତନ    ସ୍ଥିର ନୁହେଁ ମନ
ସର୍ବଦା ଚଞ୍ଚଳ ଚିତ୍ତ,
ତୁଚ୍ଛ ଧନପାଇଁ    ମନ ଅଛି ଧାଇଁ
ପାର୍ଥିବ ସୁଖେ ମୋହିତ ।

ଜନମିଛି ଜ୍ଞାନ,    ପାଇଛି ପ୍ରମାଣ,
ମୁଁ କାହାର କେ ବା ମୋର,
ଯାଇଛି ଯେ ଉଡ଼ି,    ନ ଆସେ ବାହୁଡ଼ି
କିପାଁ ବିରହେ କାତର !

ସଂସାର ପଥିକ    ମୋ ବୁଦ୍ଧିକୁ ଧିକ
ବସି ମୁଁ ପାନ୍ଥଶାଳାରେ,
ନିଜ ନିକେତନ    ନ କରେଁ ସ୍ମରଣ
ଭ୍ରମେ ହେଲେ ମୁଁ ତ ବାରେ ।

ବନ୍ଧୁ ପରିଜନ    କ୍ଷଣିକ ମିଳନ—
ଯୁଗଳ କାଷ୍ଠ ସାଗରେ,
ନିକଟକୁ ଆସି    ଯାଏ ପୁଣି ଭାସି
ମିଳନ ନ ହୁଏ ଥରେ ।

ମିଳନ କାଳରେ    ଭାବିଲି ମନରେ
ନ ହେବ ଆଉ ବିଚ୍ଛେଦ,
ରହିଅଛି ଚାହିଁ,    ଗଲ ଚାଲି କାହିଁ
ଜନମାଇ ଚିତ୍ତେ ଖେଦ ।

ପରହିତ ବ୍ରତ    କପାଁଇ ସତତ
ପାଳିଲୁ ନାହିଁ ଯତନେ ?
ସେଥିରୁ କେବଳ    ସୁଖ ନିରମଳ
ଭୁଞ୍ଜିଥାନ୍ତୁ ଏ ଜୀବନେ ।

କୁଟୁମ୍ବ ଗଞ୍ଜଣା    ବିଷମ ଯନ୍ତ୍ରଣା
ସହି ଭୁହି ବାର ବାର,
ଧର୍ମକୁ ଅନାଇ    ସେଥିକି ନ ଚାହିଁ
କରି ତାଙ୍କ ଉପକାର ।

ପ୍ରାଣପାଇଁ ଚିନ୍ତା    କପାଁ କରେଁ ବୃଥା ?
ନ ଭାଳିଲି ମୁହିଁ ବାରେ
କାହା ଦତ୍ତ ଅନ୍ନ    ଭୁଞ୍ଜି ମୁଁ ଜୀବନ
ଧରି ରହିଛି ଧରାରେ ।

କେତେ ନିନ୍ଦାବାଦ,    କେତେ ଅବସାଦ
କଳଙ୍କର ବୋଝ ଶିରେ,
କେତେ ରୂପ ପାପ,    କେତେ ମନସ୍ତାପ
ଭୁଞ୍ଜିଲି ଆସି ପୃଥ୍ୱୀରେ ।

ପାଇବାକୁ ସୁଖ    ସହିଲି ମୁଁ ଦୁଃଖ,
ସବୁ ହେଲା ବିଡ଼ମ୍ବନା,
ପ୍ରଭୁଙ୍କ ଚରଣ    ନେଲେ ମୁଁ ଶରଣ
ଲଭିବି ସୁଧା ସାନ୍ତ୍ୱନା ।

---

## କ୍ଷଣିକ

ହର୍ଷ, ଆଶା, କ୍ଷଣିକର ପାଇଁ
ଆସି ଚତେ, ଚାଲିଯାଏ କାହିଁ ?
ପ୍ରେମ ଆଣେ ମାଧୁରୀ ଜୀବନେ
ଚାଲିଯାଏ ମଧ୍ୟ ପରକ୍ଷଣେ ।
ଶିଥିଳ ତ ମାନବର ଜ୍ଞାନ,
ଚିରଦିନ ନ ଥାଏ ସମାନ,
ହାସ୍ୟ ପଛେ ରହିଛି କ୍ରନ୍ଦନ,
ଆସି ଚାଲିଯାନ୍ତି ବନ୍ଧୁଗଣ ।
ଉଚ୍ଚ ହାସ୍ୟ ଲୋକ ଦେଖା ପାଇଁ
ପ୍ରକୃତ ଆନନ୍ଦ ତହିଁ କାହିଁ ?
ଦ୍ୱେଷ, ହିଂସା, ଗର୍ବ, ଅହଙ୍କାର,
ଶ୍ମଶାନର ଚିତା ଭସ୍ମସାର ।
ନିଶାର ସ୍ୱପନ ପରି ସର୍ବ,
ସୁଖ, ଦୁଃଖ, ଆନନ୍ଦ, ଉତ୍ସବ !
ସ୍ୱର୍ଗର ଦେବତା ନୁହେ ଲୋକ
ପୃଥ୍ୱୀରେ ଭୁଞ୍ଜନ୍ତି ସୁଖ ଦୁଃଖ ।

---

## ମନ ଉଚ୍ଚାଟନ

( ଭୈରବ ଝୁଲା )

କପାଁଇ ହେଉଛି ମନ ଉଚ୍ଚାଟନ ଅତିଶୟ
କିବା ନାହିଁ ? କି ଯାଉଛି ? ଶୂନ୍ୟ କରି ଏ
ହୃଦୟ ?
ଦେଖୁଛି ମୁଁ ଚାହିଁ ଏବେ ହୃଦୟର ଅନ୍ତଃସ୍ଥଳ,
ଅବସାଦ, ନିରାଶ୍ୱାସ ଢାଙ୍କି ରହିଛି କେବଳ !
ଶାନ୍ତି, ସୁଖ, ସ୍ନେହ, ପ୍ରୀତି ବିଗତ ହୋଇଛି ମନୁ,
କୁହୁଳି ହେଉଛି ମନ, ଶୁଷ୍କ ଲୋତକ ନୟନୁ ।
ଆହା ବୋଲିବାକୁ ସାହା କେହି ତ ମୋହର ନାହିଁ
ଧୈର୍ଯ୍ୟ ଧରି ରହିବି ମୁଁ ଆଉ କାହା ମୁଖ ଚାହିଁ ?
କଠିନୁ କଠିନ ହେବେ ହେଉଛି ମୋହର ପ୍ରାଣ !
ହେଉଛି ତ ଦିନୁ ଦିନୁ ମୋହ ହୃଦୟ ପାଷାଣ !
ନିର୍ଦ୍ଦୟ ନିର୍ମମ ଭାବେ ଢାଙ୍କିଦେଇ ଦୁଃଖରାଶି
ଅନନ୍ତ ସାଗରେ କିବା ଯାଇଅଛି ଭାସି ଭାସି ।
ବିଷାଦ ବିଳାପ-ଗୀତି ଗାଇବି ବିରଲେ ବସି,
ବିଗତ ଜୀବନ ଲୀଳା ହେଉଥିବ ନିତ୍ୟ ଘୋଷି ।

ସାନ୍ତ୍ୱନା, ସୌଭାଗ୍ୟ, ସୁଖ ନ ଲୋଡ଼େଁ ତ ଏହା କଛୁ
ଯାଉ ଶରକାଳ ପାଇଁ, ଯାଉ ଯାହା ତ ଯାଇଛୁ !

———

## ଭଣ୍ଡ ସନ୍ନ୍ୟାସୀ

ଧିକ ! ଧିକ ! ଜଗତରେ ବହୁତ ଜଞ୍ଜାଳ,
ଧନେ ତ ପାରିଲି ନାହିଁ ସୁଖେ କାଟି କାଳ ।
ଆଉ ତ ପାରିବ ନାହିଁ ଏତେ କୋଡ଼ ହାଣି,
ପେଟ ତ ଶୁଣିଲା ନାହିଁ ଦୁଃଖର କାହାଣୀ ।
କି ଉପାୟେ ସହଜରେ ପାଇବି ଆହାର,
ପରକାଳ ମାର୍ଗ ମଧ ହେବ ପରିଷ୍କାର,
ପାଇଛୁ ଏଥିର ତତ୍ତ୍ୱ ଶୁଣ ଗୃହବାସି !
କାଟିଲି ସଂସାର ମାୟା, ହେଲି ମୁଁ ସନ୍ନ୍ୟାସୀ
କରିବି ଗଞ୍ଜାଇ ସେବା—ଚୂମୁଟା ଧାରଣ,
ମୃଗଚର୍ମ ଖଣ୍ଡି ବସିବ, ବିଭୂତି ଭୂଷଣ,
ଲମ୍ବାଇ ମସ୍ତକେ ଜଟା, ପିନ୍ଧିବି କୌପୀନ,
ଏ ସବୁ ଭୂଷଣ ଅଟେ ସନ୍ନ୍ୟାସୀର ଚିହ୍ନ ।
ହସ୍ତେ ଥିବ କମଣ୍ଡଳୁ କାନ୍ଧେ ଦୀର୍ଘ ଝୁଲି,
ମାଗିବି ସୁଖରେ ଭିକ୍ଷା ଦ୍ୱାରେ ଦ୍ୱାରେ ବୁଲି ।
ବର୍ତ୍ତମାନ କେହି ଜଣେ ନ ପଚାରେ ମୋତେ,
ସାଧୁ ଦେଖି ଦଣ୍ଡବତ କରିବେ ସମସ୍ତେ ।
ସହିବାକୁ ହେବ ନାହିଁ ଧାଡ଼ୁର ଗଞ୍ଜଣା,
ଜମିଦାର ଗୋମାସ୍ତା କି ମାଗିବ ଖଜଣା ?
ବୃକ୍ଷମୂଳେ ଧୂନି ଥାପି ଥିବି ମୁହିଁ ବସି,
ଦର୍ଶନ କରିବେ ଲୋକମାନେ ମୋତେ ଆସି ।
କେହି ଭକ୍ତ ଆସି ଯେବେ ଦେଇ ଦୁଇ ଅଣା
ଭକ୍ତିଭରେ କରିବ ମୋ ଚରଣ ବନ୍ଦନା,
ଦେବି ତାକୁ ଆଖି ବୁଜି ଦେହୁଁ ଧୂଳି ଝାଡ଼ି,
ତା ଦେହରୁ ବ୍ୟାଧିତାପ ପଳାଇବ ଗୁଡ଼ି ।
ସହଜେ ସରିବ ଧନ କଲେ ଏହିରୂପ,
ମାତ୍ର ପ୍ରଭୁ ଠକ ବୋଲି କରିବେ କି କୋପ !
ଲୋକ ଭଣ୍ଡାଇବି ସତ—ପ୍ରଭୁଙ୍କୁ ଭଣ୍ଡାଇ
ବସିବି କି ଇହ ପର ଦେନ କୂଳ ଖାଇ ?
ଯାଉ ସବୁ ସେ କଥାରେ ଦେବି ନାହିଁ ମନ,
ପ୍ରାଣ ଦେଇଛନ୍ତି, ଦେବେ ନାହିଁ କି ସେ ଅନ୍ନ !

———

## ସ୍ୱପ୍ନଦେବୀ

( ଭୂପାଳ )

ଦିବସର କାର୍ଯ୍ୟ କରି ସମାପତ
ବିଶ୍ରାମ ନିମନ୍ତେ ହେଲି ଶଯ୍ୟାଗତ ।
ନିଦ୍ରାଦେବୀ ସତି— ସନ୍ତାପନାଶିନୀ,
କୃପା କଲେ ମୋତେ ନିଦ୍ରାମଦାୟିନୀ ।
ଶାନ୍ତିମୟ ଅଙ୍କେ ହୁଅନ୍ତେ ଶୟାନ,
ବିଷାଦ ଯନ୍ତ୍ରଣା ହେଲା ଅବସାନ ।
ବ୍ୟାଧି ଉପସର୍ଗ ମାନସିକ କଷ୍ଟ,
ନିଦ୍ରାଦେବୀ ବରେ ହୁଏ ସବୁ ନଷ୍ଟ !
ନ ଶୁଭେ ଜଗତ— ଘୋଷଣ-ଗର୍ଜନ,
ତତ୍ତ୍ୱେ ତ ଦେବୀ ହୁଅନ୍ତେ ପ୍ରସନ୍ନ ।
ସୁଖ, ଦୁଃଖ ସବୁ ମାନ, ଅପମାନ,
ଦେବୀଙ୍କ ପ୍ରସାଦେ ସକଳ ସମାନ ।
ଏହି ସାମ୍ୟମାତ୍ର ପାଇବାର ପାଇଁ,
ରହିଥାଏଁ ଦେବୀ— କୃପାକୁ ଅନାଇ ।

କଲେ କୃପା ଦେବୀ, ହେଲି ଅଚେତନ,
ଏମନ୍ତ ସମୟେ ଆସିଲେ ସ୍ୱପନ ।
ନ ଜାଣେ କିରୂପ ଅବସର ପାଇ
ସ୍ୱପ୍ନଦେବୀ ସ୍ୱଗୁଁ ଅଇଲେ ଓହ୍ଲାଇ ।
ନିବଡ଼ ତମିର ଭେଦି ଧୀରେ ଧୀରେ
ବିଶ୍ରାମ କଲେକ ଆସି ମୋହ ଶିରେ ।
ପେଟିକା ଫିଟାଇ ସେହି ସ୍ୱପ୍ନଦେବୀ
ଦେଖାଇଲେ ମୋତେ କେତେରୂପ ଛବି ।

ଚିତ୍ରପଟ ନେଇ ଦେଖାଇଲେ ମୋତେ,
ହେଲା ତାହା ସତ୍ୟ ସମାନ ପରତେ ।
କେତେ ପରିଚିତ ଥିଲା ମୋତେ ଜଣା
ଅପାର୍ଥିବ କେତେ ଜ୍ଞାନ କରେ ବଣା,
ଜୀବନ ଉଲ୍ଲାସୀ କେତେ ମନୋହର,
କେତେ ବା ଦର୍ଶାଇ ମହାଭୟଙ୍କର ।
କେତେ ଚିତ୍ର ଦେଖି ଜାତ କୁତୂହଳ
କେତେ ବା ଦର୍ଶିଲି ତହିଁ ବିଶୃଙ୍ଖଳ ।
ଏ କି ଚମତ୍କାର ଦେଖୁଛି ନୟନେ,
ପାସୋରି ଯାଇଛି ଯାହାକୁ ଜୀବନେ,
ସେ ତ ସାକ୍ଷାତରେ ଆସି ଉପସ୍ଥିତ,
ଧରିବାକୁ ତାକୁ ହେଲି ମୁଁ ଧାବିତ ।
ଉଠି ବସିବାରୁ ମୁହିଁ ଚେତା ପାଇ
ଦେବୀ ଚିତ୍ରପଟ ନେଲେକି ଗୋଟାଇ ।
ମୁହୂର୍ତ୍ତକ ମଧ୍ୟେ କଲି ମନେ ଧାର୍ଯ୍ୟ,
ସ୍ୱପ୍ନଦେବୀଙ୍କର ଏହି ସବୁ କାର୍ଯ୍ୟ ।

କୁହୁକିନି ! ସ୍ୱପ୍ନ— ଦେବି ! ବୋଲ ମୋତେ,
ଲଗାଇଛ ଲୀଳା କପାଁଇ ଜଗତେ ?
ନିଦ୍ରା ଅବସ୍ଥାରେ ଥିଲେ ଅଚେତନେ,
ତସ୍କରୀ ସମାନେ ଆସ ଗୋ ଗୋପନେ ।
ଚେତା ପାଇଲେ ମୁଁ ଯାଉଛ ପଳାଇ,
ତସ୍କରୀମାନଙ୍କ ସ୍ୱଭାବଟି ଏହି ।
ଏଥିକୁ ବିଚାର କରେଁ ମୁଁ ଏମନ୍ତ,
ତୁମ୍ଭର ଉଦ୍ଦେଶ୍ୟ ନିଷ୍ପଟ ଅସତ ।
ମାତ୍ରକ ଗୋ ଦେବି ! ବାରେକ ସକାଶେ
ଉପକାର କଲ ଆସି ମୋହ ପାଶେ ।
ବହୁକାଳ ଯାକୁ ଯାଇଛି ପାସୋରି,
ଦେଖାଇଲ ଆଣି ତା ରୂପ-ମାଧୁରୀ ।
ମୁହୂର୍ତ୍ତକ ପାଇଁ ହେଲି ଗୋ ପରତେ,
ହଜିଥିଲା ନିଧି ପାଇଲି କି ସତେ ?

ଦେଖାଇ ପାରନ୍ତ ଯେବେ ବାର ବାର,
ମାନନ୍ତି ତୁମ୍ଭର ବଡ଼ ଉପକାର ।
ଯାହାହେଉ ଥରେ ଦେଖାଇଛ ଆଣି,
ମେଲାଣି ଦେଉଛି, ଯାଅ ଠାକୁରାଣୀ !
ହତଭାଗ୍ୟ ମୁହିଁ ପ୍ରାଣ ବଡ଼ମ୍ବିତ,
ସୁଷୁପ୍ତିର କୋଳୁଁ ନ କର ବଞ୍ଚିତ ।
ନିଦ୍ରାଦେବୀ କନ୍ୟା ନିଶା-ସହଚରି !
ନ ଆସ ମୋ ପାଶେ କର ଯୋଡ଼ି କରି
ବୋଲୁଛି, ଏତେକ କୃପା କର ମୋତେ,
ନିଦ୍ରାଦେବୀ କୋଳେ ରହେଁ ମୁଁ ନିଶ୍ଚିନ୍ତେ ।

———

## ସନ୍ନ୍ୟାସୀ

( କଳହଂସ କେଦାର )

ସଂସାର ସୁଖେ ନୁହେ ଯେ ଅଭିଳାଷୀ,
ସେ ବ୍ରହ୍ମ ଉପାସକ ସେହି ସନ୍ନ୍ୟାସୀ,
ଜଗତେ ତାର କିଛି ନାହିଁ କାମନା,
କେବଳ ପରଂବ୍ରହ୍ମେ ନିତ୍ୟ ଭାବନା । ୧ ।
ତାହାର କେହି ନାହିଁ ବିଶ୍ୱ ସଂସାରେ,
ସର୍ବ ସମ୍ପତ୍ତି ସୁଖ ତୁଚ୍ଛ ତା ଠାରେ,
କ୍ଷୁଦ୍ରେ କ୍ଷୁଧିତ ନୁହେ ତାହାର ପ୍ରାଣ,
ବିଶ୍ୱ ବ୍ରହ୍ମାଣ୍ଡ କରେ ଆପଣା ଜ୍ଞାନ । ୨ ।
ନାହିଁ ବାସନା ବାସ ଦିବ୍ୟ ଭବନ,
ସୁଖରେ କରେ ପୃଥ୍ୱୀ ମଧ୍ୟେ ଭ୍ରମଣ,
ବିଶେଷ ନାହିଁ ତାର ବନ୍ଧୁ ବାନ୍ଧବ,
ଜ୍ଞାତି, କୁଟୁମ୍ବ, ବନ୍ଧୁ, ସର୍ବ ମାନବ । ୩ ।
ତାହାର ନାହିଁ ଧର୍ମ ଅଧର୍ମ ଜ୍ଞାନ,
ସମ୍ପଦ ବିପଦକୁ ମଣେ ସମାନ,
ତା ପ୍ରତି ଯାହା କିଛି ହୁଏ ଘଟଣା,
ପ୍ରଭୁଙ୍କ ଦତ୍ତ ବୋଲି କରେ କଳ୍ପନା । ୪ ।

ନ ଲୋଡ଼େ ସେହି ମୃତ୍ୟୁ ଅବା ଜୀବନ,
କେବଳ ବିଭୁ ଆଜ୍ଞା କରେ ପାଳନ,
ଉଦର ଭରଣରେ ନାହିଁ ଭାବନା,
ପ୍ରଭୁଙ୍କ ଆଦେଶକୁ କରେ କାମନା । ୫ ।
ସେ ଜାଣେ ତା ଜନକ ଜଗତପତି,
ନିୟତ ରଖେ ତାଙ୍କ ଚରଣେ ମତି,
ଯା' ଅନ୍ନଦାତା ବିଶ୍ୱ ବ୍ରହ୍ମାଣ୍ଡେଶ୍ୱର,
ଚିନ୍ତା କି ତାର ପୋଷିବାକୁ ଉଦର ?
ବିଶ୍ୱାସ ବିଭୁ ବିଶ୍ୱ ବ୍ରହ୍ମାଣ୍ଡମୟ,
କିପାଁ କରିବ ଭବେ କାହାକୁ ଭୟ ?
ବିଶେଷେ ବୁଝିଅଛି ଆପଣା ଜ୍ଞାନେ,
ତା ବିଭୁ ବର୍ତ୍ତମାନ ସକଳ ସ୍ଥାନେ । ୭ ।
ଜଗତେ ସର୍ବ ଦ୍ରବ୍ୟ ତୁଚ୍ଛ ତାଠାରେ,
ସଁପିଛି ମନ ପ୍ରାଣ ପ୍ରଭୁ ସେବାରେ,
ହୃଦୟେ ବୁଝିଅଛି ତତ୍ତ୍ୱ ଯଥାର୍ଥ,
ବିଶ୍ୱ ବ୍ରହ୍ମାଣ୍ଡେ ସାର ବ୍ରହ୍ମ ପଦାର୍ଥ । ୮ ।
ସରିତେ ସଲିଳ ତ ଅଛି ସଞ୍ଚିତ,
କେ କରିପାରେ ତାକୁ ତହୁଁ ବଞ୍ଚିତ ?
ଶୀତଳ ଅନିଳ ଯେ ତାହା ସକାଶେ,
ଦୀପ୍ତିମନ୍ତ ଜ୍ୟୋତି ଚନ୍ଦ୍ର ସୂର୍ଯ୍ୟ ଆକାଶେ । ୯ ।
ଅନନ୍ତ କୋଟି ପ୍ରାଣୀ ଲଭନ୍ତି ଅନ୍ନ,
ରକ୍ଷା କି ନ ପାଇବ ତାହା ଜୀବନ ?
କରନ୍ତି ନାହିଁ ପଶୁ ପକ୍ଷୀଏ କୃଷି,
କାହିଁ କି ରହିଅଛି କେ ଉପବାସୀ ? ୧୦ ।
ଶରୀର ରକ୍ଷାପାଇଁ ନାହିଁ ଯତନ,
ଯା ପାଏ ଆନନ୍ଦରେ କରେ ଭୋଜନ,
ଆପଣା ମନ ମଧ୍ୟେ କରିଛି ସ୍ଥିର,
ପ୍ରଭୁଙ୍କ ଦତ୍ତ ଅଟେ ଏହି ଶରୀର । ୧୧ ।
ନ ଜାଣେ କ୍ଷଣସ୍ଥାୟୀ ପ୍ରୀତି ମାଧୁରୀ
ବିଶ୍ୱ ପ୍ରେମରେ ଅଛି ତା ପ୍ରାଣ ପୂରି ।
ବନ୍ଧୁବିଚ୍ଛେଦ କଷ୍ଟ ସେ ତ ନ ଜାଣେ,
ମଣେ ହୃଦୟବନ୍ଧୁ ସେ ଭଗବାନେ । ୧୨ ।

## ପାନ୍ଥ

( ଚଢ଼କେଳି )

ଉଠ ଉଠ ପାନ୍ଥ ! ପାହିଲାଣି ରାତି,
ପୂର୍ବେ ପ୍ରକାଶିଛି ଅରୁଣ କାନ୍ତି ।
ନିଦ୍ରା ଯିବା ଆଉ ନାହିଁ ସମୟ,
ଉଜ୍ଜ୍ୱଳ ବରଣେ ଅରୁଣୋଦୟ ।
ଅସଂଖ୍ୟ ଅସଂଖ୍ୟ ପଥିକ ନରେ,
ଚାଲି ଯାଉଛନ୍ତି ଦେଖ ମାର୍ଗରେ ।
ହେ ପଥିକ ! ହୋଇ ନିଦ୍ରାରେ ରତ,
ଶୋଇ ରହିବାକୁ ନାହିଁ ଆୟତ୍ତ ।
ବୋଲି ନ ପାରିବ ହୋଇଛି କ୍ଲାନ୍ତ,
ଉଠି ଚାଲିବାକୁ ହେବ ହେ ପାନ୍ଥ ।
ଉଠ ଉଠ ଭାଇ, ପଥିକ ବେଶେ,
ହେବଟି ଯିବାକୁ ଅଜଣା ଦେଶେ ।
ଅଛି ଦୀର୍ଘ ମାର୍ଗ ହେବ ଯିବାକୁ,
ନେଇ ନ ପାରିବ ସଙ୍ଗେ କାହାକୁ ।
ଚାଲିବାକୁ ହେବ ଏକା କେବଳ,
ବାନ୍ଧି ରଖିଛ ତ ମାର୍ଗ ସମ୍ବଳ ?
ଯେ ଗୃହେ ରହିଛ ସୁଖେ ଶୟାନ,
ଛାଡ଼ିଥିବ ତୁମ୍ଭେ କଲେ ପ୍ରୟାଣ ।
ଅଛ ତ ଏ ଗୃହେ ରାତିକ ପାଇଁ,
ଏ କଥା କି ତୁମ୍ଭ ମନରେ ନାହିଁ ?
ନୁହେ ତ ତୁମ୍ଭର ଆପଣା ଦେଶ,
ଅଛ ସିନା ଧରି ପଥିକ ବେଶ ।
ଯିବ କେଉଁ ଦେଶେ ନାହିଁ ତ ଜଣା,
ନ ପାରୁଛ କରି ମନେ କଳ୍ପନା ।
ମାତ୍ରକ ଯିବାକୁ ହେବ ନିଶ୍ଚୟ,
ନ ଭୁଲ ନ ଭୁଲ ଏହି ବିଷୟ ।
ଯେତେ ଆସୁଛନ୍ତି ଏ ପାନ୍ଥଶାଳେ,
ଯାଉଛନ୍ତି ଚାଲି ଉଠି ସକାଳେ,

ଆସିଅଛ କାହୁଁ  ଯିବଛି କାହିଁ,
ଏ କଥା କପାଇଁ  ବୁଝୁଛ ନାହିଁ ?
ସ୍ରଷ୍ଟାଙ୍କ ସକାଶେ  ଥିଲ ଏ ସ୍ଥାନେ,
ବୁଝୁ ନାହିଁ ବେଳେ  ଆପଣା ଜ୍ଞାନେ ।
ଚାଲିବାକୁ ହେବ  ଦୁର୍ଗମ ମାର୍ଗ,
ଆହେ ଭାଇ ପାନ୍ଥ;  ବେଳହୁଁ ଜାଗ ।
ଛନ୍ତି ଯେତେ ଲୋକ  ତୁମ୍ଭ ସଙ୍ଗରେ,
ଯିବେ ତ ସମସ୍ତେ  ଆଗ ପଛରେ ।
ରହିବାକୁ ନାହିଁ  କାହା ଆୟତ୍ତ,
ଅଗ ପଛ ହୋଇ  ଯିବେ ସମସ୍ତ ।
ତୁମ୍ଭ ସଙ୍ଗୀ ବୋଲି  ମଣ ଯାହାକୁ,
ମାର୍ଗରେ ଭେଟିବ  ନାହିଁ କାହାକୁ ।
ଏ ପାନ୍ଥଶାଳାଟି  ସୁନ୍ଦର ବୋଲି
ଆପଣାର ଜ୍ଞାନେ  ନ ଯାଅ ଭୁଲି ।
ଏ ପାନ୍ଥଶାଳାର  ଯେତେକ ଲୋକ,
କାହା ସଙ୍ଗେ ତୁମ୍ଭ  ନାହିଁ ସମ୍ପର୍କ ।
ଯାହାକୁ ଧରିଛ  ଆପଣା ଜ୍ଞାନେ,
କାହିଁ ଛାଡ଼ି ଚାଲି  ଯିବେ ସେମାନେ ।
ସମ୍ବନ୍ଧ ରହିଛି  ସ୍ରଷ୍ଟାଙ୍କ ପାଇଁ,
ଏତେ ମାୟା ଏତେ  ମୋହ କପାଇଁ ?
ଯେତେ କ୍ଷଣ ଅଛି  ତାଙ୍କ ସଙ୍ଗରେ,
ପ୍ରେମେ କାଟ କାଳ  ମନ ସୁଖରେ ।

— — —

## କ୍ରନ୍ଦନ

(ଚନ୍ଦ୍ରକଳା)

ପ୍ରଥମରେ କରି  ଜନ୍ମ ଗ୍ରହଣ,
କେ ଜାଣେ କପାଁ ମୁଁ  କଲି କ୍ରନ୍ଦନ ।
କ୍ଷୁଧା ତୃଷା ଯେବେ  ଲାଗଇ ମୋତେ
କଥା ଆସେ ନାହିଁ  କାନ୍ଦିଲି କେତେ ।
ପାଠ ପଢ଼ା ବେଳେ  ପାଠଶାଳାରେ,
କାନ୍ଦିଛି ମୁଁ କେତେ  ମାଡ଼ ଗାଳିରେ ।
ବିଭା ବେଳେ ମୋର  ପ୍ରାଣପ୍ରେୟସୀ,
ବାପଘରେ କେତେ  କାନ୍ଦିଲା ବସି ।
ଚଳାଇ ନ ପାରି  ଗୃହ ସଂସାର,
କରିଥିଲି ପ୍ରାଣେ  କାନ୍ଦଣା ସାର ।
ପୋଷିଥିଲି ପକ୍ଷୀ  ଯତନେ କେତେ,
କନ୍ଦାଇ କନ୍ଦାଇ  ଗଲା ସେ ମୋତେ ।
ଯାହାଙ୍କୁ ମଣିଛି  ପ୍ରେମେ ଆପଣା,
ଶେଷେ ହୋଇଅଛି  ସାର କାନ୍ଦଣା ।
ପାପ କରି କେତେ  ଅନୁତାପରେ,
କାନ୍ଦିଛି ତ ବସି  ମନୋଦୁଃଖରେ ।
କଞ୍ଚତରେ ଲଭି  କରି ଚେତନ,
ଭକ୍ତିଭରେ କେତେ  କଲି କ୍ରନ୍ଦନ ।
ପ୍ରିୟ ଜନେ ଗଲେ  ମୋ ପାଶୁଁ ଛାଡ଼ି,
କାନ୍ଦିଛି ବହୁତ  ମୁଁ ଡାକ ପାଡ଼ି ।
ଜୀବନଟାଯାକ  କଲି କ୍ରନ୍ଦନ,
କାନ୍ଦି କାନ୍ଦି ପୁଣି  ଯିବ ଜୀବନ ।
ଜଗତେ ଆସିଛି  କାନ୍ଦିବାପାଇଁ,
ନ ସାରି ମୋ କାର୍ଯ୍ୟ  ଯିବି କପାଇଁ ?

— — —

## ଆଦିମ ନରଦମ୍ପତିର ଧର୍ମଜ୍ଞାନ

( ନଳିନୀଗୌଡ଼ା )

ଅନନ୍ତ ନକ୍ଷତ୍ର ଗ୍ରହ ଅନନ୍ତ ଆକାଶେ,
ଜାଣନ୍ତି ସେ ପ୍ରଭୁ ସୃଷ୍ଟି କଲେ କି ସକାଶେ ।
ପୃଥିବୀ ଗୋଟିଏ ସେହି ଗ୍ରହମଣ୍ଡଳରେ,
ଭଗବାନ ଏହା ସୃଷ୍ଟି କଲେ ପ୍ରଥମରେ ।
ସାଗର, ପର୍ବତ, ଦ୍ୱୀପ, ବନ-ଉପବନ,
ବୃକ୍ଷ, ଲତା ଆଦି ଯାହା ଯାହା ପ୍ରୟୋଜନ,

ଏ ସମସ୍ତ ପଦାର୍ଥରେ ପୃଥିବୀ ମଣ୍ଡାଇ,
ସୃଷ୍ଟି କଲେ ପଶୁ, ପକ୍ଷୀ, କୀଟ, କୃମି ଯାଇ ।
ପୃଥିବୀରେ ପ୍ରୟୋଜନ ଦ୍ରବ୍ୟ ଯେ ସମସ୍ତ,
ସର୍ବ ସୃଷ୍ଟି କାର୍ଯ୍ୟ ପ୍ରଭୁ କଲେ ସମାପତ୍ତ ।
ଭାବିଲେ ସେ ମହାପ୍ରଭୁ ଆପଣା ମନରେ,
ସୃଜିବେ ବିଶେଷ ପ୍ରାଣୀ ପୃଥିବୀ ମଧ୍ୟରେ ।
କରିବ ସେ ପ୍ରାଣୀ ଏହି ପୃଥିବୀ ଶାସନ,
କରିବ ସେ ପୁଣି ତାଙ୍କ ମହିମା କୀର୍ତ୍ତନ ।
ଏତେକ ବିଚାରି ମହାପ୍ରଭୁ ବିଶ୍ୱପତି,
ସୃଜନ କଲେକ ଏକ ମାନବ ଦମ୍ପତି ।
ପୃଥିବୀ ମଧ୍ୟରେ ଯେତେ ଜନ୍ତୁ ସୃଷ୍ଟ ପ୍ରାଣୀ,
ସମସ୍ତଙ୍କ ଦେହୁଁ ଶ୍ରେଷ୍ଠ ସାର ଅଂଶ ଆଣି ।
କରିଥିଲେ ପ୍ରଭୁ ନରଦମ୍ପତି ସୃଜନ,
ପୁଣି ତାଙ୍କୁ ଜ୍ଞାନ ଦେବା ହେଲା ପ୍ରୟୋଜନ ।
ସେ କାଳରେ ମହାପ୍ରଭୁ ଭାବିଲେ ମନରେ,
ଯେତେ ରୂପ ପ୍ରାଣୀ ଥିଲେ ପୃଥିବୀ ମଧ୍ୟରେ—
ସିଂହ, ବ୍ୟାଘ୍ର, ସର୍ପ, ମୃଗ, ଭଲ୍ଲୁକ, ମର୍କଟ,
ଶୃଗାଳ, ଗୁଗଲ, ମେଣ୍ଢ, ଉଲୂକ, କର୍କଟ ।
ଗର୍ଦ୍ଦଭ, ଗଣ୍ଡାର, ଶ୍ୟେନ, ଶାଗ, ଚକ୍ରବାକ,
କୁକୁର, ବିରାଡ଼ି, ମୂଷା, ଛୁଞ୍ଚି, ଚିଲ, କାକ ।
ଇତ୍ୟାଦି ଯେତେକ ଥିଲେ ପଶୁ ପକ୍ଷିକୁଳ,
ସମସ୍ତଙ୍କ ପ୍ରକୃତିକୁ ଆଣି କଲେ ତୁଳ ।
ମିଶ୍ରିତ ପ୍ରକୃତି ଆଣି ନର ହୃଦୟରେ,
ନିହିତ କଲେକ ଧର୍ମଜ୍ଞାନ ସହିତରେ ।
ପର ପ୍ରତି ଦୟାମାୟା, ସ୍ନେହ, ପ୍ରୀତି, ଭକ୍ତି,
ଏ ସମସ୍ତ ସ୍ୱର୍ଗୁ ଆଣି ଦେଲେ ବିଶ୍ୱପତି ।
ପାଇଲେ ମାନବ ସର୍ବ ପ୍ରାଣୀଙ୍କ ସ୍ୱଭାବ,
ବିଶେଷ ବିବେକ, ଅଧିକରେ ଧର୍ମ ଭାବ ।
ଏହିରୂପେ ସୃଷ୍ଟି କରି ମାନବଦମ୍ପତି,
ଥାପିଲେ ପୃଥିବୀ ମଧ୍ୟ ପ୍ରଭୁ ବିଶ୍ୱପତି ।
ଫଳପୁଷ୍ପ ପୂର୍ଣ୍ଣ ଏକ ଉଦ୍ୟାନ ମଧ୍ୟରେ,
ସେ ନରଦମ୍ପତି ଉପସ୍ଥିତ ପ୍ରଥମରେ ।

ଦେଖିଲେ ସେ ଦେବଜନ ଜଗତକୁ ଚାହିଁ,
ସେମାନଙ୍କ ବିନା ଅନ୍ୟ ଲୋକ କେହି ନାହିଁ ।
ଦେଖିଲେ ଚକିତ ନେତ୍ରେ ଚାହିଁ ଇତସ୍ତତଃ,
ମନୋହର ଜଗତର ପଦାର୍ଥ ସମସ୍ତ ।
ସ୍ୱଭାବତଃ ହେଲା ଜାତ କ୍ଷୁଧା, ତୃଷା, କ୍ଳାନ୍ତି,
ଫଳ ଖାଇ ଜଳ ପିଇ କଲେ ଲଭି ଶାନ୍ତି ।
କପାଁ କାହୁଁ ଆସିଛନ୍ତି ନାହିଁ କିଛି ଜ୍ଞାନ,
ନ ଜାଣନ୍ତି ଆତ୍ମକାର୍ଯ୍ୟ କାର୍ଯ୍ୟର ବିଧାନ ।
ଭବିଷ୍ୟତ ତାଙ୍କ ପକ୍ଷେ ଘୋର ଅନ୍ଧକାର,
ବିଧାତା ବିଧାନ କରିଛନ୍ତି ଏ ପ୍ରକାର ।
ନ ଥିଲା ପ୍ରଥମେ ମନେ ଲଜ୍ଜା, ଭୟ, କ୍ଲେଶ,
ନ ଥିଲା ସେ କାଳେ ମଧ୍ୟ ଜ୍ଞାନ, ହିଂସା, ଦ୍ୱେଷ ।
ମାତ୍ରକ ନିହିତ ଥିଲା ମନେ ସର୍ବ ଭାବ,
କ୍ରମେ ବିକଶିତ ହେଲା ସେଥିର ପ୍ରଭାବ ।
ଅଙ୍କୁର ଯେମନ୍ତ ହୁଏ ବୀଜରୁ ଉତ୍ପତ୍ତି,
ଲଭିଲେ ସମସ୍ତ ଭାବ ସେ ନରଦମ୍ପତି ।
ଦୁହିଙ୍କର ମୁଖ ଦୁହେଁ ଚାହିଁ ପରସ୍ପରେ,
ଭ୍ରମୁଥାନ୍ତି ଶୂନ୍ୟ ମନେ ପୃଥିବୀ ମଧ୍ୟରେ ।
ଭ୍ରମଣ କରନ୍ତି ଦୁହେଁ ଉଲଗ୍ନ ଦେହରେ,
ଲଜ୍ଜା ବା ବିକାର ମନେ ନାହିଁ କିଞ୍ଚିତରେ ।
ଦିବା ଅବସାନ, ଦିବାକର ଗଲେ ଅସ୍ତ,
ଏହା ଦେଖି ଦେବଜନ ହେଲେ ମହାବ୍ୟସ୍ତ ।
କ୍ରମଶ ଆସନ୍ତେ ହୋଇଟି ଘୋର ଅନ୍ଧକାର,
ସେମାନଙ୍କ ମନେ ହେଲା ଭୟର ସଞ୍ଚାର ।
କ୍ଲାନ୍ତି ଜନ୍ମିଥିଲା କରି ଦିବସେ ଭ୍ରମଣ,
ଭୂମିତଳେ ପଡ଼ିଯାଇ ହେଲେ ଅଚେତନ ।
ରାତି ଗଲା ପାହି ରବ କଲେ ପକ୍ଷୀଗଣ,
ବସିଲେ ଯେ ଉଠି ଚେତା ପାଇ ଦେବଜନ ।
ହୋଇଛନ୍ତି ପୂର୍ବଦିଗେ ତପନ ଉଦିତ,
ସେ ଆଲୋକ ଦେଖି ହେଲେ ଉଭୟେ ଚକିତ ।
ଏହିରୂପେ ଦେଖି ନିତ୍ୟ ତପନ ଉଦୟ,
ଉତ୍ତେଜିତ ହେଲା ତାଙ୍କ ଜ୍ଞାନ, ଭକ୍ତି, ଭୟ ।

ସୂର୍ଯ୍ୟ ଉଦୟାସ୍ତ ଦେଖି ଜନମିଲା ଜ୍ଞାନ,
ଏହି ଦେବ ଜଗତର ପ୍ରଭୁ ଭଗବାନ ।
ଜ୍ଞାନ କଲେ ଏହି ମହାପ୍ରଭୁ ଦିବାକର,
ଅଟନ୍ତି ଜଗତକର୍ତ୍ତା ପରମଈଶ୍ୱର ।
ଚକିତ ନେତ୍ରରେ ଥାନ୍ତି ତାହାଙ୍କୁ ଅନାଇ,
କିରଣ ପ୍ରଭାବେ କିନ୍ତୁ ନ ପାରିଲେ ଚାହିଁ ।
ସେ ନରଦମ୍ପତି ଭକ୍ତିଭାବେ ବାରମ୍ବାର,
କରଯୋଡ଼ି କଲେ ନତଶିରେ ନମସ୍କାର ।
ଏ ଅନ୍ତେ ଉଦୟ ହେଲା ବାରିଦ ଆକାଶେ,
ବିଦ୍ୟୁ ବଜ୍ର ଦେଖି ହତଜ୍ଞାନ ହେଲେ ତ୍ରାସେ ।
ମାନବ ଜାଣିଲେ ହେବା ଯୋଗୁଁ ଜଳ ବୃଷ୍ଟି,
ଏହା ଯୋଗେ ପାଇଅଛି ରକ୍ଷା ସର୍ବ ସୃଷ୍ଟି ।
ସେ କାଳରେ ହେଲା ନରଦମ୍ପତିଙ୍କ ଜ୍ଞାନ,
ସୃଷ୍ଟିରକ୍ଷାକାରୀ ଇନ୍ଦ୍ର ଦେବତା ପ୍ରଧାନ ।
ସେ ନରଦମ୍ପତି ପୁଣି ଭୟ ଭକ୍ତିଭରେ,
ଓଳଗି ହେଲେକ ଇନ୍ଦ୍ର ଦେବତା ପୟରେ ।
ଦେଖିଲେ ଅରଣ୍ୟେ ଅଗ୍ନି ଜଳି ଅକସ୍ମାତ,
ମୁହୂର୍ତ୍ତେ ମଧ୍ୟରେ କଲା ବନ ଭସ୍ମସାତ ।
ଚମକି ପଡ଼ିଲେ ଦେଖି ଅଗ୍ନିର ଉଗ୍ରତା,
ବିଚାରିଲେ ଏହି ଦେବ ଜଗତ ଦେବତା ।
ଚିତ୍ତ ମଧ୍ୟେ ଚିନ୍ତାକରି ଏହି ସର୍ବ କଥା,
ଭକ୍ତିଭରେ ବେନିଜଣେ ନୁଆଁଇଲେ ମଥା !
ସେ ନରଦମ୍ପତି ପୁଣି କଲେ ନିରୀକ୍ଷଣ,
ପ୍ରବାହିତ ପବମାନ ଜଗତ ଜୀବନ ।
ବିନୀତ ବଚନେ ପୁଣି ସେ ନରଦମ୍ପତି,
ସ୍ତୁତି ପଢ଼ି ବାୟୁଦେବେ କଲେକ ପ୍ରଣତି ।
ଜନମିଲା ଜ୍ଞାନ ତାଙ୍କ ଯାନ୍ତେ କିଛି ଦିନ,
ଯାବନ୍ତ ଜଗତ ଜଗଦୀଶଙ୍କ ଅଧୀନ ।
ଦୂର ହେଲା ସେ କାଳରେ ମନୁଁ ସର୍ବଭ୍ରାନ୍ତି,
ଭାଳିଲେ ସ୍ୱତନ୍ତ୍ର ଛନ୍ତି ଦେବ ଅଧିଷ୍ଠାୟୀ ।
ଭକ୍ତିରେ ସେ ନରନାରୀ କଲେ ଉଚ୍ଚାରଣ;
ଏକମାତ୍ର ଜଗଦୀଶ ଜଗତଜୀବନ ।
ଏକ ଏକ ଅଦ୍ୱିତୀୟ ଦେବ ବିଶ୍ୱପତେ ।
ସର୍ବଶକ୍ତିମାନ ଦେବ ! ନମସ୍ତେ ନମସ୍ତେ ।

———

## ସନ୍ନ୍ୟାସିନୀ

( ପଞ୍ଚମ ବର୍ତ୍ତୀ )

କିଏ ମା ତୁ ସନ୍ନ୍ୟାସିନୀ କଷାୟବସନା ?
ଜଗତରେ ତୋର କିଛି ନାହିଁକି ବାସନା ?
ଜଳାଞ୍ଜଳି ଦେଇଅଛୁ ତୁ କି ଆତ୍ମସୁଖେ ?
ନିୟତ ତ ବସିଥାଉ ଦେଖେଁ ମ୍ଳାନମୁଖେ ।
କେବେ ଶୁଣିନାହିଁ ତୋର ହାସ୍ୟ ବା କ୍ରନ୍ଦନ,
ନିର୍ଜନରେ ଥାଉ କରି ଗମ୍ଭୀର ବଦନ ।
ଯତ୍ନ ଦେଖେଁ ନାହିଁ କେବେ ଆହାରେ ବିହାରେ,
ଆତ୍ମବଳ ଦେଉ ସଦା ପର ଉପକାରେ ।
କେତେ ଧୀରେ କହୁ କଥା କେତେ ସୁମଧୁର,
ଯେ ଖାଦ୍ୟ ମିଳଇ ତୋତେ ମଣୁ ତା ପ୍ରଚୁର ।
ପ୍ରସ୍ତୁତ ତୁ ସହିବାକୁ ଜଗତ ଯନ୍ତ୍ରଣା,
ସମଜ୍ଞାନ ତୋ ପାଶରେ ପ୍ରଶଂସା ଗଞ୍ଜଣା ।
ଆତ୍ମପର କିଛି ଜ୍ଞାନ ନାହିଁ ତୋହ ପାଶେ,
ନ କରୁ ତୁ କାର୍ଯ୍ୟ କିଛି ସୁଖ ଅଭିଳାଷେ ।
ଆକାଙ୍କ୍ଷା, ଭରସା, ଆଶା ନାହିଁ ତୋର କିଛି,
ଜଗତ ବନ୍ଧନ ସର୍ବ ଛିଡ଼ି ତ ଯାଇଛି ।
ଚାଲି ଯାଉଥାଉ ଦେଖେଁ ପଦନଖ ଚାହିଁ,
ଏତେ ଯେ ପଦାର୍ଥ ଅଛି କିଛି ନ ଅନାଇ ।
ଅଭିଳାଷ ନାହିଁ ତୋର ଜଗତ ଐଶ୍ୱର୍ଯ୍ୟ,
ବିଶେଷ କିଛି ହିଁ ନାହିଁ କରିବାକୁ କାର୍ଯ୍ୟ ।
ବିଞ୍ଚି ପଡ଼ିଅଛି ପୃଷ୍ଠେ ଜଟାଯୁକ୍ତ କେଶ,
ଦେଖେଁ ତୋତେ ଧ୍ୟାନମଗ୍ନ ଉଦାସୀନବେଶ ।
ଆନନ୍ଦ ଉତ୍ସବୁ ରହିଥାଉ ଦୂରେ ଦୂରେ,
ତପୋମଗ୍ନା ତପସ୍ୱିନୀ ଅପର୍ଣ୍ଣା କି ତୁ ରେ ?

ନୟନ ମୁଦ୍ରିତ କରି ବସିଥାଉ ଧ୍ୟାନେ,
ଜଡ଼ପିଣ୍ଡ ବୋଲି ଜ୍ଞାନ ହୁଏ ଅନୁମାନେ ।
ସେ କାଳରେ ଦେଖେଁ ନେତ୍ରୁ ବହି ଅଶ୍ରୁଜଳ
ସିକ୍ତ କରୁଥାଏ ଅବିରଳ ବକ୍ଷସ୍ଥଳ ।
ଦେଖେଁ ତୋତେ କେହି ଯେବେ କରେ ଅପମାନ,
ଶୁଣି ଯାଉ ନ ଶୁଣି ତା କରି ତୁଚ୍ଛ ଜ୍ଞାନ ।
କାହାକୁ ତୁ ବସି ଧ୍ୟାନ କରୁ ନିଜ ମନରେ ?
ମନ ପ୍ରାଣ ସମର୍ପିଛୁ କି ତାହାଙ୍କ ପୟରେ ?

———

## କୃତଘ୍ନ

( ପଞ୍ଚମ ବରାଡ଼ୀ )

ଦେଖୁଛି ତ ଧରିଅଛୁ ମାନବ ଆକାର,
ମାତ୍ର ତୋର କାର୍ଯ୍ୟ ଦେଖେଁ ଆଶ୍ଚର୍ଯ୍ୟ ପ୍ରକାର ।
ପଶୁଏ ପାରନ୍ତି ମଧ୍ୟ ଚିହ୍ନି ଶତ୍ରୁ ମିତ୍ର,
ମାତ୍ର ତୋର ବ୍ୟବହାର ଦେଖେଁ ମୁଁ ବିଚିତ୍ର ।
ଯେଉଁ ଲୋକ କରେ ତୋର ମଙ୍ଗଳକାମନା,
କେଉଁ ଜ୍ଞାନ ବଳେ ଦେଉ ତାହାକୁ ଯନ୍ତ୍ରଣା ?
ନିୟତ ପାଇଛୁ ଯାହାଠାରୁ ଉପକାର,
ଧିକ ଧିକ ! ତାହା ପ୍ରତି କରୁ ଅତ୍ୟାଚାର !
ପିଶାଚପ୍ରକୃତି ହୀନବୁଦ୍ଧି ତୁହି ବୋଲି,
ଉପକାରୀ ଉପକାରମାନ ଯାଉ ଭୁଲି ।
କରିବାର ଥାଉ ତୋର ପ୍ରତିଉପକାର,
ବୃଥା କେଉଁ ଜ୍ଞାନେ ବୋଲ କରୁ ଅତ୍ୟାଚାର ?
ତୋ ଉପରେ ଦିଏ ଯେ ବା ସ୍ନେହ ପ୍ରୀତି ଡାଳି,
କଟୁକଥା କହି ତୁହି ଦେଉ ତାକୁ ଗାଳି ।
ଏହି କି ରେ ଦୁରାଚାର ତୋର ମନୁଷ୍ୟତ୍ୱ ?
ପଶୁ ମଧ୍ୟ କରିବାକୁ ନ ପାରେ ଏମନ୍ତ ।
ଦେଖିଛି ମୁଁ ହିଂସ୍ରପଶୁ ମଧ୍ୟ ପୋଷା ମାନେ,
ସ୍ନେହ ପ୍ରୀତି ଯେବେ ତାକୁ କର ସାବଧାନେ ।
ପଶୁର ଅଧମ ତୁହି ନିତାନ୍ତ ନିର୍ବୋଧ,
କରିବାକୁ ଯାଉ ଉପକାରୀ ପ୍ରାଣବଧ ।
ପାଇଲା ପ୍ରାଣରେ କଷ୍ଟ ତୋର ଉପକାରୀ,
ନିର୍ଲଜ୍ଜ ନିଷ୍ଠୁର ପଶୁ ନ ଦେଖୁ ବିଚାରି ।
ଉପକାରୀ ବନ୍ଧୁ ପଡ଼ିଥିଲେ ବିପଦରେ,
ବେଳ ପାଇ ଅନିଷ୍ଟ ତୁ କରୁ ସହଜରେ ।
ଲୋକ ପ୍ରାଣେ କଷ୍ଟ ଦିଏ ଯେଉଁ ଅତ୍ୟାଚାରୀ,
ପକ୍ଷାନ୍ତରେ ନୁହେ କି ସେ ନରହତ୍ୟାକାରୀ ?
ତୋର ଯେ ମଙ୍ଗଳ ପାଞ୍ଚେ କରି ପ୍ରିୟ ଜ୍ଞାନ,
କେଉଁ ଯୁକ୍ତି ବଳେ ତାର କରୁ ଅପମାନ ?
ବୃଥା ନ ଦିଅନ୍ତି ପଶୁ ଅନ୍ୟ ଲୋକେ କଷ୍ଟ,
ପଶୁର ଅଧମ ତୁହି ଦୁରାଚାର ନଷ୍ଟ ।
ଯେ ଲୋକ ଜୀବନ ଦେଇପାରେ ତୋହପାଇଁ,
ତାହା ମନେ ଦେଉ ଦୁଃଖ, ଲାଜ ମାଡ଼ୁ ନାହିଁ ?
ଉପକାରୀ ବୋଲି ବେଳେ ନ କରୁ ସମ୍ମାନ,
ପଶୁ ! ପଶୁ ! ଧିକ ଧିକ ! ଧିକ ତୋହ ଜ୍ଞାନ !
ଧିକ ତୋତେ ! ଧିକ ତୋତେ ! ଧିକ ତୋହଜ୍ଞାନେ
ନ ଦେଖେଁ ମୁଁ ପଶୁ ମଧ୍ୟ ତୋହର ସମାନେ ।

———

## କବି ଏବଂ ଚିତ୍ରକର

( ଚକ୍ରକେଳି )

କବି ଚିତ୍ରକର    ଦୁଇଟି ଭାଇ,
ନାନା ଚିତ୍ର ଆଣି    ଦେବେ ଦେଖାଇ ।
କେ ବଡ଼ କେ ସାନ    ନାହିଁଟି ଜଣା
ମାତ୍ର ଦୁହିଙ୍କର    ଅସ୍ତ୍ର କଳ୍ପନା !
କେତେକ ଦୃଷ୍ଟାନ୍ତ    ଦେଖି ଜଗତେ,
କବି ବଡ଼ ବୋଲି    ହୁଏ ପରତେ ।
ଜଣକ ହାତରେ    ରହିଛି ତୂଳି,
ଆନ ଜନ ହାତେ    ଲେଖଣୀକାଳି ।

ଦେଖାଏ ଯେ ଜଣେ ବାହାର ଛବି,
ଅନ୍ୟ ରାଜ୍ୟ ଚିତ୍ର ଦେଖାଏ କବି ।
ଜଗତରେ ଯେବେ ନ ଥାନ୍ତେ କବି,
ପାଆନ୍ତେ କି ଲୋକ ଉଚ୍ଚ ପଦବୀ ?
ଅତି ନୀଚ ଜାତି ପଶୁର ବଂଶ,
ବର୍ତ୍ତମାନ ଯାର ଅଟେ ସର୍ବସ୍ୱ ।
ଏମାନେ ଜାଣନ୍ତି ଭୂତ ଘଟନା,
ଏହା ତ କେବଳ କବି କଳ୍ପନା ।
କେତେ ମହାବୀର କେତେ ଧାର୍ମିକ,
କେତେ ମହାରାଜ ଖ୍ୟାତ ବଣିକ
ଭାସି ଯାଉଛନ୍ତି କାଳ ସ୍ରୋତରେ,
ମାତ୍ର ଦେଖୁଅଛୁଁ କବି ଚିତ୍ରରେ ।
ସାବିତ୍ରୀ ଆଦର୍ଶ ସତୀ ଚରିତ,
ଏହା ତ କେବଳ କବି ସଙ୍ଗୀତ ।
ଅପୂର୍ବ ଶ୍ରୀରାମ ସୀତା କାହାଣୀ,
ବାଲ୍ମୀକି ପ୍ରସାଦେ ପାରୁଛୁଁ ଜାଣି ।
କୁରୁ ପାଣ୍ଡବଙ୍କ ଯୁଦ୍ଧ ଘଟଣା,
ଜଗତେ ଯା ସଙ୍ଗେ ନାହିଁ ତୁଳନା,
ବହୁ କାଳ ଗତ ହୋଇଛି ଯାଇ,
ଭୂତ ଅନ୍ଧକାର ଦେଲା ଘୋଡ଼ାଇ,
କୃଷ୍ଣ ଦ୍ୱୈପାୟନ ଲେଖନୀ ଧରି
ଦେଖାଉ ଅଛନ୍ତି ପ୍ରତ୍ୟକ୍ଷ କରି ।
ପ୍ରକୃତିର କେତେ ସୁନ୍ଦର ଦ୍ରବ୍ୟ,
ବିଗତ ଆତ୍ମୀୟ କେତେ ମାନବ,
ଯାଇଛନ୍ତି ମିଶି ପଞ୍ଚଭୂତରେ,
ଦେଖୁଅଛୁଁ ଚିତ୍ର— କରଙ୍କ ବରେ ।
କବି ଚିତ୍ରକର ଏ ବେନି ଜନ
ଦିଅନ୍ତି ଜଗତ ହିତେ ଜୀବନ ।
କବି ଚିତ୍ରକର ମାନବେ ଚୋଟି
ପଦବୀ ଲଭନ୍ତି ଜଗତେ ଋଷି ।

---

## କଅଣ କଲି

ଆସିଥିଲି ଭବେ ସ୍ୱରୂପ ମାନବେ
କି କାର୍ଯ୍ୟ ସାଧନ ପାଇଁ,
ସିଦ୍ଧ କି ସାଧନା, ଆତ୍ମ ପ୍ରତାରଣା,
ବିଷୟ ବୁଝିଲି କାହିଁ ?
ଅପାର ବାସନା, ବିଫଳ କାମନା,
ତଥାପି ଧାବିତ ମନ
ଜୀବନ ପ୍ରବାହେ ମହାଭୟାବହେ
ଅବିଶ୍ରାନ୍ତ ଅନୁକ୍ଷଣ ।
କି ଉନ୍ମାଦ ବେଶେ, କି ମୋହ ଆବେଶେ
ଭ୍ରମି ନୃତ୍ୟ ଦିଶି ଦିଶି,
ସ୍ୱପନ ସମାନେ ନିଶା ଅବସାନେ
କାଳଗର୍ଭେ ଯିବି ମିଶି ।

---

## ନୈରାଶ୍ୟ

( ମଙ୍ଗଳ )

ଜୀବନର ସୁଖସୂର୍ଯ୍ୟ ହୋଇଛି ତ ଅସ୍ତ—
ନିର୍ବାଣ ଆନନ୍ଦ, ତୃପ୍ତି, ଉତ୍ସବ ସମସ୍ତ ।
ମାଡ଼ି ଆସେ ଚତୁର୍ଦ୍ଦିଗୁଁ ଘୋର ଅନ୍ଧକାର,
ହାହାକାର ! ହାହାକାର ! ହାହାକାର ସାର !
ସମସ୍ତ ତାରକାଜ୍ୟୋତି, ଚନ୍ଦ୍ରମା କିରଣ
ତିରୋହିତ ! ଶୂନ୍ୟମୟ ହୃଦୟଗଗନ ।
ନୈରାଶ୍ୟପବନ ବହେ ମହାଭୟଙ୍କରେ,
ବିପଦ ବାରିଦ ଆଚ୍ଛାଦିତ ଗଗନରେ ।
ପୂର୍ବେ ବା ପଶ୍ଚିମେ ଗୃହେଁ, ଦକ୍ଷିଣେ, ଉତ୍ତରେ,
କାହାକୁ ତ ଦେଖୁ ନାହିଁ—ନିମ୍ନ ବା ଊର୍ଦ୍ଧ୍ୱରେ ।
ମସ୍ତକ ଗୁଞ୍ଜିବାପାଇଁ ନାହିଁ ମାତ୍ର ସ୍ଥାନ,
ଜଣାପାଏ ଭୟଙ୍କର ପୃଥ୍ୱୀ ବର୍ତ୍ତମାନ ।
ଉଚ୍ଚାଟନ, ଉଦାସୀନ, ଜୀବନ ଚଞ୍ଚଳ,
ବ୍ରହ୍ମାଣ୍ଡଟା ହେଉଅଛି ଯେସନ୍ତେ ଟଳମଳ ।

ମୁହୂର୍ମୁହୁ ଶୁଣେ ଭୟଙ୍କର ବଜ୍ରାଘାତ,
ଆସେ କରି ଦେବାପାଇଁ ମୋତେ ଧୂଳିସାତ ।
ଆଶାବିଦ୍ୟୁତ୍ କ୍ଷଣେ କ୍ଷଣେ ପ୍ରକାଶି କେବଳ
ଝଲସାଇ ଦେଉଅଛି ନୟନ ଯୁଗଳ ।
ବିଦ୍ୟୁତର ପ୍ରଭା ଯେତେବେଳେ ଯାଏ ଛାଡ଼ି,
ଶତଗୁଣେ ଅନ୍ଧକାର ଆସେ ପୁଣି ମାଡ଼ି ।
ପ୍ରାଣ ପିଣ୍ଡ ଏବେ ହୋଇ ଯିବ ଖଣ୍ଡ ଖଣ୍ଡ,
ସମସ୍ତ ଶରୀର ହୋଇଯିବ ଲଣ୍ଡଭଣ୍ଡ ।
ପ୍ରଳୟର ରୁଦ୍ରମାନେ ଆସୁଛନ୍ତି ଧାଇଁ,
ମୋର ମନ ପ୍ରାଣ ଗ୍ରାସ କରିବାର ପାଇଁ ।
କ୍ରମଶଃ ବିଲୁପ୍ତ ହୋଇ ଆସେ ବାହ୍ୟ ଜ୍ଞାନ,
ପୃଥ୍ୱୀ ଯିବ ରସାତଳେ ହୁଏ ଅନୁମାନ ।
ସହସ୍ରେକ ବଜ୍ର ଆସି ପଡ଼ିବ କି ଶିରେ,
ଧୂଳିସାର ହୋଇଯିବ ଏବେ ପୃଥିବୀରେ ।
ବର୍ତ୍ତମାନ ଚତୁର୍ଦ୍ଦିଗ ଦେଖୁଛି ଅନାଇ,
ସହାୟ, ଭରସା, ଆଶା, କିଛିମାତ୍ର ନାହିଁ ।
ଛିନ୍ନ ଭିନ୍ନ ଗ୍ରହ ତାରା ଆକାଶ ମାର୍ଗରେ,
ପଡ଼ିବେ କି ଭାଙ୍ଗି ଆସି ମୋହ ମସ୍ତକରେ ?
ଜଗତ କି ହୋଇ ଯାଇଅଛି ଛିନ୍ନ ଭିନ୍ନ ?
ଆଶା ମାତ୍ର ଦେଖୁ ନାହିଁ ଆଶ୍ରୟର ଚିହ୍ନ ।
ଆହା ମୋର ଭାଗ୍ୟର କି ଏଡ଼େ ବିଡ଼ମ୍ବନା !
ହୃଣାକ୍ଷରେ ପୂର୍ବେ ମୋତେ ଥିଲି ନାହିଁ ଜଣା ।
ସହସ୍ର ପିଶାଚ ଭୟଙ୍କର ରୂପ ଧରି
ଦଳି ଦେଉଛନ୍ତି ମୋତେ କ୍ଷୁଦ୍ର କୀଟ ପରି !
ଯାଉ ସବୁ, ରହିଲି ମୁଁ ଏବେ ନିଶ୍ଚିନ୍ତରେ,
ମନ ପ୍ରାଣ ସମର୍ପଣ କରି ପ୍ରଭୁ କରେ ।

---

## ଆଶାର ମେଲାଣି

( ଭାଗବତ ବୃତ୍ତ )

ଯାଇଛି କେତେକାଳ ବହି, କି ହେବ ପୂର୍ବକଥା କହି ?
ହୃଦୟ ମୋର ଚିନ୍ତାନଳେ, ପୋଡ଼ି ତ ଯାଉଛି ବିକଳେ ।
ରହିଛି ଭସ୍ମ ଅବଶେଷ, ନାହିଁ ତ ସୁଖାଲୋକ ଲେଶ ।
ବିଳାପ କଷ୍ଟ ହାହାକାର, ଜୀବନେ କରିଛି ମୁଁ ସାର ।
ଯାଇଛି ସୁଖ ଶାନ୍ତି, ଯାଉ; ବାହୁଡ଼ି ନ ଲେଉଡ଼ି ଆଉ ।
ଯାଇଛି ସୁଖଭୋଜ ସରି, ଉଚ୍ଛିଷ୍ଟ ମାତ୍ର ଅଛି ପଡ଼ି ।
ଆଉ ସେ ମହାକାଳ ଫଳ, ଜୀବନ ନ କରୁ ଚଞ୍ଚଳ ।
କିପାଇଁ ଆଶା ଭୟେ ଭୟେ, ପ୍ରବେଶ କରୁ ମୋ ହୃଦୟେ ?
ଆଣିଛୁ କି ଦ୍ରବ୍ୟ ନୂତନ, ମୋହିତ କରିବୁ ଜୀବନ ?
ଦେଇଛି ତୋତେ ତ ମେଲାଣି, କିପାଁ ଆସିଛୁ ଠାକୁରାଣି ।
ନାହିଁ ତୋ ପ୍ରତି ଅନୁରାଗ, ହୃଚ୍ଛନ୍ଦେ କଲି ପରିତ୍ୟାଗ ।
ନୂତନ କିଛି ଉପକାର, ଅବା ନୂତନ ସମାଚାର,
ଆସିଛୁ ଘେନି ବର୍ତ୍ତମାନ, ଯାହା ମୁଁ କରିବ ସମ୍ମାନ ?
ତୋତେ ମୁଁ ଭଲରୂପେ ଜାଣେ, ମେଲାଣି ଦେଲି ପୂର୍ଣ୍ଣପ୍ରାଣେ
ତୁମ୍ଭଙ୍କୁ ମଣି ମୁହିଁ ଦେବୀ, ଚିର ଜୀବନ ଥିଲି ସେବି ।
ଜାଣିଲି ଭଲରୂପେ ପରି, ପିଶାଚୀ ଦେବୀ ରୂପାନ୍ତରୀ ।
ତୁମ୍ଭଙ୍କୁ ଭଜୁ ବା ନ ଭଜୁ, କୌଶଳେ ବାନ୍ଧି ମାୟାରଜ୍ଜୁ
କରିବ ମାନବେ ବନ୍ଧନ, ଜଗତେ କରୁଛ ଭ୍ରମଣ ।
ପଡ଼ିଣ ତୁମ୍ଭର ବନ୍ଧନେ, ଭ୍ରମନ୍ତି ଲୋକେ ଅଚେତନେ ।
ରଖିଛ ମାନବଙ୍କୁ ଟାଣି, ଜଗତେ ତୁମ୍ଭେ ଠାକୁରାଣି ।
ଦେଉଛ ସୁଖର ଆଶ୍ୱାସ, ମାତ୍ର ମୁଁ ନ କରେ ବିଶ୍ୱାସ ।
ତୁମେ ତ ବିଶ୍ୱାସଘାତିନୀ, ଜଗତେ ଯନ୍ତ୍ରଣାଦାୟିନୀ ।
ମରେ ମୁଁ ପଛେ କଷ୍ଟ ପାଇ, କିପାଁଇ ରଖିଛ ଭୁଲାଇ ?
କପଟ ବନ୍ଧୁ ପ୍ରତାରଣା, ଯମକୁ ବଳି ସେ ଯନ୍ତ୍ରଣା ।
ଜୀବନଯାକ କଷ୍ଟ ବିତି, ବୁଝିଛି ଦେବୀ ତୁମ୍ଭ ରୀତି ।
ତୁମ୍ଭ କୌଶଳ ଅଛି ଜଣା, ନ କର ଆଉ ପ୍ରତାରଣା ।
ଦେଇ ସକଳ ଜଳାଞ୍ଜଳି, ରହିଛି ପରକାଳ କଳି ।
ମୋଠାରେ ତୁମ୍ଭର କୌଶଳ, ଜାଣିବ ଅନର୍ଥ କେବଳ ।
ଦେଖାଉଛ ତ ସୁଖଛାୟା, ନାହିଁ ମୋ ତହିଁପ୍ରତି ମାୟା ।
ତୁମ୍ଭଠୁଁ ହେଲେ ମୁଁ ବିମୁଖ, ଲଭିବି ପ୍ରୀତି ଶାନ୍ତି ସୁଖ ।
ଇଚ୍ଛାରେ ଦେଉଛି ମେଲାଣି, ଅନ୍ୟତ୍ର ଯାଅ ଠାକୁରାଣି !
ନ ଆସ ପାଶେ ପୁନର୍ବାର, ଯାଆନ୍ତୁ ଦେବି ! ନମସ୍କାର ।

---

## ଅନନ୍ତ ମିଳନ

( ଆଷାଢ଼ଶୁକ୍ଳ ବାଣୀ )

ଈଶ୍ୱର ଅନନ୍ତ, ଅନନ୍ତ ରାଜ୍ୟ,
ଗଗନ ଅନନ୍ତ, ଅନନ୍ତ କାର୍ଯ୍ୟ,
ମାର୍ଗଣ ଅନନ୍ତ, ଅନନ୍ତ ପ୍ରାଣୀ,
ସଂସାର ସାନ୍ତ, ଏ କଥା ନ ଜାଣି,
ତୁମ୍ଭେ ଅନୁକ୍ଷଣ
ମୋହନିଦ୍ରାରେ ଅଛ ଅଚେତନ । ୧ ।

ଆସିଛ ଅନନ୍ତୁ, ଯିବ ଅନନ୍ତେ,
ଚାଲିବାକୁ ହେବ ଅନନ୍ତ ପଥେ,
ମୁହୂର୍ତ୍ତ ମିଳନ ଯାହା ସଙ୍ଗରେ,
ବନ୍ଧୁ ବୋଲି ତାକୁ ଧର କୋଳରେ
ନ ଥାଏ ଚେତନା,
ବିଚ୍ଛେଦେ ଦିନେ ଭୁଞ୍ଜିବ ଯାତନା ।୨।

ମାର୍ଗେ ଯା ସଙ୍ଗେ କ୍ଷଣିକ ମିଳନ,
ବାନ୍ଧୁଛ କି ହେ ତୁମ୍ଭେ ତାହା ମନ ?
ଜାଣିବ ସେ ତ ତୁମ୍ଭର ସକାଶେ
ନ ରହିବ କେବେ ସର୍ବଦା ପାଶେ,
ଯିବ ଚାଲି କାହିଁ,
ବାହୁଡ଼ି ପଛକୁ ବେଳେ ନ ଚାହିଁ ।୩।

ଅନନ୍ତ ରାଜ୍ୟେ ଅନନ୍ତ ଆବାସେ,
ଅନନ୍ତ ପ୍ରାଣୀ ଯାନ୍ତି ଯାହା ପାଶେ,
ଅନନ୍ତ ଦ୍ରବ୍ୟେ ଅନନ୍ତ ଆଧାର,
ଯାଇ ସକଳେ ହେବେ ଏକାକାର,
ତହିଁ ସନ୍ଦର୍ଶନ,
ଜାଣିବ ତାହା ଅନନ୍ତ ମିଳନ । ୪ ।

— —

## ଅନନ୍ତସାଗର

(ରାଗ—ଭୂପାଳ)

ଦିବା ନିଶି ପଡ଼ି ଉଠିଛୁ ତ ଧାଇଁ,
ଦଣ୍ଡେ ବସି ଭାଳି— ବାକୁ ବେଳ କାହିଁ ?
କଳ୍ପନାର ଘର ବନାଏଁ ମାର୍ଗରେ,
ନୈରାଶ୍ୟରେ ଆଶା ବାନ୍ଧେଁ ଥରେ ଥରେ ।
ଜୀବନ ସଂଗ୍ରାମ କରୁଛୁ ମାର୍ଗରେ,
ଅନୁତାପ ଅଶ୍ରୁ ଝରେ ନୟନରେ ।
ବିଷାକ୍ତ ବାଣରେ ଜଳୁଛି ହୃଦୟ,
କେବେ ଅନୁଭବେ ସୁଖ ଶାନ୍ତିମୟ ।
ଆଗ ଅନ୍ଧକାରେ ବଢ଼ାଉଛୁ ହାତ,
ମାହକ ନ ପାଏଁ କିଛି ହିଁ ସାକ୍ଷାତ ।
ପଛେ ଯା ରହିଲି ପଡ଼ିଲି ପଛରେ
ବିସ୍ମୃତି ଅନ୍ଧାର ଘୋଡ଼ାଏ କ୍ରମରେ ।
ଆଗ ପଛ କରି ବହୁତ ମାନବ
ଧାଉଁଛନ୍ତି ସଙ୍ଗେ କରେଁ ଅନୁଭବ ।
ଏହିପରି ଧାଇଁ ଧାଇଁ କ୍ରମଶରେ
ମିଶିଯିବି ପଡ଼ି ଅନନ୍ତ ସାଗରେ ।

———

## ପଶାଖେଳ

( କେଦାର ଚକ୍ରକେଳି ବାଣୀ )

ଆଶା ଉଲ୍ଲାସରେ ଖେଳିଲି ପଶା,
ଜିଣି ଯିବି ବାଜି କରି ଭରସା ।
ସାରି ବାଛି ନେଲି ହଳଦୀ କାଳି,
ଫାଟି କରି ଦେଲି କାଠିକୁ ଢାଳି ।
ଇଚ୍ଛା ଥିଲା ପଡ଼ୁ ଷୋଳ ସତର,
ମାତ୍ର ପଡ଼ିଗଲା ଦାନ ଅଠର ।

କି କରିବ, ସେହି ଦାନକୁ ଖୁଣ୍ଟି,
ଯୁଗ ଥିଲା ନେଲ ସାରକୁ ବାହି ।
ବନ୍ଧାଥିଲା ସାର ଯୋଡ଼ାଏ ଯୋଡ଼,
ଦାନ ଗଲା ପୁଅ ବାଆର ପଡ଼ ।
ବାହିନେଲା ସାର ମନ ଆନନ୍ଦେ,
ନ ମାରିବ କେହି ଥିଲା ସ୍ୱଚ୍ଛନ୍ଦେ ।
ଯୋଡ଼ ସାରେ ଥାଏ ବହୁତ ବଳ,
ବିପକ୍ଷ ନ ମାରେ କରି କୌଶଳ ।
ତିନ ଘର ସାର ଅଇଲା ବୁଲି,
ଯାଉଛି ଘରକୁ ପାଚିବ ବୋଲି ।
ଡାକଥିଲା ଦାନ ବାଆର ପୁଅ
ମାଇକ ପଡ଼ିଲା ଛ ତିନ ନଅ !
ଗୋଟିକୁ ଯେ ଗଲା ଘରକୁ ନେଇ,
ବିପକ୍ଷ ଆରଟା ଦେଲା ବାଡ଼େଇ ।
ଆଉ ଥରେ କରି ଉଚରେ ପାଟି
କଚେବାର ବୋଲି ଡାକିଲା କାଠି ।
ମାଇ କାଠି ମୋର କଥା ନ ମାନି
ପଡ଼ିଗଲା ଦାନ କେବଳ ତିନି ।
ଚଉତିକ ଦାନରେ ବାହିଲା ସାର,
ପୁଣି ଡାକିଦେଲା କଚେ ବାଆର ।
କାଠି ତ କାହାରି କଥା ନ ଶୁଣେ,
ପଡ଼େ ବଡ଼ ଦାନ କପାଳ ଗୁଣେ ।
ସମସ୍ତେ ତ ଉଚେ କରନ୍ତି ପାଟି,
ସବୁରି ବୋଲି କି ମାନଇ କାଠି ?
ଆଉ ଜଣ ଦେଖେଁ ନ ଜାଣେ ଖେଳ,
ସତର ଅଠର ଦେଉଛି ତାଳ ।
ଖେଳ ଖେଳ ମୁଁ ତ ଖେଳୁଆ ଟାଣ,
ଆଜ ରେ କପାଇଁ ନ ପଡ଼େ ଦାନ ?
କାଠିଟା ଯାଉଛି ଦୂରକୁ ଗଡ଼ି,
ପାଞ୍ଚ ତିନ ଅଠ ଯାଉଛି ପଡ଼ି ।
ଛକଚୁକ କରି ଧରୁଛି କାଠି
ମାଇକ ନ ଗଡ଼ି ପଡ଼େ ଓଲଟି ।
ଏଥିରେ କପରି ଯୁଗ ବାନ୍ଧିବ ?
ଜାଣିଲି ଏଥର ନିଶ୍ଚେ ହାରିବ ।
ଆଜ ଆଉଟାଏ ନ ପାରେ କାଟି
ଏଣିକି ବୋଲି ଯେ ନ ମାନେ କାଠି ।
ସମସ୍ତେ ସଂସାରେ ଖେଳନ୍ତି ପଶା,
ଜିଣିବାକୁ କରି ମନେ ଭରସା ।
କେହି ବା ଜିଣଇ କେହି ବା ହାରେ,
ଲାଗିଛି ଏ ଭଳି ଖେଳ ସଂସାରେ
ଖେଳ ଖେଳ କେହି ପାଇଛି ଜ୍ଞାନ,
ସତର ଅଠର ପଡ଼ଇ ଦାନ ।
ସାର ବାହିବାର ଜାଣେ କୌଶଳ,
ଜିଣା ପଟ ତାରି ଜାଣ କେବଳ ।
କେତେଜଣ ଛନ୍ତି ଏପରି ଲୋକ,
ଜିଣୁଥିବେ ବସି ଜୀବନଯାକ ।
ଅଛନ୍ତି ତ ଥୋକେ ଖେଳରେ ଟାଣ,
କପାଳ ଦୋଷରେ ନ ପଡ଼େ ଦାନ ।
ଜଗିଜାଗି ସାର ନିଅନ୍ତି ଟାଣି,
ଦୁଇ ଏକ ବାଜି ପାରନ୍ତି ଜିଣି ।
ଡାକିଲେ ପଡ଼ୁଛି କାହାରି ଦାନ,
ମାଇ ନାହିଁ ତାରି ଖେଳରେ ଜ୍ଞାନ ।
କପରି ବାହିଲେ ପାଚିବ ସାର,
ଏ ପ୍ରକାର ଜ୍ଞାନ ନାହିଁ ତାହାର ।
ବିପକ୍ଷ ଖେଳୁଆ ସୁଯୋଗ ପାଇ,
ବାଟରେ ତା ସାର ଦିଏ ବାଡ଼େଇ ।
ଥୋକେ ତ ନ ଧରି ଜାଣନ୍ତି କାଠି,
ସତର ଅଠର କରନ୍ତି ପାଟି ।
ସାର ବାହିବାରେ ମୂର୍ଖ ନିପଟ
ସର୍ବଦା ତାହାଙ୍କ ହାରିବା ପଟ ।
ବାହି ଜାଣେ ସାର ପଡ଼ଇ ଦାନ,
ଜିଣା ପଟ ତାରି ସେ ଭାଗ୍ୟବାନ ।
କେବେ କେବେ ମଧ୍ୟ କପାଳ ଦୋଷେ
ବିପକ୍ଷ ହାତରେ ସେ ହାରି ବସେ ।

ପାଚିଲା ସାରକୁ ଆପଣେ ଉଠାଇ
ବିପକ୍ଷ ସାରକୁ ମାରିବା ପାଇଁ ।
ସଞ୍ଚିଥିବା ଧନ ଉଜ୍କାଲେ ଦେଇ
ବିପକ୍ଷ ମାମଲା ହେବାକୁ ଜୟୀ,
ଏପରି ଅନ୍ଧନ୍ତ ଥୋକାଏ ଲୋକେ
ହାରି ଜିଣା ଦୁଇ ତାହାଙ୍କ ପକ୍ଷେ ।
ଦେଖୁଛି ସଂସାର ଲୋକ ସମସ୍ତ
ପଶାଖେଳ ପାଇଁ ନିୟତ ବ୍ୟସ୍ତ ।
ନ ଖେଳି କେ ହୋଇ ପାରିବ ଥୟ ?
ଜିଣୁ ହାରୁ ପଛେ ଖେଳେ ନିଶ୍ଚୟ ।
ଜୀବନଟାଯାକ ଖେଳିଲି ପଶା,
ଜିଣିବି ସର୍ବଦା ଥିଲା ଭରସା ।
ହାରି ଜିଣି ଗଲା ସମସ୍ତ ଦିନ,
ହାରିବା ଜିଣିବା ଦୈବ ଅଧୀନ ।
ଖେଳିବାକୁ ଆଉ ସାମର୍ଥ୍ୟ ନାହିଁ,
ଯାଉଛି ଘରକୁ ଶୋଇବା ପାଇଁ ।

———

## ହିନ୍ଦୁ ବିଧବା

( ରାଗ—ଆଶାବରୀ )

କେ ଗୋ ମା ! ତୁ ବସିଅଛୁ ମଳିନବଦନା !
ଶୟନେ ସ୍ୱପନେ ସାରି ଜାଗ୍ରତେ ଭାବନା !
ଜଗତ ସଂସାର ଦେଖୁଛୁ ତୁ ଶୂନ୍ୟମୟ,
ଛିନ୍ନ ଭିନ୍ନ ହୋଇ ଯାଉଅଛି ତୋ ହୃଦୟ !

ଅନାୟତେ କେବେ ପଡ଼ି ଯାଉଛୁ ଭୂତଳେ,
କେବେ ଉଚ୍ଚେ କାନ୍ଦୁଛୁ ତୁ ଜୀବନ ବିକଳେ !
କିଛି ମାତ୍ର ଆସ୍ଥା ରଖି ନାହୁଁ ତୁ ଜୀବନେ,
ଅବିରଳ ଅଶ୍ରୁ ଧାର ଝରୁଛି ନୟନେ !

ଭୁଲ ନା ଭୁଲ ନା, ମା, ତୁ ହିନ୍ଦୁର ଲଳନା,
ଉଠ ମା ଯତ୍ନରେ କର କର୍ତ୍ତବ୍ୟ ସାଧନା ।
ଦେବ ତୁଲ୍ୟ ସେବୁଥିଲୁ ପତି ଶ୍ରୀଚରଣ,
ଏବେ ସେହି ବ୍ରତ ହୋଇଅଛି ଉଦ୍ୟାପନ ।

ସଂକଳ୍ପ କର ତୁ ଏବେ ପରସେବା ବ୍ରତ,
ଢାଳି ଦେ ମା ! ମନ, ଧ୍ୟାନ, ଦେହର ସାମର୍ଥ୍ୟ ।
ଥିଲୁ ନାରୀ ହେବୁ ଦେବୀ, କି ଅଛି ଭାବନା ?
ତେଜ ତୁ ଇନ୍ଦ୍ରିୟସୁଖଲାଳସା, ବାସନା !

କାଢ଼ି ପକା ଜନନୀ ! ତୋ ଦେହ ଅଳଙ୍କାର,
ମଣ ଏବେ ସେହି ସବୁ ଅଟେ ଦେହଭାର !
ଲଲାଟ ସିନ୍ଦୂରବିନ୍ଦୁ ପକା ମା ତୁ ପୋଛି,
ଆନନ୍ଦ ଉତ୍ସବ ଆଜିଠାରୁ ଯାଉ ଲୁଚି !

ଜନନୀ ! ତୋ ହେବ ଯହିଁ ଲଜ୍ଜା ନିବାରଣ,
ପରିଧାନ କର ସେହି ମାତ୍ରକ ବସନ ।
ସୁଖଭୋଜ୍ୟ ଦ୍ରବ୍ୟେ ତୋର ନାହିଁ ପ୍ରୟୋଜନ,
ଆଜିଠାରୁ ହବିଷ୍ୟାନ୍ନ କର ତୁ ଗ୍ରହଣ ।

ପାର୍ଥିବ ଅନିତ୍ୟ ସୁଖ ଯାଇଅଛି ସରି,
କାଟ ମା ତୁ କାଳ ନିୟମିତ ବ୍ରତ ଧରି ।
ଆଜି ଦିନଠାରୁ ମା ତୁ ହେଲୁ ସନ୍ନ୍ୟାସିନୀ,
ଜପ ହରି ନାମ ମନ୍ତ୍ର ଦିବସ ଯାମିନୀ ।

ଫେଇ ଦେ ମା ଯତ୍ନବଦ୍ଧ ମସ୍ତକର ବେଣୀ,
ଲୁଣ୍ଠି ବୁଲିପଡ଼ୁ ପୃଷ୍ଠଦେଶେ ଜଟାଶ୍ରେଣୀ ।
ପାର୍ଥିବ କଳଙ୍କ ତୋତେ ନ କରୁ ପରଶ,
ପବିତ୍ର ସତୀତ୍ୱ ଧର୍ମ ମଣ ତୁ ସର୍ବସ୍ୱ ।

ସତୀତ୍ୱ ପରମ ଧନ ଯତ୍ନେ ରକ୍ଷା କର,
ବର୍ତ୍ତମାନ ଏକମାତ୍ର ସମ୍ବଳ ତୋହର ।
ପିତୃକୁଳ ଶ୍ୱଶ୍ରୂକୁଳ ଉଦ୍ଧାର କାରଣେ
ମନ ଦେ ଗୋ ନିୟମିତ ବ୍ରତ ଆଚରଣେ ।

ଆପଣେ ଉଦ୍ଧରି କର କୁଳକୁ ଉଦ୍ଧାର,
ଜୀବନରେ ବ୍ରହ୍ମଚର୍ଯ୍ୟ ବ୍ରତ କର ସାର ।
ଅସାବଧାନ ତୁ ହେଲେ ଇନ୍ଦ୍ରିୟ ପ୍ରବଳେ,
ପିତୃ ଶ୍ୱଶ୍ରୁ ବେନି କୁଳ ଯିବେ ରସାତଳେ ।

ବର୍ତ୍ତମାନ ତୋହ ପାଶେ ଆସି ଲୋକମାନେ
ଭକ୍ତିରେ ପୂଜିବେ ଦେବୀ ଜନନୀ ସମାନେ ।
ଧାର କର ଜନନୀ ଗୋ ! ପର ସେବା ବ୍ରତ,
ମଣ ଲୋକଗଣେ ତୋର ପିତା, ପୁତ୍ରବତ ।

ପ୍ରବଳ ହେଲେକ ଦେହସ୍ଥିତ ରିପୁଗଣ,
ବିକଳରେ ପ୍ରଭୁ ପଦେ ପଶିବୁ ଶରଣ ।
ଆଜଠାରୁ ହେଲୁ ମା ତୁ ଦେବୀ ସନ୍ନ୍ୟାସିନୀ,
ଜନସମାଜରେ ହେବୁ ଆନନ୍ଦଦାୟିନୀ ।

ତୋର ସ୍ୱାମୀ ଏବେ ରହିଛନ୍ତି ସ୍ୱର୍ଗବାସେ,
ଅବଶ୍ୟ ମିଳିବୁ ତୁହି ଯାଇ ତାଙ୍କ ପାଶେ ।
ତୋହର ସମ୍ପର୍କ କେହି ନାହିଁ ଆତ୍ମପର,
ସଂସାର ସମସ୍ତ ଲୋକ ଆତ୍ମୀୟ ତୋହର ।

ସାର କର ଜୀବନରେ ପରସେବା ବ୍ରତ,
ବିସର୍ଜନ ଦେ ଗୋ ସୁଖ ଲାଳସା ସମସ୍ତ ।
ସ୍ୱାମୀ ଛିନ୍ନ କରିଛନ୍ତି ପାର୍ଥିବ ବନ୍ଧନ,
ମାତ୍ର ଛିନ୍ନ ହୋଇ ନାହିଁ ଆତ୍ମାର ମିଳନ ।

———

## ଘରବାହୁଡ଼ା ବାଟୋଇ

( ରାଗ—କଳହଂସ କେଦାର )

ପକ୍ଷିଏ ଆକାଶରୁ ଗଲେଣି ଉଡ଼ି,
ଅସ୍ତାଚଳରେ ସୂର୍ଯ୍ୟ ଗଲେଣି ବୁଡ଼ି,
ଚତୁର୍ଦ୍ଦିଗରୁ ହୋଟି ଆସେ ତିମିର,
ବାହୁଡ଼ିଛି କୃଷକ କ୍ଳାନ୍ତ ଶରୀର । ୧

ଗୋଟଗୋଟି ଦୃଶ୍ୟ ହୁଏ ନାହିଁ ପ୍ରାନ୍ତରେ,
ଗଲେଣି ବିଶ୍ରାମକୁ ବାହୁଡ଼ି ଘରେ,
ଗୋଷ୍ଠରୁ ବଣା କାହିଁ ଗୋଟିଏ ଗାଈ
ଟେକଣି ପୁଚ୍ଛ ଗୃହେ ଧାଇଁଛି ଯାଇ । ୨
ମାର୍ଗ ବୃକ୍ଷରେ କାହିଁ ରାବେ ଉଲ୍ଲୁକ,
ମଣ୍ଡିତ ଡାଳ ପତ୍ରେ ଖଦ୍ୟୋତ ଥୋକ,
ବିଲୁଆ ବିଲ ମଧ୍ୟେ ଧାଏଁ ଚଞ୍ଚଳେ
ଆହାର ଲୋଡ଼ିବାକୁ ଭେକ ବିକଳେ । ୩
ଆକାଶେ ଦୁଇ ଚାରି ଫୁଟିଛି ତାରା,
ଅଳସେ ଆଖି ମେଲି ଚାହୁଁଛି ପରା
ମାଡ଼ି ଆସେ ଅନ୍ଧାର ପ୍ରବଳ ହୋଇ,
ନିର୍ଜନ ମାର୍ଗେ ଚଲେ ଏକ ବାଟୋଇ । ୪
ଥକି ଗଲଣି ଚାଲି ଦିବସ ଯାକ,
କ୍ଷୁଧା ତୃଷାରେ ମୁହଁ ନ ସ୍ଫୁରେ ବାକ୍ୟ,
ସର୍ବାଙ୍ଗ ହୋଇଛି ତା ଧୂଳିଧୂସର,
ପୋଷି ଚାଲିଛି ମନେ ଆଶା ମାତର । ୫
ଗ୍ରାମକୁ ଲକ୍ଷ୍ୟ କରିଅଛି ସେ ଧାଇଁ,
ଆନ ଦ୍ରବ୍ୟରେ ଦୃଷ୍ଟି କଞ୍ଚିତେ ନାହିଁ,
ଦୃଷ୍ଟି ରଖିଛି ମାତ୍ର ଗ୍ରାମ ପ୍ରତି ସେ,
ଘୋର ଅନ୍ଧାର ମଧ୍ୟେ, ଗ୍ରାମ କି ଦିଶେ ? ୬
ଅପାର ଦିନୁ ରହିଥିଲା ବିଦେଶେ,
କାଟିଛି କାଳ ତହିଁ କାୟାର କ୍ଲେଶେ,
ପୋଷିଛି ଆଶା ମନେ ମିଳିବ ଘରେ,
ପୁତ୍ର କଳତ୍ରେ ଦେଖିବ ସେ ନେତ୍ରରେ । ୭
ଗ୍ରାମର ଛାୟା ଦୂରୁ ଦିଶିଲା ନେତ୍ରେ
ନବଜ ନୀରଦ କି ଉଦୟ କ୍ଷେତ୍ରେ,
ଦିଶିଲା ତହୁଁ ଏକ କ୍ଷୀଣ ଆଲୋକ,
ଶୁଭିଲା ଅଳ୍ପ ଗ୍ରାମ ମନ୍ଦିର ଶଙ୍ଖ । ୮
ଗ୍ରାମ ପ୍ରାନ୍ତ ପ୍ରାନ୍ତରେ ବିଲୁଆ ଥୋକେ,
ମିଳି ରଡ଼ି ଛାଡ଼ନ୍ତି ହୋକେ ହୋ ହୋକେ,
ଶଙ୍କା ବିଲୁଆ ପରି ହେଲା ପରତେ,
ଚଳିଲା ପୁଣି ବେଗେ ମନ ଉଷତେ । ୯

ଗ୍ରାମରେ ମିଳି ନିଜ ଦ୍ୱାର ପାଶରେ
କପାଟେ ହାତ ମାରି ଡାକେ ଉଚ୍ଚରେ,
ମାତ୍ର ତ ଦେଉନାହିଁ ଉତ୍ତର କେହି,
ଅଥବା ଦେଉନାହିଁ କପାଟ ଫେଇ । ୧୦
କିଛୁକ୍ଷଣ ଉତ୍ତାରେ ଭୃତ୍ୟକୁ ବାରି
ଅଇଲା ଦ୍ୱାର ଫେଇ ଘରୁ ବାହାରି,
ମଳିନବେଶା ଏକ ଛିନ୍ନବସନା
ଶିଶୁ ଯୁଗଳ କୋଳେ ଏକ ଲଳନା । ୧୧
ସେ ତିନିଗୋଟି ପ୍ରାଣୀ ପ୍ରେମଗଦ୍‌ଗଦେ
ପଡ଼ିଲେ ଯାଇ ସେହି ବାଟୋଇ ପଦେ,
ଯେଉଁ ଆନନ୍ଦ ଜାତ ମୁଖକୁ ଚୁହିଁ,
କବି ଅକ୍ଷମ ତାହା ବର୍ଣ୍ଣିବା ପାଇଁ । ୧୨
ଜଗତ ସର୍ବ ସୁଖ ପ୍ରେମ ମାଧୁରୀ
ସେହି ମିଳନେ ଅଛି ସମ୍ପୂର୍ଣ୍ଣ ପୂରି,
ଏତିକ ସିନା ଜଗତର ବନ୍ଧନ,
ଆବଦ୍ଧ ଛନ୍ତି ତହିଁ ସକଳ ଜନ । ୧୩

— —

## ନିର୍ଜନେ

( ରାଗ—ମଙ୍ଗଳ )

ପୃଥିବୀ ବିବିଧ ସୁଖ କରିଛି ସମ୍ଭୋଗ,
ଭୁଞ୍ଜିଛି ତ ସୁଖ, ଶାନ୍ତି, କଷ୍ଟକର ରୋଗ ।
ବିତିଛି ଜୀବନେ ସୁଖ ଧନ ଉପାର୍ଜନେ,
ସମ୍ବାଦପତ୍ରିକା ପାଠ, ଗ୍ରନ୍ଥ ଅଧ୍ୟୟନେ ।
ବହୁରୂପ ସାଜିଅଛି ଲୋକଙ୍କୁ ଭୁଲାଇ,
ବକ୍ତୃତା କରିଛି କେତେ ସଭାସ୍ଥଳେ ଯାଇ ।
ସ୍ୱଦେଶହିତୈଷୀ ବୋଲି ଜଣାଇଛି ଲୋକେ,
ମୋ ବକ୍ତୃତା ଶୁଣି ଠକି ଯାଇଛନ୍ତି ଥୋକେ ।
ହେଉ ବା ନ ହେଉ କାର୍ଯ୍ୟ କିଞ୍ଚିତ ମାତର,
ଊଣା ଥିଲା କାହିଁ ବକ୍ତୃତାର ଆଡ଼ମ୍ବର ?
ପର ଉପକାର କିମ୍ବା ପରର ଅନିଷ୍ଟ,
ଜୀବନ କାଳରେ କରି ଯାଇଛି ଯଥେଷ୍ଟ ।
କରିଛି ମୁଁ କେତେ ଲୋକେ କେତେ ଅପମାନ,
ତ୍ରୁଟି କରି ନାହିଁ ପୁଣି ଦେବାକୁ ସମ୍ମାନ ।
ନାଚି କୁଦି ହସି ଖେଳି ବିଷାଦେ କ୍ରନ୍ଦନେ,
ନାନାରୂପ ସୁଖ ଦୁଃଖ ବିତିଛି ଜୀବନେ ।
ଥାଉ ଏବେ ସଭା ଗୃହ ସାନ୍ଧ୍ୟ ସମ୍ମିଳନ,
ଥାଉ ନାଟ୍ୟଶାଳା ଗୀତ ରେଲ୍ ଇଷ୍ଟେସନ ।
ଥାଉ ସେ ବଜାର ହାଟ ଲୋକ କୋଳାହଳ,
ଏବେ ତହୁଁ ଦେଖୁଛି ତ ଅଶାନ୍ତି କେବଳ ।
ଲୀଳାମୟୀ ରଙ୍ଗାଳୟେ ଧରୁ ନାହିଁ ମନ,
କରିଛି ନିବୃତ୍ତି ସ୍ରୋତେ ଆତ୍ମବିସର୍ଜନ ।
ପାପ ଶିଖା ତେଜିଅଛି ଜୀବନ-ପତଙ୍ଗ,
ନିର୍ବିଷ ନିସ୍ତେଜ କାଳସ୍ୱରୂପ ଭୁଜଙ୍ଗ ।
ନିଃଶବ୍ଦେ ବାହିତ ଜୀବସ୍ରୋତ ଧୀରେ ଧୀରେ,
ନିଃଶବ୍ଦେ ମିଳିବ ଯାଇ କାଳସିନ୍ଧୁ ନୀରେ ।
ନିତାନ୍ତ ବିଚିତ୍ର ମୋର ଜୀବନସମସ୍ୟା,
ହରି ହରି ବୋଲି, ମୋର ହେଲାଣି "ଭୀମସ୍ୟା-"*
ଥାଉ ଏବେ ସବୁ କଥା ଅନ୍ଧାର ନିର୍ଜନେ,
କରିବି ବିଭୁଙ୍କୁ ଚିନ୍ତା ଏହି ବାଞ୍ଛା ମନେ ।

———

## ନବଜୀବନ

( ରାଗ – ମଙ୍ଗଳ )

ଦୁଃଖ ତାପ, ହାହାକାର କରି ଚିରଦିନ,
ପବିତ୍ର ଆତ୍ମାକୁ ପ୍ରଭୋ ! କରିଛି ମଳିନ ।
ଦିବାନିଶି ଆପଣାକୁ କରି ଅବିଶ୍ୱାସ,
ପୋଛିଛି ନୟନଅଶ୍ରୁ, ହତାଶ ନିଶ୍ୱାସ !

* ଭୀମସ୍ୟାପି ରଣେଭଙ୍ଗଃ ମୁନେରପି ମତିଭ୍ରମଃ

ଖଣ୍ଡକର ପ୍ରଲୋଭନେ ଆହେ ବିଶ୍ୱପତି,
ଦେଇଛି ଆତ୍ମାକୁ ଯଥୋଚିତ ଅଧୋଗତି !
ଚିତ୍ତ ବିନୋଦନ, ବ୍ୟର୍ଥ ଐଶ୍ୱର୍ଯ୍ୟ ଲୋଭରେ,
ତୁମ୍ଭଠାରୁ କେତେଥର ରହିଛି ଦୂରରେ !
ବିଗତ ଘଟଣା କଥା ଭାଳି ବାରମ୍ବାର,
ହେ ପ୍ରଭୁ ! ହୃଦୟ ହେଉଛି ତ ଛାରଖାର !
ସେ ଘଟଣାମାନ ଚିନ୍ତା କରି ଭବିଷ୍ୟତ
ଜଣାଯାଉଛି ତ ମୋର ଅନ୍ଧକାରବୃତ ।
ଆତ୍ମକୃତ କାର୍ଯ୍ୟ ଚିନ୍ତା ବ୍ୟର୍ଥରେ ଜୀବନ,
ହୋଇପଡ଼ୁଛି ତ ଅନ୍ଧତମସେ ଆଚ୍ଛନ୍ନ ।
କେତେ ଅଭିଳାଷ ଦ୍ରବ୍ୟ ଅଛି ପୃଥିବୀରେ,
ପାଇବାକୁ ଲୋଡ଼ୁଛି ତ କୁଟିଳ ବୁଦ୍ଧିରେ,
ଅସତ ଚିନ୍ତାରେ କଲି ଆତ୍ମା କଳୁଷିତ,
ବାସନା ତ ପୂର୍ଣ୍ଣ କାହିଁ ନୋହିଲା କିଞ୍ଚିତ !
ବରଞ୍ଚ କ୍ରମଶ ହୋଇ ବାସନା ପ୍ରବଳ,
ଆତ୍ମାରେ କଳଙ୍କ ଦାଗ ଲାଗିଛି କେବଳ !
ହରାଇ ପରଶମଣି, କଦାଚ ଅଜ୍ଞାନେ,
କିଛି ଧନ ପାଇ ରଖିଥିଲି ସାବଧାନେ;
ଯାଇଛି ସେ ଦ୍ରବ୍ୟ, ହୃଦେ ରହିଛି କେବଳ
ଅସତ ବେଭାର ପାପ କାଳିମାର ମଳ ।
ଗତ ପାପପାଇଁ ପ୍ରଭୋ ! କିଛି ଚିନ୍ତା ନାହିଁ,
ସାବଧାନ ହେବି ଯେବେ ଭବିଷ୍ୟତ ପାଇଁ ।
ଯେ କୁକାର୍ଯ୍ୟ ଅଛି କରି ହୋଇ ମାୟାମୁଗ୍ଧ,
ଅନୁତାପାନଳେ ଆତ୍ମା ହୋଇଯିବ ଦଗ୍ଧ ।
ମହାପ୍ରଭୋ ! ତୁମ୍ଭର ତ ଅନନ୍ତ କରୁଣା,
ମୋ ଦୁଷ୍କୃତି ତହୁଁ କୋଟି କୋଟି ଗୁଣେ ଊଣା ।
କଳୁଷିତ କ୍ଷୁଦ୍ର-ସ୍ରୋତ ଅନନ୍ତ ସାଗରେ
ପଶି ମିଶିଯିବ, ଚିହ୍ନ ନ ରହିବ ଥରେ ।
ଅମୃତରୁ ଅଛି ଆସି, ଯିବ ଅମୃତକୁ,
ଏହା ଭାବି ଦେଉଛି ତ ସାନ୍ତ୍ୱନା ମନକୁ ।
ଜଗତର କାର୍ଯ୍ୟ ମୋର କରି ସମାପତ,
ସେ ଅମୃତଧାମେ ପୁଣି ହେବି ଉପଗତ ।

ତେବେ କପାଁ ପୃଥିବୀକୁ ମଣିବି ଜଞ୍ଜାଳ ?
ହସି ଖେଳି ଆନନ୍ଦରେ କାଟି ଦେବି କାଳ ।
କରିବି ଆନନ୍ଦମନେ କର୍ତ୍ତବ୍ୟ ସାଧନ,
ତୁମ୍ଭର ଆଦେଶ ପ୍ରଭୁ ! କରିବି ପାଳନ ।
ଆଶା ପୂର୍ଣ୍ଣ ହେଲା ନାହିଁ ବୋଲି ପୃଥିବୀରେ,
କିପାଇଁ କରିବି ହାହାକାର ଦୁର୍ବୁଦ୍ଧିରେ ?
ଜାଣୁଛି ବ୍ୟାକୁଳ ମୋର ଆତ୍ମା ଯାହାପାଇଁ,
ସେ ଦ୍ରବ୍ୟ ଦେବାକୁ ଜଗତର ଶକ୍ତି କାହିଁ !
ମୁହିଁ ନ ପାଇଲି ବୋଲି କପାଁଇ ଭାବନା ?
ସମସ୍ତଙ୍କ ଏହି ଭାବ ଯାଉଅଛି ଜଣା ।
ଦେଖୁଛି ନିତାନ୍ତ ମୂର୍ଖ ଜଗତର ଲୋକେ,
ସୁଖ ଲୋଡ଼ିବାକୁ ଯାଇ ପଡ଼ନ୍ତି ନରକେ ।
ପବିତ୍ର ସୁଖ ତ ଅଛି ପବିତ୍ର ଧାମରେ,
କପାଁ ଲୋକେ ଧାଇଁଥାନ୍ତି କଳୁଷ ମାର୍ଗରେ ?
ହେ ପ୍ରଭୁ ! ଜାଣିଲି ଯହିଁ ଅଛି ଶାନ୍ତିସୁଖ,
ସେ ମାର୍ଗେ ଯିବାକୁ କେବେ ନ ହେବି ବିମୁଖ ।
ଦେଖୁଛି ତ ମୋ ଜୀବନେ ଯେତେକ କଲ୍ୟାଣ,
ପ୍ରାଣେଶ୍ୱର ବସି କରୁଛନ୍ତି ତ ବିଧାନ ।
ମୋ କଲ୍ୟାଣ ପାଇଁ କପାଁ ହେବି ମୁଁ ହତାଶ ?
ଅବଶ୍ୟ ସମ୍ପୂର୍ଣ୍ଣ ହେବ ପ୍ରାଣ ଅଭିଳାଷ ।
ପାପୀ ବୋଲି ପ୍ରଭୁ ମୋତେ କରିଥିଲେ ଘୃଣା,
ତାହାଙ୍କ କରୁଣା ନିଶ୍ଚେ ହୋଇଥାନ୍ତା ଊଣା ।
ଘଟୁଛି ମୋ ପ୍ରାଣେ ଯେଉଁ ଘଟଣା ସମସ୍ତ,
ଅଲକ୍ଷ୍ୟ ଭାବରେ ଦେଖେଁ ପ୍ରଭୁଙ୍କର ହସ୍ତ ।
ତାହାଙ୍କ କୃପାରୁ ପାଏଁ ବିପଦୁଁ ଉଦ୍ଧାର,
ତେବେ କପାଁ ଏତେ ଗ୍ଲାନି ଏତେ ହାହାକାର ?
ଦୃଢ଼ରୂପେ ଧରେଁ ଯେବେ ପ୍ରଭୁଙ୍କ ଚରଣ,
ନିଶ୍ଚୟ ପାଇବ ରକ୍ଷା ମୋହର ଜୀବନ ।
ବିପଦେ, କଷ୍ଟରେ ପଡ଼ି କଲେ ମୁଁ ପ୍ରାର୍ଥନା,
ହଟିଛି ତ ପ୍ରାଣେ ଶାନ୍ତି ସୁଖ ଯାଏ ଜଣା ।
ବିକଳରେ ଡାକି ଡାକି ଯିବି ପ୍ରଭୁ ପାଶେ,
ନିଶ୍ଚୟ ମୋ ପିତା ସ୍ଥାନ ଦେବେ ମୋ ସକାଶେ ।

ଦୃଢ଼ରୂପେ ପ୍ରଭୁ ପଦେ ରଖିଥିଲେ ମତି,
ବିଚଳିତ ନ କରିବ ସଂସାର ସମ୍ପତ୍ତି ।
ତ୍ରିଭୁବନ ଚିନ୍ତାମଣି ପରଶରତନ,
ଅଟନ୍ତି ତୁମ୍ଭେ ଅଟେ ଜଗତର ସର୍ବ ଧନ ।
ତୁଚ୍ଛ ଧନପାଇଁ ସେହି ପରଶରତନ
ହରାଇବି ନାହିଁ ଏହା ସ୍ଥିର ମୋର ପଣ ।
ମନ, ପ୍ରାଣ ସମ୍ପି ମହାପ୍ରଭୁଙ୍କ ପଦରେ
ସାଧିବି କର୍ତ୍ତବ୍ୟ ଏବେ ନବସାହସରେ ।
ହେ ପ୍ରଭୁ ! ଦେଉନ୍ତୁ ଶାନ୍ତି, ପ୍ରୀତି, ଶ୍ରୀଚରଣ,
କେବଳ କରିବି ମୁହିଁ କର୍ତ୍ତବ୍ୟ ପାଳନ ।
ଅହଂଭାବ ମନୁ ମୋର ଦିଅ ଦୂର କରି,
ଏହି ଜ୍ଞାନ ଜାତ ହେଉ ଦୟାମୟ ହରି !
ମୋ ହୃଦୟ, ମୋର ପ୍ରାଣ, ମୋର ଏ ଶରୀର,
ବିଶ୍ୱଦେବ ! ଅଟେ ତୁମ୍ଭ ପବିତ୍ର ମନ୍ଦିର ।
ଯେ ଆଜ୍ଞା କରିବ ବସି ମୋହର ହୃଦୟେ,
ଅକାତରେ ପାଳିବି ତା ସକଳ ସମୟେ ।
ଆଜଠାରୁ ଲଭିଲି ମୁଁ ନୂତନ ଜୀବନ,
କରିବି ତୁମ୍ଭଙ୍କୁ ଧ୍ୟାୟି କର୍ତ୍ତବ୍ୟପାଳନ ।

---

## ଦୁଃଖ ସମୟ

( ଭଙ୍ଗ ଆଷାଢ଼ଶୁକ୍ଳବାଣୀ )

ବସିଛି ନିର୍ଜନେ ବ୍ୟାକୁଳ ମନେ,
ଲୋତକଧାରା ବହୁଛି ନୟନେ,
କାହିଁ ଗଲେ ମୋର ସୁହୃଦ ଜନେ,
ପାଶରେ କାହାକୁ
ନ ଦେଖେଁ କରିବେ ସାନ୍ତ୍ୱନା ଦେବାକୁ ।

ସୁଖ ସମୟରେ ସକଳ ସାଥି,
ଦିବା ଆଲୋକରେ ଜାଳନ୍ତି ବତି,
ସରିଯାଏ ଯେବେ ସୁଖ ସମ୍ପତ୍ତି,
ସକଳେ ଅନ୍ତର,
ଡାକିଲେ କେ ଅଛି ଦେବ ଉତ୍ତର ?

ବସନ୍ତରେ ବହେ ଶୀତଳ ବାୟୁ,
କୁସୁମସୌରଭ ମେଳିଛି ଆଉ,
ଡାଳେ କୋକିଳ କରେ କୁହୁ କୁହୁ,
ମଧୁ ଗଲେ ଚଳି,
କାହିଁ ବା କୋକିଳ କାହିଁ କାକଳି ।

ସୁଖରେ ସବୁ ସୁଖ ଯାଏ ଜଣା,
ବ୍ୟାଧିରେ ଦେହେ ସହନ୍ତି ବେଦନା,
ଏକୁ ଆରେକ ପାଶେ ଯିବା ମନା,
ସୁଖ ଦୁଃଖ ବେନି
ଥାନ୍ତି ସ୍ୱତନ୍ତ୍ର ସ୍ୱ ସ୍ୱ ଭାବ ଘେନି ।

---

## ମହାଦେବଙ୍କ ତାଣ୍ଡବନୃତ୍ୟ

( ରାଗ—କଳଶାବାଣୀ )

ମହାଦେବ ଭୋଳ ହୋଇ ଗଞ୍ଜିକାଧୂମରେ
ଦିବାନିଶି ମତ୍ତ ଛନ୍ତି ତାଣ୍ଡବ ନୃତ୍ୟରେ ।
ଗରଳପୂରିତ କଣ୍ଠ ଭୁଜଙ୍ଗଭୂଷଣ,
ବେଢ଼ିଛନ୍ତି ଚଉପାଶେ ଭୂତପ୍ରେତଗଣ ।
କରାଳବଦନା କାଳୀ, ଦୈତ୍ୟସଂହାରିଣୀ,
ନାଚୁଛନ୍ତି ବକ୍ଷସ୍ଥଳେ ନୃମୁଣ୍ଡମାଳିନୀ ।
ଶ୍ମଶାନଭୂମିରେ ରହି କାଟନ୍ତି ସମୟ,
ତଥାପି ତାହାଙ୍କ ନାମ ଦେବ ମୃତ୍ୟୁଞ୍ଜୟ ।
ଶିଖିଛି ଶିବଙ୍କଠାରୁ ମୁଁ ତାଣ୍ଡବ ନୃତ୍ୟ ।
ମୋହ ପାଶରେ ଛନ୍ତି ମଧ ନନ୍ଦୀ ଭୃଙ୍ଗୀ ଭୃତ୍ୟ।
ଦିବାନିଶି ଅଛି ମୋହ-ଗଞ୍ଜିକାରେ ଭୋଳ,
କଣ୍ଠରେ ରହିଛି ପର କୁକଥା ଗରଳ ।
କରିଛି କୁକାର୍ଯ୍ୟ-ସର୍ପ ଅଙ୍ଗର ଭୂଷଣ,
ଅନ୍ୟାୟ ଅଯଶ ଭସ୍ମ ଅଙ୍ଗେ ବିଲେପନ ।

ଭୂତନାଥ୍ସ୍ୱରୂପା କାଳୀ ନାଚନ୍ତୁ ହୃଦୟେ,
ତଥାପି ମୁଁ ମୃତ୍ୟୁଞ୍ଜୟ ରହିଛୁ ପ୍ରତ୍ୟୟେ ।
କେତେ ଭୂତ କେତେ ପ୍ରେତ ଯୋଗିଣ ସଙ୍ଗରେ
କରୁଛୁ ତାଣ୍ଡବ ନୃତ୍ୟ ମନ ଆନନ୍ଦରେ ।

———

## ଦିଗ୍‌ବିଜୟୀ ବୀର

( ରାଗିଣୀ କଳଶା )

ମହାବୀର ନାମେ ଦିଅ ଆତ୍ମ ପରିଚୟ,
ଏହି କି ହେ ଭାଇ ତୁମ୍ଭ ବୀରତ୍ୱ ଲକ୍ଷୟ—ହେ !
ବିଶାଳ ପୃଥିବୀ ମଧ୍ୟେ ମାନବବସତି,
ଭୂମିଖଣ୍ଡ ବାନ୍ଧି ଦେଇଛନ୍ତି ବିଶ୍ୱପତି—ହେ ।
ଯେ ଭୂମିଖଣ୍ଡରେ ହେଲା ଜନମ ଯାହାର,
କରୁ ସେହି ଭୂମି ସେହି ଲୋକ ଅଧିକାର—ହେ !
ବୁଦ୍ଧିବଳେ, ବୀରତ୍ୱରେ, ସମରକୌଶଳେ
କରିଛ ପ୍ରସିଦ୍ଧି ଲାଭ ଜଗତମଣ୍ଡଳେ—ହେ ।
ତାହି ବୋଲି ଈଶ୍ୱରଙ୍କ ଦୁର୍ବଳ ସନ୍ତାନେ
ବିନାଶ କରିବ ଲୋଭେ ପଡ଼ି ଧନେ ପ୍ରାଣେ—ହେ !
ସରଳ, ଅବୋଧ, ବିଶ୍ୱପତିଙ୍କ କୃମିରେ
ଭ୍ରମନ୍ତି ଜନ୍ତୁକୁ ବନେ ମନ ଆନନ୍ଦରେ—ହେ ।
କ୍ଲେହିହାନ୍ତି କରି ପାତ ମାନବର ରକ୍ତ,
ଏହି କି ହେ ଭାଇ ତୁମ୍ଭ ବୀରତ୍ୱ, ମହତ୍ତ୍ୱ—ହେ !
ଜାଣୁ ନାହିଁ ଭ୍ରମୁଛ ତ ଭ୍ରମ ଅନ୍ଧକାରେ,
ଧର୍ମର ବିମଳ ଜ୍ୟୋତି ନ ଦେଖିଲ ବାରେ—ହେ ।
ନ କରି ମୂଢ଼ତାବଶେ ଲୋଭ ସମ୍ବରଣ,
ପରଧନ, ପରପ୍ରାଣ କରୁଛ ହରଣ—ହେ !
ଦମନ ନ କରି ଭୋଗବିଳାସଲାଳସା,
ଲୋଭ,ହିଂସା,ନିଷ୍ଠୁରତା, କରିଛ ବ୍ୟବସା—ହେ ।
ନ ଭୁଲ, ନ ଭୁଲ ସର୍ବଦର୍ଶୀ ବିଶ୍ୱପତି
ତୁମ୍ଭର ଅନ୍ୟାୟ କାର୍ଯ୍ୟମାନ ଦେଖୁଛନ୍ତି – ହେ ।
ମୁଖେ ବୋଲ ଧର୍ମ, ନାହିଁ କାର୍ଯ୍ୟ ଅନୁରୂପ,
କରୁ ନାହିଁ କି ହେ ତୁମ୍ଭେ ଧର୍ମକୁ ବିଦ୍ରୂପ—ହେ ।
ଦେଇଛନ୍ତି ଶକ୍ତି କି ରେ ପ୍ରଭୁ ଭଗବାନ
ନାଶିବାକୁ ତାଙ୍କ ଅଙ୍କପୁତ୍ର ଧନ ପ୍ରାଣ—ହେ ?
ମାନବ ଶୋଣିତ ବିନା ଆରେ ଦୁରାଶୟ !
ପେଟ ପୋଷିବାକୁ ଆଉ ନାହିଁକି ଉପାୟ—ରେ ।
କେତେଦିନପାଇଁ ତୁମ୍ଭେ ଅଛ ପୃଥିବୀରେ,
ବୁଝିଲ ତ ନାହିଁ କଥା ମୋହାନ୍ଧ ବୁଦ୍ଧିରେ—ହେ ।
ଲୋଭର ପ୍ରକୃତି—ପୃଥ୍ୱୀଯାକ କଲେ ଗ୍ରାସ
ତଥାପି ସମ୍ପୂର୍ଣ୍ଣ ହେବ ନାହିଁ ଅଭିଳାଷ—ହେ ।
କାହିଁ ନେପୋଲ୍ୟନ ? କାହିଁ ଆଲେକଜେଣ୍ଡର ?
କାହିଁ ବା ସେ ମିର୍‌ମିସ ? ମାମୁଦ ? ବାବର ହେ ।
ମାନବ ଶୋଣିତେ ଥିଲେ ପୃଥିବୀ ଭସାଇ,
କାହାନ୍ତି ସେମାନେ କାହିଁ ତାଙ୍କ ରାଜ୍ୟ ଭାଇ—ହେ ?
ଧାର୍ମିକ, ପାପିଷ୍ଠ ସର୍ବେ ଯିବେ ଏକସ୍ଥାନେ,
ଏଥିର ବିଚାର ହେବ ପ୍ରଭୁ ସନ୍ନିଧାନେ – ହେ ।

———

## ବିପନ୍ନ ନାବିକ

( ରାଗ—ମଙ୍ଗଳ ଗୁଜ୍ଜରୀ )

ସାମାନ୍ୟ କୁଟୀର ମଧ୍ୟେ ନଦୀ କୂଳରେ
ନାଉରି କୁଟୁମ୍ବ ହେନ ଥାଏ ସୁଖରେ ।
ଡଙ୍ଗାଟିଏ ଥାଏ ବାନ୍ଧି ନଦୀତଟରେ,
ସବୁବେଳେ ଜଗି ବସିଥାଏ ପାଶରେ ।
ହାଟୁଆ ବାଟୁଆ ଗ୍ରାମ ଲୋକ ପନ୍ଥାରୀ,
ସେପାରି କରିଥିଲା ତାଙ୍କୁ କରିବା ପାରି ।
ପାଏ ବରତନ ଯାହା, କୁଟୁମ୍ବ ପୋଷେ,
ନ ଜାଣେ ଅଭାବ, ଥାଏ ମନ ସନ୍ତୋଷେ ।
ନଦୀଜଳ, ନଦୀମାଛ ତାର ଭରସା,
କାଟୁଥାଏ କାଳ କରି ଏହି ବେବସା ।

ଶୀତ, ଗ୍ରୀଷ୍ମ, ବର୍ଷା ଏହି ବାରଟା ମାସ
ସୁଖେ କରୁଥାଏ ନଦୀକୂଳରେ ବାସ ।
ପିଲଟି କାଳରୁ ଥିଲି ପସରି କରି,
ବୁଢ଼ାକାଳଯାଏଁ ନଦୀ କୂଳ ଆବୋରି ।
ନଦୀ ଆଶ୍ରୟରେ ଧକା ନ ଥିଲା ମନେ,
ନିର୍ଭୟରେ ଥିଲେ ମଧ କୁଟୁମ୍ବଗଣେ ।
ଆଇଲା ବରଷା, କାଳ ଆସେ ଯେପରି,
ବରଷିଲା ପାଣି ଆଠ ଦିବସ ଧରି ।
ଏଗାର ଅଙ୍କର ବଢ଼ି ସବୁଙ୍କୁ ଜଣା,
ବୁଡ଼ିଥିଲା ବହୁଲୋକ ଘରକରଣା ।
ମୂଷଳ ଧାରରେ ପାଣି ଥିଲା ବରଷି,
ବାହାରି ନାହାନ୍ତି ଘରୁ ଲୋକେ ଭରସି ।
ପଡ଼ିଲା ଉପରମଡ଼ା ପାଣି ପ୍ରବଳେ,
ଘାଟ ବାଟ ବିଲ ପାଟ ପୂରିଲା ଜଳେ ।
ବଢ଼ୁଥାଏ ସ୍ରୋତ ଦୁଇ କୂଳକୁ ଗ୍ରାସି,
କେତେ ଲତା, ବୃକ୍ଷ, ପଶୁ ଯାଉଛି ଭାସି ।
ତହିଁ କିଛି ନାହିଁ ଭୟ ନାବିକ ମନେ,
ଦେଖି ଆସିଅଛି କେତେ ବଢ଼ି ଜୀବନେ ।
କୁଟୁମ୍ବଙ୍କୁ ଧରି ଶୋଇଥିଲା କୁଟୀରେ,
ପଲରେ ପଶିଲା ପାଣି ଅଧ ରାତିରେ ।
ତରତର ହୋଇ ବୁଢ଼ା ବାହାରି ଆସି
ଖୋଜିଲା ଡଙ୍ଗାଟି—ମାତ୍ର ଯାଉଛି ଭାସି ।
ଚଢ଼ିଲା ଅତଡ଼ା ଭାଙ୍ଗି ନଦୀ ଗର୍ଭରେ,
ନାଉଡ଼ କୁଟୁମ୍ବ ଭାସି ଗଲେ ସ୍ରୋତରେ ।
ଯେଉଁ ନଦୀ ହୋଇଥିଲା ଆଶ୍ରୟ ତାର,
କାଳେ ପୁଣି କଲା ତା'ର ପ୍ରାଣ ସଂହାର ।
ଜଗତେ ଘଟଣା ଏହା ନୁହେ ନୂତନ,
ହେବାର ଆଶ୍ରୟଦାତା ନାଶକାରଣ ।

———

## ଭକ୍ତ ବନ୍ଦନା

(ରାଗ—ମଙ୍ଗଳ)

ପରଂବ୍ରହ୍ମ ମହାନାମ ପ୍ରଚାର କାରଣେ
ଜନ୍ମିଥିଲେ ଜଗତରେ ସାଧୁ ମହାଜନେ ।
କରି ହରିନାମ ମନ୍ତ୍ର ସଂସାରେ ପ୍ରଚାର,
ଆପଣେ ଉଦ୍ଧରି କଲେ ଲୋକଙ୍କୁ ଉଦ୍ଧାର ।
କାର୍ଯ୍ୟେ, ଉପଦେଶେ ସେହି ସର୍ବ ମହାଭାଗ
ଦେଖାଇଣ ଛନ୍ତି ଲୋକଗଣେ ମୁକ୍ତିମାର୍ଗ ।
ଜୟ ଜୟ ମହାଜନ ବ୍ରହ୍ମଜ୍ଞାନୀଗଣେ !
କରଯୋଡ଼ି ନମେ ତୁମ୍ଭମାନଙ୍କ ଚରଣେ ।
ବାଲ୍ମୀକ, ବଶିଷ୍ଠ, ବ୍ୟାସ, ବୁଦ୍ଧ ଧର୍ମବୀର,
ଈଶା, ମୂଶା, ମହମ୍ମଦ, ନାନକ, କବୀର,
ଶ୍ରୀଚୈତନ୍ୟ, ନିତ୍ୟାନନ୍ଦ, ରୂପସନାତନେ,
କରଯୋଡ଼ି, ନମେ ତୁମ୍ଭମାନଙ୍କ ଚରଣେ ।
ଯହିଁ ଯେତେ ଥିଲେ, ଛନ୍ତି, ବୈଷ୍ଣବ ଗୋସାଇଁ,
କରେ ନମସ୍କାର ପ୍ରଭୋ ! ମସ୍ତକ ନୁଆଇଁ ।
ଅଭଙ୍ଗ ଗାୟକ ତୁକାରାମ ମହାମତି,
ଯାହାଙ୍କ ସେବକ ମହାରାଷ୍ଟ୍ର ଛତ୍ରପତି ।
ଶ୍ରୀମନ୍ତ ମାଧବ, ଅଡ଼ବଡ଼ ଜଗନ୍ନାଥ !
ହେଉଛି ଓଳଗି ଭକ୍ତିଭରେ ଯୋଡ଼ି ହାତ ।
ମହାତ୍ମା ହୋସେନ, ରାଜା ଶ୍ରୀରାମମୋହନ,
ଭକ୍ତିରେ ବନ୍ଦଇଁ ତୁମ୍ଭମାନଙ୍କ ଚରଣ ।
ସାମ୍ୟଧର୍ମବାଦୀ ପ୍ରିୟ ବ୍ରାହ୍ମ ଭ୍ରାତୃଗଣେ,
ନମସ୍କାର କରେଁ ସେମାନଙ୍କ ଶ୍ରୀଚରଣେ ।
ଆହେ ଭକ୍ତବୃନ୍ଦେ ଛନ୍ତି ପ୍ରଭୁ ସନ୍ନିଧାନେ,
ଆଶୀର୍ବାଦ କର ସୁଖେ ଥାନ୍ତୁ ଲୋକମାନେ ।
ଅଶାନ୍ତି ଯନ୍ତ୍ରଣା କଷ୍ଟ ହେଉ ସର୍ବ କ୍ଷୟ,
ପ୍ରଭୁଙ୍କ ପବିତ୍ର ରାଜ୍ୟ ହେଉ ସୁଧାମୟ ।

———

## ସୁଖ କାହିଁ ?

( ରାଗ—ମଙ୍ଗଳ )

ଆହା ! ଆହା ! ଦେଖୁଛୁ ତ ସୁଖଲାଲସାରେ
ଜୀବନଟାଯାକ ହେଲ ଅଣ୍ଡାଳ ଅନ୍ଧାରେ ।
ସୁଖ ମଣି ଧରେଁ ଯାହା ସେ ତ ଚିତ୍ତଭ୍ରାନ୍ତି,
ଲଭି ତ ପାରିଲ ନାହିଁ ତହୁଁ ମନେ ଶାନ୍ତି ।
ସୁଖଲୋଭେ ମତ୍ତ ସଦା ଜୀବନ ସଂଗ୍ରାମେ,
ଅରଜିଛନ୍ତି ତ ମାତ୍ର କଷ୍ଟ ପରିଣାମେ ।
ଜୀବନେ ଲଭିବ ଶାନ୍ତି କାହିଁ ସେହି ସୁଖ ?
ସୁଖ ଲୋଡ଼ି ହେଉଛୁ ତ କେବଳ ବିମୁଖ ।
ଲଭୁଛୁଁ କ୍ଷୁଧାରେ ଅନ୍ନ, ପିପାସାରେ ଜଳ,
ଯେଉଁ ଯେଉଁ ଦ୍ରବ୍ୟ ଲୋଡ଼ା ପାଉଛୁଁ ସକଳ ।
ଜୀବନଟାଯାକ ଧାଇଁ ହେଲୁଁ ଯାହା ପାଇଁ,
ସେହି ସାର ସୁଖ-ରତ୍ନ; ପାଇବୁଁ କି ନାହିଁ ?
ମାତ୍ର ସେ ପଦାର୍ଥ ନାହିଁ ଜଗତ ସଂସାରେ,
ସଞ୍ଚିତ ରହିଛି ପୃଥିବୀର ପର ପାରେ ।
ପବିତ୍ରଚରିତ୍ରଚିତ୍ତ ସାଧୁ ଭକ୍ତମାନେ
ଲଭିବେ ସେ ସୁଧାଫଳ ପ୍ରଭୁ ସନ୍ନିଧାନେ ।

———

## ତାହାଙ୍କ ଆଦେଶ

( ରାଗ—ଭୂପାଳ )

କେତେକାଳ ଆଉ ବହି ଦେହ ଭାର
କରିବ ବିଳାପେ ସନ୍ତାପେ ଚିତ୍କାର ?
ଭାଙ୍ଗୁଛି ତ ଏବେ ସମସ୍ତ ଜୀବନ,
କଲ କିବା ଜନସମାଜ କାରଣ ?
ଭାଙ୍ଗୁଛି ଗଢ଼ିଛି କେତେ ଧୂଳିଘର,
ସେ ତ ଶିଶୁକ୍ରୀଡ଼ା କୌତୁକ ମାତର ।

ଆମୋଦ, ପ୍ରମୋଦ, ଶୟନ, ଆହାର—
ଏ ସବୁ ଉଦ୍ଦେଶ୍ୟ ନୁହେଁ ମାନବର ।
ଋଣୀ ଅଛୁ ଜନସମାଜ ପାଶରେ,
ଶୁଝିବାକୁ ହେବ ସାମର୍ଥ୍ୟ ବଳରେ ।

ଯେବେ ସେଥିପାଇଁ ନ କରେଁ ଯତନ,
ବୃଥା ଗଲା ଜାଣ ସମସ୍ତ ଜୀବନ ।
ନ ବୁଝିଲ ହରି ! ଜୀବନ ଉଦ୍ଦେଶ୍ୟ,
ମାୟାମୁଗ୍ଧ ଜୀବ କଲ ଅବଶେଷ ।

ଦେବଦତ୍ତ ପ୍ରାଣ ଦେବତା କାର୍ଯ୍ୟରେ
ନ ଦେଇ ଯାପିଲ ବୃଥା ବିଷୟରେ ।
ଜ୍ଞାନ ଥାଉଁ ଥାଉଁ ହେଲ କିପାଁ ଭ୍ରାନ୍ତ,
ଭାଳି ହେଉଛୁ ତ ବ୍ୟାକୁଳ ନିତାନ୍ତ !

କି ଉଦ୍ଦେଶ୍ୟ, କାହିଁ କରୁଛ ଗମନ,
ଆଜଯାଏ ମଧ୍ୟ ନ ହେଲ ଚେତନ !
ଆସିଛୁ ବା କାହୁଁ ଯାଉଛୁ ବା କାହିଁ,
ସାର ତତ୍ତ୍ୱଜ୍ଞାନ ଜନମିଲା ନାହିଁ ।

ଅବା ବୃଥା ଭାଳି ହେଉଛୁ ଅସ୍ଥିର,
ଯାହା ଦତ୍ତ ପ୍ରାଣ ତାହାଙ୍କ ଶରୀର ।
ସେହି ତ କରନ୍ତି କର୍ମରେ ନିୟୋଗ ,
ବୃଥା ସିନା ମୋର ଏହି ଅନୁଯୋଗ ।

ଯେ ଦେବତା ଛନ୍ତି ହୃଦୟମନ୍ଦିରେ,
ଲଗାଇବେ ଯହିଁ ଲଗିବି ସେଥିରେ ।
କରିବାକୁ ହେବ ଯାହାକୁ ଯେ କାର୍ଯ୍ୟ,
ମହାପ୍ରଭୁ କରି ଦେଇଛନ୍ତି ଧାର୍ଯ୍ୟ ।

ମୋପାଇଁ କରିବ ମୁଁ କିପାଁ ଭାବନା,
ମୋ କର୍ତ୍ତବ୍ୟ ଯାହା ପ୍ରଭୁଙ୍କୁ ତା ଜଣା ।
ଯାପିଲ ଜୀବନ ପ୍ରଭୁଙ୍କ ଉଦ୍ଦେଶ୍ୟେ,
ସାଧିବ କର୍ତ୍ତବ୍ୟ ତାହାଙ୍କ ଆଦେଶେ ।

———

## ସଙ୍ଗଦୋଷ

( ରାଗ—ବଙ୍ଗଳାଶ୍ରୀ )

କେତେ ସାବଧାନେ ଆତ୍ମତତ୍ତ୍ୱଜ୍ଞାନେ
ହେଉଥିଲି ଅଗ୍ରସର,
ମନ ଅନୁରାଗେ ପୂତ ଧର୍ମମାର୍ଗେ
ଲକ୍ଷ୍ୟ ମୁଁ ରଖି ମାତର ।
ଧର୍ମବଳେ ବଳୀ ହୋଇ, ପଦେ ଦଳି
ଦେଇ ପାପ ପ୍ରଲୋଭନ,
ଏକ ମାତ୍ର ଲକ୍ଷ୍ୟ ଥିଲା ମୋ ପ୍ରତ୍ୟକ୍ଷ
ସେହି ପବିତ୍ର ଭୁବନ ।
ଚିତ୍ତ ଅହଙ୍କାରେ ନ ଭାଳେଁ ମୁଁ ବାରେ
ପାପ ପ୍ରଲୋଭନ ସତ୍ତ
ନିର୍ଭୟ ଅନ୍ତରେ ଭ୍ରମେ ନିରନ୍ତରେ,
ନ ଥାଏ ମନରେ ଖିନ୍ତି ।
ନ ଥିଲା ମୋ ମନେ କେତେ ରିପୁଗଣେ
ପ୍ରବଳ ରୂପରେ ଆସି,
କିଞ୍ଚିତ ମାତରେ ଅସାବଧାନରେ
ପକାଇବେ ମୋତେ ଗ୍ରାସି ।
ଦୈବର ଘଟନ ବନ୍ଧୁ ଏକ ଜଣ
ଆସି ମିଳିଲେ ସଙ୍ଗରେ,
ସମାନ ବୟସ ଉତ୍ସାହ ସାହସ
ବିଦ୍ୟା ମର୍ଯ୍ୟାଦା ପଦରେ ।
ସମାନ ସମାନ ଥିଲେ ଧନ ମାନ,
ସହଜରେ ବନ୍ଧୁପଣ
ହୁଏ ସଙ୍ଘଟନ, କରେ ଦୁଇ ମନ
ପରସ୍ପରେ ଆକର୍ଷଣ ।
ଅଭେଦ ପୀରତି କ୍ଷୀର ନୀର ସତ୍ତ
ଘଟିଲା ବେନି ମଧ୍ୟରେ,
ତିଳେକ ବିଚ୍ଛେଦେ ବିଷମ ବିଷାଦେ
କାଟୁଁ କାଳ ପରସ୍ପରେ ।
ସକଳ ବିଷୟେ ହେଲେହେଁ ଉଭୟେ
ସମାନ, ମାତ୍ରକ ଭିନ୍ନ
ଚରିତ୍ର ବିଷୟେ, ଅଳପ ସମୟେ
ପ୍ରକାଶ ପାଇଲା ଚିହ୍ନ ।
ବନ୍ଧୁ ଆଚରଣ ଦେଖି ମୋର ମନ
ହେଉଥାଏ ବିଚଳିତ,
ନୈତିକଲଜ୍ଜାବଶେ ଭରସି ସାହସେ
ବୋଲି ନ ପାରେଁ କିଞ୍ଚିତ ।
ଦେଖି ବନ୍ଧୁକାର୍ଯ୍ୟ କଲି ଚିତ୍ତେ ଧାର୍ଯ୍ୟ,
ଯେ ଯାହା କରୁଛି କରୁ,
ମୁହିଁ ସାବଧାନେ ଥିବି ଆତ୍ମଜ୍ଞାନେ
ଦୂରେ ଥିବି ଅଧର୍ମରୁ ।
ଲୋକେ ନାହିଁ ଜଣା ଆତ୍ମପ୍ରତାରଣା
କଲେକ ଘଟେ ଜଞ୍ଜାଳ,
ନ ଜାଣନ୍ତି ପୁଣି ଦେଖି ଜାଣି ଶୁଣି
ଧର୍ମମାର୍ଗ ଯେ ପିଚ୍ଛିଳ ।
ଅତି ସତର୍କରେ ଜ୍ଞାନଯଷ୍ଟିଭରେ
ଲକ୍ଷ୍ୟ ରଖି ଅନୁମାନେ,
ସୂକ୍ଷ୍ମ ଧର୍ମ ମାର୍ଗେ ସରାଗେ ସଜାଗେ
ଚଳୁଥିବେ ସାବଧାନେ ।
ଲୋକେ ପ୍ରାଣପଣେ ଯତନେ ସାଧନେ
ଉଠନ୍ତି ପର୍ବତ ଚୂଳେ,
ଟଳିଗଲେ ପାଦ ଘଟଇ ପ୍ରମାଦ,
ପଡ଼ଯାନ୍ତି ଗିରିମୂଳେ ।
କେତେ ଅର୍ଥ ବ୍ୟୟେ ବହୁତ ସମୟେ
ନିର୍ମାଣ କର ଆଗାର,
କଣିକା ଅନଳେ ପବନ ପ୍ରବଳେ
ମୁହୂର୍ତ୍ତିକେ ଭସ୍ମସାର ।
ଦେଖୁଁ ନିରନ୍ତରେ ସଂସର୍ଗଦୋଷରେ
ଘଟେ ଗୁଣ ଦୋଷମାନ,
ଲୋକେ ଜାଣି ଶୁଣି ଅଜ୍ଞାନରେ ପୁଣି
ନ ହୁଅନ୍ତି ସାବଧାନ ।

କଜ୍ଜଳ ଗୃହରେ ଭ୍ରମଣ କାଳରେ
ଥିଲେ ମଧ ଜାଗରିତ,
ଅଲକ୍ଷ୍ୟ ସୂତ୍ରରେ ଆପଣା ବସ୍ତ୍ରରେ
ଲାଗଇ କଳା କିଞ୍ଚିତ ।

କଣ୍ଟକବନରେ ଭ୍ରମିଲେ ପଦରେ
ଅବଶ୍ୟ ଭୁଙ୍କେ କଣ୍ଟକ,
ଜାଣୁଁ ନିରନ୍ତରେ ପ୍ରବାଦ ଛଳରେ
ବୋଲନ୍ତି ଏ କଥା ଲୋକ ।

ପ୍ରଥମ ଦିନରେ ମୁହିଁ ପ୍ରତ୍ୟକ୍ଷରେ
ଦେଖି ବନ୍ଧୁଙ୍କର ରୀତି,
ପଡ଼ିଲି ଚମକି ଭାଳିଲି ହେଲି କି
ହେଲି ଜାତ ମନେ ଭ୍ରାନ୍ତି ।

ସ୍ୱଭାବରେ ମୋର ଥିଲା ନିରନ୍ତର
ପାପକାର୍ଯ୍ୟ ପ୍ରତି ଘୃଣା,
ବନ୍ଧୁ ଆଚରଣ ଦେଖି ଅନୁକ୍ଷଣ
କ୍ରମରେ ହେଲା ତା ଊଣା ।

ବିମଳ ଚରିତ୍ର ଋଷି ବିଶ୍ୱାମିତ୍ର
କଠୋର ତପଃ ସାଧନ,
ମେନକା ଦୃଷ୍ଟିରେ ଈଷତ ମାତ୍ରରେ
ସବୁ ଗଲା ଅକାରଣ ।

ସୁମତି କୁମତି ବିବାଦେ ଦୁର୍ଗତି
ସୁମତି ଲଭଇ ସିନା,
ଅମୃତ ଗରଳ ହେଲେ ଏକମେଳ
ଗରଳର ହୁଏ ଜିଣା ।

ବନ୍ଧୁ ଅନୁରୋଧେ ନିଜ ଅପରାଧେ
ପଡ଼ିଲି ବିଷମ ପାପେ,
କାନ୍ଦିବି କାତର, ସଦା ଝୁରି ଝୁରି
ମରିବି ମୁଁ ଅନୁତାପେ ।

———

# ଜୀବନ ତରୀ

ସମୟ-ସାଗରେ ଭାସେ ଜୀବନ-ତରଣୀ,
ନେଉଛି କଢ଼ାଇ ମାର୍ଗ ସ୍ୱକାର୍ଯ୍ୟ-କ୍ଷେପଣୀ ।
ସ୍ୱଭାବରେ ସମାକୁଳ ସଲିଳ ଲହରୀ,
ତେଣୁ ନିତ୍ୟ ନୃତ୍ୟଶୀଳା ମୋ ଜୀବନ-ତରୀ ।

ରୋଗ ଶୋକ ପାପ ତାପ କେତେ ଝଞ୍ଜାବାୟୁ,
କଳୁଷସଂସର୍ଗ ମଗ୍ନ ଶିଳାମାଳା ଆଉ,
ଜୀବନ-ତରଣୀ ଯାହା ଯୋଗେ ବିଚଳିତ,
ମଗ୍ନ ଲଣ୍ଡଭଣ୍ଡ ପରି ହୁଏ ଅନୁମିତ ।

ଯିବ ଭାସି ଭାସି ମୁକ୍ତିସ୍ୱରୂପ ବନ୍ଦରେ,
ଜାଗରିତ ଥାଏ ଯେବେ ବାସନା ମନରେ ।
ସୁବିବେକ କର୍ଣ୍ଣଧାର ଆଶ୍ରୟେ ପ୍ରତ୍ୟକ୍ଷ,
ବ୍ରହ୍ମପଦ ଧ୍ରୁବତାରା ପ୍ରତି ରଖି ଲକ୍ଷ୍ୟ ।
ଅନ୍ୟଥା ପ୍ରଚ୍ଛନ୍ନ ଶୈଳ ପବନ ପ୍ରଚଣ୍ଡ,
କରିବ ନିଶ୍ଚୟ ତରୀ ମଗ୍ନ ଲଣ୍ଡ ଭଣ୍ଡ ।

———

# ଜୀବନର ଗତି

ଦ୍ରବ୍ୟ-ଗୁଣ କର୍ମ ସମବାୟରେ ଶରୀର,
ନିତ୍ୟ ପରିବର୍ତ୍ତଶୀଳ ନୁହେ ମଧ ଚିର ।
କାହା ଉତ୍ପ୍ରେରଣା କିମ୍ବା କେଉଁ ଆକର୍ଷଣେ
ଚିରନ୍ତନ ଗତି ଅନୁଭବେ ମୁଁ ଜୀବନେ ?

ପ୍ରକୃତି ସହିତ କିବା କର୍ମର ସମ୍ବନ୍ଧ,
ଉଭୟ ସୂତ୍ରରେ ଜୀବ ଯଥା ନିତ୍ୟ ବଦ୍ଧ,
ଅବିରାମ ଆକର୍ଷଣ ଊର୍ଦ୍ଧ୍ୱତନ ଗତି,
ନିମ୍ନରୁ ଉତ୍ଥିତ ମଧ ନିୟମ ନିୟତି ।
ଆରମ୍ଭ ଏହାର କାହିଁ ? କାହିଁ ଅବା ଶେଷ ?
ଯନ୍ତ୍ର ତ ନ ଜାଣେ ଯନ୍ତ୍ରୀ କୌଶଳବିଶେଷ ।

ପ୍ରତ୍ୟକ୍ଷ ରହିଛି ମାତ୍ର ସାକ୍ଷ୍ୟ ଚିରଦିନ,
ମାନବ ଜୀବନ ନିତ୍ୟ ନିୟନ୍ତା ଅଧୀନ ।
ତୁମ୍ଭ ଜ୍ଞାନେ ଯେବେ ଏହା ଅଳୀକ ସିଦ୍ଧାନ୍ତ,
ଏ ଭ୍ରାନ୍ତ ଧାରଣା ମୋର ପ୍ରାର୍ଥନା ନିତାନ୍ତ ।

———

# ସେ ସଙ୍ଗୀତ

( ରାଗିଣୀ—ଭଙ୍ଗ କାନଡ଼ା )

ଦିବସ ଯାମିନୀ କି ଗୀତ ରାଗିଣୀ
ପ୍ରବେଶେ ଆବେଶେ ହୃଦୟେ

ସୁଖ ଦୁଃଖରେ ସକଳ ସମୟେ,
କିବା ସେହି ସ୍ୱର ବ୍ୟାକୁଳ ଅନ୍ତର
କରେ ଜୀବନ ତନ୍ମୟ—ସେ ସଙ୍ଗୀତ ।

ବିରଳେ ବିଜନେ ଗହନ କାନନେ
ପ୍ରାନ୍ତରେ କାନ୍ତାରେ ଆଶାରେ

ସର୍ବ ସ୍ଥାନେ ସମାନ ସୁସ୍ୱରେ
ଗ୍ରୀଷ୍ମ ବସନ୍ତେ ଅବା ଶୀତ ଅନ୍ତେ
ଲାଗେ ପ୍ରାଣେ ନିରନ୍ତରେ—ସେ ସଙ୍ଗୀତ ।

ସେହି ଏକ ଗାନ ସେହି ଏକ ତାନ
ସୂରଗ୍ରାମ ତାର ସମାନ

ଲାଗି ଉନମତ୍ତ କଲେ ସେ ପ୍ରାଣ,
ପବନେ ନିସ୍ୱନେ ଆସି ଅନୁକ୍ଷଣେ
ଭାଙ୍ଗି ଦିଏ କି ଧୈର୍ଯ୍ୟ ଧ୍ୟାନ—ସେ ସଙ୍ଗୀତ ।

ସଙ୍ଗୀତ ନିଃସ୍ୱନ ହୃଦୟ ସ୍ପନ୍ଦନ
କରିଦିଏ ସେ ନିରନ୍ତରେ

କିବା ଆସି ନିଶ୍ୱାସ ପବନରେ,
ହେଲେ ମୁଁ ନିଦ୍ରିତ ହୋଇ ଜାଗରିତ
ଥାଏ କି ଶଯ୍ୟା ପାଶରେ—ସେ ସଙ୍ଗୀତ ।

ଏ ପ୍ରକୃତିରାଣୀ ସହସ୍ର ରାଗିଣୀ
ଧରିଛି ବିଭିନ୍ନ ତାନେ,
କିବା ଉନମତ୍ତ ମୁଁ ସେହି ଗାନେ,
ଅବୁଝା ହୃଦୟ ନ ବୁଝେ ବିଷୟ
କିପା ମିଶାଇଛି ଆତ୍ମପ୍ରାଣେ—ସେ ସଙ୍ଗୀତ ।

———

# ସାଧୁ ସଂସର୍ଗ

( ଭାଗବତ ବୃତ୍ତ )

ଗ୍ରାମ ପ୍ରାନ୍ତରେ ନଦୀକୂଳେ. ପ୍ରାଚୀନ ବଟବୃକ୍ଷମୂଳେ,
ସୁନ୍ଦର ନବୀନ ସନ୍ନ୍ୟାସୀ, ସଂସାର ଚିନ୍ତାରେ ଉଦାସୀ,
କୁଟୀର କରାଇ ନିର୍ମାଣ, ବସି ସେ କରୁଥାନ୍ତି ଧ୍ୟାନ ।
କିଛି ହିଁ ନାହିଁ ଅଙ୍ଗେ ବାସ, ଶୀତ ବରଷା ବାର ମାସ ।
କଷ୍ଟ ନ ମଣି କିଛିମାତ୍ର, ଆନନ୍ଦେ ଥାନ୍ତି ଦିବା ରାତ୍ର ।
କୁଟୀର ପାଶେ ଥାପି ଧୂନି, ଜପରେ ବସିଥାନ୍ତି ମୁନି ।
ଦର୍ଶନପାଇଁ ଯାନ୍ତି ଲୋକେ, ଯେ ଯାହା ଦିଏ ଖାନ୍ତି ସୁଖେ ।
କିଛିହିଁ ନ କରନ୍ତି ଭିକ୍ଷା, ଦିଅନ୍ତି ଲୋକେ ଧର୍ମଶିକ୍ଷା ।
ସେ ଗ୍ରାମ ମଠର ମହନ୍ତ, ଥିଲା ସେ ନିତାନ୍ତ ଦୁରନ୍ତ ।
ଚେଲା, ପୂଜାରି ସହିତରେ, ବିଚାର କଲା ନିର୍ଜନରେ ।
ଏ ଭଣ୍ଡ ସନ୍ନ୍ୟାସୀ ନିଶ୍ଚୟ, ନେବା ଏହାର ପରିଚୟ,
କେମନ୍ତ ଦିଏ ଧର୍ମ ଦୀକ୍ଷା, କରିବୁଁ ସେଥିର ପରୀକ୍ଷା ।
ସାଧୁ ଙ୍କୁ ଭଣ୍ଡିବା ସକାଶେ, ଡାକିଲା ଏକ ବେଶ୍ୟା
ପାଶେ ।

ସେ ବେଶ୍ୟା ଯୁବତୀ ସୁନ୍ଦରୀ, ତାହାର ନାମଟି ଅପ୍‌ସରୀ,
ନୃତ୍ୟ ଗୀତରେ ସେ ନିପୁଣୀ, ଠକପଣରେ ନୁହେ ଊଣୀ,
ସେହି ମହନ୍ତ ଶିକ୍ଷା ପାଇ, ଧନ ଲୋଭରେ ହୋଇ ବାଇ,
ଚାଲି ସେ ଗଲା ଧୀରେ ଧୀରେ, ମିଳିଲା ସାଧୁଙ୍କ
କୁଟୀରେ ।

ସେ ବେଶ୍ୟା ସାଧୁ ପାଶେ ବସି, କଥା କହିଲା ହସି ହସି,
କରିଣ ବହୁତ କୌଶଳ, ଦେଖାଉଥାଏ ବକ୍ଷସ୍ଥଳ ।

ଫେରିଣ ବୋଇଲା ସାଧୁଙ୍କୁ, "ଆସନ୍ତୁ ମୋହର ଗୃହକୁ ।
ପ୍ରେମ ଆନନ୍ଦେ ମିଳି ମିଶି, ବାସ କରିବା ଦିବା ନିଶି ।
ବହୁତ ଧନ ମୋହ ଘରେ, ଅଛୁ ଆସନ୍ତୁ ପ୍ରେମଭରେ
ସୁଖେ ଭୁଞ୍ଜିବା ବେନି ଜନ, କରିବ ନର୍ତ୍ତନ ଗାୟନ ।"
ସନ୍ନ୍ୟାସୀ ସବୁକଥା ଶୁଣି, ବୋଇଲେ କ୍ଷଣେ ହୋଇ ତୁନି,
ଆଗୋ ମା ! କରୁଛୁ କଲ୍ୟାଣ, ବାହୁଡ଼ ଯାଅ ବର୍ତ୍ତମାନ ।
"ପ୍ରଭୁଙ୍କ ମହିମା ଅପାର, କେ ଜାଣେ ଅବା ପୁନର୍ବାର
ମିଳନ ହେବ ତୋ ସଙ୍ଗରେ, ବୋଲିବୁଁ କଥା ସେ କାଳରେ,
ବେଳ ମୋ କଥା କହିବାକୁ, ନାହିଁଟି ଯାଉଛୁ ପୂଜାକୁ ।"
ସେ ବେଶ୍ୟା ନିତାନ୍ତ ନିରାଶେ, ବାହୁଡ଼ି ଗଲା ନିଜ ବାସେ ।
ବିଚିତ୍ର ବିଧାତାଙ୍କ ଲୀଳା, ସେ ବେଶ୍ୟା ବାଧିକା ପଡ଼ିଲା ।
କୁତ୍ସିତ ଘାଆ ସର୍ବାଙ୍ଗରେ, ପୂତି ପଡ଼ିଲା ଦୁର୍ଗନ୍ଧରେ ।
କେହି ନ ଯାଏ ତାହାପାଶେ, ଏକା ସେ ପଡ଼ି ଥାଏ ବାସେ ।
ଯେ ଧନ ଥିଲା ତାହା ଘରେ, ନେଲେ ତା ବୈଦ୍ୟ ଡାକ୍ତରେ ।
କେ ଅଛି ମଉଳା, ମଉସା; କରିବ ତା ସେବା ଶୁଶ୍ରୂଷା ?
ଭିକ୍ଷା ମାଗିଣ ଅବଶେଷେ, ନିତାନ୍ତ କଷ୍ଟେ ପେଟ ପୋଷେ ।
ପଡ଼ିଲା ଯହୁଁ ଘାଆ ବଳି, ସେ ବେଶ୍ୟା ନ ପାରିଲା ଚଳି ।
ଘାଏ ଆସିଣ ଭଣ ଭଣ, ମାଛି ଉଡ଼ନ୍ତି ଭଣ ଭଣ ।
ଚଳି ନ ପାରି ମହାକଷ୍ଟେ; ପଡ଼ିଣ ଥାଏ ନଅରତଟେ ।
ଦୈବ ଯୋଗରେ ସେ ସନ୍ନ୍ୟାସୀ, ମିଳିଲେ ତାହା ପାଶେ ଆସି ।
ଦେଖିଣ ବେଶ୍ୟାର ବିକଳ, ସେ ସାଧୁ ନେତ୍ରୁ ବହେ ଜଳ ।
'ଆହା ମା !' ବୋଲି ଧୀରେ ଧୀରେ, ଦେଲେ ଯେ ହସ୍ତ ତା ଶରୀରେ ।
ଯତ୍ନରେ ବୁହାଇ ତାହାକୁ, ଘେନିଣ ଗଲେ କୁଡ଼ିଆକୁ ।
ଘାଆକୁ ଦେଇ ଧୋଇଦେଇ, ଔଷଧି ଦେଲେକ ଲେପାଇ ।
ସନ୍ନ୍ୟାସୀ ଯତ୍ନେ ଦୈବବଳେ, ସେ ବେଶ୍ୟା ରହିଲା କୁଶଳେ ।
କ୍ରମେ ସେ ଲଭନ୍ତେ ଆରୋଗ୍ୟ, ତାମନେ ଜନ୍ମିଲା ବୈରାଗ୍ୟ
ଏ ଅନ୍ତେ ବାରବିଳାସିନୀ, ହୋଇ ପଡ଼ିଲା ତପସ୍ୱିନୀ ॥
ସାଧୁ ସଂସର୍ଗେ ପାପୀପୁରୁଷୀ, ଲଭିଲା ଗତି ମହାପୁରୁଷୀ ।

---

## ଆତ୍ମ-ସମର୍ପଣ

( ରାଗ - ମଙ୍ଗଳ )

ବିଶାଳ ବ୍ରହ୍ମାଣ୍ଡ ମଧ୍ୟେ ଭ୍ରମୁଛି ଏକାକୀ,
କେ ମୋହର ପାପ ପୁଣ୍ୟ କାର୍ଯ୍ୟାକାର୍ଯ୍ୟ ସାକ୍ଷୀ ?
ନ ପାରିଲି ନ ପାରିବି ମୋତେ ମୁହିଁ ଜାଣି,
ନ ବୁଝିଲି ନ ବୁଝିବି କିଏ ପ୍ରାଣ ପ୍ରାଣୀ ?
କାହୁଁ ଆସି କାହିଁ ଯିବି, ଥିବି କେତେ ଦିନ,
ବୁଝି ନ ପାରିଲି ମୋର ରୂପ, ବର୍ଣ୍ଣ, ଚିହ୍ନ ।
ମିଥ୍ୟା ସବୁ, ବାଷ୍ପମୟ ଜଗତ ସଂସାର,
ପ୍ରତ୍ୟକ୍ଷ କରିବି କି ପ୍ରକାର ଅସ୍ୱୀକାର ?
ସୁଖ, ଦୁଃଖ, ଦିବା, ନିଶି, ଆଲୋକ, ଅନ୍ଧାର,
ପ୍ରତ୍ୟକ୍ଷରେ ଦେଖୁଛି ତ ସ୍ୱରୂପ ଏହାର ।
ସୁଖ, ଦୁଃଖ, ଭେଦାଭେଦ ଯାଏ ସବୁ ଜଣା.
କପରି କରିବି ବୋଲି ଆତ୍ମପ୍ରତାରଣା ?
ଜାଣୁଛି ମୋହର ନାହିଁ କିଛି ହିଁ ଆୟତ୍ତ,
ଯନ୍ତ୍ରପୁତ୍ତଳିକା ପରି ଭ୍ରମୁଛି ନିୟତ ।
ଏହା ମଧ୍ୟ ଦେଖୁଛି ତ ପ୍ରତ୍ୟକ୍ଷ ପ୍ରବଳ,
ଭୁଞ୍ଜୁ ଅଛି ଆତ୍ମକୃତ ଧର୍ମାଧର୍ମ ଫଳ ।
କେହି କୁହେ, ରହିଛି ତ ଅନ୍ୟର ଆୟତ୍ତେ,
ସ୍ୱକୃତ କାର୍ଯ୍ୟର ଫଳ ଭୁଞ୍ଜୁଛି କେମନ୍ତେ ?

ଛନ୍ତି ଜଣେ ଜାଣେଁ ଶୁଭାଶୁଭ ପ୍ରେରୟିତା,
ଅଛନ୍ତି ସେ ପୁଣି ଦଣ୍ଡ ପୁରସ୍କାରଦାତା ।
ଦୟାମୟ ପ୍ରଭୁ ବିଶ୍ୱସଂସାରପାଳକ,
ହେବେ କି ସେ ପାପ ପୁଣି ଦୁର୍ବୁଦ୍ଧି ପ୍ରେରକ ?
ଦଣ୍ଡ ଦେବାପାଇଁ ସେହି ଦେବେ କି ଦୁର୍ବୁଦ୍ଧି ?
ଏଥିରେ ତାହାଙ୍କ କିବା ହେବ କ୍ଷତି ବୃଦ୍ଧି ?
ଆପଣା ରାଜ୍ୟରେ ନିଜକୃତ କ୍ଷୁଦ୍ର ପ୍ରାଣୀ,
ଯନ୍ତ୍ରଣା ତାହାକୁ ଦେବେ ବିଶେଷରେ ଜାଣି ?
ତେବେ କି ନୁହନ୍ତି ମହାପ୍ରଭୁ ଦୟାମୟ ?
ଅଥବା ଘଟଇ ସୃଷ୍ଟି ଶୃଙ୍ଖଳା ବ୍ୟତ୍ୟୟ ?
ଦୟାଧାର ଜ୍ଞାନାଧାର ସର୍ବଶକ୍ତିମାନ,
କରିବ ସଂଶୟ ତାଙ୍କୁ କେ ଅଛି ଅଜ୍ଞାନ ?
ବୁଝି ପାରୁ ନାହିଁ କାର୍ଯ୍ୟ କାରଣର ଖଣ୍ଡ,
ଭାଳି ଭାଳି ମନେ ଜାତ ହୁଏ ମହାଖଣ୍ଡ ।
ଭବିଷ୍ୟତ ମୋ ପକ୍ଷରେ ଘୋର ଅନ୍ଧକାର,
ନ ବୁଝିଲି ଏ ଜଗତ ଚଳେ କି ପ୍ରକାର ।
ବ୍ରହ୍ମାଣ୍ଡରେ ତୁଚ୍ଛ ଅଣୁ ପରମାଣୁ ହୋଇ,
ଏ ବିଶ୍ୱ ରହସ୍ୟ କଥା ଭାବୁଅଛି ମୁହିଁ ।
ଅନନ୍ତ ବ୍ରହ୍ମାଣ୍ଡ ଚଳୁଅଛି ନିୟମରେ,
ହେବାକୁ କି ପାରେ ବ୍ୟତିକ୍ରମ ମୋ ପକ୍ଷରେ ?
ଜାଣିବାକୁ ଲୋଡ଼ୁଅଛି ଅନନ୍ତ ନିୟମ,
ନିଶ୍ଚୟ ନିଶ୍ଚୟ ମୋର ବୁଦ୍ଧି ବ୍ୟତିକ୍ରମ !
ଆପଣାକୁ ଜାଣିବାର ଶକ୍ତି ନାହିଁ ନାହିଁ,
ଧାଇଁଅଛି ବିଶ୍ୱ ବିଧି ଜାଣିବାର ପାଇଁ !
ଅନନ୍ତ ଭାବନା ମନେ ହେଉଅଛି ଉଦୟ,
ସ୍ଥିର ନୋହି କାହିଁ ପ୍ରାପ୍ତ ହେଉଛି ବିଳୟ ।
ସାଗର ମଧ୍ୟରେ ଉଠେ ଅନନ୍ତ ଲହରୀ,
ସିନ୍ଧୁବକ୍ଷ ସେ ସର୍ବତ ନ ପାରଇ ଧରି !
କାହୁଁ ଉଠି କାହିଁ ହୋଇ ଯାଉଅଛି ଅନ୍ତ,
ଗତାୟାତ କାର୍ଯ୍ୟ ବିଧି ଲାଗିଛି ସତତ ।
ବିଶାଳ ସାଗରେ ଯାହା ଘଟିବାକୁ ପାରେ,
ଅତି କ୍ଷୁଦ୍ର ପ୍ରାଣେ ତାହା ଘଟେ କି ପ୍ରକାରେ ?

ଦେଖୁଛି ନିତାନ୍ତ କ୍ଷୁଦ୍ର ମୋର ପ୍ରାଣ ମନ,
ଅନନ୍ତ ଆକାଶ ମାର୍ଗେ କରେ ବିଚରଣ ।
ସହସ୍ର ଯୋଜନ ଭ୍ରମେ ନିମେଷ ମଧ୍ୟରେ,
ସ୍ଥିର ନୋହି ଇତସ୍ତତଃ ଗତି ନିରନ୍ତରେ ।

କି ପ୍ରକାର କେଉଁଠାରୁ ଏହି ମହାଶକ୍ତି,
ପାଇଛି ? ଚରମେ ଲାଭ କରିବ କି ଗତି ?
ଅନନ୍ତ ସାଗରୁ ଉଡ଼ି ଆସି ବାଷ୍ପକଣା,
ଯିବ ତହିଁ ପୁଣି ଏହା କରେ କି କଳ୍ପନା ?

ବାଷ୍ପକଣା ହେଲେ ମଧ୍ୟ ସାଗର ବିକାର,
ମୋ କ୍ଷୁଦ୍ର ଜୀବନ କି ହେ ଅଟେ ସେ ପ୍ରକାର ?
ହେବ ମୋ ଜୀବନ ସେହି ମହାଶକ୍ତିକଣା,
ଅନନ୍ତ ତାହାର ଗତି ଯାଏ ମୋତେ ଜଣା ।

କେତେ ଦ୍ରବ୍ୟ ସମ୍ଭାଳୁଛି ଆପଣାର ବୋଲି,
କାହା ସଙ୍ଗେ କି ସମ୍ବନ୍ଧ ଯାଉଛି ତ ଭୁଲି ।
ନିତାନ୍ତ ମୋହର ବୋଲି ଧରୁଛି କାମୁଡ଼ି,
ନ ଜାଣିଲି ଶରୀରଟା ଯିବ ଦିନେ ପୋଡ଼ି ।
କାହିଁ ବା ରହିବ ଧନ, ଯିବି କାହିଁ ଚାଲି,
ଭ୍ରମେ ମଧ୍ୟ ଦିନେମାତ୍ର ନ ଦେଖିଲି ଭାଳି ।
ଜଗତର କାର୍ଯ୍ୟ ଦେଖି ପାରୁଅଛି ଜାଣି,
ଅନନ୍ତ ବ୍ରହ୍ମାଣ୍ଡେ ମୁହିଁ ଏକ ତୁଚ୍ଛ ପ୍ରାଣୀ ।

ଦ୍ୱେଷ, ହିଂସା, କ୍ରୋଧ, ସ୍ୱାର୍ଥପରତା, କଳହ,
ନୀଚ, ତୁଚ୍ଛ ଭାବ ହୃଦେ ବହି ଅହରହ ।
ଅଳୀକ, ଅନନ୍ତ ଆଶା, ଅନନ୍ତ ଲାଳସା,
କରୁଛି କ୍ଷଣିକ କାର୍ଯ୍ୟେ ଜୀବନ ବ୍ୟବସା ।

ପକ୍ଷାନ୍ତରେ ଭାଳି ପୁଣି ହୁଏଁ ବିମୋହିତ,
କେତେ ମହାଭାବ ହୃଦେ ରହିଛି ନିହିତ ।
ଦୟା, ମାୟା, ଭକ୍ତି, ସ୍ନେହ ପୂର୍ଣ୍ଣ ହୃଦୟରେ,
ବିଭୂଷିତ ରହିଅଛି ସ୍ୱର୍ଗୀୟ ଭାବରେ ।

କ୍ଷୁଦ୍ର ପ୍ରାଣେ ମହାଭାବ କରେ ଅନୁଭବ,
ବିଶ୍ୱ ବ୍ରହ୍ମାଣ୍ଡର ଗତି କାର୍ଯ୍ୟାବଳୀ ସବୁ ।

ନରକର କୀଟ ମୁଁ କି ସ୍ୱର୍ଗର ଦେବତା,
ଭାଳି ଭାଳି ମନେ କିଛି ନ ହେଲା ସ୍ଥିରତା ।
ପ୍ରତି ମୁହୂର୍ତ୍ତରେ ପ୍ରାଣ ଚଳେ ମୃତ୍ୟୁ ପାଶେ,
ସେ କଥା ପାସୋରି ମୁଁ ତ ରହିଛି ଉଲ୍ଲାସେ ।
ଗଲେ ପୁଣି ଯେ କାଳରେ ଜୀବନର ଗତି,
ଅନ୍ଧକାର ଦେଖି ହୁଏ ବିଚଳିତ ମତି ।
ନିଗୂଢ଼ ରହସ୍ୟ ଜାଣିବାର ଶକ୍ତି ନାହିଁ,
ଜାଣି ଶୁଣି ବୃଥା ଆଉ ଭାଳିବି କିପାଇଁ ?
ଆତ୍ମସମର୍ପଣ କଲେ ପ୍ରଭୁଙ୍କ ହସ୍ତରେ,
ଦେଖୁଛି ତ ମନ ପ୍ରାଣ ଥାଏ ନିଶ୍ଚିନ୍ତରେ ।
ଯାହା ଇଚ୍ଛା କର ମହାପ୍ରଭୁ ଭଗବାନ,
ତବ ପଦେ ସମର୍ପଣ କଲି ମନ ପ୍ରାଣ ।

———

## ଯୋଗୀନାଥ

( ରାଗ—ମଙ୍ଗଳ )

ଷାଠିଏ ବରଷ ବୁଢ଼ା ଜାତି ଯୋଗୀ ନାଥ,
ଭିକ ମାଗି ପୋଷେ ପେଟ ଦରିଦ୍ର ନିତାନ୍ତ ।
ଦୁଇଗୋଟି ପୁଅଝିଅ ଭାର୍ଯ୍ୟା ସହିତରେ,
କେହିରୂପେ ଚଳେ ଘର ନିତାନ୍ତ କଷ୍ଟରେ ।
ନାନା ଛନ୍ଦେ ଗାଏ ଗୀତ ହରି ହରି ବୋଲି,
ଦିନଯାକ ମାଗେ ଭିକ ଗ୍ରାମେ ଗ୍ରାମେ ବୁଲି ।
ଦୁଃଖ ଭିକ୍ଷା ଖାଆନ୍ତି ସୁଖେ ମିଳି ଗୃହଜଣ,
ଘରେ ବସି କରେ ନାଥ ହରି ସଙ୍କୀର୍ତ୍ତନ ।
ଦିନକରେ ଯୋଗୀନାଥ ବିଚାରିଲା ମନେ,
ପଡ଼ିଥିବି କେତେ କାଳ ମାୟାର ବନ୍ଧନେ ।
ପୁତ୍ର କନ୍ୟା ଭାର୍ଯ୍ୟା କେହି ସଙ୍ଗେ ଯିବେ ନାହିଁ,
ପଡ଼ିଥିବେ ସବେ ମୁହିଁ ଚାଲିଯିବି କାହିଁ ।
ଘର ଛାଡ଼ି କରିବି ମୁଁ ତୀର୍ଥ ପର୍ଯ୍ୟଟନ,
କରିବି ଆତ୍ମାର ମୁକ୍ତି ମାର୍ଗ ଅନ୍ୱେଷଣ ।

ଏହିରୂପେ ନାଥେ କେତେ କଥା ଭାଳି ମନେ,
ପରିବାର ଛାଡ଼ି ଗଲେ ତୀର୍ଥ ପର୍ଯ୍ୟଟନେ ।
ମାତ୍ର ନାଥ ଭ୍ରମିଲେହେଁ ବିବିଧ ତୀର୍ଥରେ,
ଅନୁକ୍ଷଣେ ଘରକଥା ପଡ଼ଇ ମନରେ ।
ଦିନେ ତାକୁ ନ ମିଳିଲା ମାର୍ଗରେ ଆହାର,
କଷ୍ଟ ପାଇ ଉପୁଜିଲା ଚେତନା ତାହାର ।
ପଡ଼ିଛନ୍ତି ମୋହ ପୁତ୍ର କନ୍ୟା ଭାର୍ଯ୍ୟା ଘରେ,
ଏହିପରି କଷ୍ଟେ ସିନା ଥିବେ ଉପାସରେ ?
ପୁଣି ସେ ଦେଖିଲା ଯାଇ ଏକ ତୀର୍ଥ ସ୍ଥାନେ,
ଦେବତାକୁ ଭୋଗ ଦେଉଛନ୍ତି ଭକ୍ତମାନେ ।
ବିଚାରିଲା ନାଥ ଦେବତାକୁ ଦେଇ ଭୋଗ,
ପରକାଳେ ଲୋକମାନେ ଲଭନ୍ତି କି ସ୍ୱର୍ଗ ?
ଦେବତା ତ ଭୋଗଗୁଡ଼ ଖାଇଯାନ୍ତି ନାହିଁ,
ଦେଉଛନ୍ତି ସିନା ମନ ବୁଝିବାର ପାଇଁ ।
ଦେବତାକୁ ଦେଇ ଲୋକେ କାଳ୍ପନିକ ଭୋଗ,
ପ୍ରତ୍ୟାଶା କରନ୍ତି ଲାଭ କରିବାକୁ ସ୍ୱର୍ଗ ।
ତିନିଗୋଟି ମହାପ୍ରାଣୀ ପଡ଼ିଛନ୍ତି ଘରେ,
ଅନାହାରେ ଦିନ କାଟୁଥିବେ ବିକଳରେ ।
ପ୍ରଭୁଦତ୍ତ ଆତ୍ମା ତିନିଗୋଟି ଉପବାସେ,
ପଡ଼ିଛନ୍ତି, ଧର୍ମପାଇଁ ଭ୍ରମୁଛି ପ୍ରବାସେ ।
ପ୍ରଭୁ କରିଥିଲେ ମୋହ ହସ୍ତେ ସମର୍ପଣ,
ଅବଶ୍ୟ କରନ୍ତି ତାଙ୍କ ଆଦେଶ ପାଳନ ।
ତାଙ୍କୁ ରଖି ଉପବାସେ ଦେବତାଙ୍କୁ ଭୋଗ.
ଦେଲେ ମୁଁ କି କେତେବେଳେ ଲଭିପାରେ ସ୍ୱର୍ଗ ?
ଛିଣ୍ଡାଇ ଆସିଛି ମୁଁ କି ମାୟାର ବନ୍ଧନ ?
ମାୟାବଦ୍ଧ ହୋଇ ମୁଁ ତ କରୁଛି ଭ୍ରମଣ ।
ବିଧାତା ଯାହାଙ୍କୁ ସମ୍ପିଛନ୍ତି ମୋ ହସ୍ତରେ,
ତାଙ୍କୁ ଦେଇ କଷ୍ଟ ମୁଁ ତ ଭ୍ରମୁଛି ସ୍ୱାର୍ଥରେ ।
ସେହି ତିନ ପ୍ରାଣୀ କରୁଛନ୍ତି ହାହାକାର,
ଲୋଡ଼ୁଛି ମୁଁ ଲଭିବାକୁ ଆପଣା ଉଦ୍ଧାର ।

ତୀର୍ଥ ଭ୍ରମି ଦେବ ସେବ ମୁକ୍ତ ଲଭ ପାରେଁ,
ଏ ତ ମାୟା ବିନା ଆଉ କିବା ହୋଇପାରେ ?
ଆଶ୍ରିତ ପ୍ରାଣୀକୁ କଷ୍ଟ ଦେଇ ମୁହିଁ ମୁକ୍ତ,
ଲଭିବ, ଏହା କି କେଭେ ହୋଇପାରେ ଯୁକ୍ତ ?
ପରିବାର ବନ୍ଧନକୁ ଯେବେ ବୋଲ ମାୟା,
ତେବେ ତ ସଂସାରେ ତାଙ୍କ ଅଛି ମାୟା ଛାୟା ।
ସତ୍ୟମୟ ବିଧାତାଙ୍କୁ ଜଗତ ସଂସାର,
ମାୟାରୂପେ ଦେଖ ତାଙ୍କୁ ଶତ୍ରୁର ବିକାର ।
ଜଗତର କାର୍ଯ୍ୟ ଦେଖି ସ୍ଥିର କଲ ଯୁକ୍ତି,
କର୍ତ୍ତବ୍ୟ ପାଳିଲେ ଲୋକ ଲଭିପାରେ ମୁକ୍ତି ।
ଏତେ କଥା ଭଲ ନାଥ ଆପଣା ମନରେ,
ବାହୁଡ଼ି ମିଳିଲ ପରିବାର ସହିତରେ ।
ସେ ଜାଣେ ଯେରୂପ ହେଲ ଭେଟ ପରସ୍ପରେ,
ବିଚ୍ଛେଦ ଉତ୍ତରେ ଯାହା ଘଟେ ମିଳନରେ ।
ଭିକ୍ଷାଲବ୍ଧ ଅନ୍ନ ସେହ୍ନ ଦୁଃଖୀ ପରିବାର
ଆନନ୍ଦ ମନରେ ବାଣ୍ଟି କରନ୍ତି ଆହାର ।
ଦୁଃଖେ ସୁଖେ ଦିନ କାଟୁଥାନ୍ତି ଚରି ଜଣ,
ଭକ୍ତିଭରେ କରୁଥାନ୍ତି ହରି ସଙ୍କୀର୍ତ୍ତନ ।

---

## ଆଶା

( ରାଗ—ମଙ୍ଗଳ )

ଅମର ବିହଗୀ ସେ କି ? ବିଚିତ୍ର ବରଣ,
କେଉଁ ମହାଗଗନରେ କରେ ବିଚରଣ ?
ଆକର୍ଷଣ କରେ ମନ ଆଶ୍ୱାସେ ବିଶ୍ୱାସେ,
ତାହା ପଛେ ଗଗନରେ ଭ୍ରମିବା ସକାଶେ ।
କି ଆଲୋକ ସୁଖମୟ ଦେଶେ ଯିବାପାଇଁ,
ହବା ନଶି ପ୍ରାଣ ତାହା ପଛେ ଥାଏ ଧାଇଁ ।
ଉଦାର ଆହ୍ୱାନେ ସବୁ ଭୁଲିଯାଏ ପ୍ରାଣ,
ଲଙ୍ଘିଯାଏ କେତେ ବାଧା ବିଘ୍ନ ବ୍ୟବଧାନ ।
ସ୍ୱର୍ଣ୍ଣରଥେ ଚେନିଯାଏ ଅନ୍ଧକାର ଦେଶେ,
ସଙ୍କୀର୍ଣ୍ଣତା ଭୁଲି ମନ ଧାଏଁ ମହାବେଶେ ।
ନ ବୁଝେ ସେ ମାୟାରୂପୀ ମରୁ ମରୀଚିକା,
ଭ୍ରମ ଚକ୍ଷେ ଭୁଲିଯାଏ ରୂପ ବିଶ୍ୱାସିକା ।
ମାନବ ନ ଥିଲେ ଆଶା-ରଜ୍ଜୁର ବନ୍ଧନ,
ଭାସୁଥାନ୍ତା ତମୋମୟ ଗଗନେ ଜୀବନ ।

---

## ମାନବର ମନ

ଉଚ୍ଚଠାରୁ ଉଚ୍ଚତମ କିବା ? ନୀଳନଭ ।
ଗଭୀରୁ ଗଭୀରତମ ? ମହାସିନ୍ଧୁ ଗର୍ଭ ।
ଅତି ଦ୍ରୁତତମ ଗତି କାହାର ? ପବନ ।
ପାରେ କେ ସମସ୍ତ ଜିଣି ? ମାନବର ମନ ।

---

## ଉତ୍କଳ କୃଷକ

ଦେଖିଛ କି ଭାଇ ! କେଭେ ଉତ୍କଳ କୃଷକ ?
କଙ୍କାଳ କଙ୍କାଳସାର ଦେଖ ଏହ୍ନ ଲୋକ !
ମଳିନ ବସନ ଖଣ୍ଡେ, ଆଣ୍ଠୁ ଲୁଚୁ ନାହିଁ,
ଧନ କାହିଁ ଲୁଗା ଖଣ୍ଡେ କିଣେ ପିଲାପାଇଁ ?
ଧୂଳିରେ ଧୂସର ପିଲାଗୁଡ଼ିକ ଉଲଙ୍ଗ,
କି କଥା ବୋଲିବି ଅବା ଘରଣୀ ପ୍ରସଙ୍ଗ ।
ଅଣ୍ଟାରେ ଦେଇଛି ପିନ୍ଧା ଲୁଗା ଖଣ୍ଡି ଆଣ୍ଠି,
କାଦୁଅ ପାଣିରେ ଦିନଯାକ ଥୁଏ ଘାଣ୍ଟି ।
ବିଲ ବାଛୁବାକୁ ଦେଖ ଆଣ୍ଠୋଇ ପଡ଼ିଛି,
ପିଠିରୁ ରକତ ଶୋଷି ଖାନ୍ତି ମଶା ମାଛି ।
ଜ୍ୟେଷ୍ଠମାସ ମୁଣ୍ଡଫଟା ଖରା ତାହାପାଇଁ,
ମାଡ଼ ଧରିଥାଏ କ୍ଷେତ ତଳକୁ ଅନାଇ ।
ବଳଦ ହଳକ ସାହା, କ୍ଳାନ୍ତି, ବନ୍ଧୁ, ଆଶା,
ସବୁବେଳେ ସେମାନଙ୍କ ସଙ୍ଗେ କଥା ଭାଷା ।

ବାରମ୍ବାର ଆକାଶକୁ ଚାହୁଁଥାଏ ଚଷା,
କେବଳ ତାହାର ଇନ୍ଦ୍ରଦେବତା ଭରସା ।
ଦେବତା କୃପାରେ ଯେବେ କାଟେ ଚାହେଁଛେଲ,
କି ହେବ ସେଥିରେ, ପରପାଇଁ ଘର ମେଲି ।

ଖଳାମୁଣ୍ଡେ ଆସି ଜଗି ବସିଥାଏ ସାହୁ,
ଘେନଯାଏ ଅଧେ, ମୂଳ କଳନ୍ତର ଆଉ ।

ପାଞ୍ଚପଣୁଁ ଅଧିକରେ ଯାଏ ରାଜ କରେ,
ବଳକା ମୁଠାକ ମାତ୍ର ପଣେ ଆସି ଘରେ ।

ଲୁଗାପଟା ତେଲ ଲୁଣ ଗଲା ଦୁଇପଣି,
ଫଗୁଣ ପାହାନ୍ତୁ ପଡ଼ିଗଲା ଟଣାଟଣି ।
ଆହା ରେ ! କି ପାପ କରିଥିଲୁ ଜଣାନାହିଁ,
ଚଷାକୁଳେ ଜନ୍ମ ଦେଲା ବିଧାତା କିପାଇଁ ?

ଆନନ୍ଦ ଉତ୍ସବ ତୋତେ କିଛି ନାହିଁ ଜଣା,
ସମାଜର ନିମ୍ନଶ୍ରେଣୀ ମଧ୍ୟେ ତୋ ଗଣନା ।
ଜଗତକୁ ଦେଉ ଅନ୍ନ ଆପେ ଉପବାସୀ,
ସୁଖ ଦୁଃଖ ବେଳେ କେହି ନ ପଚାରେ ଆସି ।

ରାଜା ବୋଲ, ମନ୍ତ୍ରୀ ବୋଲ, ଅମଲା, କରଣ,
ତୋହର କୃପାବଳେ ସମସ୍ତଙ୍କ ବଡ଼ପଣ !
ହାକମ, ଓକିଲ, ମହାଜନ, ଗ୍ରନ୍ଥକାର,
ସମସ୍ତଙ୍କୁ ଦିଏ ଏହି କୃଷକ ଆହାର ।

ଯାହା କୃପାବଳେ କର ଜୀବନ ଧାରଣ,
ଯାହା କୃପାବଳେ ସମସ୍ତଙ୍କ ବଡ଼ପଣ ।
ଏକମାତ୍ର ପ୍ରାଣରକ୍ଷାକାରୀ ଯେ ଲୋକର,
ଧିକ ! ଧିକ ! କର ତାକୁ ଏତେ ହତାଦର !

ସମସ୍ତଙ୍କୁ ବାଣ୍ଟେ ଅନ୍ନ, ସମସ୍ତଙ୍କୁ ଭୟ !
ଆହାରେ ସମାଜ ! କେତେ କଠିନ ନିର୍ଦ୍ଦୟ !
ଆଜିକାଲି ବାବୁମାନେ ଲାଗି ପଡ଼ିଛନ୍ତି,
ଦଶ ଦିନେ କରିଦେବେ ଦେଶର ଉନ୍ନତି !

କେହି ଭାଳେ ଶିଳ୍ପକଥା, କେହି ବା ସ୍ୱଦେଶୀ,
ମାତୃଭାଷା ଉନ୍ନତିଟା କେହି ଭାଳେ ବେଶୀ ।

କୃଷକ ଆଡ଼କୁ କେହି ନ ଅନାଏ ବାରେ,
ଭାତ କଣ ମିଳୁ ନାହିଁ, ଚିନ୍ତା ସେ କଥାରେ ?
କୃଷକ କି କରେ ନାହିଁ ବକ୍ତୃତା ରଚନ ?
କେ କରିବ ତାହା କଥା କିପାଇ ଭାବନା ?

ବାହାରେ ମଳିନ ବେଶ, ଅନ୍ତରେ ସରଳ,
ମୁଣ୍ଡଝାଳ ପୋଛି ଶସ୍ୟମୁଠାକ ସମ୍ବଳ ।

ଦୁଃଖେ ରାମ ! ସୁଖେ ରାମ ! ଯାଉଥିଲା ଚଳି,
ଏଣିକି ଚଷାର ଦଶା ଚଡ଼ିଲଣି ବଳି !

ଜମି ପାଞ୍ଚ ମାଣ ଖାଉଥିଲା ଚଷିମସି,
ପିଲାପିଲି ମୁହଁ ଦେଖୁଥିଲା ଘରେ ବସି ।
ଖଜଣା ଗଣ୍ଡାକ ଜମିଦାରକୁ ବୁଝାଇ
ଖାଉଥିଲା, କିଏ ଜମି ନଅନ୍ତା ଛଡ଼ାଇ ?

ପାଞ୍ଚ ପୁରୁଷର ଜମି ଖଣ୍ଡ ଥିଲା ପୁଞ୍ଜି,
ତେତିକ ବଳରେ ପଡ଼ିଥିଲା ମୁଣ୍ଡ ଗୁଞ୍ଜି ।
ସରକାର ବାହାଦୂର କଲେ ଦୟା ଭାରି,
ପ୍ରଜାସ୍ୱତ୍ୱ ଆଇନଟା କରିଦେଲେ ଜାରି ।

କୃଷକର ବଢ଼ିଗଲା ଗୋଟାଏ ଜୀବିକା,
ରେଜେଷ୍ଟ୍ରୀ ଅଫିସରେ ଜମି କିଣା ବିକା ।
ସବୁ ଦିନେ ଟାଣଟୁଣ ଘରେ ନାହିଁ ଭାତ,
ଜମିଖଣ୍ଡ ବିକିବାକୁ ବଢ଼ାଇଲା ହାତ ।

ଗଲା ଅଙ୍କ ପୁଅବାହା ବିକିଥିଲା ମାଣେ,
ବାପ ଶୁଦ୍ଧି ବେଳେ କେତେ ବିକିଲା କେ ଜାଣେ ?
ବାକି ଖଣ୍ଡକରେ ହେଲା ଭାରି ଟାଣଟୁଣ,
ମାଘ ଫଗୁଣରେ ଘରେ ନାହିଁ ଲେମ୍ବୁ ଲୁଣ ।

ଭାଗରେ ଲଗାଇ ଦେଲା ଜମା ଦେଢ଼ମାଣ,
ହଡ଼ା ହଳକର ହାଲ ଏଥୁଁ ସବୁ ଜାଣ !

ବାହାରିଲା ଘରଗୁଡ଼ ଲାଗିବାକୁ ମୂଳ,
ଜୟ ! ଜୟ ! ପ୍ରଜାସ୍ୱତ୍ୱ ହରି ହରି ବୋଲ !

———

## ପାତ୍ରୁଆ – ପାତ୍ରୁଣି

ନିବିଡ଼ ବିଜନ ବନେ ଆନନ୍ଦ ମନରେ
ପାତ୍ରୁଆ ପାତ୍ରୁଣି ଦୁହେଁ ଭ୍ରମନ୍ତି ସୁଖରେ !
ଶ୍ୱାପଦ ଆପଦ ପୂର୍ଣ୍ଣ, ନାହିଁ ଚିତ୍ତେ ଭୟ,
ଆତ୍ମଶକ୍ତି ଅସ୍ତ୍ର ପ୍ରତି ଅଭ୍ରାନ୍ତ ପ୍ରତ୍ୟୟ ।
ପତି ପତ୍ନୀ ଭିନ୍ନଦେହୀ ଏକ ମନପ୍ରାଣ,
ଉଦର ପୋଷଣ ବିନା ନାହିଁ ଆନ ଜ୍ଞାନ ।
କପୋତ ମିଥୁନ ସମ ପାତ୍ରୁଆ ଦମ୍ପତି,
ଖନିତ୍ର, ଟୋକାଇ, ଧନୁ, ଟାଙ୍ଗିଆ ସମ୍ପତ୍ତି ।
କେତେଗୋଟା ଶୁଷ୍କ ଶାଖା ତୃଣ କେତେ ବିଡ଼ା
ନିର୍ମିତ କୁଟୀର ବୃକ୍ଷମୂଳେ ଅଛି ଛିଡ଼ା ।
ଦିନଯାକ ଥାଏ ନାହିଁ କୁଟୀର ସମ୍ପର୍କ,
ରାତିରେ କେବଳ ଶୋଇଥାନ୍ତି ଦୁଇଲୋକ ।
ପ୍ରଭାତେ ପାତ୍ରୁଆ ଯୁବା ଚାଲେ ଧୀରେ ଧୀରେ,
ହାତେ ଧନୁବାଣ ଖଣ୍ଡେ ଟାଙ୍ଗିଆ ଅଣ୍ଟିରେ ।
ଦିଗମ୍ବରୀ ଶ୍ୟାମାଙ୍ଗିନୀ ପାତ୍ରୁଣି ଯୁବତୀ,
କାଖରେ ଟୋକାଇ ଗୋଟେ ହାତରେ ଖଣତି ।
କଟୀ ନିମ୍ନେ ଆଗେ ପଛେ ପଲ୍ଲବ ଗୁଚ୍ଛରେ
ପାତ୍ରୁଣି ସୁନ୍ଦରୀ ଲଜ୍ଜା ନିବାରଣ କରେ । *
କୌପୀନ ମାତ୍ରକ ପାତ୍ରୁଆର ପରିଧାନ,
ନାହିଁ ଭବୀ ଚିନ୍ତା, ମାନ, ଅପମାନ ଜ୍ଞାନ ।
ମସିଆ, କଡ଼ବା, ଝୁଙ୍ଗା, ବନଆଳୁ ପିଠା
ପାତ୍ରୁଣି ଆଣଇ ଖୋଳି, ଆହାରେ କି ଚିନ୍ତା ?
ପ୍ରକୃତିର ଗନ୍ତାଘର ଯା'ଠାରେ ଉନ୍ମୁକ୍ତ
ରହିବ କି କଦାଚିତ ସେ ଲୋକ ଅଭୁକ୍ତ ?
ନେଉଳ, ଠେକୁଆ, ଶାଗ, ଶୁଆ, ବଣି, ଗୋଧି,
ଘେନି ଆସେ ବନୁ କରି ପାତ୍ରୁଆ ପାରିଧି ।

ମୂର୍ତ୍ତିମତୀ ସରଳତା ପାତ୍ରୁଆକାମିନୀ,
ଖଟିଥାଏ ସ୍ୱାମୀପଦେ ଦିବସ ଯାମିନୀ ।
ଶୟନେ, ଭୋଜନେ, ଉପବେଶନେ, ଗମନେ
ଥାଏ ସଦା ସ୍ୱାମୀ ସଙ୍ଗେ ସଜନେ ବିଜନେ ।
ନାହିଁ ଚିନ୍ତା, ନାହିଁ ଜ୍ଞାନ ଭୂତ ଭବିଷ୍ୟତ,
ନିୟତ ପ୍ରଫୁଲ୍ଲ ମନ ଆନନ୍ଦେ ଉନ୍ମତ୍ତ ।
କାନନ କୁସୁମ ଗୁନ୍ଥି ପାତ୍ରୁଆ ହସ୍ତରେ
ମଣ୍ଡାଏ ପାତ୍ରୁଣି ଦେହ ପରମ ଯତନରେ ।
ପାତ୍ରୁଆ ଭୂମିରେ ଗଛମୂଳେ ଥାଏ ଶୋଇ,
ଜଗି ବସିଥାଏ ତାହା ପାଶରେ ପାତ୍ରୁଣି ।
ନାହିଁ ଧର୍ମାଧର୍ମ ଜ୍ଞାନ ଭୂତ ଭବିଷ୍ୟତ,
ପ୍ରକୃତିଦ୍ୱାରା ଚାଳିତ କାର୍ଯ୍ୟ କରନ୍ତି ସମସ୍ତ ।
ସଭ୍ୟତା, ସୌଭାଗ୍ୟ, ବିଦ୍ୟା, ବିଳାସ, ବାସନା,
ସ୍ୱଭାବର ଶିଶୁଗଣେ ନାହିଁ କିଛି ଜଣା ।
ବନଂ ମଧୁ, ଫୁଲ, ମୂଳ, ବନ୍ୟପଶୁ, ପକ୍ଷୀ,
ପ୍ରକୃତି ସନ୍ତାନଗଣ ପାଇଁ ଛନ୍ତି ରଖି ।
ବିଳାସ ବାସନା, ଅନ୍ନ ପାଇଁ ହାହାକାର,
ପ୍ରବଞ୍ଚନା, ପ୍ରତାରଣା, ଅଳୀକ ବେଭାର,
ସ୍ୱାର୍ଥ ଆଶେ ପରାର୍ଥକୁ ଦେବା ବଳିଦାନ,
ନିତ୍ୟ ବ୍ୟସ୍ତ ଲଭିବାକୁ ଗୌରବ ସମ୍ମାନ !
ନାହିଁ ଲୋଡ଼ା ସେ ସଭ୍ୟତା, କି ହେବ ସେ ଜ୍ଞାନେ ?
ଦେବାକୁ ଯଦ୍ୟପି ହେବ କଷ୍ଟ ପରପ୍ରାଣେ !
ଯେ ବିଦ୍ୟା ସଭ୍ୟତା କ୍ଷଣଭଙ୍ଗୁର ଜୀବନ
କଳୁଷିତ କରେ, କିବା ତହିଁ ପ୍ରୟୋଜନ ?
ସାଧିବାକୁ ପାର ଯେବେ ସ୍ୱଦେଶ କଲ୍ୟାଣ,
କର ଯେବେ ପ୍ରଭୁପଦ ଭକ୍ତିଭାବେ ଧ୍ୟାନ,
ହୁଅ ସଭ୍ୟ ଭବ୍ୟ, କର ବିଦ୍ୟା ଆଲୋଚନା,
ଅନ୍ୟଥା ଜୀବନେ ଜାଣ ସର୍ବ ବିଡ଼ମ୍ବନା !

---

* ତ୍ରିଶ ବର୍ଷ ପୂର୍ବେ ପାତ୍ରୁଆ ଜାତି ସମ୍ପୂର୍ଣ୍ଣ ଉଲଗ୍ନ ଅବସ୍ଥାରେ ପାର୍ବତ୍ୟ ନିବିଡ଼ ଅରଣ୍ୟରେ ଭ୍ରମଣ କରୁଥିଲେ । ଢେଙ୍କାନାଳରେ ପ୍ରାତଃସ୍ମରଣୀୟ ମହାରାଜା ଭଗୀରଥ ମହେନ୍ଦ୍ର ବାହାଦୁର ବହୁ ଚେଷ୍ଟାରେ ସେମାନଙ୍କୁ ବସ୍ତ୍ର ପରିଧାନ କରାଇଥିଲେ । ତଦବଧି ସେମାନଙ୍କ ଅବସ୍ଥା କ୍ରମଶଃ ଉନ୍ନତ ହୋଇ ଆସୁଅଛି । ବର୍ତ୍ତମାନ ସେମାନେ କୃଷି କାର୍ଯ୍ୟରେ ନିଯୁକ୍ତ ଅଛନ୍ତି ।

ବରଞ୍ଚ ପାଗୁଆ ବେଶେ ଭ୍ରମିବା ବନରେ
ଉଚତ, କଳୁଷ ପ୍ରାଣେ ସଭ୍ୟ ସମାଜରେ
ଅନୁଚତ ବାସ—ଯାହା ନରକ ଆକର !
ପାଗୁଆ ଜୀବନ ବହୁଗୁଣେ ଶ୍ରେଷ୍ଠତର ।

———

## ଦୁଃଖୀ ମାନବ

ଧନ ଅଭାବେ ଦୁଃଖୀ କେହୁ,
କେହୁ ବା ଦୁଃଖୀ ପୀଡ଼ାଦେହୀ,
କେ ଦୁଃଖୀ ଜ୍ଞାତ ପରଜନେ,
ସମ୍ପୂର୍ଣ୍ଣ ସୁଖୀ ନାହିଁ ଜଣେ ।

———

## ଅଜ୍ଞେୟ ଜୀବନ ଗତି

ଅଜ୍ଞେୟ ଜୀବନ ଗତି - ଅସୀମ ଅନନ୍ତ,
ସଙ୍କୀର୍ଣ୍ଣ ମାନବ ଜ୍ଞାନ ପାଇବ କି ତତ୍ତ୍ୱ ?
ଜୀବନର ଭବ ଘୋର ତମିର ଆଚ୍ଛନ୍ନ,
ସାଧ୍ୟ କି—ପ୍ରବେଶେ କ୍ଷୁଦ୍ର ସାମାନ୍ୟ ବିଜ୍ଞାନ ?
ନିହିତ କି ଦ୍ରବ୍ୟ ଅଚ୍ଛି ସାଗର ଗର୍ଭରେ—
କଳବାକୁ ଲୋଡ଼ିବାର ହସ୍ତନିକ୍ଷେପରେ !
ମାନବ ସ୍ୱାଧୀନ ? କମ୍ବା ଅଲକ୍ଷ୍ୟ ସୂତ୍ରରେ
ଚାଳିତ ? ନ ଯାଏ ଜଣା ସାମାନ୍ୟ ବୁଦ୍ଧିରେ ।
ପାପ ପୁଣ୍ୟ ବେନି ମାର୍ଗେ ଜୀବନର ଗତି,
କେ ଚଳେ ଅଧର୍ମ ମାର୍ଗେ—ଧର୍ମେ କାହା ମତି ।
ପ୍ରତ୍ୟକ୍ଷରେ ଦେଖୁଁ ଏହି ଗତି ବିଦ୍ୟମାନ,
କେ ବୁଝାଇ ଦେବ ବୋଲ ପାର୍ଥକ୍ୟ ବିଧାନ ?
ଚାଳିତ ହେଲେହେଁ ଦୈବୀ ମାୟା ପ୍ରଭାବରେ,
ଆତ୍ମକୃତ ଫଳ ଭୁଞ୍ଜେ ଦେଖୁ ପ୍ରତ୍ୟକ୍ଷରେ ।
ଜାଣି ମଧ୍ୟ ଲୋକ ଧର୍ମାଧର୍ମ ପରିଣାମ,
ଅଧର୍ମେ ଧାବିତ ଚିତ୍ତ, ଏ କି ବୁଦ୍ଧି ବାମ !

କେ ବୋଲେ ସହଜସାଧ୍ୟ ପାପ ଅନୁଷ୍ଠାନ ?
କରେ ତାହା ଲୋକ ହୋଇ କେତେ ସାବଧାନ ।
ଆସୁ ସୁଖ, ପରିଶେଷେ ବିଷମ ଯନ୍ତ୍ରଣା,
ସହଜ ଜ୍ଞାନରେ ପାପ ପରିଣାମ ଜଣା ।
ଅନଳ ଦାହିକା ଶକ୍ତି ନ ଜାଣେ ପତଙ୍ଗ,
ମାନବ ସନ୍ତାନ ଜାଣେ ଅଧର୍ମ ପ୍ରସଙ୍ଗ ।
ସେ ବଂଶେ ଚୈତନ୍ୟ, ଯୀଶୁ, ବୁଦ୍ଧ ବ୍ରହ୍ମଋଷି,
ସେ ବଂଶେ ସିଜାରେ, ମିଟରେ ନରହତ୍ୟାକାଶି ।
ଦେବତା ପିଶାଚ ନରକୁଳେ ସମ୍ମିଳନ,
ଏହାର କାରଣ କିନ୍ତୁ ଅଟଇ ପ୍ରଚ୍ଛନ୍ନ ।
ଶିକ୍ଷା ସହବାସେ ଘଟିଥାଏ ଏ ପ୍ରକାର,
ମାତ୍ର ପ୍ରତ୍ୟକ୍ଷରେ ଦେଖୁଁ ନିତ୍ୟ ବ୍ୟଭିଚାର ।
ସ୍ୱଭାବ ଅଭ୍ୟାସ ଉଭ ହେଲେହେଁ ସମାନ,
ମାତ୍ର କାର୍ଯ୍ୟକ୍ଷେତ୍ରେ ଦେଖୁଁ ସ୍ୱଭାବ ପ୍ରଧାନ ।
କାହା ପ୍ରେରଣାରେ ଲୋକ କାର୍ଯ୍ୟରେ ପ୍ରବୃତ୍ତ ?
ସ୍ୱଭାବର ଶକ୍ତି ଅତି ଅସୀମ ଅଦ୍ଭୁତ ।
ମାନବ ସ୍ୱାଧୀନ ଇଚ୍ଛା କେ କରେ ସ୍ୱୀକାର ?
ଅଲଙ୍ଘ୍ୟ ନିୟମେ ଚଳେ ଜଗତ ସଂସାର ।
ବିଶ୍ୱ ବ୍ରହ୍ମାଣ୍ଡର ନେତା ପ୍ରକୃତି ନିୟମ,
ସାଧ୍ୟ କି ସ୍ୱାଧୀନ ଇଚ୍ଛା କରେ ଅତିକ୍ରମ ।
ଦେଶ କାଳ ପାତ୍ର ଭେଦେ ବିବେକ ପରାସ୍ତ,
କାର୍ଯ୍ୟ କାରଣେ ଅତି ପ୍ରଚ୍ଛନ୍ନ ନିତାନ୍ତ ।
ମାନବ ଜୀବନ ଭାବୀ ଯାବନ୍ତ ଘଟଣା,
ଭୂତଭବିଷ୍ୟତଦର୍ଶୀ ଈଶ୍ୱରଙ୍କୁ ଜଣା;
ଜାଣନ୍ତି ଈଶ୍ୱର ଯାହା—ଅଭ୍ରାନ୍ତ ସମସ୍ତ,
କାହା ସାଧ୍ୟ ଅଣୁମାତ୍ର କରେ ଇତସ୍ତତଃ ?
ଜନମି ଜଗତେ ଲୋକ କରିବ ଯେ କାର୍ଯ୍ୟ,
ଅଜ୍ଞେୟ ଆଦେଶ ପୂର୍ବୁଁ କରିଛନ୍ତି ଧାର୍ଯ୍ୟ ।
ରଙ୍ଗାଳୟେ ଯେ କରିବ ଯେଉଁ ଅଭିନୟ,
ପୂର୍ବୁଁ ସୂତ୍ରଧର କରିଅଛନ୍ତି ନିଶ୍ଚୟ ।

ସୀମା ଲଙ୍ଘିବାର ଅଭିନେତା ଶକ୍ତି କାହିଁ ?
ସ୍ୱାଧୀନ ମାନବ କର ଚିନ୍ତାର କପାଇଁ ?
ଜୀବନର ଗତି ତତ୍ତ୍ୱ କଲେ ଅନ୍ୱେଷଣ,
ଅନନ୍ତ ଊର୍ମିରେ ମନ ମଗ୍ନ ଅବସନ୍ନ ।
ବିଜ୍ଞାନର ଜଡ଼ବାଦ, ଦାର୍ଶନିକ ତତ୍ତ୍ୱ,
ନାନା ମୁନିଙ୍କର ଅଛି ଭିନ୍ନ ଭିନ୍ନ ମତ ।
ଥିଲେ ଏକା ଜଣେ ମହାଜ୍ଞାନୀ ନିଉଟନ,
ଯାହାଙ୍କ ପ୍ରତିଭା ଗାନ କରଇ ଭୁବନ, ।
"ଜ୍ଞାନସିନ୍ଧୁ ତୀରେ ବସି" ବୋଲିଛନ୍ତି ସେହି,
"କେତେଟା ଉପଳ ମାତ୍ର ଗୋଟାଇଛି ମୁହିଁ ।"
ବିନ୍ଦୁ କି ସିନ୍ଧୁର ତତ୍ତ୍ୱ କଥା ପାରେ ଜାଣି ?
ନ ଭୁଲ ଏ ବିଶ୍ୱେ ତୁମ୍ଭେ ଅଟ କ୍ଷୁଦ୍ର ପ୍ରାଣୀ ।
ଲେଉଡ଼ ବ୍ରହ୍ମାଣ୍ଡର କାର୍ଯ୍ୟ କାରଣ ବନ୍ଧନ,
ପତଙ୍ଗ କି ଲଙ୍ଘିପାରେ ଅନନ୍ତ ଗଗନ ?
ଯେତିକ ଜାଣିବା ମାତ୍ର ଅଛି ପ୍ରୟୋଜନ,
ସେହି ମାତ୍ର ତତ୍ତ୍ୱ ମାର୍ଗ କର ଅନ୍ୱେଷଣ ।
ନ ଜାଣେ ମାନବ ଜାତି ଭୂତ, ଭବିଷ୍ୟତ,
ନ ଜାଣେ ସେ ପୂର୍ଣ୍ଣରୂପେ ବର୍ତ୍ତମାନ ତତ୍ତ୍ୱ ।
ଖରଷଣ ପ୍ରବାହ ନଏ ଭସାଇ ଜୀବନେ,
ସାଧ୍ୟ କି ତୁମ୍ଭର ସ୍ଥିର ରହିପାର କ୍ଷଣେ ?
ଏତିକ ମାତ୍ରକ ଜଣା ଅନନ୍ତ ଜୀବନ,
ନିତ୍ୟ ଉନ୍ନତି ମାର୍ଗ କରେ ଅନ୍ୱେଷଣ ।
ରଖି ଉଚ୍ଚତମ ସ୍ଥାନେ ଲକ୍ଷ୍ୟ ଆହେ ଭାଇ !
ଅନନ୍ତ ପ୍ରବାହେ ଦିଅ ଜୀବନ ଭସାଇ ।
ଥିଲ, ଥିବ, ଅଛ—ଏହି କଥା ରଖି ମନେ,
ଅନୁଗତ ରହ ବିଶ୍ୱ ବିଧାତା ଚରଣେ ।
ସ୍ୱାଧୀନ ମାନବ—ଭ୍ରାନ୍ତ ଧାରଣା କେବଳ,
ହେବ ବିଧାତାର ବିଧି ଜୀବନେ ସଫଳ ।

———

## ଲାଗ ଲାଗ

( ରାଗ—ବଙ୍ଗଳାଶ୍ରୀ )

ଲାଗ ଲାଗ ଲାଗ ଉଠ ଉଠ ଜାଗ
ହେ ଭାଇ ଉତ୍କଳବାସି !
ଦେଖ ହେ କପରି କି କରୁଅଛନ୍ତି
ତୁମ୍ଭ ସର୍ବ ପ୍ରତିବାସୀ ।
ଅଙ୍ଗ ବଙ୍ଗବାସୀ ପଞ୍ଜାବୀ ପାରସୀ
ମରହଟ୍ଟା ନିରନ୍ତରେ,
ଦୃଢ଼ କରି ବ୍ରତ ଧାବିତ ସତତ
ଆତ୍ମଉନ୍ନତି ମାର୍ଗରେ ।
ଦେଖ ଗ୍ରାମ ଗ୍ରାମ ଜୀବନ ସଂଗ୍ରାମ
ଲାଗିଅଛି ସର୍ବ ସ୍ଥଳେ,
ସେହି ମହାଭାବ କେବଳ ଅଭାବ
ଦେଖୁଛି ମୁଁ ତ ଉତ୍କଳେ ।
ଆହେ ଭାଇମାନେ ! ଶୁଣ ସାବଧାନେ
ଏହି ଉନ୍ନତି ଯୁଗରେ,
ମୃତବତ ହୋଇ ପଡ଼ିବ କି ଶୋଇ
ଅଧମ ଜଡ଼ ରୂପରେ ?
ହେ ଉତ୍କଳଶ୍ରେଣୀ ! ନୁହ ତ ହେ ମେଣ୍ଢା,
ହୋଇ ଶାର୍ଦ୍ଦୂଳସନ୍ତାନ,
ଅଧମ ବେଶରେ ଅନ୍ୟ ଜାତିଠାରେ
ହେଉଅଛ ହୀନମାନ ।
ହେବା ହୀନମାନ ମରଣ ସମାନ
ଜ୍ଞାନ କି ନ କର ଭାଇ ?
ଜ୍ଞାନ ସାହସରେ କି ହୋଇ ନ ପାରେ
ଜାପାନକୁ ଦେଖ ଯାଇ ।
ଦିନ ଦିନ ହୋଇ ଯାଏ କାଳ ବହି,
ରହୁଛି କାହାକୁ ଚାହିଁ ?
ନିଜ କାର୍ଯ୍ୟମାନ ନ କଲେ ସାଧନ
କେ କରିବ ତୁମ୍ଭ ପାଇଁ ?

ବଙ୍ଗବାସୀମାନେ    ବିଲାତ ଜାପାନେ
ଆପଣା ଉନ୍ନତି ପାଇଁ,
ଆମ୍ଭେ ଅଣ୍ଡା ଭଳି    ଜାହାଜରେ ଚଢ଼ି
କେମନ୍ତ ଅଛନ୍ତି ଧାଇଁ !
ଭୀଷଣ ସାଗର    କଞ୍ଚିତ ମାତର
ଡରେ ନାହିଁ ଚଢ଼େ ଯାନ୍ତି,
କଥା କଥାକରେ    ଅତି ସହଜରେ
ଯାଏ ଓଡ଼ିଆଙ୍କ ଜାତି ।
ଅଳସପଣରେ    ଅମନୋଯୋଗରେ
ଏ ସୁଯୋଗ ଦେଲେ ଛାଡ଼ି,
ଉନ୍ନତ ଆସନେ    ବିଦେଶୀୟମାନେ
ଆଗରେ ବସିବେ ମାଡ଼ି ।
ଉନ୍ନତିର ପଥ    ବିଘ୍ନ ଶତ ଶତ
ବେଢ଼ିଅଛି ସ୍ଥଳେ ସ୍ଥଳେ,
ହୋଇ ମହାବଳୀ    ଚାଲ ପଦେ ଦଳି
ଉତ୍ସାହ ସାହସ ବଳେ ।
ବଙ୍ଗାଳୀଙ୍କ କାର୍ଯ୍ୟ    ଦେଖି କି ହେ ଲାଜ
ମାଡ଼ୁ ନାହିଁ ଆହେ ଭାଇ ?
କେତେ ବଡ଼ଲୋକ    ହେଉଛନ୍ତି ଦେଖ
ବିଲାତେ, ଜାପାନେ ଯାଇ ।
ଉନ୍ନତି-ପିପାସା    ତେଜ କୋଣପଣା
ହୋଇ ବସିଥାଅ ଘରେ,
କପର ତୁମ୍ଭର    ପୂରିବ ଉଦର
ଏ କଥା ନ ଭାଳ ଥରେ ।
କୁତ୍ସିତ ବେଭାର    କେତେ ଦେଶାଚାର
ଘେନ ବସିଅଛ ମୁଣ୍ଡେ,
ଦୁଃଖ କଷ୍ଟଚୟ    ଫେଡ଼ିବା ବିଷୟ
ବେଳେ ନ ଧରିଲ ତୁଣ୍ଡେ ।
କୂଅ-ବେଙ୍ଗ ପରି    ଅଛ ଜ୍ଞାନ କରି
ତୁମ୍ଭେ ସବୁ କଥା ଜାଣ,
ଅନ୍ଧ ବଚ୍ଚେ ପୁଣି    ହୋଇ ଠାଣିଠୁଣି
ଛାଡ଼ୁ ନାହିଁ ମୁହଁଠାଣ ।

ଦୁଇ ଚାରି ଜଣ    କରଛନ୍ତି ପଣ
ସମାଜ-ସଂସ୍କାର ପାଇଁ,
କଳହ କପାଳି    କରୁଅଛ ଯାଇ
ଉଦ୍ଭୁଡ଼ା ପଡ଼ ହେ ଭାଇ ?
ବିଧବା ସକାଶେ    କେହି ଯେବେ ଆସେ
ବୋଲିବାକୁ ଦୁଇ କଥା,
ତୁମ୍ଭେ ଠେଙ୍ଗା ଧରି    ଆସିବ ବାହାରି
ବାଡ଼େଇ ଦେବାକୁ ମଥା !
ତୁମ୍ଭର କି ଇଷ୍ଟ    ବିଧବାଏ କଷ୍ଟ
ପାଇ ମରନ୍ତୁ ଗୃହରେ ?
ଅବା ଭ୍ରୂଣହତ୍ୟା    କରଣ ଅଗତ୍ୟା
କାଳି ଦେଉନ୍ତୁ କୁଳରେ ?
ବିଧବା କଷ୍ଟରେ    ଯେବେ ବିକଳରେ
କେହି ସାଧୁଲୋକ କାନ୍ଦେ,
କରି କଉଶଳ    ଦେଇ ବୁଦ୍ଧିବଳ
ତାକୁ ପକାଇବ ଫାନ୍ଦେ ।
ଯେବେ କେହି ଭାଇ    ଘରୁ ଭାତ ଖାଇ
କରେ ପର ଉପକାର,
ତୁମ୍ଭେ ଧାଇଁଯାଇ    କରିବ କପାଁଇ
ତା ଉପରେ ଅତ୍ୟାଚାର ?
ଅନାଥା-ନିଶ୍ୱାସ    ତୁମ୍ଭ ସର୍ବନାଶ
କରିବ ନିଶ୍ଚୟ ଜାଣ,
ଜାଣିଥିବ ବାରେ    ଧର୍ମଙ୍କ ଦୁଆରେ
ଭାଙ୍ଗିଯିବ ତୁମ୍ଭ ଠାଣ !
ପତିହୀନା ବାଳା    ନ ସହିଣ ଜ୍ୱାଳା
କୁଳେ ଦେଉଛନ୍ତି କାଳି,
ଥାଅ ଆଖି ବୁଜ    କଥାଟା ନ ବୁଝି
ବେଳେ ନ ବିଚାରି ଭାଳି ।
ବରଷକୁ ଥରେ    ହେବ କଟକରେ
ଓଡ଼ିଆଙ୍କ ସମ୍ମିଳନୀ,
ଉତ୍କଳରେ ଯେତେ    ଅଛନ୍ତି ପଣ୍ଡିତେ
ଯେତେ ଛନ୍ତି ଜ୍ଞାନୀ ଧନୀ,

ରଜା ମହାରଜା ବଣିକ ପରଜା
ସଭା କରିବେ ସେ ସ୍ଥାନେ ।
କହି ସବୁ କଥା ତହିଁରୁ ବ୍ୟବସ୍ଥା
ଆସି ନିଅ ତୁମ୍ଭେମାନେ ।
ଆପଣାକୁ ଜ୍ଞାନୀ ଅଛ ପରା ଜାଣି
ସେ ଦିନ ଯାଇଛି ଚାଲି,
ଘରେ ଭାତ ନାହିଁ ଭୁଜାଠାରେ ଭାଇ
ଗରଜ ନ ମର ଖାଲି ।

———

## ମୁଁ ହାଟବାହୁଡ଼ା

( ରାଗ—ଚନ୍ଦ୍ରକେଳି )

ଦେଖିଲି ଫସାରେ ବସିଛି ହାଟ,
ଲୋକଗହଳରେ ନ ମିଳେ ବାଟ ।
ଦୋକାନ ପସରା ଧାଡ଼ିକି ଧାଡ଼ି,
ବାଟ ଦୁଇ ପାଶ ବସିଛି ମାଡ଼ି ।
ଭୁଲାଇବା ପାଇଁ ଗହକି ମନ
ହାଟୁଆଙ୍କ ଦେଖ କେଡ଼େ ଯତନ ।
ହାଟୁଆ ବାଟୁଆ ଅଛନ୍ତି ଧାଇଁ
ହାଟେ କିଣା ବିକା କରିବା ପାଇଁ ।
ହାଟ କରିବାକୁ ବଳିଲା ମନ,
ମାତ୍ରକ ନାହିଁ ତ ହାତରେ ଧନ ।
ବାହାରିଲି ହାଟ ଦେଖିବା ପାଇଁ,
ଦୋକାନମାନଙ୍କୁ ଦେଖିଲି ଚାହିଁ ।
ପାଟି କରୁଛନ୍ତି ଦୋକାନୀମାନେ
ଆସ ଗହକଏ ମୋହର ଦୋକାନେ ।
ଅଳପ ଲାଭରେ ଛାଡ଼ୁଛି ମାଲ,
ଭଣ୍ଡାଭଣ୍ଡି ନାହିଁ ଶଜ ଅସଲ ।
ବୁଲିବୁଲି ହାଟେ ମୁଁ କ୍ରମେ କ୍ରମେ,
ଗୋଟାଏ ଦୋକାନେ ଗଲି ପ୍ରଥମେ ।
ଏହି ଦୋକାନଟା ଭାରି ଗହଳ,
ଧାଇଁଛନ୍ତି ଲୋକ ଦଳକୁ ଦଳ ।

ହାତେ ନିଶାକାଠି ଦୋକାନୀ ଧରି,
ବସିଛନ୍ତି ଯମରାଜାଙ୍କ ପରି ।
ଦୋକାନରେ ମାଲ ନ୍ୟାଯ୍ୟ ଦରର,
କିଣେ ସେ କପାଳ ଫାଟେ ଯାହାର ।
ଦୋକାନୀ ବହୁତ ନ କହେ କଥା,
ବସିଅଛି ପୋତି ତଳକୁ ମଥା ।
ଯୋଡ଼ାଏ ଗହକି ଅଛନ୍ତି ଧାଇଁ,
ଦୋକାନୀଙ୍କଠାକୁ ସଉଦା ପାଇଁ ।
ଦୁଇ ଦଣ୍ଡିଦାର ଛିଡ଼ା ଆଗରେ,
ଡକା ପାଡ଼ୁଛନ୍ତି ଭାରି ଉଚ୍ଚରେ ।
ସଉଦା ଯେ ନେବ ରହିଣ ଶୁଣ,
ଦଣ୍ଡିଦାର କଥା ଯାଉଛି ଶୁଣି ।
ଦୋକାନୀ ପ୍ରଭୁ ତ ନିଜ ବୁଦ୍ଧିରେ,
ତଉଲିଲେ ମାଲ ଲଅ ନଜରେ ।
ଚଉକିରେ ବସି କଲେ ପ୍ରଚାର,
ଏହି ନିଅ ମାଲ ନ୍ୟାଯ୍ୟ ଦରର ।
ଜଣେ ଦେଇ ଶଏ ଟଙ୍କା କୋର୍ଟ୍‌ଫିସ,
କିଣିଲା ଦରର ତହୁଁ ଡିସ୍‌ମିସ ।
ଜଣେ କରି ଘରଦ୍ୱାର ବିକାରି,
ମାଲ କିଣି ଘରେ ନେଲା ଡିକରି ।
ଦଣ୍ଡିଦାର ଥାଏ ପଛରେ ଧାଇଁ,
ବକସିସ ଫିସ ନେବାର ପାଇଁ ।

ଦେଖିଲି ଗୋଟାଏ ଚୁଳ ଦୋକାନ,
ଦୋକାନୀର ନାମ ଯେ ଅବଧାନ ।
ଦେଶୀ ସଡ଼ା ମାଲ ବିକଇ ସେହି,
ପିଲାଏ କିଣନ୍ତି ପଇସା ଦେଇ ।
ଦେଶୀ ମାଲ ନାହିଁ ତା ଗୁଣ କିଛି,
ଦୋକାନୀ ବାପୁଡ଼ା ଯାଚି ଦେଉଛି ।
ସଉଦା ସହିତ ଲାଭ ଦୋକାନୀ,
ଦୁଇ ଚାରି ବେତ ଦିଅଇ ଟାଣି ।

ପାଶେ ଅଛି ଆଉ ଗୋଟେ ଦୋକାନ,
ପିନ୍ଧିଛି ଦୋକାନୀ କୋଟ ପେଣ୍ଟଲୁନ ।
ମାଷ୍ଟର ପଦ୍ୱୀ ସେ ଦୋକାନୀ ନାମ,
ପାଠବିକା ଅଟେ ତାହାର କାମ ।
ବିଲାତି ମାଲ ଯେ ବିକଇ ସେହି,
କିଣୁଛନ୍ତି ପିଲା ପଇସା ଦେଇ ।
ଏହି ମାଲ ଦାମ ବହୁତ ଚଢ଼ା,
ତଟକା ସେ, ନୁହେ ପଚରି ସଡ଼ା ।
ନଗଦାନଗଦ ଦେଇ କଉଡ଼ି,
କିଣୁଛନ୍ତି ପିଲା ଉଣ୍ଡୁଡ଼ା ପଡ଼ି ।
ଦେଖିଲି ବୁଝିଲି, ଏହି ଦୋକାନ
କେବଳ ନୋହେଟି ପିଲାଭଣ୍ଡାଣ ।
ସୁନ୍ଦର ପାଚିଲା ଫଳ ବହୁତ,
ଦୋକାନ ଭିତରେ ଅଛି ମଜୁତ ।
ବାଇରଣ ପୋପ ସେକ୍‌ସପିୟର,
ବାଡ଼ସାର୍ଥ ମିଲଟନ ହୋମର ।
ହର୍ଷ୍ଟେରୀ ଫିଲସଫି ବୋଟାନି,
ବିଲାତୁ ହୋଇଛି ଏ ଆମଦାନି ।
ପିଲାଏ ଖାଆନ୍ତି ଏ ସବୁ ଫଳ,
ବାପ ଟଙ୍କା ଗଣି ଦିଏ କେବଳ ।
ଏ ସବୁ ଫଳର ଗୁଣ ଓଲଟା,
ହୁଏ ଦେହ ସରୁ ବୁଦ୍ଧିଟା ମୋଟା ।
ମାହକ ହଜମ ଯେ କରି ଜାଣେ,
ଜଗତ ଜଣେ ସେ ଆପଣା ଜ୍ଞାନେ ।
ଅଳପ ଖାଇଲେ ଘଟେ ଜଞ୍ଜାଳ,
ବହୁତ ଖାଇଲେ ଫିଟେ କପାଳ ।

ତାହା ପାଶେ ବସି ଗୋଟେ ଦୋକାନୀ,
ହାତରେ ଧରିଛି ସେ ନାସଦାନି ।
ଆଣ୍ଠୁ ଲୁଚୁ ସାନ ଲୁଗା ସେ ପିନ୍ଧେ,
ପୁରୁଣା ଗାମୁଛା ପଡ଼ିଛି କାନ୍ଧେ ।

ଦେଖିଲି ଦୋକାନେ ମାଲ ସକଳ,
କହାକି ପୁରୁଣା ଶୁଖିଲା ଫଳ ।
ଶୁଖିଲା ନଡ଼ିଆ କଲି ବିଶ୍ୱାସ,
ଉପରଟା କଡା ଭିତରେ ରସ ।
ମାହକ ଦୋକାନୀ କରିଛି ଫନ୍ଦି,
ସଜାଡ଼ି ରଖିଛି ଶବଦ ସନ୍ଧି ।
କାଳିଦାସ ଭବଭୂତି ଶ୍ରୀହର୍ଷ,
ତାହା ଗୋଦାମର ମାଲ ସର୍ବସ୍ୱ ।
ଘଟଭି ପଟଭି ବେଦାନ୍ତ ବହି,
ଦେଖି ନ ପରୁରେ ଗରାଖ କେହି ।
ତୋର ଦେଇ ରଖିଅଛି ଗମ୍ଭୀରେ,
ପୋତି ପଡ଼ିଲାଣି ମୂଧାମାଟିରେ ।
ଦେବାପାଇଁ ସେଇ ଗୋଦାମ ଝାଡ଼ି,
ଦୁଆରଟାରେ ମାଲ ଦେଉଛି ଗୁଡ଼ି ।
ପୁରୁଣା ମାଲରେ ଶରଧା ନାହିଁ,
କିଏ ଦୋକାନ ଯିବ ତାହା କିପାଇଁ ?
ମାହକ ଦେଖିଣ ଫଳ ପାଚିଲା,
ଯୋଗଦେଲେ ଥୋକେ ବ୍ରାହ୍ମଣ ପିଲା ।

ପଇସା ପାଇବେ କରି ଭରସା,
ଖବର କାଗଜ ଲେଖା ବେବସା ।
କରି ବସିଛନ୍ତି କେତେ ଦୋକାନୀ,
ଦେଖିଲି ସେଗୁଡ଼ା ଭାରି ଅଜ୍ଞାନୀ ।
ଯାଚି ଯାଚି ମାଲ ଦିଅନ୍ତି କାଲି,
ଟଙ୍କା ମାଗି ଯାଇ ଖାଅନ୍ତି ଗାଳି ।
ଏପରି ଗରାଖ ଥୋକେ ଅଛନ୍ତି,
ଆଗ ମୂଲ ଦେଇ ମାଲ ନିଅନ୍ତି ।
ଆଉରି ଦେଖିଲି ସବୁ କଥାରେ,
ଡରି ମରି ଥାନ୍ତି ଲୋକଙ୍କଠାରେ ।

ମାହକ ଯେ ବିକେ ବିଲାତି ମାଲ,
ଖାଇ ପିଇ ତାର ଫୁଲିଛି ଗାଲ ।

ତାକୁ ଡର ଥାନ୍ତି ବହୁତ ଲୋକେ,
କାଳେ ବୋଲଦେବ କଥାପଦକେ ।
ଦେଖି ଲାଗିଲାଣି ତାଟଙ୍ଗା ମୋତେ,
ଦେଶୀ ବନ୍ଦୀଙ୍କରେ ପ୍ରଭେଦ ଏତେ ।

ଦୋକାନ ଦୁଆରେ କେହି ରୂପସୀ,
ଆପଣା ସଉଦା ବିକୁଛି ବସି ।
ହସି ହସି ପ୍ରେମ ସଙ୍ଗୀତ ଗାଇ,
ଗହକମାନଙ୍କୁ ନିଏ ଭୁଲାଇ ।
କୁତ୍ସିତ ବ୍ୟାଧି, ନିନ୍ଦା, ଅଧର୍ମ,
ମାଲ ବିକିବାର ତାହାର କର୍ମ ।
ବାପ ଅରଜିଲା ବିତ୍ତକୁ ଦେଇ,
କିଣୁଛି ସେ ମାଲ ଭେଣ୍ଡିଆ କେହି ।

ଦେଖିଲି ହାଟରେ କେତେ ମୋଟିଆ,
କେହି ବସିଅଛି, କେହି ବା ଠିଆ
କେହି ଲୋକ ଯେବେ ଡାକିବ ଜଣେ,
ଦରଖାସ୍ତ ଧରି ଧାଇଁବେ ପଣେ ।
ମୋଟିଆଙ୍କ ନାମ ଅଟେ ଅମଲା,
ସତେ ସତେ ତାଙ୍କ ବଂଶ ଅମଳ !

ଆଉ ଏକଭଳିଆଛନ୍ତି ଦୋକାନୀ,
ସେମାନଙ୍କ ନାମ ଅଟେ କିରାଣୀ ।
ମୁଣ୍ଡ ଗୁଞ୍ଜି ଲେଖୁଥାଆନ୍ତି ବସି,
ବେଳ କାହିଁ କଥା କହିବେ ହସି ।
ଯାହା ସେ ପାଆନ୍ତି ଅଳପ ମୂଲ,
ଘର ଖରଚକୁ ନୁହଇ ଭୁଲ ।
ପନ୍ଦର ଦିନରେ ସରଇ ଘାତ,
କରଜ ସକାଶେ ବଢ଼ାନ୍ତି ହାତ ।
ପାଆନ୍ତି ସେ କିଛି ଉପରି ବଟା—
ହେଡ଼କିରାଣୀଙ୍କ ଦାନ୍ତନକଟା ।

କେତେ ଜଣ କରିଛନ୍ତି ଜୀବିକା,
ତାହାଙ୍କ ବେବସା ଯେ କଥାବିକା ।
ପଇସା ପାଇଲେ ବିକନ୍ତି କଥା,
ବାଛୁବିଛୁ ନାହିଁ ସତ ବା ମିଥ୍ୟା ।
କାଖେ ଯାକିଛନ୍ତି ଲଅ ନଜିର,
ଡାକିବା ମାତ୍ରକେ ହେବେ ହାଜର ।
ବଡ଼ ହୁସିଆର ସେହି ଦୋକାନୀ,
ଆଣ୍ଠା ଦିପଇସା ନିଅଇ ଟାଣି ।

ଦୋକାନ ମେଲିଛି ଗୋଟାଏ ଲୋକ,
ପୁରୋହିତ ସେହି ଧର୍ମଯାଜକ ।
ଦହିଚୂଡ଼ା ଭୋଜି କିଛି ଦକ୍ଷିଣା,
ମୂଲ ଦେଲେ ହୁଏ ତା ମାଲ କିଣା ।
ତା ଦୋକାନ ମାଲ ନ କିଣି ଯଦି,
ସବୁ ଅଟକିବ ବାହା ପ୍ରଭୃତି ।
ଆଉରି ତା ମାଲ ଯେ ପିଣ୍ଡ ବଡ଼ା,
ପିତୃଲୋକ ପାଇଁ ବହୁତ ଲୋଡ଼ା ।
ଦେଖିଲି ତା ପାଖେ ହୋଇଣ ଠିଆ,
ଦିନୁ ଦିନୁ ହୁଏ ମାଲ ପଡ଼ିଆ ।

ଦେଖିଲି ବସିଛି ଗୋଟିଏ ଦୋକାନୀ,
ଅନୁମାନ କଲି ହେବ ସେ ଜ୍ଞାନୀ ।
ବୁଢ଼ାଟା ହେଉଛି ସେ ଥୁରୁ ଥୁରୁ,
ପଚାରି ଜାଣିଲି ତା ନାମ ଗୁରୁ ।
ଶାସ୍ତ୍ର କଥା ବିକା ତାହାର କାମ,
ପୁଣି ସେ ବିକଇ ଶ୍ରୀହରି ନାମ ।
ମାଲ ଗୁଡ଼ି ଦିଏ ଅଳ୍ପ ମୂଲରେ
ଗହକି ଅଳପ ତାହା ପାଖରେ ।

ହାଟେ ବୁଲି ବୁଲି ଜନ୍ମିଲା ଜ୍ଞାନ,
ମୁଁ ମଧ ମେଲିଲି ଗୋଟେ ଦୋକାନ ।
ଅରଜୁଅଛନ୍ତି ଲୋକେ ପଇସା,
ମୁଁ ମଧ ପାଇବି କଲି ଭରସା ।

ଝାଡ଼ଝୁଡ଼ ଦେଇ ଦୋକାନ ଖୋଲି,
ଗୋଦାମେ ଭରିଲି ସାହିତ୍ୟ ମାଲ ।
ବିଲାତି ମାଲକୁ ନାହିଁ ତ ପୁଞ୍ଜି,
ଦେଶୀମାଲ ଦେଲି ଗୋଦାମେଗୁଞ୍ଜି ।
ଛାପାଖାନାଠାରୁ ଆଣିଲି କାଳି,
ଲାଭ ହେଲେ ଶୁଝି ଦେବି ମୁଁ ଭାଳି ।
କାଡ଼ିଆ ମାଲରେ ବହୁତ ଦୋଷ,
କଳନ୍ତର ବଢ଼ି ବୁଡ଼େ ସର୍ବସ୍ୱ ।
ଭୁଲାଇବାପାଇଁ ଗହକ ମନ,
ଟାଙ୍ଗି ଦେଲି କାନ୍ଥେ ମୁଁ ବିଜ୍ଞାପନ ।
ପାଟି କରି ଦ୍ୱାରେ ଡାକିଲି ବସି
ଭଲ ମାଲ ଭାଇ ନିଅ ହେ ଆସି ।
ଅଇଲେ ଗହକ ଶୁଣି ମୋ ଡାକ,
ପଚାରିଲେ ତୁମ୍ଭେ କି ଫଳ ବିକ ?
ବୋଇଲି ମୁଁ ଅନୁବାଦ ପୁରାଣ,
ଆଚ୍ଛା ମିଠାଫଳ ଏହାକୁ ଜାଣ ।
ବୋଇଲି ମୋ କଥା ଶୁଣି ଗରାଖ,
ବିରକ୍ତିରେ କରି ଅଳପ ରାଗ,
"ଏଗୁଡ଼ା ସବୁ ତ ପଚା ପୁରୁଣା,
ଏ ସବୁର ମୂଲ ନିହାତି ଉଣା ।
ଯେବେ ଦେବ ତୁମ୍ଭେ ବିନା ମୂଲ୍ୟରେ,
କୃପା କରି ନେଇ ରଖିବୁ ଥରେ ।"
ଦେଖାଇଲି ତାକୁ ନେଇ ନବେଲ,
ବୋଇଲା ସେ କଞ୍ଚା ପଚରା ବେଲ ।
ପୁଣି ଦେଖାଇଲି ତାକୁ କବିତା,
ବୋଇଲା ଏଗୁଡ଼ା ନିହାତି ପିତା ।
ଗରାଖ ମୁହଁରୁ ଏ କଥା ଶୁଣି,
ନିଶ୍ୱାସ ପକାଇ ହେଲି ମୁଁ ତୁନି ।
ଭୁଲିଲି ମୋହର ସରଲ ପାଠ,
ଆଉ କରିବି ମୁଁ କଉଣ ହାଟ ।
ବେଭାର ଦେଖୁଛି ଯେ ଲୋକଙ୍କର,
ଦେଶୀ ଜିନିଷରେ ନାହିଁ ଆଦର ।

କେତେ ଲୋକ ଟଙ୍କା ପଇସା ଦେଇ
ଯାଆନ୍ତି ବିଲାତି ଜିନିଷ ନେଇ ।
ଆହୁରି ଶୁଣନ୍ତୁ ଗୋଟାଏ ମଜା,
ମାଲ କାଳି ନେଲେ ଯୋଡ଼ାଏ ରଜା ।
ଯେଉଁମାନେ ନେଲେ ମାଲ କାଡ଼ିଆ,
ଜାତିରେ ସେମାନେ ନିଷ୍ଠେ ଓଡ଼ିଆ ।
ତୁନିତାନି ହୋଇ ରହିଲେ ଘରେ,
ଚିଠିର ଉତ୍ତର ନ ଦେଲେ ଥରେ ।
ଏଡ଼େ ହାଟଠାରେ ଦେଖିଲି ଜଣେ,
ଗରାଖ ବୋଲି ମୁଁ ତାହାକୁ ଗଣେ ।
ଜାଣିଲି ପରେ ମୁଁ ସେହି ଚିହ୍ନରା,
ଚିହ୍ନନ୍ତି କେ କାଚ, କେଉଁଟା ହୀରା ।
ବାଛି ବାଛି ନେଲେ ଗୋଟାଏ ଫଳ,
ବହନୀ କଲି ମୁଁ ଏହା କେବଳ ।
ଲୋକେ ତ ଶୁଣନ୍ତି ଏହି ବାରତା,
ଲାଭ ଲୋକସାନ କପାଳ କଥା ।
ଛାପାଖାନା ଡରେ ଲାଭ ନ ଲୋଡ଼ି,
ମୂଲେ ମୂଲେ ଦେଲି ମାଲ ମୁଁ ଛାଡ଼ି ।
ହେଲେ ହେଉ ପଛେ ବହୁତ ତୁଟି,
ଛାପାଖାନା ଏଣେ ଧରିଛି ଚୋଟି ।
ତୁଟି ସହି ମାଲ ବିକିଲେ ବଳେ,
ଏଥିରେ କି ଭାଇ ବଣିଜ ଚଳେ ?
ଦେଶୀ ସାହିତ୍ୟ ଯେ ବଣିଜ କଲା,
ଜାଣିଥିବ ସେହି ଲୋକଟା ମଲା ।
ଲାଭ କଥା ଭାଇ ଥାଉ ପଛକୁ,
ବୁଡ଼ାଇ ବସିବ ନିଜ ମୂଳକୁ ।
ଭାଳିଲି ହାଟରେ ଥିବି କିପାଇଁ ?
ଦେଲି ବେଳେ ଗାଁଆଡ଼କୁ ଚାହିଁ ।
ଗୋଟାଇ ପସରା, ବୋଝ ମୁଣ୍ଡାଇ,
ଘରମୁହାଁ ହୋଇ ଚଲି ଚଲାଇ ।
ଝାଡ଼ଝୁଡ଼ ମାଲ ରଖିଲି ଘରେ,
ପଚାରିବ ଦିନେ କେହି ବା ଥରେ ।

ଏଣେ ତ ବୁଡ଼ିଲା ସବୁ ଭରସା,
ଆତୁର କପାଳେ ଅଛି ଦୁର୍ଦ୍ଦଶା ।
କାଲି ଦୁଆରକୁ ଆସି ପ୍ରିଣ୍ଟର,
କହିବ ବହୁତ ସେ ହରବର ।
ତାହାଠାରୁ ମାଲ ଆଣିଛି କାଳି,
ନ ପାଇଲେ ଟଙ୍କା ଦେବ ସେ ଗାଳି ।
ଛାପାଖାନା ଲୋକ ନିହାତି ମନ୍ଦ,
ପଇସା ସକାଶେ ଲଗାନ୍ତି ଦ୍ୱନ୍ଦ୍ୱ ।
ଲେଖିବ କବିତା, ଦେବୁ ଛପାଇ,
ପଇସା କପାଁଇ ନେବୁ ରେ ଭାଇ ?
ନିହାତି ତୁ ଯଦି ଛାଡ଼ିବୁ ନାହିଁ,
ରହି ବସି ଦେବ, କଲି କପାଁଇ ?
ଲଗିଛି ସଂସାର ମଧ୍ୟରେ ହାଟ,
ମାନବ ମୋହର ପଡ଼ିଲା ବାଟ ।
ନାହିଁ ଦେହେ ବଳ, 'ହେଲଣି ବୁଢ଼ା,
ମୋହ ନାମ ଭାଇ ହାଟବାହୁଡ଼ା ।

---

## ସତୀ ତୀର୍ଥ

( ରାଗ—ମଙ୍ଗଳ )

ଗୋଲକ ବୈକୁଣ୍ଠ ଊର୍ଦ୍ଧ୍ୱ ଧ୍ରୁବଲୋକ ପାଶେ,
ଶତ ସୂର୍ଯ୍ୟ ବିରାଜିତ ସତୀର ଆବାସେ ।
ମାର୍ତ୍ତଣ୍ଡମୟୂଖମାଳ-ଜ୍ୱାଳା-ବିସ୍ତାରିଣୀ,
ଅଟଇ ସେ ସ୍ଥାନ ପୁଣି ଆନନ୍ଦଦାୟିନୀ,
ତରୁଣ ଅରୁଣ ଜ୍ୟୋତି ଶୀତଳ କିରଣ,
ପ୍ରସ୍ଫୁଟିତ ପାରିଜାତ, ନନ୍ଦନ କାନନ,
ନାହିଁ ଦିବା ନାହିଁ ନିଶି, ସର୍ବଦା ଆଲୋକ,
ନାହିଁ ଦ୍ୱେଷ, ହିଂସା, କ୍ରୋଧ, ନାହିଁ ଦୁଃଖ,ଶୋକ,
ସନ୍ତାପ, ବିଳାପ ନାହିଁ କଷ୍ଟ ହାହାକାର,
ବ୍ୟାଧି ବା ଯନ୍ତ୍ରଣା ନାହିଁ, ନାହିଁ, ଅନ୍ଧକାର ।
ଯେତେକ ସୁଖ ଶାନ୍ତି ବିଦ୍ୟମାନ ବ୍ରହ୍ମାଣ୍ଡରେ,
ସର୍ବ ଦ୍ରବ୍ୟ କେନ୍ଦ୍ରୀଭୂତ ସେ ସତୀ-ତୀର୍ଥରେ ।
ନାହିଁ କ୍ଳେଶ ଲେଶ, ଦେଶ ଚିତ୍ତ ବିମୋହନ
ତନ୍ଦ୍ରାପଟେ ସୁଖସ୍ୱପ୍ନ ଚିତ୍ରିତ ଯେସନ ।
ଶାନ୍ତି, ପ୍ରେମ, ମୈତ୍ରୀ, ପ୍ରୀତି, ସ୍ନେହ ଓ ଉଲ୍ଲାସ
ଚିରନ୍ତନ ହୋଇ ତହିଁ କରୁଥାଏ ବାସ ।
ଦେବଭୋଗ୍ୟ ସୁଧାଫଳେ ପୂର୍ଣ୍ଣ ସେ ଉଦ୍ୟାନ:
ସତୀ ନାରୀମାନଙ୍କର ଅଟେ ବାସସ୍ଥାନ ।
ଅପ୍‌ସରୀ ସଙ୍ଗୀତ ଶ୍ରୁତ ହୁଏ ତାନେ ତାନେ,
ଦେବକନ୍ୟାମାନେ ଭ୍ରମୁଥାନ୍ତି ସ୍ଥାନେ ସ୍ଥାନେ ।
ବିରାଜିତ ଉଦ୍ୟାନରେ ରତ୍ନ ସିଂହାସନ,
ସତୀ ନାରୀମାନଙ୍କର ନିର୍ଦ୍ଦିଷ୍ଟ ଆସନ ।
ପୃଥିବୀ ମଧ୍ୟରୁ ଆସି ଦେବଦୂତମାନେ
ଏକ ସତୀ ଆତ୍ମା ନେଇ ଗଲେ ସେହି ସ୍ଥାନେ ।
ଉପସ୍ଥିତ ହେବାମାତ୍ରେ ତହିଁ ସତୀ ନାରୀ,
ବାଟ ଓଗାଳିଲା ଆସି ଉଦ୍ୟାନର ଦ୍ୱାରୀ ।
ପୁଚ୍ଛା କଲା ପଡ଼ିଆରୀ ବହୁତ ସମ୍ମାନେ,
"କେଉଁ ଗୁଣେ ଆଗୋ ସତି ! ଆସିଛ ଏ ସ୍ଥାନେ ?
ଗେରୁଆ ବସନ ପିନ୍ଧି ଜଟାଭାର ଶିରେ,
ତପସ୍ୟା କି କରିଥିଲ ଅରଣ୍ୟ କୁଟୀରେ ?
କରିଛ କି ନିୟମରେ ବ୍ରତ ଉପବାସ ?
ଅବା ତୀର୍ଥସ୍ଥାନେ ଯାଇ କରିଥିଲ ବାସ ?
କରି ହରିଧ୍ୟାନ, ଜପମାଳା ଧରି କରେ
ହରି ନାମ ଜପିଛ କି ବସି ନିର୍ଜନରେ ?
ପ୍ରଥମରେ ଦେଇ ମୋତେ ଆତ୍ମପରିଚୟ
ପ୍ରବେଶ ଉଦ୍ୟାନ ମଧ୍ୟେ, ନାହିଁ କିଛି ଭୟ ।"
ସତୀ ଶୁଣି ଏହିପରି ପଡ଼ିଆରୀ କଥା,
ବୋଇଲେ ବିନୟବାକ୍ୟେ ନୁଆଁଇଣ ମଥା—
"ଶୁଣିବାକୁ ଆଜ୍ଞା ହେଉ ଆହେ ଦେବଦ୍ୱାରି !
ଥିଲି ମୁହିଁ ପୃଥିବୀରେ ଏକ ତୁଚ୍ଛ ନାରୀ ।
ଯେତେକ ରୂପ ଗୁଣ କଥା ବୋଇଲେ ଆପଣ,
କରି ନାହିଁ ସେହି ସର୍ବ କାର୍ଯ୍ୟ ଆଚରଣ ।

ସ୍ୱାମୀ ପୁତ୍ର କନ୍ୟା ଦେଇ ଥିଲ ମୁଁ ସଂସାରେ
ନିତ୍ୟ ଚିତ୍ତ ସମର୍ପଣ କରି ପ୍ରଭୁଠାରେ ।
ଅମଙ୍ଗଳ ବାକ୍ୟ କରେଁ ନାହିଁ ଉଚ୍ଚାରଣ
ଅପ୍ରମତ୍ତ ଭାବେ ସେବେଁ ସ୍ୱାମୀଙ୍କ ଚରଣ ।
ଗୁରୁଜନେ ପୂଜୁଥିଲି ଦେବତା ସମାନେ,
ଅତିଥିମାନଙ୍କୁ ସେବା କରେଁ ସାବଧାନେ !
ଅକାରଣେ ଛିଡ଼ା ହୁଏଁ ନାହିଁ ଦାଣ୍ଡଦ୍ୱାରେ
ଉପହାସ କରେଁ ନାହିଁ କାହାରି କଥାରେ ।
ନ କରେଁ ଚିତ୍କାର କେବେ ଆଉ ଉଚ୍ଚ ହାସ୍ୟ,
ଅନ୍ୟ ଲୋକ ସଙ୍ଗେ କରେଁ ନାହିଁ ପରିହାସ ।
ଲୋଭ କରେଁ ନାହିଁ କେବେ ଅନ୍ୟର ସମ୍ପତ୍ତି,
ମନ୍ଦ କାର୍ଯ୍ୟ ସ୍ୱପ୍ନରେ ବଳେ ନାହିଁ ମତି ।
ସ୍ୱାମୀ ଯେ କାଳରେ ମୋର ଥାଆନ୍ତି ବିଦେଶେ,
ସଂସ୍କାର ନ କରେ କେଶ ଥାଏ ମ୍ଳାନବେଶେ ।
କାହା ସଙ୍ଗତରେ କେବେ ନ କରେ କଳହ,
ଏପରି ନ କରେଁ କାର୍ଯ୍ୟ ଯାହା ଭୟାବହ ।
ଭୁରୁ ଯାଏ ପଡ଼ିଥାଏ ମୋହର ଓଢ଼ଣା,
ମୋର ବାକ୍ୟ ଯାଏ ନାହିଁ ବାହାରକୁ ଶୁଣା ।
କରାଇ ଭୋଜନ ମୁହିଁ ସ୍ୱାମୀଙ୍କୁ ଅଗ୍ରରେ,
ଭକ୍ତିରେ ଭୁଞ୍ଜଇ ତାଙ୍କ ଉଚ୍ଛିଷ୍ଟ ପାତ୍ରରେ ।
ସ୍ୱାମୀ କ୍ରୋଧ ବେଳେ ମୁହିଁ ହୋଇଥାଏଁ ତୁନି,
ପ୍ରତିବାଦ କରେ ନାହିଁ ତାଙ୍କ ବାକ୍ୟ ଶୁଣି ।
ବିପଦରେ ବା ବ୍ୟାଧିରେ ବସି ତାଙ୍କ ପାଶେ
ସାନ୍ତ୍ୱନା କରଇଁ ମିଷ୍ଟବଚନେ ଆଶ୍ୱାସେ ।
ନ ଶୋଇଲେ ସ୍ୱାମୀ ମୁହିଁ ଶୋଏ ନାହିଁ ଆଗ,
ତାହାଙ୍କ ଉଠିବା ପୂର୍ବେ କରେଁ ଶଯ୍ୟା ତ୍ୟାଗ ।
ନ କରନ୍ତି ସ୍ୱାମୀ ମୋର ଯେ ଦ୍ରବ୍ୟ ଆହାର,
ଏକାବେଳେ ମୁହିଁ ତାହା କରେଁ ପରିହାର ।
ସ୍ନେହରେ କରନ୍ତି ସ୍ୱାମୀ ଯେ ଦ୍ରବ୍ୟ ଭୋଜନ,
ପୂର୍ବରୁ ମୁଁ କରି ରଖେଁ ତାହା ଆୟୋଜନ ।
ସାବଧାନେ କରେଁ ରକ୍ଷା ସ୍ୱାମୀଧର୍ମ, ଧନେ,
ନିତ୍ୟ ଦିଏଁ ଧର୍ମଶିକ୍ଷା ପୁତ୍ରକନ୍ୟାଗଣେ ।
ସ୍ୱାମୀ ଗୁପ୍ତକଥାମାନ ନ ବୋଲେଁ କାହାକୁ,
ସ୍ୱାମୀ ଅସାକ୍ଷାତେ ଯାଏଁ ନାହିଁ ଅନ୍ୟଠାକୁ ।
ମନ୍ଦ କାର୍ଯ୍ୟେ କେବେ ମୋର ବଳେ ନାହିଁ ମତି ।”
ବ୍ରାହ୍ମଣକୁ ଏ ସବୁ କଥା ବୋଲୁଛନ୍ତି ସତୀ,
ଶୁଭିଲା ଏକାଳେ ଆକାଶରୁ ଦେବବାଣୀ,
“ଆସ ଆସ ଭଗତରଙ୍କୁ ସତୀଠାକୁରାଣି ।
ଯେଉଁଠାରେ ଛନ୍ତି ଅନସୂୟା ଅରୁନ୍ଧତୀ,
ତାଙ୍କ ପାଶ ସିଂହାସନେ ବସ ତୁମ୍ଭେ ସତି !”

---

## ଜାପାନ

ହେ ଜାପାନ ! ତୁମ୍ଭେ ପୂର୍ବ ଅଞ୍ଚଳ ଇଂଲଣ୍ଡ,
ଦେଖାଇଲ ଜଗତକୁ ମହିମା ପ୍ରଚଣ୍ଡ ।
ଇୟୁରୋପ ସଭ୍ୟତମ ରାଜନ୍ୟ ସକଳ
ଚକିତ ବିସ୍ମିତ ଦେଖି ତବ ବାହୁବଳ ।
ଦେଖାଇଲ ଯେଉଁ ଶିକ୍ଷ ରୁଷିୟା ସମରେ,
ଇତିହାସ ସାକ୍ଷ୍ୟ ଦେବ ସୁବର୍ଣ୍ଣ ଅକ୍ଷରେ ।
ଏକପୁତ୍ରା ବୃଦ୍ଧା ମାତା ଦେଶରକ୍ଷାପାଇଁ
ପ୍ରାଣତ୍ୟାଗ କରିପାରେ, ନିଦର୍ଶନ କାହିଁ ?
ସ୍ୱାମୀକୁ ଯୁବତୀ ଭାର୍ଯ୍ୟା ଅସ୍ତ୍ରରେ ମଣ୍ଡାଇ
ପଠାଇ ବୋଲୁଛି, ଯାଅ ଶତ୍ରୁ ମାର ଯାଇ ।
ସ୍ପାର୍ଟାର ରମଣୀ କିବା କ୍ଷତ୍ରିୟ ଅଙ୍ଗନା
ଥିଲେ ଏହିପରି, ଇତିହାସେ ଅଛି ଜଣା ।
ହଳ ଧରି କୁଳବତୀ କରୁଅଛି କୃଷି,
ପଠାଏ ପୁତ୍ରକୁ ଯୁଦ୍ଧେ ଶତ୍ରୁ କରିବାକୁ ନାଶ ।
ହେ ଜାପାନ ! ଦେଶପ୍ରେମ ଦିଅ ଶିକ୍ଷାଦାନ ।
ନ ଭୁଲ ଭାରତବର୍ଷ ବୁଦ୍ଧ ଜନ୍ମସ୍ଥାନ ।

---

## ଉତ୍କଳ ଯୁବକ

( ରାଗ—ଚକ୍ରକେଳି )

ଶୁଣ ହେ ଉତ୍କଳବାସୀ ଯୁବକେ !
କି ବୋଲୁଅଛନ୍ତି ତୁମ୍ଭଙ୍କୁ ଲୋକେ !
ଓଡ଼ିଆ ଅଧମ ଜାତି ଭାରତେ,
ବହୁତ ସେ ଊଣା ମାନ ମହତେ ।
ଓଡ଼ିଆ ଜାତିର ନାହିଁ ସାହସ—
ଋଚୁ ନାହିଁ କି ହେ ଏ ଅପଯଶ ?
କିପାଇଁ ରଟିଲା ଏହି ଅଖ୍ୟାତି,
କିପାଇଁ ଲୋକଙ୍କ ଏ ଭୁଲ ଭ୍ରାନ୍ତି ?
କିଛି ହେଲେ ମୂଳ ଥିବ କଥାରେ,
"ନିଆଁ ନ ଥିଲେ କି ଧୂଆଁ ବାହାରେ ?"
କରି ପାରୁ ନାହିଁ ଜୀବନ ବ୍ରତ
ଅରଜିବା ପାଇଁ ମାନ ମହତ୍ତ୍ୱ !
କୋଣଅଣା ହୋଇ ରହିଛ ଘରେ,
ବିଦେଶେ ନ ଯାଅ ଜୀବନ ଡରେ ।
ଭାରତେ ବିଖ୍ୟାତ ଥିଲେ ଯେ ଜାତି,
ନୁହ କି ହେ ତୁମ୍ଭେ ତାହାଙ୍କ ନାତି ?
କେଉଁ ମନ୍ତ୍ର ପଢ଼ି ସେ ବୀରମାନେ,
ଥିଲେ ସୁବିଖ୍ୟାତ ଐଶ୍ୱର୍ଯ୍ୟ ମାନେ ?
ତୁମ୍ଭେମାନେ ସେହି ମନ୍ତ୍ର ପାସୋରି
ରହିଅଛ ଘରେ ଅଧମ ପରି ।
ନାହିଁ ବିତ୍ତ ହାତେ ନାହିଁ ସହାୟ
ନ ଥାଉ ନାହିଁ କି ବୁଦ୍ଧି ଉପାୟ ?
ସହାୟ ସମ୍ପଦ ବୁଦ୍ଧି ସାହସ
ବିଶେଷେ ଧର୍ମକୁ ମଣ ସର୍ବସ୍ୱ ।
ବାହାର ପଡ଼ ତ ତୁଚ୍ଛା ହାତରେ,
ସବୁ ମିଳିଯିବ ବୁଦ୍ଧି ବଳରେ ।
ସଂସାର-ସମରେ ନ ହୁଅ ଭୀତ,
ସବୁ ବାଧା ବିଘ୍ନ ହେବ କମ୍ପିତ ।
ଲକ୍ଷ୍ୟ ରଖି ଏକ ଉଚ୍ଚ ବିଷୟେ,
ସାହସ ବିକ୍ରମେ ଲାଗ ନିର୍ଭୟେ ।
ହେଉନ୍ତୁ ଦେଶରେ ସମସ୍ତେ ଚଳ,
କୁସଂସ୍କାର ପଦେ ପକାଅ ଦଳି ।
କରି ମନ ମଧ୍ୟେ ଏପରି ପଣ,
ଦେହପାତ ଅବା କାର୍ଯ୍ୟ ସାଧନ ।
ଦେଶ ଦେଶାନ୍ତରେ ହେଲେ ଯିବାକୁ,
ଯାଅ ଚାଲି ଡର ନାହିଁ କାହାକୁ ।
ମଳଖ ବାଟରେ ଯାନ୍ତି ସମସ୍ତେ,
ବିଘ୍ନ ବାଧା ମାଡ଼ି ଯାନ୍ତି ମହତେ ।
ସାଧି ବଡ଼ କାର୍ଯ୍ୟ ବୁଦ୍ଧିବଳରେ
ଆଦର୍ଶ ପୁରୁଷ ହୁଅ ଦେଶରେ ।
ପାଇଛ ଦୁର୍ଲ୍ଲଭ ମାନବ ଜନ୍ମ
କାର୍ଯ୍ୟରେ ନ ହୁଅ ପଶୁ ଅଧମ ।
ଉତ୍କଳ ଜନନୀ ଅଛନ୍ତି ଚାହିଁ,
କର କିଛି କାର୍ଯ୍ୟ ତାହାଙ୍କ ପାଇଁ ।
ଶୁଣ ଶୁଣ ବାପା ମୋ ନିବେଦନ,
ସାଧିବ କର୍ତ୍ତବ୍ୟ ଦେଇ ଜୀବନ ।
ପଛଘୁଞ୍ଚା ହେଲେ କାର୍ଯ୍ୟସାଧନେ,
କିବା ପ୍ରୟୋଜନ ସେହି ଜୀବନେ ?
ଯାଇଛି ସେ ଦିନ ପଛକୁ ଯାଉ
ଚିନ୍ତା କଲେ ତାହା କି ହେବ ଆଉ ?
ବର୍ତ୍ତମାନ କାର୍ଯ୍ୟେ ହୁଅ ତତ୍ପର,
ନ କର ହେ ଭବିଷ୍ୟତେ ନିର୍ଭର ।
ସଂକଳ୍ପରେ ସିଦ୍ଧି ଲଭିବ ସର୍ବ,
ଜଗତେ ମହିମା ଅଟେ ଦୁର୍ଲ୍ଲଭ ।
"ମହାଜନୋ ଯେନ ଗତଃ ସ ପନ୍ଥା"
ମନେ ପୋଷ ଏହି ପ୍ରାଚୀନ କଥା ।
ସେ ପଦାଙ୍କ ଚିହ୍ନି ଗମରେ ବୀରେ,
ଅବଶ୍ୟ ମିଳିବ ଯଶୋମନ୍ଦିରେ !

---

## ରାମରଥ କଥା

ନାସଦାନ୍ଧ ହାତେ    ଯେନ ରାମ ରଥେ
ବୁଲି ଶାସନ ଦାଣ୍ଡରେ,
ଘରି ପାଚି କରି    ବୋଇଲେ ଏପରି
ଶୁଣିଛନ୍ତି କି ହେ କରେ ?
କାଲି ମୁହିଁ ଯାଇ    ଦହିଚୁଡ଼ା ଖାଇ
ଯାଇଥିଲି ତନ୍ତ୍ରୀ ସାଇ,
ବୋଲିବୋଲି ଥୋକେ    ହେଉଛନ୍ତି ଲୋକେ
ଶୁଣିଲି ସେଠାକୁ ଯାଇ ।

କାଗଜରେ ଛାପା    ହୋଇଅଛି ବାପା
ରାଣ୍ଡମାନେ ହେବେ ବାହା,
ଆସି କଳିକାଳ    ଘୋଟିଲା ଜଞ୍ଜାଳ
ଶୁଣିବାକୁ ହେଲା ଏହା ।
କଳିକାଳେ ଧର୍ମ    ଛାଡ଼ିଯିବ ବୋଲି
ଲେଖା ଯା ଅଛି ଶାସ୍ତ୍ରରେ,
ଆହେ ବନ୍ଧୁ କରେ    ସଂସାର ମଧ୍ୟରେ
ଦେଖାଗଲା ପ୍ରତ୍ୟକ୍ଷରେ ।

ରାଣ୍ଡ ବାହା କଥା    ସାତ ପୁରୁଷରୁ
କେହି କେବେ ଶୁଣି ନାହିଁ,
କଳି ପରା ଶେଷ    ହେବାରୁ ଏ କଥା
ଏବେ ଶୁଣାଗଲା ଭାଇ !
ଅଶୀ ବରଷର    ପାଣୁ ପାଣିଗ୍ରାହୀ
ମୋତେ ବୋଲିଥିଲେ ଦିନେ,
ତାଙ୍କ ପିଲାକାଳେ    ଥିଲା ଯେତେ କଥା
ଏଣିକି ହେଲାଣି ଭିନେ ।

ଆଜିକାଲି ଲୋକେ    ଦେବତା ବ୍ରାହ୍ମଣ
କେହି ମାନିବାର ନାହିଁ,
ଦେଖୁଛ ତ ଭାଇ    ଏଣିକି ବ୍ରାହ୍ମଣେ
ଚାକିରି କଲେଣି ଯାଇ ।
ବୁଢ଼ୀ ଠୋକା କରି    ଦେଢ଼ପଣ ରାଣ୍ଡ
ଅଛନ୍ତି ତ ଶାସନରେ,
ସାତ ପୁରୁଷରୁ    କେହି କି ହେ ଜଣେ
ବାହା ହୋଇଅଛି ଥରେ ?
ବରଡ଼କୁ ପଦା    ରାଣ୍ଡକୁ ତ ଲଗା
ନାହିଁ ଶାସ୍ତ୍ରେ ଏହା ଲେଖା,
ରାଣ୍ଡ ଯିଏ ହେଲା    ତା କଥା ସରିଲା
ତାହାପାଇଁ କପାଁ ଦକା ?
ଗଲା ପୁଷ ମାସ    ମିଛୁ ମିଶ୍ରଙ୍କର
ଦୁଇଟା ରାଣ୍ଡ ଝିଆରୀ,
ତିନି ରଥଙ୍କର    ସାନ ରାଣ୍ଡ ଝିଅ
ଘରୁ ତ ଗଲା ବାହାରି ।
ଜଗନ୍ନାଥ ରଥ —    ଘର ହଟହଟା
କଥା ନତ ଯାଏ ଶୁଣା,
ଯାହାଁ ଯାହାଁ ରାଣ୍ଡ    ତାହାଁ ତାହାଁ କାଣ୍ଡ
କଥାଟା ଅଛି ପୁରୁଣା ।
ତାହା ବୋଲି କି ହେ    ରାଣ୍ଡ ବାହା ହେବେ
କୁଳ ଧରମକୁ ଛାଡ଼ି ?
ହରି ହରି ହରି !    ଶୁଣିବାକୁ ହେଲା
କଳି ଆସୁଅଛି ମାଡ଼ି !
ରାଣ୍ଡ ବାହା ହେଲେ    ଆଉ କେହି କପାଁ
ଦେବେ ବ୍ରାହ୍ମଣଭୋଜନ ?
ତାହା ହେଲେ ନନା    ଏକାବେଳକରେ
ଉଠିଯିବ ଅରଜନ ।
ଶୁଣିଲି ବେଳରୁ    ଏହି କଥାଟା ମୁଁ
ବୁଲାଇ ଦେଉଛି ମଥା,
ଦହିଚୂଡ଼ା ଯେବେ    ବନ୍ଦ ହୋଇଯିବ
ସରିଲା ବ୍ରାହ୍ମଣ କଥା !
ରମ୍ଭାକୁ ଗୋଟାଏ    ପଣ୍ଡିତ ଆସିଛି
ବାହାର କରିଛି ଶାସ୍ତ୍ର,
କାଶୀ କରେ ଯାଇ    ଶୁଣି ଆସିଛନ୍ତି
ଚାରି ଦିନ ହେଲା ମାତ୍ର ।

ସେ କହୁଛନ୍ତି ପରା    ପରାଶର ମୁନି
ଦେଇଛନ୍ତି ଶାସ୍ତ୍ର ବିଧାନେ,
ଏକାଦଶୀ ଛାଡ଼ି    ପିନ୍ଧି ଶଙ୍ଖା ଶାଢ଼ୀ
ବାହା ହେବେ ରାଣ୍ଡମାନେ ।
କହୁଛନ୍ତି ପଣ୍ଡିତ    ଶାସ୍ତ୍ରର ଲିଖିତ—
ନଷ୍ଟେ ମୃତେ ପ୍ରବ୍ରଜିତେ,
କ୍ଳୀବ ବା ପତିତ    ହେଲେ ସ୍ୱାମୀ, ନାରୀ
ବିଭା ହେବେ ଶାସ୍ତ୍ରମତେ ।
କିରସ୍ତାନି ପାଠ    ଶୁଣିଲେ ଆଉ କି
ଚଳିବ ବୋଲି ସଂସାର ?
କେ କରିବ ଏହି    କୁଳବୁଡ଼ା କାମ
ଛାଡ଼ି ପୁରୁଣା ବେଭାର !
ଜାଣନ୍ତି ସମସ୍ତେ    ଥିଲେ ପାଣ୍ଡୁ ରଥେ,
ଭାରି ଥିଲି ତାଙ୍କ ଜ୍ଞାନ,
ପଢ଼ିଥିଲେ ସେହି    ବ୍ୟାକରଣ ସନ୍ଧି
ଚାର ବର୍ଗ ଅଭିଧାନ ।
ସେହି ରଥେ ଥିଲେ    ଆଜି ଚାଲି ଯାଇ
ଚାର ଶ୍ଳୋକ ଦେଲେ ଝାଡ଼ି,
ବାଟ ନ ଦିଶନ୍ତା    ପଳାଇ ଯାଆନ୍ତା
ସେ ପଣ୍ଡିତ ରମ୍ଭା ଛାଡ଼ି ।
ଆହେ ରଘୁ ରଥେ    ବୋଲୁଅଛି ସତେ
ସେହି ବୋଲୁଥିଲେ ତେବେ,
ଯେତେ ମନ୍ଦ ହେଉ    କୁଳାଚାର ଧର୍ମ
ଛାଡ଼ିଦେବ ନାହିଁ କେଭେଁ ।
ଏଡ଼େ ପଣ୍ଡିତଟା    ବୋଲିଥିଲେ ଯାହା
ତାହା କି ହେବ ଅମାନ୍ୟ ?
ରାଣ୍ଡ ବାହା କଥା    ଯେମନ୍ତ ନ ଚଳେ
ତୁମ୍ଭେ ଥିବ ସାବଧାନ ।
ଆଜିକାଲି ନନା    ଭେଣ୍ଡିଆଗୁଡ଼ାକ
ଇସ୍କୁଲରେ ପାଠ ପଢ଼ି,
ବାପ ଦାଦା କାଳ    ଚାଲି ଚଳନକୁ
ସବୁ ଦେଉଛନ୍ତି ତଡ଼ି ।

ରାଣ୍ଡ ବାହା ଦେଲେ    ପୂଜାପାଠ ସବୁ
ଏକାବେଳେ ଯିବ ଉଠି,
ଆସ ସବୁ ପଡ଼    ପଣ୍ଡିତକୁ ତଡ଼ି
ଦେବା ଧରି ତାହା ଚୁଟି ।
ଗୋବିନ୍ଦ'ନନ୍ଦା, ଗଦା    କକା, ଦୁହେଁ କାଲି
ଆସିଥିଲେ ମୋର ପାଶେ,
ବୋଲି ଯାଇଛନ୍ତି    ଶାସନ ମଧ୍ୟରେ
ସଭା କରିବା ସକାଶେ ।
ଶାସନରେ ଯେତେ    ବ୍ରାହ୍ମଣ ଅଛନ୍ତି
କରିବା ଗୋଟାଏ ସଭା,
ରାଣ୍ଡ ଝିଅ ବୋହୂ    ବେଶ୍ୟା ହୋଇ ଯାଉ
ତାହାକୁ ନ ଦେବା ବିଭା ।

---

## ଚନ୍ଦ୍ରପ୍ରଭାର ନିର୍ଜଳା ଏକାଦଶୀ

ବିଚିତ୍ର ଘଟଣା ଏକ ଶୁଣନ୍ତୁ ସମସ୍ତେ,
ବୋଇରାଣି ଶାସନରେ ଥିଲେ ବିଶୁ ରଥେ ।
ଗଲା ମାଘ ମାସେ ବୁଢ଼ୀ ମଲା ବାତଜ୍ୱରେ,
ଷାଠିଏ ବରଷ ହେବ ବୁଢ଼ା କାନ୍ଦି ମରେ ।
ଦେଢ଼ ମାସଯାଏଁ ରଥେ ନ ଖାଇଲେ ଭାତ,
ସବୁବେଳେ ବସିଥାନ୍ତି ଗାଲେ ଦେଇ ହାତ ।
ତିନି ଗୋଟା ଭେଣ୍ଡା ପୁଅ ଦୁଇ ଝିଅ ଆଉ,
ଗୋଟାଏ ବାଡ଼ୁଅ ପୁଅ ଘରେ ଦୁଇ ବୋହୂ ।
ରଥଙ୍କୁ ଅଳପ ଧଇଁକାଶ ଗଲା ଜଣା,
ଏଥିପାଇଁ ଖାନ୍ତି ନିତି ଆପୁ ଦୁଇଅଣା ।
ବାଟିଏ ଅକରା ଭୁଇଁ ଅଛି ବୁଢ଼ା ହାତେ,
ଆଚ୍ଛା ନିତି ଘର ଚଳିଯାଏ ଶାଗ ଭାତେ ।
ଯଜମାନ ଘର ପୁଣି ବହୁତ ଭରସା,
ବାହା ପୁଆଣିରେ ଆଚ୍ଛା ମିଳେ ଦିପଇସା ।
ଆଟୁ ଘର ପାଶେ ଅଛି ଗୁଡ଼ୁଡ଼ିଏ ଧାନ,
ଗ୍ରାମରେ କରନ୍ତି ମଧ୍ୟ ସମସ୍ତେ ସମ୍ମାନ ।

ଏହିପରି ଚାଲିଗଲା ଦୁଇ ଚାରି ମାସ,
ବୁଢ଼ାକୁ ଆସିଲା ମାଡ଼ି ପେଲା ଧଇଁକାଶ ।
ଦିନେ ଦିନେ ହେଲେ ଖିଆପିଆରେ ବଖଡ଼,
ଘର ଖପା ହୁଏ ବୁଢ଼ା ପାଟି କରେ ବଡ଼ ।
ଦିନେ ବୁଢ଼ା ବସି କଲା ମନରେ ବିଚାର
ଏହି ପୁଅ ଝିଅ ସବୁ କିଏ ବା କାହାର ?
କେ ହୋଇ ପାରିବ ସେହି ଘରଣୀ ସମାନ ?
ମନ ଜାଣି କିଏ ଖଣ୍ଡେ ଭାଙ୍ଗିଦେବ ପାନ ?
ବିଭା ହେବି ନିଶ୍ଚେ ଏକ କନ୍ୟା କାହୁଁ ଆଣି,
ଅଚଳ ବେଳରେ ହେଲେ ପୋଷେ ଦେବ ପାଣି ।
ମନ ଜାଣି ଦିନେ ହେଲେ ବାଢ଼ିଦେବ ଭାତ,
ବାଧକା ବେଳରେ ଗୋଡ଼େ ବୁଲାଇବ ହାତ ।
ଏତେ କଥା ବୁଢ଼ା ଭାଳି ଆପଣା ମନରେ,
କନ୍ୟାଟିଏ ଖୋଜିଲା ସେ ଅତି ଗୁପତରେ ।
ବହୁତ ତଲାସ କଲେ ରଥେ ସେଥିପାଇଁ,
ବ୍ରାହ୍ମଣମାନଙ୍କ ଘରେ ବଡ଼ କନ୍ୟା କାହିଁ ?
ଦୁଇ ଚାରି ଜଣ ଭଣ୍ଡ କହି ସଠା ବଠା,
ନେଲେ ରଥଠାରୁ ଟଙ୍କା ଆଠ ଦଶ ଗୋଟା ।
ଅବଶେଷେ ବିଶୁ ରଥେ ପାଇଲେ ସନ୍ଧାନ,
ଖୁବ୍ ଆଚ୍ଛା କନ୍ୟାଟିଏ ହେଲେ ମଧ୍ୟ ସାନ ।
ରାମଚନ୍ଦ୍ର ମିଶ୍ର ଘର ପାବଙ୍ଗପୁରରେ,
ଆଠ ବରଷର ଝିଅ ଅଛି ତାଙ୍କ ଘରେ ।
ସାଆନ୍ତ ବ୍ରାହ୍ମଣ ମିଶ୍ରେ କୁଳେ ବଡ଼ ଠାଣ,
ମର୍ଯ୍ୟାଦାରେ କେହି ନାହିଁ ତାହାଙ୍କ ସମାନ ।
ମିଶ୍ରଙ୍କର ଝିଅ ନାମ ଅଟେ ଚନ୍ଦ୍ରପ୍ରଭା,
ସ୍ଥିର ହେଲା ବିଶୁ ରଥେ ହେବେ ତାଙ୍କୁ ବିଭା ।
ଛିଣ୍ଡିଲା ଦୁଇଶ ଦଶ ଟଙ୍କା କନ୍ୟା ସୁନା,
ଦେବେ ପୁଣି ବିଧ ମୁଦି ଖଡ଼ୁ ନାକଗୁଣା ।
ରୋକଠୋକ ଦେବେ ଟଙ୍କା, ନାହିଁ କାଲିବାସି,
ବିଭା ହେବେ ରଥେ କନ୍ୟା ବାପଘରେ ଆସି ।
ମାତ୍ର ରଥଙ୍କର ହାତେ ନାହିଁ ଏତେ ଟଙ୍କା,
ଏଥିପାଇଁ ଜାତ ହେଲା ମନେ ଭାରି ଶଙ୍କା ।

ମାଥିର ସାହୁଙ୍କୁ ରଥେ ଲେଖିଦେଲେ ଗୋଜା,
ଭୂମିଯାକ ବନ୍ଧା ଦେଇ ଆଣିଲେ କରଜା ।
ପୁଅ ଝିଅମାନେ ଶୁଣି ଲଗାଇଲେ କଳ,
ମାତ୍ର ନ ଶୁଣିଲା ବୁଢ଼ା ଭାରି ହେଲା ଚଳ ।
କନ୍ୟାବାପ କନ୍ୟାପଣ ଟଙ୍କା ନେଲେ ବାନ୍ଧି,
ସଁପିଦେଲା କନ୍ୟାମାତା କେତେ କାନ୍ଦି କାନ୍ଦି ।
ଆଠ ବରଷର ଝିଅ କିଛି ଜାଣେ ନାହିଁ,
ବିଚରା ମାଆ ଏତେ କାନ୍ଦୁଛି କିପାଇଁ ?
ଡୋଲରେ ବସାଇ ରଥେ ଆଣିବାର ବେଳେ
ତେତେବେଳେ ଚନ୍ଦ୍ରପ୍ରଭା କାନ୍ଦିଲା ବିକଳେ ।
କନ୍ୟା ଦେଖି ପୁଅ ଝିଅ ଝିଆରି ସମସ୍ତେ,
ରୁଣ୍ଡ ହୋଇ ବିକଳରେ କାନ୍ଦିଲେ ପରସ୍ତେ ।
କି କରିବେ ଜୁର ନାହିଁ, ପୁଣି ବୁଢ଼ା ଡରେ
ମଧ୍ୟସ୍ଥିକୁ ତାଙ୍କ କନ୍ୟା ପୂରାଇଲେ ଘରେ ।
ଆହା ଆହା ! ଏ କି ହେଲା, ଏ କି ସର୍ବନାଶ !
ଦିନୁ ଦିନୁ ବଳିଗଲା ରଥ ଧଇଁକାଶ ।
ରଥେ ତ ଧଇଲେ ବରଷକେ ଯମଦାଣ୍ଡ,
ନଅ ବରଷରେ ଚନ୍ଦ୍ରପ୍ରଭା ହେଲା ରାଣ୍ଡ ।
ଆଜିଠାରୁ ସେ ବିଧବା କରିବ ହବିଷ୍ୟ
ନ ଖାଇବ ଭଲ ଭଲ ଦ୍ରବ୍ୟ ବା ଆମିଷ ।
ନ ପିନ୍ଧିବ ଭଲ ଲୁଗା ନ ଖାଇବ ପାନ
ଏହିପରି ଅଛି ପରା ଶାସ୍ତ୍ରରେ ବିଧାନ ।
ନିର୍ଜଳା ରହିବ ଏକାଦଶୀ ଦିବସରେ
ମୁନିମାନେ ଲେଖି ଯାଇଅଛନ୍ତି ଶାସ୍ତ୍ରରେ ।
ଯେ ଦେଇଛି ବିଧି ବିଧବାର ବିଭାପାଇଁ,
ସେ ଋଷିଟା ଭାରି ମୂର୍ଖ କିଛି ଜାଣେ ନାହିଁ ।
ଷାଠିଏ ବରଷ ବୁଢ଼ା ବିଭା ହୋଇପାରେ
ବାଳିକା ସକାଶେ ଶାସ୍ତ୍ର ବିଧାନ ବାହାରେ !
ହେ ସମାଜ ! କରୁଅଛ ଯେଉଁ ଅତ୍ୟାଚାର,
ନିଶ୍ଚୟ ହେବଟି ପରଲୋକରେ ବିଚାର ।
ଆକାଶେ ଅଛନ୍ତି ଧର୍ମ, ନ ଯାଅ ପାସୋରି,
ଦିବା ନିଶି ଜଗିଛନ୍ତି ଧର୍ମ ଦଣ୍ଡ ଧରି ।

ଯେ କଷ୍ଟଟା ଦେଉଅଛ ନିର୍ଦ୍ଦୋଷୀ କନ୍ୟାକୁ,
ନିଶ୍ଚୟ ନିଶ୍ଚୟ ହେବ ଫଳ ଭୁଞ୍ଜିବାକୁ ।
ବୁଢ଼ା ବିଭାବେଳେ ଥିଲ ମୁଖେ କନା ଢାଙ୍କି,
ରାଣ୍ଡି ବେଳେ ବାହାରିଲ କାଖେ ଶାସ୍ତ୍ର ଜାକି !
ଧନ୍ୟ ଧନ୍ୟ ହେ ସମାଜ ! ଜୁହାର ତୁମ୍ଭଙ୍କୁ,
ଜୁହାରୁଛି ପୁଣି ତୁମ୍ଭ ବିଧି ବିଧାନକୁ ।
ଜାଣିଥିବ ଚନ୍ଦ୍ରପ୍ରଭା ପ୍ରତ୍ୟେକ ନିଶ୍ୱାସ,
କରି ପକାଇବ କେତେ କୁଳକୁ ବିନାଶ ।

———

## ବାରବିଳାସିନୀ

( ରାଗ—ମଙ୍ଗଳ )

ଭାରତବାସିନି ! ତୁ କି ହିନ୍ଦୁର ରମଣୀ ?
ବିପଣୀରେ ବସିଛୁ ତ ବାରବିଳାସିନି !
ରମଣୀସୁଲଭ ଲଜ୍ଜା ନାହିଁ ତ କିଞ୍ଚିତ ?
କେଉଁ ପାପେ କରିଛନ୍ତି ବିଧାତା ବଞ୍ଚିତ ?
ସ୍ନେହ, ପ୍ରୀତି, ଦୟା, ମାୟା, ଭକ୍ତି, ମଧୁରିମା,
ପରଶ ତ କରି ନାହିଁ ତୋହର ନିସୀମା ।
ପୂର୍ଣ୍ଣମାତ୍ରା ଏହି ସର୍ବ କରୁ ଅଭିନୟ,
କପଟତା ! କପଟତା ! କପଟତାମୟ !
କରିବା ନିମନ୍ତେ ତୁହି ଲୋକ ସର୍ବନାଶ,
କେତେ କରୁ ଅଙ୍ଗଭଙ୍ଗୀ କେତେ ମିଷ୍ଟ ହାସ୍ୟ ।
ସେହି ହାସ୍ୟ ତଳେ ଦେଖେଁ ଭୀଷଣ ଚାତୁରୀ,
ଗରଳ ବିଲିପ୍ତ ତୀକ୍ଷ୍ଣ ଗଳାକଟା ଛୁରୀ ।
ଆଲୋ ଲୋ ଲାବଣ୍ୟମୟି ! ଚିତ୍ତବିମୋହିନି !
ପ୍ରକୃତିରେ ଅଟୁ ତୁହି କାଳଭୁଜଙ୍ଗିନୀ ।
କେତେ ରୂପ ଛନ୍ତି ନରଘାତକ ତସ୍କର,
ତୋ ଚରିତ୍ର ସମସ୍ତଙ୍କଠାରୁ ଭୟଙ୍କର !
ପରିଣୟ-ବନ୍ଧନ ତୁ କରିଛୁ ତ ଛିନ୍ନ,
କିଛିମାତ୍ର ନାହିଁ ଚିତ୍ତେ ପବିତ୍ରତା ଚିହ୍ନ ।
ଦେଉଛୁ ଆତ୍ମାକୁ ଯଥାସାଧ୍ୟ ଅଧୋଗତି,
ମେଲାଣି ଦେଇଛୁ ତୋହ ଚିତ୍ତରୁ ସୁମତି ।
ସରଳ ହୃଦୟେ ତୋର ପୂରିଛି ଗରଳ,
ବାସନା ବିଳାସ ଦାଗ ଲାଗିଛି କେବଳ ।
ଛି-ଛି-ଛି-ଛି ! ହିନ୍ଦୁ କନ୍ୟା ହୋଇଛୁ ତସ୍କରୀ,
ସହଜରେ ଭୟଙ୍କରୀ ଅଟୁ ନିଶାଚରୀ ।
ଲିଭିଛି ପବିତ୍ର ଜ୍ୟୋତି—କଳଙ୍କ ତିମିର,
ଘୃଣାମୟ ! ଘୃଣାମୟ ! ତୋହର ଶରୀର ।
ରୂପାଜୀବା ରୂପହାଟ ମେଲିଅଛୁ ପରା ?
ଦୁଇ ଦିନେ ସରିଯିବ ବଣିଜ ପସରା ।
ଯେ ଯୌବନ ହେନି ତୋର ଏତେ କାଟିକୁଟି
ଦେଖୁ ନାହୁଁ, ଦିନୁ ଦିନୁ ଯାଉଛି ତ ତୁଟି !
ମୋ ବିଶ୍ୱାସ ଏକା ତୋର ନାହିଁ କିଛି ଦୋଷ,
ସମାଜ ଏଥିକୁ ଦାୟୀ ଅଛନ୍ତି ଅବଶ୍ୟ ।
ସଂସର୍ଗ ଶିକ୍ଷାରେ ତୁହି ହେଲୁ ଏତେ ସରି,
ସମାଜ ଉପେକ୍ଷା ତତେ କଲେ ବା କିପରି ?
ପଡ଼ିଲୁ ଶୈଶବେ ଯେତେବେଳେ ବେଶ୍ୟାହସ୍ତେ
ଅବଶ୍ୟ ତ ଦେଖିଥିଲେ ସମାଜ ସମସ୍ତେ ।
ଛଡ଼ାଇ ତ ଆଣିଥିଲେ ତାହା ହସ୍ତୁଁ ତୋତେ,
ନିଶ୍ଚୟ ନିଶ୍ଚୟ ରହିଥାନ୍ତୁ ଧର୍ମପଥେ ।
ଦେଖୁଁ ଦେଖୁଁ ଆତ୍ମାଟି ତ ପଡ଼ିଲା ନରକେ,
ଜଳଜଳ ଚାହିଁଥିଲେ ସମାଜର ଲୋକେ ।

———

## ଆଶା

( ରାଗ—ମଙ୍ଗଳ )

ଅମର ବିହଗୀ ସେ କି ବିଚିତ୍ର ବରଣ,
କେଉଁ ମହାଗଗନରେ କରେ ବିଚରଣ ?
ଆକର୍ଷଣ କରେ ମନ ଆଶ୍ୱାସେ ବିଶ୍ୱାସେ,
ମହୋଲ୍ଲାସେ ମହାକାଶେ ଭ୍ରମିବା ସକାଶେ ।

କ ଆଲୋକ ସୁଖମୟ ଦେଶେ ଯିବା ପାଇଁ,
ବିବାନିଶି ମନ ତାହା ପଛେ ଥାଏ ଧାଇଁ ।
ଉଦାର ଆହ୍ୱାନେ ସବୁ ଭୁଲିଯାଏ ପ୍ରାଣ,
ଲଙ୍ଘି ଯାଏ କେତେ ବାଧା ବିଘ୍ନ ବ୍ୟବଧାନ ।
ସ୍ୱର୍ଣ୍ଣରଥେ ଯାଏ ଯେବେ ଅନ୍ଧକାର ଦେଶେ,
ସଙ୍କୀର୍ଣ୍ଣତା ଭୁଲି ମନ ଧାଏଁ ମହାବେଶେ ।
ନ ବୁଝେ ସେ ମୂର୍ତ୍ତିମନ୍ତ ମରୁ ମରୀଚିକା,
ଭ୍ରମଚକ୍ରେ ଭ୍ରମୁଥାଏ ମାୟା ବିଶ୍ୱାସିକା ।
ମାଦକ ନ ଥିଲେ ଆଶାରଜ୍ଜୁ ଆକର୍ଷଣ,
ଭାସୁଥାନ୍ତା ତମୋମୟ ଗଗନରେ ମନ ।

———

## ସେ କି ଥିଲା !

ସେ କି ଥିଲା ମୋର ତପସ୍ୟାର ଫଳ
ଆନନ୍ଦ-ଉତ୍ସବ-ସିନ୍ଧୁ,
ସେ କି ଥିଲା ମୋର ହୃଦୟ-ଆକାଶେ
ଶାରଦ ପୂର୍ଣ୍ଣିମା ଇନ୍ଦୁ ।

ସେ କି ଥିଲା ମୋର ସନ୍ତାପହାରିଣୀ
ମୃତ-ସଞ୍ଜୀବନୀ ଗୀତ,
ଜୀବନ ସଙ୍ଗୀତେ ଥିଲା କି ମୂର୍ଚ୍ଛନା,
ଜୀବନ ତନ୍ତ୍ରେ ମିତ,

କି ଅଜଣା ଦେଶେ କୁସୁମରୂପେ ସେ
ଥିଲା କି ଲାବଣ୍ୟନିଧି,
କିଛି ତ ନ ଜାଣେ କେଉଁ ଉପାଦାନେ
ଗଢ଼ିଥିଲା ତାକୁ ବିଧି !

ଆନନ୍ଦ ଉଲ୍ଲାସେ ଆସିଥିଲା ପାଶେ
ଉତ୍ସବ ସ୍ରୋତରେ ଭାସି,
ଜୀବନ-ଆକାଶେ ବିଲୀନ ହେଲା ସେ
ବିମଳ ଜ୍ୟୋତି ବିକାଶି ।

ଚିର ପ୍ରତିଚ୍ଛବି ନୟନେ ପଡ଼ିଏ
ଦିଶେ ରୂପ ଚରାଚରେ,
ଚୂଳ ଧରି ଚିର ଅଙ୍କିତ ପଡ଼ିଏ
ଦିଶେ ହୃଦୟ ମଧ୍ୟରେ ।

ଅନନ୍ତ ଅଜ୍ଞାତ ନେତ୍ର-ଅନ୍ତରାନ୍ତ
ଦେଶେ ଭାସିଗଲା କାହିଁ,
ଅଛି ଧୈର୍ଯ୍ୟ ଧରି ଦିବସ ଶର୍ବରୀ
ତାହା ମାର୍ଗ ଚାହିଁ ଚାହିଁ ।

ସୁଖେ ଦୁଃଖେ ଶୋକେ ଅନ୍ଧାରେ ଆଲୋକେ
ଭାସେ ନେତ୍ର ଅନ୍ତରାଳେ,
ଅଛି ଆଶା ଧରି ମାର୍ଗ ଲକ୍ଷ୍ୟ କରି
ଭେଟିବି ଚରମ କାଳେ ।

———

# ଷଷ୍ଠ ଅଧ୍ୟାୟ

# ଜରା ଓ ମୃତ୍ୟୁ

## ମୋ ମୋହନ ବଂଶୀ

( ରାଗ—ବଙ୍ଗଳାଶ୍ରୀ )

ଅବସାନ ସବ ଜୀବନ ଉତ୍ସବ
ଛାଡ଼ିଯାଇଛି ପ୍ରେୟସୀ,
ସମ୍ପଦେ ବିପଦେ ମନର ଆନନ୍ଦେ
ବଜାଏଁ ମୋହନ ବଂଶୀ ।

ପଡ଼ିଲେ ପ୍ରମାଦେ ମନର ବିଷାଦେ
ନିରୋଳେ ଏକାନ୍ତେ ବସି
ଗାଏଁ ହରିନାମ, ସ୍ମରେ ଗୁଣଗ୍ରାମ,
ବଜାଏଁ ମୋହନ ବଂଶୀ ।

ଜନମି ସଂସାରେ  କି କଲି ମୁଁ ବାରେ
ନ ଭାଳି ଆପଣା ମନେ,
ଥିଲି ଉନମତ୍ତ  ଭ୍ରମି ଇତସ୍ତତଃ
ଚିତ୍ତ ବିତ୍ତ ଉପାର୍ଜନେ ।

ଯାଇଛି ସମସ୍ତ,  ସୁଧାକର ଅସ୍ତ,
ଏବେ ନିଶା ଅବସାନ,
ଯାଏ ଏବେ ଜଣା,  ସବୁ ବିଡ଼ମ୍ବନା,
ସୁଖ ସ୍ୱପନ ସମାନ ।

ଦେଖେଁ ମୁଁ ବିଚାରି,  ଥିଲେ ଯେତେ ମିତ୍ର,
ସେଥିମଧ୍ୟୁଁ କେହି ଜଣେ
ନାହାନ୍ତି ଜଗତେ  କେଉଁ ଦୂର ପଥେ
ଗୁଲିଗଲେ କି କାରଣେ !

ନ ଦେଖେଁ ମୁଁ ଜଣେ  ମୋହର ଜୀବନେ
ସାନ୍ତ୍ୱନା ଦେବାର ପାଇଁ,
ପ୍ରାଣରୁ ଅଧିକ  ଥିଲେ ଯେ ପ୍ରେମିକ,
ସେମାନେ ଅଛନ୍ତି କାହିଁ ?

ସବେ ସ୍ୱାର୍ଥପର,  ମୁଁ ତ ସ୍ୱତନ୍ତର
ନୁହେ ମାନବମଣ୍ଡଳେ,
ସ୍ୱାର୍ଥ ସାଧିବାକୁ  ଆସିଛୁଁ ଧରାକୁ,
ପାଳୁଁ ନିୟମ ସକଳେ ।

ନିର୍ଜନେ ଏକାନ୍ତେ  ନିଶି ବା ପ୍ରଭାତେ
ହେଲେ ଚିତ୍ତ ଉଚାଟନ,
ବଂଶୀ ହସ୍ତେ ଧରି  ପ୍ରଭୁ ନାମ ସ୍ମରି
କରେଁ ସଙ୍ଗୀତ ଗାୟନ ।

ଜୀବନମାର୍ଗରେ  ଶେଷ ମୁହୂର୍ତ୍ତରେ
କିଛିହିଁ କାମନା ନାହିଁ,
ହୋଇ କାର୍ଯ୍ୟଚ୍ୟୁତ  ହେଉଛି ପ୍ରସ୍ତୁତ
ପରଲୋକେ ଯିବାପାଇଁ ।

ସ୍ଥିର କରି ଚିତ୍ତ  ଗାଏଁ କେତେ ଗୀତ
କରି ଶବ୍ଦ ଗୁଣୁ ଗୁଣୁ,
ବଜାଏଁ ମୁଁ ବଂଶୀ  ଏକାନ୍ତରେ ବସି,
ଇଚ୍ଛା ନୁହେ କେହି ଶୁଣୁ ।

ବୋଲୁଛି ଭରସି,  ଏକା ତୁହି ବଂଶୀ
ଅଟୁ ମୋ ଜୀବନସଖା,
ନ କରୁ ଅନିଷ୍ଟ,  ପୂରାଉ ଅଭୀଷ୍ଟ,
ନାହିଁ ତୋହଠାରୁ ବଳା !

ଅରେ ମୋର ବଂଶୀ ।  ପରାଣପ୍ରେୟସି !
ଏତେ ମାଗୁଣି ତୋଠାରେ,
ଯେ କାଳେ ମୋ ପ୍ରାଣ  କରିବ ପ୍ରୟାଣ,
ପଡ଼ିଥିବୁ ମୋ ଶଯ୍ୟାରେ ।

---

## ସାବଧାନ

( ରାଗ—ବଙ୍ଗଳାଶ୍ରୀ )

ବିଗତ ଅତୀତ ହାସ୍ୟ ପରିହାସ,
ନୀରବ ପ୍ରେମ ସଙ୍ଗୀତ,
ଅନ୍ତତ ଯାବନ୍ତ ସୁଖର ବସନ୍ତ,
ତାପେ ପରାଣ ତାପିତ ।
ଚିତ୍ତେ ନିମଗନ ସୁଖର ସ୍ୱପନ—
ଏବେ ଜାଗ୍ରତ ଯନ୍ତ୍ରଣା,
ଛାଡ଼ି ଅବଶେଷେ ବନ୍ଧୁ ଦୂରଦେଶେ
ଯାଇଛି ହୋଇ ବିମନା ।
ସୁଖର ଦିବସ ଯାଇଛି କ୍ରମଶ,
ଏବେ ଦିବା ଅବସାନ,
କିଛି ନ ରହିବ ତୁମ୍ଭେ ଗୁଲିଯିବ,
‘ବେଳୁଁ ହୁଅ ସାବଧାନ ।

---

## ବୁଢ଼ାପଳାଶ

( ରାଗ—ଚକ୍ରକେଳି )

ପଳାଶ ଗଛଟା    ଅଛି ତୋଟାରେ
ବୁଢ଼ା ବୋଲି ତାକୁ    କେବା ପଚାରେ ?
କେତେ କାଳୁ ଅଛି    ଗଛଟା ଛିଡ଼ା,
ଜଳ ଲାଗି ତାର    ମୂଳଟା ସଡ଼ା ।
ଶୁଖିଯାଇଛି ତ    ଡାଳ ପତର,
ଶୁଖିଲା କାଠଟା    ଛିଡ଼ା ମାତର ।
ପ୍ରତିଦିନ ଆସେ    ତୋଟାକୁ ମାଳୀ,
ଟାଳେ ହେଲେ ଜଳ    ନ ଦିଏ ଢାଳି ।
ଗଛଟାକୁ ଦେଖି    ନୀରସ ଫମ୍ପା,
ଭୁଞ୍ଜାଟାରେ ହୁଏ    ବହୁତ ଖପା ।
ବୋଲେ ବୁଢ଼ା ବୃକ୍ଷ    ନ ମଲୁ କିଆଁ,
ଶୁଖିଲା କାଠରେ    ରହିଲା ନିଆଁ ।
କେତେ ବଜ୍ରାଘାତ    ତୋଫାନ ସହି,
ନ ମରି ଅଛି ତ    ତୋଟାରେ ରହି ।
ଏହିପରି ଗଲା    ବହୁତ କାଳ,
ଏଣିକି ଫିଟିଲା    ଗଛ କପାଳ ।
କାହୁଁ ଆସି ଏକ    ମାଲୁଣୀଝିଅ
ଦେଖିଲା ଗଛର    ଶୁଖିଛି ହିଅ ।
ବଡ଼ ଦୟାବତୀ    ମାଳୀଝିଅଟା,
ଝାଡ଼ିଝୁଡ଼ି ଦେଲା    ଗଛର ଘଟା ।
କେତେ ଥର ନିଜ    ହାତ ସ୍ନେହରେ
ବୁଲାଇ ଦିଅଇ    ଗଛ ଦେହରେ ।
ଆପଣା ହାତରେ    କୁମ୍ଭରେ ପାଣି
ବୁଢ଼ା ଗଛ ମୂଳେ    ଢାଳିଲା ଆଣି ।
ସେବା ପାଇ ସେହି    ମାଳୀଝିଅର
ଗଜାଇଲା ପୁଣି    ଡାଳ ପତର ।
ଢାଳିଦେଲା ଫୁଲ    ବୁଢ଼ା ପଳାଶ,
ମାତ୍ରକ ତାହାର    ନାହିଁ ସୁବାସ ।
କେହି ଯେବେ ଫୁଲ    ନିଏ ଛିଣ୍ଡାଇ—
ଫୋପାଡ଼ି ଦିଏ ସେ    ଗନ୍ଧ ନ ପାଇ ।

———

## ଅନନ୍ତ ବିଶ୍ରାମ

( କାମୋଦୀ )

ସଂସାର ଅନ୍ଧକାରେ    ଭ୍ରମି ମୁଁ ବାରେ ବାରେ
ନିତାନ୍ତ ହୋଇଛି ତ କ୍ଳାନ୍ତ,
ସମ୍ମୁଖ ପଶ୍ଚାତରେ    ଦକ୍ଷିଣେ ବା ଉତ୍ତରେ
ଲକ୍ଷ୍ୟ ନ ପାଇ ହୁଏଁ ଭ୍ରାନ୍ତ,
ମୋ ସଙ୍ଗୀ ଜନେ,
କାହାକୁ ନ ଦେଖେଁ ତ ପାଶେ, ଥିଲି ମୁଁ ଯେମାନଙ୍କ ଆଶେ
ନେବ ବୋଲି ସଙ୍ଗରେ    ବହୁତ ସମାଦରେ
ଧାଇଁତ ସର୍ବେ ନିଜ ବାସେ । ୧ ।

ଏବେ ଲଭିଛି ଶାନ୍ତ    ମେଣ୍ଟିଛି ଭୁଲ ଭ୍ରାନ୍ତ
ବିଳାପ ବିଷାଦ ସନ୍ତାପ,
ଯାଇଛି ଭଲ ମନ୍ଦ    ପ୍ରେମ ମିଳନ ଦ୍ୱନ୍ଦ୍ୱ
ଉଲ୍ଲାସ କ୍ଳାନ୍ତ ପୁଣ୍ୟ ପାପ,
ମୁଁ ବର୍ତ୍ତମାନ
ଲଭିଛି ସୁଧାମୟ ସ୍ଥାନ, କରେଁ ଆତ୍ମାକୁ ଧନ୍ୟ ଜ୍ଞାନ
ଉଲ୍ଲାସ କ୍ଳାନ୍ତ ପୁଣ୍ୟ ପାପ,
ଏବେ ମୁଁ ନିଶ୍ଚିନ୍ତରେ    ରହିବି ଏ ସ୍ଥାନରେ
ରକ୍ଷକ ପ୍ରଭୁ ଭଗବାନ । ୨ ।

ସେ ଯେ ବିଶ୍ୱସଂସାର    ଆଲୋକ ଅନ୍ଧକାର
ସମ୍ବନ୍ଧ ନାହିଁ ଏହି ସ୍ଥାନେ,
ନୟନୁ ଅଶ୍ରୁଧାର    ବିଳାପ ହାହାକାର
ଯାଇଛି କାହିଁ ଅନ୍ତର୍ଦ୍ଧାନେ,

ମୁଁ ଦେଖେ ଶୂନ୍ୟ
ପୃଥ୍ୱୀ ସମ୍ପର୍କ କାହିଁ ନାହିଁ   ପ୍ରାଣ ଆକୁଳ ଯାହାପାଇଁ
ମାର୍ଜନା ଦ୍ୱେଷ ଘୃଣା   ସନ୍ତାପ ବା ଯନ୍ତ୍ରଣା
ନ ଦେଖେଁ ଚିହ୍ନ ମାତ୍ର କାହିଁ । ୩ ।

ପୃଥ୍ୱୀ ଲୋକ ସକଳ   ଭୁଞ୍ଜନ୍ତି କର୍ମଫଳ
ଏଥି ମୁଁ କଲି ଅନୁମାନ,
ମାତ୍ର ମୋର ସିଦ୍ଧାନ୍ତ   ଜାଣୁଛି ହେବ ଭ୍ରାନ୍ତ
ଦେଖେଁ ତା ସକଳ ସମାନ
ମୁଁ ଏ ସ୍ଥାନରେ,
ଧର୍ମାଧର୍ମର ଫଳାଫଳ   ନ ଦେଖେଁ, ସମାନ ସକଳ
ସ୍ୱକର୍ମ ବଳାବଳେ   ଅସ୍ତିତ୍ୱ ଚହଟଲେ
ଛନ୍ତି ତ ସର୍ବେ ନିରନ୍ତରେ । ୪ ।

ନାହିଁ ଚନ୍ଦ୍ର ତାରକା   ଆହ୍ଲାଦ ବର୍ଦ୍ଧିକା
ନାହିଁ ଆକାଙ୍‌କ୍ଷା ଅଭିଳାଷ,
ନାହିଁ ଧୀର ପବନ   ନାହିଁ ନୀଳ ଗଗନ
ନାହିଁ ତ ଆଶା ମରୀଚିକା
ଯେ ଏ ସ୍ଥାନରେ,
ଏକ ମାତ୍ରକ ଜ୍ୟୋତିଷ୍ମାନ   ବ୍ୟାପିଅଛନ୍ତି ସର୍ବସ୍ଥାନ
ତାହାଙ୍କୁ ସମ୍ମୁଖରେ   ଦେଖୁଛି ଆନନ୍ଦରେ
ଏହି ମୋ ଅନନ୍ତ ବିଶ୍ରାମ । ୫ ।

———

## ମୃତ୍ୟୁଶଯ୍ୟାରେ

ସମାପତ ଶ୍ରମକ୍ଲାନ୍ତ   ଆଜ ମୁଁ ଲଭିଲି ଶାନ୍ତ
ଜୀବନର ଭୁଲ ଭ୍ରାନ୍ତ ହେଲା ଅବଶେଷ—
ବ୍ୟାକୁଳତା ଦ୍ୱିବା ନିଶି   ଶ୍ମଶାନ ଚିତାରେ ମିଶି
ଯିବ ସୁଖଦୁଃଖରାଶି ନ ରହିବ ଲେଶ ।

ପ୍ରେମ ଆଳାପନ କଥା   ଜୀବନର ସର୍ବ ବ୍ୟଥା
ସ୍ନେହ ପ୍ରୀତି ମଧୁରତା ସର୍ବ ହେବ ଦୂର,
ବିଶ୍ୱ ବ୍ରହ୍ମାଣ୍ଡ ଆଲୋକ   ସୁଖ ବା ଦୁଃଖଦାୟକ
ଗଲା ଯାଉ ଏବେ ସୁଖ ଲଭିବି ପ୍ରଚୁର ।

ଏ କି ବନ୍ଧୁଙ୍କ ବେଶର   ଦେଇ ପୁଷ୍ପ ଉପହାର
ସଜାଇ ପ୍ରତିମାକାର ଆଣିଛନ୍ତି ମୋତେ,
ମୋହ ପକ୍ଷେ ବର୍ତ୍ତମାନ   ପଙ୍କ ଚନ୍ଦନ ସମାନ
ସମ ମାନ ଅପମାନ ନ କଲେ ପରତେ ।

ବୋଲ ହରି ହରି ବାଣୀ,   ଘେନୁଛି ଏବେ ମେଲାଣି
ଜନ୍ମଭୂମି ଠାକୁରାଣି ! କରେ ନମସ୍କାର,
କାଟିଛି ଜୀବନକାଳ   କରି ବହୁତ ଜଞ୍ଜାଳ
ନିଅ ଦେହ ଚିତାନଳ ଭସ୍ମ ଉପହାର ।

———

## ମୁଁ ବୈରାଗୀ

( ଭାଗବତ ବୃତ୍ତ )

ହୋଇଛି ଜୀବନ ଅତୀତ, ବାର୍ଦ୍ଧକ୍ୟ ଏବେ ଉପସ୍ଥିତ ।
ସଂସାର ସୁଖ ଦୁଃଖ ସର୍ବ, କଲି ଜୀବନେ ଅନୁଭବ ।
କୁଟୁମ୍ବ ଜ୍ଞାତିଗଣ ସଙ୍ଗେ, କାଟିଲି କାଳ ନାନାରଙ୍ଗେ ।
ଯେ ମୋର ଥିଲା ଦେହ ସ୍ପୃହା, ଯାଇଛି କାଟିଦେଇ ମାୟା ।
ଜଗତ ସମ୍ମାନ ପ୍ରତିଷ୍ଠା, ଏବେ ସେ ସର୍ବ ମଣେ ବିଷ୍ଠା ।
ମୋହିତ ନ ହେବି ମୁଁ ଧନେ, ଇଚ୍ଛା ମୋ ନାହିଁ
ଉପାର୍ଜନେ ।
ଯେ ଦ୍ରବ୍ୟ ମୋର ପ୍ରୟୋଜନ, ଦେଇ ତ ଛନ୍ତି ନାରାୟଣ ।
ମସ୍ତକ କେଶ ହେଉ ଅଠା, ହେବ ତ ହେଉ ପଛେ ଜଟା
କୃତ୍ରିମ ସନ୍ନ୍ୟାସୀ ପ୍ରକାର, ବହିବି ନାହିଁ ଜଟାଭାର ।
ଆଉ ପାଉଁଶ ଅବା ଧୂଳି, ଦେହରେ ହେବ ନାହିଁ ବୋଲି
ହେବାର ବିଭୂତି ଭୂଷଣ, କିଛି ତ ନ ଦେଖେଁ କାରଣ ।
ତେବେ ମୋ ଦେହରକ୍ଷାପାଇଁ, ବିଶେଷ ଯତ୍ନ କିଛି ନାହିଁ ।
ମିଳିବ ଖାଦ୍ୟ ଯେ ପ୍ରକାର, ଆନନ୍ଦେ କରିବି ଆହାର ।
ଏ ଦେହ ପ୍ରଭୁଙ୍କ ମନ୍ଦିର, ଏ କଥା କରିଅଛି ସ୍ଥିର ।
ଇଚ୍ଛାରେ ନ କରିବି ନଷ୍ଟ, ଘଟ୍ ପଛକେ ଯେତେ କଷ୍ଟ ।
ଲୋଡ଼ିବି ନାହିଁ ମୋ ଜୀବନ, ଅଥବା ଅକାଳ ମରଣ ।

ରହିବି ଚିତ୍ତ ମଧ୍ୟ ଶାନ୍ତ, ନ ହେବି କେଭେ ଆତ୍ମଘାତୀ ।
କେ ମୋର ପୁତ୍ର କେ ବା ମିତ୍ର, ସଂସାର ଅଶିବ ବିଚିତ୍ର ।
ବନ୍ଧୁ କୁଟୁମ୍ବ ପ୍ରଭୁ ମୋର, କେବଳ ମୁହିଁ ପ୍ରଭୁଙ୍କର ।
କପାଁଇ ଯିବି ବନବାସେ ? ପ୍ରଭୁ ତ ଛନ୍ତି ମୋହ ପାଶେ ।
ସନ୍ତତ ବସି ମୁଁ ନିର୍ଜନେ, ଗୁଣିବି ପ୍ରଭୁ ନାମ ମନେ ।
କଲେକ କେହି ଅତ୍ୟାଚାର, କରିବି ମୁଁ ସାଧୁ ବେଭାର ।
ମୋ ପକ୍ଷେ ସମସ୍ତ ପବିତ୍ର, ନାହାନ୍ତି ମୋର ଶତ୍ରୁ ମିତ୍ର ।
ଉତ୍କଳ ମୋର ଜନ୍ମସ୍ଥାନ, ସେବା କରିବି ଦେଇ ପ୍ରାଣ ।
ବୋଲନ୍ତୁ ଯେଉଁ କଥା ଯେବା, କରିବି ଜନ୍ମଭୂମି ସେବା
କରିବି ଦେଶ ପାଇଁ ଯତ୍ନ, କଦାଚ ନ ହେବି କୃତଘ୍ନ ।
ହରି ମୋ ଧନ ହରି ଧ୍ୟାନ, ଜ୍ଞାତି କୁଟୁମ୍ବ ହରି ଧନ ।
ବୋଲ ହେ ଭାଇ ସର୍ବଜନ—ବୈରାଗୀ ଫକୀରମୋହନ ।

———

## ମୃତ୍ୟୁର ନିମନ୍ତ୍ରଣ

( ରାଗ - ମଙ୍ଗଳ )

ବୋଲବା ହେଉନ୍ତୁ ଆହେ ସୁହୃଦ ମରଣ !
କେବେ ମୋର ନିମନ୍ତ୍ରଣ କରିବେ ଗ୍ରହଣ ?
ଆହେ ବନ୍ଧୋ ! ଆପଣଙ୍କୁ କରୁଛି ଜୁହାର,
ଆସ ଆସ ବୋଲ ମୋତେ ସ୍ୱର୍ଗ ସମାଚାର ।
ହେ ମୃତ୍ୟୁ ! ତୁମ୍ଭଙ୍କୁ କରେ ଯେଉଁ ଲୋକ ଭୟ,
ନିର୍ବୋଧ ! ନିର୍ବୋଧ ! ସେହି ନିର୍ବୋଧ ନିଶ୍ଚୟ !
ଯେଉଁ ଲୋକ ଘେନିଯିବ ସୁଧାମୟ ସ୍ଥାନେ,
ତାହାକୁ ବୋଲିବ ଶତ୍ରୁ ବୋଲ କେଉଁ ପ୍ରାଣେ ?
ଉଦ୍ଧାର ପାଇବ ଯାହା ଯୋଗେ ଯାତନାରୁ,
ଅଧିକ କେ ହିତକାରୀ ଅଛି ତାହାଠାରୁ ?
ଅନନ୍ତ ଅମୃତଧାମୁଁ ମୁହିଁ ଅଛି ଆସି,
ପୃଥିବୀ ମଧ୍ୟରେ ରହିଛି ତ ପରବାସୀ;
ଅନେକ କାଳରୁ ରହିଅଛି ଜଗତରେ,
ଶ୍ରାନ୍ତ କ୍ଳାନ୍ତ ହେଲି, ନାହିଁ ସାମର୍ଥ୍ୟ ଦେହରେ ।
ପରବାସେ ରହିବାକୁ ନାହିଁ ଆଉ ମନ,
ସ୍ୱସ୍ଥାନକୁ ଯିବାପାଇଁ ଚିତ୍ତ ଉଚ୍ଚାଟନ ।
ତୁମ୍ଭ ବିନା କାହାକୁ ତ ଆଉ ଦେଖୁ ନାହିଁ,
ଆହେ ମିତ! ସ୍ୱସ୍ଥାନକୁ ଘେନିଯିବା ପାଇଁ ।
ଏକମାତ୍ର ସାହା ତୁମ୍ଭେ ନେବାକୁ ସ୍ୱସ୍ଥାନେ,
ଆସ ଆସ ବନ୍ଧୋ ! ଆସ ବେଗେ ସନ୍ନିଧାନେ ।
ଆନନ୍ଦ, ଉଲ୍ଲାସ, ସୁଖ, ଦୁଃଖ, ସ୍ୱାସ୍ଥ୍ୟ, ରୋଗ,
ସଂସାରର ସର୍ବ ଦ୍ରବ୍ୟ କରିଛି ସମ୍ଭୋଗ ।
ବାରମ୍ବାର ଏକ ଦ୍ରବ୍ୟ ଭୁଞ୍ଜିବାର ପାଇଁ,
ଆହେ ବନ୍ଧୋ ! ଆଉ ମୋର ଇଚ୍ଛା ବିଲ୍କୁ ନାହିଁ ।
ଯା ଦେଖ ଏ ସ୍ଥାନେ ଆନନ୍ଦର କୋଳାହଳ,
ମନରେ ବୁଝୁଛି ଏହା ମହାକାଳ ଫଳ ।
ଏହି ଫଳ ଭୁଞ୍ଜି ଭୁଞ୍ଜି ହେଲଣି ଅରୁଚି,
ତୁମ୍ଭର ପରଶେ ହେଉ ଆତ୍ମା ମୋର ଶୁଚି ।
ହେଲଣି ଆବାସ ଗୃହ, ବନ୍ଧୋ ! ଜରାଜୀର୍ଣ୍ଣ,
ପୁଣି ମୁଁ ଦେଖୁଛି ଏହା ନିତାନ୍ତ ସଂକୀର୍ଣ୍ଣ ।
ଉଡ଼ିବ ଯେ ବିହଙ୍ଗମ ଅନନ୍ତ ଆକାଶେ,
କରେ କି ସନ୍ତୋଷ ଲାଭ ରହି କ୍ଷୁଦ୍ରାବାସେ ?
ଆସ ଆସ ବନ୍ଧୋ ! ଆସ ମିଳି ବେନି ଜଣ
ଅନନ୍ତ ଆକାଶମାର୍ଗେ କରିବୁଁ ଭ୍ରମଣ ।
ଅନନ୍ତ ଅଗମ୍ୟ ମାର୍ଗ ମଣିବି କପରି,
ଆହେ ମିତ୍ର ! ଘେନିଯାଅ ମୋହ ହାତ ଧରି ।
ରଖିଛି ଯେତେକ କରି ମାର୍ଗର ସମ୍ବଳ,
ତେତକ ମାତ୍ରକ ଘେନିଯିବି ମୁଁ କେବଳ ।
ଯାହା କିଛି ଅର୍ଜିଛି ପାର୍ଥିବ ସମ୍ପତ୍ତି,
ନ ଛୁଡ଼ିବ ପୃଥ୍ୱୀ ମାଧ ଆକର୍ଷଣ ଶକ୍ତି ।
ଆହେ ମିତ୍ର ! ତୁମ୍ଭେ ମୋର ପାପ ପୁଣ୍ୟ ସାକ୍ଷୀ,
ତୁମ୍ଭଠାରେ ବୁଝିବାକୁ ନାହିଁ କିଛି ବାକି ।
କେତେ ଦେବ, କେତେ ଦେବୀ, ରାକ୍ଷସ, ରାକ୍ଷସୀ,
ହୃଦୟ-କୁଟୀର ମଧ୍ୟେ ରହିଛନ୍ତି ବସି ।
ସ୍ନେହ, ମାୟା, ଦୟା, ହିଂସା, କ୍ରୋଧ, ଅଭିମାନ,
କ୍ଷୁଧା, ତୃଷ୍ଣା, ଭୟ, ଗର୍ବ, ମାତ୍ସର୍ଯ୍ୟ, ସମ୍ମାନ,

ବାସନା, ସାଧନା, ଅଶ୍ରୁ, ହାସ୍ୟ, ପରିହାସ,
ଏ ସଜଳ ହୃଦମଧ୍ୟେ କରିଛନ୍ତି ବାସ ।

କେତେ ବା ଆଲୋକ, ଛାୟା, ଗୀତିମୟୀ ଭାଷା,
ଲାଲସା ପ୍ରବୃତ୍ତି, କେତେ ସୀମାହୀନ ଆଶା,

ଜାଗରିତ ହୋଇ ପ୍ରତିଦିନ ପ୍ରଭାତରେ,
ଲଗାନ୍ତି ବିବିଧ ଲୀଳା ହୃଦୟ ମଧ୍ୟରେ ।
ସାଗରେ ଲହରୀ ସୀମା ପରିସୀମା ନାହିଁ,
ଏକ ପଛେ ଆନ ଅବିଶ୍ରାନ୍ତ ଛନ୍ତି ଧାଇଁ ।

ଏ କ୍ଷୁଦ୍ର କୁଟୀରେ ସର୍ବେ ମେଲିଛନ୍ତି ରାଜ୍ୟ,
ସାଧୁଛନ୍ତି ମିଳି ସର୍ବେ ନିଜ ନିଜ କାର୍ଯ୍ୟ ।
ଯେ ମୁହୂର୍ତ୍ତେ ଆଗମନ କରିବେ ଆପଣ,
ନିମିଷେ ପାରିବେ ନାହିଁ ରହି ଏକ ଜଣ ।

ସେମାନଙ୍କ ମଧ୍ୟେ ଅଛି ଧରି ମୌନବ୍ରତ,
ବୋଲ ବୋଲ କେତେ କାଳ ରହିବି ଏମନ୍ତ ?
ଉଠିବି ଯେ କାଳେ ଆହେ ବନ୍ଧୋ ! ଦେହ ଝାଡ଼ି
ଆତଙ୍କରେ ସେ ସମସ୍ତେ ପଳାଇବେ ଛାଡ଼ି ।

ଏହି ଦେବ ଦେବୀ ନିଶାଚରୀ ନିଶାଚରେ,
ବସା ବାନ୍ଧି ରହିଛନ୍ତି ହୃଦୟ ମଧ୍ୟରେ ।
ବିଧା ଭାଙ୍ଗିଦିଅ ବନ୍ଧୋ ! ସର୍ବେ ଭୟ ପାଇ
ବର୍ତ୍ତମାନ ଛାଡ଼ି ମୋତେ ଯାଉନ୍ତୁ ପଳାଇ ।

ଜାଣ ବନ୍ଧୋ ! କପାଁ ମୋର ଚିତ୍ତ ଉଚାଟନ ?
ଜାଣ କପାଁ ଧରୁ ନାହିଁ ପୃଥିବୀରେ ମନ ?
ଶାନ୍ତି ଦେଖୁ ନାହିଁ କ୍ଷୁଦ୍ର ପଞ୍ଜରୀ ମଧ୍ୟରେ,
ଇଚ୍ଛା, ଉଡ଼ନ୍ତି ମୁକ୍ତ ବାୟୁ ନୀଳ ଆକାଶରେ ।

ମୋର ସୁଖଦୁଃଖ-ସଙ୍ଗୀଛନ୍ତି ଯେଉଁ ଦେଶେ,
ସେ ସ୍ଥାନକୁ ଯିବି ଚାଲି ଛାୟାମୟ ବେଶେ ।
ସୂଆଙ୍ଗ ବେଶରେ ରହି ପୃଥ୍ୱୀ ରଙ୍ଗାଳୟେ
ଜୀବନଟା ଯାକ କାଟିଦେଲି ଅଭିନୟେ ।

ସମାପ୍ତ ହୋଇଛି ସ୍ୱର ମୋ ସଙ୍ଗୀତଗ୍ରାମ ।
ଯବନିକା ଅନ୍ତରାଳେ କରିବି ବିଶ୍ରାମ ।

ଜୀବନର ସୁଖ ଦୁଃଖ ମର୍ମର ବେଦନା,
ଆହେ ମିତ୍ର ! ତୁମ୍ଭଙ୍କୁ ତ ସର୍ବ ଅଛି ଜଣା ।
ସେ ଅନନ୍ତ ରାଜ୍ୟପ୍ରାନ୍ତ ଦେଖିଅଛ ଆସି,
ଶୁଣିବି ସେ ଦେଶ କଥା ମନେ ଅଭିଳାଷୀ ।

ବୋଲିବ କି ମିତ୍ର ! ମୋତେ ସେ ଦେଶ ସମ୍ବାଦ,
ବୋଲ ବୋଲ ବନ୍ଧୋ ! ମେଣ୍ଟ ଚିତ୍ତର ବିଷାଦ ।
ଜାଣିଥିଲେ ଯେବା ଏକା ମୋର ମନକଥା,
ଆଣିଛ କି ତାହାଙ୍କର କୁଶଳ ବାରତା ?

ଯାଇଛନ୍ତି ମୋ ହୃଦୟ କରି ଅନ୍ଧକାର,
ବୋଲ ବୋଲ ତାହାଙ୍କର ଶୁଭ ସମାଚାର ।
ସେ ଦେଶରେ ବର୍ତ୍ତମାନ ଅଛନ୍ତି କିପରି ?
ଶୁଣିବି ବୋଲିବା ହେଉ ମୋତେ ଦୟା କରି ।

ଆହେ ହୃଦୟର ବନ୍ଧୋ ! ମୋତେ ଘେନି ଯାଇ
କେଉଁ ଦିନ ଦେବ ତାଙ୍କ ସଙ୍ଗରେ ଭେଟାଇ ?
ଜଗତ ଜଞ୍ଜାଳେ ହେଲେ ବ୍ୟାକୁଳ ମୋ ମନ,
ବନ୍ଧୋ ହେ ! ମୁଁ କରିଥାଏଁ ତୁମ୍ଭଙ୍କୁ ସ୍ମରଣ ।

ବିଶାଳ ଜଗତ ମଧ୍ୟେ ତୃଣ ସମାନରେ
ପଡ଼ି ରହିଛି ତ ମୁହିଁ ନିଭୃତ ସ୍ଥାନରେ ।
ଚାଲିଗଲେ କାହାରି ତ ନାହିଁ କିଛି କ୍ଷତି,
କାହାପାଇଁ କିସପାଇଁ ଭୁଞ୍ଜିବି ଦୁର୍ଗତି ?

ଆସ ହାତ ଧରାଧରି ହୋଇ ବେନି ଜଣ,
ଅନନ୍ତର ଅନ୍ତଃପୁରେ କରିବୁଁ ଭ୍ରମଣ ।
କେବେ ମୋ ଜୀବନବ୍ରତ ହେବ ଉଦ୍ୟାପନ ?
କେତେ ଦିନଯାଏ ଜଗି ବସିବେ ଆପଣ ?

ଉପଯୁକ୍ତ କାଳ ଜାଣି ଆସିବେ ଆପଣ,
ତେବେ କପାଁ ମୋର ଅକାଞ୍ଚନ ନିମନ୍ତ୍ରଣ ?
ଅନନ୍ତର ଅନ୍ତରାଳେ ଅଛ ତୁମ୍ଭେ ବୋଲି,
ଆସିବ ମୋ ପାଶେ ଏହା ଯିବ ନାହିଁ ଭୁଲି ।

ଆସିବ ନିଶ୍ଚୟ ବନ୍ଧୋ ! ତୁମ୍ଭେ ବେଳ ଜାଣି,
ନ ପାରିବ ରହି ଜଗତକୁ ଧରି ଟାଣି ।

କରୁ ଘୃଣା, ଦେଉ କଷ୍ଟ, ରଖୁ ଅପମାନେ,
ତୁମ୍ଭ ଆସିବାର ଯାଏ ରହିବ ଏ ସ୍ଥାନେ ।
ତୁମ୍ଭ ବଂଶୀରବ ଶୁଣି ଆହେ ମୃତ୍ୟୁମଣି !
ଯିବ ଚୂଲି ଛିନ୍ନ କରି ଜଗତବନ୍ଧନୀ ।

———

## ବିଦାୟ ପ୍ରାର୍ଥନା

( ରାଗ—ନଳିନୀ ଗୌଡ଼ା )

ଧୈର୍ଯ୍ୟ ଧର, କ୍ଷମା କର, ଦେଉଛୁ ମେଲାଣି,
ବିଦାୟ ହେଉଛୁ ଉପଯୁକ୍ତ କାଳ ଜାଣି ।
ଏ ନୁହେ ବିନାଶ ବନ୍ଧୋ ! ଏ ନୁହେ ବିଚ୍ଛେଦ,
ଏ କାଳ ସେ କାଳ ମାତ୍ର ଏତିକ ପ୍ରଭେଦ ।
ଆଗ ପଛ ହୋଇ ବନ୍ଧୋ ! ଯିବା ଏକ ସ୍ଥାନେ,
ଯାଉଛୁ ଆଗରେ, ପଛେ ଆସ ତୁମ୍ଭେମାନେ ।
ଯାଉଛୁ ମୁଁ ବନ୍ଧୋ ! ରହି ଯାଉଛୁ ତ ସ୍ମୃତି,
କେବଳ ଏ ଚିହ୍ନ ମାତ୍ର ସହି ଅନୁଭୂତି ।
ଜୀବନସଙ୍ଗୀତ ମୋର ହେଉ ଅବସାନ,
ଅଭିଳାଷ ଦୀର୍ଘ କାଳ ଧରିଥାଅ ତାନ ।
ମୋହ ସ୍ୱପ୍ନ ନାମ ତୁମ୍ଭ ହୃଦୟ-ମନ୍ଦିରେ
ଥିବ, କିନ୍ତୁ ନିଭିଯିବ ଚିରେ ବା ଅଚିରେ ।
ଆଶୀର୍ବାଦ କର, ଜପି ଜପି ହରିନାମ
ହେଉ ମୋ ବୈରାଗ୍ୟମୟ ଅନନ୍ତ ବିଶ୍ରାମ ।

———

## ଶେଷ ପ୍ରାର୍ଥନା

( ରାଗ—ବଙ୍ଗଳାଶ୍ରୀ )

କ୍ରମଶ ଦୁର୍ବଳ ଇନ୍ଦ୍ରିୟସକଳ
ପ୍ରାଣ ମନ ଅବସନ୍ନ,
ହରାଇ ସାମର୍ଥ୍ୟ ବଞ୍ଚିଥିବା ବ୍ୟର୍ଥ,
ଅଟେ ଯନ୍ତ୍ରଣା କାରଣ ।

ଐଶ୍ୱର୍ଯ୍ୟର ଆଶା, ସୁଖର ପିପାସା,
କ୍ରମେ ହେଉଛି ତ କ୍ଷୀଣ,
ଜ୍ଞାତି ପରିବାର କ୍ରମେ ହତାଦର
କରୁଛନ୍ତି ଦିନୁ ଦିନ ।

ଜୀବନ ମରଣ ସନ୍ଧିରେ ଏକ୍ଷଣି
ହୋଇଛି ତ ଉପସ୍ଥିତ,
ଶ୍ମଶାନର ଛାୟା, ପୃଥିବୀର ମାୟା,
ଉଭୟ ହୃଦେ ବିଚିତ୍ର ।

ପଛକୁ ନ ଚାହିଁ ଆଗେ ଯିବା ପାଇଁ
ହୁଏ ଚିତ୍ତ ଉଚ୍ଚାଟନ,
କପାଁ କ୍ଷଣେ କ୍ଷଣେ କେଉଁ ଆକର୍ଷଣେ
ବିଚଳିତ ହୁଏ ମନ ?

ଗଲା ସବୁ ଯାଉ, ସେ କଥା ତ ଆଉ
କେବେ ନ ଧରିବ ମୁଖେ,
ସଂସାର ବନ୍ଧନ କରି ମୁଁ ଛେଦନ
ରହିଥିବ ମନ ସୁଖେ ।

ଆହେ ବନ୍ଧୁଗଣ ! କରେ ନିବେଦନ,
ଦୟା ରଖି ମୋହଠାରେ,
ହରି ବୋଲ ଭାଇ, ମୋତେ ସେ ଶୁଆଇ
ଦେବେ ସମାଧି ଶଯ୍ୟାରେ ।

ଜନ୍ମଭୂମି କୋଳେ ଏକାନ୍ତେ ବିରଳେ
ରହିବି ମହାଧ୍ୟାନରେ,
ରବି, ଶଶୀ, ତାରା, ଜ୍ୟୋତିପରମ୍ପରା
ପଡ଼ୁଥିବ ମୋ ଉପରେ ।

———

## ଚରମ ଚିନ୍ତା

ଅଶକ୍ତ ସ୍ଥବିର ଦେହ ଜାଗ୍ରତ ଚେତନା,
ସମ୍ବଳ ସମ୍ପ୍ରତି ମାତ୍ର ଗତାନୁଶୋଚନା ।
ଜୀବନ ପ୍ରାନ୍ତରେ ଭ୍ରମି କ୍ଳାନ୍ତ ମନ ପ୍ରାଣ,
ଅବଶ ଇନ୍ଦ୍ରିୟ ସୁଖ, ଶାନ୍ତ ଅବସାନ ।
ଆଶାର ସ୍ୱପନ, ମାୟା, ମୋହର ଛଳନା
ଘୁଞ୍ଚିଲ, ରହିଲ ବୃଥା ଚିନ୍ତା ବିଡ଼ମ୍ବନା ।
ଯୌବନ ଉତ୍ସବ ଦିନ ଉନ୍ମତ୍ତଭାବରେ
ଭ୍ରମିଛି ଅଳୀକ ସୁଖେ ଉଦ୍‌ଭ୍ରାନ୍ତ ମାର୍ଗରେ ।
ଭାବୁ ନାହିଁ ମନ ମୋର ପରିଣାମ ଗତି
ଉପସ୍ଥିତ ବିଷୟରେ ମଗ୍ନ ମତ୍ତ ମତି ।
ଜାଜ୍ୱଲ୍ୟ ଦୃଷ୍ଟାନ୍ତ ସବୁ ଦିଗେ ବିସ୍ତାରିତ,
ତଥାପି କ୍ଷଣିକ ସୁଖେ ଚିତ୍ତ ବିମୋହିତ ।
ଅସାର ସଂସାର ସୁଖ ସମ୍ଭୋଗେ ଉନ୍ମତ୍ତ
ମହାସ୍ରୋତେ ଭାସମାନ ଭାବ ନାହିଁ ଚିତ୍ତ ।

---

## ମହା ନିମନ୍ତ୍ରଣ

ହୃଦୟ କବାଟେ ହାତ ମାରି ଡାକ
କେ ତୁମ୍ଭେ ହେ କାହା ଦୂତ ?
ମହାନିମନ୍ତ୍ରଣ ବେଗେ ବେଗେ ହୁଅ
ମହାଯାତ୍ରାକୁ ପ୍ରସ୍ତୁତ ।

ମୁହୂର୍ତ୍ତେକ ତୁମ୍ଭେ ନ ଦେବ କି ବେଳ
ସଜବାଜ ହେବାପାଇଁ ?
ଜୀବନଯାକ ତ ପାଇଥିଲ ବେଳ
ଚେତନା କି ଥିଲ ନାହିଁ ?

ସଖାଳେ କପାଁଇ ସମ୍ବାଦ ନ ଦେଲ
ଯିବାକୁ ଯେ ହେବ ଖରେ ?
ଗୁରୁଆଡୁ ଡାକ କହି ଦେଇଥିଲୁଁ
ଜାଣ ପ୍ରତି ମୁହୂର୍ତ୍ତରେ ।

ଆତ୍ମୀୟ ସ୍ୱଜନେ ପ୍ରତିବାସିଗଣେ
ସମସ୍ତ ଯିବ କି ଛାଡ଼ି ?
ନ ଜାଣ କି ଭାଇ ତୁମ୍ଭ ପଛେ ପଛେ
ସମସ୍ତେ ଦେବେ ଯେ ଧାଡ଼ି ?

କେତେ କଷ୍ଟ କରି ଅରଜିଲ ବିତ୍ତ
ଛାଡ଼ିଯିବ କି ଭୂପରେ ?
ନ ଜାଣ କି ଭାଇ ରହିଥିବ ସବୁ
ତୁମ୍ଭ ଦେହ ସହିତରେ ?

ତୁମ୍ଭେ ତ ବୋଲୁଛ ଯାହା କରିବାକୁ
ଏକାକୀ ମୋହର ପ୍ରାଣ !
ଜଡ଼ୀୟ ପଦାର୍ଥ ଜଡ଼ଦେହ ସଙ୍ଗେ
ଥିବ ଏହା କି ନ ଜାଣ ?

ବଡ଼ ଇଚ୍ଛା ପ୍ରାଣେ ଜଡ଼ଦେହ ସଙ୍ଗେ
ରହିବାକୁ ଚିରଦିନ ।
ସ୍ୱର୍ଗୀୟ ପଦାର୍ଥ ଯିବ ଦିବ୍ୟଧାମେ
ନ ହେବ ଧୂଳିରେ ଲୀନ ।

ଜୀବନଟାଯାକ କେତେ କାର୍ଯ୍ୟ କଲ
ସଙ୍ଗେ କି ନ ଯିବ କିଛି ?
ସୁକୃତ ଦୁଷ୍କୃତ ପରିଣାମ ଫଳ
ଜାଣ ଆତ୍ମାରେ ଲଗିଛି ।

---

## ଜୀବନ-ତରୀ

(ରାଗ—ମୁଖାରୀ, ଆଦିତାଳ)

ମେଲିବି ଜୀବନ ତରୀ ଫେଟିଛୁ ବନ୍ଧନୀ,
ଯିବ ଭାସି ଭାସି ଧରି ଅନନ୍ତ ସରଣୀ । ଘୋଷା ।
ଅନୁକୂଳ ସୁବତାସେ ଯିବ ମୁଁ ଅଜଣା ଦେଶେ
ଅକୂଳ ପାଥାର ସାର ତେଜିବ ଅବନୀ ।
ଆଶାହୀନ, ଭାଷାହୀନ, ଚିହ୍ନହୀନ, ମାର୍ଗହୀନ
ଲକ୍ଷ୍ୟ ମାତ୍ର ଧ୍ରୁବତାରା ଦିବସ ରଜନୀ ।

ଯିବ ଦିଗମ୍ବର ବେଶେ, ଯିବ ମଧ୍ୟ ନରୁଦ୍ଦେଶେ,
ଲଙ୍ଘି ଯିବ ଅବଶେଷେ ସୀମାନ୍ତ ବନ୍ଧନୀ ।
ଅନନ୍ତ ସାଗର ପ୍ରାନ୍ତେ ମିଳିବ ଯାଇ ଏକାନ୍ତେ
ବିରାଜିତ ଛନ୍ତି ଯହିଁ ମୋର ପ୍ରାଣମଣି ।

———

## ନିତ୍ୟଧାମ ଆଗେ

ରାଗ—କେଦାର

କରେ ଏକ ଅଭିଳାଷ ନିୟତ ହୃଦୟେ ବାସ
ନ ଦେଖେଁ କାହାକୁ କଷ୍ଟ ଫେଡ଼ିବାକୁ
ସକଳେ ସ୍ୱାର୍ଥର ଦାସ ।

କେ ଶୁଣିବ ମନକଥା, କେ ହରିବ ହୃଦବ୍ୟଥା,
ସରମେ ମରମେ ହେଉଛି କୁହୁଳା
କୁମ୍ଭାର-ପୁହାଣ ଯଥା ।

ଜଗତ ଜଞ୍ଜାଳ ଜାଣି ତଥାପି ଧରିଛି ଟାଣି,
କେଉଁ ମାୟା ମୋହେ ଆକୁଳ ହୃଦୟେ
ବିମୋହିତ ସର୍ବ ପ୍ରାଣୀ ।

ଗଲିଣି ଜଗତ ଜଣା କେବଳ ତ ପ୍ରତାରଣା
ଅଛି ଏକ ଧାମ ପୂର୍ଣ୍ଣ ମନସ୍କାମ
କରେଁ କିପାଇଁ ଶୋଚନା ?

ମନ ଆକୁଳ ଉଦାସ, ମୁଖରେ କପଟ ହାସ
ଏ ଲୋକ ଛଳନା ଆତ୍ମପ୍ରତାରଣା
କରୁଛି ତ ବାରମାସ ।

ଅବଶ୍ୟ ଜୀବନ ମୋର ଅନ୍ଧକାରେ ନିରନ୍ତର
କେଉଁ ସୁଖ ଆଶେ କେଉଁ ଅଭିଳାଷେ
ଭ୍ରମଣରେ ତତପର ।

ଗାଇ ଗାଇ ଦୁଃଖ ଗୀତ ଜୀବନ ଗତ ଅତୀତ,
ତହିଁ ସୁଖ ନାହିଁ, ତଥାପି କିପାଇଁ
ଗାଇବାକୁ ବଳେ ଚିତ୍ତ ?

ଭାସୁଛି ଜୀବନ-ତରୀ, କେତେ ବାସନା ଲହରୀ
ଆଗତ ଅନେକ ଗତ ଏକ ଏକ
ଦେଇ ଟଳମଳ କରି ।

ଜାଣୁ ଛୁ ତ ମରୁସ୍ଥଳ, ମୃଗତୃଷ୍ଣା ହିଁ ସକଳ,
ତଥାପି କିପାଁଇ ଅଛୁ ପଛେ ଧାଇଁ,
ଭ୍ରାନ୍ତି କି ନୁହେ କେବଳ ?

କ୍ଷୁଦ୍ର କଣିକା ଅନଳ ହୁଏ କି ଏଡ଼େ ପ୍ରବଳ ?
କ୍ଷୁଦ୍ର ପରମାଣୁ ଏହା ଜାଣୁ ଜାଣୁ
ଜଗତ କରୁଁ ସମ୍ବଳ !

କେତେ ବା ପ୍ରାଣେ ଭରସା, ଅସୀମ ଜଗତ ଆଶା,
ନ ବୁଝିଲ୍ ଦିନେ ରହିବ ସେ ଭିନ୍ନେ
ଛିନ୍ନ କର ଏ ଲାଲସା ।

ଜଗତ ଜୀବନ ମାର୍ଗେ ଯାହାକୁ ଧର ସରାଗେ,
ନ ଯିବେ ସଙ୍ଗରେ, ବନ୍ଧ ଜଗତରେ,
ତୁମ୍ଭ ଶାନ୍ତିଧାମ ଆଗେ ।

———

## କାହାକୁ ଭରସା

( ରାଗିଣୀ—ପିଲୁ, ତାଳ—ଖେମଟା )

କାହାକୁ କରିଛୁ ଭରସା ?
ଦିନ ତ ଯାଉଛି ବହି ଆସି ଏବେ ଶେଷ ଦଶା ।
ଜ୍ଞାତି ବନ୍ଧୁ ପରିଜନେ ଗୃଲିଗଲେ ଜଣେ ଜଣେ,
ଯାଇଛନ୍ତି ଯାଉଛନ୍ତି ଦେଖ୍ନ ନୟନେ,
ତଥାପି ରହିଛୁ ମୋହ ମାୟା ବନ୍ଧନେ,
ବିଷୟ ଆବୋରି ଅଛୁ ନ ତେଜିଲୁ ଜୀବନାଶା ।

ଯେତେ କଲୁ ଉପାର୍ଜନ ଗଲା ଯିବ ଅକାରଣ,
ଧନ କି ଜୀବନ ସଙ୍ଗୀ କରୁ ପରତେ ?
କି ବିଗ୍ରହ କି ଅଶାନ୍ତିରେ ଅଛୁ ନିଶ୍ଚିନ୍ତେ ?
ଏବେ ହେଲେ ମନ ପ୍ରଭୁପ୍ରେମ ସରିତରେ ଭସା ।

ଅଳସ ପରାଣ ତବ କଲା ନାହିଁ ଅନୁଭବ
ବିଚିତ୍ର ଅନନ୍ତ ଲୀଳା ଶୋଭା ମାଧୁରୀ
ଜଳେ ସ୍ଥଳେ ଖମଣ୍ଡଳେ ରହିଛି ପୂରି,
ନ ଦେଖିଲୁ ନ ଚିହ୍ନିଲୁ ବିଷୟବିଷ ଲାଲସା !
କରୁ ଅନନ୍ତ କାମନା, ପୂର୍ଣ୍ଣ କି ହେଲା ବାସନା,
ଦିବା ନିଶି ବ୍ୟସ୍ତ ଅର୍ଥ ସାମର୍ଥ୍ୟ ପାଇଁ,
ସେ ଅର୍ଥରେ ଜୀବନରେ ସାନ୍ତ୍ୱନା କାହିଁ ?
ନ ଲୋଡ଼ୁ ସେ ଧନ ଯହିଁ ଭୁଞ୍ଜିବ ସର୍ବ ଦୁର୍ଦ୍ଦଶା ।

———

## ସ୍ନେହ ନିମନ୍ତ୍ରଣ

ମରଣ ! ମରଣ ! ବଡ଼ ଭୟଙ୍କର କଥା,
କାଟିଦେବ ଜଗତର ସମ୍ପର୍କ ମମତା ।
ଆଜନ୍ମ ସଞ୍ଚିତ କଷ୍ଟ-ଉପାର୍ଜିତ ଧନ,
ହେବ ସର୍ବ ବ୍ୟଥା କଲେ ମୁଦ୍ରିତ ନୟନ ।
ପୁଣି ମିଳେ ଜଗତିରେ ନ ଦେଖିବ ଆଉ,
ଏ ସୁନ୍ଦର ଦେହ ଛାଡ଼ି ଯିବ ପ୍ରାଣବାୟୁ ।
ଯତ୍ନରେ ପାଳିତ ଦେହ ସୁନ୍ଦର ଆକାର
ନିମିଷକେ ସେ କି ହୋଇଯିବ ଭସ୍ମସାର ?
ବୃଥାରେ ମାନବ ବୋଲ ଅଶୁଭ ମରଣ,
ଦୟାମୟୀ ଜନନୀଙ୍କ ସ୍ନେହ ନିମନ୍ତ୍ରଣ ।
ଜରାବ୍ୟାଧି ଶୀତାତପ ପୀଡ଼ିତ ଶରୀର,
ବିପଦ ବେଷ୍ଟିତ କ୍ଷଣଭଙ୍ଗୁର ଅଚିର ।
ଯାଉ ଏ ପାର୍ଥିବ ଦେହ, ଜ୍ୟୋତିର୍ମୟ କାନ୍ତି
ଲଭି, ଯିବ ନିତ୍ୟଧାମେ, ନାହିଁ ଏଥି ଭ୍ରାନ୍ତି ।
ଜଗତରେ ଥୋକେ ଦିନ ଥିଲ ପାନ୍ଥବେଶେ,
ଯିବ ଚାଲି ନିତ୍ୟଧାମେ ଜନନୀ ଆଦେଶେ ।
କ୍ରୀଡ଼ାରତ କ୍ଷୁଦ୍ର ଶିଶୁ ଦେହେ ଧୂଳି ବୋଳେ,
ଦିବା ଅବସାନେ ଚାଲିଯାଏ ମାତା କୋଳେ ।
ଧୂଳିର ସମଷ୍ଟି ମାତ୍ର ଜଗତ ସମ୍ପତ୍ତି,
ଯିବ ଚାଲି ଝାଡ଼ି ଧୂଳି ଧରି ଦିବ୍ୟ ଜ୍ୟୋତି ।
ନ ହୁଅ ବ୍ୟାକୁଳ, ଦାରା ପୁତ୍ର ପ୍ରିୟଜନେ
ସମସ୍ତେ ଏକତ୍ର ହେବେ ସ୍ନେହ ନିମନ୍ତ୍ରଣେ ।
କି ଭୟ ମରଣେ ତେବେ, ଯିବା ମାତା ପାଶେ
ପ୍ରସ୍ତୁତ ରହିବା ସ୍ନେହ ନିମନ୍ତ୍ରଣ ଆଶେ ।

———

## ଜୀବନର ପରିଣାମ

ପଶ୍ଚାତେ ଅନନ୍ତାତୀତ, ଭବିଷ୍ୟତ ସୀମାତୀତ,
କ୍ଷଣସ୍ଥାୟୀ ବର୍ତ୍ତମାନ, ପରିଣାମ ଅନିଶ୍ଚିତ ।
ଛିନ୍ନ ହେବ ସନ୍ଧିଗ୍ରନ୍ଥି, ଅନନ୍ତେ ଅନନ୍ତ ଯୋଗ,
ଭାସି ଭାସି ମହାନନ୍ତେ କର୍ମଫଳ ମାତ୍ର ଭୋଗ ।

———

# ସପ୍ତମ ଅଧ୍ୟାୟ

# ବିବିଧ

## ମୌନୀ

( ମଙ୍ଗଳ )

ହେ ବିଶ୍ୱବିଧାତା ! ମୋତେ ବୋଲ, କି କାରଣେ
ଦେଇଛ ବିବିଧ ଅସ୍ତ୍ର ଯାଚି ପ୍ରାଣିଗଣେ ?
ସୁତୀକ୍ଷ୍ଣ ନଖ ରାଜି ଭଲ୍ଲୁକ ଶାର୍ଦ୍ଦୂଳେ,
ଭୀଷଣ ଦଶନାବଳୀ ଭୁଜଙ୍ଗ ନକୁଳେ,
ଗଣ୍ଡାରେ ଦେଇଛ ଖଡ଼୍ଗ, ମହିଷେ ବିଷାଣ,
ଆତ୍ମରକ୍ଷା ପୁଣି ନାଶିବାକୁ ଶତ୍ରୁପ୍ରାଣ ।
ହେ ପ୍ରଭୋ ! ଦେଇଛ ମୋତେ କୋମଳ ରସନା,
ଭୟଙ୍କରରୂପେ ଏବେ ଯାଏ ମୋତେ ଜଣା ।
ନ କଲ ତ ପ୍ରଭୋ ! ତୁମ୍ଭ ମହିମା ଗାୟନ,
ସୁମଧୁର ବାକ୍ୟେ ଜନଚିତ୍ତ ବିନୋଦନ ।

କହୁଥାନ୍ତି ସିନା ପର ସୁଗୁଣ ଘୋଷଣା,
ପର ନିନ୍ଦା ପର ଗ୍ଲାନି କରିଛି ରଚନା ।
ନିଷ୍ଠୁର ନିର୍ମମ ଭାବେ କେତେ ଲୋକ ପ୍ରାଣେ
ଦେଇଛି ଯନ୍ତ୍ରଣା, ବିଦ୍ଧ କରି ବାକ୍ୟବାଣେ ।
ଅସାର ଅଲୀକ କେତେ ବଚନ ପ୍ରକାଶି,
ଲୋକ-ସମାଜର ଶାନ୍ତି ପକାଇଛି ନାଶି ।
ବିକଟ ବିଦ୍ରୂପ ବହୁ ବିଷୋକ୍ତି ବଚନେ
ଦେଇଛି ଅତ୍ୟନ୍ତ କଷ୍ଟ ଲୋକଗଣ ମନେ ।
କୃପା କରି ଏବେ ହେଲେ ହୋଇ ରହେଁ ତୁନି
ଅସାଧୁ କଥାରେ ହୋଇ ରହିବି ମୁଁ ମୌନୀ ।

— ——

## ବଞ୍ଚି ମୁଁ ରହିବି ଆଉ କେଉଁ ସୁଖ ଆଶେ ?

( କଳ୍ପନା ଗୌଡ଼ା )

ଯାହା ମୁଖ ଚାହିଁ ରହିଥିଲି ଧୈର୍ଯ୍ୟ ଧରି,
ସମ୍ପଦେ ବିପଦେ ପାଶେ ଥିଲା ଛାୟା ପରି,
ସଙ୍କଟ କାଳରେ ଦେଉଥିଲା ଯେ ସାନ୍ତ୍ୱନା,
ଯା ସେବାରେ ଭୁଲିଥିଲି ରୋଗର ଯନ୍ତ୍ରଣା,
କାଟି ଦେଇ ମାୟା ଚାଲିଗଲା ସ୍ୱର୍ଗବାସେ,
ବଞ୍ଚି ମୁଁ ରହିବି ଆଉ କେଉଁ ସୁଖ ଆଶେ ? ୧ ।

ଉପସ୍ଥିତ ଜରା, ନାହିଁ ଦେହରେ ସାମର୍ଥ୍ୟ,
ସରି ଯାଉଅଛି ପ୍ରାୟ ଅରଜିଲା ଅର୍ଥ,
କରି ତ ପାରିବି ନାହିଁ ଲୋକ ଉପକାର,
କେ ଆଉ କରିବ କହିଁ ମୋତେ ସମାଦର ?
କପାଇଁ ଆସିବେ ଆଉ ଲୋକ ମୋହ ପାଶେ ?
ବଞ୍ଚି ମୁଁ ରହିବି ଆଉ କେଉଁ ସୁଖ ଆଶେ ? ୨ ।

ଅଥବା ମୁଁ କିଏ ? ଏହା ନ ଆସେ ବୁଦ୍ଧିରେ,
ଆପଣା ଆୟତ୍ତେ ରହିଛି କି ପୃଥିବୀରେ ?
ଦେଇଛନ୍ତି ଯେବା ଏହି ଶରୀର, ଜୀବନ,
ସେ ଜାଣନ୍ତି ମୋ ଜୀବନେ କିବା ପ୍ରୟୋଜନ,
ସେ ଜାଣନ୍ତି ମୁହିଁ ବଞ୍ଚି ରହିବି କପାଇଁ,
ରହିଥିବି ଧୈର୍ଯ୍ୟ ଧରି ତାହାଙ୍କୁ ଅନାଇ । ୩ ।

ବାସନା ପାଳିବି ଦେଶ ଉପକାର ବ୍ରତ,
ସଁପିବି ସେଥିକି ଶକ୍ତି ସାମର୍ଥ୍ୟ ସମସ୍ତ,
ସେତୁବନ୍ଧେ ସାହା ମୂଷା, ଏହା ଅଛି ଜାଣି,
ନୁହେ ତ ମୁଁ ତାହାଠାରୁ କିଛି କ୍ଷୁଦ୍ର ପ୍ରାଣୀ ?
ପର ଉପକାରେ ଯେବେ ପାଇବି ସୁଯୋଗ,
କରିବି ନିଶ୍ଚୟ ଶକ୍ତି ସାମର୍ଥ୍ୟ ସଂଯୋଗ ।
ସୁଖଭୋଗ ପାଇଁ ନୁହେ ମାନବ ଜୀବନ,
ଅଛି ତ ତାହାର କିଛି କର୍ତ୍ତବ୍ୟ ସାଧନ । ୪ ।

———

## ସୁଖ ଦୁଃଖର ପରିଣାମ

( ରାଗ—ମଙ୍ଗଳ )

ଉପରକୁ ଦୃଷ୍ଟି ଯାଏ ଦୁଃଖ ସମୟରେ,
ସୁଖ ସମୟରେ ଦୃଷ୍ଟି ପଡ଼ଇ ନିମ୍ନରେ ।
ସୁଖିମନ ବ୍ୟାପ୍ତ ଥାଏ ଜଗତ ସଂସାରେ,
ଦୁଃଖିଚିତ୍ତ ନିରନ୍ତରେ ଥାଏ ପ୍ରଭୁଠାରେ ।
ଐଶ୍ୱର୍ଯ୍ୟ ବିଳାସେ ଯେବେ ଥାଉଁ ଉନମତ୍ତ,
ଗର୍ବ ଅଭିମାନେ ଥାଏ ମସ୍ତକ ଉନ୍ନତ ।
ଜରାଜୀର୍ଣ୍ଣ ଅନ୍ନାଭାବେ ଶୀର୍ଣ୍ଣ କଳେବର,
ସେ କାଳରେ ଡାକୁଁ କାହିଁ ଅଛନ୍ତି ଈଶ୍ୱର ।
ସବୁ ତ ଯାଇଛି ଘୂରି ସମୟ ଚକ୍ରରେ,
ନିରନ୍ତର ଶୁକ୍ଳ କୃଷ୍ଣ ପକ୍ଷ ସମାନରେ ।
ଉତ୍ତେଜନା ପରବର୍ତ୍ତୀ ସ୍ଥିର ଅବସାଦ,
ସେହିପରି ଅଛେ ମଧ୍ୟ ପ୍ରଳୟ ବିବାଦ ।
ନିତାନ୍ତ ମାନବଗଣ ଭାଗ୍ୟର ଅଧୀନ,
ଧନ, ମାନ, ପଦ ତାଙ୍କ ଥାଏ ଥୋକେ ଦିନ ।
ଏମନ୍ତ ଆସଇ ଦିନ ଯାଏ ସବୁ ସରି,
ଜଣାଯାଏ ଛାୟାବାଜି ଅବା ସ୍ୱପ୍ନ ପରି ।

ଜଗତ ଯନ୍ତ୍ରଣା ହେତୁ ଜନମିଲେ କ୍ଳାନ୍ତ,
ହେ ପ୍ରଭୁ ବୋଇଲେ ଯେହ୍ନେ ଲଭ ହୁଏ ଶାନ୍ତ ।
ହୃଦୟରେ ଭକ୍ତି ଜନ୍ମେ କଷ୍ଟ ସମୟରେ,
ବଡ଼ ତେଜ ଶକ୍ତି ରଖି ପ୍ରଭୁଙ୍କ ପଦରେ ।
ନୁହେ କି ହେ ସୁଖଠାରୁ ଦୁଃଖ ହିତକର,
ଯେଉଁ ଦୁଃଖ ଲାଗି ଲଭ ହୁଅନ୍ତି ଈଶ୍ୱର ?

———

## ପିତୃ-ତର୍ପଣ

( ରାଗ-- ମଙ୍ଗଳ )

"ଆଗଚ୍ଛନ୍ତୁ ମହାଭାଗା ବିଶ୍ୱେ ଦେବା ବରପ୍ରଦାଃ"
ଆଗଚ୍ଛ ! ଆଗଚ୍ଛ ! ମୋର ପିତୃଦେବଗଣ !
ଆପଣମାନଙ୍କ ପାଇଁ କରିବି ତର୍ପଣ ।
ଯବାଙ୍କୁର, ତିଳପୁଷ୍ପ, ଆତପ ତଣ୍ଡୁଳେ
କରିବି ଭକ୍ତିରେ ପୂଜା ପିତୃଦେବକୁଳେ ।
ଘେନିବେ କି ପୂଜା ମୋର ପିତୃଦେବଗଣ ?
ମାତ୍ର ମୁଁ କରିବି ତାଙ୍କୁ ଭକ୍ତିରେ ସ୍ମରଣ ।
ସେମାନଙ୍କ ଯୋଗେ ମୁହିଁ ପାଇଛି ଜୀବନ,
କେତେ କଷ୍ଟ ସହି କରିଅଛନ୍ତି ପାଳନ ।
ସେ ମହାପୁରୁଷ ମୋର ପିତୃଦେବଗଣ
ଦେଇଯାଇଛନ୍ତି ତାଙ୍କ ଉପାର୍ଜିତ ଧନ ।
ତାଙ୍କ ଧନମାନେ ମୁହିଁ ଉତ୍ତରାଧିକାରୀ
ତାହାଙ୍କ ଯତ୍ନରେ ହୋଇଅଛି ଗୁଣଧାରୀ ।
ରୋମାଞ୍ଚିତ ହେଉଛି ତ ସ୍ମରି ତାଙ୍କ ଗୁଣ
ଶୁଝିବା ହେବାର ନୁହେ ସେହି ପିତୃଋଣ ।
ସ୍ନେହ ମାୟା ଦୟା ଦେଇ ପିତୃ ହୃଦୟରେ
ପାଳନ କରନ୍ତି ପ୍ରଭୁ ଶିଶୁ ଜଗତରେ ।
ଜନକ, ଜନନୀ ପଦେ ନାହିଁ ଯାର ଭକ୍ତି
ନିର୍ବୋଧ ପାଷଣ୍ଡ ସେହି ବର୍ବର ଦୁର୍ମତି ।
ଯେ ପାମର ଦିଏ ପିତା ମାତାଙ୍କୁ ଯନ୍ତ୍ରଣା,
କି କରି ନ ପାରେ ସେହି ପାପୀ ମାଚମନା !

ସ୍ୱର୍ଗେ ଛନ୍ତି ପିତା ମାତା ଏବେ ଭକ୍ତିଭରେ
ନମସ୍କାର କରୁଛି ମୁଁ ତାହାଙ୍କ ପଦରେ ।
କେ ସୁହୃଦ ଅଛି ମାତା ପିତାଙ୍କ ସମାନ ?
ସହଜେ ଦେବାକୁ ପାରେ ପୁତ୍ର ପାଇଁ ପ୍ରାଣ ?
ଘେନିଛି ଯେ ଯବାଙ୍କୁର କୁଶାଙ୍କୁଶି ପାତ୍ର
ଏ କେବଳ ବାହ୍ୟପୂଜା ଅପ୍ରୟୋଜନ ମାତ୍ର ।
ଭକ୍ତିରେ କରିବି ପିତୃଲୋକଙ୍କୁ ସ୍ମରଣ,
ଏହି ତ ମୋହର ହେଲା ପିତୃତରପଣ !
ପ୍ରଣତି ପ୍ରଣତି ପିତୃଦେବ ମହାଭାଗ !
ନଶ୍ୱର ପାର୍ଥିବ ଦେହ କରିଛନ୍ତି ତ୍ୟାଗ ।
ଅମରାତ୍ମା ବିଶ୍ୱରାଜ୍ୟେ କରେ ସଞ୍ଚରଣ,
ଉଭୟ ମଧ୍ୟରେ ଅଛି ଅଲକ୍ଷ୍ୟ ବନ୍ଧନ ।
ପିତୃଦେବଙ୍କର ମୁହିଁ ଥିଲା ଆତ୍ମାରୂପୀ,
ସମ୍ପର୍କ ଉଭୟ ମଧ୍ୟେ ଅଛି ଅବିଲୋପୀ ।
ପବିତ୍ର ପ୍ରାର୍ଥନା ମୋର ଅଧ୍ୟାତ୍ମ ସୂତ୍ରରେ ।
ଅବଶ୍ୟ ମିଳିବ ପିତୃଦେବ ଚରଣରେ ।
ଆତ୍ମା ଦେଶବାସୀ ମୋର ପିତୃଦେବଗଣେ
ବିରାଜିତ ଦେଖୁଛି ତ ମାନସ ନୟନେ ।
ଜଡ଼ିତ ତାଡ଼ିତ ଶକ୍ତି ଜଡ଼ ଜଗତରେ,
ଆତ୍ମାର ସମ୍ବନ୍ଧ ତେହ୍ନେ ଅଧ୍ୟାତ୍ମ ରାଜ୍ୟରେ ।
ପରଲୋକଗତ ଆତ୍ମା ମଙ୍ଗଳ କାମନା ।
କରିବ ଏ ମାତ୍ର ଆତ୍ମା ଉନ୍ନତି ସୂଚନା ।

———

## ସପ୍ତର୍ଷି

(ରାଗ--ମଙ୍ଗଳ)

ଧନ୍ୟ ଧନ୍ୟ ମହାଋଷି ମହାତ୍ମା ଗୌତମ !
ଶିଖାଇ ଯାଇଛ ଜଗତକୁ ଦୟା ଧର୍ମ ।
ରାଜ, ମହାରାଜ, ପାଇ ଅତୁଳ ସମ୍ପତ୍ତି,
କଲ ତ୍ୟାଗ ଭାଳି ଜୀବ ପରିଣାମ ଗତି ।
କପରି ନିର୍ବାଣ ମୁକ୍ତି ପାଇବେ ମାନବେ,
ଭିକ୍ଷୁରୂପ ଧରି ତାହା ଶିଖାଇଲ ଭବେ ।

ପ୍ରଚାର କରିବା ପାଇଁ ଧର୍ମ ଜଗତରେ,
ଜନ୍ମିଥିଲେ ମହମ୍ମଦ ଆରବ ଦେଶରେ ।
କରିଥିଲେ ମହାର୍ଷି ଜଗତେ ପ୍ରଚାର—
ଏକମାତ୍ର ଅଦ୍ୱିତୀୟ ଈଶ ନିରାକାର ।

ଧର୍ମ ନାମେ ନାନାରୂପ ମନ୍ଦ ଆଚରଣ ।
କରୁଥିଲେ ପୂର୍ବେ ଇଉରୋପବାସିଗଣ ।
ମହାଋଷି ଯିଶୁଖ୍ରୀଷ୍ଟ କଲେକ ପ୍ରକାଶ—
ଉଦ୍ଧାର ପାଇବ କର ପ୍ରଭୁଙ୍କୁ ବିଶ୍ୱାସ ।

ଆମ୍ଭ ପିତା ଏକମାତ୍ର ଜଗତର ପତି,
ତାଙ୍କ ବିନା ମାନବର ନାହିଁ ଅନ୍ୟ ଗତି ।
ସାମାନ୍ୟ ବଣିକ ପୁତ୍ର ମହାତ୍ମା ନାନକ !
ପଶ୍ଚିମ ଭାରତେ ଥିଲ ଧର୍ମପ୍ରଚାରକ ।

ଦେଖାଇ ଯାଇଛ ନିଜ ଜୀବନେ ପ୍ରମାଣ,
ଜୀବଙ୍କର ତ୍ରାଣକାରୀ ପ୍ରଭୁ ଭଗବାନ ।
ପ୍ରଣତି ତୁମ୍ଭର ପଦେ ହେ ଶଙ୍କରାଚାର୍ଯ୍ୟ !
ଅଦ୍ୱିତୀୟ ଜଗତରେ ଅଟଇ ତୁମ୍ଭ କାର୍ଯ୍ୟ ।

ଏ ଭାରତ ଥିଲା ବୌଦ୍ଧଧର୍ମରେ ପ୍ଲାବିତ,
ଆର୍ଯ୍ୟ ଧର୍ମ ପୁନର୍ବାର କଲ ସଂସ୍ଥାପିତ ।
ସମସ୍ତ ଜଗତ ବ୍ୟାପ୍ତ ମହାନ ଈଶ୍ୱରେ,
ଆବଦ୍ଧ ନୁହନ୍ତି କ୍ଷୁଦ୍ର ବସ୍ତୁ ବା ସ୍ଥାନରେ,
ହୃଦୟର ଅନ୍ତସ୍ଥଳେ ଛନ୍ତି ବିରାଜିତ,
ଏ ମହାବଚନ ଉପନିଷଦେ କଥିତ ।
ଏ ବୈଦିକ ମହାମନ୍ତ୍ର ଭାରତବର୍ଷରେ
ଶୁଣାଇଲେ ରାଜା ରାମମୋହନ ଉଚ୍ଚରେ !

ନବଦ୍ୱୀପଚନ୍ଦ୍ର ପ୍ରଭୁ ଶଚୀଙ୍କ ନନ୍ଦନ
ଧର୍ମପାଇଁ କରିଥିଲେ ସର୍ବ ବିସର୍ଜନ ।
କରିବାକୁ ଜଗତରେ ପାଷଣ୍ଡ ଉଦ୍ଧାର
ଆବିର୍ଭାବ ଭବ ମଧ୍ୟେ ଗୌରାଙ୍ଗାବତାର ।

---

## ପରୋପକାର

(ମଙ୍ଗଳ)

ପ୍ରତିଦିନ ସୂର୍ଯ୍ୟଦେବ ବିକାଶି କିରଣ
ପୃଥିବୀର ଅନ୍ଧକାର କରନ୍ତି ହରଣ ।
ପ୍ରକାଶି କିରଣ ଚନ୍ଦ୍ର ତାରକା ସକଳ
ସନ୍ତାପିତ ପୃଥିବୀକୁ କରନ୍ତି ଶୀତଳ ।
ଅନୁକ୍ଷଣ ପ୍ରବାହିତ ହୋଇ ସମୀରଣ
ପ୍ରଦାନ କରନ୍ତି ପ୍ରାଣିଗଣଙ୍କୁ ଜୀବନ ।
କରିବା ନିମନ୍ତେ ପ୍ରାଣିଗଣ ତୃଷ୍ଣା ଦୂର
ଧାରଣ କରନ୍ତି ନଦୀ ସଲିଳ ପ୍ରଚୁର ।
ନ କଲେ ବାରିଦମାଳା ଜଳ ବରିଷଣ,
ପାରିବ କି କରି କେହି ଜୀବନ ଧାରଣ ?
ବ୍ରହ୍ମାଣ୍ଡ ମଧ୍ୟରେ ଜଡ଼ ଜଗତ ସମସ୍ତ
ନିୟମେ ପାଳନ୍ତି ପରଉପକାର ବ୍ରତ ।
କେତେ ସାଧୁ ଲୋକ ରକ୍ଷାପାଇଁ ପର ପ୍ରାଣ
ଦେଉଛନ୍ତି ଆପଣାର ପ୍ରାଣ ବଳିଦାନ ।
ପୃଥିବୀ ମଧ୍ୟରେ ଛନ୍ତି ପ୍ରାଣୀ କୋଟି ଲକ୍ଷ,
ସମସ୍ତେ ତ ବଞ୍ଚିଛନ୍ତି ଦେଖୁଛ ପ୍ରତ୍ୟକ୍ଷ !
କୀଟ ପତଙ୍ଗାଦି ପ୍ରାଣ ରଖିଛନ୍ତି ସଞ୍ଚି,
ପଶୁ ପକ୍ଷୀ ବୃକ୍ଷ ଲତା ରହିଛନ୍ତି ବଞ୍ଚି ।
ପର ଉପକାର ପଥେ ନ ହେଲେ ପଥିକ,
କୀଟ ପତଙ୍ଗାଦିଠାରୁ କି ହେଲ ଅଧିକ ?
ପର ଉପକାର ବ୍ରତେ ଧରିବା ଜୀବନ
ମାନବଜାତିର ଅଟେ ବିଶେଷ ଲକ୍ଷଣ ।
ଯିଶୁ ଦେଲେ ପ୍ରାଣ ଲୋକମାନଙ୍କ ସକାଶେ,
ଗୌତମ ପାରିଲେ ନାହିଁ ରହି ଗୃହବାସେ ।
ପର ଉପକାରପାଇଁ ଯାହାର ଜୀବନ,
ଜଗତ ମଧ୍ୟରେ ସେହି ଲୋକ ଧନ୍ୟ ଧନ୍ୟ ।
ଅସ୍ଥିର ଜଗତ ମଧ୍ୟେ ସକଳ ଅସାର,
ସାର ମାତ୍ର କରିବାର ପର ଉପକାର ।

---

## କବିର ସମ୍ପତ୍ତି

( ରାଗ—ପାହାଡ଼ିଆ କେଦାର )

ଦେଖ ହେ କବି ! ସ୍ୱଭାବ ଛବି
ନୀଳ ଗଗନ, କମଳବନ,
ପୂର୍ଣ୍ଣଚନ୍ଦ୍ରମା, ପୁଷ୍ପସୁଷମା, ମଧୁପପଂକ୍ତି ହେ ।
କୁମୁଦସର, ଯୁଗ୍ମ ଚକୋର,
ରାଜତ୍ୱ ସହ, ଯୁଦ୍ଧ ବିଗ୍ରହ,
ବିଚ୍ଛେଦ ସନ୍ଧି, ମନ୍ତ୍ରଣା ଫନ୍ଦି, ତାରକା ଦ୍ୟୁତି ହେ ।
ଜଗତର ମଣ୍ଡନ ରୂପଲାବଣ୍ୟ ହେ,
ଘୋର ଅରଣ୍ୟ, ତପସ୍ୟାଶ୍ରମ, ବନ ହେ,
ଯୁବା ଯୁବତୀ, ପକ୍ଷିଦମ୍ପତି,
ପ୍ରଭାତ ସନ୍ଧ୍ୟା, ରଜନୀଗନ୍ଧା,
ନବ ଯୌବନ, ପ୍ରେମମିଳନ, ସ୍ମୃତିସ୍ଫୁରଣ ହେ ।
ମାନାଭିମାନ, ପ୍ରଣୟ ଗାନ,
ସଖୀ ବିରହ, କଷ୍ଟ ଦୁଃସହ,
ନୟନଜଳ, ହୃଦ ବିକଳ, ପ୍ରେମାଭିସାର ହେ,
କୋକିଳଧ୍ୱନି, ଚନ୍ଦ୍ରବଦନୀ,
ମଳୟ ବାୟୁ, ସଙ୍ଗୀତ ଆଉ,
ହୃଦ ଯାତନା, ପ୍ରେମ ବେଦନା, ସୁଖ ସଂସାର ହେ ।
ନିଶି ନିଦ୍ରା ସ୍ୱପନ ସଖୀ ସମ୍ବାଦ ହେ,
ଯୁବଯୁବତୀ ଉକ୍ତି, ଶ୍ରୀହରି ଭକ୍ତି ହେ,
କୁଞ୍ଜ କୁଟୀର, ଧ୍ୱନି ବଂଶୀର,
ଋତୁ ବସନ୍ତ, ଗ୍ରୀଷମ ଅନ୍ତ,
ଦିବସ ରାତ, ଏତିକି ମାତ୍ର ତୁମ୍ଭ ସମ୍ପତ୍ତି ହେ ।

———

## ଭବିଷ୍ୟତ୍

(ରାଗ—ମଙ୍ଗଳ)

ଆହେ ଭବିଷ୍ୟତ ଦେବ ! ବସି ସମ୍ମୁଖରେ,
ଗଠନ କରୁଛ କେତେ ଦ୍ରବ୍ୟ ସ୍ୱହସ୍ତରେ ।
ପ୍ରତିଦିନ ଉଦୟାସ୍ତ ଚନ୍ଦ୍ରମା ତପନ,
ପ୍ରବାହିତ ହେବେ ସମୀରଣ ପ୍ରତିକ୍ଷଣ,
ପ୍ରତିଦିନ ରଜନୀରେ ସୁନୀଳ ଆକାଶେ,
ଅସଂଖ୍ୟ ତାରକାମାଳା କରିଣ ପ୍ରକାଶେ,
ପ୍ରାତଃ ସନ୍ଧ୍ୟା ନିୟମରେ କରିବ ସୃଜନ,
ଧାଇଁବେ ସ୍ୱକକ୍ଷେ ଗ୍ରହ ଉପଗ୍ରହଗଣ,
ଯଥାକାଳେ ନିୟମରେ ହେବ ଜଳବୃଷ୍ଟି,
ଅବନୀମଣ୍ଡଳେ ରକ୍ଷାପାଇଁ ଜୀବ ସୃଷ୍ଟି,
ଦିବା, ନିଶି, ମାସ, ଋତୁ, ବର୍ଷ, ନିୟମରେ,
କରିବ ସୃଜନ ଏହି ସବୁ ସ୍ୱହସ୍ତରେ ।
ପ୍ରତ୍ୟେକ ପ୍ରାଣୀର ଯାହା ଯାହା ପ୍ରୟୋଜନ,
ହେ ଦେବ ! କରିବ ସବୁ ଆପଣେ ସୃଜନ ।
ଉତ୍ସବ ଉଲ୍ଲାସ କେତେ ବିଷାଦ କ୍ରନ୍ଦନ,
ହାହାକାର ଦୀର୍ଘଶ୍ୱାସ ବିଚ୍ଛେଦ ମିଳନ,
ସୃଜନ କରିବ ଏହି ସବୁ ସ୍ୱହସ୍ତରେ ।
ଗତାୟାତ ହେଉଥିବେ ସ୍ୱପ୍ନ ସମାନରେ ।
କେତେ କାଳଯାଏ ବସି କରିବ ଏ କାର୍ଯ୍ୟ,
ହେ ଦେବ ! ଏଥିରେ କି ହେ ନାହିଁ ସୀମା ଧାର୍ଯ୍ୟ ?
ଅବା ଅବଲମ୍ବି କରିଦେବ କାର୍ଯ୍ୟ ଶେଷ,
ବ୍ରହ୍ମାଣ୍ଡର ଚିହ୍ନ ମାତ୍ର ନ ରହିବ ଲେଶ ।
ତୁମ୍ଭ ବିନା ଏ ରହସ୍ୟ କେ ପାରିବ ଜାଣି,
କି ଜାଣିବ ମୁହିଁ କ୍ଷୁଦ୍ରାଦପି କ୍ଷୁଦ୍ର ପ୍ରାଣୀ !
ଥାଉ ସେ ସୃଷ୍ଟିର କଥା କରୁଛି ଜଣାଣ,
ମୋହପାଇଁ କରିବଟି କି ଦ୍ରବ୍ୟ ନିର୍ମାଣ,
କେତେ ଦୁଃଖ କେତେ ସୁଖ ସୃଜିବ ଗୋସାଇଁ,
ହେ ଦେବ ! ତା ବର୍ତ୍ତମାନ ବୋଲିବ କି ନାହିଁ ?
ନ ବୋଲନ୍ତୁ ଜାଣିବାର କିବା ପ୍ରୟୋଜନ,
ମୋ ଭାର ତ ସ୍ୱହସ୍ତରେ ଘେନିଛ ଆପଣ ।
ସାଧିବା ହେଉନ୍ତୁ ଦେବ ! ଆପଣା କର୍ତ୍ତବ୍ୟ,
ମୋ ପକ୍ଷରେ ଜାଣିବାର ନିଶ୍ଚେ ଅସମ୍ଭବ ।
ଗତ ଜୀବନର କଥା ଯେଣୁ ଭୁଲି ଯାଇ,
ଚିତ୍ରଗୁପ୍ତ ପଞ୍ଜିକାରେ ରଖିଛ ଲେଖାଇ,

ଲୁଗାଇ ପାରିବ ନାହିଁ ମାତ୍ର ମୋ ପାଶରେ,
କିଛି କିଛି ପାରେଁ ଜାଣି ପ୍ରଭୁଦତ୍ତ ବରେ ।
ନ ବୋଲ ପଚ୍ଛକେ ତୁମ୍ଭେ ! ଫେଡ଼ ସେହି ସବ,
ଜାଣିବାରେଁ ମୋହ ପାଇଁ ସୃଜିଛ ଯେ ଦ୍ରବ୍ୟ ।
ଜୀବନରେ ଯାହା କରିଅଛୁ ଆଚରଣ,
ରଖିଛ ତ ସେଥି ଫଳ କରି ଆୟୋଜନ ।

———

## ରଜା ତ ଫକୀର

( ରାଗ—ମଙ୍ଗଳ )

ଥିଲା ଗୋଟିଏ ବଡ଼ ରାଜ୍ୟ ତା ନାମ ଶରୀର,
ସେ ଦେଶର ରାଜା ନାମ ଅମ୍ଳାରାମ ବୀର ।
ରାଜାଙ୍କର ଥିଲା ମନ୍ତ୍ରୀ ତାହା ନାମ ଜ୍ଞାନ,
ବିବେକ ନାମରେ ଜଣେ ଥିଲା ଦରୁଆନ ।
ଧର୍ମ ଧନ ରାଜା ରଖିଥିଲେ ଗନ୍ତାଘରେ,
ବିବେକ ପ୍ରହରୀ ଜଗିଥାଏ ନିରନ୍ତରେ ।
ଧୈର୍ଯ୍ୟ ନାମେ ଥିଲା ରାଜାଙ୍କର ପାଖଲୋକ,
ତାହାର ଖଟଣି ଥିଲା ଶରୀର ରକ୍ଷକ ।
ରାଜାଙ୍କ ଦୁଇଟା ରାଣୀ ସୁମତି କୁମତି,
କରନ୍ତି ସୌତୁଣୀ ଦୁହେଁ କଳି ନିତି ନିତି ।
ରାଜା ବିବ୍ରତ ନିତି ନିତି ଶୁଣି କଳି,
ସମ୍ଭାଳି ନ ପାରି ଦିନେ ଦିନେ ହୁଏ ଚଳି ।
ସୁମତି ରାଣୀକୁ ଦିନେ ଦିନେ ଭଲ ପାଏ,
କୁମତି ନଅରେ ଦିନେ ଦିନେ ଶୋଇଥାଏ ।
ସୁମତି ମନ୍ତ୍ରଣା - ଧନ ରଖ ଗନ୍ତାଘରେ,
କୁମତିର ମତ —ସୁଖେ ରହ ଆମୋଦରେ ।
ସୁମତି ବୋଲଇ କର ରାଜ୍ୟ ସୁବିଚାର,
କୁମତି ବାସନା ସୁଖେ ଆହାର ବିହାର ।
କୁମତି ରାଣୀଟା ଦିନେ ନିର୍ଜନରେ ପାଇ,
ରାଜାକୁ ମଣାଇ ନେଲା ବିଚରେ ଫୁସଲାଇ ।
ଗୁଡ଼ଦେଲା ନାହିଁ ସେହି ସୁମତି ପାଶକୁ,
ଆପଣା ଆୟତ୍ତେ ରଖିଥାଏ ରାଜନକୁ ।
ରାଜା ଶୁଣୁଥାଏ ସେହି କୁମତି ମନ୍ତ୍ରଣା,
ରାଜ୍ୟ କଥା କିଛି କରେ ନାହିଁ ବୁଝାମଣା ।
କୁମତି ରାଣୀଟା ଥିଲା ଘୋର କଳିହୁଡ଼,
କଳି କରି ଦେଲା ମନ୍ତ୍ରୀ କହୁଥାଲେ ଛଡ଼ !
କେତେ ଦିନୁ ଲୁଚି ରହିଥିଲେ ଥୋକେ ଚୋର,
ଲୁଟି କରି ନେବାପାଇଁ ରାଜା ଗନ୍ତାଘର ।
ମନ୍ତ୍ରୀ କହୁଥାଲ ଦୁହେଁ ନାହାନ୍ତି ରାଜ୍ୟରେ,
ବେଳ ଉଣ୍ଡି ବାହାରିଲେ ସେହି ସବୁ ଚୋରେ ।
କାମ କ୍ରୋଧ ଲୋଭ ଆଦି ଛଅଟା ତସ୍କର,
ବଳେ ପଶି ଲୁଟି ନେଲେ ରାଜା ଗନ୍ତାଘର ।
ଆହା ଆହା ଗୃଳିଗଲା ରାଜତ୍ୱ ଶରୀର,
ଗନ୍ତାଘରେ ଧନ ନାହିଁ ରାଜା ତ ଫକୀର ।

———

## କର୍ତ୍ତବ୍ୟପାଳନ

( ରାଗ—ମଙ୍ଗଳ )

ଏକ ଦୁଇ କରି ଦିନ ଯାଉଛି ତ ବହି,
କାହାକୁ ଅନାଇ ବୋଲ ଅଛ ବସିରହି ।
କର୍ତ୍ତବ୍ୟ ସାଧନ ସେ ତ ପ୍ରକୃତ ଜୀବନ,
ଆଳସ୍ୟେ ସମୟକ୍ଷେପ ଆତ୍ମାର ହନନ ।
ପୃଥିବୀ ଦେଇଛି ଯେତେ ଦ୍ରବ୍ୟ ତୁମ୍ଭପାଇଁ,
ବିଚାର ତ ପରିଶୋଧ କରିଛ କି ନାହିଁ ।
ଶୈଶବ କାଳରେ ଥିଲ ତୁମ୍ଭେ ଅସମର୍ଥ,
ତୁମ୍ଭର ଯା ଲୋଡ଼ା ପୃଥ୍ୱୀ ଦେଇଛି ସମସ୍ତ,
ଯୌବନ ଅର୍ଦ୍ଧେକ ପ୍ରାୟ ଯିବ ତ ନିଦ୍ରାରେ,
ପୁଣି ଅସମର୍ଥ ହେବ ବୃଦ୍ଧ ଅବସ୍ଥାରେ ।
ଯେତେ କାଳ ପାଇଥିଲ ସମର୍ଥ ଜୀବନ,
ବିଚାର ତ କରିଛ କି କର୍ତ୍ତବ୍ୟ ପାଳନ ।
ଦିନ ଯାଏ ଧୀରେ ଧୀରେ ଭାଳିଛ ମନରେ,
ଅନାଅ ପଛକୁ ଯାଏ କେତେ ଚଞ୍ଚଳରେ ।

## କୃଷ୍ଣ ଏବଂ ଖ୍ରୀଷ୍ଟ

(ରାଗ—କଳଶା)

ଯଦୁବଂଶ-ଅବତଂସ ଯାଦବ ଶ୍ରୀକୃଷ୍ଣ,
ଯୁଦାବଂଶଧର ନରପୁତ୍ର ଯିଶୁ ଖ୍ରୀଷ୍ଟ ।
ଉଭୟ ଦେବତା କଥା କଲେ ଆଲୋଚନା,
ଏକ ବୃନ୍ତେ ଦୁଇ ପୁଷ୍ପ ପ୍ରାୟେ ଯାଏ ଜଣା ।
ଉଭୟ ପବିତ୍ର ସ୍ରୋତ ସମାନ ଭାବରେ,
ପ୍ରବାହିତ ହୋଇଥିଲେ ଜଗତକ୍ଷେତ୍ରରେ ।
ଭାଗବତ, ବାଇବେଲ, ସମାନ ଚରିତ,
କବି ତୂଳିକାରେ ମାତ୍ର ବିଭିନ୍ନ ଚିତ୍ରିତ ।
ଉଭୟେ ଲଭିଲେ ଜନ୍ମ ପଶୁପାଳଗୃହେ,
ଉଭୟେ ଶୈଶବେ ଭୀତ ନୃପତି ବିଦ୍ରୋହେ ।
ମେରୀ ଗର୍ଭବତୀ ହେଲେ ସ୍ୱର୍ଗୀୟ ତେଜରେ,
ବ୍ରହ୍ମତେଜ ପ୍ରବେଶିଲା ଦେବକୀ ଗର୍ଭରେ ।
ଗୋପପୁରେ ଗଲେ କୃଷ୍ଣ କଂସରାଜା ଡରେ,
ହେରୋଦ ଭୟରେ ଖ୍ରୀଷ୍ଟ ଲୁଚଲେ ମିଶରେ ।
ଦୁଇ ପ୍ରଭୁଙ୍କର ବାହୁ ଆଜାନୁଲମ୍ବିତ,
ଦୁହିଙ୍କର ପଦଚ୍ଛଦ ବରଣ ଲୋହିତ ।
ଶିଶୁ ହତ୍ୟା କରିଥିଲା କଂସ ମୂଢ଼ମତି,
ବଧିଥିଲା ଶିଶୁ ମଧ୍ୟ ହେରୋଦ ନୃପତି ।
ଗୁରୁପୁତ୍ରେ ଜୀବଦାନ ଦେଇଥିଲେ କୃଷ୍ଣ,
ବଞ୍ଚାଇଲେ କେତେ ମୃତ ଲୋକ ଯିଶୁଖ୍ରୀଷ୍ଟ ।
କାମ୍ୟକ ବନରେ କୃଷ୍ଣ ଶାକ କଣିକାରେ,
ତୃପ୍ତ କରାଇଲେ ବିପ୍ର ଦ୍ୱାଦଶ ହଜାରେ ।
ଖଣ୍ଡେ ରୋଟି, ଗୋଟେ ମତ୍ସ୍ୟ ମେରୀଙ୍କ ନନ୍ଦନ,
ସହସ୍ର ସହସ୍ର ଲୋକେ ଦେଲେକ ଭୋଜନ ।
ଖ୍ରୀଷ୍ଟ ଚାଲି ଯାଇଥିଲେ ସାଗର ଉପରେ,
କୃଷ୍ଣଚନ୍ଦ୍ର ପ୍ରବେଶିଲେ ସାଗର ଗର୍ଭରେ ।
ପ୍ରସ୍ତରକୁ ନବନୀତ କରିଥିଲେ କୃଷ୍ଣ,
ଜଳକୁ ମଦିରା ରୂପ କଲେ ଯିଶୁଖ୍ରୀଷ୍ଟ ।
କୃଷ୍ଣଚନ୍ଦ୍ର ଆଜ୍ଞା କରିଥିଲେ ବାରମ୍ବାର,
"ମହାପାପିଗଣେ ଆମ୍ଭେ କରିବୁଁ ଉଦ୍ଧାର ।"
ଖ୍ରୀଷ୍ଟ ମଧ୍ୟ ଶତ ଶତ ବାର ସେହି କଥା,
ବୋଲିଥିଲେ ଅଛି ବାଇବେଲରେ ବାରତା ।
କୃଷ୍ଣ ପିତା ନାମ ବସୁ, ଖ୍ରୀଷ୍ଟପିତା ଯାଶୁ,
ଉଭୟେ ତାରିଲେ ଲୋକଗଣେ ପାପପାଶୁଁ ।
କୃଷ୍ଣ ମାତା ପିତା ଶୁଣିଥିଲେ ଦୈବବାଣୀ,
ମେରୀ ସମ୍ବନ୍ଧରେ ଅଛି ସେପରି କାହାଣୀ ।
ବୋଲି ଯାଇଥିଲେ ପୂର୍ବେ ଭବିଷ୍ୟତ ବକ୍ତା,
ଯେରୁଶାଲମରେ ଖ୍ରୀଷ୍ଟ ଜନ୍ମ ହେବା କଥା ।
ଉଲ୍ଲେଖ ରହିଛି ମଧ୍ୟ ବୈଦିକ ଶାସ୍ତ୍ରରେ,
ଲଭିବା ଶ୍ରୀକୃଷ୍ଣ ଜନ୍ମ ଯାଦବ ବଂଶରେ ।
ଈଶ ଅର୍ଥେ ପ୍ରଭୁ ଅଭିଧାନରେ ଲିଖିତ,
ଖ୍ରୀଷ୍ଟ କୃଷ୍ଣ ଦୁହେଁ ଈଶ ନାମରେ କଥିତ ।
ଖ୍ରୀଷ୍ଟ ଜନମିବା କାଳେ ହେରୋଦ ରାଜନ,
ଜ୍ୟୋତିର୍ବିଦ ସଙ୍ଗେ କଲେ କଥୋପକଥନ ।
କଂସ ମଧ୍ୟ ଶ୍ରୀକୃଷ୍ଣଙ୍କ ଜନମ ବାରତା,
ଜ୍ୟୋତିର୍ବିଦଗଣେ ପୁଚ୍ଛିଥିଲେ କେତେ କଥା ।
କୃଷ୍ଣଙ୍କର ସଖା ଥିଲେ ଗୋପାଳ ଦ୍ୱାଦଶ,
ବାର ଜଣ ଥିଲେ ମଧ୍ୟ ଯିଶୁଙ୍କର ଶିଷ୍ୟ ।
ବନ୍ୟମଧୁ ଖାଇଥିଲେ ଖ୍ରୀଷ୍ଟ ବନ୍ଧୁଜନ,
ମଧୁପାନ କରିଥିଲେ ରୋହିଣୀନନ୍ଦନ ।
କୃଷ୍ଣଙ୍କ ଯମୁନା, ଯିଶୁଖ୍ରୀଷ୍ଟଙ୍କ ଜର୍ଡ଼ନ,
ଦୁଇ ଜଣ ଶିଷ୍ୟ ସଙ୍ଗେ କରନ୍ତି ଭ୍ରମଣ ।
କୁରୁକ୍ଷେତ୍ର ଯୁଦ୍ଧକାଳେ ଯାଦବନନ୍ଦନେ,
ବିଶ୍ୱରୂପ ଦେଖାଇଣ ଥିଲେ ଅରଜୁନେ ।
ଯୋନ ଓ ପିତରେ ଯିଶୁଖ୍ରୀଷ୍ଟ ମେରୀସୁତ,
ଦେଖାଇଣ ଥିଲେ ଶୀର୍ଣ୍ଣରୂପ ଅଦଭୁତ ।
ବୋଲିଥିଲେ ଅରଜୁନେ ଶ୍ରୀକୃଷ୍ଣ ଅନନ୍ତ,
ଆମ୍ଭେ ଅଟୁଁ ଜଗତର ଆଦି, ମଧ୍ୟ, ଅନ୍ତ ।
ଯିଶୁଖ୍ରୀଷ୍ଟ ମଧ୍ୟ ବୋଲିଥିଲେ ସେହି କଥା,
ଅଟନ୍ତି ପ୍ରଥମ, ଶେଷ, ଜଗତନିୟନ୍ତା ।

ବିପ୍ରଙ୍କର ପାଦ ଧୌତ କଲେ ଜନାର୍ଦ୍ଦନ,
ଯିଶୁଖ୍ରୀଷ୍ଟ ଧୋଇଥିଲେ ଶିଷ୍ୟଙ୍କ ଚରଣ ।
ଯିଶୁଖ୍ରୀଷ୍ଟ ବୋଲିଥିଲେ ସତ୍ୟ ଆମ୍ଭ ବାଣୀ,
ସେହିପରି କଥା ବୋଲିଥିଲେ ଚକ୍ରପାଣି ।
ତ୍ରିଶୂଳ ଶରରେ ଦେହ ତେଜିଲେ ଶ୍ରୀକୃଷ୍ଣ,
ତ୍ରିଶୂଳ ଆକୃତି କ୍ରୁଶେ ମଲେ ଯିଶୁଖ୍ରୀଷ୍ଟ ।
ଖ୍ରୀଷ୍ଟ କୃଷ୍ଣ ଦୁଇ ଜଣ ଅଟନ୍ତି ସମାନ,
ଭାଗବତ, ବାଇବେଲ ସେଥିର ପ୍ରମାଣ ।
ଅଟନ୍ତି ଏ ଦୁଇ ପ୍ରଭୁ ଧର୍ମ ଅବତାର,
ବେନି ଜଂନ କରଁ ଯୋଡ଼ି କରେ ନମସ୍କାର ।

———

## କାହାନ୍ତି ?

( ରାଗ—ସଙ୍ଗମଣିଆରି )

କାହିଁ ସେ ମଥୁରାପୁରୀ, ଶ୍ରୀବୃନ୍ଦାବନ,
ଯମୁନାପୁଳିନ ଲୀଳା କୁଞ୍ଜ କାନନ ?
ସେ ନନ୍ଦ, ଯଶୋଦା, ବସୁଦେବ, ଦେବକୀ,
କାହିଁ ଗଲେ ଚାଲି, ଏହା ବୋଲି ଦେବ କି ?
କାହାନ୍ତି କୁଞ୍ଜବିହାରୀ, ସେ ବଂଶୀଧ୍ୱନି ?
କାହାନ୍ତି ଯାଦବ ବୀର—ଖ୍ୟାତ ଅବନୀ ?
କାହାନ୍ତି ବାଳଗୋପାଳ, କାହିଁ ଗୋଗୋଷ୍ଠ ?
ମଥୁରା ନଗରୀ କଂସ ରସପ୍ରକୋଷ୍ଠ ?
କାହିଁ ସେ କାଳିନ୍ଦୀ ହ୍ରଦ, କାହିଁ କାଳୀୟ ?
ଗୋପୀ ଗୋପାଳଙ୍କ ଲୀଳା—ଯେ ରମଣୀୟ ?
ବୃଷଭାନୁ ରାଜଜେମା ଶ୍ରୀ ଗୋପେଶ୍ୱର ?
ବୃନ୍ଦାବନ ବିଳାସିନୀ ଗୋପୀ କିଶୋର ?
ଗୋଲୋକବିହାରୀ କୃଷ୍ଣ କାଳ-ସ୍ରୋତରେ,
ଗଲେ ଭାସି ! ତୁମ୍ଭେ ଆମ୍ଭେ କେତେ ମାତରେ ।

———

## ତୁଚ୍ଛ କଣ ?

( ଭାଗବତ ବୃତ୍ତ )

କି ଦ୍ରବ୍ୟ ତୁଚ୍ଛ ଜଗତରେ, ବୁଝି ତ ନ ପାରେଁ ମନରେ ।
ନିତାନ୍ତ କ୍ଷୁଦ୍ର ପରମାଣୁ, ସୌରଜଗତେ ଶ୍ରେଷ୍ଠ ଭାନୁ ।
କେହି ତ ନୁହନ୍ତି ସାମାନ୍ୟ, ସମସ୍ତେ ସ୍ୱତନ୍ତ୍ର ପ୍ରଧାନ ।
କେ ହେବ କା ସଙ୍ଗେ ତୁଳନା, କରିତ ନପାରେ କଳ୍ପନା ।
ସମସ୍ତ ବିବିଧ ଆକାର, ମାତ୍ରକ ଅଣୁର ବିକାର ।
ଏହି ଯେ ଦେଖ ତୁଚ୍ଛ ଧୂଳି, ପଦରେ ହୋଇଅଛି ବୋଳି ।
ତୁମ୍ଭର ଏ ସୁନ୍ଦର ଗାତ୍ର, ଅଟେ ସମଷ୍ଟି ଧୂଳି ମାତ୍ର ।
ଜଗତ ମଧ୍ୟେ ଦେଖ ଚାହିଁ, ସାମାନ୍ୟ ତୁଚ୍ଛ କିଛି ନାହିଁ ।
ମହାନ ସୃଷ୍ଟିର କାରଣ, କରନ୍ତି ଉଦ୍ଦେଶ୍ୟ ସାଧନ ।
ତୁମ୍ଭେ ଯାହାକୁ ମଣ ତୁଚ୍ଛ, କାର୍ଯ୍ୟବିଶେଷେ ସେହି ଉଚ୍ଚ ।
ଗୋଟିଏ ତେଜିଲେ ନ ମାନି, ହେବ ସୃଷ୍ଟିର ଅଙ୍ଗହାନି ।
ବୃଥାରେ ସୃଷ୍ଟି କିଛି ନାହିଁ, ଉଦ୍ଦେଶ୍ୟ ସାଧନର ପାଇଁ ।
ପ୍ରତ୍ୟେକ ବସ୍ତୁ ଛନ୍ତି ଜାଣି, ପାଳନ୍ତି ସୃଷ୍ଟିର ବିଧାନ ।

———

## କାଳ

ଅଖଣ୍ଡ ଦଣ୍ଡାୟମାନ କାଳ ଚିତ୍ରପଟେ,
ଚିତ୍ରିତ ରହିଛି ବିଶ୍ୱ ବ୍ରହ୍ମାଣ୍ଡ ସମସ୍ତ ।
ଭବିଷ୍ୟତ, ବର୍ତ୍ତମାନ, ଭୂତ, ଭେଦ ଯାହା
ମାନବ ନେତ୍ରରେ; ମାତ୍ର କାଳ ସମରୂପୀ ।
ଅନନ୍ତ ନକ୍ଷତ୍ର, ଗ୍ରହ, ଫେନବିନ୍ଦୁରାଜି
ଭାସୁଛନ୍ତି ସେ ପଟରେ; ମିଶିଯିବେ କାହିଁ ।
ଏ ଚିତ୍ରପଟର ସୀମା କଳ୍ପନା ଅତୀତ ।
ଏ ସୌରଜଗତ, ସୃଷ୍ଟି, ସ୍ଥିତି, ବିନାଶନ,
କୋଟି କୋଟି ଯୁଗବ୍ୟାପୀ ନର ଗଣନାରେ ।
ମାତ୍ର ମେଘମାଳା-ଉଦୟାସ୍ତ ପରି ତାହା
ଅନନ୍ତ ଆକାଶ ମାର୍ଗେ କ୍ଷଣିକ ସମାନ ।

ସେହିପରି ଗତାଗ୍ରତ ଅଲଙ୍ଘ୍ୟ ନିୟମେ
ଅନନ୍ତ ଅନନ୍ତ ସୌର ଜଗତମଣ୍ଡଳ ।
ଜୀବନ ଜ୍ୟୋତିରେ ( ଜ୍ୟୋତିରଙ୍ଗଣ ଗଗନ
ଦେଖେ ଯଥା ) ଅନୁଭବେଁ କାଳ କ୍ଷୁଦ୍ରତମ
ଅଂଶ କ୍ଷୁଦ୍ର ପ୍ରାଣି, କରେଁ ତାକୁ ପୁଣି ଶତ
ନାନା ବର୍ଣ୍ଣେ ପ୍ରାତଃ, ସନ୍ଧ୍ୟା, ମଧ୍ୟାହ୍ନ, ରଜନୀ,
ବାର, ପକ୍ଷ, ମାସ, ବର୍ଷ, ବିବିଧ ରୂପରେ ।
ଯେ କାଳରେ ମହା ଘୋର ପ୍ରଳୟ ପ୍ଲାବନ
ହେବ ଉପସ୍ଥିତ, ଥିବ ଅଜେୟ, ଅଟଳ,
ଅତୁଳ, ଏକାକୀ ତୁମ୍ଭେ ବ୍ରହ୍ମାଣ୍ଡ ମଧ୍ୟରେ ।
ସୃଷ୍ଟି, ସ୍ଥିତି, ଲୟ ହେବ ତୁମ୍ଭର କବଳେ ।
ଥିବ ତୁମ୍ଭେ, ଥିବ ମାତ୍ର ଗଗନମଣ୍ଡଳ;
ନ ଥିବ ତପନ, ଶଶୀ, ଜଗତର ଜ୍ୟୋତି;
ନିଜେ ଅବିନାଶୀ—ସର୍ବେ ପେଶୁଛ ନାଶ୍ୟରେ ।
ଯୁଗ ଯୁଗାନ୍ତର ଲୋକ କରନ୍ତି ଗଣନା ।
କେତେ କୋଟି ଯୁଗ ଯୁଗାନ୍ତର କଣାରୂପେ
ଭାସେ ତବ ଦେହେ, ସିନ୍ଧୁଜଳେ ଫେନ ସମ ।
ଆହେ ଦେବ ! କେତେ ରୂପ ରୂପାନ୍ତର ଦେଖେଁ
ତୁମ୍ଭଙ୍କୁ ନେତ୍ରରେ, ପଡ଼ି ଘଟନା ସ୍ରୋତରେ ।
ସରଳ, କୋମଳମତି ଶୈଶବ କାଳରେ
ବିଷୟ ବାସନା କିବା ପାପ ପ୍ରଲୋଭନ
ନ ଥିଲା କଳୁଷ ମନେ, ଆନନ୍ଦ ସ୍ୱରୂପେ
ବ୍ୟାପ୍ତ ଥିଲ ମୋ ନେତ୍ରରେ—ସହାସ୍ୟ ବଦନେ
ଦେଖିଛି ତୁମ୍ଭଙ୍କୁ, ଶୂନ୍ୟ ଭାବନାର ଭାବ ।
ଚଞ୍ଚଳ ଯୌବନ ଯେବେ ଉନମତ୍ତ ବେଶେ
ଉଦ୍ଦଲା ମାନସେ ମମ, ଦୁରାଶାର ପ୍ରଭା
ବିସ୍ତାରିଲା; ଭ୍ରମି ଭ୍ରମି ଲଭିଲି ନୈରାଶ୍ୟ,
ଦେଖିଲି ତୁମ୍ଭଙ୍କୁ ତେବେ ମାୟା ବିଶ୍ୱରୂପେ ।
ଭ୍ରମିଛି କୁମାର୍ଗେ ସୁଖଲାଭ ବାସନାରେ,
କଳୁଷ କାଳିମା କେତେ କରିଛି ଅର୍ଜନ;
ସ୍ମରଣ ପଟରେ ଅଛି କଳଙ୍କ ଚିହ୍ନିତ ।
ଅଶକ୍ତ ବାର୍ଦ୍ଧକ୍ୟ ଦେହ ଏବେ ଉପସ୍ଥିତ ।
ଅଜ୍ଞାତ ଚିତ୍ତରୁ ଚପଳତା ସୁଖ ସ୍ପୃହା,
ଉତ୍ସାହ, ସାହସ, ସର୍ବ ବିଳାସ ବାସନା ।
କ୍ରମେ ଘୋର ଘୋରତର ଘୋରତମ ପରି
ବିଳାପ ସନ୍ତାପ ଚିନ୍ତା କରିଛି ସମ୍ବଳ ।
ତୁମ୍ଭେ ନୁହ କଷ୍ଟଦାତା, ସୁଖର କାରଣ,
ତୁଳନା ଦେବାକୁ ନାହିଁ ତୁମ୍ଭ ସହିତରେ,—
ଆତ୍ମରୂପୀ, ଭାଷା ବାକ୍ୟ କଳ୍ପନା ଅଜ୍ଞାତ ।
ତୁମ୍ଭେ ନିତ୍ୟ, ସତ୍ୟ, ବ୍ୟାପୀ, ଅନନ୍ତ, ଅପାର,
ଅସ୍ୱୀକାର କେ କରିବ ଏ କଥା କେସନେ ?
ସର୍ବକାଳବ୍ୟାପୀ ପରଂବ୍ରହ୍ମ ବିରାଜିତ,
ଆଧାର ଆଧେୟ ରୂପେ ନିତ୍ୟ ବର୍ତ୍ତମାନ ।
ଆହେ ମହାକାଳ ଦେବ ! ତୁମ୍ଭଙ୍କୁ ହସ୍ତରେ
ପାଇ ହରାଇଛି, ପ୍ରଭୋ ! ଅଜ୍ଞାନ ପଣରେ ।
ତୁମ୍ଭେ ମୋ ଜୀବନ, ଧନ, ମାନ, ସୁଖ, ଯଶ ।
ସର୍ବସ୍ୱ ହରାଇ ଅଛି ତୁମ୍ଭଙ୍କୁ ହରାଇ ।
ସର୍ବ ଧନ ବିନିମୟେ ସମଗ୍ର ଜୀବନେ
ନ ପାଇବି ନିମିଷେକ ଯାଇଛି ଯା ବହି ।
ଥିଲ ଯେବେ ମୋ ହସ୍ତରେ କରିଥାନ୍ତି କେତେ
ସାଧୁକାର୍ଯ୍ୟ ପୁଣ୍ୟକାର୍ଯ୍ୟ ଜଗତ କାରଣେ ।
ପଶ୍ଚାତେ ଅନନ୍ତ ତୁମ୍ଭେ, ସମ୍ମୁଖେ ଅନନ୍ତ
ସ୍ୱରୂପରେ ପ୍ରତିଭାତ ହେଉଛ ମୋ ନେତ୍ରେ ।
ତୁମ୍ଭ କଣା ମାତ୍ର ଥିଲି ମୋର ଲୀଳାଭୂମି,
ମିଶିଯିବି ଦିନେ କାହିଁ ତୁମ୍ଭର ଦେହରେ ।

— — —

## ଲୋକଚିନ୍ତା

( ରାଗ—ଚକ୍ରକେଳି )

ସାଗର ଗର୍ଭକୁ କେ ପାରେ କଳି,
ମାନବର ମନ ତହିଁରୁ ବଳି ।
ବାକ୍ୟରେ ଆକାରେ ଯା ଯାଏ ଜଣା,
ନ କର ସେଥିରେ ଧ୍ରୁବ ଧାରଣା ।

ନାସା ନେତ୍ର କର୍ଣ୍ଣ ବଦନାକୃତି,
କେବଳ ଅଟେ ତା ମାଂସ ବିକୃତି ।
ମାନବର ମନ ସ୍ୱତନ୍ତ୍ର ବସ୍ତୁ,
ତାହାକୁ ଜାଣିବା କଠିନ କିନ୍ତୁ ।

ନ କର ବିଶ୍ୱାସ ଚହ୍ନିଛ ଲୋକ,
ପାଇଛ ତ ଭେଟ ଏହି ମାତ୍ରକ ।
ମଣିଛ ଯାହାକୁ ଦେବ-ଉପମ,
ହୋଇପାରେ ସେହି ରାକ୍ଷସାଧମ ।

ମାନବ ତ ବୁଦ୍ଧେ ନିଜ ଆଯତ୍ତ,
ଗୂଳତ ପ୍ରକୃତିବଶେ ସନ୍ତତ ।
ବିଶେଷ ବିଶେଷ ଘଟନାସ୍ଥଳ,
ଲୋକ ଚହ୍ନିବାର ହେତୁ କେବଳ ।

ଲୋକ ଜାଣିବାକୁ ଯେବେ ବାସନା,
ଦେଖିବ ତା ଜୀବନର ଘଟନା ।
ଘର୍ଷଣ, ସୋହାଗା, ଜଳନ୍ତାନଳ
ସୁନା ପିତ୍ତଳର ପରୀକ୍ଷା ସ୍ଥଳ ।

ବିଶେଷ ବିଶେଷ କାର୍ଯ୍ୟ ବେଳରେ,
ଭିତର ମାନବ ପଡ଼େ ବାହାରେ ।
ଆପଣା ବୁଦ୍ଧିରେ ଚହ୍ନିଛ ଜନେ,
ଏ ଧାରଣା କେଭେ ନ ରଖ ମନେ ।

ଘଟନା ଚକ୍ରରେ ମାନବ ମନ,
ବିବିଧ ସ୍ୱରୂପ କରେ ଧାରଣ ।
ଜାଣିବ ଅଛି ଯା ଧର୍ମର ବଳ,
ସବୁ ଅବସ୍ଥାରେ ସେହି ଅଟଳ ।

ଲୋକ ଚହ୍ନିବାକୁ ଯେବେ ବାସନା,
ଧର୍ମଭାବେ କଥା ପଡ଼ିବ ଜଣା ।

———

## ଜୀବ-ବ୍ରହ୍ମ

( ରାଗ — ମଙ୍ଗଳ )

ଜୀବ-ବ୍ରହ୍ମ ବିରାଜିତ ଶରୀର ମଧ୍ୟରେ,
ବିହଗଯୁଗଳ ଯଥା ଥାଆନ୍ତି ବୃକ୍ଷରେ ।
ଜୀବନ-ବିହଗ ନିତ୍ୟ ଭୁଞ୍ଜେ ନାନା ଫଳ,
ବ୍ରହ୍ମ ପକ୍ଷୀ ଥାନ୍ତି ସାକ୍ଷୀ ସ୍ୱରୂପ କେବଳ ।
ଅକାଟ୍ୟ ସମ୍ବନ୍ଧ କିନ୍ତୁ ଉଭୟ ମଧ୍ୟରେ,
ତିଷ୍ଠି ନ ପାରଇ ଜୀବ ବ୍ରହ୍ମ ଅଭାବରେ ।
ଏକ ଦାତା ଅନ୍ୟ ଭୋକ୍ତା ସମ୍ବନ୍ଧ ଏପରି,
ତଥାପି ସେ ଜୀବ ଥାଏ ବ୍ରହ୍ମଙ୍କୁ ବିସ୍ମରି ।
ମାତ୍ର ଜୀବ ବ୍ରହ୍ମ ବିନା ବ୍ୟାକୁଳ ହୃଦୟ,
ଯେଣୁ ସେହି ଏକମାତ୍ର ପରମ ଆଶ୍ରୟ ।
ଜାଗ୍ରତ କାଳରେ ଅବା ଶୟନେ ସ୍ୱପନେ,
ଜୀବ ପ୍ରତି ବ୍ରହ୍ମ-ଦୃଷ୍ଟି ଥାଏ ଅନୁକ୍ଷଣେ ।
ଜଗତ ଜଞ୍ଜାଳେ ହେଲେ ଜୀବନ ବିକଳ,
ବ୍ରହ୍ମ ଆଶ୍ରୟରେ ଶାନ୍ତି ଲଭଇ କେବଳ !
ଜୀବ-ପକ୍ଷୀ ସୁଖ ଲୋଡ଼ି ଭ୍ରମେ ନିରନ୍ତର,
ଜଗତ ସୁଖରେ କିନ୍ତୁ ଶାନ୍ତି ନାହିଁ ତାର ।
ନିର୍ମଳ ହୃଦୟେ ଯେବେ ପାଏ ମିତ୍ର ସଙ୍ଗ
ଲଭଇ ପରମ ଶାନ୍ତି ଜୀବନ-ବିହଙ୍ଗ ।

———

## ବିହଙ୍ଗ ଯୁଗଳ

ଏକ ତରୁବରେ ବାସ ଯୁଗଳ ବିହଙ୍ଗ,
ଏକକୁ ଆରେକ ସାହା ସଖା ଅନ୍ତରଙ୍ଗ ।
ଏକ ପକ୍ଷୀ ବୃକ୍ଷେ ଥାଇ ଫଳ ଭୋଗକରେ,
ଦ୍ୱିତୀୟ ବିହଙ୍ଗ ଥାନ୍ତି ସାକ୍ଷୀ ସ୍ୱରୂପରେ ।
କରନ୍ତି ଛଅଟା ବ୍ୟାଧ ବୃକ୍ଷ ମଧ୍ୟେ ବାସ,
କରିବାକୁ ଫଳଭୋଗୀ ପକ୍ଷୀକୁ ବିନାଶ ।
ଜୀବାତ୍ମା ପରମ ଆତ୍ମା ମାନବ ଦେହରେ
କରନ୍ତି ନିୟତ ବାସ ପ୍ରଣୟଭାବରେ ।

ଭୁଞ୍ଜଇ ଜୀବାତ୍ମା ସର୍ବ ଶୁଭାଶୁଭ ଫଳ,
ପରମାତ୍ମା ଥାଆନ୍ତି ସାକ୍ଷୀ ସ୍ୱରୂପ କେବଳ ।
କାମ, କ୍ରୋଧ, ଲୋଭ ଆଦି ରିପୁ ଛଅ ଜଣ,
ଜଗିଥାନ୍ତି ଜୀବାତ୍ମାର ବିନାଶ କାରଣ ।
ଥିଲେକ ଜୀବାତ୍ମା ପରମାତ୍ମାଙ୍କ ଶରଣେ,
ନାଶ କରି ନ ପାରନ୍ତି ତାକୁ ରିପୁଗଣେ ।

——

## ଜଗତ ମଙ୍ଗଳମୟ

ମଙ୍ଗଳବିଧାନ ହରି ମଙ୍ଗଳ ବିଧାନେ
ସୃଜନ, ପାଳନ, ଲୟ କରନ୍ତି ସମାନେ ।
ସୁକୌଶଳେ ସୃଷ୍ଟ ବିଶ୍ୱ ବ୍ରହ୍ମାଣ୍ଡ ସକଳ
ଅନନ୍ତ ମହିମା ସତ୍ତ୍ୱ ପ୍ରକାଶେ କେବଳ ।
ଅଟଇ ମଙ୍ଗଳମୟ ବିଶ୍ୱ ଚରାଚର,
ସୁପ୍ରତିଷ୍ଠ ସର୍ବ ଦ୍ରବ୍ୟ ମଙ୍ଗଳ ଆକର ।
କପାଁ ହାହାକାର ରବ, ଅଶାନ୍ତି, ଯନ୍ତ୍ରଣା,
ବିପରୀତ ସମାବେଶ, ଯାଏ ନାହିଁ ଜଣା ।
କରୁଁ ଯାହା ଦୁଃଖ ବୋଧ—ସୁଖର ନିଦାନ,
ଆଶୁ କଷ୍ଟକର ମାତ୍ର କଲ୍ୟାଣବିଧାନ ।
ଧରିଛି ଦାହିକା ଶକ୍ତି ମହାକଷ୍ଟକର
ଅଶେଷ କଲ୍ୟାଣ ହେତୁ ଭୂତ ବୈଶ୍ୱାନର ।
କାଞ୍ଚନ ଅନଳ-ଦଗ୍‌ଧ କମନୀୟ କାନ୍ତି,
ପ୍ରକାଶର ହେତୁଭୂତ, କଷ୍ଟ ମନେ ଭ୍ରାନ୍ତି ।
ପଚ୍ୟମାନ ବୀଜ ଯଥା ମୃତ୍ତିକା ଦେହରେ
ପରିଣତ ଫଳବନ୍ତ ପାଦପ ଆକାରେ,
ବିପଦ ଯନ୍ତ୍ରଣା ସହି ସହି ନିତ୍ୟ ପ୍ରାଣ
ଉପଯୁକ୍ତ ହୁଏ ଲଭିବାକୁ ଉଚ୍ଚସ୍ଥାନ ।
ମୃତ୍ୟୁ ବଳି କଷ୍ଟକର ନାହିଁ ଜୀବଲୋକେ,
କପାଁ ନାମମାତ୍ର ଶୁଣି ମୁହ୍ୟମାନ ଲୋକେ ?
ଉନ୍ନତ ନୂତନ ଭବ ଦିଏ ଯେବା ଆଣି,
ସେ ପବିତ୍ର ନାମେ କପାଁ ମୁହ୍ୟମାନ ପ୍ରାଣୀ ?
ନ ଥିଲେ ଏ ବିଶ୍ୱେ ମହା ସଂହାରିଣୀଶକ୍ତି
ଅସମ୍ଭବ ନବ ପ୍ରାଣୀ ଜଗତେ ଉତ୍ପତ୍ତି ।
ଉତ୍ପାଦିନୀ, ସଂରକ୍ଷିଣୀ, ପୁଣି ସଂହାରିଣୀ
ବିଶ୍ୱକାର୍ଯ୍ୟ ମୂଳୀଭୂତା ଏହି ଶକ୍ତି ତିନି ।
ଆତ୍ମକୃତ କର୍ମଫଳ ଅଲଙ୍ଘ୍ୟ ବିଧାନେ
ଭୁଞ୍ଜିବେ ଅବଶ୍ୟ ଜଗତର ପ୍ରାଣୀମାନେ ।
ଅନନ୍ତ ବିଧାନ ଚକ୍ରେ ମାନବ ଜୀବନ
ଘୂର୍ଣ୍ଣିତ, ସତତ ଘଟେ ଉତ୍ଥାନ ପତନ ।
ବିଧି ପ୍ରେରଣାରେ ଯାହା ଘଟିବ ମହୀରେ,
ଗ୍ରହଣ ଉଚିତ ଭକ୍ତି-ଅବନତ ଶିରେ ।
ମାନବ ଜୀବନେ ଯେତେ ଘଟୁଛି ଘଟନ
ବିଧାତାଙ୍କ ଶୁଭ ଇଚ୍ଛା ସେଥିରେ ପ୍ରଚ୍ଛନ୍ନ ।

——

## ଆତ୍ମା ଅବିନାଶୀ

ବ୍ରହ୍ମାଣ୍ଡ ବିରାଟ ଗ୍ରନ୍ଥ କରି ଅଧ୍ୟୟନ
ଏତିକି ମାତ୍ରକ ଶିକ୍ଷା ଲଭିଛି ଜୀବନ—
ନିକ୍ଷିପ୍ତ ଗଗନ ମାର୍ଗେ ଅସଂଖ୍ୟ ଗୋଲକ,
ପ୍ରତ୍ୟେକ ସହିତ ଅଛି ମୋହର ସମ୍ପର୍କ,
ଜଡ଼ୀୟ ଶରୀର ତେଜି ଯିବ ଯଦା ପ୍ରାଣ,
ମହାନନ୍ଦେ ମହାମାର୍ଗେ କରିବ ପ୍ରୟାଣ ।
ଭ୍ରାମ୍ୟମାଣ ଏ ଜଗତ ଦେଖୁଛି ପ୍ରତ୍ୟକ୍ଷ,
ଅବଶ୍ୟ ମୋ ଜୀବନର ଅଛି ଏକ କକ୍ଷ ।
ଅଣୁ ପରମାଣୁ ଥିବେ ଜଗତରେ ପଡ଼ି,
ଜଡ଼ାତୀତ ସୁମହାନ ଆତ୍ମା ଯିବ ଉଡ଼ି ।
ଅବିନାଶୀ ବିଶ୍ୱେ ଆତ୍ମା ନୁହଇ ନଶ୍ୱର
ଜନ୍ମ ମୃତ୍ୟୁ ରୂପେ ତାହା ଲଭେ ରୂପାନ୍ତର ।
ଥିବ ବିଶ୍ୱ, ଥିବି ମୁହିଁ, ଥିବୁଁ ଚିରକାଳ,
ଦୁହିଙ୍କର ଗତି ଅଟେ ସମ-ଅନ୍ତରାଳ ।
ଯେଉଁ କାଳେ ପରିତେଜି ଯିବ ଇହଲୋକ,
ଓଁକାର ମାତ୍ରକ ହେବ ମାର୍ଗ ପ୍ରଦର୍ଶକ !

——

## ମିଷ୍ଟ କଥା

ଯେତେ ସୁଖକର ଦ୍ରବ୍ୟ ଅଛି ଜଗତରେ,
କେହି ନୁହେ ଶ୍ରେଷ୍ଠ ମିଷ୍ଟ କଥା ସମାନରେ ।
ମୋ ହୃଦୟ ନିରନ୍ତର ସୁଖଶାନ୍ତିଶୂନ୍ୟ,
ଜ୍ଞାନଗରିମା ବା ଅର୍ଥେ ହେବ ନାହିଁ ପୂର୍ଣ୍ଣ ।
ଚନ୍ଦ୍ରମା-କିରଣ ଅବା କୁସୁମ-ସୌରଭ,
ଲୋକରେ ସୁଖ୍ୟାତି, ପଦମର୍ଯ୍ୟାଦା ଗୌରବ—
ଏଥିରେ ତ ସୁଖ ଶାନ୍ତି ନ ଲଭେ ଜୀବନ,
କେବଳ ମୁଁ ଲୋଡ଼େ ମିଷ୍ଟ ସରଳ ବଚନ ।
ମିଷ୍ଟ କଥା ନୁହେ ଏରା ପାର୍ଥିବ ପଦାର୍ଥ,
ଦେବତାର ଉପଭୋଗ୍ୟ ଅମିୟ ଯଥାର୍ଥ ।
ଶୁଣୁ ଛି ଲୋକଙ୍କ ମୁଖୁଁ କେତେ ମିଷ୍ଟ କଥା
ସେ ନୁହେ ସରଳ, ପ୍ରବଞ୍ଚନା କପଟତା ।
ସେଥିରେ ତ ହୁଏ ନାହିଁ ଜୀବନ ଶୀତଳ,
ପ୍ରାଣହନ୍ତାରକ ବ୍ୟାଧସଙ୍ଗୀତ କେବଳ ।
ଥିଲି ଯେବେ ମୋର ପଦମର୍ଯ୍ୟାଦା ସମ୍ପତ୍ତି,
ଆସି ପାଶେ ଲୋକେ ମିଷ୍ଟ କଥା କହିଛନ୍ତି ।
ସେହି ମିଷ୍ଟ କଥା ଶୁଣି ଯାଉଥିଲି ଭୁଲି,
ନ ବୁଝିଲି ଏହା ସ୍ୱାର୍ଥ ସାଧନର ବୋଲି !
ମୁଁ ତ ଏବେ ସେହି ମିଷ୍ଟ କଥାର କଙ୍ଗାଳ,
ଥାଉ ମିଷ୍ଟ—ଲୋକେ ବୃଥା ଦେଉଛନ୍ତି ଗାଳି ।
ସନ୍ତପ୍ତ, ଉନ୍ମତ୍ତ, ଦଗ୍ଧ ହୃଦୟ ଉନ୍ମନା,
କପଟ କଥାରେ ଲଭିପାରେ କି ସାନ୍ତ୍ୱନା ?
ହତାଶ ଉଦାସ ଦୁଃଖ ଯନ୍ତ୍ରଣା କାଳରେ
ମିଷ୍ଟ ବାକ୍ୟ ତୁଷ୍ଟ କେହି ନ କଲି ତ ଥରେ ।
ବନ୍ଧୁରୂପେ, ଜ୍ଞାନୀରୂପେ ଆସି କେତେ ଜଣ
ସଜାଇ ରଞ୍ଜାଇ କେତେ ବୋଲନ୍ତି ବଚନ !
ସେଥିରେ କି ମାନେ ମନ ? ବରଞ୍ଚ ଯନ୍ତ୍ରଣା
ବଢ଼େ, ମଣେ ଏ ତ କପଟତା ପ୍ରତାରଣା ।
କୋକିଳ କାକଳି କିମ୍ବା ସୁକଣ୍ଠ ସଙ୍ଗୀତ
ଶୁଣି ତ ଶୀତଳ ହେଲି ନାହିଁ ଦଗ୍ଧ ଚିତ୍ତ ?
ପ୍ରତ୍ୟୁତ ନିଦ୍ରିତ ହୃଦ ମଧ୍ୟେ ଦୁଃଖରାଶି
ଶୁଣି ସେ ସଙ୍ଗୀତ ତାନ ଉଠେ ଭାସି ଭାସି ।

ଯିବ କାହା ପାଶେ ଶୁଣିବାକୁ ମିଷ୍ଟ କଥା ?
ଜଗତ ଯେ ପୂର୍ଣ୍ଣ ସ୍ୱାର୍ଥପରତା ଶଠତା !

ଯାହାପାଇଁ ଥିଲି ପ୍ରାଣ ଦେବାକୁ ପ୍ରସ୍ତୁତ,
ତାହାଙ୍କ ବେଭାର ଦେଖ ଆଶ୍ଚର୍ଯ୍ୟ ଅଦ୍ଭୁତ !
ହୃଦୟ ନିଭୃତ ସ୍ଥଳେ ଯାକୁ ରତ୍ନଧନ
କରି ରଖିଥିଲି ଯାକୁ ଜୀବର ଜୀବନ,

ସର୍ବସ୍ୱ ଦେଇଛି ଢାଳି ଯାହା ମଙ୍ଗଳରେ,
ଡାକିଛି ପ୍ରଭୁଙ୍କୁ କେତେ ବସି ନିର୍ଜନରେ
ମୁଖୁ ଅର୍ଦ୍ଧଗ୍ରାସ କାଢ଼ି ଦେଇଛି ଖୁଆଇ,
ଆପଣା ପିନ୍ଧିଲି ବାସ ଦେଇଛି ପିନ୍ଧାଇ ।

ନିମେଷ ବିଚ୍ଛେଦ ହେଲେ ଲଭେ ମୁଁ ମରଣ;
ସ୍ୱର୍ଗ ଅନୁଭବେ ହେଲେ ପୁନଶ୍ଚ ମିଳନ ।
ଯାହାପାଇଁ କରିଛି ମୁଁ ଅସାଧ୍ୟ ସାଧନା,
ହବା ନିଶି କରେ ଯାହା ଉନ୍ନତି କାମନା,

ଧିକ ! ଧିକ ! ସେହି ମୋତେ କହେ କଟୁ କଥା
ମୋ ଜୀବନେ ନାହିଁ ତାର ମାୟା ବା ମମତା !
ବିଧାତା ଗଢ଼ିଲେ ରକ୍ତ ମାଂସରେ ହୃଦୟ
ପାଷାଣରୁ ବଳି ଦେଖେଁ କଠିନ ନିଶ୍ଚୟ !

ଛନ୍ତି ଲୋକ କେତେ ପଶୁ ପିଶାଚ ସମାନ,
ସ୍ୱାର୍ଥରେ ଦିଅନ୍ତି ପର ସୁଖ ବଳିଦାନ ।
ତେବେ କି ଜଗତ ସ୍ୱାର୍ଥପରତାରେ ପୂର୍ଣ୍ଣ ?
ନାହିଁ କି ସହାନୁଭୂତି, ଦେବଭାବ ଶୂନ୍ୟ ?
ପିଶାଚ ରାକ୍ଷସଧର୍ମୀ ହେଲେ ସର୍ବ ନର,
ହୁଅନ୍ତା ଯେ ଜଗତଟା ନରକ ଆକର ।
ନାହିଁ ନାହିଁ ଭ୍ରାନ୍ତ ମନ ! ଈଶ୍ୱର ରାଜ୍ୟରେ
ଅଛନ୍ତି ଦେବତା ନରନାରୀ ସ୍ୱରୂପରେ ।
ନ ଥିଲେ ସ୍ୱର୍ଗୀୟ ଭାବ ମାନବସମାଜ
ଲଣ୍ଡ ଭଣ୍ଡ ନଷ୍ଟ ହୋଇ ଯାଇଥାନ୍ତା ଆଜ ।

ଛିନ୍ନ ହୋଇଯାନ୍ତା ଲୋକସମାଜବନ୍ଧନୀ,
ଅଶାନ୍ତ ଦୁର୍ଦ୍ଦଶା ପୂର୍ଣ୍ଣ ହୁଅନ୍ତା ଅବନୀ ।
ପ୍ରତ୍ୟକ୍ଷ ଦେବତାରୂପା ଅଟନ୍ତି ଜନନୀ,
କେବଳ ତାହାଙ୍କ ମିଷ୍ଟ ବାକ୍ୟ ସୁଧା ମଣି ।
ତାଙ୍କ ମିଷ୍ଟ ବାକ୍ୟ ସଙ୍ଗେ ଦେବାକୁ ତୁଳନା
ଜଗତେ ପଦାର୍ଥ ନାହିଁ କରେ ବିବେଚନା ।
କେ ଅଛି ଜଗତେ ଆଜ ଜନନୀ ସମାନେ
ନିଃସ୍ୱାର୍ଥେ ପ୍ରସ୍ତୁତ ପୁତ୍ରପାଇଁ ପ୍ରାଣଦାନେ ?
ଆହୁରି ଅଛନ୍ତି ମଧ ଦେବୀ ଜଗତରେ,
କଦାଚିତ ବିରାଜିତା ଭାଗ୍ୟବନ୍ତ ଘରେ ।
ନ ଥିଲେ ତପସ୍ୟା ଘୋର, ସେ ଦେବୀ ଦର୍ଶନ
ପାଇବାର ଅସମ୍ଭବ ମାନବ ଜୀବନ ।
ବିପଦ ଯନ୍ତ୍ରଣା ବ୍ୟାଧି ସନ୍ତାପ କାଳରେ
ଚକିତେ ଆତଙ୍କେ ଉଭା ଥାଏ ଯେ ପାଶରେ—
ସେ ପରଶମଣି ଗୁଣ ଜାଣେ ଯେ ମାନବ,
ସ୍ୱର୍ଗୀୟ ପୀୟୂଷ କରିଅଛି ଅନୁଭବ ।

---

## ସୋଽହଂ

ସର୍ବଭୂତ ସାକ୍ଷୀଭୂତ ବ୍ରହ୍ମ ସନାତନ,
ସେହି ପରଂବ୍ରହ୍ମ ଅଂଶ ମାନବ ଜୀବନ ।
ସିନ୍ଧୁ ଜାତ ବିନ୍ଦୁମାନ ଥାଏ ପୃଥକରେ,
ସିନ୍ଧୁ ଧର୍ମାକ୍ରାନ୍ତ କିନ୍ତୁ ସମ୍ପୂର୍ଣ୍ଣ ରୂପରେ
ତ୍ରିଦଶା ବିନ୍ଦୁର—ଜଳ ବାଷ୍ପ ହିମ ପୁନଃ
ମିଳିଲେ ସିନ୍ଧୁରେ ଲୁପ୍ତ ହୁଏ ଆତ୍ମଚିହ୍ନ ।
ଜାଗ୍ରତ ସୁଷୁପ୍ତି ସ୍ୱପ୍ନ ତ୍ରିଦଶା ଜୀବନେ
ବାଷ୍ପ ଜଳ ହିମ ଦଶା ସଳିଳେ ଯେସନେ ।
ଜାଗ୍ରତ ଜଳୀୟ ଭାବ, ସୁଷୁପ୍ତି ହିମାନୀ,
ବାଷ୍ପାକାର ସ୍ୱପ୍ନଦଶା ହେଜ ମନେ ଜ୍ଞାନୀ ।
ତୁରୀୟ ଚତୁର୍ଥ ଦଶା ମାନବ ଜୀବନେ,
ସାଗର ମୁହାଣଗତ ସରିତ ଯେସନେ
ପତିତ ସାଗର-ଗର୍ଭେ ମିଶି ନାହିଁ ଜଳେ, *
ନାହିଁ ମଧ ଆତ୍ମରୂପ ଥିଲା ଯଥା ସ୍ଥଳେ ।
ଜୀବନ ତ୍ରିଦଶାତୀତ ପ୍ରକୃତି-ଅତୀତ
ତୁରୀୟ ଚତୁର୍ଥ ଦଶା ନାମେ ଅଭିହିତ ।
ମିଳିଲେ ସିନ୍ଧୁରେ ବିନ୍ଦୁ ସାଗର କେବଳଂ
ଜୀବ ଶେଷଦଶା ଶାନ୍ତଂ ଶିବଂ ଓ ମଙ୍ଗଳଂ ।

---

## ଅନନ୍ତ

ଅନନ୍ତ ଆକାଶେ ଅନନ୍ତ ବିକାଶେ
ଅନନ୍ତ ତାରକା ରାଜେ;
ଅନନ୍ତ ଭୁବନ ଅନନ୍ତ ଜୀବନ
ଅନନ୍ତ କୌଶଳେ ସାଜେ ।

ଅନନ୍ତରୁ ଆସି ଅନନ୍ତରେ ଭାସି
ଯାଏ ଅନନ୍ତ ମାର୍ଗରେ,
ଅନନ୍ତ ବାସନା ଅନନ୍ତ କଳ୍ପନା
ଲିପ୍ତ ଅନନ୍ତ କାର୍ଯ୍ୟରେ ।

ଅନନ୍ତ ବିଗରେ ଅନନ୍ତ ରୂପରେ
ଅନନ୍ତେ ଅନନ୍ତ ମେଳା,
ଅନନ୍ତ ଉତ୍ପତ୍ତି ଅନନ୍ତରେ ସ୍ଥିତି
ମହା ଅନନ୍ତର ଖେଳା ।

ଅନନ୍ତ ଐଶ୍ୱର୍ଯ୍ୟ ଅନନ୍ତ ସୌନ୍ଦର୍ଯ୍ୟ
ରୂପ ରସ ତଥା ଗନ୍ଧ,
ଅନନ୍ତ ମହାନେ ସର୍ବ ଉପାଦାନେ
ପ୍ରାଣୀ ଜୀବନ ସମ୍ବନ୍ଧ ।

---

* ସାଗର ଜଳରେ

ଅନନ୍ତାଭାବରେ ସାନ୍ତ ବିଷୟରେ
ତୃପ୍ତିଲାଭ ଅସମ୍ଭବ,
ସେ ଅନନ୍ତ ଆଶେ ଅନନ୍ତ ପ୍ରୟାସେ
ସଦା ଉଦ୍‌ବିଗ୍ନ ମାନବ ।

———

## କର୍ମଫଳ

କି ଥିଲି ? କାହିଁ ଅବା ଥିଲି ? କପାଁ ପୃଥିବୀରେ
ଜନ୍ମିଲି ? ନ ଯାଏ ଜଣା ସହଜ ବୁଦ୍ଧିରେ ।
ସମସ୍ତ ମାନବ କପାଁ ନୁହନ୍ତି ସମାନ ?
ସୁଖେ ଦୁଃଖେ ପାପ ପୁଣ୍ୟେ ପନ୍ଥା ଅନ ଆନ ?
ଅଦୃଷ୍ଟ ବା କର୍ମଫଳ ଜୀବନ ନିୟନ୍ତା,
ସର୍ବଶାସ୍ତ୍ର ଅଭିମତ—ମାତ୍ର ତନ୍ତ୍ର କଥା
ନ ପାରିଲି ଜାଣି—ଜାତ ମନରେ ସଂଶୟ—
କର୍ମ ଅଗ୍ରେ ? ଅବା ଫଳ ଅଗ୍ରେ ? ଏ ବିଷୟ ।
ପାପେ ରତ, ଧର୍ମେ ଭକ୍ତି, ଜାତ ସ୍ୱଭାବରେ—
କର୍ମଫଳ କର ଯେବେ ସିଦ୍ଧାନ୍ତ ମନରେ,
ସୃଷ୍ଟି ଆଦ୍ୟେ ସର୍ବଭୂତ ଥିଲେ ବିଦ୍ୟମାନ,
ଅବଶ୍ୟ ମୋହର ଥିଲା ଆତ୍ମା ଅବସ୍ଥାନ ।
କର୍ମକ୍ଷେତ୍ରେ ପ୍ରବେଶିବା ପୂର୍ବେ ମୋର ପ୍ରାଣ,
ଥିଲା ତ ଅପାପବିଦ୍ଧ ହୁଏ ଅନୁମାନ ।
ସର୍ବପ୍ରଥମରେ କପାଁ ଜାତ ପାପେ ରତି ?
ଯାହା ଯୋଗେ ଭୁଞ୍ଜେ ପ୍ରାଣ ଅଶେଷ ଦୁର୍ଗତି ।
ସ୍ୱଭାବେ ଜର୍ଡ଼ୀୟ ଦେହ ଯଥା ରୂପାନ୍ତର,
ଅଧ୍ୟାତ୍ମ ବିଧିକ ତଥା ? ନୁହେ ସ୍ୱତନ୍ତର ?
ନିହିତ ସୃଷ୍ଟିର ତତ୍ତ୍ୱ ନିବିଡ଼ ତମିରେ,
କରିପାର ଅନୁମାନ ସହଜ ବୁଦ୍ଧିରେ,
ଭୁଞ୍ଜେ କର୍ମଫଳ ଲୋକ ବିଧିର ବିଧାନ
ବିଧାତାରୁ ବଳି କର୍ମଫଳ କି ପ୍ରଧାନ ?
କର୍ମଫଳ ମେଣ୍ଟିବାକୁ ବିଧିର ଆୟତ୍ତ
ନାହିଁ ଯେବେ, ସ୍ଥିର କର ଏହାର ଶ୍ରେଷ୍ଠତ୍ୱ ।
ଜୀବନର ସୁଖ ଦୁଃଖ ଦାତା କର୍ମଫଳ,
ବିନାଶକ, ରକ୍ଷାକାରୀ, ସହାୟ ସମ୍ବଳ ।
କର୍ମଫଳ ପ୍ରଭାବରେ ଜୀବନର ଗତି
ବିଧି ଦ୍ୱାରା ନଷ୍ଟ ହୁଏ ନାହିଁ ତାର ଶକ୍ତି ।
(ନମସ୍ତତ୍ କର୍ମଭ୍ୟୋ ବିଧିରପି ନ ଯେଭ୍ୟଃ ପ୍ରଭବତି ।)

( ମୁକୁର ୨ୟ ଭାଗ, ୨ୟ ସଂଖ୍ୟା )

———

## ଧର୍ମ ଚତୁଷ୍ପଦ

ଜଗତ ମଧ୍ୟରେ ଯେତେ ମାନବ ସନ୍ତାନ,
ଗତ, ଆଗନ୍ତୁକ, ଯେତେ ଛନ୍ତି ବର୍ତ୍ତମାନ ।
ଧର୍ମ ମାତ୍ର ସମସ୍ତଙ୍କ ଜୀବନ ଆଧାର,
କରିଛି ଧାରଣ ଧର୍ମ ଜଗତ ସଂସାର ।
ମାନବୀୟ ଧର୍ମଶାସ୍ତ୍ର କଲେ ଆଲୋଚନା,
ଚତୁଷ୍ପଦେ ଅବସ୍ଥିତ ଧର୍ମ ଯାଏ ଜଣା ।
ବିଶ୍ୱାସ, ବୈରାଗ୍ୟ, ପ୍ରେମ, ଭକ୍ତି, ଚତୁଷ୍ପଦେ
ଅବସ୍ଥିତ ଧର୍ମ ଲୋକରକ୍ଷାର ଆସ୍ପଦେ ।
ଇସ୍‌ଲାମ ଧର୍ମୁଁ ଶିଖ ବିଶ୍ୱାସର ମର୍ମ,
ବୈରାଗ୍ୟ ଗୌରବ ଶିକ୍ଷାକାରୀ ବୌଦ୍ଧଧର୍ମ ।
ଚୈତନ୍ୟଦେବଙ୍କ ଭକ୍ତି, ଖ୍ରୀଷ୍ଟଧର୍ମ-ପ୍ରୀତି,
ଏହି ଚାରି ଧର୍ମ ଶିକ୍ଷା ଦିଏ ଚାରି ନୀତି ।
ନ ବୁଝନ୍ତି ଆତ୍ମପର ବ୍ରହ୍ମଜ୍ଞାନୀଗଣ,
ସର୍ବଶାସ୍ତ୍ର ସାରତତ୍ତ୍ୱ କରନ୍ତି ଗ୍ରହଣ ।

———

## ଅଚିନ୍ତ୍ୟ ଶକ୍ତି

ବିଚିତ୍ର ରଚିତ ଏହି ଅନନ୍ତ ବ୍ରହ୍ମାଣ୍ଡ,
ଆଦ୍ୟନ୍ତ ଅପରିଜ୍ଞେୟ ଅଦ୍‌ଭୁତ କାଣ୍ଡ !
କେ ତୁମ୍ଭେ, କିଏ ବା ମୁହିଁ, ଆସିଅଛୁଁ କାହୁଁ,
ଯିବୁଁ କାହିଁ, ଅଛୁଁ କପାଁ ? ତତ୍ତ୍ୱ ଜାଣୁଁ ନାହୁଁ ।

କରିଛନ୍ତି ଆର୍ଯ୍ୟଋଷି ଯନ୍ଧାନ ବିସ୍ତର,
ପ୍ରକୃତ ପ୍ରଶ୍ନରେ କେବା ଦେଇଛନ୍ତି ଉତ୍ତର ?
ଊନବିଂଶ ଶତାବ୍ଦୀର ୟୁରୁପୀ-ବିଜ୍ଞାନ,
ମୂଳତତ୍ତ୍ୱ ପ୍ରକାଶରେ ଦେଖୁଛୁଁ ଅଜ୍ଞାନ ।
ଦର୍ଶନ ନୟନହୀନ, ବିଜ୍ଞାନ ନିର୍ବାକ,
ଆଉ ବା ପାଇବ କାହିଁ ଘାଣ୍ଟି ଗ୍ରନ୍ଥରାକ !
ଅସୀମ ବ୍ରହ୍ମାଣ୍ଡ କେ ବା କରିଛି ନିର୍ମାଣ,
କିପରି ଜାଣିବ ତୁଚ୍ଛ ମାନବ ଅଜ୍ଞାନ ?
ଭ୍ରାମ୍ୟମାନ ସୌର ସୃଷ୍ଟି ଅନନ୍ତ ଆକାଶେ,
ସୁନିୟମେ କି ଉଦ୍ଦେଶ୍ୟ ସାଧନ ସକାଶେ ?
ପ୍ରଭାତେ କାଞ୍ଚନ କାନ୍ତି ବିକାଶି ତପନ
ଜଗତକୁ ଦେଲା କିବା ନୂତନ ଜୀବନ !
ଗାଇଲେ ମଙ୍ଗଳ ଗୀତ ବିହଙ୍ଗମଦଳ,
ନବୋଦ୍ୟମେ କାର୍ଯ୍ୟେ ବ୍ୟସ୍ତ ମାନବ ସକଳ ।
ଆମୋଦିତ ବନସ୍ଥଳୀ କୁସୁମପରାଗେ,
ଧାବିତ ମଧୁପବୃନ୍ଦ ନବ ଅନୁରାଗେ,
ହେ ମାନବ, ଯେଉଁ ଦିଗ ଦେଖ ଲକ୍ଷ୍ୟ କରି
ସର୍ବତ୍ର ପ୍ଲାବିତ ହୋଇଛି ଆନନ୍ଦଲହରୀ ।
ଆନନ୍ଦେ ଆନନ୍ଦେ ପରିପୂର୍ଣ୍ଣ ସର୍ବ ସ୍ଥାନ,
କାହାର ପ୍ରକାଶେ କୀର୍ତ୍ତି ଅନନ୍ତ ମହାନ ?
କିପାଁଇ, କାହାର ପାଇଁ ଏ ଅନନ୍ତ ରାଜ୍ୟ ?
କେ ମହାମହିମ ଶିଳ୍ପୀନିର୍ମିତ ଏ କାର୍ଯ୍ୟ ?
ମଧ୍ୟାହ୍ନେ ପ୍ରଖର ତୀବ୍ର ତପନ କିରଣ
ନିବାରଣ କରେ ସୁଶୀତଳ ସମୀରଣ !
ନିୟମେ ତପନ କରି କାର୍ଯ୍ୟ ସମାଧାନ
ପଶ୍ଚିମ ଆକାଶ ପ୍ରାନ୍ତେ ହେଲେ ଅନ୍ତର୍ଦ୍ଧାନ ।
ଦିବା କାର୍ଯ୍ୟେ କ୍ଳାନ୍ତ ଜୀବ ବିଶ୍ରାମ କାରଣେ
ଆଚ୍ଛାଦିତ ପୃଥ୍ୱୀ ଅନ୍ଧକାର ଆବରଣେ ।
ପୁଣି ଦେଖ ଏ ଜଗତ କିବା ଭୟଙ୍କର !
ଯାଏ ଜଣା ଯଥା ଦୁଃଖ ଯନ୍ତ୍ରଣା ଆକାର !
ଯେତେ ସୁଖକର ଦ୍ରବ୍ୟ ଦେଖୁଁ ଜଗତରେ,
ପ୍ରଚ୍ଛନ୍ନ ରହିଛି ଦୁଃଖ ସର୍ବ ଅଭ୍ୟନ୍ତରେ ।

କୁସୁମରେ କୀଟ, ବିଷ ଅମୃତ ମଧ୍ୟରେ,
ଜୀବନରେ ପାପ ତାପ, ପୂର୍ଣ୍ଣ ମରଣରେ,
ପବିତ୍ର ପ୍ରଣୟ ପାଶେ ଦ୍ୱେଷ ଅତ୍ୟାଚାର,
ଆନନ୍ଦ ଉତ୍ସବ ଅାଳୟରେ ହାହାକାର !
ରୋଗର ଯାତନା, ସାଧୁ ଭକ୍ତର ଲାଞ୍ଛନା,
ସ୍ୱଜନର ଅପମାନ, ଦୁର୍ବଳ ଗଞ୍ଜନା,
ନିସର୍ଗ ଘଟଣା କେତେ ବିବିଧ ପ୍ରକାର
ପୃଥିବୀ ସୌନ୍ଦର୍ଯ୍ୟ କରି ଦିଏ ଛାରଖାର !
ଦିବସ ଆଲୋକ ପଶ୍ଚାତରେ ଅନ୍ଧକାର,
ଆନନ୍ଦ ପଶ୍ଚାତେ କେତେ ଭୀଷଣ ଆକାର
ବସ୍ତୁ ବିଦ୍ୟମାନ, ନିତ୍ୟ ଦେଖୁଁ ପ୍ରତ୍ୟକ୍ଷରେ,
ବିଜଡ଼ିତ ସୁଖ ଦୁଃଖ ଛନ୍ଦି ପରସ୍ପରେ ।
ସୁନ୍ଦର ସୁମନେ ପ୍ରସ୍ଫୁଟିତ ଯେ ବନରେ,
ଭୀଷଣ ଭୁଜଙ୍ଗ ଛନ୍ଦି ଶାୟିତ ବିବରେ ।
ଯେଉଁ ମଧୁକର କରେ ପୀୟୂଷ ପ୍ରଦାନ,
ବିନ୍ଧେ ପୁଣି ବିଷମୟ ଭୀଷଣ ବିଷାଣ !
ଜଗତ ଜୀବନ ଜଳ ଯେଉଁ ବାରିଦରେ,
ପ୍ରଚ୍ଛନ୍ନ ଭୀଷଣ ବଜ୍ର ତାହା ଅଭ୍ୟନ୍ତରେ ।
ରତ୍ନାକର ଗର୍ଭେ ମଧ୍ୟେ ଭୁଜଙ୍ଗ ସଞ୍ଚାର,
କମନୀୟ ଦେହେ ବ୍ୟାଧି ବିବିଧ ପ୍ରକାର ।
ଦିବା ନିଶି ସୁଖ ଦୁଃଖ ବିଷାଦ ଉଲ୍ଲାସେ
ପୂର୍ଣ୍ଣ ବିଶ୍ୱ, କି ଉଦ୍ଦେଶ୍ୟ ସାଧନ ସକାଶେ !
ହେ ମାନବ ! ଏଥି ତତ୍ତ୍ୱ ପାରିବ କି ଜାଣି ?
ତୁମ୍ଭେ ଯେ ଜଗତେ କ୍ଷୁଦ୍ରାଦପି କ୍ଷୁଦ୍ର ପ୍ରାଣୀ !
ଅନନ୍ତ ବ୍ରହ୍ମାଣ୍ଡ ସଙ୍ଗେ କଲେକ ତୁଳନା,
କେତେ କ୍ଷୁଦ୍ର ତୁମ୍ଭେ ସହଜରେ ଯିବ ଜଣା ।
ମାନବର କ୍ଷୁଦ୍ର ଦୃଷ୍ଟି ସୀମା ଅଭ୍ୟନ୍ତରେ,
ଘଟେ କି ଅଦ୍ଭୁତ କାଣ୍ଡ, ଦେଖ ପ୍ରତ୍ୟକ୍ଷରେ ।
ଦେଖ ଏହି ପୃଥିବୀର ବିସ୍ତାର ପ୍ରାଚୁର୍ଯ୍ୟ,
ଏହାଠାରୁ କେତେ ଲକ୍ଷ ଲକ୍ଷ ଗୁଣ ସୂର୍ଯ୍ୟ !
ଗ୍ରହ ଉପଗ୍ରହ ଯେତେ ସୌରପରିବାର,
ଅଚିନ୍ତ୍ୟ ନିୟମେ କରେ ଗଗନେ ସଞ୍ଚାର ।

କୋଟି କୋଟି ସୂର୍ଯ୍ୟ କରି ରଶ୍ମି ବିକିରଣ,
ଧାବିତ ପ୍ରବଳ ବେଗେ ଦେଖୁଁ ଅନୁକ୍ଷଣ ।
ସୂର୍ଯ୍ୟର ଉପରେ ସୂର୍ଯ୍ୟ ନିଯୁମିତ କକ୍ଷେ,
ଘୂର୍ଣ୍ଣିତ ପ୍ରଚଣ୍ଡ ବେଗେ ଦେଖୁଛୁ ପ୍ରତ୍ୟକ୍ଷେ ।
ଅକୂଳ ସାଗର ଗର୍ଭେ କେତେ ଜଳକଣା,
ମରୁକ୍ଷେତ୍ରେ ରେଣୁ କରି ପାରି କି ଗଣନା ?
ଗଗନେ ଅଚିନ୍ତ୍ୟ କାର୍ଯ୍ୟ ସେହିପରି ଜାଣ,
ଅନନ୍ତ ଅନନ୍ତ ଇତସ୍ତତଃ ବିଦ୍ୟମାନ ।
ନାହିଁ ଭେଦ ସ୍ଥୂଳ ସୂକ୍ଷ୍ମ, ଆଲୋକ ଅନ୍ଧାର
ଶ୍ୱେତ କୃଷ୍ଣ, ପାପ ପୁଣ୍ୟ ସର୍ବ ଏକାକାର ।
ଦୃଷ୍ଟି ସୀମା ରେଖା ପ୍ରାନ୍ତେ କଳ୍ପନାର ରାଜ୍ୟ,
ତଦନ୍ତେ ଅସୀମ ମଧ୍ୟ ବିଶ୍ୱପତି କାର୍ଯ୍ୟ ।
ସ୍ଥାନ ତହିଁ କୋଟି କୋଟି ଚନ୍ଦ୍ର ସୂର୍ଯ୍ୟ ଜ୍ୟୋତି
ସ୍ଥିର ବିକାଶିତ ମାତ୍ର ପରଂବ୍ରହ୍ମଦ୍ୟୁତି ।
ଲଘୁ ଗୁରୁ ନାହିଁ ଭେଦ, ଜ୍ଞାନ ବା ଅଜ୍ଞାନ,
ଦକ୍ଷିଣ ଉତ୍ତର, ପୂର୍ବ ପଶ୍ଚିମ ସମାନ ।
ଅଛୁ ସର୍ବ ବିଦ୍ୟମାନ, ନାହିଁ ଭେଦାଭେଦ,
ମାନବ କି କରି ପାରେ ସେ ରହସ୍ୟ ଭେଦ ?
ଏ ସମସ୍ତ ଭାବି ସ୍ତବ୍‌ଧ ଚିତ୍ତ ମନ ପ୍ରାଣ,
ଦେଖୁଁ ମାତ୍ର ବିରାଜିତ ପ୍ରଭୁ ଭଗବାନ ।
ଭୟେ ଭକ୍ତି ଚିତ୍ତେ ନମେଁ ପ୍ରଭୁ ଶ୍ରୀଚରଣେ ।
ଅଚିନ୍ତ୍ୟାବ୍ୟକ୍ତରୂପାୟ, ଦେବ ବିଶ୍ୱାତ୍ମନେ ।

———

## ପାଷାଣ ପ୍ରତିମା

ପାଷାଣ ମନ୍ଦିରେ ପାଷାଣ ଦେବତା
ବିରାଜିତ ସିଂହାସନେ ।
ଆକୁଳ ଅନ୍ତରେ ଭକ୍ତ ବିନୟରେ
ପୂଜି କୁସୁମ ଚନ୍ଦନେ,

ଦେବତାଙ୍କଠାରେ ମାନସ ବାସନା
ଜଣାଇଲି କେତେ ଥର,
ପୋଷି କେତେ ଆଶା ମନରେ ଭରସା
ଲଭିବି ଦେବତା ବର ।

ଆସେଁ ନିତି ନିତି, ପ୍ରଭୁପଦେ ଭକ୍ତି
ରଖି କାତର ନୟନେ,
ଅନାଏଁ ଶ୍ରୀମୁଖ, ଖଣ୍ଡି ଦେବେ ଦୁଃଖ,
ଆଶା ଆକୁଳ ଜୀବନେ ।

ଆହା ବଡ଼ମନା ପ୍ରଭୁଙ୍କ କରୁଣା
ଚିହ୍ନ ତ ଦେଖିଲି ନାହିଁ,
ପ୍ରତ୍ୟହ ସମାନ ଦେବତା ବୟାନ
ଦେଖିଛୁ ନିରେଖି ଚାହିଁ ।

ସେବା ବା ଆରତି ସମୟରେ ମୂର୍ତ୍ତି
ଦେଖେଁ ଯେରୂପ ଭାବରେ,
ନ ପୂଜି ଚରଣ କରେ ଦରଶନ
ସଦା ସମାନ ରୂପରେ ।

ଆସି ପ୍ରଭୁ ପାଶ ନିୟତ ନିରାଶ
ହୋଇ ତଥାପି କାମନା—
କେ ଜାଣେ ବା କେବେ ସୁପ୍ରସନ୍ନ ହେବେ
ହରିବେ ହୃଦବେଦନା ।

କେବେ ଭାଳେଁ ମନେ କିପାଁ କି କାରଣେ
ସେବିବି ପ୍ରଭୁ ଚରଣ,
କି ଅଲକ୍ଷ୍ୟ ଆଶେ ନିତି ନିତି ଆସେଁ
ପ୍ରାଣ କରେ ଆକର୍ଷଣ ।

———

## କେଉଁ ଜାତି ବର୍ବର ?

( ରାଗ—ଆଶାବରୀ )

"ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ପ୍ରକୃତି"
ଲଲାଟେ ସୂର୍ଯ୍ୟର ବିନ୍ଦୁ, ସୁନ୍ଦର ଆକୃତି ।
ସକଳ ବିଜ୍ଞାନ, ଜ୍ଞାନ, ସକଳ ସୌନ୍ଦର୍ଯ୍ୟ,
ବିଭବ, ସମ୍ପଦ, ବିତ୍ତ, ସକଳ ଐଶ୍ୱର୍ଯ୍ୟ,
ସାମର୍ଥ୍ୟ, ଗୌରବ, ସର୍ବ ଅପରୂପ ଶିରୀ
ସୂର୍ଯ୍ୟ କିରଣରୁ ପ୍ରାପ୍ତ ହୁଏ ବସୁନ୍ଧରୀ ।
ପ୍ରକୃତିର ଶିରୀ ସୂର୍ଯ୍ୟକିରଣ ଯେମନ୍ତ,
ତେସନେ ରମଣୀ ଶିରୀ ଅଟଇ ସତୀତ୍ୱ ।
ବାଳକମାନଙ୍କ ଶିରୀ ଅଟେ ସରଳତା,
ମାନବଜାତିର ବାକ୍ୟ ଶିରୀ ମଧୁରତା ।
ପୁରୁଷ ଶ୍ରୀ ଅଟେ ବୀର୍ଯ୍ୟ, ଜାତି ଶିରୀ ଭାଷା,
ଯାହା ଯେନ ଜାତି କରେ ଉନ୍ନତି ପ୍ରତ୍ୟାଶା ।
ଭାଷା ହିଁ ଜୀବନୀ ଶକ୍ତି ଜାତିମାନଙ୍କର,
ଯେଉଁ ଜାତି ଭାଷାହୀନ ସେ ଜାତି ବର୍ବର ।

———

## ଜନନୀ ଉତ୍କଳ-ଭାଷା

( ରାଗ—ଭୈରବ ଝୁଲା )

ମୋ ଜୀବନ ସାର ଧନ ଜନନୀ ଉତ୍କଳ ଭାଷା ।
ଆସ ଗୋ ମା ! କରେ ପୂଜା ପୂର୍ଣ୍ଣ ହେଉ ପ୍ରାଣ ଆଶା ।
ଭକ୍ତି, ଶ୍ରଦ୍ଧା, ସ୍ନେହ, ମାୟା, ହୃଦୟ ସ୍ୱର୍ଗୀୟ ଧନ,
ଜନନି ଗୋ ! କୃପା କରି କରୁ ତୁହି ବିତରଣ ।
ଜ୍ଞାନ, ବିଦ୍ୟା, ସୁଖ, ଭାଗ୍ୟ ଯାହା କିଛି ମନୁଷ୍ୟତ୍ୱ,
ଜନନି ! ପ୍ରସାଦେ ତବ, ଅନୁଭବେଁ ସାରତତ୍ତ୍ୱ ।
ବିଦ୍ୟାହୀନ, ଶକ୍ତିହୀନ, ଧନହୀନ, ଅକିଞ୍ଚନ,
ଆହା ମା ! କି ଦେଇ ମୁହିଁ ବନ୍ଦିବି ଗୋ ତୋ ଚରଣ ?
ଆତ୍ମଶକ୍ତି ଅନୁସାରେ କରୁଛି ମା ତୋ ବନ୍ଦନା,
ନ ବୁଝିଲ ପାଷଣ୍ଡ ମୁଁ ଏହା ଲୋକ ବିଡ଼ମ୍ବନା ।
ଦେଇ ମା ଗୋ ! ଭକ୍ତିପୁଷ୍ପ ସେବିବି ଚରଣ ତୋର
ହେଉ ପଛେ ସେ ସୁମନ ଗନ୍ଧହୀନ ଅସୁନ୍ଦର ।
ଏତିକି ପ୍ରାର୍ଥନା ମାତଃ ! କରୁଅଛି ବାରେ ବାରେ,
ଜୀବନ ଅନ୍ତିମ କାଳ ଗତ ହେଉ ତୋ ସେବାରେ ।

———

## ଦେବୀପ୍ରତିମା ବିସର୍ଜନ

( ରାଗ—ମଙ୍ଗଳ )

"ଗଚ୍ଛ ଗଚ୍ଛ ଗୃହ୍ଣଂ ଗଚ୍ଛ ସ୍ୱସ୍ଥାନେ ପରମେଶ୍ୱରି !"
ସୁଖଦେ ବରଦେ ଦେବି, ଆସି ଧରାତଳେ
ବର ଦେଇ ଯାଅ ମାତଃ, ମାନବମଣ୍ଡଳେ ।
ଭକ୍ତିପୁଷ୍ପ ଦେଇ ମାତଃ, କରୁଛି ସମ୍ମାନ,
ଯେନି ଅନୁଚର କରି ସ୍ୱସ୍ଥାନେ ପ୍ରସ୍ଥାନ ।
ଦେଇ ହୁଳହୁଳି ଆସ କୁଳବଧୂଗଣେ,
ଭକ୍ତି-ପୁଷ୍ପାଞ୍ଜଳି ଦିଅ ଦେବୀଙ୍କ ଚରଣେ ।
ଗଳ-ଲଗ୍ନ-ବାସେ କରି ଦେବୀଙ୍କୁ ପ୍ରଣତି,
ମାଗ ବର ଧନୈଶ୍ୱର୍ଯ୍ୟ ସନ୍ତାନ ସନ୍ତତି ।
ପଞ୍ଚଶସ୍ୟ ବିଲ୍ୱପତ୍ର ନବ ଦୂର୍ବାଦଳ ।
ଦେଇ ମୁଁ ପୂଜିବି ଦେବୀ ଚରଣେ-କମଳ ।
ପ୍ରଣତି ମା ଶୈଳସୁତେ ଦାନବନାଶିନୀ ।
ମୋ ପ୍ରତି ହେଉନ୍ତୁ ଭକ୍ତିମୁକ୍ତିପ୍ରଦାୟିନୀ ।
ଆଦିତ୍ୟାଦି ନବଗ୍ରହ ଦିଗପାଳଗଣେ
ଭକ୍ତିଭରେ ହେଉଅଛି ପ୍ରଣତ ଚରଣେ ।
ଗଣେଶାଦି ପଞ୍ଚ ଦେବତାଙ୍କୁ ବାରମ୍ବାର
ବେନି କର ଯୋଡ଼ି କରୁଅଛି ନମସ୍କାର ।
ଶିବପ୍ରିୟେ ! ଯେନି ସର୍ବ ଦେବଦେବୀଗଣ
ଦେଉଛି ମେଲାଣି, ଯାଅ କୈଳାସଭବନ ।
ବିସର୍ଜନ ଦେଲି ଏବେ ଯାଆନ୍ତୁ ପ୍ରତିମା,
ଗାଉଥିବି ବସି ଜଗନ୍ମାତାଙ୍କ ମହିମା ।

———

## ପ୍ରେମ-ସଙ୍ଗୀତ

( ରାଗ—କଳହଂସ କେଦାର )

ଶୁଣ ଶୁଣ ହେ ଭାଇ ପ୍ରେମ-ସଙ୍ଗୀତ,
ଚିରକାଳ କି ତୁମ୍ଭେ ଥିବ ନିଦ୍ରିତ ?
ଜାପାନ ଇଉରୋପ ଆମେରିକାନ
କେମନ୍ତେ ଧରିଛନ୍ତି ସଙ୍ଗୀତତାନ ?
ଜୀବନ୍ତ ଧର୍ମବଳେ ଉଦାର ପ୍ରାଣେ
ଧାବିତ ଦବାନଳି ସେ ଲୋକମାନେ ।
ରକ୍ଷା କରିବାପାଇଁ ଦେଶ-ଗୌରବ
ତୁମ୍ଭେ କି ଏ କାଳରେ ଥିବ ନୀରବ ?
କୁତ୍ସିତ ଜାତିପ୍ରଥା ପକାଅ ଭାଙ୍ଗି ,
ସମର୍ପ ମନ ପ୍ରାଣ ସ୍ୱଦେଶ ଲାଗି ।
ନ ଭୁଲ ଭାଇ ତୁମ୍ଭେ ଆର୍ଯ୍ୟସନ୍ତାନ,
ନ ରହ ନିଶ୍ଚେଷ୍ଟରେ ପଶୁ ସମାନ ।
ପବିତ୍ର ଆର୍ଯ୍ୟାବର୍ତ୍ତେ ଆଶ୍ରମ ସ୍ଥାନେ
ଯେ ଗୀତ ଗାଇଥିଲେ ମହର୍ଷିମାନେ,
ଧର ସେ ଗୀତଗାନ ହେ ଭ୍ରାତା ସର୍ବ,
ସେ ମହାବୀଜ ମନ୍ତ୍ର ଆଦି ପ୍ରଣବ ।
ସ୍ୱଦେଶ ଏକ ପିତା ଶ୍ରୀ ଭଗବାନ,
ସମସ୍ତେ ଆମ୍ଭେମାନେ ତାଙ୍କ ସନ୍ତାନ ।
ଆସନ୍ତୁ ଭାଇ ଭାଇ ମିଳି ସମସ୍ତେ
ବିସର୍ଜି ଭେଦବୁଦ୍ଧି ପବିତ୍ର ଚିତ୍ତେ ।
ବସି ଜନନୀ ମାତୃଭୂମି କୋଳରେ
ମିଳି ସମସ୍ତ ଭାଇ ଏକ ସଙ୍ଗରେ
ଚାହିଁବା ହେଉ ମାତୃଭୂମି ଉନ୍ନତି,
ଖଣ୍ଡନ ହେଉ ଦେଶବାସୀ-ଦୁର୍ଗତି ।
ରହିବ କେତେ କାଳ ମଳିନ ବେଶେ ?
କୁସଂସ୍କାର ପୂରି ତ ଥିବ କି ଦେଶେ ?
ଆଦର୍ଶ ଦେଖି ଭାଇ ସଭ୍ୟ ଜଗତେ
ଆସନ୍ତୁ ଅଣ୍ଟା ଭିଡ଼ି ଲାଗୁଁ ସମସ୍ତେ ।
ହିମାଦ୍ରି ପାଦଦେଶେ ନୈମିଷାରଣ୍ୟେ
ଯେ ଗୀତ ଗାଇଥିଲେ ମହର୍ଷିଗଣେ,
ଧର ହେ ଭ୍ରାତୃଗଣ ସେ ଗୀତତାନ,
ସଭ୍ୟମଣ୍ଡଳୀ ମଧ୍ୟେ ଲଭ ସମ୍ମାନ ।

---

## ମୋହର ଶତ୍ରୁ

ନିର୍ଭୟ ଚିତ୍ତେ ରହି ପାରିଲି ନାହିଁ —
ବଇରିଦଳ ବେଢ଼ି ଅଛନ୍ତି ମୁହିଁ ଯେ ।
କିଞ୍ଚିତ ମାତ୍ର ହେଲେ ଅସାବଧାନ,
ସହଜେ ମୋର ଆସି ବଧିବେ ପ୍ରାଣ ଯେ । ୧ ।

ଭୂଗର୍ଭ ବିଳ ମଧ୍ୟେ କୁଣ୍ଡଳୀ ଫଣୀ
ବାରିଦକୋଳେ ଲୁଚିଅଛି ଅଶନି ଯେ ।
ବ୍ୟାଘ୍ର ଭଲ୍ଲୁକ ବନେ, କୁମ୍ଭୀର ଜଳେ,
ଧନଲୋଭେ ପ୍ରାନ୍ତରେ ତସ୍କରଦଳେ ଯେ । ୨ ।

କେ ଲୋକ ପ୍ରତି କଲେ ମୁଁ ଅତ୍ୟାଚାର,
କରିବ ନିଶ୍ଚେ ଆସି ମୋତେ ପ୍ରହାର ଯେ ।
ଅସଂଖ୍ୟ ବ୍ୟାଧି ଦେହେ ଛନ୍ତି ପ୍ରଚ୍ଛନ୍ନ,
କରିବେ ସହଜରେ ନାଶ ଜୀବନ ଯେ । ୩ ।

ନ କରେ ଭୟ ଏହି ସର୍ବ ଶତ୍ରୁକୁ,
କରିବେ ସିନା ନାଶ ମୋର ଦେହକୁ ଯେ ।
ଦେହ ସକାଶେ ଏତେ ଚିନ୍ତା କପାଇଁ ?
ଯାହା କି ଚିରକାଳ ରହିବ ନାହିଁ ଯେ । ୪ ।

ତଥାପି ମୁହିଁ ଯେବେ କରେ ଯତନ,
ବଇରି-କରୁଁ ରକ୍ଷା ହେବ ଜୀବନ ଯେ ।
ମାତ୍ର ହୃଦୟେ ମୋର ଶତ୍ରୁଙ୍କ ବାସ,
କରିବେ ଆତ୍ମା ଦେହ ଉଭୟ ନାଶ ଯେ । ୫ ।

ମାତ୍ସର୍ଯ୍ୟ, କାମ କ୍ରୋଧ, ଲୋଭ ଓ ମୋହ,
ମଦ ପ୍ରଭୃତି ରିପୁ ପ୍ରବଳ ଛଅ ଯେ ।
କରନ୍ତି ନିତ୍ୟ ମୋହ ହୃଦୟେ ବାସ,
କରିବେ ଆତ୍ମା ସଙ୍ଗେ ଦେହକୁ ନାଶ ଯେ । ୬ ।

———

## ଉତ୍‌ଥାନ ସଙ୍ଗୀତ

(ନଷ୍ଟବାଣୀ ବୃତ୍ତ)

ଉଠ ଭାଇମାନେ, ଗୃହେଁ ଆଉ ମଳ,
ଜାତିର ଦୁର୍ଦ୍ଦଶା ପଡ଼ିଲା ଯେ ବଳ ।
ଶୁଣ ହାହାକାର ପଡ଼ିଛି ଦେଶରେ,
ହା ଅନ୍ନ ! ହା ଅନ୍ନ ! ସକଳ ମୁଖରେ ।
ଗଞ୍ଜନା ଭର୍ତ୍ସନା ଅନ୍ୟ ଜାତିଠାରେ
ପାଇ ଶୁଣି କି ହେ ନ ଭାଳୁଛ ବାରେ ?
ପଢ଼ ରାଜଭାଷା ଅଛି ତହିଁ ଲାଭ,
ମାତ୍ର ନ ହରାଅ ଜାତୀୟ ସ୍ୱଭାବ ।
ହେବ ଭାଲ କାଳେ ସଭ୍ୟ ଭବ୍ୟ ପରି ?
ଆଚାର ନ ବସ ପରର ପସରି ।
ନ କରିଲେ ମାତୃଭାଷାର ଉନ୍ନତି,
ଘୁଞ୍ଚିବ କି କେବେ ଦେଶର ଦୁର୍ଗତି ?
ଉଠ ଉଠ କର ସାହସ ସମ୍ବଳ,
ସାଧିବ ସ୍ୱକାର୍ଯ୍ୟ ଆପଣେ କେବଳ ।

———

## କବିତା ବିହଗୀ

( ରାଗ — ମଙ୍ଗଳ )

ଭଗବତୀ ବୀଣାପାଣି ଶ୍ରୀହସ୍ତ ପାଳିତା,
ତ୍ରିଭୁବନସଞ୍ଚାରିଣୀ ବିହଗୀ କବିତା ।
ଆଶ୍ରମରେ ଧ୍ୟାନମଗ୍ନ ବାଲ୍ମୀକି ମହର୍ଷି
ମାନସ-ମନ୍ଦିରେ ନୀଡ଼ ନିରମିଲେ ବସି ।
ସେ ଅମର ବିହଗୀର କଳ୍ପନା ଜନନୀ,
ପ୍ରତିଭା ମାନସଭୂଷା, ଧାତ୍ରୀସ୍ୱରୂପିଣୀ,—
ସପ୍ତ ସ୍ୱର ସପ୍ତ ପକ୍ଷ, ଅକ୍ଷର ଦେହରେ,
କୁତୂହଳେ ବିହରିଲେ ମହର୍ଷି ହସ୍ତରେ ।
ଛନ୍ଦ ଅଳଙ୍କାରେ ଅଙ୍ଗ କରି ବିମଣ୍ଡନ
ଏଥୁଅନ୍ତେ ଭୂମଣ୍ଡଳେ କଲେ ବିଚରଣ ।
ମହର୍ଷି ବ୍ରହ୍ମର୍ଷିଗଣେ ସରସ୍ୱତୀକୂଳେ,
ସାମବେଦ ଗାଇଥିଲେ ଦେବୀ ଅନୁକୂଳେ ।
ସୁଧାମୟ ଇତିବୃତ୍ତ ସ୍ୱର୍ଗ ସମାଚାର,
ମାନବମଣ୍ଡଳେ କଲେ ଜଗତେ ପ୍ରଚାର ।

———

## କର୍ତ୍ତବ୍ୟ ପାଳନ

( ରାଗ—ମଙ୍ଗଳ )

ଏକ ଦୁଇ କରି ଦିନ ଯାଉଅଛି ବନ୍ଧୁ,
କିପାଇଁ ନୀରବ ହୋଇଅଛ ବସି ରହି ?
କର୍ତ୍ତବ୍ୟସାଧନ ସେ ତ ପ୍ରକୃତ ଜୀବନ,
ଆଳସ୍ୟେ ସମୟ କ୍ଷେପ ଆତ୍ମାର ଦହନ ।
ପୃଥିବୀ ଦେଇଛି ଯେତେ ଦ୍ରବ୍ୟ ତୁମ୍ଭ ପାଇଁ,
ବିଚାରି ତ ପରିଶୋଧ କରିଛ କି ନାହିଁ ?
ଶୈଶବକାଳରେ ଥିଲ ତୁମ୍ଭେ ଅସମର୍ଥ,
ତୁମ୍ଭର ଯା ଲୋଡ଼ା ପୃଥ୍ୱୀ ଦେଇଛି ସମସ୍ତ ।
ଯୌବନ ଅର୍ଦ୍ଧେକ ପ୍ରାୟ ଗିବ ତ ନିଦ୍ରାରେ,
ପୁଣି ଅସମର୍ଥ ହେବ ବୃଦ୍ଧ ଅବସ୍ଥାରେ ।
ଯେତେ କାଳ ପାଇଥିଲ ସମର୍ଥ ଜୀବନ,
ବିଚାରି ତ କରିଛ କି କର୍ତ୍ତବ୍ୟ ସାଧନ ?
ଦିନ ଯାଏ ଧୀରେ ଧୀରେ ଭାଳିଛ ମନରେ,
ଅନାଅ ପଛକୁ ଯାଏ କେତେ ଚଞ୍ଚଳରେ !

———

## ଶାନ୍ତିର ଗୌରବ

( ରାଗ—ମଙ୍ଗଳ )

କର ହିଂସା ଦିଅ ଗାଳି ମନକୁ ଯା ଆସେ,
ମୁଁ ତ ଆଉ ଯାଉ ନାହିଁ ପ୍ରତିହିଂସା ପାଶେ ।
ଜୀବନଟାଯାକ ପ୍ରତିହିଂସା ଘେନି ପରି,
କରି ବସିଥିବି ଭାଇ ବଣିଜ ପସରି ?
ପ୍ରତିହିଂସାନଳ ଜାଳି ମନେ ପ୍ରଥମରେ
ହାଣିବି ବିଷାକ୍ତ ବାଣ ଆନ ହୃଦପୁରେ ?
ଏଥିରୁ ଯା ଜାତ ସୁଖ ଗଲାଣି ତ ଜଣା,
ବିସର୍ଜନ ଦେଇଅଛି ମନୁ ସେ ମନ୍ତ୍ରଣା ।
ଏକାବେଳେ ଭାଙ୍ଗିଛି ତ ମନରୁ ସେ ଭ୍ରାନ୍ତି,
ବଢ଼ିଲାଣି ଜୀବନରେ, କି ସୁଖ ଯେ ଶାନ୍ତି ।
ମିତ୍ରତା, କରୁଣା, ସ୍ନେହ, ପ୍ରୀତି, ଶାନ୍ତିପଣ,
ଅବହେଳା କଲେ ଏହା ନାହିଁ ପରିତ୍ରାଣ ।
ଜୀବନ-ସନ୍ଧ୍ୟାରେ କରିଅଛି ଅନୁଭବ,
ଅହିଂସା ପରମଧର୍ମ ଶାନ୍ତିର ଗୌରବ ।

———

## କବିର କଳିହୁଡ଼ୀ ସ୍ତ୍ରୀ

ଦିନେ କବିନାରୀ     କରି ମୁହଁ ହାରି
ବୋଇଲା କବିକୁ ଆସି,
ବୋଲେଁ ବାରମ୍ବାର     ନ ବୁଝ ସଂସାର
ଘର ଯେ ଗଲାଣି ଭାସି !

ଏ କି ପିଲ୍ଲ ଖେଳ     ତୁକ୍କା ପଦମେଳ
ବସି କର ରାତି ଦିନ,
ଯମକରେ ଶ୍ରଦ୍ଧା     ମିଳାଅ ଉପଧା
ଖୋଜି ମରି ଯତି ଚିହ୍ନ ।

ରାଗ ଭାଟିଆରୀ,     କଲ୍ୟାଣ ଆହାରୀ,
କେଦାର, କାଳୀ, କାନଡ଼ା,
ନଳିନୀ ଗଉଡ଼ା,     ବାପ୍ପା କଥାଗୁଡ଼ା
ଶୁଣି ଶୁଣି କାନତଡ଼ା ।

ବେହାଗ, ପ୍ରଭାତୀ     ଶୁଣି ଦିନ ରାତି
ଶୁଦ୍ଧ କୌଶିକ କଲ୍ୟାଣ,
କେଦାର ଗଉରୀ     ଗାଇ ପାଟି କରି
ଘରେ କଲ ଅକଲ୍ୟାଣ ।

ବସିଥାଏଁ ଗୃହୀ,     ଦିନେ ହେଲା ନାହିଁ
ଠଙ୍କା କଉଡ଼ିର ଦେଖା,
ରାଗିଣୀ କବିତା     ଲାଗେ କାନେ ମିଠା
କିଏ ପଢ଼େ ତୁମ୍ଭ ଲେଖା ?

ଥାଇ ଅନାହାରୀ     କଲ୍ୟାଣ ଆହାରୀ
କାନକୁ କି ଭଲ ଲାଗେ ?
ଯାଉ ରାଗ ଚୋଡ଼     ଦିଅ ସବୁ ପୋଡ଼ି
ଭାତ ଲୁଗା ଆଣ ଆଗେ ।

ଯେତେ ମନା କଲି,     ଲେଖ ନାହିଁ ବୋଲି
ମୋ କଥା ଶୁଣିବ କିଆଁ ?
ଏ ସବୁ ନ ଶୁଣି     ଲେଖି ବସ ପୁଣି,
କବିତା ପାଉଁଶ ନିଆଁ ।

କରି ସଟାବଟା     କେତେ ଲୁଗାପଟା
ଆଣୁଛନ୍ତି ଲୋକମାନେ,
ତୁମ୍ଭ ବୁଦ୍ଧି ନାହିଁ,     ତୁଚ୍ଛାରେ କପାଇ
ମନ ଦେଲ ଅଭିଧାନେ ?

ଦେଖ ହେ ଓକିଲେ     ଭୁଲାଇ ମକେଲେ
ଆଣନ୍ତି ଠଙ୍କା ଅରଜି,
ସେ କଥା ମନରେ     ନ ପକାଅ ଥରେ
ପଢ଼ କବିତା ଗରଜି ।

ଅରଜ କଉଡ଼ ଗାଡ଼ ଘୋଡ଼ା ଚଢ଼ି
ଯାନ୍ତି ଲୋକେ ଦରବାରେ,
ପଦ ଘୋଷି ଘୋଷି ଅଛ କୋଣେ ବସି
ତୁମ୍ଭଙ୍କୁ କେବା ପଚାରେ ?

କଲି ପ୍ରାଣ ଶେଷ ଦେଇ ଉପଦେଶ
କବିତା ଲେଖିବ ନାହିଁ,
ବସ ହୋଇ ଜଡ଼ା ଭଲ କଥାଗୁଡ଼ା
ଶୁଣିବ କାନେ କପାଁଇ ?

ସାହୁକାର କାଲି ଦେଇ ଗଲା ଗାଳି,
ସେ କଥା ଗଲଣି ଭୁଲି,
ବସିଛ ନିର୍ଜନେ, କି ଭାବୁଛ ମନେ,
କବିତା ଲେଖିବ ବୋଲି ।

ଭାତ ଶୁଖିଗଲା, ଆସ ବାବୁ ଭଲା,
ତୁଛା ତୁଛା ଯାଅ ଖାଇ,
ଶୋଇଲେ ସକଳେ ବସିବ ନିରୋଳେ
କବିତା ଲେଖିବାପାଇଁ ।

———

## ଶ୍ମଶାନ

( ରାଗ—ଚକ୍ରକେଳି )

ନୁହେ ଭୟଙ୍କର ଏହି ଶ୍ମଶାନ,
ନିର୍ମଳ ଶାନ୍ତିର ପବିତ୍ର ସ୍ଥାନ ।
ଏହି ଯେ ଜଳୁଛି ଶ୍ମଶାନେ ଚିତା,
ଏକା ଏ ଜଗତେ ଅପରାଜିତା ।
ଘୋର ଧୂମାବୃତ ଶ୍ମଶାନାନଳ,
ସାମ୍ୟ ଧର୍ମ ଶିକ୍ଷା ପ୍ରକୃତ ସ୍ଥଳ ।
ରାଜା, ମହାରାଜା, ଭିକ୍ଷୁକ, ଜ୍ଞାନୀ,
ସାଧୁ ବ୍ୟବସାୟୀ, କୃପଣ, ଦାନୀ,
ବାଳ ବୃଦ୍ଧ କନ୍ୟା ଯୁବା ଯୁବତୀ,
ସମସ୍ତଙ୍କ ଏଥି ସମାନ ଗତି ।
ଶ୍ମଶାନ ନ କରେ ବାଛ ବିଚାର,
ସମସ୍ତଙ୍କୁ କରେ ଏକ ଆକାର ।
ସମସ୍ତଙ୍କ ପାଇଁ ଏକା ଅନଳ,
ସମସ୍ତଙ୍କ ପାଇଁ ସମାନ ସ୍ଥଳ ।
ଯେଉଁ ଭସ୍ମରାଶି ଦେଖି ପଡ଼ୁଛି,
ପାରିବ କି କାହା ଭସ୍ମ ଏ ବାଛି ?
ପୃଥକ ପୃଥକଛନ୍ତି ଯେତେକ,
ଏ ସ୍ଥାନରେ ହେବେ ସମସ୍ତେ ଏକ ।
ଜରା, ବ୍ୟାଧି, କଷ୍ଟ, ମାନାପମାନ,
ସବୁ କରେ ଦୂର ଏହି ଶ୍ମଶାନ ।
ନବ ଯଉବନ ସୁନ୍ଦରପଣ,
ବଢ଼ାଇବାପାଇଁ କେତେ ଯତନ ।
ହେଉଥିଲା ଧୂଳି ଦେହରୁ ଝାଡ଼,
ଯାଉଛନ୍ତି ଏବେ ବଲୁଆ ମାଡ଼ ।
ମୋ ହୃଦୟଧନ ନେହପିତୁଳି,
ପଡ଼ିଥିଲା ତାର କଞ୍ଚିତ ଧୂଳି;
ସେହି ଭସ୍ମ ମିଶି ଗଲାଣି କାହିଁ,
ଖୋଜିଲେ କି ହେବ, ଚିହ୍ନ ତ ନାହିଁ ।
ମିଶିବ ତ ଦିନେ ତାହା ସଙ୍ଗରେ,
ରଖିଛି ଏ ଆଶା ପୋଷି ମନରେ ।
ଯେଉଁ ମହାବୀର ବିକ୍ରମେ ବଳେ·
ଶତ୍ରୁ ବଧୁଥିଲେ ସଂଗ୍ରାମସ୍ଥଳେ,
କରାଉଥିଲେ ଯେ ପୃଥ୍ୱୀ କମ୍ପିତ,
ଦେଖ ଏ ସ୍ଥାନରେ ଏବେ ନିଦ୍ରିତ ।
ଅଧିକାର ଯାର ପୃଥିବୀ ଗୋଟା,
ହୋଇ ପଡ଼ିଛନ୍ତି ପାଉଁଶ ମୁଠା ।
ଆଇଲେ ଅସଂଖ୍ୟ ଜାତି ବିଭିନ୍ନ,
କାହାର ତ ନାହିଁ କିଛି ହିଁ ଚିହ୍ନ ।
ଯେଉଁ ବ୍ରାହ୍ମଣଙ୍କ ପବିତ୍ର କାୟା
ମାଡ଼ୁଥିଲା ନାହିଁ ଚଣ୍ଡାଲ ଛାୟା,

ମିଶାମିଶି ଭସ୍ମ ଏକ ଆକାର,
କିପରି ହେବ ବା ବାଛ ବିଚାର ।
ଆନନ୍ଦ ଉତ୍ସବ, ଧନ ଗୌରବ,
ବିଳାପ, ସନ୍ତାପ, ପ୍ରଭୁତ୍ୱ, ସର୍ବ,
ଐଶ୍ୱର୍ଯ୍ୟ, ସୌନ୍ଦର୍ଯ୍ୟ, ଶୌର୍ଯ୍ୟ, ମାତ୍ସର୍ଯ୍ୟ,
କୁତ୍ସିତ, ପୀଡ଼ିତ, କାନ୍ତ, କଦର୍ଯ୍ୟ,
ବୀରତ୍ୱ, ଭୀରୁତ୍ୱ, ବିଦ୍ୱେଷ ପୁଣି,
ଦେଖ ଏ ସ୍ଥାନରେ ସକଳେ ଲୀନ ।
ପ୍ରଣୟ, ପିରତି, ବିବାଦ, କଳି,
ଏ ସ୍ଥାନରେ ସର୍ବ ସମାନ ଭଳି ।
ମିଶାମିଶି ପରମାଣୁର ରାଶି,
ମିଶିବେ ସ୍ୱଧର୍ମେ ଶ୍ମଶାନେ ଆସି
ଯାହାକୁ ଯାହାକୁ ଅଛି ହରାଇ,
ପାଇବ ସେ ସର୍ବ ଶ୍ମଶାନେ ଯାଇ ।
ଭଲରୂପେ ଅଛି ଏ କଥା ଜଣା,
ତେବେ ତ କିପାଇଁ ମୋର ଭାବନା ?

———

## ମୋ ଗୀତର ଭଣିତା

( ରାଗ—ମଙ୍ଗଳ )

ଗାଇଛି ମୁଁ କେତେ ଗୀତ ବସି ଦିନ ରାତି,
ଏତେ ଗାଇ ମଧ୍ୟ ଚିତ୍ତେ ଜନ୍ମୁ ନାହିଁ କ୍ଳାନ୍ତି ।
ଆପଣା ମନକୁ ଗାଏଁ, ଗାଇବା ଅଭ୍ୟାସ,
ଶୁଣୁ ବା ନ ଶୁଣୁ କେହି ନାହିଁ ଚିନ୍ତା ଲେଶ ।

ଯେବେ କେହି ଶୁଣି ମୋତେ କରିବ ପ୍ରଶଂସା,
କିଞ୍ଚି ଆନନ୍ଦ ଲଭି, ବଢ଼ିବ ଭରସା ।
ଯେତେବେଳେ ବସେ ମୁହିଁ ଗୀତ ଗାଇବାକୁ,
ନ ଥାଏ ମୋ ବାହ୍ୟଜ୍ଞାନ, ଭୁଲେଁ ଆପଣାକୁ ।

ବସି ବସି ଗୀତ ଗାଉଥିବି ଚିରକାଳ,
ଘଟୁ ଯେତେ ସୁଖ ଦୁଃଖ ବିପଦ ଜଞ୍ଜାଳ ।
ଅଭ୍ୟାସ ହୋଇଛି ଯାର ଗାଇବାର ଗୀତ,
ଶତ ବାଧା ବିଘ୍ନ ତେଜି ଗାଇବ ନିଶ୍ଚିତ ।

ଗାଇବା ଯେ ଗୀତ ମହା କଠିନ ବିଷୟ,
ସାଧନା ସେଥିର ଲୋଡ଼ା ତାନ, ମାନ, ଲୟ ।
ମାନବ ସାଧନା ସିଦ୍ଧି ଲଭି କେତେ ଜଣ
ଲୋକସମାଜରେ ବସି କରନ୍ତି ଗାୟନ ?

ନ ଥାଉ ସାଧନା, ଶକ୍ତି ତଥାପି ଭରସା
ଗାଇ ଗୀତ ପାଇବାକୁ ଲୋକରେ ପ୍ରଶଂସା ।
ଲୋଡ଼ିବାକୁ ହେବ ନାହିଁ ଏପ୍ରକାର ଲୋକ,
ଦେଖିବା ହେଉନ୍ତୁ ମୋତେ ଦୃଷ୍ଟାନ୍ତ ପ୍ରତ୍ୟକ୍ଷ ।

ଗାଉ ନାହିଁ ଗୀତ ମୁହିଁ ନିର୍ଲଜ୍ଜ ପଣରେ,
କରନ୍ତି ଯେ କାର୍ଯ୍ୟ ଲୋକ ଅଭ୍ୟାସବଶରେ ।
ପଶୁ, ପକ୍ଷୀ ଅଚେତନ ପଦାର୍ଥ ସମସ୍ତ,
ସତତ ହୁଅନ୍ତି ଗୀତ ଗାଇବାକୁ ବ୍ୟସ୍ତ ।

ଶୁଣି ନାହିଁ ଗୀତ ଗାଇଥାନ୍ତି ବୃକ୍ଷ ଲତା,
ତାନେ ମାନେ ପବନରେ କହି ମନ କଥା ?
ପ୍ରବାହିନୀ ପ୍ରବାହିତା ପର୍ବତର କୋଳୁଁ,
ଶୁଣି ନାହିଁ ଗୀତ ଗାଇଥାଏ କୁଳୁ କୁଳୁ ?

କେ ବୋଲଇ କରୁଥାଏ ସମୁଦ୍ର ଗର୍ଜନ ?
ମାତ୍ର ସେ ତ କରେ ପ୍ରଭୁ ମହିମା କୀର୍ତ୍ତନ ।
ବରଷା ଆଗମ ଦେଖି ବେଙ୍ଗ ଗାଏ ଗୀତ,
ଅବଶ୍ୟ ତ ଥିବ ଶୁଣି ପଶୁଙ୍କ ସଙ୍ଗୀତ ।

ବସନ୍ତେ କୋକିଳ ଗାଏ ଯେବେ ଧରି ତାନ,
ବିମୋହିତ କରିଦିଏ ଜଗତର ପ୍ରାଣ ।
କୋକିଳ, ଚାତକ ଗୀତ ଶୁଣି ଶୁଣି କାଉ
କରେ କା-କା ରବ, ତୁନି ରହେ ନାହିଁ ଆଉ ।

ପଶୁ , ପକ୍ଷୀ, ଜଡ଼ବସ୍ତୁ ଗୀତ ଶୁଣି ଶୁଣି,
ଗାଇଲ ମୁଁ ଗୀତ, ହୋଇ ନ ପାରିଲ ଗୁଣି ।
ସମସ୍ତେ ଗାଆନ୍ତି ଗୀତ, ମୁଁ ତ ଅଛି ଗାଇ,
ଏଥିରେ ତ କ୍ଷତି ବୃଦ୍ଧି ଦେଖେ ନାହିଁ ଭାଇ !

ନ ଲୋଡ଼ିବ ମୋ ଗୀତରୁ ଭାବର ଗାମ୍ଭୀର୍ଯ୍ୟ,
ଛନ୍ଦ ବନ୍ଧ, ତାନ ମାନ, ପଦର ମାଧୁର୍ଯ୍ୟ ।
ଯେ ଶକ୍ତି ହୋଇଛି ପ୍ରାପ୍ତ ପ୍ରଭୁଙ୍କ କୃପାରେ,
ଗାଉଛି ସେ ଶକ୍ତିବଳେ ସରଳ ଭାଷାରେ ।

ଏକା ବୃକ୍ଷେ ବସି କାକ କୋକିଳ ଉଭୟ
ପକ୍ଷିଜାତି ନାମେ ଦେଉଥାନ୍ତି ପରିଚୟ ।
କୋକିଳ ଗୀତରେ ଲୋକ ଦିଏ କର୍ଣ୍ଣ ଢାଳି,
କାକକୁ ଦିଅନ୍ତି ଲୋକ ଛି ଛି ବୋଲି ଗାଳି ।

ଭଞ୍ଜ, କବିସୂର୍ଯ୍ୟ ଯହିଁ ଗାଇଛନ୍ତି ଗୀତ,
ସେ ଦେଶେ ଗାଇବା ମୋର ଥିଲା କି ଉଚିତ ?
ସେ ମହାପୁରୁଷେ ଥିଲେ ଯେ ଦେଶରେ କବି,
ସେ ଦେଶର ଲୋକ ଲୋଡ଼େ ସେ ଉଚ୍ଚ ପଦବୀ ।

ବିରାଜିତ ଜ୍ୟୋତିଷ୍ମାନ୍ ଶଶଧର ରାକା,
ତଥାପି ଆପଣା ଜ୍ୟୋତି ଦେଖାଏ ତାରକା ।
ଗୀତ ଗାଇବାକୁ ଇଚ୍ଛା କରେ ଯେଉଁ ଜନ,
କେ ଲୋକ କରିବ ତାକୁ କପାଁ ନିବାରଣ ?

ମୋ ବିଶ୍ୱାସ ଜଗତର କବି ସର୍ବ ଲୋକ,
କେହି ବା ବିଶେଷ, କେହି ଅଳପ ମାତ୍ରିକ ।
ଗୀତ ଗାଇବାର ଯାର ହୋଇଛି ଅଭ୍ୟାସ,
ଗାଇବ ସେ, କରୁ ପଛେ ଲୋକ ଉପହାସ ।

ଉଠେ ଯେବେ ମନ ଗୀତ ଗାଇବାର ପାଇଁ;
ନ ଗାଇ ମୁଁ ଗୀତ ତୁନି ହୋଇପାରେ ନାହିଁ ।
ଯେତେ କାଳଯାଏ ମୋର ଥିବ ପିଣ୍ଡେ ପ୍ରାଣ,
ଇଚ୍ଛା ବସି ବସି କରୁଥିବ ଗୀତ ଗାନ ।

ଗାୟକ ପ୍ରଶଂସା ଲୋଡ଼େ ଅବଶ୍ୟ ଲୋକରେ,
ମାତ୍ର ତାହା ଘଟେ କେତେ ଲୋକ ଅଦୃଷ୍ଟରେ ?
ଇଚ୍ଛା କି ମୋ ମୁହିଁ ଲାଭ କରିବା କବିତ୍ୱ ?
ମାତ୍ରିକ ମୁଁ ଜାଣେ ଏହା ବିଧିଦତ୍ତ ବିତ୍ତ ।

ଯଦ୍ୟପି ଗାଇବ ମୋହ ଗୀତ କେହି ଲୋକ,
ମଣିବି ଅବଶ୍ୟ ଶ୍ରମ ଜୀବନ ସାର୍ଥକ ।
ଗାଇଛି ଅନେକ ଗୀତ ଅଭ୍ୟାସବଶରେ,
ପ୍ରଶଂସା ଅଥବା ନିନ୍ଦା ରହିଲେ ଲୋକରେ,

ସେ ତ ଅଦୃଷ୍ଟର ଫଳ, ମୁହିଁ ଅନାୟତ୍ତ,
ମୁଣ୍ଡାଇ ମୁଁ ନେବି ଯାହା ଘଟିବ ସମସ୍ତ ।
ନିନ୍ଦାନ୍ତି ଯଦ୍ୟପି କେହି ହୁଏ କ୍ରୋଧଚିତ୍ତ,
ଏହିଠାରେ ହୋଇପାଉ ଭଣିତା ମୋ ଗୀତ ।

---

## ନେଇ ପ୍ରତିମା

ଆହାରେ ନେହି ପ୍ରତିମା
ସୁମରେ ଗୁଣ ଗାରିମା ରେ ।
କି ଭାବେ ପାଏ ମୋ ଧନ କେ ଜାଣିବ ପ୍ରଭୁ ଭିନ୍ନ
କାହିଁ ମୋ ଦୁଃଖର ସୀମା ରେ ।

କେ ଜାଣେ ମରମବ୍ୟଥା, ଶୁଣିବ କେ ମନକଥା,
କା ସଙ୍ଗେ ଦେବି ଉପମା ରେ ।

ଗଲ ଯେବେ ସବୁ ଥାଇଁ କପାଁ ପ୍ରାଣ ଥାଏ ଆଉ
କପାଁ ଯାତନା ଚରମା ରେ ।

ଥିଲ ଗଲା ପୁଷ୍ପମାଳା ମର ଭୃଙ୍ଗଇ ଜାଳା
କେ ଜାଣେ କାଳମହିମା ରେ ।

---

## "ଆଦେଶ"

( ରାଗ—ମଙ୍ଗଳ )

ଅୟି ବତ୍ସେ ! ଦେଖୁଛ ତ ଜଗତକୁ ଚାହିଁ—
ତୋ ବିନା ବିଶ୍ୱରେ ମୋ ସାହା କେହି ନାହିଁ ।

ଦୟାବନ୍ତ ! ଗୁଣବନ୍ତ ! ଭକ୍ତିପରାୟଣା,
ଏକମାତ୍ର ତୁହି ମୋର ଜୀବନ ସାନ୍ତ୍ୱନା ।

ଆଶୀର୍ବାଦ କରେ ସୁଖେ ରହି ଧନେ ଜନେ,
ସଦା ତୋର ଥାଉ ଚିତ୍ତ ପ୍ରଭୁ ଶ୍ରୀଚରଣେ ।

ଭଗ୍ନ ଭଗ୍ନ ହେଲେ ମୋର ଜରାଜୀର୍ଣ୍ଣ ଅଙ୍ଗ,
ଅନ୍ଧକାରେ ଗଲେ ଉଡ଼ି ଜୀବନ ପତଙ୍ଗ ।

ବୋଲି ଯାଉଅଛି ତୋହଠାରେ ବାରେ ବାରେ
କରିବୁ ପ୍ରାର୍ଥନା ମୋହ ପାଇଁ ପ୍ରଭୁଠାରେ ।

ବର୍ଷରେ ବା ବର୍ଷାନ୍ତେ କେବେ ହେଲେ ଥରେ,
ସ୍ମରଣ କରିବୁ ମୋତେ ଭକ୍ତିରେ ମନରେ ।

ନିଦର୍ଶନ ରଖିବୁ ରେ ସେ ପବିତ୍ର ସ୍ଥାନେ,
ଏ ସଙ୍କେତ କଥା ବତ୍ସେ ବୁଝ ଅନୁମାନେ ।

————

# ମୁଖବନ୍ଧ

ଏଥିପୂର୍ବେ 'ମହର୍ଷି ଗୌତମଚରିତ' ନାମକ ଖଣ୍ଡିଏ ପଦ୍ୟମୟ କାବ୍ୟ ପ୍ରଣୟନ କରିଥିଲି; ବିଶେଷ ଦୈବୀ ଦୁର୍ଘଟନାବଶରୁ ବାଲେଶ୍ୱରସ୍ଥ ନିଜ ନିକେତନ ପରିତ୍ୟାଗପୂର୍ବକ କଟକ ଚାଲିଯିବା ସମୟରେ କାବ୍ୟର ପାଣ୍ଡୁଲିପି ଖଣ୍ଡିକ ଗୃହ ମଧ୍ୟରେ ପଡ଼ି ରହିଥିଲା । କେତେକ ବର୍ଷ ଉତ୍ତାରେ ସ୍ୱଗୃହକୁ ପ୍ରତ୍ୟାଗମନ କରି (ଅନ୍ୟାନ୍ୟ ପୁସ୍ତକ ଓ କାଗଜପତ୍ର ସହିତ) ଉକ୍ତ ଗ୍ରନ୍ଥ-ଖଣ୍ଡିକୁ କୀଟଦଂଷ୍ଟ ଅବସ୍ଥାରେ ଦେଖିଲି । ସେ ଆଜକୁ ବାରବର୍ଷ ପୂର୍ବର କଥା ।

ଚଳିତ ବର୍ଷ ଦୋଳୋତ୍ସବ ଓ ମହରମ ପର୍ବ ଏକା ସଙ୍ଗରେ ପଡ଼ିଥିଲା । ହିନ୍ଦୁ ଓ ମୁସଲମାନ-ସର୍ବସାଧାରଣ ଲୋକମାନେ ଆନନ୍ଦୋତ୍ସବରେ ଉନ୍ମତ୍ତ, ସର୍ବପ୍ରକାର କାର୍ଯ୍ୟକଳାପ ସ୍ଥଗିତ, ସହରର ପ୍ରତ୍ୟେକ ଅଂଶ ପ୍ରତ୍ୟେକ ମାର୍ଗ ବାଦ୍ୟଭାଣ୍ଡ ଓ ଲୋକକୋଳାହଳରେ ପରିପୂର୍ଣ୍ଣ । କବାଟ ବନ୍ଦ କରି ମୋ ନିର୍ଜନ ପାଠଗୃହରେ ଏକାକୀ ବସି ମଧ୍ୟ ନିଷ୍କୃତି ଲାଭ କରିବାକୁ କ୍ଷମ ହୋଇ ପାରି ନ ଥିଲି । ସମସ୍ତ ସମୟରେ ହିନ୍ଦୁ ଓ ମୁସଲମାନ ଯାତ୍ରା ଓ ଆଖଡ଼ାଦଳ ସେମାନଙ୍କ ବାର୍ଷିକ ପ୍ରାପ୍ୟ ଆଦାୟ ନିମନ୍ତେ ଉପସ୍ଥିତ । କର୍ଣ୍ଣପଟହବିଦାରୀ କାଂସ୍ୟ ନିର୍ଘାତଢୋଲତାଡ଼ନା ଶବ୍ଦ ବିନିମୟରେ ( ପ୍ରଚଳିତ ରୀତ୍ୟାନୁଯାୟୀ ) ମୋ ନିକଟରୁ କିଞ୍ଚିତ କିଞ୍ଚିତ୍ ଅର୍ଥ ନେଉଥିଲେ । ସହସା ମୋ ମନରେ ଉଦିତ ହେଲା, କପିଳବାସ୍ତୁରେ ସିନା ଏହିପରି ବସନ୍ତୋତ୍ସବ ସମାହିତ ହେଉଥିଲା ? ସମ୍ମୁଖସ୍ଥ ମେଜ ଉପରେ ଲେଖନର ଉପକରଣ ପ୍ରସ୍ତୁତ ଥିଲା—ଦୟାମୟ ବିଶ୍ୱବିଧାତାଙ୍କ ମହାପବିତ୍ର ନାମ ସ୍ମରଣପୂର୍ବକ ଉପସ୍ଥିତ କାବ୍ୟ ଖଣ୍ଡିକର ଲେଖା ଆରମ୍ଭ କରିଦେଲି । ମୋ ଜୀବନ-ସନ୍ଧ୍ୟାରେ ଦୟାମୟ ମହାପ୍ରଭୁ ଈଦୃଶ ପୁଣ୍ୟମୟ କାବ୍ୟ ରଚନା ସକାଶେ ମୋତେ ମତି ଓ ଶକ୍ତି ପ୍ରଦାନ କରିବାରୁ ତାହାଙ୍କ ଅପାର କରୁଣା ସ୍ମରଣପୂର୍ବକ ଆପଣା କ୍ଷୁଦ୍ର ଜୀବନକୁ ଧନ୍ୟ ମଣୁଅଛି ।

ଫାଲ୍‌ଗୁନ ମାସ ଶୁକ୍ଳ ତ୍ରୟୋଦଶୀରେ ଗ୍ରନ୍ଥାରମ୍ଭ—ବୈଶାଖ କୃଷ୍ଣ ଏକାଦଶୀରେ ଗ୍ରନ୍ଥ ସମାପ୍ତ ହେଲା । ଏହି ଦ୍ୱିଚତ୍ୱାରିଂଶତ୍ ଦିବସ କାଳ ମଧ୍ୟେ ନିତ୍ୟ ନୈମିତ୍ତିକ କର୍ମ ତଥା ବାର୍ଦ୍ଧକ୍ୟଜନିତ ଦୁର୍ବଳତାଯୋଗୁଁ ଦୀର୍ଘ ବିଶ୍ରାମ ଉତ୍ତାରେ ଅଳ୍ପମାତ୍ର ସମୟ ଗ୍ରନ୍ଥ ପ୍ରଣୟନ କରିବାକୁ ସୁଯୋଗ ପ୍ରାପ୍ତ ହୋଇଥାଏଁ; ମାତ୍ର ଦିବାରାତ୍ର ଜାଗ୍ରତ ଥିବା ସମୟରେ ବୌଦ୍ଧ ପବିତ୍ର ମହାଆଖ୍ୟାନରେ ଚିତ୍ତ ପରିପୂର୍ଣ୍ଣ ଥାଏ । ଉପସ୍ଥିତ ଘଟନାବିଶେଷରେ ଚିତ୍ତ ଅନ୍ୟତ୍ର ଆକୃଷ୍ଟ ହେଲେ ମଧ୍ୟ ଦିଗ୍‌ଦର୍ଶନ ଯନ୍ତ୍ରର ଉତ୍ତରାଭିମୁଖିନୀ ଶଳାକାପରି ଉଲ୍ଲିଖିତ ପବିତ୍ର ଆଖ୍ୟାନ ପ୍ରତି ପ୍ରତିନିୟତ ଧାବିତ ହେଉଥାଏ । ଏହି କାବ୍ୟ ପ୍ରଣୟନ ସମୟରେ ମୁଁ ଯେଉଁ ଆଧ୍ୟାତ୍ମିକ ବିମଳାନନ୍ଦ ଉପଭୋଗ କରିଅଛି, ଅନ୍ୟ କୌଣସି ପୁସ୍ତକ ରଚନା ବା ଅଧ୍ୟୟନ ଅଥବା ଅନ୍ୟ କୌଣସି ବିଷୟରୁ (ଜୀବନ-କାଳରେ) ଈଦୃଶ ବିଶୁଦ୍ଧାନନ୍ଦ ଉପଭୋଗ ମୋ ଅଦୃଷ୍ଟରେ ଘଟିଥିବାର ସ୍ମରଣ ହେଉ ନାହିଁ । ପାଠକ ମହାଶୟମାନେ କିପରି ଭାବରେ ଏହି କାବ୍ୟଖଣ୍ଡିକ ଗ୍ରହଣ କରିବେ, ତାହା ମୋହର ଅନୁମାନର ବହିର୍ଭୂତ ବିଷୟ ଅଟେ । ଯଦ୍ୟପି ଗ୍ରନ୍ଥଗତ ବିଷୟଟି ନିତାନ୍ତ ଶିକ୍ଷଣୀୟ ଓ ଶାନ୍ତିପ୍ରଦ ଏବଂ ଜୀବାତ୍ମା ପକ୍ଷରେ ନିତାନ୍ତ ଉପଯୋଗୀ ଓ ଆହ୍ଲାଦକର, ତଥାପି ମୋହର

ଅପ୍ରଚୁର ଜ୍ଞାନ ରଚନାଶକ୍ତିର ଅଚାଟବବଶତଃ ବଷୟଟି ସୁସ୍ପଷ୍ଟରୂପେ ସୁପରିସ୍ଫୁଟ କରିବାକୁ କ୍ଷମ ହୋଇଅଛି କି ନାହିଁ, ସେ ସମ୍ବନ୍ଧରେ ମୁଁ ସ୍ୱୟଂ ସମ୍ପୂର୍ଣ୍ଣଭାବରେ ସନ୍ଦିହାନ; ମାତ୍ର ପୁସ୍ତକ ପ୍ରଣୟନ ସମୟରେ ଯେଉଁ ବିମଳାନନ୍ଦ ଉପଭୋଗ କରିଅଛି, ସେଥିରେ ମୁଁ ସ୍ୱୟଂ ଅତିରିକ୍ତରୂପେ ପୁରସ୍କୃତ ହୋଇଅଛି ବୋଲି ବିଶ୍ୱାସ କରେଁ । ଅଧିକ କିଣ, ମୁଁ ଏତେଦୂର ବିମୋହିତ ହୋଇ ପଡ଼ିଅଛି ଯେ,ସ୍ୱଜନପରିତ୍ୟକ୍ତ, ଜରାଜୀର୍ଣ୍ଣ, ଦୁର୍ବଳେନ୍ଦ୍ରିୟ, ବିଷୟବିରାଗୀ, ମୁକ୍ତିକାମୀ ଲୋକମାନଙ୍କୁ ଏହି ପୁସ୍ତକ ପାଠ ବା ବୌଦ୍ଧଶାସ୍ତ୍ର ଆଲୋଚନା ସକାଶେ ଅନୁରୋଧ ନ କରି ସ୍ଥିର ହୋଇ ପାରୁନାହିଁ ଏବଂ ଯୌବନୋନ୍ମତ୍ତ ଧନ ଜନ ମାନ ସମ୍ଭ୍ରମ ଗୌରବଶାଳୀ ଇନ୍ଦ୍ରିୟ ସୁଖାଭିଳାଷୀ ବ୍ୟକ୍ତିମାନଙ୍କ ପକ୍ଷରେ ମଧ୍ୟ ଈଦୃଶ ଗ୍ରନ୍ଥ ଆଲୋଚନା କରିବାର ଉପଯୁକ୍ତ ବୋଲି ବିବେଚନା କରେଁ ।

ଉତ୍କଳଖଣ୍ଡ ମହାମୁନି ଗୌତମପ୍ରଚାରିତ ମହାଧର୍ମର ପ୍ରଧାନ ଲୀଳାକ୍ଷେତ୍ର ଥିଲା । ଶୈଳ ବକ୍ଷରେ ଖୋଦିତ ବିହାରକ୍ଷେତ୍ରମାନ କେବଳ ଭାରତରେ ନୁହେ, ପୃଥିବୀ ମଧ୍ୟରେ ପ୍ରସିଦ୍ଧି ଲାଭ କରିଅଛି । ସୁଦୀର୍ଘ କାଳ ପରେ ଉତ୍କଳବାସୀ ପ୍ରତ୍ୟେକ ନରନାରୀ ବୌଦ୍ଧଧର୍ମ-କଳ୍ପତରୁ ଛାୟାରେ ଉପବିଷ୍ଟ ହୋଇ ନିର୍ବାଣ ଶାନ୍ତି ଲାଭ କରିଥିଲେ । ଅଦ୍ୟାବଧି ବୌଦ୍ଧଧର୍ମର ପ୍ରାଚୀନତ୍ୱ, ମହିମା, ସ୍ଥାପତ୍ୟ, ଅନୁଶାସନ ବିଷୟମାନଙ୍କୁ ସାକ୍ଷ୍ୟ ଦେବା ସକାଶେ କୀର୍ତ୍ତିବିଲୋପୀ ମହାକାଳକୁ ତୁଚ୍ଛ ଜ୍ଞାନ କରି ଶୈଳପୃଷ୍ଠରେ ବିହାରକ୍ଷେତ୍ରମାନ ବିଦ୍ୟମାନ ରହିଅଛି । ମାତ୍ର ପରିତାପର ବିଷୟ ଏହି ଯେ, ଅଧୁନାତନ ଉତ୍କଳବାସୀଙ୍କୁ ଚହ୍ନାଇ ଦେବା ନିମନ୍ତେ ମାତୃଭାଷାରେ ଖଣ୍ଡିଏ ପ୍ରାଚୀନ ଗ୍ରନ୍ଥର ନିତାନ୍ତ ଅଭାବ । ମୁଁ ଏହି କ୍ଷୁଦ୍ର ଗ୍ରନ୍ଥ ପ୍ରଣୟନଦ୍ୱାରା ସେହି ଅଭାବ କିଞ୍ଚିତ୍ ପରିମାଣରେ ଦୂର କଲି; ଏ କଥା ବୋଲିବାକୁ ନିତାନ୍ତ ସଙ୍କୁଚିତ । ମାତ୍ର ଚିରପ୍ରଚଳିତ ଗ୍ରାମ୍ୟ ପ୍ରବାଦଟିକୁ କିଞ୍ଚିତ୍ ସାଧୁଭାଷାରେ ରୂପାନ୍ତରିତ କରି ବୋଲି ପାରେଁ—ମାତୁଳାଭାବ ସ୍ଥାନରେ ଗୋଟିଏ କାଣ-ମାତୁଳ ମୋହାରି ଆଦୃତ ହେଲେ ।

ଅବତାରମାନଙ୍କ ଲୀଳାକ୍ଷେତ୍ର ଜମ୍ବୁଦ୍ୱୀପାନ୍ତର୍ଗତ ପୁଣ୍ୟଭୂମି ଭାରତବର୍ଷର ଉତ୍ତରସୀମାବର୍ତ୍ତୀ ଗିରିରାଜ ହିମାଳୟ ପାଦଦେଶସ୍ଥିତ ପବିତ୍ର କପିଳବାସ୍ତୁ ନଗରରେ ମହାପବିତ୍ର ଶାକ୍ୟବଂଶରେ ନାରାୟଣାବତାର ମହାମୁନି ଗୌତମ ଦେବ ଜନ୍ମଗ୍ରହଣ କରିଥିଲେ । ( ସମୟ – ଖ୍ରୀଷ୍ଟପୂର୍ବ ପାଞ୍ଚଶତ ସତାବନ ବର୍ଷ । ) ସମସ୍ତ ଭାରତବ୍ୟାପୀ ସ୍ଥାନ ତଥା ଆସିଆ ଖଣ୍ଡର ଉତ୍ତରସୀମାବର୍ତ୍ତୀ ସାଇବେରିୟା—ପୂର୍ବସୀମା ଆ-ଜାପାନ କାମସ୍କାଟକା—ଦକ୍ଷିଣପ୍ରାନ୍ତ ଭାରତ ମହାସାଗରଗର୍ଭସ୍ଥ ଦ୍ୱୀପାବଳୀ—ପଶ୍ଚିମ ପ୍ରାନ୍ତସ୍ଥ ଉତ୍ତାଳତରଙ୍ଗମାଳକୁଳ ଆଟଲାଣ୍ଟିକ ମହାସାଗର ଅତିକ୍ରମ କରି ଦକ୍ଷିଣ ଆମେରିକାସ୍ଥ ଗୌତମ – ମେଲା ( Goatimala ) ପର୍ଯ୍ୟନ୍ତ ଏହି ମହାପୁରୁଷଙ୍କ ପ୍ରଚାରିତ ଧର୍ମମତ ପ୍ରସାରିତ ହୋଇଥିଲା ! ସଂକ୍ଷେପତଃ ଗୋଟିଏ ମାତ୍ର କଥାରେ ବୋଲି ଯାଇପାରେ, ଏହି ସୁପବିତ୍ର ବୌଦ୍ଧଧର୍ମ ସମାନରେ ଅନ୍ୟ କୌଣସି ଧର୍ମମତ ପୃଥିବୀର ଏତେ ଅଧିକ ସ୍ଥାନ ଅଧିକାର କରିବାକୁ ସମର୍ଥ ହୋଇ ନାହିଁ । ଭୂମଣ୍ଡଳବାସୀ ଲୋକମାନଙ୍କର ପ୍ରାୟ ଏକତୃତୀୟାଂଶ ଲୋକ ବୌଦ୍ଧଧର୍ମାବଲମ୍ବୀ ଅଟନ୍ତି । ଖ୍ରୀଷ୍ଟାନ୍ ବା ଇସ୍‌ଲାମ୍ ଧର୍ମ ବହୁ ସ୍ଥାନ ବ୍ୟାପ୍ତ ହୋଇଅଛି ସତ୍ୟ; ମାତ୍ର ଏପର୍ଯ୍ୟନ୍ତ ବିସ୍ତୃତ ସମ୍ବନ୍ଧରେ ବୌଦ୍ଧଧର୍ମର ସମକକ୍ଷତା ଲାଭ କରିବାକୁ ସମର୍ଥହୋଇ ପାରିନାହାନ୍ତି । ବର୍ତ୍ତମାନ ପ୍ରଶ୍ନ—କି ଉପାୟରେ ବୌଦ୍ଧଧର୍ମ ପୃଥିବୀବ୍ୟାପୀ ସ୍ଥାନଲାଭରେ ସମର୍ଥ ହୋଇଥିଲା ? କିଞ୍ଚିତ୍ ଅନୁଧାବନ କଲେ ସହଜରେ ଜଣାଯିବ ଯେ, ଏହି ଧର୍ମ ସ୍ୱକୀୟ ଶକ୍ତିବଳରେ ଜଗଦ୍‌ବ୍ୟାପ୍ତ ହୋଇ ପଡ଼ିଅଛି । ବୁଦ୍ଧଦେବଙ୍କ ପବିତ୍ର ମତ ମାନବାତ୍ମାର ଉପଯୋଗୀ ବାଣୀ—ଜଗଦ୍‌ବାସୀ ଯେମନ୍ତ ସ୍ୱେଚ୍ଛାପ୍ରଣୋଦିତ

ବିତୃଷ୍ଣା ବିଳାସେ, ସଦା କି ପିପାସା ପ୍ରାଣେ,
ବିରଲେ ବିଜନେ ବସି ମତ୍ତ ଥାନ୍ତି ଧ୍ୟାନେ ।
ନ ଜାଣନ୍ତି କି ଆକାଙ୍କ୍ଷା ମନରେ ଉଦୟ,
କି ଲକ୍ଷ୍ୟରେ, କି ଆଶାରେ ବ୍ୟାକୁଳ ହୃଦୟ ।
ଶାକ୍ୟରାଜ୍ୟେ ହଳୋତ୍ସବ ପର୍ବ ଉପସ୍ଥିତ,
ସହସ ସହସ୍ର ହଳ ହେଲ ସୁସଜ୍ଜିତ ।
ସଜ୍ଜିତ କପିଳବାସ୍ତୁ ଆନନ୍ଦେ ଉତ୍ସବେ,
ସୁନ୍ଦର ସଜ୍ଜିତ ଦେଶବାସୀ ଲୋକ ସର୍ବେ ।
ସରସ ବସନ୍ତେ କୁସୁମିତ ଋତୁରାଜ,
ଆନନ୍ଦେ କପିଳବାସ୍ତୁ ହସୁଛି କି ଆଜ ?
କୃଷକେ ନୂତନ ବସ୍ତ୍ର ପିନ୍ଧି ଆନନ୍ଦରେ
କୁତୂହଳେ ଅନୁକୂଳ କର୍ଷଣ କ୍ଷେତ୍ରରେ ।
କଷ୍ଟେ କଷ୍ଟେ ବଳୀବର୍ଦ୍ଦ ଓଟାରନ୍ତି ହଳ,
ଦେଖି କଷ୍ଟେ ଗୌତମଙ୍କ ନେତ୍ରୁ ବହେ ଜଳ ।
ଫାଳଲାଗି କେତେ ପ୍ରାଣୀ ଯାଉଛନ୍ତି ମରି,
ଉଡ଼ି ଉଡ଼ି ପକ୍ଷିଗଣେ ଖାଉଛନ୍ତି ଧରି ।
କ୍ଳାନ୍ତ ବଳୀବର୍ଦ୍ଦ, ମୃତ କ୍ଷୁଦ୍ର ପ୍ରାଣିଗଣ,
ଦେଖି ହେଲ ବ୍ୟାକୁଳିତ ଗୌତମଙ୍କ ମନ ।
ଭାବିଲେ, କି ଜୀବହିଂସା ଘଟେ ନିରନ୍ତରେ ।
ପ୍ରାଣରକ୍ଷାପାଇଁ ପ୍ରାଣୀ ପ୍ରାଣହିଂସା କରେ !
ଜୀବନସଂଗ୍ରାମେ ଲୋକ ହିଂସା କରେ ପ୍ରାଣୀ !
ସ୍ୱାର୍ଥ ଅନୁରୋଧେ ତଥ୍ୟ ନ ପାରନ୍ତି ଜାଣି ।
ବିଳାପ ସନ୍ତାପ ପରିପୂର୍ଣ୍ଣ ଏ ସଂସାର,
ନିଚୁରେ ମୋହରେ ଆନ କ୍ରନ୍ଦନ ଚିତ୍କାର ।
ଦେଖି ପ୍ରାଣିଗଣ-ଦୁଃଖେ ଗୌତମ ବିକଳେ,
ଚଳିଲେ ନିର୍ଜନସ୍ଥାନେ ତେଜି ସଙ୍ଗୀଦଳେ ।
ତେଜି ରାଜପୁରୀ, ଗ୍ରାମ, କ୍ଷେତ୍ର ଭ୍ରମଣରେ
ମିଳିଲେ ନିବିଡ଼ ଏକ କାନନ ମଧ୍ୟରେ ।
ଶୁଣିଲେ ଦୂରରୁ ଉତ୍ସବର କୋଳାହଳ,
ମଣିଲେ ଚିତ୍ତରେ ପ୍ରାଣୀ କ୍ରନ୍ଦନ କେବଳ ।
ଜଗତ ଯନ୍ତ୍ରଣା କଥା ଭାବି ସମାକୁଳେ
ବସିଲେ ମଉନେ ଏକ ଜମ୍ବୁବୃକ୍ଷମୂଳେ ।

ନିମୀଳିତ ବେନନେତ୍ର ଧ୍ୟାନରେ ମଗନ,
ଅଜ୍ଞାତରେ କରେ ଯଥା ଚନ୍ଦ୍ର ଆକର୍ଷଣ ।
ସେହିକାଳେ ପାଞ୍ଚଜଣ ମହର୍ଷି ଗଗନେ
ଯାଉଥିଲେ, ଶାକ୍ୟସିଂହେ ଦେଖିଲେ ନୟନେ ।
ସ୍ଥିର ହେଲ ଯୋଗାସନ, ଆଉ ଶକ୍ତି କାହିଁ
ବୁଦ୍ଧେ ଅତିକ୍ରମି ଅଗ୍ରସର ହେବାପାଇଁ ?
ଦେଖିଲେ ଋଷିଏ ଯୁବା ଜମ୍ବୁବୃକ୍ଷ ତଳେ,
କାଞ୍ଚନପ୍ରତିମା କିବା ଜ୍ୱଳନ୍ତ ଅନଳେ
ବିସ୍ତାରେ ଲାବଣ୍ୟ, ଦିବ୍ୟସ୍ୱର୍ଗୀୟ ଜ୍ୟୋତିରେ
ମଣ୍ଡିତ କୁମର, ରବି ଉଦେ କି ମହୀରେ
ମୂର୍ତ୍ତିମାନ କରୁଣା କି ମହିମା ଆଳୟ ?
ରୂପ ଦେଖି ପଞ୍ଚଋଷି ମଣିଲେ ବିସ୍ମୟ !
ଭାଳିଲେ କିଏ ଏ ଯୋଗୀ ? ଯାହା ଧ୍ୟାନବଳେ
ଆମ୍ଭ ସର୍ବ ଯୋଗାସନ ରହିଲା ଅଚଳେ ।
ଜାଣିଲେ ଋଷିଏ ଧ୍ୟାନେ ତଥ୍ୟ ସମାଚାର,
ଦୁରିତ ଦଳନେ ନାରାୟଣ ଅବତାର ।
ଜଗତ ଯନ୍ତ୍ରଣା ତାପ ହରଣେ ଜନମ,
ପରଂବ୍ରହ୍ମ, ପ୍ରଚାରିବେ ଧର୍ମ ଶ୍ରେଷ୍ଠତମ ।
ଭକ୍ତିଭରେ ପ୍ରଦକ୍ଷିଣ କରି ଋଷିଗଣେ
ଗଲେ ଚଳି ରଖି ଚିତ୍ତ ଗୌତମଚରଣେ ।
କାହାନ୍ତି କୁମର ? ଏଣେ ପଡ଼ିଛି ଚହଳ,
ଇତସ୍ତତଃ ଖୋଜୁଛନ୍ତି ଅନୁଚରଦଳ ।
ରାଜା, ରାଣୀ, ମନ୍ତ୍ରିଗଣ; ରାଜଅନୁଚରେ
ଲୋଡ଼ି ଲୋଡ଼ି ମିଳିଲେ ସେ କାନନ ମଧ୍ୟରେ ।
ଜମ୍ବୁବୃକ୍ଷମୂଳେ ଯୁବା ଧ୍ୟାନେ ନିମଗନ,
ଜ୍ୟୋତିର୍ମୟ ଉଦେ କିବା ମଧ୍ୟାହ୍ନ ତପନ ।
ବାର୍ତ୍ତାପାଇ ଶୁଦ୍ଧୋଦନ ଆପେ ଗଲେ ଧାଇଁ
ଧ୍ୟାନେ ମଗ୍ନ ରାଜପୁତ୍ର ଦେଖିବାର ପାଇଁ ।
ଧାଇଁଲେ ସକଳ ଲୋକ ଶୁଣି ସମାଚାର,
ମଣିଲେ କୁମରେ ଚାହିଁ ଚିତ୍ତେ ଚମତ୍କାର ।
ବସିଛି ନିଶ୍ଚଳେ କିବା କାଞ୍ଚନପ୍ରତିମା,
ଯାଉଛି ଚହଟି ଦେହୁଁ ସ୍ୱର୍ଗୀୟ ମହିମା ।

ବିଗତ ମଧ୍ୟାହ୍ନ, ଛନ୍ନ ପରି ବୃକ୍ଷଚ୍ଛାୟା,
ରହିଛି ଆବରି କୁମାରଙ୍କ ସ୍ୱର୍ଣ୍ଣକାୟା ।
ସ୍ଥାପିତ ସୁବର୍ଣ୍ଣମୂର୍ତ୍ତି ସ୍ୱର୍ଣ୍ଣ ସିଂହାସନେ,
ଅନୁଭବ କଲେ ଦେଖି ପୁରବାସୀ ଜନେ ।
ଧ୍ୟାନସ୍ଥ ନନ୍ଦନେ ଦେଖି ଭାବିଲେ ରାଜନ,
ଏ ନୁହେ ମାନବ, ନରରୂପୀ ନାରାୟଣ ।
ପ୍ରେମ ପବିତ୍ରତା ଦେହୁଁ ପଡ଼ୁଛି ଉଛୁଳି,
ଘନୀଭୂତ କାନ୍ତି ଶଶୀ-କୌମୁଦୀରୁ ବଳି ।
ନୀରବେ ଦର୍ଶକେ ବେଢ଼ି ଦେଖନ୍ତି ନନ୍ଦନେ,
ଅବଶ ଇନ୍ଦ୍ରିୟେ ଜ୍ଞାନନେତ୍ରେ ବା ସ୍ୱପନେ ।
ଅବସାନ ହେବା, ପୁତ୍ର ନେତ୍ର ଉନ୍ମୀଳିତ,
ସ୍ୱଭାବେ ମାନବେ ଯଥା ନିଦ୍ରାରୁ ଉତ୍ଥିତ ।
ପିତାପଦେ ପ୍ରଣିପାତ କରି ଭକ୍ତିଭରେ,
ରହିଲେ ଚକିତେ ଜନେ କରୁଣାନେତ୍ରରେ ।
ଇତି ଶ୍ରୀ ବୌଦ୍ଧାବତାର କାବ୍ୟେ ହଳୋତ୍ସବ
ନାମ ତୃତୀୟ ସର୍ଗ ।

---

# ଚତୁର୍ଥ ସର୍ଗ

## ଅଶୋକୋତ୍ସବ

ଶୁଣି ସର୍ବ ସମାଚାର ମାତା ପ୍ରଜାବତୀ
ଭାଳିଲେ, ପୁତ୍ରକୁ ମୋର କେ ଦେଲା ଏ ମତି ?
ଶିଶୁପୁତ୍ର କରେ ଧ୍ୟାନ !
ଦୟାମୟ ଭଗବାନ !
ଆଶୀର୍ବାଦ କର ପୁତ୍ର ରହୁ ମୋର ଘରେ
ବୋଇଲେ ରାଜାଙ୍କୁ ଯାଇ ବିନୟେ କାତରେ । ୧ ।

ହେ ନାଥ ! ବ୍ୟାକୁଳ ଭୟେ, କାତର ମୋ ପ୍ରାଣ,
ଶିଶୁପୁତ୍ର ନିର୍ଜନରେ ବସି କରେ ଧ୍ୟାନ ।
ହେଲେ ତା ବୟସ ବୃଦ୍ଧି,
ହେବ ଅନ୍ୟରୂପ ବୁଦ୍ଧି
ଯିବ ସେ ସନ୍ନ୍ୟାସାଶ୍ରମେ ତେଜି ଏ ସଂସାର,
ପ୍ରାଣନାଥ ! ବେଗୁ କର ଏଥି ପ୍ରତିକାର । ୨ ।

ମହାରାଜା ! ମନେ ମୁହିଁ ବୁଝିଛି ବିଚାରି,
ଆସିଲେ ବା ପୁତ୍ରବଧୂ ହେବ ସେ ସଂସାରୀ,
ରାଣୀ ବାକ୍ୟେ ଶୁଦ୍ଧୋଦନ
ରାଇ ପାଶେ ମନ୍ତ୍ରୀଗଣ
ବସିଲେ ସଭାରେ ସର୍ବେ ବ୍ୟାକୁଳମନରେ,
ଘୋଟିଛି ବିଷାଦଚ୍ଛାୟା ସଜଳ ମୁଖରେ । ୩ ।

ବୋଇଲେ ବ୍ୟାକୁଳେ ରାଜା, ହେ ସଚିବଗଣ !
ଦେଖୁଛି ମୋ ସିଦ୍ଧାର୍ଥର ଗୃହେ ନାହିଁ ମନ,
ଗୃହସୁଖେ ଅଭିଳାଷୀ
ନୁହେ, କ୍ରମଶଃ ଉଦାସୀ
ହେଉଛି ସେ, ଛେଦିବ କି ସଂସାର ବନ୍ଧନ ?
କରନ୍ତୁ ଏଥିର ପ୍ରତିକାର ଅନ୍ୱେଷଣ । ୪ ।

ନୁହନ୍ତି ଅବୋଧ ନୃପ, ମାୟାର କୁହକେ
ଆଶାଲୁବ୍ଧ ଦେଖେ ଜ୍ୟୋତି ଅନ୍ଧକାର ଲୋକେ,
ଧର୍ମେ ଯାର ମତି ଗତି,
ତୁଚ୍ଛ ଅନର୍ଘ୍ୟ ସମ୍ପତ୍ତି
ପାରେ କି ତାହାକୁ କରି ଜଗତେ ବନ୍ଧନ ?
ସାମାନ୍ୟ ବେତସେ ଯଥା ପ୍ରମତ୍ତ ବାରଣ । ୫ ।

ବୋଇଲେ ଅମାତ୍ୟେ, ପ୍ରଭୋ ! ଯା ବୋଇଲେ ସତ,
ଥାନ୍ତି ଯୁବରାଜ ଅନ୍ୟମନସ୍କ ସତତ,
ମାତ୍ର ବିଧାତା ବିଧି
ବିଧାନେ ମାନବ ସିଦ୍ଧି
ଲଭନ୍ତି, ତଥାପି ଯାହା ମାନବ କର୍ତ୍ତବ୍ୟ
କରିବ ଅସାଧ୍ୟ ହେଲେ ମଧ୍ୟ ଭବିତବ୍ୟ । ୬ ।

ପ୍ରକୃତି ପୁରୁଷ ସୃଷ୍ଟି ଜଗତବନ୍ଧନ,
ଏକକୁ ଆରେକ ଚିତ୍ତ କରେ ଆକର୍ଷଣ
    ସ୍ନେହ, ପ୍ରୀତି ଚରିତାର୍ଥ
    ଦାମ୍ପତ୍ୟ ବନ୍ଧନ ମାତ୍ର
କରନ୍ତି, ଏକାକୀ ଲୋକ ଥିଲେ ସ୍ୱତନ୍ତର,
ସଂସାରବିରାଗୀ ହୁଏ ମାନବ ଅନ୍ତର । ୭ ।

ମହାରାଜ ! କୁମାରଙ୍କ ଯୌବନ ଉଦୟ,
ବିଳାସ ବାସନା ସୁଖଭୋଗର ସମୟ;
    ରାଜବଧୂ ଥିଲେ ପାଶେ
    ଅବଶ୍ୟହିଁ ଅନାୟାସେ
ଫେରିବ ବିରାଗୀ ମନ, ହେବେ ସେ ସଂସାରୀ,
ରାଜବଧୂ ଉପଯୁକ୍ତ ଲୋଡ଼ନ୍ତୁ କୁମାରୀ । ୮ ।

ରଚିବୁଁ ନନ୍ଦନୋଦ୍ୟାନ ନଅର ମଧ୍ୟରେ
ମଣ୍ଡପ କରାଇ—ଗୃହମାନ ମନୋହରେ,
    ସର୍ବସୁଖ ଉପାଦାନ
    ବିଳାସ ପଦାର୍ଥମାନ
ଆଣିବୁଁ ଯେତେକ ଯହିଁ ଅଛି ଯତନରେ,
ଜନ୍ମିବ ଉଲ୍ଲାସ ଯେଣୁ କୁମାର ମନରେ । ୯ ।

ବିଳାସୀ ପ୍ରଣୟୀ ବେଶେ ବଧୂ ସହିତରେ
ରହିବେ କୁମାର ସଦା ମନ ଆନନ୍ଦରେ,
    ରଖିବୁଁ ବିମୁଗ୍ଧ କରି,
    ସଦା ନିପୁଣ ପ୍ରହରୀ
ଥିବେ ଜଗି, ନ କରିବେ କୁମାର ବିଲୋକ
ଉଦାସୀନ, ଜରା, ବ୍ୟାଧିଗ୍ରସ୍ତ, ମୃତ ଲୋକ । ୧୦ ।

ସଙ୍ଗୀତନିପୁଣା ନାରୀ ନାଚି ଗୀତ ଗାଇ
ବିଳାସ ଉଲ୍ଲାସେ ପୁତ୍ରେ ରଖିବେ ଭୁଲାଇ,
    ଥିବେ ପାଶେ ନିରନ୍ତର,
    ଦେବେ ନାହିଁ ଅବସର
ଆମୋଦ ପ୍ରମୋଦ ତେଜି କରିବାକୁ ଧ୍ୟାନ,
ଆପଣ ଏଥିକୁ ମଧ୍ୟ ଥିବେ ସାବଧାନ । ୧୧ ।

ବୋଇଲେ ଆନନ୍ଦେ ନୃପ, ହେ ସଚିବଗଣ !
ମନକୁ ମାନିଲା କଥା, କର ଆୟୋଜନ,
    ଅନ୍ୱେଷଣ କର କନ୍ୟା,
    ରୂପେ ଗୁଣେ ହେବ ଧନ୍ୟା,
ମାତ୍ରକ ପୁତ୍ରକୁ ଥରେ ପୁଚ୍ଛିବା ଉଚିତ,
କିରୂପ କୁମାରୀ ତାର ହେବ ମନୋନୀତ । ୧୨ ।

ରାଜ ଅନୁଚର ଏକ କୁମାରେ ପୁଚ୍ଛନ୍ତେ,
ବୋଇଲେ—ଉତ୍ତର ଦେବୁଁ ସାତଦିନ ଅନ୍ତେ ।
    ଏ ଅନ୍ତେ ଏକାକୀ ବସି
    ଭାଳିଲେ ସେ ଦିବାନିଶି,
ଯେଉଁ ମହାପିପାସାରେ ଆକୁଳ ମୋ ପ୍ରାଣ,
ଅଳୀକ ବିଳାସେ ତାହା ହେବ କି ନିର୍ବାଣ ? ୧୩ ।

କାହିଁ ବା ଆସକ୍ତ ଲୋକ ଯିବେ କେଉଁଠାକୁ,
ହେବ ବା କାହାକୁ କିବା କାର୍ଯ୍ୟ କରିବାକୁ,
    ଭୁଞ୍ଜି ଜଗତର ସୁଖେ
    ହିଂସା କ୍ରୋଧ ବଶ ଲୋକେ,
ଜଗତେ ଲାଗିଛି ନିତ୍ୟ ଜୀବନସଂଗ୍ରାମ,
ମାନବ ଜୀବନ ଏ ତ ନୁହେ ପରିଣାମ ! ୧୪ ।

ଅନନ୍ତ ସାଗର, ନିତ୍ୟ ମାନବ ପିପାସା,
ପାଇଲେ ବିଶ୍ୱର ବିତ୍ତ ନୁହେ ପୂର୍ଣ୍ଣ ଆଶା,
    ହୁଏ ଏଥୁ ଅନୁମାନ
    ଆନ କିଛି ଲୋଡ଼େ ପ୍ରାଣ,
ନୁହେ ତ ଭଙ୍ଗନଶୀଳ ଜଡ଼ମୟ କିନ୍ତୁ,
ମହାନ ଅକ୍ଷୟ, ଆତ୍ମା-ଅନୁରୂପ ବସ୍ତୁ । ୧୫ ।

ସମଧର୍ମୀ, ସମରୂପ ପଦାର୍ଥ ମିଳନ,
ସ୍ୱର୍ଗୀୟ, ମହୋଚ୍ଚ, ନିତ୍ୟ ମାନବଜୀବନ,
    ଆତ୍ମା ଅନୁରୂପ ଦ୍ରବ୍ୟ
    ଜଗତରେ ଅସମ୍ଭବ,
ନିତ୍ୟ, ସତ୍ୟ, ପରାତ୍ପର, ମହୋଚ୍ଚ, ମହାନ
ବସ୍ତୁ ପ୍ରାପ୍ତିପାଇଁ ଆତ୍ମା ସଦା ଧାବମାନ । ୧୬ ।

ଅନନ୍ତ ସାଗର ବାରି କଣିକା ସର୍ମରେ
ଉଡ଼ିଆସି ବୃଷ୍ଟିରୂପେ ପଡ଼େ ପୃଥ୍ବୀରେ,
ନାନାସ୍ଥାନ ଦେଶ ଭ୍ରମି,
ବିଘ୍ନ ବାଧା ଅତିକ୍ରମି,
ଧାଏଁ ସେ ଉତ୍ପତ୍ତିସ୍ଥାନେ ଅବିରାମ ଗତି,
ଆତ୍ମା କି ଲୋଡ଼ଇ ସେହିପରି ପରିଣତି ? ୧୭ ।

ଅବଶ୍ୟ ମହାନ, ନିତ୍ୟ ମାନବର ପ୍ରାଣ,
ଥିବ ତ ଏହାର ଅନୁରୂପ ଉଚ୍ଚସ୍ଥାନ,
କଳୁଷିତ ବ୍ୟବସାୟେ
ଯେବେ ସଦା ଲିପ୍ତ ଥାଏ,
କଠିନ ଉନ୍ନତ ସ୍ଥାନ ହେବା ଅଧିକାରୀ,
ଦେଖିବା ଉଚିତ ଅଟେ ଏ କଥା ବିଚାରି । ୧୮ ।

ଜଳେ, ସ୍ଥଳେ, ଅନ୍ତରୀକ୍ଷେ ପ୍ରାଣୀ ନିରନ୍ତରେ
କରୁଛନ୍ତି ସୁଖ ଲୋଡ଼ି ହିଂସା ପରସ୍ପରେ,
ତେଜି ଭ୍ରାତୃସ୍ନେହ ପ୍ରୀତି
ଅକଳଙ୍କ ସାମ୍ୟ ନୀତି,
ସୁଖରେ ଧାବିତ ତାହା ଦୁଃଖ ରୂପାନ୍ତର,
ଆନନ୍ଦ ଉତ୍ସବ ନୁହେ ବିଳାପ ଚିତ୍କାର । ୧୯ ।

ଜଳବିମ୍ବ ପ୍ରାୟେ ପ୍ରାଣ ଅଛି କ୍ଷଣେ ନାହିଁ,
ନିତ୍ୟ ସତ୍ୟମାର୍ଗ ଲୋକ ନ ଲୋଡ଼େ କିପାଇଁ ?
ସୁଧାଭ୍ରମେ ବିଷପାନ
କରନ୍ତି ହରାଇ ଜ୍ଞାନ,
ଧିକ ! ଧିକ ! ମାନବର ବୁଦ୍ଧି ବିଡ଼ମ୍ବନା,
ନ ବୁଝେ ଭୁଞ୍ଜିବ ପଛେ ଗତ ନୁଶୋଚନା । ୨୦ ।

ଧର୍ମମାର୍ଗେ ଦେଖେଁ ମଧ୍ୟ ଅଜ୍ଞ ତତୋଽଧିକ,
ଧର୍ମନାମେ ପ୍ରାଣିହିଂସା, ଧିକ ! ଧିକ ! ଧିକ !
ସ୍ନେହ, ପ୍ରୀତି, ପବିତ୍ରତା,
ଦୟା, ମାୟା, ସରଳତା,
ଭ୍ରାତୃସ୍ନେହ ପରିହରି ହିଂସା ବ୍ୟବସାୟ ?
ନ ବୁଝେ ଅଜ୍ଞାନ, ଏ କି ମୁକ୍ତିର ଉପାୟ ? ୨୧ ।

ଯଜ୍ଞେ ପଶୁ ବଳିଦାନ ଜୀବକୁ ଯନ୍ତ୍ରଣା
ଦେଇ ଜୀବ ମୁକ୍ତି ଲୋଡ଼େ, ଏ କି ବିଡ଼ମ୍ବନା ।
ହେଲେ ବଧ କରି ପ୍ରାଣୀ
ମୁକ୍ତି ଲୋଡ଼େ ସେ କି ଜ୍ଞାନୀ ?
ସର୍ବ ଧର୍ମ ପ୍ରତିଷ୍ଠିତ କେବଳ ଦୟାରେ,
ନିଷ୍ଠୁରତା ପାପ ମୂଳ ବୁଝେ ନାହିଁ ବାରେ । ୨୨ ।

ରହିଛି ପ୍ରଚ୍ଛନ୍ନ ଧର୍ମ ନୀତି ସନାତନ
ଭ୍ରାନ୍ତି କପଟତା ହିଂସା ଅଜ୍ଞତା ଆଚ୍ଛନ୍ନ
କରିବ କେ ଆବିଷ୍କାର
ସତ୍ୟ ଧର୍ମ ଜ୍ୟୋତି ସାର,
ମାନବହୃଦୟେ ହେବ ସଦା ଦୀପ୍ତିମାନ,
ହେଉ ଜଗତରେ ପାପ ସନ୍ତାପ ନିର୍ବାଣ । ୨୩ ।

କ୍ଷମ ଯେହୁ ଛେଦିବାକୁ ସଂସାର ବନ୍ଧନ,
କରିପାରେ ସେହି ଧର୍ମନୀତି ଅନ୍ୱେଷଣ,
ତେଜି ସ୍ୱାର୍ଥ ଆତ୍ମପ୍ରାଣ
କରିପାରେ ଲୋକେ ତ୍ରାଣ,
ସ୍ୱାର୍ଥତ୍ୟାଗ ବିନା ରକ୍ଷାପାଏ କି ପରାର୍ଥ ?
ଏହିରୂପ ନାନାକଥା ଭାଳିଲେ ସିଦ୍ଧାର୍ଥ । ୨୪ ।

ଲୋକେ କରିଥାନ୍ତି ଅନୁକରଣ ଆଦର୍ଶ,
ଲୋଡ଼ନ୍ତି ସ୍ୱଭାବେ ସର୍ବେ ସାଧୁ ପରାମର୍ଶ,
ମହାନ ଆଦର୍ଶ ଏକ
ଜଗତରେ ଆବଶ୍ୟକ,
ଦେଖିଛି ଏମନ୍ତ ନିଦର୍ଶନ କିଛି ନାହିଁ,
କରିବାକୁ ହେବ ଆତ୍ମତ୍ୟାଗ ପ୍ରାଣୀପାଇଁ । ୨୫ ।

କରିବ ବିବାହ ଯେବେ ହେବ ମୁଁ ସଂସାରୀ,
ପାରିବ କି ଲୋକେ ପାପସନ୍ତାପୁଁ ଉଦ୍ଧାରି ?
ନାହିଁ ନାହିଁ ଯିବି ବନେ
ସତ୍ୟ ଧର୍ମ ଅନ୍ୱେଷଣେ,
ଲଭିବି ସ୍ୱର୍ଗୀୟ ନିଧି କରି ମହାଧ୍ୟାନ,
ଯାହା ସାହାବଳେ ଲୋକେ ଲଭିବେ ନିର୍ବାଣ ।୨୬ ।

ନିଜ ପ୍ରାଣ ଦେଇ ଯେବେ କୋଟି କୋଟି ପ୍ରାଣ
କରିପାରେଁ ରକ୍ଷା, କପାଁ ନ କରେଁ ବିଧାନ ?
ଭଙ୍ଗୁର ଜୀବନେ ଯଦି
ଲଭିବ ଅମୂଲ୍ୟ ନିଧି,
ବିନିମୟ ହେବ ଯେବେ କାଚରେ କାଞ୍ଚନ,
ନ କରିବ କପାଁ ସେଥି ସକାଶେ ଯତନ । ୨୭ ।

କରିବାକୁ ହେବ ମଧ୍ୟ ଏ କଥା ବିଚାର—
ସର୍ବେ ଯେବେ ଏହିରୂପେ ତେଜିବେ ସଂସାର
ଧରିଲେ ସନ୍ନ୍ୟାସ ବୃତ୍ତି
ନ ହେବ ମାନବ ବୃଦ୍ଧି,
କରିବ ବିହାର ଏବେ ହେବାକୁ ସଂସାରୀ,
ସାଧିବ ଆପଣା ଇଷ୍ଟ ପଛନ୍ତେ ବିଚାରି । ୨୮ ।

ଅନାସକ୍ତ ଭାବେ କାର୍ଯ୍ୟ କଲେ ଆଚରଣ,
ସହଜେ ପବିତ୍ର ଭାବେ ଥାଇପାରେ ମନ,
ପଙ୍କରେ ପଙ୍କଜ ଯଥା,
ଅନଳର ପବିତ୍ରତା
ନୁହେ ନଷ୍ଟ ଅପବିତ୍ର ଦ୍ରବ୍ୟ ପରଶରେ,
ଡୁବି ପାରେ ନିର୍ବିକାରେ ବିକାରସାଗରେ । ୨୯ ।

ପୂର୍ବ ପୂର୍ବ ମହାଜନେ ଗୃହାଶ୍ରମେ ଥାଇ
କେତେ କେତେ ମହାକାର୍ଯ୍ୟ କରିଛନ୍ତି ଯାଇ,
ଗାର୍ହସ୍ଥ୍ୟ ଆଶ୍ରମେ ଥାଇ
ସତ୍ୟ ଧର୍ମ ଅନୁଯାୟୀ
କଲେ କାର୍ଯ୍ୟ ଶିକ୍ଷା ପ୍ରାପ୍ତ ହେବେ ଲୋକଗଣ,
ଆପାତତଃ ନ ଛେଦିବ ସଂସାର ବନ୍ଧନ । ୩୦ ।

ସିଦ୍ଧାର୍ଥ ପ୍ରେମ ବଚନ ମନ୍ତ୍ରିଗଣ ପାଶେ
ବୋଇଲେ ଆନନ୍ଦମନେ ବିବାହ ସକାଶେ,
ପାଇଲେ ଏରୂପ କନ୍ୟା,
ରୂପେ ଗୁଣେ ହେବ ଧନ୍ୟା,
ସରଳା ବିଦୁଷୀ ହର୍ଷୋତ୍ଫୁଲ୍ଲା ରୂପବତୀ
ପରସେବାପରାୟଣା ଦୟାବତୀ ସତୀ । ୩୧ ।

ପବିତ୍ର ବଂଶରୁ ଜାତା, ମଧୁରଭାଷିଣୀ,
ହେବ ଛାୟା ପରି ସୁଖ ଦୁଃଖରେ ସଙ୍ଗିନୀ,
କୁତର୍କରେ ଅନିପୁଣା,
ନ ଥିବ ସାମର୍ଥ୍ୟ ଊଣା,
ଦାନେ, ଧ୍ୟାନେ, ପରସେବା ବ୍ରତରେ ତତ୍ପରା,
ହେଲେହେଁ ନିପୁଣା ଶାସ୍ତ୍ରେ ନ ହେବ ମୁଖରା । ୩୨ ।

ସର୍ବ ଜୀବେ ଦୟାବତୀ, କାର୍ଯ୍ୟେ ଅନଳସା,
ସଂସାର ଅସାର ସୁଖେ ନ ଥିବ ଲାଳସା,
ଜନନୀ ଭଗିନୀ ପରି
ସର୍ବ ଜୀବେ କୃପା କରି
ପାଳିବ, ନ ଥିବ ଜ୍ଞାନ କେବା ଆତ୍ମ ପର,
ସେ ନାରୀ ହେବାକୁ ପାରେ ଗୃହିଣୀ ମୋହର । ୩୩ ।

ବିଚାରିଲେ ମନ୍ତ୍ରିଗଣେ ଦେଖି ନରସାଇଁ,
ପୁତ୍ର ଇଚ୍ଛା ଅନୁରୂପ କନ୍ୟା ଅଛି କାହିଁ ?
ମନ୍ତ୍ରିଏ ନିଯୁକ୍ତ କାର୍ଯ୍ୟେ
ଘୋଷଣା ଦେଲେକ ରାଜ୍ୟେ,
ପ୍ରଭାତ ଅଶୋକ ଭାଣ୍ଡ ମଣି କାଞ୍ଚନରେ
ଶାକ୍ୟ କୁମାରୀଙ୍କୁ ଦାନ କରିବେ କୁମରେ । ୩୪ ।

କପିଳ ବସ୍ତୁରେ ହେଲା ସମ୍ବାଦ ପ୍ରଚାର,
ଜଗତବାସୀଙ୍କ ହୃଦେ ଆନନ୍ଦ ସଞ୍ଚାର,
ଉତ୍ସବ ସପ୍ରେମ ବଦନେ
ସଜ ଶାକ୍ୟ କନ୍ୟାଗଣେ
ଗଲେ ରାଜ ନଅରକୁ ଆନନ୍ଦେ ଉଲ୍ଲାସେ,
ସୁନ୍ଦର ସୁମନ ମାଳା କିବା ଭାସି ଆସେ । ୩୫ ।

ସହଜେ ଲାବଣ୍ୟମୟୀ ତରୁଣ ବୟସୀ,
କାଞ୍ଚନ ପ୍ରତିମା ସ୍ୱର୍ଗୁ ପଡ଼ିଛନ୍ତି ଖସି,
ବିଚିତ୍ର ବିବିଧ ବର୍ଣ୍ଣେ
ବିଭୂଷିତା ଆଭରଣେ,
ଅମିୟ କୌମୁଦୀ ମିଶା ଗଠିତା ପ୍ରତିମା,
ବିଧାତା ନିର୍ମାଣ ସୌନ୍ଦର୍ଯ୍ୟର ଶେଷସୀମା । ୩୬ ।

ଉଲ୍ଲାସ ଆନନ୍ଦ ମୁଖୁଁ ପଡୁଛି ଉଚ୍ଛୁଳି,
ଚହଟି ଯାଉଛି କାନ୍ତି ଗୁଳିବାରୁ ଢଳି,
ସଂସାର ସୌନ୍ଦର୍ଯ୍ୟସାରେ
ଘନୀଭୂତା ଏକାଧାରେ,
ନୁହନ୍ତ ଉଲ୍ଲାସମୟୀ, ଉଲ୍ଲାସ ପ୍ରତିମା,
ଭୁଲିଛି ତୂଳିରେ ବିଧି ମୂର୍ତ୍ତି ମଧୁରିମା । ୩୭ ।

ଆଗୁଲ୍‌ଫଲମ୍ବିତ ଘନ କୁଞ୍ଚିତ କୁନ୍ତଳ,
ମୁଖ ଯଥା ନୀଳ ମେଘେ ସୁଧାଂଶୁ ବିମଳ,
ଗତିକାଳେ ସେ କବରୀ
ଅବା ଯମୁନା ଲହରୀ,
ପ୍ରସ୍ଫୁଟିତ କମଳ କି ଯାଉଅଛି ଭାସି !
କବିର କଳ୍ପନାତୀତ ମୁଖ ଶୋଭାରାଶି । ୩୮ ।

ବିଚିତ୍ର ବିବିଧବର୍ଣ୍ଣ କୌଷେୟ ବସନ,
ପରିଧାନ ନାନାବିଧ ରତ୍ନ ଆଭରଣ,
ଚଳନ୍ତେ ସକଳେ ମେଳେ,
ଇନ୍ଦ୍ରଧନୁ ଶୋଭା ଖେଳେ,
ସୁନ୍ଦର ସୁଠାମ ତହିଁ ବଦନ ବିରାଜି,
ରଞ୍ଜିତ ସାୟାହ୍ନ ମେଘେ କିବା ତାରାରାଜି ! ୩୯ ।

ଆକର୍ଣ୍ଣବିଶ୍ରାନ୍ତ ନେତ୍ର ତରଳ ଚଞ୍ଚଳ,
ଆକର୍ଣ୍ଣବିସ୍ତୃତ ନୀଳ ଭ୍ରୂଲତା ଯୁଗଳ,
ବୀଣାର ମୂର୍ଚ୍ଛନା ସ୍ୱରେ
ବାକ୍ୟାଳାପ ପରସ୍ପରେ
ଉଲ୍ଲାସେ ବିଳାସେ ଗୁଳୁଛନ୍ତି ଦେହ ଢାଳି,
ଅଳସ-ଗମନା ଯଥା ମନ୍ଥର ମରାଳୀ । ୪୦ ।

ପ୍ରତ୍ୟୁଷ କମଳକଳି, ପ୍ରଦୋଷ ମଲ୍ଲିକା,
ଅର୍ଦ୍ଧୋଦିତ ପୂର୍ଣ୍ଣଚନ୍ଦ୍ର ବିକାଶ ଚନ୍ଦ୍ରିକା,
ଚିରାଭ୍ୟସ୍ତ ବାଲ୍ୟ କ୍ରୀଡ଼ା
ତରଳ ତାରୁଣ୍ୟ ବ୍ରୀଡ଼ା,
ବାଲ୍ୟ ଯୌବନର ସନ୍ଧି ଅପୂର୍ବ ମାଧୁରୀ
ଗମନେ ଭାଷଣେ ଦେହେ ପୂର୍ଣ୍ଣମାତ୍ର ପୂରି । ୪୧ ।

ଅଶୋକ କୁସୁମଦାମେ ପୁରୀ ସୁସଜ୍ଜିତ,
ରତନ ବେଦୀରେ ରାଜପୁତ୍ର ବିରାଜିତ,
ମଣ୍ଡିତ କୁସୁମଦାମେ,
ଲୋକନେତ୍ରେ ଅଭିରାମେ,
କୁସୁମ ଆସନେ କିବା କୁସୁମର ସାର,
ମୂର୍ତ୍ତିମନ୍ତ ରାଜପୁତ୍ର ସ୍ଥିତ ସେ ପ୍ରକାର । ୪୨ ।

କାଞ୍ଚନ ଥାଳୀରେ କିବା ପାରିଜାତ ହାର,
ଶାକ୍ୟ କନ୍ୟାଗଣ ସମାଗତା ସେ ପ୍ରକାର,
ସୁନ୍ଦର କୁମାର ପାଶେ
କୁମାରୀ ସୌନ୍ଦର୍ଯ୍ୟ ଭାସେ,
ହୀରକର ଚଉପାଶେ ମୁକୁତାର ପନ୍ତି,
ବେଢ଼ି ରହିଛନ୍ତି ସଦା ମାଧବୀ ମାଳତୀ । ୪୩ ।

ସଜ୍ଜିତ ଅଶୋକ ପୂର୍ଣ୍ଣ ଭାଣ୍ଡ ସମ୍ମୁଖରେ,
ରାଜପୁତ୍ର ପ୍ରୀତିବାକ୍ୟେ, ଆନନ୍ଦମନରେ,
ଥିଲେ କୁମାରୀ ଯେତେକ
ପ୍ରତି ଜଣେ ଏକ ଏକ
ଦେଲେ ବାଣ୍ଟି ! କୁମାରୀଏ ଥୋଇ ମନ ପ୍ରାଣ
କୁମରଙ୍କ ଶିରେ, ଧୀରେ କଲେ ଗୃହକୁ ଗମନ । ୪୪ ।

କାଞ୍ଚନପ୍ରତିମା ପରି ରତ୍ନସିଂହାସନେ
ବସିଛନ୍ତି ରାଜପୁତ୍ର, ସ୍ଥିର ନେତ୍ର ମନେ,
ଚନ୍ଦ୍ରପାଶେ ଯଥା ପୃଥ୍ୱୀ
ତଥା ଅପରୂପଦୃଶ୍ୟା,
ଦଣ୍ଡପାଣି କନ୍ୟା ଗୋପା ମିଳିଲେ ଶେଷରେ,
ଉତ୍ସବ-ବାସରେ ରାଜକୁମାର ପାଶରେ । ୪୫ ।

ପରସ୍ପର ଶୁଭଦୃଷ୍ଟି ହେଲା ବିନିମୟ,
ବିକାଶେ କୁମୁଦକାନ୍ତ ହେଲେ ଚନ୍ଦ୍ରୋଦୟ,
ବାସନ୍ତ ମଳୟାନିଳେ
ପ୍ରଫୁଲ୍ଲ ସୁମନଦଳେ,
ଜନ୍ମାନ୍ତର ସ୍ମୃତି ପରି ପ୍ରେମର ଅଙ୍କୁର,
କୁମାର ହୃଦୟେ ଜାତ ପ୍ରଣୟ ପ୍ରଚୁର । ୪୬ ।

ଯମୁନା ପୁଳିନେ ନନ୍ଦନନ୍ଦନ ଗୋପିନୀ
ପ୍ରେମମୁଗ୍ଧ, ଏକୁ ଆନ, ପ୍ରେମ ଉନ୍ମାଦିନୀ
ଧର୍ମେ ଭକ୍ତି, ପ୍ରେମେ ପ୍ରୀତି,
ମଧୁର ପ୍ରଣୟ ରୀତି,
ପ୍ରକୃତି ପୁରୁଷ ପ୍ରେମ ସୂତ୍ରରେ ଗ୍ରଥିତ,
ଯାହାର ପ୍ରଭାବେ ଜଡ଼ ଚେତନ ମୋହିତ । ୪୭ ।

ଅଙ୍କିତ ସୁଖରେ ପୂର୍ଣ୍ଣ ଉଭୟ ହୃଦୟ,
ଯୁଗଳ କଲ୍ଲୋଳ ପ୍ରେମସ୍ରୋତ ବିନିମୟ;
ଉଭୟେ ଆପଣା ଭୁଲି
ରହିଁଛନ୍ତି ନେତ୍ର ମେଲି,
ନିରେଖି, ଉଦିତ ଚନ୍ଦ୍ରେ ସ୍ଥିର କୁମୁଦିନୀ,
ପ୍ରେମମୁଗ୍ଧ ଯୁବମୃଗେ ଚକିତା ମୃଗୁଣୀ । ୪୮ ।

ଦଣ୍ଡପାଣି କନ୍ୟା ଗୋପା ମଧୁର ବଚନେ
ବୋଇଲା କୁମରେ ଗୃହିଁ ସଜଳ ନୟନେ,
ଯୁବରାଜ ! କୃପାଧାର !
କହିଁ ମୋତେ ଉପହାର
ଦେଲେ ନାହିଁ ? ନେଇଛନ୍ତି କୁମାରୀ ସକଳେ,
ନ ଜାଣେ କି ଅପରାଧ କଲି ପାଦତଳେ ? ୪୯ ।

ନିଃଶେଷ ଅଶୋକ ଭାଣ୍ଡ—ବୋଇଲେ କୁମାର,
ହେ ସୁନ୍ଦରି ! ତବଯୋଗ୍ୟ ନାହିଁ ଉପହାର;
ନିଅ ମୋର ଅଙ୍ଗୁରୀୟ,
ନୁହେ ସତ୍ୟ ରମଣୀୟ,
ହେଉ ଏ ଅମୂଲ୍ୟ ନିଧି ପଡ଼ି ତବ କରେ,
ଆୟସ କାଞ୍ଚନ, ସ୍ପର୍ଶମଣି ପରଶରେ । ୫୦ ।

ବୋଇଲେ ବିନୟେ ଗୋପା—ନାହିଁ ପ୍ରୟୋଜନ,
ରତ୍ନ ବିନିମୟେ କହିଁ ତୃଣ ଅକିଞ୍ଚନ ?
ଅଧୀନା ଚରଣଦାସୀ,
ନୁହେ ରତନପ୍ରୟାସୀ,
ଆଜ ପ୍ରଭୋ ! ଅଙ୍ଗୀକୃତ ତବ ପଦ୍ମକରେ,
ତବ କୃପା ଚାହିଁ ଯେହ୍ନେ ଜନ୍ମ ଜନ୍ମାନ୍ତରେ । ୫୧ ।

କୁମାର ଚରଣେ ମନ ପ୍ରାଣ ଥୋଇ ଗୋପା
ବାହୁଡ଼ିଲେ ଯନ୍ତ୍ରରୂଢ଼ା ପ୍ରତିମାସ୍ୱରୂପା,
ଶୁଣିଲେ ସକଳ ଲୋକେ
ଉତ୍ସାହେ ପ୍ରେମେ ପୁଲକେ,
କପିଳବସ୍ତୁରେ ଲୋକେ ପଡ଼ିଲା ଚହଳ,
ସମସ୍ତଙ୍କ ମୁଖେ ଏହି କଥାହିଁ କେବଳ । ୫୨ ।

ଇତି ଶ୍ରୀବୌଦ୍ଧାବତାରକାବ୍ୟେ ଅଶୋକୋତ୍ସବ
ନାମ ଚତୁର୍ଥ ସର୍ଗ ।

---

## ପଞ୍ଚମ ସର୍ଗ

( ମଙ୍ଗଳକୃତ୍ୟ )

ବୋଇଲେ ଦଣ୍ଡପାଣି ନୃପତି ପାଶେ,
କରନ୍ତୁ ଆଜ୍ଞା, ଯେବେ ମନକୁ ଆସେ,
ଶ୍ରୀମନ୍ତ ଯୁବରାଜ ଦେବ ପରୀକ୍ଷା,
କପରି ଅଛି ଶସ୍ତ୍ର ଶାସ୍ତ୍ରରେ ଶିକ୍ଷା । ୧ ।

'ଜାଣନ୍ତି ସନାତନ ନିୟମ କଥା,
ଶାକ୍ୟବଂଶରେ ଅଛି ଏପରି ପ୍ରଥା,'
ଭାବୀ-ଜାମାତା ବିଦ୍ୟା ସାମର୍ଥ୍ୟଜ୍ଞାନ
ନ ଜାଣି କନ୍ୟା କେହି ନ କରେ ଦାନ । ୨ ।

କାଞ୍ଚନ କାନ୍ତି ଦୀପ୍ତି ବଢ଼େ ଅନଳେ,
ଗୁଣୀଗରିମା ଜଣା ପରୀକ୍ଷା ସ୍ଥଳେ,
ଯୁବରାଜ ମହିମା ହେଉ ପ୍ରଚାର,
ଅକ୍ଷୁଣ୍ଣ ରହୁ ମଧ କୁଳ ଆଚାର । ୩ ।

ସପ୍ତମ ଦିନେ ଯୁବରାଜ ସିଦ୍ଧାର୍ଥ
ମିଳିଲେ ରଙ୍ଗସ୍ଥଳେ ମଲ୍ଲ-ଯୁଦ୍ଧାର୍ଥ,
ପ୍ରତିଦ୍ୱନ୍ଦୀ ଯୁବାଙ୍କୁ ଜିଣିବେ ଜଣି
ସୁପଣ ନିପୁଣତା ନେଲେ ସେ କିଣି । ୪ ।

ବ୍ୟାୟାମନପୁଣତା ବୁଦ୍ଧି କୌଶଳେ,
ଶୌର୍ଯ୍ୟ ବୀର୍ଯ୍ୟ ପ୍ରତିଭା ସାମର୍ଥ୍ୟ ବଳେ,
ନ ଥିଲା ପ୍ରତିଯୋଗୀ ଶାକ୍ୟ ରାଜ୍ୟରେ,
ଆଶ୍ଚର୍ଯ୍ୟ ବସୁନ୍ଧରେ ଦେଖିଲେ ନରେ । ୫ ।
ଶୈଶବେ ବିଳାସରେ ସୁଖେ ପାଳିତ,
ବ୍ୟାୟାମ ଶିକ୍ଷା ଚେଷ୍ଟା ନାହିଁ କଞ୍ଚିତ;
କାହୁଁ ଜାଣିବେ ମଲ୍ଲଯୁଦ୍ଧ କୌଶଳ,
ପାଇଲେ କାହୁଁ ସିଂହ ସମାନ ବଳ ? ୬ ।
ନ ପାଇ ଶିକ୍ଷା ଯୁବରାଜ ତଥାପି
ଅଷ୍ଟାଦଶ ପ୍ରକାର ଲେଖିଲେ ଲିପି;
ଶାସ୍ତ୍ରାଦି କଳା ଚଉଷଠି ପ୍ରକାର
କୁମାରେ ଜଣା ସର୍ବ ବିଦ୍ୟାର ସାର । ୭ ।
ଲୋକେ ଭାଳିଲେ ବିଦ୍ୟା ଶିଖିଲେ କାହୁଁ,
କପର କିବା ଘଟେ ଜାଣୁ ତ ନାହୁଁ,
ଇନ୍ଦ୍ରଧନୁକୁ ରଙ୍ଗ କେ କଲା ବୋଲ ?
କେ ଦିଏ ଶିକ୍ଷା ସିଂହେ ବଳ କୌଶଳ ? ୮ ।
ପରମବ୍ରହ୍ମ ଅଂଶୁ ଜନ୍ମ ଯାହାର,
ଲୋକକଷ୍ଟ ବାରଣେ ଯେ ଅବତାର,
ଲଭିବେ ମୁକ୍ତି ପ୍ରାଣୀ ଯାହା କୃପାରେ,
କି ଅସମ୍ଭବ ବୋଲ ସେ ପ୍ରଭୁଠାରେ ? ୯ ।
ଗାଇଲେ ଗୀତ ବନ୍ଦୀ ବିବିଧ ଛନ୍ଦେ,
ନାଚିଏ ହୁଳହୁଳି ଦେଲେ ଆନନ୍ଦେ ।
ଉଠିଲା ଜୟ ଜୟ ଶବଦ ରାଜ୍ୟେ,
ପ୍ରଶଂସା କଲେ ସର୍ବେ ଶ୍ରୀଯୁବରାଜେ । ୧୦ ।
ମଙ୍ଗଳ ବାଦ୍ୟ ବାଜେ ରାଜନଅରେ,
ଜ୍ଞାତି କୁଟୁମ୍ବେ ବିପ୍ରେ ଇତର ନରେ,
ଗୋପା ସହିତ ଯୁବରାଜ ବିବାହ
ହେବ, ଧାଇଁଲା ମାର୍ଗେ ଲୋକପ୍ରବାହ । ୧୧ ।
ଶୁଭ ମୁହୂର୍ତ୍ତେ ପରିଣୟ ବ୍ୟାପାର,
ସମ୍ପନ୍ନ ହେଲା, ରାଜ୍ୟ ମଧ୍ୟେ ପ୍ରଚୁର,
ଲକ୍ଷ୍ମୀ ସହିତ ନାରାୟଣ ମିଳନ,
ବାରିଦେ ବିଦ୍ୟୁ, ମୁକ୍ତାମାଳା କାଞ୍ଚନ । ୧୨ ।

କପିଳବସ୍ତୁ ରାଜ୍ୟେ ଯେତେକ ଲୋକ
ମାତିଲେ ଉତ୍ସବରେ ଭଜି ପୁଲକ,
ସାତ ଦିବସ ଦିବା ନିଶି ରାଜ୍ୟରେ
ଶୁଭେ ସଙ୍ଗୀତଧ୍ୱନି ପ୍ରତ୍ୟେକ ଘରେ । ୧୩ ।
ଭିକ୍ଷୁକେ ଭିକ୍ଷା ମାଗି ଯିବାକୁ ନାହିଁ,
ପାଇଲେ ଯେତେ ଧନ ରଖିବେ କାହିଁ ?
ପ୍ରତ୍ୟେକ ଘରେ ଭୋଜନର ବ୍ୟାପାର,
କରିବ କାହା ଘରେ କେବା ଆହାର ? ୧୪ ।
ନୃପତି ଗନ୍ତାଘର ଅଛି ମୁକୁଳା,
ନେଇ ଯିବାକୁ ଧନ ନାହିଁ ଅଙ୍କୁଳା,
ମିଷ୍ଟାନ୍ନ କୁଡ କୁଡ ରହିଛି ପଡ଼ି,
ଖାଇବେ ଲୋକ କେତେ ? ଗଲାଣି ସଡ଼ି । ୧୫ ।
ଊନବିଂଶ ବୟସେ ରାଜନନ୍ଦନ,
ବିବାହଶୃଙ୍ଖଳରେ ହେଲେ ବନ୍ଧନ,
ଉଡ଼ିବେ ଯେ ବିହଗ ଅନନ୍ତାକାଶେ,
ଆବଦ୍ଧ ହେଲେ ଆଜ ପ୍ରଣୟ ଫାଶେ । ୧୬ ।
ତଥାପି ନୃପ ଚିତ୍ତ ସଦା ଅସ୍ଥିର,
ଉଡ଼ି ବା ଯିବ ପକ୍ଷୀ ଭାଙ୍ଗି ପିଞ୍ଜର,
ମାନବ ସାଧେ ଯାହା ହେବାକୁ ପାରେ,
କଲେକ ଆୟୋଜନ ଯତ୍ନ ଚେଷ୍ଟାରେ । ୧୭ ।
ରୋହିଣୀ ନଦୀକୂଳେ ପ୍ରମୋଦୋଦ୍ୟାନ
ନନ୍ଦନ ପ୍ରତିମାରେ କଲେ ନିର୍ମାଣ,
ଶିଳ୍ପୀ ସ୍ୱପନାତୀତ ସ୍ଫଟିକାଳୟ
ନିର୍ମିଲେ ରଖିବାକୁ ରାଜ-ତନୟ । ୧୮ ।
ହିମାଳୟ ପଦରେ ନିର୍ମିତ ବନ,
ଦେବତା ପଦେ ପୁଷ୍ପମାଳା ଯେସନ;
ବହେ ରୋହିଣୀ ସ୍ରୋତ ତା ଗୃହପାଶେ,
ଜାହ୍ନବୀ ସ୍ରୋତେ ପୁଷ୍ପ ଗୁଚ୍ଛ ଭାସେ । ୧୯ ।
ମଧୁରନାଦୀ ନାନାଜାତି ବିହଙ୍ଗ
ରବନ୍ତି ଡାଳେ ମେଳି ସ୍ୱରତରଙ୍ଗ;
ନୃତ୍ୟଗୀତକୁଶଳା ଯୁବତୀଗଣେ
ଭ୍ରମନ୍ତି ଦେବକନ୍ୟା ନନ୍ଦନ ବନେ । ୨୦ ।

କୁସୁମ ନାନାଜାତି ଫୁଟି ବିକାଶେ;
ପ୍ରେମ ମାଧୁର୍ଯ୍ୟରସେ ବିଶ୍ୱ କି ଭାସେ ?
ଗୋପା ପ୍ରେମସାଗରେ ଡୁବି ସିଦ୍ଧାର୍ଥ
ବୈରାଗ୍ୟ ତେଜ ଶୂନ୍ୟ ହେଲେ ଯଥାର୍ଥ । ୨୧ ।
ଲାବଣ୍ୟମୟୀ ଗୋପା ପ୍ରେମମୂରତି,
ଲଳିତ କଳାବତୀ ବିଦୁଷୀ ସତୀ,
ମନ ପ୍ରାଣ ସମର୍ପି ପତି ପଦରେ
କାୟା ଛାୟା ସମାନେ ଥାନ୍ତି ପାଶରେ । ୨୨ ।
ବେଦେ ଗାୟତ୍ରୀ ଯେବା ସିଦ୍ଧି ସାଧନା,
ଗୋପାର ପ୍ରେମେ ମୁଗ୍ଧା ଗୋପଅଙ୍ଗନା,
ଆତ୍ମ ବିସ୍ମରି ଗୋପା ପତିଚରଣେ
ମିଳିତା, ସିନ୍ଧୁ ଗର୍ଭେ ନଦୀ ଯେସନେ । ୨୩ ।
ନାହିଁ ଭୂଷଣ ଶିରେ ଅବଗୁଣ୍ଠନ,
ଧନ ବା ଲଜ୍ଜାହୀନା ନାରୀ ଯେସନ ।
ଏକଦା ସଖୀ ଏକ ଭଣିଲା ହସି,
କାନ୍ତିହୀନ ପୁଷ୍ପେ କି ଭ୍ରମରେ ବସି ? ୨୪ ।
ବୀଣାଜିଣା ବଚନେ ବୋଇଲେ ଗୋପା,
ସୌରଭହୀନା ହେଲେ ଚମ୍ପା ସ୍ୱରୂପା,
ଆଦର କରନ୍ତି କେ ? ସୌନ୍ଦର୍ଯ୍ୟନିଧି
ବର୍ଦ୍ଧନେ ଯତ୍ନ ବୃଥା, ବିଧାନ ବିଧି । ୨୫ ।
ନାରୀ ଲାବଣ୍ୟ-ଧର୍ମ ସେ ଆଭରଣ,
ଧର୍ମ ହିଁ ନାରୀଙ୍କର ଅବଗୁଣ୍ଠନ;
ଧର୍ମ ବିହୁନେ ଅବଗୁଣ୍ଠନ ତଥା,
ମଳିନ ବସ୍ତ୍ରେ ପୁଷ୍ପ ମଣ୍ଡନ ଯଥା । ୨୬ ।
ମନ ନିର୍ମଳ, ବାକ୍ୟ ସତ୍ୟ, ସରସ,
ନିରୁଦ୍ଧ ଚିତ୍ତବୃତ୍ତି, ଇନ୍ଦ୍ରିୟ ବଶ
ନାହିଁ ଯାହାର ବୃଥା ଅବଗୁଣ୍ଠନ,
ଶୀଳତା ନିଷ୍ଠାହୀନ—ବୃଥାଭରଣ । ୨୭ ।
ପତି ମୋ ଆଭରଣ, ଧର୍ମ-ଲାବଣ୍ୟ,
ଇନ୍ଦ୍ରିୟ ସଂଯମନ—ଅବଗୁଣ୍ଠନ;
ସମୟ ଯାଏ ସ୍ୱାମୀ ସେବାର ପାଇଁ
ଶରୀର ମଣ୍ଡନକୁ ସମୟ କାହିଁ ? ୨୮ ।

ହୃଦୟଦୁର୍ଗେ ମୋର ଧର୍ମ ରକ୍ଷକ,
ବିବେକ ପ୍ରହରୀ ମୋ ଜ୍ଞାନ ଆଲୋକ,
ସାଧୁ ସାହସ ଅସ୍ତ୍ର ଲଜ୍ଜା ବସନ,
ସ୍ୱାମିସେବା ମୋ ବ୍ରତ ଅବଗୁଣ୍ଠନ । ୨୯ ।
ଗୋପା ସିଦ୍ଧାର୍ଥ ପ୍ରେମ ପ୍ରୀତି ବନ୍ଧନ,
ଜାହ୍ନବୀ ବ୍ରହ୍ମପୁତ୍ର ସ୍ରୋତ ମିଳନ,
ଭିନ୍ନ ଶରୀର ଏକ ମନ ହୃଦୟ,
କ୍ଷୀର ନୀର ସମାନେ ମେଳ ଉଭୟ । ୩୦ ।
ଜୀବନ-ଉଦ୍ୟାନରେ ରାଜନନ୍ଦନ
ସହକାରେ ମାଧବୀ କଲା ବେଷ୍ଟନ,
ଥିଲେ ଏକାକୀ ଏବେ ସଙ୍ଗେ ସଙ୍ଗିନୀ,
ଏକ ପ୍ରୀତିଶୃଙ୍ଖଳେ କଷି କରଣୀ । ୩୧ ।
ଦିନେ ସିଦ୍ଧାର୍ଥ ମନେ କଲେ ବିଚାର,
କେବଳ କଷ୍ଟପୂର୍ଣ୍ଣ ନୁହେ ସଂସାର,
ଅଛି ପ୍ରେମ ମାଧୁରୀ ପ୍ରୀତି ବିମଳ,
ନିଦାଘ ମରୁ ମଧ୍ୟେ ଜଳ ସମ୍ବଳ । ୩୨ ।
ରମଣୀ ପତିପ୍ରାଣା ପ୍ରୀତି ମାଧୁରୀ—
ସ୍ୱର୍ଗୀୟ ସୁଧା ଅଛି ଜଗତେ ପୂରି,
ଅମା ନିଶାରେ ଦୀପଶିଖା ସମାନେ,
ଦୁଃଖସାଗରେ ତରୀ କି ଅନୁମାନେ । ୩୩ ।
ଗୋପା ପ୍ରେମରେ ମୁଗ୍ଧ ଦେଖି ନନ୍ଦନେ
ଗତ ବୈରାଗ୍ୟଭାବ ବୁଝିଲେ ଜନେ,
ଶୁଦ୍ଧୋଦନ ଆଶ୍ୱସ୍ତ ହେଲେ ମନରେ,
ଭବିତବ୍ୟରେ ଅନ୍ଧ ଏପରି ନରେ । ୩୪ ।
ପୂର୍ଣ୍ଣ ନିଦାଘ ଶେଷେ ବୃଷ୍ଟି ସଞ୍ଚାର,
ବିଦ୍ୟୁତ ଆଭା ଅନ୍ତେ ବଢ଼େ ଅନ୍ଧାର,
ଭାଙ୍ଗିଲା ପରି ଗୋପା ରାଜସୌଭାଗ୍ୟ—
ସିଦ୍ଧାର୍ଥମନେ ଏବେ ଜାତ ବୈରାଗ୍ୟ । ୩୫ ।

ଇତି ଶ୍ରୀ ବୌଦ୍ଧାବତାରକାବ୍ୟେ ମଙ୍ଗଳକୃତ୍ୟ
ନାମ ପଞ୍ଚମ ସର୍ଗ ।

———

## ଷଷ୍ଠ ସର୍ଗ

( ବୈରାଗ୍ୟ ସଞ୍ଚାର )

ନାହିଁ ଉଦବେଗ ଚିନ୍ତା କାହାରି ଚିତ୍ତରେ,
ରାଜା, ରାଣୀ, ଗୋପା ଛନ୍ତି ଆନନ୍ଦମନରେ ।
ସୁଖଦ ଭ୍ରାନ୍ତିର କ୍ରୋଡ଼େ ସର୍ବେ ଅଚେତନ,
ମଣିଲେ ଫେରିଛି ଏବେ ସିଦ୍ଧାର୍ଥର ମନ ।
ଗୌତମୀ କଦାଚ ମନେ ଭାଳନ୍ତି ବିଗୁରି,
ସିଦ୍ଧ ମନସ୍କାମ ପ୍ରଭୁ ଶୁଣିଲେ ଗୁହାରି ।
ଗୋପାର ମଧୁରପ୍ରେମେ ମୋର ଭାଗ୍ୟବଳେ
ଆବଦ୍ଧ ପ୍ରମତ୍ତ କରି ପ୍ରଣୟ-ଶୃଙ୍ଖଳେ ।
ସିଦ୍ଧାର୍ଥ ନିର୍ଜନେ ବସି କରେ ନାହିଁ ଧ୍ୟାନ,
କରନ୍ତୁ କରୁଣା ମହାପ୍ରଭୁ ଭଗବାନ ।
ମୋହାନ୍ଧ ମାନବ ବର୍ତ୍ତମାନେ ବିମୋହିତ,
ନ ଜାଣେ କି ଭବିଷ୍ୟତ ପଟରେ ଲିଖିତ ।
ମାନବର ଭାଗ୍ୟଲିପି ନ ଥିଲେ ପ୍ରଚ୍ଛନ୍ନ
ଶୋଚନୀୟ କଷ୍ଟବହ ହୁଅନ୍ତା ଜୀବନ ।
ଆସେ କେତେ କାର୍ଯ୍ୟ ଭୟଙ୍କର ରୂପ ଧରି
ସାମାନ୍ୟ ଘଟନାସୂତ୍ର ଅବଲମ୍ବ କରି ।
ବିଶାଳ ମହାନ ତରୁ କଣିକା ବୀଜରେ
ରହିଛି ପ୍ରଚ୍ଛନ୍ନଭାବେ ଦେଖି ପ୍ରତ୍ୟକ୍ଷରେ ।
ଏକଦା ନିଶୀଥକାଳେ ବସି କକ୍ଷାନ୍ତରେ,
ବଜାଏ ରମଣୀ ଏକ ବୀଣା ଧରି କରେ ।
ସ୍ୱର ଗ୍ରାମ ମୂର୍ଚ୍ଛନାରେ ଢାଳେ ସୁଧା ଢାଳି,
ପ୍ରମତ୍ତରେ ଅଛି ଆତ୍ମବିସ୍ମୃତା ସେ ବାଳୀ ।
ଗାଏ ଗୀତ ଭାବାବେଶେ ବିମୋହିତମନେ,
ସନ୍ନିପାତଗ୍ରସ୍ତ ରୋଗୀ ପ୍ରଳାପ ଯେସନେ ।
ସଙ୍ଗୀତଲହରୀ ମିଶି ମଳୟାନିଳରେ
ଖେଳି ଯାଉଅଛି ପୁରୀ ମଧ୍ୟେ ହିଲ୍ଲୋଳରେ ।
ନିସ୍ତବ୍ଧ ନିଶୀଥାକାଶେ ମୂର୍ଚ୍ଛନାର ତାନ
ନୃତ୍ୟକାରେ ଖେଳେ ବାୟୁ କରି କମ୍ପମାନ ।
ବିଗତ ସନ୍ତାପ ଚିନ୍ତା କି ଭାବ ଆବେଶେ
ସଞ୍ଚାରିତ ସୁପ୍ତୋତ୍ଥିତ ପରି ହୃଦଦେଶେ ।
ବିଶେଷେ ବୈରାଗ୍ୟଭାବ ହୁଏ ହୃଦଙ୍ଗମ,
ଜାଙ୍ଗଲୀ ସଙ୍ଗୀତେ ବିଳସାୟୀ ଭୁଜଙ୍ଗମ ।
ଅର୍ଦ୍ଧନିଦ୍ରା ଯୁବା, ଗୋପା ଅଚେତା ନିଦ୍ରାରେ,
ଯୁଗଳ କାଞ୍ଚନମୂର୍ତ୍ତି କୁସୁମଶଯ୍ୟାରେ ।
ଅବଶ୍ୟ ସଫଳ ହେବ ବିଧାତା ଲେଖନ,
ମାନବର ସାଧ୍ୟ କାହିଁ କରିବ ମୋଚନ ?
ଶୂନ୍ୟକୁମ୍ଭ ଜଳମଗ୍ନ କଲେ ବିକ୍ରମରେ,
ଛିଡ଼ିଲେ ଉଠେ ସେ ଭାସି ଦ୍ୱିଗୁଣବଳରେ ।
ମଣିଲେ ସିଦ୍ଧାର୍ଥ, ଗୀତ ବୋଲୁଛି କଣ୍ଠରେ,
ବୃଥା ବିମୋହିତ ଅଛି—ଶୟାନ ସୁଖରେ,
ଜରା, ବ୍ୟାଧି, ଦୁଃଖ, ମୃତ୍ୟୁ ପୂର୍ଣ୍ଣ ଏ ଭୁବନ,
ଦାରୁଣ ଯନ୍ତ୍ରଣା ଭୁଞ୍ଜେ ଜୀବ ଅକିଞ୍ଚନ ।
ଅନଳେ ପତଙ୍ଗ ସମ ବୃଥା ଲାଳସାରେ
ମରେ ଜୀବ ନିତ୍ୟ, ମନେ ଭାଳେ ନାହିଁ ବାରେ
ନିଜ ମୁକ୍ତିମାର୍ଗ ! ଆହା ପୃଥ୍ୱୀ ରଙ୍ଗାଳୟ,
କରେ ନିତ୍ୟ ଜୀବ ଜନ୍ମ ମୃତ୍ୟୁ ଅଭିନୟ ।
ଅବିଶ୍ରାନ୍ତ ନଦୀସ୍ରୋତ ସମାନେ ଜୀବନ
ଧାବିତ ମରଣ ସିନ୍ଧୁ ଗର୍ଭେ ଅନୁକ୍ଷଣ ।
ଘୂର୍ଣ୍ଣିତ କୁମ୍ଭାରଚକ୍ର ସମାନେ ମାନବ,
ପର୍ଯ୍ୟାୟରେ ଜନ୍ମ ମୃତ୍ୟୁ କରେ ଅନୁଭବ ।
ଅଜ୍ଞାନ ତିମିରେ ଘୋର ତୃଷ୍ଣାରେ ପୀଡ଼ିତ,
ନ ହେଲା ତଥାପି ଧିକ ଚେତନା କିଞ୍ଚିତ ।
ବ୍ୟାଧଜାଲେ ବଦ୍ଧ ମୃଗ ସମାନେ ଜୀବନ
ଜନମ ମରଣେ ବଦ୍ଧ ମୋହେ ଅଚେତନ ।
ସୁଖ ଲୋଡ଼ି ଦୁଃଖ ଭୁଞ୍ଜେ ଆପାତ ମଧୁର ।
କାର୍ଯ୍ୟେ ଲିପ୍ତ ମୃଗତୃଷ୍ଣା ଦେଖି ତୃଷ୍ଣାତୁର ।
ଯୌବନ ଲାବଣ୍ୟ ଜରା କରିବ ହରଣ,
ପର୍ଯ୍ୟୁଷିତ ତରୁଚ୍ୟୁତ ସୁନ୍ଦର ସୁମନ,—
ସୌନ୍ଦର୍ଯ୍ୟ-ସାମର୍ଥ୍ୟ-ହାରୀ ଜରା ଦମନରେ
ଦାବାଗ୍ନି କୁସୁମ ବନେ ଦେହରେ ସଞ୍ଚରେ ।

ପ୍ରାଣୁ ବଳି ପ୍ରିୟତର ଜ୍ଞାତି-ବନ୍ଧୁଗଣ
ବିଚ୍ଛିନ୍ନ ବିନଷ୍ଟ ହେଉଛନ୍ତି ଅନୁକ୍ଷଣ ।
ତାଳେ ଯେ ହୃଦୟେ ସୁଧା ପ୍ରେମର ଆଲୋକ,
ବିଶେଷେ ସେ ଲୋକ ହୁଏ ଯନ୍ତ୍ରଣାଦାୟକ ।
ନଦୀସ୍ରୋତେ ଶୁଷ୍କ ତୃଣ ସମାନେ ମିଳନ,
ଜଗତରେ ତଥା ଜ୍ଞାତି ବନ୍ଧୁ ପରିଜନ ।
ପ୍ରେମ ବୋଲ ପ୍ରୀତି ବୋଲ ଦୁଇ ଦିନପାଇଁ,
ମୃତ୍ୟୁ ଅନ୍ତେ ଛିନ୍ନଭିନ୍ନ, ଆଉ ଭେଟ କାହିଁ ।
ଜନ୍ମ, ଜରା, ମୃତ୍ୟୁ ତିନି ବେଢ଼ିଛନ୍ତି ପ୍ରାଣ,
ନାହିଁ କି ଉପାୟ କିଛି ଏଥୁଁ ପରିତ୍ରାଣ ?
ମାନବର ଭାଗ୍ୟଲିପି—ଅନନ୍ତ ଯନ୍ତ୍ରଣା
ଭୁଞ୍ଜିବେ କିପରି ଏହା କରିବ କଳ୍ପନା ?
କରୁଣାନିଧାନ ହରି ସ୍ୱକୀୟ ସନ୍ତାନେ
ଦେବେ କଷ୍ଟ ? ବୁଝାଯାଉ ନାହିଁ ଅନୁମାନେ ।
ସ୍ୱଭାବସଂସ୍କାରାଧୀନ ଭୁଞ୍ଜ ପ୍ରାଣିଗଣେ,
ମହୋଚ୍ଚ ମାନବ ଚଳେ ବିବେକ ଶାସନେ,
ଭ୍ରାନ୍ତ ଜୀବ ମୋହପାଶେ ହରାଇ ବିବେକ
ଆତ୍ମକାର୍ଯ୍ୟ ଫଳ ଭୁଞ୍ଜେ ଯନ୍ତ୍ରଣା ଅନେକ ।
ଜରା, ମୃତ୍ୟୁ ହସ୍ତୁ ପ୍ରାଣୀ ପାଇବେ ଉଦ୍ଧାର,
କେ କରିବ ଏପ୍ରକାର ମାର୍ଗ ଆବିଷ୍କାର ।
ନିଶି ଅବସାନ ପ୍ରାୟ, ସଙ୍ଗୀତକାରିଣୀ
ଅନୁଭବେ ସୁଖନିଦ୍ରା ସନ୍ତାପହାରିଣୀ ।
ସିଦ୍ଧାର୍ଥ ଶୟାନ ଅବା ଛନ୍ତି ସଚେତନ,
ନିସ୍ତବ୍ଧ ନିଶ୍ଚଳ ଦେହ ମୁଦ୍ରିତ ନୟନ ।
ସ୍ୱପନ ବା ସତ୍ୟ କଥା ନ ପାରନ୍ତି ଜାଣି,
ଏହା କି ସଙ୍ଗୀତ ଗାଥା ଅବା ଦୈବବାଣୀ ?
ମାନବର ଭାଗ୍ୟେ ଘଟେ ଏରୂପ ଘଟନା
ଅଲକ୍ଷ୍ୟଭାବରେ, ତତ୍ତ୍ୱ ଯାଏ ନାହିଁ ଜଣା ।
ସିଦ୍ଧାର୍ଥ ସିଦ୍ଧାନ୍ତ କଲେ, ଜଗତ ସଂସାର
କରିବ ଉଦ୍ଧାର—ସତ୍ୟ ମାର୍ଗ ଆବିଷ୍କାର ।
ମାୟାବଶେ, ରସୋଲ୍ଲାସେ କାଟିଛି ସମୟ,
ଯାଇଛି ଯା ଯାଉ ! ତାହା ବାହୁଡ଼ି ନିଶ୍ଚୟ
ନ ଆସିବ ! ଏ ଦେହରେ ଲୋଡ଼ିବି ବିଧାନ,
ପାଇବେ ଜଗତବାସୀ ଲୋକେ ପରିତ୍ରାଣ ।
ସୁକୁମାର ଦେହ ଶୁଷ୍କ ହେବ ତ ଅବଶ୍ୟ,
ନ ଥିବ ସାମର୍ଥ୍ୟ, ହେବି ଆପଣେ ଅବଶ୍ୟ ।
ଜୀବନର ଆଦି ଅନ୍ତ ଯାଏ ନାହିଁ ଜଣା,
ଆସେ ଯାଏ ଚକ୍ରବତ ଭୁଞ୍ଜଇ ଯନ୍ତ୍ରଣା ।
ନିଜ କର୍ମଦୋଷେ କଷ୍ଟ ଭୋଗ କରେ ପ୍ରାଣ,
ଅଥବା ବିଧିର ଏହା ଅଲଙ୍ଘ୍ୟ ବିଧାନ ?
ଶଯ୍ୟା ତେଜି ଶାକ୍ୟସିଂହ ଉଠିଲେ ସତ୍ୱରେ,
ପଡ଼ିଲା ସକଳ କଥା ମନେ ପର୍ଯ୍ୟାୟରେ ।
ଜୀବନର ଉଚ୍ଚ ଲକ୍ଷ୍ୟ ଆପଣା କର୍ତ୍ତବ୍ୟ
ନୂତନ ରୂପରେ ସବୁ କଲେ ଅନୁଭବ ।
ବିଳାସର ବିଷ-ବୃକ୍ଷ କରିବି ଛେଦନ,
ପୂର୍ବାପର କଥା ଭାଳି ଦୃଢ଼ କଲେ ମନ ।
ଅବସାନ ନିଶି—ଦୀପ ମଳିନ, ନିର୍ବାଣ,
ମଣିଲେ ଏ ଦୀପଶିଖା ସମାନରେ ପ୍ରାଣ ।
ଜଳି ନିଭିଗଲା ଦୀପ—ନିଭିବ ଜୀବନ,
ଜଗତ ସମ୍ବନ୍ଧମାତ୍ର ମାୟାର ବନ୍ଧନ ।
ବୃଥା ଗତାୟୁତ ମାତ୍ର କରେ କି ଜୀବନ ?
ଅବଶ୍ୟ ଏହାର ଅଛି ଶାନ୍ତିନିକେତନ ।
ନ ପାରିବି କରି ଯେବେ ଲୋକେ ପରିତ୍ରାଣ,
ଅଳୀକ ଐଶ୍ୱର୍ଯ୍ୟଭୋଗ, ବୃଥା ଏହି ପ୍ରାଣ !
ସମ୍ପୂର୍ଣ୍ଣ ରଜନୀ ଶେଷ—ଅରୁଣ ଉଦିତ
ହୋଇ ନାହିଁ, ଯୁବରାଜ ଶଯ୍ୟାରୁ ଉତ୍ଥିତ ।
ଜଗତ ନିସ୍ତବ୍ଧ, କଦାଚିତ ପକ୍ଷୀପକ୍ଷ
ସ୍ଖଳିତ, ଶଙ୍କିତ—ଯଥା ଶାକ୍ୟସିଂହବକ୍ଷ ।
ଆନନ୍ଦରେ ବିଚରଣ କରନ୍ତି ସଧୀରେ,
ବିଷୟେ ନିର୍ଲିପ୍ତ ମନ ଉଦାସବୁଦ୍ଧିରେ ।
ନନ୍ଦନ ବିଳାସେ ମୁଗ୍ଧ ଭ୍ରାନ୍ତ ଶୁଦ୍ଧୋଦନ,
ଆନ ସର୍ବେ କରୁଛନ୍ତି ସୁଖରେ ଶୟନ ।

ଇତି ଶ୍ରୀ ବୌଦ୍ଧାବତାର କାବ୍ୟେ ବୈରାଗ୍ୟସଞ୍ଚାର
ନାମ ଷଷ୍ଠ ସର୍ଗ ।

———

# ସପ୍ତମ ସର୍ଗ

( ବୈରାଗ୍ୟ )

ମଙ୍ଗଳ ସଙ୍ଗୀତ ରାଜଭବନେ
ଶୁଭିଲା, ହେଲେକ ଜାଗ୍ରତ ଜନେ ।
ବିଭାସ ରାଗିଣୀ ସ୍ୱରଲହରୀ
ଶୁଣି ଜାଗରିତ ଗୋପା ସୁନ୍ଦରୀ ।
ନ ଦେଖି ସ୍ୱାମୀଙ୍କୁ ଆପଣା ପାଶେ,
ଅଇଲେ ବାହାରେ ବେଗେ ତରାସେ;
ଉଦାସେ ଦେଖିଲେ ରାଜନନ୍ଦନ
ଉଭା ଛନ୍ତି, ଯଥା ଧ୍ୟାନମଗନ ।
କମ୍ପିଲା ହୃଦୟ, ଭୟେ ଆତଙ୍କେ
ବିମର୍ଷେ ଜାଗ୍ରତେ ରହିଲେ ସଙ୍ଗେ ।
ମାନ୍ତକ ଯେମନ୍ତ ନିର୍ମଳାକାଶେ
କ୍ଷୁଦ୍ର ଖଣ୍ଡ ଖଣ୍ଡ ବାରିଦ ଭାସେ,
ପଡ଼ିବ ସହସା ଅବା କୁଳିଶ,
ଆଶଙ୍କା ଉଦ୍‌ବେଗ ଦିବସନିଶି ।
ଲକ୍ଷ୍ୟ ରଖିଥାନ୍ତି ସ୍ୱାମୀଙ୍କ ପ୍ରତି,
ଦେଖିଲେ ବିରାଗ ମୁଖରେ ମତି,
ବିଲୋଳ ବିଳାସ ରମଣୀରୂପେ
ଦେଖନ୍ତି କୁମାର ଯେସନ୍ତେ ବିରୂପେ ।
ସଦା ଉଦାସୀନ ଧ୍ୟାନ ଭାବରେ,
ନାହିଁ ମନ କିଛି ନୃତ୍ୟ ଗୀତରେ ।
ଶୁଣିଲେ ଜନନୀ, ଶୁଣିଲେ ପିତା,
ବଢ଼ିଲା ସକଳ ହୃଦୟେ ଚିନ୍ତା ।
ଏକଦା ସିଦ୍ଧାର୍ଥ ସନ୍ଧ୍ୟାକାଳରେ
ପ୍ରମୋଦକାନନେ ଯାନ୍ତେ ମାର୍ଗରେ,
ନିତାନ୍ତ ସ୍ଥବିର ଜରାକାତର,
କଷ୍ଟେ ଚଳେ ଏକ ଦେଖିଲେ ନର ।
ପୁଚ୍ଛିଲେ, "ସାରଥେ ! ବୋଲ ବୃତ୍ତାନ୍ତ,
କିଏ ଏ ଲୋକଟି ? ଜୀର୍ଣ୍ଣ ନିତାନ୍ତ,
ରକ୍ତ ମାଂସ ଶୁଷ୍କ, ଦେହ ଦୁର୍ବଳ,
କଷ୍ଟେ କଷ୍ଟେ ଚଳେ ନାହିଁଟି ବଳ ।
ଦନ୍ତହୀନ ମୁଖ, ବେନି ନୟନ
ଦୃଷ୍ଟିହୀନ, ଶୁଷ୍କ ହସ୍ତ ଚରଣ ।
ଆହା ! ଆହା ! ବଳ ନାହିଁ ଦେହରେ,
ଠୁକୁ ଠୁକୁ ଚାଲେ ଯଷ୍ଟିହସ୍ତରେ ।"
ବୋଇଲେ ସାରଥି—"ବୃଦ୍ଧ ଏ ଲୋକ,
ନାହିଁ ଦେହେ ବଳ, ଭୁଞ୍ଜୁଛି ଦୁଃଖ ।
ହେଲାଣି ସେ ବୃଦ୍ଧ, ଅଶକ୍ତ ଦେହ,
କେ କରିବ କିପାଁ ତାହାକୁ ସ୍ନେହ ?
ଅର୍ଥ ଉପାର୍ଜନେ ନାହିଁ ତା ଶକ୍ତି,
କରିବେ ଜ୍ଞାତିଏ କିପାଇଁ ଭକ୍ତି ?
ଭାର୍ଯ୍ୟା ପୁତ୍ର ଥିଲେ ଥିବେ ତାହାର,
ତେଜିଲେଣି ଦେଖି ଏହା ବେଭାର ।
ଅନାଥ ସମାନ ଭ୍ରମେ ଦାଣ୍ଡରେ
ଅସହାୟ ହୋଇ କଷ୍ଟେ କାତରେ ।"
ପୁଚ୍ଛିଲେ ସିଦ୍ଧାର୍ଥ ପୁଣ—"ସାରଥେ !
ଫେଡ଼ି ଏହା ତତ୍ତ୍ୱ ବୋଲନ୍ତୁ ମୋତେ ।
ଏହା କୁଳ ଧର୍ମ ଏହି ପ୍ରକାର
ଅଛି କି ଦୁର୍ବଳ ବୃଦ୍ଧ ହେବାର ?
ଆହା ! ଆହା ! ମୋର ବାଧୁଛି ପ୍ରାଣେ,'
କି କଷ୍ଟେ ଥିବ ସେ ତା ମନ ଜାଣେ !
ସତ୍ୟ ବୋଲ ମୋତେ, ଇହ ଜଗତେ
ଏପରି ବୃଦ୍ଧ କି ହେବେ ସମସ୍ତେ ?"
କୁମାର ପୁଚ୍ଛନ୍ତେ ବୋଲେ ସାରଥି,
"ନୁହେ କୁଳଧର୍ମ ସଂସାର ଗତି ।"
ପୁଚ୍ଛିଲେ ସିଦ୍ଧାର୍ଥ ବିନୟ କରି,
"ମୋ ଗୋପା କି ହେବ ବୃଦ୍ଧା ଏପରି ?"
"ଆହା ଯୁବରାଜ !" ସାରଥି ବୋଲେ,
"ଭବେ ଜରାଧୀନ ଲୋକ ସକଳେ ।
ରାଜବଧୂ ବୋଲି ନ ଯିବ ଛାଡ଼ି,
କାଳବଶେ ନିଷ୍ଟେ ଆସିବ ମାଡ଼ି ।

ରାଜା ରାଣୀ ଜ୍ଞାନୀ ଅଜ୍ଞାନ ଧନ
ଅଟନ୍ତି ସକଳେ ଜରା ଅଧୀନ ।"
ନିଶ୍ୱାସ ପକାଇ ରାଜନନ୍ଦନ
ବୋଇଲେ ବିକଳେ କରି କନ୍ଦନ,
"ଅବୋଧ ବାଳକ ଲୋକ ସକଳେ,
ଦେହ ପରିଣାମ ନ ଭାଳେ ବେଳେ,
ସଦା ଉନମତ୍ତ ମଦ ଯୌବନେ ।
ବାହୁଡ଼ ସାରଥି—ନ ଯିବୁଁ ବନେ;
ଯେବେ ଜରାଗ୍ରସ୍ତ ହେବୁଁ ଦୁର୍ବଳ,
ଆମୋଦ ପ୍ରମୋଦେ କି କାର୍ଯ୍ୟ ବୋଲ ?"

ଆନ ଦିନକରେ ପ୍ରମୋଦ ବନେ
ଯାଉଥିଲେ, ଏକ ଲୋକ ନୟନେ
ଦେଖିଲେ, ସେ ପୀଡ଼ାଗ୍ରସ୍ତ ଦୁର୍ବଳ ।
ପୁଚ୍ଛିଲେ କୁମାର, "ସାରଥେ ! ବୋଲ,
ଏ ତ ନୁହେ ଜରାଗ୍ରସ୍ତ ସ୍ଥବିର ?
କମ୍ପି ବହେ ଏହା ନୟନୁଁ ନୀର ?
ଶୀର୍ଣ୍ଣ କଳେବର, ପାଏ ଯାତନା ।"
ବୋଇଲେ ସାରଥି, "ହେ ମହାମନା !
ନୁହେ ଜରାଗ୍ରସ୍ତ—ପୀଡ଼ିତ ଲୋକ,
ବ୍ୟାଧିରେ ବଳ ଭୁଞ୍ଜୁଛି ଦୁଃଖ ।
ନିଭି ଯିବ ଏହା ଜୀବନଦୀପ,
ହେଲାଣି ତା ମୃତ୍ୟୁକାଳ ସମୀପ ।"
ବୋଇଲେ କୁମାର ଶୁଣି ଖେଦରେ,
"ସ୍ୱାସ୍ଥ୍ୟ ତେବେ କ୍ଷଣସ୍ଥାୟୀ ଦେହରେ ?
ସ୍ୱାସ୍ଥ୍ୟ ତେବେ ବୋଲ ସ୍ୱପନକ୍ରୀଡ଼ା ?
ତା ପଛେ ଜଗିଛି ବାର୍ଦ୍ଧକ୍ୟ, ପୀଡ଼ା ।
ବାହୁଡ଼ ବାହୁଡ଼ ସାରଥିବର !
ନାହିଁ ପ୍ରୟୋଜନ ପ୍ରମୋଦେ ମୋର !"

ଆନ ଦିନେ ରାଜନନ୍ଦନ ଯାନେ
ଚଢ଼ିଯାନ୍ତେ ମୋଦୋଦ୍ୟାନେ ସାୟାହ୍ନେ,
ହୃଦୟବିଦାରକ ଦେଖିଲେ ଦୃଶ୍ୟ,
ନ ଥିଲେ ସେ ଦେଖି ଏହା ସଦୃଶ ।
ଖଟିଆ ଉପରେ ଶୋଇଛି ଲୋକ,
ବସନାବୃତ ତା ପାଦ ମସ୍ତକ ।
ଚାରି ଜଣ ତାକୁ ନିଅନ୍ତି ବହି,
'ହରି ! ହରି !' ବୋଲି ଉଚ୍ଚରେ କହି ।
ବିକଳେ କଷ୍ଟରେ କରି କନ୍ଦନ
ବେଢ଼ିଛନ୍ତି ଜ୍ଞାତି କୁଟୁମ୍ବ ଜନ ।
ଗଡ଼ିଯାଏ କେହି ଭୂମିରେ ପଡ଼ି,
କେ ବାଡ଼ାଏ ମୁଣ୍ଡ, କେ କରେ ରଡ଼ି ।
"ବୋଲନ୍ତୁ ସାରଥେ !"—ରାଜକୁମାର
ପୁଚ୍ଛିଲେ—ବିଶେଷ ତତ୍ତ୍ୱ ଏହାର ।
"ଦେଖି ନାହିଁ ଏହିପରି ଘଟନା,
ହେବ କଷ୍ଟକଥା ଯାଉଛି ଜଣା ।"
ବୋଇଲେ ସାରଥି—ତେଜି ନିଶ୍ୱାସ,
"ଶୋଇଛି କୋକରେ ମୃତ ମନୁଷ୍ୟ ।
ଜୀବଲୀଳା ଶେଷ ହେଲା ତାହାର,
ଏହି ସବୁ ଲୋକ ତା ପରିବାର ।
ପତ୍ନୀ ପୁତ୍ର ଜ୍ଞାତି ବନ୍ଧୁ ସକଳେ
ବେଢ଼ି ତାକୁ କାନ୍ଦୁଛନ୍ତି ବିକଳେ ।
ସରିଲା ଜୀବନ ଲୀଳା ତାହାର,
ତା ପକ୍ଷେ ଜଗତ ଏବେ ଅନ୍ଧାର ।
ତା'ଠାରୁ ବିଛିନ୍ନ ବିଭବ, ଲୋକ,
କାଟିଲା ଜଗତ ସବୁ ସମ୍ପର୍କ ।"
ବୋଇଲେ କୁମାର ଗମ୍ଭୀର ମୁଖେ,
"ଧିକ ! ଧିକ ! ଧିକ ! ଅଳୀକ ସୁଖେ ।
ଜରାଜର୍ଜରିତ ଏହି ଯୌବନ,
ପଦ୍ମପତ୍ରଗତ ଜଳ ଜୀବନ ।
ଯେତେକାଳ ପୁଣି ରହିବ ବଞ୍ଚି,
ବ୍ୟାଧି ଦେହେ ପୁଣି ରହିଛି ସଞ୍ଚି ।
ଧିକ ଏ ଯୌବନ ଧିକ ଜୀବନେ ।
ଧିକ ଭୋଗରତ ଅଜ୍ଞାନପଣେ ।
ନ ଥାଉ ପଛକେ ଜରା, ମରଣ,
ତଥାପି ଯନ୍ତ୍ରଣାପୂର୍ଣ୍ଣ ଜୀବନ ।

ଏ ଉନ୍ମାଦ ମାର୍ଗେ ଯିବ କିପାଇଁ ?
ଦେଖେ ମୁକ୍ତିମାର୍ଗ ଅଛି କି ନାହିଁ ?"

ସିଦ୍ଧାର୍ଥ ଆରେକ ଦିନ ମାର୍ଗରେ
ଦେଖିଲେ ଜଣକୁ ଧୀର ଭାବରେ
ଚାଲେ ଶିର ନଇଁ, ନେତ୍ର ପ୍ରଶାନ୍ତ,
ଜୀବନ୍ତ ମୂରତି ସୁଶୀଳ ଶାନ୍ତ ।
ଭିକ୍ଷାପାତ୍ର ହସ୍ତେ କରୁଣା ମୂର୍ତ୍ତି,
ବିକାଶେ ବଦନୁ ପବିତ୍ର ଜ୍ୟୋତି ।
କଷାୟ ବସନ ଶୋଭେ ଶରୀରେ ।
ପୁଚ୍ଛନ୍ତେ—ସାରଥି ବୋଇଲେ ଧୀରେ—
"ସନ୍ନ୍ୟାସୀ ଏ ଲୋକ ତେଜି ସଂସାର,
ରାଗ ଦ୍ୱେଷ କ୍ରୋଧ ନାହିଁ ଏହାର,
ସଂସାରକାମନା କିଛି ହିଁ ନାହିଁ,
ନାହିଁ ଚିନ୍ତା କିଛି ଉଦର ପାଇଁ ।
ଭିକ୍ଷାନ୍ନେ ଜୀବନ କାଟନ୍ତି ସୁଖେ,
ନାହିଁ ଦୃଷ୍ଟି ନିନ୍ଦା ପ୍ରଶଂସା ଲୋକେ ।
ସର୍ବଜୀବେ ତାଙ୍କ ଦୃଷ୍ଟି ସମାନ,
ସମ୍ବଳ ମାତ୍ରକ ପ୍ରଭୁଙ୍କ ଧ୍ୟାନ ।"
ବୋଇଲେ କୁମାର ପ୍ରଫୁଲ୍ଲ ମନେ,
"ହେ ସାରଥି ! ଧନ୍ୟ ଏହି ଜୀବନେ !
ମୋ ଜୀବନମାର୍ଗ ପାଇଲି ଖୋଜି,
ଯିବି ଚାଲି ଏବେ ନୟନ ବୁଜି ।
ଆତ୍ମହିତ ପୁଣି ଜଗତ ହିତ
ସାଧିବାର ମାର୍ଗ ଏହା ନିଶ୍ଚିତ ।
ଏହା ସୁଧାମୟ ମାର୍ଗ ନିଶ୍ଚୟ,
କରିବି ପବିତ୍ର ମାର୍ଗ ଆଶ୍ରୟ ।"

ଅସ୍ଥିର ଚଞ୍ଚଳ ସିଦ୍ଧାର୍ଥ ମନ,
ବହେ ହୃଦେ ଘୋର ଝଞ୍ଜା ପବନ ।
ପ୍ରବଳ ଝଟିକା ବେଗ ନମରେ
ବଢ଼େ ଦିନ ଦିନ ତାଙ୍କ ହୃଦନ୍ତରେ !
ଦିନେ ପୁରୋଦ୍ୟାନେ ତରୁମୂଳରେ
ନିର୍ଜନେ ସିଦ୍ଧାର୍ଥ ଛନ୍ତି ଧ୍ୟାନରେ,
ପ୍ରତ୍ୟୁଷେ ତାହାଙ୍କ ଆରମ୍ଭ ଧ୍ୟାନ,
ଗତ ସାରାଦିନ, ଗତ ସାୟାହ୍ନ ।
ପଡ଼ିଲେଣି ଢଳି ରବି ପଶ୍ଚିମେ,
କୁମାର ନିମଗ୍ନ ଚିନ୍ତା ଅସୀମେ ।
ସାଗର ତରଙ୍ଗ ସମ ଭାବନା
ଖେଳେ ହୃଦୟରେ ନାହିଁ କଳନା ।
ଜୀବନ ପିପାସା କାହିଁ ତୃପତ
ହେବ, ଜଗତରେ ନାହିଁ ଏମନ୍ତ
ପଦାର୍ଥ ! ତେବେ ତ ତେଜି ସଂସାର
ଯିବି ଲୋଡ଼ିବାକୁ ମୁକତି ସାର ?
ସ୍ନେହମୟ ପିତା, ମା ସ୍ନେହମୟୀ,
ପ୍ରାଣରୂପା ଗୋପା ଜୀବନମୟୀ,
କେମନ୍ତେ ତାହାଙ୍କ ମନେ ଯାତନା
ଦେଇଯିବି ଛାଡ଼ି ? ଏହି ଭାବନା ।
ଆହା ଗୋପା ମୋର କୋମଳ ପ୍ରାଣେ
ମୋହ ସେବା ବିନା ଆନ ନ ଜାଣେ,
ମୋତେ କରିଛନ୍ତି ଜୀବନ ସାର,
କରିବି କେମନ୍ତେ ବଜ୍ର ପ୍ରହାର ?
ମଲ୍ଲିକା କଳିକା ପଡ଼ିବ ଝଡ଼ି,
ପିତା ମାତା କଷ୍ଟ ତହିଁରୁ ବଢ଼ି ।
ପତିଗତପ୍ରାଣା ଗୋପା ସୁନ୍ଦରୀ
ବଞ୍ଚିବେ ମୋ ବିନା ଆନେ କିପରି ?
ଏହି କି ଲଲାଟ-ଲିପି ଗୋପାର ?
ପତିସେବା ଯାର ଜୀବନେ ସାର ?
ଗୋପାର ତପସ୍ୟା ପତି ଦେବତା,
ପତି ଆଜ୍ଞା କରେ ନାହିଁ ଅନ୍ୟଥା ।
ମନ ପ୍ରାଣ ଗୋପା ପତି ଚରଣେ
ସଁପି ସେବା କରେ ମନ ବଚନେ ।
କେବେ ବୋଲି ନାହିଁ କର୍କଶ ବାଣୀ,
ସେବିଥାଏ ସଦା ମୋ ମନ ଜାଣି ।
ଜୀବନର ପ୍ରେମଧାରା ବିମଳ
ଢାଳେ ନିର୍ଝରଣୀ ସାଗରେ ଜଳ ।

ଜନକ, ଜନନୀ, ଗୋପାମନରେ
ଜାଳିବି ଅନଳ ମୁଁ କି ରୂପରେ !
ଜୀବନ ବାନ୍ଧିଣ କରି ବନ୍ଧନ
ଯିବି ନିର୍ମମରେ ନ ବଳେ ମନ ।
ନାହିଁ ନାହିଁ, ମୋର ସନ୍ନ୍ୟାସ ପଥେ
ମାତା, ପିତା, ଗୋପା କଣ୍ଟକ ସତେ ।
କିବା କରୁଣାର ତିନୋଟି ମୂର୍ତ୍ତି,
ଯିବି ଦେଇ ଠେଲି ନ ରହେ ଧୃତି ।
କହନ୍ତି ସିଦ୍ଧାର୍ଥ ଏତେ ବିଚାରି,
ବହିଲା ନୟନୁ ଯୁଗଳ ଧାର ।
ମାତ୍ର ଜ୍ଞାନନେତ୍ରେ ଦେଖିଲେ ଚିହ୍ନି,
ତାଙ୍କ ବିନା ଆନ ଉପାୟ ନାହିଁ ।
ଅନନ୍ତ ଅପାରସଂଖ୍ୟ ଜଗତେ
ନରନାରୀ କଷ୍ଟେ ହନ୍ତି ମରତେ ।
ତିନିଜଣ ପାଇଁ ଅନନ୍ତ ପ୍ରାଣ
ଭୁଞ୍ଜିବେ ଯନ୍ତ୍ରଣା, ନୁହେ ବିଧାନ ।
ଜରା, ବ୍ୟାଧି, ମୃତ୍ୟୁ କରେ ସଂହାର,
କିପରି ପାଇବେ ଲୋକେ ଉଦ୍ଧାର ?
ବିଷମ ସମସ୍ୟା ଉଦୟ ମନେ,
ଘାତ ପ୍ରତିଘାତ ବ୍ୟଥା ଯେସନେ ।
ଜଗତରେ ସତ୍ୟ ଧର୍ମ ପ୍ରକାଶ
ନୋହିଲେ ଯିବେଟି ପ୍ରାଣିଏ ନାଶ ।
ଯାଗ ଯଜ୍ଞ ପଶୁ ହିଂସା ପ୍ରବଳ,
କାହିଁ ପ୍ରାଣିମୁକ୍ତି ? କଷ୍ଟ କେବଳ ।
ପ୍ରାଣୀ ନାଶ କରି ପ୍ରାଣୀ-ଉଦ୍ଧାର—
କାମନାତ ସ୍ୱାର୍ଥପର ବେପାର !
ନିର୍ଦ୍ଦୟତା ନୁହେ ଧର୍ମର ରୀତି,
ଧର୍ମମୂଳ—ପ୍ରେମ, ପ୍ରଣୟ, ପ୍ରୀତି ।
ତେଜି ଆତ୍ମପ୍ରାଣ ତେଜି ସର୍ବସ୍ୱ
ଖୋଜିବି ସେ ପୁଣ୍ୟମାର୍ଗ ଅବଶ୍ୟ ।
ହବା ପ୍ରାୟ ଶେଷ—ବସି ସିଦ୍ଧାର୍ଥ
ମନେ କଲେ ଏହିପରି ସିଦ୍ଧାନ୍ତ ।

ଏମନ୍ତ ସମୟେ ରାଜପୁରୀରେ
ବାଜିଲା ମଙ୍ଗଳବାଦ୍ୟ ଗମ୍ଭୀରେ ।
ଶଙ୍ଖ ହୁଳହୁଳି ପଡ଼ିଲା ଚହଳ,
ଆନନ୍ଦେ ଉନ୍ମତ୍ତ ଲୋକ ସକଳ ।
ସିଦ୍ଧାର୍ଥ ପାଶକୁ ଦୂତେକ ଯାଇ
ବୋଇଲା, "ହେ ପ୍ରଭୁ ! ଦିଅ ବୋଧାଇ;
ହେଲା ତୁମ୍ଭ ନବ କୁମାର ଜାତ,
ଶାକ୍ୟବଂଶ ଆଜ ହେଲେ କୃତାର୍ଥ ।"
ଚକିତ ନୟନେ ଚାହିଁଲେ ଦାସେ—
ଚିତ୍ରପ୍ରତିମା କି ତହିଁ ବିକାଶେ ।
ଯୁବରାଜ ଭାବ ଦେଖି ସେ ଦୂତ
ମଣିଲା ଚିତ୍ତରେ କଥା ଅଦ୍ଭୁତ ।
ଅଶ୍ରୁ ବେନି ନେତ୍ରୁ ଯାଉଛି ବହି,
ଚାଲିଗଲା ଦୂତ କିଛି ନ କହି ।
ମୋ ମାର୍ଗେ କଣ୍ଟକ—ଚିନ୍ତା ସିଦ୍ଧାର୍ଥ—
ଥିଲେ ତିନି ଜଣ, ହେଲା ଚତୁର୍ଥ ।
ବନ୍ଧନ ଉପରେ ହେଲା ବନ୍ଧନ,
ଛିନ୍ନ କରିଯିବି ବୋଲି କେସନ ?
ଯାଉ—ତ୍ୟାଗ କଲି ସର୍ବ ବିଷୟ,
ସାଧିବି ସଙ୍କଳ୍ପ—ସ୍ଥିର—ନିଶ୍ଚୟ !

ଇତି ଶ୍ରୀବୌଦ୍ଧାବତାର କାବ୍ୟେ ବୈରାଗ୍ୟ
ନାମ ସପ୍ତମ ସର୍ଗ ।

---

## ଅଷ୍ଟମ ସର୍ଗ

(ମହାନିଶା)

ଅସ୍ତାଚଳଶାୟୀ ରବି, ଆସେ ବିଭାବରୀ,
ଶାକ୍ୟବଂଶ ସୁଖରବି ଗମନ ସୂଚନା ।
କପିଳବସ୍ତୁରେ ଦେବାଳୟେ ଶଙ୍ଖଧ୍ୱନି,
ମଙ୍ଗଳ ଆଳତି ଶବ୍ଦଲହରୀ ବିସ୍ତାରେ ।

ପ୍ରବେଶିଲା ଯୁବରାଜ କର୍ଣ୍ଣରେ —ବଶିନେ ।
ତେଜି ଧ୍ୟାନ ଉଠି ଧୀରେ ପ୍ରବେଶି ନଗରେ
ଦେଖିଲେ ଆଲୋକମାଳା, ବାଦ୍ୟ ନିନାଦିତ,
ବିଚିତ୍ର ପତାକାବଳୀ ତରଙ୍ଗ ବିକାଶେ ।
ସୁନ୍ଦର ତୋରଣ କାରୁକାର୍ଯ୍ୟ ସ୍ଥାନେ ସ୍ଥାନେ,
ପୂର୍ଣ୍ଣକୁମ୍ଭ ଦ୍ୱାରେ ଦ୍ୱାରେ, ରମ୍ଭାତରୁ ପାଶେ ।
ଚୂତ, ଦେବଦାରୁ ଶାଖା, କୁସୁମଖଚିତ
ଲମ୍ବିତ ପ୍ରାଙ୍ଗଣେ—ସର୍ବେ ଉନ୍ମତ୍ତ ଉତ୍ସବେ ।
ରାଜମାର୍ଗ ବେନିପାର୍ଶ୍ୱେ ଆଲୋକର ମାଳା,
ପୁରୀ-ରଣୀ କଣ୍ଠେ ଶୋଭେ ରତନର ହାର ।
ଲୀଳାମୟୀ ହାସ୍ୟମୁଖୀ ଆନନ୍ଦପ୍ରତିମା,
କମ୍ବୁହସ୍ତା କୁଳବଧୂ ଅଙ୍ଗନା ସକଳେ;
କେ କରେ ସଙ୍ଗୀତ କେବା କରେ ହୁଳୁଧ୍ୱନି;
ଲୀଳାମୟୀ ଦେବକନ୍ୟା ତ୍ରିଦିବ ନଗରେ ।
ଏହିକାଳେ ଯୁବରାଜ ବାଜି ଆରୋହଣେ
ଯାନ୍ତେ ରାଜମାର୍ଗେ ସର୍ବେ ଆନନ୍ଦେ ଉଲ୍ଲାସେ
ଦେଲେ ପୁଷ୍ପାଞ୍ଜଳି ଭକ୍ତିବିନମ୍ର ଭାବରେ ।
ପଡ଼ୁଛି କୁସୁମରାଶି ଯୁବରାଜ ଶିରେ,
ଦେହେ ଅଶ୍ୱପୃଷ୍ଠେ ପଦେ ଅଜସ୍ର ଧାରାରେ ।
ନୃତ୍ୟଶୀଳ ତୁରଙ୍ଗମ କରି ଗ୍ରୀବାଭଙ୍ଗି
ଯାଏ ତାଳେ ତାଳେ ଚାଲି, ଦେଲେ କରତାଳି
ସୁନ୍ଦରୀ ନାଗରୀବୃନ୍ଦେ ଆନନ୍ଦମନରେ ।
ସମ୍ମୁଖେ ପଶ୍ଚାତେ ଅଗ୍ରେ ଉଭୟ ପାର୍ଶ୍ୱରେ,
ଉଠେ ଜୟଜୟକାର ଧ୍ୱନି ଅନୁକ୍ଷଣେ ।
ଭାସୁଛି ଆନନ୍ଦେ ପୁରୀ, ମାତ୍ର ଯୁବରାଜ
କି ଅଜ୍ଞାତ ଚିନ୍ତାବଶେ ଆକୁଳ ଅନ୍ତର ।
ଏତେ ଯେ ଉତ୍ସବ କିଛି ନୁହେ ଅନୁଭବ ।
ପ୍ରବେଶିଲେ ପୁରେ—ବେତ୍ରହସ୍ତ ପ୍ରତିହାରୀ
ଗଲେ ଅଗ୍ରେ ଅଗ୍ରେ ଡାକି ଉଚ୍ଚେ ସାବଧାନେ !
ଶ୍ରୀମାନ ମଣିମା ଯୁବରାଜ ଶୁଭ୍ର ବିଜେ ।
ସନ୍ତ୍ରମେ ନାରୀଏ ଉଭା ଛନ୍ତି ବେନି ପାଶେ ।
ଧରି କୋଳେ ଆନନ୍ଦରେ ମାତା ପ୍ରଜାବତୀ
ଦେଖାଇଲେ ନବଜାତ ଶିଶୁ ଯୁବରାଜେ ।
ପଡ଼ିଲା କରୁଣା ଦୃଷ୍ଟି କୁମୁଦ କୋରକେ,
ଶଶାଙ୍କ କୌମୁଦୀ ! ଦେଲେ ହୁଳହୁଳୀ ନାରୀ,
ଆନନ୍ଦେ ଉନ୍ମତ୍ତ ମାତା, ଗୋପା, ଶୁଦ୍ଧୋଦନ
ସହଚର, ସହଚରୀ, ପୁରବାସୀ ଜନେ ।
ଉତ୍ସବ ଆନନ୍ଦ ସ୍ରୋତ ବହେ ଅବିରତ,
ସକଳ ମୁଖରେ ହାସ୍ୟ, ହୃଦୟେ ଆନନ୍ଦ,
ସର୍ବେ ଯେସନେ ଆନନ୍ଦରେ ପଡ଼ୁଛନ୍ତି ତଳି ।
ହାସ୍ୟର ତରଙ୍ଗେ, ଶିଶୁ କାନ୍ଦିଲା ଉଚ୍ଚରେ—
ସେ କ୍ରନ୍ଦନ ମଧୁଧାରା ଢାଳେ ସର୍ବ କର୍ଣ୍ଣେ ।
ଘୋଷିଲା, ଆସିଲା, ଶିଶୁ ଭାସି ଉଲ୍ଲାସରେ ।
କେବଳ ସିଦ୍ଧାର୍ଥ ଶୁଣି ସେ କ୍ରନ୍ଦନ ଧ୍ୱନି—
କଲେକ ସିଦ୍ଧାନ୍ତ ତଥା ଆପଣା ମନରେ—
ଆଜନ୍ମମରଣ କାନ୍ଦେ ମାନବ ସନ୍ତାନ
( ସୁଖ ଅନୁଭବେ ଯାହା ଦୁଃଖର ଅଭାବ )
ଲୋକଦେଖା ହସ କ୍ରନ୍ଦନର ରୂପାନ୍ତର,
ଅଥବା ନିର୍ବୋଧଗଣେ ହସନ୍ତି ନ ବୁଝି ।
ଯୂପସ୍ତମ୍ଭ ପାଶେ ପଶୁ ଭକ୍ଷେ ବିଲ୍ୱଦଳ ।
ଯାହାର ଯେ ସ୍ଥାନେ ବ୍ୟଥା ମନ ସେହି ସ୍ଥାନେ—
ନିରେଖି ସିଦ୍ଧାର୍ଥ ଭାବ ଗୋପା ଚିନ୍ତାମଗ୍ନା ।
ଆନନ୍ଦ, ଆତଙ୍କ, ଭୟ ଭରସା ଉଭୟ
ଯୁଗପତ ହୃଦୟରେ ସେକାଳେ ଉଦୟ ।
ସ୍ୱାମୀ—ଶିଶୁ—ଦୁଇ ମୁଖ କରି ନିରୀକ୍ଷଣ,
ଜୀବନପ୍ରତିମା ଶିଶୁ—ଜୀବନବଲ୍ଲଭେ ।
ଶିଶୁ ଜାତ ଶୁଭବାର୍ତ୍ତା ପ୍ରଚୁର ରାଜ୍ୟରେ,
ଉଚ୍ଛୁଳେ ସାଗର ବାରି ଚନ୍ଦ୍ର ଉଦୟରେ,
ନର୍ତ୍ତନେ, ଗାୟନେ, ପ୍ରେମ ପ୍ରୀତି ଆଳାପନେ,
ପରସ୍ପରେ କ୍ରୀଡ଼ା ବନ୍ଧୁ ଆହ୍ୱାନେ, ଭୋଜନେ,
ବିତରଣେ ଅର୍ଥ, ନାହିଁ ଦିବା ନିଶି ଜ୍ଞାନ ।
ଏ ଘୋର ଆନନ୍ଦୋତ୍ସବେ ମତ୍ତ ନର ନାରୀ
ବିରସହୃଦୟା ଗୋପା କି ଅଶୁଭ ଭାବ ।
ଚନ୍ଦ୍ରମା ଚନ୍ଦ୍ରିକା ବ୍ୟାପ୍ତ ଗଗନ ପ୍ରାଙ୍ଗଣେ,

ଅଲକ୍ଷେ ପ୍ରଳୟକାରୀ ମେଘଖଣ୍ଡ ଭାସେ ।
ବସିଲେ ସିଦ୍ଧାର୍ଥ ଯାଇ ରତ୍ନସିଂହାସନେ,
ସୁବର୍ଣ୍ଣ ଥାଳୀରେ କବା କୁସୁମ ସ୍ତବକ ।
ନର୍ତ୍ତନ କୁଶଳା ନାରୀ ସଙ୍ଗୀତପ୍ରବୀଣା,
ମହାର୍ଘ ଭୂଷଣ ବସ୍ତ୍ର କୁସୁମେ ମଣ୍ଡିତା,
ବେଢ଼ି ଉଭା ହେଲେ ଯୁବରାଜ ଚଉପାଶେ,
ପୂର୍ଣ୍ଣଚନ୍ଦ୍ର ଚଉପାଶେ ଯଥା ତାରାବଳୀ ।
ବୀଣାବିନିନ୍ଦିତ କଣ୍ଠସ୍ୱରେ ନାରୀଗଣେ
ଆରମ୍ଭିଲେ ନୃତ୍ୟ ଗୀତ । ଚବନହିଲ୍ଲୋଳେ
ତାଳେ ପୁରବାସିକର୍ଣ୍ଣେ । ନୀଳାକାଶ ଭେଦି
ସେ ସ୍ୱର ମୂର୍ଚ୍ଛନା ତେଜ ପବନେ ବିଲୀନ ।
ସନ୍ତାପପାସୋରି ହେନ ସଂଗୀତଲହରୀ
ସୁପ୍ରଭାବ ମନେ କରୁ ହଏ ଜାଗରିତ,
ଜାଙ୍ଗଲୀ ସଙ୍ଗୀତେ ବିଲଶାୟୀ ଭୁଜଙ୍ଗମ;
ଅବା ଯଥା ପ୍ରସ୍ଫୁଟଇ ସୁମନ ବସନ୍ତେ ।
ମାତ୍ର ଯୁବରାଜ ସେହି ତାନ ଲୟ ଗୀତ
ନ ଶୁଣିଲ ପରି ବସିଛନ୍ତି କି ଉଦାସେ !
ମଣିଲେ ସିଦ୍ଧାର୍ଥ ଏହି ସଙ୍ଗୀତ ରାଗିଣୀ—
ଜଗତର ଜରା ମୃତ୍ୟୁ ହାହାକାର ବାଣୀ ।
ଦେଖିଲେ ଲାବଣ୍ୟମୟୀ ନର୍ତ୍ତକୀ ବଦନେ
ଜରା, ବ୍ୟାଧି, ଶୋକ, ମୃତ୍ୟୁ ରହିଛି ପ୍ରଚ୍ଛନ୍ନେ ।
ମୃଦଙ୍ଗର ତାଳେ ତାଳେ ଶୁଣିଲେ ଯେମନ୍ତ
ବୋଲେ ସେହି—ଉଠ ଲୋଡ଼ ସତ୍ୟ ତତ୍ତ୍ୱପଥ,
କ୍ଷଣିଥେ ନର୍ତ୍ତକୀଗଣ କ୍ଲାନ୍ତ ନର୍ତ୍ତନରେ
ନିଭିଛି ଉତ୍ସବ, କ୍ରମେ ନିଭେ ଦୀପାବଳୀ,
ଆନନ୍ଦର ଅବସାନେ ଅବସନ୍ନ ପୁରୀ,
ନିଦ୍ରାଗତା କ୍ରମେ ସର୍ବ ନର୍ତ୍ତକୀ ସୁନ୍ଦରୀ ।
ଉନ୍ନିଦ୍ର ଭାବରେଛନ୍ତି କେବଳ ଗୌତମ,
ସୂତିକାଗୃହରେ ଶିଶୁ ପାଶେ ନିଦ୍ରାଗତା
ସତୀ ଗୋପା, ଯଥା କୁସୁମିତା ସ୍ୱର୍ଣ୍ଣଲତା ।
ସଦ୍ୟଜାତ ଚନ୍ଦ୍ରାନନ ଦେଖିଲେ ଅନାଇ,
ତ୍ରିଦିବୁ ଦେବତା ଶିଶୁ ଆସିଛି ଓହ୍ଲାଇ ।

ଅତୃପ୍ତ ନୟନେ ଗୋପା ଚନ୍ଦ୍ରାନନେ ଚାହିଁ,
ବସି ଭାବୁଛନ୍ତି କେତେ କଥା ଯୁବରାଜ ।
ଶୋଣିତବାହିନୀ ଶିରା ଛୁଣ୍ଡିବ କେସନେ ?
ସହଜରେ ଶୁଷ୍କ ହୋଇ ଯିବ ଉପଶିରା ।
ନାହିଁ ନାହିଁ, ନୁହେ ଏହା ନୃଶଂସ ବେଭାର,
ଅଙ୍ଗରକ୍ଷାପାଇଁ ଉଚ ଅଙ୍ଗୁଳୀ ଛେଦନ ।
ନିଦ୍ରାବଶା ଗୋପା ଦେଖୀ ଦେଖିଲେ ସ୍ୱପନେ,
ସହସା ନିର୍ମଳାକାଶେ ପ୍ରଚଣ୍ଡ ଝଟିକା
ବହେ ପ୍ରବଳରେ, ଘନ ମେଘେ ବଜ୍ରପାତ,
ଚନ୍ଦ୍ର ସୂର୍ଯ୍ୟ ଗ୍ରହଗଣେ ପ୍ରଚଣ୍ଡ ଭାବରେ
ଧାବିତ, ଆହତ ମହାବେଗେ ପ୍ରବଳରେ,
ଏକ ଏକ ତାରା ଯବେ ପଡ଼ୁଛନ୍ତି ଖସି,
ନିଷ୍ପ୍ରଭ ଚନ୍ଦ୍ରମା ଜ୍ୟୋତି, ନିଷ୍ପ୍ରଭ ତପନ,
କମ୍ପିତା ମେଦିନୀ, ଗିରିରାଜ ଛିନ୍ନଭିନ୍ନ !
ଦାବାନଳେ ଦଗ୍ଧ ବନ ! ସର୍ବ ବିଶୃଙ୍ଖଳ ।
ଗୋପାକଣ୍ଠ ମୁକ୍ତାହାର ଛିଣ୍ଡିପଡ଼େ ବୁଣି,
ବିଶୃଙ୍ଖଳ କେଶପାଶ, ସର୍ବ ଅଳଙ୍କାର ।
କଙ୍କାଳସମ ପରି ପଡ଼ି କାନ୍ଦନ୍ତି ଭୂମିରେ,
ରାଜକାୟ ଛତ୍ର ଦଣ୍ଡ କେତନ, ଚାମର,
ଛିନ୍ନ ଭିନ୍ନ ସିଦ୍ଧାର୍ଥଙ୍କ ଦେହ ଅଳଙ୍କାର ।
ଆଚ୍ଛାଦିତ ରାଜପୁରୀ ନିବିଡ଼ ତମିରେ,
ଶାକ୍ୟବଂଶ ରାଜଲକ୍ଷ୍ମୀ ମଳିନବଦନା ।
ପଡ଼ିଲେ ଚମକି ଗୋପା, ବସି ପାଶେ ଯାଇ,
ସ୍ୱାମୀଙ୍କୁ ସ୍ୱପନ କଥା ବୋଇଲେ ବିସ୍ତାରି—
ପୁଚ୍ଛିଲେ, "ହେ ନାଥ ! ବୋଲ ଏ କି ଅମଙ୍ଗଳ ?
ଦେଖିଲି କୁକ୍ଷଣେ ସ୍ୱପ୍ନ ! କି ଦଶା ମୋହର
ହେବ ? ନୁହେ ସ୍ଥିର ବୁଦ୍ଧି--ମନ ଅନାୟତ୍ତ ।
କାନ୍ଦୁଛି ପରାଣ ଭୟେ ଦେଖି କୁସ୍ୱପନ ।"
ବୋଇଲେ ସିଦ୍ଧାର୍ଥ, "ପ୍ରିୟେ ! ତୁମ୍ଭେ ପୁଣ୍ୟବତୀ !
କରେ ଯେବା ଧର୍ମରକ୍ଷା, ଧର୍ମ ତା ରକ୍ଷକ ।
ଧର୍ମବଳେ ବଳୀୟାନ ଲୋକ କଦାଚିତ
ନ ହୁଅନ୍ତୁ ଜାଣପ୍ରିୟେ ! ବିପଦେ ପତିତ !"

ସ୍ୱାମିପ୍ରତପ୍ନିମା ଗୋପା ନ ବୁଝିଲେ ତତ୍ତ୍ୱ,
ନଗ୍ରୂଢ଼ ରହସ୍ୟମୟ ବାକ୍ୟ ଅର୍ଥ କଷ୍ଟ,
ହେବ ଛିନ୍ନ ଭିନ୍ନ ପାପରାଜ୍ୟ ଏହିରୂପେ ।
ନିଦ୍ରାଗତା ଗୋପାଦେବୀ— ନିଃଶଙ୍କ ମନରେ
ଶଯ୍ୟା ତେଜି ଶାକ୍ୟସିଂହ ଚିତ୍ତର ଆବେଗେ
ଭ୍ରମିଲେ ଅଳିନ୍ଦ ମଧ୍ୟେ ଉଦାସ ମନରେ ।
କ୍ଷୀଣଜ୍ୟୋତି ଦୀପଶିଖା, ସର୍ବେ ଅଚେତନ,
ଶୁଭୁଛି କେବଳ ସୁପ୍ତ ନିଶ୍ୱାସ ପବନ,
ଗମ୍ଭୀର ରଜନୀ, ଜଳେ ସ୍ଥଳେ ପ୍ରାଣିଗଣେ
ସନ୍ତାପହାରିଣୀ ନିଦ୍ରା ଧରିଛନ୍ତି କୋଳେ ।
ନିପତିତା ନିଦ୍ରାବଶେ ନର୍ତ୍ତକୀ ସକଳେ—
ସ୍ତିମିତ ଆଲୋକ ଜ୍ୟୋତି ପଡ଼ିତ ମୁଖରେ,
ସ୍ଖଳିତବସନା କେହି, ଛିନ୍ନକବରୀ,
ସ୍ୱପ୍ନାବେଶେ କରେ କେହି ଦନ୍ତ କଡ଼ମଡ଼,
କେ କରେ ପ୍ରଳାପ, କାହା ନାସିକାଗର୍ଜନ
ଶ୍ରବଣେ ବିକାର ଜାତ ସହଜେ ମନରେ,
ମୁଖରୁ ଗରଳ ବହି ଯାଉଛି କାହାର,
ଶୁଅଇଁଛି ତରୁଣି କେହି ପିଶାଚୀ ସମାନେ !
ଦେଖି ଏ ବିଭତ୍ସ ଦୃଶ୍ୟ ମହାଘୃଣା ଜାତ
କୁମାର ମନରେ—ଧିକ ! ବୋଇଲେ ସିଦ୍ଧାର୍ଥ ।
ପ୍ରହରକ ପୂର୍ବେ ଯେତ ଅବନୀ ଅପ୍ସରୀ,
କାମକଳାବତୀ, କେତେ ନୟନରଞ୍ଜନା
ନୃତ୍ୟେ ଥିଲେ ଉନମତ୍ତ – ଏବେ ମୃତପ୍ରାୟ
ନିପତିତା, ଧିକ ! ଜୀବନର ପରିଣାମ !
ଉତ୍ସବର ଲୀଳାଭୂମି ଥିଲା ଏହି ସ୍ଥାନେ,
ମୁହୂର୍ତ୍ତକେ ପରିଣତ ଶ୍ମଶାନ ସମାନ !
ଏହି ତ ସଂସାରଗତି ? ଅଜ୍ଞ ଲୋକଗଣେ
ନ ବୁଝି ଉନ୍ମତ୍ତ ସଦା ଅଳୀକ ଆମୋଦେ ।
ବରାହ ସମାନ ପଡ଼ି ଗଡ଼ନ୍ତି ପଙ୍କରେ,
ପତଙ୍ଗ ସମାନେ ମରେ ବିଳାସ-ଅନଳେ !
ଭାଳିଲେ ସିଦ୍ଧାର୍ଥ ପୁଣି ଗୃହିଁ ନାରୀଗଣେ,
ନିତାନ୍ତ କରୁଣାପାତ୍ର ଅଙ୍ଗନା ସକଳେ,
ବ୍ୟାଧ ଜାଲେ ମୃଗୀସମା— ଇନ୍ଦ୍ରିୟଲାଳସା-
ପାଶ ବନ୍ଧା—ଏଙ୍କ ମଧ୍ୟେ କରିଣୀସମାନା !
ଯୌବନର ସ୍ରୋତ ବହିଯାଏ ଅନୁକ୍ଷଣ,
ନ ଭାଳନ୍ତି କିବା ଦଶା ହେବ ପରିଣାମେ ।
ଭୋଗ-ହଳାହଳ ପାନେ ଆପଣେ ଉନ୍ମତ୍ତ,
କ୍ଷଣସ୍ଥାୟୀ ରୂପାନଳେ ପୋଡ଼ନ୍ତି ଜଗତ ।
ଅସାର ସଂସାରସୁଖେ ନିମଜ୍ଜିତା ପାପେ,
କି ଭୀଷଣ ପରିଣାମେ ହେବେ ଉପନୀତ !
ମିଳିବ ସତ୍ୟ ମୁକ୍ତିମାର୍ଗ ଅନ୍ୱେଷଣପାଇଁ,
ବିନା ସ୍ୱାର୍ଥବଳିଦାନେ ମିଳେ କି ପରାର୍ଥ ?
ଆହା ! ମୋର ବୃଦ୍ଧ ପିତା ନୟନପ୍ରତିମା,
ହୃଦୟଶୋଣିତବିନ୍ଦୁ, ଜୀବନସର୍ବସ୍ୱ
ସମାନ ପାଳନ୍ତି ମୋତେ । କରିବି କିପରି
ବଜ୍ରାଘାତ ଆହା ! ଧିକ ! ତାଙ୍କ ହୃଦୟରେ ?
ଯିବି କି ଗୁପତେ ତ୍ୟାଗ କରି ରାଜପୁରୀ ?
ନାହିଁ ନାହିଁ, ପାଦେ ପଡ଼ି ନେବି ମୁଁ ମେଲାଣି ।

ଇତି ଶ୍ରୀ ବୌଦ୍ଧାବତାର କାବ୍ୟେ ମହାନିଶା
ନାମ ଅଷ୍ଟମ ସର୍ଗ ।

---

## ନବମ ସର୍ଗ

( ମେଲାଣି )

ରାଜ୍ୟବାସୀ ଜନଗଣ ଶୁଭାଶୁଭ ଭାର
ନ୍ୟସ୍ତ ଶିରେ—ନ୍ୟାୟାନ୍ୟାୟ ଯେ କରେ ବିଚାର
କିପରି ସେ ଲୋକ ହେବ ସୁଖରେ ନିଦ୍ରିତ ?
ନ୍ୟାୟବାନ ନରପତି ନିୟତ ଚିନ୍ତିତ ।
ପୁଣି ରାଜା ଶୁଣିଲେଣି ପୁତ୍ର ଉଦାସୀନ—
ବିରକ୍ତ ବିଷୟେ ଧ୍ୟାନେ ବିଜନେ ଆସୀନ ।
ମହାରାଜ ଶୁଦ୍ଧୋଦନ ମହାର୍ଘ ଶଯ୍ୟାରେ
ଶୟାନ –ଉନ୍ନିଦ୍ର ନାନାବିଷୟ ଚିନ୍ତାରେ ।

ସୁଷୁପ୍ତିର ସୁଖ ଲୋକ କରେ ଅନୁଭବ —
ସହଜେ ଘଟିବା ନୃପପକ୍ଷେ ଅସମ୍ଭବ ।
ନଶିଥେ ନଦ୍ରିତ ପୁରବାସୀ ଜନଗଣ,
କେବଳ ଜାଗ୍ରତ ରାଜପୁତ୍ର, ଶୁଦ୍ଧୋଦନ
ଅଲକ୍ଷେ ସୁଧୀରପଦେ ନୃପତିକୁମର
ବନ୍ଦେ ବନ୍ଦିଲେ ଯାଇ ଜନକପୟର ।
ବିକାଶେ ଉଜ୍ଜ୍ୱଳ କାନ୍ତି ଦେବପ୍ରଭବରେ,
ମହାର୍ଘ ମାଣିକ୍ୟ ଜ୍ୟୋତି ଅନ୍ଧକାରଘରେ ।
ଜନକ ଚରଣ ବନ୍ଦି ବୋଇଲେ ନନ୍ଦନ—
"ଶୁଣିବାକୁ ଆଜ୍ଞା ହେଉ, କରେଁ ନିବେଦନ ।
ବାସନା ସାଧିବ ଇଷ୍ଟ, ଦିଅ ଅନୁମତି,
ମୋ ଭାଗ୍ୟରେ ଘଟୁ ସୁଖ ଦୁଃଖ ବା ଦୁର୍ଗତି ।
ଅନାୟତ୍ତ ଯିବାପାଇଁ ଗନ୍ତବ୍ୟ ମାର୍ଗରେ,
ଆଜ୍ଞା କର ଏହି ମାତ୍ର ପ୍ରାର୍ଥନା ପଦ୍ମରେ ।
ଅଲକ୍ଷରେ ଘଟେ ଭବେ ବିଧାତାବିଧାନ,
ଉପଲକ୍ଷ ମାତ୍ର ଲୋକ ଜାଣନ୍ତି ପ୍ରମାଣ ।
ସ୍ୱକାର୍ଯ୍ୟ ସାଧନେ ଯାଏଁ, କର ଅନୁମତି,
ନାହିଁ ମୁହିଁ ଆତ୍ମବଶେ, ନିୟନ୍ତା ନିୟତି ।
ପୂର୍ଣ୍ଣହେବ ମୋର ଈଶ ଆଦେଶେ ତପସ୍ୟା,
ହେ ଦେବ ! ପୋଷିଛି ମନେ ବିଶ୍ୱାସ ଭରସା ।"
ଚମକି ପଡ଼ିଲେ ନୃପ ପୁତ୍ରମୁଖ ଚାହିଁ,
ରହିଛନ୍ତି ଏକଦୃଷ୍ଟେ ସଂଜ୍ଞା ମାତ୍ର ନାହିଁ ।
ଜାଣି ସୁଧା ପୁତ୍ରବାଣୀ ମାତ୍ରକ ସମ୍ପ୍ରତି
କୁଳିଶ କଠୋର ମନେ ମଣିଲେ ନୃପତି ।
ସାଷ୍ଟମ ଲଭିଲେ ପୁଣି କ୍ଷଣକ ଉତ୍ତାରେ,
ଚାହିଁଛନ୍ତି ଦୋନନେତ୍ର ପୂର୍ଣ୍ଣ ଅଶ୍ରୁଧାରେ ।
ନିଶ୍ୱାସ ପକାଇ କଷ୍ଟେ ବୋଇଲେ ରାଜନ—
"ରେ ପୁତ୍ର ! ତୋହର ଅଛି କିବା ପ୍ରୟୋଜନ ?
କି ଅଭାବ ଅଛି ତୋର, କିପାଇଁ ସଂସାର
ତେଜିବୁ ? ବୃଥାରେ ମୋତେ କର ନା ସଂହାର ।
ଲଲନା ଲାବଣ୍ୟମୟୀ ଗୋପାସାଧ୍ୱୀ ସତୀ,
ଶାକ୍ୟକୁଳଲକ୍ଷ୍ମୀ ବଧୂ ସରଳା ଯୁବତୀ ।
ଦେବପୁଷ୍ପ ପାରିଜାତକୋରକ କୁମାର,
ବିତ୍ତଶାଳୀ ଶାକ୍ୟରାଜ୍ୟ ବିଖ୍ୟାତ ସଂସାର ।
କମଳାର ଲୀଳ ସ୍ଥଳୀ ସୁବର୍ଣ୍ଣପ୍ରସବା,
ପ୍ରକୃତିର ଚନ୍ଦ୍ରାତପର ମେଲଅଛି ଅବା ।
ଦୁର୍ଦଶା ଦାରିଦ୍ର୍ୟ ଚିହ୍ନ ଏ ଦେଶରେ ନାହିଁ,
ସାରପ୍ରଜାବତୀ ଏହା ସମାନରେ କାହିଁ ।
ସୁଠାମ କୋମଳ କାନ୍ତି ପ୍ରଫୁଲ୍ଲ ସୁମନ
ସମାନ ସ୍ୱରୂପ ତବ ନବ ଯଉବନ ।
ବିଜନ ବିପଦପୂର୍ଣ୍ଣ ନିବିଡ଼ କାନନ,
କ୍ଲେଶ ସହି କରିବୁ ରେ ତପସ୍ୟା କେସନ ?
ଆରେ ମୋର ବାପଧନ ପ୍ରିୟ ପ୍ରାଣାଧିକ,
ଅନ୍ଧର ଲଉଡ଼ି ଶାକ୍ୟକୁଳର ମାଣିକ ।
ତୋହର ଜନମା ଶୋକ ଯାଇଛି ପାସୋରି,
ତୋର ମୁଖଚନ୍ଦ୍ର ଦେଖି ଅଛି ପ୍ରାଣ ଧରି ।
ତିମିରଆଚ୍ଛନ୍ନ ଥିଲା ମୋର ଶାକ୍ୟରାଜ୍ୟ,
ଉଦୟ ହୋଇଛୁ ବାପ ! ତୁହି ଦ୍ୱିଜରାଜ ।
ହୃଦୟର ଗ୍ରନ୍ଥି ମୋର ଜୀବନସମ୍ବଳ,
ଏକା ତୋହ ବିନା ବାପ ! ସକଳ ବିଫଳ ।
ପ୍ରଜାବତୀ ଗୋପା ବଧୂ, ଗୌତମୀ ତୋ ବିନା
ହାହାକାର କରି ପ୍ରାଣ ହରାଇବେ ସିନା ?
ବୃଦ୍ଧ ପିତା ମାତାଙ୍କୁ ତୁ ନ ଯାଅ ଭସାଇ,
ନ ଯାଅ ରେ ପ୍ରଜାଗଣେ କନ୍ଦାଇ କନ୍ଦାଇ ।
ନୟନପିତୁଳୀ ଆରେ ମୋର ଗଳାହାର,
ଆଶା-ଆକାଶରେ ଏକମାତ୍ର ଧ୍ରୁବତାରା ।
କେତେ ଆଶା ଭରସାରେ ବାନ୍ଧିଛି ଜୀବନ,
ଭସାଇ ସକଳେ ବାପ ! ଯିବୁ ତୁ କେସନ ?
ନବଜାତ ଶିଶୁଟିକୁ ଅନା ବାପ ଥରେ,
କି କରିବ ବଧୂଟି ମୋ ବିଗ୍ରହ ମନରେ ।
ଭସାଇ ଦେବୁ କି ତୁ ରେ ସ୍ଥବିରା ମାତାଙ୍କୁ ?
ରହିବେ ଆଶାୟୀ ଜନେ ଅନାଇ କାହାକୁ ?
ହେଲାଣି ରେ ଜରାଜୀର୍ଣ୍ଣ, ନାହିଁ ଦେହେ ବଳ,
କେବଳ କରିଛି ତୋତେ ଜୀବନସମ୍ବଳ

ଛାଡ଼ ଦେ ରେ କଥା ମୋର, ଶାକ୍ୟରାଜ୍ୟଲୋକ—
କେ ପାଳିବ ସେମାନଙ୍କୁ, କେ ହେବ ରକ୍ଷକ ?
କିବା ଲୋଡ଼ା ବୋଲ ତୋର ଦେବି ତାହା ଆଣି,
ବୋଲିଫେଇ ମନକଥା ପାରେ ଯେବେ ଜାଣି ।
ପୁଣ ପୁଣ ବୋଲୁଛି ରେ ଭାଳ ବେଳେ ମନେ,
ପ୍ରଜାବତ୍ସ ଗୋପ ବଧୂ ବଞ୍ଚିବେ କେସନେ ?
ଏହି ଶାକ୍ୟ ବଂଶ କଳ୍ପପାଦପ ସମାନ,
ପୂର୍ବପୁରୁଷଙ୍କ ଯଶ-ପୁଷ୍ପ ବିଦ୍ୟମାନ ।
ଥିଲୁ ତୁହି ମୂର୍ତ୍ତିମନ୍ତ ସୌରଭ ସେଥିରେ,
ତୋହ ବିନା ବୃଥା ହେବ ଭାଳ ତୁ ବୁଦ୍ଧିରେ ।"
ଶୁଣିଲା ରାଜାଙ୍କ କଣ୍ଠ ନ ସ୍ଫୁରିଲା ବାଣୀ,
ଅବିରଳ ବହେ ବେନି ନୟନରୁ ପାଣି ।
ନିତାନ୍ତ ସନ୍ତପ୍ତ ଯୁବରାଜ ଏହା ଦେଖି,
ଆକୁଳରେ ପିତା ମୁଖ ଅଛନ୍ତି ନିରେଖି ।
ବୋଇଲେ ଏ ଅନ୍ତେ ଧୀରେ କୋମଳବଚନେ,
"ଆହେ ପିତଃ ! ମୋତେ କଲେ ଆଦେଶଏକ୍ଷଣେ,
ଦେଉନ୍ତୁ ମୋହର ଲୋଡ଼ା ଚାରିଟି ପଦାର୍ଥ,
ଈପ୍‌ସିତ ପାଇଲେ ଗୃହେ ରହିବି ଯଥାର୍ଥ ।"
ନୃପତି ଭରସା ପାଇ ବୋଇଲେ ନନ୍ଦନେ;
"ବୋଲବୋଲ ଲୋଡ଼ା ତୋର କିଦ୍ରବ୍ୟ ଏକ୍ଷଣେ ।"
ବୋଇଲେ ଗୌତମ, "ପିତଃ ! କରନ୍ତୁ ଆଦେଶ,
ମୋ ଶରୀରେ ନ ବାଧିବ ଯେତେହେଁ ବାଧାକ୍ଲେଶ ।
ନ ମରିବି, ନ ତୁଟିବ ସମ୍ପଦ ଯୌବନ,
ଦେବା ହେଉ ମୋତେ ଏହି ଚାରିଗୋଟି ଧନ ।"
ବୋଇଲେ ନୃପତି କଷ୍ଟେ ପକାଇ ନିଶ୍ୱାସ,
"ପାଇବୁ ଅପ୍ରାପ୍ୟ ବସ୍ତୁ କିପାଁ ଏ ବିଶ୍ୱାସ ?
ଜଗତ ମଧ୍ୟରେ ତାହା ଦୁର୍ଲ୍ଲଭ ପଦାର୍ଥ,
ସେ ସମସ୍ତ ଦ୍ରବ୍ୟ ଲୋଡ଼୍ କିପାଁ ରେ ସିଦ୍ଧାର୍ଥ ?
ଯୋଗୀଗଣ କରି କଳ୍ପ କଳ୍ପାନ୍ତ ତପସ୍ୟା,
ଯାହା ଲଭିବାକୁ ପାଇ ନାହାନ୍ତି ଭରସା;
ଅପ୍ରାପ୍ୟ ପଦାର୍ଥ ଲଭେ କିପାଁ ଅଭିଳାଷ ?
ପ୍ରାପ୍ୟ ଏହା କିପାଁ କରୁ ମନରେ ବିଶ୍ୱାସ ?"

ବୋଇଲେ ଗୌତମ ଶୁଣି, "ଆହେ ମହାମନା !
ଆନ ଏକ ବର ଏବେ କରୁଛି ପ୍ରାର୍ଥନା ।
ଗୃହ ତେଜି ଯିବି ବନେ ତପସ୍ୟାକାରଣେ,
ନ କରିବେ ଯେତେହେଁ କଷ୍ଟ ଅନୁଭବ ମନେ ।
ଆଶୀର୍ବାଦ କର ପିତଃ, ବନ୍ଦୁଛି ଚରଣ,
କର୍ତ୍ତବ୍ୟ ସାଧନେ ନୋହୁ ବିଚଳିତ ମନ ।"
ଅନାଇ ଦେଖିଲେ ପୁତ୍ର ବଦନ ରାଜନ,
ଏ ନୁହେ ମୋ ପୁତ୍ର, ନରରୂପୀ ନାରାୟଣ ।
କି ସାଧ୍ୟ ମୋହର ତାଙ୍କୁ ରଖିବ ଆୟତ୍ତେ,
କରନ୍ତୁ କର୍ତ୍ତବ୍ୟ କାର୍ଯ୍ୟ ସାଧନା ଜଗତେ ।
କରନ୍ତୁ ସିଦ୍ଧାର୍ଥ ଯୋଗେ ମୁକ୍ତିଲାଭ ନରେ,
କିପାଁଇ କଣ୍ଟକ ହେବି ପବିତ୍ର ମାର୍ଗରେ ।
ଅବଗତ ହୋଇ ସମଗ୍ର ଜ୍ଞାନବଳେ—
ତଥାପି କାନ୍ଦିଲେ ସ୍ନେହମୋହରେ ବିକଳେ ।
ବାଷ୍ପରୁଦ୍ଧ କଣ୍ଠେ କଷ୍ଟେ ବୋଇଲେ ରାଜନ—
"ଯାଅ ବାପା, କର ତୋର କର୍ତ୍ତବ୍ୟ ସାଧନ ।"
ସିଦ୍ଧାର୍ଥ ଭକ୍ତିରେ ପିତୃଦେବ ଚରଣରେ
ଓଳଗି ହେଲେକ କାୟମନବଚନରେ ।
ପିତୃଦେବଙ୍କର ପଦ ସର୍ବାର୍ଥ ସାର—
ଗୌତମ କଲେକ ମନ ମଧ୍ୟରେ ବିଚାର ।
ପୁତ୍ରଙ୍କର କରପଦ୍ମ ଜନକ ପଦରେ
ପିତାଙ୍କର କରପଦ୍ମ ପୁତ୍ର ମସ୍ତକରେ,
ପିତା ପଦଯୁଗସିକ୍ତ ପୁତ୍ରନେତ୍ରନୀରେ,
ପିତାଙ୍କ ନୟନଅଶ୍ରୁ ପଡ଼େ ପୁତ୍ର ଶିରେ,
ଏ ମହାମହିମାମୟ ଚିତ୍ର ଜଗତରେ
ଚିନ୍ତ ମୁକ୍ତିକାମୀ ହେବେ ସର୍ବ ନାରୀ ନରେ ।
ଅତୁଳ ଜନକ ସ୍ନେହ ମମତା ମହାନ
ଜଗତ ହିତାର୍ଥେ କରିବାର ବଳିଦାନ—
ମେଲଣି ହେଉଦା ଦେଖା ସମସ୍ତ ଘଟନା—
ପିତା ପୁତ୍ର ଚିତ୍ତବୃତ୍ତି କରନ୍ତୁ କଳ୍ପନା ।

ବଦନ ଫେରାଇ ପୁତ୍ର ଚଳିଛନ୍ତି ଧ୍ୟାନେ,
ନିପତିତ ପିତା ବଜ୍ର ଆହତ ସମାନେ ।

ଇତି ଶ୍ରୀବୌଦ୍ଧାବତାରକାବ୍ୟେ ମେଳଣି
ନାମ ନବମ ସର୍ଗ ।

---

## ଦଶମ ସର୍ଗ

( ନିଷ୍କ୍ରମଣ )

ଅର୍ଦ୍ଧେକ ଅତୀତା ଯାମିନୀ, ତିମିରେ ଆଚ୍ଛନ୍ନ ମେଦିନୀ,
ଉତ୍ସବ ଶେଷେ କ୍ଳାନ୍ତଦେହେ, ନିଦ୍ରିତ ସର୍ବଜନ ଗେହେ ।
ନିଭୁଛି ନଗର ଦୀପାବଳୀ, ବହେ ପବନ ସୁଧା ଢାଳି ।
ନୀଳ ଆକାଶେ ତାରାଗଣେ, ଶେଫାଳୀ ବିସ୍ତୃତ ପ୍ରାଙ୍ଗଣେ
ଗମ୍ଭୀର ଶାନ୍ତିମୟ ମୂର୍ତ୍ତି, ତିମିର ମଣ୍ଡିତା ପ୍ରକୃତି ।
ଦୂରେ ଶୁଭଇ ଝିଲ୍ଲୀଧ୍ୱନି, କ୍ରନ୍ଦନ କରୁଛି ରଜନୀ ।
କଦାଚ ଉଡ଼ଇ ଉଲୂକ, ତିମିରେ ତସ୍କର, କାମୁକ
ଭ୍ରମନ୍ତି କାହିଁ ସତର୍କରେ, ପ୍ରହରୀ ଜଗିଛି ତସ୍କରେ ।
ଦେବତା ପିଶାଚ ସ୍ୱଭାବ, ଲୋକଙ୍କ କାଳ ପ୍ରାଦୁର୍ଭାବ
ସହଜ ମାନବ ସକଳେ, ଅଚେତଛନ୍ତି ନିଦ୍ରାକୋଳେ
ପିତାଙ୍କ ଚରଣୁ ମେଲାଣି, ଘେନି ସିଦ୍ଧାର୍ଥ ଭାଗ୍ୟ ଜାଣି ।
ବାହୁଡ଼ି ଯାଆନ୍ତେ ନିଜ ବାସେ, ଦେଖିଲେ ଅନନ୍ତ ଆକାଶେ
ଅସଂଖ୍ୟ ତାରକା ଅନାଇ, ଅଛନ୍ତି ଦେଖିବାର ପାଇଁ
ମହା ନିଷ୍କ୍ରମଣ ସମୟ, ଅଥବା ନିବୃତ୍ତି ବିଷୟ ।
ଅକ୍ଷରରୂପେ ତାରାଗଣେ, ନିହିତ ଗଗନ ପ୍ରାଙ୍ଗଣେ
କମ୍ପା ପ୍ରକାଶ ଅନୁମାନେ, ସେ ନୀଳ ଆକାଶ ସମାନେ
ଅନନ୍ତ ସିଦ୍ଧାର୍ଥ ହୃଦୟ, ଆଶା ସୁଜ୍ଞାନ ଚନ୍ଦ୍ରୋଦୟ ।
ପୁଷ୍ୟା ନକ୍ଷତ୍ର ନିଶାକରେ, ସଞ୍ଚରେ ମହେନ୍ଦ୍ର ଯୋଗରେ
ଭାଳିଲେ ରାଜାଙ୍କ ତନୟ, ଏହି ତ ପବିତ୍ର ସମୟ ।
ଛନ୍ଦକ ନାମେ ଭୃତ୍ୟ ଜଣେ, ଶୟାନ ଥିଲା କ ପ୍ରାଙ୍ଗଣେ ।
ବୋଇଲେ ତାହାକୁ ଉଠାଇ, "ବେଗେ ମୋ ଅଶ୍ୱ ଆଣ ଯାଇ ।
କଣ୍ଟକ ନାମେ ଅଶ୍ୱବରେ, ମଣ୍ଡାଇ ଆଣ ତୁ ବେଗରେ ।"
ଏବେ ପ୍ରଶସ୍ତ ଗମ୍ୟ ପଥ, ସିଦ୍ଧ ହୋଇଛି ମନୋରଥ !

ଛନ୍ଦକ ଚେଡ଼ିଲା ଚମକି, କୁଳିଶ ଶିରେ ପଡ଼ିବ କି !
ସେ ଭୃତ୍ୟ ପୁଚ୍ଛିଲା ବିସ୍ମୟେ, "ହେ ପ୍ରଭୁ ! ନିଶୀଥ ସମୟେ
ଯିବେ ଏକାକୀ କେଉଁ କାର୍ଯ୍ୟେ ? ଲୋକ କି ନାହାନ୍ତି ଏ ରାଜ୍ୟେ ?"
'ଆହେ ଛନ୍ଦକ !' ଯୁବରାଜ ବୋଇଲେ, 'ଅନ୍ୟେ ନାହିଁ କାର୍ଯ୍ୟ
ଆଜନ୍ମ ପ୍ରାଣର ପିପାସା, ମେଣ୍ଟିବ, କରୁଛି ପ୍ରତ୍ୟାଶା ।
ଜରା-ମରଣ ଦୁଃଖ-ସ୍ରୋତେ, ଭାସନ୍ତି ମାନବ ସମସ୍ତେ ।
ଜଗତ ମଙ୍ଗଳ କାରଣ, ଛନ୍ଦକ ! ତେଜିବି ଭବନ ।
ଲଭିବେ ମଙ୍ଗଳ ସଂସାର, ଆତ୍ମାକୁ କରିବି ଉଦ୍ଧାର ।
ଆକୁଳ ମାନବ ସମସ୍ତେ, କିରୂପେ ରହିବି ନିଶ୍ଚିନ୍ତେ ?"
ଛନ୍ଦକ ସ୍ୱପନ ସମାନ, ଶ୍ରବଣ କଲେ କଥାମାନ;
ଏବେ ସେ ମନରେ ବିଶ୍ୱାସ; କଲେ, ଘଟିଲା ସର୍ବନାଶ ।
ବୋଇଲେ କରଯୋଡ଼ି ଦୁଃଖେ, "ହେ ପ୍ରଭୁ ! ଏଷ୍ଣ କଥା ମୁଖେ ।
ନ ଘେନ । ଚିନ୍ତା କର ଆର୍ଯ୍ୟ ! ମରେ ଯେ ଗଲା ଶାକ୍ୟରାଜ୍ୟ
ତପସ୍ୟା କଠୋର ସାଧନା, କୋମଳ ଅଙ୍ଗେ ସହିବ ନା ?
ନ ବୁଝି କଥା ଭବିଷ୍ୟତ, ବାସନା କରିଛ ଏମନ୍ତ ।
ତେଜନ୍ତୁ ମନୁ ଦୁରାକାଙ୍କ୍ଷା । ଆଶ୍ରିତଜନେ କର ରକ୍ଷା !
ମୁହିଁ ଆଶ୍ରିତ ବାଲ୍ୟକାଳୁଁ, ତୁମ୍ଭେ ତ ପରମ ଦୟାଳୁ;
ଯନ୍ତ୍ରଣା ଦେଇ ଦାସଜନେ, ତପସ୍ୟା ସାଧିବ କେସନେ ?"
ଛନ୍ଦକେ ବୋଇଲେ ସିଦ୍ଧାର୍ଥ, "ଯେ କଥା ବୋଇଲ ଯଥାର୍ଥ
ସ୍ନେହପ୍ରବଣ ମୋ ଜନକ, ଧାର୍ମିକ ଦେବତା ପ୍ରତ୍ୟକ୍ଷ,
ଜୀବନୁ ଅଧିକ ସନ୍ତାନ, ପୁତ୍ର ସମାନ ପ୍ରଜାମାନ,
ସାଧ୍ୱୀ ସୁଶୀଳା ଗୋପା ସତୀ, ମାତା ଗୌତମୀ ପ୍ରଜାବତୀ,
ଦୁହିଙ୍କ ବାତ୍ସଲ୍ୟ କରୁଣା, ମିଳିତା ଜାହ୍ନବୀ ଯମୁନା ।
ଏହାଙ୍କୁ ପାରନ୍ତି କି ତେଜି ? ମାତ୍ର ଛନ୍ଦକ ବୁଝ ହେଜି,
ଏମାନେ ପ୍ରତି ଜଣେ ଜଣେ, ପୁଣି ଜଗତବାସିଗଣେ,
ଜରା ମରଣ ଦୁଃଖ ଘୋରେ, ଭୁଞ୍ଜନ୍ତି ଜନ୍ମଜନ୍ମାନ୍ତରେ ।
କପରି ପାଇବେ ଉଦ୍ଧାର, କରିବି ସେଥି ପ୍ରତିକାର ।

ଆପାତ ତିକ୍ତ ଯେ ଔଷଧ, କରେ ସେ ସିନା ବ୍ୟାଧିରୋଧ
ଜ୍ଞାତି କୁଟୁମ୍ବ ପରିବାର, ତେଜିବା ନିର୍ଦ୍ଦୟ ବେଭାର
ନୁହେ ତ—ତାହାଙ୍କ ସକାଶେ, ଯାଉଛି ସିନା ବନବାସେ
ବରଞ୍ଚ ରହିଲେ ମୁଁ ଘରେ, ଭାସିବେ ସକଳେ ଦୁଖରେ
ପ୍ରାଣୀଙ୍କ ଉଦ୍ଧାର କାରଣ, କରିବି ମାର୍ଗ ଅନ୍ୱେଷଣ ।
କଷ୍ଟରେ ଛନ୍ତି ଲୋକମାନେ, ସହିବି ବୋଲ କେଉଁପ୍ରାଣେ ?
କଲେ ମୁଁ ମାୟାକୁ ଛେଦନ, ଲଭିବି ଅନନ୍ତ ଜୀବନ ।
ଗୋଟିଏ ଭଙ୍ଗୁର ଜୀବନ, ତେଜିଲେ ଜଗତର ଜନ
ଯଦ୍ୟପି ଲଭିବେ ମୁକତି, କରିବା ନୁହେ କି ଯୁକତି ?
ଶୁଣି ଲୋକଙ୍କ ହାହାକାର, ହେବି ନିଶ୍ଚିନ୍ତ କି ପ୍ରକାର ?
କଣ୍ଟକେ ଆଣି ହେ ଛନ୍ଦକ ! ନ କାଟ କାଳ ଅନର୍ଥକ ।”
ଛନ୍ଦକ ବୋଲେ, “ପ୍ରଭୋ ! ଶୁଣ, ଆରେକ କଥା
ବୋଲି ପୁଣ,
ଲୋକେ ତପସ୍ୟା ଯେ ସକାଶେ, କରନ୍ତି ତାହା ଅନାୟାସେ
ପାଇଛ—ସାମ୍ରାଜ୍ୟ ସୁନ୍ଦର, ରାଜଭବନ ମନୋହର ।
ଯେତେକ ରାଜ୍ୟ ଜଗତରେ, ଅଛି କି ଏହା ସମାନରେ ?
ଅତୁଳ ଐଶ୍ୱର୍ଯ୍ୟ ଭଣ୍ଡାରେ—ନ ଥିବ ଏତେ ପାରିବାରେ ।
ଧନ ରତ୍ନରେ ପୂର୍ଣ୍ଣ ରାଜ୍ୟ, ଶ୍ରୀମନ୍ତ ମାନବ ସମାଜ ।
ଅପ୍ସରା ସମ ନାରୀଗଣେ, ନିପୁଣା ନର୍ତ୍ତନ ଗାୟନେ ।
ନବୀନ ଯୌବନ ତୁମ୍ଭର, ଭୋଗ କାମନା ପୂର୍ଣ୍ଣ କର ।
ଦେଖ ଏ ରାଜ୍ୟର ମାନବେ, ପ୍ରମତ୍ତ ଆନନ୍ଦ ଉତ୍ସବେ ।
ଉତ୍ସବ ହାଟ ଅସମୟେ; ନ ଭାଙ୍ଗ, ବୋଲୁଛି ବିନୟେ ।
କେବଳ ଏକ ସୂର୍ଯ୍ୟକରେ, ଆଲୋକ ବ୍ୟାପ୍ତ ଜଗତରେ !
ଏ ଶାକ୍ୟରାଜ୍ୟେ ତୁମ୍ଭ ଯୋଗେ, ଅଛନ୍ତି ସର୍ବେ ସୁଖଭୋଗେ
ଶ୍ମଶାନ ହେବ ରାଜଧାନୀ, ଏହା କି ପାରୁ ନାହିଁ ଜାଣି ?
ବାର୍ଦ୍ଧକ୍ୟେ ସୁଖ ଭୋଗଅନ୍ତେ, ସ୍ୱଚ୍ଛନ୍ଦେ ଯିବ ବାନପ୍ରସ୍ଥେ ।”
ବୋଇଲେ ସିଦ୍ଧାର୍ଥ—“ଛନ୍ଦକ ! ବୋଲୁଛ କଥା ଅମୂଳକ
ଅନିତ୍ୟ ଅଧ୍ରୁବ ଜୀବନ, ଆବୋରି ବସିଛି ମରଣ ।
ବାର୍ଦ୍ଧକ୍ୟେ କରିବି ତପସ୍ୟା, ଏଥିରେ କି ଅଛି ଭରସା ?
କ୍ଷଣିକ ଜଳବିନ୍ଦୁ ପ୍ରାୟେ, ଜୀବନଦୀପ ନିଭିଯାଏ ।
ଭାବିଲେ ସାଧୁକାର୍ଯ୍ୟ ମନେ, କରି ବସିବ ତତକ୍ଷଣେ ।
ଦୁର୍ଭାଗ୍ୟ ମୃତ୍ୟୁ ସଙ୍ଗେ ସଙ୍ଗେ, ପ୍ରଚ୍ଛନ୍ନ ଥାଏ ଅନ୍ତରଙ୍ଗେ ।
ବୋଲୁଛ ସୁଖଭୋଗପାଇଁ ? ବିଚାରି ଦେଖ ସୁଖ କାହିଁ ?
ଦୁର୍ଭାଗ୍ୟ ମରଣ ଯନ୍ତ୍ରଣା, ଆସଇ କେବେ ନାହିଁ ଜଣା ।
ଦୁଃଖତମିରେ ଯେଉଁ ସୁଖ, କ୍ଷଣିକ ଚଞ୍ଚଳା-ଆଲୋକ ।
ଯା କହି ସୁଖ ଜଗତରେ, ତହିଁ କି ତୃପ୍ତ ଛନ୍ତି ନରେ ?
ଜୀବନ-ମୃଗ ମାୟାବଳେ, ପୋଡ଼େ ଲାଳସା-ଦାବାନଳେ
ଜଗତ କାମିନୀ କାଞ୍ଚନ—ଭୋଗେ କି ତୃପ୍ତ ହୁଏ ମନ ?
ସୁଖ ଆଶାରେ ନିତ୍ୟ ଲୋକ, ଧାବତି, ମାତ୍ର ଭୁଞ୍ଜେ ଦୁଃଖ
ମୃଗତୃଷ୍ଣିକା ସୁଖ ଲୋଡ଼ି, ତହୁଁ ପିପାସା ଯାଏ ବଢ଼ି ।
ସୌନ୍ଦର୍ଯ୍ୟ, ଐଶ୍ୱର୍ଯ୍ୟ, ଜୀବନ; କେବଳ ମାୟାର ସ୍ୱପନ ।
ବ୍ୟାଧିର ସଙ୍ଗୀତ ଆଲୋକ, ମୃଗ ଜୀବନ ସଂହାରକ ।
ଭୋଗ ଲାଳସା ଲୋକଗଣେ, ବିନାଶ କରେ ଅନୁକ୍ଷଣେ ।
ଅତୃପ୍ତ କାମନା ଅନଳେ, ବିଦଗ୍ଧ ମାନବ ସକଳେ ।
ଜଗତେ ନାହିଁ ସୁଖ ଶାନ୍ତି, ଭୋଗ ଯା ବୋଲ ଚିତ୍ତଭ୍ରାନ୍ତି
ଯାହାକୁ ସୁଖ ବୋଲେ ଲୋକ, କଷ୍ଟର ଲାଘବ ମାତ୍ରକ ।
ଅଳୀକ ସୁଖ ଅଭିଳାଷୀ, ହୋଇ ମାନବେ ଯିବେ ଭାସି,
ମାନବ ଜୀବନ ଉଦ୍ଦେଶ୍ୟ, ନୁହେ ତ ଭୋଗତୁଷ୍ଟି ବିଶେଷ,
ଅଛି ଜୀବନ ଉଚ୍ଚ ସ୍ଥାନ, ତାହାକୁ କରିବି ସନ୍ଧାନ ।
ହେବାକୁ ନିର୍ବାଣ ଦୁର୍ଭାଗ୍ୟ, ଅବଶ୍ୟ ଅଛି ମୁକ୍ତି ମାର୍ଗ ।
ଯିବି ସେ ମାର୍ଗ ଅନ୍ୱେଷଣେ, ବାଧା ନ ଦିଅ ଅକାରଣେ ।
ଜଗତ ମଙ୍ଗଳେ ଛନ୍ଦକ ! ନ ହୁଅ ମୋ ମାର୍ଗେ କଣ୍ଟକ ।
ବେଗେ ତୁରଗ ଆଣ ସାଜି, ଯିବି ଏକ୍ଷଣେ—ନୁହେ ଆଜି
ବିହଙ୍ଗ ଅନନ୍ତ ଆକାଶେ, ଉଡ଼ିବ ବୃଥା କି ସକାଶେ
ଦେଖାଅ ସୁବର୍ଣ୍ଣ ପଞ୍ଜୁରୀ ? ହେଲେ କି ପାରି ତାକୁ ଧରି ?’
ଛନ୍ଦକ ବୋଲେ ଡକାଡାଡ଼ି, “ସତେ କି ପ୍ରଭୋ !
ଯିବ ଛାଡ଼ି ?”
“ନିଶ୍ଚୟ,ମୋ କଥା ଯଥାର୍ଥ”, ଛନ୍ଦକେ
ବୋଇଲେ ସିଦ୍ଧାର୍ଥ ।
“ସୁମେରୁ ପର୍ବତ ସମାନ, ସ୍ଥିର ମୋ ବଚନ ପ୍ରମାଣ ।
ସମସ୍ତ ଜଗତର ଲୋକ, ହେଲେ ମୋ ମାର୍ଗରେ କଣ୍ଟକ,
ଥାଉ ଯନ୍ତ୍ରଣା କଷ୍ଟ ଭୟ, ଛନ୍ଦକ, ଯିବି ମୁଁ ନିଶ୍ଚୟ ।”
ନୀରବେ ଛନ୍ଦକ ବିରସେ, ଗଲା ସେ ଆଣିବାକୁ ଅଶ୍ୱେ ।
ସିଦ୍ଧାର୍ଥ ସୁଧୀର ଚରଣେ, ମିଳିଲେ ସୂତିକାପ୍ରାଙ୍ଗଣେ ।

ଚିର ମେଲିଣି ନେବାପାଇଁ, ରହିଲେ ଗୋପା ମୁଖ ଚାହିଁ ।
ଅବଶଦେହା, ମୁକ୍ତକେଶା; ଶୟାନା ବିଶୃଙ୍ଖଳବେଶା ।
କ୍ଷୀଣ ଆଲୋକେ ଦିଶେ ମୁଖ—ବାରିଦେ ଚନ୍ଦ୍ରମା ମୟୂଖ ।

ସଦ୍ୟ ଶିଶୁଟି ଅଛି ବକ୍ଷେ, ସ୍ୱର୍ଗୀୟ ସୁମନ ପ୍ରତ୍ୟକ୍ଷେ,
କାଞ୍ଚନଲତାରେ କାଞ୍ଚନ, ସଦ୍ୟ ବା ଫୁଟିଛି ସୁମନ ।
ଦର୍ପଣେ ଆଲୋକ ସମାନ, ଗୋପା ଲାବଣ୍ୟ ଦୀପ୍ତିମାନ ।
ପ୍ରଦୀପ ସ୍ତିମିତ ଆଲୋକେ, ତେସନେ ଦେଖିଲେ ବାଳକେ ।

ସିଦ୍ଧାର୍ଥ ନ ପାରିଲେ ସହି, ନେତ୍ରୁଁ ଲୋତକ ପଡ଼େ ବହି ।
ସେକାଳେ କଲେ ହୃଦଙ୍ଗମ, ଅସୀମ ମାୟା ପରାକ୍ରମ ।
ବାଡ଼ରେ ଲଗାଇ ମସ୍ତକ, ଉଭା ସେ ହେଲେ ମୁହୂର୍ତ୍ତକ ।
ସ୍ଥିର ନୟନେ ରୁଦ୍ଧଶ୍ୱାସେ, ଉଭା ସେ ଛନ୍ତି ଗୋପାପାଶେ
ସର୍ବ ଶରୀର ବାଡ଼େ ଲଗ୍ନ, ଭାଳିଲେ ହୋଇ ଧ୍ୟାନେ ମଗ୍ନ,

ଜଗତବାସୀ ଲୋକଗଣେ, ଥିବାରୁ ମାୟାର ବନ୍ଧନେ,
ଭୁଞ୍ଜନ୍ତି କଷ୍ଟ ଏ ପ୍ରକାର, ଯନ୍ତ୍ରଣା ମୃତ୍ୟୁ ହାହାକାର ।
ଏ ଗୋପା, ଶିଶୁ, ସର୍ବଜନରେ, ଭୁଞ୍ଜନ୍ତି କଷ୍ଟ ନିରନ୍ତରେ ।
ଅନ୍ତତଃ ଗୋପାର କାରଣେ, ଯିବି ମୁଁ ମାର୍ଗ ଅନ୍ୱେଷଣେ ।

ମୋକ୍ଷଣେ ରକ୍ତ କଳୁଷିତ, ଅସ୍ତ୍ରର ପ୍ରୟୋଗ ଉଚିତ ।
ଗୋପାକୁ କରି ପରିହାର, ଗୋପାକୁ କରିବି ଉଦ୍ଧାର ।
ଆପାତ କଷ୍ଟ—ଭବିଷ୍ୟତ, ଲୋଡ଼ିବି ନିର୍ବାଣ ଅନନ୍ତ ।
ଚଳିଲେ ଏତେକ ବିଚାରି, ଶୁଖିଲା ନୟନର ବାରି ।
ଛନ୍ଦକ କଣ୍ଟକ ସହିତ, ବିଷାଦ-ପ୍ରତିମା ରହିତ,
ସମାନେ ଉଭା ସିଂହଦ୍ୱାରେ, ପଛକୁ ନ ଅନାଇ ବାରେ ।
ବୁଲାଇ ହସ୍ତ କୋମଳରେ, ସିଦ୍ଧାର୍ଥ ଚଢ଼ିଲେ ଅଶ୍ୱରେ ।
ଏକାଳେ ଦେବାକୁ ଉପମା, ଶ୍ୱେତ ମେଘରେ ବା ଚନ୍ଦ୍ରମା ।

ପ୍ରଭୁଙ୍କ ଇଙ୍ଗିତ ମାତ୍ରକ, ବଙ୍କିମ ଗ୍ରୀବାରେ କଣ୍ଠକ
ଧୀର ପଦରେ ନୃତ୍ୟ କରି, ଚଳିଲା ଗମ୍ୟ ମାର୍ଗ ଧରି ।

ଇତି ଶ୍ରୀ ବୌଦ୍ଧାବତାର କାବ୍ୟେ ନିଷ୍କ୍ରମଣ
ନାମ ଦଶମ ସର୍ଗ ।

---

# ଏକାଦଶ ସର୍ଗ

( ସନ୍ନ୍ୟାସ )

ଗମ୍ଭୀର ନିଶୀଥ, କିବା କୃଷ୍ଣ ଆବରଣେ
ଘୋଡ଼ାଇ ରଖିଛି ପୁରବାସୀ ଲୋକଗଣେ ।
ଉତ୍ସବ ଶେଷରେ ଅବସାଦେ ନିଦ୍ରାଗତ
ରାଜପୁରୀ, ଦୌବାରିକ, ପ୍ରହରୀ ସମସ୍ତ ।
ଥିଲା ଅବା କାହା ମନେ, ନିର୍ମମ ହୃଦୟେ
ରାଜପୁତ୍ର ପୁର ତେଜି ଯିବେ ଅସମୟେ ।
ଶିଶୁକୋଳେ ଗୋପାବଧୂ, ମାତା ପ୍ରଜାବତୀ,
ପୁରବାସୀ ନର ନାରୀ ସୁଖେ ଶୋଇଛନ୍ତି ।
ରାଜ ଅନ୍ତଃପୁରେ ବୃଦ୍ଧ ନୃପତି କେବଳ
ପଡ଼ିଛନ୍ତି ଝାମ ଯାଇ, ନେତ୍ରୁ ବହେ ଜଳ ।
ଏଣେ ରାଜପୁତ୍ର ଅଶ୍ୱ ଯାଏ ଧୀରେ ଧୀରେ,
ନୀରବେ ଛନ୍ଦକ ପଛେ ଭାସେ ଅଶ୍ରୁ ନୀରେ ।
ଅଶ୍ୱପୃଷ୍ଠେ ରାଜପୁତ୍ର—ନାହିଁ ଖେଦ, ଭୟ,
ନାହିଁ ଦୈନ୍ୟ, ମାୟା, ମୋହ, ନିଃଶଙ୍କ ହୃଦୟ ।
ପ୍ରଫୁଲ୍ଲ, ପ୍ରସନ୍ନ ମୁଖ, ସ୍ଥିର ଶାନ୍ତ ମୂର୍ତ୍ତି,
ନୈଶାକାଶେ ବିରାଜିତ ସ୍ଥିର ଚନ୍ଦ୍ରଜ୍ୟୋତି ।
ଦେଖିଲେ ଛନ୍ଦକ—ଯେଣେ କରି ଅଗ୍ରେ ଦୃଷ୍ଟି
ବଜାଇ ମଙ୍ଗଳ ବାଦ୍ୟ କରି ପୁଷ୍ପବୃଷ୍ଟି ।
ଚଳିଛନ୍ତି ଆନନ୍ଦରେ ଦେବଦେବୀଗଣ,
ଅଶ୍ୱାରୋହୀ ସମ୍ମୁଖରେ ମଣାଇ ମାର୍ଗଣ ।

ଶାକ୍ୟବଂଶ ରାଜଲକ୍ଷ୍ମୀ ପଶ୍ଚାତେ ଯେସନେ
ଗୃହଳନ୍ତି ଧୀରେ ଅଶ୍ରୁପୂରିତ ନୟନେ ।
ଢାଳୁଛି ସୁଧାଂଶୁ ସୁଧା, ପ୍ଳାବିତ ନଗରୀ,
ଗଳିତ ରଜତସ୍ରୋତ ପଡ଼ୁଛି କି ଝରି ।
ଛନ୍ଦକ ପାରିଲେ ନାହିଁ—ସହି ଆଉ ଥରେ
ବୋଇଲେ ସିଦ୍ଧାର୍ଥେ କାନ୍ଦି ବିକଳ ମନରେ,
"ଯୁବରାଜ ! ଗଲ ବେଳେ, ଶୈଶବେ ଜନନୀ
ଅଙ୍କେ, ବକ୍ଷେ ଧରିଥିଲେ କରି ନୟନମଣି ।
କୈଶୋର, ଯୌବନ ଗୃହ କ୍ରୀଡ଼ାର ପ୍ରାଙ୍ଗଣେ
ଅନୁଗତ କ୍ରୀଡ଼ାରତ ଶାକ୍ୟ ଶିଶୁଗଣେ ।
ବୃଦ୍ଧ ପିତା, ବୃଦ୍ଧା ମାତା, ପ୍ରେମର ପ୍ରତିମା ।
ସୁଶୀଳା ସୁରୂପା ଗୋପା—ପ୍ରୀତିମଧୁରିମା ।
ଗଲ ବେଳେ ସଦ୍ୟ ଜାତ ଶିଶୁ ଭବିଷ୍ୟତ,
କି କରିବେ ପୁରବାସୀ ଆଶ୍ରିତ ସମସ୍ତ ।
ନ ଯାଅ ସକଳେ ଶୋକସାଗରେ ଭସାଇ,
ନ ଯାଅ ଆଶ୍ରିତ ଜନେ କନ୍ଦାଇ କନ୍ଦାଇ ।"
ବୋଇଲେ ସିଦ୍ଧାର୍ଥ ହାସ୍ୟ ବଦନେ—"ଛନ୍ଦକ !
ନ ବୁଝି ବିଶେଷ କଥା ବୋଲ ଅନର୍ଥକ ।
ଦେଖ ଚାହିଁ, ସ୍ୱର୍ଗେ ବସି ଦେବ ଦେବୀ ସର୍ବେ
ଜଗତ ମଙ୍ଗଳେଛନ୍ତି ଆନନ୍ଦ ଉତ୍ସବେ ।
ନିର୍ମଳ ଗଗନେ ବହେ ଶୀତଳ ପବନ,
କରୁଛନ୍ତି ପୁଷ୍ପବୃଷ୍ଟି ଦେବଦେବୀଗଣ ।
ଦୟାସିନ୍ଧୁ ଦୀନବନ୍ଧୁ ପ୍ରଭୁ ଭଗବାନ
ନ ହେବ ମେଣ୍ଟନ ଯାହା କରିବେ ବିଧାନ ।
ଶୁଭ କାର୍ଯ୍ୟେ, ଶୁଭ ଦିନେ, ଶୁଭ ମୁହୂର୍ତ୍ତରେ
ଘଟୁଛି ଯେ କାର୍ଯ୍ୟ, ତୁମ୍ଭେ ଦେଖ ଆନନ୍ଦରେ ।"
ଶିକ୍ଷିତ ନର୍ତ୍ତନଶୀଳ ଘୋଟକ କଣ୍ଟକ
ଯାଏ ଧୀରେ, ପଦଶବ୍ଦ ଶୁଭେ ଠକ ଠକ,
ଅକ୍ଲାନ୍ତ, ଅଭ୍ରାନ୍ତରୂପେ ଅବିରାମଗତି
ଗଲା ରାଜ୍ୟସୀମା ଛେକି ନ ପାହୁଣୁ ରାତି—
କୋଳ୍ୟଦେଶ, ମଲ୍ଲଦେଶ, ରଜନୀ ଶେଷରେ
ପ୍ରବେଶିଲା ବେଣୁ ବନେ ଅନାମା କୂଳରେ ।

ଅବତରି ଅଶ୍ୱୁଁ ଯୁବରାଜ ମହାମତି
ବୋଇଲେ ଛନ୍ଦକେ ଧୀରେ—"ଦେଲୁଁ ଅନୁମତି,
ଏହି ଅଶ୍ୱ, ମମ ବସ୍ତ୍ର, ଅଙ୍ଗ ଆଭରଣ
ନେଇ ଶାକ୍ୟଦେଶେ କର ବାହୁଡ଼ି ଗମନ ।"
ଛନ୍ଦକ ନିସ୍ତବ୍ଧ ଚାହିଁଅଛି ଏକଧ୍ୟାନେ,
ଦୁର୍ବଳ ଶରୀର, କଥା ଶୁଭୁ ନାହିଁ କାନେ ।
କ୍ଷଣକ ଉତ୍ତାରେ କାନ୍ଦି କଲା ହାହାକାର !
ବୋଇଲା ବିନୟେ ପଦ ଧରି ପୁନର୍ବାର—
"କି ବୋଇଲ ପ୍ରଭୋ ! ଯେବେ ବୃଦ୍ଧ ନରପତି
ପଚାରିବେ—ଗୋପାଦେବୀ, ମାତା ପ୍ରଜାବତୀ,
ଅନ୍ଧକାରେ ଯୁବରାଜେ ନେଇ ଗଲୁ କାହିଁ ?
କି ଦେବି ଉତ୍ତର ବୋଲ ତାଙ୍କ ମୁଖ ଚାହିଁ ?
ବିଷାଦସାଗର ଯେବେ ଉଠିବ ଉଚ୍ଛୁଳି—
କି ଦଶା ଘଟିବ ପୁରେ ପାରୁ ନାହିଁ କଳି ।
ବାହୁଡ଼ି ନ ଯିବି ପୁଣି ସେ ମହାଶ୍ମଶାନେ,
ଆଜ୍ଞା କର ଅନୁଗତ ଥାଉ ସନ୍ନିଧାନେ ।
ଥାଉ ଆନ କଥା—କୃପାମୟ ତୁମ୍ଭ ପରି
ପାଇବି ମୁଁ କାହୁଁ ପ୍ରଭୁ ? ଥିବି ଅନୁସରି ।"
ବୋଇଲେ କୁମାର—"ଭାଇ ! ମୋ ହିତ ସାଧୁମାର୍ଗେ
ହେବ ବିଘ୍ନ ? କେବେଁ ଜାଣିଥିଲ ନାହିଁ ଆଗେ ।
କେତେ ମାୟା ଲତା କରି ଆସିଛି ଛେଦନ,
ଲୋଡ଼ ପୁଣି ମାୟାବୀଜ କରିବି ରୋପଣ !
ଉଚିତ କରିବା ତୁମ୍ଭ ବିଚାର ମନରେ,
ତେଜିଛି ଯେ ପିତା, ମାତା, ରମଣୀ, କୁମରେ,
ସେ କି ତୁମ୍ଭ କଥା ଶୁଣେ ? ବୃଥା ନିବେଦନ,
ବୃଥା କାର୍ଯ୍ୟ ବ୍ରତଭଙ୍ଗ, କର ଅକାଞ୍ଚନ ।
ବାହୁଡ଼ି କପିଳବସ୍ତୁ ନଗରେ ସମ୍ପ୍ରତି
ନେଇ ଅଶ୍ୱ, ଅଳଙ୍କାର ସ୍ଥିର କରି ମତି ।
ଜନକ, ଜନନୀ, ଗୋପା କାନ୍ଦିଲେ ମୋ ପାଇଁ,
କରିବ ସାନ୍ତ୍ୱନା, କଥା କହିବ ବୁଝାଇ—
ଯାଉଛି ସିଦ୍ଧାର୍ଥ ତତ୍ତ୍ୱମାର୍ଗ ଅନ୍ୱେଷଣେ,
ଲଭିବେ ନିର୍ବାଣ ମୁକ୍ତି ଯହିଁ ଲୋକଗଣେ ।"

ଭୃଙ୍ଗଶ୍ରେଣୀକୃଷ୍ଣ ଦୀର୍ଘ କେଶଲୁ ତକ୍ଷଣ
ଛେଦି ନିଜ ଖଡ୍‌ଗେ ତେଜି କୌଷେୟ ବସନ,
ଛିନ୍ନ ଖଣ୍ଡ ଜୀର୍ଣ୍ଣ ବସ୍ତ୍ର ପିନ୍ଧିଲେ ତକ୍ଷଣେ,
ରହିଛି ଛନ୍ଦକ ଗୃହିଁ ଚକିତ ନୟନେ ।
ନବୀନ ସନ୍ନ୍ୟାସୀ ରୂପ ଦେଖିଲା କଣ୍ଟକ,
କି ବୁଝିଲା ପଶୁ ଗୃହିଁଅଛି ଭକଭକ ।
ଝରଇ ବହୁତ ଅଶ୍ରୁ ଧାର ଦ୍ୱିନୟନୁ,
ଉଦ୍ଧ୍ୱ ଶଷ୍ପଭୁକ କି ସ୍ଥିର କରି ତନୁ !
ସିଦ୍ଧାର୍ଥ ତା ଗଣ୍ଡେ ହସ୍ତ ସ୍ନେହରେ ବୁଲାଇ
ବୋଇଲେ—"କଣ୍ଟକ ଆରେ ! ଘରେ ରହ ଯାଇ
ମେଲାଣି ଦେଉଛି ବତ୍ସ ! ଫେରିଯାଅ ଘରେ,
ତୋର ଏହି ଉପକାର ରହିଲା ମନରେ ।"
ଛନ୍ଦକ କଣ୍ଟକ ଦୁହେଁ କାନ୍ଦିଲେ ବିକଳେ,
ଏକଧ୍ୟାନେ ଥାନ୍ତି ଗୃହିଁ ଅଶ୍ରୁପୂର୍ଣ୍ଣଡୋଳେ ।
ନବୀନ ସନ୍ନ୍ୟାସୀ ଚାଲିଥାନ୍ତି ଧୀରେ ଧୀରେ
ପ୍ରଶାନ୍ତ ବଦନେ, ଦୃଷ୍ଟି ରହିଛି ମହୀରେ ।
ଯେତେବେଳଯାଏଁ ଦିଶୁଥିଲେ ସେ ନୟନେ,
ସତୃଷ୍ଣ ଦୃଷ୍ଟିରେ ଗୃହିଁଥାନ୍ତି ବେନିଜନେ ।
ଅଦୃଶ୍ୟ ହୁଅନ୍ତେ ପ୍ରଭୁ—ହୋଇଣ ନିରାଶ
ବାହୁଡ଼ିଲେ ବେନି ପ୍ରାଣୀ ପକାଇ ନିଶ୍ୱାସ ।

ଇତି ଶ୍ରୀ ବୌଦ୍ଧାବତାରକାବ୍ୟେ ସନ୍ନ୍ୟାସ
ନାମ ଏକାଦଶ ସର୍ଗ ।

---

## ଦ୍ୱାଦଶ ସର୍ଗ

( ବିଳାପ )

ପାହିଲା ରଜନୀ, ଉଦେ ଅରୁଣ ଗଗନେ,
ଜାଗ୍ରତ କପିଳବସ୍ତୁବାସୀ ଜଣେ ଜଣେ ।
ଚମକି ଚଡ଼ିଲେ ଗୋପା ଉଠି ଧାଡକାରେ,
ଦେଖିଲେ ଅନାଇ ସ୍ୱାମୀ ନାହାନ୍ତି ଶଯ୍ୟାରେ ।
କାନ୍ଦିଲେ ବିକଳେ ସଞ୍ଚ ଶିରେ ତାଡ଼ି ହାତ,
ଅଧୀନୀକୁ ତେଜି କାହିଁ ଗଲ ପ୍ରାଣନାଥ !
ଉଠିଲେ ଦାସୀଏ ଶୁଣି କ୍ରନ୍ଦନର ଧ୍ୱନି,
ଅକସ୍ମାତ କି ଘଟିଲା ନ ପାରିଲେ ମଣି ।
କାନ୍ଦୁଛନ୍ତି ଗୋପା—କାହିଁ ଗଲେ ପ୍ରାଣନାଥ !
ସଖୀଗଣ ମୁଣ୍ଡେ କିବା ହେଲା ବଜ୍ରାଘାତ ।
ମୁଦ୍ରିତନୟନା ଗୋପା ଉଚ୍ଚେ ଡକା ପାଡ଼ି,
ପ୍ରାଣନାଥ ! ପ୍ରାଣନାଥ ! ଗଲ କାହିଁ ଛାଡ଼ି ?
ଧରାଧରି କରି ସଖୀ ପୁଚ୍ଛନ୍ତେ ବୃତ୍ତାନ୍ତ,
ଗୋପା ବୋଲେ, କାହିଁ ଛାଡ଼ି ଗଲ ପ୍ରାଣକାନ୍ତ ।
ପୁନଶ୍ଚ ପୁଚ୍ଛିଲେ ସଖୀ, କାହାନ୍ତି ସିଦ୍ଧାର୍ଥ ?
ଏକହିଁ ଉତ୍ତର—କାହିଁ ଗଲ ପ୍ରାଣନାଥ ।
ଏକକୁ ଆରେକ ପୁଚ୍ଛା କରେ ବାରମ୍ବାର,
ଘରେ ତ ନାହାନ୍ତି କାହିଁ ଅଛନ୍ତି କୁମାର ?
କାହାନ୍ତି କୁମାର, ଏହି କଥାହିଁ କେବଳ
ପଡ଼ିଲା କପିଳବସ୍ତୁ ନଗରେ ଚହଳ ।
ଜନନୀ ଗୌତମୀ ଦେବୀ, ମାତା ପ୍ରଜାବତୀ,
ମୂର୍ଚ୍ଛିତା; ଚେତନାହୀନ ବୃଦ୍ଧ ନରପତି ।
ସମସ୍ତଙ୍କ ମୁଖେ ଏକ କଥା ବାରମ୍ବାର—
ଘରେ ତ ନାହାନ୍ତି, କାହିଁ ଅଛନ୍ତି କୁମାର ?
ଧାଇଁଲେ ପଦାତି, ଅଶ୍ୱାରୋହୀ, ରଥିଗଣ,
ଘରେ ଘରେ ସ୍ଥାନେ ସ୍ଥାନେ କଲେ ଅନ୍ୱେଷଣ ।
ଖୋଜିଲେ ପର୍ବତେ, ଗିରିଗହ୍ୱରେ, କାନନେ,
ପ୍ରାନ୍ତରେ, କାନ୍ତାରେ, ରାଜମାର୍ଗେ, ଉପବନେ ।
ସ୍ୱପନ ସମାନ ତଥ୍ୟ ଜଣାଗଲା ନାହିଁ,
ରାତିମଧ୍ୟେ ରାଜପୁତ୍ର ଚାଲିଗଲେ କାହିଁ ?
ଆସିଲା ଛନ୍ଦକ, ବୋଲେ—କୁମାର ସନ୍ନ୍ୟାସୀ,
ଚାଲିଗଲେ ରାଜ୍ୟ ତେଜି ହୋଇ ବନବାସୀ ।
ଛନ୍ଦକ ମୁଖରୁ ଶୁଣି ଏହି ସମାଚାର,
ନର ନାରୀ ସର୍ବେ ଉଚ୍ଚେ କଲେ ହାହାକାର !
ନ ଛୁଇଁଲେ ଅନ୍ନ ଜଳ ସାତ ଦିନ ରାତି,
ସମସ୍ତଙ୍କ ଏକକଥା କୁମାର କାହାନ୍ତି ?

ସାତ ଦିନ ସାତ ରାତି ମାତା ପ୍ରଜାବତୀ ।
ଅଜ୍ଞାନା, ମୂର୍ଚ୍ଛିତା, ଭୂମିତଳେ ପଡ଼ିଛନ୍ତି ।
ଗୌତମୀ ଦେବୀଙ୍କ କଥା ଯାଇଅଛି ସରି,
ରାଜପୁରେ କେହି ଜଣେ ନାହିଁ ଧୈର୍ଯ୍ୟଧରି ।
ସଜ୍ଞାହୀନା ଭୂପତିତା ଗୋଟା ଅର୍ଦ୍ଧାଙ୍ଗିନୀ.
ଅଜ୍ଞାନେ କାଟିଲେ ସାତ ଦିବସ ଯାମିନୀ ।
ସାତ ଦିନ ସାତ ରାତି ବୃଦ୍ଧ ନରପତି,
ନିଶ୍ଚଳ, ନୀରବ, ସ୍ଥାଣୁପରି ବସିଛନ୍ତି
ବସିଛନ୍ତି ସର୍ବେ କାହା ନେତ୍ରେ ନାହିଁ ନୀର,
ଦିବା ନିଶି ଭେଦ କରି ନ ପାରନ୍ତି ସ୍ଥିର ।
ହତଜ୍ଞାନେ ଛନ୍ତି ରାଜପୁର ସର୍ବପ୍ରାଣୀ,
ନିଦ୍ରିତ ବା ଜାଗରିତ ନ ପାରନ୍ତି ଜାଣି ।
ସାତ ଦିନ ଅନ୍ତେ ରାଜା ପାଶେ ପ୍ରଜାବତୀ,
ବୋଇଲେ, "ହା ନାଥ ! କିବା ଘଟିଲା ଦୁର୍ଗତି ?"
(ସିଦ୍ଧାର୍ଥ ସନ୍ନ୍ୟାସୀ, ବନବାସୀ, ଏହା ଶୁଣି
କାନ୍ଦିଲେ ବିକଳେ ମାତା ବାହୁନି ବାହୁନି ।)
ଫନ୍ଦା କରିଥିଲୁଁ ଦୁଇଜଣ ବୁଢ଼ାକାଳେ,
କତୁରୀ ଲଗାଇ ପୁଅ ଗଲୁ ସିନା ଗଳେ,
ମୋର ସିଦ୍ଧାର୍ଥରେ !

ଅପା ମାୟାଦେବୀ ମୋର ବଡ଼ ଭାଗ୍ୟବତୀ ।
ନିଶ୍ଚିନ୍ତରେ ସ୍ୱର୍ଗେ ବସିଛନ୍ତି ସାଧ୍ୱୀ ସତୀ,
ମୋର ଭଗିନୀ ଗୋ !

ମୁଁ ପାପିଷ୍ଠା ପୋଡ଼ିମଲି ଦାରୁଣ ଅନଳେ,
କାହିଁଗଲୁ ସିଦ୍ଧାର୍ଥରେ ଝୁରାଇ ସକଳେ,
ଦୁଃଖିସଙ୍ଗାଳରେ !

ଯେ ବାଟରେ ଗଲୁ ପୁଅ, ଯିବି ସେହି ପଥେ,
ଦେଶ ଦେଶାନ୍ତରେ ଭ୍ରମି ଭେଟିବି କି ସତେ !
ହୀରାରତନ ରେ !

ପୁତ୍ର ହସ୍ତେ ରାଜ୍ୟଭାର ଦେଇ ବେନିଜନେ,
ଯିବୁଁ ବାନପ୍ରସ୍ଥେ ଏହା ଭାଳିଥିଲୁଁ ମନେ,
ଅନ୍ଧଲଉଡ଼ି ରେ !

ନୟନପିତୁଳି ମୋର ହୃଦୟରତନ,
ଝୁରୁଥିବୁ ବସି ଘରେ ସିନା ବେନିଜନ,
ରଙ୍କରତନ ରେ !

ବୁଢ଼ାକାଳେ ପାଇଥିଲୁଁ କେତେ ତପସ୍ୟାରେ,
ମାୟା କାଟି ଗଲୁ ଗୃହି ନ ଗୃହିଁଲୁ ବାରେ,
ଦୁଃଖିସଙ୍ଗାଳ ରେ !

ହୃଦୟ ଶୋଣିତଧାରା, ନୟନର ତାରା,
କୁଳର ଭୂଷଣ ମୋର ଗଳାକଣ୍ଠିହାରା,
କୁଳମାଣିକ ରେ !

ଶିରୀଷକୁସୁମ ଦେହ ନବନୀତ ବଳି,
ଗୋଟା ବହୁଟିକୁ ସିନା ଦେଲୁ ପଦେ ଦଳି,
ନେତପିତୁଳି ରେ !

ଧନ ଧାନ୍ୟ ପରିପୂର୍ଣ୍ଣ ରତନଭଣ୍ଡାର,
ଏକା ତୋହି ବିନା ସିନା ସକଳ ଅନ୍ଧାର,
କୁଳଚନ୍ଦ୍ରମାରେ !

ଗଲାବେଳେ କଥା ପଦେ ନ ବୋଇଲୁ ବାପ,
ପୂର୍ବଜନ୍ମେ ମୁଁ ପାପିଷ୍ଠା କେତେ କଲି ପାପ,
ଶାକ୍ୟଭରସା ରେ !

ଏହା କି ମୋ ଲଲାଟରେ ଲେଖିଥିଲେ ବିଧି,
ପଣନ୍ତ କାନରୁ ଫିଟି ହଜି ଯିବ ନିଧି,
କୃପାବାରିଧି ରେ !

କାହୁଁ କାଳ ନିଦ ମୋତେ ଆସିଥିଲା ମାଡ଼ି,
ବେଳ ଉଣ୍ଡି ବାପ ସିନା ପଳାଇଲୁ ଛାଡ଼ି,
ଜୀବଜୀବନରେ !

ବୋଇଲେ ଗଦ୍‌ଗଦ ସ୍ୱରେ ଖେଦେ ନରପତି,
"ବିଳାପ କରୁଛ ବୃଥା ସିନା ଆଗୋ ସତି ।
ମାନବ କି ଖଣ୍ଡିପାରେ ବିଧାତା ନିର୍ବନ୍ଧ ?
ସମ୍ଭାଳି ପାରେ କି ସିନ୍ଧୁ ଢେଉ ବାଲିବନ୍ଧ ?
ଦେଖୁଛ ପ୍ରତ୍ୟକ୍ଷେ ରାଣି ! କଲି ମୁଁ ଯତନ,
ବାସବଭବନ ବଳି ମଣ୍ଡାଇ ଭବନ,

ଅତୁଳ ଐଶ୍ୱର୍ଯ୍ୟ ଗୃହେ ସୁଖର ଭଣ୍ଡାର,
ଶାକ୍ୟରାଜ୍ୟ ତୁଲ୍ୟ ରାଜ୍ୟ ଅଛି ବା କାହାର ?
ଲଳନାଲଲାମଭୂତା ପୁତ୍ରବଧୂ ଗୋପା,
ବେଷ୍ଟିତା ସୁନ୍ଦରୀ ନାରୀ ଅପ୍ସରାସ୍ୱରୂପା ।
ଅପତ୍ୟର ସ୍ନେହ ସାର ସଂସାରବନ୍ଧନ,
ଏତେ କରି ବାନ୍ଧି ନ ପାରିଲା ପୁତ୍ରମନ ।
ମାନବର ସାଧ ଯାହା ସାଧିଛି ସକଳ,
ମୁହୂର୍ତ୍ତେ ମଧ୍ୟରେ ହେଲା ସକଳ ବିଫଳ ।
ମାୟାଦେବୀ ମୁଖୁଁ ଶୁଣି ସ୍ୱପନବୃତ୍ତାନ୍ତ,
ସେଦିନୁ ମଣିଛି ନୁହେଁ ମୋ ପୁତ୍ର ସିଦ୍ଧାର୍ଥ ।
ଜାଣିଥିଲି ଦେଖି ପୁତ୍ର ଦେହର ଲକ୍ଷଣ,
ଏ ନୁହେ ମୋ ପୁତ୍ର, ନରରୂପୀ ନାରାୟଣ ।
ଅସିତ ମହର୍ଷି ମୁଖେଁ ଶୁଣି ସମାଚାର,
ଜାଣିଥିଲି ପୁତ୍ର ମୋର ତେଜିବ ସଂସାର ।
ତରୁତଳେ ଶିଶୁସୁତ କରୁଥିଲା ଧ୍ୟାନ,
ଦେଖି ସବୁ କଥା କରିଥିଲି ଅନୁମାନ ।
ବାହୁଡ଼ିଲା ପୁତ୍ର ଦେଖି ଜରା, ବ୍ୟାଧି, ଶବ,
ସେଦିନ ଜାଣିଲି ମୋର ପୁତ୍ର,—ଅସମ୍ଭବ ।
ପତିତ ପାବନ ହରି ଏ ପତିତ ଘରେ,
ଜନ୍ମିଛନ୍ତି ପରଂବ୍ରହ୍ମ ମାନବ ରୂପରେ,
ମହାସତୀ ମହାମାୟା ଦେବକୀ ସମାନ,
ଯଶୋଦା ଜନନୀ ତୁମ୍ଭେ, କରେଁ ଅନୁମାନ ।
ଏ କପିଳବସ୍ତୁ ହେବ ନବ ବୃନ୍ଦାବନ,
ପ୍ରତ୍ୟକ୍ଷ ସିଦ୍ଧାର୍ଥ ମୋର ଅଧମତାରଣ ।
ପରଦୁଃଖଭାର ଦେବ ! ସହିବାକୁ ଶିରେ,
ନିଶ୍ଚୟ ପରମବ୍ରହ୍ମ ଜନ୍ମ ଅବନୀରେ ।
ବୃଦ୍ଧ ପିତା ମାତା ଦୁଃଖେ ନ କାନ୍ଦିଲା ପ୍ରାଣ,
ଲୋଡ଼େ ତୁଚ୍ଛ ପ୍ରାଣୀ କରିବାକୁ ପରିତ୍ରାଣ ।
ଯାହା ପ୍ରାଣ କାନ୍ଦେ ଦେଖି ପକ୍ଷିରକ୍ତପାତ,
କଲା ପିତା, ମାତା, ପତ୍ନୀ ଶିରେ ବଜ୍ରାଘାତ ।
ଅତ୍ୟନ୍ତ ନିୟୁତ ମାର୍ଗେ ଯାଇଛନ୍ତି କୁମାର,
ଏ ସମସ୍ତ ଚିନ୍ତ ଦୁଃଖକର ପରିହାର ।

ମାନବ ଉଦ୍ଧାର ବ୍ରତେ ଯାଇଛି ନନ୍ଦନ,
ବୃଥା ତୁମ୍ଭ ହାହାକାର, ନିଷ୍ଫଳ କ୍ରନ୍ଦନ ।
କ୍ଷୁଦ୍ର ଜୀବ ଆମ୍ଭେମାନେ ଯିବୁଁ ଦେବପାଶେ—
ଲଙ୍ଘିବ ଦୁସ୍ତର ସିନ୍ଧୁ ପତଙ୍ଗ ଆକାଶେ ?
ଜାଣ ପ୍ରିୟେ ! ସନ୍ନ୍ୟାସୀଙ୍କ ପିତା ମାତା ନାହିଁ
ଧାଇଁଛ ପବନ ହସ୍ତେ ଧରିବାର ପାଇଁ ।
ଧର୍ମମାର୍ଗୁ ପତିତ କି ହେବ ସେ ନନ୍ଦନ,
ଦେଖି ବୃଦ୍ଧ ପିତା ମାତା ବିଫଳ କ୍ରନ୍ଦନ ?"
ବୋଇଲେ ନୃପତି ବାକ୍ୟ ଶୁଣି ପ୍ରଜାବତୀ—
"ଚାଲ ଯାଉଁ ଛାଡ଼ି ତୁଚ୍ଛ ଐଶ୍ୱର୍ଯ୍ୟ ସମ୍ପତ୍ତି ।
ଏ ଗୃହ ଶ୍ମଶାନ ତେଜି ଯାଉଁ ବାନପ୍ରସ୍ଥେ,
ନବୀନ ସନ୍ନ୍ୟାସୀ ମୋର ଗଲା ଯେଉଁ ପଥେ ।
ଯାଇଛି ନୟନମଣି ଜୀବନର ସାର,
ଶୋକାନଳେ ଦଗ୍ଧୀଭୂତ ଗୃହ ପରିବାର ।
ପ୍ରାଣେ ମୋର ନାହିଁ ପ୍ରାଣ, ହୃଦୟେ ହୃଦୟ,
ଦେହରେ ସାମର୍ଥ୍ୟ ନାହିଁ, ସବୁ ଶୂନ୍ୟମୟ ।
ଗୃହର ଆଲୋକ ମୋର ଜୀବନ ଆଲୋକ
ନିଭିଛି, ଗୃହରେ କିପାଁ ଥିବା ଅନର୍ଥକ ?"
ବୋଇଲେ ରାଜନ,"— ରାଣି ! ବୋଲ କେଉଁବନେ
ଲଭିବ ଦେହରେ ବଳ, ସାନ୍ତ୍ୱନା ଜୀବନେ ?
ଏହି ଦେହ ଏହି ମନ ଏହି ଚିନ୍ତା ପ୍ରାଣ
ଘେନି କାହିଁ ଯିବ ଲଭିବାକୁ ପରିତ୍ରାଣ ?
ଯାଇଛି ନନ୍ଦନ ମୋର, ପାଳିବ ନିୟୁତ,
ନିୟୁତ ପାଳିବୁଁ ଆମ୍ଭେମାନେ ଆସ ସତି !
ମାନବ ଉଦ୍ଧାର ମାର୍ଗ କରି ଆବିଷ୍କାର
ବାହୁଡ଼ି ଆସିବ ପୁତ୍ର ଗୃହେ ପୁନର୍ବାର ।
ସେହି ଆଶାମାର୍ଗ ଚାହିଁ ପାଳିବୁଁ ଆସ ବ୍ରତ,
ଏହା ବିନା ସତି, ଦେଖି ନାହିଁ ଆନ ପଥ ।
ଯେଉଁ ସିଂହାସନେ ମୋର ବସିବ ନନ୍ଦନ—
ତୁଳନାରେ ଅତି ତୁଚ୍ଛ ରାଜସିଂହାସନ ।
ଆହା ରାଣି ! ପରିଣତ ବୟସେ ବେନିଜନେ,
ସେହି ପୁଣ୍ୟାସନ କି ଗୋ ଦେଖିବୁଁ ନୟନେ ?

ହେଲେ ମଧ୍ୟ କ୍ଷୁଦ୍ରତମ — ସେହି ପୁଣ୍ୟ ରାଜ୍ୟେ
ପାଇବୁଁ ଆଶ୍ରୟ ଦେବ ! ବିଳାପ କି କାର୍ଯ୍ୟେ ।
ଜନ୍ମ ଜରା ବ୍ୟାଧି ମୃତ୍ୟୁ ହସ୍ତୁଁ ଲୋକଗଣେ
ପାଇଲେ ନିଷ୍କୃତି—ନ ପାଇବୁଁ ବେନିଜନେ ?
ବାଷ୍ପାକୁଳ କଣ୍ଠ ଅଶ୍ରୁପୂର୍ଣ୍ଣ ଦ୍ୱିନୟନେ,
ନୀରବ ନୃପତି, ବାକ୍ୟ ନ ସ୍ଫୁରେ ବଦନେ ।
ନେତ୍ରୁ ପୋଛି ଅଶ୍ରୁ, କ୍ଷଣେ ଶୂନ୍ୟମାର୍ଗେ ଚାହିଁ,
ବୋଇଲେ,"ଗୌତମି ଆଗୋ ! ବେଗେ ଦେଖଯାଇ,
କାଞ୍ଚନପ୍ରତିମା ଗୋପା ବଧୂ ଯହିଁ ପଡ଼ି
ଧୂଳିରେ ଯାଇଛି ଅଚେତନେ ଗଡ଼ଗଡ଼ି ।
ଅଚେତନା, ଦୀନା, ପତିବିୟୋଗବିଧୁରା,
ନାହିଁ ଦିବା ନିଶି ଜ୍ଞାନ, କାନ୍ଦେ ଶୋକାତୁରା ।
ସ୍ପର୍ଶ କରି ନାହିଁ ଅନ୍ନ ଜଳ ସାତ ଦିନ,
ସର୍ବେବ ଅପ୍ରତିକାର୍ଯ୍ୟ, ଫଳେ ଦୈବାଧୀନ ।
ହୃଦୟକୁସୁମ ସଦ୍ୟ ଶିଶୁଟିକୁ କୋଳେ,
ଧରି ଦିବା ନିଶି ଉଚ୍ଚେ କାନ୍ଦୁଛି ବିକଳେ ।
ସିଦ୍ଧାର୍ଥ ପାଦୁକା ବେନି, ବସନ ଭୂଷଣ,
ଧରିଛି ହୃଦୟେ ଭିଡ଼ି ମଣି ତା ଜୀବନ ।
ଛନ୍ଦକ ମୁଖରୁ ଶୁଣି ସବୁ ସମାଚାର
କରୁଛି କେବଳ ଦିବା ନିଶି ହାହାକାର ।
ବସନ ଭୂଷଣ ସବୁ ପକାଇଛି କାଢ଼ି,
ପିନ୍ଧିଛି କଷାୟ, ଫିଙ୍ଗିଦେଇ ପାଟଶାଢ଼ୀ ।
ପ୍ରଲମ୍ବ କୁନ୍ତଳ କାଟି ମୁଣ୍ଡିତମସ୍ତକା,
ଯୌବନେ ଯୋଗିନୀ, ନାହିଁ ଜୀବନରେ ଶଙ୍କା ।
ନୟନୁ ଲୋତକ ପୋଛି ଧୀରେ ଧୀରେ ଯାଇ
ଆଗୋ ! ଦେବୀ ଗୋପାପାଶେ, ବୋଲିବ ବୁଝାଇ ।”
ନୃପତି ବଚନ ଶୁଣି ଗଲେ ଧୀରେ ଧୀରେ,
ଅବଶ ଶରୀର ମନେ ଭାସି ଅଶ୍ରୁନୀରେ ।
ବୋଇଲେ ଗୌତମୀ,‘ମା ରେ ! ହେଲୁଣି ଯୋଗିନୀ,
ଦେଖିଲି ଏ ଦଶା ତୋର ମୁଁ ହତଭାଗିନୀ ।
ପୁଅ ତ ସନ୍ନ୍ୟାସୀ ହେଲା, ତୁ ବସିଲୁ ଧ୍ୟାନେ,
ଏ ବିଷାଦ ଛବି ଦେଖି ବଞ୍ଚିବ କି ପ୍ରାଣେ ?
ବଧୂ ତୁହି, ପୁଅ ତୁହି, ଭଲ ଏହି କଥା ।
ବୁଢ଼ା ବୁଢ଼ୀ ଦୁହେଁ ପାସୋରିବୁଁ ହୃଦବ୍ୟଥା ।
ନ ରହିଁଲେ ବେଳେ ମା ରେ ! ତୁହି ମୁଖ ଟେକ,
ବୁଢ଼ା ବୁଢ଼ୀ ଦୁଇଗୋଟି ପ୍ରାଣେ ବଞ୍ଚିବେ କି ?
ନିର୍ଦ୍ଦୋଷ ଶିଶୁଟି ସ୍ୱର୍ଗୁ ଆସିଛି ଓହ୍ଲାଇ,
କେ କରିବ ରକ୍ଷା ତାକୁ ତୁହି ହେଲେ ବାଇ ।’
ବୋଇଲେ ବିନୟେ ଗୋପା ଛିନ୍ନ ବୀଣାସ୍ୱରେ,
“ଓଳଗି ହେଉଛି ମାତଃ ! ତୁମ୍ଭ ଚରଣରେ ।
ଅନିବାର୍ଯ୍ୟ ପ୍ରତିକାର୍ଯ୍ୟ ବିଧାନ ନିୟତି,
ନେଣ୍ଟନେ ସାମର୍ଥ୍ୟ କାହିଁ ମାନବ ଶକତି ?
ଶ୍ୱଶୁର ଶାଶୁଙ୍କ ପଦ ମୋର ଗୟା, କାଶୀ,
ଆଶୀର୍ବାଦ କର ଗୋପା ହେଉ ସେବାଦାସୀ ।
ତୁମ୍ଭମାନଙ୍କର ପୁଣ୍ୟ ପଦଛାୟାତଳେ,
ସନ୍ତତ ଆଶ୍ରିତ ଥିବ ଜୀବନ ଶୀତଳେ ।
ଜପିବି ସ୍ୱାମୀଙ୍କୁ ଯେତେଦିନ ପ୍ରାଣେ ଥିବ,
ଆଶୀର୍ବାଦ କର ଶିଶୁ ହେଉ ଚିରଜୀବୀ ।
ଗଲେ କଳ୍ପତରୁ ରଖି ସୁମନକୋରକ,
ମୁଁ ହେଲେ ଅସ୍ଥିର ତାର କେ ହେବ ରକ୍ଷକ ?
ପ୍ରାଣର ଦେବତା ଛାଡ଼ି ଯାଇଛନ୍ତି ମୋତେ,
ଯାଉନ୍ତୁ, ଲଭନ୍ତୁ ମୁକ୍ତି ମାନବ ସମସ୍ତେ ।
ଜଗତର ପ୍ରାଣୀପାଇଁ ପ୍ରଭୁଙ୍କ ଭାବନା,
ନାହିଁ—ନାହିଁ, ହେବ ନାହିଁ ସ୍ୱାର୍ଥପରାୟଣା ।
ସାଧନ୍ତୁ ଅଭୀଷ୍ଟ ପ୍ରଭୁ—ପାଳିବ କର୍ତ୍ତବ୍ୟ,
ଚିନ୍ତା କିବା ? ସ୍ୱଭାବରେ ଘଟେ ଭବିତବ୍ୟ ।
ମା ଗୋ ! ଜୀବଦୁଃଖେ କାନ୍ଦେ ଯାହା ପତିପ୍ରାଣ,
ଲୋଡ଼ିବ କି ସେହି ତୁଚ୍ଛ ରାଜ୍ୟ ଧନ ମାନ ?
ମୋ ସ୍ୱାମୀ ସନ୍ନ୍ୟାସୀ, ମୁହିଁ ହେବ ସନ୍ନ୍ୟାସିନୀ,
ସେବିବି ତୁମ୍ଭର ପଦ ଦିବସ ଯାମିନୀ ।
ମା ଗୋ । ଗୋପା ସମା ନାରୀ କେବା ଭାଗ୍ୟବତୀ ?
ଯାଉ ସବୁ, ନାହିଁ ଲୋଡ଼ା ଐଶ୍ୱର୍ଯ୍ୟ ସମ୍ପତ୍ତି ।
ମୋ ସ୍ୱାମୀ ଦେବତା, ମାଗୋ ! ବିଷ୍ଣୁ ନାରାୟଣ,
ଦେବତାର ପିତା ମାତା ତୁମ୍ଭେ ବେନିଜନ ।

ନ ଥାନ୍ତୁ ଦେବତା—ସେହି ଦେବ ମାତା ପିତା,
ସେହି ଦେବ ଦେବୀ ଦାସୀ ଜଗତେ ପୂଜିତା ।
ଦେବତା ମୋହର ସ୍ୱାମୀ ଉଦାସୀ ସନ୍ନ୍ୟାସୀ,
ସାଧନ୍ତୁ ତପସ୍ୟା ବନେ, ମୁହିଁ ତୁମ୍ଭ ଦାସୀ ।
ଲୋଡ଼ନ୍ତୁ ନିର୍ବାଣ ମୁକ୍ତି ସ୍ୱାମୀ ବସି ବନ,
ସାଧିବି ତପସ୍ୟା ବସି ବିଳାସଭବନେ ।
ନିଃସଙ୍ଗେ ନିଷ୍ପୃହ ହୋଇଥିଲେ ସନ୍ନ୍ୟାସିନୀ ପ୍ରାୟ,
ଐଶ୍ୱର୍ଯ୍ୟ ବିଳାସ ହେବ ନାହିଁ ଅନ୍ତରାୟ ।
ଜଗତତାରଣବ୍ରତେ ମୋ ସ୍ୱାମୀ ସନ୍ନ୍ୟାସୀ,
ପତି ପ୍ରାଣ ପତି ଧ୍ୟାନ, ମୁହିଁ ତାଙ୍କ ଦାସୀ ।
ମୁହିଁ ତୁଚ୍ଛ କ୍ଷୁଦ୍ରନାରୀ, ନାରୀପୁଣ୍ୟ ପତି,
ମା ଗୋ ! ମୋ ସମାନେ ନାରୀ କେବା ଭାଗ୍ୟବତୀ ?
ନ କାନ୍ଦିବ ଆଉ ମାତା, ନ କାନ୍ଦ ଆପଣ,
ପତି ଧ୍ୟାନ, ପତି ଜ୍ଞାନ, ପତି ମୋ ଜୀବନ ।
ଆଶୀର୍ବାଦ କର ମାତା ! ବ୍ରତ ଉଦ୍ୟାପନ
କରେଁ—ପତିପଦେ ଆତ୍ମା ମନ ସମର୍ପଣ ।”

ଇତି ଶ୍ରୀ ବୌଦ୍ଧାବତାର କାବ୍ୟେ ବିଳାପ
ନାମ ଦ୍ୱାଦଶ ସର୍ଗ

———

## ତ୍ରୟୋଦଶ ସର୍ଗ

( ମାର୍ଗ ଅନ୍ୱେଷଣ )

ଅନୋମା ହିମାଳୟସୁତା, ନୀଳାମ୍ବୁ ପୂର୍ଣ୍ଣା ଖରସ୍ରୋତା ।
ନିରବେ ବଙ୍କିମ ଗତିରେ, ବାହିତା ଲତା ତରୁ ତୀରେ ।
ରାଜେ । ପଡ଼ି ପୁଷ୍ପରାଶି, ନିୟତ ସ୍ରୋତେ ଯାଏ ଭାସି ।
ପାଏଁ ଉଦାସେ ଅବିରାମେ, ସାଗରଗର୍ଭେ ନିତ୍ୟଧାମେ ।
ପରମ ଯୋଗୀ ଶକ୍ତି ଯଥା, ପତି ସକାଶେ ପତିବ୍ରତା ।
କୂଳପାଳିକା ବଧୂ ପରି, ବାହିତା କୂଳକୁ ଆବୋରି ।
ଉଭୟ କୂଳବାସୀ ଜନେ, ତୋଷି ଶୀତଳ ଜୀବନେ ।
ସ୍ରୋତରେ ସନ୍ତରେ ଶଫରୀ, ସ୍ୱାମିନୀ ଅଶ୍ରିତା କଙ୍କରୀ ।
ଗଭୀର କାହିଁ ସ୍ୱଳ୍ପଜଳା, ଆବିଳା କାହିଁ ବା ନିର୍ମଳା ।
ଶୈବାଳଜାଲ ସ୍ଥାନେ ସ୍ଥାନେ, ଛନ୍ଦିଛି କବରୀ
ସମାନେ ।
ସେ ନଦୀ କୂଳେ ଚୂତବନେ; ଗ୍ରାମାନ୍ତେ, ନିବିଡ଼
ନିର୍ଜନେ,
ବୃହତ ଚୂତ ତରୁତଳେ, ନୂତନ ସନ୍ନ୍ୟାସୀ ନିଶ୍ଚଳେ ।
ବସିଣ ଅଛନ୍ତି ଉଦାସେ, ଜନ ମାନବ ନାହିଁ ପାଶେ ।
କଦାଚ କୋକିଳ କାକଳି—ରବେ ପୂରିତ ବନସ୍ଥଳୀ ।
ସଧୀରେ ଶୀତଳ ପବନ, ବହେ ଆକାଶେ ତାରାଗଣ ।
ନୟନ ମେଲି ଛନ୍ତି ଚାହିଁ, ଯୋଗିଙ୍କୁ ଦେଖିବାର ପାଇଁ ।
ଅସଂଖ୍ୟ ଦାସ ଦାସୀ ଗଣେ, ବେଢ଼ି ଯାହାଙ୍କୁ
ଅନୁକ୍ଷଣେ,
ଥିଲେ-ଚନ୍ଦ୍ରକୁ ତାରାବଳୀ, କୁସୁମେ ବେଷ୍ଟିତ ଭୃଙ୍ଗାଳି ।
ସେ ଏବେ ଏକା ନିର୍ଜନରେ, ଧ୍ୟାନନିମଗ୍ନ ନିରନ୍ତରେ ।
ଶିରୀଷକୁସୁମ ଶରୀର, ଯୌବନ ଲାବଣ୍ୟ ରୁଚିର,
ରାଜାନନ୍ଦନ ଯତନରେ, ପାଳିତ ସେବିତ ଆଦରେ,
ଅସୂର୍ଯ୍ୟସ୍ପର୍ଶ ଯେଉଁ ଅଙ୍ଗ, କରି ନ ଥିଲା କଷ୍ଟସଙ୍ଗ,
ସେ ଆଜ ଆଶ୍ରୟବିହୀନ, ଏକାକୀ ଶରୀର ମଳିନ ।
ବିପୁଳ ପୃଥିବୀ ମଧ୍ୟରେ, ନିର୍ଜନେ ଛନ୍ତି ଏକେଶ୍ୱରେ ।
କର୍କଶ କଷାୟ ମଳିନ, ବସନ ପରିଧାନ ଛିନ୍ନ ।
ନିକେଶ ମୁଣ୍ଡିତ ମସ୍ତକ, ସହାୟବିହୀନ ଏକକ,
କେମନ୍ତେ ଭିଖାରୀ ବେଶରେ, ମାଗିବେ ଭିକ୍ଷା
ଘରେ ଘରେ
କାହିଁ ସେ ଯିବେ ? କେଉଁ ପଥେ ? ଅରଣ୍ୟେ ରହିବେ
କେମନ୍ତେ ?
କୋଟି ଲୋକର ଅନ୍ନଦାତା, ସେ ଆଜ ବିଦେଶେ
ଅନାଥା
କେ ଦେବ ତାଙ୍କୁ ଅନ୍ନଜଳ ? ବିହୀନ ସହାୟ ସମ୍ବଳ ।
ସେ ଯୁବା ବସି ବୃକ୍ଷମୂଳେ, ନିଶ୍ଚିନ୍ତେ ମନ ଅନାକୁଳେ
ଅନୋମାକୂଳେ ପ୍ରତ୍ୟୂଷରେ, ଭାବିଲେ ଆପଣା ମନରେ ।
ଥିଲି ମୁଁ ରାଜାର ନନ୍ଦନ, ସୁଖରେ କାଟିଛି ଜୀବନ ।
ଅଦୃଷ୍ଟପଟେ ଯାହା ଲେଖା, ପ୍ରତ୍ୟକ୍ଷ ସମ ଯାଏ ଦେଖା ।

କୈଶୋରେ ନୂତନ ଯୌବନେ, ଆଲସ୍ୟେ ପ୍ରମୋଦ-
କାନନେ,
ଭୁଞ୍ଜିଲେ ଯେଉଁ ସୁଖରାଶି, ଯାଇଛୁ କାଳସ୍ରୋତେ ଭାସି ।
ଗୋପା ପ୍ରଣୟ, ପ୍ରେମ ମୁଖ; ନନ୍ଦନ ଶଶାଙ୍କ ମୟୂଖ,
ଜନକ ଜନନୀ ହୃଦୟ, ପ୍ରେମ ଭଣ୍ଡାର ସୁଧାମୟ,
ଯୁବକ ସହଚରଗଣେ, ଏ ସବୁ ଚିନ୍ତା କଲେ କ୍ଷଣେ,
କ୍ଷଣିକ ମନ ଉଚାଟନ, କ୍ଷଣିକ ସଜଳ ନୟନ,
ମାତ୍ର ଭାବନ୍ତେ ଭବିଷ୍ୟତ ତତକ୍ଷଣେ ହୃଦୁଁ ହେଲା ଗତ ।
ଶୀତଳ ମଧୁର ପବନେ, ପ୍ରଭାତ ଅରୁଣ କିରଣେ,
ଦେଖିଲେ ବିସ୍ତୃତ ଅନନ୍ତ, ନିଷ୍ଟପୃହୀନ ଭବିଷ୍ୟତ,
ନୀଳ ଗଗନ ସମାନରେ, ଅନନ୍ତ କାଳ ସମ୍ମୁଖରେ ।
ଗମ୍ୟ ମାର୍ଗଣ ଅନିଶ୍ଚିତ, ଏକାକୀ ସଙ୍ଗୀବିରହିତ !
ଯିବାକୁ ହେବ ଲକ୍ଷ୍ୟସ୍ଥାନେ, କଲେକ ସ୍ଥିର ଅନୁମାନେ ।
ଏହି ଜଗତ କୋଳାହଳ, ପ୍ରାନ୍ତରେ ଅଛି ଏକସ୍ଥଳ,
ଜରା ମରଣ ହାହାକାର, ନାହିଁ ସେ ସ୍ଥାନ ନିର୍ବିକାର ।
ସଂସାର ମରୁ ଅତିକ୍ରମି, ଯିବି ମୁଁ ସତ୍ୟ ମାର୍ଗ ଭ୍ରମି ।
ଏ ମରୁପ୍ରାନ୍ତେ ଶାନ୍ତିମୟ, ସ୍ଥାନକୁ ଲଭିବି ନିଶ୍ଚୟ !
ଭରସା ଜାତ ହେଲା ମନେ, କାନନ ତେଜିଲେ
ତତକ୍ଷଣେ ।
କାରାବିମୁକ୍ତ ବନ୍ଦୀପ୍ରାୟେ, ଶାନ୍ତି ଲଭିବା ଅଭିପ୍ରାୟେ ।
ଚଳିଲେ ଅନ୍ତର ଉଲ୍ଲାସେ, ବିହଗ ଆନନ୍ଦେ ଆକାଶେ ।
ପୂର୍ବ ଦକ୍ଷିଣ ମୁଖେ ଗତି, କଲେକ ସୁଖେ ମହାମତି ।
କେମନ୍ତେ, କାହିଁ କେଉଁ ମାର୍ଗେ; ଗମନ, ସ୍ଥିର ନାହିଁ
ଆଗେ ।
ଏତିକ ଜଣା ଅନୁମାନେ, ସଂସାର ପ୍ରାନ୍ତେ ଶାନ୍ତିସ୍ଥାନେ ।
କୋମଳ ଅନାବୃତ ପଦେ, ଫୁଟୁଛି ତୃଣ ପଦେ ପଦେ ।
କଠିନ କଣ୍ଟକ ବା କାହିଁ, ଫୁଟୁଛି ତହିଁ ଦୃଷ୍ଟି ନାହିଁ ।
ରବିକିରଣେ ଦେହ ଦହି, ଯାଉଛି ସ୍ୱେଦଧାର ବହି ।
ଶାକ୍ୟା ବ୍ରାହ୍ମଣୀ ଗୃହରେ, ରହିଲେ ମଧ୍ୟାହ୍ନ କାଳରେ ।
ବିଶ୍ରାମ ଚିନ୍ତା ହୃଦେ ଗୁଣି, ଚଳିଲେ ପୂର୍ବ ଦିଗେ ପୁଣି ।
ତ୍ରିଯାମା କ୍ରମେ ସମାଗତ, ତମିସ୍ରେ ଢାଙ୍କିଲା ଜଗତ ।
ପଦ୍ମା ବ୍ରାହ୍ମଣୀ ନିକେତନେ, ରହିଲେ ବିଶ୍ରାମକାରଣେ ।

ପର ଦିବସ ପ୍ରାତଃକାଳେ; ମିଳିଲେ ରୈବତ ମୁନି ଆଲେ ।
ଭିକ୍ଷାନ୍ନେ ତହିଁ ତୃପ୍ତି ଲଭି, ଚଳିଲେ ତେଜି ଷଡ୍ରାଟବୀ ।
ପ୍ରାନ୍ତର ତେଜି ଭ୍ରମଣରେ, ମିଳିଲେ ବୈଶାଳୀ
ନଗରେ ।
ଆରାଡ଼କାଲାମ ମହର୍ଷି, ସମୀପେ ନବୀନ ତପସ୍ୱୀ,
ମିଳନ୍ତେ, ତାଙ୍କ ଶିଷ୍ୟଗଣେ, ମହର୍ଷି ମଧୁର ବଚନେ;
ବୋଇଲେ, ଦେଖ ଏ ସନ୍ନ୍ୟାସୀ, ସୌନ୍ଦର୍ଯ୍ୟ ଦେହୁଁ
ଯାଏ ଭାସି ।
ଏମନ୍ତ ରୂପ ମନୋହର, ମାନବ ମଧ୍ୟେ ଅଗୋଚର ।
ତିନଶ ଶିଷ୍ୟ ଋଷିବରେ, ବେଷ୍ଟିତ ଥିଲେ ସେ
କାଳରେ !
ନିଯୁକ୍ତ ସର୍ବେ ଅଧ୍ୟୟନେ, ଦେଖିଲେ ସନ୍ନ୍ୟାସୀ
ନୟନେ ।
ମହର୍ଷି ଆଶ୍ରମ ସୁଲଭ, ଆତିଥ୍ୟ କଲେ ଅନୁଭବ ।
ପ୍ରଣମି ଋଷିଙ୍କ ଚରଣେ, ସିଦ୍ଧାର୍ଥ ହେଲେ ଶିଷ୍ୟ ଜଣେ ।
ଦର୍ଶନ ଶାସ୍ତ୍ର ଅଧ୍ୟୟନ, ସମସ୍ତ କରି ସମାପନ,
ସିଦ୍ଧାନ୍ତ କଲେକ ମନରେ, ନାହିଁ ସେ ତତ୍ତ୍ୱ ଦର୍ଶନରେ ।
ଜନ୍ମ ମରଣ ଜରା ବ୍ୟାଧି, ରୁନ୍ଧି ପାରିବ ମୁକ୍ତ ସାଧି ।
ସେ ମାର୍ଗ ଆବିଷ୍କାର ପାଇଁ, ଦର୍ଶନ ଶାସ୍ତ୍ର ସାଧ୍ୟ ନାହିଁ ।
ତେଜି ବୈଶାଳୀ ଏଥୁ ଅନ୍ତେ, ଚଳିଲେ ଗଙ୍ଗାତଟ
ପଥେ ।
ମଗଧ ପୁରୀ ରାଜ ଗୃହ, ପୂରିତ ଐଶ୍ୱର୍ଯ୍ୟସମୂହ ।
ସୌନ୍ଦର୍ଯ୍ୟ ଐଶ୍ୱର୍ଯ୍ୟ ମହତ୍ତ୍ୱେ, ମହିମା ପ୍ରକାଶେ
ଜଗତେ ।
ଗଗନଭେଦ ଗିରି ପଞ୍ଚ, ଅସଂଖ୍ୟ ଶୃଙ୍ଗ ଘଞ୍ଚ ଘଞ୍ଚ ।
ରହିଛି ଦକ୍ଷିଣ ପ୍ରାନ୍ତରେ, ପ୍ରଧାନ ପ୍ରାଚୀର ରୂପରେ ।
ସେ ଗିରି ବ୍ରଜପୁରୀ ରାଣୀ ଜରାସନ୍ଧର ରାଜଧାନୀ ।
ଶୈଳନନ୍ଦନୀ ସରସ୍ୱତୀ, ଶୈଳପଦରେ ସ୍ରୋତସ୍ୱତୀ ।
( ଭକ୍ତ ଯେସନେ ଦେବପଦ ) ପ୍ରାଣଦାୟିନୀ
ଜନପଦେ ।
ସ୍ୱଚ୍ଛସଲିଳା ସ୍ଥିରଗତି, ହୃଦୟ ଯଥା ସାଧୁମତି ।
ଦେଖିଲେ ଶାକ୍ୟସିଂହ ମୁନି, ଜରାସନ୍ଧର ପୁରୀ କାହିଁ ?

ଖ୍ରାଣ୍ଡବ ଶ୍ମଶାନ ସମାନ ଭଗ୍ନାବଶେଷ ବଦ୍ୟମାନ ।
ଦ୍ୱାପର ଯୁଗେ ଜରାସନ୍ଧ, ଯା କଲା, ନାହିଁ ତା ସମ୍ବନ୍ଧ ।
କ୍ଷତ୍ରିୟ ମଧ୍ୟେ ମହାବଳୀ, ଦେବାକୁ ରାଜାଗଣେ ବଳି,
ଶୃଙ୍ଖଳ ଦେଇ କାରାଗାରେ, ଥିଲା ତ ରଖି ଏହିଠାରେ ?
ସେ ଜରାସନ୍ଧ ଗଲା କାହିଁ ? ଚିହ୍ନ ମାତ୍ରକ ତାର ନାହିଁ ।
ମାନବ ସ୍ୱଭାବକୁ ଧିକ ! ମରଣ ମାର୍ଗର ପଥିକ !
ରାଜତ୍ୱ ଯଶ କାମନାରେ, ମାନବ ଜୀବନ ସଂହାରେ ।
ନ ବୁଝେ ଜୀବନର ଗତି, ଅଲଂଘ୍ୟ ଅଦୃଶ୍ୟ ନିୟତି ।
ସ୍ୱାର୍ଥ ସାଧନେ ପୀଡ଼େ ଲୋକ, ନ ଜାଣେ ତାର
ହନ୍ତାରକ ।

ରହିଛି କରି କେଶ ଧରି, କେ ପାରେ ଅତିକ୍ରମ କରି ?
ସିଦ୍ଧାର୍ଥ ପୁରରେ ପ୍ରବେଶି, ଦେଖିଲେ ନୟନ ନିବେଶି ।
ସ୍ୱକାର୍ଯ୍ୟେ ବ୍ୟସ୍ତ ଲୋକଗଣେ, ଭ୍ରମିଲେ କ୍ଷଣକେ
ଆପଣେ ।

ସୁନ୍ଦର ମାର୍ଗଣ ପ୍ରଶସ୍ତ, କ୍ରୟ ବିକ୍ରୟେ ଲୋକେ ବ୍ୟସ୍ତ ।
ସନ୍ନ୍ୟାସୀ, ଯୋଗୀ ଅଛି କାହିଁ,
କେ ବା ଦେଖିବ ତାଙ୍କୁ ଗୃହିଁ ।
କ୍ରମେ ଦିବସ ଅବସାନେ, ଦୀପାଳୀ ଜଳେ ସ୍ଥାନେ ସ୍ଥାନେ
ନୀରବ ନିର୍ଜନ ନଗରୀ, ପ୍ରକୃତି ଶାନ୍ତ ମୂର୍ତ୍ତି ଧରି,
ପ୍ରାଚୀରେ ଚନ୍ଦ୍ରମା ପ୍ରକାଶି, ନୀଳ ନୀରଦେ ଯାଏ ଭାସି ।
ପ୍ରକୃତି ଶ୍ୟାମଳ ବସନେ, ଆବୃତା ହେଲେକ ଯେସନେ ।
ନୀରବ ଶାନ୍ତ ଚରାଚରେ, ସଧୀରେ ପବନ ସଞ୍ଚରେ ।
ନୈଶ ଆକାଶତଳେ ଶାକ୍ୟ-ସିଂହ ଏକାକୀ, ମୁଖେ ବାକ୍ୟ
ନାହିଁ; ପ୍ରଶାନ୍ତ ହୃଦୟରେ, ବିରଳେ ବସିଲେ ଧ୍ୟାନରେ ।
ପ୍ରଭାବେ ନିଶି ଅବସାନ, ଉଠିଲେ ଦେବ ତେଜି ଧ୍ୟାନ
ପ୍ରଭାତେ ଭିକ୍ଷାପାତ୍ର କରେ, ସିଦ୍ଧାର୍ଥ ପ୍ରବେଶ ନଗରେ ।
ଛିନ୍ନ ବସନ ନତ ଶିର, ସୁନ୍ଦର ବଦନ ରୁଚିର,
ମଣ୍ଡିତ ଦେବ ମହିମାରେ, ବିରଳ ଏ ରୂପ ସଂସାରେ ।
ନଗରବାସୀ ଲୋକେ ଦେଖି,
ରହିଲେ ସେ ରୂପ ନିରେଖି ।
ଅପୂର୍ବ ନବୀନ ସନ୍ନ୍ୟାସୀ, ଦେଖିଣ ମୁଗ୍ଧ ପୁରବାସୀ,
ପଥିକେ ବଣିକେ କୃଷକେ, ସେ ରୂପ ଦେଖିବାକୁ ଲୋକେ

ଅଇଲେ—ଶିଶୁ ଗୁଡ଼ ହିଡ଼ା, କୁଳଲଳନାଗଣ ବ୍ରୀଡ଼ା,
ସେ ରୂପ ଦେଖିଣ ଚକିତ, ହେଲେ—ଯେସନେ
ଚିତ୍ରାର୍ପିତ

ନଗରେ ପଡ଼ିଲା ଚହଳ, ଧାବନ୍ତ ମାନବ ସକଳ,
ଯୋଗୀଙ୍କ ଆଉ ସାଧୁ କାହିଁ, ଜନତା, ଭେଦି
ଯିବାପାଇଁ ।

ନାରୀଏ କାନ୍ଦିଲେ ବିକଳେ, କେ ବୋଲେ ଘଟେ
ଭାଗ୍ୟବଳେ ।

କପାଁ ଏ ତେଜିଲୁ ସଂସାର, ଜନକ ଜନନୀ ଏହାର ।
ଥିଲେ କି ପାଷାଣ ହୃଦୟେ, ତେଜନ୍ତେ ଏମନ୍ତ
ତନୟେ ?

ସୁନାର ପିତୁଳୀ ସନ୍ନ୍ୟାସୀ, କାହୁଁ ଏଠାକୁ ଅଛି ଆସି ?
ଆସି ପ୍ରବୀଣା ଏକ ନାରୀ, ବୋଇଲା "ରେ ବାପ
ଭିଖାରି !

କପାଁ ତୁ ଯିବୁ ଅନ୍ୟ ସ୍ଥାନ ? ସର୍ବସ୍ୱ କରୁଛି ପ୍ରଦାନ,
ଯେ ଦ୍ରବ୍ୟ ଲୋଡ଼ା ହେବ ତୋର, ଦେବି ତୁ ଭାବନା
ନ କର ।"

ଅବଗୁଣ୍ଠନେ ମୁଖ ଢାଙ୍କି, ରହିଛି କେବଣ ମୃଗାକ୍ଷୀ,
ବେନି ନୟନୁ ବହେ ପାଣି, ବଦନୁ ନ ସ୍ଫୁରଇ ବାଣୀ ।
କେ ନାରୀ ବୋଲେ, "ସୁନାମଣି ! ନ ଥାଉ ତୋହର
ଜନନୀ,
ମୁଁ ତୋ ମା, ତୁ ମୋର ନନ୍ଦନ, ଭୁଞ୍ଜ ତୁ ମୋର ସର୍ବ
ଧନ ।"
କେ ନାରୀ ହାଣେ ଧରି କରେ, ଆସ ରେ ବାପା ମୋର
ଘରେ ।
ଅଭାଗୀ କେତେ ଯୁବା ପୁଅ, ଖାଇଛି, ଆସି ଘରେ ରହ ।
କେ ନାରୀ କାନ୍ଦେ ଡକାପାଡ଼ି, "ବାପ ରେ ! ଦେବି-
ନାହିଁ ଛାଡ଼ି ।"
ନବୀନା ଯୁବତୀ ସକଳେ, ପଡ଼ିଲେ ଆସି ପଦତଳେ ।
ଏକାଳେ ରାଜା ବିମ୍ବିସାର, ଅଟ୍ଟାଳୀ ପ୍ରାଙ୍ଗଣେ ସଞ୍ଚାର
କରୁଥିଲେ ପ୍ରଭାତରେ, ଦେଖିଲେ ସନ୍ନ୍ୟାସୀ ମାର୍ଗରେ

ରହିଲେ ଏକ ଧ୍ୟାନେ ଚାହିଁ, ପଲକ ମାତ୍ର ନେତ୍ରେ ନାହିଁ
ଭାଳିଲେ ଏ ନୁହେ ମାନବ, ପ୍ରଚ୍ଛନ୍ନ ଚନ୍ଦ୍ର ବା ବାସବ ।
ବିନ୍ଧ୍ୟାଚଳର ଅଧିଷ୍ଠାତ୍ରୀ, ଦେବତା ନରଲୋକଯାତ୍ରୀ ।
ଧରିବା ଏ ରୂପ ମାନବ, ନିଶ୍ଚୟ ଅଟେ ଅସମ୍ଭବ ।
ମାତ୍ର ସନ୍ନ୍ୟାସୀ ଛନ୍ତି ତୁନି, କାହାର ବଚନ ନ ଶୁଣି ।
ଭିକ୍ଷାନ୍ତେ ପାଣ୍ଡବ ପର୍ବତେ, ଗଲେ ବାହୁଡ଼ି ରାଜପଥେ ।
ନୃପତି ସାୟାହ୍ନ କାଳରେ, ମିଳିଲେ ସନ୍ନ୍ୟାସୀ ପାଶରେ
ନାହାନ୍ତି ପାତ୍ର ମନ୍ତ୍ରୀ ସଙ୍ଗେ, ରାଜଭୂଷଣ ନାହିଁ ଅଙ୍ଗେ ।
ଦେଖିଲେ ଚାହିଁ ବିସ୍ମିତରେ, ସନ୍ନ୍ୟାସୀ ଗିରିଗୁହା-
ଦ୍ୱାରେ ।

ବିସ୍ତାରି ସ୍ୱସ୍ତିକ ଆସନ, ନିଶ୍ଚଳେ ଧ୍ୟାନେ ନିମଗନ ।
ଶିଳାବେଦୀରେ ବସିଛନ୍ତି, ସ୍ୱର୍ଣ୍ଣବେଦୀରେ ଦେବମୂର୍ତ୍ତି ।
ମେଲନ୍ତେ ସନ୍ନ୍ୟାସୀ ନୟନ, ନୃପତି ବନ୍ଦିଲେ ଚରଣ ।
ଶୋଭିଲା ନରପତି ଶିର, ଶ୍ୟାମଳ କମଳ ରୁଚିର ।
ପୁଚ୍ଛିଲେ ଭୂପତି ବିନୟେ—"ହେ ଯୋଗି ! କିପାଁ
ଅସମୟେ ।

ଆରମ୍ଭ କଠିନ ତପସ୍ୟା ? ମୀମାଂସା ବିଷମ ସମସ୍ୟା ।
ନବୀନ ସୁକୁମାର ତନୁ, ବିଳାସ ଆଶା ତ୍ୟାଗ ମନୁ;
ଦେଖି ତୁମ୍ଭର ଏ ବେଭାର, କରନ୍ତି ଲୋକେ
ହାହାକାର !

ମୁଁ ଅଟେ ମଗଧ-ଈଶ୍ୱର, ଅତୁଳ ଐଶ୍ୱର୍ଯ୍ୟ ମୋହର,
ନିଷ୍ଠୁର ଅକାଳ ସନ୍ନ୍ୟାସ, ତେଜି ମୋ ରାଜପୁରେ ଆସ
ଦେଖି ତୁମ୍ଭର କଷ୍ଟମାନ, ଆକୁଳ ହେଉଛି ପରାଣ,
ମଗଧବାସୀ ନାରୀ ନରେ, କାନ୍ଦନ୍ତି ଆକୁଳେ କାତରେ ।
ତେଜ ଏ ଦୁର୍ବୁଦ୍ଧି ଦୁର୍ଯୋଗ, ରାଜ୍ୟ ଐଶ୍ୱର୍ଯ୍ୟ କର
ଭୋଗ ।"

ବୋଇଲେ ଶାକ୍ୟସିଂହ—"ନୃପ ! ନକର ପ୍ରସ୍ତାବ
ଏରୂପ ।

ସୁଖରେ କରନ୍ତୁ ରାଜତ୍ୱ, ଲଭ କରନ୍ତୁ ଅମରତ୍ୱ ।
ରାଜ୍ୟ ସୁଖରେ ଅଭିଳାଷୀ, ନୁହେ ମୁଁ, ସମ୍ପ୍ରତି ସନ୍ନ୍ୟାସୀ
ହୋଇଛି—ଶାନ୍ତି କାମନାରେ,
ମନ ନିବେଶି ତପସ୍ୟାରେ ।"

ବିସ୍ମୟେ ମଣି ବିମ୍ବିସାର, ବୋଇଲେ, "କି ବୋଲ
କୁମାର !

ଶିରୀଷ କୁସୁମ ପେଲବ, ତୁମ୍ଭ ଯୌବନ ଅଭିନବ ।
ଦାରୁଣ ତପସ୍ୟା ବ୍ରତରେ, ସହିବ କିପାଁ ଏ ଦେହରେ ?
ନିର୍ଜନେ ପ୍ରସ୍ତର ଆସନେ, ନ ହୁଅ ଯନ୍ତ୍ରଣା ଜୀବନେ ।
ବୃଥା ନ ହୁଅ କଷ୍ଟଭୋଗୀ, କୋମଳ ଶେଯ ଉପଯୋଗୀ
ଶରୀର କଣ୍ଟକ ବନରେ, ସହିବ କଷ୍ଟ କି ରୂପରେ ?
ଲୋଡ଼ୁଛ ଶାନ୍ତି ? ମୋର ପୁରେ, ସହଜେ ଭୁଞ୍ଜିବ
ପ୍ରଚୁରେ ।

ଏ କାମଭୋଗର ସମୟ, ବୃଥା ନ କର ଅପଚୟ ।"
ବୋଇଲେ ନବୀନ ସନ୍ନ୍ୟାସୀ—"ନୁହେ ମୁଁ କାମ
ଅଭିଳାଷୀ;

କୁଶଳେ ରହନ୍ତୁ ଆପଣ, ପାଳନ୍ତୁ ସୁଖେ ପ୍ରଜାଗଣ;
ଥିଲା ମୋ ବିତ୍ତ ଯେ ସମସ୍ତ, ନ ଥିବ କାହାର ଏମନ୍ତ ।
କାମଭୋଗର ଉପଯୋଗୀ, ପଦାର୍ଥ ସର୍ବ ଅଛି ଭୋଗି ।
ମୋର ବିଭବ ତୁଳନାରେ, ନ ଥିବ କାହାର ସଂସାରେ;
କପିଳବସ୍ତୁ ରାଜ୍ୟ ସମ, ରାଜତ୍ୱ, ଅଭାବ ଉପମ ।
ଧାର୍ମିକା ମାତା ପୁଣ୍ୟବତୀ, କରୁଣା-ପ୍ରେମ-ସ୍ରୋତସ୍ୱତୀ ।
ଧାର୍ମିକ ପିତା, ନିରୁପମା, ଧାର୍ମିକା ପତ୍ନୀ ଦେବୀସମା ।
କୋମଳ କୋରକ ସମାନ, ସ୍ୱର୍ଗୀୟ ସୁଷମା ସନ୍ତାନ ।
ସୁଖ ଐଶ୍ୱର୍ଯ୍ୟ- ଗୃହ ପୂର୍ଣ୍ଣ, ତଥାପି ମୋ ହୃଦୟ ଶୂନ୍ୟ ।
କାମଭୋଗରେ ସୁଖ ଶାନ୍ତି—ଲଭ-କେବଳ ଚିତ୍ତଭ୍ରାନ୍ତି ।
କିପାଁ ମୁଁ ନୋହି ଅଭିଳାଷୀ, ଭ୍ରମୁଛି ଅରଣ୍ୟେ
ସନ୍ନ୍ୟାସୀ ?

ହେ ନୃପ ଶାନ୍ତି ଥିଲେ ଘରେ, କିପାଁ ଭ୍ରମନ୍ତି-ଅରଣ୍ୟରେ ?
କାମରେ ସୁଖ ନାହିଁ ନୃପ ! ସ୍ୱପକ୍ୱ ଫଳର ସ୍ୱରୂପ ।
ଆପାତ ମଧୁର ରୁଚିର, ମାତ୍ରକ ତାହା ନୁହେ ଚିର ।
ହିନାନ୍ତେ ହୁଏ ପର୍ଯ୍ୟୁଷିତ, ଦୁର୍ଗନ୍ଧ, ବିକୃତ, ଦୂଷିତ ।
କାମ ପ୍ରଫୁଲ୍ଲ ପୁଷ୍ପବନ, ମରଣ ଝଟିକା ପବନ,
ଯୌବନେ ଯେଉଁ କାମଭୋଗ, ଚରମେ ଘଟାଏ
ଦୁର୍ଯୋଗ ।

ଶରୀର ହୋଇ ଜରାଜୀର୍ଣ୍ଣ, ମୃତ୍ୟୁ କବଳେ ହୁଏ ଲୀନ ।
ଯେ କାମ ଭୋଗ କ୍ଷଣସ୍ଥାୟୀ, ତହିଁକି ଲୋକ କପାଁ
ଧାଇ ?

କାମ ଯେ ଅନନ୍ତ ଅସଂଖ୍ୟ, ଲଭି ପାରିବ କେଉଁ ଲୋକ ?
ଲଭିଛୁ କାମଭୋଗେ ଶାନ୍ତ, ମାନବ ଜଗତେ ନାହାନ୍ତି !
ବରଞ୍ଚ ଦେଖନ୍ତୁ ରାଜନ, କାମ ଆଶାରେ ଲୋକଗଣ
ଧାଉଁଛନ୍ତି, ନୈରାଶ୍ୟ ଯନ୍ତ୍ରଣା, ଭୁଞ୍ଜନ୍ତି, ଆଶା ବିଡ଼ମ୍ବନା ।
ଅଲାଭେ କାମ—ପ୍ରାଣ ଦଗ୍ଧ, ଲାଭରେ ନୁହେ ଶାନ୍ତି
ଲବ୍ଧ ।

ପାନରେ ଲବଣାକ୍ତ ଜଳ, ପିପାସା ବର୍ଦ୍ଧନ କେବଳ ।
ଦୈବେ ଲଭିଲେ କାମ ଏକ, ଧାଉଁନ୍ତି ଲୋଭରେ ଅନେକ ।
ଜ୍ୱଳନ୍ତ ଅନଳେ ଆହୁତି, ଦେଲେ ବର୍ଦ୍ଧିତ ଅଗ୍ନି ଜ୍ୟୋତି ।
କାମ ବିଭ୍ରମ ପ୍ରତାରକ, ନିୟତ ଲୋକହନ୍ତାରକ ।
ମରୁଭୂମିରେ ମରୀଚିକା, ସମ ଦେଖାଏ ବିଭୀଷିକା ।
ପ୍ରାଚୀନ ଏ ମଗଧ ପୁରୀ, ପଡ଼ିଛି ଦେଖ ଭାଙ୍ଗି ଚୂରି ।
ଥିଲେ ଗିରିବ୍ରଜପୁରରେ, ଚମରର ଜରାସନ୍ଧ ନୃପରେ,
କାମଲାଳସା ବଶବର୍ତ୍ତୀ, ହୋଇ କି ନ କଲେ ଦୁର୍ମତି !
ପୂର୍ଣ୍ଣ କି ହେଲା ତା ଲାଳସା ? କରମେ ଚରମ ଦୁର୍ଦ୍ଦଶା ।
ନୃପତି ଶତ ଅଷ୍ଟୋତ୍ତର, ଦେବାକୁ ବଳି ସେ ପାମର
ଇଚ୍ଛିଲା, ଲଭିଲା କେବଳ, ପାପ ଯନ୍ତ୍ରଣା ହଳାହଳ ।
କରାଳ କାଳସ୍ରୋତ ସାକ୍ଷୀ, ରହିଛି—ଦେଖ ମେଲି
ଆଖି ।

ମଗଧପୁର ଧ୍ୱଂସ ଶେଷ, ଏହାର ପ୍ରମାଣ ବିଶେଷ ।
ଦେଖିବା ହେଉ ଦଣ୍ଡଧାରି ! କାମ ଭୋଗରେ ନରନାରୀ ।
ଲଭନ୍ତି କରି ହାହାକାର, ଜରା ମରଣ ବ୍ୟାଧି ସାର ।
ଏ କଷ୍ଟ ସାଗରୁ ଉଦ୍ଧାର, ପାଇବେ ଲୋକେ ଯେପ୍ରକାର,
ଥିଲେ ତା ମାର୍ଗ ଅନ୍ୱେଷଣ, କାର୍ଯ୍ୟରେ ଯାପିବି ଜୀବନ ।
ଜାଣନ୍ତୁ ଆହେ ମହାରାଜ ! ତେଜିଛି ପୁରୀ ଶାକ୍ୟ ରାଜ୍ୟ ।
ଲଭିଲେ ତତ୍ତ୍ୱଜ୍ଞାନ ସାର, ଲୋକରେ କରିବି ପ୍ରଚାର ।"
ଶୁଣନ୍ତେ ଏତେ ବାର୍ତ୍ତା ସାର, ଜନ୍ମିଲା ଚେତନା ତାହାର,
ଶିଥିଳ ନେତ୍ର ଆବରଣ, ଛୁଟିଲା ଚକ୍ଷୁ ଆବରଣ ।

ବୋଇଲା ଯୋଡ଼ି ବେନି କର, "ହେ ପ୍ରଭୁ ! ଏତେ
କୃପା କର,
ଲଭିଲେ ମାର୍ଗ, ବୁଦ୍ଧଦେବ ! ସେ ତତ୍ତ୍ୱ ମୋତେ
ଆଜ୍ଞା ହେବ ।
ଏ ଦାସ ଧରୁଛି ଚରଣ, କରିବେ କରୁଣା ଆପଣ ।
ଦ୍ୱିତୀୟ ଭିକ୍ଷା—ଏହି ସ୍ଥାନେ, ରହନ୍ତୁ କିଛି ଦିନମାନେ ।"
ରହିଲେ ତହିଁ ଶାକ୍ୟପତି, ମାଗଧ ଘଟିଲା ଦୁର୍ଗତି
ପଡ଼ିଲା ବୈଶାଳୀ ନଗରେ, ଭୀଷଣ ମଡ଼କ ଲୋକରେ ।
କ୍ରମଶ ହେଲାକ ପ୍ରବଳ, କାନନେ ଯଥା ଦାବାନଳ ।
ମଲେ ମାନବ ଅସୁମାର, ପଡ଼ିଲା ଲୋକେ ହାହାକାର ।
କରାଳ କାଳର ଭୀଷଣ, କ୍ରୀଡ଼ା ଉପାୟେ ନିବାରଣ,
ବ୍ରାହ୍ମଣ ମୁନି ଋଷି ଯେତେ, କଲେକ ଯାଗ ଯଜ୍ଞ କେତେ ।
ମାରକ ଭୀମ ଦାବାନଳ, କ୍ରମଶ ହେଲାକ ପ୍ରବଳ ।
ଏ ଅନ୍ତେ ବୈଶାଳୀବାସୀ, ଲୋଡ଼ିଲେ ନବୀନ
ସନ୍ନ୍ୟାସୀ ।
ପାଣ୍ଡବ ପର୍ବତେ ସନ୍ନ୍ୟାସୀ, ଶୁଣି ଧାଇଁଲେ ଦେଶବାସୀ ।
ତାହାଙ୍କ ପଦତଳେ ପଡ଼ି, ବୋଇଲେ ସର୍ବେ କରଯୋଡ଼ି
"ହେ ପ୍ରଭୁ ! କରୁଣାସାଗର ! ଘୋର ବିପଦୁଁ ରକ୍ଷା
କର !"
କରୁଣାହୃଦୟ ସନ୍ନ୍ୟାସୀ, ବୋଇଲେ, "ଆହେ ପୁରବାସି !
ମେଣ୍ଟିବ ଦୁର୍ଦ୍ଦଶା ସକଳ, ପଡ଼ିଲା ଅନଳରେ ଜଳ ।"
ଶାନ୍ତି ଲଭନ୍ତେ ଲୋକଗଣେ, ପଡ଼ିଲେ ସନ୍ନ୍ୟାସୀଚରଣେ ।
ନବୀନ ସନ୍ନ୍ୟାସୀ ଏ ଅନ୍ତେ, ବାହୁଡ଼ି ପାଣ୍ଡବ ପର୍ବତେ—
ସାତ ଶ ଶିଷ୍ୟେ ପ୍ରତିଷ୍ଠିତ, ରୁଦ୍ରକ ମହର୍ଷି ପୂଜିତ ।
ତାହାଙ୍କଠାରୁ ଶାକ୍ୟ ମୁନି, ଲଭିଲେ ସମାଧି ଯେ ବେନି
ଗୋଟିଏ ଯେ ନୈବମଜ୍ଞାନ, ଅନ୍ୟଟି ଅସଜ୍ଞାୟତନ ।
ସିଦ୍ଧାର୍ଥ ଭାଳିଲେ ଏମନ୍ତ, ଏ ନୁହେ ନିର୍ବାଣର ପଥ ।
ପାଞ୍ଚଟି ଶିଷ୍ୟ ସହିତରେ, ଚଳିଲେ ଗୟା ଉଦ୍ଦେଶ୍ୟରେ ।

ଇତି ଶ୍ରୀ ବୌଦ୍ଧାବତାରକାବ୍ୟେ ମାର୍ଗ ଅନ୍ୱେଷଣ
ନାମ ତ୍ରୟୋଦଶ ସର୍ଗ ।

———

# ଚତୁର୍ଦ୍ଦଶ ସର୍ଗ

( ତପସ୍ୟା )

ପ୍ରଚ୍ଛନ୍ନସଲିଳା ଫଲ୍‌ଗୁ ପତିତପାବନୀ ।
ପିତୃଲୋକ ଉଦ୍ଧାରିଣୀ ପୁଣ୍ୟ ସନାତନୀ ।
ବିଧାତା ସୃଷ୍ଟିର ଏକ ଅଦ୍ଭୁତ କୌଶଳ,
ସିକତା ନିମ୍ନରେ ପ୍ରବାହିତ ପୂତ ଜଳ ।
ଜନନୀର ସ୍ତନ୍ୟ ସମ ଲୁକ୍‌କାୟିତ ବାରି,
ତର୍ପଣେ ତୁଳନ୍ତି ଭକ୍ତେ ବାଲୁକା ବିଦାରି ।
ନଦୀ ବକ୍ଷେ ମହାଯଜ୍ଞ ହୁଏ ସମାହିତ,
ପ୍ରତି ନିସୃତରେ ବେଦ ମନ୍ତ୍ର ମୁଖରିତ ।
ସ୍ୱର୍ଗୀୟ ଅପୂର୍ବ ଭାବଯୁକ୍ତ କ୍ଷେତ୍ରଧାମ,
ଧର୍ମପିପାସୁର ପୂର୍ତ୍ତି ହୁଏ ମନସ୍କାମ ।
ମହାଧାମ ଗୟାତୀର୍ଥ ବିରାଜିତ ତୀରେ,
ଗଦାଧର ପଦାଙ୍କିତ ଗୟାସୁରଶିରେ ।
ପୁଲିନ ପ୍ରାନ୍ତରେ ବିରାଜିତ ରାମଶିଳା,
ପିଣ୍ଡ ପ୍ରତ୍ୟାଶାରେ ସମାଗତ ପ୍ରେତଶିଳା ।
ପବିତ୍ର ଚତ୍ୱରରେ ଧର୍ମପ୍ରାଣ ଆର୍ଯ୍ୟଗଣେ
ସମାଗତ ପିତୃଲୋକ ଉଦ୍ଧାର କାରଣେ ।
ବହୁଦୂର ଦୂରାନ୍ତରୁ ଚିରକାଳ ଆର୍ଯ୍ୟ—
ସନ୍ତାନେ ଆସନ୍ତି ସାଧିବାକୁ ପିତୃକାର୍ଯ୍ୟ ।
ପିତା ସ୍ୱର୍ଗ, ପିତା ଧର୍ମ, ପିତା ହିଁ ତପସ୍ୟା,
ଏହି ସନାତନ ବାକ୍ୟ ଧର୍ମର ସମସ୍ୟା ।
ଜନକ ଜନନୀ ଦୁହେଁ ପ୍ରତ୍ୟକ୍ଷ ଦେବତା,
ଜଗତର ସର୍ବ ଧର୍ମଶାସ୍ତ୍ରେ ଏହି କଥା ।
ଜନ୍ମଦାତା ରକ୍ଷାକାରୀ ଜନନୀ, ଜନକ,
ପ୍ରଭୁଙ୍କର ପ୍ରତିନିଧିସ୍ୱରୂପ ପାଳକ ।
ପିତା ମାତା ଆଜ୍ଞାବହ ନୁହେ ଯେ ତନୟ,
ରାକ୍ଷସ ପିଶାଚଠାରୁ ଅଧମ ନିଶ୍ଚୟ ।
ପିତୃଲୋକ ପ୍ରତ୍ୟାଶାରେ ଥାନ୍ତି ସ୍ୱର୍ଗୁ ଚାହିଁ
ଆସିବ କେ ଯୋଗ୍ୟ ପୁତ୍ର ପିଣ୍ଡ ଦେବାପାଇଁ ।

ଶ୍ରୀରାମ ଲକ୍ଷ୍ମଣ ସୀତା ପିତା ଆଦେଶରେ
ଅତୁଳ ସାମ୍ରାଜ୍ୟ ତେଜି ଭ୍ରମିଲେ ବନରେ ।
ସ୍ୱର୍ଗଗତ ଦଶରଥ ଉଦ୍ଧାର କାରଣ
ଏହି ସ୍ଥାନେ ଥିଲେ କରି ଜାନକୀ ତର୍ପଣ ।
ଏକଦା ଶରତକାଳେ ନୈରଞ୍ଜନାକୂଳେ
ଭ୍ରମୁଛନ୍ତି ଶାକ୍ୟସିଂହ ମନର ଆକୁଳେ ।
ନୀଳାଞ୍ଜନା ନୈରଞ୍ଜନା ବହେ ଖରେ ବେଗେ,
କାମାସକ୍ତ ଲୋକ ଯଥା ମନର ଆବେଗେ ।
ତୀରସ୍ଥ ପାଦପଶ୍ରେଣୀ ଧ୍ୟାନମଗ୍ନ ପ୍ରାୟ,
ଛନ୍ତି ଉଭା ଊର୍ଦ୍ଧ୍ୱବାହୁ ଯୋଗୀ ସ୍ଥିରକାୟ ।
ନବଢ଼ ଲତିକା ସ୍ଥିର କାଣ୍ଡରେ ବେଷ୍ଟିତା,
ସୋହାଗୀ କାମିନୀ ପତିପ୍ରେମେ ପ୍ରଫୁଲ୍ଲିତା ।
ଶାରଦ ଶ୍ୟାମଳ ପତ୍ରେ ବନ ଆଚ୍ଛାଦିତ,
ପ୍ରବେଶ ତପନ ତେଜ ନ କରେ କିଞ୍ଚିତ ।
ଦିଗନ୍ତ ପ୍ରସାରି କରି ବନ୍ୟ ବିହଙ୍ଗମେ
ପ୍ରଭାତୀ ସଙ୍ଗୀତେ ମଗ୍ନ ସପ୍ତମ ପଞ୍ଚମେ ।
କ୍ଷୁଦ୍ରତମ ବିହଙ୍ଗମ ପତ୍ର ଅନ୍ତରାଳେ
ବସି କାହିଁ ଆନନ୍ଦରେ ସ୍ୱରସୁଧା ଢାଳେ !
ମୟୂର ମୟୂରୀ ସୁଖେ କରନ୍ତି ନର୍ତ୍ତନ,
ଦାମ୍ପତ୍ୟ ପ୍ରଣୟ ପରାକାଷ୍ଠା ନିଦର୍ଶନ !
ବନାନ୍ତେ ଶ୍ୟାମଳ ଶସ୍ୟକ୍ଷେତ୍ର ଶୋଭା ପାଏ,
ପବନେ ସାଗରେ ଶ୍ୟାମ ଢେଉ ଖେଳିଯାଏ;
ଶ୍ୟାମ ଦୂର୍ବାଦଳ ବୃକ୍ଷମୂଳେ ଆଚ୍ଛାଦିତ,
କରିଛି ପ୍ରକୃତିଦେବୀ ଶଯ୍ୟା ବିସ୍ତାରିତ ।
ନିପତିତ ତଟତରୁ ଗୁମ୍ଫା ନଦୀନୀରେ,
ଶ୍ରେଣୀବଦ୍ଧ ଊର୍ଦ୍ଧ୍ୱମୂଳ ନିମ୍ନଶାଖା ଶିରେ ।
ଅଦୂରେ ପର୍ବତଶ୍ରେଣୀ ଶ୍ୟାମଳ ଉପଳେ,
ଧ୍ୟାନମଗ୍ନ ପ୍ରାୟ ଉପବିଷ୍ଟ ମହୀତଳେ ।
ଉପତ୍ୟକା, ସାନୁଦେଶ, କନ୍ଦରେ, ଶିଖରେ
ନାନାଶ୍ରେଣୀ ବୃକ୍ଷଲତା ଶୋଭେ ସ୍ତରସ୍ତରେ ।
ଏକାକୀ ସିଦ୍ଧାର୍ଥ ମାତ୍ର ସେ ନିର୍ଜନ ବନେ—
ଭୁଲିଛି ଇନ୍ଦ୍ରିୟ ସୁଖେ, ବିଚାରିଲେ ମନେ —

ତେଜି ମୁଁ କାମନା, ଚିତ୍ତ କରିଛି ସଂଯମ—
ମାତ୍ର ମୋ ଇନ୍ଦ୍ରିୟ ଅଦ୍ୟାବଧି ଭୋଗକ୍ଷମ ।
ଇନ୍ଦ୍ରିୟ ଆଧାର ଦେହ କ୍ଷମ ଲାଳସାରେ,
କରିବି ସୁଜ୍ଞାନ ଲାଭ ତେବେ କି ପ୍ରକାରେ ?
ଶୁଷ୍କ କାଷ୍ଠେ ଶୁଷ୍କ କାଷ୍ଠ ନ କଲେ ଘର୍ଷଣ,
କରିବା କଠିନ ଲାଭ ଜ୍ଞାନ-ହୁତାଶନ ।
ଶୁଷ୍କ ଦେହେ ଶୁଷ୍କ ମନ କରିବି ଘର୍ଷଣ,
କରିପାରେଁ ଜ୍ଞାନରୂପ ଆନନ୍ଦ ଦର୍ଶନ ।
କଠୋର ତପସ୍ୟାବଳେ ପୋଡ଼ ଦେହ ମନ,
ନ ପୋଡ଼ି ଅନଳେ ନୁହେ ବିଶୁଦ୍ଧ କାଞ୍ଚନ ।
ତପୋବଳେ କ୍ଳିଷ୍ଟ ମନ, ଶାନ୍ତ ଅଲୌକିକ
ଲଭିବ ଉଜ୍ଜ୍ୱଳ ହେବ ଘର୍ଷଣେ ମାଣିକ୍ୟ ।
ଶାନ୍ତିମୟ ନଦୀତଟେ ଶାନ୍ତିମୟ ବନେ
ବସିଲେ ସିଦ୍ଧାର୍ଥ ଧ୍ୟାନଯୋଗେ ତୃଣାସନେ ।
କଠୋର ତପସ୍ୟା ବ୍ରତ କଲେକ ସାଧନ,
ଛ ବରଷ କାଳ କରି ମୁଦ୍ରିତ ନୟନ ।
କଦାଚ ତଣ୍ଡୁଳ ଏକ ତିଳ ବା ବଦରି,
ସଳିଳ ଅନଳ ପାନେ ଥିଲେ ଦେହ ଧରି ।
ପ୍ରଥମ ଏ ରୀତି ମାତ୍ର କ୍ରମେ ଅନଶନ,
ନ ଥିଲା ପଦାର୍ଥ ମାତ୍ର ଆଶ୍ରୟ ଜୀବନ ।
ଶରୀର ଇନ୍ଦ୍ରିୟଗ୍ରାମ ପ୍ରବଳ ବାସନା
କଠୋର ତପସ୍ୟାବଳେ ଶକ୍ତି ବିଡ଼ମ୍ବନା ।
ତପସ୍ୟାରେ ଦେହ ମନ ଇନ୍ଦ୍ରିୟ ମଳିନ,
ମତ୍ତ କରୀପଦେ ପଦ୍ମବନ ଛିନ୍ନଭିନ୍ନ ।
ଶରୀର ଇନ୍ଦ୍ରିୟକ୍ରିୟା ହୁଅନ୍ତେ ନିରୁଦ୍ଧ,
ହେମନ୍ତେ ଶିଶିରପାତେ ଶରୀରରେ ବୋଧ ।
ହେଲେ ଗ୍ରୀଷ୍ମ—ବହେ ସ୍ୱେଦ, ପର୍ବତୁ ନିର୍ଝର
ପ୍ରାବୃଟ କାଳରେ ଯଥା ବହେ ନିରନ୍ତର ।
ସମାପିନ ଗ୍ରହଯୋଗ, ଆସ୍ଫାଳନ ଧ୍ୟାନେ
ମଗ୍ନ ବୁଦ୍ଧ—ରୁଦ୍ଧ ହେଲେ ମନବୃତ୍ତିମାନେ ।
ଚରମେ କୁମ୍ଭକ ଯୋଗେ ହେଲେ ଅଚୈତନ୍ୟ,
ବେଦୀରେ ସ୍ଥାପିତ ଯଥା ପ୍ରତିମା କାଞ୍ଚନ ।

ରୁଦ୍ଧ ଶ୍ୱାସ, ରୁଦ୍ଧ ମୁଖ, ରୁଦ୍ଧ କର୍ଣ୍ଣପଥ,
ସମସ୍ତ ଶରୀର ବାୟୁପୂର୍ଣ୍ଣ କୁମ୍ଭବତ ।
ପ୍ରବଳ ବେଗରେ ବହି କୁମ୍ଭିତ ପବନ
ପ୍ରାଣଯନ୍ତ୍ର ସ୍ଥିର—କଲା ବିଲୟ ଚୈତନ୍ୟ ।
ଦେଖିଲେ ସ୍ୱପନେ କି ଧ୍ୟାନଯୋଗେ ଶାକ୍ୟମୁନି,
ଅଇଲା ବୋଇଲା ପାଶେ ସୁନ୍ଦରୀ ତରୁଣୀ;
"ହା ପୁତ୍ର ! ନ ହେବ ସିଦ୍ଧ ତୋ ତପସ୍ୟାବଳ,
ଅସିତ ମହର୍ଷି ବାକ୍ୟ ସର୍ବେ ବିଫଳ ।
ହେଲ ନାହିଁ ସିଦ୍ଧ ବୁଦ୍ଧ ନ ରହିଲ ରାଜ୍ୟ,
ଯାପନ ଜୀବନ ସିନା କଲ ବୃଥା କାର୍ଯ୍ୟ ।
ହସ୍ତଗତ—ନ ଭୁଞ୍ଜିଲ ବିପୁଳ ସମ୍ପତ୍ତି,
ଅରଣ୍ୟରେ ଜାତ, ଶୁଷ୍କ ଅରଣ୍ୟେ ମାଳତୀ ।"
ପୃଚ୍ଛା କଲେ ଶାକ୍ୟସିଂହ—"ବୋଲ ଗୋ ରମଣି !
କେ ତୁମ୍ଭେ ? କାତରା ଶୋକେ ସଜଳନୟନୀ !
ମୁକ୍ତକୁନ୍ତଳା ମା ଗୋ ! ଧୂଳିରେ ଧୂସରା,
ପୁତ୍ର ପୁତ୍ର ବୋଲି କାନ୍ଦ ଦୁର୍ବଳା କାତରା !"
"ଆରେ ମୋ ନୟନମଣି !" ବୋଇଲେ ରମଣୀ,
"ସ୍ୱର୍ଗଗତା ମାୟାଦେବୀ ମୁଁ ତୋର ଜନନୀ;
ଆସିଛି ତ୍ରିଦିବ ଛାଡ଼ି ହୋଇ ମୁଁ ବିମନା,
ତୋ ନିଷ୍ଫଳ ବ୍ରତ ଦେଖି ଦେବାକୁ ସାନ୍ତ୍ୱନା ।"
ଆଶ୍ୱାସି ମାତାକୁ ଯୋଗୀ ବୋଇଲେ ବିନୟେ,
"ନ କର ଜନନି ! ଚିନ୍ତା, ଅଛି ମୁଁ ନିର୍ଭୟେ ।
କରି ନାହିଁ ଗର୍ଭେ ମୋତେ ନିଷ୍ଫଳେ ଧାରଣ,
ନିଷ୍ଫଳ ହେବାର ନୁହେ ମହର୍ଷି ବଚନ ।
ପ୍ରତିଜ୍ଞା କରିଛି ମାତଃ, ତବ କୃପାବଳେ
ହେବି ବୁଦ୍ଧ; ଥିବ ମହାକୀର୍ତ୍ତି ଧରାତଳେ ।
ପୃଥିବୀ ବିଦୀର୍ଣ୍ଣ ହେଉ—ସୁମେରୁ ପର୍ବତ
ହେବ ବିଚଳିତ—ମୋର ବାକ୍ୟ ସତ୍ୟ ସତ୍ୟ !
ପଡ଼ନ୍ତୁ ଚନ୍ଦ୍ରମା ସୂର୍ଯ୍ୟ ଭୂମି ତଳେ ଖସି,
ପ୍ରତିଜ୍ଞା ପାଳିବା ପାଇଁ ଥିବ ଏଥି ବସି ।
ହେଉ ଦେହ ଛିନ୍ନ ଭିନ୍ନ ନାହିଁ ମୋ ଭାବନା,
ନ ଉଠିବି ନ କରି ମୁଁ ବ୍ରତ ଉଦ୍ୟାପନା ।"

ନିଶାର ସ୍ୱପନ ପ୍ରାୟ ସମାନେ ଜନନୀ
ଗଲେ ଚାଲି—ଯଥା ସୂର୍ଯ୍ୟ ଉଦୟେ ରଜନୀ ।
ଦିନର ଉପରେ ଦିନ ଯାଉଅଛି ଭାସି,
ଏକାସନେ ଏକଧ୍ୟାନେ ନବୀନ ସନ୍ନ୍ୟାସୀ ।
ଲଙ୍ଘିବେ ତପସ୍ୟାବଳେ ଦୁସ୍ତର ସାଗର,
ତାରିବେ ଜଗତ ପ୍ରାଣୀ ଲକ୍ଷ୍ୟ ନିରନ୍ତର ।
ତିରୋଧାନ ବାହ୍ୟଜ୍ଞାନ, ନିଶ୍ଚଳ ନିସ୍ପନ୍ଦ
ଦେହ, ନାହିଁ ବାହ୍ୟ ଦ୍ରବ୍ୟ ସହିତ ସମ୍ବନ୍ଧ ।
ନିମିଳିତ ନେତ୍ର, ରୁଦ୍ଧ ଶ୍ୱାସ-ଚଞ୍ଚଳତା,
ତରୁତଳେ ଅବସ୍ଥିତ ଅରଣ୍ୟଦେବତା ।
ଦିବସ, ରଜନୀ, ଋତୁ, ମାସ, ବର୍ଷ, ଗତ
ଛ ବର୍ଷ ସମୟ କ୍ରମଶରେ ଚକ୍ରବତ ।
ମଳୟ ପବନ, ଝଞ୍ଜା ବାୟୁ, ଗ୍ରୀଷ୍ମ, ଶୀତ,
ପ୍ରକୃତିର ଲୀଳାକ୍ଷେତ୍ରେ ଆଗତ ଅଗତ ।
ଚର୍ମମାଂସହୀନ ଦେହ, ମୁଦ୍ରିତ ନୟନ,
ନିଶ୍ଚଳ ନିଷ୍ପନ୍ଦ ସ୍ଥିର ବଲ୍ମୀକ ଯେମନ ।
ତପତକାଞ୍ଚନକାନ୍ତି ଅସ୍ଥି ମାତ୍ର ସାର,
ସହଜରେ ଅନୁମିତ କଙ୍କାଳ ପ୍ରକାର ।
ଅରଣ୍ୟ ଭ୍ରମଣକାରୀ ପଶୁପାଳଗଣେ
ଗୃହାନ୍ତ ପିଶାଚଭ୍ରମେ ସଭୟ ନୟନେ ।
ଦୁରନ୍ତ ଗୋପାଳ ଶିଶୁ କେହି ଆନନ୍ଦରେ
ଦୂରେ ଥାଇ ଲୋଷ୍ଟ୍ର ଧୂଳି ନିକ୍ଷେପ ଦେହରେ ।
ମୃତ ଶବ ଭାଳି ଘୃଣା କରେ କେଉଁ ଜନ,
ପଳାଇଲେ ନିରାଶାରେ ଶିଷ୍ୟ ପାଞ୍ଚଜଣ ।
ଢାଙ୍କିଲେ ତିମିରେ ବିଶ୍ୱ-ପ୍ରଦୀପ ଉଜ୍ଜ୍ୱଳ,
ଲୁପ୍ତ ବାହ୍ୟଜ୍ଞାନ—ତତ୍ତ୍ୱ ମହିମା ପ୍ରବଳ ।
ଲୁପ୍ତ ଦୃଷ୍ଟି, ଲୁପ୍ତ ଶ୍ରୁତି ନିଷ୍କ୍ରିୟ ଶରୀର,
ବିଶ୍ୱ ଚରାଚର ବ୍ୟାପ୍ତ ନିବିଡ଼ ତିମିର ।
ଯୋଗୀଙ୍କ ଅନ୍ତରେ ଜ୍ଞାନଦୀପ ପ୍ରବଳରେ
ଜ୍ୱଳନ୍ତେ ପ୍ରଭାବ ବ୍ୟାପ୍ତ ହେଲା ଗଗନରେ ।
ସେ ଜ୍ଞାନ ଆଲୋକେ ଯୋଗୀ ବିଶ୍ୱ ଚରାଚର,
ବିଶ୍ୱର ଅନନ୍ତ ତତ୍ତ୍ୱ, ସୀମା ସୌନ୍ଦର୍ଯ୍ୟର ।

ଦେଖିଲେ; ମାତ୍ରକ କାହିଁ ନିର୍ବାଣର ପଥ ?
ଅନ୍ୱେଷି ବିଶେଷ ପ୍ରାପ୍ତ ନ ହେଲେ ତ ତତ୍ତ୍ୱ ।
ଯୋଗୀଙ୍କ ସମସ୍ତ ଆଶା ହେଲା ବ୍ୟର୍ଥ ପ୍ରାୟ,
ଛଅ ବର୍ଷ ତପସ୍ୟାରେ ନ ହେଲା ଉପାୟ,
କେତେ ଆଶା—ମହା ଆଶା ପୋଷିଥିଲେ ମନେ,
ଏ ଘୋର ତପସ୍ୟା ପରା ଗଲା ଅକାରଣେ !
ସିଦ୍ଧାର୍ଥ ତପସ୍ୟା ନୁହେ ଆପଣାର ପାଇଁ,
ନିଖିଳ ମାନବ ଅର୍ଥ ସିଦ୍ଧ ହେଲା କାହିଁ ?
ଏ ଘୋର ତପସ୍ୟା ଯେବେ ଗଲା ଅକାରଣେ,
ସାଫଲ୍ୟ ଉପାୟ କାହିଁ ? ବିଚାରିଲେ ମନେ—
ନିଗୂଢ଼ ସାଧନା ଅନ୍ୟ ଅଛି କି ଗୁପତ ?
ଲଭିବି ଯେ ମାର୍ଗେ ଯାଇ ନିର୍ବାଣର ତତ୍ତ୍ୱ ?
ନିରାଶାର ସହଚର ସଂଶୟ ଅଜ୍ଞାତେ
ସଞ୍ଚାରିତ, ବିସ୍ତାରିତ, ଯୋଗୀ ମନ ପ୍ରାନ୍ତେ ।
କଦାଚିତ ମୃଗଯୂଥ ମିଳି ମୁନି ପାଶେ
ଚକିତେ କ୍ଷଣକେ ରହି ଚରନ୍ତି ବିଶ୍ୱାସେ ।
ନିଶ୍ଚେଷ୍ଟ ନିଷ୍ପନ୍ଦ ଅଙ୍ଗ ସ୍ଥାଣୁ ସମାନରେ
ବସନ୍ତି ଅରଣ୍ୟ କ୍ଷୁଦ୍ର ପକ୍ଷୀ ମସ୍ତକରେ ।
ସଂଶୟ-ନୀରଦେ ଜ୍ଞାନ-ସୂର୍ଯ୍ୟ ଆଚ୍ଛାଦିତ,
ନିଷ୍ଫଳ ତପସ୍ୟା ଯୋଗୀ ମନେ ଅନୁମିତ ।
ଜନକ ଜନନୀ ମନେ ବୃଥା ଦେଲି କଷ୍ଟ,
ତେଜିଲି ପ୍ରେୟସୀ ଗୋପା, କଲି ଦେହ ନଷ୍ଟ ।
ଆଶା-ତରୀ ଭସାଇଲି ଅକୂଳ ସାଗରେ
ସଞ୍ଚିତ କରିବି ଧନ—ବଞ୍ଚିତ ଶେଷରେ ।
ଅନାଗତ ପ୍ରତ୍ୟାଶାରେ ହସ୍ତଗତ ଧନ
ଅବିମୃଷ୍ୟକାରିତାରେ ଦେଲି ବିସର୍ଜନ ।
ମାୟା ବିନା ଆଶାସୂତ୍ରେ ଜୀବନ ସମ୍ବନ୍ଧ
ଛିଦ୍ର ମାତ୍ର ପ୍ରାପ୍ତେ କରେ ଲୋକେ ଜ୍ଞାନଅନ୍ଧ ।
ସଂସାର ମୋହନ ବେଶ ଭାସିଲା ନୟନେ,
ବିଗତ ଐଶ୍ୱର୍ଯ୍ୟ ବୀର୍ଯ୍ୟ ପଡ଼ିଗଲା ମନେ ।
ପୂର୍ବ ସ୍ମୃତି ଏକ ଏକ ହୃଦୟେ ବିକାଶେ,
ପ୍ରକାଶିତ ସନ୍ଧ୍ୟା ତାରା ଯେମନ୍ତ ଆକାଶେ ।

ପିତାଙ୍କର ଶୋକ ଛବି, ଗୌତମୀଙ୍କ ଚିତ,
ଜୀବନସ୍ୱରୂପା ଗୋପା-ପ୍ରଣୟ ପବିତ ।
ଆକୁଳ ବିହ୍ୱଳ ଆହା ! ବଞ୍ଚିଛି କି ପ୍ରାଣେ ?
ଅଛନ୍ତି କି ପିତା ମାତା ପ୍ରାଣେ—କେବା ଜାଣେ ?
କପିଳବସ୍ତୁରେ ବୃଥା ଦେଇ ଶୋକ ଡାକ,
ଜନକ ଜନନୀ, ଗୋପା ଲୋକ ହୃଦ ଜାକ ।
କି କର୍ତ୍ତବ୍ୟ ବର୍ତ୍ତମାନ ? ପୁଣି କି ସଂସାରେ
ପ୍ରବେଶିବି ? ନାହିଁ, ନାହିଁ ଯିବି କି ଆଶାରେ ?
ଜନ୍ମ, ଜରା, ମୃତ୍ୟୁ, ବ୍ୟାଧି ପୂର୍ଣ୍ଣ ଯେ ସଂସାରେ,
ମୁକ୍ତ ବନ୍ଦୀ ପ୍ରବେଶେ କି ପୁନଃ କାରାଗାରେ ?
ବୃଥା କି ମାନବ ଜନ୍ମ ? ଯନ୍ତ୍ରଣା ନିର୍ବାଣ
ମାର୍ଗ ଶୂନ୍ୟ ? ଏ ପ୍ରକାର ବିଧିର ବିଧାନ ?
ନ ହେଲା ମୀମାଂସା ଯୋଗୀ ପଡ଼ିଲେ ସଂଶୟେ,
ଲାଳସା, କାମନା କଲେ ପ୍ରବେଶ ହୃଦୟେ ।
ଦେଖିଲେ ସିଦ୍ଧାର୍ଥ—ମନୋହର ନାରୀଗଣେ
ବୋଇଲେ ତାହାଙ୍କୁ ଆସି ମଧୁରବଚନେ —
"ହେ ଯୋଗି ! ନ ବୁଝି ତତ୍ତ୍ୱ ବୃଥାରେ ତପସ୍ୟା
କର, ଦେହ ନଷ୍ଟ ତୁମ୍ଭ ଅଛି କି ଭରସା ?
ସୌନ୍ଦର୍ଯ୍ୟ ଐଶ୍ୱର୍ଯ୍ୟ ବୀର୍ଯ୍ୟ ବିଳାସ ଗୌରବ —
( ତେଜ ଯୋଗ ) ଯାହା ଇଚ୍ଛା ଦେବୁଁ ଆଣି ସବ ।
ଛ ବର୍ଷ ତପସ୍ୟା କରି ଲଭିଲ କି ଫଳ,
ଶରୀର କଙ୍କାଳସାର ଯନ୍ତ୍ରଣା କେବଳ ।"
ଅପୂର୍ବ ରମଣୀ ପଞ୍ଚ ଅପୂର୍ବ ସୁନ୍ଦରୀ,
ସ୍ଥିର ସୌଦାମିନୀରୂପା ସ୍ୱର୍ଗ ବିଦ୍ୟାଧରୀ ।
କିଣାକିଣୀ ବାଣୀ କିବା ଅପୂର୍ବ ଲାବଣ୍ୟ,
ଚଞ୍ଚଳେ ଚହଟି କରେ ଆଲୋକ ଅରଣ୍ୟ ।
ମକଳେ ସୁକେଶୀ ଯୋଡ଼ା କୁଞ୍ଚିତ କୁନ୍ତଳା,
ମୂର୍ତ୍ତିମତୀ ନାରୀରୂପା ଉଦ୍ଦତା ଚପଳା ।
ଅର୍ଦ୍ଧ-ଅନାବୃତବକ୍ଷା ସୁଠାମ ଗୃହାଣି,
ତାଡ଼ିତ ମୋହରେ ଭେଦ କରେ ହୃଦ ଜାଣି ।
ନୂପୁର ସେ ତାର କିବା କିଣାର ଝଙ୍କାର,
ବଚନେ ବୋଇଲେ ଶାକ୍ୟସିଂହେ ପୁନର୍ବାର ।

"ବୃଥା ନିର୍ବାଣର ମାର୍ଗ କର ଅନ୍ୱେଷଣ ।
ଆସ କାନ୍ତ ! ଗୃହେ—ସର୍ବେ କରୁଁ ବିଚରଣ ।"
ଅଚଳ ହିମାଦ୍ରି ସାନୁ ସମାନେ ସନ୍ନ୍ୟାସୀ
ଉପବିଷ୍ଟ ସର୍ବ ସୁଖ ଲାଳସା ଉଦାସୀ ।
ଭାଳିଲେ ଚିତ୍ତରେ, ଧନ୍ୟ କାମ ପ୍ରଲୋଭନ !
ଆସ୍ୱାଦେ ରଖିଛି ପ୍ରାଣିଗଣେ ଅନୁକ୍ଷଣ ।
କାମର ମହିମା ଶକ୍ତି ଅଛି ଭଲ ଜଣା,
ପ୍ରାଣିନାଶେ ବିସ୍ତାରିଛି ଜାଲ ପ୍ରତାରଣା ।
କାମନା—କାମର ପତ୍ନୀ—ନିଶାଚରୀମତି,
ଘଟାନ୍ତି ମାନବକୁଳେ ଦୁଃସହ ଦୁର୍ଗତି ।
ମାନବ ପ୍ରବାହ ବୃଦ୍ଧି କାମ ପ୍ରସାଦରେ
ସତ୍ୟ;—କିନ୍ତୁ ସର୍ବନାଶ ଘଟାଏ ଲୋକରେ ।
କାମୁଁ ଜାତ କ୍ରୋଧ—ତହୁଁ ଘଟେ ସର୍ବନାଶ,
କରିବ କେ କ୍ଷମା ସେହି କାମ ଅଭିଳାଷ ?
କେତେ ଲୋକକ୍ଷୟକର ଯୁଦ୍ଧ ଜଗତରେ
ଘଟିଛି—ହେବାରୁ ଲୋକ ଉନ୍ମତ୍ତ କାମରେ ।
ଅଲକ୍ଷ ସୂତ୍ରରେ କାମ ମାନବ ହୃଦୟେ,
ପ୍ରବେଶି ଉନ୍ମତ୍ତ କରେ କାମନା ବିଷୟେ ।
କାମ ସହିତରେ ମୋହବଶେ ଲୋକଗଣ
ଲଭନ୍ତି ଚରମେ ଜରା ଯନ୍ତ୍ରଣା ମରଣ ।
କି ଭୀଷଣ କାମଲୀଳା ନ ଦେଖନ୍ତି ଲୋକେ,
ସୁଖ ଭୋଗେ ରତ ସାର ନପଡ଼ନ୍ତି ଦୁଃଖେ ।
ଦଳିଛି କାମକୁ ପଦେ, କି, ଲୋଭେ ସମ୍ମତି
ଦେବି ସର୍ବନାଶୀ କାମ ବିଧିସୂତ୍ରେ ମତି ?
ଥାଉ କାମ ପ୍ରଲୋଭନ, ଉଦ୍ଦେଶ୍ୟ ସାଧନ
ନିର୍ବନ୍ଧନ କରିବି ମୁଁ ପ୍ରାଣ ବିସର୍ଜନ ।
ଧିକ ଦୁରାଗ୍ରହୀ କାମ ! ଧିକ ତୋ ବେଭାର !
ନ ବୁଝିଲୁ ମୋର ବ୍ୟବସାୟ କି ପ୍ରକାର ।
ସୁଖସେବ୍ୟ କାମ୍ୟ ବସ୍ତୁ ଦେଇଛି ଫୋପାଡ଼ି,
ହେବି ଏବେ କାମଦାସ ତତ୍ତ୍ୱମାର୍ଗ ଛାଡ଼ି ?
ମୋ ଦୀର୍ଘ ତପସ୍ୟା ଫଳ କରିବ ବିଫଳ,
ନଷ୍ଟପ୍ରାୟ କାମର ନାହିଁ ଏତାଦୃଶ ବଳ ।

ଜ୍ଞାନସୂର୍ଯ୍ୟ ଉଦୟରେ କାମ ଅନ୍ଧକାର
ଦୁଶ୍ଚରିତ୍ର ରମଣୀ ଏ,—ତାର ଅଭିସାର ।
ଅନ୍ତର୍ହିତ କାମ—ପଞ୍ଚ କନ୍ୟା ସହିତରେ,
ଦେଖିଲେ ସିଦ୍ଧାର୍ଥ ଏକ ମୂର୍ତ୍ତି ସମ୍ମୁଖରେ;
ଭୂତ, ପ୍ରେତ, ପିଶାଚ ବା ରୂପ ଭୟାବହ,
ଭୀଷଣ କଙ୍କାଳସାର ଜିହ୍ୱା ଲହଲହ,
ବଦନ ବିସ୍ତାରି ଆସୁଛି ବା ଗ୍ରାସିବାକୁ ?
ଦୂର୍ ହ—ଦୂର୍ ହ ! ଯୋଗୀ ବୋଲଇ ତାହାକୁ ।
ଚିହ୍ନିଛି ରେ କାମ ତୋତେ ତପସ୍ୟାକଣ୍ଟକ
ମୋ ମାର୍ଗରେ ପ୍ରତିବନ୍ଧ ହେଉ ଅନର୍ଥକ ।
ବୋଇଲା ପିଶାଚ—"ଆରେ ଶାକ୍ୟସିଂହ ! ଶୁଣ,
ବାହୁଡ଼ି ଆସିବ କେବେ ହେଲେ ହିନେ ପୁଣ ।
କାମ ନୁହେଁ ମୃତ୍ୟୁ ମୁହିଁ ରଖିଥା ମନରେ ।"
ବାଜିଲା ଏ କଥା ଯୋଗୀକର୍ଣ୍ଣେ ନିରନ୍ତରେ ।
ଭାଳିଲେ ସିଦ୍ଧାର୍ଥ—ମୃତ୍ୟୁ ଆସିବ ନିଶ୍ଚୟ,
ବୃଥା ମୁଁ କି କଲି ଆୟୁ ଦେହ ଅପଚୟ ?
ମୃତ୍ୟୁ ଆସିବାର ପୂର୍ବେ ନିର୍ବାଣର ପଥ
ନ କଲେ ମୁଁ ଆବିଷ୍କାର ସବୁ ହେଲା ବ୍ୟର୍ଥ ।
ବିଚଳିତ ଚିତ୍ତଛନ୍ନ ନିରାଶା-ତମିରେ,
ସହସ୍ର କୁଳିଶ ଭାଙ୍ଗି ପଡ଼ିଲା କି ଶିରେ !
କରି କି ନ ପାରେ ତତ୍ତ୍ୱମାର୍ଗ ଆବିଷ୍କାର,
ମାନବେ ପାଇବେ ପାପ ତାପରୁ ଉଦ୍ଧାର ?
ଆଇଲେ ଏକାଳେ ଇନ୍ଦ୍ର ସ୍ୱର୍ଗରୁ ଓହ୍ଲାଇ,
ମିଳିଲେ ସଧୀରେ ଧୀରେ ଯୋଗିପାଶେ ଯାଇ ।
ସୁନ୍ଦର ତ୍ରିତନ୍ତ୍ରୀ ଦେବ ଧରିଥିଲେ କରେ,
ସ୍ୱର ବାନ୍ଧି ମନୋଯୋଗୀ ହେଲେ ବାଦନରେ,
ଟାଣରେ ଛିଡ଼ିଲା ଶ୍ଳଥ ଥିଲା ଏକ ତାର,
ଦୁର୍ବଳ ଦିଶଇ ତାର ମଧ୍ୟ ସେ ପ୍ରକାର ।
ସୁନ୍ଦର ଉତ୍ତମ ତାର ବାଜିଲା ସୁତାନେ,
ଦେଲା ସୁଧା ଢାଳି ଯେହ୍ନେ ଶାକ୍ୟସିଂହ କାନେ ।
ଗୁପ୍ତାଚାର ପ୍ରାୟେ ଇନ୍ଦ୍ର ହେଲେ ଅନ୍ତର୍ହିତ,
ବିସ୍ମୟେ ସିଦ୍ଧାର୍ଥ ଛନ୍ତି ଯେହ୍ନେ ଚିତ୍ରାର୍ପିତ ।

ଇନ୍ଦ୍ର କାର୍ଯ୍ୟ ଦେଖି ମୁନି ବିଚାରିଲେ ମନେ,
ବିଳାସ ଶ୍ଳଥରେ ଦେହ ଅବା ନିପୀଡ଼ନେ
ନ ହେବ ତପସ୍ୟା ସିଦ୍ଧି, ଦେହ ସଜୀବିତ
କଲେକ ଅବଶ୍ୟ ଫଳ ଲଭିବି ବାଞ୍ଛିତ ।

ଇତି ଶ୍ରୀ ବୌଦ୍ଧାବତାର କାବ୍ୟେ ତପସ୍ୟା
ନାମ ଚତୁର୍ଦ୍ଦଶ ସର୍ଗ ।

———

## ପଞ୍ଚଦଶ ସର୍ଗ

( ସିଦ୍ଧି )

ଗତ ରଜନୀ ଅରୁଣୋଦୟ,
କ୍ରମେ ଅବନୀ ଆଲୋକମୟ,
ଜଗତର ଲୋକେ ପ୍ରଭାତେ ଆଲୋକେ
ଚେତି କାର୍ଯ୍ୟରେ ହେଲେ ତନ୍ମୟ
ସେ ସମୟେ । ୧ ।

ବହେ ଶୀତଳ ବାୟୁ ପ୍ରଶାନ୍ତ,
ନବ ଅରୁଣ କିରଣ ଭାନ୍ତ,
କରି ଗୁଞ୍ଜରଣ ମଧୁକରଗଣ
ମକରନ୍ଦପାନେ ଛନ୍ତି ମାତି
ସେ ସମୟେ । ୨ ।

ଧୀରେ ସିଦ୍ଧାର୍ଥ ମେଲି ନୟନ
ଗୃହୁଁ ଦେଖିଲେ କୁଞ୍ଜ କାନନ,
ଛଅ ବର୍ଷ ଗତ ପ୍ରଭାତେ ଏମନ୍ତେ
ତରୁ ଲତା ପୁଷ୍ପ ସୁଶୋଭନ
ସେ କାନନେ । ୩ ।

ପ୍ରାତ ସୁନ୍ଦର ନୀଳ ଆକାଶ,
ପ୍ରକୃତିର କି ଶୋଭା ବିକାଶ,
ଶତ ମନୋରମ ବସନ୍ତ କୁସୁମ
ଫୁଟି ଚହଟିଯାଏ ସୁବାସ
ସେ ବନ ରେ । ୪ ।

ନବ ପଲ୍ଲବେ ତରୁ ବଲ୍ଲରୀ,
ନବ ଯଉବନ ରୂପ ଧରି,
ବିକାଶେ ଯଥାର୍ଥ ମାତ୍ରକ ସିଦ୍ଧାର୍ଥ
ରୂପ ଲାବଣ୍ୟେ ଯାଇଛୁ ସରି
କି ଯେ କାଳେ । ୫ ।

ଗତ ସାମର୍ଥ୍ୟ ସିଦ୍ଧାର୍ଥ ତନୁ,
ଗତ ବିଷୟ ତାଦୃଶ ମନୁ,
ଶରୀର ଯେମନ୍ତ କାଷ୍ଠରେ ନିର୍ମିତ,
ନୁହେ ସଞ୍ଚାଳିତ ମାତ୍ର ଅଣୁ
ସେ କାଳରେ । ୬ ।

କର ଚରଣ ଦୁର୍ବଳ ଅତି;
ଉଠିବାକୁ ତ ନାହିଁ ଶକତି,
ନାହିଁ କେହି ସାହା ଧରି ଅବା ବାହା
ଉଠାଇବ ବା ଆସିଣ କତି
ସେ ସିଦ୍ଧାର୍ଥେ । ୭ ।

ଥିଲେ ପାଞ୍ଚଜଣ ଶିଷ୍ୟ ପାଶେ,
ପଳାଇଲେକ ଛାଡ଼ି ନିରାଶେ,
ସିଦ୍ଧାର୍ଥ ଏକକ ସାହା ନାହିଁ ଲୋକ,
କିଛି ବୋଲିବେ କାହାରି ପାଶେ
ସେ ସିଦ୍ଧାର୍ଥ । ୮ ।

ବହୁ କାଳରେ ବହୁ କଷ୍ଟରେ
ଉଠି ବସିଲେ ଶରୀରଭରେ,
ନୈରଞ୍ଜନା ନୀରେ ଯାଇ ଧୀରେ ଧୀରେ
ସ୍ନାନ କଲେ ଛଅ ବର୍ଷ ପରେ
ସେ ସିଦ୍ଧାର୍ଥ । ୯ ।

ଅନଳରେ କି ସୁଧା ବର୍ଷଣ
ହେଲା, ତେଜିଲେ ଜୀର୍ଣ୍ଣ ବସନ,
ନିକଟ ଶ୍ମଶାନ ଶବର ବସନ
ଆଣି ଯତନେ କଲେ ଧାରଣ
ସେ ଅଙ୍ଗରେ । ୧୦ ।

ଆସି ବସିଲେ ସେ ତରୁତଳେ,
ଶିବ ପ୍ରତିମା ସମ ନିଶ୍ଚଳେ,
ଅରଣ୍ୟ ଦେବତା କିଅବା ସ୍ଥାପିତା
ଛନ୍ତି କି ସେ ବିପିନେ ବିରଳେ
ସେ ସ୍ଥାନରେ । ୧୧ ।

ନନ୍ଦକପତି କନ୍ୟା ସୁଜାତା,
ଖ୍ୟାତ ପବିତ୍ର ବଂଶସଞ୍ଜାତା
ବେଷ୍ଟିତା ଆଳୀରେ ସୁବର୍ଣ୍ଣ ଥାଳୀରେ
ପୂଜା ସମ୍ଭାରମାନ ସହିତା
ସେ ସ୍ଥାନରେ । ୧୨ ।

ବନଦେବତା ପୂଜିବା ଆଶେ
ଆସି ମିଳିଲେ ସନ୍ନ୍ୟାସୀ ପାଶେ,
ଦେଖି ଯୋଗିବରେ ଭାଳିଲେ ମନରେ,
ବନଦେବତା ମନକୁ ଆସେ
ଏ ସନ୍ନ୍ୟାସୀ । ୧୩ ।

ଭକ୍ତି ପୂର୍ବକ ନମି ପାଦରେ,
ଥିଲା ପାୟସାନ୍ନ ସହିତରେ,
ଦେଇ ଉପହାର ନମି ବାର ବାର
ଜଣାଇଲେ ବିନୟ ବାକ୍ୟରେ
ସେ କୁମାରୀ । ୧୪ ।

ହେ ବନ ଦେବତା ମୋ ନିବେଦନ,
ପ୍ରଭୋ ! ବନ୍ଦଇ ତୁମ୍ଭ ଚରଣ,
ଦାସୀର ସାମାନ୍ୟ ପୂଜା ପାୟସାନ୍ନ
କୃପାକଟାକ୍ଷେ କର ଗ୍ରହଣ,
ହେ ଦେବତା । ୧୫ ।

ଯୋଗୀ ବୋଇଲେ, ଗୋ ସାଧ୍ୱି ! ସତ !
ଦେବ ନୁହେ ମୁଁ ସାମାନ୍ୟ ସତ;
ରହି ଅନାହାରେ ତପସ୍ୟା ଏଠାରେ
କଲ ବହୁବର୍ଷ ସ୍ଥିରମତ,
ଗୋ କଲ୍ୟାଣି ! ୧୬ ।

କ୍ଷୁଧା-ଆକୁଳ ଆଜ ମୋ ପ୍ରାଣ,
ନେଲ ଆନନ୍ଦେ ଏ ପାୟସାନ୍ନ,
କରେଁ ଆଶୀର୍ବାଦ, ପୂରୁ ତୁମ୍ଭ ସାଧ,
ରକ୍ଷା କରନ୍ତୁ ଶ୍ରୀ ଭଗବାନ
ଗୋ ସୁଶୀଳେ ! ୧୭ ।

ସତ୍ତ୍ୱ ସୁଜାତାଦତ୍ତ ଅନ୍ନରେ
ଯୋଗୀ ଲଭିଲେ ବଳ ଦେହରେ,
ନିକଟେ "ଗୋଚର" ଗ୍ରାମେ ଯୋଗିବର
ଭିକ୍ଷା କଲେକ ଏଥୁ ଅନ୍ତରେ
ସେ କାଳରେ । ୧୮ ।

କ୍ରମେ ଯୋଗକ୍ଷମ ହେଲେ ସତ,
ଦୁଃଖିବ କି ଜଗତ ଦୁର୍ଗତ,
ଆଜ ସୁପ୍ରଭାତେ ସିଦ୍ଧାର୍ଥ ଏକାନ୍ତେ
ପୁନଃ ତପରେ ଦେଲେକ ମତ
ସେ କାଳରେ । ୧୯ ।

ସେହି ଅଶ୍ୱତ୍ଥ ବୃକ୍ଷର ତଳେ
ପୂର୍ବେ ଯୋଗାସନ ଯେଉଁ ସ୍ଥଳେ,
ସାତ ବାର ପୁଣ କରି ପ୍ରଦକ୍ଷିଣ
ପ୍ରଣମିତ ସାତ ଥର ମୂଳେ
ସେ ତପସ୍ୱୀ । ୨୦ ।

ଭିକ୍ଷାଲବ୍ଧ ତୃଣରାଶି ଆଣି
ଶୁଦ୍ଧ ଆସନ ପାତିଲେ ପୁଣି,
ପୁନଶ୍ଚ ଯୋଗସ୍ଥ ହେଲେକ, ସମସ୍ତ
କାର୍ଯ୍ୟ ତେଜି ସେହି ମହାଜ୍ଞାନୀ
ସେ ସମୟେ । ୨୧ ।

ପୂର୍ବମୁଖ ଋଜୁକାୟ ମନେ
ନତ ଅଂସଯୁଗ ଧରାସନେ,
ହସ୍ତୋପରେ ହସ୍ତ ଅଙ୍କରେ ସ୍ଥାପିତ,
ବେନି କମଳ କାଞ୍ଚନାସନେ
ସେ ଯୋଗୀର । ୨୨ ।

ଜଟା ମୁକୁଟ ଶୋଭେ ମସ୍ତକେ,
ନେତ୍ର ମୁଦ୍ରିତ ନାସ୍ତି ପଲକେ,
ଦେହ ଜୀର୍ଣ୍ଣବାସ ନାସା ଅନଶ୍ୱାସ
କର୍ଣ୍ଣେ ଶ୍ରବଣରହିତ ଶ୍ଳୋକେ
ସେ ଯୋଗୀର । ୨୩ ।

ଦେହ ଅଚଳ ସ୍ଥାଣୁ ସମାନେ,
ସ୍ୱତନ୍ତ୍ରର ସେହି ବାହ୍ୟଜ୍ଞାନେ,
ପ୍ରଣିଧାନ ବଳେ ତପସ୍କୃତ ଫଳେ
ଲଭ କଲେ ବୃକ୍ଷ ସମାନେ
ସେ ଯୋଗୀନ୍ଦ୍ର । ୨୪ ।

ମନେ ସଙ୍କଳ୍ପ ହେଲାକ ସ୍ଥିର,
ଶୁଷ୍କ ନାଶ ବା ହେଉ ଶରୀର,
ଯାବତ ନିର୍ବାଣ ଉଦେ ନୁହେ ଜ୍ଞାନ
ଏହି ଆସନେ ରହିବ ଚିର
ମୁଁ ଏସ୍ଥାନେ । ୨୫ ।

ବୃକ୍ଷ ନିଷ୍ପନ୍ଦ ସ୍ଥିର କାନନ,
ସ୍ତବ୍ଧ ପକ୍ଷିସଙ୍ଗୀତ, ପବନ,
ନୈରଞ୍ଜନାସ୍ରୋତ କାନନ ସମସ୍ତ
ସ୍ଥିର ଅଛି କି ବିଶ୍ୱ ଭୁବନ
ସେ କାଳରେ । ୨୬ ।

ପୂର୍ବାଚଳ ଶିରେ ସ୍ଥିର ସୂର୍ଯ୍ୟ,
ବିଶ୍ୱ ଜଗତ ଶାନ୍ତ ଗାମ୍ଭୀର୍ଯ୍ୟ
ଅଜ୍ଞାତ ଆଶାରେ ହୃଦେ ବାରେ ବାରେ
କିବା ସମ୍ମୋହନ ଧ୍ୱନି ତୂର୍ଯ୍ୟ
ସେ କାଳରେ । ୨୭ ।

କାମ ପରାଜିତ ଗତ ଚିରେ,
ଅବିଚଳିତ ଚିତ୍ତ ସୁସ୍ଥିରେ,
ସ୍ନିଗ୍ଧ ନିରମଳ ଦର୍ପଣ ଉଜ୍ଜ୍ୱଳ
ଆବିଳତା ତ ନାହିଁ ତହିଁରେ
ସେ ମନରେ । ୨୮ ।

ଚିତ୍ତେ ଜ୍ଞାନଦୀପ ଉଦ୍ଭାସିତ,
ସ୍ୱଚ୍ଛ ଦର୍ପଣେ ତପନ ଦୀପ୍ତ,
ଚିତ୍ତବୃତ୍ତିଚୟ ସମସ୍ତ ଇନ୍ଦ୍ରିୟ
କ୍ରିୟାକଳାପ ସେ ଅପ୍ରମିତ
ସେ ଦେହରେ । ୨୯ ।

ସର୍ବଗୁରୁ ବିତର୍କ ପ୍ରଥମ
କଲେ ଧ୍ୟାନରେ ହୃଦୟଙ୍ଗମ,
ଭାବିଲେ କି ସତ୍ୟ କି ଅବା ଅସତ୍ୟ
ତତ୍ତ୍ୱ ଲଭିଲେ ସେ କ୍ରମେ କ୍ରମେ
ସେ ଯୋଗୀନ୍ଦ୍ର । ୩୦ ।

ଆତ୍ମା ସମ୍ବନ୍ଧ ନିତ୍ୟ ସହିତ,
ଜଡ଼ ଚେତନ ଉଭୟେ ନିତ୍ୟ,
ସମ୍ବନ୍ଧବିହୀନ ଉଭ ଭିନ୍ନ ଭିନ୍ନ,
ଯୋଗୀ ଚିତ୍ତରେ କଲେ ନିଶ୍ଚିତ
ସେ ପ୍ରଥମେ । ୩୧ ।

ଯୋଗୀ ଚିତ୍ତରେ ଚିନ୍ତିଲେ ଦୃଢ଼େ,
ପରିବର୍ତ୍ତନ ସ୍ରୋତରେ ଜଡ଼େ,
ହୁଏ ରୂପାନ୍ତର ନିତ୍ୟେ ନିରନ୍ତର,
ତାଙ୍କ ଅପ୍ରୀତି ଜନ୍ମିଲା ଜଡ଼େ
ସେ କାଳରେ । ୩୨ ।

ସୁଖ ଦୁଃଖ ଯାହା ଜଗତରେ
ନାଶ ଯାଏ ଜଡ଼ ସହିତରେ,
ସୁଖ ଦୁଃଖମାନ ମନେ ଯେବେ ସ୍ଥାନ
ଦେବ ନାହିଁ, ମୁକ୍ତ ସହଜରେ
ନ ଲଭିବ । ୩୩ ।

ମେଘବିମୁକ୍ତ ଚନ୍ଦ୍ର ସମାନେ
ଆତ୍ମା ସ୍ୱରୂପ ଦେଖିଲେ ଜ୍ଞାନେ,
ଦିବସ ସମସ୍ତ ହେଲା ଧ୍ୟାନେ ଗତ,
ଦୀର୍ଘକାଳ ପଲକ ସମାନେ
ସେ କାଳରେ । ୩୪ ।

ଘୁଞ୍ଚିଗଲା ଅଜ୍ଞାନାନ୍ଧକାର,
ଚିତ୍ତେ ଜ୍ଞାନାଲୋକ ଯେ ସଞ୍ଚାର,
ସେ ଜ୍ଞାନ ଆଲୋକେ ଦେଖିଲେ ପ୍ରତ୍ୟକ୍ଷେ,
ଖଣି ଗର୍ଭରେ ମଣି ପ୍ରକାର,
ସେ ଯୋଗୀନ୍ଦ୍ର । ୩୫ ।

ପୂର୍ବ ଜନମେ ଥିଲେ ଯେପରି,
ଗତ ତିମିରକୁ ଭେଦ କରି,
ସୁଗତି, ଦୁର୍ଗତି, ସୁମତି, କୁମତି
ନଖ ଦର୍ପଣ ପ୍ରତ୍ୟକ୍ଷ ସରି
ସେ ଯୋଗୀନ୍ଦ୍ର । ୩୬ ।

ଧ୍ୟାନେ ଜାଣିଲେ ସେ ପୁନର୍ବାର,
ନିଜ ପୂର୍ବଜନ୍ମ ସମାଚାର,
ନାହିଁ ତାଙ୍କ ନାମ, ଗୋତ୍ର ଜାତି ବର୍ଣ୍ଣ,
ଜ୍ଞାନିବଂଶରେ ଜନ୍ମ ତାଙ୍କର
ସେ ପୂର୍ବରେ । ୩୭ ।

କାଳସ୍ରୋତରେ ଜନ୍ମ ମରଣ,
ଘଟୁଅଛି ନିତ୍ୟ ଆବର୍ତ୍ତନ,
ଜନ୍ମି ଜୀବ ମରେ, ମରି ଦେହ ଧରେ
ଦୁଃଖ ସହିବାକୁ ଜୀବଗଣ
ଏ ସଂସାରେ । ୩୮ ।

ଜୀବ ଜନ୍ମି ମରେ ବାରମ୍ବାର,
କରୁଛନ୍ତି ସଦା ହାହାକାର,
ଭାବିଲେ ମନରେ, ଏ କି ଜଗତରେ,
ନାହିଁ ମାର୍ଗ କି ହେବା ଉଦ୍ଧାର
ଏ ଜଗତେ ? ୩୯ ।

ଜନ୍ମ ମରଣ ଏ ଆବର୍ତ୍ତନେ,
କିପାଁ ଭାସନ୍ତି ଏ ଜୀବଗଣେ ?
ଆରମ୍ଭିଲେ ଧ୍ୟାନ, ଲଭି ତତ୍ତ୍ୱ ଜ୍ଞାନ,
ସୁଖ ଦୁଃଖ ଘଟେ ଯେ କାରଣେ
ଏ ଜଗତେ । ୪୦ ।

ଜନ୍ମ ଅଟେ ଦୁଃଖର କାରଣ,
କର୍ମଫଳ ଯେ ଜନ୍ମକାରଣ,
ଚେଷ୍ଟାରୁ ଯେ ଜାତ କର୍ମଫଳବ୍ରାତ,
ଦେହ ମାନସ ଚେଷ୍ଟା କାରଣ
ଏ ଦେହରେ । ୪୧ ।

ସୁଖତୃଷ୍ଣା ଯେ ଚେଷ୍ଟାକାରଣ,
ତୃଷ୍ଣାହେତୁ ସୁଖ ଦୁଃଖ ଜ୍ଞାନ,
ଜନ୍ମାଏ ଇନ୍ଦ୍ରିୟ ସୁଖଦୁଃଖଚୟ
ଅନୁଭବକୁ ନିଶ୍ଚୟ ଏ ଜାଣ
ଏ ଦେହରେ । ୪୨ ।

ବୃକ୍ଷ କାରଣ ଅଟଇ ବୀଜ,
ବୀଜ କାରଣ ବୃକ୍ଷକୁ ହେଜ,
ଉଭୟ ମଧ୍ୟରେ କାର୍ଯ୍ୟ କାରଣରେ
ଜାତ ସମ୍ବନ୍ଧ ଅଟେ ସହଜ
ଏ ସଂସାରେ । ୪୩ ।

ଜାତ ବୃକ୍ଷ ବୀଜବିକୃତିରେ,
ଜାତ ବୀଜ ସ୍ୱଭାବକ୍ରିୟାରେ,
ସେ କାର୍ଯ୍ୟ କାରଣ କ୍ରିୟା ନିବନ୍ଧନ,
ସର୍ବ କାର୍ଯ୍ୟ ଜଗତ ସଂସାରେ
ଏ ଜଗତେ । ୪୪ ।

ଜୀବକର୍ତ୍ତାର ନୁହେ ଉଦ୍ଦେଶ୍ୟ,
ଭୁଞ୍ଜୁ ଜୀବଗଣ ନାନାକ୍ଳେଶ,
ସ୍ୱକାର୍ଯ୍ୟ କାରଣେ ଦେଖୁଁ ଜୀବଗଣେ
ଭୁଞ୍ଜୁଛନ୍ତି ଯନ୍ତ୍ରଣା ଅଶେଷ
ଏ ସଂସାରେ । ୪୫ ।

ପୃଥ୍ୱୀ ଅଛି ଯାହା ଜଗତରେ,
ରୂପ ରସ ଗନ୍ଧ ମନୋହରେ,
ଇନ୍ଦ୍ରିୟ ସଂଯୋଗ କରେ ଉପଭୋଗ
ସୂକ୍ଷ୍ମ ପରମାଣୁର ମାତରେ
ସେ ଦ୍ରବ୍ୟର । ୪୬ ।

ସର୍ବ ସଂସ୍କାର ଜ୍ଞାନର ମୂଳ,
ଭ୍ରମ ଜ୍ଞାନ ଅବିଦ୍ୟାସଙ୍କୁଳ,
ରୂପ ରସ ସତ୍ୟ ନୁହେ ଜାଣ ତତ୍ତ୍ୱ,
ଚିତ୍ତ ବିକାର ମାତ୍ର ଆକୁଳେ
ସେ ପଦାର୍ଥ । ୪୭ ।

ଏକ ଦେଖଇ ଯାହା ସୁନ୍ଦର,
ଆନ ମଣେ ତାହା ଅସୁନ୍ଦର,
ଅସତ୍ୟକୁ ସତ୍ୟ ମଣେ ଲୋକ ନିତ୍ୟ
ଭ୍ରାନ୍ତ ବିଶ୍ୱାସ ଏହା ଲୋକର
ଏ ଜଗତେ । ୪୮ ।

ମିଥ୍ୟା ଜ୍ଞାନରେ କେ କରେ ଦର୍ପ,
ଭ୍ରମେ ରଜ୍ଜୁକୁ କେ ମଣେ ସର୍ପ,
ଦୁଃଖକୁ ବା ସୁଖ ମଣେ କେହି ଲୋକ
ଏହିପରି କରି ଜ୍ଞାନ ଲୋପ
କେ ମାନବ । ୪୯ ।

ମୂଢ଼େ ହୋଇ ଇନ୍ଦ୍ରିୟବିଳାସୀ,
ଆତ୍ମକଣ୍ଠରେ ଲଗାନ୍ତି ଫାଶି,
ନ ବୁଝନ୍ତି ବାରେ ତୁଚ୍ଛ କୁହିୟାରେ
ଭୁଞ୍ଜେ କଷ୍ଟ ଜୀବ ଅବିନାଶୀ
ଏ ସଂସାରେ । ୫୦ ।

ଆୟୁ ପଦ୍ମପତ୍ର ବାରି ସମ,
ଜୀବ ଅନନ୍ତ ଅଟେ ଅସୀମ,
ଅନନ୍ତ ଯେ ସୁଖ ତହିଁରୁ ବିମୁଖ
ହୋଇ ସୁଖ ଲୋଡ଼େ କ୍ଷୁଦ୍ରତମ
ଏ ସଂସାରେ । ୫୧ ।

ଜୀବ କମାନାଗାରେ ଆବଦ୍ଧ,
ତତ୍ତ୍ୱମାର୍ଗ ଦର୍ଶନରେ ଅନ୍ଧ,
ଇନ୍ଦ୍ରିୟ ବିଳାସ ହୁଏ ଯେବେ ନାଶ,
ମୁକ୍ତି ବିଷୟ ସଙ୍ଗେ ସମ୍ବନ୍ଧ
ଏ ଜୀବର । ୫୨ ।

ଅବିଦ୍ୟାରୁ ଜାତ ଭ୍ରମ ଜ୍ଞାନ,
ଅହଂକାରରେ ହରାଇ ଜ୍ଞାନ,
ଇନ୍ଦ୍ରିୟ ଓ ମନ ମୋହେ ହତଜ୍ଞାନ
ହୋଇ ଅର୍ଜନ୍ତି ଅଧର୍ମମାନ
ଯେ ଅଜ୍ଞାନେ । ୫୩ ।

ମୋହ ଛେଦନ କରେ ଯେ ଲୋକ,
ରହେ ନାହିଁ ପାପର ସମ୍ପର୍କ,
ଜଗତ ଅନିତ୍ୟ ଜାଣି ଜ୍ଞାନବନ୍ତ
ଜରା ମରଣ ମୁକ୍ତ ସେ ଲୋକ
ଏ ସଂସାରେ । ୫୪ ।

ଶାକ୍ୟସିଂହଙ୍କ ହୃଦୟେ ଜ୍ଞାନ
ଜାତ, ଯେପରି ମୁକ୍ତି ନିର୍ବାଣ
ଲଭିବେ ମାନବେ ଏହି ବିଶ୍ୱଭବେ,
ଯୋଗ ଏତେକାଳ ସମାଧାନ
ସେ ଯୋଗୀର । ୫୫ ।

ଛଅବର୍ଷ ତପସ୍ୟାର ଫଳ,
ଲଭ କଲେକ ଜ୍ଞାନ ନିର୍ମଳ,
ଏହି ଜ୍ଞାନ ଲୋଡ଼ି ରାଜ୍ୟ ସୁଖ ଛାଡ଼ି
ଥିଲେ, ମାନସ ହେଲା ସଫଳ
ସେ ଯୋଗୀର । ୫୬ ।

ଅଲୌକିକ ଚିନ୍ତାର ଅତୀତ
ତପସ୍ୟାରେ ଘୋର ଦୀର୍ଘକାଳ ଗତ,
ତେଜି ସୁଖଚୟ କଲେ ଦେହକ୍ଷୟ,
କଳ୍ପତରୁ ହେଲା କୁସୁମିତ
ସେ ଯୋଗୀର । ୫୭ ।

ଅନାହାର ଅନାବୃତଦେହୀ,
ଶୀତ ଗ୍ରୀଷ୍ମ ବର୍ଷା କଷ୍ଟ ସହି,
କଠୋର ସାଧନା କରି ମହାମନା
ଜ୍ଞାନ ଲଭିଲେକ ବନେ ରହି
ସେ ସନ୍ନ୍ୟାସୀ । ୫୮ ।

ହୃଦେ ଚଞ୍ଚଳତା ଆଉ ନାହିଁ,
ଆଶା ତୃଷ୍ଣା ଅନୁରାଗ କାହିଁ,
ଅବିଦ୍ୟାର ଭାବ ହୃଦୟୁ ଅଭାବ
ଏତେ ତପସ୍ୟା ତ ସେଥିପାଇଁ
ସେ ଯୋଗୀର । ୫୯ ।

ଜ୍ଞାନାଲୋକରେ ହୃଦ ବିମଳ,
ହେଲା ସୁଶୀତଳ ସମୁଜ୍ଜ୍ୱଳ,
କେତେ ଜନ୍ମାନ୍ତରେ ତପସ୍ୟା କଠୋରେ
କଲେ ତତ୍ତ୍ୱଜ୍ଞାନ ସମ୍ବଳ
ସେ ସନ୍ନ୍ୟାସୀ । ୬୦ ।

ନିର୍ବାଣର ପୂର୍ଣ୍ଣ ବୃଦ୍ଧି ଜାତ,
ବୁଦ୍ଧ ଅବତାରରୂପେ ଖ୍ୟାତ,
ସେ ଅଶ୍ୱତ୍ଥ ବୋଧି- ଦ୍ରୁମତଳେ ସିଦ୍ଧି
ତତ୍ତ୍ୱଜ୍ଞାନକୁ କଲେ ଆୟତ୍ତ
ସେ ସନ୍ନ୍ୟାସୀ । ୬୧ ।

ମହାକାଳସ୍ରୋତେ କ୍ରମଶରେ
ଯେ ପବିତ୍ର ନାମ ଜଗତରେ
ମହାଭବିଷ୍ୟତେ ଅସୀମ ଅନନ୍ତେ
ପୂଜା କରିବେ ସେ ନାରୀନରେ
ସେ ନାମକୁ । ୬୨ ।

ପୁଣ୍ୟ ପବିତ୍ରନାମ ଜଗତେ
ନର ନାରୀଙ୍କ ଶ୍ରବଣପଥ
ମହାସମୀରଣ କରିବ ବହନ,
ମୁକ୍ତ ଲଭିବେ ପ୍ରାଣୀ ସମସ୍ତ
ଏ ଜଗତେ । ୬୩ ।

ନାମ ପ୍ଳାବି ବିଶ୍ୱ ଚରାଚରେ
ଶୂନ୍ୟ ଭେଦି ମିଳିଲା ସ୍ୱର୍ଗରେ,
ମିଳି ଦେବଗଣ କୁସୁମ ବର୍ଷଣ
କଲେ ସର୍ବେ ଆନନ୍ଦ ମନରେ
ସେ କାଳରେ । ୬୪ ।

ବୁଦ୍ଧ ପ୍ରାଣ ପୂର୍ଣ୍ଣ ପୁଲକରେ,
ଶୀର୍ଣ୍ଣଦେହ ବୃଦ୍ଧି ପଲକରେ,
ମାନସ ସଫଳ ହୃଦୟ ନିର୍ମଳ
ନେତ୍ର ଉନ୍ମୀଳିତ ଆନନ୍ଦରେ
ସେ ଯୋଗୀର । ୬୫ ।

ପୂର୍ବପରି ଅଷ୍ଟମ୍ଭ ଆସନେ,
ଯୋଗୀ ଗୃହିଁଲେ ଧୀରନୟନେ,
ନବ ଧର୍ମାଲୋକେ ଜଗତ ପୁଲକେ,
ଆନନ୍ଦିତ ଯେହ୍ନେ ଜୀବଗଣେ
ସେ କାଳରେ । ୬୬ ।

ନିତ ପ୍ରଭାତେ ଧୀର ପବନ
ବହେ, ଯୋଗୀ ତେଜିଲେ ଆସନ
ନିର୍ବାଣର ସୁଖେ ଜଗତର ଲୋକେ
ଯେହ୍ନେ ଛନ୍ତି ଆନନ୍ଦେ ମଗନ
ସେ କାଳରେ । ୬୭ ।

ଇତି ଶ୍ରୀ ବୌଦ୍ଧାବତାର କାବ୍ୟେ ସିଦ୍ଧି
ନାମ ପଞ୍ଚଦଶ ସର୍ଗ ।

---

## ଷୋଡ଼ଶ ସର୍ଗ

( ପ୍ରତ୍ୟୁର )

ନୈରଞ୍ଜନା ତଟସ୍ଥିତ ବୋଧିଦ୍ରୁମ ମୂଳେ
ନିମଜ୍ଜିତ ଧ୍ୟାନେ ଯୋଗୀ ସପ୍ତ ଦିବା ନିଶି ।
ଜ୍ଞାନଚନ୍ଦ୍ରୋଦୟେ ପୟୋନିଧି ଉଚ୍ଛ୍ୱସିତ,
ଅନନ୍ତ, ଅସୀମ, ନିର୍ବାଣର ମହୋଲ୍ଲାସେ
ପ୍ଲାବିତ ହୃଦୟ, ଶାନ୍ତ, ସ୍ଥିର, ସୁଶୀତଳ ।
ଭାସିଲା ମହର୍ଷି ନେତ୍ରେ ପ୍ରଫୁଲ୍ଲ ଜଗତ,
ଜରା, ବ୍ୟାଧି, ମୃତ୍ୟୁ, କଷ୍ଟ, ଅବସାନପଥ ।
ନିର୍ବାଣ-ସଙ୍ଗୀତ ଧ୍ୱନି ବ୍ୟାପି ଜଗତରେ
ମହାଶୂନ୍ୟ ଭେଦି ପ୍ରତିଧ୍ୱନିତ ସ୍ୱର୍ଗରେ ।

ସେ ମହାସଙ୍ଗୀତ ଶୁଣି ଆସି ଦେବଗଣ,
ବୋଧିଦ୍ରୁମ ମୂଳେ ବୁଦ୍ଧେ ବେଷ୍ଟିଲେ ଭକ୍ତରେ;
ପ୍ରଣତ ସକଳେ—କଲେ ଜୟ ଜୟ ଧ୍ୱନି !
ଆକାଶୁ କୁସୁମ ବୃଷ୍ଟି ହେଲା ଘନ ଘନ !
ଆନନ୍ଦ-ଉତ୍ଫୁଲ୍ଲ ଗ୍ରହ ଉପଗ୍ରହଗଣ,
ନିର୍ବାଣର ସମାଚାର ମହାପବନରେ
ପ୍ରବାହିତ ଜଗତର ପ୍ରତି ପ୍ରାଣୀ ପାଶେ ।

ଧ୍ୟାନେ ମଗ୍ନ ବୁଦ୍ଧଦେବ, ସପ୍ତ ଦିବାନିଶି
ଅଜ୍ଞାତେ ଅର୍ଜିତ ମହାଜ୍ଞାନ ଲଭି ଅନ୍ତେ
ଉନ୍ମୀଳିତ ନେତ୍ରେ ରହିଁ ଦେଖିଲେ ଜଗତ,
ଜରା ବ୍ୟାଧି ମୁକ୍ତ ହେବା ନିର୍ବାଣର ପଥ ।
ଅବଭୃତ ସ୍ନାନ ଅନ୍ତେ ମହାଯୋଗୀବର
ବୋଧିଦ୍ରୁମମୂଳେ ଏକବିଂଶତି ଦିବସ
ନିର୍ବାଣ ଆନନ୍ଦେ ମଗ୍ନ ଭ୍ରମିଲେ ସୁଖରେ ।

ଏକଧ୍ୟାନେ ରହିଁ ପୁଣ୍ୟତମ ତରୁବରେ—
ସଫଳ ଜୀବନ-ତୃଷ୍ଣା ଯେ ପବିତ୍ରବନେ,
ସେ ପବିତ୍ର ସ୍ଥାନେ ତେଜି ଯିବେ ଅନ୍ୟ ସ୍ଥାନେ ?
ନ ଟଳେ ଶରୀର ମନ ଗତ ଦିବାନିଶି,
ଚତୁର୍ଥ ସପ୍ତାହ ଅନ୍ତେ ଭ୍ରମିଲେ କାନନେ ।

ପ୍ରତି ବୃକ୍ଷ ସୁଶୀତଳ ଛାୟା ଆଶ୍ରୟରେ,
ନୈରଞ୍ଜନା ତଟେ ତଟେ, ତାରାୟନବନେ
ପଞ୍ଚାଶତ ଦିବାନିଶି କଲେକ ଯାପନ ।
କ୍ଷୁଧା ତୃଷ୍ଣା ବିବର୍ଜିତ, ନିର୍ବାଣ ସୁଧାରେ
ଚିତ୍ତ ପରିପୂର୍ଣ୍ଣ, ନାହିଁ ଅନ୍ୟ ଚିନ୍ତା ମନେ ।
ପବିତ୍ର ହୃଦୟ ଶାନ୍ତ ସ୍ଥିର ଅବିଚଳ ।

ଦେଖିଲେ ମହର୍ଷି ଦିନେ ଉରୁବିଲ୍ୱଗ୍ରାମେ—
ଉତ୍କଳ ଦେଶନିବାସୀ ବଣିକଯୁଗଳ
'ଏପୁରେ' 'ଭେଲ୍ଲିକ' ନାମ ଦୁଇ ସହୋଦର,
ପଣ୍ୟଦ୍ରବ୍ୟ ପରିପୂର୍ଣ୍ଣ ଶକଟ ମାର୍ଗରେ
କର୍ଦ୍ଦମେ ପ୍ରୋତ୍ଥିତ ଚକ୍ର, ବୃଥା ପ୍ରାଣପଣେ
କଲେ ଯତ୍ନ ଭ୍ରାତା ବେନି ନ ଉଠିଲା ଚକ୍ର ।
ଲୋଡ଼ନ୍ତେ ସହାୟ ବେନି ତାରାୟନ ତଳେ
ଦେଖିଲେ ପ୍ରଶାନ୍ତ ମୂର୍ତ୍ତି ଯୋଗୀ ଉପବିଷ୍ଟ ।
ବଣିକ ଯୁଗଳ ଭ୍ରାତା ଭକ୍ତି ବିନୟରେ
ଇକ୍ଷୁ ଆଦି ଦ୍ରବ୍ୟମାନ ଦେଲେ ଉପହାର ।
ମହାମୁନି ଶାକ୍ୟସିଂହ ଆନନ୍ଦ ମନରେ
ଉପହାର ଦ୍ରବ୍ୟ କଲେ କ୍ଷୁଧା ନିବାରଣ ।

ବଣିକ ଯୁଗଳଭ୍ରାତା ନମି ବୁଦ୍ଧ ପଦେ,
ଚଳିଲେ ଶକଟ ସହ ଦେଶେ ନିରାପଦେ ।
ଥୋକେ ଦିନ ଯାନ୍ତେ ଯୋଗୀ ଚିନ୍ତିଲେ ଚିତ୍ତରେ—
କଲେ ମୁଁ ନିର୍ଜନ ବନେ ଜୀବନ ଯାପନ,

ଲଭିଛି ଯେ ମହାରତ୍ନ ଯିବ ଅକାରଣ ।
ଦୁର୍ବୋଧ ଗମ୍ଭୀର ଧର୍ମ ଲଭିଛି କଷ୍ଟରେ,
ବୁଝିବ କେ—ଗ୍ରହଣ କେ କରିବ ଜଗତେ ?
ସ୍ମୃତି ଶ୍ରୁତି-ପନ୍ଥାଶ୍ରିତ ଏ ନିର୍ବାଣ ଧର୍ମ ।
ପବିତ୍ର ଭାରତ କ୍ଷେତ୍ର ଯାଗଯଜ୍ଞ ଧର୍ମେ
ପ୍ଲାବିତ; କେବଳ କାମ୍ୟଧର୍ମପ୍ରଣୋଦିତ ।
କେ ଶୁଣିବ ? କେ ବୁଝିବ ? ମାନବର ଚିତ୍ତ,
ସହସ୍ର ଦୂଷିତ ହେଉ ପ୍ରାଚୀନରେ ପ୍ରୀତ ।
ସହଜେ ନୂତନ ଧର୍ମ, ଶ୍ରୁତି ବିପରୀତ,
ଦୁରୂହ, କଠିନ—ଶୁଣି ଲୋକେ ହେବେ ଭୀତ ।

ସମସ୍ତ ଜଗତବାସୀ କାମନା ଧର୍ମରେ—
ସୁଖଭୋଗ, ସ୍ୱର୍ଗଲାଭ, ଯଶଃ, ଧନ, ମାନ
ଲଭିବା ଉଦ୍ଦେଶ୍ୟେ ଯାଗ ଯଜ୍ଞେ ରତ ସର୍ବେ ।
ସହଜେ କରିବ କେବା କାମନା ନିରୋଧ ?
ବୁଝିବେ ବା କେତେଜଣ ନିର୍ବାଣର ତତ୍ତ୍ୱ ?
ଆପାତ ନିଷ୍କାମ ଧର୍ମ କଠିନ ନିତାନ୍ତ ।

ମାତ୍ର ଏହା ବିନା ନାହିଁ ଉଦ୍ଧାରର ପଥ ।
ତୁଚ୍ଛ ଧନ ଲୋଭେ ଲୋକ କରେ ପ୍ରାଣପଣ,
କଷ୍ଟ ମଣେ କରିବାକୁ ମୁକ୍ତି ଅନ୍ୱେଷଣ ।
କରିବ ନିର୍ଜନେ ବାସ, ନିର୍ବାଣର ସୁଖେ,
ଅବଶିଷ୍ଟ ଜୀବନ ମୁଁ କରିବ ଯାପନ ।

କ୍ଷଣ ପରେ ମହାଯୋଗୀ ଦେଖିଲେ ଅନାଇ,
କରାଳ କାଳର ସ୍ରୋତ ଅନନ୍ତ ଅସୀମ—
ପ୍ରବାହିତ ପ୍ରବାଳରେ ଅନନ୍ତ ଅନନ୍ତ,
ଜୀବ ଭାସି ଉଭ ସଦା ଘୂର୍ଣ୍ଣିତ ନିୟତ,
ଜନ୍ମଜରାବ୍ୟାଧିଗ୍ରସ୍ତ ଭୁଞ୍ଜନ୍ତି ଯନ୍ତ୍ରଣା,
ଇନ୍ଦ୍ରିୟଲାଲସାନଳେ ଦଗ୍‌ଧୀଭୂତ ସଦା,
ଇନ୍ଦ୍ରିୟର ସୁଖ ଲୋଡ଼ି ଭୁଞ୍ଜନ୍ତି ଯନ୍ତ୍ରଣା ।
ତଥାପି ତହିଁରେ ମତ୍ତ ଏ କି ବିଡ଼ମ୍ବନା !
କାହିଁ ତୃଷ୍ଣା ଦୂର ପାନେ ଲବଣ ସଲିଳ ?
ଏହି ଘୋର ଆବର୍ତ୍ତନେ ପତିତ ମାନବ,
ନ ପାଇ ନିର୍ବାଣ ମାର୍ଗ କରେ ହାହାକାର !
ଆଗତ ଓ ଅନାଗତ ସଂଖ୍ୟାତୀତ ପ୍ରାଣୀ
କରୁଛନ୍ତି ହାହାକାର - କରିବେ ସତତ !
ଜନ୍ମ ମୃତ୍ୟୁ ଜରା ବ୍ୟାଧି ଯନ୍ତ୍ରଣାରେ ପଡ଼ି
ଅସଂଖ୍ୟ ଅସଂଖ୍ୟ ଜୀବ ଯାଉଛନ୍ତି ସଡ଼ି ।
କିପରି କରିବି ବାସ ନିର୍ଜନ କାନନେ ?
ଲଭିଛି କି ତତ୍ତ୍ୱଜ୍ଞାନ ଆପଣା କାରଣେ ?
ହେବି କି ମୁଁ ସ୍ୱାର୍ଥପର ? ଦେଖି ପ୍ରତ୍ୟକ୍ଷରେ
ଅସଂଖ୍ୟ ଅସଂଖ୍ୟ ପ୍ରାଣୀ ଯନ୍ତ୍ରଣା-ସାଗରେ
ଯାଉଛନ୍ତି ଭାସି—ପୁଣି ଯିବେ ଚିରକାଳ !
କିପରି ରହିବି ଏହା ଦେଖି ଉଦାସୀନ ?
ଲଭିଛି ବହୁଳ କଷ୍ଟେ ଯେ ନିର୍ବାଣତତ୍ତ୍ୱ,
କରିବି ମୁଁ ବିତରଣ ମାନବମଣ୍ଡଳେ
ଲଭନ୍ତୁ ପ୍ରାଣୀଏ ମୁକ୍ତି ଜଗତରେ ସାର,
ହେଉ ଶାନ୍ତ, ହେଉ ଦୂର କଷ୍ଟ ହାହାକାର !
ନବ ଧର୍ମ ଜଗତରେ କରିବି ପ୍ରଚାର,
ଜଗତନିବାସୀ ଜୀବେ ଲଭନ୍ତୁ ଉଦ୍ଧାର ।
ନାରୟୂଣ ତରୁତଳେ ବସିଲେ ମୁହୂର୍ତ୍ତେ;
ଭାବିଲେ ଚିତ୍ତରେ ପୁଣି, ଏହି ମହାଧର୍ମ
ପ୍ରଥମରେ କାହା ପାଶେ କରିବି ପ୍ରଚାର ?
ଏପରି ସୁଶୀଳ ଶ୍ରଦ୍ଧାବନ୍ତ ଧର୍ମପ୍ରାଣ,
ହୃଦୟେ ଅପକ୍ଷପାତୀ, ମୋକ୍ଷ ଅଭିଳାଷୀ,
ଅଛି କେବା ଶୁଣିବାକୁ ଏ ଧର୍ମକାହାଣୀ ?
ରାମ ପୁତ୍ର ରୁଦ୍ରକର କଥା ପ୍ରଥମରେ
ପଡ଼ିଲା ତାହାଙ୍କ ମନେ; କାହିଁ ରାମପୁତ୍ର ?
ବସିଲେ ଧ୍ୟାନରେ, ଜାଣିଲେ ସେ ଯୋଗବଳେ,
ସପ୍ତଦିନ ଗତ ରାମ ପୁତ୍ର କାଳଗତ ।
ଆରାଡ଼ କାଲାମ କଥା ପଡ଼ିଲା ମନରେ,
କାହାନ୍ତି ସେ ? ପୁଣି ଧ୍ୟାନେ ବସିଲେ ଯୋଗୀନ୍ଦ୍ର;
ଜାଣିଲେ ଯୋଗରେ ପୁଣି ତିନିଦିନ ପୂର୍ବେ
ତାହାଙ୍କର ମଧ୍ୟ ଜୀବଲୀଳା ହେଲା ଶେଷ ।
ନିରାଶେ ନିଃଶ୍ୱାସ ତେଜି ବସି ତଥାଗତ
ଭାବିଲେ ବପନ ବୀଜ କରିବାର କ୍ଷେତ୍ର,
କାହିଁ ଆଉ କ୍ଷେତ୍ର ? ବୃଥାପ୍ରାୟେ ସର୍ବଯତ୍ନ,
ସହସା ପଡ଼ିଲେ ମନମଧ୍ୟେ ଶିଷ୍ୟପଞ୍ଚ—
କାହାନ୍ତି ସମ୍ପ୍ରତି ? ଅବଗତ ଧ୍ୟାନବଳେ,
କାଶୀଧାମେ ମୃଗଦାୟେ ତାହାଙ୍କ ବସତି ।
କରିବେ ଦୀକ୍ଷିତ ଶିଷ୍ୟ ପଞ୍ଚେ ନବଧର୍ମେ—
ତେଜି ନୈରଞ୍ଜନାତଟ, ତେଜି ବୋଧିଦ୍ରୁମ,
ତେଜି ସେ ସାଧନା ସ୍ଥାନ ପବିତ୍ର କାନନ,
ଭବିଷ୍ୟତ ମାନବର ଗତିମୁକ୍ତିଦାତା
ଚଳିଲେ ଏକାକୀ ବାରାଣସୀ ଉଦ୍ଦେଶ୍ୟରେ ।
ଅତିକ୍ରମି ମାର୍ଗ କେତେ ପ୍ରଚଣ୍ଡ ତପନେ
ତପ୍ତ, ସ୍ୱେଦାପ୍ଲୁତ ଦେହେ ବିଶ୍ରାମ ସକାଶେ ।
ବସିଲେ ଶୀତଳ ଛାୟାଯୁକ୍ତ ତରୁତଳେ ।
ଆଜୀବକ ନାମେ ବିପ୍ର ବୟସେ ପ୍ରବୀଣ,
ଉପସ୍ଥିତ ଦୈବଯୋଗେ ସେହି ତରୁତଳେ ।
ଦେଖିଲେ ପ୍ରଶାନ୍ତମୂର୍ତ୍ତି ଅପୂର୍ବ ଲାବଣ୍ୟ,
ଦେବପ୍ରଭା ପ୍ରକାଶିତ ଯୁଗଳନୟନେ,
ଯୁବା ଏକ ଉପବିଷ୍ଟ, ବିସ୍ମୟେ ମନରେ
ଯାଇଁ ପାଶେ ଧୀରେ ଧୀରେ ବସିଲେ ନିକଟେ ।
ପୁଚ୍ଛା କଲେ,—"ଆୟୁଷ୍ମନ୍ ! ତୁଅ ଦୀର୍ଘଜୀବୀ !
ଦେଖୁଛି ସନ୍ନ୍ୟାସବ୍ରତ କରିଛ ଗ୍ରହଣ
ନବୀନବୟସେ—ବୋଲ ଗୁରୁ କେ ତୁମ୍ଭର ?

କେଉଁ ଧର୍ମେ କବା ଦୀକ୍ଷା କରିଛ ଗ୍ରହଣ ?"
ମେଘମନ୍ଦ୍ରକଣ୍ଠେ ବୁଦ୍ଧ କଲେକ ଉତ୍ତର --
"ନାହିଁ ଆର୍ଯ୍ୟ ! ଗୁରୁ ମୋର, ଏକାକୀ ନିର୍ଜନେ
ହୋଇଛୁ ସମୁଦ୍ଧ, ଆତ୍ମା କରିଛୁ ନିର୍ମଳ ।"
ପୁଚ୍ଛିଲେ ବ୍ରାହ୍ମଣ—"ତେବେ ତୁମ୍ଭେ କି ଆଚାର୍ଯ୍ୟ ?
"ଅହମେବ", ବିପ୍ରେ ଦେଲେ ଗୌତମ ଉତ୍ତର—
"କିନ ତେବେ ତୁମ୍ଭେ ?" କ୍ରୋଧେ ପୁଚ୍ଛିଲେ ବ୍ରାହ୍ମଣ ।
"ଜିନ ମୁହିଁ"– ଆତ୍ମବଳେ ଜିଣିଛୁ ଇନ୍ଦ୍ରିୟ ।
ବୃଦ୍ଧ ମୁଖୁଁ ଏ ଉତ୍ତର ଶୁଣି ଆଜୀବକ
ବିପ୍ର କ୍ରୋଧ ଅଗ୍ନିମୂର୍ତ୍ତି—ସହଜେ ବ୍ରାହ୍ମଣ,
ପଣ୍ଡିତାଭିମାନୀ, ଅହଙ୍କାରୀ, ତର୍କପ୍ରିୟ ।
ପୁଚ୍ଛିଲା ଘୃଣାରେ, "ତୁ ରେ ଯିବୁ ଏବେ କାହିଁ ?"
"ଯିବି ବାରାଣସୀ—ତତ୍ତ୍ୱଜ୍ଞାନ, ସତ୍ୟ ଧର୍ମ
ପ୍ରଚାର ନିମନ୍ତେ ! ଜ୍ଞାନହୀନ ଲୋକେ ଜ୍ଞାନ—
ବଧିରେ ଅମିୟ ବାଣୀ କରିବି ପ୍ରଦାନ ।
କରିବେ ଏମନ୍ତ ସତ୍ୟଧର୍ମ ପ୍ରବର୍ତ୍ତିତ,
ହେବ ତହିଁ ପାପଦଗ୍ଧ ହୃଦୟ ଦ୍ରବିତ ।"
ଅଗ୍ନିଚୂର୍ଣ୍ଣସ୍ତୂପେ ହେଲା ଅନଳ ସଂଯୋଗ—
ଶୁଣି ବାକ୍ୟ ଧୈର୍ଯ୍ୟଚ୍ୟୁତ, ଗର୍ଜିଲା କ୍ରୋଧରେ,
ବୋଇଲା ଗର୍ବିତ ବିପ୍ର—"କି ବୋଲୁ ରେ ମୂର୍ଖ !
ପାଷଣ୍ଡ ! ଅଜ୍ଞାନ ! ଦୁରାଚାର ! ନରାଧମ !
ଦେବଦେବ ମହାଦେବ ପ୍ରିୟ ନିକେତନ—
ଜଗତଜନନୀ ମହାମାୟା ଲୀଳାଭୂମି —
ସ୍ୱର୍ଗୀୟ ଦେବତାପୁଞ୍ଜ ବିଶ୍ରାମର ସ୍ଥାନ—
ପୃଥିବୀରେ ସ୍ୱର୍ଗଧାମ;—ମୁକ୍ତିକାମୀ ଲୋକେ
ଯାହା ରେଣୁ ପରଶରେ ହୁଅନ୍ତି କୃତାର୍ଥ,
ପ୍ରତ୍ୟେକ ବ୍ରାହ୍ମଣ ଯହିଁ ପ୍ରତ୍ୟକ୍ଷ ଦେବତା—
କାଶୀମାର୍ଗ ରେଣୁପୁଞ୍ଜ ପାପବିନାଶକ,
ସମସ୍ତ କଳୁଷ ଧ୍ୱଂସ ପଡ଼ିଲେ ଦେହରେ,
ଜଗତେ ଶିକ୍ଷାର ଗୁରୁ ଯେଉଁ ମହାତୀର୍ଥ,
ଶିକ୍ଷା ଦେବୁ ତହିଁ ଲୋକେ ? ନିର୍ବୋଧ ! ନିର୍ବୋଧ !
କି ଗର୍ବ ରେ ବନ୍ଧୁ ତୋର ? ବାରାଣସୀବାସୀ
ଜନେ ଶିଖାଇବୁ ଧର୍ମଜ୍ଞାନ ? ଧିକ ତୋତେ !"
ଦନ୍ତହୀନ ଲୋଳଚର୍ମ ବଦନ ବିସ୍ତାରି
ବୃଦ୍ଧ ବିପ୍ର ଅବଜ୍ଞାରେ ହସିଲା ଉଚ୍ଚରେ !
ଅସ୍ଥିଚର୍ମସାର ହସ୍ତ ବିସ୍ତାରି ଗୌତମେ
ବୋଇଲା ଦେଖାଇ ମାର୍ଗ—"ଯାଅ ଏହି ବାଟେ,
ମୋର ପନ୍ଥା ଅନ୍ୟ"; ଏତେ ବୋଲି ବୃଦ୍ଧ ବିପ୍ର
ଚଳିଲା ଉତ୍ତରେ । ବୁଦ୍ଧ ମଧ ଚଳିଲେ ସେ ପଥେ ।
ଅସହ୍ୟ ବ୍ରାହ୍ମଣ ପକ୍ଷେ ସଙ୍ଗେ ଗୃଲିବାର,
ବାହୁଡ଼ି ଦକ୍ଷିଣ ମୁଖେ ଚଳିଲା କ୍ରୋଧରେ ।
କ୍ରମେ ବୁଦ୍ଧଦେବ ଯାଇଁ ଭାଗୀରଥୀ ତଟେ
ଉପଗତ; ବୋଇଲେ ସେ ନାବିକେ ବିନୟେ
ପାରି ହେବାପାଇଁ । ଶୁଣି ବୁଦ୍ଧଦେବ ବାଣୀ
ବୋଇଲା ନାବିକ—"ଦିଅ ନଦୀପାରି ପଣ,
ହେବ ଯେବେ ପାରି ।" ଏହା ଶୁଣି ଶାକ୍ୟପତି
ବୋଇଲେ, "ନାବିକ ଆହେ ! ଦେଖୁଛ ସନ୍ନ୍ୟାସୀ,
ଭିକ୍ଷାଜୀବୀ, ପଣଅର୍ଥ ପାଇବି ବା କାହୁଁ ?
ଦେଖୁଛ ସମ୍ବଳ ମାତ୍ର ଭଗ୍ନ ଭାଣ୍ଡ କରେ ।"
ବୋଇଲା ନାବିକ ପୁଣ - "ଜୀବିକା ମୋହର—
ବିନା ପଣେ କି ପ୍ରକାରେ କରିବି ମୁଁ ପାର,
ବୃତ୍ତି ମୋର ପଣେ କରେ କୁଟୁମ୍ବ ପୋଷଣ ।"
ସେକାଳେ ବଳାକାଶ୍ରେଣୀ ଉଡ଼ି ଶୂନ୍ୟପଥେ
ଯିବା ଦେଖି ବୁଦ୍ଧଦେବ ବୋଇଲେ ନାବିକେ,
"ଦେଖ ଭଦ୍ର ! ଗଲେ ପକ୍ଷୀ ହୋଇ ନଦୀ ପାର—
ତୁମ୍ଭେ କି ତାହାଙ୍କଠାରୁ ନେଇଅଛ ପଣ ?"
ଏତେ ବୋଲି ଶାକ୍ୟସିଂହ ମହାଯୋଗବଳେ
ଶୂନ୍ୟମାର୍ଗେ ଅତିକ୍ରମି ଗଲେ ଭାଗୀରଥୀ ।
ଚକିତ ନାବିକ ଦେଖି ସନ୍ନ୍ୟାସୀ ମହିମା,
ଭକ୍ତିରେ ପ୍ରଣତ ତାଙ୍କ ପଦ ଉଦ୍ଦେଶ୍ୟରେ ।
ନିର୍ବୋଧ ନାବିକ ତୁମ୍ଭେ ନ ବୁଝିଲ ତତ୍ତ୍ୱ,
ଅସଂଖ୍ୟ ପ୍ରାଣୀକୁ ଯେବା ଭବସିନ୍ଧୁ ପାର
କରିବେ, ତୁମ୍ଭେ କି ନେବ ପଣ ତାଙ୍କଠାରୁ ?
ଅକ୍ଷୟ ଅମୂଲ୍ୟ ରତ୍ନ ଯାହାଙ୍କ ଭଣ୍ଡାରେ,

ଭୁଞ୍ଜି ପଣଅର୍ଥ ବିନା ନ ହେବେ କ ପାର ?
ଶୁଣିଲେ ସେ ସ୍ଥାନ ନୃପ ସର୍ବ ସମାଚାର,
ସେହିନୁ କଲେକ ଏହି ଆଦେଶ ପ୍ରଚାର,
ପଣବିନା ସାଧୁ ସନ୍ଥ ହେବେ ନଦୀ ପାର ।
କ୍ରମେ କେତେ ଦେଶ ଗ୍ରାମ ଗଲେ ଅତିକ୍ରମି,
ଅବଶେଷେ ଉପନୀତ ବାରାଣସୀ ଧାମେ ।
ଭାରତେ ବିଖ୍ୟାତ ତୀର୍ଥ ଶଙ୍କର ଆଳୟ—
ଅର୍ଦ୍ଧଚନ୍ଦ୍ରାକାରେ ଶୋଭେ ସେ ପବିତ୍ର ସ୍ଥାନ,
ପତିତପାବନୀ ଗଙ୍ଗା ପାଦେ ପ୍ରବାହିତା,
ଶଙ୍କର ମସ୍ତକେ କିବା ବକ୍ରଚନ୍ଦ୍ରତଳେ
ନୀଳକାନ୍ତମଣିବେଣୀ ବିମଳେ ବିଳସେ ।
ଅସଂଖ୍ୟ ସୋପାନଶ୍ରେଣୀ ଜଳରୁ ଉତ୍ଥିତ,
ଅସଂଖ୍ୟ ଅସଂଖ୍ୟ ହର୍ମ୍ୟପଦ କରେ ଧୌତ ।
ହର୍ମ୍ୟାବଳି ପ୍ରତିବିମ୍ବ ପ୍ରକାଶିତ ଜଳେ;
ଶ୍ରେଣୀବଦ୍ଧ କ୍ଷଣେ ସ୍ଥିର, କ୍ଷଣେ ବା ଚଞ୍ଚଳେ,
ପ୍ରକାଶିତ ବେନି କାଶୀ ଊର୍ଦ୍ଧ୍ୱେ ନିମ୍ନଦେଶେ ।
କେତେ ଶିବାଳୟ, କେତେ ବିଦ୍ୟାର ମନ୍ଦିର,
ଅସଂଖ୍ୟ ବିପଣୀଶ୍ରେଣୀ, କେତେ ରଙ୍ଗାଳୟ,
ଧନିକ ବଣିକ ଗୃହ, କେତେ କ୍ରୀଡ଼ାସ୍ଥାନ,
ସଂଖ୍ୟାତୀତ ଅଟ୍ଟାଳିକା ମଧ୍ୟେ ବିଦ୍ୟମାନ ।
ପଣ୍ଡିତ, ସନ୍ନ୍ୟାସୀ, ବିପ୍ର, ମୁକ୍ତିକାମୀ ଲୋକେ
ବହୁ ଦେଶୁ ସମାଗତ ସାୟାହ୍ନ ଜୀବନେ,
କ୍ରୟ ବିନୟରେ ଲିପ୍ତ, ବିଦ୍ୟା ଅଧ୍ୟୟନେ ।
ନିଯୁକ୍ତ ଅସଂଖ୍ୟ ଜ୍ଞାନୀ ଶାସ୍ତ୍ର ଆଲାପନେ ।
ସୋପାନେ, ସୈକତେ, ଜଳେ, ସ୍ଥଳେ, ରାଜପଥେ
ନିୟତ ଜନତା ପୂର୍ଣ୍ଣ ଲୋକ କୋଳାହଳ ।
ଆକଣ୍ଠ ନିମଗ୍ନ ଜଳେ ଲୋକ ସଂଖ୍ୟାତୀତ;
କେ କରେ ମହିମ୍ନସ୍ତବ; କେ ବା ସ୍ତୁତିପାଠ,
ଶଙ୍କର ସହସ୍ର ନାମ, ଜହ୍ନୁକନ୍ୟାସ୍ତବ
ପଢ଼ନ୍ତି, ଅସଂଖ୍ୟ ଲୋକ ବସି ଗଙ୍ଗାକୂଳେ
ମୃତ୍ତିକାଶଙ୍କର ପୂଜା କରେ ଏକ ମନେ ।
ମନ୍ଥରବାହିନୀ ଗଙ୍ଗା କାଳସ୍ରୋତ ସମ,
ଅବିଶ୍ରାନ୍ତ ଗତି କାଳ ଅନନ୍ତ ସାଗରେ ।
ସିଦ୍ଧାର୍ଥ ସିଦ୍ଧାନ୍ତ କଲେ, କରିବେ ପ୍ରଚାର
ନବ ଧର୍ମ ମହାନାଦ ଦୁନ୍ଦୁଭିନିର୍ଘୋଷେ ।
ଦିବା ଅବସାନେ ଶାକ୍ୟପତି ମୃଗଦାୟେ
ଉପନୀତ, ଭେଟିଲେ ସେ ଶିଷ୍ୟ ପଞ୍ଚଜନେ ।
ଦୂରୁ ଦେଖି ଶିଷ୍ୟଗଣେ ବିଚାରିଲେ ମନେ,
ଆସିଛି ସିଦ୍ଧାର୍ଥ କରି ତପସ୍ୟା ବିଫଳ ।
ମାତ୍ର ଦେଖି କାନ୍ତି ତାଙ୍କ ମହିମାମଣ୍ଡିତ,
ସ୍ୱର୍ଗୀୟ ପ୍ରତିଭା ନେତ୍ରେ, ଶାନ୍ତ ସ୍ଥିରମୂର୍ତ୍ତି,
ବୋଇଲେ ବିନୟେ କରି ଚରଣ ବନ୍ଦନ,
"ଗୁରୁଦେବ ! ଗୁରୁଦେବ ! କର ପଦାର୍ପଣ ।"
କ୍ରମେ ଦିବା ଅବସାନ, ସମାଗତା ସନ୍ଧ୍ୟା,
ପବିତ୍ର ଗୋଧୂଳି ଅଙ୍ଗେ କରି ବିଲେପନ;
ଯୋଗିନୀ ସମାନା ଉପନୀତା କାଶୀଧାମେ ।
ବାଜିଲା ମଙ୍ଗଳ ଶଙ୍ଖ, ମଙ୍ଗଳ ଆଳତି
ପ୍ରତି ଦେବାଳୟେ—ଧର୍ମପ୍ରାଣ ଭକ୍ତବୃନ୍ଦ
ତେଜି ସାଂସାରିକ କର୍ମ ସମବେତ ସର୍ବେ
ଗଳଲଗ୍ନ ଯୋଡ଼କରେ ଦେବତାମନ୍ଦିରେ ।
ଢାଙ୍କିଲେ ପ୍ରକୃତିଦେବୀ ଶ୍ୟାମ ଆଚ୍ଛାଦନେ
ଦିବାକ୍ଲାନ୍ତ ପ୍ରାଣିଗଣେ ବିଶ୍ରାମ କାରଣେ ।
ଏକ, ଦୁଇ, ତିନି, ଚାରି, କ୍ରମେ ଶତଶତ
ଫୁଟିଲେ ଅସଂଖ୍ୟ ତାରା ସୁନୀଳ ଆକାଶେ ।
ତ୍ରିଦିବ ଅଙ୍ଗନାକୁଳ ଉଜ୍ଜ୍ୱଳ ନୟନେ
ଚାହାଁଛନ୍ତି କ୍ଲାନ୍ତ ସୁପ୍ତ ପୃଥ୍ୱୀ ପ୍ରାଣିଗଣେ,
ଅଥବା ସ୍ୱର୍ଗୀୟ ନୀଳ ଅନନ୍ତ ସାଗରେ
ପ୍ରସ୍ଫୁଟିତ ସଂଖ୍ୟାତୀତ କୁମୁଦ କହ୍ଲାର ।
ନୀରବ ନଗରବାସୀ । ଗୌତମ ଆଶ୍ରମେ
ବସି ଯୋଗାସନେ, ବେଢ଼ି ଶିଷ୍ୟ ପଞ୍ଚଜନେ,
ଜଳଦ ମେଦୁର ସ୍ୱନେ ଅଥଚ ସ୍ନେହରେ
ବୋଇଲେ, "ହେ ଧର୍ମପ୍ରାଣ ପ୍ରିୟ ଶିଷ୍ୟଗଣ !
ନ କର ବିତର୍କ, ମୋତେ ନ କର ପରୀକ୍ଷା,
ବୋଲ ମୋତେ ଫେଡ଼ି ସର୍ବ, ପ୍ରାଣର ଆକାଙ୍‌କ୍ଷା

କିବା ତୁମ୍ଭମାନଙ୍କର ? ଲୋଡ଼ କି ମଙ୍ଗଳ ?
ଅବା ସୁଖେ ଅଭିଳାଷ ? ଦୁଃଖର ନିର୍ବାଣ ?
ନ କର ଯାପନ କାଳ । ହୋଇଛି ମୁଁ ବୁଦ୍ଧ—
ନିର୍ବାଣର ମହାବୃଦ୍ଧି ହୋଇଛି ପ୍ରାପତ ।
ଆସ ପ୍ରିୟ ଚରଗଣ ! କରିବ ପ୍ରଦାନ ।
ଲଭିଛି ଯେ ଜ୍ଞାନାମୃତ ବହୁ ତପସ୍ୟାରେ,
ଶ୍ରଦ୍ଧାପୂର୍ବ ଦୀକ୍ଷା ସର୍ବେ କରନ୍ତୁ ଗ୍ରହଣ,
ହେବ ବୁଦ୍ଧ ସର୍ବେ, ଦୂର ଜନ୍ମ, ଜରା, ମୃତ୍ୟୁ
ତୁମ୍ଭମାନଙ୍କର—ବ୍ରହ୍ମଚର୍ଯ୍ୟ ହେବ ପୂର୍ଣ୍ଣ ।”
ଶିଷ୍ୟ ପଞ୍ଚ କର ଯୋଡ଼ି ବସି ପାଦତଳେ
ଶୁଣିଲେ ସେ ଧର୍ମଚକ୍ର,ହେଲେକ ଦୀକ୍ଷିତ,
ସେ ମହାପର୍ବ ନିଶି ସୁଖେ ଗଲା ପାହି ।
ଅସଂଖ୍ୟ ଅସଂଖ୍ୟ ନର ନାରୀ ତଦବଧି
ଆନନ୍ଦରେ ଉପନୀତ ମହାଧର୍ମଚକ୍ରେ,
ମଧୁଚକ୍ରେ ସମବେତ ମଧୁପ ସମାନେ ।
ପଣ୍ଡିତ, ନିର୍ଦ୍ଧନ, ମୂର୍ଖ, ଗୃହୀ, ଯୋଗୀ—
ଶୁଣି ପ୍ରାଣଶାନ୍ତିକର ଧର୍ମ ଉପଦେଶ ।
ବ୍ୟାପିଲା ସୁଯଶ ନବଧର୍ମ ପୃଥିବୀରେ,
ଅରୁଣ ଉଦୟେ ବ୍ୟାପ୍ତ ଆଲୋକ ଅଚିରେ
ପ୍ରାବୃଟ ଅନ୍ତେ ଶିଷ୍ୟମଣ୍ଡଳୀ ସହିତ
ବାରାଣସୀ ତେଜି ପୁଣ ମିଳିଲେ ମଗଧେ ।
ଦିନେକରେ ଗନ୍ଧହସ୍ତୀ ପର୍ବତେ ଗୟାରେ
ଉପବିଷ୍ଟ ବୁଦ୍ଧଦେବ । ପଣ୍ଡିତ କାଶ୍ୟପ
ସୁବିଖ୍ୟାତ ଅଗ୍ନିହୋତ୍ରୀ ବସିଛନ୍ତି ପାଶେ ।
ଜଳିଲା ସମୀପ ବନେ ଘୋର ଦାବାନଳ,
ସେ ଘୋର ଅନଳ ଦେଖି ବୋଇଲେ ଗୌତମ
କାଶ୍ୟପେ—“କାଶ୍ୟପ ! ଦେଖ ବେଗେ ଦାବାନଳ
ପବନ ସହାୟେ କି ଖାଣ୍ଡବରୂପେ ଦୀପ୍ତ ।
ନର, ନାରୀ ଥିଲେ ମୋହେ ଅବିଦ୍ୟା ଅଧୀନେ,
କାମନଳେ ସେମାନଙ୍କ ଚିତ୍ତ ଦଗ୍ଧୀଭୂତ ।
ଜଗତରେ ରୂପ, ରସ, ଗନ୍ଧ ଅନୁଭବ
କରେ ଯେତେ, ବୃଦ୍ଧି ପାଏ ସୁଖର କାମନା,
ସଙ୍ଗେ ସଙ୍ଗେ ଘନୀଭୂତ ହୁଏ ଦୁଃଖରାଶି ।
ଜନ୍ମ, ମୃତ୍ୟୁ ଚକ୍ରେ ହେଉଥାଏ ଆବର୍ତ୍ତିତ ।
ଆମ୍ଭ ଧର୍ମ ଉପଦେଶ ଇନ୍ଦ୍ରିୟସଂଯମ,
ଶାନ୍ତିବାରି ସିକ୍ତ ପ୍ରାଣ ଶୀତଳ ହୃଦୟ
ଇନ୍ଧନ ବିହନେ ଅଗ୍ନି ହୁଏ ନିର୍ବାପିତ ।
ବିଷୟ-ଇନ୍ଧନ ବିନା କାମନା ଅନଳ
ନିର୍ବାପିତ ସହଜରେ ମାନବହୃଦୟେ ।
ଲୋଡ଼ ଶାନ୍ତି ? ଲୋଡ଼ ମୁକ୍ତି ? ବିଷୟ ଆସକ୍ତି
ତେଜ ଚିନ୍ତ ତତ୍ତ୍ୱମାର୍ଗ ଜୀବର ମଙ୍ଗଳ ।
କାଶ୍ୟପ ! ନିଶ୍ଚୟ ଧ୍ରୁବ ! ସତ୍ୟ ! ସତ୍ୟ ! ସତ୍ୟ !
କାମନା ନିର୍ବାଣେ ହୁଏ କଷ୍ଟର ନିର୍ବାଣ ।”
ନବଧର୍ମଚକ୍ରେ ହେଲେ କାଶ୍ୟପ ଦୀକ୍ଷିତ ।
ତେଜି ଗୟା ବୁଦ୍ଧଦେବ ଶିଷ୍ୟଗଣ ସହ
ମଗଧ ଦେଶର ରାଜଧାନୀ ରାଜଗୃହେ
ଉପନୀତ ହେଲେ ଯାଇ ସାୟାହ୍ନ କାଳରେ ।
ଯଷ୍ଟିବନେ ଉପନୀତ, ବେଷ୍ଟିତ ଶିଷ୍ୟରେ ।
ମଗଧ ସମ୍ରାଟ ବିମ୍ବିସାର ଛନ୍ତି ପାଶେ ।
ପୁଚ୍ଛିଲେ ସେ ବିମ୍ବିସାର ଅନାଇ କାଶ୍ୟପେ—
“ତେଜିଲ ବୈଦିକ ଧର୍ମ ବୋଲ କି କାରଣେ ?”
ବୋଇଲେ କାଶ୍ୟପ—“ପ୍ରଭୋ । ସ୍ୱର୍ଗ, ଅପବର୍ଗ
କାମନା ଇନ୍ଦ୍ରିୟସୁଖ ଯେ ଧର୍ମର ହେତୁ,
କିପରି ସେ ଧର୍ମେ ହେବ କାମନା ନିର୍ବାଣ ?
କାମନା ମାର୍ଗରେ ଶାନ୍ତି ଲଭିବା ଦୁର୍ଲ୍ଲଭ ।”
ଶୁଣି ଧର୍ମତତ୍ତ୍ୱ ମହାରାଜ ବିମ୍ବିସର
ଆଗ୍ରହରେ ହେଲେ ନବଧର୍ମରେ ଦୀକ୍ଷିତ
ସାରିପୁତ୍ର ମୌଦ୍‌ଗଲ୍ୟାନ ବ୍ରାହ୍ମଣ ଯୁବକ
ମହାଧର୍ମଚକ୍ରେ ହେଲେ ଦୀକ୍ଷିତ ତକ୍ଷଣେ,
ଆପଣେ ସମ୍ରାଟ ପୁଣ ବିପ୍ର ଶ୍ରେଷ୍ଠତମ
ହେବାରୁ ଦୀକ୍ଷିତ, ଧର୍ମ ବ୍ୟାପ୍ତ ମଗଧରେ ।

ଇତି ଶ୍ରୀ ବୌଦ୍ଧାବତାରକାବ୍ୟେ ପ୍ରଚ୍ଛର
ନାମ ଷୋଡ଼ଶ ସର୍ଗ ।

---

# ସପ୍ତଦଶ ସର୍ଗ

( ସଂସାର ଶ୍ମଶାନ )

ଗୌତମ ମଗଧ ଦେଶରେ, ଶିଷ୍ୟମାନଙ୍କ ସହିତରେ ।
ବସି ଅଛନ୍ତି ବେଣୁ ବନେ, ଗ୍ରୀଷ୍ମରେ ଅଶ୍ୱତ୍ଥ ଯେସନେ ।
ପିତୃପ୍ରେରିତ ଦୂତ ଜଣେ, ଆସିଣ ନମିଲା ଚରଣେ ।
ସେ ଦୂତ ବାଲ୍ୟ ସହଚର; କପିଳବସ୍ତୁ ଦେଶେ ଘର ।
ବୋଇଲା ଆସି ଯୋଡ଼ି ହାତ, "ହେ ମହାପ୍ରଭୁ ! ତୁମ୍ଭ ତାତ
ପେଷିଲେ ଦୂତଦେଶେଦେଶେ, ପ୍ରଭୁଙ୍କୁ ନେଉଡ଼ିବା ଉଦ୍ଦେଶ୍ୟେ
ସକଳ ଗଲା ଅକାରଣେ, ବାହୁଡ଼ି ନ ଆଇଲେ ଜଣେ ।
ସେ ଲୋକଗଣେ ନିର୍ଜନରେ, ଆଗେ ଗଲେ ପ୍ରବ୍ରଜ୍ୟାରେ ।
ଶୈଶବ ବନ୍ଧୁ ଏହି ଦାସ, ଭାଗ୍ୟେ ଭେଟିଲା ଆସି ପାଶ ।
ହୃଦୟ ପାଷାଣରେ ବାନ୍ଧି, ଆସିଛି ଧାଇଁ କାନ୍ଦି କାନ୍ଦି ।
ବାଜୁଛି ତୁମ୍ଭ ଧର୍ମ ଭେରୀ, ଦେଶେ ଦେଶାନ୍ତେ କର୍ଣ୍ଣ ଡେରି ।
ଅଛନ୍ତି ଲୋକ ଶୁଣିବାକୁ, ଏଥକୁ ଆଇଲି ଏଠାକୁ ।
କପିଳବସ୍ତୁବାସିଗଣେ, କି ଦୋଷ କଲେ ବା ଚରଣେ ?
ପ୍ରଭୁଙ୍କ ନବ-ଧର୍ମ ସୁଧା, ପାନେ କି ନ ମେଣ୍ଟିବେ କ୍ଷୁଧା ?
ସକଳ ଦେଶବାସୀ ଲୋକ, ଲଭିଲେ ସେ ଧର୍ମ ଆଲୋକ;
ଶାକ୍ୟ ରାଜ୍ୟ କି ଅନ୍ଧକାରେ, ରହିବ ? କୃପା କର ବାରେ ।
ଚାଲନ୍ତୁ ପ୍ରଭୋ ! ଶାକ୍ୟ ରାଜ୍ୟେ, ଆତୁର ମାନବ-ସମାଜେ
ନୂତନ-ଧର୍ମ-ସୁଧାବିନ୍ଦୁ, ତିମିରେ ଉଦେ ହେଉ ଇନ୍ଦୁ ।
ପ୍ରଭୁଙ୍କ ଜନକ ଜନନୀ, ରାହୁଳ ପୁତ୍ର, ଗୋପା ପତ୍ନୀ,
ଅଛନ୍ତି ବ୍ୟାକୁଳ ମନରେ, କପିଳବସ୍ତୁ ନାମ ନରେ ।
ରାଜାଙ୍କ ଦେହାନ୍ତ ସମୀପ—ନିଭୁଛି ଜୀବନପ୍ରଦୀପ—
ଅନ୍ତିମ କାଳରେ ରାଜନ, ଦେଖିବେ ପ୍ରଭୁଙ୍କ ବଦନ ।
ପ୍ରଭୁଙ୍କ ଧର୍ମାମୃତପାନ କରିଣ ଲଭିବେ ନିର୍ବାଣ ।
ହେ ପ୍ରଭୁ ! କରୁଣାର ସିନ୍ଧୁ, ଆତୁର ତହୁଁ ଏକବନ୍ଧୁ,
ଜନକ ଜନନୀ ଆକୁଳେ, କାଞ୍ଚନପ୍ରତିମା ରାହୁଳେ ।"

* * * *

ଶିଶିର ଅଗତ ବସନ୍ତ, ଅମଳ ମାଳମା ହସନ୍ତ,
ଶିଶିର ଭୟେ ସଙ୍କୁଚିତା—ପ୍ରକୃତି ସମ୍ପ୍ରତି ସଜ୍ଜିତା ।
ପ୍ରକୃତିଦେବୀ ସହଚରୀ, ସଜ୍ଜିତା ଧରଣୀ ସୁନ୍ଦରୀ ।
ପର୍ବତେ, ପ୍ରାନ୍ତରେ, କାନନେ; ସରିତେ, ସାଗରେ, ଗଗନେ;
ସଜଳ, ସ୍ଥଳେ ଶୋଭାରାଶି, ଅଜସ୍ର ଧାରେ ଯାଏ ଭାସି ।
ବୃକ୍ଷ ବଲ୍ଲରୀ କିଶଳୟେ, ମଣ୍ଡିତ କମଳା ଆଳୟେ ।
ମଧୁର ଅନିଳ ମଳୟ, ଧରା ପ୍ଲାବିତ ସୁଧାମୟ;
ସେ ସୁଧା ପରଶେ କୁସୁମେ, ମଣ୍ଡିତ ସର୍ବଲତା ଦ୍ରୁମେ ।
ପୁଲକେ ଚନ୍ଦ୍ର ତାରାଗଣେ, ଭାସନ୍ତି ଗଗନ ପ୍ରାଙ୍ଗଣେ ।
ପ୍ରକୃତି ଶିଶିର ଭୟରେ, ଗୁପତେ ଜଳ ଅଭ୍ୟନ୍ତରେ
କମଳ, କୁମୁଦ, କହ୍ଲାରେ; ଲୁଚାଇଥିଲେ ପେଟିକାରେ ।
ଉତ୍ତମ ଦ୍ରବ୍ୟ ଲୋକମାନେ, ଯତ୍ନେ ରଖନ୍ତି ସାବଧାନେ ।
ବସନ୍ତ ଆଗମନ ଶୁଣି, ଜଳ ଉପରେ ଦେଲେ ବୁଣି ।
ସମ୍ପତ୍ତି ସାଧୁ ଲୋକ ହସ୍ତେ, ଗଚ୍ଛିତ କରନ୍ତି ସମସ୍ତେ ।
କୋକିଳା ବସନ୍ତର ଦୂତୀ, ଦେଖି କମଳବନଦ୍ୟୁତି ।
ସଙ୍ଗୀତ ଲହରୀ ବିସ୍ତାର, କଲା ବସନ୍ତ ସମାଚାର ।
ବସନ୍ତେ ପୁଲକିତ ଜନେ, ସାଧକ ଦେବ ଦରଶନେ ।
ବସନ୍ତ ପବନ ସହିତ, ନିର୍ବାଣ ଅଶ୍ୱେ ସଞ୍ଚାରିତ ।
ଶିଷ୍ୟମାନଙ୍କ ସହିତରେ, ଗୌତମ କପିଳ ନଗରେ ।
ପ୍ରସ୍ତୁତ ହେଲେ ଯିବାପାଇଁ; ଅଛନ୍ତି ଲୋକେ ଚଳେ ଧାଇଁ ।
ବହୁତ ଦେଶ ଜନପଦ, ଆତୁର ନିର୍ବାଣ ସମ୍ପଦ,
ମିଳିଲେ କପିଳ ନଗରେ; ନଗର ପ୍ରାନ୍ତସ୍ଥ ବନରେ ।
ରହିଲେ ଶିଷ୍ୟଙ୍କ ସହିତ; ସମ୍ବାଦ ହେଲା ପ୍ରଚାରିତ ।

ନୀରବ ଆନତ ବଦନେ, ଭୂଷିତ ଗୈରିକ ବସନେ,
ଭିକ୍ଷାପାତ୍ରେକ ଅଛି କରେ, ଅନଳ ଆବୃତ ଭସ୍ମରେ ।
ଜଟା କଲାପ ଶିରେ ଶୋଭେ, ଶରୀର ସ୍ୱର୍ଗୀୟ
ଗୌରବେ
ବିକାଶେ ଦୈବ ଜ୍ୟୋତିଜାଳେ, ତପନ ମେଘ
ଅନ୍ତରାଳେ ।'
ଯେ ଯୁବରାଜ ସ୍ୱର୍ଣ୍ଣ ଯାନେ, ରାଜନ୍ୟ—ରଚିତ ବିମାନେ,
ରତ୍ନ ମୁକୁଟ ଥିଲା ଶିରେ, ଭୂଷଣ କାଞ୍ଚନ ରୁଚିରେ
ଆହା ! ସେ ଭିଖାରି ବେଶରେ, ବସି ଅଛନ୍ତି
ଅରଣ୍ୟରେ,
ଧୂଳି ଲୁଣ୍ଠିତ ସ୍ୱର୍ଣ୍ଣଗାତ୍ର, ହସ୍ତେ ବିରାଜେ ଭିକ୍ଷାପାତ୍ର,
ନଗରବାସୀ ନାରୀ ନରେ, ବେଢ଼ିଲେ ଆକୁଳ ମନରେ,
ସକଳେ ମ୍ରିୟମାଣ ଶୋକେ, କେ ଦେବ ଭିକ୍ଷା ସେ
ଭିକ୍ଷୁକେ ?
କପିଳବସ୍ତୁ ହାହାକାର, ପୂରିଲା କ୍ରନ୍ଦନ ଚିତ୍କାର ।
ନୃପତି ବ୍ୟାକୁଳ ହୃଦୟ, ଦେଖିଲେ ଶୋକ ଅଭିନୟ,
ଉଭା ଅଛନ୍ତି ସିଂହଦ୍ୱାରେ, ଚରଣ ନ ଚଳଇ ବାରେ,
ହୃଦୟେ ନାହିଁଟି ସ୍ପନ୍ଦନ, ପଲକବିହୀନ ନୟନ ।
ନୟନୁ ଅଶ୍ରୁଧାର ବହେ, ଶୋକ ସନ୍ତାପେ ହୃଦ ଦହେ ।
ସିଦ୍ଧାର୍ଥ ଧୀରେ ଅତି ଧୀରେ, ମିଳିଲେ ଜନକ କଣ୍ଠରେ
ରାଜାଙ୍କ ହଜିଗଲା ବୁଦ୍ଧି, ବାଷ୍ପଗଦ୍‌ଗଦେ କଣ୍ଠ ରୁଦ୍ଧି,
ସମ୍ଭାଳି ହୋଇ ଆପଣାକୁ, ବୋଇଲେ ଯାଇ ପୁତ୍ରଠାକୁ—
"ସିଦ୍ଧାର୍ଥ !—ସନ୍ନ୍ୟାସି !—ଗୌତମ !—
ତୋ ପିତା ଏଡ଼େ କି ଅଧମ !
ଗୋଟିଏ ସନ୍ନ୍ୟାସିକୁ ଅନ୍ନ, ଦେବାକୁ ଏଡ଼େ ଅଭାଜନ ?
କର୍ପାଇ ଭିକ୍ଷା ଦ୍ୱାରେ ଦ୍ୱାରେ, ମାଗୁଛୁ ସିଦ୍ଧାର୍ଥ !
ବାପାରେ !
ବିନୟେ ବୋଇଲେ ଗୌତମ—
"ଏ ବଂଶ ଭିକ୍ଷାବୃତ୍ତି ଧର୍ମ,
ପାଳିବା ବଂଶଧର୍ମ ରୀତି, ଏହାହିଁ ସନାତନ ନୀତି ।"
ବୋଇଲେ ଶୋକେ ନରନାଥ—
"କି କଥା ବୋଇଲୁ ସିଦ୍ଧାର୍ଥ ?
ମହାଗୌରବ ସୂର୍ଯ୍ୟବଂଶେ, ଜନ୍ମିଛୁ ସେହି ରାଜଅଂଶେ,
ଏ ବଂଶେ ବୋଲି କେ ରାଜନ, କରିଛି ଭିକ୍ଷା
ଆଚରଣ ?"
ସିଦ୍ଧାର୍ଥ ସୁସ୍ଥିର ହୃଦୟେ, ବୋଇଲେ ଜନକେ ବିନୟେ,
"ହେ ପିତଃ ! ପୂର୍ବେ ଶାକ୍ୟବଂଶେ, ଜନ୍ମିଲେ ଥୋକେ
ବୁଦ୍ଧ ଅଂଶେ ।
ସେମାନେ ଭିକ୍ଷାବ୍ୟବସାୟୀ, ଥିଲେ ସେ ମାତ୍ର
ଅନୁଯାୟୀ ।
ଦୁର୍ଲ୍ଲଭ ପୈତୃକ ସମ୍ପତ୍ତି, ଲଭିଛି ଆହେ ନରପତି !
ଅପାର ସାଧନା ବଳରେ, ସେ ଧନ ଲଭିଛି ମୁଁ କରେ ।
କପିଳବସ୍ତୁ ଜନଗଣ, କରନ୍ତୁ ସେ ଧନ ଗ୍ରହଣ ।"
ରାଜା ଆଗ୍ରହେ ଅତିମାତ୍ର, ସିଦ୍ଧାର୍ଥ ହସ୍ତୁ ଭିକ୍ଷାପାତ୍ର ।
ଧରି ପବିତ୍ର ନିଜ କରେ, ସଧୀରେ ଚଳିଲେ ନଅରେ ।
ଏ ଚିତ୍ର ଦେଖି ପ୍ରଜାବର୍ଗ, କାନ୍ଦିଲେ ବିକଳରେ ଅତି ।
ସଧୀରେ ପୁନପାଶେ ଯାଇ, ପଡ଼ିଲେ ଚେତନା ହରାଇ ।
ଉଠ ମା ! ଉଠ ମା ! ସିଦ୍ଧାର୍ଥ, ବୋଇଲେ, ଆକୁଳେ
ନିତାନ୍ତ ।
ଜନନୀ ମୁଖକୁ ଅନାଇ, ବସି ଅଛନ୍ତି ପାଶେ ଯାଇ,
ସ୍ୱପ୍ନ ସମାନ ଗଲା ଜଣା, ଜନନୀ ଲଭିଲେ ଚେତନା ।
ବୋଇଲେ—"କେ ମା ମା ଶବ୍ଦରେ, ଢାଳିଲା ସୁଧା
ମୋ କର୍ଣ୍ଣରେ ?
ହେ ନୃପ ! ବୋଲନ୍ତୁ ଯଥାର୍ଥ, ଏହି କି ମୋ ପ୍ରାଣ ସିଦ୍ଧାର୍ଥ ।
ସିଦ୍ଧାର୍ଥ ପରି ଯାଏ ଜଣା, ଅଥବା ଦେବତା ଛଳନା ?
ଆଜକୁ ସାତ ବର୍ଷ ଗତ, ଯାଇଛି ଗୁଢ଼ ତଥାଗତ,
ବରଷେ ଯୁଗକ ସମାନ, ପରି ମୁଁ କରେଁ ଅନୁମାନ,
ହୃଦୟେ ସାତବର୍ଷ ଜାଣ, ଜ୍ୱଳୁଛି ଅଗ୍ନି ଅନିର୍ବାଣ,
ଦେଖି ମୋ କଷଣ ନିତାନ୍ତ, ଆସିଛୁ କରିବାକୁ ଶାନ୍ତ ?
କେଉଁ ଦେବତା ଛଳ କରି, ଆସିଛ ପୁତ୍ର ରୂପ ଧରି ?
ଏହି ତ ମୋ ପୁତ୍ର ବଦନ, ଏହି ତ ସିଦ୍ଧାର୍ଥ ନୟନ,
ସିଦ୍ଧାର୍ଥପରି ବୋଲି କଥା, ବୋଲନ୍ତୁ ତୁମ୍ଭେ କେ ଦେବତା
ଦେହରେ ଅଛୁ ବୋଲି ଧୂଳି, ତୁହି କି ମୋ ନେତ୍ର-
ପିତୁଳି ?

ନ ସହୁ ତୁଚ୍ଛ ପ୍ରାଣୀ-ଦୁଃଖ, ମୋ ପ୍ରତି ହେଲୁ ରେ
ବିମୁଖ ।
ମୋ କଥା ଥିଲାକି ମନରେ ? ଆସରେ ବାପ ଦେଖେଁ
ଥରେ ।
ବସରେ ପାଶେ ବାପଧନ, ଶୀତଳ ହେଉ ମୋ ଜୀବନ ।
ଗୋପା ରେ ! ଗୋପା ରେ ! ମା-ଆ-ଆ !
ବିଚର ଶବ ଦେଖି ଯାଆ ।
ମୋ ବଧୂ ଯୌବନେ ଯୋଗିନୀ, କାନ୍ଦେ କୁରରୀ
ବିରହିଣୀ ।
ପୁତ୍ର ମୋ ବନେ ଅନାହାରେ, ଭୂମିଶଯ୍ୟାରେ
ତପସ୍ୟାରେ ।
ବସିଛି ବଧୂ ପତି ଧନେ, ବାହୁଦେ ଗୃହକୀ ସମାନେ ।
ହେ ପ୍ରାଣନାଥ ମହାରାଜ ! ଆଜ ଗୃହରେ କିବା କାର୍ଯ୍ୟ ?
ଏ ରାଜପୁରୀ କର ଧ୍ୱଂସ । ଫୋପାଡ଼ି ଦେଉନ୍ତୁ ସର୍ବସ୍ୱ ।
କି କାର୍ଯ୍ୟ ପ୍ରମୋଦ-ଉଦ୍ୟାନେ ?
ଯିବୁଁ କାନନେ ଆମ୍ଭେମାନେ ।
ହେ ନୃପ ଶୁଣ ନିବେଦନ, ରହୁ ଗୃହରେ ମୋ ନନ୍ଦନ ।
ଫୋପାଡ଼ି ଦିଅ ଭିକ୍ଷାପାତ୍ର, ଗୃହରେ ରହୁ ମୋ ସିଦ୍ଧାର୍ଥ ।
ପୁତ୍ରର ଏହି ବେଶ ଅଜ, ଦେଖିବି ନାହିଁ ପ୍ରାଣ ଥାଉଁ ।"
ସିଦ୍ଧାର୍ଥ ବସିଛନ୍ତି ସ୍ଥିରେ, ପାଷାଣ ପ୍ରତିମା ପରିରେ ।
ବୋଇଲେ ରାଜା ଶୁଦ୍ଧୋଦନ—
"ଗୋ ଦେବି । କାନ୍ଦ ଅକାରଣେ ।
ଦେଖ ଏ ତୁମ୍ଭର ନନ୍ଦନ, ପ୍ରତ୍ୟକ୍ଷେ ନର-ନାରାୟଣ,
ତୁଳାରେ ଗେରୁଆ ବସନ – ସାମାନ୍ୟ ରାଜ-ଆଭରଣ ।
ଏ ଜଟା କିରୀଟର ପର, ରାଜମୁକୁଟ ନୁହେ ସର ।
ଏ ଭିକ୍ଷାପାତ୍ର ସମାନରେ, ଅଛି କି କୋଷ ଜଗତରେ ?
ସଞ୍ଚିତ ଅମୂଲ୍ୟ ରତନ, ପାଳିବ ଅସଂଖ୍ୟ ଜୀବନ ।
ଯେ ରାଜ୍ୟ ପାଇଛି କୁମର, ଅସୀମ ସ୍ଥିର ଅନଶ୍ୱର ।
ଏ ମହାରାଜ୍ୟର ମହିମା, ଅତୁଳ ଐଶ୍ୱର୍ଯ୍ୟ ଅସୀମା
ଅକ୍ଷୟ ଧନ ବିତରଣ, କରିବ ରକ୍ଷା ପ୍ରାଣିଗଣ ।

କରୁଣା କର ରେ ସିଦ୍ଧାର୍ଥ, ଦେ ତୋ' ମାତାକୁ
ଭିକ୍ଷାପାତ୍ର,
ଏ ବୃଦ୍ଧ ବୃଦ୍ଧା ପିତା ମାତା-ହୁଅ ରେ ବାପ ପରିତ୍ରାତା ।
ଉଭୟେ କାଟି ମାୟାପାଶ, କରିବୁଁ ଘୋରବନେ ବାସ ।
ପାଳିବା ବାନପ୍ରସ୍ଥ ଧର୍ମ, ଅନ୍ତିମେ ନରପତି କର୍ମ ।"
ବୋଇଲେ ବିନୟେ ସିଦ୍ଧାର୍ଥ—
"ହେ ପିତଃ ! ନିଅ ଭିକ୍ଷାପାତ୍ର,
ନ ଯାଅ ବନେ ରହ ଗେହେ, ତୁମ୍ଭର ଜରାଜୀର୍ଣ୍ଣ ଦେହେ
କଠୋର ସନ୍ନ୍ୟାସ ପାଳନ, ସମ୍ଭବ ନାହିଁ ଗଲେ ବନ ।
ଆଶ୍ରମ ରାଜସିଂହାସନ, ଉଭୟେ ହେଉନ୍ତୁ ଶ୍ରମଣ ।"
ସମସ୍ତ ଶିଷ୍ୟ ପୁରବାସୀ; ରାଜାନୁଚର, ଦାସ ଦାସୀ,
ବେଷ୍ଟିତ ବୃନ୍ଦେ ସେ ସମୟେ, ଜନକ ଜନନୀ ଉଭୟେ ।
କାହାନ୍ତି ଗୋପା ? ମାତ୍ର ଗୋପା,
ଲୁଣ୍ଠିତା ଛିନ୍ନା ଲତାରୂପା ।
ଶୟନ ଗୃହେ ପୁଣ୍ୟବତୀ, ଧ୍ୟାନେ ନିମଗ୍ନା ରହିଛନ୍ତି ।
ବୋଇଲା ଜଣେ ସହଚରୀ – "ଉଠନ୍ତୁ ରାଜରାଜେଶ୍ୱରି !
ବହୁତ ବରଷ ଉତ୍ତାରେ, ଅଇଲେ ପ୍ରଭୁ ଦେଶ ବାରେ ।
କରନ୍ତୁ ଚରଣ ଦର୍ଶନ, ସାର୍ଥକ ଆପଣା ଜୀବନ ।
ଅରୂପ ବରଣ ପୂଜିତ ସ୍ୱର୍ଗୀୟ ମହିମା ମଣ୍ଡିତ ।"
ବୋଇଲେ ଗୋପା, "ନାହିଁ ସଖି, ପ୍ରଭୁଙ୍କ ପଦେ ଚିତ୍ତ ରଖି,
କରିଛି ସୁଦୀର୍ଘ ତପସ୍ୟା, ଲଭିଛି ସକଳ ଭରସା,
ମୋହର ହୃଦୟ ଦେବତା ଆସି ବୋଲନ୍ତୁ ମୋତେ କଥା,
ବସି ମୁଁ ଏ ପୂଜା ଆସନେ, ଧ୍ୟାନ କରୁଛି ମନେ ମନେ
ନୁହେ ତ ସାତ ବର୍ଷ ସହି ! ସାତଶ ଯୁଗ ଗଲା ବହି ।
ସମାନେ ମୋତେ ଯାଏ ଜଣା, କରୁଛି ପ୍ରଭୁଙ୍କୁ ଭାବନା ।
ବସି ମୁଁ ଏ ପୂଜା ଆସନେ, ଓଲଗି ହେବି ସେ ଚରଣେ ।'
ଶିଷ୍ୟଯୁଗଳ ସହିତରେ, ସିଦ୍ଧାର୍ଥ ଗୋପାଙ୍କ ପାଶରେ
ମିଳିଲେ ପୃଥ୍ୱୀ ତାରା ପାଶେ; ପୂର୍ଣ୍ଣିମା ଚନ୍ଦ୍ରମା ପ୍ରକାଶେ
ସେ ଦେବରୂପ ଗୋପା ଦେଖି, କ୍ଷଣେକ ରହିଲେ ନିରେଖି
ସଭକ୍ତି, ଧୀରେ, ଅତି ଧୀରେ; ପ୍ରଭୁଙ୍କ ପଦେ ଲଗ୍ନ ଶିରେ
ବେନି ଚରଣେ ବେନି ହାତ, ସାଷ୍ଟାଙ୍ଗେ କଲେ ପ୍ରଣିପାତ

ଦେଖିଲେ ବୁଦ୍ଧ, ପୂର୍ବ ଗୋପା,
ନୁହେ—ଏ ମୂର୍ତ୍ତି ଅନ୍ୟରୂପା ।
ଦେହରେ ଗୈରିକ ବସନ, ମସ୍ତକେ ଜଟା ବିଭୂଷଣ,
ଯୋଗିନୀ ବେଶେ ଛନ୍ତି ବସି, ପ୍ରତ୍ୟୁଷେ ଯଥା ମ୍ଳାନ ଶଶୀ ।
ସୁନ୍ଦର ବିଳାସଭବନ, ସନ୍ନ୍ୟାସକ୍ଷେତ୍ର ତପୋବନ,
ନୀରବ ବୁଦ୍ଧଦେବ ସ୍ଥିର; ନିସ୍ପନ୍ଦ, ନିଶ୍ଚଳ ଶରୀର ।
ଶିଷ୍ୟଯୁଗଳ ନିସ୍ପନ୍ଦରେ, ଉଭୟ କି ପ୍ରତିମା ରୂପରେ ।
ଶ୍ରୀପଦେ ଗୋପା ଛନ୍ତି ପଡ଼ି, ପାଦପ ମୂଳେ ପୁଷ୍ପ ଝଡ଼ି ।
ଅଷ୍ଟମ ବର୍ଷୀୟ ରାହୁଳ, ସ୍ଥିର ଚକିତ ମନାକୁଳ ।
ଦେଖିଲେ ଗୋପା, ସେ ସନ୍ନ୍ୟାସୀ,
ଯେମନ୍ତ ଅନ୍ତଃପୁରେ ଆସି ।
କଲେକ ହୃଦୟେ ପ୍ରବେଶ, ନିଶାନ୍ଧକାରେ କୁମ୍ଭଦେଶ ।
ତିମିର ଆଚ୍ଛନ୍ନ ମନ୍ଦିରେ, ତପନ ପ୍ରବେଶିଲେ ଧୀରେ ।
ଯେ ଚିତ୍ର ହୃଦୟେ ଅଙ୍କିତ, ମୂର୍ତ୍ତି ସ୍ୱରୂପେ ଅଧିଷ୍ଠିତ ।
ହୃଦୟ-ପଦ୍ମାସନେ ମୂର୍ତ୍ତି, ସ୍ଥାପିତ ମନେ କଲେ ସ୍ତୁତି ।
ଭାଳଲେ ଗୋପା ପୁଣି ମନେ, ଏ ମୂର୍ତ୍ତି ଛୁଇଁବି କେସନେ ।
ଏ ମୂର୍ତ୍ତି ନର ନାରାୟଣ, କେମନ୍ତେ ବନ୍ଦିବି ଚରଣ ?
ଏ ଦେବ ଜଗତର ପତି, ତୁଚ୍ଛ ଅବଳା ହୀନମତି,
ମୋ ସ୍ୱାମୀ ବୋଲିବି କେସନେ,
ଅବା ମୋ କର ପରଶନେ ।
ପ୍ରଭୁଙ୍କ ଚରଣ ଦୂଷିତ; ହେଲା କି ? ଭାଳିଣ ଶଙ୍କିତ ।
ରାହୁଳ ସୁନାର ପ୍ରତିମା, ନ ବୁଝେ ପ୍ରଭୁଙ୍କ ମହିମା,
କମଳ କୋରକ ବଦନେ, ଗୃହିଁଛି ଚକିତ ନୟନେ ।
କ୍ଷୁଦ୍ର ଦେହଟି ମାତା ପାଶେ, କାଞ୍ଚନେ ହୀରକ ବିକାଶେ ।
ପତିତା ବୃକ୍ଷମୂଳେ ଲତା, ସଦ୍ୟ ପ୍ରସ୍ଫୁଟ ପୁଷ୍ପ ଯଥା ।
ଗୋପା ପୁତ୍ରକୁ ଧରି ଅଙ୍କେ ଚୁମ୍ବନ କଲେକ ମସ୍ତକେ ।
ନିଜ ଗୈରିକ ବସ୍ତ୍ର ଚିରି, ପୁତ୍ର ମସ୍ତକେ ଧୀରି ଧୀରି ।
ମଣ୍ଡାଇ ଦେଲେ ଚୂଡ଼ା ଏକ; ଦିଶାଇ ଦେଲେକ ଅର୍ଦ୍ଧେକ !
ଦେଖିଲେ ସେ କ୍ଷୁଦ୍ର ସନ୍ନ୍ୟାସୀ,
କୈଳାସୁ ଶଙ୍କର ଆସି—
ଧରି ସେ ପୁତ୍ରକୁ ଗଦ୍‌ଗଦେ, ଶୁଆଇ ଦେଲେ ପିତୃ ପଦେ ।

ବୋଇଲେ ପୁତ୍ରେ—"ରେ ନନ୍ଦନ,
ମାଗି ନେ ତୋ ପୈତୃକ ଧନ ।"
ପୁଛିଲା ଆକୁଳେ କୁମର, "ମାତା ଗୋ ! କିଏ ମୋ ପିଅର ?
ମୋର ଜନକ ଥିଲେ କାହିଁ ?
ତାଙ୍କୁ ତ କେବେ ଦେଖି ନାହିଁ ।"
ବୋଇଲେ ଗୋପା, "ରେ କୁମର !
ଏହି ସନ୍ନ୍ୟାସୀ ତୋ ପିଅର ।
ଭକ୍ତିରେ ଚରଣ ବନ୍ଦନ, କର ଏହାଙ୍କୁ ଦରଶନ ।
ଅନନ୍ତ ଅମୃତ ସମ୍ପତ୍ତି, ତୋ ପିତା ପାଶେ ରଖିଛନ୍ତି ।
ଜଗତବାସୀ ଲୋକଗଣ, ଲଭୁଅଛନ୍ତି ସେହି ଧନ ।
ଅବଶ୍ୟ ଆମ୍ଭେ ବେନଜନ, ଲଭିବୁଁ ସେ ଅକ୍ଷୟ ଧନ ।"
କରୁଣା ମୂର୍ତ୍ତି ଗୋପା ଦେବୀ, ବସିଲେ ସ୍ୱାମିପଦ ସେବି ।
ରାହୁଳ ବସିଛନ୍ତି କୋଳେ, ପିତୃବଦନ ଗୃହିଁ ଡୋଳେ ।
ବୋଇଲା କରଣ କ୍ରନ୍ଦନ, ଦେଉନ୍ତୁ ବାବା, ପିତୃଧନ ।
ହସ୍ତ ବୁଲାଇ ପୁତ୍ରଶିରେ, ଗୌତମ ବୋଇଲେ ସଧୀରେ ।
"ପାଳିବ ଧର୍ମରେ ନନ୍ଦନ, ଦେବି ସପତ ଗୋଟି ଧନ ।"
ସାରିପୁତ୍ର ଯେ ଆଜ୍ଞାମାତ୍ର, ଗୋପା ବଢ଼ାଇଲେ ଭିକ୍ଷାପାତ୍ର ।
ଦିଅନ୍ତେ, ସଜଳ ନୟନେ; ଗ୍ରହଣ କଲେ ବେନଜନେ ।
ପ୍ରଜାବତୀଙ୍କ ପୁତ୍ର ନନ୍ଦ, କାଲି ତାହାର ମହାନନ୍ଦ,
ଦିବସ ବିବାହ ତାଙ୍କର, ହୋଇଛି ସଜ ବେଶ ବର ।
ଦେଖି ସେ ଏ ସବୁ ସନ୍ଦେଶ, ଫୋପାଡ଼ି ଦେଲା ବରବେଶ ।
ଧାଇଁଣ ଉନ୍ମତ୍ତ ସମାନ, ଗୈରିକ ବସ୍ତ୍ର ପରିଧାନ ।
ଭିକ୍ଷାପାତ୍ରେକ ଧରି କରେ, ବୋଇଲା ଗୋପାଙ୍କ ପାଶରେ,
ଗୋ ଦେବି ! "ତୁମ୍ଭ ନନ୍ଦ ଭାଇ, କୃତାର୍ଥ ଭ୍ରାତୃଧନ ପାଇ
ହେଉ ତାହାକୁ ଅଧିକାରୀ, କରନ୍ତୁ ଧର୍ମରେ ଭିଖାରୀ ।
ଧୀରେ କୋମଳେ ବୁଦ୍ଧଦେବ,
ବୋଇଲେ, "ନନ୍ଦ ତାହିଁ ହେବ;
ମାତ୍ର ତୁ କର ଏହି ପଣ, ପିତା ଜନନୀ ବେନଜନ ।
ଯାବତ ଅଛନ୍ତି ଜୀବିତ, ଥିବୁ ତୁ ପାଶେ ଉପସ୍ଥିତ ।
ବୃଦ୍ଧ ଜନକ ବୃଦ୍ଧା ମାତା, ସେବିବୁ ପାଶେ ଥାଇ ଭ୍ରାତା ।
ସେବିବା ଜନକ ଚରଣ, ପୁତ୍ରର ଧର୍ମ ସନାତନ ।

ନିର୍ବାଣ ଧର୍ମରେ ଦୀକ୍ଷିତ, ହେବାର ଏ ଅନ୍ତେ ଉଚିତ ।”
ବୋଇଲେ ନନ୍ଦ, “ଦୟାମୟ, ନ ହୁଅ କଠିନ ହୃଦୟ ।
ଜୀବରେ ଦୟା ତବ ଧର୍ମ, ନନ୍ଦ ନିତାନ୍ତ କ୍ଷୁଦ୍ରତମ ।
ଆଜହୁଁ ତୁମ୍ଭେ ହିଁ ନନ୍ଦର, ସର୍ବସ୍ୱ, ଜନନୀ ପିଅର ।
ହେ ଦେବ ନର-ନାରାୟଣ, ପଶିଲି ଶ୍ରୀପଦେ ଶରଣ ।
ବହୁତ ଛନ୍ତି ଗୃହେ ଲୋକେ, ସେବିବେ ଜନନୀ ଜନକେ ।
ସର୍ବଦା ନନ୍ଦ ଥିବ ପାଶେ, ପ୍ରଭୁ ଚରଣ ସେବା ଆଶେ ।”

ଗୋପାକୁ ବୁଦ୍ଧି ଧର୍ମାଗୃଯ୍ୟ,
ବୋଇଲେ, “ଦେବ ! ତୁମ୍ଭକାର୍ଯ୍ୟ—
ଜନନୀ ଜନକ ପଦ୍ମରେ, ଖଟ ଭବିବ ନିରନ୍ତରେ ।
ତପସ୍ୟା ସ୍ଥାନ ତୁମ୍ଭ ଗୃହ, ହେବେ ଶ୍ରାମଣ ଲୋକବ୍ୟୂହ ।”
ଗୋପା ପ୍ରଭୁଙ୍କ ଆଦେଶରେ, ରହିଲେ ଆପଣା ଗୃହରେ ।
କେବଳ ବୋଇଲେ ରାହୁଲେ, ପ୍ରଶାନ୍ତଚିତ୍ତେ ଅନାକୁଳେ,
“ଯାଅ ରେ ବାପ ପ୍ରାଣାଧିକ, କି ଆଉ ବୋଲିବି ଅଧିକ ।
ଥିବୁ ପିତାଙ୍କ ପଶ୍ଚାତରେ, ପୁଣ୍ୟକୁ ସୂକ୍ଷ୍ମ ଅନୁସରେ ।
ତାହାଙ୍କ ଆଦେଶ ନେଲଙ୍ଘନ, କରିବୁ ନାହିଁ କଦାଚନ ।
ତୋ ପିତା ଦେବ ନାରାୟଣ, ଶିଶୁ ଦେବତା ତୁ ନନ୍ଦନ ।
ମୋ ନାରୀ ଜନମ ସଫଳ, ଲଭିଲି ତପସ୍ୟାର ଫଳ ।”
ଚଳିଲେ ବୁଦ୍ଧ ସ୍ଥାନାନ୍ତରେ, ନନ୍ଦ ରାହୁଲ ପଶ୍ଚାତରେ ।
ପୁଣ୍ୟ ପଶ୍ଚାତେ ଶାନ୍ତି, ସୁଖ;
ବ୍ୟାସ ପଶ୍ଚାତେ ଯେମନ୍ତ ଶୁକ ।
ନଗରବାସୀ ସେ ସମୟେ, ଉଦ୍‌ବେଳ ଉଚ୍ଛ୍ୱାସ ହୃଦୟେ
ବୁଦ୍ଧଙ୍କ ଚରଣ ପ୍ରାନ୍ତରେ, ନମିଲେ ଭକ୍ତି ବିନୟରେ ।
ଯୁବକ ବୃଦ୍ଧ ଶତ ଶତ, ନିର୍ବାଣ ଧର୍ମ ଅନୁଗତ ।
ଚଳିଲେ ବୁଦ୍ଧ ପଶ୍ଚାତରେ, ବେଳା ଲଙ୍ଘିତ ତରଙ୍ଗରେ ।
ଗୋପାଙ୍କ ଭବନ ସମସ୍ତ, ମହାତୀର୍ଥରେ ପରିଣତ ।
କପିଳବସ୍ତୁରେ ରୋଦନ, ଉଠିଲା ବାରିଦ ଗର୍ଜନ ।
ସକଳ ନେତ୍ରେ ବହେ ନୀର, କେବଳ ଗୋପା ଛନ୍ତି ସ୍ଥିର ।
କପିଳବନେ ତଥାଗତ, ବିଶ୍ରାମେ ଥୋକେ କାଳଗତ ।
ପିତାଙ୍କ ଚରଣ ଦର୍ଶନ କରୁ ସେ ଥାନ୍ତି ଅନୁକ୍ଷଣ ।
ପ୍ରତ୍ୟକ୍ଷ ଦେବତା ପିଅର, ଏହାହିଁ ଦୃଢ଼ତ୍ୟୟ ତାଙ୍କର ।
ଆସି ଅସଂଖ୍ୟ ନର ନାରୀ, ନିର୍ବାଣ ନବ ବ୍ରତଧାରୀ ।
ହେଲେ ଯେ ଦେଶବାସୀଜନ, ଆପଣେ ମଧ୍ୟ ଶୁଦ୍ଧୋଦନ ।
କୌଶାମ୍ବୀ ଦେଶେ ଅନ୍ତରେ, ଚଳିଲେ ବୁଦ୍ଧ ସଶିଷ୍ୟରେ
ସେ ସ୍ଥାନେ କଲେକ ଶ୍ରବଣ, ଅନ୍ତିମ-ଶଯ୍ୟା ଶୁଦ୍ଧୋଦନ
ଲଭିବା । ଅଇଲେ ବାହୁଡ଼ି, ଶାକ୍ୟରେ ଶେଷ ରବି ବୁଡ଼ି ।
ଯିବା ସମୟେ ସେ ନୟନେ, ଦେଖିଲେ ପୁତ୍ର ନାରାୟଣେ ।
ଶାନ୍ତିପୁଲକପୂର୍ଣ୍ଣ ଦେହେ, ନୟନୁଁ ଆନନ୍ଦାଶ୍ରୁ ବହେ ।
ଅନନ୍ତ ନିର୍ବାଣ ମାର୍ଗରେ, ଚଳିଲେ ନୃପ ସଜ୍ଞାନରେ ।
ପିତା ଅନ୍ତ୍ୟେଷ୍ଟିକ୍ରିୟାମାନ, କଲେକ ବୁଦ୍ଧ ସମାଧାନ ।
ଶାକ୍ୟବଂଶର ନାରୀଗଣେ, ମହର୍ଷି ଗୌତମ ଚରଣେ
ବୋଇଲେ କାନ୍ଦି, “ଦୟାମୟ ! ଦେଉନ୍ତୁ ଚରଣ ଆଶ୍ରୟ ।
ଅନାଥା ରମଣୀମଣ୍ଡଳେ, ସମ୍ପୂର୍ଣ୍ଣ ଶାକ୍ୟ ଗୃହସ୍ଥଳେ ।
କପିଳବସ୍ତୁ ଅନାଶ୍ରୟ, ହୋଇଛି ଲୋକଙ୍କ-ଆଳୟ ।
ବିଧବାନାରୀ ଧର୍ମ, ମାନ; ରକ୍ଷା କେ କରେ ବର୍ତ୍ତମାନ ?”
ଗୌତମ ଶୁଣି ଏ ପ୍ରସଙ୍ଗ, ସୃଜିଲେ ସନ୍ନ୍ୟାସିନୀସଙ୍ଘ ।
ଅପରେ ସନ୍ନ୍ୟାସିନୀ ପାର୍ଶ୍ୱୀ, ଗୋପା ସେଥିରେ
ଅଧିଷ୍ଠାତ୍ରୀ ।
ସନ୍ନ୍ୟାସୀ ସନ୍ନ୍ୟାସିନୀଗଣେ, ରକ୍ଷି ବିହାର ମହାବନେ
ନିର୍ଜନେ କୌଶାମ୍ବୀ ପର୍ବତ, ସମାଧିମଗ୍ନ ତଥାଗତ ।
କପିଳବସ୍ତୁ ସ୍ୱର୍ଗ ଅଂଶ, ହେଲା ଶ୍ମଶାନ ଶାକ୍ୟବଂଶ ।

ଇତି ଶ୍ରୀ ବୌଦ୍ଧାବତାରକାବ୍ୟେ ସଂସାରଶ୍ମଶାନ
ନାମ ସପ୍ତଦଶ ସର୍ଗ ।

---

## ଅଷ୍ଟାଦଶ ସର୍ଗ

(ମହାପ୍ରସ୍ଥାନ)

କୌଶାମ୍ବୀ ଦେଶରେ ମୁକୁଳ ପର୍ବତ,
ସ୍ୱଭାବ ସୁନ୍ଦର ଶିଖ ସମୁନ୍ନତ ।
ପ୍ରାବୃଟ ଆଗମେ— ମାଧବୀ, ମାଳତୀ,
ନବ କିଶଳୟେ ମଣ୍ଡିତ ବ୍ରତତୀ ।

ପ୍ରତ୍ୟେକ ପାଦପ ପୂର୍ଣ୍ଣ ନବପତ୍ର—
ନବୀନବେ ବୃଷ୍ଟି ଧରି ଆତପତ୍ର ।
ନିଦାଘେ ଦାବାଗ୍ନି ପର୍ବତ ଶରୀରେ
ଢାଙ୍କିଥିଲା ଭସ୍ମ, ଅଙ୍ଗାରରାଶିରେ ।
ସମ୍ପ୍ରତି ଜଳଦ ଦେଇ ଧୋଇଧାଇ,
କଣଳସ୍ଥ ବସ୍ତ୍ର ଦେଇଅଛି ପିନ୍ଧାଇ ।
ମଣ୍ଡାଇ ଦେଇଛି ନାନା ଆଭରଣ,
ବିବିଧ ବିବିଧ ସୁଗନ୍ଧ ସୁମନ ।
ପ୍ରସ୍ଫୁଟିତା ଶୋଭିତା ମାଳତୀ ମଲ୍ଲିକା,
ଘନାଭୂତା ଖଣ୍ଡ ତରଳ ଚନ୍ଦ୍ରିକା ।
ବହେ ନିର୍ଝରିଣୀ ଶିଖରପ୍ରସୃତା,
ଉଜ୍ଜ୍ୱଳ ଶୁକ୍ଳିମା ଖଣ୍ଡେ ରୂପାସୂତା ।
ଅଥବା ଧୂର୍ଜଟୀ ଜଟାରୁ ଜାହ୍ନବୀ
ପ୍ରବାହିତା ବେଗେ, ହୁଏ ଅନୁଭବ ।
କଳ କଳ ଶବ୍ଦେ ବହେ ନିର୍ଝରିଣୀ,
ସ୍ୱାମୀ ଗୃହେ କାନ୍ଦି ଯାଉଛି ନନ୍ଦିନୀ ।
କାହିଁ ବହେ ବାରି ଗୈରିକ-ଆବିଳ ।
ପାର୍ବତୀ ପଦରୁ ଅଲକ୍ତ ସଲିଳ ।
ନିଦାଘ ନିଃଶେଷେ ଲଭି ନୂଆ ପାଣି
ଆନନ୍ଦ ଉତ୍ସବେ ମତ୍ତ କେତେ ପ୍ରାଣୀ ।
କାହିଁ ପୁଲକରେ ଟେକି ପୁଚ୍ଛ ଟେକ
ଦେଖାଏ ସୌନ୍ଦର୍ଯ୍ୟ ମୟୂରୀକୁ କେକୀ ।
କମ୍ପାଇ ଡେଣାକୁ ନାଚି ନାଚି ଯାଏ,
ଉଚେ କେକାରବେ ପର୍ବତ କମ୍ପାଏ ।
ମୟୂରୀ ମୋହିତା ରୂପ କାନ୍ତି ଦେଖି,
ଚାଲେ ଚାଲେ ନାଚି ଯାଏ ପୁଚ୍ଛ ଟେକି ।
ବନେ ଦାବାନଳ ଯାଇଅଛି ନିଭି,
ଗିରି ସ୍ନାନୋଦକେ ଉର୍ବରା ପୃଥିବୀ ।
ଆନନ୍ଦେ ବିରହ— ବିରହୀ ପଲ୍ଲରେ
ପ୍ରେମେ ଉନମତ୍ତ ଗଡ଼େ କର୍ଦ୍ଦମରେ ।
ବୃକ୍ଷମୂଳେ ଉଭା ଭିଜି ମୃଗଗଣ,
ପଟ ପଟ ଶୁଭେ ଝାଡ଼ିବାରୁ କର୍ଣ୍ଣ ।

ନବ ମେଘାଲୋକେ ଗବେ କୁମ୍ଭାଟୁଆ,
ଝିଙ୍କାରି-ଝିନ୍‌ଝିଣୀ ଚଉବନୋଦୟା ।
ଭିନ୍ନେ ବାସ୍ପା ଡାଳେ ବସି ଥାଉଁ ବାସ,
ଘରେ ଢେର ଧନ କୃପଣ ଉପାସ ।
ନୀରବ କୋକିଳ ଦାତ୍ୟୂହଙ୍କ ମେଳ,
କେହି ଦୁଃଖେ ମଗ୍ନ କେହି କରେ କେଳି ।
ଅଳସେ ଗହ୍ୱରେ ଛନ୍ତି ବ୍ୟାଘ୍ରଗଣେ,
ଦୁର୍ଯ୍ୟୋଗରେ କେବା ଯାଏ ଉପାର୍ଜନେ ।
ବିଳେ ପାଣି ପଶି ଭାସିବାରୁ ସର୍ପେ,
ଆନନ୍ଦେ ଦର୍ଦ୍ଦୁର ଉଡ଼ୁଛନ୍ତି ଦର୍ପେ ।
ନକୁଳ ଭୁଜଙ୍ଗ ଉଭୟ ବିଳରେ
ଜଳ ଗହଳରେ ପଳାନ୍ତି ସଙ୍ଗରେ ।
ଉଦ୍‌ଦ୍ୱେଗେ ଧାବିତ ଆତ୍ମରକ୍ଷାପାଇଁ,
ହିଂସା କରିବାକୁ ଅବସର କାହିଁ ?
ଭିନ୍ନେ କଷ୍ଟେ କାକ, ହୁଙ୍କାରେ ଉଲ୍‌କ,
ବିପକ୍ଷ ବିପଦେ ପୁଲକିତ ଲୋକ ।
ଗିରି ପ୍ରତିଧ୍ୱନି— ବାରିଦ ଗର୍ଜ୍ଜନ,
ମହତେ ମହତେ ସିନା ସମ୍ଭାଷଣ ।
କାଦମ୍ବିନୀ କୋଳେ ଶୋଭେ ବକମାଳା,
କାମିନୀ କଟିରେ ରଜତ ମେଖଳା ।
ଭିନ୍ନେ କଷ୍ଟେ କୁଞ୍ଜେ— ଲୁଚି ଶୁଆ ଶାରୀ,
ଚିରକାଳ ସୁଖେ ଯାଉଛି କାହାରି !
ବନକୁଞ୍ଜ ତେଜି ଶୃଗାଳ, ଶଶକ
ଭ୍ରମନ୍ତି ପ୍ରାନ୍ତରେ ଦଂଶନ୍ତେ ମଶକ ।
ଚମକେ ଚପଳା ପର୍ବତ ଗାତ୍ରରେ,
କଷୁଛି କାଞ୍ଚନ କଷଟିପ୍ରସ୍ତରେ ।
ଯୂଥପତି ସଙ୍ଗେ ଭ୍ରମନ୍ତି କରିଣୀ,
ଗେରୁମାଟି ବୋଳି ବନବିହାରିଣୀ ।
ମହିଷୀ ମହଲେ କାମୁକ ନୃତ୍ତେ,
ଶତ ଗୁଣ ବଳ ମାତଙ୍ଗ ସମ୍ପତ୍ତି ।
ଯୂଥପତି ଜ୍ଞାନ ରାଜାଠାରୁ ବଳି,
ମନ୍ତ୍ରୀବିନା ଚାରି ରାଜ୍ୟ ଯାଏ ଚଳି ।

ରୁଦ୍ଧ ଗିରିବର୍ତ୍ମ ଲତା ଗୁଳ୍ମ ଡାଳେ,
କେ ଯିବ ପର୍ବତେ ଦୁର୍ଗମ ସେ କାଳେ ?
ଛନ୍ତି ଲୋକ ମଧ୍ୟ ତହିଁ ଯିବାପାଇଁ,
ମାନବ-ଅଗମ୍ୟ ସ୍ଥାନ, କାଳ କାହିଁ ?
ମୃଗପଦାଙ୍କିତ ମାର୍ଗ ଅନୁମାନେ
ଧନୁ ଧରି ବ୍ୟାଧ ଚଳେ ସାବଧାନେ ।
କଣ୍ଟକ, କର୍ଦ୍ଦମ, ସର୍ପ ଚଢେ ଦଳି
ଲୁଚି ଲୁଚି ବନେ ଯାଏ ଗଳି ଗଳି ।
ଅଗ୍ରେ ପାଶେ ଦୃଷ୍ଟି ରଖିଛି ତ୍ରିଖରେ,
ଚମକ ପଛକୁ ଗୁହିଁ ଥରେ ଥରେ ।
ଦୃଷ୍ଟି ରୋଧ କରେ ଶିରୁ ବନ୍ଧ ମରେ,
ଅତି ସାବଧାନେ ପୋଛେ କଦ୍ଧଣୀରେ ।
ଅନ୍ୟ ପ୍ରାଣୀହିଂସା ଯାହାର ବେବସା,
ଭୁଞ୍ଜେ କି ସେଲୋକ ସାମାନ୍ୟ ଦୁର୍ଦ୍ଦଶା ?
ପର୍ବତେ ଆକାଶେ ଘୋଟିଛି ଅନ୍ଧାର,
ବାରି ହେଉ ନାହିଁ ସର୍ବ ଏକାକାର ।
ନିଶୀଥେ ଖଦ୍ୟୋତେ ଜ୍ୱଳନ୍ତ ପର୍ବତେ,
ହେଲେ ସ୍ଥିର ହେବେ ନକ୍ଷତ୍ର ପରତେ ।
ନାହିଁ କୋଳାହଳ ଲୋକଙ୍କ ଜଞ୍ଜାଳ,
ଯୋଗୀଜନ ଧ୍ୟାନ ଉପଯୁକ୍ତ କାଳ ।
ଏକାଳେ ମୁକୁଳ ପର୍ବତେ ନିର୍ଜନେ
ବୁଦ୍ଧଦେବ ଧ୍ୟାନେ ଥିଲେ ଏକମନେ ।
ଗତ ବର୍ଷାକାଳ ଶରଦ ଆଗତ,
ବାହାଲେ ଧାନ ତେଜ ଫଥାଗତ ।
ବୁଦ୍ଧ ନବଧର୍ମ କରିବେ ପ୍ରଚ୍ଛୁର,
ବ୍ୟାପିଲା ଜଗତେ ଶୁଭ ସମାଚ୍ଛର ।
ଏକନାଳା ଗ୍ରାମେ ଭୂସ୍ୱାମୀ ବ୍ରାହ୍ମଣ,
ଭରଦ୍ୱାଜ ଗୋତ୍ର ଦୁଃଶୀଳ ଦୁର୍ଜ୍ଜନ ।
ଚଳେ ଧରି ହଳ କୃଷି କରିବାରେ,
ଭିକ୍ଷାପାତ୍ର କରେ ବୁଦ୍ଧଦେବ ଦ୍ୱାରେ ।
ଭିକ୍ଷୁ ଦେଖି ବିପ୍ର ଅଧୀର କ୍ରୋଧରେ,
ବୋଇଲା, "ରେ ଭିକ୍ଷୁ !" ଅତି କର୍କଶରେ,
"ଦେଖୁ ନାହୁଁ କ୍ଷେତ୍ର କଷ୍ଟରେ କର୍ଷଣ
କରି ତହିଁ ବୀଜ କରୁଛୁ ବପନ ।
କେତେ କଷ୍ଟେ ଶସ୍ୟ ଜନମେ ଭୂମିରେ,
କାହୁଁ ତୁ ଜାଣିବୁ ଅଳପ ବୁଦ୍ଧିରେ ?
ସେହି ଶସ୍ୟେ କରେଁ କୁଟୁମ୍ବ ପୋଷଣ,
ତୋତେ କପାଁ ତାହା ଦେବି ଅକାରଣ ?
ଯେବେ ତୋର ଥାଏ ଶସ୍ୟେ ପ୍ରୟୋଜନ,
ଆସି କର ମୋହ ସଙ୍ଗତ କର୍ଷଣ ।
ପରିଶ୍ରମ ବିନା ବୋଲ ଏ ସଂସାରେ
ଅନ୍ନ କି କାହାକୁ ମିଳିବାକୁ ପାରେ ?
ହଳଆ ଭଳିଆ ଅଟୁ ତୁ ବଳୁଆ,
ଭିଖ ମାଗି ବୁଲୁ ଘରି ଅଳସୁଆ ।
କାମ କରି କରି ମରିବୁ କ୍ଷେତରେ
ତୁ ପେଟ ପୋଷିବୁ ବସି ବସି ଘରେ ?"
ବୋଇଲେ ଗୌତମ, "ଶୁଣ ବିପ୍ରବର,
କୃଷି ବ୍ୟବସାୟୁ ଅଛୁ ମଧ୍ୟ ମୋର ।
ଭୂମି ଚଷି କରି ବୀଜ ମୁଁ ବପନ
ଜନମାଇ ଶସ୍ୟ କରଇ ଭୋଜନ ।"
ବୋଇଲା ବ୍ରାହ୍ମଣ— ହଲାଇଣ ମଥା,
"ତୁହି କୃଷିଜୀବୀ ? ତୁଚ୍ଛା ମିଛକଥା ।
କାହିଁ ତୋ ବଳଦ, ବୀଜ, ହଳ, କୃଷି ?"
ବୋଇଲେ ଗୌତମ, "ବୀଜ ମୋ ବିଶ୍ୱାସ,
ମୋର ଶସ୍ୟକ୍ଷେତ୍ର ମାନବର ହୃଦ,
ଧର୍ମ ହଳ, ମୋର ଜ୍ଞାନ ବଳୀବର୍ଦ୍ଦ,
ନିର୍ବାଣ ମୋ ଶସ୍ୟ ଅମର ଅକ୍ଷୟୁ ।"
ଶୁଣିଲା ବ୍ରାହ୍ମଣ ହେଲା ଜ୍ଞାନୋଦୟୁ ।
ବିପ୍ର ତହୁଁ ପଡ଼ି ବୁଦ୍ଧ ପଦତଳେ
ହେଲା ସନ୍ନ୍ୟାସ ଦୀକ୍ଷା ଜ୍ଞାନବଳେ ।

ଏକଦା ଅଳବୀ ନିବିଡ଼ କାନନେ
ବୁଦ୍ଧ ଧ୍ୟାନେ ମଗ୍ନ ତସ୍କର ଭବନେ,
ଆସି ସେ ତସ୍କର ବୋଇଲା କ୍ରୋଧରେ—
"କିଏ ରେ ତୁ ? ଆସି ବସିଛୁ ମୋ ଘରେ ?

ଦୂର ହୁଅ ନତୁ    ପକାଇବି ମାରି,"
କମ୍ପିଲା କ୍ରୋଧରେ    ବୋଲି ଦୁରାଗ୍ରହୀ ।
ଧ୍ୟାନ ତେଜି ବୁଦ୍ଧ    ମେଲିଲେ ନୟନ,
ନେତ୍ରୁ ବହିର୍ଗତ    ସ୍ୱର୍ଗୀୟ କିରଣ ।
ଦେଖି ନେତ୍ରଜ୍ୟୋତି    ଦସ୍ୟୁ ହେଲା ଭୀତ,
ଏ ଲୋକ ମାନବ    ନୁହେ କଦାଚିତ ।
ଦେବତା-ଛଳରେ    ଆସି ଏହି ସ୍ଥାନେ
ଜାତ କରାଇଲେ    ତ୍ରାସ ମୋର ପ୍ରାଣେ ।
ଏହି ହସ୍ତେ କେତେ    ବଧ କଲି ପ୍ରାଣୀ,
ଆଜି ଜାତ ତ୍ରାସ    କପାଇଁ କି ଜାଣି ।
ବୋଇଲା ପ୍ରକାଶି    ତହୁଁ ଦସ୍ୟୁପତି,
"ଜାଣ ଯେବେ ତତ୍ତ୍ୱ    କଥା ତୁମ୍ଭେ ଯତି ।
ବୋଲ ମାନବର    କିବା ଶ୍ରେଷ୍ଠ ଧନ ?
କେଉଁ କାର୍ଯ୍ୟେ ସୁଖ    ଲଭଇ ଜୀବନ ?
ଜଗତରେ କିବା    ଶ୍ରେଷ୍ଠତମ ସ୍ୱାଦୁ ?
ମୋ ପ୍ରଶ୍ନେ ଉତ୍ତର    ନ ଦେଲେ ହେ ସାଧୁ !
ପକାଇବି ମାରି,    ତୋର ଦେହ ଖଣ୍ଡ,
ଖଣ୍ଡ କରି ଫିଙ୍ଗି    ଦେବି ଲଣ୍ଡଭଣ୍ଡ ।"
ବୋଇଲେ ଗୌତମ—    ହସି ଈଷତରେ,
"ବହୁତ ମାନବ    ବଧିଛ ହସ୍ତରେ,
ପାଇଛ କି ସୁଖ    ବଧି ମହାପ୍ରାଣୀ ?
ମୋତେ ମାରି ସୁଖ    ଲଭିବ କି ଜାଣି ?
ନରହତ୍ୟା କରି    ପାଇଛ କି ଧନ ?
କି ଧନ ଲଭିବ    ବଧି ମୋ ଜୀବନ ?
ଥାଉ ବା ନ ଥାଉ    ତୁମ୍ଭ ଗୃହେ ଧନ,
ଦିନେ ତ କରିବ    ତ୍ୟାଗ ଏ ଜୀବନ ।
ଧ୍ୱଂସ ହେବ ଦେହ,    ରହିବ ତ ନାହିଁ
ଲୁଣ୍ଠିତ, ସମସ୍ତ    ଧନ ଯିବ କାହିଁ ।
ସଙ୍ଗେ ସଙ୍ଗେ ଯିବ    ପାପକର୍ମଫଳ,
ତୁମ୍ଭେ ହିଁ ଏକାକୀ    ଭୁଞ୍ଜିବ କେବଳ ।
ତୁମ୍ଭ ପ୍ରଶ୍ନ ଥିଲି    ଶୁଣନ୍ତୁ ଉତ୍ତର—
ଧର୍ମ ଶ୍ରେଷ୍ଠ ଧନ    ଅଟେ ମାନବର

ଧର୍ମ ପାଳନରେ    ସୁଖ ଜାତ ଜାଣ,
ସତ୍ୟ ଶ୍ରେଷ୍ଠ ସ୍ୱାଦୁ,    ଶ୍ରେଷ୍ଠ ଜ୍ଞାନ-ପ୍ରାଣ ।"
ପୁଚ୍ଛିଲା ତସ୍କର—    "ବୋଲ ମୋ ଆଗରେ,
ଜନ୍ମ କ୍ଲେଶମାନ    କେଉଁ ଉପାୟରେ
ଅତିକ୍ରମ କରି    ଲଭିବ ନିର୍ବାଣ ?
ବୋଲ ଫେଡ଼ି ତତ୍ତ୍ୱ    ଯେବେ ତୁମ୍ଭେ ଜାଣ ।"
ବୁଦ୍ଧଦେବ ଉକ୍ତି—    "କର୍ମଫଳ ନାଶେ
ଜନ୍ମ କ୍ଲେଶ ଦୂର    ହୁଏ ଅନାୟାସେ ।
ଜୀବନ ସାଗର,    ତବ ଧର୍ମବଳେ
ପାରି ହେବ ପ୍ରାଣ    ପବନ ଶୀତଳେ ।"
ପୁଚ୍ଛେ ଦସ୍ୟୁ, "ବନ୍ଧୋ !    ଧନ, ଯଶ, ଜ୍ଞାନ
ଲଭିବ କିରୂପ ?    ମରଣାନ୍ତେ ତ୍ରାଣ ?"
ବୋଇଲେ ଗୌତମ,    "ବିଶ୍ୱାସ ଧର୍ମରେ
କଲେ, ଜ୍ଞାନାଲୋକ    ଲଭି ସହଜରେ ।
କର୍ତ୍ତବ୍ୟ ସାଧନେ    ଲଭି ହୁଏ ଧନ,
ସତ୍ୟେ ଲଭି ଯଶ,    ପ୍ରେମେ ମିତ୍ରପଣ ।
ଦୃଢ଼ତା, ସଂଯମ,    ବଦାନ୍ୟତା, ସତ୍ୟ,
କ୍ଷମା ଯୋଗେ ନର—    କାଳେ ଦୁଃଖ ଅନ୍ତ ।
ଜନ୍ମ, ଜରା, ବ୍ୟାଧି    ମୃତ୍ୟୁଚକ୍ର ଆଦି
ହେବ ଅତିକ୍ରାନ୍ତ    ଧର୍ମମାର୍ଗ ସାଧି ।"
ତସ୍କର ହୃଦୟେ    ହେଲା ଜ୍ଞାନୋଦୟ,
ଦୀପ୍ତ ଧର୍ମାଲୋକେ    ନିର୍ମଳ ହୃଦୟ ।
ନବ ଧର୍ମ ଦୀକ୍ଷା    କରି ସେ ଗ୍ରହଣ
ଭିକ୍ଷୁବେଶେ ଗଲା    ପ୍ରଭୁର କାରଣ ।
ସାଧୁ ସ୍ପର୍ଶମଣି    ସ୍ପର୍ଶେ ଦସ୍ୟୁ ସନ୍ତ,
ପାଷାଣ କାଞ୍ଚନ—    ରୂପେ ପରିଣତ ।

ଦିନେ ବୁଦ୍ଧଦେବ    ଶ୍ରାବସ୍ତୀ ନଗରେ
ବିରାଜ ବିହାରେ    ଶିଷ୍ୟ ସହିତରେ ।
ମୃତ ଶିଶୁ କୋଳେ    ଗୌତମୀ ଜନନୀ
ଆସି ବୁଦ୍ଧ ପାଶେ    ଲୁଣ୍ଠିଲା ଅବନୀ ।

ବୋଇଲା,"ହେ ଦେବ ! ନର ନାରାୟଣ !
ବୃଦ୍ଧକାଳେ ଏହି  ଗୋଟିଏ ନନ୍ଦନ ।
ନିଷ୍ଠୁର ଶମନ  କରିଛି ହରଣ,
କୃପା କରି ଦିଅ  ଏହାର ଜୀବନ ।
ଏକମାତ୍ର ଭିକ୍ଷା  କର ପୁତ୍ରେ ଦାନ,
ନତୁବା ସମ୍ପ୍ରତି  ହରାଇବି ପ୍ରାଣ ।
ଦେଉଛି ସର୍ବସ୍ୱ,  ଧନ, ପ୍ରାଣ, ମାନ,
ଏକମାତ୍ର ପୁତ୍ରେ  କର ପ୍ରାଣଦାନ ।"
ଦେଖିଲେ ଗୌତମ  କରୁଣ ନୟନେ,
କି କଷ୍ଟ ଯେ ଜାତ  ସନ୍ତାନ ମରଣେ ।
ପୁତ୍ରଶୋକୁଁ ବଳି  ଶୋକ କିଛି ନାହିଁ,
ତେଜି ପାରେ ଲୋକ  ସର୍ବ ପୁତ୍ରପାଇଁ ।
ମାୟାବଦ୍ଧ ଜୀବ  କି କଷ୍ଟ ଦାରୁଣ
ଜନ୍ମ ଜନ୍ମାନ୍ତର  ସହେ ପୁଣ ପୁଣ ।
ବୋଇଲେ,"ଗୋ ମାତଃ ! କରନ୍ତୁ ଶ୍ରବଣ,
କରି ପାରେଁ ତୁମ୍ଭ  ଶୋକ ନିବାରଣ ।
ଔଷଧ ପ୍ରସ୍ତୁତ  ହେବ ସେଥିପାଇଁ,
ମୁଠାଏ ସର୍ଷପ  ଖୋଜି ଆଣ ଯାଇ ।"
ସେ କୃଷ୍ଣା ଗୌତମୀ  ଗୌତମ ଚରଣେ
ପଡ଼ିତ ବିହ୍ୱଳ  ସଜଳ ନୟନେ,
ଶୁଷ୍କ ହୃଦୟରେ  ଆନନ୍ଦ ସଞ୍ଚାର,
ଓଳଗିଣ ବୁଦ୍ଧ  ପଦେ ବାରମ୍ବାର,
ସେ କୃଷ୍ଣା ଗୌତମୀ  ବୋଲେ ଯୋଡ଼ି ପାଣି,
"ସାମାନ୍ୟ ସର୍ଷପ  ଦେଉଅଛି ଆଣି ।
ମୁଠାଏ କିପାଇଁ ?  ଯେବେ ଇଚ୍ଛା ପ୍ରଭୁ !
କରିବେ ଆଦେଶ  ଆଣିଦେବି ସବୁ ।"
ବୋଇଲେ ମାତାକୁ  ବୁଦ୍ଧ ଦେଇ ବୋଧ,
"ସାମାନ୍ୟ ସର୍ଷପେ  ନ ହେବ ଔଷଧ ।
ସେ ଘରୁ ସର୍ଷପ  ମାତା ଆଣ ଯାଇ,
ଯେ ଘରେ ମନୁଷ୍ୟ  କେବେ ମରି ନାହିଁ ।"
ମୃତ ପୁତ୍ର କୋଳେ  ମାତା ଊର୍ଦ୍ଧ୍ୱଶ୍ୱାସେ
ଧାଇଁଲା ସର୍ଷପ  ଆଣିବା ସକାଶେ ।

ଭ୍ରମିଲା ଗୌତମୀ  ନଗର ମଧ୍ୟରେ,
ଲୋଡ଼ିଲା ସର୍ଷପ  ପ୍ରତି ଘରେ ଘରେ ।
ଆହା ! ଆହା ! ଆହା !  ନିରାଶା ଜନନୀ,
କ୍ରମେ ଦିବା ଗତ  ଆଗତା ରଜନୀ ।
ନ ପାଇଲା ଗୃହ  ଖୋଜି ସେ ବିଶେଷ,
ମୃତ୍ୟୁ କରି ନାହିଁ  ଯେ ଘରେ ପ୍ରବେଶ ।
କାହା ଭାଇ, ବନ୍ଧୁ,  ଜନକ, ଜନନୀ,
ଅକାଳେ ସନ୍ତାନ  ମରିଛି, ଘରଣୀ ।
ଶୋକାକୁଳା ମାତା  ଯାଇ ବନପାଶେ
ବସିଲା କ୍ଷଣେକ  ଉଦାସେ, ନିରାଶେ ।
ମେଲିଲା ତାହାର  ସୁଜ୍ଞାନ ନୟନ,
ଦେଖିଲା ବ୍ୟାପିଛି  ଜଗତେ ମରଣ ।
ଘୋର ନିଶୀଥିନୀ  ତିମିର ସମାନେ
ମୃତ୍ୟୁଚ୍ଛାୟାବୃତ  ଛନ୍ତି ଲୋକମାନେ ।
ମରିଛନ୍ତି ମରୁଛନ୍ତି  କେତେ ପୁତ୍ର;
ଅଲକ୍ଷେ ମରଣ  ଧରି ଟାଣେ ସୂତ୍ର ।
ସଂଖ୍ୟାତୀତ ଚିତା  ଜଳୁଛି ପ୍ରାନ୍ତରେ,
ଘୋର କାଳାନଳ  ମାନବ ମନରେ ।
ପୁତ୍ରଶୋକାତୁରା  ମୃତ ପୁତ୍ର କୋଳେ
ଧରିଅଛି ବସି  ବିଜନେ ବିରଲେ ।
ଦୈବ ବାଣୀ ପରି  ଶୁଭିଲା ତା କର୍ଣ୍ଣେ,
"ଜଳୁଛି ପ୍ରଦୀପ  ଦେଖ ମା ନୟନେ ।
ହେବ ଏକ ଏକ  ପ୍ରଦୀପ ନିର୍ବାଣ,
ମାନବଜୀବନ  ସେହିପରି ଜାଣ ।
ଯାଇଛି ସନ୍ତାନ,  ଯିବ ତୁମ୍ଭେ ଦିନେ,
ଜଗତର ଲୋକ  ମରଣ ଅଧୀନେ ।
ଆତ୍ମକର୍ମଫଳ  ଭୁଞ୍ଜିବା ସକାଶେ
ରହିଛନ୍ତି ଲୋକ  ସଂସାରେ ପ୍ରବାସେ ।
ଆତ୍ମକର୍ମଚକ୍ର  ସାଥି ଅନୁସରି,
କି ହେବ ବୃଥାରେ  ପରିତାପ କରି ।
ନିୟତିର ଲୀଳା-  କ୍ଷେତ୍ର ଏ ଜଗତ,
ବିଶ୍ୱନିୟନ୍ତାର  ବିଧାନ ଆୟତ୍ତ ।

ଜୀବ ଉଗ୍ରାଳୟେ   କର ଅଭିନୟ
ହେଉଛନ୍ତି କାଳ-   କବଳେ ବିଲୟ ।"
ଦେଖିଲେ ଗୌତମୀ   ବିଜ୍ଞାନ ଆଲୋକେ,
ଘୋର ମୋହାଚ୍ଛନ୍ନ   ଜଗତର ଲୋକେ ।
ପୁତ୍ରେ ବିସର୍ଜନ   ଦେଇ ବିଷାଦିନୀ
ବୁଦ୍ଧ ସଙ୍ଗେ ଯାଇ   ହେଲା ସନ୍ନ୍ୟାସିନୀ ।

ସ୍ଥୂଳବୁଦ୍ଧି ଏକ   ଶିଷ୍ୟ ସ୍ୱର୍ଣ୍ଣକାର
ଥାଏ ଆଶ୍ରମରେ   ତେଜି ଘର ଦ୍ୱାର,
ମାୟିକ ସଂସାର   ବିଷୟରୁ ମତି
ହେଲା ନାହିଁ ଦୂର—   ବିଷମ ଦୁର୍ଗତି ।
ଧନ, ମାନ, ସୁଖ   ଲୋକେ ପ୍ରତିଦିନ,
ନିୟତ ହୃଦୟ   ମୋହମାୟାଧୀନ ।
ସାରଗର୍ଭ ଯେତେ   ଦେଲେ ଉପଦେଶ,
ନ ହେଲା ଉଦୟ   ହୃଦେ ଜ୍ଞାନ ଲେଶ ।
ବହୁମାସ ଗତ   ସର୍ବ ବିଡ଼ମ୍ବନା,
ନ ହେଲା ଉଦୟ   ହୃଦୟେ ଚେତନା ।
ଦିନେ ବୁଦ୍ଧଦେବ   ଶିଷ୍ୟ ସ୍ୱର୍ଣ୍ଣକାରେ
ସହିତ ମିଳିତ   ସରୋବରଧାରେ ।
ଅସଂଖ୍ୟ କମଳ   ଭାସେ ନୀଳଜଳେ,
ପୂର୍ଣ୍ଣ ଆଶା ସାଧି   ହୃଦୟ କମଳେ ।
ବୋଇଲେ ଗୌତମ   ଶିଷ୍ୟ ସ୍ୱର୍ଣ୍ଣକାରେ—"
"ଦେଖ ଦେଖ ବତ୍ସ ।   ଚାହିଁ ଏ କାସାରେ
ଦେଖିଲା ସେ ଶିଷ୍ୟ,   ଆଗତେ ଯାମିନୀ,
ଜୀର୍ଣ୍ଣ ଶୀର୍ଣ୍ଣ ଦଳ   ଜଳେ କମଳିନୀ ।
ବୋଇଲେ ଗୌତମ,   "ଦେଖ ନେତ୍ର ଭରି,
ସୌନ୍ଦର୍ଯ୍ୟର ପରି-   ଣାମ ଏହିପରି ।
କମନୀୟ କାନ୍ତି   ହେବ ଭସ୍ମସାର,
ଐଶ୍ୱର୍ଯ୍ୟ, ସୌନ୍ଦର୍ଯ୍ୟ   ସକଳ ଅସାର ।
ତେଜି ଅନୁରାଗ   କର ଅନୁଷ୍ଠାନ
ଲଭି ହେବ ଯହିଁ   ଅନନ୍ତ ନିର୍ବାଣ ।"
ଉପଦେଶ ଶୁଣି   ଅଜ୍ଞ ସ୍ୱର୍ଣ୍ଣକାର
ଲଭିଲା ସେଦିନ   ଦିବ୍ୟ ଜ୍ଞାନସାର ।

ତେଜି ଅନୁରାଗ   ଅସାର ଜଗତେ
ରହିଲା ସଙ୍ଘରେ   ପ୍ରବ୍ରଜ୍ୟା ବ୍ରତେ ।

ଦୁଇ ଶିଷ୍ୟ ସାନ   ବଡ଼ ଦୁଇ ଭାଇ
ଶିଖୁଥାନ୍ତି ନିତି   ଆଶ୍ରମରେ ଥାଇ ।
ନିର୍ବୋଧ ସାନଟି   ପଢ଼ି ଛଅମାସ
ଶ୍ଲୋକଟିଏ ମଧ୍ୟ   ନ କଲା ଅଭ୍ୟାସ ।
କ୍ରୋଧେ ବଡ଼ଭାଇ   ବୋଇଲା ସାନକୁ
"ମଠ ଛାଡ଼ି ତୁହି   ଚାଲି ଯା ଘରକୁ ।
ନ ପାରିଲୁ ଶିଖି   ଶ୍ଲୋକ ଛଅମାସେ,
ଶିଖିବୁ ଯେ ଧର୍ମ,   ମନକୁ ନ ଆସେ ।"
ମାତ୍ର ସାନ ଭାଇ   ହେଲେ ହେଁ ଅଜ୍ଞାନ,
ନବ ବୌଦ୍ଧ ଧର୍ମେ   ଥିଲା ତାର ପ୍ରାଣ ।
ନ ଛାଡ଼ିଲା ମଠ   ନ ଗଲା ସେ ଘରେ,
ଏଥୁଅନ୍ତେ ବଡ଼   ଭାଇ ଦିନକରେ,
ନିମନ୍ତ୍ରଣ କଲା   ମଠ ଶିଷ୍ୟଗଣେ;
ସାନକୁ ଲୋଡ଼ିଲା   ନାହିଁ ନିମନ୍ତ୍ରଣେ ।
ବୋଇଲା ସେ ସାନ   ହୋଇଣ ଦୁଃଖିତ,
"ଭ୍ରାତୃସ୍ନେହରୁ ଯେବେ   ହେଲି ମୁଁ ବଞ୍ଚିତ ।
ତେବେ କିବା କାର୍ଯ୍ୟ   ରହିବା ମଠରେ ?
ଥାଉ ବଡ଼ଭାଇ   ଯାଉଛି ମୁଁ ଘରେ
ନ ଲଭିଲି ଫଳ   ଆଶ୍ରମକୁ ଆସି,
ରତ ଦାନ ଧ୍ୟାନେ   ହେବି ଗୃହବାସୀ ।"
ଯାନ୍ତେ ଦିନେ ପ୍ରାତେ   ମଠ କରି ତ୍ୟାଗ,
ଭେଟ ମାର୍ଗେ ବୁଦ୍ଧ-   ଦେବ ମହାଭାଗ ।
ପ୍ରଣମିତ ଗୁରୁ   ଦେବଙ୍କ ଚରଣେ,
ବୋଇଲା ବିନୟେ   କାତର ବଚନେ—
"ଭ୍ରାତାଙ୍କ ଆଦେଶ   ହେବାକୁ ସଂସାରୀ
ରହିଲେ ମୋ ଜ୍ୟେଷ୍ଠ   ହେବେ ମଠଧାରୀ ।"
ବୋଇଲେ ଗୌତମ,   "ଆହେ ଭିକ୍ଷୁବର !
ରହିଛ ମଠରେ   ଆଦେଶେ ଆମ୍ଭର,
ଆମ୍ଭଠାରୁ ଧର୍ମ   କରିଛ ଗ୍ରହଣ,
ଭ୍ରାତା ବାକ୍ୟେ କିପାଁ   ତେଜିବ ଶ୍ରାମଣ ?"

କ୍ଷୁଦ୍ର ଭିକ୍ଷୁକକୁ କରୁଣାନିଧାନ
ଶୁକ୍ଳ ବସ୍ତ୍ର ଖଣ୍ଡେ କରିଣ ପ୍ରଦାନ,
ବୋଇଲେ, ଏହାକୁ ମଳ ଦୁଇକରେ;
ଗୁରୁଙ୍କ ଆଦେଶେ ଏଥୁ ଅନନ୍ତରେ ।
ସେ କ୍ଷୁଦ୍ର ଭିକ୍ଷୁକ ମଳନ୍ତେ ବସନ,
ହୋଇଲା ମଳିନ ବ୍ୟାକୁଳିତ ମନ,
ଗଲା ଭିକ୍ଷୁକ ବସ୍ତ୍ରର ଶୁକ୍ଳିମା
ଦୂର ହୋଇଲା, ହସ୍ତେ ଲାଗିଣ କାଳିମା ।
ଚେତନା ବସିଲା ତାହାର ହୃଦୟେ,
ଏହିପରି ଆତ୍ମା ସଂସାର ବିଷୟେ
ସମ୍ପର୍କରେ ହୁଏ କ୍ରମଶ ମଳିନ;
ନିର୍ମଳତା ଗୁଡ଼ ଯାଏ ଦିନୁଦିନ ।
ଏ ଶୁଦ୍ଧ ମୁହୂର୍ତ୍ତେ ବୁଦ୍ଧଦେବ ପାଶେ
ଆସିଣ ବୋଇଲେ ତାହାକୁ ଆଶ୍ୱାସେ,
'ଦେଖୁଛ ତ ବତ୍ସ ! ଏ ଶୁକ୍ଳ ବସନ
ମଳନ୍ତେ ମଳିନ ହୋଇଲା କେସନ ?
କାମ ତୃଷ୍ଣା ମନେ ହୋଇଲେକ ଉଦୟ
କଳଙ୍କିତ ହୁଏ ଆତ୍ମା ନିଶ୍ଚୟ ।
କାମ, କ୍ରୋଧ, ମୋହେ ଆତ୍ମା ବିଜଡ଼ିତ
ହୋଇଲେକ ଜାଣିବ ନିଶ୍ଚେ କଳଙ୍କିତ ।"
ଏତେକାଳ ଅନ୍ତେ ସେ କ୍ଷୁଦ୍ର ଭିକ୍ଷୁକ
ଲାଭ କଲା ହୃଦେ ବିଜ୍ଞାନ ଆଲୋକ ।

* * * *

ପର୍ବତ ପଦରେ କୁଣ୍ଡ ସପ୍ତଧାରା,
ସଞ୍ଚିତ ସଲିଳ ଅବା ସୁଧାଧାରା ।
ଶିଖରିଶିଖରୁ ଆସି ବାରିଧାର
ପତିତ ସଞ୍ଚିତ କୁଣ୍ଡେ ଅନିବାର ।
ସ୍ୱଚ୍ଛ ଜଳେ ଦଳେ ସନ୍ତରେ ଶଫରୀ,
ମାର୍ଜିତ ଦର୍ପଣେ ଗ୍ରୁପ୍ୟାଚିତ ପରି ।
କ୍ଷଣେ ଝକ ଝକ ଚଞ୍ଚଳ ଗମନେ,
ଉଡ଼ୁଛନ୍ତି ପ୍ରଜା- ପତି ବା ଗଗନେ ।

ନିମ୍ନେ ବାଲୁଶଯ୍ୟା କ୍ଷଣେ ସମୁଜ୍ଜ୍ୱଳ,
ଚିତ୍ତେ ଭ୍ରାନ୍ତ ଜାତ ଅଛି କି ନା ଜଳ ।
ମଗଧ ରାଜନ ବିମ୍ବିସାର-ରାଣୀ—
କ୍ଷେମାଦେବୀ ନାମ— ବେଦେ ଯଥା ବାଣୀ ।
ଏକଦା ମହିଷୀ ସପ୍ତଧାରା ପାଶେ
ଉପସ୍ଥିତ ପ୍ରାତଃ- ସ୍ନାନ ଅଭିଳାଷେ ।
ସେ କୁଣ୍ଡ ଉପରେ ପର୍ବତେ ବିହାରେ
ବସି ବୁଦ୍ଧଦେବ ଅନନ୍ତ ଧାରାରେ
ଧର୍ମସୁଧାରାଶି ଢାଳୁଛନ୍ତି ନିତ୍ୟ,
ନର ନାରୀ ପ୍ରାଣ ନିର୍ବାଣ ନିମିତ୍ତ ।
ସଂଖ୍ୟାତୀତ ନର ନାରୀ ସମାଗତ;
ଶୁଣୁଛନ୍ତି ଅଭି- ନବ ଧର୍ମମତ ।
ମାଗଧ ମହିଷୀ ଦେଖିଲେ ପ୍ରତ୍ୟକ୍ଷ,
ଧାବିତ ବିହାରେ ଲୋକ ଲକ୍ଷ ଲକ୍ଷ ।
ତେଜି ମହାମୂଲ୍ୟ ବସନ ଭୂଷଣ
ରାଣୀ ନବଧର୍ମ କଲେକ ଗ୍ରହଣ ।
ଗୈରିକବସନା ବିହାର ବାସିନୀ
ରାଜରାଣୀ ହୋଇଲେ ଧ୍ୟାନ ସନ୍ନ୍ୟାସିନୀ ।
ଥିଲେ ରାଣୀ ଗାତ୍ର- ଧୌତିରେ ପ୍ରସ୍ତୁତ,
ଧର୍ମ-ଜଳେ କଲେ ମନ ପ୍ରାଣ ଧୌତ ।

ଭଦ୍ରା ରାଜଗୃହେ ବଣିକଦୁହିତା,
ପରମା ସୁନ୍ଦରୀ ଲୋକରେ ପୂଜିତା ।
ବିପୁଳ ବିଷୟେ ସେ ଅଧିକାରିଣୀ,
ତୁଚ୍ଛ ମଣି ଧନ ହୋଇଲେ ସନ୍ନ୍ୟାସିନୀ ।
ସୁମେଧା-ନୃପତି କଉଞ୍ଚ ଦୁହିତା
ମନ୍ତାବତୀ ଦେଶେ ଲୋକରେ ପୂଜିତା ।
ଅଶ୍ରଦ୍ଧା ଅନ୍ତରେ ଅନିତ୍ୟ ସଂସାରେ
ସନ୍ନ୍ୟାସିନୀ ହୋଇ ରହିଲେ ବିହାରେ
ଧର୍ମ ଜନ୍ମା ନାରୀ ସୁନ୍ଦରୀ ଶିକ୍ଷିତା,
ବିଶାଖା ନାମକ ଶ୍ରେଷ୍ଠିର ଦୁହିତା ।

ତୁଚ୍ଛ ଦ୍ରବ୍ୟ ମଣି   ଅତୁଳ ସମ୍ପତ୍ତି
ହୋଇ ଥେରୀ * କଲେ   ବିହାରେ ବସତି ।
ଶ୍ରୀମତୀ ଉତ୍ପଳ-   ବର୍ଣ୍ଣା ନାମ୍ନୀନାରୀ,
ଶ୍ରାବସ୍ତୀ ନଗରୀ-   ଶ୍ରେଷ୍ଠୀର କୁମାରୀ,
ନବୀନ ଯୌବନେ   ଲାବଣ୍ୟ ମହିମା
ବ୍ୟାପିଲା ତେଜଣ   ଶ୍ରାବସ୍ତୀର ସୀମା ।
କେତେ ରାଜପୁତ୍ର   ସେ ରୂପେ ମୋହିତ,
ପରିଣୟ ଆଶେ   ଆସି ଉପସ୍ଥିତ ।

ମାତ୍ରକ କୁମାରୀ   ବୁଦ୍ଧଦେବ ପାଶେ
ଉପସ୍ଥିତ, ଧର୍ମେ   ଦୀକ୍ଷାର ସକାଶେ ।
କାଲି ଯେ ହୁଅନ୍ତା   ନୃପତିଗୃହିଣୀ,
ଆଜି ସେ ସଙ୍ଘରେ   ଧନା ସନ୍ନ୍ୟାସିନୀ
ବାରବିଳାସିନୀ   ନାମ ଅମ୍ବାପାଳୀ,
ଦଗଧ କରେ ଲୋକେ   ରୂପାନଳ ଜାଳି,
କମନ କାଞ୍ଚନ   ପରଶି ଅନଳେ
ହେଲା ଥେରୀ ବୁଦ୍ଧ   ଉପଦେଶବଳେ ।
ବିଳାସପାଳିତା   ସାଧ୍ୱୀ ସନ୍ନ୍ୟାସିନୀ,
ବିରଳକୁନ୍ତଳା   ବିହାରବାସିନୀ ।
କେତେ ନବଯୁବା   ଇନ୍ଦ୍ରିୟବିଳାସୀ—
ମୁକ୍ତିକାମୀ ହେଲେ   ସଙ୍ଘରେ ସନ୍ନ୍ୟାସୀ ।
ଅବିଶ୍ରାନ୍ତ ପାନ୍ଥ   ମିଳିତ ସଙ୍ଘରେ,
ସୁଧାଶୀ ଭୃଙ୍ଗାଳି   ଫୁଲ୍ଲ ପଙ୍କଜରେ ।
ମଗଧମଣ୍ଡଳେ   ଉଡ଼େ କୀର୍ତ୍ତିଧ୍ୱଜା,
ହେଲେକ ଦୀକ୍ଷିତ   ସର୍ବ ରାଜା ପ୍ରଜା ।
ସାଗରକଲ୍ଲୋଳ   ସମ କୋଳାହଳ
ମଗଧୁ ବ୍ୟାପିଲା   ଭାରତମଣ୍ଡଳ ।
ଭାସିଲେ ପ୍ରଚୁର-   ସ୍ରୋତେ ଲୋକଗଣ,
ନବଧର୍ମ ଦୀକ୍ଷା   କଲେକ ଗ୍ରହଣ ।
ମଗଧ ଅଯୋଧ୍ୟା,   ତଥି ପଞ୍ଚନଦେ,
ତଥି ଦାକ୍ଷିଣାତ୍ୟ   ସର୍ବ ଜନପଦେ—
ପ୍ରଚୁର-ପ୍ରବାହ   ପଡ଼ିଲା ସାଗରେ,
ବ୍ୟାପ୍ତ ବିସ୍ତାରିତ   ଦ୍ୱୀପ ଦ୍ୱୀପାନ୍ତରେ ।
ଶ୍ରୁତିବିଧି ଜୀବ-   ଘାତୀ ଯଜ୍ଞମାନ
କ୍ରମଶ ଭାରତୁ   ହେଲା ଅନ୍ତର୍ଦ୍ଧାନ ।
ଯେତେ ଉପଧର୍ମ   ଥିଲା ଭାରତରେ,
ଯୁକ୍ତି ତର୍କେ ଉଡ଼େ   ତୃଣ ସମାନରେ ।
ଉଦ୍ଭାସିତ ସତ୍ୟ-   ସ୍ୱରୂପ ମିହିର,
ସହଜେ ବିଲୁପ୍ତ   ଅସତ୍ୟ ତିମିର ।

ଚତୁଶ୍ଚତ୍ୱାରିଂଶ   ବରଷେ ପ୍ରଚୁର
କରନ୍ତେ ସ୍ଥାପିତ   ନବଧର୍ମ ସାର ।

ଆସମୁଦ୍ର ହିମା-   ଚଳ ଭାରତରେ
ଶିଷ୍ୟ ଉପଶିଷ୍ୟ   ବ୍ୟାପିଲେ କ୍ରମରେ ।
ଗିରି ହିମାଳୟ—   ବକ୍ଷେ ସ୍ଥାନେ ସ୍ଥାନେ,
ଅସଂଖ୍ୟ ପର୍ବତେ   ଖୋଦିତ ପାଷାଣେ,
ନବଧର୍ମ ଯଶ   ନବଧର୍ମ ବିଧି
ଅଙ୍କିତ, ସ୍ଥାପିତ   ବିହାର ପ୍ରସିଦ୍ଧି ।
ଆସି ମନୋହର   ମୁକୁଳ ପର୍ବତେ
ଉପନୀତ ବୁଦ୍ଧ,   ଭିକ୍ଷୁକ ସମସ୍ତେ ।
କୌଶାମ୍ବୀ ଦେଶରେ   ଭଗ୍ନ ଦେହ ଶ୍ରମେ,
ବରଷାର ଚତୁ-   ର୍ମାସ୍ୟାର ବିଶ୍ରାମେ ।
ଦିନେ ତଥାଗତ   ରାଇ ଶିଷ୍ୟଗଣେ
ବୋଇଲେ ସଧୀରେ   କରୁଣା ବଚନେ—
ଆହେ ଭିକ୍ଷୁଗଣ !   ଧର୍ମଚକ୍ର ମମ
କରିଛି ସ୍ଥାପନ   ଲଭି ବହୁ ଶ୍ରମ ।
କର୍ତ୍ତବ୍ୟ ସମ୍ପ୍ରତି   ତୁମ୍ଭମାନଙ୍କର
ପ୍ରଚୁର ଜଗତେ   ଲୋକପରମ୍ପର ।
କରନ୍ତୁ ମାନବେ   ଧର୍ମସୁଧା ପାନ,
ହେଉ ଜଗତରେ   ଯନ୍ତ୍ରଣା ନିର୍ବାଣ ।
ଇହଲୋକେ ପର-   ଲୋକେ ସୁଖ ଶାନ୍ତି
ଲଭନ୍ତୁ ମାନବେ   ହେଉ ଦୂର ଭ୍ରାନ୍ତି ।

---

* ଥେରୀ—ପ୍ରବ୍ରଜିତା ସନ୍ନ୍ୟାସିନୀ ।

ଭିକ୍ଷୁଗଣ ! ଦୀର୍ଘ  କାଳ ତଥାଗତ
ଆଉ ନ ରହିବ,  ଜାଣ ଏହା ସତ୍ୟ ।
ତିନିମାସ ମାତ୍ର  ଅବଶିଷ୍ଟ ଜାଣ,
ନିର୍ବାପିତ ଜନ୍ମ,  ଲଭିବେ ନିର୍ବାଣ ।
ଦେହ ଜୀର୍ଣ୍ଣ, ଆୟୁ  ପୂର୍ଣ୍ଣ ମନସ୍କାମ,
ବ୍ରତ ଅବସାନ,  ଲଭିବି ବିଶ୍ରାମ ।"

ବିସ୍ମିତ, ବ୍ୟଥିତ  ଶୁଣି ଶିଷ୍ୟଗଣେ ।
ପଡ଼ିଲା କି ଶିରେ  ବଜ୍ର ଅକାରଣେ ।
ଚାହିଁବ ଚକିତେ  ବୁଦ୍ଧଙ୍କ ବଦନେ
ସ୍ଥାପିତ ସକଳ  କରୁଣ ନୟନେ ।
ଧୈରଯେ ବିଷାଦେ  ଶିଷ୍ୟ ଏକଜଣ
ବୋଇଲା, "ହେ ପ୍ରଭୁ ! ନ ବୋଲ ଏସନ ।
ଅକାଳେ ଅନାଥ  କରି ଭିକ୍ଷୁଗଣ,
ସଙ୍ଘ ତେଜି ପ୍ରଭୋ !  ନ କର ଗମନ ।

ତାପିତ ମାନବେ,  କିପରି ଉଦ୍ଧାର
ପାଇବେ, ଆପଣ  ତେଜିଲେ ବିଦ୍ୱାର ?
ସଂଖ୍ୟାତୀତ ନର  ନାସ୍ତି ବର୍ତ୍ତମାନ
ପ୍ରାର୍ଥୀ ଧର୍ମ-ସୁଧା  କରିବାକୁ ପାନ ।

ହେ ପ୍ରଭୁ ! ଏ ସଙ୍ଘ  ଦୁର୍ବଳ ସମ୍ଭ୍ରାନ୍ତ,
ଉଦ୍ଧାରିବ ଲୋକ,  କାହିଁ ତା ଶକତି ?
ସାଧନ କରିବ  ଯେ କାର୍ଯ୍ୟ ମାତଙ୍ଗ,
ପାରେ କରିବାକୁ  ତାହା କି ପତଙ୍ଗ ?

ତପ୍ତ ମରୁଭୂମି  ବ୍ୟାପ୍ତ ଧରାତଳେ,
ହେବ କି ସିକ୍ତ ସେ  କୁଜ୍‌ଝଟିକା ଜଳେ ?
ଏ ସଙ୍ଘ କୁଟୀର  ଅଟେ ପ୍ରଭୋ ସ୍ତମ୍ଭ,
ପଡ଼ିବ ଭୂମିରେ  ଭାଙ୍ଗିଯିବ ଦମ୍ଭ ।

ବୋଲନ୍ତୁ ହେ ପ୍ରଭୁ !  ହେଲେ ଅସହାୟ,
ପରିଣାମ ଫଳ  ସଙ୍ଘର "ଉପାୟ ।"
ବୁଦ୍ଧଦେବ ଶୁଣି  ବୋଇଲେ, ହେ ଶିଷ୍ୟ ।
ଦେଖୁଅଛି ମନେ  ଭଲ ମୁଁ ଭବିଷ୍ୟ ।
ଜୀର୍ଣ୍ଣ, ଶୀର୍ଣ୍ଣ, ଭଗ୍ନ  ଦେହ ଅଶକତ,
କରି ନ ପାରିବ  କାର୍ଯ୍ୟ ପୂର୍ବବତ ।
କରିଛି ଯେ କାର୍ଯ୍ୟ  ଥିଲି କରିବାର,
ବୋଲିଛି ଯେ କଥା  ଥିଲି ବୋଲିବାର,
ଦେଇଛି ଦେବାର  ଥିଲି ଯେଉଁ ଧନ,
ସଙ୍ଘପାଇଁ ସର୍ବ  କରିଛି ସାଧନ ।
ମୁହିଁ ସଙ୍ଘନେତା  ବୁଝିବାର ଭ୍ରାନ୍ତ,
ଲଭିବ ସ୍ୱଧର୍ମ  ବଳେ ସଙ୍ଘ ଶାନ୍ତ ।
ଅଶୀତି ବରଷ  ବୟସ ଧର୍ମରେ,
ଶକ୍ତିହୀନ, ବଳ  ନାହିଁ ମୋ ଦେହରେ ।
ଯତ୍ନେ ଭଗ୍ନଯାନ  ଥାଏ ଚିରଦିନ,
ମାତ୍ର ଜାଣ ଦେହ  ମୃତ୍ୟୁର ଅଧୀନ ।
ସମାଧିସ୍ଥ ଥିଲେ  ଥାଏଁ ସୁସ୍ଥମନେ,
ଅସମାଧି କାଳ  କଷ୍ଟକର ମନେ ।
ଆପଣାର ମାର୍ଗ  ଦେଖି ଚାଲ ବତ୍ସ,
ସଙ୍ଘ ମଧ୍ୟେ ଥାଇ,  ଜଳେ ଯଥା ମତ୍ସ୍ୟ ।
ନିର୍ଭର ନ କର  ଭଗ୍ନଦେହ ପ୍ରତି,
ସହଜେ ଅକ୍ଷମ  ହୀନ ଜ୍ଞାନଶକ୍ତି ।
ସତ୍ୟର ଆଲୋକେ  ଜୀବନ ମାର୍ଗରେ,
ହୁଅ ଅଗ୍ରସର  ନିର୍ଭୟ ଅନ୍ତରେ ।
ନ ଲୋଡ଼ ସଙ୍ଘର  ଦ୍ୱିତୀୟ ଆଶ୍ରୟ,
ସ୍ୱଧର୍ମ ପ୍ରତାପେ  ଲଭିବ ସେ ଜୟ ।
ଯାଉଛି ମୋ ଦେହ,  ଥିବ ଶିକ୍ଷା ମୋର,
ହେବ ଶିକ୍ଷାବଳେ  ଏ ସଙ୍ଘ ଅମର ।"
ଶିଷ୍ୟ ଶ୍ରେଷ୍ଠତମ  ଆନନ୍ଦ ତା ନାମ,
ବୋଇଲା ସେ କରି  ଚରଣେ ପ୍ରଣାମ—
"ସତେ କି ହେ ଦେବ ! ତେଜି ଦାସଦଳେ—?"
ହେଲା କଣ୍ଠରୋଧ,  କାନ୍ଦିଲା ବିକଳେ ।
ବୁଦ୍ଧଦେବ ଦେଖି  ଶିଷ୍ୟ କାତରତା,
ବୋଇଲେ, "ଆନନ୍ଦ !  ଭୁଲିଗଲ କଥା,
ବୋଲିଛି ପୂର୍ବରେ,  ଜନ୍ମିଲେ ମରଣ,
ଫୁଟିଲେ କୁସୁମ  ଭୂତଳେ ପତନ ।

ଜଳବମ୍ବ ଉଠି ମିଶିବ ଜଳରେ,
ଭୂତର ସମଷ୍ଟି ବଳୟ ଭୂତରେ ।
ହେ ପ୍ରିୟ ଆନନ୍ଦ ! ନଶ୍ବେ ତୁମ୍ଭେ ଜାଣ,
ମରଣ ହସ୍ତରୁ ନାହିଁ ପରିତ୍ରାଣ ।
ବୃଥା ଶୋକ ବତ୍ସ ! କର ପରିହାର,
ଶୋକର ନିର୍ବାଣେ ନାହିଁ ଅଧିକାର ।”
ନିଭୃତେ କାଶ୍ୟପେ ବୋଇଲେ ଗୌତମ,
“ଆସ ମୋର ପାଶେ ଶିଷ୍ୟ ଶ୍ରେଷ୍ଠତମ !
ତୁମ୍ଭ ସହିତରେ ବସ୍ତ୍ର ବିନିମୟ
କରୁଛୁ କାରଣ ଜାଣିବ ନିଶ୍ଚୟ ।
ତୁମ୍ଭର ହୃଦରେ ମୋହର ହୃଦୟ,
ଏକକୁ ଆରେକ ହେଲା ବିନିମୟ,
ମନରେ ରଖିବ ଏଥିର ପ୍ରସଙ୍ଗ,
ଆମ୍ଭ ପକ୍ଷ ହୋଇ ଚଳାଇବ ସଙ୍ଘ ।”
ବୁଦ୍ଧଦେବ ପଦେ ପଡ଼ି ବାର ବାର
କାଶ୍ୟପ ଆଦେଶ କଲେ ଅଙ୍ଗୀକାର ।
ଥୋକେ ଦିନ ଅନ୍ତେ ବରଷା ବିଗତ,
କୁଶୀ ନଗରକୁ ଗଲେ ତଥାଗତ ।
ମାର୍ଗ ମଧ୍ୟେ ଚଣ୍ଡ ଚଣ୍ଡାଳ ଗୃହରେ
ଅତିଥି ହେଲେକ ଶିଷ୍ୟ ସହିତରେ ।
ସେ ଦିନ ମାଂସାନ୍ନ ଭକ୍ଷାମାତ୍ର ସାର,
ଭକ୍ଷାନ୍ନ ବୁଦ୍ଧେହିଁ ତ୍ୟାଗ କରିବାର ।
ସଙ୍ଘ ଧର୍ମବିଧି ପାଳିବେ ଶ୍ରମଣ,
ଭକ୍ଷାନ୍ନ ଅବଶ୍ୟ କରିବେ ଗ୍ରହଣ ।
ବୁଦ୍ଧଦେବ ହେଲେ ମାର୍ଗରେ ପୀଡ଼ିତ,
କଷ୍ଟେ କୁଶୀଗ୍ରାମେ ହେଲେ ଉପନୀତ ।
ପାଶେ ଉପସ୍ଥିତ ଛନ୍ତି ଶିଷ୍ୟଗଣ,
ଶାଳବନେ କଲେ ଅନ୍ତିମ ଶୟନ ।
ମଦ୍‌ଗଲ୍ଲୀ ଓ ସାରି- ପୁତ୍ର ବେନି ଜନେ
ଯାଇଛନ୍ତି ଚଳି ଶମନସଦନେ ।
ପିତା ଶୁଦ୍ଧୋଦନ ମାତା ପ୍ରଜାବତୀ
ପୂର୍ବରୁ ଶରୀର ତେଜି ଯାଇଛନ୍ତି ।
ଗୌତମୀ, ରାହୁଳ, ଗୋପା ତିନିଜଣ
କାଳଧର୍ମେ ଲଭି ଅଚ୍ଛନ୍ତି ମରଣ ।
ପଞ୍ଚମ ରଜନୀ ହେଲା ସମାଗତ,
ଲଭିଲେ ନିର୍ବାଣ ଦେବ ତଥାଗତ ।

ଇତି ଶ୍ରୀ ବୌଦ୍ଧାବତାର କାବ୍ୟେ ମହାପ୍ରନ୍ଥର
ନାମ ଅଷ୍ଟାଦଶ ସର୍ଗ ।

---

## ଊନବିଂଶ ସର୍ଗ

( ଅନ୍ତ୍ୟଲୀଳା )

ବାସନ୍ତୀ ପୂର୍ଣ୍ଣିମା ତିଥି, ନିର୍ମଳ ଆକାଶେ
ତାରାବଳୀ, ହୀରାଳୀ, ପୂର୍ଣ୍ଣଚନ୍ଦ୍ର ହସେ ।
ଚନ୍ଦ୍ରମାପ୍ଳାବିତ ଧରା, ବିଜନ ବିପିନ,
ଶାଳତରୁତଳେ ଶାକ୍ୟସିଂହ ସମାସୀନ,
ବନଦେବ ସମାନରେ ସ୍ଥିତ ଯୋଗାସନେ,
ଜଟାର କିରୀଟ ଶିରେ ମୁଦ୍ରିତ ନୟନେ ।
ତରୁପତ୍ର ଛିଦ୍ର ଭେଦି ଶଶାଙ୍କ କିରଣ
ଦେବଅଙ୍ଗେ ନିପତିତ ଚିତ୍ରିତ ଯେସନ ।
ବିଭାସେ ବିମଳ ଜ୍ୟୋତି ଦେହେ ସ୍ଥାନେ ସ୍ଥାନେ,
ସୁବର୍ଣ୍ଣ ମୂର୍ତ୍ତିରେ ଖଣ୍ଡ ଦର୍ପଣ ସମାନେ ।
ଆନନ୍ଦେ ଆନନ୍ଦ ଶିଷ୍ୟ ତୃଷିତ ନୟନେ
ବିହ୍ୱଳ ବିଚେତ ପ୍ରଭୁ ମୁଖ ଦରଶନେ ।
ଉନ୍ମେଷି ଆକର୍ଣ୍ଣବ୍ୟାପ୍ତ ପ୍ରଶାନ୍ତ ନୟନ
ଗମ୍ଭୀର କଣ୍ଠରେ ବୁଦ୍ଧ ବୋଇଲେ ବଚନ—
“ହେ ଆନନ୍ଦ ! ଚଣ୍ଡଦତ୍ତ ମାଂସାନ୍ନ ଭୋଜନ
କରି ଆମ୍ଭେ ଏହି ସ୍ଥାନେ ତେଜିଲୁଁ ଜୀବନ ।
ସାବଧାନ ! କେହି ଯେବେ ବୋଲେ ଏହି କଥା,
ପାଇବ ଚଣ୍ଡାଳ ଚଣ୍ଡ ମନ ମଧ୍ୟେ ବ୍ୟଥା ।

ଜାଣ ତ ସୁଜାତାଦତ୍ତ ଅନ୍ନେ ହେଲୁଁ ବୁଦ୍ଧ,
ଚଣ୍ଡ ଚଣ୍ଡାଳର ଅନ୍ନେ ଲଭଛୁଁ ପ୍ରବୋଧ ।
ବଡ଼ ପୁଣ୍ୟବନ୍ତ ଚଣ୍ଡ, ସୁଜାତା କୁମାରୀ,
ଆମ୍ଭ ଜୀବନରେ ଦୁଇଜଣ ହିତକାରୀ ।
ଯାଅ ବତ୍ସ ! ଶିଷ୍ୟେ ଡାକଆଣ ଆମ୍ଭ ପାଶ,
ଜୀବନର ଶେଷ କଥା କରିବୁଁ ପ୍ରକାଶ ।"
ସମବେତ ଶିଷ୍ୟଗଣ ପ୍ରଭୁଙ୍କ ଆଜ୍ଞାରେ,
ଆଚ୍ଛାଦିତ ସର୍ବମୁଖ ବିଷାଦ ଛାୟାରେ ।
ହୃଦୟବେଦନା ଭାସି ଉଠୁଛି ବଦନେ,
ଆଗ୍ନେୟ ପର୍ବତୁଁ ଧୂମ ଉଦ୍‌ଗମ ଯେସନେ ।
ଉପବିଷ୍ଟ ଶିଷ୍ୟବୃନ୍ଦ ଓଳଗି ଚରଣେ
ସେ ଘୋର ନିଶୀଥକାଳେ ପ୍ରଶାନ୍ତ କାନନେ ।
ନୀରବେ ବେଷ୍ଟିତ ଶିଷ୍ୟଗଣ ଚଉପାଶେ,
ନୀରବେ ଚନ୍ଦ୍ରମା ତାରା ଭାସନ୍ତି ଆକାଶେ;
ନୀରବ କାନନ, ଊର୍ଦ୍ଧବାହୁ ଶାଳବନ
ନୀରବ, ସଧୀରେ ବହେ ନିଶୀଥ ପବନ ।
ନୀରବ ନିସ୍ପନ୍ଦ ଚରାଚର ଧରାତଳ,
ନୀରବ ପ୍ରକୃତି ନୈଶ, ହୃଦୟ ନିଶ୍ଚଳ ।
ସୁଧୀର ଗମ୍ଭୀର ସର ମଧ୍ୟେ ପୁଷ୍ପପାତ,
କୋମଳ ଲହରୀବୃତ୍ତ ହୁଏ ଯଥା ଜାତ ।
ନୀରବ ନିର୍ଜନ ବନେ ଶାନ୍ତ ସ୍ଥିର ସ୍ୱରେ
ବୋଇଲେ ଗୌତମ ଶିଷ୍ୟଗଣେ କୋମଳରେ—
"ଭିକ୍ଷୁଗଣ ! ଜୀବନର ଲୀଳା ଅବସାନ—
କର୍ମଚକ୍ର ! ପୃଥ୍ୱୀ ତେଜି ଯିବୁଁ ବର୍ତ୍ତମାନ ।
ଜରା, ମୃତ୍ୟୁ, ବ୍ୟାଧି, କଷ୍ଟ ହସ୍ତୁ ଲଭି ତ୍ରାଣ
କେତେ ଯୁଗ ଯୁଗାନ୍ତରେ ଲଭିଲୁଁ ନିର୍ବାଣ ।
କରିଛୁଁ ଯେ ଅଭିନବ ଧର୍ମ ଆବିଷ୍କାର,
ଭିକ୍ଷୁଗଣ ! ଭକ୍ତିଭାବେ କରିବ ପ୍ରଚାର ।
ଶିଖାଇବ ନରଗଣେ ନବଧର୍ମ ତତ୍ତ୍ୱ,
ଢାଳି ଧର୍ମସୁଧାଧାର ଶୀତଳ ଜଗତ ।
ଦେବୁଁ କିଛି ଶିକ୍ଷା ଜୀବନର ଅବସାନେ
ସଂକ୍ଷେପରେ । ଭିକ୍ଷୁଗଣ ! ଶୁଣ ସାବଧାନେ ।

ହୃଦୟେ ରୋପଣ କର ଧର୍ମବୀଜତତ୍ତ୍ୱ,
କଳ୍ପତରୁରୂପେ କାଳେ ହେବ ପରିଣତ ।
କଳ୍ପତରୁଚ୍ଛାୟାତଳେ ପୃଥ୍ୱୀବାସୀ ନରେ
ଲଭିବେ ନିର୍ବାଣ, ଶାନ୍ତି, ମୁକ୍ତି ସହଜରେ ।"

ଏକଧ୍ୟାନେ ଏକମନେ ପ୍ରଭୁଙ୍କ ବଦନ
ସ୍ଥିରନେତ୍ରେ ସ୍ଥିରଚିତ୍ତେ ସ୍ତବ୍ଧ ଭିକ୍ଷୁଗଣ ।
ପବିତ୍ର ନୈମିଷାରଣ୍ୟେ ଶୁକମୁନି ମୁଖେ
ଶୁଣିଥିଲେ ଋଷିଗଣ ଉପଦେଶ ସୁଖେ ।
ପବିତ୍ର ଭାରତକ୍ଷେତ୍ରେ ଆଜି ଶୁଭ ଦିନ,
ଲଭିବେ ଅମୀୟଶିକ୍ଷା ଶିଷ୍ୟେ ସମାସୀନ ।
ଭଗବାନ ତଥାଗତ ଦେବକଣ୍ଠବାଣୀ,
ଲଭିବେ ନିର୍ବାଣ ଶୁଣି ଜଗତର ପ୍ରାଣୀ ।
ନୈଶ ନୀରବତା ଶାନ୍ତ ପବିତ୍ର କାନନେ,
ବୋଇଲେ ଗୌତମ, "ଆହେ ଶୁଣ ଭିକ୍ଷୁଗଣେ !
ସଂକ୍ଷେପରେ ଦେଉଅଛୁଁ ଯେଉଁ ଉପଦେଶ,
ଅଙ୍କିତ ହୃଦୟେ କର – ଚିତ୍ତସନ୍ନିବେଶ ।

୧ । କେ କରିଛି ଏହି ବିଶ୍ୱ ସଂସାର ସୃଜନ ?
କି ଉପାୟେ ? କି ପଦାର୍ଥ ଯେନି ? କି କାରଣ
ଅଗମ୍ୟ ଅଚିନ୍ତ୍ୟ ତତ୍ତ୍ୱ ସାମାନ୍ୟ ବୁଦ୍ଧିରେ—
ନ ଲେଉଡ଼ି କଳିବ ସିନ୍ଧୁଗର୍ଭ ଅଙ୍ଗୁଳିରେ ।

୨ । ଏ ବିଶ୍ୱ ଅନାଦି ଅବା ଆଦି ? ଏହି ତତ୍ତ୍ୱ
ନ କର ଯତନ ମର୍ମ ହେବ ଅବଗତ ।
ତୁମ୍ଭେ ନର 'ଆତ୍ମତତ୍ତ୍ୱ କିଛି ଜାଣ ନାହିଁ;
ଅନନ୍ତ ବ୍ରହ୍ମାଣ୍ଡ କଥା ଜାଣିବ କିପାଇଁ ।

୩ । ପ୍ରଶ୍ନକର୍ତ୍ତା ଏ କଥାରେ—ଯେ ଦିଏ ଉତ୍ତର—
ଉଭୟେ ଅତ୍ୟନ୍ତ ଭ୍ରାନ୍ତ ଜାଣିବ ନିକର ।
ସାମାନ୍ୟ ମାନବଜ୍ଞାନ ଯୁଗଯୁଗାନ୍ତରେ
ନ ହେବ ସକ୍ଷମ ଜ୍ଞାତ ତତ୍ତ୍ୱ ବିଷୟରେ ।

୪ । ଜଗତର ମହାଚକ୍ର ନିତାନ୍ତ ପ୍ରଚ୍ଛନ୍ନ,
ନ ପାରିବ ଭେଦି ତୁଚ୍ଛ ମାନବନୟନ ।
ଜଡ଼ୀୟ ମାନବନେତ୍ର ଆତ୍ମଦରଶନେ
ଅକ୍ଷମ । ବିଶ୍ୱର ତତ୍ତ୍ୱ ଜାଣିବ କେସନେ ?

୫ । ଅଛ ତୁମ୍ଭେ, ଅଛି ଦେଖ ବିଶ୍ୱଚରାଚର,
ଉଭୟର ତତ୍ତ୍ୱ ଅବାଙ୍ମନସ ଅଗୋଚର ।
ସଚେତନ, ଅଚେତନ ପଦାର୍ଥ ସମସ୍ତ
କର୍ମଚକ୍ରେ ରୂପାନ୍ତର ଦେଖ ଅବିରତ ।

୬ । ଦିବା, ନିଶି, ଋତୁ, ବର୍ଷ କାଳ ମହାଚକ୍ରେ
ପ୍ରବର୍ତ୍ତିତ ଗ୍ରହ ଉପଗ୍ରହ ଶୂନ୍ୟେ ବକ୍ରେ !
ଅଚିନ୍ତ୍ୟ ଅଲଙ୍ଘ୍ୟ ସୂତ୍ରେ ନିୟତ ଧାବିତ,
ଦେଖୁଛ ପ୍ରତ୍ୟକ୍ଷ, ମାତ୍ର ହେତୁ ଅବିଦିତ ।

୭ । ଦେଖୁଛ ପ୍ରତ୍ୟକ୍ଷ ଜାତ ବୀଜରୁ ଅଙ୍କୁର,
ଅଙ୍କୁରରୁ ଜାତ ବୃକ୍ଷ, କୁସୁମ ପ୍ରଚୁର ।
କୁସୁମରୁ ଜାତ ଫଳ, ତହୁଁ ବୀଜ ଜାତ,
ବୀଜ ପୁଣି ବୃକ୍ଷ ସ୍ୱଭାବରେ ଗତାୟାତ ।

୮ । ମେଘରୁ ପତିତ ଜଳ, ତହୁଁ ବାଷ୍ପକଣା,
ବାଷ୍ପୁ ମେଘ ଜାତ ଦେଖ ପ୍ରତ୍ୟକ୍ଷ ଘଟଣା ।
ଅନନ୍ତ ଆକାଶ ମହାଚକ୍ର ପ୍ରବର୍ତ୍ତନେ
ଜଳ ମେଘ ବାଷ୍ପ ଜାତ ଦେଖୁଛ ନୟନେ ।

୯ । ଜଡ଼ ଚେତନର ସୃଷ୍ଟି ଅସୀମ ଅନନ୍ତ,
ମହାଚକ୍ରେ ପ୍ରବର୍ତ୍ତିତ ନିୟତ ଯାବନ୍ତ,
ସେହି ଭୂତଗ୍ରାମ ସେହି ଅନନ୍ତ ଚେତନ,
ସ୍ୱଭାବ ସମୟ ସୂତ୍ରେ ମାତ୍ର ପ୍ରବର୍ତ୍ତନ ।

୧୦ । ଏହି ଆବର୍ତ୍ତନମୟ ନିୟମ ସୂତ୍ରରେ
ଜନ୍ମି ଜୀବ ଜରା, ବ୍ୟାଧି, ମୃତ୍ୟୁ ଭୋଗ କରେ ।
ଯେ ସୂତ୍ରେ ସମୟ ସୃଷ୍ଟି, ସେଥିରେ ବିଲୟ,
ମଧ୍ୟେ ଅବସ୍ଥିତ କାଳମାତ୍ର କଷ୍ଟମୟ ।

୧୧ । କି ଅଚିନ୍ତ୍ୟ ମହାଧର୍ମେ ସୃଷ୍ଟି ସ୍ଥିତି ଲୟ
ହେଉଅଛି—ସର୍ବବ୍ୟାପୀ, ସର୍ବ ଶକ୍ତିମୟ,
ଦେଖୁଛ ପ୍ରତ୍ୟକ୍ଷ ମାତ୍ର ଏହି ଆବର୍ତ୍ତନ,
ଜାଣିବା ମାନବ ପକ୍ଷେ ଅସାଧ୍ୟ କାରଣ ।

୧୨ । ଜଗତର ମହାଧର୍ମ ଅନନ୍ତ ବିର୍ଜିତ
ମଧ୍ୟଗତ ଜୀବ କଷ୍ଟ ଭୁଞ୍ଜେ ଘୂରି ଘୂରି ।
ମହାଚକ୍ର ଗତ ଜୀବ କରେ ହାହାକାର,
କର୍ତ୍ତବ୍ୟ—ଏଥିରୁ ଯହୁଁ ପାରିବ ଉଦ୍ଧାର ।

୧୩ । ଶୁଣଗୋ ହି ମହାସତ୍ୟ କଥା ଭିକ୍ଷୁଗଣ !
ରଖ ମନେ—(୧) ଅଛି ଦୁଃଖ, (୨) ଦୁଃଖର
କାରଣ,
(୩) ଦୁଃଖର ନିରୋଧ, (୪) ଅଛି ନିରୋଧ ଉପାୟ ।
ହୃଦୟରେ ରଖ—ପାଷାଣରେ ରେଖାପ୍ରାୟ ।

୧୪ । ମାନବ ଜୀବନ ଭାସେ ଦୁଃଖସମୁଦ୍ରରେ,
ଜନମ କାଳରେ ଦୁଃଖ, ଦୁଃଖ ଶୈଶବରେ,
ଯୌବନରେ ଅଛି ଦୁଃଖ ବାର୍ଦ୍ଧକ୍ୟ ମରଣେ,
ମହାଦୁଃଖଚକ୍ରେ ଆବର୍ତ୍ତିତ ଲୋକଗଣେ ।

୧୫ । ଜଗତ ସମାନ ମହାମାନବଜୀବନ,
ଆଶାରୂପ ମହାବାୟୁ ବହେ ପ୍ରତିକ୍ଷଣ,
ନିରାଶା ବାରିଦ, ଯନ୍ତ୍ରଣାର ବଜ୍ରଧ୍ୱନି,
ବିୟୋଗ ପ୍ରବଳ ଜଳ, ବିପଦ ଅଶନି ।

୧୬ । ସୌନ୍ଦର୍ଯ୍ୟ, ଐଶ୍ୱର୍ଯ୍ୟ, ବୀର୍ଯ୍ୟ, ପ୍ରଣୟ, ଜୀବିକା,
କାହିଁ ତୃପ୍ତି ଲଭେ ଜୀବ ? ଘୋର ମରୀଚିକା ।
ଲାଳସା ଅତୃପ୍ତି, ବୃଦ୍ଧି ଲଭିଲେ ସକଳ,
ହବ୍ୟାହୁତ ପ୍ରାପ୍ତେ ଯଥା ଜ୍ୱଳନ୍ତା-ଅନଳ ।

୧୭ । କି ସକାଶେ ଦୁଃଖ ? କିବା ଦୁଃଖର କାରଣ ?
କି ସକାଶେ ସହନ୍ତି ବା ଦୁଃଖ ଜୀବଗଣ ?
ଦୁଃଖର କାରଣ ଜନ୍ମ ଦେଖୁଛୁଁ ପ୍ରତ୍ୟକ୍ଷ,
ନ ଜନ୍ମିଲେ କପାଁ ଦୁଃଖ ଭୁଞ୍ଜନ୍ତେ ବା ଲୋକ ।

୧୮ । କି ସକାଶେ ଜନ୍ମଲାଭ କରେ ଜୀବଗଣ ?
ଭିକ୍ଷୁଗଣ ! ଏକମାତ୍ର ଏଥିର କାରଣ—
ଜନମନ୍ତି ଜୀବଗଣ କର୍ମଫଳ ବଳେ,
ଆତ୍ମକର୍ମେ ଦୁଃଖଭୋଗ କରନ୍ତି ସକଳେ ।

୧୯ । ସୁଖ ବା ଦୁଃଖର ହେତୁ କେବଳ ହିଁ କର୍ମ,
କର୍ମଫଳେ କେ ଦେବତା କେବା କୀଟାଧମ,
କର୍ମରେ ଗଠିତ ଏହି ବିଶ୍ୱ ଚରାଚର,
ଚେତନା ଚେତନ ନୁହେ କର୍ମୁ ସ୍ୱତନ୍ତର ।

୨୦ । କର୍ମଫଳେ କେଉଁ ଲୋକ ପୃଥ୍ୱୀ ଅଧିପତି,
ଆତ୍ମକର୍ମେ ଧନହୀନ ଭୁଞ୍ଜଇ ଦୁର୍ଗତି ।
କେହି ଜ୍ଞାନୀ, କେହି ମୂର୍ଖ, ଧାର୍ମିକ, ପାମର,
କେ କୁତ୍ସିତ, କେବା ପାଏ ରୂପ ମନୋହର ।

୨୧ । କଲେ କର୍ମ ପଶୁ ପରି ପଶୁଜନ୍ମ ଲଭି,
ଲଭିବ ଦେବତା ଜନ୍ମ ଧରି ଦେବଭାବ ।
ଆସୁରିକ କର୍ମେ ଲଭି ଅସୁର ଜନମ,
ତିର୍ଯ୍ୟକ କର୍ମରେ ହେବ ତିର୍ଯ୍ୟକ ଅଧମ ।

୨୨ । ଅସତେ—ଅସତ, ସତ୍ୟେ—ସତ୍ୟର ମିଳନ,
ସମଧର୍ମୀ ଜଳ କରେ ଜଳ ଆକର୍ଷଣ ।
ପୁଣ୍ୟକର୍ମୁ ପୁଣ୍ୟ ଜାତ, ପାପୁଁ ଜାତ ପାପ,
ସମାନେ ସମାନେ ମେଳ, ସମାନେ ପ୍ରତାପ ।

୨୩ । ଭିକ୍ଷୁଗଣ ! ଯେଉଁ ବୀଜ କରିବ ବପନ,
ଲଭିବ ସେ ଫଳ କେବେ ନ ହେବ ମେଣ୍ଟଣ ।
ଚୂତବୃକ୍ଷେ ଫଳେ ଚୂତ ପନସେ ପନସ,
ଖର୍ଜୁରେ ଖର୍ଜୁର ଫଳ ଫଳିବ ଅବଶ୍ୟ ।

୨୪ । ବର୍ତ୍ତମାନ ଭୁଞ୍ଜେ ଅତୀତର କର୍ମଫଳ,
ବର୍ତ୍ତମାନ କର୍ମଫଳ ଭାବୀକୁ ସମ୍ବଳ ।
କଦା ଅତୀତର ବର୍ତ୍ତମାନ ରୂପାନ୍ତର,
ନିଜ ଶୁଭାଶୁଭ କର୍ମଫଳ ଭୁଞ୍ଜେ ନର ।

୨୫ । ଏହି କର୍ମଫଳେ ଜୀବ ଜନ୍ମ ଜନ୍ମାନ୍ତରେ
ଅସଂଖ୍ୟ ଅସଂଖ୍ୟ ଯୋନି ଭ୍ରମେ ନିରନ୍ତରେ ।
ସହେ ଜୀବ ଘୋର କର୍ମଫଳ, ଭିକ୍ଷୁଗଣ ।
ସଂସାରେ କାହାର ସାଧ୍ୟ କରିବ ଲଙ୍ଘନ ?

୨୬ । ଗ୍ରହ ଉପଗ୍ରହ ଅଛି ଅଲଙ୍ଘ୍ୟ ଯେସନ,
ଋତୁ, ଦିବା, ନିଶି, ମାସ ଆଦି ବିବର୍ତ୍ତନ ।
ତେସନ କର୍ମର ଫଳ ଅଲଙ୍ଘ୍ୟ ଅପାର,
କାହାର ବା ସାଧ୍ୟ କରିପାରେ ପରିହାର ?

୨୭ । ଜଗତରେ କର୍ମଫଳେ ଜନ୍ମେ ଲୋକଗଣ ।
କିପାଁ କର୍ମ ? ଲୋକେ କର୍ମ କରେ କି କାରଣ ?
ଦୁର୍ନିବାର ସୁଖତୃଷ୍ଣା କର୍ମର କାରଣ,
ସୁଖ ଲାଳସାରେ ଲୋକେ କର୍ମେ ନିମଗନ ।

୨୮ । କୃଷକ ନିଦାଘେ କରେ ଭୂମିକୁ କର୍ଷଣ,
ସିଂହାସନସ୍ଥିତ ନୃପ ପ୍ରଜାଙ୍କୁ ପାଳନ,
ବଣିକ ସାଗରଗର୍ଭେ ମହାବୀର ରଣେ—
ରଣେ ଲିପ୍ତ ସର୍ବେ ସୁଖତୃଷ୍ଣାର କାରଣେ ।

୨୯ । ପଶୁ, ପକ୍ଷୀ, କୀଟ, ଜଳଚର, ସ୍ଥଳଚର,
କରନ୍ତି ଆହାର ଅନ୍ୱେଷଣ ନିରନ୍ତର ।
ପ୍ରଣୟ ବିବାଦ ସୁଖଲାଳସାରେ କରେ,
ସୁଖଲାଳସାରେ ହିଂସା କରେ ପରସ୍ପରେ ।

୩୦ । ଜୀବର ହୃଦୟେ କିପାଁ ସୁଖ ଅଭିଳାଷ ?
ମୃଗତୃଷ୍ଣା କି ପଦାର୍ଥ ? କାହିଁ ଏହା ବାସ ?
ତୃଷ୍ଣାର କାରଣ ସୁଖ ଦୁଃଖ ଅନୁଭବ,
ସୁଖେ ତୃପ୍ତି—ଦୁଃଖେ କଷ୍ଟ ମଣଇ ମାନବ ।

୩୧ । ବାହ୍ୟବସ୍ତୁ ସହିତରେ ଇନ୍ଦ୍ରିୟସଂଯୋଗ,
ଇନ୍ଦ୍ରିୟରେ କରେ ଲୋକ ଦୁଃଖ ସୁଖ ଭୋଗ,
ଇନ୍ଦ୍ରିୟ ବିକଳେ କାହିଁ ଅନୁଭବ ଶକ୍ତି;
ସୁଖ ଦୁଃଖ ଅନୁଭବ ଇନ୍ଦ୍ରିୟର ଗତି ।

୩୨ । ଜଗତର ରୂପ, ରସ, ଗନ୍ଧ, ମନୋହର
ଇନ୍ଦ୍ରିୟ ଓ ମନ ଭୋଗ କରେ ନିରନ୍ତର ।
ଇନ୍ଦ୍ରିୟ ସହିତ ବାହ୍ୟ ବସ୍ତୁର ସମ୍ବନ୍ଧ
କି ଅଛି ? ଭୁଞ୍ଜଇ କିପାଁ ରୂପ ରସ ଗନ୍ଧ ?

୩୩ । କିପାଁ ଅଭିଳାଷ କରୁଁ ନାରୀ ରୂପବତୀ ?
ନାରୀରୂପେ ହୁଏ କିପାଁ ବିଚଳିତ ମତି ?
ସୁନ୍ଦର କୁସୁମ, ମିଷ୍ଟଫଳେ ଅଭିଳାଷ ?
ଦେଖୁଛୁଁ ଭୁଞ୍ଜୁଛୁଁ ; ମାତ୍ର ହେତୁ ଅପ୍ରକାଶ ।

୩୪ । ନାରୀ ଲାବଣ୍ୟେ କି ହୁଏ ଅନ୍ଧ ବିମୋହିତ ?
କର୍ଣ୍ଣଜିହ୍ଵାହୀନ ସ୍ଵାଦୁ ସଙ୍ଗୀତେ ବଞ୍ଚିତ ।
ଉନ୍ମାଦ ନ ବୁଝେ କିଛି ରୂପ ରସ ଗନ୍ଧ,
ମାଦକ ଦେଖୁଛି ମୋହ ସହିତ ସମ୍ବନ୍ଧ ।

୩୫ । ଶରୀରବିଶେଷେ ଦ୍ରବ୍ୟଗୁଣ ଭିନ୍ନ ଭିନ୍ନ
କରେ କ୍ରିୟା, ପ୍ରତ୍ୟକ୍ଷରେ ଦେଖୁଁ ପ୍ରତିଦିନ,
ଘଟାଇଲା ଯେଉଁ ମାଂସ ଆମ୍ଭର ମରଣ,
ଚଣ୍ଡାଳ ଚଣ୍ଡର ଅଟେ ସେ ମାଂସ ଜୀବନ ।

୩୬ । ପ୍ରାଣୀଭେଦେ କାଳଭେଦେ କେତେ ରୂପାନ୍ତର,
ରୂପ, ରସ, ଗନ୍ଧ ଘଟେ ଦେଖୁଁ ନିରନ୍ତର ।
ବିଷ୍ଟା'କୃମି ବିଷ୍ଟା ମଧ୍ୟେ— ବିଷକୃମି ବିଷେ
ବଞ୍ଚେ, କିନ୍ତୁ ଅନ୍ୟ ପ୍ରାଣୀଗଣ ପକ୍ଷେ କି ସେ ?

୩୭ । ସେହି ଏକ ପଦାର୍ଥରେ ଏକ ଲଭେ ସୁଖ,
ଦେଖୁଁ ଅନ୍ୟଲୋକ ସେହି ଦ୍ରବ୍ୟରେ ବିମୁଖ,
ବିହିତ ପଦାର୍ଥ ସୁଖ ଦୁଃଖର ଆଧାର,
ସୁଖ ଦୁଃଖ ଅନୁଭବ ଚିତ୍ତର ବିକାର ।

୩୮ । ଅନୁଭବେ କେହି ସୁଖ କରି ସୁରାପାନ,
ବର୍ଜନ କରଇ ଅନ୍ୟ ସମ ବିଷ ଜ୍ଞାନ ।
ଏଥୁଁ ସୁଖ ଦୁଃଖ ଅନୁଭବ ଚିତ୍ତଭ୍ରାନ୍ତ,
ଆକାଙ୍‌କ୍ଷା ବର୍ଜନେ ଚିତ୍ତ ମଧ୍ୟେ ଲଭେ ଶାନ୍ତ ।

୩୯ । ଭିକ୍ଷୁଗଣ ! ରଖ ମନେ, ଇନ୍ଦ୍ରିୟଲାଳସା
ନ ଡେଜିଲେ ନାହିଁ କେଭେ ଉଦ୍ଧାର ଭରସା ।
ଯେତେକାଳ ଥିବ ତୁମ୍ଭ ସୁଖ ଦୁଃଖ ଜ୍ଞାନ,
ଜାଣିବ ଏହା ହିଁ ଅଟେ ଦୁଃଖର ନିଦାନ ।

୪୦ । ଭ୍ରାନ୍ତ ନରସନେ ହେବ ଦୁଃଖର ନିରୋଧ,
ନ ଲଭିବ ଜନ୍ମ, ଲଭି ତତ୍ତ୍ୱଜ୍ଞାନ ବୋଧ ।
ଯେ ଉପାୟେ ଭ୍ରାନ୍ତ ଦୂର ହେବ, ଭିକ୍ଷୁଗଣ !
ବୋଲିବୁଁ ସଂକ୍ଷେପେ ସବ କରନ୍ତୁ ଶ୍ରବଣ ।

୪୧ । ଆଠଟି ଏହାର ମାର୍ଗ—୧-ଶୁଦ୍ଧଦୃଷ୍ଟିସାର,
୨-ସତ୍ୟବାକ୍ୟ, ୩-ସୁସଙ୍କଳ୍ପ, ୪-ସାଧୁ ବ୍ୟବହାର,
୫-ପୁଣ୍ୟକର୍ମ, ୬-ଶୁଦ୍ଧସ୍ମୃତି, ୭ ନିତ୍ୟ ସତ୍ୟଧ୍ୟାନ,
ନିଃସଂଶୟ ରୂପେ ହୃଦେ ବ୍ରହ୍ମତତ୍ତ୍ୱଜ୍ଞାନ ।

୪୨ । କଷ୍ଟଭୁଞ୍ଜେ ଜୀବ କଲେ ଦଶଟି ବେଭାର—
୧-ଚୌର୍ଯ୍ୟ, ୨ ହିଂସା, ୩ ପିଶୁନତା,
୪-ଯଥେଚ୍ଛଆଚାର,
୫-ନିଷ୍ଠୁରତା, ୬-ମିଥ୍ୟାଚାର, ୭-ପ୍ରରୁଷଭାଷିତା,
୮-ପ୍ରାଣୀହିଂସା, ୯-ମିଥ୍ୟାଦୃଷ୍ଟି,
୧୦-ବୋଲିବାରମିଥ୍ୟା ।

୪୩ । ଇନ୍ଦ୍ରିୟ ସୁଖରେ ମତ୍ତ ମୂଢ଼ ଭିକ୍ଷୁଗଣ !
ନ କର ସନ୍ନ୍ୟାସବ୍ରତେ ଦେହ ନିଷ୍ପୀଡ଼ନ ।
ମଧ୍ୟମାର୍ଗେ ଥାଇ—ଦଶ କଷ୍ଟର କାରଣ
ତେଜି ଅଷ୍ଟ ସାଧୁ କାର୍ଯ୍ୟ କର ଆଚରଣ ।

୪୪ । ବିବେକ ଆଶ୍ରୟେ ହୁଅ ଧ୍ୟାନେ ଅଗ୍ରସର,
ବିଶୁଦ୍ଧ ଶରୀର ମନ ରଖ ନିରନ୍ତର ।
ସହଜେ ଅବିଦ୍ୟା ଦୂର ହେବ ଜ୍ଞାନୋଦୟ,
କିବା ସତ୍ୟ କି ଅସତ୍ୟ ଜ୍ଞାନେ ପରିଚୟ ।

୪୫ । ବିରାଗ ଜନ୍ମିଲେ ମନେ ଇନ୍ଦ୍ରିୟ ସୁଖରେ,
ଦେଖିବ ପ୍ରକୃତିଲୀଳା ସୁଜ୍ଞାନ ବଳରେ ।
ଉତ୍‌ଥିତ ଲହରୀ ସମ ଜୀବନ ସାଗରେ,
ଧାବିତ ସୌଭାଗ୍ୟ ଦୁଃଖ ପର୍ଯ୍ୟାୟକ୍ରମରେ ।

୪୬ । ଏକ ହିଁ ସଳିଳ ବହୁ ଲହରୀ ସମାନ,
ଜନ୍ମ ଜନ୍ମାନ୍ତରେ ଜୀବ ହୁଏ ଧାବମାନ
ଉତ୍‌ଥାନ ପତନ ଲୀଳା ଅନନ୍ତ ସାଗରେ
ଲହରୀ ଜୀବନଲୀଳା ଅନନ୍ତ ରୂପରେ ।

୪୭ । ଏକ ଜୀବ କାଳସ୍ରୋତେ ଅନନ୍ତ ଅପାର
କର୍ମଫଳ ସୁଖ ଦୁଃଖ ବିବିଧ ପ୍ରକାର
ଭୁଞ୍ଜି । ବେଳାଭୂମି ସ୍ପର୍ଶେ ସିନ୍ଧୁ ସ୍ରୋତମାନ,
ଜଳେ ଲୀନ ଜୀବଲୀଳା ଲଭିଲେ ନିର୍ବାଣ ।

୪୮ । ଏକ ଜୀବ ବହୁ ଜନ୍ମେ ବହୁ ପୁଷ୍ପ ପରି
ଗ୍ରଥିତ କୁସୁମହାର କର୍ମସୂତ୍ର ଧରି ।
ବିବିଧ ଯୋନିରେ ଜନ୍ମ ବିବିଧ ପ୍ରକାର,
ଛିନ୍ନ କର୍ମସୂତ୍ରେ ଜୀବ ପୁଷ୍ପ ଏକାକାର ।

୪୯ । ସାଧନା ବଳରେ ଜୀବ ଆସକ୍ତିଅତୀତ
ହେଲେ ସୁଖ ଦୁଃଖ ଦୂର, ନିର୍ବାଣ ନିଶ୍ଚିତ ।
ଅନିତ୍ୟ ଜୀବନ ଲଭେ ନିର୍ବାଣ ଅତୁଳ,
ଲୁପ୍ତ ଉତ୍‌ପାଦିକା ଶକ୍ତି ନିମୂଷ ତନ୍ତୁଳ ।

୫୦ । ନିଷ୍କ୍ରିୟ ଜୀବନେ ଜନ୍ମ, ଜରା ବା ମରଣ
ହେବ ଲୁପ୍ତ ସୁଖ ଦୁଃଖ ଲାଲସାକାରଣ ।
ସହଜରେ ଜୀବ ଶିବ ହେବ ସେ କାଳରେ,
ବୁଦ୍ଧତ୍ୱ ଲଭିବ ଭିକ୍ଷୁଗଣ ! ସହଜରେ ।

୫୧ । ନିର୍ବାଣ ସଉଧ ସଙ୍ଘ ପବିତ୍ର ରୁଚିର,
ଭିତ୍ତି ଧର୍ମଚକ୍ର, ଚାରି ସତ୍ୟ ତା ପ୍ରାଚୀର ।
ଅଷ୍ଟ ସ୍ତମ୍ଭ ମହାସତ୍ୟେ ସୌଧ ପ୍ରତିଷ୍ଠିତ,
ଲଭିବେ ସେ ଗୃହେ ଭିକ୍ଷୁ ଭିକ୍ଷୁଣୀ ବାଞ୍ଛିତ ।

୫୨ । ଯାଅ ଭିକ୍ଷୁଗଣ ! ଚାଲି ଦେଶ ଦେଶାନ୍ତରେ,
ନିର୍ଭୟ ଅନ୍ତରେ ନବଧର୍ମସୃଷ୍ଟି କରେ ।
କର ଦୁଃଖଗ୍ରସ୍ତ ପ୍ରାଣୀମାନଙ୍କୁ ଉଦ୍ଧାର,
ବୁଦ୍ଧ, ଧର୍ମ, ସଙ୍ଘ ପୁଣି ନିର୍ବାଣ ପ୍ରଚାର ।

୫୩ । ଶିଖିଲ ଯେ ଧର୍ମ କର ପ୍ରମାଣ ଜୀବନେ,
ପ୍ରବେଶ ଦୁର୍ଗମ ମାର୍ଗେ ଗହନ କାନନେ ।
ଭୂଧରେ, ସାଗରେ, ଦେଶେ, ଗ୍ରାମେ, ଲୋକାଳୟେ
ପ୍ରଚାର ନିର୍ବାଣତତ୍ତ୍ୱ ନିର୍ଭୟହୃଦୟେ ।

୫୪ । କରିବ କର୍ତ୍ତବ୍ୟ କାର୍ଯ୍ୟ ସାଧନ କେବଳ,
ବିଚଳିତ ହେବ ନାହିଁ ନ ହେଲେ ସଫଳ,
ସାଫଲ୍ୟ ବିଷୟେ କିଛି ନ କର ବିଚାର,
ମଣିବ କେବଳ କର୍ମେ ତୁମ୍ଭ ଅଧିକାର ।”

× × × ×

ମହାନିର୍ବାଣର କାଳ ଏବେ ଉପସ୍ଥିତ,
ନୀରବ, ନିଷ୍ପନ୍ଦ ବୁଦ୍ଧ ନୟନ ମୁଦ୍ରିତ,
କଲେ ଜୟ ଜୟ ଧ୍ୱନି ମିଳି ଭିକ୍ଷୁଗଣ—

ଧର୍ମଂ ମେ ଶରଣଂ—
ବୁଦ୍ଧ ମେ ଶରଣଂ—
ସଂଘ ମେ ଶରଣଂ—

ମହାକଣ୍ଠେ ମହାକଥା ଶାନ୍ତ ସୁଗମ୍ଭୀର,
ନୀରବ କାନନ, ନୈଶ ପବନ ସୁସ୍ଥିର ।
ମିଳିତ ଭିକ୍ଷୁକଗଣ ତ୍ରାସେ ମହାକଥା
ପ୍ଲାବିତ—ଚନ୍ଦ୍ରିକା ସୁଧା ମହାବନେ ଯଥା ।
ଶାଳ ମହାତରୁତଳେ ଦେବ ମୂର୍ତ୍ତିମାନ,
ସମାଧିସ୍ଥ ବୁଦ୍ଧଦେବ ଲଭିଲେ ନିର୍ବାଣ ।
ନୈଶ ନୀରବତା ନାଶି ଉଚ୍ଚେ ଭିକ୍ଷୁଗଣ
ଗାଇଲେ ଗମ୍ଭୀରେ ସର୍ବେ—
‘ବୁଦ୍ଧ ମେ ଶରଣଂ ।’

ଗୁରୁଦେବ ଶେଷ ପଦଧୂଳି ଲେପି ଶିରେ,
‘ବୁଦ୍ଧ ମେ ଶରଣଂ’—ଉଚ୍ଚେ ଗାଇଲେ ଭକ୍ତିରେ ।
ଘୃତଲିପ୍ତ ତୂଳାରାଶି ଲେପି ଶ୍ରୀ ଅଙ୍ଗରେ,
ସଜାଇ ପବିତ୍ର ଚିତା ଚନ୍ଦନକାଷ୍ଠରେ,

ଥୋଇ ଦେବଦେହ ଭକ୍ତ ବିନୟ ସମ୍ମାନେ
ଅନଳ ପ୍ରଦାନ କଲେ ନିଶା ଅବସାନେ ।
ଶିଷ୍ୟଗଣ, ଭାରତର ନରପତିଗଣ
ସ୍ଥାନେ ସ୍ଥାନେ ଚିତାଭସ୍ମ କଲେକ ସ୍ଥାପନ ।
ଦେଶ ଦେଶାନ୍ତରେ ଶିଷ୍ୟ, ନୃପତି ଭକ୍ତରେ
ଥାପିଲେ ବୁଦ୍ଧଙ୍କ ଦନ୍ତ ପବିତ୍ର ମନ୍ଦିରେ ।
ଭାରତ ଦକ୍ଷିଣ ପ୍ରାନ୍ତ ସାଗର ଗର୍ଭରେ,
ସିଂହଳର ଅଧୀଶ୍ୱର ଭକ୍ତ ବିନୟରେ ।
ବୁଦ୍ଧଙ୍କ ପବିତ୍ର ନାମ ପବିତ୍ର ଆଗାରେ,
ଅଙ୍କିତ, ପଠିତ, ସ୍ତୁତ ପବିତ୍ର ବିହାରେ ।
ଗିରିରାଜ ହିମାଳୟ ପୁଣ୍ୟ ପଦଦେଶେ
ଜନ୍ମ ଲଭିଥିଲେ ବୁଦ୍ଧଦେବ ଶାକ୍ୟବଂଶେ ।
ମହାନ ମହିମା ବ୍ୟାପ୍ତ ଜଗତମଣ୍ଡଳେ,
ଗାଇବେ ଅନନ୍ତକାଳ ମାନବ ସକଳେ ।

ଇତି ଶ୍ରୀ ବୌଦ୍ଧାବତାର କାବ୍ୟେ
ଅନ୍ତ୍ୟଲୀଳା ନାମ ଊନବିଂଶ ସର୍ଗ ।

---

# ପରିଶିଷ୍ଟ

କି ଶିକ୍ଷା ଲଭିଲ ଗ୍ରନ୍ଥ କରି ଅଧ୍ୟୟନ ?
ଭୁଞ୍ଜନ୍ତି ସ୍ୱକୃତ କର୍ମଫଳ ଲୋକଗଣ ।
ହେ ମାନବ ! ଲୋଡ଼ ଯେବେ ଆପଣା ମଙ୍ଗଳ,
ସାଧୁ କାର୍ଯ୍ୟଯୋଗେ କର ଜୀବନ ନିର୍ମଳ ।
କର ସାଧୁସଙ୍ଗ ସାଧୁଗ୍ରନ୍ଥ ଅଧ୍ୟୟନ,
ସାଧୁମାର୍ଗ ଅନୁସରି ସାର୍ଥକ ଜୀବନ ।
ସାଧୁ କାର୍ଯ୍ୟ ବିନା ନାହିଁ ପରିତ୍ରାଣ ପଥ,
ଜଗତର ସର୍ବ ସାଧୁ ଶାସ୍ତ୍ର ଏହି ମତ ।
ମହାତ୍ମା ମହର୍ଷିଗଣ ସାଧୁ ଉପଦେଶ—
ଏକାନ୍ତ ମନରେ କର ମାନସ ନିବେଶ ।

ଜଗତ ଗରଳ ବୃକ୍ଷେ ଦୁଇ ସୁଧାଫଳ—
ନୀତିଗ୍ରନ୍ଥ ପାଠ ସାଧୁ ସଙ୍ଗମ କେବଳ ।
ବୃଦ୍ଧ ବିଷ୍ଣୁଶର୍ମା ବୋଲିଛନ୍ତି ଏହି କଥା—
ଚିତ୍ତେ ଚେତ ଭାଳ ଏହା ନୁହେଁଟି ଅନ୍ୟଥା ।
ନାରାୟଣ ଅବତାର ମହର୍ଷି ଗୌତମ,
ଆଜନ୍ମ ତପସ୍ୱୀ ପୂତଚିତ୍ତ ନରୋତ୍ତମ ।
ଲଭିବେ ଜଗତବାସିଗଣେ ପରିତ୍ରାଣ,
କଲେ ପ୍ରଭୁ ତେଣୁ ଆତ୍ମସୁଖ ବଳିଦାନ ।
ଅତୁଳ ଐଶ୍ୱର୍ଯ୍ୟ ସୁଖ ପ୍ରିୟ ପରିଜନେ
ତେଜି ହେଲେ ଭିକ୍ଷୁ ଲୋକ ଉଦ୍ଧାର କାରଣେ ।
ଜଗତ ଜଞ୍ଜାଳମୟ, ଜନ୍ମ, ମୃତ୍ୟୁ, ଜରା;
ମାନବାତ୍ମା କର୍ମସୂତ୍ରେ ଭୁଞ୍ଜେ ପରମ୍ପରା ।
ଯେ ଉପାୟେ ଲୋକଗଣେ ଲଭିବେ ଉଦ୍ଧାର,
କରିଛନ୍ତି ଶାକ୍ୟସିଂହ ମାର୍ଗ ଆବିଷ୍କାର ।
ଅନିତ୍ୟ ଜୀବନ ଧନ ଜନ ସର୍ବ ଭାଇ—
ଅବିନାଶୀ ମାନବାତ୍ମାନନ୍ତକାଳସ୍ଥାୟୀ ।
ସୁଖ ଦୁଃଖ ଭୋଗାଭୋଗ ଆତ୍ମକର୍ମଫଳେ,
ଅନାମୟ ପଦଲାଭ ସାଧୁ କାର୍ଯ୍ୟବଳେ ।
କର ଜୀବେ ଦୟା, ପ୍ରଭୁନାମକୁ ସ୍ମରଣ,
ନିଷ୍କଳଙ୍କ କାର୍ଯ୍ୟଯୋଗେ ପବିତ୍ର ଜୀବନ ।
ଆଦର୍ଶ ପୁରୁଷ ମହାମୁନି ତଥାଗତ,
ଲକ୍ଷ୍ୟ ରଖି ଚଳ ତାଙ୍କ ପ୍ରଦର୍ଶିତ ପଥ ।
ଏ ମହାପୁରାଣ ପ୍ରତିଦିନ ନିୟମରେ
ଅଧ୍ୟୟନ କରୁଥିବ ପବିତ୍ର ମନରେ ।
ଅଧ୍ୟୟନ କରି ଗ୍ରନ୍ଥ ଭାବ ହୃଦଙ୍ଗମ,
ନ ହୁଅ ଶର୍କରାବାହୀ ବଳୀବର୍ଦ୍ଦ ସମ ।
ନ କର ସମୟ ନାଶ ଅଳୀକ କାର୍ଯ୍ୟରେ,
ଭାବୀଦଶା ଭାବି ଚଳ ସୁନୀତିମାର୍ଗରେ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ

# ସୂଚୀ

# ପୂଜାଫୁଲ

## ପୂଜାଫୁଲ

କୁସୁମ ସମ୍ଭାରେ ଦେଇ ପୂଜିବାରେ
ଏକାନ୍ତ ବାସନା ପ୍ରାଣେ,
କେବଣ କୁସୁମ ପ୍ରଭୁ-ମନୋରମ
ବୃତ୍ତାନ୍ତ ମୁଁ ତ ନ ଜାଣେ ।

ନୀଳ ରକ୍ତ ପୀତ ଲୋହିତ ହରିତ
ସୁଗନ୍ଧ ସୁନ୍ଦର କେତେ,
ପୁଷ୍ପ ଜଗତରେ ଦେଖେଁ ନୟନରେ
ବିବିଧ ଆକାରେ ଯେତେ ।

ମନୋଲୁବ୍ଧ ବାସେ ବିଶ୍ୱରେ ବିକାଶେ
ଆମୋଦିତ ଦିଶିଦିଶି,
ଋତୁ ପର୍ଯ୍ୟାୟରେ ବିବିଧ ବର୍ଣ୍ଣରେ
ପ୍ରସ୍ଫୁଟିତ ଦିବା ନିଶି ।

କିବା ମନୋରମେ ଶାଖା ଲତା ଦ୍ରୁମେ
ନବ ପେଲବ ପଲ୍ଲବେ
ଫୁଟି ଚହଟଇ ମଧୁ ଗନ୍ଧେ ବାଇ
ବେଷ୍ଟିତ ମଧୁପ ସବେ ।

ଅରୁଣ ପ୍ରକାଶେ ସୌନ୍ଦର୍ଯ୍ୟ ବିକାଶେ
ବେଦେ ପ୍ରଣବ ଓଁକାର,
ଝରଇ ନୀହାର ମୁକୁତାର ହାର
ଅଳଙ୍କାରେ ଅଳଙ୍କାର ।

କେମନ୍ତ ନିର୍ମଳ କେମନ୍ତ ସୁଢ଼ଳ
ରଚନାକୌଶଳ ସୀମା,
ରୂପ ରସ ବାସେ ଗୁଣରେ ବିକାଶେ
ଅପରୂପ ମଧୁରିମା ।

କାହାର ମହିମା ଗୁଣର ଗରିମା
ଜଗତେ ରଟାଏ ଖ୍ୟାତି,
ରଚନା ସୁଷମା ଲାବଣ୍ୟର ସୀମା
ପ୍ରକଟଇ ଅପୂର୍ବ ଶାନ୍ତି ।

ଯେ ପ୍ରଭୁ ଇଙ୍ଗିତେ ଦେଖେ ଅପ୍ରମିତେ
ପୁଷ୍ପ ଜଗତେ ବିସ୍ତାର,
ମଳିନ ହସ୍ତରେ ତୋଳି ସେ ପୁଷ୍ପରେ
ବିଡ଼ମ୍ବନା ପୂଜିବାର ।

ଭକ୍ତି ପୁଷ୍ପ ଦଳେ ପବିତ୍ରତା ଜଳେ
ଧୌତ କରି ବାଞ୍ଛା ମନେ—
କରି ସମର୍ପଣ ପ୍ରଭୁଙ୍କ ଚରଣ
ପୂଜୁଥିବ ଅନୁକ୍ଷଣେ !

———

## ମାନସ ପ୍ରତିମା

"ନ ତତ୍ର ସୂର୍ଯ୍ୟୋ ଭାତି ତାରକଂ
ନେମା ବିଦ୍ୟୁତୋଭାନ୍ତି କୁତୋଽୟମଗ୍ନିଃ ।
ତମେବ ଭାନ୍ତମନୁଭାତି ସର୍ବଂ
ତସ୍ୟ ଭାସା ସର୍ବମିଦଂ ବିଭାତି ।" ଉପନିଷଦ୍ ।

ବିଶାଳ ଅବନୀ ନର ନୟନେ ବିକାଶେ,
ଅଣୁ ରୂପେ ଭାସେ ମାତ୍ର ଅନନ୍ତ ଆକାଶେ ।
ବିଶ୍ୱ ବ୍ରହ୍ମାଣ୍ଡର ପତି ଅନନ୍ତ ମହାନ,
କି ଆକାରେ ତାଙ୍କ ରୂପ କରିବି ନିର୍ମାଣ ।

ଯେ ପ୍ରଭୁ ଇଙ୍ଗିତେ ବିଶ୍ୱ ସଂସାର ଅସୀମା,
କେଉଁ ଉପକରଣରେ ଗଢ଼ିବି ପ୍ରତିମା ।
ବାକ୍ୟ-ମନ-ଅଗୋଚର କଳ୍ପନା ଅତୀତ,
ଉଦ୍ଦେଶ୍ୟ ନ ପାଇ ଧ୍ୟାନେ ଅବସନ୍ନ ଚିତ୍ତ ।

ଚନ୍ଦ୍ର ସୂର୍ଯ୍ୟ ଗ୍ରହାବଳୀ ନକ୍ଷତ୍ରମଣ୍ଡଳ,
ଚଞ୍ଚଳା ଚପଳାଜ୍ୱାଳା ଜ୍ୱଳନ୍ତ ଅନଳ,
ବିକାଶେ ଜଗତେ ଜ୍ୟୋତି ଯାହା ଆଦେଶରେ,
ସେ ସବୁ ଅଶକ୍ତ ବିଭୁ ବର୍ଣ୍ଣି ବିକାଶରେ ।

ହେ ମହାନ ମହେଶ୍ୱର ମାନସଦେବତା,
ପ୍ରାଣେ ଅନୁଭବେଁ ସର୍ବସ୍ଥାନେ ତୁମ୍ଭ ସତ୍ତା ।
ନିଃଶ୍ୱାସେ ଶୋଣିତାଧାରେ ନିତ୍ୟ ବିଦ୍ୟମାନ,
ହୃଦୟମନ୍ଦିରେ ଶୁଭେ ଗମ୍ଭୀର ଆହ୍ୱାନ ।

ହେ ପ୍ରଭୁ ସଂଯୋଜିତ କର ମୋର ଚିତ୍ତ,
ଗାଇବି ବିରଳେ ବସି ସ୍ୱର୍ଗୀୟ ସଙ୍ଗୀତ ।
ଗୁଣାତୀତ ବିଶ୍ୱାତୀତ ସର୍ବମୂଳାଧାର,
ମାନସପ୍ରତିମା ମୋର ନେନ ନମସ୍କାର ।

---

## ସ୍ତୋତ୍ର

ଯଜ୍ଜାଗ୍ରତ ଦୂରମୁଦୈତି ଦୈବନ୍ତୁ-
ସୁପ୍ତସ୍ୟ ତଥୈବୈତି ଦୂରଙ୍ଗମଂ
ଜ୍ୟୋତିଷାଂ ଜ୍ୟୋତିରେକଂ
ତନ୍ମେମନଃ ଶିବ ସଙ୍କଳ୍ପମସ୍ତୁ । ଯଜୁର୍ବେଦ ।

ଯେ ଦେବତା ଜାଗରଣେ ଥାନ୍ତି ଦୂରେ ଦୂରେ,
ସ୍ୱପନରେ ଅନୁଭବୁଁ ହୃଦ ଅନ୍ତଃପୁରେ,
ଅନନ୍ତ ଜ୍ୟୋତିର ଜ୍ୟୋତି ରୂପ ବିଦ୍ୟମାନ,
କରନ୍ତୁ ମୋ ମନେ ଶିବ ସଙ୍କଳ୍ପ ବିଧାନ ।

ଯାହା ବଳେ କ୍ରିୟାବାନ ଜଗତର ଲୋକ,
ଅନନ୍ତ ଜ୍ୟୋତିର ଜ୍ୟୋତି ହୃଦୟ ଆଲୋକ,
ପରମ ଜ୍ଞାନର ସୁଧା ଅନନ୍ତ ମହାନ
କରନ୍ତୁ ମୋ ମନେ ଶିବ ସଙ୍କଳ୍ପ ବିଧାନ ।

ହୋଇଛନ୍ତି ହେଉଛନ୍ତି ହେବେ ଯା କୃପାରେ
ଅଚେତ ଚେତନ ଲୋକ ଜଗତ ସଂସାରେ,
ଅମୃତ ଉଦରେ ବିଶ୍ୱ ସବୁ ସମାଧାନ ।
କରନ୍ତୁ ମୋ ମନେ ଶିବ ସଙ୍କଳ୍ପ ବିଧାନ ।

ମନସ୍ୱୀ ତପସ୍ୱିଗଣ ଯୁଗ ଯୁଗାନ୍ତରେ
ଯଜ୍ଞ ଅନୁଷ୍ଠାନ କରିଥାନ୍ତି ନିରନ୍ତରେ,
ବେଦବିଦ ସପ୍ତ ହୋତା ଯଜ୍ଞ ଅନୁଷ୍ଠାନ,
କରନ୍ତୁ ମୋ ମନେ ଶିବ ସଙ୍କଳ୍ପ ବିଧାନ ।

ଚକ୍ରନେମି ଯୁକ୍ତ ଅର ସମାନ ସଂସାର,
ଋକ; ଯଜୁ, ସାମବେଦ ନିଖିଳ ଆଧାର ।
ବିଶ୍ୱସୃଷ୍ଟି ମୂଳ ମହାମହେଶ ମହାନ,
କରନ୍ତୁ ମୋ ମନେ ଶିବ ସଙ୍କଳ୍ପ ବିଧାନ ।

ନିପୁଣ ସାରଥି ଯଥା ରଥର ଚାଳକ ।
ଯେଉଁ ମହାଦେବ ବିଶ୍ୱସୃଷ୍ଟି ନିୟାମକ
ସେହି ମହାମହେଶ୍ୱର ଅନନ୍ତ ମହାନ,
କରନ୍ତୁ ମୋ ମନେ ଶିବ ସଙ୍କଳ୍ପ ବିଧାନ ।

---

## ନିୟମ ପାଳନ

ସୂର୍ଯ୍ୟାଚନ୍ଦ୍ରମସୌ ଧାତାଯଥା ପୂର୍ବମକଳ୍ପୟତ୍
ଦିବଂ ଚ ପୃଥିବୀଂ ଚାନ୍ତରୀକ୍ଷମଥୋ ସ୍ୱଃ ।—ଋଗ୍‌ବେଦ ।

ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା ଅନନ୍ତ ଗଗନେ,
ସ୍ୱ ସ୍ୱ କକ୍ଷେ ନିୟମିତ ଗତି ଅନୁକ୍ଷଣେ ।
ଅନନ୍ତ ଆକାଶମାର୍ଗେ ଅନନ୍ତ ଭାସ୍କର
ଅବସ୍ଥିତ ଆକର୍ଷଣ କରି ପରସ୍ପର ।
ଏ ବିଶ୍ୱ ବ୍ରହ୍ମାଣ୍ଡ କାର୍ଯ୍ୟ ଦେଖି ଅନୁମାନ,
ଜଡ଼ପିଣ୍ଡଗଣ ଛନ୍ତି ପ୍ରଭୁ ଆଜ୍ଞା ମାନି ।
ଗ୍ରହଗତି କକ୍ଷମାର୍ଗ ବିଷୟ ଭାବନା,
କଲେ ମନପ୍ରାଣ ଅବସନ୍ନ ଯାଏ ଜଣା ।
ପ୍ରତ୍ୟକ୍ଷ ଆଦର୍ଶ ଦେଖି ହେ ମାନବଗଣ !
କର ନାହିଁ ବିଶ୍ୱପତି ନିୟମ ଲଙ୍ଘନ ।

———

## ଜୀର୍ଣ୍ଣ ପଲ୍ଲବର ଆଶୀର୍ବାଦ

ସମଧର୍ମୀ କେତେ ପତ୍ର ଥିଲେ ସହିତରେ,
ମଣ୍ଡିତ ଶୋଭିତ ହୋଇଥିଲୁଁ ପାଦପରେ ।
କରିଛନ୍ତି ଏକେ ଏକେ ସମସ୍ତେ ପ୍ରୟାଣ,
ଏକାକୀ ରହିଛି ଜୀର୍ଣ୍ଣଦଶା ମ୍ରିୟମାଣ ।
ନୀରସ ବିକୃତ ଦେହ ଦିଶେ ଅସୁନ୍ଦର,
ଶୀତ ବାତେ କମ୍ପମାନ ସର୍ବକଳେବର ।
ବସନ୍ତ ଆଗମେ ନବପଲ୍ଲବ ସକଳ,
ଦିଶୁଛନ୍ତି ମନୋହର କେମନ୍ତେ ସୁଢ଼ଳ ।
ପାଦପର ରସ ବୃଥା କରେଁ ଅପଚୟ,
ହେଉଛି କୋମଳ ପତ୍ର ଖାଦ୍ୟ ଅପବ୍ୟୟ ।
ଆଉ ମୁଁ ଶାଖାରେ ଲଗିଥିବି କି ଆଶୟ,
ସ୍ଥାନ ଲଭି ବୃଦ୍ଧି ପ୍ରାପ୍ତ ହେବେ କିଶଳୟ ।
ଆଶୀର୍ବାଦ ! ଆଶୀର୍ବାଦ ! ନବ ପତ୍ରଦଳ,
ଛାୟାଦାନେ ହୁଅ ପାନ୍ଥ ପାଦପ ସମ୍ବଳ ।

———

## ଭୁଲିବାର

କାମନା ବାସନା ସ୍ନେହ ସୁଖ ଶାନ୍ତି ଆଶା
ସମାପ୍ତ ବିଲୁପ୍ତ ସର୍ବ ପ୍ରେମ ପ୍ରୀତି ଭାଷା ।
ଦାରୁଣ ଯାତନା ମନେ ଅଶ୍ରୁ ନୟନରେ
ସହିଛି ସହିବି ଚିରଦିନ ଜୀବନରେ ।
ସୁଖ ଦୁଃଖ କେତେ କଥା ଯାଇଛି ପାସୋରି;
ଭୁଲିବାର ନୁହେ ଯାହା ଭୁଲିବି କିପରି ।
ଶୋକାନଳେ ଦଗ୍‌ଧ ପ୍ରାଣ ସହେ ଯେ ଯାତନା,
କେ ଶୁଣିବ କେ ବୁଝିବ ହୃଦୟ ବେଦନା ।
ମନକଥା ଶୁଣିବାକୁ ଆଉ କେହି ନାହିଁ,
ସାନ୍ତ୍ୱନା ଲଭିବି ପ୍ରାଣେ କାହା ମୁଖ ଚାହିଁ ।
ଅପ୍ରକାଶ ମନକଥା ଦଗ୍‌ଧ କରେ ପ୍ରାଣ,
ବିସ୍ଫୋଟକେ ବଦ୍ଧ ପୂଯ ଅସ୍ଥି ଭେଦେ ଜାଣ ।
ସୁଖ ଦୁଃଖେ ସମଭାଗୀ ଦେଖୁ ନାହିଁ ଜଣେ,
ମାନବ ସ୍ୱଭାବ ସଦା ସ୍ୱାର୍ଥ ଅନ୍ୱେଷଣେ ।
ଭୁଲିଲେ ଲଭନ୍ତି ଅବା କ୍ଷଣିକ ସାନ୍ତ୍ୱନା,
ଅଙ୍କିତ କଳ୍ପନାମୂର୍ତ୍ତି ହୃଦେ ଯାଏ ଜଣା ।
ଥିଲା ମୋର ସୀମନ୍ତିନୀ ହୃଦବିହାରିଣୀ,
ସଞ୍ଜୀବନୀ-ମନ୍ତ୍ର ମଧୁ-ସୁଧା-ନିର୍ଝରିଣୀ ।
ଅନାହୂତରୂପେ ହୃଦେ କରେ ବିଚରଣ,
ସ୍ୱପନେ ବା ଜାଗରଣେ କରୁଛି ସ୍ମରଣ ।
ନୀଳିମା ଗଗନେ ବନେ ନିକୁଞ୍ଜ-କାନନେ
ଭାସିଯାଏ ରୂପଚ୍ଛାୟା ପ୍ରଫୁଲ୍ଲ ସୁମନେ ।
ଛିନ୍ନ ମୋ ଜୀବନଗ୍ରନ୍ଥି ଛିନ୍ନ ତାର ବୀଣା,
ସଂସାର ଅସାର ଶୂନ୍ୟମୟ ତାହା ବିନା ।
ଶୂନ୍ୟ ହୃଦସିଂହାସନେ କଳ୍ପନା ପ୍ରତିମା
ବସାଇ କରିବି ଧ୍ୟାନ ରୂପ ମଧୁରିମା ।
କାନ୍ଦିବି ନିର୍ଜ୍ଜନେ ବସି ସହିବି ନୀରବେ,
ବ୍ୟର୍ଥ ଜୀବନଟା ଯେତେ ଦିନ ଥିବ ଭବେ ।
ଖଟିଥିଲା ପଦେ ମଣି ଜୀବନର ସାର,
ମୁଁ ତ କିଛି କରି ନାହିଁ ପ୍ରତିଉପକାର ।

ସ୍ୱହସ୍ତେ ଦେଇଛୁ ତାକୁ ଶୁଆଇ ଚିତାରେ
ଦେଖିଛୁ ଆକାଶେ ଉଡ଼ିଗଲା ଧୂମାକାରେ ।
ପୋଡ଼ିଛୁ ଶରୀର ତାର, ପୋଡ଼ୁଛି ମୋ ମନ,
ଦହିବ ମୋ ଦେହ ଦିନେ ମହାହୁତାଶନ ।
ଜୀବନ କାଳରେ ଥିଲା ଅଭିନ୍ନ ହୃଦୟ,
ମହାଧାମେ କେଉଁଦିନେ ମିଳିବୁଁ ଉଭୟ ।
ଏହି କଥା ପୋଷି ହୃଦେ ଅଛି ପ୍ରାଣ ଧରି,
ବାରିଦେ ଚାତକ ଆଶା ବନ୍ଧପୁଷ୍ପ ପରି ।

———

## ତୁମ୍ଭ ପଦେ ସ୍ଥାନ

ବିଶ୍ୱନାଥ ପ୍ରାଣନାଥ ଅଛ କେଉଁସ୍ଥାନେ ?
ବିଶ୍ୱବ୍ୟାପ୍ତ ଅଧିଷ୍ଠାନ ଅନୁଭବେ ପ୍ରାଣେ ।
ସଲିଳନିମଗ୍ନ ମୀନ ବାରି ତା ଜୀବନ
ତୁମ୍ଭ ମହିମାରେ ମଗ୍ନ ମୋ ପ୍ରାଣ ତେସନ ।
ଜଳେ ସ୍ଥଳେ ଶୂନ୍ୟମାର୍ଗେ ଦିଗଦିଗନ୍ତରେ,
ତୁମ୍ଭ ସତ୍ତା ଅନୁଭବ କରେଁ ହୃଦୟରେ ।
ଜୀବର ଜୀବନ ପ୍ରଭୋ ! ମହାନ ଈଶ୍ୱର,
ଜଡ଼ୀୟ ଇନ୍ଦ୍ରିୟେ ସ୍ୱଭାବରେ ଅଗୋଚର ।
ଆତ୍ମମୟ ଅନୁଭବ କେବଳ ଆତ୍ମାରେ,
ଆଧେୟ ନ ଅଧିଷ୍ଠିତ ଅଯୋଗ୍ୟ ଆଧାରେ ।
ଧ୍ୟାନ ଯୋଗ କରେ ଆତ୍ମପ୍ରାଣେ ଅନୁଭବ,
ଆତ୍ମମୟ ଜ୍ୟୋତିର୍ମୟ ଆହେ ଭବଧବ ।
ଜଡ଼ରୁ ବିଚ୍ଛିନ୍ନ ହେବ ଯଦା ମମ ପ୍ରାଣ,
କୃପାକରି, ତୁମ୍ଭ ପଦେ ପାଏଁ ଯେମନ୍ତେ ସ୍ଥାନ ।

———

## ଚିତ୍ରକର

ଆହେ ଚିତ୍ରକର, ଭାଳେ ନିରନ୍ତର
ତୁମ୍ଭ ଚିତ୍ରପଟ ଦେଖି,
କେଉଁ ତୂଳୀରେ କି ବର୍ଣ୍ଣାବଳୀରେ
ଏ ଚିତ୍ର ରଖିଛ ଲେଖି ।

ଅସୀମ ଅନନ୍ତ ଅନାଦି ଦିଗନ୍ତ
ଚିତ୍ରପଟର ବିସ୍ତାର,
ତହିଁ ହରିତାଳ ଗ୍ରହ ତାରାବଳୀ
ଦୀପ୍ତ ଶଶୀ ଦିବାକର ।

ପଟର ମହିମା ବର୍ଣ୍ଣନ ଅସୀମା
ବିବିଧ ବର୍ଣ୍ଣେ ଚିତ୍ରିତ,
ପୁଣି ସେହି ଚିତ୍ର ଦେଖଇଁ ବିଚିତ୍ର
କ୍ଷଣେ କ୍ଷଣେ ପ୍ରବର୍ତ୍ତିତ ।

ଯାବନ୍ତ ଜୀବନେ ଦେଖିଲି ନୟନେ
ଗଗନମଣ୍ଡଳ ଚିତ୍ରହିଁ,
ପ୍ରତି ମୁହୂର୍ତ୍ତରେ ବିବିଧ ଚିତ୍ରରେ
ଏକ ଆନେ ଐକ୍ୟ ନାହିଁ ।

ନୀଳିମା ସାଗରେ ହରିତ ବର୍ଣ୍ଣରେ
ପୃଥ୍ୱୀମଣ୍ଡଳ ଚିତ୍ରିତ,
ବିବିଧ କୁସୁମେ ପୂର୍ଣ୍ଣ ଲତାଦ୍ରୁମେ
କୃଷ୍ଣ ନୀଳ ଶ୍ୱେତ ପୀତ ।

ନୀରବ କବିତା ସମାନେ ବେଷ୍ଟିତା
ଅନନ୍ତ ଚିତ୍ରର ଭିତ୍ତି,
ଅନନ୍ତ ମହିମା ନ ପାଇ ତା ସୀମା
ଜୀବନେ ନ ଲଭେ ଶାନ୍ତି ।

ଆହେ ଚିତ୍ରକର ମହାମହେଶ୍ୱର,
କାହିଁ ଅଛ ବିଦ୍ୟମାନ ?
ନ ପାଇ ତଦନ୍ତ ହେଉଛି ନିତାନ୍ତ
ଆକୁଳିତ ମନ ପ୍ରାଣ ।

———

## ଜନ୍ମଭୂମି

କାହିଁ ମୋ ଜନମ ଲଭି କାହିଁ ଲୁପ୍ତ ଦେହ ?
କାହିଁ ମୋର ଲୀଳାସ୍ଥଳୀ ମଧୁମୟ ଗେହ ?
ଜୀବନ ଜୀବିକା କାହିଁ ପୂର୍ଣ୍ଣ ମନସ୍କାମ ?
ପବିତ୍ର ମୋ ଜନ୍ମଭୂମି ସୁଖମୟ ଧାମ ।

— ——

## ଜଗତ ସୁଖମୟ

ମାୟାବାଦୀ ବୈଦାନ୍ତିକେ କରନ୍ତି ପ୍ରଚାର,
କେବା ତବ କାନ୍ତା ପୁତ୍ର ବିଚିତ୍ର ସଂସାର ।
ନାସ୍ତିକ ମତରେ କର୍ମ ଜଗତର ମୂଳ,
କର୍ମସୂତ୍ରେ ବଦ୍ଧ—କର୍ମେ ବ୍ୟସ୍ତ ନରକୁଳ ।

ମାନବର ଜନ୍ମ ଲଭି ଘୋର ବିଡ଼ମ୍ବନା,
ତହିଁ ମୁକ୍ତିକାମୀ କରେ କୈବଲ୍ୟ ସାଧନା ।
ଅନନ୍ତ ନରକବାଦୀ ବାଇବେଲ ଶାସ୍ତ୍ର,
ପାପିଷ୍ଠ ଆଦମଠାରୁ ଜନ୍ମ ଲଭି ମାତ୍ର,

ପ୍ରତ୍ୟେକ ମାନବ ପାପୀ--ନ ଭଜିଲେ ଖ୍ରୀଷ୍ଟ
କୁପିତ ଈଶ୍ୱର ହେବେ ତୁମ୍ଭ ପ୍ରତି ରୁଷ୍ଟ ।
ଧାର୍ମିକ ବିବେକ ହେଉ ସଚ୍ଚରିତ୍ର ଲୋକ—
ନ ଭଜିଲେ ଖ୍ରୀଷ୍ଟ, ଭୋଗ ଅନନ୍ତ ନରକ ।

ନୈୟାୟିକ ମତେ ସୁଖ ଜଗତରେ ନାହିଁ,
ଦୁଃଖର ଅଭାବ ସୁଖ ବୋଲି ସେଥିପାଇଁ ।
ଶାସ୍ତ୍ରରେ ପ୍ରକାଶ ଶାକ୍ୟସିଂହ ମହାବାଣୀ—
ଦୁଃଖାର୍ଣ୍ଣବେ ଭାସମାନ ଜଗତର ପ୍ରାଣୀ ।

ମହାଚୀନେ ପ୍ରକାଶିତ କଂଫୁସିୟ ମତ—
ଦୁଃଖ ଯାତନାରେ ପୂର୍ଣ୍ଣ ନିଖିଳ ଜଗତ ।
ତେବେ ବୋଲି ଜଗତଟା କଷ୍ଟ-ନିକେତନ ?
ଯନ୍ତ୍ରଣାଜଡ଼ିତ ସବୁ ମାନବ ଜୀବନ ।

ଦୟାମୟ ପ୍ରେମମୟ ଜଗତର ପତି—
ସୃଜିଲେ କି ନର ଭାଗ୍ୟେ କେବଳ ଦୁର୍ଗତି ?
ନାହିଁ ନାହିଁ ଅକୃତଜ୍ଞ ନ ହୁଅ ମାନବ,
ଜଗତରେ ପୂର୍ଣ୍ଣ ଦେଖ ଆନନ୍ଦ ଉତ୍ସବ ।

ଧର୍ମଶାସ୍ତ୍ର ମହାବାକ୍ୟ ଥାଉ ମୋ ମସ୍ତକେ—
ପ୍ରତ୍ୟକ୍ଷରେ ଦେଖୁଁ ସୁଖ ଭୁଞ୍ଜୁଛନ୍ତି ଲୋକେ ।
ଧାର୍ମିକ ବିବେକୀ ଜ୍ଞାନୀ ସୁଖେ କାଟେ କାଳ,
ତାହାଠାରେ ଅତି ତୁଚ୍ଛ ଜଗତଜଞ୍ଜାଳ ।

ବାଲ୍ୟେ ଜନନୀର ସ୍ନେହ, ଯୌବନେ ସଙ୍ଗିନୀ—
ପ୍ରୀତିସୁଖ ପ୍ରେମଧାର ଭ୍ରାତା ଓ ଭଗିନୀ ।

ପୂଜ୍ୟପାଦ ପିତା ମାତା ଶ୍ୱଶୁର ପ୍ରତିନିଧି—
ସନ୍ତାନ ସକାଶେ ସ୍ନେହକରୁଣାବାରିଧି ।
ଗୃହ ପରିବାରେ ସୁଖ ପୂର୍ଣ୍ଣ ଜଗତରେ,
ନ ପାରି କି ଅନୁଭବି ଆତ୍ମଜୀବନରେ ?

ଆନନ୍ଦର ଧାରା ବହେ ବାହ୍ୟ ଜଗତରେ—
କୁସୁମେ ସୌରଭ, ଜ୍ୟୋତି ରବି ଶଶାଙ୍କରେ ।
ଏ ସମସ୍ତ ସୁଖ ମୂଳେ ପ୍ରଚ୍ଛନ୍ନ ନିହିତ
ରହିଛି କାହାର କୃପା ଅଛି କି ବିଦିତ ?

ଯେଉଁ ସୁଖ ଯେଉଁ ପ୍ରେମ ସାଗର କଣିକା
ଗ୍ରହଣେ ମାନବ କାଟେ ଜଗତେ ଜୀବିକା—
ପ୍ରେମମୟ ସୁଧାମୟ ସେ ଆନନ୍ଦସିନ୍ଧୁ,
ସାର୍ଥକ ଜୀବନ ତହିଁ ଲଭି ମାତ୍ର ବିନ୍ଦୁ,

ଆନନ୍ଦର ଉତ୍ସ ନିତ୍ୟ ଯହିଁ ପ୍ରବାହିତ,
ଚିନ୍ତ ତାଙ୍କୁ ନ ରହିବ ଯାତନା କଳ୍ପିତ ।
ଇହ ପର କାଳେ ସୁଖୀ ସେହି ଭାଗ୍ୟବାନ,
ପବିତ୍ର ମନରେ କରେ ବ୍ରହ୍ମପଦ ଧ୍ୟାନ ।

———

## ନିବେଦନ

ଇହ ପର କାଳେ ପ୍ରଭୁ ସହାୟ ସମ୍ବଳ,
ତୁମ୍ଭେ ମୋ ଜୀବନଦାତା ଭରସାର ସ୍ଥଳ ।
କି ଭୟ ? କାହାକୁ ଭୟ ? ଯେବେ ମହେଶ୍ୱର—
ପଦେ ସମର୍ପଣ କରେଁ ଜୀବନ ମୋହର ।
ଦିଅ ଦେହେ ଶକ୍ତି ପ୍ରଭୋ, ଜ୍ଞାନେ ଦିଅ ବଳ,
ବିପଦ ସମ୍ପଦେ ମନ ନ ହେବ ଚଞ୍ଚଳ ।
ଯେ ଆତ୍ମପ୍ରସାଦ ସୁଖ ଭୁଞ୍ଜେ ମୋର ପ୍ରାଣ,
ସାଧୁ କାର୍ଯ୍ୟେ ପୁରସ୍କାର ତୁମ୍ଭ ମହାଦାନ ।
ତୁମ୍ଭ ଦତ୍ତ ମନ୍ତ୍ର ଚିତ୍ତେ ଜପିବ ସତତେ,
ସୁଖେ ଦୁଃଖେ ଥିବ ସଦା ତୁମ୍ଭର ଆୟତ୍ତେ ।
ଜଗତ ଅଚିରସ୍ଥାୟୀ ଜୟ ପରାଜୟ,
ସୁଖରେ ଉଲ୍ଲାସ କପାଁ ଦୁଃଖେ କିବା ଭୟ,
ସଫଳ ଯୁଗଳ କର ତୁମ୍ଭ କାର୍ଯ୍ୟ ସାଧି
ହେଉ ପ୍ରଭୋ ମହାନାମେ ଜୀବନ ସମାଧି ।
ସାଧୁ କାର୍ଯ୍ୟେ କର୍ତ୍ତା ମୁହିଁ କଲେ ଅହଙ୍କାର
ଦିଅ ଦଣ୍ଡ ପ୍ରାଣ ପୋଡ଼ି ହେଉ ଛାରଖାର ।
ଧନ୍ୟ ହେଉ ମୋ ଜୀବନ ତୁମ୍ଭ ନାମ ଧ୍ୟାନେ,
ଧନ୍ୟ ହେଉ ମୋ ରସନା ତୁମ୍ଭ ନାମ ଗାନେ ।
ପର ଉପକାରେ ହେଲେ ଜୀବନ ଦୁର୍ବଳ,
ହେ ଅନନ୍ତଶକ୍ତି ! ଦିଅ ପ୍ରାଣେ ଶକ୍ତି ବଳ ।
ଭୁଲି ତୁମ୍ଭ ନାମ ମତ୍ତ ଯେ ଅସାର ଧନେ,
ନିଅ କାଢ଼ି ଭୁଞ୍ଜେ ଟେଛେ ଯାତନା ଜୀବନେ ।
ନ ଶୁଣିବି ଖଳ ରିପୁ ଅବିଦ୍ୟା ମନ୍ତ୍ରଣା,
ନ ଛୁଡ଼ିବି ସାଧୁ ମାର୍ଗ ଏତିକି ପ୍ରାର୍ଥନା ।
ସଂସାରସଂଗ୍ରାମେ ଜୟୀ ହେବି ମହାବଳେ,
ମହାପ୍ରଭୁ, ନିବେଦନ ତବ ପଦତଳେ ।

———

## ଶେଷ ଦିନ

କାଳର ଭୈରବ-ଭେରୀ ବାଜେ ନିରନ୍ତରେ,
ନୀରବ ଆହ୍ୱାନ ଅନୁଭବୁଁ ଜୀବନରେ ।
ବସନ୍ତର ଅଗ୍ରଦୂତ କୋକିଳ କାକଳୀ
ଶମନର ଅନୁଚର ଲୋମଚର୍ମାବଳୀ ।
ପ୍ରାବୃଟ ସୂଚନାକାରୀ ଦର୍ଦ୍ଦୁରନିନାଦ,
ଜଣାଏ ଧବଳକେଶ ମରଣ ସମ୍ବାଦ ।
ଜ୍ୱଳନ୍ତ ଅନଳ ଚକ୍ର ତପନ-ଜୀବନ
ଶଙ୍କାରି କରତ ପରି କରୁଛି ଛେଦନ ।
ଟିକ୍‌ଟାକ୍ ଘଣ୍ଟା-ଯନ୍ତ୍ର କରେ ଅନୁକ୍ଷଣେ,
କାଟିବା ଜୀବନକାଳ ଶବ୍ଦ ଧ୍ୱନେ ମନେ ।
ସର୍ବରୂପ ମୃତ୍ୟୁ ନିମନ୍ତ୍ରଣ ଶୁଣି ଶୁଣି,
କେଉଁ ଭରସାରେ ବସିଅଛ ହୋଇ ତୁନି ।
ଯତନପାଳିତ ଦେହ ଛୁଳିଯିବ କାହିଁ,
ଆସ ଭାଇ, ସଜ ହେଉଁ ଶେଷଦିନ ପାଇଁ ।

———

## ଭାଇ ବଳ

ଉତ୍କଳେ ଜନମ ଉତ୍କଳେ ମରଣ;
ଉତ୍କଳ ଅନ୍ନରେ ଜୀବନ ଧାରଣ ।
ପରାପର ଭାବ ପୋଷିବୁଁ କପାଁଇ,
ମାତା ସମ୍ବନ୍ଧରେ ସର୍ବେ ଭାଇ ଭାଇ ।
ଭିନ୍ନାଭିନ୍ନ ଭାବ ବଢ଼ିବାର ଜନ—
ମୋ କ୍ଷୁଦ୍ର ବୁଦ୍ଧିରେ ସେ ତ ଅକିଞ୍ଚନ ।
କର ଯୋଡ଼ି ତାକୁ ବୋଲୁଅଛି ଭାଇ !
ଏକକୁ ଆରେକ ହିନ୍ଦ ଭୁଲିଯାଇ;
ଆସ କରୁଁ ମାତୃଦେଶର ଉନ୍ନତି,
ଫେଡ଼ୁ ଜନ୍ମଭୂମି ଦୁର୍ଦ୍ଦଶା ଦୁର୍ଗତି ।
ଯେତେ ଦିନ ଭାଇ ନ ହେବ ମିଳିତ,
ନ ମେଣ୍ଟିବ ଦେଶ ଦୁର୍ଦ୍ଦଶା କଳ୍ପିତ ।

ହିନ୍ଦୁ ମୁସଲମାନ ଖ୍ରୀଷ୍ଟାନ ଜଇନ—
କେବଳ ଧର୍ମରେ ସିନା ଭିନ୍ନାଭିନ୍ନ ।
ଧର୍ମ ଜାଣ ଭାଇ ପରକାଳପାଇଁ,
ପୃଥ୍ୱୀର ସନ୍ତାନ ଏହା ଭୁଲ ନାହିଁ ।
ଯା ପୂର୍ବପୁରୁଷ ବିଦେଶୀ ନିଶ୍ଚୟ,
ନ ଭୁଲ ସେ ଲୋକ ଉତ୍କଳତନୟ ।
ହେଉନ୍ତୁ ବଙ୍ଗାଳୀ ତେଲଙ୍ଗା ମାଗଣି—
ତୁମ୍ଭ ଦେହ ଗଢ଼ା ଉତ୍କଳର ମାଟି ।
ଦୁଇ ଦିନ ପାଇଁ ନାହିଁ ତ ଏ ଦେଶେ,
ବଂଶ ଅନୁକ୍ରମେ ରହିବ ବିଶେଷେ ।
ଦୁର୍ଭିକ୍ଷ ଦୁର୍ଦ୍ଦଶା ପଡ଼ିଲେ ଉତ୍କଳେ,
ମିଳିମିଶି ଭାଇ ଭୁଞ୍ଜିବୁଁ ସକଳେ ।
ଭାଇ ଭାଇ ମଧ୍ୟେ ନ ଲଗାଅ କଳି,
ପରିଚୟ ଦିଅ ନିଜକୁ ଉତ୍କଳୀ ।
ସାକ୍‌ସନ ଜର୍ମାନ ଗ୍ରୀକ ଓଲନ୍ଦାଜ,
ଇଂଲଣ୍ଡର ବାସୀ ସମସ୍ତେ ଇଂରାଜ ।
ଉତ୍କଳେ ଜନମି ବୋଲ ଅନ୍ୟ ଜାତି,
ହାମବଡ଼ା ଏଟା ନିଶ୍ଚୟ ଅଖ୍ୟାତି ।
ହିଂସା ଦ୍ୱେଷ ବହି ଦ୍ୱନ୍ଦ ପରସ୍ପର
କଲେ ନିଶ୍ଚେଁ ହେବ ଦୁର୍ଦ୍ଦଶା ତୁମ୍ଭର ।
ହେଉ ପଛେ ତୁମ୍ଭେ ଥିଲ ବଡ଼ ଜାତି,
ଏବେ ତ ଉତ୍କଳ ଦେଶ ପୁଅ ନାତି ।
ଜନ୍ମଭୂମି ଆଉ ଜନନୀ ଏମାନେ
ଶାସ୍ତ୍ରରେ କଥିତ ସ୍ୱରଗ ସମାନେ ।
ଯେ ବୋଲେ ନିଜକୁ ବିଦେଶୀୟ ଲୋକ—
ନିଶ୍ଚେ ସେହି ଜନ୍ମଭୂମିର ନିନ୍ଦୁକ ।
ଆସ ଭାଇମାନେ କରୁଛି ଜୁହାର,
ମିଳିମିଶି କରୁଁ ଦେଶ ଉପକାର ।

---

## କପୋତ ଦମ୍ପତି

ନିକୁଞ୍ଜ କାନନେ  ଏକ ପ୍ରାଣ ମନେ
ବେନି କପୋତ କପୋତି,
କରୁଥିଲେ ବାସ  ମନରେ ଉଲ୍ଲାସ
କ୍ଷୁଦ୍ର ବିହଗଦମ୍ପତି ।

କଲା ଆସି ବଧ  କପୋତୀକୁ ବ୍ୟାଧ
କପୋତ ରବଇ କୁହୁ,
ଆକୁଳ ଜୀବନେ  କରେ ଅନୁକ୍ଷଣେ
ମନୋଦୁଃଖେ ଉହୁ ଉହୁ ।

---

## ମହାଧାମରେ ମିଳନ

ପ୍ରଥମ ଜୀବନେ  କାଳେ ବେନି ଜନେ
ଥିଲୁଁ ଦୂର ଦୂରାନ୍ତରେ,
ନିୟତି ନିୟମେ  ପ୍ରିୟ ପ୍ରିୟତମେ
ସମ୍ମିଳନ ପରସ୍ପରେ ।

ସାହା ସୁଖେ ଦୁଃଖେ  ଏକକୁ ଆରେକେ
ସମୟସ୍ରୋତରେ ଭାସି
ଯାଉଥିଲୁଁ ରଙ୍ଗେ  ପ୍ରଣୟ ପ୍ରସଙ୍ଗେ
କେବେ ବା ହୋଇ ଉଦାସୀ ।

ଅନ୍ଧ ଭବିଷ୍ୟତ  ମାନବ ସମସ୍ତ
ଜୀବ ସାର କଥା ହୁଡ଼—
ଥାଏ ଅଚେତନେ  ମାୟା ବିମୋହନେ
ସଂସାରସାଗରେ ବୁଡ଼ ।

ଥିଲ ନାହିଁ ଭାବ  ଜୀବନର ଭାବୀ
ସମୟ ସ୍ୱଚ୍ଛନ୍ଦ ଦଶା,
ସମସ୍ତ ଜୀବନ  ସମାନେ ଯାପନ
କରିବ ମନେ ଭରସା ।

ବିଧିର ବିଧାନ କେ କରିବ ଆନ
ସଂଯୋଗ ବିୟୋଗ ବେନି—
ଅଚେତ ଚେତନେ ଏ ବିଶ୍ୱଭୁବନେ
ଚଳନ୍ତି ନିୟମ ଘେନି ।

ହେଲୁଁ ସ୍ୱତନ୍ତର ଉଭେ ପରସ୍ପର
ଲୋକାନ୍ତର ବ୍ୟବଧାନ,
ଜୀବନ ପ୍ରାନ୍ତରେ ସେ ତ ନିଶ୍ଚିନ୍ତରେ
ମୁଁ ସଂସାରେ ବିଦ୍ୟମାନ ।

ଶୂନ୍ୟ ଶୂନ୍ୟ ମନେ ଉଦାସ ଜୀବନେ
ଯାପେଁ ଜୀବନ ସମସ୍ତ,
କରିଛି ଛେଦନ ଜଗତ ବନ୍ଧନ
ତାହା ସ୍ଥାନ ନିରମସ୍ତ ।

ଜଗତ ଜଞ୍ଜାଳେ ବ୍ୟାଧିର କରାଳେ
କଷ୍ଟ ଅନୁଭବେଁ ପ୍ରାଣେ,
ପାର୍ଥିବ ଯନ୍ତ୍ରଣା ଥିବ ନାହିଁ ଜଣା
ତାହାକୁ ଏ କଥା ଜାଣେ ।

ଅଲକ୍ଷ୍ୟ ସୂତ୍ରରେ ଅଚିନ୍ତ୍ୟ ଭାବରେ
ମନ କରେ ଆକର୍ଷଣ,
ଜଣାଏ ସୂଚନା ଭବିଷ୍ୟ ଘଟଣା
ଆତ୍ମା-ଆତ୍ମା ସଂଘଟନ ।

ଛିଡ଼ ପରିଜାଳେ ମଧ୍ୟ ଚକ୍ରବାଳେ
ଲଙ୍ଘି କରିବି ଗମନ,
ପୋଷିଛି ପ୍ରତ୍ୟୟ ଘଟିବ ନିଶ୍ଚୟ
ମହାଧାମରେ ମିଳନ ।

———

## ବାଟବଣା

ଆଜି କାଲ କେତେ ଭ୍ରମିବି ଜଗତେ
ଚରଣ ଅବଶ ମୋର,
ଇନ୍ଦ୍ରିୟ ବିକଳ ଶରୀର ଅଚଳ
ଚିନ୍ତାଜରେ ଜରଜର ।
କେତେ ଦିନାନ୍ତରେ ସେ ଲକ୍ଷ୍ୟ ସ୍ଥାନରେ
ପ୍ରବେଶିବି ନାହିଁ ଜଣା ।
ଏତିକି ବିନତି ଆହେ ପ୍ରାଣପତି
ହେବି ନାହିଁ ବାଟବଣା ।

———

## ଭାବନା

ସଂସାର ଆବାସେ ଆନନ୍ଦ ଉଲ୍ଲାସେ
ଭୁଲି ଆହେ ପ୍ରାଣେଶ୍ୱର !
ମନ ଉନ୍ମତ୍ତରେ ଅଳୀକ ସୁଖରେ
ଲିପ୍ତ ଥିଲି ନିରନ୍ତର ।

ଇନ୍ଦ୍ରିୟ ଲାଳସା ଜୀବନର ଆଶା
କରିବାପାଇଁ ସଫଳ—
ଭୁଲି ପରିଣାମେ ସଂସାରସଂଗ୍ରାମେ
ପାନ କଲି ହଳାହଳ ।

ନ ଥିଲା ଚେତନା ନ ହେଲା ଭାବନା
ଶେଷ ଦିନପାଇଁ ପ୍ରଭୁ ।
ଭୟ ଆତଙ୍କରେ ପଡ଼ୁଛି ମନରେ
କରିଛି ଯେ କାର୍ଯ୍ୟ ସବୁ ।

ଭାଳି ଶେଷ ଦିନ ହେଲି ନାହିଁ ଛିନ୍ନ
ଜୀବନେ ଅସାର ଆଶା,
ନ ହେଲା ଚେତନା ଗଲେ ମଧ୍ୟ ଜଣା
ବିବେକ ଅନୁକ୍ତ ଭାଷା ।

ଅପରୂପ ବେଶ        ଶିରେ ଶୁକ୍ଳ କେଶ
ବଳହୀନ ହସ୍ତ ପଦ ।
ବ୍ୟାଧିରେ ଜର୍ଜର        କ୍ଷୀଣ କଳେବର
ଲୋଭ ପାର୍ଥିବ ସମ୍ପଦ ।

ଚିନ୍ତା ଅନୁଦିନ        ହେଲା ନାହିଁ ଛିନ୍ନ
ଜଗତର ଆକର୍ଷଣ,
ଆତ୍ମପ୍ରତାରଣା        ଗଲା ନାହିଁ ଜଣା
ଶେଷ ଦିନ ନିମନ୍ତ୍ରଣ ।

ଯୋଡ଼ିଅଛି କର        ଆହେ ପ୍ରାଣେଶ୍ୱର !
ଶୁଣ ମରମବେଦନା,
ଭୁଞ୍ଜାଅ ଜୀବିକା        ମରୁ ମରୀଚିକା
ଅଲୀକ ଭବ ଭାବନା ।

— — —

## ସଙ୍ଗଲାଭ

ବେଦନା ଜଡ଼ିତ        ହୃଦୟେ ଈପ୍ସିତ
ଚେତନା ଉପୁଜେ କ୍ଷଣେ ।
ଆଶାର ପିପାସା        କାଳରେ ଲାଳସା
କୁଆସା ସମାନ ମନେ ।
ତାହାର ଉଦ୍ଦେଶ୍ୟେ        ଅଜଣା ପ୍ରଦେଶେ
କଳ୍ପନାନେତ୍ରରେ ଚାହିଁ
କରନ୍ତେ ବିଶ୍ୱାସ        ( ମନର ଉଶ୍ୱାସ
କଷ୍ଟ—) ସଙ୍ଗଲଭ ପାଇଁ ।

— — —

## ଯୌବନଜୀବନ

ଭାସିଗଲା କାଳସ୍ରୋତେ ପୁରାତନ ପ୍ରାଣ,
ଯୌବନର କାର୍ଯ୍ୟ ଶେଷ ଯଜ୍ଞାଗ୍ନି ନିର୍ବାଣ ।
ମହୋଦ୍ୟୋଗେ କାର୍ଯ୍ୟକ୍ଷେତ୍ରେ ଅସୀମ ସାହସେ
ଭ୍ରମିଛି ଭ୍ରମରେ କେତେ ଦେଶେ କାର୍ଯ୍ୟବଶେ ।
ଉଲ୍ଲାସ ଆନନ୍ଦପୂର୍ଣ୍ଣ ପ୍ରାଣେ ଶରୀରରେ,
ସୁଖ ଯଶ ଧନ ମାନ ଲାଳସା ମନରେ ।
ଭବିଷ୍ୟତ ଭବିତବ୍ୟ ଥିଲା ନାହିଁ ଜ୍ଞାନ,
ଚଞ୍ଚଳ ଯୌବନ ଦିନେ ହେବ ଅବସାନ ।
ଅବିଶ୍ୱାସ ଅଭିମାନ ଥିଲା ନାହିଁ ମନେ,
ଜୀବନର ସଙ୍ଗୀ ମଣୁଥିଲି ବନ୍ଧୁଗଣେ ।
କୁଟିଳତା ପଙ୍କ-ଲିପ୍ତ ନ ଥିଲା ହୃଦୟେ,
ବନ୍ଧୁଗଣ ସଙ୍ଗେ ପ୍ରେମ ପ୍ରୀତି ବିନିମୟେ ।
ସମାଜ ମଙ୍ଗଳ କାର୍ଯ୍ୟେ ହୋଇ ଅନୁରାଗୀ
ନ ବୁଝି ବିଷୟ ହୋଇଥିଲି ଆତ୍ମତ୍ୟାଗୀ ।
ପକ୍ଷାନ୍ତରେ ଲଭିଅଛି ବହୁତ ଦୁର୍ଦ୍ଦଶା,
ଚରିତାର୍ଥ କରିବାକୁ ଇନ୍ଦ୍ରିୟଲାଳସା ।
ସୁଖେ ଦୁଃଖେ ଧର୍ମାଧର୍ମେ କାଳେକ ବିଗୁର,
ଯୌବନ ସମୟ ଅଟେ ଜୀବନର ସାର ।

— — —

## ବାକ୍ୟ ସଂଯମ

ବାକ୍ୟ ଉଚ୍ଚାରଣ କରି ମାନବ ପ୍ରଧାନ,
ଲଭିଛି ତା ଯୋଗେ ପ୍ରାଣୀ-ରାଜ୍ୟେ ଶ୍ରେଷ୍ଠସ୍ଥାନ ।
ସାବଧାନେ କର ସେହି ବାକ୍ୟ ଉଚ୍ଚାରଣ,
ଅନ୍ୟଥା ମାନବ ଜନ୍ମ ହେବ ଅକାରଣ ।
ପ୍ରଭୁଦତ୍ତ ମହାକୃପା ଜୀବନର ସାର,
କର ନାହିଁ ତାହା କେବେ ଅପବ୍ୟବହାର ।
ମାନବର ଜ୍ଞାନ-ରାଶି ବାକ୍ୟ ଶୃଙ୍ଖଳରେ,
ଆବଦ୍ଧ-ସମାଜେ ଶିକ୍ଷା ଦିଏ ପରସ୍ପରେ ।
ଯେଉଁ ବାକ୍ୟଗୋଟି ହୁଏ ମୁଖରୁ ବାହାର,
ସାଧ୍ୟ କି ତାହାକୁ କରି ପାର ପ୍ରତ୍ୟାହାର ।
ଧନୁକୋଷୁ ଉର୍ଣ୍ଣା ବେଳେ ହେଲେ ବହିର୍ଗତ,
ପାରିବ କେ କରି ପୁଣି ତାହା ମଧ୍ୟଗତ ।
ଉଚ୍ଚାରିତ ବାକ୍ୟ ତଥା ପବନମଣ୍ଡଳେ,
ମିଶିଯାଏ, ନ ଫେରିବ କଳେ ବା କୌଶଳେ ।

ବାକ୍ୟଗୁଣେ ଲୋକ ହୋଇପାରେ ଦଣ୍ଡଧାରୀ,
ବାକ୍ୟଦୋଷେ ହୁଏ ପୁଣି ମାର୍ଗରେ ଭିଖାରି ।
ବାକ୍ୟ ଉଚ୍ଚାରଣ ଯନ୍ତ୍ର କୋମଳ ରସନା
କର୍କଶ ବଚନ ଛନ୍ଦି ସଂସ୍ପର୍ଶ କର ନା ।
ନିଷ୍ଠୁର ବଚନ କେଡ଼େ ଯନ୍ତ୍ରଣାଦାୟକ,
ଜୀବନେ ବଡ଼ଛି ତାହା ଅନୁଭବୀ ଲୋକ ।
ବିପଦେ ବା ରୋଗେ ଯେବା ଭୋଗୁଛି ଯାତନା,
ମିଷ୍ଟ ବାକ୍ୟେ ଦେଇ ପାର ତାହାକୁ ସାନ୍ତ୍ୱନା ।
ସହଜ ମାନବ ପ୍ରାଣେ ବାକ୍ୟ-ବୀଣ ତାଳ,
ସୁଖ ଶାନ୍ତି ପ୍ରୀତି ନାଶି ଦେଇ ପାର ଜାଳ ।
ଉଦୟ ଯେତେକ ଭାବ ହୋଇଥାଏ ମନେ,
କ୍ଷିପ୍ର ଲୋକ ତତକ୍ଷଣେ ପ୍ରକାଶେ ବଚନେ ।
ବାକ୍ୟ ବୋଲିବାର ପୂର୍ବେ କରିବ ବିଚାର,
ଅଛି କି ନା ଇଷ୍ଟାନିଷ୍ଟ ଏଥିରେ କାହାର ।
ଯେଉଁ ଲୋକ କରି ପାରେ ବଚନ ସଂଯମ,
ଜଗତରେ ପରିଚିତ ସେହି ବିଜ୍ଞତମ ।

---

## ପ୍ରଜାପତି

ପ୍ରଭାତେ ଅରୁଣ କିରଣ ଅବନୀରେ ବିକାଶେ
ସୁଧୀର ସମୀରପ୍ରବାହେ ପ୍ରଜାପତି ଉଲ୍ଲାସେ ।
କାହୁଁ ଆସି ବସି କୁସୁମ ପାଶେ ମିଳେ ସେକାଳେ,
ଅର୍ଚ୍ଚନା କାମନା ପୂଜକ ଦେବାଳୟେ ସକାଳେ ।
କେତେ ରଙ୍ଗେ ଉଡ଼ି ବୁଲେ ସେ ବନ୍ୟ ସରଳ ଗତି;
ସନ୍ଧ୍ୟା ଧୂପ ଦେଇ ପୂଜକ ଯଥା କରେ ଆରତି ।
ଉଡ଼ି ଉଡ଼ି ପୁଷ୍ପ କର୍ଣ୍ଣରେ କହେ ଗୁପତ କଥା,
କିପାଇଁ ସୁମନ ସହିତ ତାର ଏତେ ମିତ୍ରତା ?
ନିର୍ମଳ ସୁଢଳ ମଧୁର ସୁବାସିତ ସୁମନ,
ତୁହି ତ ସୁନ୍ଦର ସରଳ ଯୋଗ୍ୟ ଯୋଗ୍ୟେ ମିଳନ ।
ଦେଖିଛି ଆକାଶେ ପତଙ୍ଗ ! ଉଦେ ବାସବ ଧନୁ—
ତୁଳନା ତା ସଙ୍ଗେ ଦେବାକୁ ତୋର ରଞ୍ଜିତ ତନୁ ।
ଦେଖି ତୋ ଲାବଣ୍ୟ ମୂରତି ଚିତ୍ତ ମୋହିତ ମୋର,
ତୋତେ ଯେ କଲେ ରେ ନିର୍ମାଣ ସେ ଯେ କେଡ଼େ ସୁନ୍ଦର !

---

## ସ୍ୱଭାବର ନବଭାବ

ବସନ୍ତ କାନନ ବିକାଶ ସୁମନ
ବିସ୍ତାରେ ଅପୂର୍ବ ଗନ୍ଧ,
ନିଦାଘ ପ୍ରଦୋଷେ ସମୀର ବିଳାସେ
ଶାଖିଶାଖା ନୃତ୍ୟଛନ୍ଦ ।

ଶାରଦ ଗଗନ ଚିତ୍ତବିମୋହନ
ରଞ୍ଜିତ ବିବିଧ ବର୍ଣ୍ଣେ,
ବନର ଗୌରବ ଆସେ କେକାରବ
ଲହରୀ ନିଘାତ କର୍ଣ୍ଣେ ।

କୋକିଳ କାକଳୀ ବ୍ୟାପ୍ତ ବନସ୍ଥଳୀ
ଦିଏ କର୍ଣ୍ଣେ ସୁଧା ଢାଳି,
ପ୍ରଫୁଲ୍ଲ ପୁଷ୍ପରେ ଗୁଞ୍ଜୁ ଗୁଞ୍ଜୁ ସ୍ୱରେ
ଭ୍ରମନ୍ତି ବନେ ଭୃଙ୍ଗାଳୀ ।

ନୀଳିମା ଆକାଶେ ଚନ୍ଦ୍ରମା ବିକାଶେ
ଜ୍ୟୋତ୍ସ୍ନାସ୍ନାତ ରଜନୀରେ,
ଦିଶେ ଝକ ଝକ ରଜତ ଆଲୋକ
କାନ୍ତି ପ୍ରତିବିମ୍ବ ନୀରେ ।

ହିରଣ୍ୟ କିରଣ ବିସ୍ତାରି ଅରୁଣ
ଉଷା ଭୂଷା କାନ୍ତ କାନ୍ତି
କାନନେ ବିଜନେ କୁସୁମିତ ବନେ
ପ୍ରକାଶେ ସେ ସ୍ନିଗ୍ଧ ଶାନ୍ତି ।

ବାରିଦ ଗଗନେ ଗୁରୁ ଗରଜନେ
ଚଞ୍ଚଳେ ଚପଳା ହାସ୍ୟ,
ବାରି ବରଷଣ ପୀୟୂଷ କ୍ଷରଣ
ଜଗତରେ ଲୀଳାଲାସ୍ୟ ।

ହରିତ ପେଲବ ପାଦପ ପଲ୍ଲବ
ବିସ୍ତାର ଜଗତବ୍ୟାପୀ
ଇନ୍ଦ୍ରଧନୁ ଘନେ ଚିତ୍ର ସପ୍ତବର୍ଣ୍ଣେ
ତୂଳୀରେ ଦେଇଛୁ ଥାପି ।

ଯାବତ ଜୀବନେ ଦେଖିଲେ ନୟନେ
ତଥାପି ଅପୂର୍ଣ୍ଣ ଆଶା,
ନିତ୍ୟ ନବ ନବ ପ୍ରକୃତିଗୌରବ
ନିତ୍ୟ ନବ ଛନ୍ଦ ଭାଷା ।

———

## ବିଧବାର ଅଭିଶାପ

ଦାରୁଣ ନିଦାଘକାଳ ଦ୍ୱିପ୍ରହର ସମୟ;
ପ୍ରଚଣ୍ଡ ପବନ ବହେ ତପ୍ତ ଅଗ୍ନିମୟ ।
କେହି ପଙ୍ଖାଟିଏ ଧରି—ଗାମୁଛା ଭିଜାଇ
ଆରାମରେ ଶୋଇଛନ୍ତି ବିଛଣା ବିଛାଇ ।
ବିରାଡ଼ିଟି ମଧ୍ୟ ଶୋଇଅଛି ଘରକୋଣେ,
ହେଉଛି ଏ ଘରେ ଛଟପଟ ମାତ୍ର ଜଣେ ।
ଢେଙ୍କିଶାଳେ ଅବା ବାଡ଼ ଦୁଆରେ ଆଉଜି
ଅଗଣା ପିଣ୍ଡାରେ ଏକାକିନୀ ଆଖି ବୁଜି ।
ପଣତ କାନିଟା ପାରି ପଡ଼ିଛି ମାଟିରେ;
ଶୁଖିଲାଣି ଜିଭ ଧୂଳି ଉଡ଼ୁଛି ପାଟିରେ ।
ମଳିନ ବସନ ମୋଟା ଅଖା ପାଲ ପରି;
ଭିଡ଼ିଛି ଦେହରେ ଲଜ୍ଜା ସରମ ଆବୋରି ।
ତେଲ ହଳଦିରେ ତା'ର ନାହିଁ ଅଧିକାର,
ଦେହପାକ କାଟି ଦେଉଅଛି ଖଡ଼ଗାର ।
ଶୁଖିଲା ଲୁଖିଲା କେଶ ମସ୍ତକରେ ଭରି
ଫର ଫର ଉଡ଼େ କିଷିଦିଆ ଖୋଷା ପରି ।
ବିଧାତା ଗଢ଼ିଲେ ଯାକୁ ଲାବଣ୍ୟ ମୂରତି;
ଘଟାଇଲା କେ ଦୁର୍ମତି ଏମନ୍ତ ଦୁର୍ଗତି !
ଏଗାର ବରଷ କାଳୁଁ ହେଲାଣି ବିଧବା,
ପାଟି ବୁଜି ପଡ଼ିଥାଏ କି କରିବ ଅବା !

ଅଲକ୍ଷଣୀ ବିଧୂ—ଶାଶୁ ଶଶୁର ବିଗୁରି
ଦେଲେ ତଡ଼ି, ବାପଘରେ ପଡ଼ିଛି ବିଗୁଣି ।
ଯୋଡ଼ାଏ ଭାଉଜ ଘରେ ଅଳପବୟସୀ,
କାଟନ୍ତି ଆନନ୍ଦମନେ କାଳ ହସି ହସି ।
ବିଧବାଟି ଲାଗିଥାଏ କାମ ପାଇଟିରେ,
ହାଉଡ଼ୀ ସମାନେ ନାହିଁ କଥାଟି ପାଟିରେ ।
ଅଳପ ତ୍ରୁଟିରେ ସହେ ବିଷମ ଗଞ୍ଜଣା,
ପୋଇଲା କରନ୍ତି ମଧ୍ୟ ତିକଶାକୁ ମନା ।
ଆହା ବୋଲିବାକୁ ତାର କେହି ନାହିଁ ସାହା,
କେବଳ ମାଆଟା ବେଳେ ବେଳେ କରେ ଆହା ।
କେହି ଯଦି ତାକୁ ଗାଳି ଦିଏ ଅଶୁଭିଣୀ,
ମାଆଟା ଆଖିରୁ ଗଡ଼େ ଦୁଇ ଟୋପା ପାଣି ।
କି କରିବ ପୁଅ ବିଧୂ ଆଉ ସ୍ୱାମୀ ଡରେ
ପାଟି ମୁଦି ଝିଅ ଆଡ଼େ ନ ଅନାଏ ଥରେ ।

× × ×

ଆଜି ଏକାଦଶୀ ତହିଁ ତା' ପୁଣି ନିର୍ଜଳା,
ସବୁ କଷ୍ଟ ସହି ସହି ପଡ଼ିଛି ଅବଳା,
ଶୁଖିଛି ହୃଦୟ କାନ୍ଦି କାନ୍ଦି ବହୁ ଦିନ,
ଏତେ କଷ୍ଟେ ପଡ଼ି ମଧ୍ୟ ନେତ୍ର ଅଶ୍ରୁହୀନ ।
କାତରେ ପକାଏ ଉଷ୍ଣ ପବନ ନିଶ୍ୱାସ,
ଅଭିଶାପ ବୋଲି ମୁହିଁ କରୁଛି ବିଶ୍ୱାସ ।
ବାଳିକା ନ ଜାଣେ ତାହା ଦୁର୍ଦ୍ଦଶା କାରଣ,
କରିଛି ବିଶ୍ୱାସ ଏହା ବିଧାତାଲେଖନ ।
( ହିନ୍ଦୁର ଲଳନା କେଡ଼େ ଦୁଃଖ ସହି ପାରେ,
ବିଦେଶୀୟ ଲୋକେ ଆସି ଦେଖି ଯାନ୍ତୁ ବାରେ । )
ତାହାର ଯେ ଘୋର ଶତ୍ରୁ ପୂରିଛନ୍ତି ଦେଶେ,
କିପରି ଜାଣିବ ଶିକ୍ଷାବିହୀନା ବିଶେଷେ ।
ନ ଜାଣୁ ତା' ପ୍ରତି ଯେବା କଲା ଅତ୍ୟାଚାର,
ଧର୍ମ ଦରବାରେ ହେବ ସେଥିର ବିଚାର ।
ବାଳିକା କାହାକୁ ଦିନେ ଦେଇ ନାହିଁ ଶାପ,
ମାତ୍ରକ ମେଣ୍ଟିନ ହେବ ନାହିଁ ମହାଶାପ ।

ନାସନ୍ତୁଣ୍ଡା ଜ୍ଞାନୀଗଣ ବ୍ରାହ୍ମଣ ଗୋସାଇଁ,
ନିର୍ଦ୍ଦୋଷ ବାଳିକା ଦଶା ବେଳେ ଦେଖ ଚାହିଁ ।
ସମାଜର ଶୀର୍ଷସ୍ଥାନ ଦଳପତିଗଣ,
ଆଖି ମେଲି ବାଳିକାକୁ କର ନିରୀକ୍ଷଣ ।
ପୁରୁଷଟା ବିଭା ହୋଇ ପାରେ ସାତ ବାର,
ଅବଳା ବେଳକୁ ଯେତେ ଶାସ୍ତ୍ରର ବିଚାର ।
ସନାତନ ବେଦ ବିଧି ଶୁଣିଛ କି କାନେ ? *
ମହାଜ୍ଞାନୀ ବୋଲି ଠେକିଡ଼େ ଅଭିମାନେ ।
ମହର୍ଷିଏ ଯାହା କରିଅଛନ୍ତି ବିଧାନ, †
ତାହା ତ ଶୁଣିଲ ନାହିଁ ବେଳେ ଡେରି କାନ ।
ସମାଜର ସୁଖ ଶାନ୍ତି ଶାସ୍ତ୍ରର ଉଦ୍ଦେଶ୍ୟ,
ଦିଅ କଷ୍ଟ ଲୋକେ ଦିଏ ନାହିଁ ଉପଦେଶ ।
ବାଳବିଧବାକୁ ପୋଡ଼ ଯେଉଁ ଶାସ୍ତ୍ର ବୋଲେ;
ପୋଡ଼ି ଜାଳି ଭସ୍ମ ଢାଳ କର୍ମନାଶା ଜଳେ ।
ପାଷାଣ ହୃଦୟ ଜାତି ଧିକ ଧିକ ଧିକ,
ଭଣ୍ଡ ଅହଙ୍କାରୀ ଜ୍ଞାନହୀନ ତତୋଽଧିକ ।
ଭ୍ରୂଣହତ୍ୟା ପାପ ପଙ୍କ ଅତ୍ୟାଚାର ଡାଳି,
କେତେ ନିଷ୍କଳଙ୍କ କୁଳେ ଲଗାଉଛ କାଳି ।
କେତେ ବାଳିକାର ନାଶି ଇହ ପରକାଳ,
ବଢ଼ାଉଛ ଦିନୁ ଦିନ ଜଗତେ ଜଞ୍ଜାଳ ।
ଏ ହିନ୍ଦୁଜାତିର ଯେବେ ନ ହେବ ପତନ,
ଜାଣିବି ଜଗତେ ଧର୍ମ ଅଛି ଅକାରଣ ।

× × ×

ସହଜେ ଯେ ସତୀ ବ୍ରହ୍ମଚାରିଣୀ ବିଧବା,
ତୁଚ୍ଛା ମୁହିଁ ସେମାନଙ୍କୁ କି ବୋଲିବି ଅବା ।
ଧର୍ମମାର୍ଗେ କାଟନ୍ତି କାଳ ସେବା କରି ଲୋକେ,
ସେମାନଙ୍କ ପଦଧୂଳି ପଡ଼ୁ ମୋ ମସ୍ତକେ ।
ତାହାର ତ ଭାଇ ବନ୍ଧୁ ଜଗତ ସଂସାର;
ଆପଣେ ଉଦ୍ଧରି କୁଳ କରିବ ଉଦ୍ଧାର ।
ମାତ୍ର କେତେ ଜଣ ନାରୀ ଅଛନ୍ତି ଧରାରେ,
ପ୍ରକୃତି ପ୍ରବୃତ୍ତି ବୃତ୍ତି ବଶେ ରଖିପାରେ ।
ମହା ମହାମୁନି ଋଷି ଯାଇଛନ୍ତି ଟଳି,
ଅଶିକ୍ଷିତା ବାଳିକା କି ଯିବ ତାଙ୍କୁ ବଳି ?
ଅସହ୍ୟ ହେବାରୁ ଗାଇ ଗଲି କେତେ କଥା,
କରିବାର ନାହିଁ ମୋର କିଛିହିଁ ଯୋଗ୍ୟତା ।
ଜ୍ଞାନହୀନ ଧନହୀନ ଦେହେ ନାହିଁ ବଳ,
ବୃଥାରେ କରୁଛି ସିନା କ୍ରନ୍ଦନ ସମ୍ବଳ ।
ଦେହେ ଥିଲେ ବଳ ଦ୍ୱାରେ ଦ୍ୱାରେ କରି ଭିକ୍ଷା,
ହାତ ଯୋଡ଼ି ସମାଜକୁ ଦେଉଥାନ୍ତି ଶିକ୍ଷା ।
ଶିକ୍ଷିତ ଯୁବକଗଣ ଦେଶର ଭରସା,
ଆଶା ମୋର, ମେଣ୍ଟାଇବେ ବିଧବା-ଦୁର୍ଦ୍ଦଶା ।

———

## ଶାନ୍ତ କାନନ

ରେ ଶାନ୍ତକାନନ ମୋର ଜୀବନ ସମ୍ବଳ,
ନେତ୍ର ତୃପ୍ତ ପ୍ରାଣାରାମ ବିଶ୍ରାମର ସ୍ଥଳ ।
ନନ୍ଦନ କାନନ ସ୍ୱର୍ଗେ ଶୁଣିଛି ପୁରାଣେ,
ତୋହର ମହିମା ମର୍ତ୍ତ୍ୟେ ଅନୁଭବେଁ ପ୍ରାଣେ ।
ମୋ ବିଶ୍ୱାସ, ରେ କାନନ ! ତୁହି ପୂତ ସ୍ଥାନ,
ଜାଗ୍ରତ କରାଉ ଭାବ ମନୋହର ମହାନ ।

---

* କୁହସ୍ୱିଦ୍ ଦୋଷା କୁହ ବସ୍ତୋରଶ୍ୱିନା କୁହାଭିପିତ୍ୱଂ କରତଃ କୁହୋଷତୁଃ । କୋବାଂ ଶୟୁତ୍ରା ବିଧବେବ ଦେବରଂ ମର୍ଯ୍ୟଂ ନ ଯୋଷା କୃଣୁତେ ସଧସ୍ଥ ଆ । ଋକ୍‌ବେଦ ୧୦ମ ମଣ୍ଡଳ—୪୦ ସୂକ୍ତ ।
ଦେବରଃ କସ୍ମାଦ୍ ଦ୍ୱିତୀୟୋ ବରଃ ଉଚ୍ୟତେ । ନିରୁଃ ଅଃ ୩ । ଖଣ୍ଡଃ ୧୫ ।

† ସା ଚେଦକ୍ଷତଯୋନିଃ ସ୍ୟାତ୍ ଗତପ୍ରତ୍ୟାଗତାପି ବା ପୌନର୍ଭବେନ ଭର୍ତ୍ତ୍ରା ସା ପୁନଃ ସଂସ୍କାରମର୍ହତି ମନୁଃ ୯ମ । ୧୭୬ । ନଷ୍ଟେ ଗତେ ପ୍ରବ୍ରଜିତେ କ୍ଲୀବେ ବା ପତିତେ ପତୌ । ଏତଦ୍ଦଶାସ୍ୱାଂ ନାରୀଣାଂ ପତିରନ୍ୟୋ ବିଧୀୟତେ ।। ପରାଶର ।

ପ୍ରତ୍ୟୁଷ ପ୍ରଦୋଷେ କଲେ ଭ୍ରମଣ କାନନେ,
କି ଅପୂର୍ବ ଶାନ୍ତିରସ ଉପଜାତ ମନେ ।
ପୁଷ୍କରଣୀ କୂଳେ ବସି କଲେ ଉପାସନା,
ଆକୁଳ ହୃଦୟେ ଜାତ ଅପୂର୍ବ ସାନ୍ତ୍ୱନା ।
ଜାତିଚ୍ୟୁତ ଘୃଣିତ ଯେ ଜନ ସମାଜରେ,
ତୁହି ତ ସାନ୍ତ୍ୱନାଦାତା ସେ ଲୋକ ପ୍ରାଣରେ ।

ବିଶ୍ୱଶିଳ୍ପୀ-ଚିତ୍ରକଳା ସମବେତ ସ୍ଥଳ,
ବିଚିତ୍ର ଚିତ୍ରିତ ଲତା ପତ୍ର ପୁଷ୍ପ ଫଳ ।
ଦିବସେ ବିବିଧବର୍ଣ୍ଣ—ଶୁକ୍ଳ ରଜନୀରେ,
କୁସୁମ ବିକାଶେ କିବା କୌଶଳ ଏଥିରେ । *
ପ୍ରସ୍ଫୁଟିତ କୁସୁମରେ ପ୍ରଜାପତିଗଣ,
ଉଡ଼ି ବୁଲି କରୁଥାନ୍ତି ମଧୁ ଆହରଣ ।

ମଧୁକରଗଣ ପୁଣି ଗୁଣୁଗୁଣୁ ସ୍ୱରେ,
ବେଢ଼ିଥାନ୍ତି—ଧନୀ ପାଶେ ଭିକ୍ଷୁସମାନରେ ।
ଋତୁ ପର୍ଯ୍ୟାୟରେ ଫୁଟେ ପୁଷ୍ପ ନାନା ଜାତି,
ଶେଫାଳି ନଆଳି ମଲ୍ଲୀ କୁନ୍ଦ ଯାତି ଯୁଥୀ ।
ଯେ କାଳରେ କରେ ଗନ୍ଧ ବିସ୍ତାର କେତକୀ,
ଜଣାଯାଏ ପ୍ରସ୍ଫୁଟିତ କୁସୁମ କେତେକ ।

ଫୁଟିଲେ ଗୋଲାପ ଗନ୍ଧଶିମଳି ନଆଳି,
ସର୍ବ ସ୍ଥାନେ ମଣେ ଗନ୍ଧ କିଏ ଦେଲା ଢାଳି ।
ସୁଗନ୍ଧା ରଜନୀଗନ୍ଧା ଜେସି ରାତିରାଣୀ,
ନିଶିରେ ଶିଶିରେ ସ୍ନାତା ବନଠାକୁରାଣୀ ।
ସର୍ବତ୍ର ଆବୃତା ସଦା ରଜନୀ ତିମିରେ,
ବିସ୍ତାର କରନ୍ତି ସର୍ବେ ଗନ୍ଧ ଅବନୀରେ ।
ବିବିଧ ପ୍ରକାର ଫଳ ବନେ ନାହିଁ ଊଣା,
ଜଗତ ହିତରେ ଝରେ କାହାର କରୁଣା ।

କାନ୍ଧଆ ଜମ୍ବୀର ଟଭା କାଗଜୀ ନାରଙ୍ଗ,
ବିବିଧ ପ୍ରକାର ଲଙ୍କାଆମ୍ବ ମାତୁଲଙ୍ଗ ।
ବେଲ ଲିଚୁପିଚୁ ଜମ୍ବୁ ପନସ କଦଳୀ,
ସପୁରୀ କମଳା ଚୂତ ସୁଧାରସୁଁ ବଳି ।
ଜାମରୁଲ କରମଙ୍ଗା ଆତ ନାନାଜାତି,
ପିଜୁଳି ସପେଟା ବରକୋଳି ନେଶପାତି ।

ପାଚି ଝୁଲୁଥାଏ ଯେବେ ଥୋପି ଥୋପି ଡାଳେ,
କି ଅପୂର୍ବ ଶୋଭା କରେ ବିସ୍ତାର ସେକାଳେ ।
ସ୍ୱଦେଶୀ ବିଦେଶୀ ପୂର୍ଣ୍ଣ ଶାକ ମୂଳ ଫଳ,
ଗୃହସ୍ଥମାନଙ୍କ ପକ୍ଷେ ବ୍ୟଞ୍ଜନ ସମ୍ବଳ ।
ବାଡ଼ି ପାଶେ ପାଶେ ଫୁଟି ଉଡ଼େ ତୂଳାରାଶି,
ପବନ ପ୍ରବାହେ ଯାଏ ଇତସ୍ତତଃ ଭାସି ।

କ୍ଷୁଦ୍ର ଶସ୍ୟକ୍ଷେତ୍ର ଖଣ୍ଡେ ଉଦ୍ୟାନର ପ୍ରାନ୍ତେ,
ସୁବାସିତ ଧାନ୍ୟ ଉପୁଜାଏ ବର୍ଷାନ୍ତେ ।
ଫଳ ପତ୍ର ପୁଷ୍ପ ଯହିଁ କରେ ନେତ୍ରପାତ,
ବିଶ୍ୱପତି ପ୍ରତି ଭକ୍ତି ସହଜରେ ଜାତ ।
ବୀଜରୁ ଉତ୍ପନ୍ନ ବୃକ୍ଷ, ତହୁଁ ଜାତ ଫଳ,
ଅନନ୍ତ ଅନନ୍ତ ଜ୍ଞାନୀ ରଚନା କୌଶଳ ।

କାନନର ମଧ୍ୟଗତ ପୁଷ୍କରଣୀ ଜଳେ
ବିବିଧ ପ୍ରକାର ପଦ୍ମପୂର୍ଣ୍ଣ ମୀନଦଳେ ।
ଜ୍ଞାନୀ ଧୀର—ଉଚ୍ଛୃଙ୍ଖଳ ଧନୀ ଯୁବା ପରି,
ଉତ୍କୁନ୍ଦ ଗମ୍ଭୀର ଜଳେ ଚହଟେ ଶଫରୀ ।
ମାନବ ଜୀବନ ପାଇଁ ଯାହା ପ୍ରୟୋଜନ,
ରହିଛି ଉଦ୍ୟାନେ ପରିପୂର୍ଣ୍ଣ ଆୟୋଜନ ।
ଭୂମି ଦେଖେ ଗ୍ରୀଷ୍ମକାଳେ ଥାଏ ଶିରୀହୀନ,
ପ୍ରାବୃଟ ଆଗମେ ଧରୁ ଯୌବନ ନବୀନ ।

---

* କେବଳ ସୌନ୍ଦର୍ଯ୍ୟ ଓ ସୁଗନ୍ଧ ବିସ୍ତାର ନିମନ୍ତେ ପୁଷ୍ପରାଶି ଜଗତରେ ସୃଷ୍ଟ ହୋଇ ନାହାନ୍ତି । ଏ ସକଳ ଅସଂଖ୍ୟ ଅସଂଖ୍ୟ କୀଟ ପତଙ୍ଗର ଜୀବନଧାରଣର ଉପାୟ । ପୁଷ୍ପ ରସଜୀବୀ ପ୍ରାଣୀମାନଙ୍କ ମଧ୍ୟରୁ ଅନେକ ପ୍ରକାର ନିଶାଚର । ରାତ୍ରି ଅନ୍ଧକାରରେ ଶୁକ୍ଳବର୍ଣ୍ଣ ଭିନ୍ନ ଅନ୍ୟାନ୍ୟ ବର୍ଣ୍ଣ ସୁସ୍ପଷ୍ଟ ଦୃଷ୍ଟ ହୁଏ ନାହିଁ । ଅନନ୍ତ ଜ୍ଞାନୀ ଅନନ୍ତ କରୁଣାମୟ ପରମେଶ୍ୱର ସେହି କ୍ଷୁଦ୍ରତମ ପ୍ରାଣୀମାନଙ୍କ ସକାଶେ ଶୁକ୍ଳବର୍ଣ୍ଣ ପୁଷ୍ପ ରାତ୍ରରେ ଫୁଟାଇଥାନ୍ତି । ଏକ ଜଳଜକୁମୁଦ ପୁଷ୍ପପ୍ରତି ଦୃଷ୍ଟିପାତ କରନ୍ତୁ; ରକ୍ତବର୍ଣ୍ଣ ଦିବସରେ, ଶୁକ୍ଳ ବର୍ଣ୍ଣ ରାତ୍ରିରେ ଫୁଟିଥାଏ ।

ଶରତ ବସନ୍ତ କ୍ରମେ ଶସ୍ୟ ପୁଷ୍ପଭରା,
କମଳା କି ମେଳି ବସିଥାଆନ୍ତି ପସରା ।

× × ×

ନୟନ-ରଞ୍ଜନ ପୁଷ୍ପ ସୁମଧୁର ଫଳ,
ଅନନ୍ତ ଅନନ୍ତସଂଖ୍ୟ ପୂର୍ଣ୍ଣ ଭୂମଣ୍ଡଳ ।
ମାନବ ସକାଶେ ପ୍ରଭୁ କରିଛ ସୃଜନ,
ତୁମ୍ଭର ତ ନାହିଁ ଏଥି ଲେଶ ପ୍ରୟୋଜନ ।
କି କୌଶଳେ ନିର୍ମିଛନ୍ତି ଫଳପୁଷ୍ପଚୟ,
ନିରୀକ୍ଷଣ କଲେ ହୁଏ ସ୍ତମ୍ଭିତ ହୃଦୟ ।
ନିତ୍ୟ ଦେଖେଁ କେତେ ପ୍ରାଣୀ ଜୀବନର ଆଶେ
ଆସୁଛନ୍ତି ପୁଷ୍ପ ଫଳପାଇଁ ତୋହ ପାଶେ ।
କେବଳ ତ ନୋହୁ ତୁହି ଶୋଭାର ଆଧାର,
ମାନବ ବିହଗ କୀଟେ ଯୋଗାଉ ଆହାର ।
ତୋହର ପ୍ରବଳ ଶତ୍ରୁ ଦୁର୍ବୃତ୍ତ ବାନରେ,
ଯୋଗାଉ ତାହାଙ୍କୁ ମଧ ଖାଦ୍ୟ ଅକାତରେ ।
ସାଧୁଏ କରନ୍ତି ମଧ ଶତ୍ରୁ ଉପକାର,
ତୋହଠାରେ ନିଦର୍ଶନ ପ୍ରତ୍ୟକ୍ଷେ ତାହାର ।
ତୋହର ପ୍ରଶଂସା କେତେ ଗାଇଲି ଉଦ୍ୟାନ,
ଆପଣା ଦ୍ରବ୍ୟର କେବା କରେ ଗୁଣ ଗାନ ?
ମୋହର ଉଦ୍ୟାନ ତୁହି, ଛି ଛି ! ମିଛ କଥା,
ଘୋଷଣା କରୁ ତୁ ବିଶ୍ୱବିଧାତା ବାରତା ।
ଦୂର୍ବାଦଳଟିଏ କରି ନ ପାରେ ନିର୍ମାଣ,
କିପରି ବୋଲିବି ତୁହି ମୋହର ଉଦ୍ୟାନ ?
ଦେବତାବାଞ୍ଛିତ ସ୍ଥାନ ତୁହି ତ ମହାନ,
ତୋତେ ଲଭି ଆପଣାକୁ ମଣେ ଭାଗ୍ୟବାନ ।
ପୂର୍ଣ୍ଣ କର ମୋ କାମନା ହେ ଶାନ୍ତକାନନ,
ତୋ ସେବାରେ ଗତ ହେଉ ଅନ୍ତିମ ଜୀବନ ।

———

## ଧର୍ମରାଜ୍ୟ

ଭୂତସାକ୍ଷୀ ଇତିହାସ କରୁଛି ପ୍ରମାଣ,
କେତେ ମହାବୀର ବିଶ୍ୱେ ଥିଲେ ବିଦ୍ୟମାନ ।
କେତେ ରାଜା ମହାରାଜ ବିସ୍ତାରି ରାଜତ୍ୱ,
ରଖିଥିଲେ କେତେ ଦେଶ ଦେଶାନ୍ତ ଆୟତ୍ତ ।
ଜଗତେ ଭସାଇ ସ୍ରୋତ ମାନବ ରକ୍ତରେ,
ପୋଡ଼ି ଜାଳିଛନ୍ତି କେତେ ଦେଶ ଦେଶାନ୍ତରେ ।
କାହିଁ ସେ ସେମିରାମିସ—ଆଲେକଜେଣ୍ଡର ?
ଇବ୍ରାହିମ ଲୋଦି—କାହିଁ ମାମୁଦ—ବାବର ?
ଯେ ଆଲେକଜେଣ୍ଡର ଦିନେ କହିଥିଲେ ଦୁଃଖେ,
ନାହିଁ ଜିଣିବାକୁ ପୃଥ୍ୱୀ, ଯିବି କେଉଁ ମୁଖେ ?
ହାନିବଲ, ନେପାଲିନ ଫରାସୀ-ଈଶ୍ୱର—
ସମସ୍ତ ୟୁରୋପ ଥିଲା ଯାହାଙ୍କ କିଙ୍କର ।
ମାନବର ସ୍ୱାଧୀନତା ଧନ ପ୍ରାଣ ମାନ,
ଅକାରଣେ ହରି-ଥିଲେ ଜଗତେ ପ୍ରଧାନ ।
ମାନବ ଜୀବନ ତୁଚ୍ଛ ସେମାନଙ୍କଠାରେ,
ଲକ୍ଷ ଲକ୍ଷ ଲୋକ ବଧିଛନ୍ତି ବାରେ ବାରେ ।
ଶିଶୁ ନାରୀ ବୃଦ୍ଧ ରୋଗୀ ନ ଥିଲା ବିଚାର,
ବ୍ୟବସାୟ ଥିଲା ଲୋକ ଜୀବନ ସଂହାର ।
କେତେ ରମ୍ୟ ଉପବନ ଶୋଭନା ନଗରୀ,
ପୋଡ଼ି ଜାଳି କରିଥିଲେ ମରୁଭୂମି ସରି ।
ମାନବ ଜୀବନ କୀଟ ପତଙ୍ଗ ସମାନେ,
ପଦେ ଦଳି ଦେଇଛନ୍ତି ତାଙ୍କ ସେନାମାନେ ।
ସେମାନଙ୍କ ସିଂହାସନ ରତ୍ନମଣ୍ଡିତ,
କୋଟି ମୁଦ୍ରା ହୀରା ମୀଳା ବୈଦୂର୍ଯ୍ୟ ଜଡ଼ିତ ।
ବହୁ ଲକ୍ଷ ସେନା ଥିଲେ ତାହାଙ୍କ ସେବକ,
ଆଦେଶକୁ ଚାହିଁଥାନ୍ତି କୋଟି କୋଟି ଲୋକ !
କାହିଁ ସେ ରାଜତ୍ୱ ଏବେ ରତ୍ନସିଂହାସନ,
କାହାନ୍ତି ସେମାନେ, କାହିଁ ଗଲେ ସେନାଗଣ ।
ନାହିଁ ନାହିଁ ସେମାନଙ୍କ ଆଧିପତ୍ୟ ଚିହ୍ନ,
ପୃଥିବୀ କମ୍ପାଇଥିଲେ ମାତ୍ର କେତେ ଦିନ ।

ପ୍ରତ୍ୟକ୍ଷ ପ୍ରମାଣ ଦେଖି ବୁଝିଯାଅ ଭାଇ,
ଅଧର୍ମର ଆଡ଼ମ୍ବର ନୁହେ ଚିରସ୍ଥାୟୀ ।
ରାଜାଏ ଯେତେକ କରିଥିଲେ ଅତ୍ୟାଚାର,
ସ୍ୱର୍ଗସିଂହାସନ ତଳେ ହେଉଛନ୍ତି ବିଚାର ।

ଦୟାମୟ ପ୍ରେମମୟ ଶାନ୍ତିମୟ ପ୍ରଭୁ,
ଅତ୍ୟାଚାର ତାଙ୍କ ରାଜ୍ୟେ ଚଳିବ କି ସବୁ ?
ପଶ୍ଚାନ୍ତରେ ଦେଖ ଧର୍ମରାଜ୍ୟେ ରାଜାଗଣେ,
ଚିର ଆଧିପତ୍ୟ ଥିବ ଏ ବିଶ୍ୱ ଭୁବନେ ।

କେତେ ଦିନ କରି ଧର୍ମ ସୁନୀତି ପ୍ରଚାର
ମନୋରାଜ୍ୟେ କରିଥିଲେ ରାଜତ୍ୱ ବିସ୍ତାର ।
ଯେଉଁ ରାଜ୍ୟ କରି ଯାଇଛନ୍ତି ସଂସ୍ଥାପନା,
ତା ମହିମା ଶେଷ ଦିନଯାଏ ଯିବ ଜଣା ।

କେ ଥିଲେ ସେମାନେ ? ମହାବୀର ? ବଳବନ୍ତ
ଥିଲା କି ଅତୁଳ ଧନ ? ସେନା ବା ସାମନ୍ତ ?
ବସିଥିଲେ କି ପ୍ରକାର ରତ୍ନସିଂହାସନେ ?
କେତେ ରତ୍ନ ଲାଗିଥିଲା ବସନ ଭୂଷଣେ ?

କେତେ ଧନ ରତ୍ନ ଥିଲା ତାଙ୍କ ଗନ୍ତାଘରେ ?
କେତେ ଲୋକ ଖଟିଥିଲେ ସେବକ ରୂପରେ ?
ନାହିଁ ନାହିଁ, ଥିଲେ ସର୍ବେ ଚୀର ବସ୍ତ୍ରଧାରୀ,
ସମ୍ପତ୍ତିର ସଂଖ୍ୟା ବୁଝ—ଦାଣ୍ଡରେ ଭିଖାରି ।

ସୂତ୍ରଧର ପୁତ୍ର କେହି, ବଣିକ ସେବକ । *
ସାମାନ୍ୟ ବ୍ରାହ୍ମଣ ପୁତ୍ର, କେହି ପର୍ଯ୍ୟଟକ । †

ସେମାନଙ୍କ ସିଂହାସନ ମାନବହୃଦୟ,
ପୃଥ୍ୱୀ ଶେଷଯାଏ ଥିବ ଅକ୍ଷୟ ଅବ୍ୟୟ ।
ଯାବତ ଚନ୍ଦ୍ରାର୍କେ ଥିବ ତାହାଙ୍କ ରାଜତ୍ୱ,
ପାଳିବେ ଅବଶ୍ୟ କୋଟି ଲୋକ ତାଙ୍କ ମତ ।

କେତେ ରାଜରାଜେଶ୍ୱର ତାଙ୍କ ପଦଧୂଳି
କରିବେ ସାର୍ଥକ ପ୍ରାଣ ମସ୍ତକରେ ବୋଳି ।
ତାହାଙ୍କ ପବିତ୍ର ନାମ କରି ଉଚ୍ଚାରଣ,
କରିବେ ସାର୍ଥକ ଜ୍ଞାନ ଆପଣା ଜୀବନ ।

ଥିଲେ କି ସେମାନେ କେତେ ସୈନ୍ୟ ଅଧିକାରୀ ?
ଜଣକର ଥିଲେ ବାର ଗୋଟି ମତ୍ସ୍ୟଧାରୀ । (୧)
ଜଣକର ଥିଲେ ଏକ ମାତ୍ରକ ସ୍ତ୍ରୀଲୋକ, (୨)
ଅନ୍ୟ ଜଣକର ଥିଲେ ପାଞ୍ଚଟି ଭିକ୍ଷୁକ । (୩)

ଏକ ମହାରାଜ ସେନା କେତୋଟି ବୈରାଗୀ, (୪)
ଚାରି ପାଞ୍ଚ ସେନା ଥିଲେ ଏକ ରାଜା ଲାଗି ।(୫)
ମାତ୍ରକ ଅନନ୍ତ କୋଟି ତାହାଙ୍କ ସେନାନୀ,
ଜାତ ହେବେ ଜଗତରେ ତାଙ୍କ ଆଜ୍ଞା ମାନି ।

କରିବେ ପାଳନ ପ୍ରଭୁମାନଙ୍କର ରାଜ୍ୟ,
ଜଗତେ ଯାବତ ଥିବ ମାନବ ସମାଜ ।
ପ୍ରଭୁମାନଙ୍କର ରାଜ୍ୟ କ୍ରମଶଃ ଉନ୍ନତ,
ହେବ ଦୂର ଲୋକଗଣ ଦୁର୍ଦ୍ଦଶା ଦୁର୍ଗତି ।
ପ୍ରାଣୀ ଉପକାର ଭକ୍ତି ପ୍ରୀତି ଥିଲା ଅସ୍ତ୍ର,
ଲୋକର ଲାଞ୍ଛନା ଥିଲା ସେମାନଙ୍କ ବସ୍ତ୍ର ।

---

* ଯିଶୁ ଯୋଷେଫ—ନାମକ ଜଣେ ସାଧାରଣ ସୂତ୍ରଧରର ପୁତ୍ର ଅଟନ୍ତି । ମହମ୍ମଦ୍ ଖଦିଜା ନାମ୍ନୀ ଗୋଟିଏ ଧନବତୀ ନାରୀର ଏବଂ ନାନକ ଗୋଟିଏ ମୁଦି ଦୋକାନର କର୍ମଚାରୀ ଥିଲେ ।

† ଚୈତନ୍ୟ ଜଗନ୍ନାଥ ମିଶ୍ର ନାମକ ଜଣେ ସାଧାରଣ ବିପ୍ର ପୁତ୍ର । ରାଜପୁତ୍ର ବୁଦ୍ଧଦେବ ପୈତୃକ ରାଜ୍ୟ ପରିତ୍ୟାଗ ପୂର୍ବକ ଭିକ୍ଷାନ୍ନଦ୍ୱାରା ଜୀବିକା ନିର୍ବାହ କରି ଧର୍ମ ପ୍ରଚାର କରୁଥିଲେ ।

(୧) ଯିଶୁଙ୍କର ପ୍ରଥମ ଶିଷ୍ୟ ବାରଜଣ ଧୀବର ।
(୨) ମହମ୍ମଦଙ୍କର ଧର୍ମମତ ପ୍ରଥମେ ଖଦିଜା ନାମ୍ନୀ ଗୋଟିଏ ସ୍ତ୍ରୀ ଗ୍ରହଣ କରିଥିଲେ ।
(୩) ବୁଦ୍ଧଦେବଙ୍କର ପ୍ରଥମ ଶିଷ୍ୟ ପାଞ୍ଚଜଣ ଭିକ୍ଷୁକ ।
(୪) ଚୈତନ୍ୟଦେବଙ୍କର ପ୍ରଥମ ଶିଷ୍ୟ କେତେ ଜଣ ବୈରାଗୀ ମାତ୍ର ।
(୫) ନାନକଙ୍କର ପ୍ରଥମ ଶିଷ୍ୟ ୪/୬ ଜଣ ସାଧାରଣ ଲୋକ ମାତ୍ର ଥିଲେ ।

ପାପଶତ୍ରୁ ବିପକ୍ଷରେ ସମର ଘୋଷଣା,
କରିଥିଲେ ସର୍ବେ ମହାପ୍ରାଣ ମହାମନା ।
କେହ୍ନି ଶତ୍ରୁ ତାଙ୍କ ପ୍ରତି କଲେ ଅତ୍ୟାଚାର;
କରନ୍ତି ତା ପ୍ରତି ପ୍ରେମ ପ୍ରୀତି ବ୍ୟବହାର ।
ପ୍ରାଣୀର ଉଦ୍ଧାର ପାଇଁ ଆପଣା ଜୀବନ,
ତୁଚ୍ଛ ମଣି କରୁଥାନ୍ତି ନିୟତ ଯତନ ।
କରିବେ ସେ ସର୍ବରାଜା କାଳକ ଆହାର,
ସେଥି ପ୍ରତି ଥିଲା ନାହିଁ କିଛିହିଁ ବିଚାର ।

ବରଞ୍ଚ ପାର୍ଥିବ ଧନେ ଥିଲା ବଡ଼ ଘୃଣା,
ସଞ୍ଚୟୀ ଲୋକର ପ୍ରତି ନ ଥିଲା କରୁଣା ।
ଅବିନାଶୀ ମାନବାତ୍ମା କିପରି ଉଦ୍ଧାର,
ଜଗତରେ ପ୍ରେମ ପ୍ରୀତି ସୁନୀତି ପ୍ରଚାର ।
ଧର୍ମରାଜ୍ୟ ଥାପିବାକୁ ମାନବ ହୃଦୟେ,
କରନ୍ତି ପ୍ରାର୍ଥନା ନିତ୍ୟ ପ୍ରଭୁ ଦୟାମୟେ ।
ସ୍ମରିଲେ ସେ ସର୍ବ ମହାରାଜାଙ୍କର ନାମ,
ଖଣ୍ଡିବ ଦୁର୍ଗତି, ପୂର୍ଣ୍ଣ ହେବ ମନସ୍କାମ ।

ଜୟ ଜୟ ଶଚୀପୁତ୍ର ଚୈତନ୍ୟ ଗୋସାଇଁ,
ପ୍ରେମିକ ଧାର୍ମିକ ତୁମ୍ଭ ସମାନରେ କାହିଁ ?
ଦଣ୍ଡ କମଣ୍ଡଳୁ ହସ୍ତେ ମୁଣ୍ଡିତମସ୍ତକ,
ମାର୍ଗରେ ଭିକ୍ଷୁକ, ସାର କୌପୀନ ମାତ୍ରକ ।
ଯେଉଁ ଭକ୍ତିମାର୍ଗ ଦେଖାଇଛ ଲୋକଗଣେ,
ରହିବ ଅନନ୍ତ କାଳ ଅକ୍ଷତ ଭୁବନେ ।

ଜୟ ଜୟ ମେରୀପୁତ୍ର ଯିଶୁ ମହାପ୍ରାଣ,
ତେଜିଛ ଜୀବନ ଲୋକେ କରିବାକୁ ତ୍ରାଣ ।
ତୁମ୍ଭ କ୍ରୂଶ ଦଣ୍ଡ ଚିହ୍ନ ରାଜରାଜେଶ୍ୱରେ,
ମଣିବେ କୃତାର୍ଥ ଧରି ଗଳେ ମସ୍ତକରେ ।

ଜୟ ଜୟ ମହମ୍ମଦ ଏକେଶ୍ୱରବାଦୀ,
ଧର୍ମରାଜ୍ୟେ ତୁମ୍ଭ ସଙ୍ଗେ କେ ହେବ ବିବାଦୀ ।
ବର୍ବର କୋରେଶ ଜାତି ଖ୍ୟାତ ସମାଜରେ,
ବାନ୍ଧିଅଛ ସେମାନଙ୍କୁ ପାଞ୍ଚ ନମାଜରେ ।

ଧନ୍ୟ ଧନ୍ୟ ବୁଦ୍ଧଦେବ ଦୟାର ସାଗର,
ଧର୍ମରାଜ୍ୟେ ତୁମ୍ଭେ ମାତ୍ର ରାଜରାଜେଶ୍ୱର !
ପ୍ରାଣୀଙ୍କ ଦୁର୍ଦ୍ଦଶା ଦେଖି କରିଛ କ୍ରନ୍ଦନ,
ତେଜିଥିଲ ଦାର ସୁତ ଜ୍ଞାତି ପରିଜନ ।
ମାର୍ଗେ ମାର୍ଗେ ଭ୍ରମି କରି ଭିକ୍ଷାନ୍ନ ଜୀବିକା,
ଲୋକଗଣେ ଦେଇଅଛ ମୁକ୍ତିମାର୍ଗ ଶିକ୍ଷା ।

ଆଶ୍ଚର୍ଯ୍ୟ ମହିମା ତୁମ୍ଭ ଧନ୍ୟ ହେ ନାନକ,
ଏକେଶ୍ୱରବାଦୀ ଧର୍ମରାଜ୍ୟସଂସ୍ଥାପକ ।
ନିତାନ୍ତ ଦରିଦ୍ର ଥିଲ ମାର୍ଗର ଭିକାରି,
କେତେ ମହାଜ୍ଞାନୀ ତୁମ୍ଭ ପଦ ସେବାକାରୀ ।
ତୁମ୍ଭ ଉତ୍ତରାଧିକାରୀ ଶିଖଗୁରୁଗଣେ
ଅସାଧ୍ୟ ସାଧନା କରି ଶାସିଲେ ଯବନେ ।

ଧନ୍ୟ ଧନ୍ୟ ମହାମନା ହେ ରାମମୋହନ,
ତୁମ୍ଭ ଆବିର୍ଭାବ ଦେଶ ଉଦ୍ଧାର କାରଣ ।
ବେଦ ମହାବାକ୍ୟ ଉପନିଷଦର ବାଣୀ
ଭୁଲାଇ କୁଶିକ୍ଷା ଦେଉଥିଲେ ଭଣ୍ଡଜ୍ଞାନୀ ।
କରିବା ସକାଶେ ଅଜ୍ଞମାନଙ୍କୁ ଉଦ୍ଧାର
ଭାରତରେ ସତ୍ୟ ଧର୍ମ କରିଛ ପ୍ରଚାର ।

ଧର୍ମରାଜ୍ୟେ ଅଧିକାରୀ ରାଜରାଜେଶ୍ୱରେ,
ପ୍ରଣତ ହେଉଛି ତୁମ୍ଭମାନଙ୍କ ପଦରେ ।
ମହାପୁଣ୍ୟମୟ ତୁମ୍ଭମାନଙ୍କର ନାମ,
ଯେ ନାମ ଉଚ୍ଚାରି ସିଦ୍ଧ ହେବ ମନସ୍କାମ ।

———

## ପଦ୍ୟମାଳା

ଖଳ ବୋଲେ, ସର୍ପ ତୁ ତ ଅତି ପାପ ଦୁଷ୍ଟ,
ପ୍ରାଣିହିଂସା କରୁ ଅକାରଣେ ହୋଇ ରୁଷ୍ଟ ।
ସର୍ପ ବୋଲେ, ମୋ ଦଂଶନେ ମରେ ଜଣେ ପ୍ରାଣେ
ତୋ ଜିହ୍ୱାରେ କେତେ ବଂଶ ଛାରଖାର ଜାଣେ ।

କେ ମୋ ବନ୍ଧୁ ? ମିଷ୍ଟଭାଷୀ ପର ଉପକାରୀ,
ଘୃଣ୍ୟ କେ ? ଲମ୍ପଟ ଶଠ ସମର୍ଥ ଭିଖାରି ।
କିପରି ମର୍ଯ୍ୟାଦା ଲୋଡ଼, ଯେବେ ନୁହ ଗୁଣୀ,
କିପରି ମହତ୍ତ୍ୱ ରଖ, ଯେବେ ଅଟ ଋଣୀ,
ଜ୍ଞାନୀ ହେବ କିପାଁ ହିତବାକ୍ୟ ନାହିଁ ଶୁଣି,
ମଦ୍ୟପ ଗୃହରେ ନିତ୍ୟ ନିଶୀଥେ ଭିକ୍ଷୁଣୀ ।

ମୃତ୍ୟୁପାଶରେ ବନ୍ଧ ସର୍ବେ, ଅଜ ଯେସନେ ଯୂପ ସ୍ତମ୍ଭେ ।
ଯେ ଏହା ନ ପାରଇ ଜାଣି, କିପରି ବୋଲ ତାକୁ ଜ୍ଞାନୀ !
ଊଷର-ଭୂମି ମୂଢ଼ ମନ, ଅକର୍ମା ଉପଳ ଯେସନ ।
ସୁବୀଜ ସୁଜ୍ଞାନ ବପନ, କଲେ ତା ଯାଏ ଅକାରଣ ।

ମଧୁମକ୍ଷିକା ପିପୀଲିକା, ଦେଖ ତ ଏହାଙ୍କ ଜୀବିକା ।
ତାଙ୍କ ଭଣ୍ଡାର ଦେଖ ଆସି, ତୁମ୍ଭେ କିପାଇଁ ଉପବାସୀ ?
ଚନ୍ଦନ ବେଷ୍ଟିତ ଭୁଜଙ୍ଗେ, ସମ୍ପଦ ଜଡ଼ିତ ଆତଙ୍କେ,
ସାଗର ରତ୍ନର ଆକର, ନିବାସ ପୁଣି ବିଷଧର,

ସମ୍ପଦେ ବିପଦନିଚୟ, ମିଳିତ ଅଛନ୍ତି ଉଭୟ ।
ଜଗତେ ଅତୁଳ ସମ୍ପତ୍ତି, ଶସ୍ୟଶାଳିନୀ ବସୁମତୀ ।
ଯେତିକି କର ଉପାର୍ଜନ, ସେତିକି ତବ ପ୍ରାପ୍ୟ ଧନ ।
ଜ୍ଞାନୀ ତାପସ ଶୂର କବି, ବିବିଧ ଶାସ୍ତ୍ର ଅନୁଭବୀ,

ଲୋଭ ହସ୍ତରୁ ପରିତ୍ରାଣ, ପାଇ ନାହାନ୍ତି କେହି ଜାଣ ।
ପ୍ରଭୁ କରୁଣା ବିନା ଲୋକ, ନ ପାଏ ଜ୍ଞାନର ଆଲୋକ ।
କରୁଣା ଲଭିବା ସକାଶେ, ପ୍ରାର୍ଥନା କର ତାଙ୍କ ପାଶେ ।
ଲକ୍ଷ୍ମୀସ୍ୱରୂପା ଯେ ଲଳନା, ସେ ପୁଣି ରାକ୍ଷସୀ ସମାନା ।
ତୁଳସୀ ବିଶ୍ରେଷ୍ଠ ଉଭୟ ଉଦ୍ଭିଦ ବଂଶରୁ ଉଦୟ ।
ଈଶ୍ୱରବିଶ୍ୱାସୀ ଯେ ଲୋକ,ତା ମନେ ଥାଏ ନାହିଁ ଶୋକ ।
ଈଶ୍ୱର ଯାହାକୁ ସଦୟ, କାହାକୁ କରିବ ସେ ଭୟ ?

ଜଗତରେ ପରିପୂର୍ଣ୍ଣ ଅନନ୍ତ ସମ୍ପତ୍ତି,
ଜଗତେ ଅନନ୍ତ ପ୍ରାଣୀ କରନ୍ତି ବସତି ।
ପ୍ରତ୍ୟେକ ପ୍ରାଣୀକୁ ପ୍ରଭୁ ବାଣ୍ଟି ଦିଅ ଧନ,
କର୍ମଫଳ ଅନୁସାରେ ଯେନ୍ତ ପ୍ରୟୋଜନ ।

ହିଂସା କର କିପାଁ ଦେଖି ଅନ୍ୟ ଲୋକ ଧନ,
ତୁମ୍ଭେ କିପାଁ ବୋଲ କର ନାହିଁ ଉପାର୍ଜନ ?
ଆପଣେ ଅଯୋଗ୍ୟ ଯେବେ ଧନ ଉପାର୍ଜନେ,
ପରେ ହିଂସି ପାପ ଲଭ କର କି କାରଣେ ?

ସକଳ ଶାସ୍ତ୍ରେ ଥାଉ ଜ୍ଞାନ, ହୋଇ କୁଳୀନ ଧନବାନ,
ଭକ୍ତି ନ ଥିଲେ ପ୍ରଭୁପଦେ, ବୃଥା ଜୀବନ ସେ ସମ୍ପଦେ
ଗୁଣ ବୁଝନ୍ତି ଗୁଣିଜନେ, ବସନ୍ତେ କୋକିଳ ଯେସନେ ।
ଅଜ୍ଞ ବୁଝିବ ଗୁଣ କାହୁଁ, ବସନ୍ତେ ଯେ ପ୍ରକାରିକାଉ ।

ନାହିଁ ସେ ଗୁରୁ ପ୍ରୟୋଜନ, ଯେ ଲୋକ ହରେ
ଶିଷ୍ୟଧନ ।

ଯେ ଦିଏ ଶିଷ୍ୟେ ତତ୍ତ୍ୱଜ୍ଞାନ, ତାହାଙ୍କୁ କରେଁ ମୁଁ ସମ୍ମାନ ।
ରହିବ ଯେପରି ସଙ୍ଗରେ, ଗଣ୍ୟ ହେବଟି ସେ ରୂପରେ
କାଚ ସଙ୍ଗରେ ଥିଲେ ମଣି, ତାହାକୁ କାଚ ମଧ୍ୟେ ଗଣି

ବୃଥା ସେ ଗ୍ରନ୍ଥ ଅଧ୍ୟୟନ, ଯେବେ ନ କର ଆଚରଣ ।
ବଳଦ ବହେ ଚିନିଭାର, ମାଧୁରୀ ନ ଜାଣେ ତାହାର ।
ଆହାର ନିଦ୍ରା ଭୟ ଜ୍ଞାନ—ମାନବ ପଶୁରେ ସମାନ;
ବିଶେଷ ମାନବଙ୍କଠାରେ, ସୃଷ୍ଟିକର୍ତ୍ତାଙ୍କୁ ଜାଣିପାରେ ।
ପାଉଁଶ ବୋଳିଲେ ଦେହରେ, ସନ୍ନ୍ୟାସୀ ଯେବେ
ହେବେ ନରେ ।

ପଙ୍କରେ ଗଡ଼ିଲେ ଘୁଷୁରି, ହେବ କି ସାଧୁ ବ୍ରହ୍ମଚାରୀ ?
ସର୍ବେ ଧାବିତ ସ୍ୱାର୍ଥ ପାଇଁ, ସ୍ନେହ ମମତା ଜ୍ଞାନ କାହିଁ ?
ପାଣ୍ଡବେ ସ୍ନେହ ଥିଲେ ମନେ, ଭୀଷ୍ମ ଭଜିଲେ ଦୁର୍ଯ୍ୟୋଧନେ

ପଢ଼ିଲି ନାନା ଦେଶ ଭାଷା, କାହିଁ ତ ନ ପୂରିଲା ଆଶା ।
ହୋଇ ପଛକେ ସେ ନିକୃଷ୍ଟ, ମୋ ମାତୃଭାଷା ମୋତେ
ଶ୍ରେଷ୍ଠ ।

ଦେଖିଲି ବୁଲି ବହୁଦୂର, କାଞ୍ଚି, କାମାଖ୍ୟା କାନପୁର,
ପାଇଲି ନାହିଁ ଘୂରି, ଘୂରି, ମୋ ମାତୃଭୂମିର ମାଧୁରୀ ।

ବାୟସ ବନ୍ଧୁବନ ବଞ୍ଚେ, ମୂଷିକ ବହୁ ଖାଦ୍ୟ ସଞ୍ଚେ ।
ସାଧୁଙ୍କ ସଞ୍ଚୟ ଜୀବନ—ପରାର୍ଥେ ହୁଏ ପ୍ରୟୋଜନ ।
ସ୍ୱଗୋଷ୍ଠ ସ୍ୱଜନ ପାଳନ, ବଇରୀ ବିନାଶ ସାଧନ
ଯେ କରେ ଧନ୍ୟ ସେହି ଲୋକ, ଅଟେ ସେ ବଂଶର ଆଲୋକ ।

ନୃପତି ଯେବେ ଅତ୍ୟାଚାରୀ, କଳହପ୍ରିୟା ଦୁଷ୍ଟା ନାରୀ,
ଅବାଧ ନିର୍ବୋଧ ନନ୍ଦନ, ଏହାଙ୍କୁ କରିବ ବର୍ଜନ ।
ଯା ପୁତ୍ର ନିର୍ବୋଧ ନିର୍ଗୁଣୀ, ଅସତୀ ମୁଖରୀ ତରୁଣୀ,
ପିତା ପୁତ୍ରରେ ଭିନ୍ନ ଭିନ୍ନ, ବଂଶ ନାଶର ଏହି ଚିହ୍ନ ।

ଆତ୍ମସମ୍ମାନ ଆତ୍ମଜ୍ଞାନ, ଆପଣା ଇନ୍ଦ୍ରିୟ ଶାସନ,
ଯେ ଲୋକ ଯେତେ ରକ୍ଷା କରେ, ଧନ୍ୟ ସେ ଲୋକ ସମାଜରେ ।
ଆସିଛ କାହୁଁ, ଯିବ କାହିଁ; ରହିଛ କେତେ ଦିନପାଇଁ,
ଏହା ତ ଗଲା ନାହିଁ ଜଣା, ଭ୍ରମୁଚ ସିନା ହୋଇ ବଣା ।

ସ୍ୱକର୍ମ ଫଳ ଭୁଞ୍ଜେ ଲୋକ, ଦୈବ କେବଳ ଉପଲକ୍ଷ୍ୟ ।
ଭୂମିରେ ବୁଣିବ ଯେ ଶସ୍ୟ, ତା ଫଳ କାଟିବ ଅବଶ୍ୟ ।
ଈଶ୍ୱରେ ସକଳ ଭୂତରେ, ସକଳ ଭୂତରେ ଈଶ୍ୱରେ,
ଯେ ଦେଖେ ସେହିଲୋକଜ୍ଞାନୀ, ଅଟେସେ ବ୍ରହ୍ମ-ତତ୍ତ୍ୱ ଜାଣି ।

କଟୁକଥାରେ ପାଅ ବ୍ୟଥା, କିପାଇଁ ବୋଲ କଟୁକଥା ।
ଯେଉଁ ପଦାର୍ଥ ଦେବ ଋଣ, ନେଉଟି ପାଇବ ତା ପୁଣ ।
ଅସାଧ୍ୟ କି ଅଛି ଜଗତେ, ସକଳ ଯତ୍ନର ଆୟତ୍ତେ ।
ମାନବ ଯାହା କରି ପାରେ, କିପାଁ ଅସାଧ୍ୟ ତୁମ୍ଭଠାରେ ।

ଯହିଁରୁ ଜାତ ଶୁଭଫଳ, ତେଜିଣ ସେ କାର୍ଯ୍ୟ ସକଳ,
କିପାଇଁ କର ମନ୍ଦ କର୍ମ, ଏହାକି ନୁହେ ମତିଭ୍ରମ ?
ଯାବତ ସମ୍ପଦ ବିପଦ, ଜୀବନ ଯଉବନ ପଦ,
ଜଗତେ ନୁହେ କିଛି ସ୍ଥିର, ଏଥିକୁ ବୁଦ୍ଧିକର ସ୍ଥିର ।

କାନନେ ଯେବେ ଫୁଲ ଫୁଟେ, ମଧୁ ଲୋଭରେ ଅଳି ଜୁଟେ ।
ମଧୁ ନ ଥିଲେ ସେ ପୁଷ୍ପରେ, ଅଳି କି ଅନାଇବ ଥରେ

ଅର୍ଥ ଲୋକର ଅଭିଳାଷ, ତହିଁ ହୁଅନ୍ତି ପ୍ରଭୁ ଦାସ ।
ଅର୍ଥରେ ନ ଥିଲେ ସମ୍ପର୍କ, କେ ପ୍ରଭୁ, ଦାସ କେଉଁ ଲୋକ

ଭାଇ ଭାଇରେ ଯେବେ କଳି, ତା ତହୁଁ ଦୁଃଖ କିବା ବଳି ।

ବିଶ୍ୱାସ ନ ଥିଲେ ସୋଦରେ, ପ୍ରୀତି କି ଜନ୍ମିବ ଆନରେ ।

ନାଗିଣୀ ବାରବିଳାସିନୀ, ଉଭୟେ ଜୀବନଘାତିନୀ ।
ବିଶେଷେ ବାରାଙ୍ଗନାଠାରେ, ବଂଶ ବିନାଶ କରିପାରେ ।

ନିୟତ ମୋ ଚିତ୍ତ ଚଞ୍ଚଳ, ନାହିଁ ମୋ ଜ୍ଞାନ ଧର୍ମବଳ,
ଅବଶ ଇନ୍ଦ୍ରିୟ ସକଳ, ପ୍ରଭୁ ମୋ ଭରସା କେବଳ ।
ସତ୍ୟ ମୁଁ ପ୍ରଭୁ ଦୁରାଚାରୀ, ଅଜ୍ଞାନ ମୂଢ଼ ପାପକାରୀ,
ମାତ୍ର ମୁଁ ତୁମ୍ଭ ସୃଷ୍ଟ ଜୀବ, ବୃଥା କି ଏହା ଭାସିଯିବ ?

କେ ବନ୍ଧୁ କେ ଶତ୍ରୁ ତୁମ୍ଭର, କାର୍ଯ୍ୟରେ ଲୋକ ଆତ୍ମପର,
ଦେହର ବ୍ୟାଧି ଶତ୍ରୁ ଜାଣ, ବନ୍ୟ ଔଷଧି ଦିଏ ପ୍ରାଣ ।
ବଶ ଯେ କରିଛି ମନକୁ, ସେ ଜିଣି ପାରେ ଜଗତକୁ ।
ନ ଥିଲେ ହିତାହିତ ଜ୍ଞାନ, ତୁମ୍ଭେହିଁ ତୁମ୍ଭ ଶତ୍ରୁ ଜାଣ,

ଲୋଭ କ୍ରୋଧକୁ ମନେ ସ୍ଥାନ, ନ ଦିଏ ଯେଉଁ ଜ୍ଞାନବାନ
ତା' ମିତ୍ରେ ଜଗତର ଲୋକ, ତାହାର ଜୀବନ ସାର୍ଥକ ।
ଯା ଖ୍ୟାତି ନାହିଁ ଜଗତରେ, ଲୋକର ମଙ୍ଗଳ ନ କରେ,
ନ ପାଞ୍ଚେ ସ୍ୱଦେଶ କଲ୍ୟାଣ, ବୃଥା ଅଟଇ ତାହା ପ୍ରାଣ ।
ନ ବୁଝି କାର୍ଯ୍ୟ କରିବାର, ଅଟେ ବିପଦ ମୂଳାଧାର,
ବିଚାରି ଯେବା କାର୍ଯ୍ୟ କରେ, କମଳା ଥାନ୍ତି ତା ପାଖରେ ।
କର୍ମସୂତ୍ରରେ ସର୍ବ ପ୍ରାଣୀ, ବଦ୍ଧ ଅଛନ୍ତି ଥିବ ଜାଣି,
କର୍ମ ଯୋଗରେ କ୍ଷୁଦ୍ର ବଡ଼, କର୍ମ ବିହୀନେ ପ୍ରାଣୀ ଜଡ଼
ନ ବସେ ମାଛି ଚନ୍ଦନରେ, ବିରାଡ଼ି ଖାଏ ନାହିଁ ଗୁଡ଼,
ସାଧୁ ଚିହ୍ନନ୍ତି ସାଧୁ ନରେ, କାହୁଁ ଚିହ୍ନିବ ମୂର୍ଖମୂଢ଼ !
ଧନ ଜନରେ କେହି ଦୁଃଖୀ, କେ ବସି ଗଲେ ପୁତ୍ର ମିତ୍ର,
ଅଳ୍ପ ଅଧିକେ ସର୍ବେ ଦୁଃଖୀ, ଜଗତେ ଏହାହିଁ ବିଚିତ୍ର ।

ମଧୁମକ୍ଷିକା ପିପିଳିକା ସମସ୍ତେ ହୋଇ କର୍ମବଶ,
ନିରତେ ଲୋଡ଼ନ୍ତି ଜୀବିକା, ଧିକ ସେ ମାନବ ଅଳସ ।
ବିନାଶ ଗଲା ଯେ ପଦାର୍ଥ, ତା ପାଇଁ କରୁଛ ଭାବନା,
ତାହା କି ତୁମ୍ଭର ଯଥାର୍ଥ ? ତେବେ ତ କପାଳି
ଶୋଚନା ?

ସୁନ୍ଦର କମଳେ ଶିଶିର ବିନ୍ଦୁ, ସୁନ୍ଦର ଗଗନେ
ପୂର୍ଣ୍ଣିମା ଇନ୍ଦୁ,
ତହିଁରୁ ସୁନ୍ଦର ଦିଶେ ଉଜ୍ଜ୍ୱଳ, ପର ଦୁଃଖେ ଯେଉଁ
ନୟନ ଜଳ ।

ଦୁଃଖ ହେଉ ସୁଖ ହେଉ ଯାଇଛି ଯା' ବହି,
କି ହେବ ବୃଥାରେ ଆଉ ତାହା କଥା କହି,
ଜ୍ଞାନୀ ଲୋକ ସର୍ବ କାର୍ଯ୍ୟ ବିଚାରଣ କରେ,
ମୂଢ଼ ଲୋକ ଅନୁତାପ କରେ ପଶ୍ଚାତରେ ।

ପ୍ରାଚୀର ନିର୍ମାଣକାରୀ ଯାଏ ଉପରକୁ,
ତଡ଼ାଗଖନକ ଯାଏ ତଳକୁ ତଳକୁ,
ଜଗତରେ ମାନବଙ୍କ ଲଭ ଏହା ଜାଣ,
ନିଜ କାର୍ଯ୍ୟେ ଉଚ୍ଚ ସ୍ଥାନ ଅବା ନୀଚ ସ୍ଥାନ ।

ଆହେ ଧନୀ ଟଳ ଟଳ ହୁଅ ଗରବରେ,
ବୋଲ ବୋଲ କେତେ ଧନ ଅଛି ତୁମ୍ଭ ଘରେ,
ଜଗତରେ ଧନରାଶି ପର୍ବତ ପ୍ରମାଣ,
ତୁମ୍ଭ ଘରେ ଥିବା ଧନ ତହୁଁ ବିନ୍ଦୁ ଜାଣ ।

ଧନ ମାନ ପଦ ପାଇ ହୁଏ ଟଳଟଳ,
ନିଶ୍ଚୟ ସେ ଲୋକ ମନ ନିତାନ୍ତ ଦୁର୍ବଳ,
ଧନ ମାନ ପଦ ପାଇ ଗର୍ବ କରେ ନାହିଁ,
ନିଶ୍ଚୟ ସେ ଉପଯୁକ୍ତ ସେହି ଦ୍ରବ୍ୟପାଇଁ ।

ଇହ ପରକାଳେ ସୁଖୀ ସାଧୁର ଜୀବନ,
ଜୀବନ କାଳରେ ସୁଖୀ ଅନେକ ଦୁର୍ଜନ ।
ପାପୀ ଲୋକ ମରବଞ୍ଚ ନାହିଁ ଲଭ କ୍ଷତି,
ଇହ ପର ଦୁଇ କାଳ ତୁମ୍ଭର ଦୁର୍ଗତି ।

ମାତୁଳ ଶ୍ରୀକୃଷ୍ଣ ପୁଣି ପିତା ଧନଞ୍ଜୟ,
ଆପେ ମଧ୍ୟ ମହାବୀର ସୁଭଦ୍ରାତନୟ ।
ସେହି ଅଭିମନ୍ୟୁ ଯୁଦ୍ଧେ ଲଭିଲେ ମରଣ,
ମୃତ୍ୟୁରୁ ପାଇବ ରକ୍ଷା ବୋଲ କେଉଁ ଜନ ।

ଅଯୋଧ୍ୟା ମଥୁରା ପୁରୀ ଯାଇଛି ବିନାଶ,
ଯଦୁବଂଶ ରଘୁବଂଶ ମଧ୍ୟ ଗଲେ ନାଶ,
ଜଗତ ମଧ୍ୟରେ ଭାଇ କିଛି ନୁହେ ଚିର,
ଏହି କଥା ମନେ ଭାଳି ବୁଦ୍ଧି କର ସ୍ଥିର !

ଆହେ ପ୍ରଭୁ ତୁମ୍ଭେ ମୋର ଜନକ ଜନନୀ
ଜଗଦ୍ଧାତ୍ରୀ ଜଗଦମ୍ବା ଜୀବନଦାୟିନୀ ।
ତୁମ୍ଭେ ବିଦ୍ୟା ତୁମ୍ଭେ ବନ୍ଧୁ ସକଳ ସମ୍ପତ୍ତି,
ଶ୍ରୀଚରଣେ ଦିଅ ସ୍ଥାନ ଆହେ ବିଶ୍ୱପତି ।

ଭୁଲିଯାଏଁ ଅନ୍ୟେ ଯାହା କଲେ ଧନଦାନ,
ଭୁଲିଯାଏଁ ଅନ୍ୟ ମୋତେ କଲା ଅପମାନ ।
ଭୁଲିଯାଏଁ କରିଅଛି ପର ଉପକାର,
ଭୁଲିଯାଏଁ ଅନ୍ୟ ଯାହା କଲା ଅତ୍ୟାଚାର ।

ଦୁଇ ଲୋକରେ ହିତକାରୀ
ସେ ଅଟେ ଗୃହିଣୀ,
ଦୁଇ ଲୋକରେ ସୁଖକାରୀ
ସେ ଅଟେ ମାଧୁରୀ,
ସନ୍ତାନବତୀ ସତୀ ନାରୀ
ସେ ଅଟେ ସୁନ୍ଦରୀ,
ଇନ୍ଦ୍ରିୟଗଣ ବଶକାରୀ
ସେହି ବ୍ରହ୍ମଚାରୀ ।

ହେ ପ୍ରେମ ନିର୍ଝର ସୁଖର ଆକର
ଶାନ୍ତି ମହା ନିକେତନ,
ଦୋଷ ଗୁଣେ ଦୁଃଖ ଦିଅ ଅବା ସୁଖ
ତବ ପଦରେ ଜୀବନ ।

ସଁପିଲି ହେ ପ୍ରଭୁ ଜଗତର ସବୁ
ଆଶା ଭରସା ନିକର,
ଜ୍ଞାତି ପରିଜନ ଯଶ ମାନ ଧନ
ମୁଁ ତୁମ୍ଭର ତୁମ୍ଭେ ମୋର ।



## କୃତଜ୍ଞତା ସ୍ୱୀକାର

ଏହି କ୍ଷୁଦ୍ର ପୁସ୍ତକ ଖଣ୍ଡିକ ମୁଦ୍ରଣ ବିଷୟରେ ମୋହର ପୂଜ୍ୟପ୍ରବରତମ ପ୍ରିୟପାତ୍ର ଶ୍ରୀଯୁକ୍ତ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ବାଣୀଭୂଷଣଙ୍କ ଠାରୁ ଯଥେଷ୍ଟ ସାହାଯ୍ୟପ୍ରାପ୍ତ ହୋଇ କୃତଜ୍ଞତା ସ୍ୱୀକାର କରୁଅଛି ।

ଲେଖକ

## ଉତ୍ସର୍ଗ ଏବଂ ପ୍ରାର୍ଥନା

ଶିକ୍ଷିତ ମାତୃଭାଷା ଉନ୍ନତିକାମୀ ମହାତ୍ମାମାନେ ଦେଶର ପରଶମଣି; ମୁଁ ଧୂଳିମୁଠାଏ ଧରି ବିନୀତ ଭାବରେ ସେମାନଙ୍କ ଦ୍ୱାରସ୍ଥ—ଆଶା ସୁନା ମୁଠାଏ ପ୍ରାପ୍ତି ।

ଲେଖକ

# ଧୂଳି

## ଧୂଳି

ଆରେ ଧୂଳି ! ଦେଖେ ତୋର ଘୋର ଅହଙ୍କାର !
ସହି ତ ନ ପାରେଁ କେତେରୂପେ ଅତ୍ୟାଚାର ।
ପଦ ତଳେ ଥାଉ ପଡ଼ି ଅତି ମାଗୃଧମ,
ନିୟତ ଦେଖାଉ ପୁଣି ଭୀଷଣ ବିକ୍ରମ ।
ଦେହ-ଦ୍ରବ୍ୟମାନ ଢାଏଁ ବାରମ୍ବାର ଝାଡ଼ି,
ଅଲକ୍ଷ୍ୟ ଭାବରେ ପୁଣି ଆସୁ କାହୁଁ ମାଡ଼ି ।
ପୃଥିବୀ ବ୍ୟାପିଛୁ ନାହିଁ ତିଳେ ଶୂନ୍ୟ ସ୍ଥାନ,
ବଳ-ପଶା ପଣେ ନାହିଁ ଅପମାନ ଜ୍ଞାନ ।

ଧୂଳି ବୋଲେ—"ରେ ମାନବ କୃତଘ୍ନ ନିତାନ୍ତ !
ରଖିଦେ ବଡ଼ିମା ପାଟି ବୁଜି ରହ ଶାନ୍ତ ।
ବଡ଼ ହସମାଡ଼େ ଭାଇ ତୋହ କଥା ଶୁଣି,
ପାସୋରି ଗଲୁଣି ମୋହଠାରେ ଚିରଋଣୀ ।
ଧୂଳିର ସମଷ୍ଟି ଦେହ ଗୋଟା ରୂପାନ୍ତର,
ଶୁଝିଲେ ସେ ଋଣ ହେବ କି ଦଶା ତୋହର ।"

---

## ଈଶ୍ୱର କାହିଁ

କାହିଁ—କି ଭାବରେ ବିଦ୍ୟମାନ ମହେଶ୍ୱର ?
କିବା ପ୍ରୟୋଜନ ଏହି ପ୍ରଶ୍ନରେ ଉତ୍ତର ।
ବୃଥା ଅକିଞ୍ଚନ ତବ ବୃଥା ଅନ୍ୱେଷଣ,
ଆପଣା ଶରୀର ମନ ତହିଁ ନିଦର୍ଶନ ।
ଯେ ରୂପ କୌଶଳେ ତବ ଦେହର ନିର୍ମାଣ,
ନିର୍ମାତା ଅନନ୍ତ ଜ୍ଞାନୀ ସେଥିର ପ୍ରମାଣ ।
ପ୍ରକାଶେ ଅନନ୍ତାକାଶେ ଅନନ୍ତ ମହିମା,
ନିୟମିତ ନ୍ୟସ୍ତ ଗ୍ରହ-ନକ୍ଷତ୍ର ଅସୀମା ।
ସାଗର ଲହରୀ କରେ ନିୟତ ଗର୍ଜନ,
ନ ଜାଣି କି କାହା ଆଜ୍ଞା କରେ ସେ ପାଳନ ?
ଜଳେ ସ୍ଥଳେ ଶୂନ୍ୟ ଦେଶେ ଯହିଁ କର ଦୃଷ୍ଟି,
ପ୍ରମାଣି ଅନନ୍ତ ଜ୍ଞାନ କୌଶଳର ସୃଷ୍ଟି ।
ଜାଗ୍ରତ ନିୟନ୍ତା ଜାଣ ରହି ଅନ୍ତରାଳେ,
ନିୟମିତ କରୁଛନ୍ତି ବିଶ୍ୱ ଚିରକାଳେ ।

---

## ପ୍ରାର୍ଥନା

ବୋଲ କିପାଁ ମହାପ୍ରଭୁ ରଖିଛ ମୋତେ ସଂସାରେ ?
ଧନ ଲୁବ୍ଧ ପ୍ରାଣ ଦଗ୍ଧ ସଦା ବିଷୟ ଆଶାରେ ।
ଜଟିଳ ପଙ୍କିଳ ପୂର୍ଣ୍ଣ ଏ ବିଶ୍ୱ ସଂସାର ହରି !
ନେଇଯାଅ ନେଇଯାଅ କର ଧରି କୃପା କରି ।
ଭୀଷଣ ପ୍ରବୃତ୍ତି ମାର୍ଗେ ପ୍ରକୃତି ନିୟନ୍ତା ମୋର,
ଅନାୟତ୍ତେ ଅନିଚ୍ଛାରେ ଆକର୍ଷଣ କରେ ଘୋର ।
କିପାଇଁ ନିବେଶ ମାର୍ଗେ ହେଲି ନାହିଁ ନିତ୍ୟ ଗତି,
ହାୟ ହାୟ ତୁମ୍ଭ ବିନା କେ ଖଣ୍ଡିବ ଏ ଦୁର୍ଗତି ।
ବାସନା ସନ୍ତତ ମୋର ଭଜିବି ତୁମ୍ଭଙ୍କୁ ଚିତ୍ତେ,
ପଦେ ପଦେ ବିଚଳିତ ପ୍ରବଳ ବିଳାସ ବିତ୍ତେ ।

ଆୟୁଷ୍ୟ ପ୍ରତିକ୍ଷଣ ନ ହେଲା ଚେତନା ଜାତ,
ଯାଏଁ ଭୁଲି ଜୀବ ଗତି ପ୍ରବଳ ମୋହରେ ଭ୍ରାନ୍ତ
ଦୁର୍ଲଭ ମାନବ ଜନ୍ମ ଦେଲେ ମୋତେ ଦୟା କରି,
କିପାଇଁ ନ କରେଁ କାର୍ଯ୍ୟ ମହାପ୍ରଭୁ ଯେହ୍ନ ସରି ?
ମାନବ ସ୍ୱରୂପ ଧରି କରେଁ ବିଶ୍ୱେ ବିଚରଣ,
ହୀନ ପଶୁ ସମାନରେ ମାତ୍ର ସର୍ବ ଆଚରଣ ।
ହେ ଶୁଦ୍ଧ ଅପାପ ବିଦ୍ଧ ପବିତ୍ର ତୁମ୍ଭର ବିଶ୍ୱ,
ଅପବିତ୍ର କାର୍ଯ୍ୟେ ଲିପ୍ତ ରହିଛି ମୁଁ ଅହର୍ନିଶ ।
ତୁମ୍ଭ ଦତ୍ତ ସୁଖେ ସୁଖୀ ହୋଇ ତୁମ୍ଭ ବିଶ୍ୱବାସୀ,
ତୁମ୍ଭର ଆଦେଶ ଲଙ୍ଘି କାର୍ଯ୍ୟେ ଲିପ୍ତ ଅବିଶ୍ୱାସୀ
ପବିତ୍ର ସଂସାରେ କିପାଁ ସ୍ଥାନ ପାଏ ଦୁରାଶୟ ?
ଯେନ ଯାଅ ଯେନ ଯାଅ ପୃଥ୍ୱୀ ହେଉ ଶାନ୍ତିମୟ ।
ଯଦ୍ୟପି ରଖିବ ବିଶ୍ୱେ କାର୍ଯ୍ୟ କରେଁ ସେହ୍ନପରି,
କରେଁ ନିତ୍ୟ ସାଧୁ କାର୍ଯ୍ୟ ତବ ପଦ ଲକ୍ଷ୍ୟ କରି ।
ଦିଅ ବଳ ଦିଅ ଜ୍ଞାନ ଆଜ୍ଞା କରି ଶିରୋଧାର୍ଯ୍ୟ ।
ପବିତ୍ର ବିଶ୍ୱରେ ନିତ୍ୟ ସାଧିବି ପବିତ୍ର କାର୍ଯ୍ୟ ।

— — –

## ବିଜନ ବାସ

ଦିନ ମାନ ଅବସାନ ଶାନ୍ତ ନିକେତନେ,
ନୀରବ ମାନବ ରବ ବିରଳେ ବିଜନେ,
ତରଳ ତିମିର ବ୍ୟାପ୍ତ ଜଗତ ସଂସାର;
ଏଶୁଭ ମୁହୂର୍ତ୍ତ ଉପାସନା କରିବାର ।
ଅନାବିଳ ପ୍ରେମ ପ୍ରୀତି ଉପଜାତ ମନେ,
ସମାହିତ ଚିତ୍ତ ଭଗବାନ ଶ୍ରୀଚରଣେ ।

× × ×

ଥିଲା ଦିନେ ନିକେତନେ ଆନନ୍ଦ ଉତ୍ସବ
ପୂର୍ଣ୍ଣ—ପ୍ରିୟ ପରିଜନ ଆତ୍ମୀୟ ବାନ୍ଧବ ।
ସୁଖେ ଦୁଃଖେ ରୋଗେ ଶୋକେ ମିଳି ପରସ୍ପରେ
ଜୀବନ ଯାପନ କରୁଥିଲୁଁ ଆନନ୍ଦରେ ।
ସେହି ପ୍ରିୟ ନିକେତନ ଏବେ ଶୂନ୍ୟମୟ,
ଅବସାଦ ବିଜଡ଼ିତ ଉଦାସ ହୃଦୟ ।
ଏକାକୀ ବିଜନ ବାସ ବୋଲୁଛନ୍ତି ଲୋକେ –
ନାହିଁ ନାହିଁ ପୂର୍ଣ୍ଣଗୃହ ସ୍ୱର୍ଗୀୟ ଆଲୋକେ ।

— — —

## କାଠଯୋଡ଼ି ବନ୍ଧ

ପାଷାଣ ପିହିତ ଅଙ୍ଗ—ତବ କୃପାରାଶି,
ଲଭୁଛନ୍ତି ଯୁଗ ଯୁଗ କଟକ ନିବାସୀ ।
ପ୍ରାବୃଟ ଆଗମେ ଯଥା ହରିତ ଲହରୀ—
ଉନ୍ମତ୍ତ ଧାବିତା କାଳରୂପା ଭୟଙ୍କରୀ ।
ସହର ଭସାଇ ନେବାକୁ କିବା ଅକିଞ୍ଚନ,
ପୃଷ୍ଠୁ ପାତି ମହାବେଗ କରି ନିବାରଣ ।
ସହସ୍ର ବରଷ ବ୍ୟାପୀ ଅଚଳ ଅଟଳ—
ଭଙ୍ଗକର କାଠଯୋଡ଼ି ତରଙ୍ଗ ପ୍ରବଳ ।
ନ ଥିଲେ ରକ୍ଷକରୂପେ ହେ ପାଷାଣସେତୁ—
କଟକନିବାସୀ ଧନ ପ୍ରାଣ ରକ୍ଷା ହେତୁ—
କିଏ ବା କରନ୍ତା ରକ୍ଷା କଟକ ସହର—
ହୋଇଯାନ୍ତା ପରିଣତ ବାଲୁକା ପ୍ରାନ୍ତର ।
ଯାଇଛନ୍ତି ମରକତ କେଶରୀ ମହାନ—
ଯୁଗ ଯୁଗାନ୍ତର ଥିବ କୀର୍ତ୍ତି ବିଦ୍ୟମାନ ।

— — —

## କିଏ ମୋ ଈଶ୍ୱର

କୁରାଡ଼ିରେ କାଠୁରିଆ ଦେଲା ଗଛ ହାଣି,
କରତ ବାରସୀ ଧରି ଗଢ଼ିଲା ବଢ଼ାଣୀ,
ନାନାରଙ୍ଗ ବୋଳି ଦେଲା ଆସି ଚିତ୍ରକର,
ହେବ କି ସେ ମୋ ଆତ୍ମାର ରକ୍ଷକ ଈଶ୍ୱର ?

ପର୍ବତୁ ପାଷାଣ ଖଣ୍ଡେ ଆଣି ପଥୁରିଆ-
ନିହାଣ ହାତୁଡ଼ି ମାରି ମୂର୍ତ୍ତି କଲା ଠିଆ,
ମଣ୍ଡାଇଲା ପ୍ରତିମାଟି ଦିଶିଲା ସୁନ୍ଦର,
ମୋ ଆତ୍ମା ଉଦ୍ଧାରକାରୀ ସେହି କି ଈଶ୍ୱର ?

ଟିକଟି ଗୋବର ପଙ୍କ ମାଟି ଶିଳ୍ପକର,
ଗଢ଼ିଦେଲା ମୂର୍ତ୍ତିଟିଏ ଦିଶେ ମନୋହର,
ଖେଳନ୍ତୁ ପିଲାଏ ପଛେ ଯେମନ୍ତ ସେ ପିତୁଳୀ
ନ କରିବି ପୂଜା ତାକୁ ମୋ ଈଶ୍ୱର ବୋଲି ।

ମୋ ଈଶ୍ୱର କଲେ ବିଶ୍ୱଜଗତ ନିର୍ମାଣ,
ମୋ ଜୀବନ ଗତି ମୁକ୍ତିଦାତା ତାଙ୍କୁ ଜାଣ ।

———

## ବିଦ୍ୟା ଏବଂ ଅବିଦ୍ୟା

ପ୍ରକୃତି ବଶରେ          ନିଶି ଦିବସରେ
କାର୍ଯ୍ୟାବଳୀ ଜଗତରେ;
ହୃଦୟେ ଅବିଦ୍ୟା-          ଦେବୀ-ଦେବୀ ବିଦ୍ୟା
ବ୍ୟାପ୍ତ କାର୍ଯ୍ୟେ ନିରନ୍ତରେ ।

ଯେମନ୍ତ ନିତ୍ୟ ସଙ୍ଗେ          ସ୍ୱକାର୍ଯ୍ୟ ପ୍ରସଙ୍ଗେ
ସହଚର ସହଚରୀ—
ଯାହାର ଗରିମା          ପ୍ରକାଶେ ମହିମା
ସେ ହୁଏ ହୃଦୟେଶ୍ୱରୀ ।

ପ୍ରେମ ପ୍ରୀତି ଭକ୍ତି          ଅହିଂସା ସୁମତି
ବିଦ୍ୟାଦେବୀ ଦାସ ଦାସୀ,
ହିଂସା ଦ୍ୱେଷ ମୋହ          କ୍ରୋଧ ପରଦ୍ରୋହ
ଅବିଦ୍ୟାର ସହବାସୀ ।

ଆତ୍ମାର ନିଭୃତ          ନିଳୟେ ସନ୍ତତ
ଦେବୀ ପ୍ରଚ୍ଛନ୍ନ ଭାବରେ—
କରନ୍ତି ନିବାସ          କରିବେ ବିଳାସ
ବିଳେ ନର ହୃଦୟରେ ।

ଅବିଦ୍ୟା ଗରିମା          ବିଦ୍ୟାର ମହିମା
ଦେବାପାଇଁ ପରିଚୟ,
ହୃଦରେ ବିବେକ          ଜାଳି ଜ୍ଞାନାଲୋକ
ନରେ ଦିଅନ୍ତି ଅଭୟ ।

———

## ଉଦାସୀ

ଯାଇଛନ୍ତି ଯାଉଛନ୍ତି ଯିବେ ଭବିଷ୍ୟତେ,
ମାନବ ଜୀବନ ଭାସି ଭାସି କାଳସ୍ରୋତେ ।
ନାହିଁତ ନିଶ୍ଚିତ କାଳ ଯିବ କେବେ ଭାସି,
ତଥାପି କର୍ତ୍ତବ୍ୟ କାର୍ଯ୍ୟେ ନିପୂତ ଉଦାସୀ ।
ମାୟା ମୋହ ପ୍ରେରଣାରେ କାର୍ଯ୍ୟ ତତପର,
ନିଦର୍ଶନ ମୁହିଁ ଅବା ଜଗତେ ଅମର ।
ଆଶାସ୍ନେ ନିତ୍ୟ ବନ୍ଧ ଅଛୁ ବିଶେଷରେ,
ସନ୍ତତ ରହିଛୁ ବ୍ୟସ୍ତ ଜଗତ କାର୍ଯ୍ୟରେ ।
ସର୍ବାଙ୍ଗେ ହେଲାଣି ବ୍ୟାପ୍ତ ଆସି ମୃତ୍ୟୁ ଛାୟା,
ଛିନ୍ନ ତ ନ ହେଲା ଦେଖେଁ ଜଗତର ମାୟା ।
କ୍ଷଣିକ ଆୟୁଷ ଜୀବ ପରିଣାମ ଗତି,
ଆସି ମନେ ଯାଏ ଲଭି ବିଷମ ଦୁର୍ଗତି ।
ସୁଜ୍ଞାନ ପ୍ରଦାନ କର ଆହେ ମହେଶ୍ୱର,
ସ୍ମରଣ ମୁଁ କରେଁ ତୁମ୍ଭ ନାମ ନିରନ୍ତର ।

———

## ଦୁର୍ଜନ ସୁଜନ ପ୍ରୀତି

ପଦାର୍ଥର ଛାୟା ଦୀର୍ଘ ପ୍ରଭାତ କାଳରେ,
ତା ପୁଣି ସଂକ୍ଷିପ୍ତ ହୋଇଯାଏ କ୍ରମଶରେ ।
ଅପରାହ୍ଣ କାଳ ଛାୟା କ୍ରମେ ଦୀର୍ଘାକାର
ଦୁର୍ଜନ ସୁଜନ ପ୍ରୀତି ଜାଣ ଏ ପ୍ରକାର ।

———

## ସାର୍ଥକତା

ହରି ହେ !
ବାସନା ଚରଣେ ତବ ପଦ ଧ୍ୟାନେ
ଜୀବନ କରିବି ଶେଷ ।
ହାୟ ! ହାୟ ! ହାୟ ! ଆୟୁ ଗତ ପ୍ରାୟ
ନ ହେଲା ସାଧନ ଲେଶ ।

ଇଚ୍ଛା ଅନୁକ୍ଷଣ କରିବି ସ୍ମରଣ
ତୁମ୍ଭ ସୁଧାମୟ ନାମ;
ବାଧା ନିରନ୍ତରେ ସାଧନ ମାର୍ଗରେ
ମୋ ଚଞ୍ଚଳ ମନ ବାମ ।

ତୁମ୍ଭଙ୍କୁ ମନରେ ଚିନ୍ତିବା କାଳରେ
ଅନ୍ୟ ଚିନ୍ତା ଅଲକ୍ଷ୍ୟରେ,
ସହସା ଉଦୟ ବିଚଳିତ ଲୟ
ନିତ୍ୟ ସାଧନ ମାର୍ଗରେ ।

ଖିଆଣି ଶ୍ମଶାନେ ପୂଜା ଯୋଗଧ୍ୟାନେ
କାର୍ଯ୍ୟ କ୍ଷେତ୍ରେ ବିଶ୍ରାମରେ—
ସକଳ ସମୟ ରଖିଥିବି ଲୟ
ତବ ପଦ ହୃଦୟରେ ।

ଭୁଲିବି ସକଳ ତୁମ୍ଭଙ୍କୁ କେବଳ
ହୃଦେ କରିବି ସ୍ମରଣ,
ତୁମ୍ଭ କୃପା ବିନା ସର୍ବ ବୃଥା ସିନା
ନାମ ମହିମା ସାଧନ ।

ଆପଦେ ବିପଦେ ପ୍ରାଣ ତୁମ୍ଭ ପଦେ
ସମର୍ପି ଲଭିବି ଶାନ୍ତି,
କର କୃପା ପ୍ରଭୁ ଜୀବନର ସବୁ
ଦୂର ହେଉ ଭ୍ରମ ଭ୍ରାନ୍ତି ।

ବିଚଳିତ ମତି ଲୋକ-ଦେଖା-ଭକ୍ତି
ଧର୍ମ ମାର୍ଗେ କପଟତା—
ଦୂରକର ପ୍ରଭୁ ଲଭ ହେଉ ସବୁ
ଜୀବନର ସାର୍ଥକତା ।

———

## ଜୀବନ ରଙ୍ଗାଳୟ

ଜୀବନର ରଙ୍ଗାଳୟେ କେତେ ଅଭିନୟ—
ଘଟେ ନିତ୍ୟ ନବ ନବ ପାର୍ଶ୍ୱ ପରିଚୟ ।
ଉଲ୍ଲାସ ବିଳାସ ସୁଖ ବିବିଧ ପ୍ରକାର,
ବିଳାପ ସନ୍ତାପ କେଉଁ ଦିନ ହାହାକାର ।
ସୁଖଦ କଦାଚ ବନ୍ଧୁ ସହିତ ମିଳନ,
ପରଦିନ ଅଭିନୟ ବିଚ୍ଛେଦ ବେଦନ ।
ସୁସ୍ଥ ଦେହ କେଉଁ ଦିନ ଆନନ୍ଦ ଉଲ୍ଲାସ;
ସ୍ୱାସ୍ଥ୍ୟ ଭଙ୍ଗ ରୋଗ ଶଯ୍ୟାଗତ ହା ହୁତାଶ ।
ଅର୍ଥ ଯଶ ମାନ ଲଭ ଆନନ୍ଦ ଉତ୍ସବ—
ଧନ ମାନ ନାଶେ କଦା କଷ୍ଟ ଅନୁଭବ ।
କେଉଁ ସୂତ୍ରଧର ଚିନ୍ତ କେଉଁ ନେପଥ୍ୟରେ ?
କରାଉ ଅଛନ୍ତି ଅଭିନୟ ହୃଦୟରେ ।
ଜାତ ମୋର ଜୀବନରେ ଅଭିନୟେ କ୍ଳାନ୍ତି,
ସୂତ୍ରଧର କର କୃପା ପ୍ରାଣେ ଲଭେ ଶାନ୍ତି ।

———

## ମହାମହୋପାଧ୍ୟାୟ ସ୍ୱାମୀ ବ୍ରହ୍ମାନନ୍ଦ ପୁରି

ମହାମହୋପାଧ୍ୟା ସ୍ୱାମୀ ବ୍ରହ୍ମାନନ୍ଦ ପୁରି,
ଉତ୍କଳର ଯୋଗ୍ୟପୁତ୍ର ଜନ୍ମସ୍ଥାନ ପୁରୀ ।
ପୁରୀ ମହାରାଜାଙ୍କର ଥିଲେ ରାଜଗୁରୁ,
ରାଜ ନିକେତନେ ନିତ୍ୟ ବାସ ସେ ହେତୁରୁ ।
ନ ଥିଲା ଏମନ୍ତ ଶାସ୍ତ୍ର ତାଙ୍କୁ ନାହିଁ ଜଣା;
ଅସାମାନ୍ୟ ରୂପ ନ୍ୟାୟଶାସ୍ତ୍ରର ତର୍କଣା ।

ଥିଲେ ଉପସ୍ଥିତ କବି ସଂସ୍କୃତ ଭାଷାରେ,
ଅଦ୍ୱିତୀୟ ବ୍ରହ୍ମାନନ୍ଦ ପୁଣି ବକ୍ତୃତାରେ ।
ଯୌବନରେ ଦାରପୁତ୍ର ପ୍ରିୟ ପରିଜନ,
ଏକ ଏକ ନେଇଯାନ୍ତେ ସମସ୍ତ ଶମନ ।
ସଂସାର ବିଷୟେ ହୋଇ ଜୀବନେ ଉଦାସୀ,
ବାହାରିଲେ ଘରୁ ବେଶଭୂଷଣ ସନ୍ନ୍ୟାସୀ ।
ଭ୍ରମି ଭ୍ରମି ନାନାତୀର୍ଥେ ସନ୍ନ୍ୟାସୀର ବେଶେ,
ଚଟ୍ଟଗ୍ରାମେ ଉପସ୍ଥିତ ହେଲେ ଅବଶେଷେ ।
ସ୍ୱଭାବର ଲୀଳା ଭୂମି ଶୋଭା ନିକେତନ,
ବାସ ତହିଁ ଧନୀ ଜ୍ଞାନୀ ବହୁ ମହାଜନ ।
ପରିପୂର୍ଣ୍ଣ ତୀର୍ଥ ପୀଠସ୍ଥାନ ଚଟ୍ଟଗ୍ରାମ,
ସଂସ୍କୃତ ଚର୍ଚ୍ଚାରେ ମଧ୍ୟ ସାରସ୍ୱତ ଧାମ ।
ଭାରତ ବିଖ୍ୟାତ ଚଟ୍ଟଗ୍ରାମ ଧନେ ଜ୍ଞାନେ,
ପ୍ରତିଭାବଳରେ ସ୍ୱାମୀ ବିଖ୍ୟାତ ସେ ସ୍ଥାନେ ।
ସାର୍ବଭୌମେ ଜିଣିଥିଲେ ଚୈତନ୍ୟ ବିତର୍କରେ,
ଶ୍ରୀରାଜଗୋବିନ୍ଦ ସାର୍ବଭୌମେ ସେ ପ୍ରକାରେ ।
ଜିଣି-ପୁଣି ନାନାଶାସ୍ତ୍ରେ ଅସଂଖ୍ୟ ପଣ୍ଡିତ—
ସେହି ମହାତୀର୍ଥ ସ୍ଥାନେ ହେଲେ ପ୍ରତିଷ୍ଠିତ ।
କେତେ ନ୍ୟାୟରତ୍ନ କାବ୍ୟତୀର୍ଥ ବିଦ୍ୟାନିଧି—
ଜ୍ଞାତ ହେଉଥିଲେ ତାଙ୍କଠାରୁ ଶାସ୍ତ୍ରବିଧି ।
ପ୍ରସିଦ୍ଧ ବାନିଆଚଙ୍ଗ ଗ୍ରାମ ଅଧିଷ୍ଠାତ୍ରୀ—
କାତ୍ୟାୟିନୀ ମହାଦେବୀ ଲୋକମୋକ୍ଷଦାତ୍ରୀ ।
ତାହାଙ୍କ ମନ୍ଦିରେ ବ୍ରହ୍ମାନନ୍ଦ ଅଧିକାରୀ,
ଥିଲେ ବହୁକାଳ ହୋଇ ନିତ୍ୟ ଶୁଦ୍ଧାଚାରୀ ।
ସହସ୍ର ସହସ୍ର ଶିଷ୍ୟ ମୁକ୍ତି ଲାଭ ଆଶେ—
ଭକ୍ତିଭାବେ ନିତ୍ୟ ଆସୁଥିଲେ ତାଙ୍କ ପାଶେ ।
ସମ୍ପ୍ରତି ଅସଂଖ୍ୟ ଶିଷ୍ୟଛନ୍ତି ଚଟ୍ଟଗ୍ରାମେ
ଭକ୍ତିଭରେ ପୂଜୁଛନ୍ତି ବ୍ରହ୍ମାନନ୍ଦ ନାମେ ।
ସ୍ୱହସ୍ତ ଲିଖିତ ଶାସ୍ତ୍ର ଉତ୍କଳ ଅକ୍ଷରେ—
ସମ୍ପ୍ରତି ପୂଜିତ କାତ୍ୟାୟିନୀ ମନ୍ଦିରରେ ।
ଉତ୍କଳର ଯୋଗ୍ୟପୁତ୍ର ଜଣେ ପରବାସେ,
ମହିମାରେ ଖ୍ୟାତ ଚଟ୍ଟଗ୍ରାମ ଇତିହାସେ ।
ଚୈତନ୍ୟଦେବଙ୍କ ଖ୍ୟାତି ପ୍ରକାଶ ଉତ୍କଳେ
ପୁରିଙ୍କ ମହିମା ଅଛି ବିକାଶ ଚଟ୍ଟଳେ । *
ଧନ୍ୟ ବ୍ରହ୍ମାନନ୍ଦ ଉତ୍କଳର ସୁସନ୍ତାନ,
ଯାଇଛ ଜଗତେ ରଖି କୀର୍ତ୍ତି ସୁମହାନ ।

— —

## ନିୟତି

ପୌରୁଷ ଗୌରବଭରେ ମାନବ ଉନ୍ମତ୍ତ,
ପ୍ରତ୍ୟକ୍ଷ ପ୍ରମାଣ କିନ୍ତୁ ନିୟତି ଆୟତ୍ତ ।
ମାନବର ଭାଗ୍ୟଚକ୍ର ଅଲକ୍ଷ୍ୟ ହସ୍ତରେ—
ନିୟତି ଗୃହିତ ନିତ୍ୟ ଦେଖୁଁ ପ୍ରତ୍ୟକ୍ଷରେ ।
ଆଜି ଯେବା ଭୁଞ୍ଜେ ସୁଖ ଆନନ୍ଦ ଗୌରବ,
କାଲି ବା ଭାଗ୍ୟରେ ଦୁଃଖ ଦୁର୍ଦ୍ଦଶା ରୌରବ ।
କେତେ ଯତ୍ନ ଅକିଞ୍ଚନ ସୁଖ ଭୋଗ ପାଇଁ,
ଅନାବିଳ ସୁଖ ଭୋଗ କେ କଲାକ କାହିଁ ?
ଦୁର୍ଦ୍ଦଶା ଯାତନା ବେଗ ନ ଲୋଡ଼େ ମାନବ,
ଅଲକ୍ଷ୍ୟ ସୂତ୍ରରେ କିନ୍ତୁ ଘଟେ ଏହି ସର୍ବ ।
ଧନ ଜନ ପଦ ଖ୍ୟାତି ସହାୟ ସମ୍ପଦ,
ନିଶାର ସ୍ୱପନ ସମ ବିନାଶ ଆସ୍ପଦ ।
ମାନବ ମାନସାକାଶେ ଭାସେ ସ୍ତରେ ସ୍ତରେ,
ଭାସମାନ ମେଘମାଳା ଯଥା ଆକାଶରେ ।
କେ ନ ଜାଣେ କେ ନ ବୁଝେ ଏ ସର୍ବ ଅନିତ୍ୟ,
ବାକ୍ୟରେ ଯା ବୋଲେ କିନ୍ତୁ କାର୍ଯ୍ୟେ ବିପରୀତ ।
କି ବିଶ୍ୱମୋହିନୀ ମାୟା ଆବୃତ ଜଗତେ,
ଅଳୀକ ଅସାର ସୁଖେ ଉନ୍ମତ୍ତ ସମସ୍ତେ ।
ଗୁଣମୟୀ ଦୈବୀମାୟା ଯେ କରେ ମୋଚନ,
ଏକାନ୍ତ ଆଶ୍ରିତ ଯେବା ପ୍ରଭୁ ଶ୍ରୀଚରଣ ।

* ଚଟ୍ଟଗ୍ରାମ—ପୌରାଣିକ ନାମ ଚଟ୍ଟଳ ।

ନ କର ପ୍ରତ୍ୟକ୍ଷ କ୍ଷଣଭଙ୍ଗୁର ଶରୀରରେ,
ଧ୍ରୁବ ସତ୍ୟ ହେବ ତେ ଚିରେ ବା ଈଶରେ ।
ଲଭ ଯହିଁ ସୁଖ ଶାନ୍ତି ଅନନ୍ତ ଜୀବନେ,
ହେ ଭ୍ରାତ ! ଏତିକ ମାତ୍ର ଚିନ୍ତା କର ମନେ ।



## ସ୍ୱଦେଶିନୀ ବାଳିକାର ଛାୟାଚିତ୍ର

ଏହା କି ତାହାର ଚିତ୍ର ସତତ ଯାହାକୁ ଚିନ୍ତେ,
ଏକାନ୍ତ ଭାବନା କରେଁ ଜୀବନ ଭାବନା ସ୍ୱତେ ।
ସେ'କି ମୋତେ କରେ ଚିନ୍ତା ? ବୃଥା ଭାବନା କିପାଇଁ
ଅବୋଧ ବାଳିକା ସେ'ତ ଭାଳିବାର ଶକ୍ତି କାହିଁ ?

ଜଳସ୍ଥଳ ବ୍ୟବଧାନ ବହୁଦୂର ଦୂରାନ୍ତର,
ତଥାପି କଳ୍ପନାଚିତ୍ର ହୃଦେ ଭାସେ ନିରନ୍ତର ।
ଯେ ଚିତ୍ର ଚିହ୍ନିତ ଅଛି ସ୍ୱଭାବରେ ହୃଦୟରେ,
ନୁହେ ତ ଏ ଛାୟାଚିତ୍ର ତୁଳନାରେ ସମାନରେ ।

ବ୍ୟର୍ଥ ଏହି ଛାୟାଚିତ୍ର ଗଲେ ନେତ୍ର ଅନ୍ତରାଳେ ।
ହୃଦୟ ଅଙ୍କିତ ଚିତ୍ର ବିଦ୍ୟମାନ ଚିରକାଳେ ।
କି ମାୟା ଚିତ୍ତୁରେ ଝୁଲେ ହୃଦୟ ଭିତ୍ତିରେ ମୋର
ଚିତ୍ରପଟ-ମାଧୁରିମା ପ୍ରତିଭାତ ନିରନ୍ତର ।

ନ ଲୋଡ଼େଁ ତା ଠାରୁ କିଛି ଉପକାର ଜୀବନରେ,
ଏତିକ ମୋ ସୁଖ ଶାନ୍ତି ଥାଉ ଚିର କୁଶଳରେ ।



## ସୁଖ

ଜଗତର ଲୋକ ସୁଖ ସୁଖ ସୁଖ
ନିତ୍ୟ କରନ୍ତି ଚିତ୍କାର,
ସୁଖର ଭାବନା ସୁଖର କାମନା
ସୁଖ ଜୀବନର ସାର ।

କାହିଁ ଅଛି ସୁଖ ବୋଲ କେଉଁ ଲୋକ
ବୁଝିଲେ କି ଗୂଢ଼ ତତ୍ତ୍ୱ ?
ଲୋଡ଼ି ଲୋଡ଼ି ସୁଖ ହେଲେହେଁ ବିମୁଖ
ଜୀବନ କରନ୍ତି ଗତ ।

ସୁଖ ଯାହା ଜଣେ ଜୀବନରେ ମଣେ
ଦୁଃଖ ଆନେ ମଣେ ମନେ,
ନିର୍ବଳ ସୁଖ ତନେ ଆଲୋକ-
ସମାନ ବୋଲୁ କେସନେ ।

ସୁଖ ଅଛି ଧନେ ସୁଖ ଶାନ୍ତି ଜନେ
ବୋଲିବୁଁ ଅବା କେମନ୍ତ,
ଯାହାର ବିଚ୍ଛେଦେ ହୃଦୟର ଭେଦେ
ଅନଳ ଯଥା ଜ୍ୱଳନ୍ତ ।

ଯଶ ମାନ ଖ୍ୟାତି ପ୍ରଭୃତି ସମ୍ପତ୍ତି
ଏ ସବୁ ନୁହେ ତ ଚିର,
ଦୁଃଖ ଅଗ୍ରଦୂତ ସମାନ ଅଦ୍ଭୁତ
ଦିଶଇ ଜାଣ ତ ସ୍ଥିର ।

ତାକୁ ବୋଲ ସୁଖ ପରହିତେ ଲୋକ
ଆତ୍ମସୁଖ ବଳିଦାନ,
ସୁଖ ତାକୁ ଜାଣେ ସ୍ୱଦେଶ କଲ୍ୟାଣେ
ସମର୍ପଣ ଧନ ପ୍ରାଣ ।

ସେ ସୁଖ ନିଶ୍ଚୟ ଯା ଜୀବନମୟ
ଶାନ୍ତି ପ୍ରୀତି ସୁଧାଢାଳେ,
ଶାନ୍ତି ଦାନ କରେ ଜନ ସମାଜରେ
ଅବଲମ୍ବ ପରକାଳେ ।



## ରାତ୍ରି

ଅବସନ୍ନ ପ୍ରାଣିଗଣେ ଦିବା ଅବସାନ,
ଲୋଡ଼ିଲେ ବିଶ୍ରାମ ପାଇଁ ନିଜ ନିଜ ସ୍ଥାନ ।
ନୀରବ ମାନବ ରବ ସବୁ କୋଳାହଳ—
ଅଚେତ ନିଦ୍ରିତ କ୍ରମେ ଅବନୀମଣ୍ଡଳ ।
କର୍ମକ୍ଲାନ୍ତ ପ୍ରାଣିଗଣ କରନ୍ତେ ଶୟନ,
ନୈ କଲ୍ କ ଆଚ୍ଛାଦନ ତିମିର ବସନ ।
ପ୍ରସୂତି ପ୍ରକୃତିଦେବୀ କୋଳରେ ଶୋଆଇ,
ତିମିର ପଣାନ୍ତ କାନି ଦେଲେକ ଘୋଡ଼ାଇ ।
ସ୍ୱାସ୍ଥ୍ୟ ନାଶ କଲେ କର୍ମ-କ୍ଲାନ୍ତ ଦେହେ ଲୋକ—
ନିଭାଇ ଦେଲେକ ଦେବୀ ତପନ ଆଲୋକ ।
ସୁଖ-ନିଦ୍ରା ପାଇଁ ବହେ ସୁଧୀର ସମୀର,
ନିଦ୍ରାକାରୀ ଝିଲ୍ଲିରବ ଶ୍ରବଣ ରୁଚିର ।
ସ୍ନେହମୟୀ ମାତାପରି ପାଳନ୍ତି ଅବନୀ,
ନିଦ୍ରିତ ନିଖିଳ ପ୍ରାଣୀ ଜଗତ ଜନନୀ ।

— — —

## ଯୋଗୀ

ପୃଷ୍ଠଶିରେ ଜଟାରାଶି—ମୃଗଚର୍ମାସନ—
କରେ କମଣ୍ଡଳୁ ଦଣ୍ଡ ବିଭୂତିଭୂଷଣ—
କୌପୀନ ମାତ୍ରକ ଅବଲମ୍ବ ଦିଗମ୍ବର,
ଗଞ୍ଜିକା ପ୍ରଭବେ ନେତ୍ର ରକ୍ତ ନିରନ୍ତର ।
ଜୀବନ ଯାପନେ ନାହିଁ କାର୍ଯ୍ୟ ଅନ୍ୱେଷଣ—
ଧର୍ମ ଦତ୍ତ ବିତ୍ତ ଅର୍ଥେ ଉଦର ପୋଷଣ ।
ପ୍ରକୃତ ଯୋଗୀର ଚିହ୍ନ ନୁହେ ଏ ସକଳ,
ଉଦର ପୋଷଣୋପାୟ ଶଠତା କେବଳ ।
ଯୋଗୀର ବିଶ୍ୱାସ ଆତ୍ମା ପରମାତ୍ମା ଅଂଶ,
ଅବିନାଶୀ ପରମାତ୍ମା ଦେହ ଧ୍ରୁବ ଧ୍ୱଂସ ।
ଯୋଗୀ ଲୋଡ଼େ ନାହିଁ ଦେହ କରିବାକୁ ଶବ,
ଜଗତ ସଂସାରବାସୀ ସବେ ତାହା ମିତ୍ର ।
ସାଧନର ମନ୍ତ୍ରପୂତ ପ୍ରଶାନ୍ତ ହୃଦୟ,
ଯୋଗୀ ଭୋଗୀ ରୋଗୀ ଜନ ନେତ୍ର ପରିଚୟ ।
ଶରୀର ସମସ୍ତ ଚିହ୍ନ ହେବ ତଦୁସାର,
ନିସଙ୍ଗ ଜୀବାତ୍ମା ସଦା ତେଜିବ ସଂସାର,
ଜୀବାତ୍ମା ସହିତ ପରମାତ୍ମାର ମିଳନ,
ପ୍ରକୃତ ସେ ଯୋଗୀ କରେ ଉପାୟ ସାଧନ ।
ଜଗତ ସଂସାର ଭୁକ୍ତି-ବିଷୟ ଲାଳସା,
ପରମାତ୍ମା ଲାଭୋପାୟ ସାଧନ ଭରସା ।
ପ୍ରକୃତି ପୁରୁଷ ଆକର୍ଷଣ ପରସ୍ପରେ,
ଯୋଗୀର ସାଧନା ପରମାତ୍ମା ନିରନ୍ତରେ ।
ବ୍ୟର୍ଥ ଯୋଗୀପାଶେ ସୁଖ-ସମ୍ପତ୍ତି ଗୌରବ,
ଆତ୍ମାରାମ ସୁଧା ହୃଦେ କରେ ଅନୁଭବ ।
ଦିବସେ ଜଗତେ ବ୍ୟାପ୍ତ ତପନ କିରଣ,
ଦିନାନ୍ତେ ଏକାନ୍ତେ କରେ ଆତ୍ମ ସମ୍ବରଣ ।
ଜାଗତିକ କାର୍ଯ୍ୟ ଦେହ ସହିତ ସମ୍ପର୍କ,
ଅବିନାଶୀ ଆତ୍ମା ଲୋଡ଼େ ଅକ୍ଷୟ ଆଲୋକ ।
ଜାତ ବିସ୍ତାରିତ ଫେନ ବିଲୀନ ତରଙ୍ଗେ,
ଜୀବାତ୍ମା ବିଲୀନ ତଥା ପରମାତ୍ମା ସଙ୍ଗେ ।
ସଂସାର ଭ୍ରୂକୁଟି ଭୀତ ନୁହେ ସେହି ଯୋଗୀ,
ଅଳୀକ ଐଶ୍ୱର୍ଯ୍ୟ ସେବା ନୁହେ ଭୁକ୍ତିଭୋଗୀ ।

— — —

## ଜୀବନର ଗତି

କାହା ଆଦେଶରେ କଲି ଜନମ ଗ୍ରହଣ,
ଅନିଚ୍ଛାରେ ଘେନିଯିବ ଅବଶ୍ୟ ମରଣ ।
ଜୀବନ କାଳରେ ଦେଖେଁ ନିୟନ୍ତା ନିୟତି,
ଭବିଷ୍ୟତ ଅଗୋଚର ଜୀବନର ଗତି ।

———

## ମହାକାଳୀ ପ୍ରକୃତ

ଭୈରବୀ ପ୍ରକୃତି ମହାକାଳୀ ସ୍ୱରୂପିଣୀ,
କଲ୍ୟାଣଦାୟିନୀ – ନିତ୍ୟା – ନୃମୁଣ୍ଡମାଳିନୀ ।
କାଳ ଶିବ ବକ୍ଷେ ଉଗ୍ର କରାଳବଦନା,
ସର୍ବ ସଂହାରିଣୀ ଶ୍ୟାମା ଲୋଳିତରସନା ।
ଚତୁର୍ଭୁଜା ଦେବୀ ଖଡ୍ଗ ଅସି ଏକ କରେ,
ଅନ୍ୟ ହସ୍ତେ ଛିନ୍ନ-ନର ଶିର ଶୋଭା କରେ ।
ଅଭୟ ତୃତୀୟ କରେ ଭୟ ଅନ୍ୟ ହସ୍ତେ,
ଏହି ମହାମାୟାଧୀନ ଜଗତ ସମସ୍ତେ ।
ଦୟାମୟୀ ମହାଦେବୀ କୈବଲ୍ୟଦାୟିନୀ,
ପକ୍ଷାନ୍ତରେ ଶ୍ୟାମାରୂପା ସର୍ବସଂହାରିଣୀ ।
କାଳର ସଙ୍ଗିନୀ କାଳୀ ମହାଭୟଙ୍କରୀ,
ସୁଭଦ୍ରା ବରଦା ମହ ଦେବୀ କ୍ଷେମଙ୍କରୀ ।
ପ୍ରକୃତି ପ୍ରସବ କରି ଜଗତ ସଂସାର,
କରନ୍ତି ପାଳନ ଶେଷେ ସମସ୍ତ ସଂହାର ।
ନାହିଁ ବଳବାନ ବିଶ୍ୱେ ପ୍ରକୃତିରୁ ବଳ,
ଆପଣା ଶିବକୁ ପାଦେ ଦେଇଛନ୍ତି ଦଳ !
ଜନ୍ମାଇ ଅସଂଖ୍ୟ ଲୋକ ନାଶ ଅବଶେଷେ,
ନରମୁଣ୍ଡମାଳା ଲମ୍ବମାନ ଗଳଦେଶେ ।
କାହିଁ ଛିନ୍ନମସ୍ତା ଉଗ୍ରଚଣ୍ଡା ଭୟଙ୍କରୀ,
ମନୋହରୀ ବରପ୍ରଦା ଶିବା ଶୁଭଙ୍କରୀ ।
ଜଗତ ଯାବତ ବସ୍ତୁ ପ୍ରକୃତି ରଚନା,
କି ପଦାର୍ଥ ଦେଇ ତାଙ୍କୁ କରିବି ଅର୍ଚ୍ଚନା ।
ଛାଗ ଶିଶୁ ମହିଷ ଦେବି ବଳି ଆଣି,
ପ୍ରକୃତି ଉପରେ ବଳୀ ଜଗତର ପ୍ରାଣୀ ।
କଳା କାଷ୍ଠାରୂପା ପରିଣାମ ପ୍ରଦାୟିନୀ,
ନମସ୍ତେ ନମସ୍ତେ ସୃଷ୍ଟି ସ୍ଥିତି ସଂହାରିଣୀ !

—— ——

## ସ୍ୱାର୍ଥପର

ଘଟଣା ବିଶେଷେ ହେଲେ କ୍ରୋଧର ସଞ୍ଚାର,
'ସ୍ୱାର୍ଥପର' ଅନ୍ୟେ କହିଥାନ୍ତି ତିରସ୍କାର ।
ଯେତେରୂପ ଦେଖିଲି ମୁଁ ମନ ମଧ୍ୟେ ଭାଳି,
'ସ୍ୱାର୍ଥପର' ଶବ୍ଦ ଗୋଟି ନୁହେ କେଭେ ଗାଳି ।
ସ୍ୱାର୍ଥରେ ଗଢ଼ିତ ଲୋକ ଜଗତ ସଂସାର,
ସ୍ୱାର୍ଥ ବିନା ନୁହେ କାର୍ଯ୍ୟେ ପ୍ରବୃତ୍ତି କାହାର ।
ଉନ୍ନତିର ମୂଳ ସ୍ୱାର୍ଥ ମାନବ ସମାଜ
ବଡ଼ ନୀଚ ପ୍ରାଣୀ ମଧ୍ୟେ ଦେଖୁଁ ସ୍ୱାର୍ଥ କାର୍ଯ୍ୟ ।
ଭକ୍ତରେ ଯେ ସେବା କରେ ସତୀ ପତି ପଦ,
ସନ୍ତାନ ଜନନୀ ଠାରେ ସ୍ନେହର ଆସ୍ପଦ ।
ନାହିଁ କି ପ୍ରଚ୍ଛନ୍ନ ସ୍ୱାର୍ଥ ଭାବ ଅଭ୍ୟନ୍ତରେ,
ସୁଖ ଶାନ୍ତି ପ୍ରୀତି ଆଶା ଜାଗ୍ରତ ଅନ୍ତରେ ?
ମାତ୍ର ସ୍ୱାର୍ଥତ୍ୟାଗୀ ଯେବା ପର ଉପକାରେ,
ସେ ମହାପୁରୁଷ ଧନ୍ୟ ଜଗତ ସଂସାରେ ।

— — —

## ଗ୍ରୀଷ୍ମ

ପ୍ରଚଣ୍ଡ ଅନଳ ସମ ତପ୍ତ ରବିକର,
ଘର୍ମାକ୍ତ ତୃଷାର୍ତ୍ତ କ୍ଳାନ୍ତ ମାନବ ନିକର ।
ଦାରୁଣ ଗ୍ରୀଷ୍ମ କାଳ କଷ୍ଟର କାରଣ,
କିପାଇଁ ଈଶ୍ୱର କଲେ ଏହାକୁ ସୃଜନ ।
କଷ୍ଟକର ମଣୁ ଯାହା ଆପାତ ମନରେ,
ମଙ୍ଗଳ ନିହିତ ପ୍ରତି ଘଟଣା ମୂଳରେ ।
ଗ୍ରୀଷ୍ମ ପ୍ରଭାବେ ହୁଏ ବାରିଦ ସଞ୍ଚାର,
ଯାହା ଯୋଗେ ପାଏ ରକ୍ଷା ଜଗତ ସଂସାର ।
ପ୍ରକାଶ ହୁଅନ୍ତେ ରବି ପ୍ରଚଣ୍ଡ କିରଣ,
ଉଦ୍‌ଭିଜ୍ଜ ଆହାର ଧରା କରେ ଆକର୍ଷଣ ।

ଲିଚୁପିଚୁଜମ୍ବୁ ଆମ୍ର କଦଳୀ ପଣସ ।
ଗ୍ରୀଷ୍ମେ ପାଚଇ ନର ଜୀବନ ସର୍ବସ୍ୱ ।
ନ ମଣ ଏହାକୁ ରବି କିରଣ ପ୍ରତାପ,
ଜନନୀ ରନ୍ଧନଶାଳା ଅନଳ ସନ୍ତାପ ।

———

## ଯାଏ-ରହେ

ଫୁଲ ଫୁଟି ପଡ଼େ ଝଡ଼ି ବାସ ଚହଟଇ,
ଜୀବନ ପୋଷଣ ମଧୁ—ଫଳ ଦେଇ ଯାଇ ।
ଗୁଣିଯାନ୍ତି ସାଧୁ କରି ସୁଜ୍ଞାନ ପ୍ରଚୁର,
ଯହା ଆଶ୍ରୟରେ ପାନ୍ଥ ମାନବେ ଉଦ୍ଧାର ।
ଯାନ୍ତି ଗୁଣି ମେଘମାଳା ବୃଷ୍ଟି କରି ଜଳ,
ଜଗତପ୍ରାଣୀର ଶକ୍ତି-ଜୀବନ ସମ୍ବଳ ।
ଲୋକ ସମାଜରେ କରି ମଙ୍ଗଳ ସାଧନ,
ଦେହ ତେଜି ଯାନ୍ତି ଗୁଣି ସାଧୁମହାଜନ ।
ମୃତ୍ତିକାରେ ପଡ଼ି ବୀଜ ନଷ୍ଟ ହୁଏ ସତେ,
ବିଶାଳ ପାଦପ ଜାତ ହୁଏ ଭବିଷ୍ୟତେ ।
ପ୍ରତ୍ୟକ୍ଷରେ ଦେଖୁଁ ନଷ୍ଟ ହୁଏବା ତା ଧନ,
ରକ୍ଷା ପାଏ ଅବଶେଷେ ଦରିଦ୍ର ଜୀବନ ।
ବହିଯାଏ ମାନବର ଆୟୁ ଅନୁକ୍ଷଣେ,
ଶୁଭାଶୁଭ କାର୍ଯ୍ୟ ଫଳ ରହି ଏ ଭୁବନେ ।

———

## ମାନବାତ୍ମା ଅବିନାଶୀ

ରୂପାନ୍ତ ଧାରଣ କରେ ସଦା ବସ୍ତୁସର୍ବ,
ବିନାଶ ତାହାକୁ ବୋଲେ ନ ବୁଝି ମାନବ ।
ବିନାଶ କିଛିହିଁ ନାହିଁ ବସ୍ତୁ ଜଗତରେ,
ବିଚିତ୍ର କୌଶଳେ ଆତଯାତ ରୂପାନ୍ତରେ ।
ସାଗରୁ ଉତ୍ଥିତ ବାଷ୍ପ ତହୁଁ ବାରିକଣା,
ନିପତିତ ପୃଥିବୀରେ ଯାଏ ଜଳ ଜଣା ।
ନାନାରୂପ ବାରି ଗତି ରୂପାନ୍ତ କେବଳ,
ଦେଖି ଚନ୍ଦ୍ର ବିନ୍ଦୁ ମାତ୍ର ନଷ୍ଟ ନୁହେ ଜଳ ।
ଭୂତର ସମଷ୍ଟି ମାତ୍ର ଶରୀର ଗଠନ,
ବିଲୀନ ପଞ୍ଚଭୂତେ ବୋଲି ଯାହାକୁ ମରଣ ।
ମୃତ୍ତିକାରୁ ଜାତ ଯେଉଁ ଉଦ୍ଭିଜ୍ଜ ସକଳ,
ପରିଣାମ ରୂପାନ୍ତର ମୃତ୍ତିକା କେବଳ ।
ଜଡ଼ମୟ ଭୂତ ନାହିଁ ତାହାର ବିନାଶ,
ଜ୍ୟୋତିର୍ମୟ ଆତ୍ମା ନଷ୍ଟ କରି କି ବିଶ୍ୱାସ ।

———

## ସମ୍ବଳ

ଆହେ ବିଶ୍ୱପତି କରେ ଆହ୍ୱାନ ବିନୟେ,
ଆସିବ କି ବେଳେ ମମ ମଳିନ ହୃଦୟେ ।
ଚଞ୍ଚଳ ଜଞ୍ଜାଳ-ପୂର୍ଣ୍ଣ ହୃଦୟ କୁଟୀର,
ବିରାଜିତ ହୁଅ ପ୍ରଭୋ ହେଉ ମନ ସ୍ଥିର ।
ବିରାଜ ହୃଦୟ-ସିଂହାସନେ କୃପା କରି,
ନ ପଶୁ ଦୁଶ୍ଚିନ୍ତା ରଖ ବିବେକ-ପ୍ରହରୀ ।
ତୁମ୍ଭ ନାମ ଗାନେ ହେଉ ଶୁଦ୍ଧ ପୂତ ମନ,
ଅନଳ ପରଶେ ଯଥା ବିମଳ କାଞ୍ଚନ ।
ଭସ୍ମ ସାର ହୋଇ ଯାଉ ଇନ୍ଦ୍ରିୟଲାଳସା,
କରିବି କେବଳ ତୁମ୍ଭ କରୁଣା ଭରସା ।
ସଂସାର ସମ୍ଭ୍ରମ ବିତ୍ତ କରି ତୁଚ୍ଛ ଜ୍ଞାନ,
କରି କୃପା ତୁମ୍ଭ ପଦେ ରହିଥିବି ଧ୍ୟାନ ।
ଆସିଛି ଏକାକୀ ଯିବି ଏକାକୀ କେବଳ,
ଅନ୍ତିମ କାଳରେ ତବ କରୁଣା ସମ୍ବଳ ।

———

## ଚରମଚିନ୍ତା

ଅଶାନ୍ତ ସ୍ଥବିର ଦେହ ଜାଗ୍ରତ ଚେତନା,
ସମ୍ବଳ ସମ୍ପତ୍ତି ମାତ୍ର ଗତାନୁଶୋଚନା ।
ଜୀବନ ପ୍ରାନ୍ତରେ ଭ୍ରମି କ୍ଲାନ୍ତ ମନ ପ୍ରାଣ,
ଅବଶ ଇନ୍ଦ୍ରିୟ ସୁଖ ଶାନ୍ତି ଅବସାନ ।

ଆଶାର ସ୍ୱପନ ମାୟା ମୋହର ଛଳନା,
ଭାଙ୍ଗିଲା ଜାଣିଲି ବୃଥା ଚିନ୍ତା ବିଡ଼ମ୍ବନା ।
ଯୌବନ ଉତ୍ସବ ଦିନେ ଉନ୍ମତ୍ତ ଭାବରେ,
ଭ୍ରମିଛି ଅଳୀକ ସୁଖେ ଉଦ୍‌ଭ୍ରାନ୍ତ ମାର୍ଗରେ ।
ଭାବୀ ଚିନ୍ତାଶୂନ୍ୟ ମନ ପରିଣାମ ଗତି,
ଉପସ୍ଥିତ ବିଷମରେ ମଗ୍ନ ମତ୍ତ ମତି ।
ଜାଜ୍ୱଲ୍ୟ ଦୃଷ୍ଟାନ୍ତ ଚତୁର୍ଦ୍ଦିଗେ ବିସ୍ତାରିତ,
ତଥାପି କ୍ଷଣିକ ସୁଖେ ଚିତ୍ତ ବିମୋହିତ ।
ସଂସାର ଅସାର ସୁଖ ପ୍ରମୋଦେ ତନ୍ମୟ,
ମହାସ୍ରୋତେ ଭାସମାନ ଗତ ଯେ ସମୟ ।

---

## ଦିଅ ଦେଖା

ପଠାଇଲ କିପାଁ ମୋତେ ବିଷମ ସଂସାରେ ?
କିବା ଅପରାଧ କରିଥିଲି ତୁମ୍ଭ ଠାରେ ?
ବୋଲି ଦେଇଥିଲ ଯାହା ଆସିବା କାଳରେ,
ଭୁଲିଛି ସକଳ କିଛି ନାହିଁ ତ ମନରେ ।
ଥାଉ ଆନ ତୁମ୍ଭଙ୍କୁ ଯେ ଭୁଲେଁ ବାରମ୍ବାର,
ଆଚ୍ଛାଦନ କରେ ପ୍ରାଣ ସଂଶୟ ଅନ୍ଧାର ।
ଦୟା ସ୍ନେହ ପ୍ରୀତି ଭକ୍ତି ଦେଇଥିଲ ମନେ,
ହରାଇ ବସିଛି ସବୁ ଅବିବେକ ପଣେ ।
କେବଳ ବ୍ୟାକୁଳ ଜଗତରେ ସୁଖ ପାଇଁ,
ପାଇଥିଲି କିଛି ପ୍ରାଣ ତୃପ୍ତି ହେଲା କାହିଁ ?
କରିଥିଲ ଯେମାନଙ୍କୁ ଜୀବନ ସହାୟ,
ପଳାଇ ଗଲେଣି ଜଣେ ଜଣେ ହାୟ ହାୟ !
ଅକୂଳ ଅନ୍ଧାରେ ଭାସି ଯାଉଛି ମୁଁ ଏକା,
ଜୀବନ ସହାୟ ପ୍ରଭୁ ଆସି ଦିଅ ଦେଖା ।

---

## ଅତୀତ

ହେ ଅତୀତ ! କାହିଁ କେଉଁ ଅନନ୍ତ ଗର୍ଭରେ—
ବିଲୀନ ଅଜଣା ଚିର ତିମିର ମଧ୍ୟରେ ।
ଥିଲ ଦିନେ ସଙ୍ଗେ ବର୍ତ୍ତମାନ ନାମଧାରୀ,
ତେଜିଛ ସକଳେ ଗୃହ ଆୟତ୍ତ କାହାରି ।
କେତେ ସୁଖ କେତେ ଦୁଃଖ ହୋଇ ବିଜଡ଼ିତ,
ଛାୟାରୂପେ ତୁମ୍ଭ ଦେହେ ରହିଛି ଚିହ୍ନିତ ।
ଜୀବନର ସ୍ତରେ ସ୍ତରେ ସେ ସବୁ ଘଟଣା,
ସମାହିତ ଅଛି ତୁମ୍ଭ ଅଙ୍ଗେ ଯାଏ ଜଣା ।
ତୁମ୍ଭଙ୍କୁ ଅନାଏଁ ଯେବେ ଚକିତେ କାତରେ
କି ମହାନ ଭାବ ଜାତ ହୁଏ ହୃଦୟରେ ।
ପୃଥିବୀର ସୁଖ ଦୁଃଖ ପ୍ରେମ ଆଳାପନ,
ବର୍ତ୍ତମାନ ସହିତରେ ଜୀବନେ ବନ୍ଧନ ।
ହେ ଅତୀତ ! ହେ ଅତୀତ ! ତୁମ୍ଭେ ମିତ୍ର ଏକା,
ବେଗେ ବା ବିଳମ୍ବେ ତୁମ୍ଭ ସଙ୍ଗେ ହେବ ଦେଖା ।

---

## ଶକୁନି ମନ୍ଥରା

କୁଟିଳ ଶକୁନି ମନ୍ତ୍ରଣାରେ କୁରୁକୁଳ
ତୁଚ୍ଛ କାରଣରେ ହେଲେ ସମରେ ନିର୍ମୂଳ ।
ଅସଂଖ୍ୟ କ୍ଷତ୍ରିୟ ମହାବୀର ଜଣେ ଜଣେ
ମଲେ ଅଷ୍ଟାଦଶ ଅକ୍ଷୌହିଣୀ ସେନା ରଣେ ।
ଖଳଲୋକ ଯୋଗେ ଘଟେ କି ଉତ୍ପାତ ଜାଣ
ଦେଖ ଚାହିଁ ରାମାୟଣ ଭାରତେ ପ୍ରମାଣ—
ସାମାନ୍ୟ ଗୋଟାଏ ଦାସୀ ମନ୍ଥରା ସକାଶେ
ମଲେ ଦଶରଥ ରାମ ଗଲେ ବନବାସେ ।
କିପାଇଁ ଈଶ୍ୱର କଲେ ଖଳଙ୍କୁ ସୃଜନ
ଯେମାନେ କି ପୃଥିବୀର ଉତ୍ପାତ କାରଣ ।

ନାହିଁ ନାହିଁ, ମନେ କର ନିଷ୍ଠପ୍ତ ପରତେ ।
ପ୍ରତ୍ୟେକ ଲୋକର ଅଛି କର୍ତ୍ତବ୍ୟ ଜଗତେ ।
ନ ଥିଲେ ମନୁଷ୍ୟ କମ୍ପା କୁଟିଳ ଶକୁନ
ସମାପୂର୍ଣ ଭରନ୍ତ କ ପାରନ୍ତ ହେ ଶୁଣି ।

—————

## ବିଷ୍ଣୁ ଚତୁର୍ଭୁଜ

ନିରାକାର ଗୁଣାଧାର ଜଗତ ଜଡ଼ିତ
ସର୍ବେନ୍ଦ୍ରିୟ ଗୁଣାଭାଷ ଇନ୍ଦ୍ରିୟ ଅଗୋଚର ।
ଅପାଣି ଅପାଦ ପ୍ରଭୁ ରୂପ ନାହିଁ ଜଣା,
ଥୋକେ ଭକ୍ତ ଚତୁର୍ଭୁଜ କରନ୍ତି କଳ୍ପନା—
ଶଙ୍ଖ ଚକ୍ର ଗଦା ପଦ୍ମ ଅଛି ତୁମ୍ଭ ହସ୍ତେ,
କଳ୍ପନା-ନେତ୍ରରେ ଭକ୍ତ ଦେଖନ୍ତି ସମସ୍ତେ ।
ଏ ତୁଚ୍ଛ ଲେଖକ ଦେଖେ ଧ୍ୟାନେ ଚତୁର୍ବାହୁ
ଧରିଛନ୍ତି ଶଙ୍ଖ ଚକ୍ର ଗଦା ପଦ୍ମ ଆଉ,
ତୁମ୍ଭ ଶଙ୍ଖ ମହାନାଦେ ଜଗତ କମ୍ପିତ,
ଚକ୍ରେ କର ଜଗତର ଛେଦନ ଦୁରିତ,
ମହାଗଦାଘାତେ ବିଶ୍ୱ ସଂସାରଶାସନ,
ଶୋଭାର ଆଧାର ପଦ୍ମେ ବିଶ୍ୱ ସୁଶୋଭନ ।
ହେ ଅନନ୍ତ ଭୁଜ ଚତୁର୍ଭୁଜ ବିଶ୍ୱପତେ
ଜଗତ ଦୁର୍ଗତି ଖଣ୍ଡ ନମସ୍ତେ ନମସ୍ତେ ।

—————

## ମାନବ ଧର୍ମ

ଆସିଛ ଜଗତେ କିପାଁ ନ ଯାଅ ପାସୋରି,
ତୁମ୍ଭର କର୍ତ୍ତବ୍ୟ ଯାହା କଲ କି ସେପରି ?
ପଶୁର ସମାନ ଧର୍ମ୍ୟ ଆହାର ବିହାରେ,
ମାନବ ସ୍ୱତନ୍ତ୍ର ପ୍ରାଣୀ ଆତ୍ମ ବ୍ୟବହାରେ ।
ଏହାର ଜନମ ଜାଣ ଉଦ୍ଦେଶ୍ୟ ମହାନ,
କରିବ ଜଗତପାତା ଆଜ୍ଞା ସମାଧାନ ।
ହୃଦୟ ନିଭୃତସ୍ଥଳ ଲୋଡ଼ ତନ୍ନ ତନ୍ନ,
ଯେଉଁ ସବୁ ମହାଭାବ ରହିଛି ପ୍ରଚ୍ଛନ୍ନ ।
ଜାଗ୍ରତ କରାଅ ତାହା ସବୁ ଏକ ଏକ,
ହେଉ କର୍ମ ଉପଯୋଗୀ ଯେସନ ପ୍ରତ୍ୟେକ ।
ପ୍ରଭୁ ଦତ୍ତ ମହାକୃପା ହେଉ ପ୍ରୟୋଜନ,
କର ତାହାବଳେ କାର୍ଯ୍ୟ ଜଗତେ ସାଧନ ।
ଯେ ପବିତ୍ର ଭାବ ଅଛି ନିହିତ ହୃଦୟେ,
ନ ହୁଅ ଉତ୍ତରଦାୟୀ ତାହା ଅପଚୟେ ।

—————

## ପ୍ରେମ

ପ୍ରେମର ଭିଖାରୀ ସର୍ବେ ମାତ୍ର ଲୋକ କେତେଜଣ—
କରିଥାନ୍ତି ଜୀବନରେ ପ୍ରେମତତ୍ତ୍ୱ ଅନ୍ୱେଷଣ ।
ଭାର୍ଯ୍ୟା ପୁତ୍ର ପ୍ରିୟଜନେ ମିଳେ ପ୍ରେମ କଦାଚିତ,
ମାତ୍ର ପଦେ ପଦେ ଲୋକ ହୁଏ ତହିଁରୁ ବଞ୍ଚିତ ।
ବିଚ୍ଛେଦ ଯାହାର ହେତୁ ସେ ପ୍ରେମ କଷ୍ଟର ମୂଳ
କାହିଁ ବା ଅଭାବ ଦେଖୁଁ ପ୍ରତିଦାନ ଅନୁକୂଳ ।
ଯେଉଁ ଲୋକ କରି ନିତ୍ୟ ମନ ପ୍ରାଣ ସମର୍ପଣ—
ନିଃସ୍ୱାର୍ଥ ଭାବରେ କରେ ବିଭୁ ମହିମା ସ୍ମରଣ—
ଧ୍ୟାନ ଭକ୍ତି କର୍ମଯୋଗେ ହୁଏ ଭକ୍ତ ଅଧିକାରୀ,
ଜୀବନ ଶୀତଳ କରେ ପାନେ ପ୍ରଭୁ ପ୍ରେମବାରି ।
ପ୍ରେମ ଭକ୍ତି ଉତ୍ସସ୍ରୋତ ପ୍ରବାହିତ ଯାହା ପ୍ରାଣେ—
ଧନ୍ୟ ଧନ୍ୟ ସେହି ଜଣ ପ୍ରେମର ମାଧୁରୀ ଜାଣେ ।
ସାର୍ଥକ ଜୀବନ ପ୍ରେମୀ ମୁକ୍ତି ପାଏ ସେହିଜନ,
ନରରୂପୀ ଦେବ ସେହି ଧନ୍ୟ ଧନ୍ୟ ତା ଜୀବନ.

—————

## ଦୁଃଖ

ଦୁଃଖ ତୁ ତ ଶତ୍ରୁ ନୋହୁ ମିତ୍ର ବୋଲି ଜାଣେ,
କଲି ଅନୁଭବ ଦୀର୍ଘଜୀବନରେ ପ୍ରାଣେ ।
ନିରନ୍ତର ଗୁପତରେ ଥାଇ ପାଶେ ପାଶେ,
ଆସୁ ମୋର ପାପରାଶି ବିନାଶ ସକାଶେ ।
କଲେ ଦେହପ୍ରତି ଅନିୟମ ଅତ୍ୟାଚାର
ବ୍ୟାଧି ରୂପ ଧରି କରୁ ଶରୀରେ ପ୍ରହାର—
ଅସାର ସମ୍ପଦେ ହେଲେ ଗର୍ବେ ଉନମତ୍ତ
କରାଉ ବିପଦ ରୂପେ ଶିର ଅବନତ ।
ଗଲେ ଅଜ୍ଞାନରେ ପ୍ରଭୁ ନାମକୁ ପାସୋରି
ଦେଉ ସୁଚେତନା ଭୟଙ୍କର ରୂପ ଧରି—
ବହୁତ ପ୍ରଚ୍ଛନ୍ନ ଶତ୍ରୁ ବନ୍ଧୁ ରୂପେ ଥାଇଁ
ଥାନ୍ତି ପଛେ ପଛେ ତାଙ୍କୁ ଦେଉ ତୁ ଚିହ୍ନାଇ ।
ଆସ ଆସ ପ୍ରିୟବନ୍ଧୁ ! ଥାଅ ସଙ୍ଗେ ସଙ୍ଗେ
ଦେଉଥିବୁ ସୁଜ୍ଞାନ ପ୍ରଭୁ ସେବାର ପ୍ରସଙ୍ଗେ ।

---

## ବୃଦ୍ଧର ଭାବନା

ଉପସ୍ଥିତ ବର୍ତ୍ତମାନ ଜୀବନ ପ୍ରାନ୍ତରେ
ଅନନ୍ତ ତିମିର ରାଶି ସିନ୍ଧୁ ସମ୍ମୁଖରେ;
ବେଳାଭୂମି ପଶ୍ଚାତକୁ ଦେଖୁଛି ଅନାଇଁ
ଅତୀତ ଜୀବନମାର୍ଗ ଲୁଚିଗଲା କାହିଁ ?
ନିରନ୍ତର ସମ୍ମୁଖକୁ କରୁଛି ଗମନ
ତିମିର ସାଗରେ କେବେ ହେବ ନିମଗନ ।
ଛାୟାରୂପେ ଯାଏ ଜଣା ଅତୀତ ଘଟଣା
ସ୍ମୃତି ବିନ୍ଦୁଟିରେ କେବେ ସ୍ପଷ୍ଟ ଯାଏ ଜଣା,
ପାର୍ଥିବ ଶରୀର ସଙ୍ଗେ ପାର୍ଥିବ ସମ୍ବଳ
ଥିବ ପଡ଼ିଯିବ ସଙ୍ଗେ ପାପ ପୁଣ୍ୟ ଫଳ ।
ଏ ଉଭୟ କର୍ମଫଳ ଦେଖୁଛି ସାକ୍ଷାତେ
ଧାଇଁଛନ୍ତି ଛାୟାରୂପେ ଜୀବନ ପଶ୍ଚାତେ ।
ଭୀଷଣ ଆକାର ପାପ କର୍ମଫଳମାନ
ଚମକ ପଡ଼ଇ ପ୍ରାଣ ଦେଖି ବର୍ତ୍ତମାନ ।

---

# ମୁଖବନ୍ଧ

ଆର୍ଯ୍ୟଜାତିର ବିଶ୍ୱବ୍ୟାପୀ ପ୍ରତିଷ୍ଠାର ମୂଳ କାରଣ ଏକମାତ୍ର ସନାତନ ବେଦ ଅଟେ । ଋଗ୍‌ବେଦ ପୃଥିବୀ ମଧ୍ୟରେ ସର୍ବପ୍ରଥମ ଧର୍ମଶାସ୍ତ୍ର ।

ବୈଦିକ ବିଷୟ ଦୁଇ ଅଂଶରେ ବିଭକ୍ତ । ଯେଉଁ ଅଂଶରେ ନିତ୍ୟ-ସତ୍ୟ ବିଶ୍ୱମୂଳାଧାର ବ୍ରହ୍ମଚୈତନ୍ୟଙ୍କ ସ୍ୱରୂପ ଏବଂ ତାହାଙ୍କ ଉପାସନାପଦ୍ଧତି ବର୍ଣ୍ଣିତ ଅଛି, ସେହି ଅଂଶର ନାମ ଉପନିଷଦ ବା ବେଦାନ୍ତ । ଏହି ଅଂଶଟି ସମ୍ପୂର୍ଣ୍ଣରୂପେ ଦାର୍ଶନିକ ଏବଂ ବିଜ୍ଞାନସମ୍ମତ ଅଟେ ।

ସମ୍ପ୍ରତି ପୃଥିବୀସ୍ଥ ଯାବନ୍ତ ଉନ୍ନତ ସଭ୍ୟତମ ଦେଶବାସୀ ଜ୍ଞାନମଣ୍ଡଳୀ ମଧ୍ୟରେ ଉପନିଷଦ ସ୍ୱଗୁଣରେ ବିଶେଷ ଭାବରେ ସମ୍ମାନିତ ।

ମାନବସମାଜର ଜ୍ଞାନୋନ୍ନତି ଓ ପ୍ରକୃତ ଧର୍ମଭାବର ଜାଗରଣ ଉଦ୍ଦେଶ୍ୟରେ ସ୍ମରଣାତୀତକାଳ ପୂର୍ବରେ ଆର୍ଯ୍ୟ ମହର୍ଷିଗଣ ଧର୍ମର ଯାବନ୍ତ ଗୂଢ଼ତତ୍ତ୍ୱ, ବ୍ରହ୍ମବିଦ୍ୟା-ସମ୍ବନ୍ଧୀୟ ଅବଶ୍ୟ ଜ୍ଞାତବ୍ୟ ବିଷୟମାନ ବିବିଧପ୍ରକାର କୌଶଳ ଅବଲମ୍ବନପୂର୍ବକ ଯେପରି ବିଶଦ ଭାବରେ ବର୍ଣ୍ଣନ କରି ଯାଇଅଛନ୍ତି, ତାହା ପାଠକଲେ ମାନବ ମନ ପ୍ରବୁଦ୍ଧ ଏବଂ ପବିତ୍ର ବ୍ରହ୍ମଭାବରେ ପୂର୍ଣ୍ଣ ହୋଇଯାଏ । ପୃଥିବୀର ସର୍ବଶ୍ରେଷ୍ଠ ସର୍ବବାଦିସମ୍ମତ ବେଦବିହିତ ପରଂବ୍ରହ୍ମଙ୍କ ଉପାସନାପ୍ରଣାଳୀ ବିସ୍ମୃତ ହେବା ହିନ୍ଦୁଜାତିର ପତନର ମୂଳୀଭୂତ କାରଣ ଅଟେ । ଏହି ଜାତି ଯେପର୍ଯ୍ୟନ୍ତ ସେହି ନିତ୍ୟ ସତ୍ୟ ବେଦବିହିତ ବିଶୁଦ୍ଧ ଉପାସନାପ୍ରଣାଳୀ ଅବଲମ୍ବନ ନ କରିଅଛନ୍ତି, ସେପର୍ଯ୍ୟନ୍ତ ଏହି ଜାତିର ପ୍ରକୃତ ଉନ୍ନତି ଆଶା କରିବା ବିଡ଼ମ୍ବନା ମାତ୍ର ।

କି ଖ୍ରୀଷ୍ଟାନ, କି ମୁସଲମାନ ଓ ଅନ୍ୟାନ୍ୟ ଧର୍ମାବଲମ୍ବୀ ଲୋକେ ପିଲାରୁ ଅବସ୍ଥାରୁ ସ୍ୱ ସ୍ୱ ଧର୍ମଗ୍ରନ୍ଥ ସହିତ ସୁପରିଚିତ ଏବଂ ଅଭ୍ୟସ୍ତ । ମାତ୍ର ଦୁଃଖର ବିଷୟ, ଯେଉଁ ମହାଧର୍ମଗ୍ରନ୍ଥ ବେଦ ନାମରେ ହିନ୍ଦୁଜାତି ଗୌରବାନ୍ୱିତ, ବର୍ତ୍ତମାନ ଅବସ୍ଥାରେ କେତେ ଜଣ ହିନ୍ଦୁ ସନ୍ତାନ ସେହି ଗ୍ରନ୍ଥ ଅଧ୍ୟୟନ କରିଅଛନ୍ତି ? କେତେ ଜଣ ବ୍ରାହ୍ମଣଙ୍କ ଗୃହରେ ବେଦଶାସ୍ତ୍ର ପୂଜିତ ହେଉଅଛି ? ବେଦଗ୍ରନ୍ଥବିହୀନ ବ୍ରାହ୍ମଣ ଗୃହ ଅନାର୍ଯ୍ୟ ବାସଭବନ ସମାନ ଅପବିତ୍ର—ଦୋଷମୟ ଅଟେ । ଅବଶ୍ୟ ସ୍ୱୀକାର କରିବାକୁ ହେବ, ସଚରାଚର ଗ୍ରନ୍ଥାଭାବ ଏଥିର କାରଣ ଅଟେ ।

କେତେକ ବର୍ଷ ପୂର୍ବେ ଆମ୍ଭେମାନେ କେତେକ ଖଣ୍ଡ ଉପନିଷଦର ଉତ୍କଳ ପଦ୍ୟାନୁବାଦ କରିଥିଲୁଁ । ଉତ୍କଳବାସୀଏ ଆଦରପୂର୍ବକ ତାହା ଗ୍ରହଣ କରିବାରୁ ଆମ୍ଭେମାନେ ଉତ୍ସାହିତ ହୋଇ ଛାନ୍ଦୋଗ୍ୟ ଉପନିଷଦର ପଦ୍ୟାନୁବାଦ ପ୍ରକାଶ କରିବାକୁ ପ୍ରବୃତ୍ତ ହୋଇଅଛୁଁ । ଭାରତବର୍ଷରେ ସମ୍ପ୍ରତି ଯେଉଁ କେତେଖଣ୍ଡ ଉପନିଷଦ ପ୍ରଚଳିତ ଅଛି, ସେ ସମସ୍ତ ମଧ୍ୟରେ ଛାନ୍ଦୋଗ୍ୟ ଏବଂ ବୃହଦାରଣ୍ୟକ ବୃହତ୍ତମ ଅଟେ ।

ଏହି ଗ୍ରନ୍ଥ ଖଣ୍ଡିକ ଛାନ୍ଦୋଗ୍ୟ ଉପନିଷଦର ପ୍ରକୃତ ଅବିକଳ ଅନୁବାଦ ନୁହେ ।

ମୂଳଗ୍ରନ୍ଥର ବିଷୟଗୁଡ଼ିକ ଏପରି କଠିନ ଯେ ଶଙ୍କର ଭାଷ୍ୟର ସହାୟତା ବିନା ଅର୍ଥ ହୃଦୟଙ୍ଗମ କରିବା ସହଜସାଧ୍ୟ ନୁହେ । ପୁଣି ସେ ସମସ୍ତ ବିଶଦଭାବରେ ଉତ୍କଳରେ ପଦ୍ୟାନୁବାଦ କରିବା ଆମ୍ଭମାନଙ୍କ ପରି ସଙ୍କୀର୍ଣ୍ଣ ଜ୍ଞାନବିଶିଷ୍ଟ ଲୋକମାନଙ୍କ ପକ୍ଷରେ ନିତାନ୍ତ ଅସାଧ୍ୟ ବ୍ୟାପାର ଅଟେ ।

ବଙ୍ଗଦେଶୀୟ ସୁପ୍ରସିଦ୍ଧ ବୈଦିକ ପଣ୍ଡିତ ଶ୍ରୀଯୁକ୍ତ କୋକିଳେଶ୍ୱର ଭଟ୍ଟାଚାର୍ଯ୍ୟ ଏମ.ଏ. ମହୋଦୟ ତାଙ୍କର "ଉପନିଷଦର ଉପଦେଶ" ନାମକ ଗ୍ରନ୍ଥରେ ଛାନ୍ଦୋଗ୍ୟ ଉପନିଷଦର ଯେଉଁ ଉପାଖ୍ୟାନ ଭାଗ ଅବଲମ୍ବନରେ ଅନୁବାଦ ପ୍ରକାଶ କରିଅଛନ୍ତି, ଏହି ପୁସ୍ତିକା ଖଣ୍ଡିକ ସେଥିର ପଦ୍ୟାନୁବାଦ ଅଟେ । ଉକ୍ତ ଭଟ୍ଟାଚାର୍ଯ୍ୟ ମହାଶୟ ଉପନିଷଦର ମର୍ମାର୍ଥ ସାଧାରଣରେ ପ୍ରକାଶ ନିମନ୍ତେ କିପରି ଅସାଧାରଣ ପରିଶ୍ରମ ସ୍ୱୀକାରପୂର୍ବକ କୃତକାର୍ଯ୍ୟ ହୋଇଅଛନ୍ତି, ତାହା ହୃଦୟଙ୍ଗମ କରିବା ନିମନ୍ତେ ତତ୍‌କୃତ ଉପନିଷଦର ଉପଦେଶ ନାମକ ଦୁଇଖଣ୍ଡି ଗ୍ରନ୍ଥ ମନୋଯୋଗପୂର୍ବକ ଅଧ୍ୟୟନ କରିବା ନିମନ୍ତେ ସର୍ବସାଧାରଣଙ୍କୁ ଅନୁରୋଧ କରୁଅଛୁଁ ।

୧୦ ଜୁନ୍, ୧୯୧୭
ମଲ୍ଲିକାଶପୁର, ବାଲେଶ୍ୱର ।

**ଶ୍ରୀ ଫକୀରମୋହନ ସେନାପତି**

# ଛାନ୍ଦୋଗ୍ୟ ଉପନିଷଦ୍

---

## ଶ୍ୱେତକେତୁ ଉପାଖ୍ୟାନ

ପୂର୍ବକାଳେ ପୁଣ୍ୟଭୂମି ଭରତ ଖଣ୍ଡରେ
ଥିଲେ ଏକ ମହାଋଷି ଅରୁଣି ନାମରେ ।
ତାହାଙ୍କର ଏକ ପୁତ୍ର ଶ୍ୱେତକେତୁ ନାମ,
ବୟସେ ଦ୍ୱାଦଶ ବର୍ଷ ସର୍ବ ଗୁଣଧାମ ।
ମହର୍ଷି ଅରୁଣି ବଚନେ ପୁତ୍ରେ ପାଶେ ଚାହିଁ,
ବୋଇଲେ "ରେ ପୁତ୍ର ! ବ୍ରହ୍ମବିଦ୍ୟା ଶିଖ ଯାଇ ।
ଯେତେକ ପୁରୁଷ ଥିଲେ ପୂର୍ବେ ଏ ବଂଶରେ,
ଥିଲେ ଜ୍ଞାନୀ ବ୍ରହ୍ମତତ୍ତ୍ୱ ସକଳ ଶାସ୍ତ୍ରରେ ।
ଏବେ ତୁମ୍ଭ ଉପଯୁକ୍ତ ହେଲାଣି ବୟସ,
ଗୁରୁଗୃହେ ବାସ କରି ବ୍ରହ୍ମବିଦ୍ୟା ଘୋଷ ।
କୁଳଯୋଗ୍ୟ ଆଚାର୍ଯ୍ୟଙ୍କ ବନ୍ଦନା ଚରଣ,
ଯଥାଯୋଗ୍ୟ ବ୍ରହ୍ମବିଦ୍ୟା କର ଅଧ୍ୟୟନ ।"
ପୁତ୍ର ଶ୍ୱେତକେତୁ ପାଇ ପିତାଙ୍କ ଆଦେଶ
ଉପଯୁକ୍ତ ଗୁରୁକୁଳେ କଲେକ ପ୍ରବେଶ ।
ଚତୁର୍ବିଂଶ ବୟସରେ ପାଠ ସମାପତ,
କରିଣ ବାହୁଡ଼ି ଗୃହେ ହେଲେ ସମାଗତ ।
ମାତ୍ର ପିତା ଦେଖି ପୁତ୍ରେ ହେଲେକ ଦୁଃଖିତ,
ହୋଇଛି ସେ ଯୁବା ଅହଂକାରୀ ଅବିନୀତ ।
ଶ୍ୱେତକେତୁଙ୍କର ଥିଲା ମନରେ ଧାରଣା,
ଶାସ୍ତ୍ରାର୍ଥ ସକଳ ଅଛି ଭଲ ତାଙ୍କୁ ଜଣା ।
ସେ ଜଗତେ ଅଟନ୍ତି ମହାପଣ୍ଡିତ ଶାସ୍ତ୍ରରେ,
କେହି ନାହିଁ ଜ୍ଞାନବନ୍ତ ତାଙ୍କ ସମାନରେ ।
ମହର୍ଷି ଅରୁଣି ବୁଝି ପାରି ଏ ବୃତ୍ତାନ୍ତ,
ଆପଣା ମନରେ ହେଲେ ଦୁଃଖିତ ନିତାନ୍ତ ।

ବୋଇଲେ ମହର୍ଷି ବଚନେ ପୁତ୍ରେ ପାଶେ ଚାହିଁ,
"ରେ ପୁତ୍ର ! କି ଶିକ୍ଷା କଲୁ ଗୁରୁଗୃହେ ଯାଇ ?
ଦେଲେ ମୋତେ ତୁମ୍ଭ ସେହି ବିଷୟ ପରୀକ୍ଷା,
ଜାଣିବି କରିଛୁ ଶାସ୍ତ୍ର କେତେଦୂର ଶିକ୍ଷା ।
କରୁଛି ଯେ ପ୍ରଶ୍ନ ଦେଲେ ସେଥିର ଉତ୍ତର,
ଜାଣିବି କିପରି ଶିକ୍ଷା ହୋଇଛି ତୋହର ।
ବୋଲ ପୁତ୍ର, କେଉଁ କଥା ଶୁଣିଲେ ବାରେକ,
ଆନ କଥା ଶୁଣିବାକୁ ନ ବଳେ ବିବେକ ।
କେଉଁ କଥା ତର୍କେ କଲେ ଥରେ ହୃଦଙ୍ଗମ,
ଜଗତର ସବୁ କଥା ହେବ ବୋଧଗମ୍ୟ ।
କି କଥା ଜାଣିଲେ ଜଣାଯାଏ ସର୍ବ କଥା,
ବୋଲ ପୁତ୍ର, ଜାଣ ଯେବେ ଏଥିର ବାରତା ।"
ପିତାଙ୍କ ଅଦ୍ଭୁତ ପ୍ରଶ୍ନ ଶୁଣି ଶ୍ୱେତକେତୁ,
ମଣିଲେ ଆଶ୍ଚର୍ଯ୍ୟ ନିଜ ଅଜ୍ଞାନତା ହେତୁ ।
ବୋଇଲେ ସେ ଶ୍ୱେତକେତୁ ପିତା ମୁଖ ଚାହିଁ,
"ହେ ପିତଃ ! ଏମନ୍ତ ଶାସ୍ତ୍ର ଶିକ୍ଷା କରି ନାହିଁ ।"
ବୋଇଲେ ଅରୁଣି ଶୁଣି ପୁତ୍ର କଥାମାନ,
"ହେ ପୁତ୍ର ! ଜାଣିଛି ଦେଖି ତୁମ୍ଭ ଅଭିମାନ ।
କିପରି ବା ହେବ ଏହି କଥାରେ ପରୀକ୍ଷା,
କରିଛ ଲୌକିକ ବିଦ୍ୟା ମାତ୍ର ଯେଣୁ ଶିକ୍ଷା ।
ଯେଉଁ ମହାବିଦ୍ୟା ଅଟେ ସର୍ବବିଦ୍ୟା ସାର,
ସେ ବିଦ୍ୟା ପ୍ରସଙ୍ଗ ଜାଣିବ ବା କି ପ୍ରକାର ।
ଯେ କଥା ବୋଲିବୁଁ ଏବେ ଶୁଣ ଦେଇ ମନ,
ପ୍ରକୃତ ସମ୍ବନ୍ଧ ଯାହା କାର୍ଯ୍ୟ ଓ କାରଣ ।
ସେ ପ୍ରସଙ୍ଗ ତୁମ୍ଭେ ଯେବେ ହେବ ଅବଗତ,
ତେବେ ପରା ବିଦ୍ୟା ତତ୍ତ୍ୱ ଜାଣିବ ସମସ୍ତ ।

ଘଟ ଶରାବାଦି ଯାହା ହେଉଛି ଉତ୍ପନ୍ନ,
ମୃତ୍ତିକା ଅଟଇ ଉପାଦାନର କାରଣ ।*
ମୃତ୍ତିକା ସ୍ୱରୂପ ଯେବେ ହେବ ଅବଗତ,
ତେବେ ତ ବୁଝିବ ଘଟ ଶରାବାଦି ତତ୍ତ୍ୱ ।
କାରଣ ମାତ୍ରକ ଦେଖାଯାଏ କାର୍ଯ୍ୟାକାରେ,
କାରଣ ସ୍ୱତନ୍ତ୍ର ନୁହେଁ କାର୍ଯ୍ୟୁ ଜାଣିବାରେ ।
ତଥାପି ମାନବଙ୍କର ମୂର୍ଖତାର ଚିହ୍ନ,
କାର୍ଯ୍ୟକୁ ମଣନ୍ତି ଯେଣୁ କାରଣରୁ ଭିନ୍ନ ।
ମୂଳ କାରଣକୁ ତ୍ୟଜି କାର୍ଯ୍ୟ ସକଳକୁ
ମୂଳ ବସ୍ତୁ ମଣେ ଭିନ୍ନ ଭିନ୍ନ ପଦାର୍ଥକୁ ।
କାରଣରୁ କାର୍ଯ୍ୟଗୁଡ଼ି ବିଭିନ୍ନ ପ୍ରକାର,
ଦେଖି ଲୋକେ ଏପ୍ରକାର କରନ୍ତି ବିଗ୍ଭର ।
ପ୍ରକୃତରେ କାର୍ଯ୍ୟଗୁଡ଼ି କାରଣରୁ ଭିନ୍ନ
ନୁହେ ଏହା—ପାଇବ ଯେ ଏଥୁ ନାନା ଚିହ୍ନ ।
ବିଭିନ୍ନତା ମାତ୍ର ଜାଣ ନାମ ଓ ଆକାରେ,
ମାତ୍ର ଏହା ଏକ—ଜ୍ଞାନଗଣ ଜାଣିବାରେ ।
ଘଟର ଘଟ ବା କୁମ୍ଭ ଯାହା ନାମ ହୁଏ,
ମାତ୍ର ଜାଣ ଏହା ମୃତ୍ତିକାରୁ ଆନ ନୁହେ ।
ଆକାର ବା ନାମ ମାତ୍ର ପୃଥକ ପୃଥକ,
ମାତ୍ର ଜାଣ ଦୁଇ ବସ୍ତୁ ଅଟନ୍ତି ଏକକ ।
କୁମ୍ଭକାର କରେ ସିନା ଘଟକୁ ନିର୍ମାଣ,
ମାତ୍ର ଏହା ମୃତ୍ତିକାର ରୂପାନ୍ତର ଜାଣ ।
କୁମ୍ଭଟି ହୋଇଛି ଜାଣ ମୃତ୍ତିକାରୁ ଜାତ,
କେବଳ ଅବସ୍ଥାନ୍ତର ହୋଇଛୁଟି ପ୍ରାପ୍ତ ।
ଯେମନ୍ତ ସୁବର୍ଣ୍ଣୁ ଜାତ ମୁକୁଟ, ବଳୟ,
ଲୌହରୁ ନିର୍ମିତ ଖଡ୍‌ଗ, ଖଣ୍ଡା, ଛୁରଚୟ ।
ହେଲେହେଁ ନିର୍ମିତ ଅଳଙ୍କାର ଅସ୍ତ୍ରମାନ,
ମାନଙ୍କ କାରଣ ଏଥି ସ୍ୱର୍ଣ୍ଣ ଲୌହ ଜାଣ ।
ହେ ପୁତ୍ର, ଏ କଥା ଅଟେ ପରା ବିଦ୍ୟା ଅଙ୍ଗ,
ପ୍ରଶ୍ନ କରିଥିଲୁଁ ପୂର୍ବେ ଏଥିର ପ୍ରସଙ୍ଗ ।”
ଜନକ ବଚନେ ଭୟ ପାଇ ଶ୍ୱେତକେତୁ,
ବୋଇଲେ, କି ଲୋଡ଼ା ଗୁରୁକୁଳେ ଯିବା ହେତୁ ।
ନିଶ୍ଚୟ ଆଶ୍ଚର୍ଯ୍ୟ—ମୁହିଁ ଭାବୁଛି ଏମନ୍ତ—
ନୁହନ୍ତି ଏରୂପ ବସ୍ତୁତତ୍ତ୍ୱ ଅବଗତ ।
ଜାଣିଥାନ୍ତେ ଯେବେ ଏହି ପଦାର୍ଥନିର୍ଦ୍ଦେଶ,
ଅବଶ୍ୟ ଆମ୍ଭଙ୍କୁ ଦେଇଥାନ୍ତେ ଉପଦେଶ ।
ହେ ପିତଃ, ପ୍ରାର୍ଥନା କରେଁ, ମୋତେ ବର୍ତ୍ତମାନ
ଏ କଥାର ଉପଦେଶ କରନ୍ତୁ ପ୍ରଦାନ ।
ସର୍ବଜ୍ଞ ମୁଁ ହେବି ଶୁଣି ଆପଣଙ୍କ କଥା,
ବୋଲିବା ହେଉନ୍ତୁ ଏହି ଶାସ୍ତ୍ରର ବାରତା ।
ବୋଇଲେ ଅରୁଣି ପୁତ୍ରେ ଗୃହିଁ ସ୍ନେହଭରେ,
“ଏହି ପରିଦୃଶ୍ୟମାନ ଜଗତ ମଧ୍ୟରେ
ପଶୁ, ପକ୍ଷୀ, ତରୁ, ଲତା, ପର୍ବତ, ସରିତ,
ନାମରୂପାତ୍ମକ ସୃଷ୍ଟ ବସ୍ତୁ ପ୍ରକାଶିତ ।
ବିବିଧ ନାମରେ ପୁଣି ବିବିଧ ରୂପରେ
ପ୍ରକାଶିତ ହେବା ପୂର୍ବେ ପରମବ୍ରହ୍ମରେ
ପ୍ରଚ୍ଛନ୍ନ ଭାବରେ ଥିଲି, ଏହା ତୁମ୍ଭେ ଜାଣ,
ଏକମାତ୍ର ଅଦ୍ୱିତୀୟ ବ୍ରହ୍ମ ବିଦ୍ୟମାନ ।
କେହି ବସ୍ତୁ କେହି ନାମେ ଉତ୍ପତ୍ତି ପୂର୍ବରେ
ନ ଥିଲେ ବିଦିତ—ଥିଲେ ବ୍ରହ୍ମ ଅଭ୍ୟନ୍ତରେ
ଉତ୍ପତ୍ତି ଉତ୍ତାରେ ନାନା ନାମ ଓ ଆକାରେ
ପ୍ରକାଶିତ ହେଲେ ଜାଣ ଜଗତ ସଂସାରେ ।

---

* ପ୍ରତ୍ୟେକ କାର୍ଯ୍ୟ ମୂଳରେ ଗୋଟିଏ କାରଣ ବିଦ୍ୟମାନ ଥାଏ । ଯେ କାରଣକୁ ଅବଲମ୍ବନ କରି କାର୍ଯ୍ୟଟି ଉତ୍ପନ୍ନ ହୁଏ, ସେହି କାରଣଟିକୁ କାର୍ଯ୍ୟର ଉପାଦାନ କାରଣ ବୋଲଯାଏ । ପୁଣି କାର୍ଯ୍ୟ ଉପାଦାନରେ ସହାୟତା ନିମନ୍ତେ ଅନ୍ୟ ଯେଉଁ କାରଣରେ ଆଶ୍ରୟ ଗ୍ରହଣ କରଯାଏ, ତାହାକୁ ନିମିତ୍ତ କାରଣ ବୋଲଯାଏ । ଯଥା—କୁମ୍ଭକାର ମୃତ୍ତିକାଦ୍ୱାରା ଘଟ ନିର୍ମାଣ କରେ, ଏ ସ୍ଥଳରେ ଘଟ କାର୍ଯ୍ୟ ପ୍ରତି ମୃତ୍ତିକା ଉପାଦାନ କାରଣ ଅଟେ । ମାତ୍ର କୁମ୍ଭକାର ଘଟ ନିର୍ମାଣ ସମୟରେ ଖଣ୍ଡିଏ ରଜ୍ଜୁ, ଗୋଟିଏ ଚକ, ଖଣ୍ଡିଏ ଯଷ୍ଟି; ଜଳ ଓ ବସ୍ତ୍ର ପ୍ରଭୃତିର ସାହାଯ୍ୟ ଗ୍ରହଣ କରେ । ଏ ସ୍ଥଳରେ ଘଟନିର୍ମାଣ ପ୍ରତି ଏ ସମସ୍ତ ନିମିତ୍ତ କାରଣ ଅଟନ୍ତି ।

ହୁଅନ୍ତେ ସର୍ବତ୍ର ନାନା ରୂପେ ବିଦ୍ୟମାନ,
ଇନ୍ଦ୍ରିୟବିଷୟୀଭୂତ ହେଲେ ତେବେ ଜାଣ ।
ସୃଷ୍ଟି ହେବା ପୂର୍ବେ ଏହି ବସ୍ତୁ ଭିନ୍ନ ଭିନ୍ନ,
କିଛିମାତ୍ର ଥିଲା ନାହିଁ ନାମ ରୂପ ଚିହ୍ନ ।
କେବଳ ପରମବ୍ରହ୍ମ ପ୍ରଭୁ ଭଗବାନ
ଅପ୍ରକାଶରୂପେ ରହିଥିଲେ ବିଦ୍ୟମାନ ।
ଯେମନ୍ତ ମୃତ୍ତିକା ପିଣ୍ଡ ନେଇ କୁମ୍ଭକାର
ନିର୍ମାଣ କରଇ ପାତ୍ର ବିବିଧ ପ୍ରକାର ।
ସେହିରୂପେ ଅଦ୍ୱିତୀୟ ପରଂବ୍ରହ୍ମ ଜାଣ,
କରିଛନ୍ତି ଏହି ବିଶ୍ୱ ବ୍ରହ୍ମାଣ୍ଡ ନିର୍ମାଣ ।
ମାତ୍ର ଯାହା ଦେଲୁଁ କୁମ୍ଭକାରର ଦୃଷ୍ଟାନ୍ତ,
ବିଶ୍ୱସୃଷ୍ଟି କାର୍ଯ୍ୟ ତହୁଁ ପୃଥକ ନିତାନ୍ତ ।
ଘଟ ଶରାବାଦି ନିର୍ମାଣରେ କୁମ୍ଭକାର
ଦ୍ରବ୍ୟ ପ୍ରୟୋଜନ ହୁଏ ବିବିଧପ୍ରକାର ।
ସଲିଳ, ମୃତ୍ତିକା, ରଜ୍ଜୁ, ଦଣ୍ଡ, ଦ୍ରବ୍ୟମାନ
ନିମିତ୍ତ କାରଣ କେହି ଅବା ଉପାଦାନ ।
ମାତ୍ର ଏହି ଦୃଶ୍ୟ ବିଶ୍ୱସଂସାର ସୃଜନ—
ଅଟନ୍ତି କେବଳ ବ୍ରହ୍ମ ଏଥିର କାରଣ ।
ନ ଥିବା ସକାଶେ ତାଙ୍କ ସହାୟ ଦ୍ୱିତୀୟ,
ଏଥିପାଇଁ ପରଂବ୍ରହ୍ମ ନାମ ଅଦ୍ୱିତୀୟ ।
ବୋଲନ୍ତି ବା କେହି ବିଶ୍ୱସୃଜନ ପୂର୍ବରେ
ନ ଥିଲା ଅସ୍ତିତ୍ୱ କିଛି ବ୍ରହ୍ମାଣ୍ଡ ମଧ୍ୟରେ,
ସକଳ ଅଭାବାତ୍ମକ ଶୂନ୍ୟ ବା ଅସତ,
ମାତ୍ର ଏହା ସତ୍ୟ ନୁହେ ଜାଣ ଆତ୍ମ ମତ ।
ହେ ପୁତ୍ର, ଯେଠାରେ ଥାଏ ଏକାନ୍ତ ଅଭାବ,
ଭାବାତ୍ମକ ଦ୍ରବ୍ୟ ତହୁଁ ନୁହେ ପ୍ରାଦୁର୍ଭାବ ।
ଏକାନ୍ତ ଅସ୍ତିତ୍ୱହୀନ ଦ୍ରବ୍ୟହିଁ ଅସତ,
ତହିଁ ବିପରୀତ ବସ୍ତୁ ନାମ ଅଟେ ସତ ।
ପରଂବ୍ରହ୍ମ ନିରାତ୍ମକ ନ ବୁଝ ଏରୂପ,
ଅଟନ୍ତି ସେ ଜ୍ଞାନ ଶକ୍ତି ଆନନ୍ଦସ୍ୱରୂପ ।
ଅସତ ପଦାର୍ଥୁଁ ସତ ପଦାର୍ଥ ଉଦ୍ଭବ,
ହେ ପୁତ୍ର, ହେବାର ଜାଣ ନିଶ୍ଚେ ଅସମ୍ଭବ ।
ବିଶ୍ୱସୃଷ୍ଟି ଅଟେ ଅତି କଠିନ ଗମ୍ଭୀର,
ନ ବୁଝି ପାରିବ ବୁଦ୍ଧି ନ କଲେକ ସ୍ଥିର ।
ବସ୍ତୁର ବିକାଶ ପୂର୍ବେ କାର୍ଯ୍ୟ ବା କାରଣ
ଉପଲବ୍ଧ ହୁଏ ନାହିଁ, କର ନିର୍ଦ୍ଧାରଣ ।
କାର୍ଯ୍ୟଟି ଉତ୍ପତ୍ତି ପୂର୍ବେ କାରଣ ମଧ୍ୟରେ
ବର୍ତ୍ତମାନ ରହିଥାଏ ଅବ୍ୟକ୍ତ ଭାବରେ ।
ମୃତ୍ତିକା ନ ଥିଲେ କାହୁଁ ଜନମନ୍ତା ଘଟ,
କାରଣରେ ଥାଏ ସବୁ କାର୍ଯ୍ୟ ଅପ୍ରକଟ ।
ନ ଥିଲେ କାରଣ କାର୍ଯ୍ୟ ହେବ କି ପ୍ରକାର ?
ଏଥକୁ କାରଣ ସତ୍ତା କରିବ ସ୍ୱୀକାର ।
କେହି ଜ୍ଞାନୀ କଲେ ଏହି କଥାରେ ଆପତ୍ତି,
ଅଭାବରୁ ହୋଇଥାଏ କାର୍ଯ୍ୟର ଉତ୍ପତ୍ତି ।
ଘଟର ଦୃଷ୍ଟାନ୍ତ ଏକ କର ହେ ଗ୍ରହଣ—
ମୃତ୍ତିକା ଧ୍ୱଂସରୁ ହୁଏ ଘଟ ସମୁତ୍ପନ୍ନ ।
ମୃତ୍ତିକା ବିନାଶରୂପ ଅଭାବରୁ ଜାଣ,
ତେବେ ତ ହୋଇଛି ଘଟ ଶରାବ ନିର୍ମାଣ ।
ବୋଲନ୍ତି ଦେଖାଇ ଯୁକ୍ତି ଥୋକେ ମହାମତି,
ଅସତରୁ ହୁଏ ସତ ପଦାର୍ଥ ଉତ୍ପତ୍ତି ।
କେହି କେହି ଜ୍ଞାନୀ ଦେଇ ଯୁକ୍ତି ଏପ୍ରକାର,
କରନ୍ତି କାରଣ ସତ୍ତା ନିଶ୍ଚେ ଅସ୍ୱୀକାର ।
ଘଟର ଦୃଷ୍ଟାନ୍ତ ଛଡ଼ା କେହି ଜ୍ଞାନବନ୍ତ
ଦେଇଥାନ୍ତି ବୀଜ ପୁଣି ବୃକ୍ଷର ଦୃଷ୍ଟାନ୍ତ ।
ବୋଲନ୍ତି ସେମାନେ ବୃକ୍ଷ ବୀଜରୁ ଉତ୍ପତ୍ତି,
ବିଷୟେ ଦେଖିଲେ ହେବ ସିଦ୍ଧାନ୍ତ ନିଷ୍ପତ୍ତି ।
ବୀଜଟିଏ ହେଲେ ଏକାବେଳକେ ବିନାଶ,
ତେବେ ସିନା ହୋଇଥାଏ ବୃକ୍ଷଟି ପ୍ରକାଶ ।
ଅତଏବ କରି ପାରୁଁ ସହଜେ ନିଷ୍ପତ୍ତି,
ବୀଜ ଅଭାବରୁ ହୁଏ ବୃକ୍ଷର ଉତ୍ପତ୍ତି ।
ପ୍ରତ୍ୟକ୍ଷରେ ଦେଖି ଏହି ପ୍ରକାର ପ୍ରମାଣ,
ଅଭାବୁଁ ଉତ୍ପତ୍ତି ବସ୍ତୁ—ଏହି କଥା ଜାଣ ।
ହେ ପୁତ୍ର, ଶୁଣିଲ ସର୍ବ ବିଷୟ ନିତାନ୍ତ
ଅସଦ୍‌ବାଦୀ ପଣ୍ଡିତଙ୍କ ଯୁକ୍ତି ବା ବା ଦୃଷ୍ଟାନ୍ତ ।

ଜାଣିବ ସେଥିରୁ ତୁମ୍ଭେ ବିଶେଷପ୍ରକାର,
ଏରୂପ ଦୃଷ୍ଟାନ୍ତ ଯୁକ୍ତି ନିତାନ୍ତ ଅସାର ।
କୁମ୍ଭକାର ଘଟ ଗୋଟି ନିର୍ମାଣ କାଳରେ
ମାଟିର ପେଣ୍ଡୁଳାଟିଏ ରଖଇ ଆଗରେ;
ସେହି ମୃତ୍ତିକାରେ ଘଟ କରଇ ନିର୍ମାଣ,
ପ୍ରତ୍ୟକ୍ଷ ପାଇଛ ତୁମ୍ଭେ ଏଥିର ପ୍ରମାଣ ।
ଅବଶ୍ୟ ସେ ମାଟିପିଣ୍ଡ ହେବାରୁ ବିନାଶ,
ତେବେ ସିନା ହେଲା ଘଟ ଶବର ପ୍ରକାଶ ।
କିନ୍ତୁ ତୁମେ କର ମନ ମଧ୍ୟରେ ବିଚାର,
ପେଣ୍ଡୁଳାଟି ହେଲା ସିନା ଧ୍ୱଂସ ଏ ପ୍ରକାର;
ମାତ୍ରକ ମୃତ୍ତିକା ରୂପାନ୍ତରେ ସେ ଘଟରେ
ରହିଛି ନ ହୋଇ ଧ୍ୱଂସ, ଜାଣିବ ମନରେ ।
ପେଣ୍ଡୁଳାଟି ମୃତ୍ତିକାର ଗୋଟିଏ ଆକାର,
ଆକାରଟି ଧ୍ୱଂସ ସିନା ହେଲା ଏ ପ୍ରକାର;
ପିଣ୍ଡର ଆକାର ଗୋଟି ବୃଥା ବୋଲି ଜାଣ,
ମୃତ୍ତିକାହିଁ ଅଟେ ଘଟ ପ୍ରକୃତ କାରଣ ।
ଏଥିକୁ ଜାଣିବ ପିଣ୍ଡ ହେବା ଯୋଗୁଁ ଧ୍ୱଂସ,
ନୁହେଟି କାରଣ ଧ୍ୱଂସ ଜାଣିବ ଅବଶ୍ୟ ।
ସୁବର୍ଣ୍ଣ ପିଣ୍ଡକୁ ମଧ୍ୟ ସେହିପରି ଜାଣ,
ଯହୁଁ ଅଳଙ୍କାରମାନ ହୋଇଛି ନିର୍ମାଣ ।
ଅଳଙ୍କାର ଉତ୍ପତ୍ତିର ସ୍ୱର୍ଣ୍ଣହିଁ କାରଣ,
କାରଣ ନୁହେଟି ତହିଁ ପିଣ୍ଡ କଦାଚନ ।
ଏକ କାର୍ଯ୍ୟାରମ୍ଭେ ତାର ପୂର୍ବବର୍ତ୍ତୀ କାର୍ଯ୍ୟ
ଧ୍ୱଂସ ହୋଇଯାଏ, ଏହା ଜାଣିବ ନିର୍ଧାର୍ଯ୍ୟ ।
ସର୍ବତ୍ର ଜାଣିବ ଏହି ଅମୋଘ ନିୟମ,
କାହିଁ ଦେଖା ନାହିଁ ଏଥି ହେବା ବ୍ୟତିକ୍ରମ ।
ପୂର୍ବବର୍ତ୍ତୀ ଏକ କାର୍ଯ୍ୟ ହେଲେ ମଧ୍ୟ ଧ୍ୱଂସ
କାରଣଟି ଧ୍ୱଂସ ନୁହେ ଜାଣିବ ଅବଶ୍ୟ ।
ଯେଣୁ ପରବର୍ତ୍ତୀକାର୍ଯ୍ୟ କାରଣ ପଶ୍ଚାତେ
ଅନୁସରି ଥାଏ, ଏହା ଦେଖୁଛୁଁ ସାକ୍ଷାତେ ।
ତେଣୁ ପିଣ୍ଡାଦିର ଧ୍ୱଂସେ ଘଟର ପ୍ରକାଶ
ହେଲେ ମଧ୍ୟ ମୃତ୍ତିକାର ନ ହୁଏ ବିନାଶ ।
ମୃତ୍ତିକାଟି ଯେଣୁ ରହିଅଛି ବିଦ୍ୟମାନ,
କପରି ବୋଲିବୁ ସତ ଅସତୁ ଭିଆଣ ।
ଅସତରୁ ସତ ଜାତ, ଏହି ଅନୁମାନ
ଯୁକ୍ତିଯୁକ୍ତ ନୁହେ ଏହା ନିଶ୍ଚେ ବୋଲି ଜାଣ ।
ଯଦି ବୋଲ ଘଟ ଗୋଟି ଉତ୍ପତ୍ତି ପୂର୍ବରେ
ମୃତ୍ତିକା ତ ଥିଲା ନାହିଁ ସ୍ୱତନ୍ତ୍ର ରୂପରେ ।
ଉତ୍ତର—ପିଣ୍ଡର ଆକାର ମଧ୍ୟ ଥିଲା ତ ମିଳିତ,
ମାଟି ଭିନ୍ନ ଅନ୍ୟ ପିଣ୍ଡ ନୁହେ କଦାଚିତ ।
ହେଉ ପିଣ୍ଡାକାର ଅବା ଅନ୍ୟ ଯାହା କିଛି,
ମୃତ୍ତିକାରେ ମୃତ୍ତିକାତ୍ୱ ପ୍ରତ୍ୟକ୍ଷ ରହିଛି ।
ନିର୍ମିତ ହେଉଛି ହେଉ ଘଟ ବା ଶରାବ,
ମୃତ୍ତିକା ତ କେତେବେଳେ ନୁହଇ ଅଭାବ ।
ହେଲେ ମଧ୍ୟ ପିଣ୍ଡ ଅବୟବ ଗୋଟି ଧ୍ୱଂସ,
ଘଟର କାରଣ ଜାଣ ମୃତ୍ତିକା ଅବଶ୍ୟ ।
ପିଣ୍ଡର ଆକାର ନୁହେ ଘଟର କାରଣ,
ମୃତ୍ତିକା କାରଣ ମାତ୍ର ଜାଣ ବିବରଣ ।
ଏହିପରି ବୀଜ ବୃକ୍ଷ ଦୃଷ୍ଟାନ୍ତର କଥା,
ଏହି ଦୃଷ୍ଟାନ୍ତର ସଙ୍ଗେ ରହିଛି ଏକତା ।
ଦେଖିବାରେ ଆସେ, ପଚି ନଷ୍ଟ ହେଲେ ବୀଜ,
ସେଥିରୁ ଉତ୍ପନ୍ନ ହୁଏ ଅଙ୍କୁର ଉଦ୍ଭିଜ୍ଜ ।
ମାତ୍ର ଯେଉଁ ଉପାଦାନେ ସେ ବୀଜ ଗଠିତ,
ତାହା ନଷ୍ଟ ହୋଇ ନାହିଁ ଜାଣିବ ନିଶ୍ଚିତ ।
ରଚିତ ସେ ବୀଜ ଗୋଟି ଯେଉଁ ଉପାଦାନେ,
ତହୁଁ ବୃକ୍ଷ ଜାତ ଦେଖ ପ୍ରତ୍ୟକ୍ଷ ପ୍ରମାଣେ ।
ଜାଣିବ ପ୍ରତ୍ୟକ୍ଷ ଏହା କରି ନିରୀକ୍ଷଣ,
ବୀଜ ଧ୍ୱଂସ ନୁହେ ବୃକ୍ଷ ଉତ୍ପତ୍ତି କାରଣ ।
ଏଥିକୁ ଆପତ୍ତିକାରୀ ଲୋକଙ୍କର ଯୁକ୍ତି—
ସାରବତ୍ତା ନାହିଁ ଶୁଣିଲ ତ ଆମ୍ଭ ଉକ୍ତି ।
କାର୍ଯ୍ୟର ଉତ୍ପତ୍ତି ପୂର୍ବେ କାରଣର ସତ୍ତା,
ବିଦ୍ୟମାନ ସର୍ବସ୍ଥାନେ ବୁଝ ଏହି କଥା ।
ଉତ୍ପତ୍ତିର ପୂର୍ବେ କାର୍ଯ୍ୟ କାରଣ ମଧ୍ୟରେ,
ଥିଲା ଯେ ଅନଭିବ୍ୟକ୍ତ ପ୍ରଚ୍ଛନ୍ନ ଭାବରେ ।

ଏହି ସୂତ୍ରଭାବେ ଅବସ୍ଥିତ କାର୍ଯ୍ୟ ଜାଣ,
କ୍ରମେ ଅଭିବ୍ୟକ୍ତ ହୁଏ ଦେଖୁଛୁଁ ପ୍ରମାଣ ।
ଅଭିବ୍ୟକ୍ତ ହେଲେ କାର୍ଯ୍ୟ ଦିଶଇ ପ୍ରତ୍ୟକ୍ଷ,
ଉତ୍ପତ୍ତିର ପୂର୍ବେ ସତ୍ତ୍ୱ ଭାବରେ ଅଲକ୍ଷ୍ୟ ।
ମାତ୍ର କଥାଟାଏ ତୁମ୍ଭେ ବିଶେଷ ଭାବରେ,
ସର୍ବଦା ଜାଗ୍ରତ ରଖ ଆପଣା ମନରେ ।
କାରଣ ମଧ୍ୟରେ କାର୍ଯ୍ୟ ଥାଏ ବିଦ୍ୟମାନ,
ମାତ୍ରକ ସେ କାର୍ଯ୍ୟାକାରେ ଥାଏ ନାହିଁ ଜାଣ ।
କାରଣ ମଧ୍ୟରେ କାର୍ଯ୍ୟ ଥାଏଟି ଯେ ଯାଏ,
ସେକାଳେ ଅନଭିବ୍ୟକ୍ତ ଭାବରେ ସେ ଥାଏ ।
ଥିଲେ ମଧ୍ୟ କାର୍ଯ୍ୟ ଗୋଟି କାରଣ ମଧ୍ୟରେ,
ବିକାଶ ବା ଅଭିବ୍ୟକ୍ତ ଲୋଡ଼ା ବିଶେଷରେ ।
ଯେ ଉପାୟେ କାର୍ଯ୍ୟଗୋଟି ହେବ ପ୍ରକାଶିତ,
ସମ୍ପାଦନ ସେ କ୍ରିୟାଟି କରିବା ଉଚିତ ।
ନଚେତ୍ ବା ସେ କାହା ବଳେ ହେବ ପ୍ରକାଶିତ ?
ଏଥିକୁ କରିବା ଅଟେ ଯତ୍ନ ଯଥୋଚିତ ।
ଉତ୍ପତ୍ତିର ପୂର୍ବେ ଘଟ ଆଦି ଦ୍ରବ୍ୟମାନ,
ଅବଶ୍ୟ ପଦାର୍ଥ କିଛି ଥିଲା ବିଦ୍ୟମାନ ।
ଯେବେ ସେହି ଆବରଣ କରିବ ଅନ୍ତର,
ଘଟ ଅଭିବ୍ୟକ୍ତ ହେବ ନୟନଗୋଚର ।
ଘଟ ମୃତ୍ତିକାରୁ ହେବା ପୂର୍ବେ ଅଭିବ୍ୟକ୍ତ,
ମୃତ୍ତିକା ଯେ ପିଣ୍ଡାକାରେ ହୁଅଇ ବ୍ୟାପିତ ।
ମୃତ୍ତିକା କରନ୍ତେ ପିଣ୍ଡ ଆକାର ଧାରଣ,
ଘଟ ଆବରକ ଏହା କଲା ନିର୍ଦ୍ଧାରଣ ।
ଘଟଟି ଆବୃତ ଥିବା ଯୋଗୁଁ ପିଣ୍ଡାକାରେ,
ନ ଆସିଲା ଏଥି ଯୋଗୁଁ ଏହା ଦେଖିବାରେ ।
ଏହି ପିଣ୍ଡରୂପ ଆବରଣ ହେଲେ ଧ୍ୱଂସ,
ଘଟଗୋଟି ଅଭିବ୍ୟକ୍ତ ହୁଅଇ ଅବଶ୍ୟ ।
ତେଣୁ ଘଟରୂପ କାର୍ଯ୍ୟେ ମୃତ୍ତିକା କାରଣ,
କରିଥିଲା ପିଣ୍ଡ ତାକୁ ପୂର୍ବେ ଆବରଣ ।
ମାତ୍ର ଏଥି ମଧ୍ୟ ହୋଇ ପାରିବ ଆପତ୍ତି,
ସେଥିର ବୃତ୍ତାନ୍ତ ଆମ୍ଭେ ବୋଲିବୁଁ ସମ୍ପ୍ରତି ।

ବୋଲିବେ ବିପକ୍ଷବାଦୀ ଏହି କଥାମାନ,
ପୂର୍ବରୁ ଯଦ୍ୟପି ଘଟ ଥିଲା ବିଦ୍ୟମାନ,
କଲେ ଯେବେ ପିଣ୍ଡରୂପ ଆବରଣ ଧ୍ୱଂସ,
ହୋଇପାରେ ଅଭିବ୍ୟକ୍ତ ଘଟର କ୍ରମଶଃ ।
ତେବେ ଯେଉଁ ଲୋକ ଘଟ କରଇ ନିର୍ମାଣ,
ଆବରଣ ଧ୍ୱଂସ ମାତ୍ର କରୁଁ ସମାଧାନ ।
ଘଟ ନିର୍ମାଣର କାର୍ଯ୍ୟ ବିବିଧ ପ୍ରକାର,
କପାଁ ପ୍ରୟୋଜନ ଅଛି ତେବେ କରିବାର ।
ମାତ୍ର ଦେଖୁଁ କୁମ୍ଭକାର ପିଣ୍ଡଗୋଟି ଧ୍ୱଂସ,
କରି ସାରି ଅନ୍ୟ କାର୍ଯ୍ୟ କରଇ କ୍ରମଶଃ ।
କେବଳ କଲେ ଯେ ଧ୍ୱଂସ ପିଣ୍ଡ ଆବରଣ,
ଘଟର ଉତ୍ପତ୍ତି ହେବ, ଏ କଥା କେସନ ?
ମାତ୍ର ଏ ଆପତ୍ତି ଗୋଟି ସାମାନ୍ୟ ନିତାନ୍ତ,
ସଂକ୍ଷେପେ ବୋଲିବୁଁ ଶୁଣ ସେଥିର ବୃତ୍ତାନ୍ତ ।
ବୁଝ ଅନ୍ଧକାର ମଧ୍ୟେ ଅଛି ଏକ ଘଟ
ପ୍ରୟୋଜନ ଆଲୋକ ଯେ ତାହାକୁ ପ୍ରକଟ ।
ଏହି ଯେ କ୍ରିୟାଟି ପ୍ରଦୀପକୁ ଆଣିବାର,
କେବଳ କି ନାଶ କରିବାକୁ ଅନ୍ଧକାର ?
ନୁହେଁ କି ତା ଘଟ ପ୍ରକାଶିବା ପ୍ରୟୋଜନ ?
ଅବଶ୍ୟ ଏଠାରେ ଅଛି ଦୁଇଟି କାରଣ ।
ଅନ୍ଧକାର ନାଶ ପୁଣି ଘଟର ପ୍ରକାଶ—
ପ୍ରଦୀପ ଆଣିବା ଦୁଇ କାର୍ଯ୍ୟର ସକାଶ ।
ବୁଝ ଏଥୁ ଲୋକଗଣ ଅଭିବ୍ୟକ୍ତ ପାଇଁ
କରିଥାନ୍ତି ନାନା ଯତ୍ନ, ସନ୍ଦେହ ତ ନାହିଁ ।
ଯେଉଁ ଯତ୍ନେ ଧ୍ୱଂସ ହୋଇଯାଏ ଆବରଣ,
ପ୍ରାସଙ୍ଗିକ ସେହି କାର୍ଯ୍ୟ କର ନିର୍ଦ୍ଧାରଣ ।
କରିବା ସକାଶେ ଯେଉଁ କାର୍ଯ୍ୟ ପ୍ରକାଶିତ
କଲେ ହୁଏ କାର୍ଯ୍ୟ ଅଭିବ୍ୟକ୍ତ ବା ବିଦିତ ।
ଏଥିକୁ ଜାଣିବ ଜାତ ପୂର୍ବ କାର୍ଯ୍ୟମାନ
କାରଣ ମଧ୍ୟରେ ରହିଥାନ୍ତି ବିଦ୍ୟାମାନ ।
କେବଳ ତାହାର ଅଭିବ୍ୟକ୍ତିର କାରଣ,
କେତେଗୁଡ଼ି କ୍ରିୟା ହୋଇଥାଏ ପ୍ରୟୋଜନ ।

ସେହି କ୍ରିୟାଗୁଡ଼ ଯେବେ ହୁଏ ଉପସ୍ଥିତ,
ସହାଜରେ କାର୍ଯ୍ୟ ଗୋଟି ହୁଏ ତ ବିଦିତ ।
ଏଥକୁ ଏ କଥା ସ୍ଥିର, ଉତ୍ପତ୍ତି ପୂର୍ବରେ
କାର୍ଯ୍ୟ ଗୋଟି ରହିଥାଏ କାରଣ ମଧ୍ୟରେ ।
କେବଳ ଅନଭିବ୍ୟକ୍ତ ଅବସ୍ଥାରେ ଥାଏ,
ବିବିଧ ଯତ୍ନରେ ତାହା ପ୍ରକାଶକୁ ପାଏ ।
ନିଶ୍ଚୟ ନିଶ୍ଚୟ ଅସତରୁ କେବେ ସତ
ଜାତ ହୁଏ ନାହିଁ, ଏହା ମୀମାଂସିତ ମତ ।
ସତ୍‌ପଦାର୍ଥ ହୋଇଥାଏ କାର୍ଯ୍ୟର ଉତ୍ପତ୍ତି,
କରି ନ ପାରିବ କେହି ଏଥିରେ ଆପତ୍ତି ।
ଗୋଟିଏ କାରଣ ସତ୍ତା ବିବିଧ କାର୍ଯ୍ୟରେ
ଅଭିବ୍ୟକ୍ତ ହୋଇଥାଏ ବୁଝନ୍ତୁ ମନରେ ।
କୁଣ୍ଡଳ ଆକାର ସର୍ପ କରଇ ଧାରଣ,
ସ୍ୱର୍ଣ୍ଣରେ ନିର୍ମିତ ହୁଏ ଅଳଙ୍କା କଙ୍କଣ ।
ଦେଖିବାରେ ଆସେ ଏହି ସର୍ବ ପ୍ରତ୍ୟକ୍ଷରେ
ଗୋଟିଏ କାରଣ ଯୁକ୍ତ ବିବିଧ କାର୍ଯ୍ୟରେ ।
ସର୍ପର କାରଣ ଭେଦ କୁଣ୍ଡଳ ଯେମନ୍ତ,
ସ୍ୱର୍ଣ୍ଣର ପ୍ରକାର ଅଳଙ୍କାରାଦି ଯାବନ୍ତ ।
ସେହିରୂପ ପରିଦୃଶ୍ୟମାନ ଏ ବ୍ରହ୍ମାଣ୍ଡ
ବିବିଧ ଆକାରେ ବ୍ୟକ୍ତ ବ୍ରହ୍ମବସ୍ତୁ କାଣ୍ଡ ।
ବିଶ୍ୱସୃଷ୍ଟି ପୂର୍ବେ ଏକ ବ୍ରହ୍ମ ବିଦ୍ୟମାନ
ଥିଲେ ମାତ୍ର, ଆଉ କିଛି ଥିଲା ନାହିଁ ଜାଣ ।
ପିଣ୍ଡ ଖଣ୍ଡ ଘଟଆଦି ବିଭିନ୍ନ ପଦାର୍ଥ,
ମାତ୍ର ଏକ ମୃତ୍ତିକାରୁ ଜାତ ହିଁ ଯଥାର୍ଥ ।
ପରସ୍ପର ଭିନ୍ନ ଭିନ୍ନ ଆକାରେ ପ୍ରକାରେ
ମାତ୍ରକ ନିର୍ମିତ ସର୍ବ ଏକ ମୃତ୍ତିକାରେ ।
ପିଣ୍ଡ ଘଟ ଦୁଇ ବସ୍ତୁ ସତ୍ୟ ଭିନ୍ନ ଭିନ୍ନ,
ମାତ୍ର ଉଭୟରେ ଅଛି ମୃତ୍ତିକାର ଚିହ୍ନ ।
ସେହିରୂପ ସୃଷ୍ଟି ବସ୍ତୁ ଏ ବିଶ୍ୱ ବ୍ରହ୍ମାଣ୍ଡ,
ଆକାରେ ପ୍ରକାରେ ଗୁଣେ ଅଦଭୁତ କାଣ୍ଡ ।
ଅଟନ୍ତି ଯେ ସମସ୍ତଙ୍କ ସୃଷ୍ଟିକର୍ତ୍ତା ଜାଣ
ଏକମାତ୍ର ପରଂବ୍ରହ୍ମ ପ୍ରଭୁ ଭଗବାନ ।
ଦେଖୁଁ ଯାହା ନିତ୍ୟ ଜାଣ ଦ୍ରବ୍ୟ ଅଭିବ୍ୟକ୍ତ,
ମହିମା ପ୍ରକାଶ ମାତ୍ର ବିଶ୍ୱପତି ଶକ୍ତ ।
ଅନନ୍ତ କୌଶଳମୟ ବିଶ୍ୱର ଆକାର
ଦେଖି ମଧ୍ୟ ବ୍ରହ୍ମଶକ୍ତ କରେ ଅସ୍ୱୀକାର ।
ଥିଲେ ମଧ୍ୟ ତାହାଠାରେ ମାନବତ୍ୱ ଚିହ୍ନ,
ନିଶ୍ଚୟ ନିର୍ବୋଧ ପଶୁଠାରୁ ନୁହେ ଭିନ୍ନ ।
ଅନନ୍ତ କୌଶଳମୟ ଏ ବିଶ୍ୱବ୍ରହ୍ମାଣ୍ଡ,
ଦେଖି ଏହା କେ ବୋଲିବ ଅନ୍ଧ ଶକ୍ତ କାଣ୍ଡ ?
ଯେ ବୋଲିବ ନିଶ୍ଚେ ସେହି ଲୋକ ଜ୍ଞାନଅନ୍ଧ
ନାହିଁ ତାହା ସଙ୍ଗେ ତତ୍ତ୍ୱଜ୍ଞାନର ସମ୍ବନ୍ଧ ।
ପୁଣି ଏକ ପ୍ରଶ୍ନ ହୋଇପାରେ ଉତ୍‌ଥାପିତ,
ବ୍ରହ୍ମ ତ ନିରବୟବ ଚିନ୍ତାର ଅତୀତ ।
ଏକ ଏବ ଅଦ୍ୱିତୀୟ ଆକାର ବିହୀନ,
କିପ୍ରକାର ତହୁଁ ଜାତ ଦ୍ରବ୍ୟ ଭିନ୍ନ ଭିନ୍ନ ।
ଶୁଣ ବତ୍ସ, ଦେଉଅଛୁଁ ସେଥିର ଉତ୍ତର,
ରଜ୍ଜୁ ଦେଖି ଜ୍ଞାନ ଜନ୍ମେ ଆକାର ସର୍ପର ।
ତେସନ ମନୁଷ୍ୟ ବୁଦ୍ଧି କଳ୍ପିତ ବିଶ୍ୱରେ,
ଭ୍ରମ ଜାତ ହୁଏ ପରଂବ୍ରହ୍ମ ବିଷୟରେ ।
ଏକ ବସ୍ତୁ ପ୍ରତି ଅନ୍ୟ ବସ୍ତୁର ଆରୋପ
କରି ଯେହ୍ନେ ଲୋକ ଜ୍ଞାନ କରେ ସେହିରୂପ ।
ଯେମନ୍ତ ରଜ୍ଜୁକୁ ସର୍ପସ୍ୱରୂପ ଧାରଣା,
ମୃତ୍ତିକାବିହୀନ କରେ ଘଟକୁ କଳ୍ପନା ।
ତେସନ ମାନବ ବୁଦ୍ଧି ସମସ୍ତ ପଦାର୍ଥ
ବ୍ରହ୍ମରୁ ସ୍ୱତନ୍ତ୍ର ବୋଲି ମଣଇ ଯଥାର୍ଥ ।
ଇନ୍ଦ୍ରିୟଜନିତ ଜ୍ଞାନ ଅବସ୍ଥା ଏପରି,
ସହଜେ ନ ପାରେ ବସ୍ତୁ ମୂଳତତ୍ତ୍ୱ ଧରି ।
ବାସ୍ତବରେ ନର ନେତ୍ରେ ଯାହା କିଛି ଦିଶେ,
ବ୍ରହ୍ମସତ୍ତାହୀନ ବସ୍ତୁ ନାହିଁ କିଛି ବିଶ୍ୱେ ।
ରଜ୍ଜୁଟି ଯେକାଳେ ରଜ୍ଜୁ ହୁଏ ଅନୁମିତ,
ସର୍ପବୁଦ୍ଧି ସେ କାଳରେ ହୁଏ ତିରୋହିତ ।
ଘଟଗୋଟି ହୋଇଅଛି ମୃତ୍ତିକାଗଠିତ,
ଜାଣିଲେ ଏ କଥା ଘଟବୁଦ୍ଧି ତିରୋହିତ ।

ତେସନେ ହେଲେକ ଜ୍ଞାନ ବ୍ରହ୍ମର ସ୍ୱରୂପ,
ଜଡ଼ସ୍ୱାଧୀନତା ସତ୍ତା ଜ୍ଞାନ ହୁଏ ଲୋପ ।
ଯାହା କିଛି ଦେଖୁଅଛ ବସ୍ତୁ ପରମିତ,
ବ୍ରହ୍ମ ବ୍ୟତିରେକେ ନାହିଁ ବିଶ୍ୱର ଅସ୍ତିତ୍ୱ ।
ଯାହା କିଛି ପୂର୍ବସ୍ଥାନେ ଦେଖ ବିଦ୍ୟମାନ,
ସଦ୍‌ବ୍ରହ୍ମ ସ୍ୱରୂପ ସର୍ବ ଏହା କର ଜ୍ଞାନ ।
ଦୁର୍ବୁଦ୍ଧି ଇନ୍ଦ୍ରିୟଗଣ ଅବିଦ୍ୟା ପ୍ରଭାବେ
ଜନ୍ମାଇ ଦିଅନ୍ତି ନାନା ଭ୍ରାନ୍ତି ନାନା ଭାବେ ।
ଅପେକ୍ଷା କରନ୍ତି କାର୍ଯ୍ୟ କାରଣ ସତ୍ତାକୁ,
ନ ପାରେ କାରଣ ବିନା କାର୍ଯ୍ୟ ଜନ୍ମିବାକୁ ।
ଘଟ ବା ସ୍ୱର୍ଣରେ ଯାହା ଆସେ ଦେଖିବାର,
କାର୍ଯ୍ୟକୁ ଅସତ ଅବା ମିଥ୍ୟା ବୋଲିବାର ।
କାର୍ଯ୍ୟର ସ୍ୱାଧୀନ ସତ୍ତା କିଛିମାତ୍ର ନାହିଁ,
ଏହାକୁ ଯେ ମିଥ୍ୟା ବୋଲିପାର ସେଥିପାଇଁ ।
ଘଟ ଶରାବାଦି କାର୍ଯ୍ୟ ମିଥ୍ୟା ବୋଲି ଜାଣ,
ନ ଥାଏ ଉତ୍ପତ୍ତି ନାଶ ପରେ ବିଦ୍ୟମାନ ।
କାରଣଟି ଘଟ ଆଦି କାର୍ଯ୍ୟର ଆକାରେ,
ଦେଖାଯାଏ, କାରଣଟି ସତ୍ୟ ଜାଣିବାରେ ।
କାର୍ଯ୍ୟଗୋଟି ନୁହେ ସତ୍ୟ ପ୍ରକୃତ ପ୍ରସ୍ତାବେ,
କେବଳ ସେ ରୂପାନ୍ତର ଦିଶେ ଅନ୍ୟଭାବେ ।
କାରଣ ବ୍ୟତୀତ କାର୍ଯ୍ୟ ହୁଏ ନାହିଁ ଜାତ,
ଏଥିକୁ ଅସତ କାର୍ଯ୍ୟ ଜାଣିବ ନିତାନ୍ତ ।
ଏକ ବ୍ରହ୍ମଶକ୍ତି ମାତ୍ର ବିବିଧ ଆକାରେ
ପ୍ରକାଶିତ ହୋଇଅଛି ଜଗତ ସଂସାରେ ।
ପ୍ରତ୍ୟେକ କାର୍ଯ୍ୟ ହିଁ କ୍ଷଣେ କ୍ଷଣେ ରୂପାନ୍ତର,
ଚିର ନିତ୍ୟ ବ୍ରହ୍ମଶକ୍ତି ନିତ୍ୟ ଅକ୍ଷର ।
ଶକ୍ତିମାତ୍ର ରୂପେ କାର୍ଯ୍ୟ ମାତ୍ରକ ହିଁ ସତ୍ୟ,
ଶକ୍ତିରୁ ପୃଥକ କାର୍ଯ୍ୟ ଅଟଇ ଅସତ୍ୟ ।
ଯେକାଳେ କାରଣ କାର୍ଯ୍ୟାକାରେ ପରିଣତ,
ହୁଏ କାରଣର ସତ୍ତା ତଦା ତିରୋହିତ ।
ବରଞ୍ଚ କାର୍ଯ୍ୟର ସତ୍ତା କରେ ସମୟରେ
ନିର୍ଭର କାରଣ ସତ୍ତା ପ୍ରତି ସମ୍ପୂର୍ଣ୍ଣରେ ।

ଏଥିକୁ ସହଜେ କରି ପାରିବ ନିଷ୍ପତ୍ତି,
ସତ୍ତ୍ୱଦୋର୍ଥ ପରପଦାର୍ଥ ହୁଏନି ଉତ୍ପତ୍ତି ।
ଯେମନ୍ତ ମୃତ୍ତିକା ମାତ୍ର ହେଲେ କାର୍ଯ୍ୟାସକ୍ତ,
ଘଟାଦି ଆକାର ତହୁଁ ହୁଏ ଅଭିବ୍ୟକ୍ତ;
ତେସନେ ଗୋଟିଏ ବସ୍ତୁ ରୂପାନ୍ତର ଭାବେ
ସମୟେ ସମୟେ ଦେଖାଯାଏ ଠାବେ ଠାବେ ।
ଏକମାତ୍ର ସଦ୍‌ବସ୍ତୁକୁ ବିବିଧ ଆକାର
ବିଭିନ୍ନ ନାମରେ ଲୋକେ କରନ୍ତି ବେଭାର ।
କରନ୍ତୁ ବେଭାର ଅନ୍ୟରୂପେ ଲୋକମାନ,
ସଦ୍‌ବସ୍ତୁରେ ସଦ୍‌ବସ୍ତୁତ୍ୱ ଥାଏ ବିଦ୍ୟମାନ ।
ଏଥିରୁ ବୁଝୁଛୁଁ ଆମ୍ଭେମାନେ ଏହି ତତ୍ତ୍ୱ,
ଜଗତର କିଛି ବସ୍ତୁ ନୁହେଁନ୍ତି ଅସତ୍ୟ;
କିନ୍ତୁ କି ସମସ୍ତ ବସ୍ତୁ ବ୍ରହ୍ମର ଅଧୀନ,
ଜାଗତିକ କେହି ବସ୍ତୁ ନୁହେଁନ୍ତି ସ୍ୱାଧୀନ ।
ଆରେ ଶ୍ୱେତକେତୁ, ଶୁଣ ସେଥି ବିବରଣ,
ସେ ଯେ ଏକ ଅଦ୍ୱିତୀୟ ପରମକାରଣ ।
ଏହି ବିଶ୍ୱ ବ୍ରହ୍ମାଣ୍ଡର ସୃଜନା ସକାଶ
କଲେ ନିଜ ଇଚ୍ଛାଶକ୍ତି ବହୁଧା ପ୍ରକାଶ ।
ଯେ ସମସ୍ତ ବସ୍ତୁ ଥିଲ ପୂର୍ବ ପ୍ରଳୟରେ
ସୂକ୍ଷ୍ମରୂପେ ତାଙ୍କ ଅଙ୍ଗେ ପ୍ରଚ୍ଛନ୍ନଭାବରେ ।
ସଂକଳ୍ପ କଲେକ ତାହା ଖ୍ୟାତ କରିବାକୁ,
ବ୍ରହ୍ମ 'ଈକ୍ଷା' 'ସଂକଳ୍ପ' ଓ 'ଇଚ୍ଛା' ବୋଲେ ତାକୁ
ସେ ଜ୍ଞାନସ୍ୱରୂପ ପରଂବ୍ରହ୍ମ କାମନାରେ
ପ୍ରକାଶିତ ସର୍ବ ବସ୍ତୁ ଏ ବିଶ୍ୱ ସଂସାରେ ।
ଯେ ସମସ୍ତ ବସ୍ତୁଜାତ ପୂର୍ବ ପ୍ରଳୟରେ
ସୂକ୍ଷ୍ମଭାବେ ଲୀନ ଥିଲ ତାହାଙ୍କ ପାଶରେ,
ବ୍ରହ୍ମଙ୍କର ତାହା ଆଲୋଚନା ବା ପରୀକ୍ଷା,
ତାହା ନାମ ବ୍ରହ୍ମ ଇଚ୍ଛା ସଂକଳ୍ପ ବା ଈକ୍ଷା ।
ଜ୍ଞାନରୂପ ନିତ୍ୟ ପରଂବ୍ରହ୍ମ କାମନାରେ
ବିଶ୍ୱ ଆବିର୍ଭୂତ ହେଲ ସ୍ୱରୂପ ଆକାରେ ।
ଦେଖି ଏପ୍ରକାର ପରଂବ୍ରହ୍ମଙ୍କ କାମନା,
ଚେତନସ୍ୱରୂପ ସେ ଯେ ଏଥୁଁ ଯାଏ ଜଣା ।

ଯାବତୀୟ ନାମ ରୂପ ପ୍ରଳୟ କାଳରେ
ଯେ ନ ଥିଲା ତାଙ୍କ ପାଶେ ବୀଜସ୍ୱରୂପରେ,
ସେ ସମସ୍ତ ବର୍ତ୍ତମାନ ଥିଲା ତାଙ୍କ ଜ୍ଞାନେ,
ଏଥିକୁ ସର୍ବଜ୍ଞ ତାଙ୍କୁ ବୋଲୁଁ ଆମ୍ଭେମାନେ ।
ସଂସାରୀ ଲୋକଙ୍କୁ ଯେହ୍ନେ ବାସନା କାମନା,
ବଶୀଭୂତ କରିଥାଏ ଅଛି ଏହା ଜଣା ।
ଥିଲେହେଁ କାମନା ସର୍ବ ପରଂବ୍ରହ୍ମେ ଲୀନ,
ସର୍ବାତୀତ ଗୁଣାତୀତ ପ୍ରଭୁ ଚିରନ୍ତନ ।
ପରଂବ୍ରହ୍ମ ପ୍ରାଣିବର୍ଗ କର୍ମ ଅନୁସାରେ,
କରନ୍ତି କାମନା ପ୍ରବର୍ତ୍ତିତ ବାରେ ବାରେ ।
ଜୀବ ପକ୍ଷେ କାମନାଦି ଆତ୍ମାଠାରୁ ଭିନ୍ନ,
କେବଳ ତା ଦେହେନ୍ଦ୍ରିୟ କ୍ରିୟାଠାରୁ ଭିନ୍ନ ।
ସମସ୍ତ କାମନା ଜୀବଗଣ ପ୍ରବର୍ତ୍ତକ,
ବ୍ରହ୍ମଙ୍କ କାମନା କିନ୍ତୁ ସ୍ୱତନ୍ତ୍ର ପୃଥକ ।
କର୍ମପ୍ରବର୍ତ୍ତକ ସର୍ବ ଜୀବଙ୍କ କାମନା,
ବ୍ରହ୍ମଙ୍କର କର୍ମ କରେ, କାମନା ସୂଚନା ।
ବୀଜଗୋଟି ଥାଏ ଶକ୍ତିରୂପେ ଅବସ୍ଥିତ,
ନାମ, ରୂପ, ଅବ୍ୟକ୍ତରେ ତହିଁରେ ନିହିତ,
ବ୍ୟକ୍ତାବସ୍ଥା ଯେତେବେଳେ କରେ ସେ ଧାରଣ,
ନାମ ରୂପ ସର୍ବ ତହୁଁ ହୁଏ ଉତ୍ପନ୍ନ ।
ଏହି ନାମ ରୂପ ଅଭିବ୍ୟକ୍ତି ବା ବିକାଶ,
ନାମ ଧରେ ତତା ବହୁ ଭବନ ପ୍ରକାଶ ।
ନଥିବା ଯାହାର ନାହିଁ କିଛି ଅବୟବ,
ବହୁ ପଦାର୍ଥ କି ଜାତ ତହିଁରୁ ସମ୍ଭବ ।
ଏଥିକୁ ଜାଣିବ ବିଶ୍ୱବ୍ରହ୍ମାଣ୍ଡ ସକଳ
ହୋଇଅଛି ଏବେ ରୂପାନ୍ତରିତ କେବଳ ।
ପରଂବ୍ରହ୍ମ ସଂକଳ୍ପରେ ଏହି ଯେ ଆକାଶ,
ସର୍ବପ୍ରଥମରେ ହେଲା ସୃଷ୍ଟିରେ ପ୍ରକାଶ ।
ଆକାଶନ୍ତୁ ବାୟୁଶକ୍ତି—ତହୁଁ ଶକ୍ତି ତେଜ,
ଏହି ତେଜ ଦାହକାରୀ ଶକ୍ତି ମନେ ହେଜ ।
ପୁଣି କରେ ତେଜ ଦାହକ୍ରିୟା ସମ୍ପାଦନ,
ପ୍ରକାଶକ, ଉତ୍ତେଜକ ପୁଣି ରକ୍ତବର୍ଣ୍ଣ ।

ବ୍ରହ୍ମ ଇଚ୍ଛାବଳେ ପୁଣି ସେହି ତେଜରୁ ଜାତ
ହେଲା ଅପ୍ (ଜଳ) ଭୂତରୂପେ ଭୁବନେ ବିଖ୍ୟାତ ।
ଅପରୂପ ଗୁଣାତ୍ମକ, ସ୍ନିଗ୍ଧ ଶୁକ୍ଳବର୍ଣ୍ଣ,
ସେହି ଅପ୍ ମଧ୍ୟୁ ହେଲା ପୃଥିବୀ ଉତ୍ପନ୍ନ ।
ନାନାଜାତି ଶସ୍ୟ ସେହି ପୃଥ୍ୱୀ ଅନ୍ତର୍ଗତ,
ସ୍ଥିର କୃଷ୍ଣବର୍ଣ୍ଣ ଧର୍ମବିଶିଷ୍ଟ ଗୁରୁତ୍ୱ ।
ବ୍ରହ୍ମ ଚୈତନ୍ୟରୁ ଏହି ରୂପ ହେଲା ଜାତ,
ଅଚେତନ ମହାଭୂତ ସକଳ ପ୍ରଖ୍ୟାତ ।
ପଶୁ ପକ୍ଷୀ ଆଦି ତିନିଗୋଟି ମାତ୍ର ବୀଜ,
ହେଲା ଜାତ ଜରାୟୁଜ ଅଣ୍ଡଜ ଉଦ୍ଭିଜ୍ଜ
ଜରାୟୁ ମଧ୍ୟରୁ ଜାତ ସକଳ ମାନବ,
ଅଣ୍ଡ ମଧ୍ୟୁ ଜାତ ହେଲେ ପକ୍ଷୀ ସର୍ପ ସର୍ବ,
ଭୂମି ଭେଦ କରି ଯାହା ଉଠିଲା ଉପରେ,
ସେମାନେ ବିଖ୍ୟାତ ହେଲେ ଉଦ୍ଭିଜ୍ଜ ନାମରେ ।
ମାୟାଶକ୍ତିଶାଳୀ ପରଂବ୍ରହ୍ମ ସନାତନ,
ଅଟନ୍ତି ସେ ଜଗତର ଉତ୍ପତ୍ତି କାରଣ ।
ପୂର୍ବ ସୃଷ୍ଟି ମଧ୍ୟେ ଯାହା ଥିଲା ପ୍ରକଟିତ,
ମାୟାର ଭିତରେ ପୁଣି ଥିଲା ଲୁକ୍କାୟିତ ।
ବ୍ରହ୍ମଶକ୍ତି ପ୍ରଭାବରେ ସେ ସକଳ ଦ୍ରବ୍ୟ
ନୂତନ ସୃଷ୍ଟିରେ ପୁଣି ହେଲାକ ଉଦ୍ଭବ ।
ସୃଷ୍ଟ ବସ୍ତୁ ମଧ୍ୟେ ଅନୁପ୍ରବିଷ୍ଟ ନିହିତ,
ବ୍ରହ୍ମଚୈତନ୍ୟ ହିଁ ଜୀବପଦରେ କଥିତ ।
ତେଜ, ଜଳ, ଅନ୍ନ ଏହି ତିନି ପରିଣତି,
ସଂସର୍ଗରୁ ଜ୍ଞାନ ଲଭି ଜୀବର ଉତ୍ପତ୍ତି ।
ତୁମ୍ଭେ ଏବେ ପ୍ରଶ୍ନ କରି ପାର ଏ ପ୍ରକାର,
ସର୍ବଜ୍ଞ ଚୈତନ୍ୟମୟ ଜୀବର ଆଧାର ।
ପରମାତ୍ମା ଇଚ୍ଛାପୂର୍ବ ବୋଲି କିରୂପରେ
ଅନର୍ଥ ଆଧାର କଷ୍ଟମୟ ଶରୀରରେ
ପ୍ରବେଶିଲେ ଜୀବାତ୍ମାରେ ଯୁକ୍ତ ଅଭିଳାଷେ
ଅଶେଷ ଯନ୍ତ୍ରଣା ଭୋଗ କରିବା ସକାଶେ ?
ମାତ୍ର ଯେବେ ମନ ମଧ୍ୟେ କରିବ ବିଚାର,
ସହଜେ ପାରିବ ଜାଣି ଏଥି ସମାଚାର ।

ପରଂବ୍ରହ୍ମ ଆପେ ଦୁଃଖ ଭୁଞ୍ଜିବା କାରଣେ
ପ୍ରବେଶ ହୁଅନ୍ତି ନାହିଁ କାହିଁରେ ଆପଣେ ।
ଜୀବ ଅଟେ ପରମାତ୍ମା ପ୍ରତିବିମ୍ବ ମାତ୍ର,
ଏ ଶରୀର ଅଟେ ତହିଁ ଆଧାରର ପାତ୍ର ।
ସୂର୍ଯ୍ୟ ପ୍ରତିବିମ୍ବ ଯେହ୍ନେ ପଡ଼ଇ ଜଳରେ,
ମନୁଷ୍ୟର ପ୍ରତିବିମ୍ବ ଯଥା ଦର୍ପଣରେ,
ସେହିପରି ବୁଦ୍ଧି ପୁଣି ଭୂତ ସଂସର୍ଗରେ
ପରଂବ୍ରହ୍ମ ଜୀବରୂପେ କଥିତ ଲୋକରେ ।
ଯେଉଁ ମାୟାଶକ୍ତି ବ୍ରହ୍ମେ ନିତ୍ୟ ବର୍ତ୍ତମାନ ।
ସେଥିର ସମ୍ବନ୍ଧ ହେତୁ ବିଜଡ଼ିତ ଜ୍ଞାନ ।
ତହିଁର ସମ୍ବନ୍ଧ ହେତୁ କରଣ କଳ୍ପନା
ଦୁଃଖୀ ସୁଖୀ ବୋଲି ଆପେ କର ବିବେଚନା ।
ବିଶେଷ ବିଚାର ଯେବେ କର ନିଜପାଇଁ,
ଜୀବାତ୍ମାର ସୁଖ ଅବା ଦୁଃଖ କିଛି ନାହିଁ ।
ପଡ଼ିଲେ ହେଁ ସୂର୍ଯ୍ୟରଶ୍ମି କର୍ଦ୍ଦମ ପଙ୍କରେ,
ମଳିନତା ଦୋଷ ସ୍ପର୍ଶ ନ କରେ ସୂର୍ଯ୍ୟରେ ।
ଅଥଚ ପତିତ ରଶ୍ମି ଦିଶଇ ମଳିନ,
ବୁଦ୍ଧି ସଂସର୍ଗରେ ଜୀବ ସୁଖଦୁଃଖାଧୀନ ।
ପୁଣି ଭଲ ଦେଖ ମନେ ଏ ଜଗତେ ଜୀବ
ସତ୍ୟରୁ ସମ୍ଭୂତ ସତ୍ୟ ପଦାର୍ଥ ଜାଣିବ ।
ବ୍ରହ୍ମରୁ ସମ୍ଭୂତ ବୋଲି ନାମ ରୂପ ସବ
ନିଶ୍ଚେ ସତ୍ୟ ନିତ୍ୟ ବୋଲି କର ଅନୁଭବ ।
ବ୍ରହ୍ମରୁ ପୃଥକ ବୋଲି କଲେ ବିବେଚନା,
ସହଜେ ଏ ସର୍ବ ମିଥ୍ୟା ବୋଲି ଯିବ ଜଣା ।
ବ୍ରହ୍ମଚୈତନ୍ୟକୁ ଯେବେ କର ପରିତ୍ୟାଗ,
ଦେଖିବାକୁ ହେବ ବସ୍ତୁ ଅସ୍ତିତ୍ୱକୁ ଆଗ
ଏଥୁ ଜଣା- ଯାହା ହୋଇ ନାହିଁ ଅଭିବ୍ୟକ୍ତ,
ସେହି ରୂପ ନାମ ବ୍ରହ୍ମେ ବିଲୀନ ଆସକ୍ତ ।
ଏହି ଶକ୍ତି ତାହାଙ୍କର ଇଚ୍ଛା ସଂକଳ୍ପରେ,
ତ୍ରିବୃତ୍‌କୃତ*ହୋଇ ବ୍ୟକ୍ତ ତେଜ, ଅପ୍, ଅନ୍ନରେ ।
ଅଦୃଶ୍ୟ ଯେ ସୂକ୍ଷ୍ମଶକ୍ତି ବ୍ରହ୍ମଚୈତନ୍ୟରେ,
ତ୍ରିବୃତ୍‌କୃତ ହୋଇ ଦୃଷ୍ଟ ସହଜ ନେତ୍ରରେ ।
ପ୍ରତ୍ୟକ୍ଷ ଲୋହିତ ବର୍ଣ୍ଣ ଦିଶେ ଯେ ଅନଳ,
ତ୍ରିବୃତ୍‌କୃତ ରୂପଶକ୍ତି ତେଜ ହିଁ କେବଳ ।
ପୁଣି ତହିଁ ଯାହା ଦୃଶ୍ୟ ବର୍ଣ୍ଣର ଶୁକ୍ଳତା,
ଉପାଦାନଭୂତ ଅପଶକ୍ତି ପୃଥକତା ।
ପୁଣି ଏଥି ଯାହା କିଛି ଦେଖ କୃଷ୍ଣଛାୟା,
ସେଟା ତହିଁ ଲିପ୍ତ ଅନ୍ନ ପୃଥ୍ୱୀ ଶକ୍ତିକାୟା ।
ଏହି ତିନିରୂପ ଯେବେ ହେବ ପରିତ୍ୟକ୍ତ,
ଅଗ୍ନିର ରହିବ ନାହିଁ ସ୍ୱତନ୍ତ୍ର ଅସ୍ତିତ୍ୱ ।
ଏ ତିନି ପ୍ରକୃତ ତତ୍ତ୍ୱ ହେଲେ ଅବଗତ,
ନ ରହିବ ବୋଧଜ୍ଞାନ ଅଗ୍ନି ସ୍ୱତନ୍ତ୍ର ।
ଲୋହିତାଦି ରୂପ ଯାହା ଦେଖୁଛ ଅନଳେ,
ଭୂତତ୍ରୟ ସଂଯୋଗରୁ ଉତ୍ପନ୍ନ କୌଶଳେ ।
ପ୍ରକୃତ ପ୍ରସ୍ତାବେ ଏହି ଭୂତତ୍ରୟ ସତ୍ୟ,
ପ୍ରକୃତ ପକ୍ଷରେ ଅଗ୍ନି ମିଥ୍ୟା ବା ଅସତ୍ୟ ।
ଚନ୍ଦ୍ର, ସୂର୍ଯ୍ୟ, ବିଦ୍ୟୁ, ଜଳ, ପୃଥିବୀ ପ୍ରଭୃତି,
ଏଥି ଯାହା ଶୁକ୍ଳ କୃଷ୍ଣ ଲୋହିତ ଆକୃତି ।
ଦେଖ ଯାହା ସେମାନଙ୍କ ଉପାଦାନଭୂତ,
ସେ ସମସ୍ତ ଭୂତତ୍ରୟ ଅବିକୃତ କୃତ ।
ସ୍ୱତନ୍ତ୍ର ସ୍ୱରୂପ ନାହିଁ ସେମାନଙ୍କ ଜାଣ,
ମାତ୍ରକ ରୂପର ଯାହା କରିଲୁ ପ୍ରମାଣ ।
ସକଳ ପଦାର୍ଥେ ଅଳ୍ପାଧିକ ପରିମାଣ,
ରୂପ, ରସ, ଗନ୍ଧ, ସ୍ପର୍ଶ ଅଛି ବୋଲି ଜାଣ ।
ତାହା ମଧ୍ୟ ଅଟେ ତ୍ରିବୃତ୍‌କରଣର ଫଳ,
ସମସ୍ତ ବିଶ୍ୱହିଁ ତ୍ରିବୃତ୍‌କରଣ କେବଳ ।
ଅଗ୍ନିରେ ସ୍ୱାଧୀନ ସତ୍ତା ବାସ୍ତବ ପକ୍ଷରେ,
ମିଥ୍ୟା ବୋଲି ଦେଖାଇଲୁଁ ପ୍ରମାଣ ବଳରେ ।
ତେସନେ ସମସ୍ତେ ବିଶ୍ୱ ମିଥ୍ୟା ବା ଅସତ୍ୟ,
ସେମାନଙ୍କ ଉପାଦାନ ଭୂତତ୍ରୟ ସତ୍ୟ ।

* ଗୋଟିଏ ଭୂତରେ ଅନ୍ୟ ଦୁଇଗୋଟି ଅଂଶ ପ୍ରବିଷ୍ଟ ହୁଏ; ମାତ୍ର ନିଜ ଅଂଶର ପ୍ରାଧାନ୍ୟ ଥାଏ । ତିନି ଭୂତ ସମ୍ମିଳିତ, ସ୍ଥୂଳ ଅବସ୍ଥାର ନାମ ତ୍ରିବୃତ୍‌କୃତ ।

ପୁଣି ଏହି ସର୍ବ କାର୍ଯ୍ୟକାରଣ ପ୍ରକ୍ରିୟା,
ମଧ୍ୟ ଦେଇ ଦେଖ ଅନ୍ୟ ଭାବ ହେବ ଠିଆ ।
ପୃଥିବୀ ଅଟଇ ଜାଣ ଜଳ ପରିଣତି,
ସେହି ଜଳ ହେଲା ପୁଣି ତେଜରୁ ଉତ୍ପତ୍ତି ।
ତେଜେ ତ ରହିଲା ନାହିଁ ସ୍ୱାଧୀନତା ସତ୍ତ୍ୱ,
ପୃଥିବୀର ପୃଥିବୀତ୍ୱ ଜଳର ଜଳତ୍ୱ ।
ଏଥିଁ ବୁଝ ତେଜ ସତ୍ୟ ପଦାର୍ଥ କେବଳ,
କାର୍ଯ୍ୟକାରଣର ସ୍ୱାଧୀନତା ହିଁ ନିଷ୍ଫଳ ।
ଏହାଙ୍କ ସ୍ୱାଧୀନ ସତ୍ତା ଅଟେ ନାମ ମାତ୍ର,
ଯେଣୁ ପୃଥକରେ ରହିଅଛି ସତ୍ୟ ପାତ୍ର ।
ପୁଣି ଦେଖ ତେଜ ଶକ୍ତି ସ୍ୱାଧୀନତା ସତ୍ତ୍ୱ,
ଅଦ୍ୱିତୀୟ ସଦ୍‌ବ୍ରହ୍ମରୁ ହେଲା ଅଭିବ୍ୟକ୍ତ ।
ଏଥକୁ ସୁସ୍ପଷ୍ଟ ହେଉଅଛି ଅନୁମିତ,
ତେଜ ଶକ୍ତି—ମଧ୍ୟ ନାହିଁ ପୃଥକ ଅସ୍ତିତ୍ୱ ।
ସର୍ବ ଆଲୋଚନା କରି ହେଉ ଅବଗତ ।
ସ୍ୱଚ୍ଛରୂପ ଅଦ୍ୱିତୀୟ ପରଂବ୍ରହ୍ମ ସତ୍ୟ ।
ଏକମାତ୍ର ସ୍ୱଚ୍ଛରୂପ ପରଂବ୍ରହ୍ମ ଜାଣି,
ଆନ ସର୍ବ ମିଥ୍ୟା ବୋଲି ହେଉଛି ପ୍ରମାଣି ।
ସ୍ୱଚ୍ଛରୂପ ପରଂବ୍ରହ୍ମ ଯେବା ଜାଣିପାରେ,
ଅଜଣା ତାହାକୁ କିଛି ନ ଥାଏ ସଂସାରେ ।
ଯାହାର କାରଣଜ୍ଞାନ ହୋଇଅଛି ଜାତ,
କାର୍ଯ୍ୟଜ୍ଞାନ ତାହାର ତ ଜନମେ ନିତାନ୍ତ ।
ଅହେ ପୁତ୍ର ପୂର୍ବବର୍ତ୍ତୀ ଗୃହସ୍ଥ ସକଳେ,
ଏ ପରମାତ୍ମାକୁ ଜ୍ଞାତ ହୋଇ ଜ୍ଞାନବଳେ ।
ବୋଲିଥାନ୍ତି, "ଏ କୁଳରେ କିଛି ହିଁ ଅଜ୍ଞାତ,
ଅଶ୍ରୁତ, ଅବୁଦ୍ଧ ନାହିଁ ଜାଣିବ ନିତାନ୍ତ ।
ଏକ ହିଁ ପରମାତ୍ମାକୁ ଜାଣି ଆମ୍ଭେମାନେ.
ସକଳ ବସ୍ତୁକୁ ଜାଣିଅଛୁଁ ବିଦ୍ୟମାନେ ।"
ଏ ସମସ୍ତ ବ୍ରହ୍ମବିଦ ଗୃହବାସିଗଣ —
"ଜଗତରେ ଯେତେ କିଛି ଅଛି ଶୁକ୍ଳବର୍ଣ୍ଣ ।
ସେ ସମସ୍ତ ଅଟେ ଅପ୍ ଶକ୍ତିର ବିକାଶ,
କୃଷ୍ଣବର୍ଣ୍ଣ ଅଟେ ପୃଥ୍ୱୀ ଶକ୍ତିର ପ୍ରକାଶ ।
ଲୋହିତ ବର୍ଣ୍ଣ ଯେ ତେଜ ଶକ୍ତି ଅଭିବ୍ୟକ୍ତି,"
ଏହିପରି ବୋଲିଛନ୍ତି ଗୃହବାସୀ ବ୍ୟକ୍ତି ।
ଦୁର୍ବିଜ୍ଞେୟ ସୂକ୍ଷ୍ମ ହେଉ ଯେତେକ ପଦାର୍ଥ,
ଉପାଦାନ ସମ୍ମିଳନେ ଉତ୍ପନ୍ନ ଯଥାର୍ଥ ।
ତ୍ରିବିଧ ଅଟଇ ଜାଣ ସେହି ଉପାଦାନ,
ଏଥିର ବାହାରେ କିଛି ବସ୍ତୁ ନାହିଁ ଜାଣ ।
ଯେତେକ ଅଜ୍ଞାତ ବସ୍ତୁ ଅଛି ପୃଥିବୀରେ,
ସମସ୍ତ ସଂସର୍ଗଜାତ ତ୍ରିବିଧ ଶକ୍ତିରେ ।
ଯେତେକ ମାନବ ପ୍ରାଣଧାରୀ ବସ୍ତୁଗଣ,
ଏ ତ୍ରିବିଧ ଉପାଦାନ ଯୋଗରେ ଉତ୍ପନ୍ନ ।
ଯେତେ କିଛି ସୂକ୍ଷ୍ମଶକ୍ତି ହୋଇ ତ୍ରିବୃତ୍‌କୃତ,
ମାନବ ଇନ୍ଦ୍ରିୟ ଦେହ ହୋଇଛି ପ୍ରସ୍ତୁତ ।
ହେ ପୁତ୍ର ! ତୁମ୍ଭଙ୍କୁ ଆମ୍ଭେ ଦେଇଛୁଁ ବୁଝାଇ,
ବାହ୍ୟିକ ପଦାର୍ଥ ଯାହା ଦେଖିବାକୁ ପାଇ
ସବୁ ଦ୍ରବ୍ୟ ତେଜ ଜଳ ପୃଥ୍ୱୀ ଉପାଦାନ
ମିଳନ ଯୋଗରେ ହୋଇଅଛନ୍ତି ନିର୍ମାଣ ।
ଆଧ୍ୟାତ୍ମିକ ଇନ୍ଦ୍ରିୟାଦି ମାନବର ଗାତ୍ର
ସେହି ତ୍ରିବୃତ୍ କରଣର ପରିଣାମ ମାତ୍ର ।
ତୁମ୍ଭକୁ ବୁଝାଇ ଦେବୁ ତତ୍ତ୍ୱ ବର୍ତ୍ତମାନ,
ସମସ୍ତ ବସ୍ତୁର ମୂଳ ଏକ ଉପାଦାନ ।
ବାହ୍ୟିକ ବା ଆନ୍ତରିକ ଉଭୟ ପଦାର୍ଥ
ଉପାଦାନ ତ୍ରିତୟରେ ଉତ୍ପନ୍ନ ଯଥାର୍ଥ ।
କାର୍ଯ୍ୟ ଅବା ନାମ ଜାଣ ଅବସ୍ଥା ଭେଦରେ
ଜାତ, ସେଥି ତତ୍ତ୍ୱ କଥା ଶୁଣ ସଂକ୍ଷେପରେ ।
ସଂକ୍ଷେପେ ବୋଲିବୁ ଆମ୍ଭେ ସେଥି ବିବରଣ,
ଆହେ ପୁତ୍ର, ମନ ଦେଇ କରନ୍ତୁ ଶ୍ରବଣ ।
ଗ୍ରହଣ କରନ୍ତି ପ୍ରାଣୀ ଯେଉଁ ଖାଦ୍ୟଦ୍ରବ୍ୟ,
ଜଠରାଗ୍ନି ପରିପକ୍ୱ କରେ ସେହି ସର୍ବ,
ପାକ ଅନ୍ତେ ହୁଏ ତିନି ଭାଗରେ ବିଭକ୍ତ,
ସ୍ଥୂଳ ଭାଗ ହୁଏ ପୁରୀଷରେ ପରିଣତ ।
ଅନ୍ନର ମଧ୍ୟମ ଅଂଶ ରସାଦି କ୍ରମରେ
ମାଂସରୂପେ ପରିଣତ ହୁଏ ଶରୀରରେ ।

ଭୁକ୍ତ ଦ୍ରବ୍ୟ ସର୍ବଠାରୁ ସୂକ୍ଷ୍ମତମ ଅଂଶ
ପରିପାକ ଅନ୍ତେ ଜାତ ଯେଉଁ ସାର ରସ ।
ଇନ୍ଦ୍ରିୟନିବହ ଅବସ୍ଥାନ ହେତୁଭୂତ
ଦେହ ମଧ୍ୟେ ମନକୁ ଯେ କରଇ ପ୍ରସ୍ତୁତ ।
ଗୁଣାଗୁଣ ଅନୁସାରେ ରସ ପ୍ରସାରଣ,
ମନ ଉପଚୟ ପୁଷ୍ଟି କରେକ ସାଧନ ।
ଅନ୍ନ ରସେ ପୁଷ୍ଟ ଯୋଗୁଁ ଜାଣିବ ଯଥାର୍ଥ,
ଦେହ-ମଧ୍ୟେ ମନ ଗୋଟି ଭୌତିକ ପଦାର୍ଥ ।
ସେହି ମନ ନୁହେ ନିତ୍ୟ ଅବୟବଶୂନ୍ୟ,
ସେଥିର ବୃତ୍ତାନ୍ତ ଆମ୍ଭେ ବୋଲୁଅଛୁଁ ଶୁଣ ।
ଏହି ମନ ବ୍ୟବହୃତ ସ୍ଥୂଳ ସୂକ୍ଷ୍ମତ;
ଯାବନ୍ତ ପଦାର୍ଥ ବ୍ୟାପ୍ତ କରନ୍ତି ସକ୍ଷମ,
ତେସନ କରନ୍ତ ପ୍ରାଣୀ ଯେଉଁ ଜଳପାନ,
ବିଭକ୍ତ ତା ତିନି ଅଂଶେ ହୋଇଥାଏ ଜାଣ ।
ମୂତ୍ରେ ପରିଣତ ହୁଏ ସ୍ଥୂଳତମ ଅଂଶ,
ଦେହରେ ଶୋଣିତ ଜାତ ତା ମଧ୍ୟମ ଅଂଶ ।
ତୃତୀୟ ତା ସୂକ୍ଷ୍ମତମ ଅଂଶ ମଧ୍ୟେ ଗଣି,
ପ୍ରାଣ ଉପଚୟ ପୁଷ୍ଟି କରେକ ସାଧନ ।
ସେହିରୂପେ ତୈଳ ଘୃତ ତୈଜସ ପଦାର୍ଥ
ଦେହ ମଧ୍ୟେ ତିନି ଅଂଶେ ବିଭକ୍ତ ଯଥାର୍ଥ ।
ସ୍ଥୂଳ ଅଂଶେ ଅସ୍ଥି ମଧ୍ୟଅଂଶେ ମଜ୍ଜାଗଣ,
ସୂକ୍ଷ୍ମ ଅଂଶେ ବାକ୍ୟ ପୁଷ୍ଟି କରେକ ସାଧନ ।
ତୈଳାଦି ତୈଜସ ଦ୍ରବ୍ୟ କରନ୍ତେ ଭକ୍ଷଣ,
ବୋଲନ୍ତି ଯେ ବାକ୍ୟ ମାନବାଦି ଜୀବଗଣ ।
ଏଥିକୁ ବିଚାରି କଥା ବୁଝିବୁ ତନୟ,
ମନ ଅନ୍ନମୟ ପୁଣି ପ୍ରାଣ ଜଳମୟ ।
ବାକ୍ୟକୁ ଜାଣିବ ତେଜମୟ ଦ୍ରବ୍ୟମାନ,
ଏହି ସର୍ବ ହେତୁ ସ୍ଥିର କର ପାବାପାବ ।
ସମୁଦ୍ରଗର୍ଭସ୍ଥ ମୀନ ମକରାଦି ପ୍ରାଣୀ,
ଭୂଚର ଖେଚର ପଶୁ ପକ୍ଷୀ ଥିବ ଜାଣି,
କଳ୍ପିତ ପ୍ରମାଣେ ମନ ବାକ୍ଶକ୍ତିବିଶିଷ୍ଟ
ଅଟନ୍ତି ଯେ ପ୍ରାଣବାନ ଦେଖୁଛ ସୁସ୍ପଷ୍ଟ ।

ସେଥିର ବୃତ୍ତାନ୍ତ ବୋଲୁଁ ଶୁଣ ସମାଚାର,
ପ୍ରାଣୀ ମାତ୍ରକରେ କରିଥାଆନ୍ତି ଆହାର ।
ସର୍ବପ୍ରାଣୀ କରିଥାନ୍ତି ଭକ୍ଷଣ ଯଥାର୍ଥ
ତ୍ରିବୃତ୍କୃତ ଅନ୍ନ ଜଳ ତୈଜସ ପଦାର୍ଥ,
ଏଥିକୁ ସେ ସର୍ବ ମନ ରାଗାଦିବିଶିଷ୍ଟ
କରିଥାନ୍ତି ପରସ୍ପର ପ୍ରଣୟ ଅନିଷ୍ଟ ।"
ଶ୍ୱେତକେତୁ ଉପଦେଶ ଶୁଣି ଏ ପ୍ରକାର
ପିତାଙ୍କୁ ବିନୟେ ପୁଚ୍ଛା କଲେ ପୁନର୍ବାର—
"ହେ ପିତଃ, ଅନ୍ନାଦି ଦ୍ରବ୍ୟମାନ ଏକତ୍ରରେ
କରନ୍ତି ପ୍ରତ୍ୟକ୍ଷ ଦେଖୁଁ ପ୍ରବେଶ ଉଦରେ,
ସେ ଭୂତ ସୂକ୍ଷ୍ମ ଅଂଶେ ମନ ବାକ୍ୟମାନ
ପୁଷ୍ଟି ଲଭିଥାନ୍ତି କରି ପାରି ଅନୁମାନ ।
ଆପଣ ଯେ ବୋଲୁଛନ୍ତି – ତେବେ କି ରୂପରେ
ମନଟି ଗଠିତ ହୁଏ ଏ ଦେହ ମଧ୍ୟରେ ?"
ଏ ପ୍ରକାର ପୁତ୍ର ଶ୍ୱେତକେତୁ ପ୍ରଶ୍ନ ଶୁଣି
ହେ ପୁତ୍ର, ଶୁଣ ରେ—ତହୁଁ ବୋଇଲେ ଅରୁଣି ।
"ଦେଉଛୁଁ ଦୃଷ୍ଟାନ୍ତ – ତହୁଁ ହେବଟି ବିଦିତ,
ମନ୍ଥନଦଣ୍ଡରେ ଦଧି ହେଲେକ ମନ୍ଥିତ,
ତାହା ସୂକ୍ଷ୍ମ ଅଂଶ ନବନୀତର ରୂପରେ
ଭାସି ଉଠେ ଉପରକୁ ଦେଖ ପ୍ରତ୍ୟକ୍ଷରେ ।
ନବନୀତ ଘୃତରୂପେ ହୁଏ ପରିଣତ,
ତେସନେ ଜାଣିବ ଭୁକ୍ତ ଅନ୍ନାଦି ସମସ୍ତ
ବାୟୁ ସହଯୋଗେ ପୁଣି ଜଠରାଗ୍ନି ବଳେ
ମନ୍ଥିତ ଉଦର ମଧ୍ୟେ ହୁଏ ସୁକୌଶଳେ ।
ତହୁଁ ସୂକ୍ଷ୍ମ ଅଂଶ ହୋଇ ଊର୍ଦ୍ଧ୍ୱକୁ ଉତ୍ଥିତ
ମନ ଅବୟବ ସଙ୍ଗେ ହୋଇଣ ମିଳିତ
କରେ ତାହା ମନ ପୁଷ୍ଟି ପୋଷଣ ସାଧନ,
ଏହିରୂପେ ଦେହ ମଧ୍ୟେ ଅବସ୍ଥିତ ମନ ।
ଏହିରୂପ ଜଳ ପୁଣି ତେଜ ସୂକ୍ଷ୍ମାଂଶରେ
ପ୍ରାଣ ବାକ୍ୟ ପୁଷ୍ଟ ହେଲା ଶରୀର ମଧ୍ୟରେ ।
ଆହେ ଶ୍ୱେତକେତୁ, ଜାଣ ମନ ଅନ୍ନମୟ,
ପ୍ରାଣ ଜଳମୟ ପୁଣି ବାକ୍ୟ ତେଜୋମୟ ।

ଯେପ୍ରକାର ହୋଇଅଛି ଅନ୍ନମୟ ମନ,
ବୁଝାଇ ବୋଲିବୁଁ ତାହା କର ହେ ଶ୍ରବଣ ।
ସୂକ୍ଷ୍ମତାକୁ ପ୍ରାପ୍ତ ହୋଇ ସର୍ବ ଭୁକ୍ତ ଅନ୍ନ,
ମନର ଶକ୍ତିକୁ କରଥାଏ ଉତ୍ପାଦନ ।
ଦେହ ମଧ୍ୟେ ଅବସ୍ଥିତ ମନର ଯେ ଶକ୍ତି,
ସମସ୍ତ ହୋଇଛି ଅନ୍ନରସରୁ ଉତ୍ପତ୍ତି ।
ଅନ୍ନୁଁ ଜାତ ଏହି ଶକ୍ତି ଷୋଡ଼ଶ ଅଂଶରେ *
ପରିଣତ ହୋଇ ଅବସ୍ଥିତ ଯେ ଦେହରେ ।
ଏ ଷୋଡ଼ଶ ଶକ୍ତି ଯେଣୁ ଜୀବ ମଧ୍ୟେ ଥାଏ,
ଜୀବକୁ ଷୋଡ଼ଶକଳାତ୍ମକ ବୋଲିଯାଏ ।
ଯେବା ମାନସିକଶକ୍ତିବିଶିଷ୍ଟ ପୁରୁଷ,
ବୁଦ୍ଧି ତାର ପାଇ ଥାଏ ସାମର୍ଥ ଆୟୁଷ,
ଜୀବଗଣ ଦ୍ରଷ୍ଟା, ଶ୍ରୋତା, ବୋଦ୍ଧା, ଜ୍ଞାତା, କର୍ତ୍ତା,
ଅଟନ୍ତି ଯେ ସର୍ବକର୍ମସାଧନେ ସମର୍ଥା ।
ଆହେ ବତ୍ସ ! ଜାଣିଥିବ ଏଥିର କାରଣ,—
ସେମାନେ ଯେ ଅନ୍ନରସ କରନ୍ତି ଗ୍ରହଣ,
ଅନ୍ନ ରସ ବିନା ସର୍ବ ଶକ୍ତି ହୁଏ କ୍ଷୟ,
ସାମର୍ଥ୍ୟ ଓ ବୀର୍ଯ୍ୟ ହୋଇଯାଏ ଅପଚୟ ।
ଜୀବ ସର୍ବ ଶକ୍ତି ଅନ୍ନ ରସୁଁ ଜାତ ଜାଣ,
ପ୍ରତ୍ୟକ୍ଷରେ ଲୋଡ଼ ଯେବେ ଏଥିର ପ୍ରମାଣ,
ଆଜହୁଁ ପନ୍ଦର ଦିନ ରହ ଅନାହାରେ,
ଆସିବ ସକଳ କଥା ତୁମ୍ଭ ଜାଣିବାରେ ।
ଇଚ୍ଛା ହେଲେ ଜଳମାତ୍ର କରି ପାର ପାନ,
କିପାଁ କି ଅଟଇ ଯେଣୁ ଜଳମୟ ପ୍ରାଣ ।
ଇଚ୍ଛା କରି ପାନ ଯେବେ ନ କରିବ ଜଳ,
ତେବେ ହେବ ପ୍ରାଣକ୍ରିୟା ସକଳ ନିଷ୍ଫଳ ।
କାରଣ ବିନାଶ ହେଲେ କାର୍ଯ୍ୟର ବିନାଶ,
ଏହାହିଁ ଅବଶ୍ୟମ୍ଭାବୀ ସର୍ବତ୍ର ପ୍ରକାଶ ।"
ଶ୍ୱେତକେତୁ ଶୁଣି ପିତା ମୁଖୁଁ କଥାମାନ,
ଅନ୍ନମୟ ମନ ଏହା ନେବାକୁ ପ୍ରମାଣ ।
ପଞ୍ଚଦଶ ଦିନ ଅନ୍ନ ଗ୍ରହଣ ନ କରି,
ରହିଲେ ଗୃହରେ ଉପବାସ ବ୍ରତ ଧରି,
ଏରୂପ ପନ୍ଦର ଦିନ ହେବାରୁ ଅତୀତ
ଶ୍ୱେତକେତୁ ପିତାଠାରେ ହେଲେ ଉପନୀତ ।
ବୋଇଲେ ମହର୍ଷି ତହୁଁ "ଆରେ ମୋ ନନ୍ଦନ,
ଯେବଣ ଋଗ୍‌ବେଦ କରିଥିଲୁ ଅଧ୍ୟୟନ ।
ଆବୃତ୍ତି କରିବୁ ସେହି ବେଦୁଁ କିଛି ଅଂଶ,
ଶୁଣିବୁଁ ସେ ବେଦ କଥା ବଳୁଛି ମାନସ ।"
ପିତାଙ୍କୁ ଉତ୍ତର ଦେଲେ ପୁତ୍ର କ୍ଷୀଣସ୍ୱରେ—
ପଡ଼ୁ ନାହିଁ ଋଗ୍‌ବେଦର କଥା ମୋ ମନରେ ।
ଚେଷ୍ଟା କଲେ ମଧ୍ୟ ହେଉ ନାହିଁ ତ ସ୍ମରଣ,
ବୋଇଲେ ମହର୍ଷି ଶୁଣି ପୁତ୍ରର ବଚନ –
"କାଷ୍ଠ ବିଡ଼ାକରେ କଲେ ସଂଯୋଗ ଅନଳ,
କେତେକ୍ଷଣ ଜଳିବ ସେ ହୋଇଣ ପ୍ରବଳ,
ସେହି କାଷ୍ଠ ବିଡ଼ା ଜଳି ଜଳି ଏପ୍ରକାର,
ଅବଶେଷେ ଜାଣ ହୋଇ ଯିବ ଭସ୍ମସାର ।
ଶେଷେ ଅଗ୍ନିକଣାଟିଏ ଥାଏ ବିଦ୍ୟମାନ,
ମିଞ୍ଜି ମିଞ୍ଜି ଜୁଳୁଜୁଳା ପୋକର ସମାନ ।
ତାହାର ଦାହିକା କ୍ରିୟା ଥାଏ ନାହିଁ କିଛି,
ଯେଣୁ ଅନଳର ତେଜ ଉଗ୍ରତା ଯାଇଛି ।
ତେହ୍ନେ ତୁମ୍ଭ ଦେହ ଅନ୍ନ ଯୋଗେ ପରିପୁଷ୍ଟ,
ଜୀବନର କଳା ମାତ୍ର ହେଉଅଛି ଦୃଷ୍ଟ ।
ତେଣୁ ତୁମ୍ଭ ମନେ ଆଉ ଋଗ୍‌ବେଦର ସ୍ମୃତି,
ଜାତ ହେଉ ନାହିଁ—ଲୁପ୍ତ ଜୀବନର ଦ୍ୟୁତି ।
ଯାଇ ଏବେ କର ଅନ୍ନ କାଞ୍ଛିତ ଗ୍ରହଣ,"
ଶ୍ୱେତକେତୁ ପିତାଜ୍ଞାରେ କଲେକ ଭୋଜନ ।
ମନରେ ଉଦୟ ପୁଣି ବେଦ ହେବା ହେତୁ,
ପିତାଙ୍କୁ ଶୁଣାଇ ଦେଲେ କିଛି ଶ୍ୱେତକେତୁ ।
ଶ୍ୱେତକେତୁ ମୁଖ ଶୁଣି ପିତା ପୁନର୍ବାର,
ବୋଲି ଆରମ୍ଭିଲେ ପୁଣ ତତ୍ତ୍ୱ ସମାଚାର ।

---

* ଏକାଦଶ ଇନ୍ଦ୍ରିୟ-ଶକ୍ତି, ପଞ୍ଚପ୍ରାଣ ଶକ୍ତି, ଏହିରୂପେ ଷୋଡ଼ଶ ଶକ୍ତି ।

"ହେ ପୁତ୍ର, ଦେଇଛୁ ଯେଉଁ ଅଗ୍ନିର ଦୃଷ୍ଟାନ୍ତ,
ଖଦ୍ୟୋତ ପ୍ରମାଣ କଣା ଥିଲ ଯେ ନିତାନ୍ତ,
ସଂଯୋଗ କଲେକ ତହିଁ କିଛି ଶୁଷ୍କ ତୃଣ,
କ୍ରମେ କ୍ରମେ ତାହା ଜ୍ୱଳି ଉଠିବ ଯେ ପୁଣ ।
ତହିଁରେ ଦେଲେକ କାଷ୍ଠ ଯିବ ସବୁ ଜଳି,
କ୍ରମେ କ୍ରମେ ଅଗ୍ନିତେଜ ବଢ଼ିବ ଯେ ବଳି !
ପଞ୍ଚଦଶ ଦିନ ଯେଣୁ ଥିଲ ଅନାହାରେ,
ଶରୀର ବିଶୁଷ୍କ ହୋଇଗଲା ଏକେବାରେ ।
ମନର କଣିକା ଶକ୍ତି ହେଉଥିଲା ଦୃଷ୍ଟ,
ଅନ୍ନରସ ପାଇ ପୁଣି ହେଲା ପରିପୁଷ୍ଟ ।
ତୁଅନ୍ତେ ଏରୂପେ ମନ ଶକ୍ତି ଉପଚୟ,
ଲୁପ୍ତ ସ୍ମୃତିଶକ୍ତି ପୁଣି ହେଲାକ ଉଦୟ,
ପ୍ରତ୍ୟକ୍ଷ ପାଇଲ ତୁମ୍ଭେ ଏଥି ପରିଚୟ,
ଶରୀର ମଧ୍ୟରେ ମନ ଅଟେ ଅନ୍ନମୟ ।
ଅନ୍ନରସୁଁ ମନ ସର୍ବ ଶକ୍ତି ପରିପୁଷ୍ଟି,
ବୁଝିଲ ସକଳ ଏହା ପ୍ରତି ରଖି ଦୃଷ୍ଟି ।
ଏହିରୂପେ ପ୍ରାଣ, ବାକ୍ୟ ଜଳ-ତେଜୋମୟ,
ସହଜେ ଦେଖାଇ ପାରୁଁ ଏଥି ପରିଚୟ,
ସମୁଦୟ ଆନ୍ତରିକ ବାହ୍ୟିକ ପଦାର୍ଥ
ଅନ୍ନ, ଅପ, ତେଜୁଁ ଜାତ ହୋଇଛି ଯଥାର୍ଥ ।
ଅନ୍ନ, ଅପ, ତେଜ ଏହି ତିନି ଉପାଦାନେ
ସମ୍ମିଳନେ ଜାତ ହୋଇଅଛନ୍ତି ଏମାନେ,
ବିଶ୍ଳେଷଣ କଲେ ତୁମ୍ଭେ ପାଇବ ପ୍ରମାଣ,
ଏ ତ୍ରିବିଧ ମୂଳତତ୍ତ୍ୱ ଅଟେ ଉପାଦାନ ।
ଏକ ଉପାଦାନୁଁ ଜାଣ ବାହ୍ୟିକ ବିଷୟ,
ଆନ୍ତରିକ ଇନ୍ଦ୍ରିୟାଦି ହୋଇଛି ଉଦୟ ।
ଏହି ସୃଷ୍ଟି ସିଦ୍ଧାନ୍ତର ବିଶେଷ ତାତ୍ପର୍ଯ୍ୟ
ନିର୍ଣ୍ଣୟ କରିବା ବର୍ତ୍ତମାନ ଅଟେ କାର୍ଯ୍ୟ ।
ବିଷୟ ଇନ୍ଦ୍ରିୟେ ଅଛି ଜାଣିୟ ଏକତା,
ଉଭୟେ ହିଁ ଜ୍ଞେୟ ଆତ୍ମଚୈତନ୍ୟହିଁ ଜ୍ଞାତା
ପରିଦୃଶ୍ୟମାନ ସ୍ଥୂଳ ଯେତେକ ପଦାର୍ଥ,
କାର୍ଯ୍ୟ ଓ କାରଣାତ୍ମକ ଅଟନ୍ତି ଯଥାର୍ଥ ।

ଏକ ବିଶ୍ୱବ୍ୟାପୀ ଶକ୍ତି ସର୍ବତ୍ର ସଂସାରେ
ପ୍ରକାଶ-କରଣାକାରେ ପୁଣି କାର୍ଯ୍ୟାକାରେ ।
ଶ୍ରୀମତ ଶଙ୍କରାଚାର୍ଯ୍ୟ ପ୍ରୟାସ ବିଶେଷ
କରି ଯାଇଛନ୍ତି ଏହି ସିଦ୍ଧାନ୍ତ ନିର୍ଦ୍ଦେଶ ।
ବ୍ରହ୍ମ ଚୈତନ୍ୟଙ୍କ କୃତ ପ୍ରାଣ ଅଭିବ୍ୟକ୍ତି,
ଜଗତ ରଚନାପାଇଁ ନିଯୁକ୍ତ ଯେ ଶକ୍ତି ।
ଘନୀଭୂତ ହୋଇ ବାହ୍ୟ ବିଷୟ ସମସ୍ତ
ଅନ୍ତର ଇନ୍ଦ୍ରିୟରୂପେ ହେଲା ପରିଣତ ।
ଶକ୍ତିର ସଂସ୍ପର୍ଶ ନିବନ୍ଧନ ଚୈତନ୍ୟର
ନେତ୍ରରେ ପତିତ ହୁଏ ଅବସ୍ଥା ଅନ୍ତର ।
ତାହା ନାମ ଶବ୍ଦ ସ୍ପର୍ଶ ବିଜ୍ଞାନ ସମସ୍ତ,
ଗ୍ରାହକ ଇନ୍ଦ୍ରିୟ କର୍ମ ନିଯୁକ୍ତ ଯାବନ୍ତ ।
ଗୋଟିଏ ଜ୍ଞାନରୁ ଜାତ ବିଶେଷ ବିଜ୍ଞାନ,
ତାହା ଜ୍ଞାନ ସଂସର୍ଗର ଫଳ ବୋଲି ଜାଣ ।
ଏଥିକୁ ଜାଣିବ ଏକମାତ୍ର ଶକ୍ତି ସତ,
ବିଷୟଇନ୍ଦ୍ରିୟାକାରେ ହେଲା ପରିଣତ ।
ଏହି ଭାବ କର ମନ ମଧ୍ୟରେ ବିଚାର,
ଶଙ୍କରାଚାର୍ଯ୍ୟଙ୍କ ବାକ୍ୟ ସଙ୍ଗତି ସ୍ୱୀକାର,
ଏଥିକୁ ଶକ୍ତିକୁ ଏକମାତ୍ର କର ଜ୍ଞାନ,
ବାହ୍ୟ ଆନ୍ତରିକ ଦୁଇ ବସ୍ତୁ ଉପାଦାନ ।
ବୃହଦାରଣ୍ୟକ ନାମ ଉପନିଷଦରେ
ଏ କଥା ଉଲ୍ଲେଖ ଅଛି ବିଶେଷଭାବରେ ।
ବେଦ ସ୍ମୃତିଶାସ୍ତ୍ର ମଧ୍ୟେ ସୁଦ୍ଧା ସ୍ଥାନେ ସ୍ଥାନେ
ଏ ତତ୍ତ୍ୱ ଉଲ୍ଲେଖ ଅଛି ବିବିଧ ବିଧାନେ ।
ସ୍ମୃତିଶାସ୍ତ୍ରମତେ ଏହିରୂପ ଅଛି ଉକ୍ତ,
ବିଷୟ ମାତ୍ରକେ ତିନି ଭାଗରେ ବିଭକ୍ତ,
ଆଧିଦୈବ ଆଧିଭୌତ ଆଧ୍ୟାତ୍ମିକ ତିନି,
ସ୍ମୃତିଶାସ୍ତ୍ର ମଧ୍ୟେ ଏହି ତିନିଭାଗ ଚିହ୍ନି ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ବିଦ୍ୟୁ ପ୍ରଭୃତି ପଦାର୍ଥ,
ଅଟନ୍ତି ଇନ୍ଦ୍ରିୟଗଣ ସହାୟ ଯଥାର୍ଥ ।
ଥାନ୍ତି ଇନ୍ଦ୍ରିୟଙ୍କ ଅନୁଗ୍ରାହକଭାବରେ,
ଏମାନେ କଥିତ ଆଧିଦୈବିକ ନାମରେ ।

ଚକ୍ଷୁ କର୍ଣ୍ଣ ଘ୍ରାଣ ବୁଦ୍ଧି ପ୍ରାଣ ଦେହସ୍ଥିତ
ଆଧ୍ୟାତ୍ମିକ ନାମେ ହୋଇଥା'ନ୍ତି ଅଭିହିତ ।
ଅଧିକାର ଆଶ୍ରୟରେ ଥା'ନ୍ତି ଯେ ଆତ୍ମାକୁ,
ଆଧ୍ୟାତ୍ମିକ ବସ୍ତୁ ବୋଲି ବୋଲିବ ତାହାଙ୍କୁ ।
ପୁଣି ଦେହ ସ୍ପର୍ଶ ଆଦି ବିଷୟ ସକଳ
ଏମାନେ ଅଟନ୍ତି ଆଧିଭୌତିକ କେବଳ ।
ବିଷୟ ବା ଜ୍ଞେୟ ଦେହ ଅବସ୍ଥା ଭେଦରେ
ଅବସ୍ଥିତ ରହିଛନ୍ତି ବିବିଧ ନାମରେ ।
ଶ୍ରୁତିଶାସ୍ତ୍ର ମତ ଏହିରୂପ ବୋଲି ଜାଣ,
ଏ ଉତ୍ତରେ ବୋଲୁଁ ଶୁଣ ଅନ୍ୟ କଥାମାନ ।
ଚେତନ ବା ଅଚେତନ ବିଷୟୀ ବିଷୟ,
ଜ୍ଞାତା ଜ୍ଞେୟ ଭିନ୍ନ ଭିନ୍ନ ଉଭୟ ଉଭୟ ।
ଜଡ଼ ବା ବିଷୟ ଜ୍ଞେୟ ଅବସ୍ଥା ଭେଦରେ
ଅଭିହିତ ହୋଇଥାନ୍ତି ବିବିଧ ନାମରେ ।
ଏକମାତ୍ର ବିଶ୍ୱବ୍ୟାପ୍ୟ ଅବିଚ୍ଛିନ୍ନ ଶକ୍ତି,
ଅବାନ୍ତର ଭେଦେ ତିନି ରୂପ ଅଭିବ୍ୟକ୍ତି ।
ଶ୍ରୁତିଶାସ୍ତ୍ରୁ ଆମ୍ଭେମାନେ ଜାଣୁଛୁ ଏରୂପ,
ପଦାର୍ଥବିଭାଗମାନ ହୟ ଏହିରୂପ ।
ବୃହଦାରଣ୍ୟକେ ଅଛି ଯେରୂପ ବର୍ଣ୍ଣନା,
ବର୍ତ୍ତମାନ କରିବୁଁ ଯେ ତାହା ଆଲୋଚନା ।
ବୋଲିବୁଁ ସମ୍ପ୍ରତି—ତାହା ଶ୍ରୀ ଶଙ୍କରାଚାର୍ଯ୍ୟ
ବୃହଦାରଣ୍ୟକ ଭାଷ୍ୟ କରିଛନ୍ତି ଧାର୍ଯ୍ୟ,
ସେଥିର ତାତ୍ପର୍ଯ୍ୟ ଯେବେ କରିବୁଁ ନିର୍ଣ୍ଣୟ,
ପାରିବ ବିଶେଷେ ଜାଣି ସକଳ ବିଷୟ ।
ଶ୍ରୁତିରେ ବିଭାଗନିର୍ଣ୍ଣୟ ଯେରୂପ କହିତ,
ତାହା ମଧ୍ୟ ଏଥୁଁ ହୋଇପାରିବ ବିଦିତ ।
ଅମୂର୍ତ୍ତ ଓ ମୂର୍ତ୍ତ ବ୍ରହ୍ମଙ୍କର ଦୁଇ ରୂପ,
ପ୍ରକାଶିତ ହୋଇ ରହିଛନ୍ତି ଏହିରୂପ ।
ବ୍ରହ୍ମଙ୍କ ଅମୂର୍ତ୍ତ ରୂପ ଆକାଶର ବାୟୁ,
ଅବିଭାଜ୍ୟ ବିଶ୍ୱବ୍ୟାପୀ ଅଟନ୍ତି ଯେ ଆଉ ।

ସେ ଅମୂର୍ତ୍ତ ରୂପ ସାରଅଂଶ ସୂର୍ଯ୍ୟ ଜ୍ୟୋତି,
ବିଶେଷରେ ଏ ପ୍ରସଙ୍ଗ ବୋଲିଛନ୍ତି ଶ୍ରୁତି ।
ଅଗ୍ନି, ବିଦ୍ୟୁତ୍ ଦିଗ ଆଧିଦୈବିକ ପଦାର୍ଥ,
ବ୍ରହ୍ମଙ୍କ ଅମୂର୍ତ୍ତ ରୂପ ଜାଣିବ ଯଥାର୍ଥ ।
ବ୍ରହ୍ମଙ୍କର ମୂର୍ତ୍ତ ରୂପ ପୃଥ୍ୱୀ ତେଜ ଜଳ
ଇନ୍ଦ୍ରିୟର ଗ୍ରାହ୍ୟ ଏହି ପଦାର୍ଥ ସକଳ ।
ଏମାନେ ଲୋହିତ କୃଷ୍ଣ ଶୁକ୍ଳବର୍ଣ୍ଣଧାରୀ *
ଭିନ୍ନ ଗୁଣ ମଧ୍ୟ ଅଛି କାହାରି କାହାରି ।
ମାର୍ତ୍ତଣ୍ଡମଣ୍ଡଳ ସୂର୍ଯ୍ୟ ଜ୍ୟୋତିର ଆଧାର
ବ୍ରହ୍ମଙ୍କ ସାରାଂଶ ରୂପ ଏହାଙ୍କୁ ବିଚାର ।
ଦେହସ୍ଥିତ ପ୍ରାଣବାୟୁ, ହୃଦୟ, ଆକାଶ,
ବ୍ରହ୍ମଙ୍କର ଆଧ୍ୟାତ୍ମିକ ଅମୂର୍ତ୍ତ ପ୍ରକାଶ ।
ନୟନ ଇନ୍ଦ୍ରିୟ ଆଧ୍ୟାତ୍ମିକରେ ପ୍ରକାଶ,
ବ୍ରହ୍ମଙ୍କ ଅମୂର୍ତ୍ତ ରୂପ ଅଟଇ ସାରାଂଶ ।
ନୟନ ଅଟଇ ଯେଣୁ ଇନ୍ଦ୍ରିୟ ପ୍ରଧାନ,
ଅନ୍ୟାନ୍ୟ ଇନ୍ଦ୍ରିୟ କଥା ତ୍ୟଜ୍ୟ ତହିଁ ଜାଣ ।
ନୟନ ଇନ୍ଦ୍ରିୟ କଥା ବୋଇଲେ କେବଳ,
ଏଥିରୁ ବୁଝିବ ଅନ୍ୟ ଇନ୍ଦ୍ରିୟ ସକଳ ।
ଆଧ୍ୟାତ୍ମିକ ମୂର୍ତ୍ତ ରୂପ ପୃଥ୍ୱୀ, ତେଜ, ଜଳ;
ଶରୀର ନିର୍ମାଣ ହେତୁ ଏ ସବୁ କେବଳ ।
ଏ ତିନି ପଦାର୍ଥ ଜାଣ ହୋଇ ଘନୀଭୂତ,
କରିଥାନ୍ତି ଦେହ ଅବୟବକୁ ପ୍ରସ୍ତୁତ ।
ଚକ୍ଷୁ ଇନ୍ଦ୍ରିୟ ଯେ ଅଟେ ସେଥିର ପ୍ରଧାନ,
ଇନ୍ଦ୍ରିୟ ସାରାଂଶ ବୋଲି ଶ୍ରୁତିରେ ପ୍ରମାଣ ।
ଆଧିଦୈବିକର ସ୍ଥୂଳ ମିଳିତ ସାରାଂଶ,
ଅଭିବ୍ୟକ୍ତ ଯଥା ସୂର୍ଯ୍ୟମଣ୍ଡଳ ପ୍ରକାଶ ।
ପ୍ରତି ସ୍ଥୂଳ ପଦାର୍ଥ ଯେ ଥା'ନ୍ତି ଭାବ ଘେନି,
ଯେମନ୍ତ କାରଣାତ୍ମକ କାର୍ଯ୍ୟାତ୍ମକ ବେନି ।
କାରଣାତ୍ମକ ଅଂଶଟି ଅମୂର୍ତ୍ତ ଅଦୃଶ୍ୟ,
କାର୍ଯ୍ୟାତ୍ମକ ଅଂଶଟି ଯେ ମୂର୍ତ୍ତ ପୁଣି ଦୃଶ୍ୟ ।

* ତେଜ—ଲୋହିତ ।

ଆଧାର ବ୍ୟତୀତ କେବେ ଶକ୍ତିର କଳ୍ପନା,
କରିବାକୁ ଅକ୍ଷମ ଯେ ଏହା ଅଛି ଜଣା ।
ଶକ୍ତି କ୍ରିୟା କରେ ନାହିଁ ଆଧାର ବ୍ୟତୀତ,
ପୃଥକ ଭାବରେ କରେ ଏଥିରୁ ପ୍ରତୀତ ।
ଆଧାର ଗୋଟିକୁ ଜାଣ କାର୍ଯ୍ୟାତ୍ମକ ଅଂଶ,
ସତ୍ୟକୁ କାରଣାତ୍ମକ ଜାଣିବ ଅବଶ୍ୟ ।
ଅମୂର୍ତ୍ତି ସୂକ୍ଷ୍ମରୁ ଜାଣ ପଦାର୍ଥ ସମସ୍ତ,
ମୂର୍ତ୍ତି ସ୍ଥୂଳାକାରେ ହୋଇଅଛି ପରିଣତ ।
ଶକ୍ତିରୂପେ ଥିଲା ଯାହା ଅମୂର୍ତ୍ତାବସ୍ଥାରେ,
କ୍ରମେ ଘନୀଭୂତ ଶକ୍ତ୍ୟାତ୍ମକ ଜଡ଼ାକାରେ ।
ଆପଣେ ଯେ ଶକ୍ତି ପୁଣି ଶକ୍ତିର ଆଧାର,
ଏକ ସଙ୍ଗେ ଘନୀଭୂତ ହୁଏ ଏ ପ୍ରକାର ।
ଆକାଶୀୟ ବାୟବୀୟ ଅବସ୍ଥା ଯେ ଜାଣ,
ଶକ୍ତିମାତ୍ର ରୂପେ କରି ଥାଏ ଅବସ୍ଥାନ ।
ସେହି ଶକ୍ତି ଘନୀଭୂତ ହେବା ସମୟରେ,
ତେଜରୂପେ ପରିବ୍ୟାପ୍ତ ଦିଗଦିଗନ୍ତରେ ।
ପୁଣି ସେହି ତେଜ ଶକ୍ତି ହୋଇ ଘନୀଭୂତ,
ଜଳୀୟ ଭାବକୁ କରେ ଜଡ଼ରେ ପ୍ରସ୍ତୁତ ।
ପାର୍ଥିବ କଠିନ ଭାବ ଏଥି ଅନନ୍ତରେ,
ଦୃଷ୍ଟ ହୁଏ—ଘନୀଭୂତ ଜଡ଼ ସ୍ୱଭାବରେ ।
ତେଜ, ଜଳ, ପୃଥିବୀ ଯେ ତ୍ରିବିଧସ୍ୱରୂପ,
ମହାଶକ୍ତିର ଯେ ଏହା ଅଟେ ମୂର୍ତ୍ତିରୂପ ।
ଆକାଶ ଓ ବାୟୁ ଯେଉଁ ଦ୍ୱିବିଧ ସ୍ୱଭାବ,
ଅଦୃଶ୍ୟ ଅମୂର୍ତ୍ତି ରୂପ ଏହାଙ୍କର ଭାବ ।
ଏଥୁଁ ଜାଣ ଦୃଶ୍ୟ ସ୍ଥୂଳ ପଦାର୍ଥ ମାନଙ୍କ,
କାରଣ ଆତ୍ମକ ପୁଣି ଅଟେ କାର୍ଯ୍ୟାତ୍ମକ ।
ଅଦୃଶ୍ୟ ଅମୂର୍ତ୍ତି ସୂକ୍ଷ୍ମରୂପ ଯେତେ ଜାଣ,
କେବଳ କାରଣାତ୍ମକ କର ଅନୁମାନ ।
ତେବେ ଜଣାପାଏ ଆଧିଦୈବିକ ପଦାର୍ଥ,
ସ୍ଥୂଳ, ଚନ୍ଦ୍ର, ସୂର୍ଯ୍ୟ, ବିଦ୍ୟୁତ୍, ଅଗ୍ନି ହିଁ ଯଥାର୍ଥ,
କାରଣ ଆତ୍ମକ ଅଂଶ ତେଜ ଆଲୋକରେ,
ବିକୀର୍ଣ୍ଣ ହୁଅନ୍ତି ଏହା ଦେଖୁଁ ପ୍ରତ୍ୟକ୍ଷରେ ।

କାର୍ଯ୍ୟାତ୍ମକ ଅଂଶ ସ୍ଥୂଳାକାରେ ପରିଣତ,
ପ୍ରତ୍ୟକ୍ଷ ଆସଇ ଏହି ପଦାର୍ଥ ସମସ୍ତ ।
ଆଧ୍ୟାତ୍ମିକ ଦେହେ ଯେତେ କାରଣାତ୍ମକାଂଶ,
ନେତ୍ରାଦି ଇନ୍ଦ୍ରିୟ ଶକ୍ତିସ୍ୱରୂପେ ପ୍ରକାଶ ।
କାର୍ଯ୍ୟାତ୍ମକ ଅଂଶ ଦେହେ ସ୍ଥୂଳ ଅବୟବେ,
ପ୍ରକାଶିତ ଅଛି ଏହା ଦେଖୁଛ ତ ସର୍ବେ ।
ସୂର୍ଯ୍ୟ ଚନ୍ଦ୍ର ଯାହା ଆଧିଦୈବିକ ରୂପରେ,
ଦେଖୁଛୁଁ କାରଣାତ୍ମକ ଅଂଶ ସ୍ୱରୂପରେ,
ସେହି ଆଧ୍ୟାତ୍ମିକ ଅଂଶ ଦେହର ଇନ୍ଦ୍ରିୟ,
କାରଣ ଆତ୍ମକ ଅଂଶରୂପେ ଦର୍ଶନୀୟ ।
ଏଥିକୁ ଶକ୍ତି ହିଁ ଶକ୍ତି ଉପରେ ସତତ,
କ୍ରିୟା ପୁଣି ପ୍ରତିକ୍ରିୟା କରଣେ ସମର୍ଥ,
ଏଥିପାଇଁ ପ୍ରାଣିଗଣ ଜୀବିତ କାଳରେ,
ଚନ୍ଦ୍ର ସୂର୍ଯ୍ୟ ସହାୟ ଯେ ଇନ୍ଦ୍ରିୟବର୍ଗରେ ।
ଏହା ମଧ୍ୟ ଏ ସ୍ଥଳରେ କର ବିବେଚନା,
କାର୍ଯ୍ୟାତ୍ମକ ଅଂଶ ଯାହା କଲୁଁ ଟି କଳ୍ପନା,
ତାହା ମଧ୍ୟ ଶକ୍ତିରୂପାନ୍ତର ବୋଲି ଜାଣ,
ଦେଖିବାରେ ଆସେ ଏଥି ପ୍ରତ୍ୟକ୍ଷ ପ୍ରମାଣ ।
ଇନ୍ଦ୍ରିୟ ଯୋଗରେ ଯାହା ହୁଏ ଅନୁମିତ,
ସେ ସବୁ ପଦାର୍ଥ ଜଡ଼ ନାମେ ପରିଚିତ ।
ଏଥିକୁ ଶଙ୍କରାଚାର୍ଯ୍ୟ କରନ୍ତି ପ୍ରମାଣ,
ଇନ୍ଦ୍ରିୟ ସକଳ ସ୍ଥୂଳ ବିଷୟ ସମାନ ।
ପ୍ରକାଶ୍ୟ ଅଥବା ଗ୍ରାହ୍ୟ ସକଳ ବିଷୟ,
ଗ୍ରାହକ ବା ପ୍ରକାଶକ ଅଟନ୍ତି ଇନ୍ଦ୍ରିୟ ।
ପ୍ରଦୀପ ଯେମନ୍ତ ରୂପ ମାନଙ୍କ ଆଲୋକ,
ହେଲେହେଁ—ଅଟନ୍ତି ସର୍ବରୂପ ପ୍ରକାଶକ,
ଜାଣିବ ତେସନେ ଶବ୍ଦ ସ୍ପର୍ଶାଦି ବିଷୟ,
ହୁଅନ୍ତି ସଂସ୍ଥାନ ହେତୁ ଇନ୍ଦ୍ରିୟ ସହାୟ ।
ଏକ ବସ୍ତୁ ଦୁଇ ରୂପ ଅବସ୍ଥା ଧାରଣ,
ସ୍ଥାନବିଶେଷରେ ସ୍ଥିତି ଏଥିର କାରଣ ।
ଅତଏବ ବୁଝ ତୁମ୍ଭେ ଏଥିକୁ ସମ୍ପ୍ରତି,
ଏ ବିଶ୍ୱବ୍ୟାପିନୀ ଏକ ମାତ୍ର ବ୍ରହ୍ମଶକ୍ତି ।

ଆଧିଭୌତିକ, ଆଧିଦୈବିକ, ଆଧ୍ୟାତ୍ମିକ,
ବିଭକ୍ତ ଯେ ତିନଭାଗେ କଥା ପ୍ରାମାଣିକ ।"
ମହର୍ଷି ଅରୁଣି ପୁତ୍ରେ ଚାହିଁ ପୁନବାର,
ବୋଇଲେ, "ରେ ପୁତ୍ର, ଶୁଣ ତତ୍ତ୍ୱ ସମାଚାର ।
ଏ ଯେ ଅନ୍ତଃକରଣର ସଂସର୍ଗବଶରେ,
"ଜୀବ" ସଂଜ୍ଞା ବ୍ୟବହାର ବା ଦେଖୁଁ ପ୍ରତ୍ୟକ୍ଷରେ
ଯେତେଦିନ ଥାଏ ଅନ୍ତଃକରଣ ପ୍ରସ୍ତୁତ,
ଜାଗ୍ରତ ବା ସ୍ୱପ୍ନାବସ୍ଥା ହୁଏ ଅନୁଭୂତ ।
ଅନ୍ତଃକରଣର ଶକ୍ତି ଆତ୍ମାରେ ବିଲୀନ,
ହେଲେ, ଜୀବ ହୋଇଯାଏ ସୁଷୁପ୍ତି ଅଧୀନ ।
ସୁଷୁପ୍ତି ଅବସ୍ଥା ବ୍ରହ୍ମ ପ୍ରାପ୍ତି ଅବସ୍ଥାରେ,
ସହିତ ଏକତା ଅଛି, ଦେଖୁଛୁଁ ବେଦରେ ।
ହେବା ଯୋଗୁଁ ଏହି ଅନ୍ତଃକରଣ ସଂସର୍ଗ,
ହୁଏ ବ୍ରହ୍ମ ଚୈତନ୍ୟର ଜୀବତ୍ୱର ଯୋଗ ।
ଆତ୍ମା ଗୋଟି ଏହି ଅନ୍ତଃକରଣ ଯୋଗରେ,
ଦର୍ଶନ ଶ୍ରବଣ ଚିନ୍ତା କାର୍ଯ୍ୟମାନ କରେ ।
ଯେ କାଳରେ ହୁଏ ଅନ୍ତଃକରଣ ବିଲୀନ
ହୋଇଯାଏ ଜୀବ ଗୋଟି ସୁଷୁପ୍ତି ଅଧୀନ ।
ସେ କାଳରେ ହୋଇଥାଏ ଜୀବ ବ୍ରହ୍ମ ପ୍ରାପ୍ତ,
ଏହି କଥା ସତ୍ୟ ବୋଲି ଜାଣିବ ନିତାନ୍ତ ।
ଜୀବ ନିତ୍ୟ ସମ୍ପାଦିତ ସୁଷୁପ୍ତି ଅବସ୍ଥା,
ବ୍ରହ୍ମ ବିଶ୍ୱମୂଳ ଏଥୁଁ ପାଇବ ବ୍ୟବସ୍ଥା ।
ଆରେ ପୁତ୍ର, ଏହି କଥା ଦେଖ ଆସିବାରେ,
ଦର୍ପଣେ ପୁରୁଷ ଛାୟା ପଡ଼ିବା ଉପରେ,
ଦର୍ପଣଟି ଯେନ ଯେବେ ଯିବ ସ୍ଥାନାନ୍ତରେ,
ନିଭିଯାଏ ପ୍ରତିବିମ୍ବ ଦେଖ ପ୍ରତ୍ୟକ୍ଷରେ ।
ପୁରୁଷକୁ ପୁନ ପ୍ରାପ୍ତ ହେଲା ପ୍ରତିବିମ୍ବ,
ସମ୍ଭବ ଏ କଥା ବୋଲି ଯେମନ୍ତ ବୋଲିଯିବ ।
ତେସନକ ହେଲେ ଅନ୍ତଃକରଣ ବିନଷ୍ଟ,
ଚୈତନ୍ୟ ଯେ ଜୀବ ସଂଜ୍ଞା ତେଜଇ ସୁସ୍ପଷ୍ଟ ।
ଆତ୍ମସ୍ୱରୂପରେ ତେବେ କରେ ଅବସ୍ଥାନ,
ବୋଇଲେ ଦୃଷ୍ଟାନ୍ତ ଦେଇ ଏଥିର ପ୍ରମାଣ ।

ନିଦ୍ରାରେ ଯେକଲେ ଜୀବ ସ୍ୱପ୍ନ ଦରଶନ,
କରେ - ଜାଗରୁକ ଥାଏ ଏ ଅନ୍ତଃକରଣ ।
ତେବେ ତ ଜୀବରେ ସବୁ କଥା ଥାଏ ଜାଣ,
ସୁଖ ଦୁଃଖାଦିର ଅନୁଭୂତି ବର୍ତ୍ତମାନ ।
ସୁଖ ଦୁଃଖ ଯାହା ଭୋଗ କରିଥାଏ ଲୋକ,
ଆତ୍ମକୃତ କର୍ମଫଳ ସଂସ୍କାର ମାତ୍ରକ ।
ଜୀବ ସଙ୍ଗେ ଯୁକ୍ତ ଥାଏ ସେହି ଅବସ୍ଥାରେ,
ଅବିଦ୍ୟା ସହିତ କାର୍ଯ୍ୟ ସମ୍ବନ୍ଧ ଆକାରେ ।
ଶବ୍ଦ, ସ୍ପର୍ଶ, ସୁଖ, ଦୁଃଖ, ବିବିଧ ବାସନା,
ଅନୁଭୂତ ହୁଏ ଏହି କଥା ଅଛି ଜଣା ।
ଏ ସ୍ୱପ୍ନାବସ୍ଥାକୁ ବ୍ରହ୍ମସ୍ୱରୂପର ପ୍ରାପ୍ତି,
ଅବସ୍ଥା ଯେ ବୋଲିବାର ଅଟେ ମହାଭ୍ରାନ୍ତି ।
ଯେଣୁ କି ସ୍ୱପ୍ନରେ ଅନ୍ତଃକରଣର ବୃତ୍ତି,
ଜାଗରୁକ ରହିଥାଏ ବାସନା ପ୍ରଭୃତି,
ସେହି ଯେ ବାସନାତ୍ମକ ବୃତ୍ତି ସମୁଦୟ,
ଜାଗ୍ରତ ଅବସ୍ଥା ବୃତ୍ତି ତୁଲ୍ୟ ପରିଚୟ ।
ସ୍ୱପ୍ନ ବା ଜାଗ୍ରତାବସ୍ଥା ଉଭୟ କାଳରେ,
ଅନ୍ତଃକରଣର ବୃତ୍ତି ଗୁଢ଼ କାର୍ଯ୍ୟ କରେ ।
ପ୍ରଗାଢ଼ ସୁଷୁପ୍ତି କାଳେ ସଂସ୍କାର ବିଲୀନ,
ହେବା ଯୋଗୁଁ ନୁହେ ସୁଖ ଦୁଃଖର ଅଧୀନ ।
ଜୀବ ସେକାଳରେ ଆତ୍ମସ୍ୱରୂପେ ଏକତା,
ପ୍ରାପ୍ତ ହୋଇଥାଏ ରଖ ମନରେ ଏ କଥା ।
ସେକାଳରେ ମନୋବୃତ୍ତି ପ୍ରଭୃତି ସହିତ,
ସଂସର୍ଗଜନିତ ଜୀବାବସ୍ଥା ତିରୋହିତ ।
ଜାଗ୍ରତ ଅବସ୍ଥା କାଳେ ବିଷୟ ଇନ୍ଦ୍ରିୟ,
ସଂଘର୍ଷେ ବିବିଧ ଶୁଭାଶୁଭ କର୍ମଚୟ ।
ସମ୍ପର୍କରେ — ସୁଖ ଦୁଃଖ ବିବିଧ ବିଷୟ —
ବାସନା ଜଡ଼ିତ ଥାଏ ଜାଣିବ ନିଶ୍ଚୟ ।
ନାନାବିଧ ବାହ୍ୟଗତ ବିଷୟ ବ୍ୟାପାରେ,
ନିଯୁକ୍ତ ସକାଶେ ଥାଏ ପରିଶ୍ରାନ୍ତାକାରେ ।
ସେକାଳେ ସେମାନେ ନିଜ ନିଜ ବ୍ୟାପାରରୁ,
ନିବୃତ୍ତ ହୁଅନ୍ତି - ଏହା ନ ପୁଛ ମନରୁ ।

ସେକାଳରେ ବାକ୍ୟ ନେତ୍ର ଇନ୍ଦ୍ରିୟ ସକଳେ;
ବିଲୀନ ହୁଅନ୍ତି ଅନ୍ତଃକରଣେ ପ୍ରବଳେ ।
ଏହା ମଧ୍ୟ ଦେଖିଁ ଅନ୍ତଃକରଣ—ବିବିଧ
ବୃତ୍ତି—ପରିଶ୍ରାନ୍ତ ହୋଇଥାନ୍ତି ତଥାବିଧ ।
ହୁଅନ୍ତି ଏକତ୍ରେ ସର୍ବେ ବିଲୀନ ପ୍ରାଣରେ,
ଏ ସର୍ବ ବୃତ୍ତାନ୍ତ ତୁମ୍ଭେ ଦେଖ ପ୍ରତ୍ୟେକରେ ।
ଲଭିଲେ ଏରୂପେ ସେହି ସର୍ବ ଉପରତି,
ଜାଗରୂକ ଏକମାତ୍ର ଥାଏ ପ୍ରାଣ ଶକ୍ତି ।
ଆତ୍ମାର ବିଜ୍ଞାନ ସର୍ବ ହୁଏ ତିରୋହିତ,
ଜୀବ ମାତ୍ର ଆତ୍ମାରୂପେ ଥାଏ ଅବସ୍ଥିତ ।
ଯେମନ୍ତ ବ୍ୟାଧର ହସ୍ତେ ଆବଦ୍ଧ ସୂତ୍ରରେ,
ପକ୍ଷୀଟିଏ ଛଟପଟ ପ୍ରାଣବିକଳରେ ।
ଲଭିବା ନିମନ୍ତେ ସେହି ବନ୍ଧନୁଁ ମୋଚନ,
ଉଡ଼ି ବୁଲେ ଇତସ୍ତତଃ କରି ପ୍ରାଣପଣ ।
ଉଡ଼ି ଉଡ଼ି ଯେକାଳରେ ହୁଏ ପରିଶ୍ରାନ୍ତ,
ବନ୍ଧନରୁ ମୁକ୍ତିଲଭ ନ କରି ନିତାନ୍ତ
ପରିଶ୍ରାନ୍ତ ହୋଇ ପୁଣି ବିଶ୍ରାମ ନିମନ୍ତେ,
ଫେରି ଆସି ସ୍ଥିର ଭାବେ ବସେ ବ୍ୟାଧ ହସ୍ତେ ।
ଅନ୍ୟେ ପୁଷ୍ଟ ମନେ ପ୍ରତିବିମ୍ବିତ ସେ ପ୍ରାଣ,
ବିଷୟବାସନା ଜୀବ ସେହିପରି ଜାଣ ।
ଜାଗ୍ରତ ବା ସ୍ୱପ୍ନାବସ୍ଥା ବିବିଧ ବିଷୟେ,
ବୈଷୟିକ ସଂସ୍କାରରେ ବହୁତ ସମୟେ,
ଅବିଶ୍ରାନ୍ତ ଘୂରି ଘୂରି ହେଲେ ପରିଶ୍ରାନ୍ତ,
ମନରେ ପ୍ରକୃତ ଶାନ୍ତି ନ ଲଭି ନିତାନ୍ତ,
ନିଜର ବନ୍ଧନ ସ୍ଥାନେ ବାହୁଡ଼େ ଯତ୍ନରେ
ପ୍ରାଣଶକ୍ତିରୂପସ୍ଥାନ ବ୍ରହ୍ମ ଚୈତନ୍ୟରେ ।
ହେ ପୁତ୍ର, ସୁଷୁପ୍ତି କଥା ବୋଇଲୁଁଟି ପୁଣ,
ଜୀବ ନିତ୍ୟ ଅନୁଭୂତ କ୍ଷୁଧା କଥା ଶୁଣ ।
ସେ କଥା ଶୁଣିଲେ ଜାତ ହେବ ତୁମ୍ଭ ଜ୍ଞାନ,
ବ୍ରହ୍ମ ସେ ବିଶ୍ୱର ମୂଳ ପାଇବ ପ୍ରମାଣ ।
ଆହେ ପୁତ୍ର, କ୍ଷୁଧା ସମୟରେ ଜୀବଗଣ
ଯେଉଁ ସର୍ବ ଖାଦ୍ୟଦ୍ରବ୍ୟ କରନ୍ତି ଭକ୍ଷଣ,
ପୀତ ଜଳେ ରସାଦିରେ ହୋଇ ଦ୍ରବୀଭୂତ
ଶରୀର ପୋଷଣପାଇଁ ହୁଏ ତା ପ୍ରସ୍ତୁତ ।
ଚଳାଇ ନିଅନ୍ତି ସେନାପତି ସୈନ୍ୟଗଣେ,
ଅବା ଗୋପାଳକ ଯଥା ଗାଭୀଗଣେ ବନେ,
ଜଳ ଯୋଗେ ଅନ୍ନ ହୁଏ ତେସନେ ଚାଳିତ,
ରସାଦିସ୍ୱରୂପେ ପରିଣତ ଓ ମିଶ୍ରିତ !
ବଟ କଣିକାରୁ ଯଥା ଅଙ୍କୁର ଉତ୍ପତ୍ତି,
ଅନ୍ନରସୁଁ ଦେହଟିର ସେହିରୂପ ଗତି ।
ଭୁକ୍ତ ଅନ୍ନ ଜଳଯୋଗେ ହେଲେ ଦ୍ରବୀଭୂତ,
ଜଠରାଗ୍ନି ପାକେ ରସ କରଇ ପ୍ରସ୍ତୁତ ।
ସେହି ଅନ୍ନରସୁଁ ଜାତ ହୁଏଟି ଶୋଣିତ,
ଶୋଣିତରୁ ମାଂସ, ମାଂସୁ ମେଦ ଯେ ଉତ୍ଥିତ,
ମେଦୁଁ ଅସ୍ଥି, ତହୁଁ ମଜ୍ଜା, ତହୁଁ ଶୁକ୍ର ଜାତ,
ନାରୀଙ୍କର ହୁଏ ଆର୍ତ୍ତବରେ ପରିଣତ ।
ଏହାପରି ହୁଏ ଯେବେ ଅନ୍ନର ବିକାର,
ଆର୍ତ୍ତବ (ଶୋଣିତ) ଶୁକ୍ର ଜାତ ଏପ୍ରକାର ।
ସେ ଆର୍ତ୍ତବ ଶୁକ୍ର ଯୋଗେ ଦେହ ଯେ ଉତ୍ପନ୍ନ ।
ବିବିଧ ପ୍ରମାଣେ ହୋଇଅଛି ପ୍ରତିପନ୍ନ ।
ଆହେ ପୁତ୍ର, ଦେହ ମୂଳ ଅନ୍ନ କର ଜ୍ଞାନ,
ଅନ୍ନ ମୂଳ ଜଳ, ଜଳ ମୂଳ ତେଜ ଜାଣ ।
ତେଜ ମୂଳ ସୂକ୍ଷ୍ମ ବାୟୁ ଏ କଥା ପ୍ରକାଶ,
ସେହିପରି ବାୟୁ ମୂଳ ଅଟଇ ଆକାଶ ।
ଅକାଶର ମୂଳ ପରଂବ୍ରହ୍ମ ଭଗବାନ
ସର୍ବ ଜ୍ଞାନମୂଳାଧାର ସର୍ବ ଶକ୍ତିମାନ ।
ଏକମାତ୍ର ସତ୍‌ସ୍ୱରୂପ ପରବ୍ରହ୍ମ ଜାଣ,
ସେହି ସତ୍ୟ ନିତ୍ୟ ବସ୍ତୁ କର ଏହା ଜ୍ଞାନ ।
ଆଉ ସବୁ ବସ୍ତୁ ଅଟେ ମିଥ୍ୟା ବା ବିକାର,
ଏକମାତ୍ର ପରଂବ୍ରହ୍ମ ସର୍ବମୂଳାଧାର ।
ବିକାରୀ ସମସ୍ତ ବସ୍ତୁ ହୋଇ ଏକତ୍ରିତ,
ସେହି ପରଂବ୍ରହ୍ମେ ରହିଛନ୍ତି ଅବସ୍ଥିତ ।
ମୃତ୍ତିକା ବିହୀନେ ଘଟ ସତ୍ତା ଅସମ୍ଭବ,
ପରଂବ୍ରହ୍ମ ବିନା ସେହିପରି ବିଶ୍ୱ ସର୍ବ ।

ଘଟ ଭାଙ୍ଗିଗଲେ ଯେମନ୍ତେ ମିଶେ ମୃତ୍ତିକାରେ,
ପ୍ରଳୟେ ମିଶିବ ବିଶ୍ୱ ପରଂବ୍ରହ୍ମଠାରେ
ବ୍ରହ୍ମ ଯେ ବିଶ୍ୱର ମୂଳ ସେଥି କଥା ଶୁଣ,
ଦୃଷ୍ଟାନ୍ତ—ପ୍ରାଣିଙ୍କ ତୃଷ୍ଣା କଥା ଦେଖ ପୁଣ ।
ଜୀବ ନିତ୍ୟ ଅନୁଭୂତ ତୃଷ୍ଣା ଦୃଷ୍ଟାନ୍ତରେ
ପରବ୍ରହ୍ମ ବିଶ୍ୱ ମୂଳ ବୁଝିବ ମନରେ ।
ହେ ପୁତ୍ର, ତୁମ୍ଭେ ତ ଏହା ବିଶେଷରେ ଜାଣ,
ତୃଷ୍ଣା ବେଳେ ଜୀବେ କରିଥାନ୍ତି ଜଳପାନ ।
ସେହି ଜଳ ଭୁକ୍ତାନ୍ନକୁ ରସାଦି ଆକାରେ
ପରିଣତ କରିଥାଏ, ଆସେ ଦେଖିବାରେ ।
ସେହି ରସ ତାପ ଯୋଗେ ସମତାକୁ ପାଇ
ପ୍ରାଣୀ ଅଙ୍ଗ ମଧ୍ୟେ ରହିଥାଏ ମିଶିଯାଇ ।
ଏହିରୂପେ ଦେହସ୍ଥିତ ତାପଟି ସତତ
ରସକୁ ଶୋଣିତରୂପେ କରେ ପରିଣତ ।
ହେ ପୁତ୍ର, ବୁଝୁଛ ଶୁଣି ଦୃଷ୍ଟାନ୍ତ ସକଳ,
ଦେହମଧ୍ୟଗତ ରସମୂଳକ ଅନଳ ।
ଦେହ ମୂଳ ଜଳ, ଏଥି ପାଉଛ ପ୍ରମାଣ,
ଅନଳ ଶରୀର ମୂଳ ଏହା ମଧ୍ୟ ଜାଣ ।
ପୂର୍ବେ ତ ଶୁଣିଛ ତେଜ ମୂଳ ଅଟେ ବାୟୁ,
ବାୟୁ ମୂଳ ଆକାଶ ଯେ ଶୁଣିଛ ତ ଆଉ ।
ଅଟନ୍ତି ଆକାଶ ମୂଳ ସଦ୍‌ବ୍ରହ୍ମ ପଦାର୍ଥ,
ସର୍ବମୂଳାଧାର ବ୍ରହ୍ମ ଜାଣିବ ଯଥାର୍ଥ ।
ଅନ୍ନ ଜଳ ଆଦି କରି ସମସ୍ତ ବିକାର,
ସମସ୍ତହିଁ ମିଥ୍ୟା—ମିଥ୍ୟାମୟ ଏ ସଂସାର ।
ସଚ୍ଚିଦଆନନ୍ଦମୟ ପରଂବ୍ରହ୍ମ ଜାଣ,
ସମସ୍ତଙ୍କ ମୂଳ ବ୍ରହ୍ମ ପାଇଲ ପ୍ରମାଣ ।
ହେ ପୁତ୍ର, ବିଚାର ଏବେ ହୋଇ ସାବଧାନ,
ଅନ୍ନ, ଜଳ, ତେଜ ତ୍ରିବୃତ୍‌କୃତ ଉପାଦାନ—
ଯୋଗରେ ମାନବ ଦେହ ହୋଇଅଛି ସୃଷ୍ଟି,
ବୁଝ ଯାହା ବୋଲୁଁ ଏବେ ରଖି ତହିଁ ଦୃଷ୍ଟି ।
ଅନ୍ନ ଆଦି ଭୁକ୍ତଦ୍ରବ୍ୟ ଯେତେ ମଦ୍ୟମାଂସ
ଦେହେ ପରିଣତ ସର୍ବ ଧାତୁ ରକ୍ତ ମାଂସ ।

ଅତି ସୂକ୍ଷ୍ମ ଅଂଶ ଯାହା ତହୁଁ ଜାତ ପ୍ରାଣ,
ମନ ପୁଣି ବାକ୍ୟ ଶକ୍ତି, ଏହି ତିନି ଜାଣ ।
ପ୍ରାଣିଗଣ ଦେହେ ଅନ୍ତରିନ୍ଦ୍ରିୟ ଆକାରେ
ଅଭିବ୍ୟକ୍ତ ଏହି ସର୍ବ ଜାଣ ଏପ୍ରକାରେ ।
ଯେକାଳରେ ହୁଏ ଦେହ ଶୀର୍ଣ୍ଣ ବିଗଳିତ,
ଯେ ରୂପରେ ହୁଏ ପ୍ରାଣ ଶକ୍ତି ଅନ୍ତର୍ହିତ ।
ବୋଲୁଅଛୁଁ ଶୁଣ ଏବେ ସେଥିର ବିଷୟ,
ଆହେ ବତ୍ସ, ଜୀବଗଣ ମୃତ୍ୟୁର ସମୟ,
ବାକ୍ୟ ଶକ୍ତି ହୁଏ ମନ ମଧ୍ୟରେ ବିଲୀନ,
ଯେଣୁ ଏହି ଶକ୍ତି ଅଟେ ମନର ଅଧୀନ ।
ସେକାଳେ ମୁମୂର୍ଷୁ ଜ୍ଞାତିଗଣ ରୁଣ୍ଡ ହୋଇ
ବୋଲନ୍ତି, "ପାରିବ ନାହିଁ ଏହି କଥା କହି ।"
ବାକ୍‌ଶକ୍ତି ଏରୂପ ହେଲେ ମନ ଅନ୍ତର୍ହିତ,
ମନ କ୍ରିୟା ମାତ୍ର ରହିଥାଏ ଜାଗରିତ ।
ମନ କ୍ରିୟାଗୁଡ଼ି ହେଲେ ବିଲୀନ ପ୍ରାଣରେ,
କରନ୍ତି ଜ୍ଞାତିଏ ଆର୍ତ୍ତନାଦ ସେ କାଳରେ ।
"ଏହାକୁ ତ ଆଉ କିଛି ଯିବ ନାହିଁ ଜଣା,
ହେଲାଣି ଏହାର ଏବେ ବିଲୁପ୍ତ ଚେତନା ।"
ପ୍ରାଣ ଶକ୍ତି କ୍ରମେ ତ୍ୟାଗ କରି ମର୍ମସ୍ଥାନ
କ୍ରମେ ହୋଇଯାଏ ତେଜ ଶକ୍ତିରେ ବିଲୀନ ।
ତେତେବେଳେ ଜ୍ଞାତିବର୍ଗ କରନ୍ତି ଚିତ୍କାର,
"ଆହା ! ଆହା ! ଏବେ ମୃତ୍ୟୁ ଘଟିଲା ଏହାର !"
ଦେହର ଉଷ୍ମତା ଶେଷେ ଥାଏ କିଞ୍ଚିତରେ,
ତାହା ମଧ୍ୟ ମିଶିଯାଏ ଆତ୍ମା ସହିତରେ ।
ସର୍ବଶକ୍ତିଯୁକ୍ତ ଦେହ ତ୍ୟାଗ କରି ଜୀବ,
ଅନ୍ୟ ଲୋକେ ଅନ୍ୟ ଦେହ ଧାରଣ କରିବ ।
ଅଜ୍ଞଜନ—ବୈଷୟିକ ବାସନା ଯାହାର
ଯାଇନାହିଁ, ବୁଝି ନାହିଁ ବ୍ରହ୍ମତତ୍ତ୍ୱ ସାର ।
ମୃତ୍ୟୁର ଉତ୍ତରେ ସେହି ଅଜ୍ଞର ଜୀବନ
ପୁନର୍ବାର ଦେହାନ୍ତର କରଇ ଗ୍ରହଣ ।
ସର୍ବ ଶକ୍ତି ଲୀନ ଯହିଁ ସେ ସଦ୍‌ବସ୍ତୁ ଅନ୍ୟ,
ଏକମାତ୍ର ଅଟନ୍ତି ସେ ସଦ୍‌ବ୍ରହ୍ମ ଚୈତନ୍ୟ ।

ବିଶ୍ୱସଂସାରଟି ବର୍ତ୍ତିଅଛି ତାଙ୍କ ପାଇଁ,
ଦ୍ରଷ୍ଟା, ଶ୍ରୋତା, ମନ୍ତା ତାଙ୍କ ବିନା ଆନ ନାହିଁ ।
ସେ ସଦ୍‌ବସ୍ତୁ ଜଗତର ନିଦାନ କାରଣ,
ସମସ୍ତ ବିଶ୍ୱକୁ କରିଅଛନ୍ତି ଧାରଣ ।
ବ୍ରହ୍ମ ସୂକ୍ଷ୍ମ ବସ୍ତୁ, ବିଶ୍ୱ ସୂକ୍ଷ୍ମ ସତାତ୍ମକ,
ସେହି ସତ୍ୟ ସେହି ଆତ୍ମା ଜୀବର ପାଳକ ।
ନିତ୍ୟ ସତ୍ୟ ବ୍ରହ୍ମ ସୂକ୍ଷ୍ମ ପରମ ଚୈତନ୍ୟ,
ଆହେ ଶ୍ୱେତକେତୁ, ତୁମ୍ଭେ ତହୁଁ ନୁହ ଅନ୍ୟ ।
ଏହି ଉପଦେଶ ଶେଷଭାବ ଶ୍ୱେତକେତୁ
ନ ବୁଝି ପାରିଲେ ଆତ୍ମଅଜ୍ଞାନତା ହେତୁ ।
ଶୁଣିଲେ ସେ ମୃତ୍ୟୁକାଳେ ଜୀବର ସକଳ,
ବାହ୍ୟଇନ୍ଦ୍ରିୟମାନ ହୋଇ ନିବୃତ ଅଚଳ,
ଇନ୍ଦ୍ରିୟର ଶକ୍ତି ହୋଇ ବୁଦ୍ଧିରେ ବିଲୀନ,
ବୁଦ୍ଧି ହୁଏ ପୁଣି ପ୍ରାଣ ଶକ୍ତିରେ ବିଲୀନ ।
ଲୁପ୍ତ ସ୍ଥିତ ପ୍ରାଣ ବୁଦ୍ଧି ଶକ୍ତି ସହିତରେ
ଆତ୍ମା ପୁରାତନ ଦେହ ଗୋଟି ତ୍ୟାଗ କରେ ।
ସୂକ୍ଷ୍ମ କର୍ମ ସଂସ୍କାର ଯେ ବୁଦ୍ଧି ପ୍ରାଣ ଶକ୍ତି,
ଲିଙ୍ଗ ଦେହ ସୁଗଠିତ ବୁଝିବ ସଂହତି ।
ସଂସ୍କାର ସକଳ ସୂକ୍ଷ୍ମ ଦେହେ ଥାଏ ଲୀନ,
ଜୀବଙ୍କୁ କରଇ ସେହି ସଂସ୍କାର ଅଧୀନ ।
ଏକ ଦେହ ତେଜି ଅନ୍ୟ ଦେହ ପୁନର୍ବାର
ଧରିଲେ ହେଁ ଥାଏ ତାହା ସହିତ ସଂସ୍କାର ।
ଇନ୍ଦ୍ରିୟର କ୍ରିୟା ଅନଭ୍ୟସ୍ତ ବିଷୟରେ
ଥାଏ ନାହିଁ, ଏହା ଦେଖାଯାଏ ପ୍ରତ୍ୟକ୍ଷରେ ।
ପୂର୍ବର ବାସନା ଅବା ପ୍ରବୃତ୍ତି ବଳରେ
ହୁଅନ୍ତି ଇନ୍ଦ୍ରିୟଗଣ ନିଯୁକ୍ତ କର୍ମରେ ।
ଦେଖ କେହି କେହି ପୂର୍ବ ସଂସ୍କାରରୁ ପୁଣ
ବିଶେଷ ବିଶେଷ କାର୍ଯ୍ୟ ହୁଅନ୍ତି ନିପୁଣ,
ସହଜରେ କେହି ଲୋକ ବିଦ୍ୟାଭ୍ୟାସ କରେ,
କେହି ଲୋକ ପାରେ ନାହିଁ ବିଶେଷ ଯତ୍ନରେ ।
ସହଜରେ କେହି କବି—ଶିଳ୍ପରେ ନିପୁଣ,
ନ ପାରନ୍ତି ଥୋକେ ଯତ୍ନ କରି ପୁଣ ପୁଣ ।

ଏପରି ଯେ ଘଟେ ପୂର୍ବ ବାସନା ବଳରେ,
ବାସନା ପ୍ରବୃତ୍ତି ଥାଏ ଜୀବ ସହିତରେ ।
ମୃତ୍ୟୁକାଳେ ଜୀବ ସଙ୍ଗେ ପୂର୍ବର ବାସନା
ଅନୁସରିଥାଏ, ଏହା ଜ୍ଞାନିଗଣେ ଜଣା ।"
ବୋଇଲେହେଁ ଏହି ସର୍ବ ଦେଖାଇଣ ହେତୁ,
ବୁଝି ନ ପାରିଲେ ଭଲରୂପେ ଶ୍ୱେତକେତୁ ।
ଅନୁରୋଧ କଲେ ପୁଣି ପିତାଙ୍କୁ ନିତାନ୍ତ
ବୁଝେଇଦେବାକୁ ଏହା ଦେଖାଇ ଦୃଷ୍ଟାନ୍ତ ।
ଏପ୍ରକାର ଶ୍ୱେତକେତୁ ଅନୁରୋଧ ଶୁଣି,
ବୋଲି ଆରମ୍ଭିଲେ ପୁଣି ମହର୍ଷି ଅରୁଣି ।
"ଆହେ ଶ୍ୱେତକେତୁ, ଜ୍ଞାନହୀନ ଜୀବଗଣ,
ଯାହାଙ୍କ ବିଷୟ ବୁଦ୍ଧି ମୋହରେ ଆଚ୍ଛନ୍ନ,
ଆତ୍ମାର ପ୍ରକୃତ ତତ୍ତ୍ୱ ଯାକୁ ନାହିଁ ଜଣା,
ନ କରେ ଯେ ବ୍ରହ୍ମତତ୍ତ୍ୱ ବିଷୟ ଭାବନା,
ବିଷୟ ବାସନା ବୁଦ୍ଧି କରିଣ ଗ୍ରହଣ
ପୁନର୍ବାର ଦେହାନ୍ତର କରନ୍ତି ଧାରଣ ।
ବୁଝାଇଦେଲେକ ଏହା ଦେଖାଇ ଦୃଷ୍ଟାନ୍ତ
ବିଶେଷଭାବରେ ବୁଝି ପାରିବ ନିତାନ୍ତ ।
ହେ ପୁତ୍ର, ବିବିଧ ବୃକ୍ଷୁ ମଧୁକରଗଣ
ନାନାରୂପ ପୁଷ୍ପରସ କରନ୍ତି ଗ୍ରହଣ,
ଆଣନ୍ତି ସଂଗ୍ରହ କରି ଯେ ରସ ସମସ୍ତ
ସେହି ସର୍ବ ମଧୁରୂପେ ହୁଏ ପରିଣତ ।
ପରିଣତ ମଧୁ ମଧ୍ୟେ ଯାଏ ନାହିଁ ଜଣା
ରସର ପାର୍ଥକ୍ୟ—ସଦ୍ଭୁଁ ହୋଇଛି ରଚନା ।
କଟୁ, ତିକ୍ତ, ମିଷ୍ଟ; ଅମ୍ଳ, ନାନା ପୁଷ୍ପରସ
ମଧୁରୂପେ ପରିଣତ ଦେଖିଛ ଅବଶ୍ୟ ।
ସୁଷୁପ୍ତି ବା ମୃତ୍ୟୁ କିମ୍ବା ପ୍ରଳୟକାଳରେ
ମିଳନ୍ତି ଯେ ଜୀବ ଦେହ ବ୍ରହ୍ମ ଚୈତନ୍ୟରେ,
ଜନ୍ମ ମୃତ୍ୟୁ ପୂର୍ବକାଳେ ସେହି ସର୍ବ ପ୍ରାଣୀ
ବ୍ରହ୍ମ ଚୈତନ୍ୟରେ ଥିଲେ ନ ପାରନ୍ତି ଜାଣି ।
ଏରୂପ ନ ବୁଝିବାର ଏହି ଯେ କାରଣ,
ବ୍ରହ୍ମଜ୍ଞାନ ଲାଭ ପୂର୍ବେ ସେହି ଜୀବଗଣ ।

ପ୍ରକୃତ ଅଦ୍ୱୈତଜ୍ଞାନ ଜନ୍ମିବା ପୂର୍ବରେ
ବିଲୀନ ଯେ ହୋଇଥାନ୍ତି ବ୍ରହ୍ମଚୈତନ୍ୟରେ ।
ସିଂହ, ବ୍ୟାଘ୍ର, ମାର୍ଜାରାଦି ହିଂସ୍ର ଜୀବଗଣ
କର୍ମଫଳେ ସେହି ଦେହ କରନ୍ତି ଗ୍ରହଣ ।
ପୂର୍ବ ସଂସ୍କାରକୁ ଯେବେ ମରଣ କାଳରେ
ପ୍ରବେଶ ଯେ କରିଥିଲେ ବ୍ରହ୍ମଚୈତନ୍ୟରେ,
ସେ ପୂର୍ବ ସଂସ୍କାର ଭାବ ଘେନି ପୁନର୍ବାର
ଉତ୍ଥିତ ହୁଅନ୍ତି ଧରି ଦେହର ଆକାର ।
ବ୍ରହ୍ମଚୈତନ୍ୟରୁ ହୋଇ ସେ ସର୍ବ ଉତ୍ଥିତ,
ଶ୍ୱାପଦ ଶରୀରାକାରେ ହୁଅନ୍ତି ଗଠିତ ।
ଜୀବ ସର୍ବ ସଦାତ୍ମକ ବ୍ରହ୍ମ ଚୈତନ୍ୟରେ
ବିଲୀନ ଯେ ହୋଇଥାନ୍ତି ମରଣକାଳରେ ।
ବ୍ରହ୍ମ ଚୈତନ୍ୟରୁ ପୁଣି ହୁଅନ୍ତି ଉତ୍ଥିତ,
ବିଶ୍ୱର କାରଣ ଏହା ଜାଣିବ ନିଶ୍ଚିତ ।
ଅତି ସୂକ୍ଷ୍ମ ସତ୍ୟ ବସ୍ତୁ ଜଗତର ମୂଳ,
ତାଙ୍କଠାରୁ ଜାତ ସର୍ବ ଜଡ଼ ପ୍ରାଣିକୁଳ ।
ଆହେ ଶ୍ୱେତକେତୁ, ବ୍ରହ୍ମ ଜଗତପାଳକ,
ସେ ବ୍ରହ୍ମ ଚୈତନ୍ୟ ତୁମ୍ଭେ ନୁହଁଟି ପୃଥକ ।
ଗଙ୍ଗାସିନ୍ଧୁ କୃଷ୍ଣା ଆଦି ନଦୀ ଯେ ରୂପରେ
ସ୍ରୋତରୂପେ ବହି ଆସି ପଡ଼ନ୍ତି ସାଗରେ ।
ପୁଣି ସେହି ନଦୀ ଜଳ ଉଠି ବାଷ୍ପାକାରେ
ଉଡ଼ନ୍ତି ଆକାଶ ମଧ୍ୟେ ହୋଇ ମେଘାକାରେ ।
ବୃଷ୍ଟିରୂପେ ପୁନର୍ବାର ପତିତ ସାଗରେ
ସେହି ଜଳ ହୋଇଥାଏ ଦେଖ ପ୍ରତ୍ୟକ୍ଷରେ ।
ନଦୀମାନେ କଲେ ସିନ୍ଧୁ ଗର୍ଭରେ ପ୍ରବେଶ,
ସେମାନଙ୍କ ନାମ ଚିହ୍ନ ଥାଏ ନାହିଁ ଲେଶ ।
ସେକାଳରେ କିଏ ଗଙ୍ଗା କିଏ ଗୋଦାବରୀ,
ଜାଣି ନ ପାରିବ ଯେତେ ଅନ୍ୱେଷଣ କରି ।
ସେହିରୂପ ବ୍ରହ୍ମ ଚୈତନ୍ୟରୁ ସର୍ବ ପ୍ରାଣୀ
ଆସିଲେ ହେଁ ନ ପାରନ୍ତି ମୂଳ ସ୍ଥାନ ଜାଣି ।
ଜଳରୁ ତରଙ୍ଗ ବୀଚି ହୋଇଣ ଉତ୍ଥିତ
ପୁନର୍ବାର ସେହି ଜଳେ ହୁଅନ୍ତି ମିଳିତ ।

ଜୀବ ମଧ୍ୟ ସଦା ତାହା କାରଣସ୍ୱରୂପ
ବ୍ରହ୍ମ ଚୈତନ୍ୟକୁ ପ୍ରାପ୍ତ ହୋଇ ଏହିରୂପ
ତଥାପି ସେ ମିଶେ ନାହିଁ ବ୍ରହ୍ମ ଚୈତନ୍ୟେ,
କର୍ମର ବାସନା ଯେଣୁ ଥାଏ ସଞ୍ଚିତରେ ।
ବ୍ରହ୍ମ ଚୈତନ୍ୟରେ ମିଶି ଉଠେ ପୁନର୍ବାର,
ବାସନାସ୍ୱରୂପେ ଧରି ବିଶେଷ ଆକାର ।
ସୂକ୍ଷ୍ମ ବ୍ରହ୍ମ ଚୈତନ୍ୟ ହିଁ ଜଗତ କାରଣ,
ସେହି ସତ୍ୟ ସେହି ଆତ୍ମା କର ନିରୂପଣ ।
ସେ ବ୍ରହ୍ମ ଚୈତନ୍ୟ ଅତି ସୂକ୍ଷ୍ମ ସଦାତ୍ମକ,
ଆହେ ପୁତ୍ର, ନୁହଁ ତୁମ୍ଭେ ସେଥିରୁ ପୃଥକ ।
କରି ଏକ ବଡ଼ ବୃକ୍ଷ ପ୍ରତି ଦୃଷ୍ଟିପାତ,
ଥରେମାତ୍ର କଲେ ତହିଁ କୁଠାର ଆଘାତ,
ବାରେକ ଆଘାତେ ବୃକ୍ଷ ଯାଏ ନାହିଁ ନାଶ,
ଆଘାତ ସ୍ଥାନରୁ ବହେ କିଞ୍ଚିତ ନିର୍ଯ୍ୟାସ ।
ଯୋଡ଼ିଯାଏ କିଛିଦିନ ଅନ୍ତେ କ୍ଷତସ୍ଥାନ,
ସମ୍ପୂର୍ଣ୍ଣରୂପରେ ରକ୍ଷା ପାଏ ବୃକ୍ଷ ପ୍ରାଣ ।
ଚେରଦ୍ୱାରା ଭୂମି ରସ କରି ଆକର୍ଷଣ
ବୃକ୍ଷଗୋଟି କରିଅଛି ଜୀବନ ଧାରଣ ।
ସେ ବୃକ୍ଷରୁ ଏକ ଶାଖା ପକାଇଲେ କାଟି,
ତେବେ ନିଶ୍ଚେ ମରି ଶୁଖିଯିବ ସେ ଶାଖାଟି ।
ମନ ପ୍ରାଣ ଯୁକ୍ତ ଇନ୍ଦ୍ରିୟରେ ପ୍ରବେଶିତ
ବ୍ରହ୍ମ ଚୈତନ୍ୟ ହିଁ ଜୀବ ନାମରେ କଥିତ ।
ଜୀବଗଣ ଯୋଗେ ଭୁକ୍ତ ଗୃହୀତ ପଦାର୍ଥ
ପରିଣତ ରସରୂପେ ଦେଖୁଛ ଯଥାର୍ଥ ।
ପ୍ରାଣୀଙ୍କ ଶରୀର ଅବା ବୃକ୍ଷାଦିର ଦେହ
ସେ ରସରେ ପୁଷ୍ଟି ଲଭେ, ନାହିଁଟି ସନ୍ଦେହ ।
ଜୀବଦେହୁଁ ଏକ ଅଙ୍ଗ ହେଲେକ ବିଚ୍ଛିନ୍ନ,
ଥାଏ ନାହିଁ ସେ ଅଙ୍ଗରେ ଆତ୍ମାଙ୍କର ଚିହ୍ନ ।
ଏଥିକୁ ସେ ଅଙ୍ଗଗୋଟି ହୁଏକ ବିନଷ୍ଟ,
ପାଉଛ ସର୍ବଦା ଏଥି ପ୍ରମାଣ ସୁସ୍ପଷ୍ଟ ।
ଏରୂପ ସମଗ୍ର ବୃକ୍ଷ ଦେହୁଁ ଚୈତନ୍ୟାଂଶ
ଛାଡ଼ିଗଲେ ବୃକ୍ଷ ଏକାବେଳକେ ବିନାଶ ।

ବୃକ୍ଷଗୋଟି ଶୁଷ୍କ ହୋଇଯାଏ ସେ କାଳରେ,
ଯେଣୁ କି ଜୀବାତ୍ମାଶକ୍ତି ନ ଥାଏ ଦେହରେ ।
ଏ ଦୃଷ୍ଟାନ୍ତ ଦେଖି ଜଣା ଯାଉଛି ସୁସ୍ପଷ୍ଟ
ଜୀବହୀନ ହେଲେ ଦେହ ହୁଏକି ବିନଷ୍ଟ;
ସୁଷୁପ୍ତି ଉତ୍ତାରେ ଦେହ ଉଠେ ପୁନର୍ବାର,
ଯେଣୁ କି ଜୀବାତ୍ମାଶକ୍ତି ଥାଏଟି ତାହାର ।
କର୍ମ ବାସନାଦି ଯେଣୁ ଥାଏ ତା ସହିତ,
ଏଥିକୁ ସେ ଜୀବ ହୁଏ ପୁନଶ୍ଚ ଉତ୍ଥିତ ।
ଭୂମିଷ୍ଠ ମାତ୍ରକେ ଶିଶୁ କରେକି ପ୍ରକାଶ
ଭୟାଦିର ଚିହ୍ନ ସ୍ତନ୍ୟପାନ ଅଭିଳାଷ ।
ଏଥିକୁ ସେ ଶିଶୁ ପକ୍ଷେ ଅବଶ୍ୟ ସମ୍ଭବ,
କରିଥିଲା ପୂର୍ବେ ସୁଖ ଦୁଃଖ ଅନୁଭବ ।
କରିଥିବା ଯୋଗୁଁ ପାନ ଭୋଜନ ପୂର୍ବରେ,
ଅନୁଭବ କଲା ତେଣୁ ଜନ୍ମ ମାତ୍ରକରେ ।
ଜୀବ ସଙ୍ଗେ ସଙ୍ଗେ ଥାଏ ବାସନା ପ୍ରବୃତ୍ତି,
ଜନ୍ମାନ୍ତର ସମ୍ପାଦିତ କ୍ରିୟା ବା ପ୍ରବୃତ୍ତି ।
ଏକମାତ୍ର ସୂକ୍ଷ୍ମ ବସ୍ତୁ ପରମଚୈତନ୍ୟ,
ଆହେ ଶ୍ୱେତକେତୁ, ନୁହ ତୁମ୍ଭେ ତହୁଁ ଅନ୍ୟ ।
ଆହେ ପୁତ୍ର, ନାମରୂପହୀନ ଅବିଜ୍ଞେୟ,
ଅତି ସୂକ୍ଷ୍ମ ସତ୍‌ପଦାର୍ଥ ବିଶ୍ୱପ୍ରଜାମୟ ।
ଏପ୍ରକାର ସତ୍‌ପଦାର୍ଥୁଁ କିରୂପ କିମ୍ଭୂତ
ନାମରୂପାତ୍ମକ ବିଶ୍ୱ ହେଲା ଆବିର୍ଭୂତ,
ଏ କଥା ଦୃଷ୍ଟାନ୍ତଯୋଗ କଲେକି ବିଖ୍ୟାତ,
ସହଜେ ପାରିବ ଜାଣି ସକଳ ବୃତ୍ତାନ୍ତ ।
ଜାଣିବାକୁ ତତ୍ତ୍ୱ ଯେବେ ଲୋଡ଼ ପ୍ରତ୍ୟକ୍ଷରେ—
ଦେଖୁଛ ଯେ ବଟବୃକ୍ଷ ତୁମ୍ଭ ସମ୍ମୁଖରେ,
ବିଶାଳ ଏ ବୃକ୍ଷ ଗୋଟି ଆସେ ଦେଖିବାର,
କରିଅଛି ଦେଖ ଶାଖା ପ୍ରଶାଖା ବିସ୍ତାର,
ସେଥିରୁ ଗୋଟାଏ ଫଳ ଆଣି ତୁମ୍ଭଠାକୁ,
ଦୁଇ ଫାଳ କରିଦିଅ ସେ ଫଳ ଗୋଟାକୁ ।”
ଶ୍ୱେତକେତୁ ପିତା ଆଜ୍ଞା କରନ୍ତେ ପାଳନ,
ବୋଇଲେ ମହର୍ଷି, “କର ଫଳ ନିରୀକ୍ଷଣ,
କି ପଦାର୍ଥ ଦେଖୁଅଛ ଏ ଫଳ ମଧ୍ୟରେ;”
ଶ୍ୱେତକେତୁ ମନଯୋଗ କରି ବିଶେଷରେ—
ଦେଖିଲେ, ବୋଇଲେ ଅଛି ସେ ଭଗ୍ନ ଫଳରେ
ବୀଜ କଣୀ ଅତି ସୂକ୍ଷ୍ମ ଅଣୁ ସମାନରେ ।
ପୁନର୍ବାର ମହାଋଷି ବୋଇଲେ ପୁତ୍ରକୁ,
“ଦୁଇ ଖଣ୍ଡ କରିଦିଅ ଗୋଟାଏ ବୀଜକୁ ।”
ପିତାଜ୍ଞାରେ ଶ୍ୱେତକେତୁ କଲେ ସେ ପ୍ରକାର,
ତହୁଁ ମହାଋଷି ପୃଚ୍ଛା କଲେ ପୁନର୍ବାର ।
“କି ଦ୍ରବ୍ୟ ଦେଖିଲ ପୁତ୍ର ଏ ବୀଜ ମଧ୍ୟରେ ?”
ବୋଇଲେ ଯେ ଶ୍ୱେତକେତୁ ତହୁଁ ବିନୟରେ,
“ହେ ପିତଃ, ଦେଖିଲି ଭଗ୍ନବୀଜ ମଧ୍ୟେ ମୁହିଁ,
କିଛି ହିଁ ପଦାର୍ଥ ଏହା ମଧ୍ୟେ ଦିଶୁ ନାହିଁ ।”
ବୋଇଲେ ମହର୍ଷି ତହୁଁ, “ଅରେ ଶ୍ୱେତକେତୁ,
ଦେଖି ନ ପାରୁଛ କିଛି ଅତି ସୂକ୍ଷ୍ମ ହେତୁ ।
ପରମାଣୁବତ ଅଛି ଏମନ୍ତ ପଦାର୍ଥ,
ଯହୁଁ ଏ ବିଶାଳ ବୃକ୍ଷ ଜନ୍ମିଛି ଯଥାର୍ଥ ।
ବୃକ୍ଷର ପ୍ରକାଣ୍ଡ ଶାଖା ପ୍ରଶାଖା ପଲ୍ଲବ,
ବୃକ୍ଷମୂଳ ପୁଷ୍ପ ଫଳ ଯେତେ କିଛି ଦ୍ରବ୍ୟ,
ଜନ୍ମିଛି ସେ ସୂକ୍ଷ୍ମ ବୀଜୁଁ କର ନିର୍ଦ୍ଧାରଣ,
ଏ ବିଶାଳ ବୃକ୍ଷଟିର ଉତ୍ପତ୍ତି କାରଣ ।
ଅତିସୂକ୍ଷ୍ମ ସତ୍‌ପଦାର୍ଥୁଁ ଜାଣ ସେହିପରି
ଜନ୍ମିଛି ଏ ବିଶ୍ୱ ରୂପନାମାତ୍ମକ ଧରି ।
ସେହି ସୂକ୍ଷ୍ମସତ୍‌ପଦାର୍ଥ ଜଗତର ମୂଳ,
ଧରିଛି ଆକାର ସୂକ୍ଷ୍ମରୂପ ଅବା ସ୍ଥୂଳ ।
ଏ ଜଗତ ଅଟେ ଯେଣୁ ସୂକ୍ଷ୍ମ ସଦାତ୍ମକ,
ସେ ସୂକ୍ଷ୍ମ ଚୈତନ୍ୟୁଁ ତୁମ୍ଭେ ନୁହଟି ପୃଥକ ।
ଆହେ ପୁତ୍ର କେତେ ବସ୍ତୁ ଥିଲେହେଁ ପାଖରେ ।
କେବେ କେବେ ଆସେ ନାହିଁ ନୟନ ଗୋଚରେ,
ମାତ୍ର ହେଲେ ତୁମ୍ଭେ ତାହା ସନ୍ଧାନେ ପ୍ରବୃତ୍ତ,
ସେଥିର ଅସ୍ତିତ୍ୱ ହୋଇ ପାରେ ଅନୁଭୂତ ।
ଗୋଟିଏ ଦୃଷ୍ଟାନ୍ତ କଥା କର ତୁ ଗ୍ରହଣ,
ଆଜ ସନ୍ଧ୍ୟା ସମୟରେ ଖଣ୍ଡିଏ ଲବଣ

ଏକ ଜଳପାତ୍ର ମଧ୍ୟେ କରିଣ ନିକ୍ଷେପ
କରିବ କାଲିରେ ପାଇ ତହିଁ ଦୃଷ୍ଟିକ୍ଷେପ ।"
ଶ୍ୱେତକେତୁ ସେହିପରି ପିତାଙ୍କ ଆଜ୍ଞାରେ
ଲବଣ ନିକ୍ଷେପ କଲେ ଏକ ଜଳାଧାରେ ।
ପରଦିନ ପ୍ରାତଃକାଳେ ଦେଖିଲେ ଯେ ପାତ୍ରେ
ଲବଣର ଚିହ୍ନ ଥିଲା ନାହିଁ କିଛି ମାତ୍ରେ ।
ବୋଇଲେ ମହର୍ଷି ହସି ହସି ଆରେ ସୁତ,
"ଲବଣର ଚିହ୍ନ ଦେଖି ନାହଁ ସତ୍ୟ ତୁ ତ ।
ମାତ୍ର ମିଶି ଯାଇଥିବା ହେତୁ ତା ଜଳରେ
ତାହାର ଅସ୍ତିତ୍ୱ ଦେଖୁ ନାହଁ ତୁ ନେତ୍ରରେ ।
ହେଲେ ମଧ୍ୟ ସେ ଲବଣ ନେତ୍ରର ଅଦୃଶ୍ୟ,
ଏହି ଜଳ ମଧ୍ୟେ ତାହା ରହିଛି ଅବଶ୍ୟ ।
ସେଥିରୁ କିଞ୍ଚିତ ଜଳ କର ଯେବେ ପାନ,
ଲବଣ ଅସ୍ତିତ୍ୱ କରି ପାର ଅନୁମାନ ।
ଦର୍ଶନେ ସ୍ପର୍ଶନେ ସତ୍ୟ ନ ପାରିଲ ଜାଣି,
ମାତ୍ରକ ଅସ୍ତିତ୍ୱ ବୁଝ ଅଛ ଚାଖି ପାଣି ।
ତେସନ ଦେହର ମୂଳ କାରଣ ପଦାର୍ଥ,
ଏ ଦେହରେ ଅବସ୍ଥିତ ରହିଛି ଯଥାର୍ଥ ।
ତେଜ, ଅନ୍ନ, ଅପ, ଏହି ତ୍ରିବିଧ ବିକାର,
ହେତୁଭୂତ ସତ୍‌ପଦାର୍ଥ ଦେହମୂଳାଧାର ।
କରନ୍ତି ନିୟତ ବାସ ଶରୀର ମଧ୍ୟରେ,
ପାରିବ ତାହାଙ୍କୁ ଜାଣି ବିଜ୍ଞାନ ବଳରେ ।
ଅତି ସୂକ୍ଷ୍ମ ସତ୍‌ପଦାର୍ଥ ଜଗତର ମୂଳ,
ବ୍ୟାପିଛନ୍ତି ଯେତେ କିଛି ଦ୍ରବ୍ୟ ସୂକ୍ଷ୍ମ ସ୍ଥୂଳ ।
ଜଗତ କାରଣ ସେହି ସୂକ୍ଷ୍ମ ସଦାତ୍ମକ,
ଆହେ ପୁତ୍ର ନୁହ ତୁମ୍ଭେ ସେଥିରୁ ପୃଥକ ।"
"ପୁଚ୍ଛା କଲେ ଶ୍ୱେତକେତୁ, ବୋଲ ଆହେ ପିତଃ,
କି ରୂପ ଜାଣିବି ପରଂବ୍ରହ୍ମଙ୍କ ଅସ୍ତିତ୍ୱ ।
ଦୟା କରି ବୋଲ ମୋତେ ଦେଖାଇ ଦୃଷ୍ଟାନ୍ତ,
ଜାଣିବାକୁ ଇଚ୍ଛା ମୋର ବଳିଛି ନିତାନ୍ତ ।"
ବୋଲି ଆରମ୍ଭିଲେ ପିତା—"ଶୁଣ ପୁତ୍ର ମୋର,
ଯଦି କେହି ମନୁଷ୍ୟଙ୍କୁ ଗୋଟାଏ ତସ୍କର ।
ଦୁଇ ହାତ ଦୁଇ ଆଖି ବାନ୍ଧି ଅନ୍ଧ ବେଶେ,
ଉତ୍କଳ ଦେଶରୁ ନେଇଯାଏ ଦୂର ଦେଶେ ।
ନିର୍ଜନ ଦୁର୍ଗମ ଭୟଙ୍କର ଅରଣ୍ୟରେ,
ଛାଡ଼ିଦିଏ ସେହି ଲୋକଟିକୁ ଏକେଶ୍ୱରେ ।
ସାହାହୀନ ବାଟବଣା ସେ ପୁରୁଷ ଗୋଟି,
କ୍ଷୁଧା ପିପାସାରେ ଶୁଖି ଯାଉଥାଏ ତୋଟି ।
କରୁଥାଏ ଆର୍ତ୍ତନାଦ ଭୟ ବ୍ୟାକୁଳରେ,
କେହି ଦୟାଶୀଳ ଲୋକ ଏମନ୍ତ କାଳରେ ।
ବନ୍ଧନ ମୋଚନ କରିଦିଏ ପାଶେ ଯାଇ,
ସ୍ୱଦେଶର ମାର୍ଗ ପୁଣି ଦିଏଟି ଦେଖାଇ ।
ବନରୁ ବାହାରି ଯେବେ ସେହି ମନୁଷ୍ୟଟି,
ଆପଣା ଦେଶରେ ମିଳେ ଚାଲି ଗୋଟି ଗୋଟି ।
ତାହାର ସକଳ ଦୁଃଖ ହୋଇଯାଏ ଦୂର,
ମନରେ ତା ହୁଏ ଜାତ ଆନନ୍ଦ ପ୍ରଚୁର ।
ସେହିରୂପ ଜାଣ ପୁତ୍ର କେହି ମୂଢ଼ଜନ
ମାୟାମୋହରୂପ ବସ୍ତ୍ରେ ଆବୃତ ନୟନ,
ନିଜ କୃତ କର୍ମଫଳ ସ୍ୱରୂପ ତସ୍କର
କୁମାର୍ଗେ ତାହାକୁ କରିଅଛି ଦେଶାନ୍ତର ।
ରକ୍ତ ମାଂସ କୃମି କୀଟ ମୂତ୍ର ପୁରୀଷରେ
ପୂର୍ଣ୍ଣ ସୁଖଦୁଃଖମୟ ଦେହ ଅରଣ୍ୟରେ ।
କରାଇ ଦେଇଛି ବଳେ ପ୍ରବେଶ ତାହାକୁ,
ସେ ଲୋକ ଅକ୍ଷମ ଆତ୍ମଦେଶ ଚିହ୍ନିବାକୁ ।
ମୋହାନ୍ଧ ମାନବ ଭାର୍ଯ୍ୟା ପୁତ୍ର ରୂପ ରସେ
ତୃଷ୍ଣା ପାଶେ ଆବଦ୍ଧ ସେ ରଜନୀ ଦିବସେ ।
ବେଳେବେଳେ ବ୍ୟାକୁଳରେ କରେ ସେ କ୍ରନ୍ଦନ,
କି ରୂପେ କରିବ ଆହା ଜୀବନ ଧାରଣ,
ବିପଦରେ ନାଶ ହୋଇଗଲା କେତେ ଧନ
ଆହା ମରିଗଲା ମୋର ସୁନ୍ଦର ନନ୍ଦନ !
ଏପ୍ରକାର କେତେ ରୂପ କରେ ଆର୍ତ୍ତନାଦ,
ସର୍ବଦା ଜଡ଼ିତ ମନେ ବ୍ୟାକୁଳ ବିଷାଦ ।
କେହି ଜ୍ଞାନୀ ଲୋକ ଯେବେ ପୁଣ୍ୟ ପ୍ରଭାବରେ
ଦୈବ ଯୋଗେ ଭେଟ ପାଇ ତାହା ସହିତରେ ।

ଜୀବନର ଅନିତ୍ୟତା ବାସନାର ଦୋଷ
ଦେଖାଇ ଦିଅନ୍ତି ତାକୁ ସମସ୍ତ କ୍ରମଶଃ ।
ତେବେ ସେ ଅଜ୍ଞାନୀ ହୋଇ ତତ୍ତ୍ୱଜ୍ଞାନଯୁକ୍ତ
ଘୋର ମୋହମାୟାଜାଲୁଁ ହୁଏଟି ବିମୁକ୍ତ ।
ତେତେବେଳେ ବ୍ରହ୍ମଜ୍ଞାନ ଲଭେ ସେ ବିଶେଷ,
ଦୂର ହୁଏ ତାହା ମନୁଁ ସର୍ବ ଦୁଃଖ କ୍ଳେଶ ।
ଆବଦ୍ଧ ତା ଦେହ ଗୋଟି ଯେ କର୍ମଯୋଗରେ,
କର୍ମକ୍ଷୟ ହୋଇଗଲେ ଜୀବନ ନାଶରେ ।
ସେକାଳରେ ସେ ପୁରୁଷ କରେ ମୁକ୍ତି ଲାଭ,
ପରଂବ୍ରହ୍ମ ସତ୍‌ପଦାର୍ଥେ ପାଏ ସେହି ଠାବ ।
ସେହି ପରଂବ୍ରହ୍ମ ସତ୍ୟ ନିତ୍ୟ ସଦାତ୍ମକ,
ଶ୍ୱେତକେତୁ, ନୁହ ତୁମ୍ଭେ ସେଥିରୁ ପୃଥକ ।
ପୁରୁଷର ମୃତ୍ୟୁକାଳ ହେଲେ ଉପସ୍ଥିତ,
ଜ୍ଞାତିଗଣ ତାହା ପାଶେ ହୋଇ ଏକତ୍ରିତ ।
ପଚାରନ୍ତି ତାକୁ—ମୁଁ ତ ପିତା, ଭ୍ରାତା ଜାଣ,
ମତେ କି ପାରୁଛ ଚିହ୍ନି ତୁହି ବର୍ତ୍ତମାନ ?
ମୁମୂର୍ଷୁ ଲୋକର ବାକ୍ୟ—ମନେ, ମନ—ପ୍ରାଣେ,
ପ୍ରାଣ—ତେଜେ, ତେଜ ପୁଣି ସତ୍‌ସ୍ୱରୂପ ସ୍ଥାନେ ।
ମିଳିତ ନ ହୁଏ ଯେପର୍ଯ୍ୟନ୍ତ—ସେହି ଲୋକ
ସମସ୍ତଙ୍କୁ ଚିହ୍ନି ପାରେ ପୃଥକ ପୃଥକ ।
ବିଲୀନ ହେଲେକି ସର୍ବ ତେଜ, ସେହି ପ୍ରାଣୀ
ସେ କାଳରେ କାହାକୁ ସେ ନ ପାରଇ ଜାଣି ।
ଜ୍ଞାନୀ ବା ଅଜ୍ଞାନୀ ଲୋକେ ସକଳେ ସମାନ,
ମୃତ୍ୟୁରେ ବିଲୁପ୍ତ ହୁଏ ଭୂତ ଉପାଦାନ ।
ଅଜ୍ଞାନୀ ଯେ ଲୋକ ଥାଏ ବାସନାଜଡ଼ିତ,
ବ୍ରହ୍ମ ଚୈତନ୍ୟରୁ ପୁଣି ହୁଏ ସେ ଉତ୍ଥିତ ।
ବାସନାର କର୍ମ ଅନୁରୂପ ସେହି ଜନ
ପୁଣ ସେହି ଦେହାନ୍ତର କରେକି ଗ୍ରହଣ ।
ଯାହାର ଏକାତ୍ମଜ୍ଞାନ ହୋଇଅଛି ଜାତ,
ବ୍ରହ୍ମ ଚୈତନ୍ୟରେ ମିଶିଯାଏ ସେ ନିତାନ୍ତ ।
ଯାହାର ବିଲୁପ୍ତ ଅଛି ବାସନାଭିଳାଷ,
ନିତ୍ୟାନନ୍ଦ ବ୍ରହ୍ମଧାମେ କରେ ସେହି ବାସ ।
ତା ବାସନା ନାଶେ ଜ୍ଞାନସ୍ୱରୂପ ପାବକ,
ତାହାର ଅଦ୍ୱୈତ ବ୍ରହ୍ମଜ୍ଞାନ ପରିପକ୍ୱ ।
ସମସ୍ତ ବାସନା ଯେ ଲୋକର ହୁଏ ଧ୍ୱଂସ,
ପରଂବ୍ରହ୍ମ ତତ୍ତ୍ୱଜ୍ଞାନ ଲଭେ ସେ କ୍ରମଶଃ ।
"ଏ କାର୍ଯ୍ୟ କରୁଛି ମୁହିଁ, ଏଥି ପ୍ରତିଫଳ
ଅବଶ୍ୟ ଭୁଞ୍ଜିବି ହିନେ ଏକାକୀ କେବଳ ।
ଏ ପ୍ରକାର ବୋଧ ଜାଣ ଦ୍ୱୈତରାଜ୍ୟ କଥା,
ବ୍ରହ୍ମ ଅନୁଭୂତି ତହିଁ ନ ଜନ୍ମେ ସର୍ବଥା ।
ଏମନ୍ତ ଯାହାର ବସ୍ତ୍ୱନ୍ତର ବୋଧଜ୍ଞାନ,
ଦ୍ୱୈତଜ୍ଞାନ ଭେଦବୁଦ୍ଧି ଅଛି ତାର ଜାଣ ।
ଯେମାନେ ଅଦ୍ୱୈତଜ୍ଞାନୀ ସେମାନଙ୍କ କଥା
ବିଶ୍ୱରାଜ୍ୟୁଁ ବ୍ରହ୍ମଙ୍କର ନାହିଁ ସ୍ୱତନ୍ତ୍ରତା ।
ବିଶ୍ୱର ସର୍ବସ୍ୱ ବ୍ରହ୍ମ ସ୍ୱରୂପ ବା ଶକ୍ତି
ଅନୁଭବ ଥାନ୍ତି ସେହି ସର୍ବ ମହାମତି ।
ସେ ସଦ୍‌ବସ୍ତୁ ଅଟନ୍ତି ସୃଷ୍ଟି ଜଗତରମୂଳ
ତାଙ୍କଠାରୁ ଜାତ ସର୍ବ ଜଡ଼ ପ୍ରାଣୀକୁଳ ।
ସେହି ସତ୍ୟ, ସେହି ଆତ୍ମା, ସେହି ସଦାତ୍ମକ,
ଶ୍ୱେତକେତୁ ନୁହ ତୁମ୍ଭେ ସେଥିରୁ ପୃଥକ ।"

— —

## ଦ୍ୱିତୀୟ ପରିଚ୍ଛେଦ

( ନାରଦ, ସନତ୍‌କୁମାର ସଂବାଦ )

ଏକଦା ମହର୍ଷି—ସନତ୍‌କୁମାର ପାଶରେ
ମିଳିଲେ ନାରଦ ଆସି ଭକ୍ତି ବିନୟରେ,
ବିଶେଷ ଭାବରେ କରି ତାହାଙ୍କ ବନ୍ଦନା
ବ୍ରହ୍ମବିଦ୍ୟା ଉପଦେଶ କଲେକି ପ୍ରାର୍ଥନା ।
ପୃଚ୍ଛା କଲେ ଶୁଣି ସନତ୍‌କୁମାର ମହର୍ଷି,
ହେ ନାରଦ କି କି ବିଦ୍ୟା ଅଛ ତୁମ୍ଭେ ଘୋଷି
ବୋଇଲେ ନାରଦ ଆହେ ମହାଋଷି ଶୁଣ,
"ଋଗ୍‌ବେଦ, ଅଥର୍ବବେଦ, ସାମବେଦ ପୁଣ

ଯଜୁର୍ବେଦ, ଇତିହାସ, ପୁରାଣ, ଗଣିତ,
ପିତୃଲୋକ ସମ୍ବନ୍ଧୀୟ ଯେ ବିଦ୍ୟା କଥିତ ।
ତର୍କଶାସ୍ତ୍ର, ଧର୍ମତତ୍ତ୍ୱ, ଅପର ବିଜ୍ଞାନ,
ସର୍ପାଦି ଚିକିତ୍ସା, ନୃତ୍ୟ କଳା ବିଦ୍ୟାମାନ,
ଜ୍ୟୋତିଷ, ଚିକିତ୍ସା'ଶାସ୍ତ୍ର, ବିଜ୍ଞାନ କଳ୍ପନା
ଏ ସମସ୍ତ ଶାସ୍ତ୍ର କରିଅଛି ଆଲୋଚନା ।
ଏ ଅଠର ବିଦ୍ୟାସବୁ କରିଛି ଆୟତ୍ତ,
ମାତ୍ର ଜାଣେ ନାହିଁ ପରା ବିଦ୍ୟା ଧର୍ମତତ୍ତ୍ୱ ।"
ନାରଦଙ୍କୁ ଶୁଣି ସନତ୍‌କୁମାର ମହର୍ଷି
ବୋଇଲେ, "ଶିଖନ୍ତୁ ବିଦ୍ୟା ଆମ୍ଭଠାରେ ବସି ।
ବୈଷୟିକ ବିଦ୍ୟା କରିଅଛ ଅଧ୍ୟୟନ,
ପରା ବିଦ୍ୟା ଦେବୁଁ ଶିକ୍ଷା, ଶୁଣ ଦେଇ ମନ ।
ନାମ ରୂପାତ୍ମକ ଏହି ବିକାଶ ଜଗତ
ପରଂବ୍ରହ୍ମ ଆବିର୍ଭୂତ—ପରଂବ୍ରହ୍ମେ ସ୍ଥିତ,
ବ୍ରହ୍ମଙ୍କ ସତ୍ତ୍ୱରେ ଏହି ଜଗତର ସତ୍ତ୍ୱ,
ବ୍ରହ୍ମଠାରୁ ନାହିଁ ମଧ୍ୟ ଜଗତ ଭିନ୍ନତା ।
ନାମ ମାତ୍ର ଅଟେ ବେଦ ଶାସ୍ତ୍ରାଦି ଯେତେକ,
ନାମ ଅଟେ ବସ୍ତୁ ପରି-ଚାୟକ ମାତ୍ରକ ।
ନ ଥିଲେ ପଦାର୍ଥଜ୍ଞାନ କି ହେବ ନାମରେ ?
ପଦାର୍ଥ ନିର୍ଦ୍ଦେଶ ଜାଣ ନାମ ମାତ୍ରକରେ ।
ବାକ୍ୟ ଗୋଟିକର ଜାଣ ନାମ ପ୍ରତିନିଧି,
ନାମ ଅବା ବସ୍ତୁ ନୁହେ ବ୍ରହ୍ମରୂପେ ସିଦ୍ଧି ।
ନାମ ଅବା ବସ୍ତୁ ବୋଲି ସମସ୍ତ ବିକାର,
ବିକାଶ ନୁହନ୍ତି ବ୍ରହ୍ମ ଜାଣ ଏହା ସାର ।
ବିକାଶ ମାତ୍ରକେ କାର୍ଯ୍ୟ-ବ୍ରହ୍ମହିଁ କାରଣ,
ବିକାର ଅତୀତ ବ୍ରହ୍ମ କର ନିରୂପଣ ।
ନାମକୁ ଯେ ବ୍ରହ୍ମ ବୋଲି କରୁଥିବ ଧ୍ୟାନ,
ନାମ ଧରି ବ୍ରହ୍ମବସ୍ତୁ କର ସମାଧାନ ।
ଚନ୍ଦ୍ରଟି ଆବୃତ ହେଲେ ବୃକ୍ଷ ଅନ୍ତରାଳେ,
ତା ସ୍ଥାନ ନିର୍ଦ୍ଦେଶ ହୁଏ ଧରି ଏକ ଡାଳେ ।
ସେହିରୂପ ନାମ କରି ଜ୍ଞାନ ସହାୟରେ,
ବ୍ରହ୍ମ ପରିଚିତ ହୋଇଥାନ୍ତି ସହଜରେ ।
'ଅସତ୍ୟ ବସ୍ତୁକୁ ଧରି ସତ୍ୟ ବସ୍ତୁଜ୍ଞାନ,
ହୋଇ ପାରେ ସହଜରେ ଏହା ତୁମ୍ଭେ ଜାଣ;'
ଯେତେକ ବିଶୃଙ୍ଖ ବସ୍ତୁ ଅଛି ଜଗତରେ,
ତହିଁରୁ ଆରମ୍ଭ କରି କାର୍ଯ୍ୟ କାରଣରେ,
ବିଶେଷଭାବରେ କଲେ ହେତୁ ଅନ୍ୱେଷଣ,
କ୍ରମେ ଅତି ସୂକ୍ଷ୍ମେ କରିପାରେ ଆରୋହଣ ।
ନାମ ରୂପ ଯେ ସତ୍ୟତା ଆପେକ୍ଷିକ ମାତ୍ର,
ବ୍ରହ୍ମ ହିଁ ପରମ ସତ୍ୟ ବୁଝ ଏହି ମାତ୍ର ।
ଏକମାତ୍ର ପରଂବ୍ରହ୍ମ ସତ୍ୟତା ଉପର,
ନାମରୂପ ସତ୍ୟତା ଯେ କରଇ ନିର୍ଭର,
ବ୍ରହ୍ମମାତ୍ର ନିରପେକ୍ଷ ବସ୍ତୁର ସତ୍ୟତା,
ସ୍ୱାଧୀନ ଭାବରେ ନାହିଁ ଜାଣ ଏହି କଥା ।
ଯାହା କିଛି ଦେଖ ତୁମ୍ଭେ ନାମ ରୂପମାନ,
ବ୍ରହ୍ମସ୍ୱରୂପ ବୋଧର ଦ୍ୱାର ମାତ୍ର ଜାଣ ।
ଏହି ନାମରୂପ ଏକମାତ୍ର ହିଁ ସହାୟ,
ବ୍ରହ୍ମମାର୍ଗେ ପ୍ରବେଶିବା ଗୋଟିଏ ଉପାୟ ।
ନିଶ୍ଚୟ ନିଶ୍ଚୟ ନାମରୂପାଦି ବିକାର,
ସବୁ ମିଥ୍ୟା ବ୍ରହ୍ମତତ୍ତ୍ୱ ଜାଣ ଏହା ସାର ।
ନାମଠାରୁ ବାକ୍ୟ ସତ୍ୟ—ବାକ୍ୟରେ ଅକ୍ଷର,
ଉଚ୍ଚାରିତ ହୁଏ ଏହା ଜାଣ ମୁନିବର,
କାର୍ଯ୍ୟଠାରୁ କାରଣକୁ ସତ୍ୟ ବୋଲି ଜାଣ,
ତେଣୁ ନାମଠାରୁ ଶ୍ରେଷ୍ଠ ବାକ୍ୟ କର ଜ୍ଞାନ ।
ବାକ୍ୟଯୋଗେ ଋଗ୍‌ବେଦର ଶବ୍ଦ ଯାବତୀୟ;
ଉଚ୍ଚାରିତ ହୋଇଥାଏ ଏହା ଦର୍ଶନୀୟ ।
ଜଳ ପୃଥ୍ୱୀ ସୁଖ ଦୁଃଖ ଆକାଶ ପବନ,
ବାକ୍ୟ ଯୋଗେ ଶବ୍ଦ ସବୁ କରି ଉଚ୍ଚାରଣ,
ବାକ୍ୟ ବିନା କେହି ପଦାର୍ଥର ପରିଚୟ,
ନ ହୁଅନ୍ତା ତୁମ୍ଭେ ଏହା ଜାଣିବ ନିଶ୍ଚୟ ।
ପ୍ରତ୍ୟେକ ପଦାର୍ଥ ତତ୍ତ୍ୱ କରିବା ଗୋଚର,
କେବଳ କରିଇ ବାକ୍ୟ ଉପରେ ନିର୍ଭର ।
ସେ ବାକ୍ୟ ଗୋଟିକୁ ତୁମ୍ଭେ ଆହେ ମହାମନା,
ପରଂବ୍ରହ୍ମ ସ୍ୱରୂପରେ କରିବ ଭାବନା ।

ଯେଉଁମାନେ ନାମ ଆଉ ବାକ୍ୟ ଉପାସକ,
ଜାଣନ୍ତି ସେ ନାମ ଆଉ ବାକ୍ୟାତ୍ମକ ଲୋକ,
ବାକ୍ୟରୁ ଶ୍ରେଷ୍ଠ ଅନ୍ତଃକରଣ ଚିନ୍ତାବୃତ୍ତି,
ଚିନ୍ତାବୃତ୍ତିଠାରୁ ଶ୍ରେଷ୍ଠ ଇଚ୍ଛାର ପ୍ରବୃତ୍ତି,
ସ୍ୱୀୟ ଇଚ୍ଛାବୃତ୍ତି ଯୋଗେ ଏ ଅନ୍ତଃକରଣ,
ବାକ୍ୟର ଗୁଳନା କରିଥାଏ ଅନୁକ୍ଷଣ ।
କରିବି କି – କରିବି କି ନାହିଁ ଏହି କାର୍ଯ୍ୟ,
ଏରୂପ ବିଷୟ କରି ପ୍ରଥମେ ନିର୍ଧାର୍ଯ୍ୟ ।
ତେବେ ସିନା ଚିନ୍ତା କରିଥାନ୍ତି ଲୋକମାନେ,
କରିବା ଉତ୍ତରେ ଚିନ୍ତା ତେବେ ସାବଧାନେ ।
ବାକ୍ୟଟିର ନାମ କରିଥାନ୍ତି ଉଚ୍ଚାରଣ,
ନାମ ସଙ୍କଳପ ଶ୍ରେଷ୍ଠ କରି ନିରୂପଣ ।
ଏ ପୁସ୍ତକ ଖଣ୍ଡି ମୁହିଁ ପଢ଼ିବି ନିଶ୍ଚୟ,
ଏପ୍ରକାର ଚିନ୍ତା ହେଲେ ମନରେ ଉଦୟ,
ପୁସ୍ତକର ପୃଷ୍ଠା ତେବେ କରି ଉଦ୍‌ଘାଟନ,
ପୁସ୍ତକ ଲିଖିତ ଶବ୍ଦ କରୁଁ ଉଚ୍ଚାରଣ ।
ଏଥିରୁ ଜାଣୁଛୁଁ ନାମ ପ୍ରଭୃତି ସକଳ,
ସଂକଳ୍ପରେ ପ୍ରତିଷ୍ଠିତ ରହିଛନ୍ତି କେବଳ ।
ସେମାନେ ଯେ ସଙ୍କଳ୍ପକୁ କରିଣ ଆଶ୍ରୟ,
ପ୍ରକାଶେ ସମର୍ଥ ନିଜ କ୍ରିୟାର ବିଷୟ ।
ଆକାଶ ପୃଥିବୀ ଆଦି ଯେତେକ ପଦାର୍ଥ,
ସମସ୍ତସଂକଳ୍ପାତ୍ମକ ଜାଣିବ ଯଥାର୍ଥ । *
ଆକାଶ ପୃଥିବୀ ବାୟୁ ଅନ୍ତରୀକ୍ଷ ଜଳ,
ତେଜ ଆଦି ଜାତ ବ୍ରହ୍ମ ସଂକଳ୍ପୁ କେବଳ ।
ଏ ସମସ୍ତ ଏକତ୍ରରେ ହୁଏ ବୃଷ୍ଟିପାତ,
ସେହି ବୃଷ୍ଟି ଯୋଗେ ହୋଇଥାଏ ଅନ୍ନ ଜାତ ।
ଶୁକ୍ର ଶୋଣିତ ଯେ ଅନ୍ନରସ ପରିଣତ,
ସେ ଶୁକ୍ର ଶୋଣିତୁ ହେଲା ଜୀବର ଉତ୍ପତ୍ତି ।
ସେ ଜୀବରୁ ଜାତ ମନ୍ତ୍ର ଅବା କ୍ରିୟାମାନ,
କ୍ରିୟାଫଳ ସ୍ୱର୍ଗ ଆଦି ଲୋକମାନ ଜାଣ ।
ସଂକଳ୍ପ ହିଁ ସର୍ବ ମୂଳଦ୍ରବ୍ୟ ଆୟତନ,
ସଂକଳ୍ପକୁ ବ୍ରହ୍ମ ବୋଲି କରି ନିରୂପଣ ।
ଏରୂପ ଭାବନା ଧ୍ୟାନ ଯେମାନେ କରନ୍ତି,
ସେମାନଙ୍କ ହୋଇଥାଏ ଧ୍ରୁବଲୋକେ ଗତି ।
ଏ 'ଚିତ୍ତ'କୁ ସଂକଳ୍ପରୁ ଶ୍ରେଷ୍ଠ ବୋଲି ଜାଣ,
କରନ୍ତି ଚିତ୍ତରେ ଲୋକେ ସକଳ ସନ୍ଧାନ ।
ଏହି ଚିତ୍ତ ସର୍ବରୂପ ବୋଧର ଆଶ୍ରୟ,
ଚିତ୍ତ ଯୋଗେ ଜଣାଯାଏ ସକଳ ବିଷୟ ।
ନ ଥିଲେଟି ପୂର୍ବାପର ସନ୍ଧାନ ସାମର୍ଥ୍ୟ,
ତାହାର ସକଳ ଜ୍ଞାନ ଅଟେ ଜାଣ ବ୍ୟର୍ଥ ।
ଅତଏବ ସଂକଳ୍ପାଦି ସକଳ ବିଷୟ,
ଅବସ୍ଥାନ ଲୋଡ଼ିଥାନ୍ତି ଚିତ୍ତର ଆଶ୍ରୟ ।
ବହୁଜ୍ଞ ହେଲେହେଁ ଯେବେ ନୁହେ ଚିତ୍ତବାନ,
କେଉଁ ଲୋକ କରିଥାଏ ତାହାକୁ ସମ୍ମାନ ।
ଅଳ୍ପଜ୍ଞ ହେଲେହେଁ ଚିତ୍ତବାନ ଲୋକ କଥା,
ଶୁଣିଥାନ୍ତି ଲୋକେ ଏହା ଜାଣିବ ସର୍ବଥା ।
ଏ ଚିତ୍ତକୁ ବ୍ରହ୍ମ ବୋଧେ କଲେକ ଭାବନା,
ଲଭିବା ଅକ୍ଷୟ ଲୋକ ଅଟେ ସମ୍ଭାବନା ।
ଏ ଚିତ୍ତରୁ ଶ୍ରେଷ୍ଠ ଜାଣ ଧ୍ୟାନ ଏକାଗ୍ରତା,
ଲଭିପାରେ ସେହି ଦୈବୀ ସମ୍ପଦ ସର୍ବଥା ।
ମହତ୍ତ୍ୱ ଲାଭର ହେତୁ ଜାଣ ଏକାଗ୍ରତା,
ଯାହାର ଚଞ୍ଚଳ ଚିତ୍ତ କାହିଁ ତା ଭଦ୍ରତା ।
ଅଭଦ୍ରେ ଯେ କରିଥାନ୍ତି ବିବାଦ କଳହ,
ପରସ୍ପର ଦ୍ୱେଷ ହିଂସା ଆଦି ଅହରହ ।
ଅଟନ୍ତି ସୁଶୀଳ ଧୀର ସ୍ଥିରଚିତ୍ତ ଲୋକ,
ଏ କଥା ସଚରାଚର ଦେଖୁଛୁ ପ୍ରତ୍ୟକ୍ଷ ।
ପୃଥିବୀ ପର୍ବତ ଅନ୍ତରୀକ୍ଷ ବସୁମାନ,
ସ୍ଥିର ଚିତ୍ତ ଭାବେ ଯେହ୍ନେ କରୁଛନ୍ତି ଧ୍ୟାନ,
ଏ ଚିତ୍ତକୁ ବ୍ରହ୍ମ ବୋଧେ କଲେକ ଭାବନା ।
ତେବେ ବ୍ରହ୍ମାନନ୍ଦ ପ୍ରାପ୍ତି ନିଶ୍ଚେ ସମ୍ଭାବନା ।

* ବ୍ରହ୍ମ ସଂକଳ୍ପରୁ ବିଶ୍ୱ ସୃଷ୍ଟି

ଏହି ଏକାଗ୍ରତାଠାରୁ ଶ୍ରେଷ୍ଠ ଯେ ବିଜ୍ଞାନ,
ଜ୍ଞାନ ବିନା ଏକାଗ୍ରତା ବିଡ଼ମ୍ବନା ଜାଣ ।
ଜ୍ଞାନ ଅଛି ବୋଲି ବେଦ ଆଦି ଧର୍ମଶାସ୍ତ୍ର,
ସୁଖ ଦୁଃଖ ଅନୁଭବ କରୁଁ ଅଛି ମାତ୍ର ।
ବିଜ୍ଞାନକୁ ବ୍ରହ୍ମ ବୋଧେ କଲେ ଉପାସନା,
ସକଳ ପଦାର୍ଥ ତତ୍ତ୍ୱ ଯିବ ତେବେ ଜଣା ।
ସେ ବିଜ୍ଞାନଠାରୁ ଶ୍ରେଷ୍ଠ ପ୍ରାକୃତିକ ବଳ,
ଅନ୍ନ ଗ୍ରହଣରୁ ଜାତ ହୁଏ ସେ କେବଳ ।
ଜ୍ଞେୟ ଦ୍ରବ୍ୟ ବୋଧ ଶକ୍ତି ଜାତ ସେହି ବଳେ,
ଦେହ ସଞ୍ଚାଳନ କ୍ରିୟା କରୁ ଯେ କୌଶଳ ।
ପ୍ରକୃତିର ଶକ୍ତିଠାରେ ଜ୍ଞାନ ପରାଭବ,
ପ୍ରକୃତି ଆଶ୍ରୟେ ଜ୍ଞାନ ବିକାଶ ଯେ ସର୍ବ ।
ଜଗତରେ ତିନି—ବିଶ୍ୱ, ଚୈତନ୍ୟ, ପ୍ରକୃତି
ମିଶ୍ରିତରେ ଧରିଛନ୍ତି ସକଳ ଆକୃତି ।
ଯେଉଁ ଶକ୍ତି ଜାତ ଅନ୍ନ ଗ୍ରହଣ ଜନିତ,
ଦର୍ଶନ ଶ୍ରବଣ କ୍ରିୟା ତହିଁ ସମ୍ପାଦିତ ।
ପ୍ରାକୃତିକ ଶକ୍ତିବଳେ ପୃଥିବୀ ଆକାଶ ।
ଗିରି ସିନ୍ଧୁ ଯାବତୀୟ ବିଧୃତ ବିକାଶ,
ଆନ୍ତରିକ ଶକ୍ତି ହେଉ ଅବା ବାହ୍ୟ ଶକ୍ତି,
ଦୁଇ ଶକ୍ତି ବଳ ନାମେ କଥିତ ହୁଅନ୍ତି ।
ଏହି ଶକ୍ତି ଉପରେ ହିଁ ଜାଣ ନିରନ୍ତର,
ଜ୍ଞାନଶକ୍ତି କ୍ରିୟା ଗୋଟି କରେକ ନିର୍ଭର ।
ଶକ୍ତିହିଁ ସକଳ ଶ୍ରେଷ୍ଠ ଗଲା ଏହା ଜଣା,
ଏ ଶକ୍ତିକୁ ବ୍ରହ୍ମରୂପେ କରିବ ଭାବନା । *
ଏକମାତ୍ର ଅନ୍ନ ଅଟେ ବଳର କାରଣ,
ଅତଏବ ବଳଠାରୁ ଶ୍ରେଷ୍ଠ ଅଟେ ଅନ୍ନ ।
ତାପ—ଏକ ବଳ, କିନ୍ତୁ ତାପର ବର୍ଦ୍ଧନ,
ନିମନ୍ତେ ଜାଣିବ ଉପାଦାନ ପ୍ରୟୋଜନ ।
କାଷ୍ଠାଦି ନ ଦେଲେ ତାପ ବୃଦ୍ଧି ପାଏ ନାହିଁ,
ପ୍ରୟୋଜନ ଅନ୍ନ—ଦେହ ତାପ ବୃଦ୍ଧି ପାଇଁ ।
ମନଶକ୍ତି—ପ୍ରାଣଶକ୍ତି ବର୍ଦ୍ଧନ କାରଣ
ଅନ୍ନ ଜଳ ଦୁଇ ଦ୍ରବ୍ୟ ହୁଏ ପ୍ରୟୋଜନ,
ବାହାରେ ଦେଖୁଛ ଯେତେ ପ୍ରାକୃତିକ ଶକ୍ତି,
ଉପାଦାନ ଯୋଗେ ହୋଇଥାଏ ଅଭିବ୍ୟକ୍ତି ।
ଏଥିକୁ ଜାଣିବ ଅନ୍ନ ଶକ୍ତି ପ୍ରକାଶକ,
ପୁଣି ଦେହ ଅବୟବ ପୋଷଣକାରକ ।
ମାନବ ଯଦ୍ୟପି ଅନ୍ନ ନ କରେ ଆହାର,
ଦର୍ଶନ ଶ୍ରବଣଶକ୍ତି ନ ଥାଏ ତାହାର ।
ଅନ୍ନକୁ ଯେ ବ୍ରହ୍ମ ବୋଲି କଲେ ଉପାସନା ।
ସର୍ବ ଶକ୍ତି ତାହା ବଶୀଭୂତ ସମ୍ଭାବନା ।
ଅନ୍ନଠାରୁ ଜଳ ଶ୍ରେଷ୍ଠ କର ନିର୍ଦ୍ଧାରଣ,
ପାର୍ଥିବ ସମସ୍ତ ଶକ୍ତି—ଜଳହିଁ କାରଣ ।
ଶକ୍ତିର ଆଧାର—ଶକ୍ତି ଯେକାଳେ ଉଦୟ,
ଘନୀଭୂତ ହୋଇଥାନ୍ତି—ଜଳ ଭବୋଦୟ ।
କଠିନ ହୁଏଟି ଜଳ ଭାବ ଯେ କାଳରେ
ଘନୀଭୂତ ହୁଏ ତହୁଁ ପାର୍ଥିବଭାବରେ ।
ଅନ୍ନର କାରଣ ଜଳ ଜାଣିବ ନିଶ୍ଚୟ,
ସୁବୃଷ୍ଟି ନ ହେଲେ ହୁଏ ଦୁର୍ଭିକ୍ଷ ଉଦୟ ।
ଜଳ ପରମାଣୁ ସର୍ବ ହେଲେକ ସଂହତ
ପୃଥ୍ୱୀ ପରମାଣୁ ରୂପେ ହୁଏ ପରିଣତ ।
ପୃଥିବୀ ଆକାଶ ଦେବ ମାନବ ଦୈତ୍ୟ
ପଶୁ ପକ୍ଷୀ କୀଟ ଆଦି ତୃଣ ବନସ୍ପତି ।
ସମସ୍ତ ଜଳୀୟ ପରମାଣୁର ବିକାର
ଏ ଭାବେ ସୃଜିତ ସର୍ବ ଜଗତ ସଂସାର ।
ଅପ୍‌ଶକ୍ତିକୁ ବ୍ରହ୍ମବୋଧେ କଲେ ଉପାସନା
ଦୂର ହୁଏ ସର୍ବରୂପ ଦୈହିକ ଯନ୍ତ୍ରଣା ।
ଜଳଠାରୁ ତେଜ ଶକ୍ତି ଶ୍ରେଷ୍ଠ ବୋଲି ଜାଣ,
ତେଜ ଶକ୍ତିଠାରୁ ବାୟୁ ଶ୍ରେଷ୍ଠ କର ଜ୍ଞାନ,
ବାୟୁଠାରୁ ଶ୍ରେଷ୍ଠତ୍ୱ ଯେ ଅଛି ଆକାଶରେ
ପରସ୍ପରେ ଧୃତ - କାର୍ଯ୍ୟ କାରଣ ସୂତ୍ରରେ ।

---

* ମାନବ ଦେହ ଓ ଇନ୍ଦ୍ରିୟାଦିରେ ଶକ୍ତି ନ ଥିଲେ ଜ୍ଞାନ ବିକାଶିତ ହୁଏ ନାହିଁ । ଅତଏବ ଶକ୍ତିହିଁ ମୂଳ ଅଟେ ।

ଆକାଶ ଶକ୍ତି ଯେ ବାୟୁଶକ୍ତି ପରିଣତ
ଉଭୟ ଅଦୃଶ୍ୟ ରୂପ ଜାଣିବ ଏମନ୍ତ ।
ଶକ୍ତି କରିଥାଏ ଆତ୍ମପ୍ରକାଶ ଯେକାଳେ
ସ୍ପନ୍ଦନରୂପରେ ଅଭିବ୍ୟକ୍ତ ଯେ ସେକାଳେ ।
ସ୍ପନ୍ଦନ ହେଲେଟି ଅଭିବ୍ୟକ୍ତ ଶବ୍ଦାକାରେ,
ଶବ୍ଦାକାର ଅଭିବ୍ୟକ୍ତ ହୁଏ ସ୍ପର୍ଶାକାରେ ।
ଆଣବିକ ଗତି ଯୋଗୁଁ ଅଭିବ୍ୟକ୍ତ ତେଜ,
ତାହାର ଅବସ୍ଥାନ୍ତର ଜଳ ନାମେ ହେଜ ।
ଯେ କାଳରେ ହୁଏ ତାପ ହ୍ରାସ ଅବା କ୍ଷୟ,
ତାହାର ଗୁଣରେ ଜାତ ଜଳର ଉଦୟ ।
ଜଳର ସଂହତାବସ୍ଥା ପୃଥିବୀକୁ ଜାଣ,
ଏହିରୂପ ମୂଳତତ୍ତ୍ୱ କର ପରମାଣ ।
ଏକ ସୂକ୍ଷ୍ମ ଆକାଶଟି ହୋଇ ଘନୀଭୂତ
ସ୍ଥୂଳ ପୃଥ୍ୱୀ ଅନ୍ନ ଆଦି କରେକ ପ୍ରସୂତ ।
ଆକାଶାଦି ପଞ୍ଚ ଶକ୍ତି କଥା ଗଲା ଜଣା,
ଏମାନଙ୍କୁ ବ୍ରହ୍ମରୂପେ କର ଉପାସନା ।
ଏହି ଉପାସନା ଫଳେ ଏ ଶକ୍ତି ସକଳ
କରିବେ ତୁମ୍ଭର ଜାଣ ବିଧାନ ମଙ୍ଗଳ ।"
ନାରଦ ଶ୍ରବଣ କରି ଏତେ ଉପଦେଶ
ମନ ମଧ୍ୟେ ଆଲୋଚନା କଲେକ ବିଶେଷ ।
ପୁଚ୍ଛାକଲେ ପୁଣି ସନତ୍ କୁମାରଙ୍କୁ ଗୃହିଁ,
"ଆକାଶରୁ ବଳି ଶ୍ରେଷ୍ଠ ପଦାର୍ଥ କି ନାହିଁ ?
ଥାଏ ଯଦି ଦିଅ ମୋତେ ସେଥି ଉପଦେଶ,
ବୋଲିବା ହେଉନ୍ତୁ କରି ବ୍ୟାଖ୍ୟାତ ବିଶେଷ ।"
ବୋଇଲେ ମହର୍ଷି ସନତ୍କୁମାର ସୁମତି,
"ଅଛି ଶ୍ରେଷ୍ଠବସ୍ତୁ ତାହା ନାମ ସ୍ମୃତିଶକ୍ତି,
ସେହି ସ୍ମୃତିଶକ୍ତି ଥିବାଯୋଗୁଁ କର ଜ୍ଞାନ,
ସ୍ଥାବର ଚାବତ ଦ୍ରବ୍ୟ ଅଛି ବିଦ୍ୟମାନ ।
ଆହେ ସୌମ୍ୟ, ଜାଣ ଅନ୍ତର୍ଜଗତ ଉପର
ବାହ୍ୟଜଗତର କରେ ଅସ୍ତିତ୍ୱ ନିର୍ଭର ।
ବିଷୟୀର ଜ୍ଞାନେ—ଜ୍ଞେୟ ବିଷୟ ଅସ୍ତିତ୍ୱ,
ସ୍ମୃତିଶକ୍ତି ବିଷୟରେ ଶକ୍ତି ଅନୁମିତ ।
ସ୍ମୃତିଶକ୍ତି ବିନା କେହି ନ ବୁଝିବ କଥା,
ସବୁ ଚିନ୍ତା ମନ ମଧ୍ୟୁ ହୁଅନ୍ତା ଅନ୍ୟଥା ।
ସ୍ମୃତିଶକ୍ତି ବିନା କାହୁଁ ଉପୁଜିବ ଜ୍ଞାନ,
ଜ୍ଞାନ ଉପାର୍ଜନେ ସାହା ସ୍ମୃତି ହିଁ ପ୍ରଧାନ;
ତରୁ ଲତା ପଶୁ ପକ୍ଷୀ ସୁବ କୀଟମାନ
ସ୍ମୃତିଶକ୍ତିବଳେ ଜାତ ଏ କଥାରେ ଜ୍ଞାନ ।
ପୃଥିବୀସ୍ଥ ଆକାଶସ୍ଥ ଦ୍ରବ୍ୟ ସମୁଦୟ
ସ୍ମୃତିଶକ୍ତି କରାଏ ଯେ ସେଥି ପରିଚୟ ।
ଚିହ୍ନନ୍ତୁ କି ପୃଥକରୂପେ ଜଗତସ୍ଥ ପ୍ରାଣୀ,
ନ ଥିଲେ ସ୍ମରଣଶକ୍ତି ପାରନ୍ତୁ କି ଜାଣି ?
ସମ୍ମୁଖେ ଦେଖିଲ ଏକ ଲୋକ ରୂପବାନ,
ପାଇଲ ଗୋଟିଏ ପୁଷ୍ପଗନ୍ଧ ବର୍ତ୍ତମାନ ।
ବର୍ତ୍ତିମାନ କାଳେ ଯାହା କଲ ଅନୁଭବ,
ଚିହ୍ନିଲ ଅମୁକ ପୁଷ୍ପ ଅମୁକ ମାନବ ।
ଗତ କାଳ କଥା ଯେବେ ନ ଥାନ୍ତା ମନରେ
ଜାଣି କି ପାରନ୍ତ ଏହି କଥା ସହଜରେ ?
କିଏ ଦେଲା ଆଣି ଗତ କଥା ବର୍ତ୍ତିମାନେ ?
ସ୍ମୃତି ଶକ୍ତି ମୂଳାଧାର ଜାଣ ଏହି ସ୍ଥାନେ ।
ସ୍ମୃତିଶକ୍ତି ଜାଣ ସର୍ବକାଳେ—ବିଷୟରେ
କରାଇଣ ଦିଏ ଚିହ୍ନ ମାନସପଟରେ ।
ବାହ୍ୟିକ ବା ଆନ୍ତରିକ ଯାବନ୍ତ ବିଷୟ
ସ୍ମୃତିଶକ୍ତି ବଳେ ସର୍ବ ପାଉଁ ପରିଚୟ ।
ବ୍ରହ୍ମଶକ୍ତି ବୋଲି ମଣ ସେହି ସ୍ମୃତିଶକ୍ତି,
ଭାବନା ତାହାଙ୍କୁ କରି ମନେ ରଖି ଭକ୍ତି ।
ଏହି ସ୍ମୃତିଶକ୍ତି ପୁଣି ମାନବ ମନରେ
ପ୍ରତିଷ୍ଠିତ ଥାଏ ଆଶା କାମନା ଉପରେ ।
ଆଶା କାମନାହିଁ କରେ ସ୍ମୃତିକି ପୋଷଣ,
କାମନାହିଁ କରେ ସ୍ମୃତିଶକ୍ତି ଜାଗରଣ ।
କାମନାକୁ କରି ବ୍ରହ୍ମ ବୋଧେ ଉପାସନା,
ତେବେ ପୂର୍ଣ୍ଣ ହେବ ତୁମ୍ଭ ସମସ୍ତ ବାସନା ।
ସ୍ମୃତି ବା କାମନା ଯାହା କଲି ଅନୁମିତ ।
ସମସ୍ତହିଁ ଅଛି ପ୍ରାଣ-ଶକ୍ତିରେ ଗ୍ରଥିତ ।

ଏଥିକୁ ଜାଣିବ ସର୍ବଶ୍ରେଷ୍ଠ ପ୍ରାଣଶକ୍ତି,
ପ୍ରାଣଶକ୍ତି ଅଧୀନରେ ସମସ୍ତେ ଚଳନ୍ତି ।
ଆହେ ବତ୍ସ, ନାମଠାରୁ କାମନା ପର୍ଯ୍ୟନ୍ତ,
ଯାହାକିଛି ବୋଲଅଛୁଁ ଜାଣ ସେ ସମସ୍ତ ।
ସମସ୍ତ ବିଧୃତ କାର୍ଯ୍ୟ କାରଣ ସୂତ୍ରରେ
ସକଳ ସମ୍ବନ୍ଧ ରହିଅଛି ପରସ୍ପରେ ।
ରଥଚକ୍ର ଅର ଗୁଡ଼ି ମେରୁଦଣ୍ଡେ ଯଥା
ଗ୍ରଥିତ ଥାଆନ୍ତି—ଜାଣ ସେହିପରି କଥା ।
ପ୍ରାଣଶକ୍ତି ମେରୁଦଣ୍ଡ ବୋଲି ଜ୍ଞାନ କର,
ନାମାଦି ଯାବନ୍ତ ବସ୍ତୁ ଅଟେ ଏଥିଁ ଅର ।
ବ୍ରହ୍ମଚୈତନ୍ୟର ଅନୁକମ୍ପନ ଯୋଗରେ
ପ୍ରକାଶିତ ହୁଏ ପ୍ରାଣଶକ୍ତି ସ୍ୱରୂପରେ,
ଏହାହିଁ ଆକାଶ ଶବ୍ଦ ଜଡ଼ର ଯେ ଗତି,
ଉଦ୍ଭିଦର ପ୍ରାଣକ୍ରିୟା ବୁଝ ହେ ସୁମତି ।
ଏହାକୁହିଁ ଜାଣ ପ୍ରାଣିରାଜ୍ୟେ ଜ୍ଞାନଶକ୍ତି,
ଏହି ପ୍ରାଣଶକ୍ତି ଜାଣ ଶେଷ ଅଭିବ୍ୟକ୍ତି ।
ସୃଷ୍ଟିମୂଳେ ଯାହା ହେଲା ଜ୍ଞାନର କଳ୍ପନା,
ସ୍ପନ୍ଦନ ସ୍ୱରୂପେ ଅଭିବ୍ୟକ୍ତ ଗଲା ଜଣା ।
ଏହି ପ୍ରାଣଶକ୍ତି ଅନୁକମ୍ପନ ରୂପରେ
ବିଶ୍ୱର ସମସ୍ତ କ୍ରିୟା ସମ୍ପାଦନ କରେ ।
ଏହି ପ୍ରାଣଶକ୍ତି—ଜୀବ ସୁଷୁପ୍ତି କାଳରେ
ଦୈହିକ ସକଳ କ୍ରିୟା ସମ୍ପାଦନ କରେ ।
ପ୍ରାଣଶକ୍ତି କ୍ରିୟା ବୁଝ ଜୀବର ଆୟତ୍ତ
ଜୀବର ଅଜ୍ଞାତେ କ୍ରିୟା କରେକ ସମସ୍ତ ।
ଦେହର ବର୍ଦ୍ଧନ କ୍ରିୟା ପୋଷଣ ଧାରଣ
ରସ ଶୋଣିତାଦି ଜୀବ ଦେହେ ସଞ୍ଚାଳନ ।
ଇନ୍ଦ୍ରିୟର ଅଧିଷ୍ଠାନ ସ୍ଥାନକୁ ନିର୍ମାଣ
ଏ ସମସ୍ତ ପ୍ରାଣଶକ୍ତି କାର୍ଯ୍ୟ ବୋଲି ଜାଣ ।
ଏହି ପ୍ରାଣଶକ୍ତି ଯୋଗେ ଇନ୍ଦ୍ରିୟାଦି ଶକ୍ତି
ପ୍ରାଦୁର୍ଭାବ ହୋଇଥାନ୍ତି, ଜାଣ ହେ ସୁମତି !
ପ୍ରାଣ ହିଁ ଆଦିତ୍ୟ ଅଗ୍ନ୍ୟାଦିର ଶକ୍ତି ରୂପେ
କ୍ରିୟା ସମ୍ପାଦନ କରେ, ଜାଣ ଏହିରୂପେ ।
ଜଡ଼ୀୟ ଦୈହିକ ସମୁଦାୟ କ୍ରିୟା ମୂଳେ
ପ୍ରାଣ ଅନୁକମ୍ପନର ଶକ୍ତି ଥାଏ ସ୍ଥୂଳେ ।
ବିବିଧ ପଦାର୍ଥମାନ ବିବିଧ ଆକାରେ
ପ୍ରାଣର ସଂହତାବସ୍ଥା ଯୋଗୁଁ ଧରିବାରେ ।
ଦେହ ଗୋଟି ପରିତ୍ୟାଗ କରେ ଯେବେ ପ୍ରାଣ,
ଇନ୍ଦ୍ରିୟ ସମସ୍ତ କ୍ରିୟା ଲୋପ ପାଏ ଜାଣ ।
ଦେହର ସମସ୍ତ ଶକ୍ତି ମରଣକାଳୀନ
ପ୍ରାଣଶକ୍ତି ମଧ୍ୟେ ହୋଇଥାଏ ଯେ ବିଲୀନ ।
ପ୍ରାଣବ୍ରହ୍ମ ଏ ଧାରଣା ରଖେ ଯେ ସମ୍ପାଦି,
ବୋଲନ୍ତି ସେ ମାନବକୁ ଲୋକେ 'ଅତିବାଦୀ ।'
ନାରଦ ଯେ ଶୁଣି ସନତ୍କୁମାର ବର୍ଣ୍ଣନା,
ପ୍ରାଣଶକ୍ତି ବ୍ରହ୍ମ ବୋଲି ଗଲା ତାଙ୍କୁ ଜଣା ।
ବିଚାରିଲେ ତହୁଁ ସନତ୍କୁମାର ମନରେ
ନାରଦ ଅଜ୍ଞାନ ବ୍ରହ୍ମତତ୍ତ୍ୱ ବିଷୟରେ ।
ଅଟନ୍ତି ଯେ ବ୍ରହ୍ମ ସର୍ବ ବିକାର ଅତୀତ
ନିତ୍ୟ, ସତ୍ୟ ଅବିନାଶୀ, ଆକାର ରହିତ ।
ପ୍ରାଣ ପରମାଣାତ୍ମକ ପୁଣି କ୍ଷୟଶୀଳ,
ବ୍ରହ୍ମ ଯେ ଅପରିଣାମୀ ସତ୍ୟ ଅନାବିଳ ।
ସମସ୍ତ ବିକାରାତୀତ ଅଟନ୍ତି ସେ ସତ୍ୟ,
ପରିଣାମୀ ଅନ୍ୟ ବସ୍ତୁ ଯାବନ୍ତ ଅସତ୍ୟ ।
ପରିଣାମୀ ପ୍ରାଣ ସଙ୍ଗେ ବ୍ରହ୍ମର ତୁଳନା
ହୋଇ ନ ପାରଇ କଦାଚିତ ସମ୍ଭାବନା ।
ପ୍ରାଣ ବ୍ରହ୍ମ ଆମ୍ଭେ ଏହା ବୋଲଅଛୁ ସତ୍ୟ,
ନାରଦ ବୁଝିଲେ ନାହିଁ ଏଥି ପୃଥକତ୍ୱ ।
ବ୍ରହ୍ମଶକ୍ତି ଉଦ୍‌ଭାସିତ ହେବା ଯୋଗୁଁ ଜ୍ଞାନେ
ପ୍ରାଣକୁ ଯେ ବ୍ରହ୍ମ ବୋଲି ଏହି ଅନୁମାନେ ।
ପ୍ରକୃତ ପକ୍ଷରେ ବ୍ରହ୍ମ ନୁହନ୍ତି ଯେ ପ୍ରାଣ
ଆଲୋଚନା କରି ସନତ୍କୁମାର ଏମାନ ।
ବୋଇଲେ ନାରଦେ ପୁଣି କରି ସମ୍ବୋଧନ
"ହେ ନାରଦ ! ବୋଲୁଁ ଶୁଣ ତତ୍ତ୍ୱ ବିବରଣ ।
ଯେଉଁ ଜ୍ଞାନାଲୋକ ସର୍ବ ବିକାର ଅତୀତ,
ନିତ୍ୟ ବ୍ରହ୍ମ ତଥା ଅଛି ବିଶେଷେ ବିଦିତ ।

ବିକାଶି ପଦାର୍ଥେ ସେହି ନ ଲଭେ ସନ୍ତୋଷ,
ଯେଣୁ କି ଅନିତ୍ୟ ବସ୍ତୁ ହୋଇଯାଏ ଧ୍ୱଂସ ।
ପରମ କାରଣଠାରୁ ପୃଥକ ଭାବରେ
ବିକାଶି ପଦାର୍ଥ ରହିବାକୁ ଯେ ନ ପାରେ ।
କେବଳ ଜାଣିବ ପରଂବ୍ରହ୍ମ ଯେ ସ୍ୱାଧୀନ,
ଯାବନ୍ତ ବିକାଶି ବସ୍ତୁ ତାହାଙ୍କ ଅଧୀନ ।
ବିକାଶି ପଦାର୍ଥ ବ୍ରହ୍ମ ସତ୍ତ୍ୱ ପରିଚୟ
ଦେଇଥାନ୍ତି—ଦେଖୁଛ ତ ପ୍ରତ୍ୟକ୍ଷ ବିଷୟ ।
ପୁଣି ବ୍ରହ୍ମବୋଧ ମାର୍ଗଦ୍ୱାର ସ୍ୱରୂପରେ
ଅଛନ୍ତି ବିକାଶି ଦ୍ରବ୍ୟ ସର୍ବ ଜଗତରେ ।
ବ୍ରହ୍ମଜ୍ଞାନ ଲଭିବାକୁ ଏମାନେ ହିଁ ପାଥ,
ଏମାନଙ୍କ ସତ୍ୟତା ଯେ ଆପେକ୍ଷିକ ମାତ୍ର ।
ବ୍ରହ୍ମ ହିଁ ପରମ ସତ୍ୟ ନିଶ୍ଚେ ଥିବ ଜାଣି,
ନିତ୍ୟ ବ୍ରହ୍ମଙ୍କୁ ଯେ ଜାଣେ ସେହି ମାତ୍ର ଜ୍ଞାନୀ ।
ବ୍ରହ୍ମଜ୍ଞାନ ଲଭିପାଇଁ ହୁଅ ଅଭିଳାଷୀ,
କାହୁଁ ସେ ଜାଣିବ ତତ୍ତ୍ୱ ଯେ ନୁହେ ପ୍ରତ୍ୟାଶୀ ।
ବ୍ରହ୍ମଙ୍କୁ ଯେ ଲୋକ କରେ ସତତ ମନନ
ସେହି ଲୋକ ଅଟେ ଜ୍ଞାନୀ ବ୍ରହ୍ମପରାୟଣ ।
ଆପଣା କର୍ତ୍ତବ୍ୟକ୍ରିୟା କରି ସମ୍ପାଦନ
ଭକ୍ତିରେ ଆଚାର୍ଯ୍ୟ ପାଶେ କରିବ ଗମନ ।
ଗୁରୁଙ୍କ ପାଶରେ ବସି ଶ୍ରଦ୍ଧାର ସହିତ,
ଜ୍ଞାନ ଶିକ୍ଷାପାଇଁ କର ଯତ୍ନ ଯଥୋଚିତ ।
କରନ୍ତି ମାନବେ ଯତ୍ନ ସୁଖ ଲଭିପାଇଁ,
ବ୍ରହ୍ମାନନ୍ଦ ବିନା ସୁଖ ଜଗତରେ ନାହିଁ ।
ସଚ୍ଚିତ ଆନନ୍ଦ ବ୍ରହ୍ମ ସର୍ବ ସୁଖାଧାର,
ଅନିତ୍ୟ ପଦାର୍ଥ ମାନେ ଜାଣିବ ଅସାର ।
ଅକ୍ଷୟ ଅବ୍ୟୟ ସୁଖ ଲଭ ଉଦ୍ଦେଶ୍ୟରେ
କରିବ ସକଳ କାର୍ଯ୍ୟ ବିଶେଷ ଭାବରେ ।
ମାତ୍ର ଦେଖି ପରିମିତ ସୁଖ ଲଭିପାଇଁ,
ଅଜ୍ଞଲୋକମାନେ ହେବା ଦିଶିଛନ୍ତି ଧାଇଁ,
ତୃଷ୍ଣାବୃଦ୍ଧି ହୁଏ ମାତ୍ର ଅନିତ୍ୟ ପଦାର୍ଥେ,
ନିତ୍ୟ ଭୂମାନନ୍ଦ ଲଭ ହୁଏ ପରମାର୍ଥେ ।

ଅନିତ୍ୟ ପଦାର୍ଥେ ତୃଷ୍ଣା ଦୁଃଖର କାରଣ,
ପରିତୃପ୍ତ ଆତ୍ମା—ଲଭେ ବ୍ରହ୍ମ ସନାତନ ।
ବ୍ୟାପ୍ତ ଯେବା ଜଗତର ପଦାର୍ଥ ଯାବନ୍ତ,
ତାହାହିଁ ଅଟନ୍ତି ଭୂମା ତାହାହିଁ ଅନନ୍ତ ।
ଜଡ଼ୀୟ ଇନ୍ଦ୍ରିୟ ଯୋଗେ ଯାହା ଅନୁମିତ
ଅଟେ ସେ ପଦାର୍ଥ ଅଳ୍ପ ପୁଣି ପରିମିତ ।
ଭୂମାପଦାର୍ଥକୁ ଜାଣ ଅସୀମ ଅମୃତ,
ବିକାଶି ପଦାର୍ଥ ମାତ୍ର ଅଳ୍ପ ପୁଣି ମର୍ତ୍ତ୍ୟ,
ଆତ୍ମମହିମାରେ ଭୂମା ନିତ୍ୟ ପ୍ରତିଷ୍ଠିତ,
ନୁହନ୍ତି ଅବିଦ୍ୟା ଯୋଗେ ସେହି ପରିଚିତ ।
ଯେକାଳେ ଅଦ୍ୱୈତ ବୋଧ ହୁଏ ପ୍ରତିଷ୍ଠିତ,
ଜଣାଯାଏ ତହୁଁ ବିଶ୍ୱ ବ୍ରହ୍ମେ ଆଚ୍ଛାଦିତ ।
ସେକାଳେ ମନରେ ହୁଏ ଏ ଭାବ ଉଦୟ,
ପଦାର୍ଥ ମାତ୍ରକେ ଦିଏ ବ୍ରହ୍ମ ପରିଚୟ ।
ବ୍ରହ୍ମମୟ ଏହି ବିଶ୍ୱ—ତେବେ ଜଣାଯାଏ,
ଆଉ କିଛି ନାମ ରୂପ ଅସ୍ତିତ୍ୱ ନ ଥାଏ ।
ମାନବ ମହିମା ପ୍ରତିଷ୍ଠିତ ଗୋ ଅଶ୍ୱରେ,
ପ୍ରଭୁପଣ ଯାଏ ଜଣା ଧନ ଐଶ୍ୱର୍ଯ୍ୟରେ ।
ବ୍ରହ୍ମଙ୍କ ମହତ୍ତ୍ୱ ଅନ୍ୟରୂପେ ପରିଚିତ,
ଆପଣା ଉପରେ ଥାନ୍ତି ନିତ୍ୟ ପ୍ରତିଷ୍ଠିତ ।
ଅନନ୍ତ ପରମବ୍ରହ୍ମ ସାନ୍ତ ପଦାର୍ଥରେ
ଓତପ୍ରୋତଭାବେ ରହିଥାନ୍ତି ନିରନ୍ତରେ ।
ପୂର୍ବେ ବା ପଶ୍ଚିମେ କିମ୍ବା ଦକ୍ଷିଣେ ଉତ୍ତରେ
ସର୍ବତ୍ର ସେ ବିଦ୍ୟମାନ ସମାନଭାବରେ ।
‘ମୁହିଁ’ ଏହି ଶବ୍ଦଟିର ଅଟଇ ଯେ ଅର୍ଥ,
ଜାଣିବ ତାହାକୁ ବ୍ରହ୍ମସ୍ୱରୂପ ପଦାର୍ଥ ।
ତେଣୁ ‘ମୁହିଁ’ ଊର୍ଦ୍ଧ୍ୱେ ନିମ୍ନେ ଦକ୍ଷିଣେ ଉତ୍ତରେ
ବିଦ୍ୟମାନ ରହିଅଛି ପୂର୍ବ ପଶ୍ଚିମରେ ।
ଏହି ଭୂମା ଚୈତନ୍ୟଙ୍କୁ ଆତ୍ମା ବୋଲି ଜାଣ,
ସେ ଆତ୍ମାପୁରୁଷ ସର୍ବସ୍ଥାନେ ବିଦ୍ୟମାନ ।
ଆତ୍ମା ନିରପେକ୍ଷଭାବେ ପୃଥକ୍‌ଭାବେ ସତ୍ତ୍ୱ,
ନାହିଁଟି କାହାର କ୍ରିୟାକଳାପ ଭିନ୍ନତା ।

ଏହିଭବେ ଯେଉଁ ଲୋକ ଆତ୍ମାକୁ ଯେ ଜାଣେ,
ପଦାର୍ଥ ମାତ୍ରକେ ଆତ୍ମରୂପ—ତାହା ଜ୍ଞାନେ,
ତାହାଙ୍କ ସମସ୍ତ ପ୍ରୀତି ଆତ୍ମାରେ ସ୍ଥାପିତ
ଜାଣନ୍ତି ସେ ବ୍ରହ୍ମ ବସ୍ତୁ ଆତ୍ମାରେ ଜଡ଼ିତ ।
କାମିନୀ-କାଞ୍ଚନେ ଅନୁରକ୍ତ ମୂର୍ଖଗଣ,
ସ୍ୱତନ୍ତ୍ର ଅଟଇ ଜ୍ଞାନୀଗଣ ଆଚରଣ ।
ପାର୍ଥିବ ସକଳ ଦ୍ରବ୍ୟ ତ୍ୟାଗେ ସେ ପ୍ରସ୍ତୁତ,
ତାଙ୍କ ସର୍ବ ପ୍ରୀତି ଆତ୍ମାରେ ହିଁ କେନ୍ଦ୍ରୀଭୂତ ।
ବିଷୟ ଆନନ୍ଦେ ରତ ଲୋକସାଧାରଣ,
ଜ୍ଞାନୀଏ କରନ୍ତି ମାତ୍ର ଆତ୍ମାରେ ରମଣ,
ଜ୍ଞାନୀଙ୍କ ଯାବତ ଥାଏ ଦେହ ବର୍ତ୍ତମାନ
ଭୁଞ୍ଜନ୍ତି ସେ ଇହଲୋକେ ସ୍ୱର୍ଗସୁଖମାନ ।
ଦେହତ୍ୟାଗେ ନୁହନ୍ତି ସେ ଆନନ୍ଦ ବିଚ୍ୟୁତ,
ଭୁଞ୍ଜନ୍ତି ସେ ଉତ୍ତରକାଳେ ଅତୁଳ ବିଭୂତି ।
ଦେହ ତେଜ ଲଭନ୍ତି ସେ ସ୍ୱାଧୀନତା ମୁକ୍ତି
ଦ୍ୱୈତ ବୋଧ ହେଲେ ଆତ୍ମା ନ ଭୁଞ୍ଜେ ବିଭୂତି ।
ପ୍ରୀତି ଯାର ବର୍ତ୍ତମାନ ବିକାଶୀ ପଦାର୍ଥେ
କେବେ ଜନ୍ମିବ ତାର ପ୍ରୀତି ପରମାର୍ଥେ ।
ଜଡ଼ୀୟ ପଦାର୍ଥ ପ୍ରତି ଧାବିତ ଯା ମନ,
ସେହି ଦ୍ରବ୍ୟ କରେ ତାର ଆତ୍ମା ଆକର୍ଷଣ ।
ନ ଲଭି ପାରଇ ସେହି ମୁକ୍ତି ସ୍ୱାଧୀନତା,
ନାରଦ ! ନିଶ୍ଚୟ ଜାଣିଥିବ ଏହି କଥା ।
ଏରୂପ ଅଦ୍ୱୈତ ଜ୍ଞାନ ଜନ୍ମିଛି ଯାହାର
ଜାଣିପାରେ ସେହି ଲୋକ ତତ୍ତ୍ୱଜ୍ଞାନ ସାର ।
ଆତ୍ମାରୁ ଉତ୍ପନ୍ନ ହୋଇ ଯାବନ୍ତ ପଦାର୍ଥ
ଆତ୍ମାରେ ବିଲୀନ ହୁଏ ଜାଣ ସେ ଯଥାର୍ଥ ।
ଅବୋଧ ମାନବେ ଜ୍ଞାନ କରନ୍ତି ଏସନ,
ଅନ୍ୟ ପଦାର୍ଥରୁ ହୁଏ ଆତ୍ମାର ଉତ୍ପନ୍ନ,
ଆତ୍ମାର ବିନାଶ ହୁଏ ଅନ୍ୟ ପଦାର୍ଥରେ
ଏ ଭାବ ଜନ୍ମଇ ତାର ସହଜ ଜ୍ଞାନରେ ।
ଆତ୍ମାରୁ ଜନ୍ମିଛି ପ୍ରାଣ ଜ୍ଞାନୀଏ ଜାଣନ୍ତି,
ଆତ୍ମାରୁ ଯେ ଜାତ ଆଶା ଆତ୍ମାରୁ ଯେ ସ୍ମୃତି
ଆତ୍ମାରୁ ଜନ୍ମିଛି ତେଜ ସଲିଳ ଆକାଶ,
ଆତ୍ମାରେ ସେ ସର୍ବ ପୁଣ ହୋଇଯିବ ନାଶ ।
ଆତ୍ମାରୁ ହିଁ ଜାତ ଧ୍ୟାନ ସଂକଳ୍ପ ବିଜ୍ଞାନ,
ଆତ୍ମାରୁ ଜନ୍ମିଛି ଚିତ୍ତ ବାକ୍ୟ ନାମ କର୍ମ ।
ଆତ୍ମାରୁ ଯେ ଜାତ ଇନ୍ଦ୍ରିୟଜ ସର୍ବ ଧର୍ମ ।
ବିଶେଷରେ ଏହି କଥା ଜାଣେ ଯେଉଁ ଲୋକ,
ଜାଣନ୍ତି ସେ ଆତ୍ମା ବ୍ରହ୍ମ ନୁହନ୍ତି ପୃଥକ ।
ସୁଖ ଦୁଃଖ ରୋଗ ତାପ ଜ୍ଞାନୀଙ୍କ ନେତ୍ରରେ
ଜଣାଯାଏ ସର୍ବ କଥା ସମାନ ଭାବରେ ।
ଦର୍ଶନ କରନ୍ତି ସର୍ବ ବସ୍ତୁ ସେ ଆତ୍ମାରେ,
କିଛି ହିଁ ଅପ୍ରାପ୍ତ ରହେ ନାହିଁ ତାଙ୍କଠାରେ ।
ଏକମାତ୍ର ଆତ୍ମା ଥିଲେ ସୃଷ୍ଟିର ପୂର୍ବରେ,
ସୃଷ୍ଟି ଅନ୍ତେ ଦୃଶ୍ୟ ହେଲେ ବିବିଧ ରୂପରେ ।
ଯେଉଁ ସମୟରେ ହେବ ପ୍ରଳୟ ଜଗତ,
ଆତ୍ମା ପୁଣି ହେବେ ଏକତ୍ୱରେ ପରିଣତ ।
ବିଷୟ ପାର୍ଥକ୍ୟ ବୋଧ ଅବିଦ୍ୟା ପ୍ରଧାନ
ବିଷୟ କାମନା ଆତ୍ମପ୍ରାପ୍ତ ବିଘ୍ନ ଜାଣ ।
ମନର ଅବିଦ୍ୟା କିମ୍ବା ବିଷୟ ବାସନା
ପରିତ୍ୟାଗ କଲେ ତତ୍ତ୍ୱଜ୍ଞାନ ଯାଏ ଜଣା ।
ଆତ୍ମପ୍ରାପ୍ତି ବିଘ୍ନ ଦୂର ହୁଏ ସେକାଳରେ,
ତତ୍ତ୍ୱଜ୍ଞାନ ମନେ ଉଦେ ହୁଏ ସହଜରେ ।
ମନ ମଧ୍ୟୁଁ ଦୂର କର ବିଷୟ କାମନା
ଅନୁଷ୍ଠାନ କଲେ, ବ୍ରହ୍ମପ୍ରାପ୍ତିର ବାସନା ।
ମନ ମଧ୍ୟୁଁ ମଳିନତା ହୋଇଯାଏ ଦୂର,
ଉଦୟ ସହଜେ ହୁଏ ସୁଜ୍ଞାନ ପ୍ରଚୁର ।
ବିଷୟ କାମନା ରାଗ ଦ୍ୱେଷରେ ଚାଳିତ
ସେହି ଚାଳନାରେ ମନ କର୍ମେ ନିୟୋଜିତ,
ସେହି କର୍ମ ଯେବେ ବ୍ରହ୍ମ ପ୍ରାପ୍ତି କାମନାରେ
ବିଚାଳିତ ହୁଏ—ମିଶି ପାରିବୁଁ ଆତ୍ମାରେ ।
ଅବିଦ୍ୟା ଓ କାମ କର୍ମ ତିନି ମଳିନତା ।
ଏ ଉପାୟେ ହୁଏ ଦୂର ବୁଝିବ ସର୍ବଥା,

ଅବିଦ୍ୟା କାମ ଓ କର୍ମ ହୃଦୟର ଗ୍ରନ୍ଥି,
ଅଟନ୍ତି ଯେ ବ୍ରହ୍ମ ପ୍ରାପ୍ତି ମାର୍ଗେ ପରିପନ୍ଥୀ ।
ଏ ହୃଦୟଗ୍ରନ୍ଥି ଯେବେ ହୁଏ ବିଦୂରିତ,
ସେ କାଳେ ବ୍ରହ୍ମାତ୍ମ ବୋଧ ହୁଏ ପ୍ରତିଷ୍ଠିତ ।
ଏହିରୂପେ କଲେ ଅନ୍ତଃକରଣ ବିଶୁଦ୍ଧ
ବିଶ୍ୱ ପ୍ରତିମୂର୍ତ୍ତି ହୁଏ ଅନ୍ୟ ରୂପେ ବୋଧ,
ପ୍ରତ୍ୟେକ ପଦାର୍ଥ ବ୍ରହ୍ମରୂପେ ଯାଏ ଜଣା,
ପ୍ରତି କର୍ମ କରେ ବ୍ରହ୍ମପ୍ରାପ୍ତିର ସୂଚନା ।
ସେ କାଳରେ ଶବ୍ଦ ସ୍ପର୍ଶ ଏ ବିଷୟ ସବି
ପୃଥକ ଭାବରେ ହୁଏ ନାହିଁ ଅନୁଭବ ।
ସହଜରେ ରାଗ ଦ୍ୱେଷ କାମନା ଗଳିତ,
ନ ହୁଅନ୍ତି ଲୁବ୍ଧ ଲୋଭ କ୍ରୋଧ ବିମୋହିତ ।
ସେ କାଳରେ ହୁଏ ଜ୍ଞାନ ବୈରାଗ୍ୟ ଅଭ୍ୟାସ,
ହୁଏ ଅନ୍ତଃକରଣରେ ଅବିଦ୍ୟା ବିନାଶ ।
ମନୁ ପଙ୍କିଳତା ଯେବେ ହୋଇ ଯାଏ ଦୂର,
ଅନ୍ତଃକରଣ ଯେ ହୁଏ ନିର୍ମଳ ରୁଚିର,
ବ୍ରହ୍ମ ପ୍ରତିବିମ୍ବ ତେବେ ନିର୍ମଳ ମନରେ,
ପଡ଼ଣ ଶବିତ ହୋଇଯାଏ ସହଜରେ ।
ସେହି ଚିତଗୋଟି ଅଟେ ଯେବଣ ଆକାର,
ଏହା ହିଁ ପ୍ରକୃତ ଜ୍ଞାନ ଜାଣ ସମାଗ୍ରର ।
ଲୋଡ଼ିଥିଲ ଯେଉଁ ଆତ୍ମବିଦ୍ୟା ଉପଦେଶ,
ଏହାହିଁ ସେ ବିଦ୍ୟା ବୋଲି ଜାଣିବ ବିଶେଷ,
ନିପୁଣ ଅଭ୍ୟାସ ଧ୍ୟାନ ବୈରାଗ୍ୟ ଯୋଗରେ,
ଏହି ବିଦ୍ୟା କର ଅନୁଶୀଳନ ମନରେ ।
ମନୁ ଦୂର ହୋଇଯିବ ଅବିଦ୍ୟାନ୍ଧକାର,
ସହଜେ ପାରିବ ଲଭି ଆନନ୍ଦ ଅପାର ।"
ନାରଦ-ମହର୍ଷି ସନତ୍କୁମାରଙ୍କଠାରୁ,
ଏହିରୂପେ ବ୍ରହ୍ମବିଦ୍ୟା ଶିକ୍ଷା କରିବାରୁ ।
ଆଲୋଚନା କରି ପୁଣ ହେଲେକ ନିପୁଣ,
ବୁଝିଲେ କି ବସ୍ତୁ ବ୍ରହ୍ମ ପଦାର୍ଥ ନିର୍ଗୁଣ ।

---

## ତୃତୀୟ ପରିଚ୍ଛେଦ

( ଇନ୍ଦ୍ର ବିରୋଚନ ସମ୍ବାଦ )

ପୁରାକାଳେ ଦେବରାଜ ସହସ୍ରଲୋଚନ,
ଅସୁରମାନଙ୍କ ଅଧୀଶ୍ୱର ବିରୋଚନ,
ବିମୀତ ଭାବରେ ଯାଇ ପ୍ରଜାପତି ପାଶେ,
ଉପସ୍ଥିତ—ବ୍ରହ୍ମବିଦ୍ୟା ଶିଖିବା ସକାଶେ ।
ଉଭୟ ପୋଷଣ କରି ମନେ ଧର୍ମବୁଦ୍ଧି,
ବ୍ରହ୍ମଚର୍ଯ୍ୟ ଯୋଗେ ପୁଣି କରି ଚିତ୍ତଶୁଦ୍ଧି ।
କଲେକ ପ୍ରଥମେ ବନ୍ଦି ବ୍ରହ୍ମାଙ୍କ ଚରଣ,
ଆପଣା ଆପଣା ଅଭିପ୍ରାୟ ନିବେଦନ ।
ବ୍ରହ୍ମ କି ପଦାର୍ଥ ? କିବା ଆତ୍ମାର ସ୍ୱରୂପ ?
ବୋଲିବା ହେଉନ୍ତୁ—ଜଣାଇଲେ ଏହିରୂପ—
ଆହେ ଭଗବାନ୍ ! ବୋଲି ଅଛନ୍ତି ପୂର୍ବରେ,
ଜରାବିରହିତ ଆତ୍ମା ଅବିଦ୍ଧ ପାପରେ ।
ମରଣ ଅତୀତ, କ୍ଷୁଧା ତୃଷ୍ଣା ବିରହିତ,
ସତ୍ୟକାମ, ସୁସଂକଳ୍ପ, ଶୋକବିରହିତ ।
ଏପରି ଆତ୍ମାକୁ କରିବାକୁ ଅନ୍ୱେଷଣ
ଆପଣଙ୍କ ସେ ଆଦେଶ କରିଣ ସ୍ମରଣ ।
ସେହି ଆତ୍ମତତ୍ତ୍ୱ କଥା ଜାଣିବା ସକାଶେ
ବର୍ତ୍ତମାନ ଉପସ୍ଥିତ ଆପଣଙ୍କ ପାଶେ ।
ଏ ଉଭୟ ଏ ପ୍ରକାର କରନ୍ତେ ବିନତି,
ବୋଲି ଆରମ୍ଭିଲେ ତହିଁ ଦେବ ପ୍ରଜାପତି ।
'ଶୁଣ ବୋଲନ୍ତି ଆହେ ଇନ୍ଦ୍ର, ଆହେ ବିରୋଚନ !
ସେହି ବ୍ରହ୍ମ ପଦାର୍ଥଙ୍କ ସବି ବିବରଣ ।
ଯେ ପୁରୁଷେ ଦେଖୁଅଛ ନେତ୍ରଅଭ୍ୟନ୍ତରେ,
ସେ ବ୍ରହ୍ମ ପଦାର୍ଥ ବୋଲି ଜାଣିବ ମନରେ
ବିଷୟବାସନା ସବି ତେଜି ଯୋଗୀବରେ,
ଇନ୍ଦ୍ରିୟବର୍ଗଙ୍କୁ ପୁଣି ରଖି ଆୟତ୍ତରେ
ବ୍ରହ୍ମପଦାର୍ଥଙ୍କୁ କରିଥାନ୍ତି ଅନ୍ୱେଷଣ
ସକଳ ପଦାର୍ଥଠାରୁ ସେହି ସାରଧନ ।

ଅବଗତ ହେଲେ ବ୍ରହ୍ମ ପଦାର୍ଥର ଭାବ
ବିଶ୍ୱର ସମସ୍ତ ବସ୍ତୁ ହୋଇ ପାରେ ଲଭ୍ୟ ।
ଯେ ଲୋକ ହୁଅନ୍ତି ଆତ୍ମତତ୍ତ୍ୱ ଅବଗତ
ସର୍ବ ଲୋକ ହୋଇଥାନ୍ତି ତାଙ୍କ ହସ୍ତଗତ ।
ସେ ବ୍ରହ୍ମ ପଦାର୍ଥ ଜାଣ ଅମୃତ ଅଭୟ,”
ଶୁଣିଲେ ଯେ ବିରୋଚନ ବାସବ ଉଭୟ ।
ମାତ୍ର ପ୍ରଜାପତି ଦେଲେ ଯେଉଁ ଉପଦେଶ
ଜାଣି ନ ପାରିଲେ ତହିଁ ମର୍ମାର୍ଥ ବିଶେଷ ।
ସେମାନେ ବିଚାରକଲେ ଏରୂପ ମନରେ,
ମନୁଷ୍ୟର ଛାୟା ଯାହା ପଡ଼ଇ ନେତ୍ରରେ ।
ସେହି ଛାୟା ଗୋଟି ବ୍ରହ୍ମ ପଦାର୍ଥ ଅଟନ୍ତି
ଏହା ବୁଝି ପୁଚ୍ଛା କଲେ—“ଆହେ ପ୍ରଜାପତି !
ପରିଷ୍କାର ଖଡ୍‌ଗେ ଜଳେ ମାନବର ଛାୟା
ପଡ଼େ ଯାହା, ଅଟେ ତେବେ ସେହି ବ୍ରହ୍ମକାୟା ?”
ଏହା ଶୁଣି ପ୍ରଜାପତି ବୋଇଲେ ବଚନ
“ନେତ୍ର ମଧ୍ୟେ ଥାଇ ଯେବା କରନ୍ତି ଦର୍ଶନ,
ସେ ବ୍ରହ୍ମ ପଦାର୍ଥ ବୋଲି ବୁଝିନ୍ତୁ ଉଭୟ,
ଅଟନ୍ତି ସେ ପରଂବ୍ରହ୍ମ ଅମୃତ ଅଭୟ ।”
ଇନ୍ଦ୍ର ବିରୋଚନ ଦୁହେଁ ବାକ୍ୟର ସଙ୍ଗତି
ବୁଝି ନ ପାରନ୍ତେ ତହୁଁ ଦେବ ପ୍ରଜାପତି ।
ଏକ ପାତ୍ରେ ଜଳ ରଖି ବୋଇଲେ ଉଭୟେ,
ଏ ଜଳରେ କି ଦେଖୁଛ ବୋଲ ଏ ସମୟେ ।
ବୋଇଲେ ଉଭୟେ ତେଣୁ ଆହେ ଭଗବାନ !
ଲୋମ ନଖ ଶ୍ମଶ୍ରୁ ସଙ୍ଗେ ନିଜ ମୂର୍ତ୍ତିମାନ ।
ପ୍ରତିବିମ୍ବ ପଡ଼ିଅଛି ଦେଖୁଛୁଁ ଜଳରେ,
ଏହି ଆତ୍ମ ପଦାର୍ଥ ଯେ ବୁଝୁଛୁଁ ମନରେ ।
ପୂର୍ବରୁ ଯେ ବୁଝିଥିଲେ ଇନ୍ଦ୍ର, ବିରୋଚନ,
ଅଟନ୍ତି ଯେ ପ୍ରତିବିମ୍ବ ଆତ୍ମାନାରାୟଣ ।
ତେଣୁ ଆପଣାର ଛାୟା ଦେଖି ବେନିଜନେ
ବହୁତ ସନ୍ତୋଷ ଲାଭ କଲେ ମନେ ମନେ ।
ପ୍ରଜାପତି ତହୁଁ ମନେ କଲେକ ବିଚାର,
ଏମାନଙ୍କ ହେଲା ନାହିଁ ଭ୍ରମ ପରିହାର ।
ବୋଇଲେ ପୁନଶ୍ଚ ବେନିଜନେ ପ୍ରଜାପତି,
“କର ଏହିପରି ଯାହା ବୋଲୁଛୁ ସମ୍ପ୍ରତି ।
କେଶ ଲୋମ ନଖ ଶ୍ମଶ୍ରୁ କରଣ ଛେଦନ
ପରିଧାନ କରି ଦିବ୍ୟ ବସନ ଭୂଷଣ ।
ଜଳ ମଧ୍ୟେ ପୁନର୍ବାର ଦେଖ ନିଜ କାୟ,”
ପ୍ରଜାପତିଙ୍କର ଥିଲା ଏହି ଅଭିପ୍ରାୟ ।
ବସନ ଭୂଷଣମାନ କରି ପରିଧାନ,
ଦେଖିଲେ ଜଳରେ ପ୍ରତିବିମ୍ବ ବର୍ତ୍ତମାନ ।
କରିବା ନିମନ୍ତେ ନଖ ଲୋମକୁ କର୍ତ୍ତନ
ହେଲା ସେହି କଥାଟିର ତାତ୍ପର୍ଯ୍ୟ ଏସନ—
ନଖ ଲୋମ ଯେତେବେଳେ ଥିଲା ଶରୀରରେ
ସେଥି ପ୍ରତିବିମ୍ବ ପଡ଼ିଥିଲା ଯେ ଜଳରେ ।
କର୍ତ୍ତନ ହୁଅନ୍ତେ ସେଥି ଛାୟା ପୁନର୍ବାର,
ନ ଆସିଲା ଜଳ ମଧ୍ୟେ ଆଉ ଦେଖିବାର ।
ଏଥିକୁ ସେମାନେ କରି ପାରିଲେ ଯେ ସ୍ଥିର
ନଖ ଲୋମ ସମାନରେ ଅସ୍ଥାୟୀ ଶରୀର ।
ଶରୀର ଅଥବା ପ୍ରତିବିମ୍ବ ଏ ଉଭୟ,
ନୁହନ୍ତି ଯେ ଆତ୍ମ ଜାଣ ଏକଥା ନିଶ୍ଚୟ,
କେବଳଟି ଏହା ନୁହେ ସୁଖ ଦୁଃଖମାନ,
ଅସ୍ଥାୟୀ ଶରୀର ସମ ନିଶ୍ଚେ ବୋଲି ଜାଣ ।
ପ୍ରଜାପତି ଆଲୋଚନା କରି ଏହା ମନେ,
ଉପଦେଶ ଦେଇଥିଲେ ଇନ୍ଦ୍ର ବିରୋଚନେ,
ନଖ ଲୋମ ଶ୍ମଶ୍ରୁ ଆଦି କରିଣ ଛେଦନ,
ପରିଧାନ କରି ପୁଣି ବସନ ଭୂଷଣ ।
ଜଳ ମଧ୍ୟେ ନିଜ ପ୍ରତିବିମ୍ବ ଦେଖିବାକୁ,
ସେହିପରି କରି ଦୁହେଁ ଅଇଲେ ସେଠାକୁ ।
ପ୍ରଜାପତି ଆଦେଶରେ ପୁଣି ବେନିଜନ,
ଜଳ ମଧ୍ୟେ ପ୍ରତିବିମ୍ବ କଲେକ ଦର୍ଶନ ।
ନଖ ଲୋମ ଶ୍ମଶ୍ରୁ ହୀନ ଆପଣା ଶରୀର,
ବସନ ଭୂଷଣେ ଯୁକ୍ତ ସୁନ୍ଦର ରୁଚିର,
ଦେହ ଅନୁରୂପ ଛାୟା ଦେଖିଣ ଜଳରେ,
ବିଚାର କଲେକ ଦୁହେଁ ଆପଣା ମନରେ ।

ଜଳସ୍ଥିତ ପ୍ରତିବିମ୍ବ ଆମ୍ଭମାନଙ୍କର,
ଅଟନ୍ତି ପରମ ଆତ୍ମା ଅଜର ଅମର ।
ଏହା ଦେଖି ପ୍ରଜାପତି ବୁଝିଲେ ସୁସ୍ପଷ୍ଟ,
ଏମାନଙ୍କ ମନୁ ଭ୍ରମ ହୋଇ ନାହିଁ ନଷ୍ଟ ।
ଏ ଉତ୍ତରେ ପ୍ରଜାପତି ବିଚାରିଲେ ମନେ,
ଉପଦେଶ ଦେବୁଁ ନାହିଁ ଆଉ ବେନି ଜନେ,
ଦେଖୁଅଛୁଁ ଏମାନେ ଯେ ନିତାନ୍ତ ନିର୍ବୋଧ ।
କେତେରୂପେ ହେଉ ନାହିଁ ଆତ୍ମଜ୍ଞାନ ବୋଧ ।
ମାତ୍ର କିଛି କାଳ ମନେ କଲେ ଆଲୋଚନା,
ଫଳିତ ଯେ ଆତ୍ମତତ୍ତ୍ୱ ଯିବ ତାଙ୍କୁ ଜଣା ।
ତେଣୁ ଦେଲେ ନାହିଁ ଆଉ କିଛି ଉପଦେଶ
ଉଭୟେ ବାହୁଡ଼ି ଗଲେ ନିଜ ନିଜ ଦେଶ ।
ବିରୋଚନ ବ୍ୟାଖ୍ୟା କଲେ ସ୍ୱଜାତି ମଧ୍ୟରେ,
ଦେହାତ୍ମା ବାଦର କଥା ବିଶେଷଭାବରେ ।
ଜଡ଼ ଅତିରିକ୍ତ ଆଉ ଚୈତନ୍ୟ ନାହାନ୍ତି,
ତାହାଙ୍କ ମନରେ ଯେଉଁ ଜନ୍ମିଥିଲା ଭ୍ରାନ୍ତି,
ଏହି ଭ୍ରାନ୍ତ ମତ କଲେ ବିଶେଷ ପ୍ରଚାର,
ଶରୀର ହିଁ ଆତ୍ମା ଏହି କଥା ବାରମ୍ବାର ।
ଦେହକୁ ବିଶେଷ ଯତ୍ନ କରିବା କର୍ତ୍ତବ୍ୟ,
ଇହ ପର ଦୁଇ କାଳେ ଲଭ ଶୁଭ ସର୍ବ ।
ବର୍ତ୍ତମାନ ମଧ୍ୟ ଲୋକ ଛନ୍ତି ଏପ୍ରକାର,
କରିଥାନ୍ତି ଏକାବେଳେ ଆତ୍ମା ଅସ୍ୱୀକାର ।
ଜଡ଼ ଅତିରିକ୍ତ ଆଉ ଆତ୍ମାର ଅସ୍ତିତ୍ୱ
ସ୍ୱୀକାର କରଣେ ତାଙ୍କ ବୁଦ୍ଧିର ଅକ୍ଷତ ।
ଦେହଟିକୁ ଆତ୍ମାଜ୍ଞାନ କରନ୍ତି ଯେମାନେ,
ସେମାନେ ଅସୁରଧର୍ମୀ ବୁଝ ଅନୁମାନେ ।
ଏଣେ ଇନ୍ଦ୍ର ବାହୁଡ଼ିବା କାଳେ ନିଜାଳୟେ
ପୁନ ପୁନ ଚିନ୍ତା କଲେ ଆପଣା ହୃଦୟେ,
ପ୍ରଜାପତି ଦେଇଥିଲେ ଯେଉଁ ଉପଦେଶ
ସେଥିରୁ ଏକାଂଶ ସତ୍ୟ ବୁଝିଲେ ବିଶେଷ ।
ଭାଳିଲେ ଯେ ମନ ମଧ୍ୟେ ଯେମନ୍ତ ଶରୀର
ବସନ ଭୂଷଣ ଯୁକ୍ତ ଦିଶଇ ରୁଚିର,
ସେଥି ପ୍ରତିବିମ୍ବ ପଡ଼ିଥାଏ ଯେ ଜଳରେ
ବସନ ଭୂଷଣ ଯେବେ ନ ଥାଏ ଦେହରେ,
ଦୁଇ ପ୍ରତିବିମ୍ବ ହେବ ପୃଥକ ପୃଥକ
ହସ୍ତ ପଦ ଛିନ୍ନ ଯେବେ କରେ କେହି ଲୋକ
ସେହିପରି ପ୍ରତିବିମ୍ବ ପଡ଼ିବ ଜଳରେ
ଦେହ ଯେବେ ନଷ୍ଟ ହୁଏ ଏକାବେଳକରେ ।
ଦେହ ସଙ୍ଗେ ପ୍ରତିବିମ୍ବ ହେବଟି ବିନଷ୍ଟ,
ଏଥିରୁ ବୃତ୍ତାନ୍ତ ଜଣାଯାଉଛି ସୁସ୍ପଷ୍ଟ ।
ନୁହନ୍ତି ଯେ ଆତ୍ମା—କେହି ଛାୟା ବା ଶରୀର,
ଯେଣୁ ଆତ୍ମା ଅବିନାଶୀ ଶୁଦ୍ଧ ସତ୍ତ୍ୱ ସ୍ଥିର ।
ଏତେକ ବିଚାରି ଇନ୍ଦ୍ର ଆପଣା ମନରେ
ଉପସ୍ଥିତ ହେଲେ ପ୍ରଜାପତିଙ୍କ ପାଶରେ ।
ଇନ୍ଦ୍ର ଯେଉଁ ଦୋଷ ଦେଖିଥିଲେଟି ଛାୟାରେ
ପ୍ରକାଶ କରିଣ ସବୁ ପ୍ରଜାପତିଠାରେ
ବ୍ରହ୍ମତତ୍ତ୍ୱ ଉପଦେଶ କଲେକ ପ୍ରାର୍ଥନା,
ଇନ୍ଦ୍ର ବାକ୍ୟ ଶୁଣି ପ୍ରଜାପତି ମହାମନା
ବୋଇଲେ ହେ ଇନ୍ଦ୍ର ତୁମ୍ଭେ ନ ମଣ ଆଶ୍ଚର୍ଯ୍ୟ,
ଆଉ କିଛିକାଳ ଯାଇ କର ବ୍ରହ୍ମଚର୍ଯ୍ୟ ।
ଇନ୍ଦ୍ର ତେଣୁ ବ୍ରହ୍ମଚର୍ଯ୍ୟ କରି ସମାପତ
ପ୍ରଜାପତିଠାରେ ଯାଇ ହେଲେ ସମାଗତ ।
ବୋଇଲେ ଯେ ପ୍ରଜାପତି ଶୁଣ ହେ ବାସବ
ନିଦ୍ରାରେ କରଟି ଯେଉଁ ସ୍ୱପ୍ନ ଅନୁଭବ ।
ସେହି ଅନୁଭବ କରେ ନାନା କ୍ରିୟାମାନ,
ତାହାକୁ ହିଁ ତୁମ୍ଭେ ବ୍ରହ୍ମଆତ୍ମା ବୋଲି ଜାଣ ।
ଅଟନ୍ତି ସେ ଆତ୍ମାବ୍ରହ୍ମ ଅମୃତ ଅଭୟ,
ଶୁଣି ଇନ୍ଦ୍ର ହେଲେ ଆନନ୍ଦିତ ଅତିଶୟ ।
ବାହୁଡ଼ିଲେ ଗୃହେ ଏହି ଉପଦେଶ ଶୁଣି,
ମାତ୍ର ମାର୍ଗେ ମନେ ଆଲୋଚନା କଲେ ପୁଣି ।
ହେଲେହେଁ ଦେହର ସ୍ୱପ୍ନ ପୁରୁଷ ଅଧୀନ
ମାତ୍ର ଯେବେ ଶରୀରଟି ହୁଏ ନେତ୍ରହୀନ ।
ସ୍ୱପ୍ନ ପୁରୁଷ ତ କରିଥାଏ କ୍ରିୟା ସବୁ
ପୁଣି କରିଥାଏ ସୁଖ ଦୁଃଖ ଅନୁଭବ

ସ୍ୱପ୍ନପୁରୁଷ ତ କେଭେ ହୁଏ ନାହିଁ ଅନ୍ଧ,
ପୁଣି ଅଛି ଦେହ ସଙ୍ଗେ ସ୍ୱତନ୍ତ୍ର ସମ୍ବନ୍ଧ ।
ଦେହ ନାଶେ ନୁହେ ସ୍ୱପ୍ନପୁରୁଷ ବିନାଶ,
ଦେଖୁଛୁ ଏଥିର ଅଛି ସ୍ୱତନ୍ତ୍ର ନିବାସ ।
ଦେହସ୍ଥିତ ଦୋଷ ଅବା ଅବସ୍ଥା ସହିତ
ଲିପ୍ତ ନୁହେ—ଏହା ମଧ୍ୟ ହୁଏ ଅନୁମିତ,
ଦେହର ବୃଦ୍ଧତ୍ୱ ଜରା ଅବା ବିକଳତା
ସହିତ—ସ୍ୱପ୍ନର ନାହିଁ କିଛି ହିଁ ଏକତା ।
ପୂର୍ବେ ଥିଲି ଜଣା ଦେହଗୋଟି ଦେଲେ ନାଶ
ତାହା ସଙ୍ଗେ ହୋଇଥାଏ ଗୁପ୍ତାର ବିନାଶ,
ମାତ୍ର ଏବେ ଦେଖୁଅଛୁ ଏ ସ୍ୱପ୍ନପୁରୁଷ,
ସହିତରେ ଅଛି ଏକ ଗୁରୁତର ଦୋଷ ।
ଶରୀର ଅବସ୍ଥାନ୍ତର ଏହି ସ୍ୱପ୍ନାତ୍ମାର
ନ ଘଟେ ଅବସ୍ଥାନ୍ତର ଆସେ ଦେଖିବାର ।
ମାତ୍ରକ ସ୍ୱପ୍ନାତ୍ମା କରେ କ୍ରିୟା ଆଚରଣ
ପୁତ୍ର ନଷ୍ଟ ଦୃଷ୍ଟେ କରେ ସ୍ୱପ୍ନାତ୍ମା କ୍ରନ୍ଦନ
ସୁଖ ଦୁଃଖ ଅନୁଭବ କରେଟି ବିସ୍ତର,
ପ୍ରଜାପତି ବୋଲିଛନ୍ତି—ଆତ୍ମାଟି ଅମର ।
ଅଶୋକ ଅଜର ଏହା ମଧ୍ୟ ବୋଲିଛନ୍ତି,
ସ୍ୱପ୍ନପୁରୁଷ ତ ଆତ୍ମା ନିଶ୍ଚୟ ନୁହନ୍ତି ।
ଏ ସବୁ ବିଚାରି କରି ବାସବ ମନରେ
ବାହୁଡ଼ି ମିଳିଲେ ପ୍ରଜାପତିଙ୍କ ପାଶରେ ।
ପ୍ରଜାପତି ବାସବଙ୍କୁ ଦେଖି ସମାସୀନ
ବୋଇଲେ ଯେ ବ୍ରହ୍ମଚର୍ଯ୍ୟ କର କିଛିଦିନ ।
ବ୍ରହ୍ମଚର୍ଯ୍ୟ ସାରି ପୁଣି ମିଳନ୍ତେ ଦେବେଶ
ପ୍ରଜାପତି ଦେଲେ ଏହିରୂପ ଉପଦେଶ ।
ଗାଢ଼ ସୁଷୁପ୍ତିରେ ବୈଷୟିକ ଜନ୍ୟ ଜ୍ଞାନ
ସେ ଆନନ୍ଦ ସମସ୍ତଙ୍କୁ ବ୍ରହ୍ମ ବୋଲି ଜାଣ ।
ନେତ୍ର ଯେ ଦେଖିଛୁ ଯାକୁ ସ୍ୱପ୍ନେ କ୍ରିୟାଶୀଳ,
ସୁଷୁପ୍ତି ସମୟେ ସେହି ଥାନ୍ତି ଅନାବିଳ ।
ସମ୍ପୂର୍ଣ୍ଣରେ ସତ୍‌ସ୍ୱରୂପେ ଥାନ୍ତି ବିଦ୍ୟମାନ
ଅଭୟ, ଅମୃତ ତାଙ୍କୁ ଆତ୍ମା ବୋଲି ଜାଣ ।

ପ୍ରଜାପତି ଉପଦେଶ ଶୁଣିଲେ ବାସବ
ମନରୁ ସଂଶୟ କିନ୍ତୁ ଗଲା ନାହିଁ ସବୁ,
ଦେଖିଲେ ବାସବ ଏଥି ମଧ୍ୟ ଅଛି ଦୋଷ,
ସୁଷୁପ୍ତି ଅବସ୍ଥା ବ୍ରହ୍ମ ନୁହନ୍ତି ଅବଶ୍ୟ ।
ସୁଷୁପ୍ତିକାଳରେ ସତ୍‌ସ୍ୱରୂପେ ବିଦ୍ୟମାନ
ଥାନ୍ତି—ତେବେ କିପାଁ ଜନ୍ମେ ନାହିଁ ଅହଂଜ୍ଞାନ ।
ଜାଗ୍ରତ ଅଥବା ସ୍ୱପ୍ନ ଅବସ୍ଥା ସମାନ
ସୁଷୁପ୍ତି କାଳରେ ଥାଏ ନାହିଁ ବସ୍ତୁଜ୍ଞାନ,
ସୁଷୁପ୍ତି କାଳରେ ଆତ୍ମା ହୁଏଟି ବିନଷ୍ଟ,
କିପାଇଁ ବୋଲିବୁ ନାହିଁ ଏ କଥା ସୁସ୍ପଷ୍ଟ ।
ଅଥଚ ଏ କଥା ବୋଲୁଛନ୍ତି ପ୍ରଜାପତି
ଆତ୍ମାଟି ଅମୃତ ଅବିନାଶୀ ସଦାଗତି ।
ଏତେକ ବିଚାରି ଇନ୍ଦ୍ର ପ୍ରଜାପତି ପାଶେ
ମିଳିଲେ ପୁନଶ୍ଚ ଶିକ୍ଷା ଲଭିବା ସକାଶେ ।
ହୁଅନ୍ତେ ବାହୁଡ଼ି ଇନ୍ଦ୍ର ପୁଣି ଉପସ୍ଥିତ,
ମନେ ମନେ ପ୍ରଜାପତି ହୋଇ ଆନନ୍ଦିତ ।
ବୋଇଲେ ସେ ପ୍ରଜାପତି ଆହେ ମଘବାନ
ତୁମ୍ଭ ଚିତ୍ତ ଶୁଦ୍ଧ ଅଳ୍ପ ଅବଶିଷ୍ଟ ଜାଣ ।
ଆଉ ଥୋକେ ଦିନ ଯେବେ କର ବ୍ରହ୍ମଚର୍ଯ୍ୟ
ତେବେ ତ ବୁଝିବ ବ୍ରହ୍ମ ବିଷୟ ଆଶ୍ଚର୍ଯ୍ୟ ।
ଇନ୍ଦ୍ର ପୁଣି କିଛିଦିନ ବ୍ରହ୍ମଚର୍ଯ୍ୟ କରି
ମିଳିଲେ ଯେ ପ୍ରଜାପତି ଆଦେଶ ସୁମରି
ବୋଇଲେ ଯେ ପ୍ରଜାପତି ଆହେ ମଘବାନ
ଆତ୍ମାର ବିନାଶ ନାହିଁ ନିଶ୍ଚେ ଏହା ଜାଣ ।
ଜନ୍ମ ମୃତ୍ୟୁ ଧର୍ମଶୀଳ ଅଟେ ଏ ଶରୀର,
ଜନ୍ମିଲେ ଅବଶ୍ୟ ମୃତ୍ୟୁ ନୁହେ ଏହା ଚିର ।
କେବଳ ଶରୀର ନୁହେ ଇନ୍ଦ୍ରିୟ ସହିତ
ଅନ୍ତଃକରଣ ଯେ ହେବ କାଳ କବଳିତ,
ଆତ୍ମା ନୁହେ—ଦେହ ମନ ଇନ୍ଦ୍ରିୟ ସମାନ,
ସମସ୍ତେ ଗଲେହେଁ ଆତ୍ମା ଥାନ୍ତି ବିଦ୍ୟମାନ ।
ଆତ୍ମାର—ଶରୀର ମନ ଇନ୍ଦ୍ରିୟ ସହିତ
ଭୋଗ ଅଧିଷ୍ଠାନରୂପେ ଥାନ୍ତି ଅବସ୍ଥିତ ।

ଏ ଆତ୍ମାର ଭୋଗ ପାଇଁ—ଜାଣିବା ନିଶ୍ଚିତ,
ତେଜ, ଅପ, ଅନ୍ନ ଯୋଗେ ଶରୀର ରଚିତ ।
ଆତ୍ମ ଚୈତନ୍ୟ ଯେ ଏହି ଶରୀର ମଧ୍ୟରେ
ଜୀବରୂପେ ଅବସ୍ଥିତ ଥାନ୍ତି ନିରନ୍ତରେ ।
ଆତ୍ମା ଯେ ନିରବୟବ ପୁଣି ଅଶରୀରୀ,
ଅଜ୍ଞାନତା ହେତୁ ବୋଲୁଁ ଆତ୍ମାକୁ ଶରୀରୀ ।
ବିଷୟ ସଂଯୋଗେ ସୁଖ ଦୁଃଖ ତାହା ଜାତ,
ଆତ୍ମାଟି ପ୍ରକୃତପକ୍ଷେ ନ ଭୁଞ୍ଜେ ନିତାନ୍ତ ।
ଆତ୍ମା ସୁଖୀ ଦୁଃଖୀ ବୋଲି ଯାଏ ଏହା ଜଣା,
ମାତ୍ରକ ଜାଣିବ ଏହା ଅବୋଧ କଳ୍ପନା ।
ଆମ୍ଭେମାନେ ଯାହା ବୋଲୁଁ ସୁଖ ଦୁଃଖ ପାତ୍ର
ମାତ୍ର ତାହା ଧର୍ମାଧର୍ମ ଫଳାଫଳ ମାତ୍ର ।
ଆତ୍ମାର ବିଶେଷ କିଛି ଧର୍ମାଧର୍ମ ନାହିଁ
ସୁଖ ଦୁଃଖଭୋଗ ଆତ୍ମା ବୋଲିବୁଁ କିପାଁଇ,
ନିର୍ମଳ ନିରବଚ୍ଛିନ୍ନ ଆନନ୍ଦକୁ ଜାଣ
ଆତ୍ମାର ପ୍ରକୃତ ରୂପ ବୋଲି କର ଜ୍ଞାନ ।
ବୈଷୟିକ ସୁଖ ଦୁଃଖ ସମ୍ପର୍ଣ୍ଣ ଯେ ବୋଧ
ଆତ୍ମାର ପ୍ରକୃତ ରୂପ ନୁହେ କର ବୋଧ ।
ବିଷୟ ସମ୍ବନ୍ଧ ହେଲେ ସଂଯୋଗ ବିଯୋଗ
ମନ ଓ ଇନ୍ଦ୍ରିୟ ସୁଖ ଦୁଃଖ କରେ ଭୋଗ ।
ସଂଯୋଗ ବିଯୋଗ ନାହିଁ ଆତ୍ମଚୈତନ୍ୟର
ସ୍ୱତନ୍ତ୍ରଭାବରେ ଥାନ୍ତି ଏହା ଜ୍ଞାନ କର ।
ଯେ ସମୟେ ପ୍ରକୃତରେ ଜନ୍ମେ ଆତ୍ମଜ୍ଞାନ
ସୁଖ ଦୁଃଖ ଅନୁଭୂତ ଥାଏ ନାହିଁ ଜାଣ ।
ପ୍ରତ୍ୟେକ ପଦାର୍ଥେ ଜାଣ ସେହି ଅବସ୍ଥାରେ
କେବଳ ଆନନ୍ଦ ଅନୁଭବ ହୋଇପାରେ ।
ଶରୀର ଇନ୍ଦ୍ରିୟ ଯେତେକାଳ ବିଦ୍ୟମାନ
ସୁଖ ଦୁଃଖ ଅନୁଭୂତ ତେତେକାଳ ଜାଣ ।
ସ୍ଥୂଳ ସୂକ୍ଷ୍ମ ଦେହ ନାଶ ଶରୀର ବିନାଶେ
ଆତ୍ମାର ସ୍ୱରୂପ ସେହି ସମୟେ ବିକାଶେ ।
ସେ କାଳରେ ବୈଷୟିକ ବିଶେଷ ବିଶେଷ,
ପ୍ରକାରର ସୁଖ ଦୁଃଖ ଥାଏ ନାହିଁ ଲେଶ ।
ନ ଥିଲେହେଁ ସୁଖ ଦୁଃଖ ଜ୍ଞାନ ସେ କାଳରେ
ଆତ୍ମାର ଯେ ଧ୍ୱଂସ ହୁଏ ନ ବୁଝ ମନରେ ।
ସୁଖ ଦୁଃଖ ଥାଏ ନାହିଁ ଏହା ବୋଲିବାର
ବୁଝି ହେବ ନାହିଁ ଏ କଥାର ଅର୍ଥ ସାର ।
ହେ ଇନ୍ଦ୍ର ! ମାନବଗଣ ଇନ୍ଦ୍ରିୟସଂଯୋଗରେ
କରନ୍ତି ଯେ କ୍ରିୟା ସମାପନ ସେ କାଳରେ
ସେଥି ଫଳସ୍ୱରୂପରେ ବିଶେଷ ବିଶେଷ,
ସୁଖ ଦୁଃଖ ଅନୁଭୂତ ଥାଏ ନାହିଁ ଲେଶ ।
ଏହି କଥା ମନ ମଧ୍ୟେ କରିବୁ ବିଚାର
ବିଶେଷ ବୃତ୍ତାନ୍ତ ଶୁଣ ବୋଲୁଁ ପୁନର୍ବାର,
ଏପ୍ରକାର ସୁଖ ଦୁଃଖ ବୁଝିବ ମନରେ
ପରିବର୍ତ୍ତନ ଯେ ଘଟିଥାଏ ନିରନ୍ତରେ ।
ସୁଖ ଦୁଃଖ ହୋଇଥାଏ ଉତ୍ପତ୍ତି ବିନାଶ
ପୁଣି ଜାଣ ରୂପାନ୍ତର ସ୍ୱରୂପେ ପ୍ରକାଶ ।
ନୁହନ୍ତି ଏମାନେ ଆତ୍ମାସ୍ୱରୂପ ସମାନେ
ଆତ୍ମାର ସ୍ୱରୂପ ନିତ୍ୟ ସତ୍ୟ ବୁଝ ଜ୍ଞାନେ ।
ସୁଖ ଦୁଃଖ ଯାହା କିଛି ଅଟେ ବୈଷୟିକ
ଜାଣ ଏହି ଆତ୍ମାଟିର ଆନନ୍ଦ ଆଂଶିକ
ସୂର୍ଯ୍ୟର ସ୍ୱରୂପ ବସ୍ତୁ କରିବା ପ୍ରକାଶ,
ପ୍ରକାଶିତ ଦ୍ରବ୍ୟ ନୁହେ ସୂର୍ଯ୍ୟର ବିକାଶ,
ଆତ୍ମାର ସ୍ୱରୂପ ତେହ୍ନେ ଆନନ୍ଦକୁ ଜାଣ
ମାତ୍ର ଆନନ୍ଦରୁ ହୁଏ ନାହିଁ ଆତ୍ମଜ୍ଞାନ ।
ବିଷୟିକ ସୁଖ ଦୁଃଖ ଦେଖୁଛୁ ଯାବନ୍ତ
ଆତ୍ମାନନ୍ଦ ଅନ୍ତର୍ଭୁକ୍ତ—ଜାଣିବ ଏମନ୍ତ ।
ବୈଷୟିକ ସୁଖ ଦୁଃଖ ଯେବା ଆତ୍ମଜ୍ଞାନ
କରିଥାଏ ସେ ଲୋକକୁ ଅନ୍ଧ—ବୋଲି ଜାଣ ।
ବୈଷୟିକ ସୁଖ ଦୁଃଖ ବ୍ରହ୍ମାନନ୍ଦ ଅଂଶ
ବୋଲି ଜାଣେ—ତାକୁ ଜ୍ଞାନୀ ବୋଲିବ ଅବଶ୍ୟ
ବୈଷୟିକ ସୁଖ ଦୁଃଖ ସ୍ୱତନ୍ତ୍ର ସ୍ୱାଧୀନ,
ଏପ୍ରକାର ବୁଝିବାର ଅଜ୍ଞତାର ଚିହ୍ନ ।
ଘଟାଦି ଅସ୍ତିତ୍ୱ ନାହିଁ ମୃତ୍ତିକା ବ୍ୟତୀତ
ବ୍ରହ୍ମାନନ୍ଦ ବିନା ନାହିଁ ସୁଖର ଅସ୍ତିତ୍ୱ,

ବୈଷୟିକ ସୁଖ ଦୁଃଖ ସମାନରେ ଜାଣ
ଶବ୍ଦ ସ୍ପର୍ଶ ରୂପ ରସ ବିଷୟ ବିଜ୍ଞାନ
ସମ୍ବନ୍ଧ ସକଳ ସଙ୍ଗେ ବ୍ରହ୍ମଙ୍କ ସହିତ
କିଛି ବସ୍ତୁ ନାହିଁ ପରଂବ୍ରହ୍ମଙ୍କ ବ୍ୟତୀତ ।
ବୈଷୟିକ ଜ୍ଞାନ ଅଛି ଯେତେକ ପ୍ରକାର
ସେ ଅଖଣ୍ଡ ଜ୍ଞାନ ସଙ୍ଗେ ସମ୍ବନ୍ଧ ତାହାର,
ଶବ୍ଦ ସ୍ପର୍ଶ ରସ ଗନ୍ଧ ସ୍ୱାଧୀନ ପୃଥକ
ଏ କଥା ଯେ ବୋଲେ ତାକୁ ମଣ ଅଜ୍ଞଲୋକ ।
ଏହୁଁ ବୁଝ ଶବ୍ଦ ସ୍ପର୍ଶ ବସ୍ତୁ ଯାହା କିଛି
ତାର ପରଂବ୍ରହ୍ମ ସଙ୍ଗେ ସମ୍ବନ୍ଧ ରହିଛି,
ପ୍ରତ୍ୟେକ କ୍ରିୟାରେ ପ୍ରତିଷ୍ଠିତ ବ୍ରହ୍ମଶକ୍ତି,
ଏ କଥା ଯେ ଜାଣେ ସେହି ସୁବୁଦ୍ଧି ସୁମତି ।
ସେ ଅଖଣ୍ଡ ନିତ୍ୟ ବ୍ରହ୍ମଶକ୍ତି ବ୍ରହ୍ମଜ୍ଞାନ
ପ୍ରତ୍ୟେକ କ୍ରିୟାରେ ପରିଚୟ ଦିଏ ଜାଣ ।
ସମସ୍ତ ବିଷୟ ସଂସ୍ପର୍ଶଜ ସୁଖ ଦୁଃଖ
ସ୍ୱାଧୀନ ଭାବରେ ଥାନ୍ତି—ମଣେ ଅଜ୍ଞଲୋକ ।
ପ୍ରକୃତ ଜ୍ଞାନୀର ନେତ୍ରେ ବିଷୟର ଚୟ
ପ୍ରତିଭାତ—ନିତ୍ୟ, ଶୁଦ୍ଧ, ପରମ ପବିତ୍ର
ବିଷୟ ସ୍ୱାଧୀନ ସତ୍ତା ଜ୍ଞାନୀ ଅସ୍ୱୀକାର
କରିଥାନ୍ତି,—ଯେଣୁ ବ୍ରହ୍ମ ସର୍ବମୂଳାଧାର ।
ବିଷୟ ମୂଳରେ ସର୍ବକାଳେ ସର୍ବସ୍ଥାନେ
ବ୍ରହ୍ମସତ୍ତା ଅନୁଭବ ଥାନ୍ତି ଜ୍ଞାନୀମାନେ,
ଏରୂପ ଜ୍ଞାନୀର ଜାଣ ସମସ୍ତ କାମନା
ଅଲବ୍‌ଧ ଅପୂର୍ଣ୍ଣ ରହେ ନାହିଁ ଅଛି ଜଣା ।
ଯେଣୁ ବ୍ରହ୍ମଠାରୁ ଭିନ୍ନଭାବେ ବିଷୟର
କାମନା କରନ୍ତି ନାହିଁ ସେହି ଜ୍ଞାନୀ ନର
ସେହି ମହାପୁରୁଷଙ୍କ ସମସ୍ତ କାମନା
ବ୍ରହ୍ମକାମନାର ଅନ୍ତର୍ଭୂତ ଅଛି ଜଣା ।
କେବଳ କଲେକ ବ୍ରହ୍ମପ୍ରାପ୍ତିର କାମନା
ସୁଲଭ ତାଠାରେ ସର୍ବ ବସ୍ତୁ ଅଛି ଜଣା ।
ଏପରି ପୁରୁଷ ବ୍ରହ୍ମଠାରୁ ଭିନ୍ନଭାବେ
ବିଷୟେ ଲୋଡ଼ନ୍ତି ନାହିଁ ପ୍ରକୃତ ପ୍ରସ୍ତାବେ ।

ନ ହେଲେକ ତେବେ ଅନ୍ତଃକରଣ ନିର୍ମଳ
ନ ହେଲେକ ସତ୍ତ୍ୱଗୁଣ ବିଶେଷେ ପ୍ରବଳ
ଶୁଦ୍ଧ ସତ୍ତ୍ୱ ଜ୍ଞାନଯୁକ୍ତ ନ ହେଲେ ମାନବ
କାମନା କରିବା ବ୍ରହ୍ମଶକ୍ତି ଅସମ୍ଭବ ।
ଯେଉଁମାନଙ୍କର ଚିତ୍ତ ନିତାନ୍ତ ନିର୍ମଳ,
ସେମାନେ କରନ୍ତି ବ୍ରହ୍ମ କାମନା କେବଳ ।
ବ୍ରହ୍ମବସ୍ତୁ ନିରପେକ୍ଷ ପୃଥକ ଅସ୍ତିତ୍ୱ
ବିଷୟ ନାହିଁଟି—ଏହା ଜାଣନ୍ତି ନିଶ୍ଚିତ ।
ବ୍ରହ୍ମ ବ୍ୟାପ୍ତ ଚରାଚର ଅଛି ତାଙ୍କୁ ଜଣା
କିପାଇଁ କରିବେ ଅନ୍ୟ ପଦାର୍ଥ କାମନା ।
ସର୍ବ ସ୍ଥାନେ ହେବା ଯୋଗୁଁ ବ୍ରହ୍ମ ଅନୁଭୂତ
ହୁଏ ତାଙ୍କ ସର୍ବ କାମନାର ପରିତୃପ୍ତି ।
ଜାଗ୍ରତ ସୁଷୁପ୍ତି ସ୍ୱପ୍ନ ସମସ୍ତ କାଳରେ
ଆତ୍ମା ଅବସ୍ଥିତ ଥାନ୍ତି ସମ୍ପୂର୍ଣ୍ଣଭାବରେ ।
ଜାଗ୍ରତାବସ୍ଥାରେ ବାହ୍ୟ ବିଷୟ ଯେ ସର୍ବ
ଇନ୍ଦ୍ରିୟ ଯୋଗରେ ଶବ୍ଦ ସ୍ପର୍ଶ ଅନୁଭବ
ହୋଇଥାଏ ଜାଣ ପୁଣି ସ୍ୱପ୍ନ ଅବସ୍ଥାରେ
ବାହ୍ୟଇନ୍ଦ୍ରିୟାଦି ଥାନ୍ତି ପ୍ରଶାନ୍ତ ଆକାରେ ।
ମାତ୍ରକ ବାସନାଯୁକ୍ତ ଯେ ଅନ୍ତଃକରଣ
ଜାଗ୍ରତାବସ୍ଥାରେ କରୁଥାଏ ସଞ୍ଚରଣ,
ଏଥିକୁ ବାସନାମୟ ବିବିଧ ବିଷୟ
ଅନୁଭବ ହୋଇଥାଏ ଏ କଥା ନିଶ୍ଚୟ ।
ଆହେ ଦେବରାଜ ଶୁଣ ସୁଷୁପ୍ତି କାଳରେ
ଅନ୍ତଃକରଣ ଯେ ଥାଏ ପ୍ରଶାନ୍ତ ଭାବରେ,
ମାତ୍ରକ ଥାଏଟି ପ୍ରାଣ ଶକ୍ତିର ବିନାଶ
ଏକାଳେ ହୁଏନି ନାହିଁ ଆତ୍ମାର ବିନାଶ ।
ଉପଶାନ୍ତ ଥାନ୍ତେ ଅନ୍ତଃକରଣ କେବଳ
ଜ୍ଞାନ ଅନୁଭୂତି ନୁହେ ବିଷୟ ସକଳ ।
ରହି ଯାଇଥାଏ ମାତ୍ର ସାଧାରଣ ଜ୍ଞାନ
ଏହିପରି ତିନି ଅବସ୍ଥାର କଥା ଜାଣ ।
ଆତ୍ମଚୈତନ୍ୟଙ୍କୁ ଜାଣ ଯାବନ୍ତ ପ୍ରକାର
ଜ୍ଞାନ, କ୍ରିୟା, ସୁଖ, ଦୁଃଖ, ସକଳ ଆଧାର ।

ଖଣ୍ଡଜ୍ଞାନ କ୍ରିୟା ସୁଖ ଦୁଃଖାଦି ବିଷୟ
ସେ ଅନନ୍ତ ଜ୍ଞାନ ଦେଇଥାଏ ପରିଚୟ ।
ସାଧାରଣ ଆଧାର ସେ ସୁଷୁପ୍ତି କାଳରେ,
ମାତ୍ର ଅବସ୍ଥିତ ରହିଥାନ୍ତି ଶରୀରରେ ।
ବିଶେଷତଃ ଅନୁଭୂତ ତାହା ଅନ୍ତର୍ହିତ
ରହିଯାଇଥାଏ ଜାଣ ଏ କଥା ନିଶ୍ଚିତ ।
ତେଣୁ ସେତେବେଳ ଦେହ ଇନ୍ଦ୍ରିୟାଦି ସର୍ବ
ରହିଥାଏ—ସୁଖ ଦୁଃଖ ହୁଏ ଅନୁଭବ ।
ଶରୀର ଇନ୍ଦ୍ରିୟ ଗାଢ଼ ସୁଷୁପ୍ତି କାଳରେ
ସ୍ଥିର ହୋଇ ରହିଥାନ୍ତି ବିଲୀନ ଭାବରେ ।
ତେଣୁ ସୁଖ ଦୁଃଖ କିଛି ଯାଏ ନାହିଁ ଜଣା,
ଯେଣୁ ସେ କାଳରେ ଥାଏ ବିଲୁପ୍ତ ଚେତନା
ଶରୀର ଥିଲେହେଁ ତିନ ଅବସ୍ଥା ସହିତ
ଆତ୍ମାପୁରୁଷ ଯେ ରହିଥାନ୍ତି ଅବସ୍ଥିତ
ଅଜ୍ଞାନତା ହେତୁ ବୋଲୁଁ ଆତ୍ମାକୁ ସଂସାରୀ
ପ୍ରକୃତ ପକ୍ଷରେ ସେହି ଥାନ୍ତି ନିରହାରୀ ।
ରଜ୍ଜୁରେ ସର୍ପର ଜ୍ଞାନ ଶୁକ୍ତିରେ ରଜତ
ଜ୍ଞାନ ଜନ୍ମେ—ବୁଦ୍ଧିଭ୍ରମ ଘଟଇ ଏମନ୍ତ ।
ଇନ୍ଦ୍ରିୟ କଳ୍ପିତ ଶବ୍ଦ ସ୍ପର୍ଶ ସୁଖ ଦୁଃଖ,
ଅନୁଭବ କରଥାଏ ବୁଦ୍ଧିଦୋଷେ ଲୋକ ।
ଇନ୍ଦ୍ରିୟମାନଙ୍କ ଜାଣ ସ୍ୱଭାବ ଅଦ୍ଭୁତ,
ବ୍ରହ୍ମ ସ୍ୱରୂପକୁ କରି ରଖନ୍ତି ଆବୃତ ।
ବ୍ରହ୍ମସ୍ୱରୂପକୁ ଶବ୍ଦ ସ୍ପର୍ଶରୁ ପୃଥକ
ଅଜ୍ଞାନପଣରେ ବୋଧ କରଥାଏ ଲୋକ,
ପ୍ରକୃତ ପକ୍ଷରେ ଶବ୍ଦ ସ୍ପର୍ଶାଦି ବିଷୟ
ଅଟନ୍ତି ପଦାର୍ଥ ସର୍ବ ଜାଣ ବ୍ରହ୍ମମୟ ।
ଆକାଶ ସ୍ୱରୂପ ଅଶରୀରୀ ଅବୟବ,
ପବନର ନାହିଁ କରି ପାର ଅନୁଭବ,
ମେଘ ବିଦ୍ୟୁତର ମଧ୍ୟ ବିଶେଷ ଆକାର
ନାହିଁ ଅନୁଭବ କରି ପାର ଏପ୍ରକାର;
ବର୍ଷଣାଦି ପ୍ରୟୋଜନ ହେଲେ ସମାଗତ
ଆକାଶେ ବିଲୀନ ହୋଇଯାନ୍ତି ସେ ସମସ୍ତ ।

ବର୍ଷଣାଦି ପ୍ରୟୋଜନ ସାଧନ ସକାଶେ
ସେମାନେ ଯେ ଆବିର୍ଭୂତ ହୁଅନ୍ତି ଆକାଶେ,
ଶୀତଋତୁ ଅବସାନେ ତପନ ଉତ୍ତାପେ
ପ୍ରବଳ ପବନ ବହେ ଝଟିକା ପ୍ରତାପେ,
ମେଘ ରୂପ ଧରେ ହସ୍ତୀ ପର୍ବତ ଆକାର,
ଚପଳା ଚମକି ଯାଉଥାଏ ବାରମ୍ବାର ।
ଏପ୍ରକାର ଯାଏ ଦେଖା ବରଷା କାଳରେ
ବରଷାନ୍ତେ ସର୍ବେ ମିଶି ଯାନ୍ତି ଆକାଶରେ ।
ଜୀବ ମଧ୍ୟ ସେହିପରି ସଂସାର ଦଶାରେ
ବୋଲେ ମୁଁ ଅମୁକ ମୋର ଆଳୟ ସେଠାରେ,
ଅମୁକର ପୁତ୍ର ମୁହିଁ, ମୋ ବୟସ ଏତେ
ଏ ପ୍ରକାର କଥା କହି ହେଉଥାଏ କେତେ ।
ମାତ୍ରକ ଜାଣିବ ଏହା ଅବିଦ୍ୟାର କାର୍ଯ୍ୟ,
ଅଜ୍ଞାନତା-ଫଳ ବୋଲି କର ମନେ ଧାର୍ଯ୍ୟ ।
ପ୍ରକୃତ ଅଦ୍ୱୈତ ଜ୍ଞାନ ହେଲେ ମନେ ଜାତ
ଆତ୍ମା ଦେହଧର୍ମୀ ନୁହେ ବୁଝେ ସେ ନିତାନ୍ତ ।
ମେଘ ଯଥା ଲୁପ୍ତ ହୁଏ ବର୍ଷା ଅବସାନେ,
ମରଣାନ୍ତେ ଜୀବ ତଥା ଯାଏ ବ୍ରହ୍ମସ୍ଥାନେ ।
ଉତ୍ତମ ପୁରୁଷ ବୋଲି ତାହାଙ୍କୁହି ଜାଣ,
ଜଡ଼ାତୀତ ଗୁଣାତୀତ ବୋଲି କର ଜ୍ଞାନ ।
ପୂର୍ବୋକ୍ତ ଲକ୍ଷ୍ମୀ ପୁରୁଷ ବା ସ୍ୱପ୍ନ ପୁରୁଷ
ମଧ୍ୟ ସେ ନୁହନ୍ତି ଜାଣ ସୁଷୁପ୍ତି ପୁରୁଷ,
ଉତ୍ତମ ପୁରୁଷ ଜାଣ ଅଟନ୍ତି ପୃଥକ,
ତାହାଙ୍କୁ ଯେ ଜାଣେ ସେହି ବିଶେଷଜ୍ଞ ଲୋକ ।
ପ୍ରକୃତରେ ଜ୍ଞାନଲାଭ କରେ ଯେ ମାନବ,
ତାହା ସଙ୍ଗେ ରହେ ନାହିଁ ଅବିଦ୍ୟା ସମ୍ଭବ ।
ଶରୀର ଇନ୍ଦ୍ରିୟ ସଙ୍ଗେ ଆତ୍ମାର ସମ୍ପର୍କ
ନ ରହେ—ସେ କାଳେ ଜୀବ—ମୁକ୍ତି ଲଭେ ଲୋକ
ସେକାଳେ ଜୀବର ଅନ୍ତଃକରଣ ବିଶୁଦ୍ଧ
ଦେହାଦିରେ ରହିପାରେ ନାହିଁ ଆତ୍ମବୋଧ,
ବିଷୟେ ପାର୍ଥକ୍ୟବୋଧ ହୁଏ ତିରୋହିତ,
ଏକାବେଳେ ହୋଇଯାଏ ପରିଶୁଦ୍ଧ ଚିତ୍ତ ।

ମଦ୍ୟପ ମାନବ ଯଥା ଉନ୍ମତ୍ତ କାଳରେ
ବୋଲଥାଏ କରଥାଏ ଯେତେକ କାର୍ଯ୍ୟରେ,
ନିଶା ଛାଡ଼ିଗଲେ ପୁଣି ପୂର୍ବର ବିଷୟ
ସମସ୍ତ ତାହାର ମନେ ନ ହୁଏ ଉଦୟ ।
ଅବିଦ୍ୟା ଅବସ୍ଥାରେ ଜୀବଗଣର ଯେସନେ
ବିଷୟ ସମ୍ପର୍କ ଅନୁଭବ ଥିଲା ମନେ,
ଛାଡ଼ଯାଏ ସେ ସମସ୍ତ ମୁକ୍ତଅବସ୍ଥାରେ,
ପରଂବ୍ରହ୍ମ ଅବସ୍ଥାନ ଦେଖେ ସର୍ବଠାରେ ।
ବ୍ରହ୍ମ ଅନୁଭୂତି ବିନା ଅନୁଭୂତି ଆନ
ଥାଏ ନାହିଁ ଅନୁଭୂତି ସେ କାଳରେ ଜାଣ,
ପଦାର୍ଥ ଅନ୍ତର ବୋଧ—ଦର୍ଶନ ଶ୍ରବଣ
କାମନା ପଦାର୍ଥାନ୍ତର—ଲେଡ଼େ ନାହିଁ ମନ,
ସେକାଳେ କାମନା ମାତ୍ର ବ୍ରହ୍ମବିଷୟିଣୀ,
ସେହି କାମନା ହିଁ ଜୀବ ଆନନ୍ଦଦାୟିନୀ,
ସେ କାଳରେ ହୁଏ ଦ୍ୱୈତବୋଧ ଅନ୍ତର୍ହିତ,
ଅଦ୍ୱୈତବୋଧ ଯେ ଏକାବେଳେ ପ୍ରତିଷ୍ଠିତ ।
ବିବିଧ ଐଶ୍ୱର୍ଯ୍ୟ ତେବେ ବିବିଧ ଲୋକରେ—
ବ୍ରହ୍ମଙ୍କ ବିଭୂତିରୂପେ ଉପଲବ୍ଧି କରେ,
କରିବା ନିମନ୍ତେ ଯଥା ରଥ ଆକର୍ଷଣ
ସଂଯୁକ୍ତ ନିଯୁକ୍ତ ରହିଥାନ୍ତି ଅଶ୍ୱଗଣ ।
ତେସନେ ଶରୀର ରଥେ—ଜୀବ କର୍ମଫଳ
ଭୋଗ ପାଇଁ—ଯୁକ୍ତ ମନ, ଇନ୍ଦ୍ରିୟ ସକଳ
ରାଜା ଯଥା ମନ୍ତ୍ରୀଗଣେ ରାଜ୍ୟ ଅଧିକାରେ
ନିଯୁକ୍ତ କରନ୍ତି—ଏହା ଆସେ ଦେଖିବାରେ,
କରନ୍ତି ଈଶ୍ୱର ତେହ୍ନେ ଜୀବଙ୍କୁ ପ୍ରସ୍ତୁତ
ଦର୍ଶନ ଶ୍ରବଣ ଆଦି ବ୍ୟାପାରେ ନିଯୁକ୍ତ ।
ଜୀବର ବିଜ୍ଞାନଶକ୍ତି (ମନ) ଭୋଗପାଇଁ,
କ୍ରିୟା ଶକ୍ତି (ପ୍ରାଣ) ଦୁଇ ଗୋଟି ଦେଖ ତହିଁ ।
ଆତ୍ମା ବା ଜୀବର ଏହି ଦୁଇ ଶକ୍ତି ଜାଣ,
ଇନ୍ଦ୍ରିୟାଦି ପ୍ରାଣଶକ୍ତି ଅଂଶ କର ଜ୍ଞାନ ।
ବ୍ରହ୍ମଚୈତନ୍ୟ ସେ ଚକ୍ଷୁ ଇନ୍ଦ୍ରିୟଯୋଗରେ
ଦର୍ଶନ କରନ୍ତି ରୂପ ଦେଖ ପ୍ରତ୍ୟକ୍ଷରେ ।

ତାହାଙ୍କ ଉପାଧି ଭୂତ ନୟନ ଇନ୍ଦ୍ରିୟ—
ରୂପ ଉପଲବ୍ଧି ଦ୍ୱାରରୂପେ କଥମିୟ,
ଏହିରୂପେ ଆନ ଆନ ଇନ୍ଦ୍ରିୟ ସକଳ
ବିଷୟର ଉପଲବ୍ଧି ସାଧନ୍ତି କେବଳ,
ଯେଉଁ ବସ୍ତୁ ଦେହେ ଥାଇ ଇନ୍ଦ୍ରିୟ ଯୋଗରେ
ବିଷୟର ଜ୍ଞାନ ଲଭୁଥାନ୍ତି ନିରନ୍ତରେ—
ତାହାଙ୍କୁ ଜାଣିବ ଜୀବ; ଇନ୍ଦ୍ରିୟ ସକଳ
ତାହାଙ୍କର ପ୍ରୟୋଜନ ସାଧନ୍ତି କେବଳ ।
ଗନ୍ଧବିଜ୍ଞାନର ପାଇଁ ଥାନ୍ତି ଘ୍ରାଣେନ୍ଦ୍ରିୟ,
ବାକ୍ୟ କ୍ରିୟା ସମ୍ପାଦନ ପାଇ ବାଗିନ୍ଦ୍ରିୟ,
ଶ୍ରବଣ ସାଧନ ପାଇଁ ଇନ୍ଦ୍ରିୟ ଶ୍ରବଣ,
ଚିନ୍ତାବିଦ୍ୟା ଯାର ସମ୍ପାଦନ ପାଇଁ ମନ,
ଆତ୍ମାର ସ୍ୱରୂପ ଜ୍ଞାନ ବୁଝ କଥା ସାର—
ଇନ୍ଦ୍ରିୟସକଳ ଜ୍ଞାନ ଉପଲବ୍ଧି ଦ୍ୱାର,
ଅନ୍ତଃକରଣର ବୃତ୍ତି ବିଶେଷରୂପରେ
ଇନ୍ଦ୍ରିୟସକଳ ରହିଅଛନ୍ତି ଦେହରେ ।
ଅନ୍ତଃକରଣ ହିଁ ତେବେ ହେଉଛି ଗୋଚର
ସଙ୍ଗହୀନ ଉଦାସୀନ ବ୍ରହ୍ମ ଚୈତନ୍ୟର,
ସକଳ ବିଷୟ ବୋଧ—ଅଟନ୍ତି କାରଣ,
କାର୍ଯ୍ୟ ନିର୍ବାହାର୍ଥେ ଇନ୍ଦ୍ରିୟର ପ୍ରୟୋଜନ ।
ସୂର୍ଯ୍ୟ ଯଥା କରିଥାନ୍ତି ବିକୀର୍ଣ୍ଣ ଆଲୋକ
ଚତୁର୍ଦ୍ଦିଗ, ଊର୍ଦ୍ଧ୍ୱ, ଅଧୋବ୍ୟାପୀ ସର୍ବଲୋକ
ଆଲୋକିତ ହୋଇଥାନ୍ତି, ଆଲୋକ ଯେ ଦାନ—
କରିଥାନ୍ତି ତାହାକୁହିଁ ସୂର୍ଯ୍ୟ ବୋଲି ଜାଣ ।
ଏହିଠାରୁଁ ଯାଏ ଜଣା ଏହି ତତ୍ତ୍ୱସାର
ସୂର୍ଯ୍ୟଙ୍କର କାର୍ଯ୍ୟ ଅଟେ ଆଲୋକ ଦେବାର,
ତେସନେ ଜାଣଇ ଯେବା ଅନ୍ତଃକରଣରେ
ଯାବତୀୟ ମନନାଦି ଜ୍ଞାନ ଲାଭ କରେ,
ଇନ୍ଦ୍ରିୟ ବିଷୟ ବୋଧ କରେ ଯେ କଳ୍ପନା
ଜ୍ଞାନ ସ୍ୱରୂପ ଯେ ଆତ୍ମା—ତାଙ୍କୁ ଯାଏ ଜଣା ।
ଦର୍ଶନ, ଶ୍ରବଣ ଆଦି-କ୍ରିୟାର ସାଧନ
ଇନ୍ଦ୍ରିୟ ସକଳେ କରିଥାନ୍ତି ସମ୍ପାଦନ,

କେବଳ ଆତ୍ମାରେ ସର୍ବ ଇନ୍ଦ୍ରିୟ ଗୃହୀତ
ଜ୍ଞାନ ରୂପ—ଶକ୍ତିରୂପ ହେଲେ ଅନୁମିତ
ଅନ୍ତଃକରଣ ଆତ୍ମାର ଦୈବ ଚକ୍ଷୁ ରୂପେ
କଥିତ ହୁଅନ୍ତି—କଥା ଜାଣ ଏହି ରୂପେ

ଯେଣୁ ମୁକ୍ତ ପୁରୁଷର ଯେ ଅନ୍ତଃକରଣ
ଶୁଦ୍ଧସତ୍ତ୍ୱମୟ ଏହା କର ନିରୂପଣ,
ରାଗ, ଦ୍ୱେଷ ଆଦି ମଳିନତା ବିରହିତ
ପୁଣି ସେ ତ୍ରିକାଳ ବ୍ୟାପ୍ତ ସ୍ୱରୂପେ କଥିତ,

ଶୁଦ୍ଧ ଅନ୍ତଃକରଣର ସମସ୍ତ କାମନା
ବ୍ରହ୍ମ ପଦାର୍ଥରେ କେନ୍ଦ୍ରୀଭୂତ ଯାଏ ଜଣା,
ବ୍ରହ୍ମବ୍ୟତିରିକ୍ତ ଜାଣ ଅନ୍ୟାନ୍ୟ ବିଷୟ
ସେ ଅନ୍ତଃକରଣ ମଧ୍ୟେ ନ ହୁଏ ଉଦୟ ।

ଯେ ମୁକ୍ତ ପୁରୁଷ ଲଭିଛନ୍ତି ଏହି ଭାବ
କରନ୍ତି ସେ ସର୍ବଲୋକ ସର୍ବ ଦ୍ରବ୍ୟ ଲାଭ ।
ସେ ଲୋକ ସର୍ବଭୂତାତ୍ମା ହୋଇଯାନ୍ତି ଜାଣ,
ବୋଇଲୁଁ ତୁମ୍ଭଙ୍କୁ ଆତ୍ମତତ୍ତ୍ୱ କଥାମାନ ।

ଆହେ ଇନ୍ଦ୍ର ! ହେଉ ତୁମ୍ଭ ମଙ୍ଗଳ ଅଶେଷ,
ଦେବଲୋକେ ଫେରିଯାଅ କରୁଛୁଁ ଆଦେଶ ।
ଏଥୁ ଅନ୍ତେ ଇନ୍ଦ୍ର ପ୍ରଜାପତି ଆଦେଶରେ
ବାହୁଡ଼ିଲେ ଦେବଲୋକେ ମନ ଆନନ୍ଦରେ ।

ପ୍ରଜାପତିଙ୍କ ପାଶେ ଆସିଥିଲେ ଦୁଇ ଜଣ
ସୁରପତି ଇନ୍ଦ୍ର, ଦୈତ୍ୟପତି ବିରୋଚନ ।
ବ୍ରହ୍ମତତ୍ତ୍ୱ ଜ୍ଞାତ ହେଲେ ଇନ୍ଦ୍ର ବଜ୍ରପାଣି,
ଦୈତ୍ୟପତି ବିରୋଚନ ନ ପାରିଲେ ଜାଣି ।

ଅସୁରସ୍ୱଭାବଯୁକ୍ତ ଯେଉଁ ଲୋକଗଣ
ଜାଣି ନ ପାରନ୍ତି ବ୍ରହ୍ମତତ୍ତ୍ୱ ବିବରଣ ।
ମାନବର ଆତ୍ମା ପରଂବ୍ରହ୍ମ ଅଂଶ ଭାବ
ବ୍ରହ୍ମଜ୍ଞାନ ନ ଜନ୍ମିଲେ ମୁକ୍ତି ନାହିଁ ଲଭ ।

ବ୍ରହ୍ମରୁ ଉତ୍ପନ୍ନ ଆତ୍ମା ବିଲୀନ ବ୍ରହ୍ମରେ,
ଅଳୀକ କାମନା ହେତୁ ଭ୍ରମେ ଜଗତରେ,
କାମନାକୁ ତେଜି ବ୍ରହ୍ମାଶ୍ରିତ ହେଲେ ଜୀବ,
ସେକାଳରେ ଜୀବଗୋଟି ହୁଏ ସଦାଶିବ
ଚିନ୍ତ ପରଂବ୍ରହ୍ମ ପଦ ହେ ଭ୍ରାତା ସକଳ,
(ବୋଲ ସର୍ବେ) ଓଁ ତତ୍‌ସତ୍ ବ୍ରହ୍ମ କୃପା ହି କେବଳଂ ।

---

## ଚତୁର୍ଥ ପରିଚ୍ଛେଦ

### ଜାନଶ୍ରୁତି ସମ୍ବାଦ

ଜାନଶ୍ରୁତି ନାମେ ଏକ ଥିଲେ ନରପତି,
ସତ୍ୟବାଦୀ ଦାନଶୀଳ ବ୍ରହ୍ମଜ୍ଞାନୀ ଯତି ।
ତାହାଙ୍କ ରାଜ୍ୟରେ ସର୍ବସ୍ଥାନେ ମାର୍ଗପାଶେ
ପାନ୍ଥଶାଳା ଥାପିଥିଲେ ପଥିକ ସକାଶେ ।
ପାନ୍ଥଶାଳା ପୂର୍ଣ୍ଣ ଥାଏ ଭୋଜନ ଦ୍ରବ୍ୟରେ,
ପଥିକେ ସେ ସର୍ବ ପାଉଥିଲେ ସହଜରେ ।
ଯେଉଁ ସ୍ଥାନେ ଯେକାଳରେ ପ୍ରବେଶ ପଥିକ,
ପାଏ ଭୋଜ୍ୟ ଦ୍ରବ୍ୟମାନ ପ୍ରାର୍ଥନା ଅଧିକ ।
ରାଜାଙ୍କ ସୁଖ୍ୟାତି ବ୍ୟାପିଗଲା ଭାରତରେ,
ଶୁଣାଯାଏ ଖ୍ୟାତି ପ୍ରତିଲୋକର ମୁଖରେ ।
କୁସୁମ ସୁଗନ୍ଧେ ଚତୁର୍ଦ୍ଦିଗ ସୁବାସିତ,
ତପନ ତାପରେ ଯଥା ପୃଥ୍ୱୀ ଆଲୋକିତ,
ପୃଥ୍ୱୀ ପରିବ୍ୟାପ୍ତ ହେଲା ରାଜା କୀର୍ତ୍ତିରାଶି-
ଗାୟନ କରନ୍ତି ସର୍ବ ଭୂଭାରତବାସୀ ।
ଜାନଶ୍ରୁତି ଏକଦିନ ରଜନୀ ଯୋଗରେ
ଦେଖିଲେ ଅଦ୍ଭୁତ ସ୍ୱପ୍ନ ଶୟନ କାଳରେ —
ଗୋଟିଏ ସୁନ୍ଦର ଜଳପୂର୍ଣ୍ଣ ସରୋବର
ତାହା କୂଳେ ଭ୍ରମୁଛନ୍ତି ରାଜା ଏକେଶ୍ୱର,
ପ୍ରବାହିତ ହେଉଅଛି ବାୟୁ ସୁଶୀତଳ,
ଦୁଗ୍ଧଧବଳ ଶୁକ୍ଳବର୍ଣ୍ଣ ହଂସ ଏକ ଦଳ
କାହୁଁ ଉଡ଼ି ଆସି ପଡ଼ିଗଲେ ସରୋବରେ,
ସନ୍ତରଣ କରୁଥାନ୍ତି ମନ ଆନନ୍ଦରେ ।

ସେଥି ମଧ୍ୟେ ଦୁଇଗୋଟି ହଂସ ପରସ୍ପରେ
କପୋପକଥନ ହେଉଥାନ୍ତି ଏରୂପରେ—
ଜାନଶ୍ରୁତି ଏହାପରି କଲେ ଅନୁମାନ
ବୋଲୁଛନ୍ତି ସେମାନେ ହେ ଏହି କଥାମାନ—
ଗୋଟିଏ ବୋଲୁଛି—ଜାନଶ୍ରୁତି ନରପତି
ପାନ୍ଥଶାଳା ଆଦି କେତେ କୀର୍ତ୍ତି କରିଛନ୍ତି,
ମାତ୍ରକ ଦରିଦ୍ର ରୈକ୍ୱ କୀର୍ତ୍ତି ମହିମାରେ
ରଜାଙ୍କର କୀର୍ତ୍ତି ସବୁ ତାଙ୍କି ଯାଇପାରେ ।
ଆଜ ଆଜ ଯେତେ ହଂସ ଥିଲେକ ସେ ଜଳେ
କଲେ ସେହି କଥା ଅନୁମୋଦନ ସକଳେ ।
ପରଦିନ ପ୍ରାତଃକାଳେ ରଜା ଜାନଶ୍ରୁତି
ବସିଛନ୍ତି—ବେଢ଼ିଛନ୍ତି ଅମାତ୍ୟ ପ୍ରଭୃତି ।
ବୋଇଲେ ନୃପତି ଶୁଣ ସଭାସଦଗଣେ,
ଯେ ବଚିତ୍ର କଥାମାନ ଦେଖିଲେ ସ୍ୱପନେ ।
ରୈକ୍ୱ ନାମେ ଲୋକ ରାଜ୍ୟେ ଅଛି କବା ନାହିଁ—
ସନ୍ଧାନ ଲେଉଡ଼ଲେ ଏହା ଜାଣିବାର ପାଇଁ ।
ବରଟିଲେ ଚର ଚହୁଁ ରାଜ୍ୟ ଚଉପାଶେ,
ରୈକ୍ୱ ନାମେ ଲୋକଟିକୁ ସନ୍ଧାନ ସକାଶେ
ଦୂତମାନେ କ୍ଳାନ୍ତ ହେଲେ ଖୋଜି ସ୍ଥାନ ସ୍ଥାନ,
କାହିଁ ନ ପାଇଲେ ମାତ୍ର ରୈକ୍ୱର ସନ୍ଧାନ ।
ଦେଖିଲା ସହସା ଏକ ଦୂତ ଦିନକରେ,
ଗୋଟିଏ ନିର୍ଜନ ଗ୍ରାମ ପଶ୍ଚିମଭାଗରେ,
ଥୋକାଏ ବଜ୍ରାଣି ଦେଇ ବାରସି କହାଣ
ଶକଟ ଗୋଟିଏ କରୁଅଛନ୍ତି ନିର୍ମାଣ ।
କଚାନ୍ତି କୁତ୍ସିତ ଚହୁଁ ଥିଲା ପୁରୁଷେକ,
ପରିଚୟ ହେଲା ତାହା ନାମ ଅଟେ ରୈକ୍ୱ ।
ବାହୁଡ଼ି ସେ ଦୂତ ରୈକ୍ୱ ଆକାର ପ୍ରକାର
ବୃତ୍ତାନ୍ତ ରଜାଙ୍କୁ ସବୁ ଦେଲା ସମାଚାର ।
ରଜା ନାନା ଉପହାର ସମ୍ପତ୍ତି ସହିତ
ସେ ରୈକ୍ୱ ପାଶରେ ଯାଇଁ ହେଲେ ଉପସ୍ଥିତ ।
ପ୍ରଥମରେ କରି ତାଙ୍କୁ ବିନୟ ଅନେକ
ପୁଚ୍ଛା କଲେ, ଆପଣଙ୍କ ନାମ କି ହେ ରୈକ୍ୱ ?

ଆପଣଙ୍କ ପାଇଁ ଉପହାର ନାନା ଧନ
ଆଣିଅଛି, କୃପା କରି କରନ୍ତୁ ଗ୍ରହଣ ।
ବୋଲନ୍ତୁ କଥାଏ ମୋତେ ଆହେ ମହାମନା ।
ଆପଣ କରନ୍ତି କେଉଁ ଦେବ ଉପାସନା ?
ମାତ୍ର ରୈକ୍ୱ କଲେ ମନ ମଧ୍ୟେ ଅନୁଭବ,
ରଜା କରୁଛନ୍ତି ଧନ ସକାଶେ ଗୌରବ ।
ବୋଇଲେ ସେ ଫେଡ଼, ଆହେ ଶୁଣନ୍ତୁ ରାଜନ ।
ଉପହାର ଦ୍ରବ୍ୟେ ମୋର ନାହିଁ ପ୍ରୟୋଜନ,
ଇଚ୍ଛା କଲେ ଏହା ସବ ନିଅ ବାହୁଡ଼ାଇ
ନ ହେବି ସନ୍ତୁଷ୍ଟ ଏହା ଉପହାର ପାଇ ।
ରଜା ଜାନଶ୍ରୁତି ଚହୁଁ ବିଷଣ୍ଣଚିତ୍ତରେ
ବାହୁଡ଼ିଲେ ଉପହାର ଦ୍ରବ୍ୟ ସହିତରେ ।
ମାତ୍ର ତାଙ୍କ ମନ ମଧ୍ୟେ ହେଲାକ ଧାରଣା—
ଅତ୍ୟନ୍ତ ଧାର୍ମିକ ଶ୍ରେଷ୍ଠ ରୈକ୍ୱ ମହାମନା ।
ସେ କାଳରେ ମଣୁଥିଲେ ଭାରତୀୟ ଲୋକ,
ବ୍ରହ୍ମବିଷୟକ ଚିନ୍ତା ଜୀବନର ଲକ୍ଷ୍ୟ ।
ଏଥିକୁ ସକଳ ଧାଉଁଥାନ୍ତି ଗୁରୁଠାକୁ,
ବ୍ରହ୍ମବିଷୟକ ଉପଦେଶ ପାଇବାକୁ ।
ଜାନଶ୍ରୁତି ରୈକ୍ୱ କଥା ନ ଗଲେ ପାସୋରି,
ସ୍ଥିର କଲେ ସ୍ୱପ୍ନ କଥା ଆଲୋଚନା କରି ।
ବିଶେଷରେ ରୈକ୍ୱ ଜଣେ ପରମ ଧାର୍ମିକ,
ସ୍ୱପନ ବୃତ୍ତାନ୍ତ କେଭେ ନୁହେଟି ଅଳୀକ ।
ବିଚାରିଲେ ରୈକ୍ୱ ଦୈବକୃତ ଉପଦେଷ୍ଟା,
ଯିବେ ତାଙ୍କ ପାଶେ କଲେ ପୁନର୍ବାର ଚେଷ୍ଟା ।
ଆନ ଦିନେ ଉପହାର ଦେଇ ଅଧିକରେ
ଗଲେ ରୈକ୍ୱ ପାଶେ—ନେଲେ କନ୍ୟାକୁ ସଙ୍ଗରେ ।
ଅତ୍ୟନ୍ତ ବିନୀତଭାବେ ରଜା ଜାନଶ୍ରୁତି
କଲେକ ରୈକ୍ୱକୁ ଯାଇ ନାନାରୂପ ସ୍ତୁତି ।
ବିଭା ଦେବେ କନ୍ୟାଟିକୁ ରୈକ୍ୱ ସହିତରେ,
ଏରୂପ ପ୍ରସ୍ତାବ ଗୋଟି କଲେ ବିନୟରେ ।
ଦେଖିଲେ ସେ ରୈକ୍ୱ ଶୁଣି ରଜାଙ୍କ ନନ୍ଦିନୀ,
ପରମାସୁନ୍ଦରୀ ଯଥା ଫୁଲ କମଳିନୀ ।

କମନୀୟ କାନ୍ତି ଲଜ୍ଜାଶୀଳତା ସହିତ
ଅଙ୍ଗନାର ଅଙ୍ଗ କରୁଅଛି ଆଲୋକିତ ।
ବିଶେଷ ଅଟନ୍ତି ରୈକ୍ୱ ଦରିଦ୍ର କୁତ୍ସିତ,
ଗୃହହୀନ ପୁଣି ଜ୍ଞାତି କୁଟୁମ୍ବରହିତ,
ଏ ସମସ୍ତ ଜାଣି ମଧ୍ୟ ଜାନଶ୍ରୁତିସୁତା
ଜନକ ଆଦେଶେ ହେଲେ ବିବାହେ ପ୍ରସ୍ତୁତା ।
ଏପ୍ରକାର ପୁଣି ଆତ୍ମତ୍ୟାଗର ଦୃଷ୍ଟାନ୍ତ
ପୃଥିବୀରେ ଦେଖିବାର ବିରଳ ନିତାନ୍ତ ।
ଦେଖି ରୈକ୍ୱ ରାଜପୁତ୍ରୀ ନିରଭିମାନ,
ରାଜାଙ୍କ ପ୍ରସ୍ତାବ କଲେ ନାହିଁ ପ୍ରତ୍ୟାଖ୍ୟାନ ।
ବ୍ରହ୍ମଙ୍କ ପ୍ରସଙ୍ଗ ଥିଲା ଯାହା ତାଙ୍କୁ ଜଣା,
ଆରମ୍ଭିଲେ ନରପତି ପାଶେ ତା ବର୍ଣ୍ଣନା;
ବୋଲି ଆରମ୍ଭିଲେ ରୈକ୍ୱ, ଆହେ ନରପତି !
ଜଗତ ମଧ୍ୟରେ ଯେତେ ଦ୍ରବ୍ୟ ଦେଖୁଛନ୍ତି—
ସମସ୍ତ ଦ୍ରବ୍ୟର ପରିଣାମ ନିଶ୍ଚେ ଜାଣ,
ଏକମାତ୍ର ପବମାନ ତିରୋଧାନ ସ୍ଥାନ ।
ସେହି ପବନକୁ ତେଣୁ ବୋଲିବ ସମ୍ବର୍ଗ,
ଯେଣୁ କି କରନ୍ତି ଗ୍ରାସ ବାୟୁ ଦ୍ରବ୍ୟ ବର୍ଗ ।
ପ୍ରଜ୍ୱଳିତ ଅଗ୍ନି ଯେବେ ହୁଏ ନିର୍ବାପିତ,
ଅବଶେଷେ ହୁଏ ସେହି ବାୟୁରେ ମିଳିତ ।
ଚନ୍ଦ୍ର, ସୂର୍ଯ୍ୟ, ଦୁହେଁ ଯେବେ ହେବେ ଅସ୍ତମିତ,
ପବନ ମଧ୍ୟରେ ହୋଇଯିବେ ଅନ୍ତର୍ହିତ ।
ଅଗ୍ନିର ଉତ୍ତାପେ ଜଳ ହେଲେ ବାଷ୍ପାକାର
ପବନରେ ପରିଣତ ଆସେ ଦେଖିବାର ।
ଚନ୍ଦ୍ର, ସୂର୍ଯ୍ୟ ଅସ୍ତ, ଅଗ୍ନି, ଜଳ ତିରୋଧାନ
ସମସ୍ତ ଚଳନାତ୍ମକ କ୍ରିୟା ବୋଲି ଜାଣ ।
ଚନ୍ଦ୍ର ସୂର୍ଯ୍ୟ, ଗ୍ରହ, ତାରା, ପ୍ରଳୟ କାଳରେ,
ପରିଣତ ହୋଇଯିବେ ତେଜୋସ୍ୱରୂପରେ ।
ସେହି ତେଜୋ ବାୟୁରୂପେ ହେବ ପରିଣତ,
ବାୟୁ ଯେ ସ୍ପନ୍ଦନାତ୍ମକ ଜାଣିବ ଏମନ୍ତ ।
ସ୍ପନ୍ଦନ-ଅବସ୍ଥାନ୍ତର ତେଜୋକୁ ଯେ ଜାଣ,
ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ତାରା, ଅଗ୍ନି, ଜଳମାନ
ସମସ୍ତ ସ୍ପନ୍ଦନାତ୍ମକ ବାୟୁ ପରିଣାମ,
ସ୍ପନ୍ଦନରୁ ଅବିର୍ଭୂତ ତେଜୋ ଜଳ ଗ୍ରାମ ।
ଇନ୍ଦ୍ରିୟ ଶକ୍ତିର ମାତ୍ର ତିରୋଧାନ ସ୍ଥାନ,
ଏକମାତ୍ର ପ୍ରାଣଶକ୍ତି—ନିଶ୍ଚେ ଏହା ଜାଣ ।
ଦେହର ସମସ୍ତ କ୍ରିୟା ଗ୍ରାସ କରେ ପ୍ରାଣ,
ଦୃଷ୍ଟାନ୍ତ ସ୍ୱରୂପ ଦେଖ ଏଥିର ପ୍ରମାଣ ।
ମାନବ ଯେକାଳେ ହୁଏ ନିଦ୍ରାର ଅଧୀନ,
ଇନ୍ଦ୍ରିୟର କ୍ରିୟା ହୁଏ ପ୍ରାଣରେ ବିଲୀନ ।
ଦେହର ସମସ୍ତ କ୍ରିୟା ମୂଳ ପ୍ରାଣଶକ୍ତି,
ତାହା ଯେ ସ୍ପନ୍ଦନାତ୍ମକ ବୁଝ ନରପତି ।
ସ୍ପନ୍ଦନର ତାରତମ୍ୟ ଚକ୍ଷୁରାଦି କ୍ରିୟା,
ପ୍ରାଦୁର୍ଭୂତ ହୋଇଥାଏ କଥା ଶନ୍ତ୍ରମୟା ।
ହେ ରାଜନ ! ଚକ୍ଷୁରାଦି ଇନ୍ଦ୍ରିୟ ସକଳ
ପ୍ରାଣର ଅବସ୍ଥାନ୍ତର ଜାଣିବ କେବଳ ।
ଆଧିଦୈବିକ ଯେ ବାୟୁ ଆଧ୍ୟାତ୍ମିକ ପ୍ରାଣ,
ଦୁଇଟି ସମ୍ବର୍ଗ ଏହା ନିଶ୍ଚେ ବୋଲି ଜାଣ ।
ସ୍ୱରୂପ ବିଚାରେ ଆଧିଦୈବିକ ପଦାର୍ଥ,
ସ୍ପନ୍ଦନ କ୍ରିୟାର ଅନ୍ତର୍ଭୁକ୍ତ ଯେ ଯଥାର୍ଥ ।
ଆଧ୍ୟାତ୍ମିକ, ଐନ୍ଦ୍ରିୟିକ କ୍ରିୟା ଯେ ସମସ୍ତ
ସ୍ପନ୍ଦନର ଅନ୍ତର୍ଭୁକ୍ତ ଜାଣିବ ଏମନ୍ତ ।
ଆଧିଦୈବିକ ଯେ ଆଧ୍ୟାତ୍ମିକ ବସ୍ତୁ ସର୍ବ
ସ୍ପନ୍ଦନର ଅନ୍ତର୍ଭୁକ୍ତ କର ଅନୁଭବ ।
ଆହେ ନରପତି ! ଜାଣ ସର୍ବ ବସ୍ତୁ କଥା
କ୍ରିୟାତ୍ମକ ସ୍ପନ୍ଦନର ଘନୀଭୂତ ବସ୍ଥା,
ସ୍ପନ୍ଦନ ଶକ୍ତିରୁ ତେଣୁ ବସ୍ତୁ ସମୁଦୟ
ଆତ୍ମଲାଭ କରିଛନ୍ତି ଏ କଥା ନିଶ୍ଚୟ ।
କୌଣସି ପଦାର୍ଥ ଭୂମି ସ୍ପନ୍ଦନରୁ ପୃଥକ
କରିନେବା ଚେଷ୍ଟା ସର୍ବ ଜାଣ ନିରର୍ଥକ ।
ସ୍ପନ୍ଦନରୁ ବ୍ୟତିରିକ୍ତ ଭାବକୁ ଗ୍ରହଣ
କରିବା କ୍ଷମତା ନାହିଁ ଜାଣିବେ ରାଜନ !
ଘଟଟି ମୃତ୍ତିକାମୟ ଜାଣ ମୃଦାତ୍ମକ,
ମୃତ୍ତିକାରୁ କରିବ କି ଘଟକୁ ପୃଥକ ?

କାରଣୁ ପୃଥକ କରି ନ ପାର କାର୍ଯ୍ୟକୁ,
କାର୍ଯ୍ୟ ଅନୁସରି ଯେଣୁ ଥାଏ କାରଣକୁ ।
ଆଧିଦୈବିକ ସେ ବାୟୁ ଆଧ୍ୟାତ୍ମିକ ପ୍ରାଣ
ଉଭୟେ ସ୍ପନ୍ଦନାତ୍ମକ ଉଭୟେ ସମାନ,
ଆଧ୍ୟାତ୍ମିକ ପୁଣି ଆଧିଦୈବିକ ପଦାର୍ଥ
ଏକ ସ୍ପନ୍ଦନରୁ ଜାତ ଜାଣିବ ଯଥାର୍ଥ ।
ସ୍ପନ୍ଦନ ହିଁ ନାନାଭାବେ ବିବିଧପ୍ରକାରେ
ଯାବନ୍ତ ପଦାର୍ଥମାନ ଅଭିବ୍ୟକ୍ତ କରେ,
ସେହି ସ୍ପନ୍ଦନକୁ ବ୍ରହ୍ମଶକ୍ତି ବୋଲି ଜାଣ,
ବ୍ରହ୍ମାତ୍ମଭାବରେ ପ୍ରତିଷ୍ଠିତ କରି ଜ୍ଞାନ ।
ନଚେତ୍ ବାହ୍ୟ ଅନ୍ତର ବାହ୍ୟ ପୃଥକ ପୃଥକ
ଅବିଦ୍ୟାର କାର୍ଯ୍ୟବଶେ ମଣିଥାନ୍ତି ଲୋକ ।
ସର୍ବଦ୍ରବ୍ୟେ ଦେଖି ବ୍ରହ୍ମ ସତ୍ୟହିଁ କେବଳ,
ସ୍ୱତନ୍ତ୍ର କରିବା ଜ୍ଞାନ ଅଜ୍ଞାନତା ଫଳ ।
ଏରୂପ ଏକାତ୍ମବୋଧ ଲାଭ କଲେ ଲୋକ
ଲାଭ କରେ ସହଜରେ ବିଜ୍ଞାନ ଆଲୋକ ।
ବିଷୟ ବୈରାଗ୍ୟବଳେ ବ୍ରହ୍ମଙ୍କ ଦର୍ଶନ
ସର୍ବସ୍ଥାନେ ସର୍ବକାଳେ କରେ ସେହି ଜନ ।
ହେ ରାଜନ ! ବୈଷୟିକ ପ୍ରବୃତ୍ତି ସମସ୍ତ
ବିଷୟପ୍ରାପ୍ତିର ପାଇଁ କାମନା ଯାବନ୍ତ ।
ଏ ସମସ୍ତ ଏକାବେଳେ କରି ପରିହାର
ବ୍ରହ୍ମବିଷୟିଣୀ କାମନାକୁ କର ସାର ।
ନଚେତ୍ ନ ହେବ ଦୂର ଅବିଦ୍ୟା କାମନା,
ନିଶ୍ଚୟ ଜାଣିବେ ଏହା ଆହେ ମହାମନା !
ମାନବ ଯାବନ୍ତ ବାହ୍ୟ ଅନ୍ତର ବିଷୟ
ବ୍ରହ୍ମଶକ୍ତିସ୍ୱରୂପରେ ପ୍ରକାଶ ନିଶ୍ଚୟ ।
ଏହି ସାରତତ୍ତ୍ୱ ମନେ ନ କଲେ ଧାରଣା
ଜାତ ହେବ ନାହିଁ ବ୍ରହ୍ମ ବିଷୟ କାମନା ।
ଏଥକୁ ସର୍ବଦା ପ୍ରତି ପଦାର୍ଥ ମଧ୍ୟରେ
ପ୍ରାଣଶକ୍ତି ବିକାଶ ଯେ ଜାଣିବ ମନରେ ।
ଏପ୍ରକାର କର ଯେବେ ଭାବନା ନିୟତ
ଭେଦଦୃଷ୍ଟି ଏକାବେଳେ ହେବ ଅପଗତ ।
ସହଜେ ଅଭେଦଦୃଷ୍ଟି ହେବ ପ୍ରତିଷ୍ଠିତ,
ଯେଣୁ କ ପଦାର୍ଥ ନାହିଁ ବ୍ରହ୍ମ ବିରହିତ ।
ବ୍ରହ୍ମ ଉପଲବ୍ଧି ଦ୍ୱାର ଇନ୍ଦ୍ରିୟ ସକଳ
ଇନ୍ଦ୍ରିୟରେ ସର୍ବ ଜ୍ଞାନ ଜନ୍ମଇ କେବଳ ।
ସକଳ ଇନ୍ଦ୍ରିୟ ଯୋଗେ ବାହ୍ୟବସ୍ତୁ ସର୍ବ
ଦର୍ଶନ ଏକାତ୍ମଭାବେ କରିବା କର୍ତ୍ତବ୍ୟ ।
ପ୍ରକାଶ କଲୁଁ କ ଯେଉଁ ସର୍ବ ବିବରଣ
ଏହାହିଁ ସଂବର୍ଗ ବିଦ୍ୟା ଜାଣିବେ ରାଜନ ।
ହେ ରାଜନ ଶୁଣ ବୋଲୁଁ ଆଖ୍ୟାୟିକା ଏକ
ଥିଲେ ଦୁଇ ଋଷି ଅଭିପ୍ରତାରୀ, ଶୌନକ;
ଏକଦା ଅତିଥି ଏକ ମିଳି ତାଙ୍କ ପାଶେ
ପ୍ରଶ୍ନ କଲା ବ୍ରହ୍ମତତ୍ତ୍ୱ ଜାଣିବା ସକାଶେ ।
କେ ଦେବତା ଛନ୍ତି ସର୍ବ ଭୁବନ ପାଳକ
ବିଶ୍ୱବ୍ରହ୍ମାଣ୍ଡର ସର୍ବ କାର୍ଯ୍ୟ ନିୟାମକ ?
ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନି, ଜଳ, ବାକ୍ୟ, ଚକ୍ଷୁ, ମନ
ସମସ୍ତଙ୍କୁ ସେ ଦେବତା କରନ୍ତି ଭକ୍ଷଣ,
ସେ ଦେବତା ଅବସ୍ଥିତ ବିବିଧ ଆକାରେ
ମାନବ ତାଙ୍କୁ ଜାଣିବାକୁ ନିବୋଧ ନ ପାରେ ।
ଅତିଥି ପ୍ରଶ୍ନରେ ଦେଲେ ଶୌନକ ଉତ୍ତର—
ଅଛନ୍ତି ଦେବତା ଏକ ବିଶ୍ୱପରାତ୍ପର ।
ଚନ୍ଦ୍ର, ସୂର୍ଯ୍ୟ, ଜଳ, ଅଗ୍ନି, ଚୃରି ଦେବତାଙ୍କୁ
କରନ୍ତି ସେ ଗ୍ରାସ ପୁଣି ସୃଜନ୍ତି ତାହାଙ୍କୁ ।
ସେ ଚୃରି ଦେବତା ପୁଣି ପ୍ରାଣ ସ୍ୱରୂପରେ
ଅବସ୍ଥିତ ରହିଛନ୍ତି ମାନବ ଦେହରେ ।
ଦେହର ସମସ୍ତ ଶକ୍ତି କରନ୍ତି ସେ ଗ୍ରାସ,
ସେମାନଙ୍କୁ ପୁନର୍ବାର କରନ୍ତି ପ୍ରକାଶ ।
ସେହି ମହାଦେବତାଙ୍କୁ ତତ୍ତ୍ୱଦର୍ଶିଗଣ
ମହାପରାକ୍ରମୀରୂପେ କରନ୍ତି ବର୍ଣ୍ଣନ ।
ସେ ଦେବତା ମହିମା ଯେ ଅସୀମ ଅନନ୍ତ,
ଭକ୍ଷଣ କରନ୍ତି ବିଶ୍ୱ ପଦାର୍ଥ ଯାବନ୍ତ,
କରନ୍ତି ସକଳ ସେହି ଭକ୍ଷଣ ସୃଜନ
କେହି କରି ନ ପାରଇ ତାହାଙ୍କୁ ଭକ୍ଷଣ ।

ସେ ଦେବତା ପ୍ରକାଶିତ ଅଗ୍ନ୍ୟାଦି ଆକାରେ
ଯାହା ବ୍ୟାପ୍ତ ରହିଛନ୍ତି ଏ ବିଶ୍ୱସଂସାରେ,
ଏକମାତ୍ର ଜାଣିବ ସେ ବିରାଟ ପୁରୁଷ,
ସୃଜକ ନାଶକ ସେହି ଈଶ୍ୱର ଆପୁଷ ।
ବୋଇଲେ ଯେ ରୈକ୍ୱ—ଆହେ ଶୁଣ ନରପତି
ଯେଉଁ ଆଖ୍ୟାୟିକା ଆମ୍ଭେ ବୋଇଲୁଁ ସମ୍ପ୍ରତି,
ଯେଉଁ ଦେବତାଙ୍କ କଥା କଲୁଁ କି ବର୍ଣ୍ଣନା,
ସେ ବିରାଟପୁରୁଷଙ୍କୁ କରୁଁ ଉପାସନା ।
ରାଜା ଜାନଶ୍ରୁତି ଶୁଣି ଏହି ଉପଦେଶ
ଆପଣାକୁ ମଣିଲେ ଯେ କୃତାର୍ଥ ବିଶେଷ,
ଆପଣା କନ୍ୟାକୁ କଲେ ରୈକ୍ୱଙ୍କୁ ପ୍ରଦାନ,
ଏକ ଜନପଦେ ନିବେଶିଲେ ବାସସ୍ଥାନ ।
ସେହି ଜନପଦ ଗୋଟି ଉତ୍ତରକାଳରେ
ରୈକ୍ୱପର୍ଣ୍ଣା ନାମେ ଖ୍ୟାତ ହେଲା ଜଗତରେ ।

———

## ପଞ୍ଚମ ପରିଚ୍ଛେଦ

### ବୈଶ୍ୱାନର ବିଦ୍ୟା

ଏକଦା ପ୍ରାଚୀନଶାଳ, ଇନ୍ଦ୍ରଦ୍ୟୁମ୍ନ, ଜନ,
ବୁଡ଼ିଲ ଓ ସତ୍ୟଯଜ୍ଞ ଗୃହୀ ପାଞ୍ଚଜଣ ।
ବିଶ୍ୱବ୍ୟାପୀ ଆତ୍ମାରୂପ ଜାଣିବା ସକାଶେ
ମିଳିଲେ ଅରୁଣ ପୁତ୍ର ଉଦ୍ଦାଳକ ପାଶେ ।
ବିଶ୍ୱବ୍ୟାପୀ ଆତ୍ମା ସମ୍ବନ୍ଧୀୟ ଆଲୋଚନା
କରୁଥିଲେ, ମାତ୍ର ଉଦ୍ଦାଳକ ମହାମନା
ସେ ସମ୍ବନ୍ଧେ ଜ୍ଞାନ ତାଙ୍କ ଜନ୍ମିଥିଲା ନାହିଁ,
ବୋଲି ନ ପାରିଲେ କିଛି କଥା ସେଥିପାଇଁ,
ମାତ୍ର ପରମ୍ପରା ଶୁଣିଥିଲେ ଉଦ୍ଦାଳକ
ଜନପଦ ଅଛି ଏକ କେକୟ ନାମକ,
କ୍ଷତ୍ରିୟ କୁଳରୁ ଜାତ ରାଜା ଅଶ୍ୱପତି
ଥିଲେ ସେହି ସୁବିଶାଳ ଦେଶେ ଅଧିପତି ।

ବ୍ରହ୍ମବିଦ୍ୟା ଭଲରୂପେ ଥିଲା ତାଙ୍କୁ ଜଣା,
ଏପ୍ରକାର ଲୋକମାନେ କରନ୍ତି କଳ୍ପନା ।
ଉଦ୍ଦାଳକ, ଗୃହୀ ପାଞ୍ଚ ଜଣଙ୍କ ସହିତ
ଅଶ୍ୱପତି ପାଶେ ଯାଇ ହୋଇଲେ ଉପସ୍ଥିତ ।
ରାଜା ସେମାନଙ୍କୁ ଦେଖି ପ୍ରଫୁଲ୍ଲ ହୃଦୟେ
ଯଥାବିଧି କଲେ ଅଭିବାଦନ ବିନୟେ,
ପ୍ରତ୍ୟେକ ଜଣଙ୍କୁ ଉପଯୁକ୍ତ ବାସସ୍ଥାନ
ଦେଇଥିଲେ ନାନାରୂପ ଖାଦ୍ୟ ଦ୍ରବ୍ୟମାନ ।
ସେକାଳରେ ଦେଶ ମଧ୍ୟେ ରାଜା ଅଶ୍ୱପତି
ଖ୍ୟାତି ଲଭିଥିଲେ ବୋଲି ସୁଶାସକ ଅତି ।
ତାହାଙ୍କ ଶାସନେ ରାଜ୍ୟବାସୀ ପ୍ରଜାଗଣ
କରୁଥିଲେ ମହାନନ୍ଦେ ଜୀବନ ଯାପନ,
ରାଜ୍ୟରେ ଅଧର୍ମାଶ୍ରୟୀ ଥିଲେ ନାହିଁ ଜଣେ,
ଉପଦ୍ରବ କରୁଥିଲେ ନାହିଁ ଦସ୍ୟୁଗଣେ,
ବ୍ୟବସାୟେ ପ୍ରଜାମାନେ ଥିଲେ ଧନବନ୍ତ,
ଥିଲେ ବର୍ଣ୍ଣ ଅନୁରୂପ ଆଶ୍ରମେ ନିରତ ।
ପରଦିନ ଅଶ୍ୱପତି ପରମ ଉଲ୍ଲାସେ
ଅତିଥିମାନଙ୍କୁ ଡାକି ଆଣି ନିଜ ପାଶେ,
ବିନମ୍ରଭାବରେ ପୁଚ୍ଛା କଲେ ସେମାନଙ୍କୁ,
କି ସକାଶେ, "ଆଗମନ ହେଲା ଏ ସ୍ଥାନକୁ ।"
ଅତିଥି ସକଳେ ଶୁଣି ରାଜାଙ୍କ ବଚନ
ଜଣାଇଲେ ତାଙ୍କ ଆଗମନର କାରଣ ।
ତେଣୁ ଅଶ୍ୱପତି କରି ବହୁତ ସମ୍ମାନ,
ପୁଚ୍ଛା କଲେ ଜଣ ଜଣ କରି କଥାମାନ ।
"ହେ ପ୍ରାଚୀନଶାଳ କର ଆପଣ ବର୍ଣ୍ଣନା,
କି ଭାବରେ ବ୍ରହ୍ମେ କରିଥାନ୍ତି ଉପାସନା ?
ବିସ୍ତାରି ବୋଲନ୍ତୁ ସବୁ ଆହେ ମହାମନା,
ବୋଲିବି ଚେଷ୍ଟାରେ ଥିବ ଯାହା ମୋତେ ଜଣା ।"
ବୋଇଲେ ପ୍ରାଚୀନଶାଳ---"ହେ ନରପାଳକ,
ପରଦୃଶ୍ୟମାନ ଯାହା ଦେଖୁଛ ଦ୍ୟୁଲୋକ,
ବ୍ରହ୍ମଜ୍ଞାନେ ତାଙ୍କୁ ନିତ୍ୟ କରେ ମୁଁ ଭାବନା,
ସେହି ବୈଶ୍ୱାନର ଆତ୍ମା ଆହେ ମହାମନା ।

ଏହା ଶୁଣି ଅଶ୍ୱପତି କଲେକ ବିଚାର,
ଏହାଙ୍କୁ ଅଜଣା ବୈଶ୍ୱାନର ସମାଚାର ।
ଅଭିବ୍ୟକ୍ତ ଯେବା ବିଶ୍ୱ ପ୍ରତି ପଦାର୍ଥରେ
ବ୍ରହ୍ମଶକ୍ତି ପ୍ରକାଶିତ ବିଶ୍ୱ ସ୍ୱରୂପରେ ।
ସମସ୍ତ ପଦାର୍ଥ କରିଛନ୍ତି ଆଚ୍ଛାଦିତ
ସେହି ବ୍ରହ୍ମ ବୈଶ୍ୱାନର ନାମେ ଅଭିହିତ ।
ଏହି ସ୍ଥୂଳ ବିଶ୍ୱ ବ୍ରହ୍ମ ବିରାଟ ସ୍ୱରୂପ
ମନରେ ବିଚାର ମଧ୍ୟ କରିବ ଏରୂପ ।
ବ୍ରହ୍ମଙ୍କର ସୃଷ୍ଟି ଶକ୍ତି ବିଶ୍ୱର ତାବତ
ସ୍ଥୂଳ ପଦାର୍ଥାକାରରେ ଅଛି ପରିଣତ,
ତାହାଙ୍କୁ ପୁରୁଷରୂପେ କଲେକ କଳ୍ପନା
ସୂର୍ଯ୍ୟ ଚନ୍ଦ୍ର ତାଙ୍କ ଦେହରୂପେ ଯିବ ଜଣା ।
ଏହି ବିଶ୍ୱବ୍ୟାପ୍ତ ପୁରୁଷଙ୍କୁ କର ଜ୍ଞାନ,
ମହାଦେବ ବୈଶ୍ୱାନର ବ୍ରହ୍ମ ଭଗବାନ ।
ମାତ୍ରକ ପ୍ରାଚୀନଶାଳ ଏକ ଅଂଶ ଧରି
ବୈଶ୍ୱାନର ବ୍ରହ୍ମରୂପ ଛନ୍ତି ଜ୍ଞାନ କରି
ବାସ୍ତବ ପକ୍ଷରେ ବିଶ୍ୱ ସମସ୍ତ ପଦାର୍ଥ
ବ୍ରହ୍ମଙ୍କ ବିରାଟରୂପ ଜାଣିବ ଯଥାର୍ଥ ।
ପଦାର୍ଥ ବିଶେଷ ବ୍ରହ୍ମ ନୁହନ୍ତି ନିଶ୍ଚୟ,
ମାତ୍ରକ ପଦାର୍ଥ ସର୍ବ ଅଟେ ବ୍ରହ୍ମମୟ ।
ପରଂବ୍ରହ୍ମ ସ୍ଥୂଳରୂପ ଅଟେ ଏହି ବିଶ୍ୱ,
ବୈଶ୍ୱାନର ପରଂବ୍ରହ୍ମ ସେହି ଜଗଦୀଶ ।
ବୋଇଲେ ସେ ଅଶ୍ୱପତି ହେ ପ୍ରାଚୀନଶାଳ !
ଏହି ଯେ ଦେଖୁଛି ବିଶ୍ୱ ବ୍ରହ୍ମାଣ୍ଡ ବିଶାଳ
ବ୍ରହ୍ମାଣ୍ଡର ଏକ ଅଂଶ ଜାଣନ୍ତୁ ଦ୍ୟୁଲୋକ,
ନିରନ୍ତର ବିଦ୍ୟମାନ ସେ ସ୍ଥାନେ ଆଲୋକ,
ସନ୍ତତ ତେଜରେ ଥିବା ସକାଶେ ପ୍ରଦୀପ୍ତ
ଦ୍ୟୁଲୋକେ ସୁତେଜା ନାମେ ତେଣୁ ଅଭିହିତ ।
ବ୍ରହ୍ମଙ୍କୁ ପୁରୁଷ ରୂପେ କଲେକ କଳ୍ପନା
ଦ୍ୟୁଲୋକ ମସ୍ତକ ସ୍ୱରୂପରେ ଯିବ ଜଣା ।
ଏଥିକୁ ଦ୍ୟୁଲୋକ ପରବ୍ରହ୍ମଙ୍କର ଅଂଶ,
ଏରୂପ ବିଚାର ମନେ କରିବ ଅବଶ୍ୟ ।

ଆଂଶିକ ସ୍ୱରୂପ ଯାହା ଅଟେ ଅଭିବ୍ୟକ୍ତ,
ତାହାକୁ ବୋଲୁଛ ତୁମ୍ଭେ ପୂର୍ଣ୍ଣ ବ୍ରହ୍ମଶକ୍ତି ।
ବୈଶ୍ୱାନର ପୁରୁଷଙ୍କ ଏକ ଅବୟବ
ଦ୍ୟୁଲୋକ, ଏପରି ମନେ କର ଅନୁଭବ ।
ଏପରି ଯେ ଲୋକ କରେ ଦ୍ୟୁଲୋକ ଭାବନା,
ଅନ୍ନାଭାବ ତାହା ଘରେ ଯାଏ ନାହିଁ ଜଣା ।
ଅପ୍ରିୟ ଘଟନା ତାହା ପକ୍ଷେ ଘଟେ ନାହିଁ,
ନିରତେ କରିବ ବ୍ରହ୍ମ ଧ୍ୟାନ ସେଥିପାଇଁ ।
ସତ୍ୟଯଜ୍ଞଙ୍କ ପୁଚ୍ଛା କଲେ ପୁଣି ଅଶ୍ୱପତି,
ପରଂବ୍ରହ୍ମ ଉପାସନା କି ଭାବେ କରନ୍ତି ?
ସେ କଥା ଆପଣ ମୋତେ ବୋଲନ୍ତୁ ବିସ୍ତାରି
ବୋଇଲେ ସେ ସତ୍ୟଯଜ୍ଞ ଆହେ ଦଣ୍ଡଧାରୀ ।
ପରିଦୃଶ୍ୟମାନ ଏହି ତପନ ଦେବଙ୍କୁ
ବୈଶ୍ୱାନରରୂପେ ଧ୍ୟାନ କରଇଁ ବ୍ରହ୍ମଙ୍କୁ ।
ବୋଇଲେ ନୃପତି ଶୁଣି ଆହେ ଜ୍ଞାନବାନ
ଅବୟବ ବିଶେଷକୁ କର ବ୍ରହ୍ମ ଜ୍ଞାନ ।
ଏ ସୂର୍ଯ୍ୟଙ୍କୁ ବହୁରୂପ ବୋଲିଥାନ୍ତି ଲୋକେ,
ନାନାବର୍ଣ୍ଣ ଦିଶେ ଯେଣୁ ଏହାର ଆଲୋକେ,
ବହୁରୂପାତ୍ମକ ସୂର୍ଯ୍ୟ ମଣନ୍ତୁ ଏରୂପ,
ବୈଶ୍ୱାନର ପୁରୁଷଙ୍କ ନୟନ ସ୍ୱରୂପ ।
ସ୍ଥୂଳରୂପେ ଅଭିବ୍ୟକ୍ତ ବ୍ରହ୍ମ ଅବୟବ,
ସୂର୍ଯ୍ୟ ଯେ ତାହାଙ୍କ ନେତ୍ର କର ଅନୁଭବ ।

× × ×

ଇନ୍ଦ୍ରଦ୍ୟୁମ୍ନ ଦେଲେ ରାଜା ପ୍ରଶ୍ନରେ ଉତ୍ତର,
ପବନଙ୍କୁ କରେ ଜ୍ଞାନ ବ୍ରହ୍ମ ବୈଶ୍ୱାନର ।
ବୋଇଲେ ନୃପତି, ଇନ୍ଦ୍ରଦ୍ୟୁମ୍ନ ଶୁଣ ଆଜ
ନାନାଦିଗ ସଞ୍ଚରଣଶୀଳ ଅଟେ ବାୟୁ ।
ବୈଶ୍ୱାନର ପୁରୁଷଙ୍କ ପ୍ରାଣରୂପେ ଜାଣ
ଏପରି ମନରେ କରି ପାରିବ କଳ୍ପନା
ଏହା ମଧ୍ୟ ବ୍ରହ୍ମସ୍ଥୂଳ ବିକାଶ ଆଂଶିକ
ପୂର୍ଣ୍ଣବ୍ରହ୍ମ ନୁହେ ବାୟୁ କଥା ପ୍ରାମାଣିକ ।

× × ×

ବୋଇଲେ ବ୍ରାହ୍ମଣ, ଜନ କର ଅବଧାନ,
ଆକାଶକୁ ବୈଶ୍ୱାନର ରୂପେ କରେଁ ଧ୍ୟାନ ।
ବୋଇଲେ ନୃପତି ତୁମ୍ଭ ଭ୍ରମହିଁ କେବଳ
ବ୍ୟାପ୍ତି ଗୁଣାତ୍ମକ ଏହି ଆକାଶମଣ୍ଡଳ,
ବୈଶ୍ୱାନର ପୁରୁଷଙ୍କ ଶରୀର କଳ୍ପନା
କରି ପାର—ଉଲରୂପେ ଅଛି ଏହା ଜଣା,
ଅଂଶକୁ ସମ୍ପୂର୍ଣ୍ଣରୂପେ କରିବା ବିଗ୍ରହ,
ନିଶ୍ଚୟ ଜାଣିବ ଏହା ବୁଦ୍ଧିର ବିକାର ।
× × ×
ବୋଇଲେ ବୁଡ଼ିଲ, ଆହେ ଶୁଣ ନରବର,
ଜଳକୁ ମୁଁ ଜ୍ଞାନ କରେ ବ୍ରହ୍ମବୈଶ୍ୱାନର ।
ବୋଇଲେ ନୃପତି—ଜଳୁଁ ହୁଏ ଅନ୍ନ ଜାତ,
ଅନ୍ନରୁ ଐଶ୍ୱର୍ଯ୍ୟ ଜାତ ଜାଣିବ ନିତାନ୍ତ,
ଐଶ୍ୱର୍ଯ୍ୟ ଯେ ଜଳ ଗୁଣ ବୁଝି ଅନ୍ୟମାନେ,
ଅବଗତ ଛନ୍ତି ଏହା ତତ୍ତ୍ୱଦର୍ଶୀମାନେ
ଯାବତୀୟ ଐଶ୍ୱର୍ଯ୍ୟର ହେତୁଭୂତ ଜଳ
ତଥାପି ନୁହେ ସେ ବ୍ରହ୍ମସ୍ୱରୂପ କେବଳ ।
ବ୍ରହ୍ମଙ୍କୁ ପୁରୁଷରୂପେ କଲେକ କଳ୍ପନା
ଜଳକୁ ଯେ ମୂତ୍ରାଶୟରୂପେ ଯିବ ଜଣା ।
ଅଂଶିକ ବିକାଶ ମାତ୍ର ଅଟେ ଏହି ଜଳ
ଧ୍ୟାନ କରିପାର ତୁମ୍ଭେ ସ୍ୱରୂପ କେବଳ ।
× × ×
ବୋଇଲେ ଅରୁଣ ପୁତ୍ର ଆରୁଣି ବ୍ରାହ୍ମଣ,
ବ୍ରହ୍ମଙ୍କୁ ଯେରୂପ ଭାବେ ଶୁଣନ୍ତୁ ରାଜନ ।
ପୃଥିବୀ ଅଟନ୍ତି ପରଂବ୍ରହ୍ମ ବୈଶ୍ୱାନର,
ଅଶ୍ୱପତି ଶୁଣି ଦେଲେ ସେଥିର ଉତ୍ତର ।
ଆପଣଙ୍କ ଜନ୍ମି ନାହିଁ ବିଶେଷରେ ଜ୍ଞାନ,
ପୃଥିବୀ ଅଟନ୍ତି ସମସ୍ତଙ୍କ ବାସସ୍ଥାନ,
ସମସ୍ତ ଆଶ୍ରୟଭୂତ ଅଛି ଏହା ଜଣା,
ବୈଶ୍ୱାନର ପୁରୁଷଙ୍କ ପାଦରେ କଳ୍ପନା,
ବିରାଟ ପୁରୁଷଙ୍କର ଏକ ଅବୟବ,
ପୂର୍ଣ୍ଣରୂପ ନୁହଇଟି କର ଅନୁଭବ ।

ଏଥିକି ବିଗ୍ରହ କରୁଅଛ ଅନ୍ୟମାନେ,
ବିରାଟପୁରୁଷେ ଜାଣିନାହିଁ ତୁମ୍ଭେମାନେ ।
ବିରାଟ ପୁରୁଷ ଏକ ଏକ ଅବୟବେ
ପୂର୍ଣ୍ଣ ବୋଲି ବୁଝିଅଛ ତୁମ୍ଭେମାନେ ସର୍ବେ,
ଏ ବିଶ୍ୱବ୍ରହ୍ମାଣ୍ଡ ତାଙ୍କ ଶ୍ରେଷ୍ଠ ଅଭିବ୍ୟକ୍ତି,
ପୃଥିବ୍ୟାଦି ତାଙ୍କ ଏକ ଏକ ଅଙ୍ଗଶକ୍ତି,
ଏକ ଏକ ଅଙ୍ଗ ଧରି ସମ୍ପୂର୍ଣ୍ଣ କଳ୍ପନା
କରିବାର ନୁହଇଟି ଯୁକ୍ତି ବିବେଚନା
ତତ୍ତ୍ୱଦର୍ଶୀମାନେ ବୁଝିଥାନ୍ତି ଏହିରୂପ—
ଅନନ୍ତ ଶକ୍ତି ଯେ ବ୍ରହ୍ମ ଚୈତନ୍ୟ ସ୍ୱରୂପ
ଅଭିବ୍ୟକ୍ତ ହୋଇଅଛି ସ୍ଥୂଳ ବିଶ୍ୱାକାରେ
ତାହାଙ୍କୁ କଳ୍ପନା ଯେବେ କର ଦେହାକାରେ
ତାହାଙ୍କର ଅଂଶ ବିଶ୍ୱ ଯାବନ୍ତ ପଦାର୍ଥ
ତାଙ୍କ ରୂପ ଅଭିବ୍ୟକ୍ତ ଜାଣିବ ଯଥାର୍ଥ ।
ତାହାଙ୍କ ଶକ୍ତିରେ ଶକ୍ତିବିଶିଷ୍ଟ ସକଳେ,
ହୋଇଛନ୍ତି ବିଗ୍ରହିତ ତାହାଙ୍କର ବଳେ ।
ସ୍ଥୂଳ ବିଶ୍ୱାକାରେ ଶକ୍ତିରୂପେ ପରିଣତ,
ଚୈତନ୍ୟସ୍ୱରୂପେ ଅନୁପ୍ରବିଷ୍ଟ ତେମନ୍ତ ।
ହୋଇପାରେ ସ୍ଥୂଳବିଶ୍ୱ ସୂର୍ଯ୍ୟାଦି ଧନ୍ୱିତ,
ଚୈତନ୍ୟର ଅବୟବ ସ୍ୱରୂପ କଳ୍ପିତ ।
ଜୀବ ଚୈତନ୍ୟର ଯେହ୍ନେ ଅଭିବ୍ୟକ୍ତ ସ୍ଥାନ,
ବିଶ୍ୱକୁ ସେପରି କରି ପାର ଅନୁମାନ ।
ଅତଏବ ଏହିବିଶ୍ୱ ତାହାଙ୍କର ଗାତ୍ର,
ବିଶ୍ୱର ପଦାର୍ଥ ସର୍ବ ବିହିରଙ୍ଗ ମାତ୍ର ।
ମାତ୍ର ବିଶ୍ୱ ନୁହେ ତାଙ୍କ ପୂର୍ଣ୍ଣଅଭିବ୍ୟକ୍ତି
କେବଳ ଜାଣିବ ତାଙ୍କ ଏକ ମାତ୍ର ଶକ୍ତି ।
ବିଶ୍ୱକୁ ଅପୂର୍ଣ୍ଣ ବୋଲି କର ତୁମ୍ଭେ ଜ୍ଞାନ,
ପରିପୂର୍ଣ୍ଣ ଏକମାତ୍ର ବ୍ରହ୍ମଶକ୍ତିମାନ ।
ସୂର୍ଯ୍ୟ ଚନ୍ଦ୍ର ଏକ ଏକ ଅଙ୍ଗରେ କଳ୍ପନା
କର ଯେବେ ବିଶ୍ୱ ସେହି ରୂପ ଯିବ ଜଣା,
ସୂର୍ଯ୍ୟାଦି ସହିତ ପରିଦୃଶ୍ୟମାନ ବିଶ୍ୱ,
ପୂର୍ଣ୍ଣବ୍ରହ୍ମ ଚୈତନ୍ୟଙ୍କ ଜାଣ ଏକ ଅଂଶ ।

ଅପୂର୍ଣ୍ଣ ଏ ବିଶ୍ୱ, ତେଣୁ ଜାଣିବ ମନରେ,
ବ୍ରହ୍ମ ଚୈତନ୍ୟ ହିଁ ପୂର୍ଣ୍ଣ ସମ୍ପୂର୍ଣ୍ଣ ରୂପରେ ।
ବ୍ୟଷ୍ଟି ଭାବେ ଅବା ଜାଣ ସମଷ୍ଟି ଭାବରେ,
ବିଶ୍ୱର ପୂର୍ଣ୍ଣତା ସ୍ଥିର ନ କର ମନରେ ।
ବ୍ରହ୍ମଙ୍କୁ କିପାଇଁ କର ପୁରୁଷ କଳ୍ପନା,
ବିବେଚନା କଲେ ଏଥି ହେତୁ ମିଳିବ ଜଣା ।
ଅନ୍ୟ ପ୍ରାଣୀଠାରେ ନାହିଁ ଜ୍ଞାନର ବିକାଶ,
ସେମାନେ କେବଳ ପାନ ଭୋଜନର ଦାସ ।
ପୁରୁଷ ବା ମନୁଷ୍ୟର ଅନ୍ୟ ରୂପ ଜ୍ଞାନ,
ପାରନ୍ତି ସେ କରି ବ୍ରହ୍ମ ଅନୁଭବ ଧ୍ୟାନ ।
ପୁରୁଷ ଇନ୍ଦ୍ରିୟ ଅନ୍ତଃକରଣର ଶକ୍ତି
କରି ପାରେ ଅନୁଭବ ବ୍ରହ୍ମ ଅଭିବ୍ୟକ୍ତି ।
ବ୍ରହ୍ମଙ୍କ ସୌନ୍ଦର୍ଯ୍ୟ ପୁଣି ବ୍ରହ୍ମଙ୍କ ଐଶ୍ୱର୍ଯ୍ୟ,
ବ୍ରହ୍ମଙ୍କର ଯେତେ କାର୍ଯ୍ୟକଳାପ ଆଶ୍ଚର୍ଯ୍ୟ ।
ସମସ୍ତ ପ୍ରାଣିଙ୍କ ମଧ୍ୟେ କେବଳ ମାନବ
ଜ୍ଞାନବଳେ ସେହି ସବୁ କରେ ଅନୁଭବ ।
ପୁରୁଷ ଯେ ଶ୍ରେଷ୍ଠ ଏଥିପାଇଁ ଯାଏ ଜଣା
ବ୍ରହ୍ମଙ୍କୁ କରନ୍ତି ତେଣୁ ପୁରୁଷେ କଳ୍ପନା,
ଏହି କଳ୍ପନାର ଅଛି ଉଦ୍ଦେଶ୍ୟ ଆରେକ,
ବିଶ୍ୱସୃଷ୍ଟି ଜ୍ଞାନକୃତ ସଙ୍କଳ୍ପ ମୂଳକ ।
ବ୍ରହ୍ମ ଅଭିବ୍ୟକ୍ତ ଆଦି ଜ୍ଞାତା ସ୍ୱରୂପରେ,
ବିରାଜିତ ଥିଲେ ଜାଣ ସୃଷ୍ଟି ପ୍ରଥମରେ ।
ବିରାଟ ହିରଣ୍ୟଗର୍ଭ ତାହାଙ୍କୁ ହିଁ ଜାଣ;
ଆହୁରି ବୋଲୁଛି ଶୁଣ ସେଥିର ପ୍ରମାଣ ।
ପୁରୁଷର ଯେଉଁ ସଙ୍କଳ୍ପ ପ୍ରାଣ ବାକ୍ୟ ରୂପେ,
ଅଭିବ୍ୟକ୍ତ ହୋଇ ଅନୁକଳ୍ପନ ସ୍ୱରୂପେ ।
ବିବିଧ ନାମରେ ପୁଣି ବିବିଧ ରୂପରେ,
ଏ ବିଶ୍ୱ ଗଠନ କଲା ଜାଣ ସ୍ୱରୂପରେ ।

ସେହି ପ୍ରାଣ ଶକ୍ତି, ପ୍ରାଣରୂପେ ଉଦ୍‌ଭିଦରେ,
ପ୍ରାଣୀ ରାଜ୍ୟେ ଅଭିବ୍ୟକ୍ତ ଜ୍ଞାନ ସ୍ୱରୂପରେ । *
ଆଦିଜ୍ଞାତା ସେ ପୁରୁଷ, ତାହାଙ୍କ ଜ୍ଞାନରେ
ଏହି ବିଶ୍ୱ ଉଦ୍ଭାସିତ ଜ୍ଞେୟ ସ୍ୱରୂପରେ,
ଏଥିକୁ ଜାଣିବ ଏହି ଜ୍ଞାତ ଜ୍ଞେୟ ଭାବ,
ପ୍ରକୃତିପୁରୁଷ ଭାବ ବ୍ରହ୍ମ ନିତ୍ୟ ଭାବ ।
ବ୍ରହ୍ମଙ୍କୁ ପୁରୁଷରୂପେ କରିବା କଳ୍ପନା,
ଆରେକ ଉଦ୍ଦେଶ୍ୟ ଅଛି ବୋଲି ଯାଏ ଜଣା ।
ଲୋକରେ ସୁବିଧା ହେବ ବ୍ରହ୍ମ ଉପାସନା,
ଏହାକୁ ବୋଲନ୍ତି ଲୋକେ ସମ୍ପଦୁପାସନା । (୧)
ବିଶ୍ୱାତ୍ମା ପୁରୁଷଙ୍କର ଦ୍ୟୌଃ ମସ୍ତକ (ଅଟେ),
ଚନ୍ଦ୍ର ସୂର୍ଯ୍ୟ ବେନି ନେତ୍ର ଦିଗ ସବୁ ଶ୍ରୋତ୍ର,
ପୃଥିବୀ ତାହାଙ୍କ ପଦ, ପବନ ଯେ ପ୍ରାଣ,
ଏରୂପ କଳ୍ପନା ଯୋଗେ କର ବ୍ରହ୍ମେ ଧ୍ୟାନ ।
ଚନ୍ଦ୍ର ସୂର୍ଯ୍ୟେ ଅଙ୍ଗରୂପେ କଲେକ କଳ୍ପନା,
ସହଜେ ଆୟତ୍ତ ହୁଏ ବ୍ରହ୍ମ ଉପାସନା ।
ଅବଶେଷେ ବ୍ୟଷ୍ଟି ଅଙ୍ଗ ହୁଏ ତିରୋହିତ,
ହୁଏ ଯେ ବିରାଟମୂର୍ତ୍ତି ହୃଦେ ଉଦ୍ଭାସିତ ।
ଏରୂପ ଭାବନା କରିଥାଏ ଯେଉଁ ଲୋକ,
ତାହା ହୃଦେ ବ୍ରହ୍ମରୂପ ହୁଏ ଜାଗରୂକ,
ବିଶ୍ୱାତ୍ମା ଭାବନା କଲେ ଏରୂପଭାବରେ,
ମିଶିଯାଏ ନିଜ ଆତ୍ମା ବିଶ୍ୱ ସହିତରେ,
ସହଜେ ଅଦ୍ୱୈତଜ୍ଞାନ ହୁଏ ପ୍ରତିଷ୍ଠିତ,
ପୁରୁଷ ସ୍ୱରୂପ ବ୍ରହ୍ମ ଏଥିକୁ କଳ୍ପିତ ।
କଲେ ନିତ୍ୟ ବୈଶ୍ୱାନର ପୁରୁଷେ ଭାବନା,
ଜୀବର ସକଳ ଦୂର ହୁଏ ଦୁର୍ଭାବନା ।

———

* ଜ୍ଞାନ—ପ୍ରାଣର ଶେଷ ଅଭିବ୍ୟକ୍ତି । କାରଣ ପ୍ରାଣଶକ୍ତି ମାନବ ଦେହସ୍ଥ ଇନ୍ଦ୍ରିୟସ୍ଥାନ ଗୁଡ଼ିକ ନିର୍ମାଣ କରି ନ ହେଲେ ଜ୍ଞାନ ଜାତ ହୁଏ ନାହିଁ ।

(୧) ନିକୃଷ୍ଟ ପଦାର୍ଥ ପ୍ରତି ଉତ୍କୃଷ୍ଟ ପଦାର୍ଥ ଆରୋପ କଲେ ଯେ ସ୍ଥଳରେ ଅବଲମ୍ବନ ବସ୍ତୁଟି ତିରୋହିତ ହୋଇ ଆରୋପ୍ୟ ବସ୍ତୁର ପ୍ରାଧାନ୍ୟ ଥାଏ, ତାହାକୁ ସମ୍ପଦୁପାସନା ବୋଲଯାଏ ।

## ଷଷ୍ଠ ପରିଚ୍ଛେଦ

(ଇନ୍ଦ୍ରିୟବର୍ଗ କଳହ)

ପୂର୍ବକାଳେ ସତ୍ୟକାମ ଜବାଲାନନ୍ଦନ,
ଗୋଶ୍ରୁତି ଋଷିଙ୍କୁ ବୋଲିଥିଲେ ବିବରଣ—
ଦେହସ୍ଥ ଇନ୍ଦ୍ରିୟଗଣ ବିବାଦର କଥା,
ସମସ୍ତ ବିଷୟ—ପ୍ରାଣଶକ୍ତିର ଶ୍ରେଷ୍ଠତା ।
ଚକ୍ଷୁ କର୍ଣ୍ଣ ନାସିକାଦି ଇନ୍ଦ୍ରିୟ ସକଳେ,
ପରସ୍ପର ଦ୍ୱନ୍ଦ୍ୱ କଲେ ରହି ଦେହସ୍ଥଳେ,
ପ୍ରତ୍ୟେକ ପ୍ରକାଶ କଲେ ଆପଣା ଗୌରବ,
ବୋଇଲେ ବିସ୍ତାର ନିଜ ମହିମା ବୈଭବ ।

ବୋଇଲା ନୟନ—ମୁହିଁ ଶ୍ରେଷ୍ଠ ସବୁଠାରୁ,
ଶରୀର ଚଳଇ ମୁହିଁ ସିନା ରହିବାରୁ,
ତ୍ୱକ କର୍ଣ୍ଣ ନାସିକାଦି ଇନ୍ଦ୍ରିୟ ସମସ୍ତ,
ପ୍ରକାଶିଲେ ନିଜ ନିଜ ମହିମା ଏମନ୍ତ ।
ଏରୂପ କଳହ କରି ସେ ଇନ୍ଦ୍ରିୟଗଣେ
ଗଲେ ପ୍ରଜାପତି ପାଶେ ମୀମାଂସା କାରଣେ ।
ବୋଇଲେ ସମସ୍ତ କଥା ଶୁଣି ପ୍ରଜାପତି,
ଜଣାଯିବ କାହା ଦେହେ ଅଛି କେତେ ଶକ୍ତି ।

ଏକ ଏକ କରି ଛାଡ଼ି ଯାଉନ୍ତୁ ଶରୀର,
ଜଣାଯିବ ତାହା ରହି ପାରେ କି ନ ସ୍ଥିର ।
ଦେହ ରହି ନ ପାରିବ ଯାହା ଅଭାବରେ,
ତାହାକୁ ଜାଣିବ ଶ୍ରେଷ୍ଠ ଇନ୍ଦ୍ରିୟ ମଧ୍ୟରେ ।
ପ୍ରଜାପତି ବାକ୍ୟ ଶୁଣି ସେ ଇନ୍ଦ୍ରିୟଗଣେ,
କଲେ ଯତ୍ନ ଆତ୍ମବଳ ପରୀକ୍ଷା କାରଣେ ।
ପ୍ରଥମରେ ବାଗିନ୍ଦ୍ରିୟ ଗଲେ ଦେହ ଛାଡ଼ି,
ବର୍ଷାନ୍ତେ ପୁଣି ତହିଁ ଅଇଲେ ବାହୁଡ଼ି,
ପୁଚ୍ଛା କଲେ ସମସ୍ତଙ୍କୁ, ମୋହ ଅଭାବରେ,
ବୋଲ ବୋଲ ତୁମ୍ଭେମାନେ ଥିଲ କି ରୂପରେ ?

ଜଣାଯାଏ ଏହିପରି ମୋ ଅବିଦ୍ୟମାନେ,
ମୃତକଳ୍ପ ହୋଇ ପଡ଼ିଥିଲ ତୁମ୍ଭେମାନେ ।
ବୋଇଲେ ଇନ୍ଦ୍ରିୟଗଣେ ଶୁଣି ଏ ଭାରତୀ,
ନାହିଁ, ଦେହର ତ ହୋଇ ନାହିଁ କିଛି କ୍ଷତି ।

ଶରୀରଟି ଥିଲା ସତ୍ୟ ମୂକ ସ୍ୱରୂପରେ,
ବିଘ୍ନ ଘଟି ନାହିଁ ଆମ୍ଭମାନଙ୍କ କାର୍ଯ୍ୟରେ ।
ଦର୍ଶନ ଶ୍ରବଣ ଆଦି ଯେତେ କିଛି କାର୍ଯ୍ୟ
ସ୍ୱଚ୍ଛନ୍ଦରେ ଚଳୁଥିଲା ନ ମଣ ଆଶ୍ଚର୍ଯ୍ୟ ।
ବାଗିନ୍ଦ୍ରିୟ ଏତେ କଥା ଶୁଣି ସେ କାଳରେ,
ପୁନର୍ବାର ପ୍ରବେଶିଲା ଯାଇଣ ଦେହରେ ।
ଏଥୁଅନ୍ତେ ଏକ ଏକ ନେତ୍ର ଶ୍ରୋତ୍ରଗଣ,
ଦେହ ଛାଡ଼ିଗଲେ ଏକ ବରଷ କାରଣ ।

ବାହୁଡ଼ି ଶୁଣିଲେ ସର୍ବେ ତାଙ୍କ ଅଭାବରେ,
ଦେହ ବର୍ତ୍ତମାନ ଥିଲା ସମ୍ପୂର୍ଣ୍ଣ ରୂପରେ ।

ସକଳ ଶେଷରେ ପ୍ରାଣଶକ୍ତି କଲେ ସ୍ଥିର,
ପରୀକ୍ଷା ନିମନ୍ତେ ଛାଡ଼ିଯିବାକୁ ଶରୀର,
ପ୍ରାଣଶକ୍ତି ଯିବାପାଇଁ କରନ୍ତେ ଉଦ୍ୟୋଗ
ବୋଇଲେ ଚିତ୍କାର କରି ସେ ଇନ୍ଦ୍ରିୟବର୍ଗ ।
ନାହିଁ ନାହିଁ ଛାଡ଼ିଯାଅ ନାହିଁ ପ୍ରାଣଶକ୍ତି,
ତୁମ୍ଭ ଅଭାବରେ ଦେଖୁଁ ଘଟିବ ଦୁର୍ଗତି ।
ଛାଡ଼ିଯିବାପାଇଁ ତୁମ୍ଭେ ହୁଅନ୍ତେ ପ୍ରସ୍ତୁତ,
ଆମ୍ଭେମାନେ ସର୍ବେ ହୋଇ ପଡ଼ୁଅଛୁଁ ମୃତ ।
ଗଲା ଜଣା ସର୍ବଶ୍ରେଷ୍ଠ ଅଟେ ପ୍ରାଣଶକ୍ତି,
ତାହା ଅଭାବରୁ ଘଟେ ଦେହର ଦୁର୍ଗତି ।

ପ୍ରାଣଶକ୍ତି ସହାୟରେ ଇନ୍ଦ୍ରିୟ ସକଳେ
ନିଜକାର୍ଯ୍ୟ କରୁଛନ୍ତି ରହି ଦେହ ସ୍ଥଳେ ।
ପ୍ରାଣଶକ୍ତି ବିନା ହେବ ଶରୀର ବିନାଶ,
ଇନ୍ଦ୍ରିୟ ସକଳେ କଲେ ଏ କଥା ବିଶ୍ୱାସ ।
ବୋଇଲେ ଯେ ପ୍ରାଣଶକ୍ତି ଇନ୍ଦ୍ରିୟ ସକଳେ
ଦେହରେ ରହିବୁଁ ଆମ୍ଭେ ବୋଲ କାହା ବଳେ ?
ବୋଇଲେ ଇନ୍ଦ୍ରିୟେ—ଜଗତର ପ୍ରାଣିଗଣ
ଯେଉଁ ଅନ୍ନ ପାନ ନିତ୍ୟ କରନ୍ତି ଗ୍ରହଣ ।

ପୁଷ୍ଟିଲାଭ କର ତୁମ୍ଭେ ସେହି ଅନ୍ନ ପାନେ,
ତୁମ୍ଭର ଆଶ୍ରୟେ ରହିଥିବୁଁ ଆମ୍ଭେମାନେ ।
ଜଣାଗଲା ପାଠ କର ଏହି ଉପାଖ୍ୟାନ
ଦେହ ରକ୍ଷାକାରୀ ଏକମାତ୍ର ଅଟେ ପ୍ରାଣ ।
ସ୍ତ୍ରୀଗର୍ଭେ ଶୋଣିତ ସଙ୍ଗେ ଶୁକ୍ରର ମିଳିତ
ହେବା ମାତ୍ର ପ୍ରାଣ ତହିଁ ହୁଏ ଅବସ୍ଥିତ ।
ପ୍ରାଣଶକ୍ତି ବିନା ପୁତ୍ର ନୁହେଁ କାର୍ଯ୍ୟକର,
ବିନା ପ୍ରାଣ ନ ହୁଏ ଯେ ଗଠନ ଦେହର
ଇନ୍ଦ୍ରିୟ ଉତ୍ପତ୍ତି ପୂର୍ବେ ଦେହ ମଧ୍ୟେ ପ୍ରାଣ
ସଞ୍ଚାର କରଇ ଏହା ନିଶ୍ଚୟରେ ଜାଣ ।
ଯେଉଁକାଳେ ଗର୍ଭେ ହୁଏ ଶୁକ୍ରର ପତନ,
ସେହିକାଳୁ କରେ ପ୍ରାଣଶକ୍ତିକୁ ପୋଷଣ ।
ଏ ହେତୁରୁ ବପୁଃମଧ୍ୟେ ପ୍ରାଣଶକ୍ତି ଜ୍ୟେଷ୍ଠ,
ସକଳ ଇନ୍ଦ୍ରିୟଗଣଠାରୁ ପୁଣି ଶ୍ରେଷ୍ଠ,
ପ୍ରାଣଶକ୍ତି କରି ରସ ରକ୍ତର ଚାଳନା
ଇନ୍ଦ୍ରିୟ ସ୍ଥାନର କରେ ଗଠନ ସୂଚନା
ଇନ୍ଦ୍ରିୟ ଗଠନ କାର୍ଯ୍ୟ ହେଲେକ ସମ୍ପନ୍ନ
କରନ୍ତି ନେତ୍ରାଦି ସ୍ୱସ୍ୱ କ୍ରିୟା ସମ୍ପାଦନ ।
ଏ ସମସ୍ତ କାରଣରୁ କର ମନେ ଜ୍ଞାନ
ସର୍ବଠାରୁ ଶ୍ରେଷ୍ଠ ଜ୍ୟେଷ୍ଠ ଅଟଇ ଯେ ପ୍ରାଣ ।

ଯେତେ କିଛି ଦେଖୁଅଛ କ୍ରିୟା ଇନ୍ଦ୍ରିୟର
ପ୍ରାଣଶକ୍ତି ଉପରେ ଯେ କରୁଛି ନିର୍ଭର,
ମନ ଅନ୍ତଃକରଣକୁ ଜାଣିବ ନିଶ୍ଚୟ
ଅଟନ୍ତି ଯେ ଏହି ସର୍ବ ଇନ୍ଦ୍ରିୟ ଆଶ୍ରୟ ।
ମନର ଉପରେ ତେଣୁ ଇନ୍ଦ୍ରିୟ ବର୍ଗର
କରେଟି ବିଷୟ ବର୍ଗ ଅସ୍ତିତ୍ୱ ନିର୍ଭର ।
ଏହି ଅନ୍ତଃକରଣର ସଙ୍କଳ୍ପାନୁସାରେ
ନିଯୁକ୍ତ ଇନ୍ଦ୍ରିୟବର୍ଗ କାର୍ଯ୍ୟ କରିବାରେ,
ମାତ୍ର ଜାଣ ମନ—ପ୍ରାଣଶକ୍ତିର ଆଶ୍ରୟେ
କ୍ରିୟା ସମ୍ପାଦନ କରେ ସକଳ ବିଷୟେ ।
ସର୍ବରୂପ ସାଧାରଣ କ୍ରିୟାର ଆଶ୍ରୟେ
ଏହି ପ୍ରାଣଶକ୍ତିକୁ ଯେ ଜାଣିବ ନିଶ୍ଚୟେ
ଅନ୍ନ ପୁଣି ଅଟେ ପ୍ରାଣଶକ୍ତିର ପୋଷକ,
ଅନ୍ନ ପାନେ ପ୍ରାଣଶକ୍ତି ପୁଷ୍ଟିର ସାଧକ,
ପ୍ରାଣୀଗଣ ଅନ୍ନପାନ କରନ୍ତେ ଗ୍ରହଣ,
ପ୍ରାଣଶକ୍ତି କରେ ତେଣୁ ଗଠନ ପୋଷଣ ।
ଏଥିପାଇଁ ଶ୍ରୁତିଶାସ୍ତ୍ରେ ରହିଛି କଥିତ,
ଅନ୍ନ ପାନେ ହୁଏ ଦେହ ରକ୍ଷିତ ବର୍ଦ୍ଧିତ ।
ଅନ୍ନ ପାନେ ଲଭେ ପ୍ରାଣ ପୁଷ୍ଟି ପୁଣି ତୁଷ୍ଟି,
ଇନ୍ଦ୍ରିୟ ବର୍ଗର ଜାତ ସୁତୃପ୍ତି ସନ୍ତୁଷ୍ଟି ।
ବୁଝୁଅଛୁଁ ଦେଖି ଏହି ସମସ୍ତ କାରଣ,
ପ୍ରାଣଶକ୍ତି ଗୋଟି କରେ ଦେହର ଗଠନ ।
ସମସ୍ତ ଇନ୍ଦ୍ରିୟ ପ୍ରାଣଶକ୍ତିର ଅଧୀନ,
ସେମାନଙ୍କ କ୍ରିୟା ନୁହେ ସ୍ୱତନ୍ତ୍ର ସ୍ୱାଧୀନ ।
ସୂର୍ଯ୍ୟ ଚନ୍ଦ୍ର ଯାହା କିଛି ଦେଖୁଛ ଆକାରେ,
ଅଭିବ୍ୟକ୍ତ ହେଲେ ପ୍ରାଣଶକ୍ତିର କ୍ରିୟାରେ,
ଏହି ପ୍ରାଣ ଶକ୍ତିଠାରୁ ସ୍ୱାଧୀନ ପ୍ରକାରେ,
ଅଗ୍ନି ସୂର୍ଯ୍ୟାଦିର କ୍ରିୟା ହେବାକୁ ନ ପାରେ,
ବ୍ରହ୍ମର ସ୍ୱରୂପଭୂତ ଏହି ପ୍ରାଣଶକ୍ତି,
ତହିଁ ବ୍ରହ୍ମାଣ୍ଡର ସର୍ବ ଦ୍ରବ୍ୟ ଅଭିବ୍ୟକ୍ତି ।
ବ୍ରହ୍ମଚୈତନ୍ୟର ଶକ୍ତି ରୂପାନ୍ତର ପ୍ରାଣ,
ବ୍ରହ୍ମ ଅଧିଷ୍ଠିତ ପ୍ରାଣ ଏହା ମଧ୍ୟ ଜାଣ ।
ବିଶ୍ୱବ୍ରହ୍ମାଣ୍ଡରେ ଦେଖୁ ପଦାର୍ଥ ଯେତେକ,
ସମସ୍ତର ମୂଳ ବ୍ରହ୍ମ ଚୈତନ୍ୟ ହିଁ ଏକ ।
ବ୍ରହ୍ମଚୈତନ୍ୟରୁ ଜାତ ଏ ବିଶ୍ୱସଂସାର,
ସେ ବ୍ରହ୍ମଚୈତନ୍ୟ ଲୀନ ହେବ ପୁନର୍ବାର ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ହରିଃ ଓଁ

---

ବ୍ରାହ୍ମଣାନାଂ

# ସନ୍ଧ୍ୟା ପଦ୍ଧତି

---

## ଗାତ୍ରୋତ୍ଥାନ ମନ୍ତ୍ରଃ

ବ୍ରହ୍ମଗାୟତ୍ରୀ ।

ଓଁ

ଭୂର୍ଭୁବଃ ସ୍ୱଃ

ତତ୍ ସବିତୁର୍ବରେଣ୍ୟଂ

ଭର୍ଗୋ ଦେବସ୍ୟ ଧୀମହି

ଧିୟୋ ଯୋ ନଃ ପ୍ରଚୋଦୟାତ୍ ।

———

ଓଁ

ଲୋକେଶ ଚୈତନ୍ୟମୟାଧିଦେବ

ମାଙ୍ଗଲ୍ୟ ବିଷ୍ଣୋ ଭବଦାଜ୍ଞୟୈବ ।

ହିତାୟ ଲୋକସ୍ୟ ତବ ପ୍ରିୟାର୍ଥଂ

ସଂସାରଯାତ୍ରାମନୁବର୍ତ୍ତୟିଷ୍ୟେ ।

———

## ସ୍ନାନକାଳୀନ ମନ୍ତ୍ରଃ

ପାପୋଽହଂ ପାପକର୍ମାଽହଂ

ପାପାତ୍ମା ପାପସମ୍ଭବଃ ।

ତ୍ରାହି ମାଂ ପୁଣ୍ଡରୀକାକ୍ଷ

ସର୍ବପାପହରୋ ହରିଃ ।

———

ଅପବିତ୍ରଃ ପବିତ୍ରୋ ବା ସର୍ବାବସ୍ଥାଂ ଗତୋଽପି ବା

ଯଃ ସ୍ମରେତ୍ ପୁଣ୍ଡରୀକାକ୍ଷଂ ସ ବାହ୍ୟାଭ୍ୟନ୍ତରଃ ଶୁଚିଃ ।

ସ୍ନାନ ଉତ୍ତରେ ଶୁଦ୍ଧାସନରେ ବସି ତିନ ଥର

ଗାୟତ୍ରୀ ପାଠ କରିବ ।

———

## ଅଥ ଧ୍ୟାନଂ

ଶଂ ନୋ ଦେବୀ ରଭିଷ୍ଟୟେ

ଆପୋ ଭବନ୍ତୁ ପୀତୟେ ।

ଶଂ ଯୋ ରଭିସ୍ରବନ୍ତୁ ନଃ ।

———

## ଅଥ ନମସ୍କାର ମନ୍ତ୍ରଃ

ଓଁ ନମସ୍ତେ ଶରଣ୍ୟଂ ନମସ୍ତେ ବରେଣ୍ୟଂ

ନମସ୍ତେ ଜଗତ୍ପାଳକଂ ସ୍ୱପ୍ରକାଶଂ ।

ନମସ୍ତେ ଜଗତ୍କର୍ତ୍ତ୍ରି ପାତ୍ରି ପ୍ରହର୍ତ୍ତ୍ରି

ନମସ୍ତେ ପରଂ ନିଶ୍ଚଳଂ ନିର୍ବିକଳ୍ପଂ

ଭୟାନାଂ ଭୟଂ ଭୀଷଣଂ ଭୀଷଣାନାଂ

ଗତିଃ ପ୍ରାଣିନାଂ ପାବନଂ ପାବନାନାଂ ।

ମହୋଚ୍ଚୈଃ ପଦାନାଂ ନିୟନ୍ତୃ ତ୍ୱମେକଂ

ପରେଷାଂ ପରଂ ରକ୍ଷଣଂ ରକ୍ଷଣାନାଂ ।

ବୟଂ ତ୍ୱାଂ ସ୍ମରାମୋ ବୟଂ ତ୍ୱାଂ ଭଜାମୋ

ବୟଂ ତ୍ୱାଂ ଜଗତ୍ସାକ୍ଷିରୂପଂ ନମାମଃ ।

ସଦେକଂ ନିଧାନଂ ନିରାଲମ୍ବମୀଶଂ
ଭବାମ୍ଭୋଧିପୋତଂ ଶରଣ୍ୟଂ ବ୍ରଜାମଃ ।
ଅସତୋ ମା ସଦ୍‌ଗମୟ
ତମସୋ ମା ଜ୍ୟୋତିର୍ଗମୟ
ମୃତ୍ୟୋର୍ମାଽମୃତଂ ଗମୟ ।
ଆବିରାବୀର୍ମ ଏଧି
ରୁଦ୍ର ଯତ୍ତେ ଦକ୍ଷିଣଂ ମୁଖଂ ତେନ ମାଂ ପାହି ନିତ୍ୟଂ ।

ମନ୍ତ୍ର ପାଠ ଉତ୍ତାରେ ଭୂମିରେ ମସ୍ତକ ଲଗାଇ ତିନି ଥର ନମସ୍କାର କରିବ ।

## ସନ୍ଧ୍ୟା କାଳରେ ଉପାସନା

ସନ୍ଧ୍ୟା ସମୟରେ ଆଚମନ କରି କୁଶାସନ କିମ୍ବା କମ୍ବଳାସନରେ ବସିବ । ବୃଦ୍ଧା ଏବଂ ତର୍ଜନୀ ଅଙ୍ଗୁଳି ମଧ୍ୟରେ ଯଜ୍ଞୋପବୀତ ରଖି ବାମ ହସ୍ତକୁ କୋଳରେ ରଖିବ । ଉପବୀତ ନ ଥିବା ଲୋକେ କେବଳ ଯୋଡ଼ହସ୍ତ ହେବେ । ତହିଁ ଉତ୍ତାରେ ଚକ୍ଷୁ ମୁଦ୍ରିତ କରି ଦେହଶୁଦ୍ଧି ମନ୍ତ୍ର ପାଠ କରିବ । ମନ୍ତ୍ର ପାଠ ସମୟରେ ସମସ୍ତ ଅଙ୍ଗ ସ୍ପର୍ଶ କରୁଥିବ ।

ଓଁ—ଭୂଃ—ପୁନାତୁ ଶିରସି ।
ଓଁ—ଭୁବଃ—ପୁନାତୁ ନେତ୍ରୟୋଃ ।
ଓଁ—ସ୍ୱଃ—ପୁନାତୁ କଣ୍ଠେ ।
ଓଁ—ମହଃ—ପୁନାତୁ ହୃଦୟେ ।
ଓଁ—ଜନଃ—ପୁନାତୁ ନାଭ୍ୟାଂ
ଓଁ—ତପଃ—ପୁନାତୁ ପାଦୟୋଃ ।
ଓଁ—ଖଂ—ପୁନାତୁ ପୁନଃ ଶିରସି ।
ଓଁ—ସତ୍ୟଂ—ପୁନାତୁ ସର୍ବତ୍ର ।

ଦେହ ଶୁଦ୍ଧି ଉତ୍ତାରେ ତିନି ଥର ବ୍ରହ୍ମଗାୟତ୍ରୀ ପାଠ କରିବ । ଗାୟତ୍ରୀ ପାଠ ଉତ୍ତାରେ ପରଂବ୍ରହ୍ମଙ୍କ ସ୍ତୋତ୍ର ପାଠ କରିବ ।

---

## ପରଂବ୍ରହ୍ମସ୍ତୋତ୍ରମ୍

ନମୋଽକିଞ୍ଚନନାଥାୟ—ନମୋଽମୃତ ନମୋଽଭୟ !
ଅନ୍ତର୍ଯ୍ୟାମିନ୍ନନ୍ତରାତ୍ମନ୍ ନମୋଽନନ୍ତାକ୍ଷୟାୟ ତେ ।
ନମୋଽଗତିଗତେ ତୁଭ୍ୟଂ ନମସ୍ତେଽଖିଳକାରଣ !
ଅରୂପାୟ ନମୋଽନାଥବନ୍ଧୋଽଧମତାରଣ !
ନମସ୍ତୁଭ୍ୟଂ କାତରାଣାଂ ଶରଣାୟ କୃପୋଦଧେ !
କରୁଣାନିଧୟେ କଲ୍ପତରବେ କଳୁଷନାଶନ !
ନମୋ ଗୁଣନିଧାନାୟ ଗତିନାଥାୟ ଚିନ୍ମୟ !
ଚିନ୍ତାମଣେ ଚିଦାନନ୍ଦ ନମସ୍ତ୍ରିରସଖେ ନମଃ
ନମସ୍ତେ ଜଗଦାଧାର ଜୀବାନଂ ଜୀବନାୟ ଚ ।
ଜ୍ୟୋତିର୍ମୟ ଜଗନ୍ନାଥ ଜଗତ୍‌ପାଳନ ତେ ନମଃ ।
ନମସ୍ତୁଭ୍ୟଂ ଦୟେଶାୟ ଦାରିଦ୍ର୍ୟଭଞ୍ଜନାୟ ତେ ।
ଦୀନବନ୍ଧୋ ଦର୍ପହାରିନ୍ ଋଦ୍ଧାୟ ଦୁର୍ଲ୍ଲଭାୟ ଚ ।
ନମୋ ଦେବାୟ ଦୀନାନାଂ ପାଳକାୟ ନମୋନମଃ ।
ଦୟାମୟାୟ ତେ ଧର୍ମରାଜାୟ ଧ୍ରୁବ ନିତ୍ୟ ଚ ।
ନମସ୍ତୁଭ୍ୟଂ ନିରୂପମ ନିଷ୍କଳଙ୍କ ନିରଞ୍ଜନ !
ନିତ୍ୟାନନ୍ଦାୟ ନିଖିଳାଶ୍ରୟାୟ ନୟନାଞ୍ଜନ !
ନମସ୍ତେ ନିର୍ବିକାରାୟ ପିତେ ପାତେ ନମସ୍ତୁ ତେ ।
ପରାତ୍ପର ପରବ୍ରହ୍ମନ୍ ପାଷଣ୍ଡଦଳନାୟ ତେ ।
ନମଃ ପ୍ରସ୍ରବଣ ପ୍ରୀତେର୍ନମଃ ପତିତପାବନ !
ପୁଣ୍ୟାଳୟ ପରସ୍ମାତଃ ପୂର୍ଣ୍ଣପ୍ରାଣ ଧନାୟ ଚ ।
ନମଃ ପ୍ରେମନ୍ ପୁରାଣାୟ ପରସ୍ମାୟ ପରେଶ୍ୱର !
ପ୍ରଭୋ ପ୍ରସନ୍ନବଦନ ପରମାତ୍ମନ୍ ପ୍ରଜାପତେ !
ନମୋ ବିଶ୍ୱପତେ ବ୍ରହ୍ମନ୍ ବିପଦ୍‌ବାରଣ ତେ ବିଭୋ !
ବିଜୟାୟ ବିଧାତସ୍ତେ ନମୋ ବିଘ୍ନବିନାଶନ !
ନମୋ ଭକ୍ତବତ୍ସଳାୟ ନମୋ ଭୁବନମୋହନ !
ଭବନ୍ ଭବାବ୍ଧିକାଣ୍ଡାରିନ୍ ଭବଭୀତିହରାୟ ଚ ।
ନମସ୍ତେ ମଙ୍ଗଳନିଧେ ନମସ୍ତେ ମହିମାର୍ଣ୍ଣବ !
ମୁକ୍ତିଦାତର୍ମହାନ୍ ମୋକ୍ଷଧାମ୍ନେ ମୃତ୍ୟୁଞ୍ଜୟାୟ ତେ ।
ନମୋ ନମସ୍ତୁ ଯୋଗେଶ ଶାନ୍ତେ ରାକର ଶୁଦ୍ଧ ଚ ।
ଶାନ୍ତିନିବାସ ସ୍ୱର୍ଗରାଜ ସ୍ୱୟମ୍ଭୋ ସ୍ୱପ୍ରକାଶ ତେ ।

ନମଃ ସଦ୍‌ଗୁରବେ ସଂସାରସାରାୟ ସୁନ୍ଦରାୟ ଚ ।
ସର୍ବବ୍ୟାପିନ୍ ସର୍ବମୂଳାଧାରାୟାସ୍ତୁ ନମୋନମଃ ।
ନମୋଽସ୍ତୁ ସର୍ବାଧାରାୟ ନମୋଽସ୍ତୁ ସର୍ବସାକ୍ଷିଣେ ।
ସୁଧାସିନ୍ଧୋ ସିଦ୍ଧିଦାତଃ ସୁଖସ୍ନେହମୟାୟ ଚ ।
ନମଃ ସ୍ରଷ୍ଟ୍ରେ ନମଃ ସର୍ବଶକ୍ତିମଂସ୍ତେ ନମୋନମଃ ।
ସନାତନାୟ ସତ୍ୟାୟ ନମଃ ସର୍ବୋତ୍ତମାୟ ଚ ।
ହୃଦୟାଭିରଞ୍ଜନାୟ ହୃଦୟେଶ ନମୋନମଃ ।
ନାମାନ୍ୟେତାନି ଗୃହ୍ଣନ୍ତଂ ପତିତଂ ମାଂ ସମୁଦ୍ଧର ।

ଇତି ଅଷ୍ଟୋତ୍ତରଶତନାମ୍ନା ବ୍ରହ୍ମସ୍ତୋତ୍ରଂ
ସମାପ୍ତଂ ।

---

## ଅଥମହାମାୟାସ୍ତୋତ୍ରଂ

ଜୟ ଦେବି ପରାରାଧ୍ୟେ ଭକ୍ତିମୁକ୍ତିପ୍ରଦାୟିନି ।
ଜଗଦ୍ଧାତ୍ରି ମହାବିଦ୍ୟେ ମାତଃ ସର୍ବାର୍ଥସାଧିକେ ।
ଭବଭୀତିହରେ ସର୍ବମଙ୍ଗଳେ ଜଗଦୀଶ୍ୱରି ।
ବିମୂଢ଼ମତିଜୀବାନାଂ ପାପସଙ୍କଟବାରିଣି ।
ବରଦେ ଶୁଭଦେ ଲୋକପ୍ରସୂତେ ଜୀବିତେଶ୍ୱରି !
ମାନବାନାଞ୍ଚ ଦେବାନାଂ ଚିରକଲ୍ୟାଣଦାୟିକେ ।
ପ୍ରସନ୍ନବଦନେ ବିଶ୍ୱଜନନି ଦୟାମୟି !
ବିବିଧଗୁଣସମ୍ପନ୍ନେ ଶିବେ ସନ୍ତାନବତ୍ସଲେ !
ନମୋ ବିଶ୍ୱମ୍ଭରେ ଦେବି ବ୍ରହ୍ମାଣ୍ଡୋଦ୍ଧାରକାରିଣି ।
ଚୈତନ୍ୟମୟି ବିଶ୍ୱାଦ୍ୟେ ମହେଶି ଜଗଦାମ୍ବିକେ ।
ବହୁରୂପା ନିରାକାରା ତ୍ୱଂ ହି ଭୁବନମୋହିନୀ ।
ଭକ୍ତମନୋରମେ ଦେବି ମହାଜନସୁଦୁର୍ଲ୍ଲଭେ ।
ବିଜ୍ଞାନଘନରୂପା ତ୍ୱଂ ସଚ୍ଚିଦାନନ୍ଦରୂପିଣୀ ।
ବାଗୀଶ୍ୱରି ନମସ୍ତୁଭ୍ୟଂ ଜ୍ଞାନଦେବବତାଂ ବରେ ।
ପରେଶି ପରମପ୍ରଜ୍ଞେ ଶୁଭବୁଦ୍ଧିପ୍ରଣୋଦିନି ।
ସୁଖଦେ ମୋକ୍ଷଦେ ମାତର୍ଧନଦାତ୍ରି ପରାତ୍ପରେ ।
ରାଜରାଜେଶ୍ୱରି ତ୍ୱଂ ହି ସର୍ବସନ୍ତାପନାଶିନୀ ।
ଗୃହାଶ୍ରମେଷୁ ବିତ୍ତେଷୁ ଲକ୍ଷ୍ମୀରୂପେଣ ସଂସ୍ଥିତେ ।
ଚରଣାଶ୍ରିତଭୃତ୍ୟାନାଂ ତ୍ୱଂ ନିତ୍ୟସୁଖବର୍ଦ୍ଧିନୀ ।
ନିର୍ବାନ୍ଧବବିପନ୍ନେଷୁ ବରାଭୟପ୍ରଦାୟିକେ ।
ବିଶାଳେ ଭବଦୁସ୍ତାରେ ଜନନୀ ନାମ ସମ୍ବଳଂ ।
ଘୋରମୋହାନ୍ଧକାରେଷୁ ଦିବ୍ୟଜ୍ୟୋତିର୍ବିକାଶିନୀ ।
ପାପାଭିହତଭୂତାନାଂ ତ୍ୱଂ ହି ତାପହରା ଶୁଭେ ।
ଭଗବତ୍ୟୈ ନମସ୍ତୁଭ୍ୟଂ ଦୂରାଦ୍ଦୂରନିବାସିନି ।
ନିଃଶ୍ୱାସେ ଶୋଣିତାଧାରେ ପ୍ରାଣରୂପେଣ ସଂସ୍ଥିତେ ।
ସର୍ବବ୍ୟାପିନି କଲ୍ୟାଣି ଚିଦ୍‌ଘନସ୍ୱରୂପେ ସତି ।
ଅତୁଲ୍ୟଗୁଣଶାଳିନି ନମସ୍ତେ କଲୁଷାମ୍ବିକେ ।
ସର୍ବାଧିଷ୍ଠାତ୍ରି ସର୍ବଜ୍ଞେ ତ୍ୱଂ ସର୍ବସାକ୍ଷୀରୂପିଣୀ ।
ସ୍ଥାବରେ ଜଙ୍ଗମେ ନିତ୍ୟଂ ଶକ୍ତିରୂପେଣ ସଂସ୍ଥିତେ ।
ନିଖିଳପ୍ରାଣିନାଂ ପୁଂସାଂ ଧନଧାନ୍ୟବିଧାୟିନି ।
ନମସ୍ତେଖିଳଧାରିଣ୍ୟୈ ଦିବ୍ୟରୂପେ ବରାନନେ ।
ମୁମୁକ୍ଷୁସାଧକାନାଞ୍ଚ ତପଃସିଦ୍ଧି ପ୍ରଦାୟିକେ ।
ଆନନ୍ଦମୟି ମାତସ୍ତ୍ୱଂ ଭକ୍ତଚିତ୍ତବିହାରିଣୀ ।
ଶୋକଦୁଃଖାପହାରିଣ୍ୟୈ ନମୋ ବ୍ରହ୍ମସନାତନି ।
ରୁଦ୍ରମୂର୍ତ୍ତେ ମହାଶକ୍ତେ ଦୁର୍ମଦାସୁରନାଶିକେ ।
ଭଗ୍ନହୃଦୟମର୍ତ୍ତ୍ୟାନାଂ ତ୍ୱଂ ହି ପତିତପାବନୀ ।
ଅଚିନ୍ତ୍ୟାବ୍ୟକ୍ତରୂପେଣ ସର୍ବଭୂତେ ବିରାଜିତେ ।
ଅନାଦ୍ୟେ ଅମ୍ବିକ ଅମ୍ବେ ମାତର୍ଲଜ୍ଜାସ୍ୱରୂପିଣି ।
ଜୀବନ୍ମୁକ୍ତସ୍ୟ ସିଦ୍ଧସ୍ୟ ନିତ୍ୟାନନ୍ଦପ୍ରବର୍ଦ୍ଧିକେ
ଅନ୍ତର୍ଯ୍ୟାମିନି ଯୋଗେଶି କ୍ଷେମଙ୍କରି କୃପାମୟି ।
ନମସ୍ତେଽନନ୍ତରୂପିଣ୍ୟୈ ଅଭୟେ ଭୁବନେଶ୍ୱରି ।
ଅଦ୍ୱିତୀୟେ ସୁରାରାଧ୍ୟେ ପାଷଣ୍ଡଦଣ୍ଡକାରିକେ ।
ଦିବ୍ୟାଙ୍ଗି ଦିବ୍ୟଲାବଣ୍ୟେ ସ୍ୱରୂପେ ଚିତ୍ତମୋହିନି ।
ଚିଦାକାଶସ୍ୱରୂପା ତ୍ୱଂ ସାଧୁହୃଦୟରଞ୍ଜିକେ ।
ଜରାମରଣସଂହର୍ତ୍ତ୍ରି ଶଙ୍କରି ପ୍ରକୃତେ ପରେ ।
ତେଜୋମୟି ପବିତ୍ରାକ୍ଷି ନିଷ୍କଳଙ୍କସ୍ୱରୂପିଣି ।
ଅନ୍ନଦେ ପୁଣ୍ୟଦେ ମାତର୍ଯୁଗଧର୍ମପ୍ରବର୍ତ୍ତିକେ ।
ବେଦାଗମେଷୁ ତନ୍ତ୍ରେଷୁ ଜ୍ଞାନରୂପେଣ ସଂସ୍ଥିତେ ।
ବିଶୁଦ୍ଧଶୁଦ୍ଧଚିତ୍ତାନାଂ ବିପଦ୍ ଭ୍ରାନ୍ତିବିନାଶିନି ।
ଚିନ୍ମୟି ପ୍ରତିଭାଦାତ୍ରି ଅମୃତାନନ୍ଦବର୍ଷିଣି ।

ତ୍ୱଂ ହ୍ରୀଂ ଜ୍ଞାନଂ ବଳଂ ପୁଣ୍ୟଂ ଶାନ୍ତସୌଭାଗ୍ୟଦାୟିକେ ।
ତ୍ୱଂ ହି ମମଧନଂ ପ୍ରାଣାସ୍ତ୍ୱଂ ହି ସର୍ବସ୍ୱରୂପିଣୀ ।
ନମସ୍ତେ ଜଗଦ୍ଧାରଣ୍ୟୈ ତ୍ରାଣକର୍ତ୍ତ୍ରି ସୁରେଶ୍ୱରି ।
ତ୍ୱଂ ହି ବେଦୋ ବଧିସ୍ତନ୍ତ୍ରଂ ମନ୍ତ୍ରଭଜନସାଧନଂ ।
ତ୍ୱଂନ୍ନାମସ୍ମରଣୈର୍ଗାନୈର୍ଜୀବନ୍ମୁକ୍ତିର୍ହି ଲଭ୍ୟତେ ।
ବଚଗଳଂଶନେ ପନେ ମାତସ୍ତ୍ୱ କରୁଣାକଳାଃ ।
ଦେହି ପଦସରୋଜଂ ମେ ନରାମରନମସେବିତଂ ।
ତବ ପଦାରବିନ୍ଦେଷୁ ପ୍ରଣମାମି ପୁନଃପୁନଃ ।

ଇତି ଶ୍ରୀମହାଦେବୀସ୍ତୋତ୍ରଂ ସମାପ୍ତଂ ।

---

## ଅଥ ଯଜୁର୍ବେଦୋକ୍ତ ଧ୍ୟାନଂ

ସପର୍ଯ୍ୟଗାଚ୍ଛୁକ୍ରମକାୟମବ୍ରଣ-
ମସ୍ନାବିରଂ ଶୁଦ୍ଧମପାପବିଦ୍ଧମ୍ ।
କବିର୍ମନୀଷୀ ପରିଭୂଃ ସ୍ୱୟମ୍ଭୂ-
ର୍ଯାଥାତଥ୍ୟତୋଽର୍ଥାନ୍ ବ୍ୟଦଧା-
ଚ୍ଛାଶ୍ୱତୀଭ୍ୟଃ ସମାଭ୍ୟଃ ।

---

ଯଜ୍ଜାଗ୍ରତୋ ଦୂରମୁଦୈତି ଦୈବନ୍ତଦୁ ସୁପ୍ତସ୍ୟ ତଥୈବୈତି । ଦୂରଙ୍ଗମଂ ଜ୍ୟୋତିଷାଂ ଜ୍ୟୋତିରେକଂ-ତନ୍ମେ ମନଃ ଶିବସଙ୍କଳ୍ପମସ୍ତୁ ।

---

ଯେନ କର୍ମାଣ୍ୟପସୋ ମନୀଷିଣୋ ଯଜ୍ଞେ କୃଣ୍ୱନ୍ତି ବିଦଥେଷୁ ଧୀରାଃ । ଯଦପୂର୍ବଂ ଯକ୍ଷମନ୍ତଃ ପ୍ରଜାନାଂ ତନ୍ମେ ମନଃ ଶିବସଙ୍କଳ୍ପମସ୍ତୁ ।

---

ଯତ୍ପ୍ରଜ୍ଞାନମୁତ ଚେତୋ ଧୃତିଶ୍ଚ ଯଜ୍ଜ୍ୟୋତିରନ୍ତରମୃତଂ ପ୍ରଜାସୁ । ଯସ୍ମାନ୍ନ ଋତେ କିଞ୍ଚନ କର୍ମ କ୍ରିୟତେ ତନ୍ମେ ମନଃ ଶିବସଙ୍କଳ୍ପମସ୍ତୁ ।

---

ଯେନେଦଂ ଭୂତଂ ଭୁବନଂ ଭବିଷ୍ୟତ୍ ପରିଗୃହୀତ ମମୃତେନ ସର୍ବଂ । ଯେନ ଯଜ୍ଞସ୍ତାୟତେ ସପ୍ତହୋତା ତନ୍ମେ ମନଃ ଶିବସଙ୍କଳ୍ପମସ୍ତୁ ।

---

ଯସ୍ମିନ୍ନୃଚଃ ସାମଯଜୂଂଷି ଯସ୍ମିନ୍ ପ୍ରତିଷ୍ଠିତା ରଥନାଭାବିବାରାଃ । ଯସ୍ମିଂଶ୍ଚିତ୍ତଂ ସର୍ବମୋତଂ ପ୍ରଜାନାଂ ତନ୍ମେ ମନଃ ଶିବସଙ୍କଳ୍ପମସ୍ତୁ ।

---

ସୁଷାରଥିରଶ୍ୱାନିବ ଯନ୍ମନୁଷ୍ୟାନ୍ନେନୀୟତେଽଭୀଶୁଭିର୍ବାଜିନ ଇବ । ହୃତ୍ପ୍ରତିଷ୍ଠଂ ଯଦଜିରଂ ଜବିଷ୍ଠଂ ତନ୍ମେ ମନଃ ଶିବସଙ୍କଳ୍ପମସ୍ତୁ ।

---

## ଅଥ ନମସ୍କାର ସ୍ତୋତ୍ରଂ

ଓଁ ଯୋ ଦେବୋଽଗ୍ନୌ ଯୋଽପ୍ସୁ ଯୋ ବିଶ୍ୱଂ ଭୁବନ ମାବିବେଶ । ଯ ଓଷଧିଷୁ ଯୋ ବନସ୍ପତିଷୁ ତସ୍ମୈ ଦେବାୟ ନମୋନମଃ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ
ହରିଃ ଓଁ
ବ୍ରହ୍ମକୃପା ହି କେବଳଂ ।

---

# ସମବାୟ-ଋଣ-ସମିତି ପ୍ରସଙ୍ଗ

---

## ସଂକ୍ଷିପ୍ତ ଜ୍ଞାତବ୍ୟ

ଈଶ୍ୱରଙ୍କ ଅଂଶୁ ଜଗତରେ ନରପତି,
ଲୋକସମାଜରେ ରକ୍ଷା ଅର୍ଥେ ଜନ୍ମିଛନ୍ତି ।
ରାଜାଙ୍କ କର୍ତ୍ତବ୍ୟ ପ୍ରଜାଗଣେ ପାଳିବାର,
ନ୍ୟାୟରେ କରିବେ ଦୋଷାଦୋଷର ବିଚାର ।
ନ କଲେ ନୃପତିଗଣ ପୃଥିବୀ ଶାସନ,
ଛିନ୍ନ ଭିନ୍ନ ହୋଇଯିବେ ଜାଣ ଲୋକଗଣ ।
ଧର୍ମପରାୟଣ ଜ୍ଞାନୀ ନୃପତି ସକଳ
ନିୟତ ଲୋଡ଼ନ୍ତି ପ୍ରଜାମାନଙ୍କ ମଙ୍ଗଳ ।
ଅନ୍ୟ ପକ୍ଷେ ସେହିପରି ସାଧୁ ପ୍ରଜାମାନେ
ରାଜାଙ୍କୁ କରିବେ ମାନ୍ୟ ଦେବତା ସମାନେ ।
ଯେ ଉପାୟେ ହେବ ପ୍ରଜାମାନଙ୍କ ଉନ୍ନତି,
ରାଜାଏ ବିବିଧରୂପ ବିଧାନ କରନ୍ତି ।
ଆମ୍ଭମାନଙ୍କର ରାଜେଶ୍ୱର ବର୍ତ୍ତମାନ
ପ୍ରଚଳିତ କଲେ ଏକ ନୂତନ ବିଧାନ ।
ଋଣବିଷୟକ ଗ୍ରାମ୍ୟସମିତି ତା ନାମ,
ପ୍ରଚଳିତ ହେବ ଉତ୍କଳରେ ଗ୍ରାମ ଗ୍ରାମ ।
ସର୍କାରଙ୍କ ଉଦ୍ଦେଶ୍ୟ ଯେ ଅତୀବ ମହତ,
ଯେଣୁ କି ପ୍ରଜାଙ୍କ ହିତ ଚିନ୍ତା ତାଙ୍କ ବ୍ରତ ।
ସଂକ୍ଷେପରେ ଶୁଣ ସେହି ସମିତି ଉଦ୍ଦେଶ୍ୟ,
ପଶ୍ଚାତେ ବୁଝିବ ଏହା ଅର୍ଥ ସବିଶେଷ ।
ଯେପରି ପ୍ରଜାଙ୍କ ହେବ ଧର୍ମକାର୍ଯ୍ୟେ ମତି,
ପୁଣି ହେବ ଯେ ଉପାୟେ ଆର୍ଥିକ ଉନ୍ନତି,
ଦୀନ ପ୍ରଜାଙ୍କର ହେବ ଯେହ୍ନେ ଉପକାର,
ସମିତି ସାହାଯ୍ୟେ ହେବ ବିଧି ଏ ପ୍ରକାର ।
ପ୍ରାଥମିକ ଶିକ୍ଷା ହେବ ବିସ୍ତାର ଦେଶରେ,
କିପରି ସମିତି ସଭ୍ୟମାନେ ପରସ୍ପରେ
ପାରିବେ ସାହାଯ୍ୟ କରି, ଶିଖିବେ ଏଥିରେ ।
ଶିଖିବେ ପୁନଶ୍ଚ ଏଥି, ରଖନ୍ତୁ ମନରେ ।
କୃଷି ଜମି ଯେ ଉପାୟେ ହେବ ଫଳବତୀ,
ଟୀକା ଯୋଗେ ହେବ ଗୋରୁବଂଶର ଉନ୍ନତି ।
ଅପବ୍ୟୟେ ନ କରିବେ ଲୋକେ ନିଜ ଧନ,
କରିବେ ସୁନୀତି ଶିକ୍ଷା ଚରିତ୍ର ଗଠନ ।
ବୃଥା ଯହିଁ ନ କରିବେ ଧନ ଅପବ୍ୟୟ,
ବରଞ୍ଚ ପାରିବେ କରି କିଞ୍ଚିତ ସଞ୍ଚୟ ।
ବୋଇଲୁ ସଂକ୍ଷେପେ ଏବେ ଏହି ବିବରଣ,
ବିସ୍ତୃତ ବୃତ୍ତାନ୍ତ ପରେ କରିବ ଶ୍ରବଣ ।

---

## ବାରଗୋଟି ବିଷୟର ପ୍ରଶ୍ନୋତ୍ତର

### ୧ । ସମିତିର ଅଭିପ୍ରାୟ ବା ଉଦ୍ଦେଶ୍ୟ ।

ଶିଷ୍ୟ—ଶିଷ୍ୟ ପୁଚ୍ଛା କଲା ଗୁରୁଙ୍କୁ ଚାହିଁ,
କଥାଏ ପୁଚ୍ଛିବି ବୋଲ ଗୋସାଇଁ;
ସମିତି ନାମ ଯେ ଯାଉଛି ଶୁଣା,
ଏ ବିଷୟ କିଛି ନ ଗଲା ଜଣା ।
ଏହି ସମିତିର କିବା ଉଦ୍ଦେଶ୍ୟ,
କିବା ସେ ଲୋଡ଼ଇ ବୋଲ ବିଶେଷ ।

ଗୁରୁ— ଶିଷ୍ୟ କଥା ଶୁଣି ବୋଇଲେ ଗୁରୁ,
ବୋଲିବୁଁ ସେ କଥା ଯାହା ପଚାରୁ ।

ଯେ କଥା ନ ବୁଝି ହେଉଛୁ ବଣା,
ସେ ସମସ୍ତ କଥା ଆମ୍ଭଙ୍କୁ ଜଣା ।
ସମିତିରେ ଯେତେ ଥିବେଟି ସଭ୍ୟ,
ସେମାନଙ୍କ ହେବ ଯେପରି ଲଭ;
ଯେ ଉପାୟେ ହେବେ ଋଣରୁ ମୁକ୍ତ,
ବଢ଼ିବ ତାହାଙ୍କ ଧନ ବହୁତ;
ଯେପରି କରିବେ ଧନ ସଞ୍ଚୟ,
ସମିତି ତାହାର କରେ ଉପାୟ ।
ସମିତିର ଅଭିପ୍ରାୟ ଅସଲ—
ଲୋକଙ୍କର ହେବ ଯେପରି ଭଲ ।

## ୨ । ମୂଳଧନ

ଶିଷ୍ୟ—ଶିଷ୍ୟ ପୃଚ୍ଛା କଲା ବିନୟ କରି,
ପାରିବେ ସମିତି ଏହା କପରି ?

ଗୁରୁ— ଏକ ସଙ୍ଗେ ମିଳି ସମିତି ସଭ୍ୟେ,
ଚଳାଇବେ ନିଜ କର୍ମକୁ ସର୍ବେ ।

ଶିଷ୍ୟ—ସଭ୍ୟେ ଅନ୍ୟଠାରୁ କି ଉପାୟରେ
ପାଇବେଟି ଋଣ ଅଳ୍ପ ସୁଧରେ ?

ଗୁରୁ— ଅଳପ ସୁଧରେ କପରି ଋଣ
ସମିତିକୁ ମିଳେ ଶୁଣ କାରଣ ।
ପିଲାଟିଏ ଖଣ୍ଡେ ବାଉଁଶ ଟାଣି,
ସହଜରେ ଭାଙ୍ଗି ପାରିବ ଜାଣ ।
କୋଡ଼ିଏ ବାଉଁଶ ବନ୍ଧା ଗୋଛରେ
ହାତୀ ପରି ଜନ୍ତୁ ଭାଙ୍ଗି ନ ପାରେ ।
ଖାତକ ପାଖରୁ ସୁଧ ବହୁତ
ମହାଜନ ନିଏ ଏହା ଜାଣ ତ ?
ବୁଝିଛ କି ତୁମ୍ଭେ ଏଥି କାରଣ ?
ଖାତକର ଯେବେ ଘଟେ ମରଣ,
ଅବା ଘର ଛାଡ଼ି ଗଲେ ପଳାଇ,
କମ୍ବା ଦିଏ ଯେବେ ଟଙ୍କା ଠକେଇ,
ମହାଜନ ଟଙ୍କା ବୁଡ଼େ ନିଶ୍ଚୟ,
ଏଥିରେ ନାହିଁଟି କିଛି ସଂଶୟ ।
ଏକ ଗ୍ରାମେ ଥିବା ଲୋକ ଯାବତ
କେହି କାହାଠାରେ ନୁହେ ଅଜ୍ଞାତ ।
ପରସ୍ପର ମିଳି ସବୁ ଉଚିତ
କାର୍ଯ୍ୟ କରିବାକୁ ହେଲେ ମିଳିତ,
ଋଣ ଟଙ୍କା ଦେବ ଜଣକ ପାଇଁ
ଆନ ଜଣେ ଲଗା ହେଲେଟି ଯାଇ,
ଟଙ୍କା ନଷ୍ଟ ହେବା ନ ଥାଏ ଭୟ,
ଏହା ତୁମ୍ଭେ ଜାଣିଥିବ ନିଶ୍ଚୟ ।
ଏଥକୁ ସମିତି ଅଳ୍ପ ସୁଧରେ
ଟଙ୍କା ଋଣ କରି ପାରେ ଅଳ୍ପରେ ।
ସମିତିରେ ସଭ୍ୟ ଥାଏ ଯେ ନର,
ଇଂରାଜରେ ତାକୁ ବୋଲେ ମେମ୍ବର ।

## ୩ । ଦାୟିତ୍ୱ

ଶିଷ୍ୟ—ମେମ୍ବର ସମିତି ମଧ୍ୟକୁ ଯାଇ
କେତେ ପରିମାଣେ ହେବେଟି ଦାୟୀ ?

ଗୁରୁ— ମେମ୍ବର ହେଉ ବା ହେଉ ସେ ଅନ୍ୟ,
ସମିତି ତା' ଠାରୁ କଲେକ ଋଣ,
ପ୍ରତ୍ୟେକ ମେମ୍ବର ସେ ଋଣ ପାଇଁ
ସମ୍ପତ୍ତି ସହିତ ରହିବେ ଦାୟୀ ।

## ୪ । ସତର୍କ ବା ସାବଧାନତା

ଶିଷ୍ୟ—କପରି ବିପଦୁଁ ମେମ୍ବରଗଣ
ପାଇବେଟି ରକ୍ଷା ବୋଲ ଆପଣ ?

ଗୁରୁ—ଯେତେ ଉପବିଧି ନିୟମାବଳୀ
ସମିତି ସମ୍ବନ୍ଧେ ଆସୁଛି ଚଳି,

ସେ ସମସ୍ତ ଶିଖି ତଦନୁସାରେ
କାର୍ଯ୍ୟ କଲେ ମୁକ୍ତ ହେବାକୁ ପାରେ ।
ଅଶିକ୍ଷିତ ହେଲେ ମେମ୍ବର କେହି,
ସେ ଆନ ପାଠୂଆ ପାଖକୁ ଯାଇ ।
ବୁଝାଇ ଦେବାକୁ ନିୟମାବଳୀ
ବିନୟେ କରିବ ତା'ଠାରେ ଅଳି ।

ଶିଷ୍ୟ—ଉପବିଧି ଅବା ନିୟମାବଳୀ
ମେମ୍ବରଙ୍କୁ ରକ୍ଷା କରେ କି ଭଳି ?

ଗୁରୁ—ଅବିଶ୍ୱାସୀ ଯେବା, ବୋଲେ ନିୟମ,
ନ ଦେବ ତାହାକୁ ମେମ୍ବର କାମ,
ଯେଉଁ ସକାଶେ ଟି ନେବେ ସେ ଋଣ,
ସେଥିରେ ହିଁ ଖର୍ଚ୍ଚ କରିବେ, ଶୁଣ;
ଏହି ଭାବେ ଋଣ ହେବ ଯେତେକ,
ଉଦ୍ଦେଶ୍ୟ ଥିବଟି ଲାଭଜନକ;
ଜାଣିଥା ପ୍ରତ୍ୟେକ ଋଣ ନିମିତ୍ତ
ଯଥାର୍ଥ ଜାମିନ ଦେବା ଉଚିତ;
ସବୁ ମେମ୍ବରଙ୍କ ଏକଯୋଗରେ
ସବୁ କାର୍ଯ୍ୟ ହେବ ରଖ ମନରେ;

### ୫ । ଋଣ ପରିଶୋଧ କିସ୍ତି

ଶିଷ୍ୟ—ଋଣ ପରିଶୋଧ ହେବ କିପରି ?
ବୋଲିବା ହେଉନ୍ତୁ କରୁଣା କରି ।

ଗୁରୁ—ଯେଉଁ ବାବଦରେ ମେମ୍ବରଗଣ
ଖର୍ଚ୍ଚ କରିଥିବେ ଟଙ୍କାକୁ ଜାଣ,
ସେଥିରୁ ହୋଇବ ଯେବଣ ଆୟ
ତଦ୍ୱାରା ସୁଝିବେ ଋଣ ନିଶ୍ଚୟ ।

ଶିଷ୍ୟ—ଏ କଥା ସ୍ଥିରଟି ହେବ କିପରି ?
ବୋଲିବା ହେଉନ୍ତୁ କରୁଣା କରି ।

ଗୁରୁ—ଶିଳ୍ପୀ, ବେବହାରୀ, କୃଷକମାନ,
ତାଙ୍କ ପାଇଁ ଭିନ୍ନ ଭିନ୍ନ ବିଧାନ ।
ଶିଳ୍ପୀ, ବେବହାରୀ ଲୋକଙ୍କ ଜାଣ,
ସବୁବେଳେ ଆୟ ହୁଏ ସମାନ ।
ସେମାନଙ୍କ ଯାହା ଅଟଇ ଦେୟ
କରିବ ନିଶ୍ଚୟ ତାହା ଆଦାୟ
ମାସିକ ବା ତିନ-ମାସ କିସ୍ତିରେ ;
ଅସୁବିଧା ନାହିଁ ଜାଣ ଏଥିରେ ।
ଚାଷୀମାନଙ୍କର କେବଳ ଆୟ
ହୁଅଇ ଫସଲ ମଳା ସମୟ ।
ସେମାନେ ଟି ତିନ ପ୍ରକାରେ ଋଣ
କରନ୍ତି, ବୋଲୁଛୁଁ, ସେ କଥା ଶୁଣ ।
ପ୍ରଥମଶ୍ରେଣୀର ଋଣ କାରଣ,
କହୁଛୁ ସେ କଥା, କର ଶ୍ରବଣ ।
ଲଙ୍ଗଳ, ବିହନ କିଣିବା ପାଇଁ,
ବଳଦ ପୋଷିବା ସକାଶେ କେହି,
ଯେ ଋଣ ଆଣନ୍ତି କୃଷକଗଣ
କୃଷିରେ ଖରଚ ସେ ସବୁ ଜାଣ ।
ଚାଷୀଙ୍କର ଆୟ ହୁଅଇ ଥରେ,
ଫସଲ ଅମଳ କଲା ବେଳରେ,
ତହିଁଠାରୁ ଏକ ବର୍ଷ ମଧ୍ୟରେ
ଏ ଋଣ ସୁଝିବେ ବିନା କଷ୍ଟରେ ।
ଏ ପରେ ଦ୍ୱିତୀୟ ଶ୍ରେଣୀର ଋଣ ।
ବିଭା ଶ୍ରାଦ୍ଧ ଘର ନିମିତ୍ତମାନ,
ଅଥବା କାହାର ଗୃହ ନିର୍ମାଣ
ଏ ସବୁ ନିମିତ୍ତ କରନ୍ତି ଋଣ ।
ରେଜା ଦେଣା ସବୁ ସୁଝିଟ ପାଇଁ,
କିଣିବାକୁ ଗାଡ଼ି ବଳଦ କେହି,
ବିପଦରେ ପଡ଼ି କେହି ବା ପୁଣି
ଋଣ ଲୋଡ଼ି ଥାନ୍ତି ନିଶ୍ଚୟ ଜାଣ ।
ଏ ସବୁ ଋଣକୁ ଖାତକ ଭାଇ
ଦୁଇ ତିନ ବର୍ଷେ ସୁଝିବ ହାଙ୍କ

ତୃତୀୟ ଶ୍ରେଣୀର ଶୁଣ ବୃତ୍ତାନ୍ତ,
ବେଶି କର୍ଜ ପରିଶୋଧ ନିମିତ୍ତ,
କୂଅ ଅବା ବନ୍ଧ ତିଆରି ପାଇଁ,
କିଣିବାକୁ ଜମି ଅପର କେହି
ଋଣ କଲେ ତାର ଲାଭ ଅନେକ,
ଚାରି ପାଞ୍ଚ ବର୍ଷେ ଶୁଝିବ ଲୋକ ।

ଶିଷ୍ୟ – ବିଭାଘର କିମ୍ବା ଶ୍ରାଦ୍ଧ ନିମିତ୍ତ
ନିତାନ୍ତ କି ଋଣ ଦେବା ଉଚିତ ?

ଗୁରୁ—ବେହିସାବ ଖର୍ଚ୍ଚ କରି ଏଥିରେ
କେତେ ଲୋକ ନଷ୍ଟ ହେଲେ ଦେଶରେ !
ଯଦି ନ କରିବ ଏହାକୁ ବନ୍ଦ
ସମିତିର ଜାଣ ହୋଇବ ମନ୍ଦ ।
ମାତ୍ରକ ଏ ସବୁ ନିମିତ୍ତ ପାଇଁ
ଅଳ୍ପ ହେଲେ ଟଙ୍କା ଲୋଡ଼ା ଅଟଇ ।
ଋଣ ପରିମାଣ କରି ନିର୍ଣ୍ଣୟ
ପଞ୍ଚାଏତମାନେ ଦେବେ ନିଶ୍ଚୟ,
ମାତ୍ରକ ନ ଦେବେ କଦାଚ ବେଶି,
ରଖିଥିବ ମନେ ଏହା ବିଶେଷି ।
ରଖି ଥିବ ମନେ ଏହା ନିଶ୍ଚିନ୍ତ
ଏଥିରେ ଯେ ଲାଭ ନାହିଁ କିଞ୍ଚିତ ।
ମନରେ ରଖିବ ସମିତି କାର୍ଯ୍ୟ
ଏଥି ନଷ୍ଟ ହେବା ନୁହେ ଆଶ୍ଚର୍ଯ୍ୟ ।

ଶିଷ୍ୟ—ଋଣ ଶୁଝିବାକୁ କିସ୍ତି କିପାଇଁ
କରିବାକୁ ହୁଏ ବୋଲ ଗୋସାଇଁ ।

ଗୁରୁ—ମେମ୍ବରଙ୍କ ଋଣ ମୁକ୍ତି ସକାଶ
ସମିତି ବିଶେଷ କରେ ପ୍ରୟାସ ।
ମହାଜନମାନେ କୌଣସି କିସ୍ତି
ଧାର୍ଯ୍ୟ ନ କରନ୍ତି କାରଣ ଅଛି ।
ଥାଏ ସେମାନଙ୍କ ଏ ଅଭିପ୍ରାୟ
କପଟ କରିବେ ବେଶି ଆଦାୟ,
ମିଛ ହିସାବରେ ଅସଲ ସୁଧ
ଦେଖାଇ କରନ୍ତି ଲୋକକୁ ବୋଧ;
ପରେ ସେମାନଙ୍କ ପାଉଣା ବଳେ
ରଇତର ଜମି ନିଅନ୍ତି ହେଲେ ।
କିସ୍ତିଟି ମେମ୍ବର ସୁବିଧା ମତେ
ଧାର୍ଯ୍ୟ ହୋଇଥାଏ କର ପରତେ ।
ମୂଳ କଲନ୍ତର ହିସାବ ବୁଝି
ବିନା କଷ୍ଟରେ ସେ ପାରଇ ଶୁଝି ।
ସମିତିରୁ ଯଦି କରିଣ ଋଣ,
ସୁଧ ମାତ୍ର ଦେବେ ଖାତକଗଣ,
ଅବସ୍ଥା ତାଙ୍କର ନ ହେବ ଭଲ,
ସମିତିର କାର୍ଯ୍ୟ ହେବ ଅଚଳ ।
ସୁଅ ଚାଲୁଥିବା ନଦୀରେ ପାଣି
ଅଟେ ହିତକର ଏ କଥା ଜାଣି
ସମିତି କରିବେ ଟଙ୍କା ଆଦାୟ,
ଲଗାଇବେ ପୁଣି ସେ ସମୁଦାୟ ।
ମେମ୍ବର ହାତରେ ଋଣର ଟଙ୍କା
ପଡ଼ି ରହିଗଲେ ବହୁତ ଶଙ୍କା ।
ସୁଅ ନ ଥିବାରୁ ପୋଖରୀ ପାଣି
ସ୍ୱାସ୍ଥ୍ୟ କରିଥାଏ ଲୋକଙ୍କ ହାନି ।

ଶିଷ୍ୟ—ପୁଣି କଥାଟାଏ କରେଁ ପ୍ରଶନ,
କେଉଁ କେଉଁ ସ୍ଥଳେ ମେମ୍ବରଗଣ
ସବୁ କିସ୍ତି ଟଙ୍କା ହିସାବ କରି
ଏକାବେଳେ ଦେବେ ଆଦାୟ କରି ?

ଗୁରୁ—ଗୋଟାଏ ଫସଲ ଥିଲେ ତାଙ୍କର,
ଏକାବେଳେ ଟଙ୍କା ଦେବେ ନିକର ।
ଯାହାର ଅଧିକ ଫସଲ ଥିବ
କିସ୍ତି ହିସାବେ ସେ ଋଣ ଶୁଝିବ ।

ଏଥିର ଦୃଷ୍ଟାନ୍ତ କହୁଛି ଶୁଣ ।
ରବି ଫସଲ ଓ ଶାରଦ ଧାନ
ଏ ଦୁଇ ଫସଲ ଯାହାର ଥିବ,
ଦୁଇ କିସ୍ତିରେ ସେ ଋଣ ଶୁଝିବ,
କିସ୍ତି ଅଧେ ଟଙ୍କା ଫଗୁଣେ ଦେବ,
ବୈଶାଖରେ ଆଉ ଅଧେ ଶୁଝିବ ।
ଫସଲ ଅମଳ ହେଲା ମାତ୍ରକେ,
ଯଦି ନ ଶୁଝନ୍ତି ଋଣ ଖାତକେ,
ପରେ ହୁଏ ଶସ୍ତା ଫସଲ ଦର,
ଏଥିପାଇଁ କ୍ଷତି ହେବ ତାଙ୍କର ।
ପାଇଲେ ସେମାନେ ବେଶି ସମୟ
ଆଉ ଆଉରେ ଟଙ୍କା କରିବେ ବ୍ୟୟ ।

## ୭ । ମେମ୍ବର ନେବା ଓ ବାହାର କରି ଦେବା

ଶିଷ୍ୟ – କିପରି ନୂତନ ମେମ୍ବରମାନ
ବସ୍ତୁ ହେବେ ବୋଲି ବିଧି ବିଧାନ ।

ଗୁରୁ – ପଞ୍ଚାଏତମାନେ ସଭା କରିଣ
ସେମାନଙ୍କୁ ନେଇ ପାରିବେ ଜାଣ ।
ସମିତିର ଗୃହପଣି ମେମ୍ବରେ
କାହାକୁ ନୂତନ ସଭ୍ୟ ପଦରେ
ନେବାକୁ ଆପତ୍ତି କରନ୍ତି ଯେବେ,
ସମିତି ତାହାକୁ ନ ନେବ କେଭେ,
ନେବା ପ୍ରବେଶିକା ଫିସ୍ ସମସ୍ତ
ତକ୍ଷଣେ ତାହାକୁ ଦେବ ଫେରସ୍ତ ।
ନୂତନ ମେମ୍ବର ନେବା କାଳରେ
ମେମ୍ବର ସକଳ ସାବଧାନରେ
ସମ୍ପତ୍ତି ତାହାର ତା ଆଚରଣ
ଦେଖିଣ କରିବେ ତାକୁ ଗ୍ରହଣ ।
ଯାହାର ଅଛଇ ଉତ୍ତମ ଗୁଣ
ସେ ଲୋକକୁ ଯେବେ ଦେବଟି ଋଣ,
ପାରୁପରିଯନ୍ତେ ସେ ଥାଏ ଲାଗି
ଆପଣାର ଋଣ ଶୁଝିବା ଲାଗି ।
ମାତ୍ର ଜାଣ ଯେତେ ଖରାପ ଲୋକେ
ହଜାର ତାଙ୍କର ଥାଉ ପଛକେ,
ବିନା ଜୁଲୁମରେ ଦେବାକୁ ଋଣ
କେଭେ ନା ସେମାନେ ବଳାନ୍ତି ମନ ।
ଖୁବ ହୁସିଆର, ମେମ୍ବରଗଣ,
ବାଛି ନେବା ଗୁରୁତରଟି ଜାଣ ।
ଉପଯୁକ୍ତ ଲୋକ ନେଲେକ ବାଛି
ବିପଦର ଶଙ୍କା ନ ଥାଏ କିଛି ।

ଶିଷ୍ୟ—ମେମ୍ବରମାନେ କି ଇସ୍ତଫା ଦେଇ
ପଦଟିକୁ ଛାଡ଼ି ପାରିବେ ଯାଇ ?

ଗୁରୁ— ଇଚ୍ଛା କଲେ କେହି ଛାଡ଼ି ସେ ପାରେ
ମାତ୍ର ତାର ଛାଡ଼ି ଯିବା କାଳରେ ।
ସମିତିର ଥିବା ଋଣ ସକାଶ
ଦାୟୀ ରହିବ ସେ ଦୁଇ ବରଷ ।

ଶିଷ୍ୟ— ମେମ୍ବର ଯଦ୍ୟପି ମନ୍ଦ ହୁଅଇ
କେଉଁ ଶାସ୍ତି ତାକୁ ପାରିବୁଁ ଦେଇ ?

ଗୁରୁ— ବିଧି ନ ମାନିବା ଯୋଗରୁ ପୁଣ,
କ୍ଷମତା ଥାଉଣୁ ନ ଶୁଝେ ଋଣ,
କିବା ସମିତିର କ୍ଷତିଜନକ
କାର୍ଯ୍ୟ ଯେବେ କରେ ସେପରି ଲୋକ ।
ପଞ୍ଚାୟତମାନେ ସେ ମେମ୍ବରକୁ
ଜରିମାନା ଅବା ବାହାର ତାକୁ,
କରିଦେଇ, ପରେ ମେମ୍ବରମାନ
ସାଧାରଣ ସଭା କରି ଆହ୍ୱାନ,
ସେମାନଙ୍କ କରିଥିବା ବିଷୟ
ମଞ୍ଜୁର ଯେ କରି ନେବେ ନିଶ୍ଚୟ ।

ମେମ୍ବରଙ୍କୁ ବିଦା ଦେବା ପ୍ରସ୍ତାବେ
ସଭାରେ ଯେତେକ ମେମ୍ବର ଥିବେ ।
ତହିଁ ବାରପଣି ସମ୍ମତି ଦେଲେ
ମେମ୍ବର ବାହାର ହୋଇବ ଭଲେ ।

## ୭ । ସାଧାରଣ ସଭା

ଶିଷ୍ୟ—ସାଧାରଣ ସଭା କ୍ଷମତା କଣ
ସେଥିର ବୃତ୍ତାନ୍ତ ବୋଲ ଆପଣ ।

ଗୁରୁ— ବୃତ୍ତାନ୍ତ କ୍ଷମତା ଅଟଇ ଏହାର
ପଞ୍ଚମାନେ ଅନୁଗତ ତାହାର ।
ସମିତିରେ ଥିବେ ଯେତେ ସଦସ୍ୟ
ଅନ୍ୟୂନ ତାହାର ପଞ୍ଚମ ଅଂଶ
ହାଜର ନ ଥିଲେ ସଭା ସ୍ଥଳରେ,
ସାଧାରଣ ସଭା ହୋଇ ନ ପାରେ ।
ନିତାନ୍ତ ପକ୍ଷରେ ବରଷେ ଥରେ
ସଭା ବସିବଟି ରଖ ମନରେ ।
ସଭାର ବିଶେଷ କ୍ଷମତାମାନ
ନିମ୍ନରେ କହୁଛି, କର ଶ୍ରବଣ ।
ପଞ୍ଚାୟତଗଣ, ସରପଞ୍ଚ ଏକ,
ତହବିଲଧାରକ ପୁଣି କେତେକ,
ଏହିମାନେ ଜାଣ ପ୍ରତି ବର୍ଷରେ
ନିଯୁକ୍ତ ହୋଇବେ ସଭା ମଧ୍ୟରେ ।
ପୁରୁଣା ମେମ୍ବର ଏହି ସଭାରେ
ପୁଣି ମୁକରର ହେବାକୁ ପାରେ ।

( ୨ ) ଆସନ୍ତା ବର୍ଷକୁ ଯେ ପରିମାଣ
ସମିତି କରିବ ଋଣ ଗ୍ରହଣ,
ସେ ବିଷୟ ସ୍ଥିର ହେବ ସଭାରେ ।

( ୩ ) ଋଣ ଆଉ ଅମାନତ ଉପରେ
କିଆ ଯିବ ଯେଉଁ ସୁଧର ହାର
ସଭାରେ ସେ କଥା ହୋଇବ ସ୍ଥିର ।

( ୪ ) କେତେ ବେଶି ଋଣ ମେମ୍ବର ଲୋକେ
ନେଇ ପାରିବେଟି ଏକାବେଳକେ ।
ତହିଁ ହେବ ଏହି କଥା ନିର୍ଣ୍ଣୟ,
ମନ ଦେଇ ଶୁଣ ଆନ ବିଷୟ ।
ସରପଞ୍ଚ କିମ୍ବା ଆନ ପଞ୍ଚର
କରିବେ ଯଦ୍ୟପି ମନ୍ଦ ବେଭାର ।
ସାଧାରଣ ସଭା ଚାହିଁବେ ଯେବେ
ସେମାନଙ୍କୁ ହେଲେ ତଡ଼ି ପାରିବେ ।
ପ୍ରତ୍ୟେକ ମେମ୍ବର କି ପରିମାଣ
କରି ପାରିବଟି ଋଣ ଗ୍ରହଣ ।
ସାଧାରଣ ସଭା ସୀମା ଏଥିର
ସାବଧାନେ ଯଦି ନ କରେ ସ୍ଥିର,
ପଞ୍ଚମାନେ ନିଜେ ଅଧିକ ଋଣ
ନେଇ ଯିବେ ଏହା ନିଶ୍ଚୟ ଜାଣ ।
ପଞ୍ଚଙ୍କର ସବୁ କ୍ଷମତାମାନ
ସାଧାରଣ ସଭା କରଇ ଦାନ,
ତେଣୁ ଏଭା କରି ନିୟମମାନ
କରିବ ତାହାଙ୍କ ପରିଚାଳନ ।
ପଞ୍ଚାୟତ କାର୍ଯ୍ୟ ଦେଖିବାପାଇଁ
ଯେତେବେଳେ ଇଚ୍ଛା ମେମ୍ବର କେହି
ପଞ୍ଚମାନଙ୍କର ସଭାସ୍ଥଳରେ
ଉପସ୍ଥିତ ହେବେ ବିନା ବାଧାରେ ।

ଶିଷ୍ୟ—ପଞ୍ଚାୟତ ସଭା କି କାର୍ଯ୍ୟ କରେ
ବୋଲିବା ହେଉନ୍ତୁ ଏକଥା ଥରେ ।

ଗୁରୁ—ସମିତିର କାର୍ଯ୍ୟ ଚଳାଏ ପୁଣି
ଋଣ ଦେଇଥାଏ ନିୟମ ଜାଣି ।
ପୂର୍ଣ୍ଣିମୀ ଦିନରେ ମାସକୁ ଥରେ
ସଭା କରିଥାନ୍ତି ପଞ୍ଚ ମେମ୍ବରେ ।
ସଭା ଦିବସରେ କାର୍ଯ୍ୟ ସମସ୍ତ
ସମାଧା କରିବା ଅଟେ ଉଚିତ ।

ସର୍ବ ସାକ୍ଷାତରେ କାର୍ଯ୍ୟଟି ହେଲେ
ବିପଦର ଶଙ୍କା ନ ଥାଏ ଭଲେ ।

## ୮ । ଗଚ୍ଛିତ ପାଣ୍ଠି

ଶିଷ୍ୟ— ସମିତିର ଧନ ବଢ଼େ କିପରି
ବୋଲିବା ହେଉନ୍ତୁ କରୁଣା କରି ।

ଗୁରୁ ସମିତି ଶକଡ଼ା ସାଢ଼େ ଚାଆରି
ବାର୍ଷିକ ସୁଧରେ ନେଇ ଉଧାରି,
ପନ୍ଦର ଟଙ୍କା ଓ ଦଶ ଅଣାରେ
ଋଣ ଦିଏ ସେହି ଟଙ୍କା ଉପରେ;
ତେଣୁ ଶତକର ବର୍ଷ ମଧ୍ୟରେ
ଲାଭ ତିନ ଟଙ୍କା ଦିଅଣା କରେ ।
ଏହି ଲାଭ ଟଙ୍କା ସମିତିର ଥାଏ,
ତାହା ପୁଣି ସେହି ଋଣେ ଖଟାଏ ।
ଏହି ଲାଭେ ବଢ଼େ ସମିତି ପାଣ୍ଠି,
ସଭ୍ୟମାନେ ତାକୁ ନ ନେବେ ବାଣ୍ଟି ।
ଥୋକେ ମୂଳଧନ ରହିଛି ଯାହା
ପ୍ରତ୍ୟେକ ମେମ୍ବର ଜାଣିବେ ତାହା;
ମୂଳଧନ ଯଦି ବଢ଼େ ପ୍ରଚୁର
କମାଇ ପାରିବେ ସୁଧର ହାର ।
କମାଇବା ପୁଣି ଅତି ସତ୍ୱର
ନୁହଇ ଉଚିତ ସୁଧର ହାର;
ମୂଳଧନ ତେଣୁ, କଲେ ଏପରି,
ବଢ଼ିବାକୁ ହୁଏ ବିଶେଷ ଡେରି ।
ସମିତିର ଅମାନତ ଟଙ୍କାର
ଅଳପ ଥିବାରୁ ସୁଧର ହାର,
ଏହାଦ୍ୱାରା ଲାଭ ହୁଏ ଅଶେଷ,
ମୂଳଧନ ବଢ଼ିଯାଏ ବିଶେଷ ।
ଏଣୁ ଅମାନତ ପାଇବା ପାଇଁ
ମେମ୍ବରମାନଙ୍କୁ ଧରିବ ଯାଇଁ ।

ଋଣେ ଖଟାଇଲେ ସେ ମୂଳଧନ,
ତହିଁରୁ ମିଳଇ ଯେ ସୁଧମାନ ।
ସେ ସମସ୍ତ ମିଶେ ମୂଳ ଧନରେ,
ତେଣୁ ମୂଳଧନ ବଢ଼େ ସତ୍ୱରେ ।
ସବୁ ମୂଳଧନ ନ ଦେଇ ଋଣେ
ଗଚ୍ଛିତ ରଖିବ କିଛି ଯତନେ;
ସ୍ଥିରପଣିରୁ ସେ ନ ହେବ ନ୍ୟୂନ
ଡାକଘରେ ତାକୁ ରଖିବ ଜାଣ ।
ସଦର ବେଙ୍କଟି କୌଣସି କାଳେ
ଦେଇ ଥିବା ଋଣ ମାଗି ବସିଲେ ।
ଯେବେ ସେ କୌଣସି ବିପଦେ ପଡ଼େ,
ଏ ଗଚ୍ଛିତ ପାଣ୍ଠି ସମିତି ଲୋଡ଼େ ।

## ୯ । ଅମାନତ ବା ଡିପୋଜିଟ୍

ଶିଷ୍ୟ—ଅମାନତ ଦ୍ୱାରା କି ଉପକାର
ହୁଅଇ ବୋଲନ୍ତୁ ଗୁରୁ ମୋହର ।

ଗୁରୁ—(କ) ବିଭା ଶ୍ରାଦ୍ଧ ଆଦି କାର୍ଯ୍ୟ ସକାଶେ
ଅମାନତ ଟଙ୍କା ବିନା ଆୟାସେ
ନେଇ କାର୍ଯ୍ୟ ଚଳାଇବେ ମେମ୍ବରେ,
ସେମାନଙ୍କ ଏହା ଲାଗେ ହିତରେ ।
(ଖ) ଅମାନତ-ଟଙ୍କା ସୁଧର ହାର
ଅଳପ ଥିବାରୁ, ଜାଣ ନିକର,
ମୂଳଧନ ବଢ଼ିଯାଏ ସତ୍ୱର,
ସମିତିର ହୁଏ ଏ ଉପକାର ।

## ୧୦ । ସମିତି ସଂଘ (Union)

ଶିଷ୍ୟ—ଜାମିନ ସକାଶେ ହୋଇଣ ଗଢ଼ା
ସମିତି-ସଙ୍ଘଟି କିରୂପେ ଲୋଡ଼ା ?

ଗୁରୁ—କେନ୍ଦ୍ର ଧନାଗାର ପାଶରୁ ଜାଣ
ସମିତି ଗୁଡ଼ିକ ପାଆନ୍ତି ଋଣ ।

ଏକ ଆରେକର ଋଣର ପାଇଁ
ସେମାନେ ଯଦ୍ୟପି ହୋଇଣ ଦାୟୀ
ପରସ୍ପର ସଙ୍ଗେ ମିଳନ୍ତି ଯାଇ,
ସମିତି-ସଙ୍ଘ ଯେ ତାକୁ ବୋଲଇ ।
କେନ୍ଦ୍ର ଧନାଗାରେ ଯେ ଅଂଶମାନ
କୌଣସି ସମିତି କରେ ଗ୍ରହଣ;
ତା ଉପରେ ଯେଉଁ ମୂଲ୍ୟ ଲିଖିତ
ସେ ମୂଲ୍ୟର ଦଶଗୁଣ ପର୍ଯ୍ୟନ୍ତ
ଅବଶିଷ୍ଟ ସମିତିର ଋଣପାଇଁ
ସେ ସମିତି ଜାଣ ରହିବ ଦାୟୀ ।
ଅଂଶ ଦଶ ଗୁଣ ଯେତେ ହୁଅଇ
ତା ଅଧିକ ଋଣ ନ ନେବ କେହି ।
ପରସ୍ପର ପାଇଁ ଥିବାରୁ ଦାୟୀ
ଏକ କାର୍ଯ୍ୟ ଅନ୍ୟ ଦେଖିବ ଯାଇ ।
ଯେତେ ଋଣ, କେହି ଶୁଝି ପାରିବ,
ସେଥିରୁ ଅଧିକ ଯଦି ସେ ନବ,
ସେ ସମିତିକୁ ଯାଇ ନିଶ୍ଚୟ ଜାଣ,
ବାଧା ଦେବେ ବାକି ସମିତିମାନ ।
ଅନ୍ୟ ସମିତିର ପରିଦର୍ଶନ,
ନିଜ ଋଣ ପାଇଁ ଜାମିନ ପୁଣ,
ଏରୂପେ ପ୍ରତ୍ୟେକ ସମିତିର ହେବ
ଦୁଇଗୋଟି ଜାଣ ବିଶେଷ ଲାଭ ।

## ୧୧ । କେନ୍ଦ୍ର ଧନାଗାର ବା ସଦର ବେଙ୍କ୍

ଶିଷ୍ୟ—କେନ୍ଦ୍ର ଧନାଗାର ଅଛି କପାଇଁ,
କି ଉଦ୍ଦେଶ୍ୟ ତାର ବୋଲ ଗୋସାଇଁ ।

ଗୁରୁ—ମହକୁମା ମଧ୍ୟେ ଥିବେ ଯେତେକ
ଧନଶାଳୀ ଆଉ ଶିକ୍ଷିତ ଲୋକ,
ସେମାନେ ସମିତିଗଣ ସହିତ
ଅଂଶୀ ସ୍ୱରୂପରେ ହେଲେକ୍କ ଯୁକ୍ତ
ସେମାନଙ୍କଠାରୁ ପରିଦର୍ଶନ,
ମୂଳଧନ ପୁଣି ସାହାଯ୍ୟ ଅନ୍ୟ
ପାଇବେ ସମିତିଗୁଡ଼ିକ ନିକର,
ଏଥିରୁ ଉଦୟ ଏ ଉପକାର ।

ଶିଷ୍ୟ—କେବଣ ଉପାୟେ କିରୂପ ଭାବେ
କେନ୍ଦ୍ର ଧନାଗାର ଧନ ପାଇବେ ?

ଗୁରୁ—ଅଂଶୀଦାରଗଣ, ସମିତିବୃନ୍ଦ
କେନ୍ଦ୍ର ଧନାଗାରେ ଅଂଶ ବାବଦ
ଦେଇଥାନ୍ତି ଯେଉଁ ଅର୍ଥ ଗୁଡ଼ିକ,
ଧନାଗାର ପୁଣି ପାଏ ଯେତିକ

ଧାର କରି ଅବା ନିଜ ଲାଭରୁ,
ଧନାଗାର ପାଣ୍ଠି ଜାତ ସେଥିରୁ ।
ଏ ପାଣ୍ଠିରେ କିନ୍ତୁ, କହୁଛି ମୁହିଁ,
ସରକାରୀ ଟଙ୍କା ଜମାରୁ ନାହିଁ ।

ଧନୀ ଲୋକଠାରୁ କରିଣ ଋଣ
ଅବା ଅମାନତ କରି ଗ୍ରହଣ,
ମୂଳଧନ ଅଧିକାଂଶ ତାହାର
ସଂଗ୍ରହ କରଇ ଏ ଧନାଗାର ।

ଧାର୍ଯ୍ୟ ତାରିଖରେ ଯେତିକ ଦେୟ
ମେମ୍ବରମାନେ ତି ଦେବେ ନିଶ୍ଚୟ,
ସମିତିର କାର୍ଯ୍ୟେ ନ ହେବ ତ୍ରୁଟି,
ଏହି ବିଶ୍ୱାସରେ, ଜାଣିଥିବଟି,
ଧନାଗାରେ ଲୋକେ ଦିଅନ୍ତି ଟଙ୍କା,
ସେମାନଙ୍କ ମନେ ନ ଥାଏ ଶଙ୍କା
ଜାଣି ରଖିଥିବେ ସବୁ ମେମ୍ବରେ,
ଅଡ଼ିଟର ସେମାନଙ୍କ ନାମରେ
ଯଦ୍ୟପି କରନ୍ତି ମନ୍ଦ ରିପୋର୍ଟ,
ବକେୟା ଟଙ୍କା ବା ବଢ଼େ ଉତ୍କଟ,
ଟଙ୍କା ଦେଇଥିବା ଲୋକ ନିକର
ଫେରତ ମାଗିବେ ଟଙ୍କା ତାଙ୍କର;

ଆଉ ଦେବାପାଇଁ ସେ ଲୋକଗଣ
ନାରାଜ ହେବେ ଟି ନିଶ୍ଚୟ ଜାଣ ।
ସବୁ କାରବାର, ରଖ ମନରେ
ବିଶ୍ୱାସ ଉପରେ ନିର୍ଭର କରେ ।
ଥରେ ମାତ୍ର ହେଲେ ସୁଖ୍ୟାତି ନଷ୍ଟ,
ସମିତି ଦୁର୍ଦ୍ଦଶା ଘଟେ ଉତ୍କଟ ।

ଶିଷ୍ୟ—କେନ୍ଦ୍ର ଧନାଗାର ରହିଛୁ ଯାହା
କିରୂପେ ଚାଳିତ ହୁଅଇ ତାହା ?

ଗୁରୁ—ଡାଇରେକ୍‌ଟର ବା ପରିଚାଳକ
ନିଯୁକ୍ତ ହୁଅନ୍ତି ଜାଣ କେତେକ ।
ତହିଁରୁ ଅର୍ଦ୍ଧେକ ସମିତିଗଣ
ମନୋମତ କରି ଥାଆନ୍ତି ଜାଣ ।
ଜାଣିବ ସମିତିଗୁଡ଼ିକ ପାଇଁ
କେନ୍ଦ୍ର ଧନାଗାର ଅଛୁଟି ରହି ।
ଠକାଇଲେ ତାକୁ ସମିତିଗଣ,
କେନ୍ଦ୍ର ଧନାଗାର ହୋଇବ ଭଗ୍ନ,
ଧନାଗାର ସଙ୍ଗେ ସମିତି ଯେତେ
ନଷ୍ଟ ହୋଇଯିବେ, କର ପରତେ ।

## ୧୨ । ସରକାର ବାହାଦୁର

ଶିଷ୍ୟ—ସରକାର ପୁଣି ସମିତି ପାଇଁ
କି କାର୍ଯ୍ୟ କରନ୍ତି ବୋଲ ଗୋସାଇଁ ।

ଗୁରୁ—ଧର୍ମଶାସ୍ତ୍ର ମଧ୍ୟେ ଅଛୁ ବିଧାନ ,
ରାଜା ଯେ ଅଟନ୍ତି ପିତା ସମାନ ।
ପିତା ଜନ୍ମ ଦିଏ ପାଳେ ନୃପତି,
ଏଥିକୁ ଉଭୟେ ପିତା ଅଟନ୍ତି ।
ପିତା ଯେହ୍ନେ ଲୋଡ଼େ ପୁତ୍ର ମଙ୍ଗଳ
ରାଜା ତେହ୍ନେ ଲୋଡ଼େ ପ୍ରଜା କୁଶଳ ।
ବୁଝିଲେ ଯେ ଆମ୍ଭମାନଙ୍କ ରାଜା
ବହୁତ କଷ୍ଟରେ ଅଛନ୍ତି ପ୍ରଜା,

ଏ ଦେଶ ଦରିଦ୍ର ପ୍ରଜା ସକଳ
କରି ବସିଲେଣି ଋଣ ସମ୍ବଳ,
ସେମାନଙ୍କ ହିତ କାମନା କରି
ସମିତିଗୁଡ଼ିକୁ କରିଲେ ଜାରି ।
କେନ୍ଦ୍ର ଧନାଗାର, ଗ୍ରାମ୍ୟ ସମିତି
କ୍ୱଚିତ ସ୍ଥଳରେ ପାଇ ଥାଆନ୍ତି
ସରକାରଠାରୁ ଋଣ ଦାଦନ;
କିନ୍ତୁ ସେମାନଙ୍କ ପରିଦର୍ଶନ,
ଜମା ଖର୍ଚ୍ଚ ପୁଣି ଦେଖିବା ପାଇଁ
ରେଜିଷ୍ଟ୍ରାର ଆଦି ଅଛନ୍ତି ରହି ।
ରେଜିଷ୍ଟ୍ରାର ଯଦି ବୁଝି ପାରନ୍ତି
ସମିତିର ସଭ୍ୟ ମନ୍ଦ ଅଟନ୍ତି
ସେହି ସମିତିକୁ ଦେବେ ଉଠାଇ,
ଯେଉଁ ଋଣ ପ୍ରଜା ଥିବେଟି ନେଇ
ସରକାରଙ୍କର ଆଇନ ବଳେ
ସେ ସବୁ ଆଦାୟ ହୋଇବ ହେଳେ ।

ସରକାରଙ୍କର ପାଇ ଶାସନ
ଉତ୍ତମେ ଚଳାଇ ସମିତିଗଣ,
ଏ ବିଷୟ ଦେଖି ଧନୀ ସକଳ,
ବିଶ୍ୱାସ ତାଙ୍କର ହେବ ପ୍ରବଳ,
ସେମାନଙ୍କ ଥିବା ସଞ୍ଚିତ ଧନ
କେନ୍ଦ୍ର ଧନାଗାରେ ଦେବେଟି ଋଣ ।
ଟଙ୍କା କିଛି ଥିଲେ ତୁମ୍ଭ ହାତରେ,
ପୋତିପକାଇଛ କିପାଇଁ ଘରେ ?
ଚୋରର ଡକାଇତ ବହୁତ ଭୟ,
ହେନ ରାତି ମନ ନାହିଁଟି ଥୟ ।
ସମିତିକୁ ଦେଲେ ସେ ଟଙ୍କା ଋଣ,
କଳାନ୍ତର ସଙ୍ଗେ ପାଇବ ପୁଣ,—
ଭଲକରି ମନେ ରଖ ନିଶ୍ଚୟ,
ଏଥିରେ ନାହିଁଟି କିଛି ସଂଶୟ

---

# ସୂଚୀ

# ପରିଶିଷ୍ଟ

# କବିତାବଳୀ

## ( ବିଭିନ୍ନ ପତ୍ରପତ୍ରିକାରୁ ସଂଗୃହୀତ )

### କାଳାନୁକ୍ରମେ ସଜ୍ଜିତ

---

### ଗୁରୁଗୋଟି କଥା

କରନ୍ତୁ ଆଜ୍ଞା ହେ ଈଶ୍ୱର,
ଏହି ଗୁରୁଗୋଟି କଥା ମୋର ।
ହଉଟି ରଖିଥିବ ମନେ,
ହଉଟି ଭୁଲିବ ଯେସନେ ।
ସକଳ କରିଛ ସୃଜନ,
ସକଳ କରୁଛ ପାଳନ ।
ସକଳ ଦେଖୁଛ ନୟନେ,
ଏକଥା ମୋର ଥାଉ ମନେ । ୧ ।

ଜୀବନ ସୁଖ ଦୁଃଖ ବେନ,
ସ୍ନେହ ମମତା ମାୟା ଯେନ ।
ଯେତେକ ଅରଜିଲ ବିତ୍ତ,
ସଙ୍ଗେ ତା ନ ଯିବେ କିଞ୍ଚିତ ।
ନିଶ୍ଚୟ ଯିବ ତ୍ୟାଗ କରି,
ଏ କଥା ନ ଯାଏଁ ପାସୋରି । ୨ ।

ଯାହାର କଲି ଉପକାର । ୧ ।
ସେ ଲୋକ କଲା ଅତ୍ୟାଚାର । ୨ ।
କର କରୁଣା ଆହେ ହରି
ଏ କଥା ଯାଏଁ ମୁଁ ପାସୋରି ।

ଉ: ସା: ୨ୟ-ଭାଗ ୮ମ ସଂଖ୍ୟା ( ଭାଦ୍ର-୧୩୦୬ )

---

### ଲକ୍ଷ୍ମୀଙ୍କ ଅବସ୍ଥାନ

ଲକ୍ଷ୍ମୀଙ୍କ ଅବସ୍ଥିତି ଏବଂ ବର୍ଜନୀୟ ସ୍ଥାନ ଶରଶଯ୍ୟାଗତ ଭୀଷ୍ମଦେବଙ୍କୁ ଧର୍ମପୁତ୍ର ଯୁଧିଷ୍ଠିର ପ୍ରଶ୍ନ କଲେ, "ହେ ପିତାମହ, ଲକ୍ଷ୍ମୀଦେବୀ କେଉଁ ସ୍ଥାନରେ ସର୍ବଦା ବାସ କରନ୍ତି ଏବଂ କେଉଁ ସ୍ଥାନକୁ ପରିତ୍ୟାଗ କରନ୍ତି ?"

( ମହାଭାରତ ଅନୁଶାସନ ପର୍ବ ଏକାଦଶ ଅଧ୍ୟାୟ )

ଯୁଧିଷ୍ଠିର ଉବାଚ

ଆହେ ପିତାମହ ମୋତେ ବୋଲନ୍ତୁ ବିସ୍ତାରି
କିରୂପ ପୁରୁଷ ଅବା କି ପ୍ରକାର ନାରୀ,
ଯାହାଠାରେ ଦାସୀପରି ହୋଇ ଅନୁଗତ
ପଦ୍ମାଳୟା ଲକ୍ଷ୍ମୀ ବାସ କରନ୍ତି ସତତ ।

ଭୀଷ୍ମ ଉବାଚ

ଏ ବିଷୟେ ହୋଇଥିଲା ଯେପରି ଘଟନା,
ଆମ୍ଭଙ୍କୁ ପୂର୍ବର କଥା ଯାହା ଅଛି ଜଣା;
ରୁକ୍ମିଣୀ ଯେ କଥା ବାସୁଦେବ ସାକ୍ଷାତରେ
କମଳାଙ୍କୁ ପୁଚ୍ଛା କରିଥିଲେ ସମାଦରେ,
ବିସ୍ତାରି ସେ ସବୁ କଥା ବୋଲିବୁଁ ସମ୍ପ୍ରତି
ଶୁଦ୍ଧଚିତ୍ତ ହୋଇ ଶୁଣ ଅହେ ନରପତି ।
ଶ୍ରୀକୃଷ୍ଣ ସାକ୍ଷାତେ ଦିନେ ରୁକ୍ମିଣ ନନ୍ଦିନୀ
ପୁଚ୍ଛାକଲେ କମଳାଙ୍କୁ ହୋଇ କୌତୁକିନୀ ।

ଆଗୋ ପଦ୍ମାସନେ ଆଗୋ କମଳବରଣି,
ଜଗତ ପୂଜିତେ ନାରାୟଣ ବିଳାସିନି,
ତ୍ରିଲୋକେଶ୍ୱରଙ୍କ ଜାୟେ ମହର୍ଷି କଳ୍ପନେ,
ପଚାରିବି କିଛି କଥା ବୋଲନ୍ତୁ ଏକ୍ଷଣେ ।
ଇହଲୋକେ କି ପ୍ରକାର ମାନବ ପାଶରେ
ଔଦାର୍ଯ୍ୟ ସୌନ୍ଦର୍ଯ୍ୟ ବୀର୍ଯ୍ୟ ରତ୍ନାଦି ରୂପରେ
ରଜତ କାଞ୍ଚନ ଗଜ ତୁରଗ ସହିତ
ନିରନ୍ତର ସୁସ୍ଥ ଭାବେ ଥାଅ ଅବସ୍ଥିତ ।
ପୁଣି ଯାଅ ନାହିଁ ତୁମ୍ଭେ କେଉଁ ଲୋକଠାକୁ,
କୃପା କରି ଏହି କଥା ଦେବି ବୋଲିବାକୁ ।
ଏହିରୂପ କଥା ପୃଚ୍ଛା କରନ୍ତେ ରୁକ୍ମିଣୀ,
ବୋଇଲେ ଶ୍ରୀକୃଷ୍ଣ ସାକ୍ଷାତରେ କମଳିନୀ ।
ଗୋ ସୁଭଗେ ଯାହା ପୃଚ୍ଛା କଲ ବର୍ତ୍ତମାନ,
ବୋଲିବୁଁ ବିସ୍ତାରି ଶୁଣ ହୋଇ ସାବଧାନ ।
ଯେଉଁ ଲୋକ ଅନଳସ, ଦକ୍ଷ, ଅକ୍ରୋଧନ,
କାର୍ଯ୍ୟଦକ୍ଷ, ଜିତେନ୍ଦ୍ରିୟ, ଧର୍ମପରାୟଣ,
କୃତଜ୍ଞ, ପ୍ରତିଭାନ୍ୱିତ, ଅଧ୍ୟୟନେ ରତ
ଏପରି ପୁରୁଷଠାରେ ଥାଏ ମୁଁ ସତତ ।
ଯେବଣ ପୁରୁଷ ପୁଣି ନୁହେ କାର୍ଯ୍ୟକ୍ଷମ,
ନିଷ୍ଠୁର ବଚନଭାଷୀ; କୃତଘ୍ନ ଅଧମ,
କଳୁଷ ଚରିତ୍ର, ଗୁରୁଜନ-ଦ୍ୱେଷକାରୀ,
ସ୍ୱୈରି, ଅଧାର୍ମିକ, ଲୋକ ଦ୍ୱେଷୀ, ଦୁରାଚାରୀ,
କରେ ଯେବା ପରଧନ, ନାରୀ ଅଭିଳାଷ,
ଏ ପ୍ରକାର ଲୋକଠାରେ ନ କରେ ମୁଁ ବାସ ।
ଅଳ୍ପ ଶୌର୍ଯ୍ୟ ଅଳ୍ପବଳ ଅଳ୍ପବୁଦ୍ଧି ଜନେ,
ଯେମାନେ କରନ୍ତି କ୍ରୋଧ ଅତ୍ୟଳ୍ପ କାରଣେ ।
ଏକ କାର୍ଯ୍ୟ କରି କରେ ଅନ୍ୟ ଅଭିଳାଷ,
ସର୍ବଦା ଏ ଲୋକଠାରେ ନ କରେ ମୁଁ ବାସ ।
ଯେ ଲୋକ ନ କରେ ଆତ୍ମ-ଉନ୍ନତି-କାମନା,
ତାହାଠାରେ ରହିବାକୁ ନ କରୁଁ ବାସନା ।
କ୍ଷମାଶୀଳା ସତ୍ୟବନ୍ତୀ ସରଳା ଯେ ନାରୀ,
ସେ ଧାର୍ମିକା ନାରୀ ଅଟେ ଆତ୍ମ ପରିଗୃହୀ ।
ଯାହା ଘର ଦ୍ରବ୍ୟ ହୋଇଥାଏ ଛିନ୍ନଭିନ୍ନ,
ପରିଷ୍କାର ଯାହା ଘର ନୁହେଁ ପ୍ରତିଦିନ ।
ଲଜ୍ଜାହୀନ ପୁଣି ପତି-ଅପ୍ରିୟବାଦିନୀ,
ମଳିନା କୁବେଶା ପୁଣି କୁଳକଳଙ୍କିନୀ ।
ଥାଏ ନାହିଁ ଯେ ଅବଳା କୁଳକୁ ଆଦରି,
ଏପରି ନାରୀକୁ ଆମ୍ଭେ ଯାଉଁ ତ୍ୟାଗ କରି ।
ପତିବ୍ରତା ସତୀ ଅଳଙ୍କାରେ ବିଭୂଷିତା,
ସୁଶୀଳା ସୌଭାଗ୍ୟଯୁକ୍ତା ଲୋକେ ପ୍ରଶଂସିତା,
ବ୍ରତ ଆରାଧନା ଯେ ବା କରେ ଅଭିଳାଷ,
ଏ ପ୍ରକାର ନାରୀଠାରେ କରୁଁ ନିତ୍ୟ ବାସ ।
ଅପବିତ୍ରା ଦୟାହୀନା ସତତେ ଶୟନା,
ଏ ପ୍ରକାର ରମଣୀକୁ ନକରେ କାମନା ।
ସର୍ବବିଧ ଯାନେ, କନ୍ୟାଗଣେ ପୁଷ୍ପବନେ,
ଯୁଦ୍ଧସ୍ଥଳେ, ବୃଷ୍ଟିଯୁକ୍ତ ମେଘେ, ବିଭୂଷଣେ ।
ବିକସିତ ପଦ୍ମେ, ଗଜପୃଷ୍ଠେ, ଆସନରେ,
ସକଳ ସୌନ୍ଦର୍ଯ୍ୟେ, ଶାରଦୀୟ ନକ୍ଷତ୍ରରେ ।
ସରସିଜ ପୂର୍ଣ୍ଣେ ସରୋବରେ, ଆଗୋ ସତି,
ଇଚ୍ଛାପୂର୍ବ କରୁ ଆମ୍ଭେ ସର୍ବଦା ବସତି ।
ହଂସନନାଦିତ କୌଞ୍ଚଯୂଥ ସୁଶୋଭିତ,
ତପସ୍ୱି-ସେବିତ ତଟେ ତରୁ ବିରାଜିତ ।
ବନ୍ୟଜନ୍ତୁ ତୃପ୍ତ ଲଭିଥାନ୍ତି ଯାହା ନୀରେ,
କରୁଁ ଆମ୍ଭେ ବାସ ସେହି ସରୋବର ତୀରେ ।
ବ୍ରାହ୍ମଣ ଦେବତା ପୂଜା ପାନ୍ତି ଯେଉଁ ସ୍ଥାନେ,
କରନ୍ତି ଯେ ସ୍ଥାନେ ବାସ ସତ୍‌ପୁରୁଷମାନେ
ଯେଉଁଠାରେ ହେଉଥାଏ ଦୈବିକ ଉଲ୍ଲାସ,
ଆଗୋ ଦେବି କରୁଁ ଆମ୍ଭେ ତହିଁ ନିତ୍ୟବାସ ।
ସତତ ପଠନେ ରତ ଯେଉଁ ବିପ୍ରଗଣ,
ବିକ୍ରମୀ ସୁଜ୍ଞାନୀ ଦାତା ଯେ କ୍ଷତ୍ରିୟ ଜନ ।
କୃଷିକାର୍ଯ୍ୟେ ଅନୁରକ୍ତ ଯେଉଁ ବୈଶ୍ୟଗଣେ,
ନିଯୁକ୍ତ ଥାଆନ୍ତି ଶୂଦ୍ର ଯହିଁ ଦାସ ପଣେ ।
ସ୍ୱକର୍ମେ ନିରତ ଥାନ୍ତି ଯେଉଁ ସର୍ବ ନର,
ସେମାନଙ୍କଠାରେ ବାସ କରୁଁ ନିରନ୍ତର ।

ଯେ ପୁରୁଷ ଠାରେ ବାସକରୁଁ ଅନୁକ୍ଷଣ,
ଧର୍ମ ଅର୍ଥ କାମ ମୋକ୍ଷ ଲଭେ ସେହି ଜନ ।
ବିଶେଷ ଜାଣିବ ଆଗୋ ପ୍ରିୟବନ୍ଧ ସତ,
ନାରୀପୁଣଠାରେ ଥାଉଁ ହୋଇଁ ମୂର୍ତ୍ତିମନ୍ତ ।

( ଉ: ସା: ୪ର୍ଥ ୬ଷ୍ଠ ସଂଖ୍ୟା ଆଷାଢ଼ ୧୩୦୭ )

---

## ଉଦ୍‌ଭଟ କବିତା

ନ ବସେ ମାଛି ଚନ୍ଦନରେ,
ବିରାଡ଼ି ଖାଏ ନାହିଁ ଗୁଡ଼ ।
ସାଧୁ ଚହ୍ନନ୍ତି ସାଧୁ ନରେ,
କାହୁଁ ଚହ୍ନିବ ମୂର୍ଖ ମୂଢ଼ !
ଧନ ଜନରେ କେହି ଦୁଃଖୀ,
କେ ବସି ଭାଳେ ପୁତ୍ର ମିତ୍ର,
ଅଳ୍ପ ଅଧିକେ ସର୍ବେ ଦୁଃଖୀ,
ଜଗତେ ଏତିକି ବିଚିତ୍ର !
ମଧୁମକ୍ଷିକା ପିପିଲିକା,
ସମସ୍ତେ ହୋଇ କର୍ମବଶ
ନିରତେ ଲୋଡ଼ନ୍ତି ଜୀବିକା,
ଧିକ ଯେ ମାନବ ଅଳସ ।
ବିନାଶ ଗଲା ଯେ ପଦାର୍ଥ
ତା ପାଇଁ କରୁଛ ଭାବନା,
ତାହା କି ତୁମ୍ଭର ଯଥାର୍ଥ ?
ତେବେହେଁ କପାଁଇ ଶୋଚନା ।

( ଉ. ସା. ୧୨ ଭାଗ, ଭାଦ୍ର ୧୩୦୮)
ଶ୍ରୀ ଧୂର୍ଜ୍ଜଟି ।

---

## କ୍ଷୀଣପୁଣ୍ୟ

ସତ୍ୟ କି ସେ କଥା ଅବା ଦେଖିଛୁ ସ୍ୱପନେ ?
ଅବା ମାୟା ମୂର୍ତ୍ତି ଭାସିଯାଇଛି ନୟନେ ?
କବିତ୍ୱର ଭାଷା ନୁହେଁ ନିଶ୍ଚୟ ! ନିଶ୍ଚୟ !
ଚାହିନ୍ତା କି କରି ଏବେ ଆକୁଳ ହୃଦୟ !
ଆସେ ଯାଏ ନିତ୍ୟ ମନେ ଅପାର ବାସନା
ହେବ ଅବା ସେହିପରି ଏକ ବିଡ଼ମ୍ବନା !
ଦେବତା ଛଳନା ଏହା ବୋଲିବି କପରି ?
ମନେ ପଡ଼ୁନାହିଁ କେବେ ଥିଲି ଦୋଷ କରି
କଳ୍ପନାର ମୂର୍ତ୍ତି ନୁହେ ଅଛି ଭଲ ଜଣା !
କରିବି କି ଅପ୍ରତ୍ୟୟ ପ୍ରତ୍ୟକ୍ଷ ଘଟନା ?
ଜାଣିଲି ଯେତିକି ଥିଲା ତପସ୍ୟାର ଫଳ,
ଭୁଞ୍ଜିଛି ଯେତିକି ମାତ୍ର ସୁକୃତ କେବଳ ।
ଘଟେ ଏହା କ୍ଷୀଣପୁଣ୍ୟ ମାନବ ଭାଗ୍ୟରେ,
ନିଶ୍ଚିନ୍ତ ରହିବି ଭାଳି ଏକଥା ମନରେ ।

( ଉ. ସା ୮ମ ଭାଗ ୧୧ଶ ସଂଖ୍ୟା, ଫାଲ୍‌ଗୁନ ୧୩୧୨ )

---

## ଉତ୍କଳର ବିଗତ ଗୌରବ

ଇତିହାସରୁ ପ୍ରକାଶ ଯେ ଖ୍ରୀଷ୍ଟିୟ ୧୨୦୩ ସାଲରେ ବକ୍‌ତିୟ ର ଖିଲଜୀ ସତର ଜଣ ମାତ୍ର ଅଶ୍ୱାରୋହୀ ସହାୟତାରେ ବଙ୍ଗଦେଶର ତାତ୍‌କାଳୀନ ସ୍ୱାଧୀନ ଭୂପତି ଲକ୍ଷଣ ସେନଙ୍କୁ ପରାଜିତ କରି ବଙ୍ଗଦେଶ ଅଧିକାର କରିଥିଲେ । ସେହି ଇତିହାସରେ ଅଛି ଯେ ୧୨୪୩ ଖ୍ରୀଷ୍ଟାବ୍ଦ ମାର୍ଗଶୀର ମାସରେ ବଙ୍ଗର ଶାସନ-କର୍ତ୍ତା ତୁଗନ ଖାଁ ପଞ୍ଚାଶ ହଜାର ଶିକ୍ଷିତ ସୈନ୍ୟ ଘେନି ଉତ୍କଳ ଆକ୍ରମଣ କରିଥିଲେ; ମାତ୍ର ରାୟବଣିଆ ଦୁର୍ଗସ୍ଥିତ ଅଢ଼ାଇଶତ ମାତ୍ର ପାଇକ ହସ୍ତରେ ସମ୍ପୂର୍ଣ୍ଣରୂପେ ପରାଜିତ ହୋଇ ପଳାୟନ କଲେ । ଉକ୍ତ ଘଟନା

ଉପଲକ୍ଷରେ ନିମ୍ନଲିଖିତ କ୍ଷୁଦ୍ର ପଦ୍ୟଟି ଲିଖିତ ହେଲା । ଲେଖକର ପ୍ରାର୍ଥନା ଉତ୍କଳବାସିଗଣ କୃପା କରି ଥରେ-ମାତ୍ର ପାଠ କରନ୍ତୁ ।

ସପ୍ତଦଶ ସୈନ୍ୟ ହେନ ଖିଲିଜ ବକ୍ତିଆର,
କରିଥିଲେ ବଙ୍ଗ ସିଂହାସନ ଅଧିକାର ।
ଉତ୍କଳୀୟେ କଲେ ଯେଉଁ ବିକ୍ରମ ପ୍ରକାଶ,
ତାର ମଧ୍ୟ ପରିଚୟ ଦିଏ ଇତିହାସ ।
ବଙ୍ଗର ଶାସନକର୍ତ୍ତା ବୀର ଖାଁ ତୁଗନ,
ରାଇବଣିଆର * ଦୁର୍ଗ କଲେ ଆକ୍ରମଣ ।
ପଞ୍ଚାଶ ହଜାର ସୈନ୍ୟ ଥିଲେ ସଙ୍ଗତରେ,
ଶିକ୍ଷିତ ଯବନଗଣ ପ୍ରବଳ ସମରେ ।
ଆରମ୍ଭିଲେ ଯୁଦ୍ଧ ଦୁର୍ଗସ୍ଥିତ ଖଣ୍ଡାଇତେ,
ଆତ୍ମପକ୍ଷ ରକ୍ଷା ପାଇଁ ଭୀତିଶୂନ୍ୟ ଚିତ୍ତେ ।
ପ୍ରହର ଦୁଇକ ଯୁଦ୍ଧ କରି ଧୀରେ ଧୀରେ,
ପଛଘୁଞ୍ଚା ଦେଇଗଲେ ଉତ୍କଳୀୟ ବୀରେ ।
ମଣିଲେ ଯବନ ସେନା ହେଲା ଯୁଦ୍ଧ ଜିଣା,
ଆନନ୍ଦ ମନରେ ଆରମ୍ଭିଲେ ଖାନା ପିନା ।
ସାର୍ଦ୍ଧ ଦୁଇଶତ ମାତ୍ର ଖଣ୍ଡାଇତ ବୀର
ବାହାରିଲେ ଦୁର୍ଗୁ ପୁଣି ହେନ ଖଡ୍ଗ ତୀର ।
ପଦାତି ବିଂଶତି ଅଶ୍ୱାରୋହୀ ପଚାଶତ
ସେମାନଙ୍କୁ ଆକ୍ରମଣ କଲେ ଇତସ୍ତତ ।
ନବାବଙ୍କ ଅର୍ଦ୍ଧଲକ୍ଷ ଶିକ୍ଷିତ ସଇନ,
ହେଲେ ଲଣ୍ଡଭଣ୍ଡ ଖଣ୍ଡାଇତେ ଗଲେ ଜିଣି ।
ତୁଗନ ଖାଁ ଭଗ୍ନସେନା ହେନ ଅବଶେଷେ
ବିରସ ବଦନେ ବାହୁଡ଼ିଲେ ବଙ୍ଗଦେଶେ ।
ଅଛୁ ତ ଉତ୍କଳଦେଶ କାହାନ୍ତି ସେ ବୀରେ !
ବୁଡ଼ିଛି ବୀରତ୍ୱ କୀର୍ତ୍ତି ଅଜ୍ଞାତ ତିମିରେ ।

( ମୁକୁର ୨।୫ମ ସଂଖ୍ୟା ଭାଦ୍ର ୧୩୧୪ )

---

## ଉତ୍କଳ ଜନନୀର ଆହ୍ୱାନ

ଆରେ ମୋ ସନ୍ତାନେ ଚିର ଅପମାନେ
ସହେ ମୁଁ କେତେ ଯାତନା,
ନ ଭାଳିଲ ବେଳେ ଲୋକ ଅବହେଳେ
ପାଉଛୁ କେତେ ଗଞ୍ଜନା ।

ହୋଇ ଛିନ୍ନ ଭିନ୍ନ ସ୍ୱଜାତୀୟ ଚିହ୍ନ
ଦେହୁ ପକାଇଛ ପୋଛି,
ଅରେ ମୋର ସୁତ ତୁମ୍ଭମାନଙ୍କୁ ତ
ନ ପାରେଁ ମୁହିଁ ମୁରୁଛି ।

ଦକ୍ଷିଣ ଉତ୍ତରେ ପଶ୍ଚିମ ପ୍ରାନ୍ତରେ
ରହିଲ ରେ ଥୋକେ ଥୋକେ,
ହୋଇ ହୀନମାନ କେତେ ଅପମାନ
କରନ୍ତି ବିଦେଶୀ ଲୋକେ ।

ଯେ ଅଛ ଉତ୍ତରେ କେବେ ତ ଆଦରେ
ଦକ୍ଷିଣୀ ଭାଇଙ୍କୁ ଥରେ,
ନ କର ସଞ୍ଚୁଳା ସଦା ଅବହେଳା
ପଶିଛ ବଙ୍ଗ ଦେଶରେ ।

---

* ବଙ୍ଗବିଜେତା ଯବନମାନଙ୍କ ହସ୍ତରୁ ଦେଶରକ୍ଷା ଉଦ୍ଦେଶ୍ୟରେ ଉତ୍କଳର ସ୍ୱାଧୀନ ନୃପତି ଲଙ୍ଗୁଡ଼ିଆ ମୁକୁନ୍ଦଦେବ ରାଇବଣିଆ ଦୁର୍ଗ ନିର୍ମାଣ କରିଥିଲେ । ଏହି ଦୁର୍ଗ ବାଲେଶ୍ୱର ଜିଲ୍ଲା ଉତ୍ତର ସୀମାବର୍ତ୍ତୀ ସୁବର୍ଣ୍ଣରେଖା ନଦୀ କୂଳରେ ଅବସ୍ଥିତ । ଉତ୍କଳର ବିଗତ ଗୌରବ ବିଷୟ ସାକ୍ଷ୍ୟ ଦେବା ନିମନ୍ତେ ଭଗ୍ନ ସ୍ତୂପ ଓ ଘୋର ଜଙ୍ଗଲାବୃତ ହୋଇ ପ୍ରଚ୍ଛନ୍ନ ଭାବରେ ପଡ଼ିଅଛି ।

ଦକ୍ଷିଣ ଉତ୍ତରେ　　　　ଯୁଝନ୍ତି ପରସ୍ପରେ
　　ମାୟା ମମତା ତ ନାହିଁ,
ପର ଘରେ ପଶି　　　　କେ ଜଗତବାସୀ
　　ଉନ୍ନତି ଲଭୁଛି କାହିଁ ?

ପଶ୍ଚିମ ପ୍ରାନ୍ତରେ　　　　ଥିଲେ ଯେ କୁମରେ
　　ଏବେ ଆସିଛନ୍ତି କୋଳେ,
ଥିବାରୁ ମମତା　　　　ତେବେ ତ ଏକତା
　　ଘଟିଅଛି ଚେଷ୍ଟାବଳେ ।

ଦକ୍ଷିଣ ଉତ୍ତରେ　　　　ଅଛ ଯେ କୁମରେ
　　ଆସ ଆସ ବାପ ଧନେ !
କର ପ୍ରାଣ ପଣ　　　　ହେବାକୁ ମିଳନ
　　ସାଫଲ୍ୟ ଲଭ ସାଧନେ ।

( ମୁକୁର ୨୭-୮ ଭାଗ; କାର୍ତ୍ତିକ-ମାର୍ଗଶୀର ୧୩୧୫ )

———

## ଦୀର୍ଘଜୀବୀ

ଦୀର୍ଘଜୀବୀ ହୁଅ—ଲୋକ କରନ୍ତି କଲ୍ୟାଣ
ମାତ୍ର ଏହା ଅଭିଶାପ ଯନ୍ତ୍ରଣା ନିଦାନ ।
ଦୀର୍ଘ ଜୀବନର ପ୍ରାନ୍ତ ଜରାର ଯନ୍ତ୍ରଣା—
ପ୍ରତ୍ୟକ୍ଷେ କି ଏହା ଲୋକେ ଯାଏ ନାହିଁ ଜଣା ?
ଜୀବନ ପ୍ରବାହେ କଷ୍ଟ ଆବର୍ତ୍ତ ସଙ୍କୁଳ
ଦୀର୍ଘଜୀବନରେ ଘଟେ ଯାତନା ବହୁଳ ।
କେତେ ପ୍ରିୟ ପରିଜନ କେତେ ପ୍ରିୟଦ୍ରବ୍ୟ
ଦୀର୍ଘଜୀବନରେ ଅନ୍ତର୍ହିତ ହୁଏ ସର୍ବ ।
ସହି ସହି ପୁନଃ ପୁନଃ ବିଚ୍ଛେଦ ଯାତନା
କେତେ ଆତ୍ମକୃତ ପାପ ଗତାନୁଶୋଚନା ।
ସୁରଖାର ଶିନ୍ୟାସାର ଅଶାନ୍ତ ଜୀବନ,
ଏ ପ୍ରକାର ପ୍ରାଣେ ବୋଲ କିବା ପ୍ରୟୋଜନ ?
ସର୍ବ ବିଷୟୁରେ ହେବା ଅନ୍ୟ ଗଳଗ୍ରହ—
ନୁହେଁ କି ନରକ କଷ୍ଟ ଭଳି ଭୟାବହ ।

(ମୁକୁର ୨ । ୧୧-୧୨ ସଂଖ୍ୟା
　　ଫାଲ୍‌ଗୁନ ଓ ଚୈତ୍ର ୧୩୧୫)

— — —

## ରାଧାନାଥ-ରାୟ ବାହାଦୁର

ଆସ ଦେବକନ୍ୟାଗଣ ଦେଇ ହୁଳହୁଳି,
ଯାଉଛନ୍ତି ରାଧାନାଥ ନେଉନ୍ତୁ ଫୋଖୋଳି
ଶାପଭ୍ରଷ୍ଟ ଦେବତା ସେ ଆସିଥିଲେ ମର୍ତ୍ତ୍ୟ,
ଯାଉଛନ୍ତି ସ୍ୱୀୟ କାର୍ଯ୍ୟ କରି ସମାପତ ।
ବିରାଜିତ ଛନ୍ତି ଯହିଁ ମହାକବିଗଣେ,
ସମାଦରେ ତାଙ୍କ ପାଶେ ବସାଅ ଆସନେ ।
ଥିଲେ ସତ୍ୟ ମୃତ୍ୟୁଶୀଳ ମାନବ ସମାଜେ,
ମାତ୍ର ଲଭି ପ୍ରତିଷ୍ଠା ଅମରତ୍ୱ ସ୍ୱୀୟ କାର୍ଯ୍ୟେ ।
ସ୍ୱଭାବରେ କଳୁଷିତ ମାନବ ଚରିତ୍ର,
ରାଧାନାଥ ଆତ୍ମା ଥିଲା ନିର୍ଦ୍ଦୋଷ ପବିତ୍ର ।
ମାନବସମାଜେ ଥିଲା ଧରି ଦେବବଳ
ପଙ୍କରେ ପଙ୍କଜ ଯଥା ସ୍ୱଭାବେ ନିର୍ମଳ ।
ଗାଆନ୍ତୁ ଉତ୍କଳବାସୀ ରାଧାନାଥ ନାମ,
ମରଧାମ ତେଜି ଯାଉଛନ୍ତି ସ୍ୱର୍ଗଧାମ ।

( ମୁକୁର ୩ୟ ଭାଗ, ୩ୟ ସଂଖ୍ୟା; ଆଷାଢ଼ ୧୩୧୬ )

— — —

## ଆତ୍ମାର ମିଳନ

କେତେ ଦିବାନିଶି ମାସବର୍ଷ ଭ୍ରମିଗଲା ପ୍ରକୃତି ନିୟମେ
ନ ଗଲା ପାସୋରି ଜଣାଯାଏ ଯାହା ରହିଛି ଅଙ୍କିତ ମରମେ ।
ଯେବେ ସେ ପାଶରେ ନୟନଗୋଚରେ ଥିଲା, ଏତେ
　　ତାହା ପାଇଁ ।
ବସି ଏକାନ୍ତରେ ହୃଦୟ ମଧ୍ୟରେ ଭାଳୁଛି ତ ମନେ ନାହିଁ ।

ନେହଅନ୍ତରାଳେ ଗଲା ସେ ଯେକାଳେ ସେ ଦିନୁ
ଭାଳେ ଏସନ
ଜଡ଼ଗଲା ଛାଡ଼ି ଏବେ ଅବିନାଶୀ ଆତ୍ମାରେ ଆତ୍ମା ମିଳନ।

(ମୁକୁର ୪ର୍ଥ ଭାଗ, ୯ମ ଓ ୧୦ମ ସଂଖ୍ୟା; ୧୬୧୭)

---

## ଚିତ୍ରକର

ଆହେ ଚିତ୍ରକର ଭାଳେ ନିରନ୍ତର
ଭୂମ୍ବ ଚିତ୍ରପଟ ଦେଖି,
କେବଣ ତୂଳରେ କି ବର୍ଣ୍ଣାବଳରେ
ଏ ଚିତ୍ର ରଖିଛ ଲେଖି ।

ଅସୀମ ଅନନ୍ତ ଅନାଦି ଦିଗନ୍ତ
ଚିତ୍ରପଟର ବିସ୍ତାର,
ତହିଁ ହିରତାଳ ଚିତ୍ର ତାରାବଳୀ
ଧାତ୍ରୀ ଶଶୀ ଦିବାକର ।

ପଟର ମହିମା ବର୍ଣ୍ଣନ ଅସୀମା
ବିବିଧ ବର୍ଣ୍ଣେ ଚିତ୍ରିତ,
ପୁଣି ସେହି ଚିତ୍ର ଦେଖଇ ବିଚିତ୍ର
କ୍ଷଣେ କ୍ଷଣେ ବିବର୍ତ୍ତିତ ।

ସମସ୍ତ ଜୀବନେ ଦେଖିଲି ନୟନେ
ଗଗନମଣ୍ଡଳେ ଚାହିଁ,
ପ୍ରତି ମୁହୂର୍ତ୍ତରେ ବିବିଧ ଚିତ୍ରରେ
ଏକ ଆନେ ଐକ୍ୟ ନାହିଁ ।

ନୀଳିମା ସାଗରେ ହରିତ ବର୍ଣ୍ଣରେ
ପୃଥ୍ୱୀମଣ୍ଡଳେ ଚିତ୍ରିତ,
ବିବିଧ କୁସୁମେ ପୂର୍ଣ୍ଣ ଲତା ଦ୍ରୁମେ
କୃଷ୍ଣ ନୀଳ ଶ୍ୱେତ ପୀତ ।

ନୀରବ କବିତା ସମାନେ ବେଷ୍ଟିତା
ଅନନ୍ତ ଚିତ୍ରର ଭିତ
ଅନନ୍ତ ମହିମା ନ ପାଇଣ ସୀମା
ଜୀବନେ ନ ଲଭେଁ ଶାନ୍ତ ।

ଆହେ ଚିତ୍ରକର କେଉଁ ଦେଶେ ଘର
କାହିଁ ଅଛ ବିଦ୍ୟମାନ
ନ ପାଇ ତଦନ୍ତ ହେଉଛୁ ନିତାନ୍ତ
ଆକୁଳିତ ମମ ପ୍ରାଣ ।

(ମୁକୁର ୫ମ ଭାଗ, ୪ର୍ଥ ଓ ୫ମ ସଂଖ୍ୟା;
ଶ୍ରାବଣ ଓ ଭାଦ୍ର ୧୬୧୮)

---

## ଖଳ ଏବଂ ସର୍ପ

ଖଳ ବୋଲେ ସର୍ପ ତୁ ତ ଘୋର ପାଜି ଦୁଷ୍ଟ !
ପ୍ରାଣୀହିଂସା କରି ମନେ ମଣୁ ନାହୁଁ କଷ୍ଟ ।
ସର୍ପ ବୋଲେ ମୋ ଦଂଶରେ ମରେ ଜଣେ ପ୍ରାଣେ
ତୋ ଜିହ୍ୱାରେ କେତେ ବଂଶ ଛାରଖାର ଜାଣେ ।
(ମୁକୁର ୫ମ ଭାଗ, ୪ର୍ଥ ଓ ୫ମ ସଂଖ୍ୟା; ୧୬୧୮)

---

## ଭବିଷ୍ୟଭାବନା

ଥିଲି ତ ଜୀବନେ ସୁଖ ଆନନ୍ଦ ଉଲ୍ଲାସ,
ଶାନ୍ତ ପ୍ରୀତି ଅନୁଭୂତ ଐଶ୍ୱର୍ଯ୍ୟ ବିଳାସ ।
ଥିଲି ଯେବେ ଉପଯୁକ୍ତ ଅର୍ଥ ଉପାର୍ଜ୍ଜନେ,
ବେଢ଼ିଥିଲେ ଚଉପାଶେ ପ୍ରିୟ ପରିଜନେ ।
ଆନନ୍ଦ ଉତ୍ସବ ପୂର୍ଣ୍ଣ ଥିଲା ମୋ ଆଳୟ,
ଶିଶୁ ପୁତ୍ର କନ୍ୟା ମିଷ୍ଟ ଭାଷା ସୁଧାମୟ ।
ଭାଳିଥିଲେ ମନେ ମନେ ସୌଭାଗ୍ୟ କାଳରେ,
ଏହିପରି ଚିରଦିନ ଯିବ ସମାନରେ ।

ମନର ଉତ୍ସାହ ଶାନ୍ତ ସାମର୍ଥ୍ୟ ଶରୀରେ,
ବିଲୀନ ସମସ୍ତ ଭୂତ ଅନନ୍ତ ତିମିରେ ।
ଜରାଜୀର୍ଣ୍ଣ ଦେହ ଶକ୍ତି ସାମର୍ଥ୍ୟ ରହିତ,
ରୋଗର ଆଧାର ଦୁଃଖ ଦାରିଦ୍ର୍ୟ ବେଷ୍ଟିତ ।
ଗଲେ କାହିଁ ପ୍ରିୟଜନେ ମିତ୍ର ବନ୍ଧୁମାନ,
ଅମିୟ ବିହୀନ ପୁଷ୍ପେ ମଧୁପ ସମାନେ ।
ସୁଧାମୟ ଭାଷିଥିଲେ ଯେଉଁ ଶିଶୁଗଣ,
ପୁରିତ ବଦନେ ଏବେ କର୍କଶ ବଚନ ।
କରିଛି ଯତ୍ନରେ ଯେଉଁ ଲୋକ ଉପକାର,
ପ୍ରତି ଉପକାର ଥାଉ ଲଭି ଅତ୍ୟାଚାର ।
ପ୍ରେମାଳାପେ ବନ୍ଧୁଗଣେ ବସୁଥିଲେ ପାଶେ,
ଲୋଡ଼ିଲେ ହେଁ ସେମାନଙ୍କୁ ନ ଦେଖଇଁ ବାସେ ।
କେତେ ବା ନିତାନ୍ତ ଲୋକ ବିଶାଳ ସଂସାରେ,
ଆଉ ତ ଆଦର ବାକ୍ୟ କେହି ନ ପଚାରେ ।
ନିର୍ବୋଧ ନିର୍ବୋଧ ! ! ତୁଚ୍ଛ ସୁଖେ ଉନମତ୍ତ,
ଥିଲି-ନାହିଁ ଭାଳି ସର୍ବ କାଳର ଆୟତ୍ତ ।
ନିଶ୍ଚୟ ମୋ ପକ୍ଷେ ଏହା ଶୁଭ ସମାଚାର,
ଯାଇଛି ସେ ସର୍ବ ଯାହା ଅନିତ୍ୟ ଅସାର ।
ଛିନ୍ନ ଭିନ୍ନ ପ୍ରୀତି ସ୍ନେହ ମାୟାମୟ ଗ୍ରନ୍ଥି,
ଆତ୍ମଚିନ୍ତା ମାର୍ଗେ ସର୍ବ ଥିଲେ ପରିପନ୍ଥୀ ।
ସାୟାହ୍ନେ ନିଶୀଥେ କରେଁ ପ୍ରଭୁପଦ ଧ୍ୟାନ,
ପାର୍ଥିବ ଯାବନ୍ତ ସୁଖ ହୁଏ ତୁଚ୍ଛ ଜ୍ଞାନ ।
ଯେଉଁ ଅନାବିଲ ସୁଖ ଏବେ ଅନୁଭବ,
ଅତି ତୁଚ୍ଛ ମହା ତୁଚ୍ଛ ପାର୍ଥିବ ବିଭବ ।
ସମାନ ମୋ ପକ୍ଷେ—ଜୀବନର ବିତ୍ତ ବିତ୍ତ
ସୁଖର ମାଧୁରୀ ଦୁଃଖ ଯନ୍ତ୍ରଣାର ସ୍ମୃତି ।
ସୁଖ ଦୁଃଖ ଭୋଗାଭୋଗ ଇନ୍ଦ୍ରିୟ ବିକାର,
ଆତ୍ମପ୍ରସାଦ ହିଁ ସର୍ବ ସୁଖ ମୂଳାଧାର ।
କାଚ ବିନିମୟେ ଲଭି ଅମୂଲ୍ୟ କାଞ୍ଚନ,
ଜୟ ଜୟ ଦୟାମୟ ପ୍ରଭୁ ସନାତନ ।
ତଥାପି ମନରେ ଉଦେ ନିୟତ ଭାବନା,
ଜୀବନଟା ଶନ୍ୟ ଶୂନ୍ୟ ପରି ଯାଏ ଜଣା ।
ଅହୋ ହୋ ? ଜାଣିଲି କିପାଁ ଆକୁଳ ଜୀବନ,
ହରାଇ ବସିଛି ଏକ ଅପାର୍ଥିବ ଧନ ।
ସେହି ତ ଜୀବନେ ଥିଲା ସୁଖ ନିର୍ଝରିଣୀ,
ପ୍ରଣୟ ପ୍ରଫୁଲ୍ଲମୟୀ ଆନନ୍ଦଦାୟିନୀ ।
ଅଦୃଶ୍ୟ ବିଲୋପ ଏବେ ଅନନ୍ତ ତିମିରେ
ବିରଳେ ଭାବଇ ବସି ଭାସି ନେତ୍ରନୀରେ ।
ସେ ସହାନୁଭୂତି କଥା ଅନାବିଲ ପ୍ରୀତି,
ସେହି ସୁଧାମୟ ବାଣୀ ଜିଣି ସ୍ୱର୍ଗ ଗୀତି,
ଉଦାସ ଜୀବନେ ଅନୁଭବେ ସେ ଚରିତ,
କେ ଅଜ୍ଞାନ ଜଗତରେ ଅଛି ଅବସ୍ଥିତ ।
କେତେ ଲକ୍ଷ ଯୋଜନରେ ଅଛି କେଉଁ ସ୍ଥାନେ
ମାନବ ଗଣିତ ବିଦ୍ୟା ସ୍ୱପ୍ନରେ ନ ଜାଣେ ।
ସେ ସ୍ମୃତିଜଡ଼ିତ ଶେଷ ହେଉ ଏ ଜୀବନ
ତବପଦେ ମହାପ୍ରଭୁ ଏହି ନିବେଦନ ।

(ମୁକୁର ୫ମ ଭାଗ, ୬ଷ୍ଠ ସଂଖ୍ୟା, ଆଶ୍ୱିନ ୧୩୧୮)

---

## ଭୁଲିଯାଏଁ

ଭୁଲିଛି ଯା ସୁଖ ଦୁଃଖ ଆନନ୍ଦ ଯନ୍ତ୍ରଣା
ଭୁଲି ଯାଏଁ ଜୀବନର ବିଗତ ଘଟଣା ।
ବିତିଛି ଜୀବନେ ଯେତେ ପର ଉପକାର
ସ୍ମରଣ କରିବି ନାହିଁ ତାହା ପୁନର୍ବାର ।

(ମୁକୁର ୬ ଭାଗ, ୫, ୬ ସ; ଭାଦ୍ର, ଆଶ୍ୱିନ ୧୩୧୯)

---

## ଗ୍ରୀଷ୍ମ

ପ୍ରଚଣ୍ଡ ଅନଳ ସମ ତପ୍ତ ରବିକର,
ଘର୍ମାକ୍ତ ତୃଷ୍ଣାର୍ତ୍ତ କ୍ଲାନ୍ତ ମାନବ ନିକର ।
ଦାରୁଣ ଗ୍ରୀଷ୍ମକାଳ କଷ୍ଟର କାରଣ,
କିପାଇଁ ଈଶ୍ୱର କଲେ ଏହାକୁ ସୃଜନ ?

କଷ୍ଟକର ମଣ୍ଡ ଯାହା ଆପାତ ମନରେ,
ମଙ୍ଗଳ ନିହିତ ପ୍ରତି ଘଟନା ମୂଳରେ ।
ଗ୍ରୀଷ୍ମ ପ୍ରଭାବରେ ହୁଏ ବାରିଦ ସଞ୍ଚାର,
ଯାହା ଯୋଗେ ପାଏ ରକ୍ଷା ସକଳ ସଂସାର ।
ପ୍ରକାଶ ଦୁଃଅନ୍ତେ ରବି ପ୍ରଚଣ୍ଡ କିରଣ,
ଉଦ୍ଭିଦ ଆହାର ଭୂମି କରେ ଆକର୍ଷଣ ।
ଲିଚୁ ପିଚୁ ଜାମୁ ଆମ୍ବ କଦଳୀ ପଣସ,
ଗ୍ରୀଷ୍ମରେ ପାଚଇ ନରଜୀବନ ସର୍ବସ୍ୱ ।
ନ ମଣ ଏହାକୁ ରବିକିରଣ ପ୍ରତାପ,
ଜନନୀ ରନ୍ଧନଶାଳା ଆନନ୍ଦସନ୍ତାପ ।

(ଉ. ସା. ୧୬ଶ ଭାଗ, ୨ୟ ସଂଖ୍ୟା; ଜ୍ୟେଷ୍ଠ, ୧୩୧୯)

---

## କଟକରେ ନୂତନ ଜଳ ଓ ନୂତନ ଛାତ୍ର

ଆଷାଢ଼ ପ୍ରଥମଭାଗେ କାଠଯୋଡ଼ି ବକ୍ଷେ
ପରଶେ ନୂତନ ସ୍ରୋତ ମନ୍ଦାକ୍ରାନ୍ତା ଛନ୍ଦେ,
ନାନା ଦିଗଦିଗନ୍ତରୁ ଆସି ଭାସି ଭାସି
ନାନା ଛନ୍ଦେ ନାଚି ନାଚି ଯାଏ ଫେଣରାଶି ।
ବୃଥା ନୁହେ ଫେଣ କାର୍ଯ୍ୟ ସଲିଳ ସ୍ରୋତର,
ବହୁତ ଉଷର ଭୂମି କରିବ ଉର୍ବର ।
ଗ୍ରୀଷ୍ମ ଅବକାଶ ଅନ୍ତେ ଶିକ୍ଷାର୍ଥୀ ପ୍ରବାସୀ
କାଠଯୋଡ଼ିବନ୍ଧ ଶିରେ ସମବେତ ଆସି ।
ସ୍ୱାସ୍ଥ୍ୟସମୀରଣ ସେବି ଶିଳାସେତୁ ଶିରେ
ମନ ଆନନ୍ଦରେ ଭ୍ରମୁଛନ୍ତି ଧୀରେ ଧୀରେ ।
ଦେଖେ କୃଷିଶସ୍ୟ-ରାଶିକାରୀ ନବଜଳ
ଶିକ୍ଷାର୍ଥୀ କରିବେ ଦେଶ କୁଳକୁ ଉଜ୍ଜ୍ୱଳ ।
ନବ ଜଳ ନବ ଛାତ୍ର ଉତ୍କଳ ଭୂଷଣ,
ଆଷାଢ଼ ପ୍ରଥମଭାଗେ ଶୁଭ ଆଗମନ ।

(ଉ. ସା. ୧୬ ଭାଗ, ୨ୟ ସଂଖ୍ୟା; ଜ୍ୟେଷ୍ଠ, ୧୩୧୯)

---

## ନିଶୀଥ ଧ୍ୟାନ

ସୁଷୁପ୍ତ ସମସ୍ତ ପ୍ରାଣୀ ନୀରବ ରଜନୀ,
ସନ୍ତାନ ସନ୍ତତି କୋଡ଼େ ନିଦ୍ରିତା ଧରଣୀ ।
ଶୀତଳ ନିଃଶ୍ୱାସ ବାୟୁ ଧୀର ପ୍ରବାହିତ,
କଦାଚିତ ଦୀର୍ଘଶ୍ୱାସ ବାୟୁ ଅନୁମିତ ।
ସ୍ୱପ୍ନର ପ୍ରଳାପ ସମ ଜମ୍ବୁକ ଉଲୁକେ,
କଦାଚ ହୁଙ୍କାର ନାଦ ହୁକେ ହୁକେ ହୁକେ ।
ଅନନ୍ତ ସାଗର ନୀଳ ଅନନ୍ତ ଆକାଶେ,
ଫେଣମୟ ତାରାବଳୀ ହରିତାଳ ଭାସେ ।
ଜଳେ ସ୍ଥଳେ ଶୂନ୍ୟଦେଶେ ସର୍ବେ ଅଚେତନ
ଜାଗ୍ରତ କେବଳ ଆତ୍ମଦର୍ଶୀ ଜ୍ଞାନୀ ଜନ ।
ଅଜ୍ଞାନ ପକ୍ଷରେ ନିଶା ଜାଗ୍ରତ ସଂଯମୀ,
ହେବ ଯୋଗୀ କରେ ଯାଚଞ୍ଚା ପ୍ରଭୁ ପଦ ନମି ।
ହେ ସତ୍ୟ ସୁନ୍ଦର ବିଶ୍ୱପତି ଭଗବାନ,
ନିଶିଲେ ବିରଲେ କରେ ତୁମ୍ଭ ପଦ ଧ୍ୟାନ ।

(ମୁକୁର ୭ । ୨ୟ ସଂଖ୍ୟା)

---

## * ଯାଜ୍ଞବଲ୍କ୍ୟ ମୈତ୍ରେୟୀ ସଂବାଦ

ବୀତରାଗୀ ଯାଜ୍ଞବଲ୍କ୍ୟ ଆଶ୍ରମ ଗାର୍ହସ୍ଥ୍ୟେ,
ଇଚ୍ଛା କଲେ ଗୃହ ତେଜି ଯିବେ ବାନପ୍ରସ୍ଥେ ।
କାତ୍ୟାୟନୀ ମୈତ୍ରେୟୀ ଯେ ତାଙ୍କ ବେନି ନାରୀ,
ବୋଇଲେ ଉଭୟେ ପାଶେ ରହି ବ୍ରହ୍ମଋଷି ।
ଆହେ ପ୍ରିୟବକ୍ଷୀଗଣ ଶୁଣ ମୋ ବଚନ,
ଯିବି ମୁଁ ସନ୍ନ୍ୟାସାଶ୍ରମେ ବାଣ୍ଟି ଦେଇ ଧନ ।
ମୋହର ଗୃହରେ ଅଛି ଯେତେକ ସମ୍ପତ୍ତି,
ସମାନ ଭାଗରେ ବାଣ୍ଟି ନିଅ ବେନି ସତୀ ।
ବୋଇଲେ ମୈତ୍ରେୟୀ – ନାଥ ଏ ପାର୍ଥିବ ଧନେ,
କରିପାରେ କେତେ କାଳ ସମ୍ଭୋଗ ଜୀବନେ ।

---

*ବୃହଦାରଣ୍ୟକ ଉପନିଷଦ୍‌ରେ ଉକ୍ତ ଯାଜ୍ଞବଲ୍କ୍ୟ ମୈତ୍ରେୟୀ ସଂବାଦ ଭାବାର୍ଥ ଅବଲମ୍ବନରେ ଲିଖିତ । ଅନୁବାଦ ନୁହେ ।

ପୃଥିବୀ ସମସ୍ତ ଧନ ଦେବ ଯେବେ ନାଥ,
ଅମରତ୍ୱ ନ ଲଭିବ ଜୀବନେ ନିତାନ୍ତ ।
ଅକ୍ଷୟ ସମ୍ପତ୍ତି ଯାହା ଜାଣ ଭଗବାନ,
କୃପା କରି କର ମୋତେ ସେହି ଧନ ଦାନ ।
ବୋଇଲେ ମହର୍ଷି ଯାଜ୍ଞବଲ୍‌କ୍ୟ ଏହା ଶୁଣି,
ବୋଲିଥିଲ ପୂର୍ବେ ଏବେ ବୋଲୁଅଛ ପୁଣି ।
ଆମ୍ଭ ଚିତ୍ତବୃତ୍ତି ଅନୁକୂଳ ଯେଉଁ କଥା,
ବୋଲିବି ତୁମ୍ଭଙ୍କୁ ଆଗୋ ଶୁଣ ପତିବ୍ରତା ।
କେବଳ ଯେ ପତି ପ୍ରୀତି ସାଧନ ସକାଶେ,
କରେ ନାହିଁ ସେବା ନିରନ୍ତର ଥାଇ ପାଶେ ।
ପତିବ୍ରତା ମଧ୍ୟ ଲୋଡ଼େ ଆତ୍ମାର ମଙ୍ଗଳ,
ତେଣୁ ସ୍ୱାମୀ ସେବେ କରି ବୁଦ୍ଧିକୁ ନିର୍ମଳ ।
ରମଣୀକୁ ମଧ୍ୟ ପ୍ରେମ କରିଥାଏ ପତି,
ଆତ୍ମାପ୍ରୀତି ସାଧନରେ ଥାଏ ତାର ମତି ।
ପିତା ଯାହା ସ୍ନେହ କରିଥାନ୍ତି ପୁତ୍ରଗଣେ,
ଅନୁଭବ ଥାନ୍ତି ଆତ୍ମସୁଖ ମନେ ମନେ ।
ବିତ୍ତ ପ୍ରତି ପ୍ରୀତି ପାଇଁ ଧନ ଉପାର୍ଜନ,
ନ କରନ୍ତି ଲୋକ--କରେ ତୋଷିବାକୁ ମନ ।
ବ୍ରାହ୍ମଣଙ୍କୁ ଭକ୍ତି କରିଥାନ୍ତି ଲୋକଗଣ,
କେବଳ ଆତ୍ମାର ପ୍ରୀତି ସାଧନ କାରଣ ।
ଲୋକେ ଯାହା କରିଥାନ୍ତି କ୍ଷତ୍ରିୟଙ୍କୁ ପ୍ରୀତି,
ସେହିପରି ଆତ୍ମ ପ୍ରୀତି ଜାଣ ପୂର୍ବ ରୀତି ।
ବିଶେଷ ଜଗତେ ପ୍ରିୟବସ୍ତୁ ନାହିଁ ଜାଣ,
ଆତ୍ମପ୍ରୀତି ପାଇଁ ଲୋକେ ଥାନ୍ତି ଯତ୍ନବାନ ।
ଯେଉଁ ପଦାର୍ଥରେ ପ୍ରୀତି ଲଭେ ଯେଉଁ ଜନ,
ସେହି ପଦାର୍ଥଟି ତାର ପ୍ରିୟ ବୋଲି ଜାଣ ।
ଏଥିକୁ ଯତ୍ନରେ ଲଭ ଆତ୍ମତତ୍ତ୍ୱଜ୍ଞାନ,
ସେପରି ବେଦାର୍ଥ ପାଠ କରି ଜ୍ଞାନବାନ ।
ଯେ ଜ୍ଞାନ କରିବ ଲଭ ବେଦାର୍ଥ ଶ୍ରବଣେ,
କରିବ ଯତ୍ନରେ ତାହା ଧ୍ୟାନ ଅନୁକ୍ଷଣେ ।
ଶ୍ରବଣ ମନନ ଧ୍ୟାନ କରି ନିରନ୍ତରେ,
ଆତ୍ମତତ୍ତ୍ୱଜ୍ଞାନ ଲଭିଥାନ୍ତି ଜ୍ଞାନୀ ନରେ ।

ଆତ୍ମାର ସାକ୍ଷାତକାର ରୂପ ଯେଉଁ ଜ୍ଞାନ,
ତାହା ଲଭ କରି ସର୍ବ ଲଭଇ ବିଦ୍ୱାନ ।
ଆତ୍ମାର ସମ୍ବନ୍ଧ ଅଛି ସକଳ ଦ୍ରବ୍ୟରେ,
ଏଥିକୁ କାହାକୁ ତୁଚ୍ଛ ନ ମଣ ମନରେ ।
ଅନ୍ୟେ ଯଦି ତୁଚ୍ଛଜ୍ଞାନ କର ମୂର୍ଖପଣେ,
ଆପଣା ଆତ୍ମାକୁ ତୁଚ୍ଛ କଲ ହେଜ ମନେ ।
ଜଗତରେ ଯାହା କିଛି ଦ୍ରବ୍ୟ ସମୁଦୟ,
ନିଶ୍ଚୟ ଜାଣିବ ତାହା ସର୍ବ ଆତ୍ମମୟ ।
ଆତ୍ମ ବ୍ୟତିରିକ୍ତ କିଛି ଜଗତରେ ନାହିଁ,
ହେୟ ଜ୍ଞାନ କିଛି କର ନାହିଁ ସେଥିପାଇଁ ।
ଆତ୍ମାରୁ ଉଦ୍‌ଭୂତ ଏହି ଜଗତ ସଂସାର,
ଅବସ୍ଥିତ ସର୍ବ ତହିଁ ଲୟ ଜାଣ ସାର ।
ଜଗତ ଯାବନ୍ତ ଦ୍ରବ୍ୟ ହୁଏ ଅନୁଭୂତି,
ସମସ୍ତ ଜାଣିବ ଆତ୍ମଶକ୍ତି ବା ବିଭୂତି ।
ଆତ୍ମ ଜ୍ଞାନ ଲଭିପାରେ ଯେଉଁ ଭାଗ୍ୟବାନ,
ସର୍ବ ଜ୍ଞାନ ସେହି ଲଭିଅଛି ବୋଲି ଜାଣ ।
ଜଳର ବୁଦ୍‌ବୁଦ ଫେଣ ଜଳର ବିକାର,
ଈଶ୍ୱର ଅଂଶରୁ ଜାତ ଜଗତ ସଂସାର ।
ନାମ ରୂପାତ୍ମକ ଜଗତର ବସ୍ତୁ ସର୍ବ,
ଈଶ୍ୱର ଅଂଶରୁ ଜାତ କର ଅନୁଭବ ।
ବ୍ରହ୍ମ ବ୍ୟତିରେକ ଜଗତରେ କିଛି ନାହିଁ,
ବ୍ରହ୍ମମୟ ଏ ସଂସାର ଜାଣ ସେଥିପାଇଁ ।
ବାପୀ କୂପ ପୁଷ୍କରିଣୀ ଯେତେ ଜଳାଶୟ,
ସମସ୍ତ ବସ୍ତୁର ଏକ ସମୁଦ୍ର ଆଶ୍ରୟ ।
ଏଥିକୁ ଜାଣିବ ସର୍ବ ବେଦ ବାକ୍ୟ ମତେ,
ବ୍ରହ୍ମହିଁ ଆଶ୍ରୟ ମାତ୍ର ସମସ୍ତ ଜଗତେ ।
ସୈନ୍ଧବ ଲବଣ ଖଣ୍ଡ ମିଶ୍ରିତ ଜଳରେ,
ବିଲୀନ ଅଦୃଶ୍ୟ ଥାଏ ଲୋକ ନୟନରେ ।
ଅଦୃଶ୍ୟ ହେଲେହେଁ ଜଳେ ସୈନ୍ଧବ ଲବଣ,
ଅନୁଭବ ପ୍ରତି ବିନ୍ଦୁ କଲେ ଆସ୍ୱାଦନ ।
ତଦ୍ରୂପ ବିଜ୍ଞାନ ଘନ ଆତ୍ମା ଦେହାଦିରେ,
ବ୍ୟାପ୍ତ ହୋଇ ଥାଏ ଜଣା ନିର୍ମଳ ବୁଦ୍ଧିରେ ।

ଦେବ ମାନବାଦ ଭାବେ ହୋଇ ଅଭିବ୍ୟକ୍ତ,
ଭୂତ ସର୍ବ ବ୍ରହ୍ମ ଭାବେ ଅଛନ୍ତି ପ୍ରଶକ୍ତ ।
ଏ ମହା ମହିମାନ୍ୱିତ ଅନନ୍ତ ଅପାର,
ଓତପ୍ରୋତ ଭାବେ ବ୍ୟକ୍ତ ଜଗତ ସଂସାର ।
ଉପାଧି ବିନାଶେ ଦେହ ମାନବାଦ ନାମ;
ବିନଷ୍ଟ, ମାତ୍ରକ ଅବିନାଶୀ ଆତ୍ମାରାମ ।
ଗୋ ମୈତ୍ରେୟି ! ଏହି ଆତ୍ମ ତତ୍ତ୍ୱ ଉପଦେଶ
ଶୁଣିକରି ପରବ୍ରହ୍ମେ ମନକୁ ନିବେଶ ।
ଦେହ ସଙ୍ଗେ ଯାଏ ନାଶ ଜଗତର ଧନ,
ଇହ ପରକାଳେ ବ୍ରହ୍ମ ଜୀବର ଜୀବନ ।
ବୋଇଲେ ମୈତ୍ରେୟୀ—ନାଥ ଉପାଧି ନାଶରେ;
ଆତ୍ମା ନାମ ରୂପ ନାଶ ଯାଏ ସହଜରେ ।
ଯେ କଥା ବୋଇଲେ ମନେ ଲାଗୁଛି ଅନର୍ଥ,
ବୁଝାଇ ବୋଲନ୍ତୁ ମୋତେ ଏଥି ଗୂଢ଼ ତତ୍ତ୍ୱ ।
ବୋଇଲେ ଯେ ଯାଜ୍ଞବଲ୍କ୍ୟ ଶୁଣ ଗୋ ମୈତ୍ରେୟି,
ଯେ କଥା ବୋଲିଛି ତହିଁ ଗୂଢ଼ ଅର୍ଥ ଏହି ।
ମୂଢ଼ପଣେ ହେଲେ ମନେ ଦ୍ୱୈତ ଭାବ ଜାତ,
ସ୍ୱତନ୍ତ୍ର ସ୍ୱତନ୍ତ୍ର ଭାବ ଜନ୍ମଇ ନିତାନ୍ତ ।
ରୂପ ରସ ଗନ୍ଧ ସ୍ପର୍ଶ ଆଦି ଗୁଣ ସର୍ବ,
କର୍ମେନ୍ଦ୍ରିୟ କରେ ପୃଥକରେ ଅନୁଭବ ।
ଦ୍ୱୈତ ଭାବେ ବିମୋହିତ ହୁଏ ଯେବେ ମନ,
ଅନୁଭବେ ଜ୍ଞାନ ଲଭେ ଇନ୍ଦ୍ରିୟ କାରଣ ।
ମାତ୍ରକ ଅଦ୍ୱୈତବାଦୀ କରେ ଅନୁମାନ,
ସମସ୍ତ ଇନ୍ଦ୍ରିୟ ମୂଳେ ବ୍ରହ୍ମ ବିଦ୍ୟମାନ ।
ତତ୍ତ୍ୱ ଜ୍ଞାନ ଲଭେ ହୁଏ ମନରେ ଉଦୟ,
ଏ ବିଶ୍ୱବ୍ରହ୍ମାଣ୍ଡ ଗୋଟି ସର୍ବ ବ୍ରହ୍ମମୟ ।
ଜଲେ ଜ୍ଞାନୀ ବ୍ରହ୍ମପଦେ ଆତ୍ମ ସମର୍ପଣ,
ଜଗତ ସଂସାର ତାହାଠାରେ ତୁଚ୍ଛ ଧନ ।
ଅନୁଭବ ଆତ୍ମ ଆତ୍ମା ପରବ୍ରହ୍ମମୟ,
ହେ ମୈତ୍ରେୟି ! ସ୍ଥିର କର ଆପଣା ହୃଦୟ ।
ଆତ୍ମମୟ ପରମାତ୍ମା ଜୀବନେ ମରଣେ,
ଲୟ ରଖ ଆତ୍ମଚିତ୍ତ ତେଜ ତୁଚ୍ଛଧନେ ।
ତୁଚ୍ଛ ଧନେ ମମତ୍ୱ ଯେ ଚିତ୍ତର ବିକାର,
ଜ୍ଞାନୀ ମତେ ବ୍ରହ୍ମପଦ ଜୀବନର ସାର ।
ଆସ ଦେବି, ତେଜ ଏବେ ଭଙ୍ଗୁର ସମ୍ପତ୍ତି,
ନିରନ୍ତରେ ରଖ ପରଂବ୍ରହ୍ମେ ଆତ୍ମଗତି ।

(ମୁକୁର । ୭-ମ ସ୍କ ସଂଖ୍ୟା)

---

## କୃଷୀର ଆନନ୍ଦ

ପହିଲ ଆଷାଢ଼ ପାଣି ଘର କାମ ଭିଡ଼,
କାଠ ଦେଇ ଗୃହପାଖେ ବାନ୍ଧିଦେଲା ବାଡ଼ ।
କାଦୁଅରେ ଲଟପଟ ଦେହଗୋଟା ଝାଳ,
କୋଡ଼ ହାତେ ନାହିଁ ବେଳ ବାନ୍ଧିବାକୁ ବାଳ ।
ଦୁଇଟା ବଳଦ ଭଲ ନିକଟ ହିଡ଼ରେ,
ଚରୁଥିଲେ ଚଷା ଯୋଚିଦେଲା ଲଙ୍ଗଳରେ ।
ଦରବୁଢ଼ା ବଳଦଙ୍କ ଦେହେଁ ନାହିଁ ବଳ,
ଚଷାମନ ଜାଣି କାହୁଁ ଓଟାଇବେ ହଳ ।
ଚଷାଠାରୁ ନିର୍ଦ୍ଦୟିଆ ମାଡ଼ ଗାଳି ଖାଇ,
ମଠ ମଠ ଚାଲିଛନ୍ତି ମୁଣ୍ଡକୁ ହଲାଇ ।
ଦିନ ଦିନ ବେଳ ଅଛି ହଳକଣ୍ଠି ଧରି,
କପରି ବାଡ଼ୁଅଡ଼ା କାମ ଯିବ ଆଜ ସରି ।
ଫୁଲ ସଞ୍ଜବେଳେ ଚଷା ନିଶ୍ୱାସେ ପକାଇ,
ପଇଟି ଛୁଣ୍ଡିଲା ଦେଲା ହଳକୁ ଫିଟାଇ ।
କାନ୍ଧରେ ପକାଇ ବାନ୍ଧି ଯୁଆଳୀ ଲଙ୍ଗଳ,
ବଳଦ ପିଠିରେ ସାରି ପାଞ୍ଚଣରେ ବଳ ।
ବାହୁଡ଼ି ଆଇଲା ଘରେ ଧୋଇ ଗୋଡ଼ ହାତ,
ପେଜୁଆ ପେଜୁଆ ଉହାଉହ କଂସେ ଭାତ ।
ଲୁଣ ଟିକାଟାଏ ମାରି ଧାଇ ଦେଲା କସି,
ଆଉ ଦେଢ଼ କଂସା ଭାତ ଖାଏ ବସି ବସି ।
ଗୋଡ଼ ମୁହଁ ଧୋଇ ବସି ପକାଇ ନିଶ୍ୱାସେ,
ଧୂଆଁ ପିଏ ନିଆଁ ବଡ଼ ଥୁଆ ଥିଲା ପାଶେ ।

ଶାଳପତ୍ରେ ମୋଡ଼ି ପିକାଟିଏ ଯତନରେ,
ନାଆଁକୁ ଧରାଇ ଓଠାଗଲା ଆନନ୍ଦରେ ।
ଅଧକଂସା ପ୍ରସାଦରେ କଂସାଏ ତୋରାଣୀ,
ଘରଣୀ ତା ସେବା କଲା ଲୁଣ ଝୁଲେ ଆଣି ।
ଧନ୍ଦା ସାରି ଦୁଇଜଣ ବସିଲେ ଆନନ୍ଦେ
ଚଷା ବୋଲେ ଏ ବରଷ କାଟିଲୁ ସ୍ୱଚ୍ଛନ୍ଦେ ।
ଦେଇଛୁ ମିଥୁନ ଗାର ଖରଟିଆ ବୁଣା
ପାଞ୍ଚଟି ଭରଣ ଧାନ ପୋଷେ ନାହିଁ ଊଣା ।
ରଙ୍ଗ ଧଡ଼ି ଶାଢ଼ୀକୁ ତୋ ଥିଲା ଇଚ୍ଛା ବଡ଼,
ଏଥର କଥାରେ ହେବନାହିଁ ନଡ଼ବଡ଼ ।
ସାଉକାର ବାପୁଡ଼ାଟା ହୁଏ ଫର ଫର,
ଖଳା ମୁଣ୍ଡେ ମାପି ଦେବ ମୂଳ କଳନ୍ତର ।
ଘରଣୀ ବଗୁର କଲା ତେବେ ଜଣେ ମୁହିଁ
ଆନନ୍ଦରେ ହେଲେ ଦୁହେଁ ମୁହାଁ ଚୁହାଁଚୁହିଁ ।
ଯେ ଆନନ୍ଦ ଜାତ ହେଲା ଦୁହିଙ୍କ ମନରେ
ଥିବେ ନାହିଁ ବଡ ଲକ୍ଷପତି ସ୍ୱପନରେ ।

(ମୁକୁର ୭—୫ମ ସଂଖ୍ୟା ।)

——

## ଯମରାଜାର ଦରବାର

ଯମରାଜା ବସିଛନ୍ତି ରତ୍ନ ସିଂହାସନେ,
ଚିତ୍ରଗୁପ୍ତ ପାଞ୍ଜି ଧରି ଡାକେ ପାପିଗଣେ ।
ବିକଟାଳ ରୂପ ଯମରାଜା ଦୂତମାନ,
ତାଳଗଛ ପରି ଉଚ୍ଚ କୁଲା ପରି କାନ ।
ଥାଳପଟ ପରି ଆଖି ମୂଳା ପରି ଦାନ୍ତ,
ଲହ ଲହ ଜିଭ ତାଙ୍କ ଲମ୍ବ ଦେଡ଼ହାତ ।
ବାନ୍ଧିଛନ୍ତି ପାପିଗଣେ ଚମ ଦଉଡ଼ିରେ,
ଦୁମ୍ଦାମ୍ ପିଟୁଛନ୍ତି ମୂଷଳ ବାଡ଼ିରେ !
ଉଭାହେଲେ ପାପିମାନେ ଯମରାଜା ଆଗେ,
ରାଜଦଣ୍ଡ ଟେକି ଦୂତେ ଠିଆ ପଛଭାଗେ ।
ଚିତ୍ରଗୁପ୍ତ ନଥି ପଢୁଛନ୍ତି କରି ପାଟି,
ଯମ ରାୟ ଦେଇ ଯାଉଛନ୍ତି ଗୋଟିଗୋଟି ।
ଲୋକେ ଗାଳିଦିଏ ଗ୍ରାମା ଭାରି ବଦରାଗୀ
ହୁକୁମ ତା ପ୍ରତି ହେଲା, ଦିଅ ଦାନ୍ତ ଭାଙ୍ଗି ।
ଜମିଦାର ଶ୍ୟାମବାବୁ ଭାରି ଡାକ ନାମ,
ଖବରକାଗଜ ପଢ଼ି ଦିଏ ନାହିଁ ଦାମ୍ ।
ଆଜ୍ଞା ଦେଲେ ଯମରାଜା ହୋଇ କମ୍ପମାନ,
ଯାଅ ଜଣେ ଲୋକଟାର ମୋଡ଼ି ଦୁଇ କାନ ।
ଇସ୍କୁଲ ମାଷ୍ଟର ଗୋଟେ ପିଲାଗଣେ ମାରେ,
ହୁକୁମ—ତାହାକୁ ଠିଆ ରଖିବ ଖରାରେ !
ଇଂରେଜୀ ପଢ଼ୁଆ ଗୋଟେ ଥାଏ ଶାଶୁଘରେ,
ମାଆବୁଢ଼ୀ ଅଛି ଘରେ ନ ପଚାରେ ଥରେ ।
ତାହାର ମାମଲା ଫଇସଲା ଗୁଣ୍ଡେ ଗୁଣ୍ଡେ,
ଚଢ଼ି ଏ ଓଲଟ ଗଧ ବୁଲୁ ଦାଣ୍ଡେ ଦାଣ୍ଡେ ।
ଗଧା ଟୋପି ତା ମୁଣ୍ଡରେ ଦେଇ ମୋଡ଼ି କାନ,
ଲେଖିଦିଅ ଏ ଲୋକଟା ଭାରି ବେଇମାନ ।
ସରାସରି ଖପି ମକଦମା ସବୁ ଶେଷ,
ପୁଲିଶଚାଲାଣି କେଶ ହେଲା ଦରପେଶ ।
କଙ୍ଗାଳୀ ଗୋଟାଏ ପାପୀ ପେଟ ବିକଳରେ,
ସିନ୍ଧିକାଠି ଧରି ଚୋରି କରେ ଲୋକ ଘରେ ।
ଦୋସରା ଆସାମୀ କବି ଭାରି ବଦମାସ,
ଅଶ୍ଳୀଳ କବିତା ଲେଖି କରେ ସେ ପ୍ରକାଶ ।
ଦୁହିଙ୍କର ହାତଛନ୍ଦା ଏକ ହାତକଡ଼ି,
ଚୋରଟା ବିକଟ ଦୂତ ଛନ୍ତି ତାଙ୍କୁ ବେଢ଼ି ।
ମାମଲାର ହାଲ ବୁଝି ଯମରାଜା ଖୋଦ,
ବୋଇଲେ ସଙ୍ଗିନ କେଶ ଦୋହରା ସମ୍ପ୍ରଦ ।
ନଥି ଗୋଟା ପଢ଼ା ହେଲା ଚୋରଦଣ୍ଡା ପ୍ରାୟ,
ଜୁରିମାନଙ୍କର ସବୁ ହେଲା ଏକ ରାୟ ।
ଏ ଅନ୍ତେ କୋଟରୁ ହେଲା ରାୟଟା ପ୍ରକାଶ,
'ନଟ ଗିଲ୍ଟି' ଅନରେବ୍ଲ ଚୋରଟା ଖଲାସ ।
କବି ପ୍ରତି କୋଟ କଲେ ଆଦେଶ ପ୍ରଚାର,
ତତଲା ତେଲରେ ତାଲୁ ଭଜା ଭଜା ମାର ।
ସୋରିଷ ମାଲପା ଇଡ଼ୁଥିବ ଥୋଡ଼ା ଥୋଡ଼ା,
ପଟାପଟ ପିଟୁଥିବ ପିଠିରେ କୋରଡ଼ା ।

ହାତଗୋଡ଼ ଏକସଙ୍ଗେ ବାନ୍ଧି ଲୁହାକଡ଼,
ଘାଜ କର ଠେଙ୍ଗମାନ୍ତ ଟର ଚଡ଼ଚଡ଼ ।
ଶଗରସ ଇମ୍ପ୍ରିଜନ୍ ହେବ ଛଅ ମାସ ।
ଫଏଲ ଜାମିନେ ଶେଷେ ପାଇବ ଖଲାସ ।
ପୃଷ୍ଠ ଅଡ଼ାଇଶ ଟଙ୍କା ହେବ ଜରମାନା,
ବସିବ ଦୁଆରେ ତାର ପିଉନଟି ଥାନା ।
ମନଃକଷ୍ଟେ କବ ଗ୍ଲଡ଼ ବକଳରେ ରଡ଼
ବୋଇଲା ଯମଙ୍କୁ ବନପୁରେ ହାତଯୋଡ଼ ।
ଧର୍ମ ଅବତାର ଏ କ ଅନ୍ୟାୟ ଦେଶରେ
କବ ପାଏ ଦଣ୍ଡ, ଚୋର ଯାଏ ନର୍ଦ୍ଦୋଷରେ ।
ବୋଇଲେ ବୁଝାଇ ଯମ ମନେ ବହୁ ରୋଷ,
ଶୁଣ ଶୁଣ କବ ଚୋର ହେଲା କେତେ ଦୋଷ ।
ରକ୍ଷା କରିବାକୁ ସିନା ଚୋରଟା ଜୀବନ,
ଚୋରାଇ ଆଣିଲା ଅନ୍ୟଘରୁ କଛି ଧନ ।
ଜଣକ ସାମାନ୍ୟ କ୍ଷତି, ବଞ୍ଚିଗଲା ଜଣେ,
ଖଲାସ ତାହାକୁ ଆମ୍ଭେ ଦେଲୁଁ ଏ କାରଣେ ।
ହେଲେ—ସିନା ଗଲା ଜଣେ ଲୋକର ସମ୍ପତ୍ତି;
ମାଡ଼ ଲୋକ ସମାଜର ହେଲା ନାହିଁ କ୍ଷତି ।
ଅବବେକୀ ଲୋକ କେତେ ତୋ କବତା ପଢ଼ି
ମହାପାପ କରିଛନ୍ତି ନରକରେ ପଡ଼ି ।
ତରଳ ଯୁବକ କେତେ ପଢ଼ି ତୋ କବତା,
ଦେଖ ଯା କଲେଣି ବୁଦ୍ଧିବୃତ୍ତି କଳୁଷିତା ।
ଜାଣୟ ସାହିତ୍ୟ କରଅଛୁ ଅପବିତ୍ର,
ଯୁବକ ଯୁବତୀ ନଷ୍ଟ କଲେଣି ଚରିତ୍ର ।
'କୋଇ ହେ' ଡାକନ୍ତେ ଦୂତେ ଅଇଲା ସେଠାକୁ,
ବାଡ଼େଇ ବାଡ଼େଇ ନେଇଗଲା କବଟାକୁ ।
ଅଫେଣ୍ଡିକେଟ ଟ୍ରୁ କପି ଯମ ଅଫିସରୁ
ଅଣାଗଲା—ପଡ଼ ଯିବ ସନ୍ଦେହ ମନରୁ ।

(ଉ. ସା. ୧୭ ଭାଗ ୬ଷ୍ଠ ସଂଖ୍ୟା)

ଶ୍ରୀ ଦରବାସ୍ତ ଟାଉଟର

---

## କୌଳିକ ଧର୍ମ

ଜଗତ ବହବଃସନ୍ତି କୁଳଧର୍ମା ସନାତନାଃ
ତନ୍ତୁବାୟସ୍ୟ ଶ୍ରାଦ୍ଧାହ୍ନି ମାର୍ଜାର ବନ୍ଧନଂ ଯଥା ।
ରାମା ତନ୍ତୀ କନ୍ୟାପକ୍ଷ ଶ୍ରାଦ୍ଧ ଦିବସରେ
ଜଳପାନ ଦହି କଣି ରଖିଥିଲା ଘରେ ।
ପୋଷା ଶଙ୍ଖୀ ବିରାଡ଼ିଟା ଅଟିକା ଗଡ଼ାଇ
ବ୍ରାହ୍ମଣଭୋଜନୀ ଦହିଟିକ ଗଲା ଖାଇ ।
ତହିଁ ଆର ବରଷରେ ସେହି ବିରାଡ଼ିଟା
ହାଣ୍ଡି କୁଣ୍ଡି ଭାଙ୍ଗି ଖାଇଗଲା ଗଜାପିଠା ।
ବ୍ରାହ୍ମଣେ ଅଧିକ କଛି ନେଲେ ଜଳପାନ,
କେହିରୂପେ ପିତୃରୂପେ ପାଇଗଲେ ପାଣି ।
ତୃତୀୟ ବରଷ ରାମା ଅଗଣା ଖୁଣ୍ଟରେ
ବିରାଡ଼ିକୁ ଧରି ଆଣି ବାନ୍ଧିଲା ଆଗରେ ।
ଥୋକାଏ ବରଷ ଯାଏ ତନ୍ତୀ ଏହାପରି
ଶ୍ରାଦ୍ଧ ଦିବସରେ ବାନ୍ଧେ ବିରାଡ଼ିକୁ ଧରି ।
ମଲାଣି ସେ ତନ୍ତୀ ରାମା ମଲାଣି ବିରାଡ଼ି,
ତାହା ପୁଅ ମିତ୍ରଲୋକେ ଦେବ ପିଣ୍ଡ ବାଡ଼ି ।
ଗଲା ପୁରୋହିତ ପାଶେ ଆଣିବ ବ୍ୟବସ୍ଥା,
ଜଣାଇଲା ଆପଣାର କୌଳିକ ଅବସ୍ଥା ।
ତାହାକୁ ଅଜଣା ଶ୍ରାଦ୍ଧଦିନରେ ବିରାଡ଼ି
କପାଁ ଯାଏ ବନ୍ଧା—ଏଟା କୁଳପଥ ଧାଡ଼ି ।
ବୋଇଲେ ଫିଟାଇ ପୋଥି ବିଶୁ ମହାପାତ୍ରେ,
"ନ ତ୍ୟଜେତ୍ କୌଳିକ ଧର୍ମଂ" ଲେଖା ଅଛି ଶାସ୍ତ୍ରେ
ମେଣ୍ଟି ତ ପାରିବୁ ନାହିଁ କୁଳଧର୍ମ ଧାଡ଼ି,
ନ ଥିଲେ ତୋ ଘରେ ଲୋଡ଼ ଆଣିବୁ ବିରାଡ଼ି ।
ବିରାଡ଼ି ନ ଗଲେ ବନ୍ଧା ହେବନାହିଁ ଶ୍ରାଦ୍ଧ,
ଯେଉଁଠାରୁ ହେଲେ ଖୋଜ ବିରାଡ଼ିଟା ବାନ୍ଧ ।
ଧନ୍ୟ ଧନ୍ୟ ପୁରୋହିତେ ଧନ୍ୟ ତୁମ୍ଭ ଜ୍ଞାନ !
ସମ୍ଭାଳି ରଖିଛ ହିନ୍ଦୁଧର୍ମର ସମ୍ମାନ !
ଯେଦିନ ଆପଣମାନେ ବାନ୍ଧିବେ କୁକୁର;
ଲଣ୍ଡଭଣ୍ଡ ହୋଇଯିବ ସ୍ମୃତିଶାସ୍ତ୍ର ଲୁଗ୍ର !

(ଉ. ସା. ୧୬ଶ ଭାଗ, ୮ମ ସଂଖ୍ୟା, ମାର୍ଗଶିର ୧୯୨୦)

## ସ୍ୱର୍ଗୀୟ ରାୟ ମଧୁସୂଦନ ରାଓ ବାହାଦୁର

କେତେ ତପସ୍ୟାର ଫଳେ ଉତ୍କଳଜନନୀ
ଲଭିଥିଲେ ଏକମାତ୍ର ପୁତ୍ର ଗୁଣମଣି ।
ଉତ୍କଳରେ ଯାହା ନାମ ଖ୍ୟାତ ଗ୍ରାମେ ଗ୍ରାମେ,
ସେ ମଧୁସୂଦନ ବର୍ତ୍ତମାନ ସ୍ୱର୍ଗଧାମେ ।
ତ୍ରିଂଶ ବରଷ କାଳ ତାହାଙ୍କୁ ମୁଁ ଜାଣେ,
କରିଛୁ କଞ୍ଚିତ ଗୁଣ ଅନୁଭବ ପ୍ରାଣେ ।
ହିନେହେଲେ ମଧୁ କହି ନାହାଁନ୍ତି ମିଥ୍ୟାକଥା,
କେତେବେଳେ କାହା ମନେ ଦେଇ ନାହାଁ ବ୍ୟଥା ।
ପର ଉପକାର ପାଇଁ ସତ୍ୟହିଁ ଜୀବନ—
ବାକ୍ୟର ଦୃଷ୍ଟାନ୍ତ ତହିଁ ଶ୍ରୀ ମଧୁସୂଦନ ।
ନ୍ୟାୟର କାଠିନ୍ୟ ପ୍ରେମ ସ୍ନିଗ୍ଧ ମଧୁରିମା—
ସାରଲ୍ୟ ସୌଜନ୍ୟ ଲଭିଥିଲେ ଶେଷସୀମା,
ଉତ୍କଳ-ଆକାଶେ ପୂର୍ଣ୍ଣଚନ୍ଦ୍ର ଥିଲ ଉଇଁ,
କଳଙ୍କ କାଳିମା ତାକୁ ନ ଥିଲ ତ ଛୁଇଁ ।
ଏକପତ୍ନୀ ବ୍ରତେ କମ୍ୱା ସନ୍ତାନ ବାତ୍ସଲ୍ୟେ—
ସର୍ବତ୍ୟାଗୀ ହେବା ପର ଉପକାର ସ୍ଥଳେ
ପ୍ରଗାଢ଼ ଶାସ୍ତ୍ରୀୟ ଜ୍ଞାନେ ପରସେବା ବ୍ରତେ—
ଦେଶ ଉପକାରେ ଲାଗି ରହିବା ସତତେ—
ଏକାନ୍ତ ଈଶ୍ୱରନିଷ୍ଠା ଧର୍ମ ଆଚରଣେ—
ସେ ମଧୁ ସମାନ ଆଜ ଦେଖି ନାହିଁ ଜଣେ ।
ଶରୀର ଗଠିତ ସତ୍ୟ ମାନବ ଆକାରେ,
ସମସ୍ତ ଦେବତା ଧର୍ମ ଥିଲ ତାହାଠାରେ ।
ଯାବତଜୀବନବ୍ୟାପୀ ଅର୍ଥ ଉପାର୍ଜନ—
ପରହିତ ବ୍ରତେ କରିଛନ୍ତି ସମର୍ପଣ
ଅତିଥି ସେବାରେ ମଧୁବଂଶ ପ୍ରତି ଜଣେ
ଆନନ୍ଦରେ ଯତ୍ନ କରିଥାନ୍ତି ପ୍ରାଣପଣେ ।
ମଧୁ ଧର୍ମପତ୍ନୀ ପତିପରାୟଣା ସତୀ,
ଦେବପୁତ୍ର କନ୍ୟା ତୁଲ୍ୟ ସନ୍ତାନ ସନ୍ତତି ।
ଉତ୍କଳେ ସମସ୍ତ ବ୍ରାହ୍ମସମାଜ ମଧ୍ୟରେ
ସେ ମଧୁସୂଦନ ଥିଲେ କେନ୍ଦ୍ର ସ୍ୱରୂପରେ ।
ମଧୁର ଆବାସ ଗୃହ ମହର୍ଷି ଆଶ୍ରମ,
ପ୍ରକୃତରେ ଥିଲେ ମଧୁ ମହାଋଷି ସମ ।
ଜନ୍ମିବେ ଉତ୍କଳେ ସାଧୁ ଦୟାଳୁ ବିଦ୍ୱାନ,
ପରସେବାବ୍ରତୀ ଦାତା ଧାର୍ମିକ ପ୍ରଧାନ ।
ସର୍ବ ସାଧୁଗୁଣ ସମାବେଶ ଏକାଧାରେ
କଦାଚିତ ଜଗତରେ ଆସେ ଦେଖିବାରେ ।
ମଧୁର ସ୍ୱଭାବ ସେହେତୁ କରିବ କଳ୍ପନା
ଅଭାବ ମାନବଲୋକେ ଦେବାକୁ ତୁଳନା,
ଉତ୍କଳର ଇତିହାସେ ସୁବର୍ଣ୍ଣ ଅକ୍ଷରେ
ରଚିତ ରହିବ ମଧୁନାମ ନିଷ୍ଠପୁରେ ।
ମଧୁସ୍ଥାନ ପୂର୍ଣ୍ଣ ହେବା କେବେ ସମ୍ଭାବନା—
କେତେ ଯୁଗ ଯୁଗାନ୍ତରେ ଈଶ୍ୱରଙ୍କୁ ଜଣା ।
ଦରିଦ୍ର ଉତ୍କଳ ଭାଷା ମଧୁଠାରେ ଋଣୀ
ଏକ କଥା ଥିଲେ ମଧୁ ସର୍ବ ଗୁଣେ ଗୁଣୀ ।
ମୋହର ହୃଦୟ ବନ୍ଧୁ ଶ୍ରୀ ମଧୁସୂଦନ,
ତାହା ବିନା ମୋତେ ଏବେ ଅସାର ଜୀବନ ।
ଦୟାମୟ ଜଗଦୀଶ ହେ ଭୂତଭାବନ ।
ମଧୁପରିବାରେ ଶାନ୍ତ କରନ୍ତୁ ସ୍ଥାପନ ।

( ଉ: ସା ୧୭ଶ ଭାଗ, ୯ମ ସଂଖ୍ୟା, ପୌଷ-୧୩୨୦ )

---

## ହ୍ୟସ୍‌ନା ହେନା

ହେ ନବୀନ ଅଭ୍ୟାଗତ ହେ ହୋହ୍‌ନା ହେନା
ସତ ଏ ଦେଶର ବନେ ଫୁଲ ଫୁଟେ ନାନା । ୧ ।
ତଥାପି ତୁମ୍ଭଙ୍କୁ କରେଁ ବହୁତ ଆଦର
ଉପଦେଷ୍ଟା ଗୁରୁ ଶେଷ ଜୀବନେ ମୋହର । ୨ ।
ଆସିଛ ଜାପାନ ଦେଶୁଁ ବହୁଦେଶ ଭ୍ରମି
ଭୂତଙ୍କ ଯାନରା ତସ୍ୟାଂ ଜାଗର୍ତ୍ତି ସଂଯମୀ । ୩ ।
ରଜନୀ କୁସୁମରାଣୀ ଦେଲ ଏହି ଜ୍ଞାନ
ନିଶୀଥେ କରନ୍ତୁ ଜ୍ଞାନୀ ଉପାସନା ଧ୍ୟାନ । ୪ ।

ପବିତ୍ର ସୌରଭମୟୀ ତୁମ୍ଭଙ୍କୁ ମୁଁ ଜାଣେ
ଗୁଣ ତବ ଅନୁଭବେଁ କଳୁଷିତ ପ୍ରାଣେ । ୫ ।
ଯେ ଅନନ୍ତ ସଉରଭୁଁ ପାଇଛ କଣିକା
ହୁଏଁ ତବ ସନ୍ନିତରେ ସେ ଚରଣେ ବିକା । ୬ ।
ନିରନ୍ଧ୍ର ଜୀବନେ ମୋର କଳଙ୍କ କାଳିମା
ହେଉ ଟଗୋ ଆଦର୍ଶ ତବ ଗନ୍ଧମାଧୁରିମା । ୭ ।

( ମୁକୁର ୮ଭାଗ, ୪ର୍ଥ ସଂଖ୍ୟା ଶ୍ରାବଣ ୧୩୨୧ )

---

## ଚିନ୍ତା-ଚିତା

ଦେହ ସହ ନିତ୍ୟା ସହଚରୀ ଚିନ୍ତା-ଚିତା,
ଜୀବନ ମରଣେ ମିତ୍ରରୂପା ପରିଚିତା । ୧ ।

ଚିନ୍ତାର ପ୍ରଭାବ ଦେହେ ନିଯୁକ୍ତ ଜୀବନେ
ବିଚରଣ କରେ ନାନାରୂପେ ଅନୁକ୍ଷଣେ । ୨ ।

କି ଭାବରେ ଚିନ୍ତା ସଙ୍ଗେ ଜୀବନ ସମ୍ବନ୍ଧ
ଅଣୁ ପରମାଣୁ ବ୍ୟାପ୍ତ କୁସୁମର ଗନ୍ଧ । ୩ ।

ଚିନ୍ତା ମାତ୍ର ନେତ୍ରୀ କାର୍ଯ୍ୟକ୍ଷେତ୍ରରେ ଜୀବନ
ଯଥା ଗନ୍ଧ ବିନା ପୁଷ୍ପ ଶୋଭା ଅକାରଣ । ୪ ।

ଚିନ୍ତା ମାତ୍ର ପ୍ରଭାବରେ ଜୀବନ ଧାବିତ
ପବନେ ବାରିଦ ଇତସ୍ତତଃ ସଞ୍ଚାଳିତ । ୫ ।

ଚିନ୍ତା ଜ୍ୱର ଦେହ ଜୀବନର ଅବସାନେ
ଅଦୃଶ୍ୟ କିରଣମାଳା ଭବ ଅନ୍ତର୍ଦ୍ଧାନେ । ୬ ।

ଜୀବନାନ୍ତ କାଳେ ଚିତା ଶରୀର ସଙ୍ଗିନୀ
ବିଚ୍ଛିନ୍ନ କରଇ ପଞ୍ଚଭୂତ ସମ୍ମିଳନୀ । ୭ ।

( ମୁକୁର ୮ । ୪ । ୫ ଶ୍ରାବଣ, ଭାଦ୍ର ୧୩୨୧)

---

## ଜୀବନେ ସଫଳ

ହେ ହରି ! ଜୀବନ ସ୍ୱାମୀ ତୁମ୍ଭେ ତ ସର୍ବସ୍ୱ—
ବିଶ୍ୱରେ କି ଅଛି ଦେବ ବୋଲିବି ନିଜସ୍ୱ ?
ତୁମ୍ଭର ତ ଦତ୍ତ ପ୍ରଭୋ ଶରୀର ଜୀବନ—
ଦେହ ରକ୍ଷାକାରୀ ଅନ୍ନ ସଲିଳ ପବନ—
ସମ୍ପଦ ବିପଦ କାହୁଁ ଭୋଗ ପରିତ୍ରାଣ—
କାହୁଁ ଆସେ ଯାଏ କାହିଁ ହେ ଦେବ, ଏ ପ୍ରାଣ ?
ଜ୍ଞାନ ବୁଦ୍ଧି ବଳ ସର୍ବ ଜୀବନ ସମ୍ବଳ —
ନିରତ୍ତ ପଦାର୍ଥ ତୁମ୍ଭ ପ୍ରଦତ୍ତ କେବଳ ।
ଅଯାଚିତ ଭାବେ ଦେବ ପାଇଛୁ ତ ସର୍ବ—
କି ଅଛି କରିବି ପ୍ରାଣେ ବିଳାପ ବା ଗର୍ବ ?
ଆହେ ସର୍ବମୟ ପିତଃ ! କରିବି ପ୍ରାର୍ଥନା—
ପ୍ରାଣେ ପ୍ରୟୋଜନ କିବା ଯାଉନାହିଁ ଜଣା ।
ହେ ଜୀବନ ସ୍ୱାମୀ ! ମୋର ପ୍ରାର୍ଥନା କେବଳ—
ତୁମ୍ଭର ବିଧାନ ହେଉ ଜୀବନେ ସଫଳ ।

( ଉ: ସା ୧୭ଭାଗ ୧ମ ସଂଖ୍ୟା ପୌଷ ୧୩୨୧ )

---

## ସାଦର ଆହ୍ୱାନ

ଆସ ଆସ ଆହେ ଉତ୍କଳ ସାହିତ୍ୟ
କରଯୋଡ଼ି ବିନୟରେ
କରେ ନିମନ୍ତ୍ରଣ, ହେ ସାହିତ୍ୟଧନ,
ଦେଖାଦିଅ ଉତ୍କଳରେ ।

ତୁମ୍ଭର ସେବକେ ଶିକ୍ଷିତ ଯୁବକେ
ଆଶାନେନେ ଛନ୍ତି ଚାହିଁ
ନୂତନ ବର୍ଷରେ ନୂତନ ବେଶରେ
ଦର୍ଶନ କରିବା ପାଇଁ ।

ତିମିର ଆକାଶେ ଚନ୍ଦ୍ରମା ବିକାଶେ
ପୃଥ୍ୱୀ କରେ ଆଲୋକିତ,
ଉତ୍କଳ-ସାହିତ୍ୟ ହେବ ପ୍ରକାଶିତ
ସାଧିବାକୁ ଜନହିତ ।

କୁପୁତ୍ରମଣ୍ଡଳେ କାତରେ ଆକୁଳେ
ଜନମୀ ଉତ୍କଳ ଭାଷା
କଷ୍ଟ ଫେଡ଼ିବାକୁ କେବଳ ତୁମ୍ଭଙ୍କୁ
କରି ବସିଛନ୍ତି ଆଶା ।

ଶିକ୍ଷିତ ସନ୍ତାନେ ତୁମ୍ଭର ସମ୍ମାନେ
କରିଲେଣି ପ୍ରାଣ ପଣ
ଶକ୍ତି ଧନ ବ୍ୟୟେ କରିବେ ନିଶ୍ଚୟେ
ତୁମ୍ଭ କଷ୍ଟ ବିମୋଚନ ।

ଆସ ଆସ ଦେବ, ଉତ୍କଳରେ ହେବ
ତୁମ୍ଭ ମହିମା ପ୍ରଚାର,
ଉତ୍କଳମଣ୍ଡଳେ ଶୁଣାଅ ସକଳେ
ନବ ନବ ସମାଚାର ।

( ଉ. ସା. ୧୮ଶ ଭାଗ, ୧ମ ସଂଖ୍ୟା; ବୈଶାଖ ୧୩୨୧ )

---

## ମାନବାତ୍ମାର ସ୍ୱର୍ଗଯାତ୍ରା

ଅସଂଖ୍ୟ ମାନବ-ଆତ୍ମା ସ୍ୱର୍ଗଦ୍ୱାର ପାଶେ,
ଉଭାଛନ୍ତି ଅଭ୍ୟନ୍ତରେ ପ୍ରବେଶ ସକାଶେ ।
ଉଭା ଉଭୟପାର୍ଶ୍ୱେ ବଜ୍ରଦଣ୍ଡଧାରୀ ଦ୍ୱାରୀ,
ପ୍ରବେଶକୁ ଖଣ୍ଟୁନାହିଁ ଭରସା କାହାରି ।
କୁଳିଶ ନିର୍ଘୋଷନାଦେ ସ୍ୱର୍ଗ ଦ୍ୱାରୀଗଣେ
ପୁଚ୍ଛା କଲେ ମାନବାତ୍ମାଗଣେ ଜଣେ ଜଣେ ।
ପ୍ରବେଶିବ ସ୍ୱର୍ଗେ କିବା ଆଣିଛ ସମ୍ବଳ ?
ବ୍ୟାଖ୍ୟା କର ଆମ୍ଭ ପାଶେ ବୋଲି ସେ ସକଳ ।

ସାହସରେ ଆଗଭରି ଏକ ମୁସଲମାନ
ବୋଇଲା ସଲାମ କରି, ହଜୁର ଦ୍ୱାରବାନ !
ନମାଜ କରିଛି ପ୍ରତିଦିନ ପାଞ୍ଚଥର
ପ୍ରଭୁ ମଣି ଏକ ମହମ୍ମଦ ପଯ୍ଗମ୍ବର ।
ପୁଚ୍ଛା କଲେ ଦ୍ୱାରୀ ଉଚ୍ଚେ, ଆହେ ମୁସଲମାନ୍ !
କରିଛ କି ମଣୀଷଙ୍କୁ ପୃଥ୍ୱୀରେ ସମ୍ମାନ ?
ଶ୍ରୀଚୈତନ୍ୟ ବୁଦ୍ଧଦେବ ଛିନ୍ତି ତ ସଙ୍ଗରେ ?
ଶ୍ରୀକୃଷ୍ଣ ନାନକେ ପୂଜିଛ ତ ଭକ୍ତିଭରେ ?
ବୋଲେ ମୁସଲ୍ମାନ—ନାହିଁ, ସେମାନେ କାଫର
କରିଛି ସମ୍ମାନ ମହମ୍ମଦ ପଯ୍ଗମ୍ବର ।
× × ×
ଯାଅ ମୁସଲ୍ମାନ, ନାହିଁ ତୁମ୍ଭ କିଛି କାର୍ଯ୍ୟ—
ତୁମ୍ଭପରି ଆତ୍ମା ପାଇଁ ନୁହେଁ ସ୍ୱର୍ଗ ରାଜ୍ୟ ।
ପୁଚ୍ଛା କଲେ ଦ୍ୱାରୀ ପାଶେ ରହି ଆନ ଜଣ—
ବୋଲ ବୋଲ ମାନବାତ୍ମା ତୁମ୍ଭ ବିବରଣ ।
ବୋଲେ ଏକ ଆତ୍ମା ହାତଯୋଡ଼ି, ଆହେ ଦ୍ୱାରି !
ବୈଷ୍ଣବ ମୁଁ ଥିଲି ବିଷ୍ଣୁ ଭକ୍ତ ଭେକଧାରୀ ।
ମୁଣ୍ଡିତ ମସ୍ତକ ମାତ୍ର ଥିଲା ଶିରେ ଶିଖା,
ଭଲରୂପେ ଗୁରୁଠାରୁ ନେଇଥିଲି ଦୀକ୍ଷା ।
ପିନ୍ଧିଥିଲି ଗଳେ ମୋଟା ତୁଳସୀର ମାଳ
କାଟିଛି ଭିକ୍ଷାରେ ଜୀବନଟା ଚିରକାଳ ।
ରାଧେକୃଷ୍ଣ ଛାପା ମାରୁଥିଲି ଦେହଯାକ,
ତିଳକ ଭୂଷଣ କରିଥିଲି ଶିର ନାକ ।
ପିନ୍ଧିଥିଲି ବହିର୍ବାସ ଭିତରେ କୌପୀନ
'ହରେ କୃଷ୍ଣ ହରେ ରାମ' ଜପେଁ ଶରିଦିନ ।
ବୋଇଲେ ଦ୍ୱାରିଏ ବଜ୍ରନିର୍ଘୋଷ ଗମ୍ଭୀରେ,
ତୁମ୍ଭର ଶଚିତ ଦେହ ପଡ଼ିଛି ମାଟିରେ ।
ସେ କୌପୀନ ବହିର୍ବାସ ତୁଳସୀର ମାଳୀ
ସମାଧି ଭିତରେ ଦେଇ ଆସିଛ ତ ଢାଳି ।
ମହମ୍ମଦ ଯୀଶୁ ବୁଦ୍ଧେ ଆସିଛ ପାସୋରି
ପ୍ରବେଶିବ ସ୍ୱର୍ଗରାଜ୍ୟେ ସମ୍ପ୍ରତି କପରି ?
× × ×

କେ ହେ ତୁମ୍ଭେ, ଆଉ ବୋଲ ଆତ୍ମା ବିବରଣ ।
ପୃଥ୍ୱୀରେ ଖ୍ରୀଷ୍ଟାନ ଥିଲି ଜାଣନ୍ତି ଆପଣ ।
ରବିବାରେ ଗିରଜାରେ କରୁଛି ଭଜନା,
ବାଇବେଲ ପଢ଼ି କରେ ଯୀଶୁ ଉପାସନା ।

× × ×

ନାହିଁ ନାହିଁ, ତୁମ୍ଭପାଇଁ ନୁହେଁ ସ୍ୱର୍ଗରାଜ୍ୟ
ଚାଲିଯାଅ, ଏଥି କିଛି ନାହିଁ ତୁମ୍ଭ କାର୍ଯ୍ୟ ।

× × ×

ବୋଇଲେ ସ୍ୱର୍ଗୀୟ ଦୂତ, ମାନବାତ୍ମାଗଣ !
ଭଲରୂପେ ମନ ଦେଇ ଶୁଣ ବିବରଣ,
ଚାହିଁ ଦେଖ ତୋରଣରେ ଯାଇଅଛି ଲେଖା
ବଜ୍ରାକ୍ଷରେ, ଭଲରୂପେ ଯାଉଅଛି ଦେଖା,
ଭ୍ରାନ୍ତ ଭ୍ରଷ୍ଟ ମାନବାତ୍ମା ଉଦ୍ଧାର କାରଣେ
ଯାଇଥିଲେ ପୃଥିବୀକୁ ସ୍ୱର୍ଗ ଦୂତଗଣେ ।
ମହମ୍ମଦ ଶିଖାଇଲେ ବିଶ୍ୱାସର ମର୍ମ,
ଯୀଶୁ ପ୍ରେମ, ଶ୍ରୀ ଚୈତନ୍ୟ ଭକ୍ତିମାର୍ଗ ଧର୍ମ;
ଶିଖାଇଲେ ମାନବଙ୍କୁ ଗୌତମ ବୈରାଗ୍ୟ
ଈଶ୍ୱର ପ୍ରେରିତ ଏହି ସବୁ ମହାଭାଗ ।
ଜଣକୁ କରିବ ଯେବେ ତୁମ୍ଭେ ଅସ୍ୱୀକାର,
କେବେ ନ ପାଇବ ସ୍ୱର୍ଗରାଜ୍ୟ ଅଧିକାର ।
ବୈରାଗ୍ୟ ବିଶ୍ୱାସ ପ୍ରୀତି ଭକ୍ତି ଏହି ଚାରି
ବିନା ଏଥି ଅଧିକାର ନାହିଁଟି କାହାରି,
ବିଦ୍ୱେଷ ଭାବକୁ ଭୁଲି ଧର ଉପଦେଶ,
ତେବେ ତ କରିବ ସ୍ୱର୍ଗରାଜ୍ୟରେ ପ୍ରବେଶ ।
ବିଚାର କରିବ ପରାପର ଯେଉଁ ଲୋକ,
ନିଶ୍ଚେ ଜାଣ ତାହାପାଇଁ ଜ୍ୱଳନ୍ତ ନରକ ।

(ଉ: ସା: ୧୮ଶ ଭାଗ ୨ୟ ସଂଖ୍ୟା ଜ୍ୟେଷ୍ଠ ୧୩୨୧)

———

## ଚନ୍ଦ୍ରକଳଙ୍କୀ

ସୂର୍ଯ୍ୟରେ କାଳିମା ଅଛି ଚନ୍ଦ୍ରରେ କଳଙ୍କ
କେବଳ କଳଙ୍କୀ ଚନ୍ଦ୍ର କିପାଁ ବୋଲେ ଲୋକ ?
ତେଜସ୍ୱୀ କ୍ଷମତାଶାଳୀ ଲୋକେ ଥାନ୍ତି ଶଙ୍କି
ସୂର୍ଯ୍ୟକୁ ପାହୋର ଚନ୍ଦ୍ରେ ବୋଲନ୍ତି କଳଙ୍କୀ ।

( ମୁକୁର ୯ ଭାଗ, ୨ୟ ସଂଖ୍ୟା ଜ୍ୟେଷ୍ଠ ୧୩୨୨ )

———

## ଆତ୍ମାର ମିଳନ

ଯେ ଯାଏ ସେ ଯାଏ କେବେ ନ ଆସେ ବାହୁଡ଼ି
ତେବେ କିପାଁ ହାହାକାର ମୁଣ୍ଡ କୋଡ଼ାକୋଡ଼ି ।୧।

ଯେ ବାନ୍ଧିଲା ନିକେତନ ସୁଧାସିନ୍ଧୁ ତଟେ
କିପାଇଁ ଆସିବ ପୃଥ୍ୱୀ ଜଞ୍ଜାଳ ନିକଟେ । ୨ ।

ସହଜେ କରୁଛି ଲାଭ ଦେବତା କୈବଲ୍ୟ
ଇଚ୍ଛାରେ କି ଭୁଞ୍ଜିବ ପୁଣି ପୃଥିବୀ ବୈକଲ୍ୟ । ୩ ।

ସୁଖ ଶାନ୍ତି ଦେଖ ଯାହା ଜଗତସଂସାରେ
ବିତରୁଛି ସେ ଲଭିଯାଏ ଦ୍ୱିଗୁଣ ଉତ୍ସରେ । ୪ ।

ପ୍ରାଣରେ ବିତଲା ଅବା ସ୍ୱର୍ଗୀୟ ଆଲୋକ
କଳୁଷ କାଳିମା ପୁଣି ଲୋଡ଼ିବ କି ସେ ଲୋକ । ୫ ।

ତେବେ କି ସେ ଭୁଲିଲେଣି ଆମ୍ଭ ବନ୍ଧୁଗଣେ
ତାହା ପାଇଁ ପ୍ରାଣ ସଦା କାନ୍ଦେ କି କାରଣେ ? ।୬।

ଆତ୍ମାରେ ଆତ୍ମାରେ ପରସ୍ପର ଆକର୍ଷଣ
ମିଳିତ ବିଚ୍ଛିନ୍ନ ହେଲେ ଜଗତବନ୍ଧନ ।

( ମୁକୁର ୯ । ୪, ୫ ଶ୍ରାବଣ; ଭାଦ୍ର ୧୩୨୨ )

———

## ସ୍ୱର୍ଗୀୟ ଅବ୍‌ଦୁଲ୍ ଅଜିଜ୍

[ ସ୍ୱର୍ଗୀୟ ଅଜିଜ୍ ବାଲେଶ୍ୱରବାସୀ ଜଣେ ଜ୍ଞାନପିପାସୁ ଯୁବକ ଅସ୍‌ରଫ ଅଲି ମହାଶୟଙ୍କର କନିଷ୍ଠ ଭ୍ରାତା ଥିଲେ ତାଙ୍କର ଅକାଳ ବିୟୋଗରେ ଏ କବିତାଟି ଲିଖିତ । ]

ଦୟାମୟ ଜଗଦୀଶ କରୁଣାନିଧାନ
ଆଶ୍ଚର୍ଯ୍ୟ ମଣଇଁ ଦେଖି କାର୍ଯ୍ୟର ବିଧାନ ।
ସୁଦୃଶ୍ୟ ସୁଗନ୍ଧପୂର୍ଣ୍ଣ ଚିତ୍ତବିନୋଦକ
ଗୋଲାପ କୁସୁମ କପାଁ ବେଷ୍ଟିତ କଣ୍ଟକ ?
ଉଇଁଆସେ ମାଳାକାଶେ ବାରିଦ ପଟଳ,
ତୃଷାର୍ତ୍ତ କରୁଛି ଆଶା ଲଭିବାକୁ ଜଳ,
ସହସା ଭୀଷଣ ଆହା କୁଳିଶ ନିପାତ—
ନିଦାରୁଣ ଯନ୍ତ୍ରଣାରେ ମରୁଛି ପ୍ରାଣାନ୍ତ !
ଦୟାମୟ, ଦେଖି ତବ ଏହି ସବୁ କାର୍ଯ୍ୟ,
ନ ବୁଝି ନିଗୂଢ଼ ମର୍ମ ମଣଇଁ ଆଶ୍ଚର୍ଯ୍ୟ ।
ସୃଜନ ପାଳନ କର କେଉଁ ସୂତ୍ର ଧରି —
କ୍ଷୁଦ୍ରପ୍ରାଣୀ ମାନବ ମୁଁ ଜାଣିବି କପରି ?
ଦିଅ ହେ ବୁଝାଇ ତତ୍ତ୍ୱ ତୁମ୍ଭ କାର୍ଯ୍ୟ ସବୁ—
ଲଭିବ ସାନ୍ତ୍ୱନା ପ୍ରାଣେ ଆହେ ଜୀବଧବ ।
ଗ୍ରହଣ କରିବି ଆଜ୍ଞା ମସ୍ତକ ନୁଆଁଇ,
ହେଉ ନିଦାରୁଣ କଷ୍ଟ କିଛି ଚିନ୍ତା ନାହିଁ ।
ବିଳାପ କରୁଛି ବର୍ତ୍ତମାନ ଯାହାପାଇଁ,
ଉତ୍କଳେ ମସଲେମ୍ କୁଳେ ତାହା ସମ ନାହିଁ ।
ଏମେ, ବି-ଏଲ୍ ପଢ଼ିଥିଲା ନବୀନ ବୟସେ—
ଆଶାନେତ୍ରେ ଚାହିଁଥିଲେ ଜ୍ଞାତିଏ ହରଷେ ।
ଥିଲା ସେ ପ୍ରତିଭାଶାଳୀ ମେଧାବି ନିତାନ୍ତ,
ସୁଶୀଳ ସରଳ ସାଧୁ ବିନୀତ ସୁଶାନ୍ତ ।
ସ୍ୱଜାତି ମଙ୍ଗଳକାମୀ ଜନ୍ମଭୂମି ଭକ୍ତ,
ବାଗ୍ମିତା ହୃଦୟବତ୍ତା ଗୁଣରେ ସୁବ୍ୟକ୍ତ,
ସତ୍ୟପ୍ରିୟ ମିତାଚାରୀ ପ୍ରିୟମ୍ବଦ ଧୀର,
ରାଜଭକ୍ତ ଧର୍ମନିଷ୍ଠ ପ୍ରାଜ୍ଞ ବିଦ୍ୟାବୀର,
ଆଶା ଥିଲା କରିଥାନ୍ତା ବଂଶକୁ ଉଜ୍ଜ୍ୱଳ—
କରନ୍ତେ ଗୌରବ ଲାଭ ସମସ୍ତ ଉତ୍କଳ ।
ଅବ୍‌ଦୁଲ ଅଜିଜ୍ ଆହା କାହିଁ ଗଲୁ ଚାଲି,
ଜ୍ଞାତିବନ୍ଧୁ କୁଟୁମ୍ବଙ୍କ ହୃଦ କରି ଖାଲି ।
ଲଭିଥିଲୁ ସର୍ବରୂପ ସାଧୁଗୁଣ ସୀମା,
ଆହା ! ଥିଲୁ ଜନନୀର ନୟନପ୍ରତିମା ।
ଭ୍ରାତାର ହୃଦୟଧନ ଜ୍ଞାତିର ଆଶ୍ରୟ—
ଦୁଃଖାନଳେ ଦଗ୍ଧୀଭୂତ ସମସ୍ତ ହୃଦୟ ?
କେତେ ଆଶା ଥିଲେ ପୋଷି ପୁତ୍ରୁରା ଝିଆରୀ,
ଆହା ରେ ସମସ୍ତ ଆଶା ଦେଇଗଲୁ ସାରି ।
ସ୍ୱର୍ଗପୁରେ ଗଲୁ ଚାଲି ପ୍ରଭୁଙ୍କ ଆହ୍ୱାନେ,
ହେଉ ତାହାଙ୍କର ଇଚ୍ଛା ପୂର୍ଣ୍ଣ ମୋହପ୍ରାଣେ ।

(ଉ. ସା. ୧୬ଶ ଭାଗ, ୧ମ ସଂଖ୍ୟା, ବୈଶାଖ ୧୩୨୨)

---

## କବିଯୁଗଳ

ଉତ୍କଳର ବେନିପ୍ରାନ୍ତେ ଛନ୍ତି ବିଦ୍ୟମାନ
ଜନନୀର ପଦତଳେ ଯୁଗଳ ସନ୍ତାନ ।
ସୁକବି ଲେଖକ ଗଙ୍ଗାଧର ଚିନ୍ତାମଣି,
ଲେଖକ-ସମାଜେ ଖ୍ୟାତନାମା ତାଙ୍କୁ ଗଣି ।
ଏକପୁତ୍ର ହସ୍ତେ ଅଛି ଶବ୍ଦ-ପୁଷ୍ପହାର
ଅନ୍ୟ ହସ୍ତେ ମହାମୂଲ୍ୟ ଭାବ-ଅଲଙ୍କାର ।
ଅପୂର୍ବ ଦେଖିଲା ତାଙ୍କ ସୁନ୍ଦର ଯୋଜନା
ଭାବର ଗାମ୍ଭୀର୍ଯ୍ୟେ ତୁଲ୍ୟ ମୂଲ୍ୟ ଯାଏ ଜଣା ।
କି ଦୁର୍ଭାଗ୍ୟ କବି ଲଭି ସମାନ ନିର୍ଦ୍ଧନ
'ଅନ୍ନଚିନ୍ତା ଚମତ୍କାରା' ବିଚଳିତ ମନ ।
ନିଶ୍ଚିନ୍ତ ମନରେ ଶୁଦ୍ଧଚିତ୍ତେ ନିରନ୍ତର
କବିତା ରଚନା ପାଇଁ କାହିଁ ଅବସର ?

ଛନ୍ନ ଉତ୍କଳରେ ବହୁ ଜ୍ଞାନୀ ମହାଜନେ
ସହଜେ ପାରିବେ ପୋଷି କବି ବେନଜନେ ।
ହୁଅନ୍ତା ବିଖ୍ୟାତା ଜନ୍ମଭୂମି ଅଭାଗିନୀ
କବିତା ସମ୍ଭାରେ ଯଶ ଐଶ୍ୱର୍ଯ୍ୟଶାଳିନୀ ।

(ମୁକୁର ୧୦ମ ଭାଗ ଶ୍ରାବଣ; ୪ର୍ଥ ସଂଖ୍ୟା ୧୩୧୨)

---

## ମିଳନାଶା

କି ସମ୍ପର୍କ ରହିଥିଲା ତାହା ସହିତରେ ?
ଆକୁଳ କାତର କିପାଁ ପ୍ରାଣ ନିରନ୍ତରେ ?
ମାତୃଗର୍ଭ ସଙ୍ଗେ ସେ ଯେ ନ ଥିଲା ତ ଆସି,
ପ୍ରଥମ ଜୀବନେ କାହିଁ ଥିଲା ପରବାସୀ ।
କି ଶୁଭ ମୁହୂର୍ତ୍ତେ ଏକତ୍ରିତ ଗୃହ ନେତ୍ର !
କାହିଁ ସେ, କାହିଁ ମୁଁ, କାହିଁ ସେହି ପୁଣ୍ୟ କ୍ଷେତ୍ର !
ପୁଣ୍ୟମୟୀ ଗଲା ଚେକ କଲୁଷ ସମ୍ପର୍କ,
ଅପବିତ୍ର ପାଶେ ରହେ ନାହିଁ ମଧୁପର୍କ ।
ହୃଦୟ କୁଟୀରେ ଥିଲା ମାଣିକ୍ୟର ଜ୍ୟୋତି,
ଘୋର ଅନ୍ଧକାରମୟ ନିଭିବାରୁ ଦ୍ୟୁତି ।
ହୃଦୟେ ତ ଅଛି ଶିରା ଶୋଣିତବାହିନୀ,
କିପାଁ ଜଣାଯାଏ ଶୁଷ୍କ ଶିଳାଖଣ୍ଡ ଜିଣି ।
ଜଣାଇବ ସୁଖ ଦୁଃଖ ହୃଦୟ ବେଦନା,
ଏଡ଼େ ପୃଥ୍ୱୀଗୋଟା ଶୂନ୍ୟମୟ ଯାଏ ଜଣା ।
ପରାସ୍ତ ମାନଛି ହୃଦେ ବିସ୍ମୃତି ପ୍ରଭାବ,
ଜାଗରିତ ନିତ୍ୟ ନିତ୍ୟ ନବ ନବ ଭାବ ।
କି ଭରସା କି ଆଶାରେ ଅଛି ତାକୁ ଚାହିଁ,
ଭୁଲିବାର ନୁହେଁ ସେ ତ ଦିନକର ପାଇଁ ।
ବିଚ୍ଛିନ୍ନ ହେଲେହେଁ ଜଡ଼େ ଜଡ଼ର ବନ୍ଧନ,
ଅଚ୍ଛେଦ୍ୟ ଅଭେଦ୍ୟ ଆତ୍ମା ଆତ୍ମାର ମିଳନ ।
ଜାଣି ଧ୍ରୁବ କିପାଁ ନିତ୍ୟ ଆକୁଳ ଜୀବନ ?
"ଦୁରତ୍ୟୟ ଦୈବୀ ମାୟା" ସଂସାର ଗଢ଼ନ ।
ନିଶ୍ଚୟ ଜ୍ଞାନଏ ଆଶା ପୋଷିଥାନ୍ତି ଚିତ୍ତେ—
ବିଧାତା ବିଧାନ ନୁହେ ଜଗତେ ଅହିତେ ।
ଅନୁଭବ ନ କଲେଟି ବିଚ୍ଛେଦ-ଯନ୍ତ୍ରଣା,
ମିଳନ-ମାଧୁରୀ ବୋଲି କାହୁଁ ଯିବ ଜଣା ?
ପ୍ରଭୁଙ୍କ କରୁଣା ହୃଦେ କରଣ ସ୍ମରଣ,
ନିଶ୍ଚିନ୍ତରେ କରୁଅଛି ସମୟ ଯାପନ ।
ଯେ ଅଲକ୍ଷ୍ୟସୂତ୍ର କରେ ନିତ୍ୟ ଆକର୍ଷଣ
ଅବଶ୍ୟ ଘଟିବ ତାହା ସହିତ ମିଳନ ।

(ଉ. ସା. ୧୧ଶଭାଗ, ୧ମସଂଖ୍ୟା, ମାର୍ଗଶୀର୧୩୧୮)

---

## ଛିନ୍ନ ଭିନ୍ନ ଜନ୍ମଭୂମି

ଗୃହଆଡ଼େ ପଡ଼ିଅଛି ଉନ୍ମତ୍ତ ଚହଳ—
ନିଦ୍ରିତ କି ରହିଥିବ ଉତ୍କଳ କେବଳ ?
କେ ବୋଲେ ନିଶ୍ଚେଷ୍ଟ ଛନ୍ନ ଉତ୍କଳ ବାସିଏ ?
ଏମାନଙ୍କ କଷ୍ଟ କଥା ବୁଝିଲା ବା କିଏ ?
ଗୁରୁଭୁଜ ଘରେ କଟା ଯାଇ ଖଣ୍ଡ ଖଣ୍ଡ,
ଜୀବନ ବିକଳ ହେଉଛନ୍ତି ଲଣ୍ଡଭଣ୍ଡ ।
ମୁଣ୍ଡଟା ରହିଲା ପାଶେ ଆଉ ପାଶେ ଗୋଡ଼—
ଅଲଗା ରହିଲା ବାହୁ ଲଗୁନାହିଁ ଯୋଡ଼ ।
ବରଷକେ ଥରେ ଦେଉଅଛି ଶଞ୍ଜି ଶାଞ୍ଜି—
ଅନଳରେ ନାଚଉଠି ପଡ଼ଯାଏ ଭାଞ୍ଜି ।
ହେବେଣି ଏ ଦେଶେ ଜାତ ଅଶ୍ୱିନୀକୁମାରେ
ସଞ୍ଜୀବନୀ ମନ୍ତ୍ରେ ମାତା ଅଙ୍ଗ ଗଞ୍ଜି ପାରେ ।
ଅଛି ସୁଧାଭାଣ୍ଡ-ମହାଦେବଙ୍କ ହସ୍ତରେ
ପୂର୍ବେ ମିଳି ପଡ଼ ଯାଇ ତାହାଙ୍କ ପଦରେ ।
ମହାଦେବେ ଲଣ୍ଡଭଣ୍ଡ କରୁଚି ତ୍ରିପୁର
ଜାଣ ନିଶ୍ଚେ ହେବ ଦିନେ ତାହା ଗର୍ବଚୂର ।
ସଜ ହୋଇ ବସିଥାଅ ଅଶ୍ୱିନୀକୁମାରେ
ବେଳ ଉଣ୍ଡି ଆଜ୍ଞା କର ହୁଙ୍କିପିବ ପାରେ ।
ଜନ୍ମଭୂମି ଯେତେକାଳ ନ ହେବ ପୂର୍ଣ୍ଣାଙ୍ଗୀ
ଜାଣ ନିଶ୍ଚେ ତୁମ୍ଭ ସର୍ବ ଯତ୍ନ ଯିବ ଭାଙ୍ଗି ।

( ମୁକୁର ୧୦ମ ଭାଗ ପୌଷ. ୯ମ ସଂଖ୍ୟା ୧୩୧୨ )

## ମୋ ଜନନୀ ଜନ୍ମଭୂମି

ଜନନୀ ଜନମଭୂମି ବନ୍ଦେ ତବ ପଦେ,
ରହିଛି ମା ତବ କୋଳେ ସମ୍ପଦେ ବିପଦେ ।
ରକ୍ତମାଂସ ସମବେତ ଶରୀର ଆକୃତି
ଜନନୀ ଗୋ ତବ ପରମାଣୁର ବିକୃତି ।
ଜନ୍ମିଛି ଜୀବନେ ରହିଅଛି ତବ କୋଳେ,
କରିଛି ଧାରଣ ପ୍ରାଣ ତବ ଅନ୍ନଜଳେ ।
ମୋ ଗର୍ଭଧାରିଣୀ ମାତା ମମତ୍ୱ କଟାଇ,
ଗଲେ ତେଜି ଶୈଶବରେ ତୋ କୋଳେ ପକାଇ
ଧରିଛ ମା କୋଳେ ଧରିଥିବ ଚିରଦିନ ।
ମୋ ପ୍ରତି ତ କେବେ ହୋଇନାହଁ ସ୍ନେହହୀନ ।
ଯେବେ ଜଡ଼ ଦେହ ଗୋଟି ହେବ ପ୍ରାଣହୀନ
ଅଣୁ ପରମାଣୁ ହେବ ତୋହ ଦେହେ ଲୀନ ।
ତୁମ୍ଭର ଗୌରବେ ହେବ ଲୋକରେ ପୂଜିତ
ହେବ ତବ ଦୁର୍ଦ୍ଦଶାରେ ଲାଞ୍ଛିତ ନିନ୍ଦିତ ।
ତବସହ ରହିଅଛି ଅଚ୍ଛେଦ୍ୟ ବନ୍ଧନ
ନିରନ୍ତରେ କରେ ମନ ପ୍ରାଣ ଆକର୍ଷଣ ।
କାର୍ଯ୍ୟବଳେ ମନେ ଆସେ ଦେଶ ଦେଶାନ୍ତରେ
ଭ୍ରମଣ କରିଛି ବହୁଥର ଜୀବନରେ ।
ଥାଏ ଯହିଁ ନହିଁ ସୁଖ ଦୁଃଖ ଦୁର୍ଦ୍ଦଶାରେ
ମନପ୍ରାଣ ପଡ଼ି ରହିଥାଏ ତୁମ୍ଭଠାରେ ।
ଦିଗ୍‌ଦର୍ଶନ ଶଙ୍କୁ ଯଥା ଗୃହେଁ ଉତ୍ତରକୁ
ଗୃହିଁ ରହିଥାଏ ପ୍ରବାସରେ ମୁଁ ତୁମ୍ଭକୁ ।
ଆଶୀର୍ବାଦ କର ମାତ ଅଧମ ସନ୍ତାନେ
ମିଶୁ ଭସ୍ମ ତବ ଦେହେ ପ୍ରାଣ ଅବସାନେ ।

(ମୁକୁର, ୧୦ମ ଭାଗ ୧୧ଓ ୧୨ ସଂଖ୍ୟା
ଫାଲ୍‌ଗୁନ ଓ ଚୈତ୍ର ୧୩୨୩)

———

## ବାମଣ୍ଡାର ସ୍ୱର୍ଗୀୟ ମହାରାଜା ୰ସଚ୍ଚିଦାନନ୍ଦ ତ୍ରିଭୁବନଦେବ

ସହସା ଦାରୁଣ ବାର୍ତ୍ତା ଉତ୍କଳେ ପ୍ରଚାର,
ଶ୍ରୀ ସଚ୍ଚିଦାନନ୍ଦ ତେଜି ଗଲେଣି ସଂସାର ।
ବିଷଲିପ୍ତ ଶରସମ ଭେଦେ ମର୍ମସ୍ଥଳୀ,
ଭୀଷଣ ସମ୍ବାଦ କିବା ଅଛି ଏଥୁବଳି ।
ବାମଣ୍ଡାରେ ସର୍ବେ ହୋଇଛନ୍ତି ମୃତପ୍ରାୟ ?
ହାୟ ! ହାୟ ! ହାୟ ! ହାୟ ! ହାୟ ! ହାୟ ! ହାୟ !
ନଗର ଉଜ୍ଜ୍ୱଳ ଥିଲା ଚଞ୍ଚଳା – ଆଲୋକେ,
ଛିନ୍ନ- ମୂଳ ତାର ବ୍ୟାପ୍ତ ଅନ୍ଧାର ପଲକେ ।
ବିବାହ ଉତ୍ସବ ଆନନ୍ଦର କୋଳାହଳ
ପରବର୍ତ୍ତୀ ମୁହୂର୍ତ୍ତକେ ରୋଦନ କେବଳ ।
ହାୟ ! ହାୟ ! ଏ କି ବଜ୍ର ସହସା ନିପାତ –
ଉତ୍କଳର କୀର୍ତ୍ତିସ୍ତମ୍ଭ ହେଲା ଭୂମିସାତ ।
ସେ ଲାବଣ୍ୟମୟୀ ମୂର୍ତ୍ତି ଲଳିତ ସୁଠାମ—
ହାୟ ! ହାୟ ! ତାହାର କି ଭସ୍ମ ପରିଣାମ ।
ପୂର୍ଣ୍ଣଚନ୍ଦ୍ର ଅସ୍ତମିତ ନିଶୀଥ ଆକାଶେ,
ସହଜେ କି ଏହି ବାର୍ତ୍ତା ବିଶ୍ୱାସକୁ ଆସେ ?
ସେଦିନ ଦେଖିଛି ତାଙ୍କୁ କର୍ମଠ ଚଞ୍ଚଳ —
ସୁଧାକିଣି-ବାଣୀ-ଶ୍ରୀ-ବଦନ ମଣ୍ଡଳ ।
ହାୟ ! ହାୟ ! ନିୟତିର କି ବିଚିତ୍ର ଗତି—
ମୁହୂର୍ତ୍ତକେ ପରିବର୍ତ୍ତି ସକଳ ସମ୍ପତ୍ତି,
ବାଣୀବର ପୁତ୍ର ହାୟ କାବ୍ୟ-କୁଞ୍ଚିକ,
ଗଲା ଉଡ଼ି ଏଥୁ ବଳି କଷ୍ଟ କି ଅଧିକ ।
ହାୟ ! ହାୟ ! ଗଲା ନିଭି ମଙ୍ଗଳ ଆଲୋକ,
ତମିରେ ଆଚ୍ଛନ୍ନ ବାଣୀ-ନିକୁଞ୍ଜ ସମ୍ପ୍ରତି ।
କେତେ କବି ପଣ୍ଡିତଙ୍କ ପରମ ଆଶ୍ରୟ
ସଂଖ୍ୟାତୀତ ଲୋକ ଆଶା ଭରସା-ଆଳୟ ।
ତୁମ୍ଭର ଉତ୍ସାହ ପାଇଁ କେତେ ନବ କବି,
ଲଭିଛନ୍ତି ଦେଶ ମଧ୍ୟେ ଉନ୍ନତ ପଦବୀ ।

ପ୍ରଧାନ ଉଦ୍‌ଗାତା ଦେବ କରିଛ ପ୍ରସ୍ଥାନ,
କେ କରିବ ମାତୃଭାଷା ପଙ୍କ ସମାଧାନ ।

ହେ କବୀନ୍ଦ୍ର ତୁମ୍ଭ କାବ୍ୟାବଳୀ ମୁକ୍ତାହାର,
ଲୋକକଣ୍ଠେ ବିରାଜିତ ଥିବ ଅନିବାର ।

ତୁମ୍ଭର ଅକ୍ଷର କୀର୍ତ୍ତି ଅକ୍ଷର ଭାବରେ,
ବ୍ୟାପ୍ତ ଥିବ ଚିରକାଳ ଦେଶ ଦେଶାନ୍ତରେ ।
ଥିଲା ସାରସ୍ୱତ-କୁଞ୍ଜ ତୁମ୍ଭ ରାଜଧାନୀ,
ଦେଶ ଦେଶାନ୍ତରୁ ସମାଗତ କବିଜ୍ଞାନୀ ।

ହେ ମହାମାନ୍ୟ ! ମହାପ୍ରାଣ ରାଜର୍ଷି ?
ଉତ୍କଳ ତୁମ୍ଭର ନାମ ହେଉଥିବ ଘୋଷି ।
ଭାଷାର ଉନ୍ନତି ଥିଲା ତୁମ୍ଭ ଲକ୍ଷ୍ୟସ୍ଥଳ,
ଜ୍ୱଳନ୍ତ ପ୍ରମାଣ ଏଥି ଲଭିଛି ଉତ୍କଳ ।

ଯାପନ କରିଛ ଦିନ ବିଜ୍ଞାନ ଦର୍ଶନେ,
ଶିଖାଇଛ ନାନାଶିଳ୍ପ ଦେଶବାସିଗଣେ ।
ଧନେ-ମାନେ-କୁଳେ-ଶୀଳେ-ଶାସ୍ତ୍ରଆଳାପନେ
କବିତ୍ୱେ, ସାହିତ୍ୟେ, ତୁମ୍ଭେ ତୁମ୍ଭପରି ଜଣେ ।

କି ଉଦାର କି ମହାନ ତୁମ୍ଭର ହୃଦୟ—
ସାଧାରଣେ ଖ୍ୟାତ କିବା ଦେବ ପରିଚୟ ।
ହେ ତ୍ରିଭୁବନଦେବ, ତ୍ୟାଗ କରିଛ ଭୁବନ,
ଅମରମଣ୍ଡଳେ ଲଭିବାକୁ ସିଂହାସନ ।

ବୃଥା ନୁହେ ଧର୍ମଶାସ୍ତ୍ର କଥା ଆପ୍ତ ବାଣୀ,
ମଣ୍ଡନ କରିଛ ସ୍ୱର୍ଗ ରାଜ୍ୟ ରାଜଧାନୀ ।
ତୁମ୍ଭ ଯୋଗ୍ୟ ସ୍ଥାନ ନୁହେ ଏ ମର ଜଗତ,
ସମ୍ପ୍ରତି କରୁଛ ଲାଭ ପଦବୀ ଶାଶ୍ୱତ ।

ବିକ୍ରମାଦିତ୍ୟଙ୍କ ପାଶେ ଲଭିଛ ଆସନ,
ପାଶେ ବିରାଜିତ ମହା ମହା କବିଗଣ ।
ହେ କବୀନ୍ଦ୍ର ! ହେ ରାଜର୍ଷି, ହେ ନରେନ୍ଦ୍ରଦେବ,
ବିଳାପ, ସନ୍ତାପ, ତୁମ୍ଭପାଇଁ କିବା ହେବ !

ଅକାଳେ କରିଛ ଲାଭ ମାନବ-ନିୟତି,
ଏତିକି ମାତ୍ରକ କଷ୍ଟଦାୟକ ସମ୍ପ୍ରତି ।

ପ୍ରଭୁଙ୍କ ମଙ୍ଗଳ ଇଚ୍ଛା ଅମର ଆତ୍ମାରେ,
ପୂର୍ଣ୍ଣହେଉ ଏହି ମାତ୍ର ଯାଚ୍‌ଞା ତାଙ୍କଠାରେ ।

(୧୦ମ ଭାଗ, ଫାଲ୍‌ଗୁନ ଓ ଚୈତ୍ର ୧୧ଶ ଓ ୧୨ଶ ସଂଖ୍ୟା)

---

## ୭ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ

କି ଭୀଷଣ ବାର୍ତ୍ତା ଆଜି ଲୋକରେ ପ୍ରଚାର,
ଶ୍ରୀ ସଚ୍ଚିଦାନନ୍ଦ ତେଜି ଗଲେଣି ସଂସାର ।
ସହସ୍ର କୁଳିଶ ଶବ୍ଦ ସମାନ ଭୀଷଣ,
କଳାହାଣ୍ଡି ବାମଡ଼ାରେ ସହସା ପତନ ।
ହୃଅନ୍ତେ ଦାରୁଣ ବାର୍ତ୍ତା ପ୍ରଚାର ଉତ୍କଳେ,
ସ୍ତମ୍ଭିତ ସକଳ ଲୋକ ଚକିତ ବିକଳେ ।
ହେ ସଚ୍ଚିଦାନନ୍ଦ ଦେବ ଆନନ୍ଦପ୍ରତିମା,
କି ଭାବରେ ପ୍ରକାଶିବି ଗୁଣର ଗରିମା !
ବିଜ୍ଞାନ ଦର୍ଶନେ ଲଭିଥିଲ ନିପୁଣତା,
ବିଖ୍ୟାତ ସମସ୍ତ ଦେଶେ କବିତ୍ୱ ଯୋଗ୍ୟତା ।
ଆସିଥିଲ ସ୍ୱର୍ଗଚ୍ୟୁତ ଦେବତା ନିଶ୍ଚୟ,
ସମ୍ଭବ ତ ନୁହେ ଏହା ମାନବ ହୃଦୟ ।
ଜଞ୍ଜାଳ ଜଗତ ନୁହେଁ ଦେବତାଙ୍କ ସ୍ଥାନ,
ଅସମୟେ ପ୍ରଭୁଠାରୁ ପାଇଲ ଆହ୍ୱାନ ।
ରହିଛ ସମ୍ପ୍ରତି ଯାଇ ଦେବତା ମଣ୍ଡଳେ—
ମାନବର ପ୍ରାପ୍ୟ ଯାହା ତପସ୍ୟାର ଫଳେ ।
ହେ ରାଜର୍ଷି ! କରି ଦେଶବ୍ୟାପୀ ଉପକାର
ପ୍ରଭୁଙ୍କ ଆହ୍ୱାନେ ତ୍ୟାଗ କରିଛ ସଂସାର ।
ମରୁଛନ୍ତି ଲୋକ—ଏବେ ମରିଛ ଆପଣ,
ବିଳାପ ସନ୍ତାପ ତୁମ୍ଭପାଇଁ କି କାରଣ ?
ଭୁଞ୍ଜିବେ ଦାରୁଣ କ୍ଲେଶ ଲକ୍ଷ ଲକ୍ଷ ଲୋକ,
ଏଥିପାଇଁ ତୁମ୍ଭ ମୃତ୍ୟୁ-ଦୁଃଖ ବିଦାରକ ।
ଥିଲ ସଂଖ୍ୟାତୀତ ଲୋକ ଆଶ୍ରୟ ସହାୟ,
ତୁମ୍ଭ ନାମ ସ୍ମରି କରୁଥିବେ ହାୟ ହାୟ !

ଆଦର୍ଶ ନୃପତି ଥିଲ ନିଖିଳ ଉତ୍କଳେ,
ପୂର୍ବସମ ପାଳୁଥିଲ ପ୍ରକୃତି ମଣ୍ଡଳେ ।
ସ୍ୱଦେଶବତ୍ସଳ ଥିଲ କବି ନରପତି,
ଥିଲ ତୁମ୍ଭ ଲକ୍ଷ୍ୟ ମାତୃଭାଷାର ଉନ୍ନତି ।

ଗ୍ରନ୍ଥାବଳୀ ଥିବ ବିଦ୍ୟମାନ ଚିରକାଳ,
ସ୍ପର୍ଶ କରି ନ ପାରିବ କୀର୍ତ୍ତିନାଶୀ କାଳ ।
ସନ୍ଦମାୟା ଛେଦି ଚାଲିଗଲ ସ୍ୱଚ୍ଛନ୍ଦରେ,
ପଡ଼ିଅଛି —ଥିବ କୀର୍ତ୍ତି-କଳାପ ଦେଶରେ ।

ମଣ୍ଡାଇଛ ରାଜ୍ୟବ୍ୟାପୀ ଟେଲିଫୋନ୍ ତାର
ମୁହୂର୍ତ୍ତିକେ ପାଇବାକୁ ରାଜ୍ୟ ସମାଚାର ।
କେତେ କଳ କାରଖାନା କରିଛ ସ୍ଥାପନା,
ଆଶ୍ଚର୍ଯ୍ୟ, ଅନାଚର୍ଯ୍ୟ ଯାହା କରନ୍ତି ତୁଳନା ।

ନାନାବିଧ ବିଦ୍ୟାଳୟେ ପୂର୍ଣ୍ଣ ରାଜଧାନୀ,
କେତେ ଦେଶ ଦେଶାନ୍ତରୁ ସମାଗତ ଜ୍ଞାନୀ ।
ଥିଲ ଗୁଣୀ, କରୁଥିଲ ଗୁଣୀର ଆଦର,
ଦେଶ ଦେଶାନ୍ତରେ ଗୁଣୀ ପାଆନ୍ତି ସମାଦର ।

ତୁମ୍ଭ ସଙ୍ଗେ ତୁଳିବାକୁ ଦେଖିନାହିଁ ଜଣେ,
ତୁମ୍ଭ ପଟାନ୍ତର ତୁମ୍ଭେ ବୋଲି ଏକା ମଣେ ।
ଯେତେ ଭିନ୍ନଲୋକ ହେଉ, ତାହା ସହିତରେ,
କଥାଭାଷା ହେଉଥାନ୍ତି ସମାନ ଭାବରେ ।

ଏକ କଥା, ଥିଲ ସର୍ବଗୁଣରେ ନିପୁଣ,
ପାଉନାହିଁ ଭାଷା ଗାଇବାକୁ ତୁମ୍ଭ ଗୁଣ ।
କବିତ୍ୱ ସାହିତ୍ୟଚର୍ଚ୍ଚା ଶିଳ୍ପାଦି ସହିତ,
ଉତ୍କଳର ଉଚ୍ଚଭୂମି ବାମଣ୍ଡା ବିଦିତ ।

କବିତ୍ୱ ସାହିତ୍ୟ ରାଜଭ୍ରାତାଏ ନିପୁଣ,
ହେ ସଚ୍ଚିଦାନନ୍ଦ ତୁମ୍ଭ ସଂସର୍ଗର ଗୁଣ ।
ଦେଶବ୍ୟାପୀ ରାଜମାର୍ଗ କରିଛ ନିର୍ମାଣ,
ତୁମ୍ଭର ସ୍ଥାପତ୍ୟ ଜ୍ଞାନ ବିଚିତ୍ର ପ୍ରମାଣ ।
ସ୍ଥାପତ୍ୟ ବିଜ୍ଞାନେ ତୁମ୍ଭ ନିପୁଣତା ହେତୁ,
ନିଦର୍ଶନ ନଦୀପୃଷ୍ଠେ ଶିଳାମୟ ସେତୁ ।

ବାମଣ୍ଡାର କାରାଗାର ଦେଖି ଯାଏ ଜଣା,
ଦୋଷୀର ଚରିତ୍ରଶୋଧ ବିଚିତ୍ର କଳ୍ପନା ।
ବନ୍ଦୀବୃନ୍ଦ ପାଉଛନ୍ତି ନାନାରୂପ ଶିକ୍ଷା,
ସଚ୍ଚରିତ୍ର ଥାଇ ଯେପରି ଚାଳିବେ ଜୀବିକା ।
କି ମହତ୍ତ୍ୱ ଦେଖାଇଛ ପ୍ରଜାପାଳନରେ,
ଆଦର୍ଶ ନୃପତି ଥିଲ ଉତ୍କଳ ଦେଶରେ ।
ଚାଲିଗଲ ଦେବ ମାୟା ମମତ୍ୱ କଟାଇ,
ଜ୍ଞାତିବନ୍ଧୁ ପ୍ରଜାଗଣେ ଝୁରାଇ ଝୁରାଇ ।
ହେ ଦେବ କରିଛ ଲାଭ ସତ୍ୟ ଦିବ୍ୟଧାମ,
ସ୍ୱର୍ଣ୍ଣାକ୍ଷରେ ଚିରାଙ୍କିତ ଥିବ ତୁମ୍ଭ ନାମ ।
ସ୍ୱର୍ଗୀୟ ସୁଢ଼ଳଦେବ ପ୍ରଥମ ଉନ୍ନତି
ସୂଚନାର ପରାକାଷ୍ଠା ଲଭିଛ ସମ୍ପ୍ରତି ।
ମହାଗୁରୁ ପିତାଠାରୁ ପାଇଥିଲ ଶିକ୍ଷା,
ଉତ୍ତୀର୍ଣ୍ଣ ହୋଇଛ ଦେଇ ସେଥିର ପରୀକ୍ଷା ।
ତୁମ୍ଭର ସଂସର୍ଗ ଗୁଣ ଅତୀବ ବିଚିତ୍ର
ରାଜଧାନୀବାସୀ ସର୍ବେ ନିର୍ମଳଚରିତ୍ର ।
ବିନୟ ଶିଷ୍ଟତା ମିଷ୍ଟଭାଷା ସୂକ୍ଷ୍ମକଳା
ଉପାଦାନେ ବାମଣ୍ଡାର ରାଜବଂଶ ଢଳା !
ଧନୀ ମାନୀ ରାଜେଶ୍ୱର ଦେଶବ୍ୟାପୀ ଯଶ,
ଗର୍ବ କରିନାହିଁ କାହା ହୃଦୟ ପରଶ ।
ପିତା ଯୋଗ୍ୟ ପୁତ୍ର ଦିବ୍ୟ ଶଙ୍କର ସୁମତି
କରନ୍ତୁ ତାହାଙ୍କୁ ଦୀର୍ଘଜୀବୀ ବିଶ୍ୱପତି ।
ବିଦ୍ୱାନ ସୁଶୀଳ ଧର୍ମପରାୟଣ ଜ୍ଞାନୀ
ଅଳ୍ପ ସମ୍ଭାଷଣେ ତାଙ୍କ ହୃଦ ଅଛି ଜାଣି ।
ଦୀପ୍ତ ପ୍ରଜ୍ୱଳିତ ଦୀପଶିଖାର ସମାନ
କରିବେ ଉଜ୍ଜ୍ୱଳରାଜ୍ୟେ ମଙ୍ଗଳବିଧାନ ।
କାମ ତାର ଉତ୍କଳର କଲ୍ୟାଣ ବିଧାନେ
ଦୟାମୟ ପ୍ରଭୁ ତାଙ୍କୁ ରଖନ୍ତୁ କଲ୍ୟାଣେ ।

(ଉ. ସା ୧୯ଶ ଭାଗ, ୧୨ଶ ସଂଖ୍ୟା ଚୈତ୍ର ୧୩୨୩)

---

## ସ୍ୱର୍ଗୀୟ ହେମଚନ୍ଦ୍ର

ହେମଚନ୍ଦ୍ର ! ଏହି କିରେ ଶେଷ ପରିଣାମ ?
ନିଶ୍ଚୟ ଉତ୍କଳମାତା ପ୍ରତି ବିଧି ବାମ ।
ଛଅ ବର୍ଷକାଳ ରହିଥିଲୁ ବିଲାତରେ,
ଚାହିଁ ବସିଥିଲୁଁ ଆଶାପୂର୍ଣ୍ଣ ନୟନରେ ।
ଯୋଗ୍ୟପୁତ୍ର ଆସି ଦେଶ କରିବୁ ଉଜ୍ଜ୍ୱଳ,
ହା ବିଧି ! ମୁହୂର୍ତ୍ତେ ହେଲା ସକଳ ବିଫଳ !
ଢାଳି ଦେଇଥିଲେ ଭ୍ରାତା ସର୍ବ ଉପାର୍ଜନ,
ରେ ହେମ ! କେବଳ ତୋହର ଶିକ୍ଷାର କାରଣ ।

କେତେ ଆଶା କି ଭରସା ଥିଲେ ମନେ ବାନ୍ଧି,
ଜୀବନ କାଟିବେ ଚିରକାଳ କାନ୍ଦିକାନ୍ଦି ।
ଯେତେବେଳେ ପଡ଼ିବ ମନେ ତୋହର କଥା,
ପକାଇ ନିଶ୍ୱାସ ଦୁଃଖେ ନୁଆଁଇବେ ମଥା ।
କି କୁକ୍ଷଣେ ବାବୁ ଚଢ଼ିଥିଲୁ ମାଲୋଜାରେ,
ମୁହୂର୍ତ୍ତକେ ଶେଷ ହେଲା ସବୁ ପାରାବାରେ ?
ଉତ୍କଳ ଜନନୀ କୋଳୁ ଗୋଟିଏ ମାଣିକ୍ୟ
ଡୁବିଗଲା, ଏହାଠାରୁ ଦୁଃଖ କି ଅଧିକ !
ହେମ ରେ ! ଲେଖକ ମନ ଭାବ ଜାଣୁ ନାହିଁ,
କେତେ ଆଶା ଭରସାରେ ଥିଲା ବାଟ ଚାହିଁ ।
ଶୁଖିଯିବ ତାହା ନେତ୍ରୁ ତପ୍ତ ଅଶ୍ରୁଧାର,
ନିଭିବାର ନୁହେ ହୃଦୁ ଆନନ୍ଦର ଗାର ।

(ଉ. ସା. ୧୪ଶ ଭାଗ, ୧୦ଶ ସଂଖ୍ୟା ୧୩୧୭)

---

## ସୁଜାତା (୧)

ସୁଜାତା ସୁଜାତା ! (୨) କେରେ ନୟନ ପିତୁଳି !
ସଦ୍ୟ ସ୍ୱର୍ଗୁ ପାରିଜାତ ଆଣିଛୁ କି ତୋଳି !
ଏ ରୂପ ଏ ଗୁଣ ନର ଲୋକେ ଅସମ୍ଭବ,
ଏକାଧାରେ ପବିତ୍ରତା କରୁଣା ଉଦ୍ଭବ ।
ନାନାବିଧ ଖାଦ୍ୟ ଦ୍ରବ୍ୟ ପରିପୂର୍ଣ୍ଣ ଥାଳି—
ସୁଦୃଶ୍ୟ ସ୍ୱର୍ଗୀୟ ସୁଧା ଦେଇଛୁ କି ଢାଳି ।
ନିରଞ୍ଜନା (୩) ସ୍ନେହମୟୀ ନିର୍ମଳ ବରଣା
ତୋ ହୃଦୟେ ଏ କରୁଣା କାହାର ପ୍ରେରଣା ?
ଏ କିଏ ରେ ଭଦ୍ରା ଭଦ୍ରା ! (୪) ସଙ୍ଗେ ସହଚରୀ,
ସୁମିଷ୍ଟ ପାୟସ ପୂର୍ଣ୍ଣ ପାତ୍ର ଅଛୁ ଧରି ?
ଲଭିଛ ସ୍ୱର୍ଗୀୟ ଆଶୀର୍ବାଦ ସହଜରେ—
ଅସ୍ଥି ଚର୍ମସାର ନିଃସହାୟ ଜୀବନରେ ।
ଦେଇ ଖାଦ୍ୟପେୟ ଅଦ୍ୟ ଆନନ୍ଦିତ ମନେ,
ଅନାବିଳ ଯଶୋରାଶି ଲଭିଛ ଭୁବନେ ।

(ଉ. ସା. ୨୦ଶ ଭାଗ, ୨ୟ ସଂଖ୍ୟା ଜ୍ୟେଷ୍ଠ ୧୩୨୩)

---

## ଶନିବାର

ଯେତେ ବାର ପୃଥିବୀରେ ଅଛି ଦେଶୀ ଆଉ ବିଦେଶୀ
ହିସାବ କରି ଦେଖିଗଲି, ସାତଟାରୁ ନୁହେଁ ବେଶି ।
ଏହି ଯେ ହେଲା ସାତଟା ବାର ସବୁ ନୁହେ ସମାନ,
କେହି ଦିଏ ଲାଭ ଭାରି, କେହି କରେ ଲୋକସାନ
ରବିବାରଟା ସବୁଠୁଁ ଭଲ ନିଶ୍ଚୟ କଥା ଜାଣ,
କିରାଣୀ ମାଷ୍ଟର ଥକା ମେଣ୍ଟି, ଜୁଡ଼ାଉଥାନ୍ତି ପ୍ରାଣ ।

---

(୧) ଅସ୍ଥି ଚର୍ମ ସାର ବୁଦ୍ଧଦେବଙ୍କୁ ସୁଜାତା ମିଷ୍ଟାନ୍ନ ଭୋଜନ କରାଇଥିଲେ ।
(୨) ସୁଜାତା—ବିଶେଷଣ; ସୁଜାତା—ନାମ
(୩) ନିରଞ୍ଜନା—ଫଲଗୁ ନଦୀ ଅଭ୍ୟନ୍ତର ଜଳପୂର୍ଣ୍ଣ ।
(୪) ଭଦ୍ରା—ବିଶେଷଣ । ଭଦ୍ରା—ନାମ ।

ସବୁଠୁଁ ନିକୃଷ୍ଟ ଶନି ବାରଟା ନିଶ୍ଚୟ ଥିବ ଜାଣି,
ପରତେ ତାଙ୍କୁ କରନ୍ତୁ ନାହିଁ ମୋ ପରି ଯେତେ ଜ୍ଞାନୀ ।

ତସ୍ୟ ପ୍ରମାଣଂ—

ଶନିବାର ବାରବେଳା ଆସିବାରୁ ମାଡ଼ି
ବାଇବେଲ୍ ସଦା ପ୍ରଭୁ ହେଲେ କାମ ଛାଡ଼ି ।
ପ୍ରଭୁ ଦେଖାଦେଖି ସେହିଦିନୁଁ ଅଦ୍ୟାବଧି
କଚେରି ହାଇସ୍କୁଲ କାମ ବନ୍ଦ ଅଧାଅଧି ।
ଦେଖିଲି ଶୁଣିଲି ମୁହିଁ ଅଙ୍ଗେ ନିଜ କଥା,
ଶନିବାର ବାରବେଳା ହେଲା ବିନ୍ଧେ ମଥା
ଥରେ ମୋତେ ଶନିସପ୍ତା ଘୋଟିଥିଲା ଆସି,
ହେଲା ସର୍ଦ୍ଦି ଜ୍ୱର ମରୁଥିଲି କାଶି କାଶି,
ଟଙ୍କା ସୁନା ଗୋରୁ ଗାଈ ଥିଲେ ଘରେ ଭରି,
ବିକି ଭାଙ୍ଗି ଖାଇଦେଲି ଗଲା ସବୁ ସରି ।
ଶନିବାରେ ନ ଜନ୍ମିବ ନ ମରିବ ଆଉ,
ହେଲେ ପଛେ ଯେତେ କାମ ତୁମ୍ଭ ହାତେ ଥାଉ ।
ଜନ୍ମହେଲେ କୋଷ୍ଠୀ ଦେଖି ଆସିବ ଜ୍ୟୋତିଷ
କହି ବୋଲି ଦେଇ ତାକୁ କିଞ୍ଚିତ ବକ୍‌ସିସ
ଶନି ଗ୍ରହଟାକୁ ଦେବ କୋଷ୍ଠୀରୁ ଉଠାଇ
ଖବରଦାର ଭୟ କରି ମନେ ରଖ ଭାଇ !
ତେବେ ସୁଦ୍ଧା ରହିଯିବ ଗ୍ରହ ଗୋଟା ଆଠ
କାମ ଅଟକିବ ନାହିଁ, ଚଳିଯିବ ପାଠ,
ଶନିବାରେ ନ ମରିବ ଯେତେ କାମ ଥାଉ,
ବିଭା ବ୍ରତ ଭଲ କାମ ନ କରିବ ଆଉ,
ଶନିବାରେ ମଲେ ଲାଗେ ଗୋଟାଏ ପୁଷ୍କର
ତାହାକୁ ତଡ଼ିବା ଜାଣ ନିହାତି ଦୁଷ୍କର ।
ନିହାତି ମରିବା ଯେବେ ହେବ ଦରକାର,
ପାଞ୍ଜି ଦେଖି ଠିକ୍ କରି ଦେବ ଭଲ ବାର
ଲୋକହିତାର୍ଥୀ ମୁଁ କଲି ଏକଥା ପ୍ରକାଶ,
ଜ୍ଞାନୀଏ କରିବେ ଏହା ନିଶ୍ଚୟ ବିଶ୍ୱାସ ।

(ଉ. ସା. ୨୦ଶ ଭାଗ, ୫ମ ସଂଖ୍ୟା, ଭାଦ୍ର ୧୮୩୮)

———

## ରେଲବାଇ

ଅବିଶ୍ରାନ୍ତ ଧାଇଁଅଛି ଦେଖ ରେଲବାଇ
ପାସେଞ୍ଜରେ ଚଢ଼ିଯାଉଅଛନ୍ତି ଓହ୍ଲାଇ ।
ଆଶ୍ଚର୍ଯ୍ୟ ଏ ପାସେଞ୍ଜରଙ୍କର ଆଚରଣ,
ରେଲରେ ରହିବେ ଜାଣୁଛନ୍ତି କେତେକ୍ଷଣ,
ତଥାପି କଳହ କରୁଛନ୍ତି ପରସ୍ପରେ,
ଯେମନ୍ତ ରହିବେ ଚିରଦିନ ଏ ରେଲରେ !
ଧିକ ଧିକ ଯାତ୍ରୀଙ୍କର କି ସ୍ୱାର୍ଥପରତା,
ଦୁଇଦଣ୍ଡ ପାଇଁ କିପାଁ ଏ ମିଥ୍ୟା ମମତା ?
ଟିକିଏ ଜାଗା ପାଇଁ କିପାଁ ଧରାଧରି,
ଚିରକାଳ ରେଲଗୋଟା ଥିବ କି ତୁମ୍ଭରି ?
ଏକ ଇଷ୍ଟେସନେ ନିଶ୍ଚେ ପଡ଼ିବ ଓହ୍ଲାଇ,
କାହିଁ ଯିବ ତୁମ୍ଭେ, କାହିଁ ଯିବ ରେଲବାଇ !
ଏକ ସଙ୍ଗେ ବସି ସର୍ବେ ପ୍ରେମ ଆଲାପରେ
କାଳ କି କଟିବ କାହିଁ ସୁଖ ସ୍ୱଚ୍ଛନ୍ଦରେ ?
କେତେ ପାସେଞ୍ଜର ସଙ୍ଗେ ବସିଥିଲ ଭାଇ,
ଦେଖୁଛ ତ ଗଲେ ଜଣ ଜଣକେ ଓହ୍ଲାଇ ।
ଓହ୍ଲାଇଗଲେଣି ତୁମ୍ଭ ସଙ୍ଗୀ ଯେତେ ଲୋକ,
ସେମାନଙ୍କ ସଙ୍ଗେ କିଛି ଅଛି କି ସମ୍ପର୍କ ?
ତୁମ୍ଭେ ବି ଓହ୍ଲାଇଯିବ ଭଲରୂପେ ଜାଣ,
ତେବେ କିପାଁ ଏ ରେଲଟା ପାଇଁ ଏଡ଼େ ଟାଣ ?
ଜାଣିଥାଅ ପହଞ୍ଚିଲେ ତୁମ୍ଭ ଇଷ୍ଟେସନେ
ରହି ନ ପାରିବ ଜଣେ ବୁଝିଥାଅ ମନେ,
ଟିକଟ ଖଣ୍ଡିକ ବାନ୍ଧିଛ ତ ଭଲ କରି ?
ନୋହିଲେ ପୋଲିସ ନିଶ୍ଚେ ନେଇଯିବ ଧରି ।

× × × ×

ପୃଥ୍ୱୀ ରେଲେ ଚଢ଼ିଅଛ ଯେତେଜଣ ଭାଇ,
ଜଣ ଜଣକରି ସର୍ବେ ଯିବେଟି ଓହ୍ଲାଇ ।
ଯାଉଛନ୍ତି ଆସୁଛନ୍ତି କେତେ ପାସେଞ୍ଜର,
ଦେଖି ଦେଖି ନ ଜନ୍ମିଲା ଚେତନା ତୁମ୍ଭର ।

କାହିଁ ଏତେ କଳ ଦ୍ୱନ୍ଦ୍ୱ ଏତେ ବଡ଼ମ୍ଭନା,
ସବୁ ଛାଡ଼ି ଯିବ ଚାଲି, ଅଛି ଭଲ ଜଣା ।
ଭାଇ ଭାଇ ମିଳାମିଶି ପ୍ରେମ ଆଳାପରେ,
କେତୋଟା ବା ଦିନ କଟିଯିବ ସ୍ୱଚ୍ଛନ୍ଦରେ ।
ରଖିଛ ତ ବାନ୍ଧି ଧର୍ମ-ଟିକଟ ସଙ୍ଗରେ ?
ଲୋଡ଼ା ହେବ ମାତ୍ର ସେହି ଗନ୍ତବ୍ୟ ଶେଷରେ ।
ଏ ରେଳ ସେ ରେଳ ମଧ୍ୟେ ପ୍ରଭେଦ ଏତେକ—
ସେ ରେଳେ ପକାଇ ଦିବ ଲଗେଜ ଯେତେକ ।
ଧର୍ମର ଟିକେଟ ଯେବେ ନ ଯିବଟି ଧରି,
ଶମନ ପୁଲିସ ଠୁକି ଦେବ ଆଜ୍ଞା କରି ।

(ଉ. ସା. ୧୦ଶ ଭାଗ ୬ଷ୍ଠ ସଂଖ୍ୟା, ଆଶ୍ୱିନ ୧୩୧୦)

---

## ବୁଢ଼ାହରିଣ କଥା

ବନ ଏକପ୍ରାନ୍ତେ ବୁଢ଼ା ହରିଣ ଗୋଟିଏ
ପଡ଼ିଥାଏ ଏକୁଟିଆ, ପଦୂରେ ବା କିଏ ।
ଭେଣ୍ଡିଆ ହରିଣେ ବୁଲୁଥା'ନ୍ତି ଚରିମାରି
ଖଣ୍ଟିଆ ବୁଢ଼ାକୁ କିଏ ପଚାରୁଛି.ପରିହରି ।
ଘାସ କିଆରିଟି ରଖିଥିଲା ସେ ଆଗୋଳି
ବୁଢ଼ାନ୍ତ କାଳକୁ କରି ଟିକିକ ସଞ୍ଚାଳି ।
ବାଧିକା ପଡ଼ୁଛି ବୁଢ଼ା ପଡ଼ିଗଲା ଡାକି,
ସନ୍ଧୋଳି ଅଇଲେ ତାର ଗୋଷ୍ଠୀ ମୃଗଯାକ ।
କିଆରିରୁ ଘାସ ଚୂପିନେଇ କଲେ କଲେ ।
ବୁଢ଼ା ହରିଣକୁ ବେଢ଼ି ବସିଲେ ଧକଲେ ।
ସାନ କିଆରିଟି ଯହୁଁ ସରିଗଲା ଘାସ,
ଲୋଡ଼ିଲେ ଯେ ଯାହା ବାଟ, କେ ରହୁଛି ପାଶ ।
ବଳୁଆ ଭେଣ୍ଡିଆଟିଏ ପଡ଼ିଥିଲା ଟାକି,
ଚୂପିଦେଲା କିଆରିରେ ଯାହାଥିଲା ବାକି ।
ଭଲ ହେଲା ବୁଢ଼ା ଦେଲା ଘାସକୁ ଅନାଇଁ
ହାୟ ! ହାୟ ! କେରେ ସୁଝା ପଥିପାଇଁ ନାହିଁ ।

ଭାଳିଲା, ବାଧିକା ବେଳେ ମୋର ଜ୍ଞାତିଗଣେ
ନ ଆସିଲେ ଥା'ନ୍ତି ମୁହିଁ ସୁଖରେ ଜୀବନେ,
ବଞ୍ଚିଥିଲା ଘାସ ପୁଞ୍ଜି କିଅଁ ଳିବ କାଳି,
ସୁଖେ ରାମ ଦୁଃଖେ ରାମ ଦିନ ଯିବ ଚାଲି ।

(ଉ. ସା. ୧୦ଶ ଭାଗ, ୯ମ ସଂଖ୍ୟା, ପୌଷ ୧୩୧୦)

---

## କର୍ମଫଳ

ଯାହା ତୋର ନୁହେଁ ପ୍ରାପ୍ୟ ବ୍ୟର୍ଥ ସେଥିପାଇଁ
ଲୋଭ ଆଶେ ଦୁରାଶାରେ ନିତ୍ୟ ଅଛୁ ଧାଇଁ । ୧ ।
କେତେ ସୁଖ କେତେ ଲୋଭ ନିସ୍ପୃହ କାମନା
ପାଉଛୁ କି ଲୋଭ ସବୁ ? ନ ହେଲା ଚେତନା । ୨ ।
ତେତିକି ତୋ ପ୍ରାପ୍ୟ ନିଜକୃତ କର୍ମଫଳ
ଅଧିକ ଲୋଡ଼ିବା ଜାଣ ଦୁରାଶା କେବଳ । ୩ ।
ପ୍ରଭୁଦତ୍ତ ଅନୁଗ୍ରହ ଯେବେ ବୁଝ ମନେ
ତେତିକରେ କାହିଁ ଶାନ୍ତି ନ ଲଭୁ ଜୀବନେ ।
ଅରଜିଲୁ ଯେତେ ମାତ୍ର ତୋର ଅଧିକାର
କରିବେ କି ପ୍ରଭୁ ତୋହ ପାଇଁ ଅବିଚାର । ୪ ।
ବର୍ତ୍ତମାନ କର୍ମଫଳ ଲୋଭ ଭବିଷ୍ୟତେ
ଏହି କଥା କର ଯେବେ ହୃଦୟେ ପରତେ । ୫ ।
ପବିତ୍ର ମନରେ କାର୍ଯ୍ୟ କର ସେହିପରି
ଆତ୍ମକୃତ କର୍ମଫଳ ଯାଚି ଦେବେ ହରି । ୬ ।

(ମୁକୁର-୧୧-୧୧।୧୨ ଫାଲ୍‌ଗୁନ—ଚୈତ୍ର ୧୩୧୩)

---

## ଅନନ୍ତ ମିଳନ

ନିରାକାର ବିଶ୍ୱାଧାର ଅନନ୍ତ ମହାନେ,
ଅନୁଭବେଁ ଅନୁମାନେ କ୍ଷୁଦ୍ରତମ ପ୍ରାଣେ ।
ବିଦ୍ୟୁତସମ ମହାଭାବ ହୃଦେ ଯାଏ ଖେଳି,
ଧ୍ୟାନମଗ୍ନ, ମାତ୍ର ଅନ୍ୟ ଚିନ୍ତା ପଡ଼େ ଟଳି ।

ଜଡ଼ ଦେହେ ଅବିନାଶୀ ଆତ୍ମା ସମ୍ମିଳନ,
ଧାଏଁ ମନ ଊର୍ଦ୍ଧ୍ୱେ, ଜଡ଼ କରେ ଆକର୍ଷଣ ।
ଏହି ଅଧ୍ୟେୟ ଚନ୍ଦ୍ରାଙ୍କିତ ଅନନ୍ତ ମହାନେ,
ନ ଲୋଡ଼ ଶାନ୍ତି ଲଭେ ନାହିଁ ପ୍ରାଣେ ।
ତଦନ୍ତ ଚଞ୍ଚ, ତଥାପି ଧାବିତ,
ଆକର୍ଷଣେ ଲଭେ ଶାନ୍ତି ଅପ୍ରମିତ ।
ଯେ ଧ୍ୟେୟ ଅନନ୍ତ ହରି ଥାଅ ଏହାପରି,
ଲୋଡ଼େ କାର୍ଯ୍ୟ ଅବିରତ ନ ପାରେଁ ବା ଧରି ।
ବିନାଶୀ ଶରୀରେ ସ୍ଥିତ ଅବିନାଶୀ ପ୍ରାଣ,
ଅନନ୍ତେ ଅନନ୍ତ କାଳ କରିବ ସନ୍ଧାନ ।
ଲଭୁଛି ସନ୍ତତ ମାତ୍ର ଜୀବନେ ସାନ୍ତ୍ୱନା,
ଗତି ମୋ ଅନନ୍ତ ମାର୍ଗେ ସମ ଯାଏ ଜଣା ।
ଅନନ୍ତ ଜୀବନ ଗତି ଅନନ୍ତ ମାର୍ଗରେ,
ଅନନ୍ତେ ଅନନ୍ତ ଯୋଗ ଅନନ୍ତ କାଳରେ ।
(ଉ. ସ. ୦ଶ ଭାଗ—୧୨ସଂଖ୍ୟା ଚୈତ୍ର—୧୩୨୪)

———

## ଶିକ୍ଷାର୍ଥୀ ବିଦେଶୀ ଉତ୍କଳଯୁବକ

ହେ ଉତ୍କଳ ଦେଶବାସୀ ନବ ଯୁବାଗଣ !
କରୁଛ ବିଦେଶେ ରହି ଜ୍ଞାନ ଉପାର୍ଜ୍ଜନ,
କି ଦାୟିତ୍ୱ କି କର୍ତ୍ତବ୍ୟ ଅଛି ତୁମ୍ଭ ଶିରେ—
କି ବୋଲିବି ବୁଝିପାର ସହଜ ବୁଦ୍ଧିରେ ।
ତୁମ୍ଭ ଯୋଗେ ଖ୍ୟାତି ଯଶ ଲଭିବାର ପାଇଁ
ଗୁରୁଜନେ ଦେଶବାସୀ ରହିଛନ୍ତି ଚାହିଁ ।
ଜନକ ଜନନୀଙ୍କର ନୟନପ୍ରତିମା
ଅଛ ଦୂରେ ପ୍ରାଣେ ତାଙ୍କ ନାହିଁ କଷ୍ଟ ସୀମା ।
ସେମାନଙ୍କ କେତେ କଷ୍ଟ ଉପାର୍ଜ୍ଜିତ ଧନ
ଢାଳି ଦେଉଛନ୍ତି ତୁମ୍ଭ ଶିକ୍ଷାର କାରଣ ।
ପୋଷିଛନ୍ତି ପ୍ରାଣେ ଆଶା ଭାବିଥାକେବଳ,
ସ୍ୱଳ୍ପ କାଳରେ ହେବ ଜୀବନ ସମ୍ବଳ ।
ଦେଶବାସିଗଣେ ପ୍ରାଣେ ପୋଷିଛନ୍ତି ଆଶା,
ଲଭିବ ଉନ୍ନତି ତୁମ୍ଭଯୋଗେ ମାତୃଭାଷା ।

କରିବ ଦେଶର କେତେ କଲ୍ୟାଣ ସାଧନ
ତୁମ୍ଭ ଯୋଗେ ହେବେ ଧନ୍ୟ ଦେଶବାସିଗଣ ।
ଚରିତ୍ର—ଈଶ୍ୱରନିଷ୍ଠା-ବିଦ୍ୟାବୁଦ୍ଧିବଳେ
ମାନବ ଅସାଧ୍ୟ କାର୍ଯ୍ୟ ନାହିଁ ଭୂମଣ୍ଡଳେ
ଦୟାମୟ ମହାପ୍ରଭୁ କରନ୍ତୁ କଲ୍ୟାଣ,
ହୁଅ ଦୀର୍ଘଜୀବୀ କର୍ମବୀର କୀର୍ତ୍ତିମାନ ।
( ଉ. ସା. ୨୧ଶ ଭାଗ, ୧ମ ସଂଖ୍ୟା, ବୈଶାଖ ୧୩୨୪ )

———

## ଶେଷବାସନା

ପଲକେ ହୃଦୟେ ମହାଜ୍ୟୋତି ଯାଏ ଝଲି
ଧରୁଁ ଧରୁଁ ମନଦେବ ! ଯାଅ କାହିଁ ଚଳି ।
ନିୟତ ବାସନା ପ୍ରଭୋ ! ପୋଷି ରଖେଁ ପ୍ରାଣେ,
ଅନାୟତ୍ତ ବିଚଳିତ ମନ ତୁମ୍ଭ ଧନେ ।
ଚଞ୍ଚଳ ପ୍ରକୃତି ମନ ନ ଆସିଲା ବଶେ—
ହେବ ସ୍ଥିର ପିତଃ ତୁମ୍ଭ ପବିତ୍ର ପରଶେ ।
ନ ପାରିଲି ସ୍ଥିର କରି ବିଚଳିତ ମନେ,
ନିମେଷକେ ଆସେ ଭ୍ରମି ଅନନ୍ତ ଗଗନେ ।
ବିରାଜ ହେ ଦେବଦେବ ! ହୃଦୟେ ସନ୍ତତ,
ଅବାଧ ଚଞ୍ଚଳ ମନ ନ ହେବ ଆୟତ୍ତ ।
ସଂସାରସାଗରେ ପ୍ରାଣ ଯାଉ ଭାସି ଭାସି
ଧ୍ରୁବତାରରୂପେ ଲକ୍ଷ୍ମୀଭୂତ ହୁଅ ଆସି ।
ପ୍ରାଣାରାମ ପ୍ରାଣେଶ୍ୱର ! ଚରମ ପ୍ରାର୍ଥନା,
ବିଭ୍ରାନ୍ତ ନ କରୁ ମନେ ଅସାର ବାସନା ।
ବିବେକ ଆଦେଶ ନିତ ହୃଦଦ୍ୱାରେ ଥାଇଁ—
ସୁମତି ମାର୍ଗରେ ନେଉ ଜୀବନ ବଢ଼ାଇ
ଜଗତ ଜଞ୍ଜାଳୁ ପ୍ରାଣେ ରଖି ସ୍ୱତନ୍ତ୍ରରେ,
ଅସାର ବାସନା ସ୍ପର୍ଶ ନୋହୁ ହୃଦୟରେ ।
ସାଧିବି ତୁମ୍ଭର କାର୍ଯ୍ୟ ପାଳିବି ଆଦେଶ—
ଲକ୍ଷ୍ୟରଖି ତୁମ୍ଭ ପଦେ ପ୍ରାଣ ହେଉ ଶେଷ ।
(ଉ. ସା. ୨୧ଶ ଭାଗ ୨ୟ ସଂଖ୍ୟା; ଜ୍ୟେଷ୍ଠ ୧୩୨୪)

———

## ଆତ୍ମସମର୍ପଣ

ହେ ଅତିଥି ! କଦାଚିତ ବିନା ଆହ୍ୱାନରେ
ବିରାଜିତ ହୁଅ ଦୀନହୀନ ହୃଦୟରେ ।
ଆଶାପୂର୍ଣ୍ଣ ପ୍ରାଣେ ଧାଏଁ କରିବି ସମ୍ମାନ,
ହାୟ ! ହାୟ ! କାହିଁ ହୋଇଯାଅ ଅନ୍ତର୍ଦ୍ଧାନ ।
ହେ ବନ୍ଧୋ ! ଭକ୍ତିରେ କଦା କରି ନିମନ୍ତ୍ରଣ
ପାରିଦିଏଁ ବସିବାକୁ ହୃଦୟେ ଆସନ,
ନୟନ ନିମିଷେ ହାୟ କାହିଁ ଯାଅ ଚାଲି,
କୁଟୀର ଆସନ ଶୂନ୍ୟ-ପଡ଼ିଥାଏ ଖାଲି ।
ହେ ଗୁରୋ ! ଦେଇ ତ ନାହିଁ ଉପଯୁକ୍ତ ଶିକ୍ଷା,
କପାଁ ବୋଲି ବାରମ୍ବାର କରୁଛ ପରୀକ୍ଷା ?
ହେ ପ୍ରହରି ! କପାଁ ତୁମ୍ଭେ ନ ଦିଅ ଚେତାଇ
ଆତ୍ମରକ୍ଷା କରିବାକୁ ସାବଧାନେ ଥାଇ ?
ହେ ଅନନ୍ତ ଦେବଦେବ ! ମୁଁ ତ କ୍ଷୁଦ୍ରପ୍ରାଣୀ,
ଅଜ୍ଞେୟ ବିଧାନ କାହୁଁ ପାରିବି ବା ଜାଣି !
ସମର୍ପଣ କରି ମନପ୍ରାଣ, ସର୍ବାଧାର !
ଯାହା ଇଚ୍ଛା ଦିଅ ଦେବ ଦଣ୍ଡ ପୁରସ୍କାର !

( ଉ. ସା. ୨୧ଶ ଭାଗ, ୩ୟ ସଂଖ୍ୟା, ଆଷାଢ଼ ୧୩୨୪ )

— — —

## ବୃଦ୍ଧସ୍ୟ ବଚନଂ

( ଉତ୍କଳସାହିତ୍ୟ ଦ୍ୱାବିଂଶ ଭାଗ ଚତୁର୍ଥ ସଂଖ୍ୟା ୧୮୦ ପୃଷ୍ଠାରେ 'ସ୍ୱର୍ଗତ ଫକୀର ମୋହନ' ଶୀର୍ଷକ ପ୍ରବନ୍ଧରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଲେଖିଛନ୍ତି, "ମୁଁ ପ୍ରଥମ ଦର୍ଶନ ଆଶାରେ ଶାନ୍ତି କାନନରେ ଉପସ୍ଥିତ ହେବା ସମୟରେ ବୃଦ୍ଧକବି ଗୋଟିଏ ନିର୍ଜନ ସ୍ଥାନରେ ବସି ନିମ୍ନଲିଖିତ କବିତାଟି ଲେଖିସାରି ବିଶ୍ରାମ କରୁଥିଲେ । ମୋତେ ଦେଖିଲାକ୍ଷଣି, ତାଙ୍କର କୌଣସି ଦ୍ୱିଧା ଉପୁଜ ଗଲ ପରି ହଠାତ୍ ଆସନରୁ ଉଠି ସ୍ନେହମୟ ବାହୁ ପ୍ରସାରଣରେ ଆକର୍ଷଣ ପୂର୍ବକ ପାଖରେ ବସାଇ ସେହି କବିତାଟି ପଢ଼ି ଶୁଣାଇଲେ ! × × × ମୁଁ କବିଙ୍କ ଅନୁମତିକ୍ରମେ ଉକ୍ତ ପଦ୍ୟଲିଖିତ, କବିତାଟି ନେଇ ପରେ ଲେଖିଥିଲି । ଆଜି ପାଠକମାନଙ୍କ ନିକଟରେ ସେହି ବହୁମୂଲ୍ୟ "ବୃଦ୍ଧସ୍ୟ ବଚନଂ" ଆବୃତ୍ତି କରୁଅଛି ।")

ବାକ୍ୟ ଉଚ୍ଚାରଣ କରି ମାନବ ପ୍ରଧାନ,
ଲଭିଛି ତା ଯୋଗେ ପ୍ରାଣୀ ମଧ୍ୟେ ଶ୍ରେଷ୍ଠ ସ୍ଥାନ ।
ସାବଧାନେ କର ସେହି ବାକ୍ୟ ଉଚ୍ଚାରଣ,
ଅନ୍ୟଥା ମାନବଜନ୍ମ ହେବ ଅକାରଣ ।

ପ୍ରଭୁଦତ୍ତ ମହାକୃପା ଜୀବନର ସାର,
କର ନାହିଁ ତାହା କେବେ ଅପବ୍ୟବହାର ।
ମାନବର ଜ୍ଞାନରାଶି ବାକ୍ୟ ଶୃଙ୍ଖଳରେ
ଆବଦ୍ଧ, ସମାଜେ ଶିକ୍ଷା ଦିଏ ପରସ୍ପରେ ।

ଯେଉଁ ବାକ୍ୟ ଗୋଟି ହୁଏ ମୁଖରୁ ବାହାର,
ସାଧ୍ୟ କି ତାହାକୁ କରି ପାର ପ୍ରତ୍ୟାହାର ।
ଧନୁକୋଷୁ ଶସ୍ତ୍ର ବେଗେ ହେଲେ ବହିର୍ଗତ,
ପାରିବ କେ କରି ପୁଣି ତାହା ମଧ୍ୟଗତ ?

ଉଚ୍ଚାରିତ ବାକ୍ୟ ତଥା ପବନ ମଣ୍ଡଳେ
ମିଶିଯାଏ, ନ ଫେରିବ କଳେ ବା କୌଶଳେ ।
ବାକ୍ୟଗୁଣେ ଲୋକ ହୋଇପାରେ ଦଣ୍ଡଧାରୀ
ବାକ୍ୟଗୁଣେ ହୋଇପାରେ ବାଟର ଭିକାରୀ ।

ବାକ୍ୟ ଉଚ୍ଚାରଣ ଯନ୍ତ୍ର କୋମଳ ରସନା,
କର୍କଶ ବଚନ ତହିଁ ସମ୍ପର୍କ କର ନା ।
ନିଷ୍ଠୁର ବଚନ କେତେ ଯନ୍ତ୍ରଣା ଦାୟକ,
ଜୀବନେ ବୁଝିଛି ତାହା ଅନୁଭବୀ ଲୋକ ।

ବିପଦେ ବା ରୋଗେ ଯେହୁ ଭୋଗୁଛି ଯାତନା
ମିଷ୍ଟବାକ୍ୟେ ଦେଇପାର ତାହାକୁ ସାନ୍ତ୍ୱନା ।
ସହଜ ମାନବ ପ୍ରାଣେ ବାକ୍ୟବିଷ ଢାଳି,
ସୁଖ ଶାନ୍ତି ପ୍ରୀତି ନାଶି ଦେଇପାରେ ଜାଳି ।

ଉଦୟ ଯେତେକ ଭାବ ହୋଇଥାଏ ମନେ,
ଚିନ୍ତା ବିନା ତକ୍ଷଣେ ତା ପ୍ରକାଶେ ବଚନେ ।
କଥା ବୋଲିବାର ପୂର୍ବେ କରିବ ବିଚାର
ଅଛି କିବା ଇଷ୍ଟାନିଷ୍ଟ ଏଥିରେ କାହାର ।

ଯେଉଁ ଲୋକ କରିପାରେ ବଚନ ସଂଯମ
ଜଗତରେ ପରିଚିତ ସେହି ବାଗ୍ମୀ ନାମ ।

———